# ମହାଭାରତ

## ଆଦି ପର୍ବ

ଓଡ଼ିଶା ସାହିତ୍ୟ ଏକାଡେମୀ

ଗୋବିନ୍ଦଚନ୍ଦ୍ର ମହାପାତ୍ର

ପ୍ରକାଶକ—

**ଓଡ଼ିଶା ସାହିତ୍ୟ ଏକାଡେମୀ**

ଭୁବନେଶ୍ୱର-୧

୧୯୭୫

ମୁଦ୍ରାକର—

ପୂର୍ବାର୍ଦ୍ଧ :

ଷଣ୍ମୁଖାବନ ମିଶ୍ର

ସଂସାର ପ୍ରେସ, କଟକ

ଉତ୍ତରାର୍ଦ୍ଧ :

ଅଜୟକୁମାର ଘୋଷ

ହରନାଥ ପ୍ରେସ, କଟକ

ମୂଲ୍ୟ—**ପନ୍ଦର ଟଙ୍କା**

# ଅଗ୍ରଲେଖ

ମହାଭାରତ କେବଳ ଭାରତୀୟ ସାହିତ୍ୟରେ କାହିଁକି, ସମଗ୍ର ବିଶ୍ୱ-ସାହିତ୍ୟର ଏକ ମହାଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଜା କୃଷ୍ଣ-ସିଂହଙ୍କ ଠାରୁ ଫକୀରମୋହନ ସେନାପତିଙ୍କ ପର୍ଯ୍ୟନ୍ତ ଏହାର ଯେଉଁ ସବୁ ଅନୁବାଦ କରିଅଛନ୍ତି, ସେଗୁଡ଼ିକ ଛନ୍ଦୋବଦ୍ଧ । କିନ୍ତୁ ସ୍ୱର୍ଗତ ଗୋବିନ୍ଦ-ଚନ୍ଦ୍ର ମହାପାତ୍ରଙ୍କର ଏହି ଅନୁବାଦ ଗଦ୍ୟାତ୍ମକ । ଏହା ମୂଳ ଶ୍ଳୋକଗୁଡ଼ିକୁ ପୂରାପୂରି ଅନୁସରଣ କରିଥିବାରୁ 'କବିକଳ୍ପନା' ନିମନ୍ତେ ଏଥିରେ ଅବକାଶ ନାହିଁ । ଏ ଭଳି ଏକ ମହାଗ୍ରନ୍ଥ ଯେ କୌଣସି ଅନୁଷ୍ଠାନ ପକ୍ଷରୁ ପ୍ରକାଶ ପାଇଲେ ସେହି ଅନୁଷ୍ଠାନ ଦେଶବାସୀଙ୍କର ଆଦରଣୀୟ ହେବ, ଏ ବିଷୟରେ ଅଧିକ କହିବା ନିଷ୍ପ୍ରୟୋଜନ । ଓଡ଼ିଆ ସାହିତ୍ୟକୁ ସମୂହଭାବରେ ସମୃଦ୍ଧ କରିବା ଦିଗରୁ ଦେଖିଲେ ଏହା ଏକ ସ୍ମରଣୀୟ ଅବଦାନ ରୂପେ ସମ୍ମାନ ଲାଭ କରିବ । ଦେଶବାସୀଙ୍କ ହସ୍ତରେ ଏଭଳି ଏକ ପବିତ୍ର ଗ୍ରନ୍ଥ ସମର୍ପଣ କରି ଅନୁଷ୍ଠାନର ସଭାପତି ରୂପେ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଅଛି ।

**ସନ୍ତୋଷ କୁମାର ସାହୁ**
ସଭାପତି

# ନିବେଦନ

ସ୍ୱର୍ଗତ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ଅନୂଦିତ ଏବଂ 'ମହାଭାରତ' ଉତ୍କଳ ବିଶ୍ୱବିଦ୍ୟାଳୟ ମାଧ୍ୟମରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ କର୍ତ୍ତୃପକ୍ଷଙ୍କର ହସ୍ତଗତ ହୋଇଥିଲା । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଏହି ଅନୁବାଦକୁ ପ୍ରକାଶ କରିବା ନିମନ୍ତେ 'ଓଡ଼ିଶା ମିଉଜିୟମ୍' ମାରଫତରେ ସମଗ୍ର ପାଣ୍ଡୁଲିପିଟିକୁ ଭଲଭାବରେ ଉଦ୍ଧରିବା କାମ ଆରମ୍ଭ କରି ବହୁଦୂର ଅଗ୍ରସର ହୋଇଥିଲେ ଓ ସେଥି ପାଇଁ କିଛି ଅର୍ଥବ୍ୟୟ ମଧ୍ୟ କରିଥିଲେ । ପରେ ଓଡ଼ିଶା ସାହିତ୍ୟ ଏକାଡେମୀ ଏହାକୁ ପ୍ରକାଶ କରିବାକୁ ସ୍ଥିର କରିବାରୁ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ଅକୁଣ୍ଠ ଭାବରେ ତାଙ୍କର ଅର୍ଥବ୍ୟୟରେ ଉଦ୍ଧାର ପାଇଥିବା କେତୋଟି ପର୍ବର ପାଣ୍ଡୁଲିପି ଏକାଡେମୀ ହସ୍ତରେ ଅର୍ପଣ କରିଥିଲେ । ତେଣୁ ସର୍ବପ୍ରଥମେ ଓଡ଼ିଶା ସାହିତ୍ୟ ଏକାଡେମୀ ଉତ୍କଳ ବିଶ୍ୱବିଦ୍ୟାଳୟଠାରେ ଋଣୀ । ସମଗ୍ର ପାଣ୍ଡୁଲିପି ମୂଳ ଲେଖାରୁ ଉଦ୍ଧାର ଦେଇ ପ୍ରକାଶ ନିମନ୍ତେ ମିଉଜିୟମ କର୍ତ୍ତୃପକ୍ଷ ଏକାଡେମୀକୁ ସାହାଯ୍ୟ କରି ଧନ୍ୟବାଦାର୍ହ ହୋଇଅଛନ୍ତି ।

ସଂସ୍କୃତ ମହାଭାରତ ଭାରତୀୟ ସାହିତ୍ୟ ଓ ସଂସ୍କୃତିର ଏକ ଅମର କୀର୍ତ୍ତି । ଏହାର ଶ୍ଳୋକସଂଖ୍ୟା ଏକଲକ୍ଷ ବୋଲି ପଣ୍ଡିତମାନଙ୍କର ପାରମ୍ପରିକ ବିଶ୍ୱାସ ଥିବା ସତ୍ତ୍ୱେ ବର୍ତ୍ତମାନ ପାଶ୍ଚାତ୍ୟ ପଣ୍ଡିତମାନଙ୍କର ତଦ୍‌ବିଷୟକ ଗବେଷଣା ଦ୍ୱାରା ପ୍ରତିପାଦିତ ହେଉଅଛି ଯେ, ଜଣେ ବେଦବ୍ୟାସ କିମ୍ବା ବ୍ୟାସଦେବ ମହାଭାରତର ଏହି ସମସ୍ତ ଶ୍ଳୋକ ରଚନା କରିନାହାନ୍ତି କିମ୍ବା ପ୍ରାଥମିକ ସ୍ତରରେ, ଆଜକୁ ପ୍ରାୟ ଦୁଇସହସ୍ର ବର୍ଷ ତଳେ ମହାଭାରତ ଲକ୍ଷେ ଶ୍ଳୋକବିଶିଷ୍ଟ ନ ଥିଲା । ସେ ଯାହା ହେଉ, ଏ କଥା ଅବିସଂବାଦିତ ଯେ ଶତ ଶତ ବର୍ଷ ଧରି ଆସେତୁହିମାଚଳ ଭାରତବର୍ଷୀୟ ଜନତା ସଶ୍ରଦ୍ଧ ନୟନରେ ଏବଂ ସସମ୍ମାନ ଭାବରେ ମହାଭାରତକୁ ଜୀବନପ୍ରବାହର ପରମ ହିତକର ନିୟାମକ ରୂପେ ଗ୍ରହଣ କରିଆସିଛି । ସେଥିପାଇଁ ଜନଶ୍ରୁତିରେ ଅଛି, 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ' । ପ୍ରାଚୀନ ଭାରତୀୟ ସଭ୍ୟତା, ସଂସ୍କୃତି, ଧର୍ମନୀତି, ଦାର୍ଶନିକ ଚିନ୍ତାଧାରା, ସାମାଜିକ ଆଚାର ବ୍ୟବହାର, ରାଜନୈତିକ ଆଦର୍ଶ ଓ ମାନବର ପରମ କାମ୍ୟ ମୁକ୍ତିପ୍ରାପ୍ତିର ଉପାୟ ନିରୂପଣ ପ୍ରଭୃତି ବିବିଧ ବିଷୟରେ ସଂସ୍କୃତ ମହାଭାରତ ହେଉଛି ଏକ ନିର୍ମଳ ଦର୍ପଣ । ଯେଉଁ ଆଦର୍ଶ ଏକାଧାରରେ ନବନୀତକୋମଳ ଓ

'ବଜ୍ରାଦପି କଠୋର', ସେହି ମାନବଙ୍କ ଆଦର୍ଶର ଅନୁଶୀଳନ, ଅନୁଧ୍ୟାନ ବା ଅନୁସରଣ ନିମନ୍ତେ ସଂସ୍କୃତ ମହାଭାରତ କେବଳ ଭାରତବର୍ଷୀୟ-ମାନଙ୍କ ପକ୍ଷରେ କାହିଁକି, ସମଗ୍ର ମାନବ ସମାଜ ପକ୍ଷରେ ପରମ ଉପାଦେୟ, ଏକାନ୍ତ ଶ୍ରେୟଃସାଧକ ଓ ଅତ୍ୟନ୍ତ ହିତକର ।

ଓଡ଼ିଆରେ ଏହି ମହାଭାରତ ଚରିତ ପରିବେଷଣ କରିବା ପାଇଁ ମହାମତି ସାରଳା ଦାସ ଆଜକୁ ପ୍ରାୟ ପାଞ୍ଚଶହ ବର୍ଷ ତଳେ ବିଖ୍ୟାତ ଓଡ଼ିଆ ମହାଭାରତ ରଚନା କରିଥିଲେ, କିନ୍ତୁ ତାହା ମୂଳ ମହାଭାରତର ଆକ୍ଷରିକ ଅନୁବାଦ ନୁହେଁ—ମହାଭାରତୀୟ ଭିତ୍ତିଭୂମି ଉପରେ ତାହା ଏକ ମୌଳିକ ମହାକାବ୍ୟ ରୂପେ ଅଧିକତର ଭାବରେ ଗ୍ରାହ୍ୟ । ରାଜା କୃଷ୍ଣ ସିଂହ ବହୁ ପଣ୍ଡିତଙ୍କର ସାହାଯ୍ୟରେ ମହାଭାରତର ଯେଉଁ ସୁଲଳିତ ଅନୁବାଦ କରିଥିଲେ, ତାହା ଆଜିପର୍ଯ୍ୟନ୍ତ ଓଡ଼ିଶାର ଅଗଣିତ ପାଠକଙ୍କ ଲାଗି ମହାଭାରତରୂପୀ ଭଣ୍ଡାର ଘରର କୁଞ୍ଚିକା ସ୍ୱରୂପ ବିବେଚିତ ହେଲେହେଁ, ପଦ୍ୟରେ ସେହି ଅନୁବାଦ ହୋଇଥିବାରୁ ସ୍ଥାନେ ସ୍ଥାନେ ଭାବସଂପ୍ରସାରଣ କିମ୍ବା ଭାବ ସଂକୋଚନ ହୋଇଥିବାର ତହିଁରେ ଅନୁଭୂତ ହୁଏ । ଫକୀରମୋହନ ସେନାପତି ମଧ୍ୟ ମହାଭାରତର ଅନୁବାଦ କରିଥିଲେ କିନ୍ତୁ ତାହା ବର୍ତ୍ତମାନ ଏକାନ୍ତ ଦୁଷ୍ପ୍ରାପ୍ୟ । ତାଙ୍କର ଅନୁବାଦ ପଦ୍ୟ ମାଧ୍ୟମରେହିଁ ହୋଇଥିଲା କିନ୍ତୁ ପଦ୍ୟରେ ଯେତେ ଅନୁବାଦ କରାଗଲେ ସୁଦ୍ଧା ଗଦ୍ୟ ଅନୁବାଦ ପରି ତାହା ମୂଳ ରଚନାର ଭାବକୁ ପୂର୍ଣ୍ଣାଙ୍ଗ, ପୁଷ୍କଳ ଓ ପ୍ରକୃଷ୍ଟ ଭାବରେ ପ୍ରସ୍ଫୁଟିତ କରିପାରିବ ନାହିଁ । ଆଜକୁ ପ୍ରାୟ ଷାଠିଏ ବର୍ଷ ତଳେ ସ୍ୱର୍ଗତ ଗୋବିନ୍ଦଚନ୍ଦ୍ର ମହାପାତ୍ର ଏହି ପ୍ରକାଣ୍ଡ ଗ୍ରନ୍ଥର ଶ୍ଳୋକଶଃ ଅନୁବାଦ କରି ଓଡ଼ିଆ ସାହିତ୍ୟର ସମୃଦ୍ଧି ଦିଗରେ ଅବିସ୍ମରଣୀୟ ସାଧନା କରି ଯାଇଛନ୍ତି ।

ସରକାରଙ୍କର ସ୍ୱତନ୍ତ୍ର ସହାୟତାରେ ଏହି ମହାଗ୍ରନ୍ଥ ପ୍ରକାଶ କରିବାକୁ ସକ୍ଷମ ହୋଇ ଓଡ଼ିଶା ସାହିତ୍ୟ ଏକାଡେମୀ ଗୌରବ ଅନୁଭବ କରୁଅଛି । ମହାଭାରତର ଅଠରଟି ପର୍ବ ମୋଟ ବାର ଖଣ୍ଡରେ ପ୍ରକାଶ କରିବାର ପରିକଳ୍ପନା କରାଯାଇଛି । ସେଗୁଡ଼ିକ ହେଉଛି :

ପ୍ରଥମ ଖଣ୍ଡ—ଆଦି ପର୍ବ

ଦ୍ୱିତୀୟ ଖଣ୍ଡ—ସଭା ପର୍ବ ।

ତୃତୀୟ ଖଣ୍ଡ—ବନ ପର୍ବ

ଚତୁର୍ଥ ଖଣ୍ଡ—ବିରାଟ ପର୍ବ

ପଞ୍ଚମ ଖଣ୍ଡ—ଉଦ୍‌ଯୋଗ ପର୍ବ

ଷଷ୍ଠ ଖଣ୍ଡ—ଭୀଷ୍ମ ପର୍ବ
ସପ୍ତମ ଖଣ୍ଡ—ଦ୍ରୋଣ ପର୍ବ
ଅଷ୍ଟମ ଖଣ୍ଡ—କର୍ଣ୍ଣ ପର୍ବ
ନବମ ଖଣ୍ଡ—ଶଲ୍ୟ ଓ ସୌପ୍ତିକ ପର୍ବ
ଦଶମ ଖଣ୍ଡ—ନାରୀ ଓ ଶାନ୍ତି ପର୍ବ
ଏକାଦଶ ଖଣ୍ଡ—ଅନୁଶାସନ ପର୍ବ
ଦ୍ୱାଦଶ ଖଣ୍ଡ—ଆଶ୍ୱମେଧିକ ପର୍ବ, ଆଶ୍ରମବାସିକ ପର୍ବ, ମୌଷଳ ପର୍ବ, ମହାପ୍ରାସ୍ଥାନିକ ପର୍ବ, ସ୍ୱର୍ଗାରୋହଣ ପର୍ବ ।

ଏହି ପ୍ରଥମ ଖଣ୍ଡର ମୁଦ୍ରଣ ପରିପାଟୀ ସମ୍ପର୍କରେ ଏତିକି ବିଶେଷ ଉଲ୍ଲେଖଯୋଗ୍ୟ ଯେ ପୁସ୍ତକ ପ୍ରକାଶନର କ୍ଷିପ୍ରତା ଦୃଷ୍ଟିରୁ ଏହି ପ୍ରଥମ ଖଣ୍ଡଟିକୁ ଦୁଇ ଭାଗରେ (ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ) ବିଭକ୍ତ କରାଯାଇଅଛି । ମୂଳ ମହାଭାରତରେ ଏଭଳି ବିଭାଗ ନାହିଁ । କିନ୍ତୁ ଏହି ପ୍ରଥମ ଖଣ୍ଡରେ ଆଦି ପର୍ବଟିକୁ ଏକ କାଳରେ ଦୁଇଟି ମୁଦ୍ରାଯନ୍ତ୍ରରେ ପ୍ରକାଶ କରାଯାଇଅଛି, କେବଳ ପ୍ରକାଶନର ଶୀଘ୍ରତା ଲାଗି । ଅଥଚ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ପର୍ବ ସଂଖ୍ୟା ମୂଳ ଗ୍ରନ୍ଥ ପରି ଏକାଦିକ୍ରମରେ ରଖାଯାଇଛି ।

ପ୍ରାୟ ଷାଠିଏବର୍ଷ ତଳେ ଓଡ଼ିଆ ଭାଷା—ବିଶେଷତଃ ଗଦ୍ୟଶୈଳୀ ଯାହା ଥିଲା, ତାହା କେତେକ ପରିମାଣରେ ବର୍ତ୍ତମାନ ପରିବର୍ତ୍ତିତ ହୋଇ ଯାଇଛି । ତଥାପି ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ଅନୁବାଦକଙ୍କର ଭାଷାରେ କୌଣସି ପରିବର୍ତ୍ତନ କରାଯାଇ ନାହିଁ । ହୁଏତ ଓଡ଼ିଆ ଗଦ୍ୟ ସାହିତ୍ୟର ଶୈଳୀବିଚାରରେ ତାହାଁର ସ୍ୱତନ୍ତ୍ର ଉପାଦେୟତା ଗବେଷକମାନେ ଅନୁଭବ କରିବେ ।

ଏତେଦିନ ପରେ ଏଭଳି ଏକ ଗ୍ରନ୍ଥରତ୍ନ ପ୍ରକାଶ କରି ଦେଶ-ବାସୀଙ୍କ ହସ୍ତରେ ଅର୍ପଣ କରିବାର ସୌଭାଗ୍ୟରେ ପୁରସ୍କୃତ ହୋଇଥିବା ବାସ୍ତବିକ ଏ ଅନୁଷ୍ଠାନ ପକ୍ଷରେ ଅତ୍ୟନ୍ତ ଆନନ୍ଦର କଥା । ଇତି ।

ଭୁବନେଶ୍ୱର
୧୫ । ୩ । ୭୫

ନିବେଦକ
ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ

# ମୁଖବନ୍ଧ

ମହାଭାରତର ପ୍ରକୃତ ଅନୁବାଦ ଉତ୍କଳ ଭାଷାରେ ନ ଥିଲା ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଗଦ୍ୟରେ ନାହିଁ ; ଯେ ପଦ୍ୟରେ ଅଛି ସେ ଏତେ ଅଶୁଦ୍ଧ ଓ ତହିଁରେ ବ୍ୟବହୃତ ସ୍ଥାନ ଓ ବ୍ୟକ୍ତିଙ୍କର ନାମମାନ ଲେଖକଙ୍କର ଭ୍ରମ ଓ ପ୍ରମାଦବଶରୁ କାଳକ୍ରମେ ଏତାଦୃଶ ରୂପାନ୍ତରିତ ହୋଇ ଯାଇଅଛି ଯେ ତାହାକୁ ପାଠ କଲାବେଳେ ମୂଳ ଶୁଦ୍ଧ ଶବ୍ଦ କି ତାହା ବାଛିବା ଦୁରୂହ । ଅଶେଷଗୁଣନିଧାନ ମୟୂରଭଞ୍ଜର ଅଧିପତି ଶ୍ରୀ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ବାହାଦୂରଙ୍କ ଆଦେଶାନୁସାରେ କୃଷ୍ଣଦ୍ବୈପାୟନଙ୍କ ବିରଚିତ ମହାଭାରତ ଗ୍ରନ୍ଥକୁ ଉତ୍କଳ ଭାଷାରେ ଗଦ୍ୟରେ ଅନୁବାଦ କରି ତାହାର ଉନ୍ନତି ସାଧନ ପକ୍ଷରେ ଯତ୍ନଶୀଳ ହେଲୁଁ । "ଯନ୍ନେହାସ୍ତି ନ ତତ୍ କ୍ୱଚିତ୍"—ଯାହା ମହାଭାରତରେ ନାହିଁ ତାହା ଅନ୍ୟ କୌଣସିଠାରେ ନାହିଁ; ଅତଏବ ସର୍ବଶାସ୍ତ୍ରମୟ ଏହି ମହାଭାରତକୁ ଅସ୍ମଦ୍ଦେଶୀୟ ସମସ୍ତଙ୍କର ପାଠ କରିବା ଓ ଅନୁଶୀଳନ କରିବା ବିଧେୟ ।

ଭାରତ ମହାସାଗରକୁ ବହି ଶେଷ କଲା ପ୍ରାୟ ଆମ୍ଭେ ଏହି ମହାଭାରତକୁ ଅନୁବାଦ କରି ସମାପ୍ତ କରିବାକୁ ପ୍ରବୃତ୍ତ ହୋଇଅଛୁ ; ସଂସାରଯାତ୍ରା ନିର୍ବାହ ନିମିତ୍ତ ପରିଶ୍ରମ ଆଦି ପ୍ରତ୍ୟୂହ ଏହି କାର୍ଯ୍ୟ କଣ୍ଟକାଳ କରିବାକୁ ହୁଅଇ ; ଏ ହେତୁ ଆମ୍ଭର ଅଭିଳଷିତ ସିଦ୍ଧି ପକ୍ଷରେ କମଳଲୋଚନ ଭଗବାନ୍ ବାସୁଦେବ ଶ୍ରୀକୃଷ୍ଣକୃପା ସାପେକ୍ଷ ଅଟେ ।

ଅନୁବାଦ କରିବା ପୂର୍ବରୁ ଆମ୍ଭେ ସ୍ୱର୍ଗୀୟ କାଳୀପ୍ରସନ୍ନ ସିଂହଙ୍କର ଓ ଶ୍ରୀ ସତ୍ୟବ୍ରତ ସାମଶ୍ରମୀ ଭଟ୍ଟାଚାର୍ଯ୍ୟଙ୍କ କୃତ ବଙ୍ଗଳା ଅନୁବାଦ ଗ୍ରନ୍ଥ-ଦ୍ୱୟକୁ ଆଲୋଚନା କରିଅଛୁଁ । ସିଂହ ମହାତ୍ମାଙ୍କର ଅନୁବାଦ କେବଳ ସ୍ଥୂଳ ଅଭିପ୍ରାୟ ଘେନି ହୋଇଅଛି ; ଏ ହେତୁରୁ କେଉଁ ଶ୍ଳୋକର କି ଅଭିପ୍ରାୟ ତାହା ଯଦି କେହି ପୃଥକ୍ ଜାଣିବାକୁ ଇଚ୍ଛୁକ ହୁଅନ୍ତି, ତାହା ସେ ଜାଣି ପାରିବେ ନାହିଁ; ଭଟ୍ଟାଚାର୍ଯ୍ୟଙ୍କ ଅନୁବାଦ ଶ୍ଳୋକର ନିତାନ୍ତ ଅନୁବର୍ତ୍ତୀ ହୋଇ-ଥିବାରୁ ବାକ୍ୟରଚନା କୌଣସି କୌଣସି ସ୍ଥଳେ ଅଭିପ୍ରେତାନୁରୂପ ହୋଇ ନ ଥିବାରୁ ସାଧାରଣର ସୁଖବୋଧ ହୋଇନାହିଁ । ଆମ୍ଭର ଏହି ଅନୁବାଦ

ଉକ୍ତ ଦୁଇପ୍ରକାରରୁ ସ୍ୱତନ୍ତ୍ର ; ପ୍ରତ୍ୟେକ ଶ୍ଳୋକର ଅଥବା ଅର୍ଦ୍ଧଶ୍ଳୋକର ଅଥବା ସାର୍ଦ୍ଧ ଶ୍ଳୋକର କମ୍ବା ସାର୍ଦ୍ଧ ଦ୍ୱିଶ୍ଳୋକର ଅଭିପ୍ରାୟ ସାଧାରଣ ଭାଷାରେ ସାଧୁ ଶବ୍ଦ ସନ୍ନିତ ସ୍ଥାନୋଚିତ ପ୍ରୟୋଜନାନୁସାରେ ଏକ ବା ତତୋଧିକ ବାକ୍ୟଦ୍ୱାରା ଅନୁବାଦିତ ହୋଇଅଛି ; ଗୋଟିଏ ବାକ୍ୟକୁ ଜଟିଳ ନ କରି ବାକ୍ୟର ସଂଖ୍ୟା ବୃଦ୍ଧି କରା ହୋଇଅଛି । ପରନ୍ତୁ ମୂଳ ସଂସ୍କୃତରେ ଯେଉଁ ଶବ୍ଦ ବ୍ୟବହୃତ ହୋଇଅଛି, ଅନୁବାଦରେ ସେହି ଶବ୍ଦ ସ୍ଥିର ରଖିବାର ପ୍ରୟାସ ପାଇଅଛୁଁ । ଶ୍ରୁତିକଟୁ ଅଥବା ନିତାନ୍ତ ଦୁର୍ବୋଧ ନ ହେଲେ ମୂଳ ଶବ୍ଦ ପରିବର୍ତ୍ତିତ ହୋଇନାହିଁ ।

ଅଧିକନ୍ତୁ ଯେଉଁ ଶ୍ଳୋକର ଅନୁବାଦ, ତହିଁରେ ସେ ଶ୍ଳୋକର ସଂଖ୍ୟା ଦେଇଅଛୁଁ ; ଏତଦ୍ଦ୍ୱାରା ଯଦି କେହି ମୂଳ ସଂସ୍କୃତ ପାଠ କରି ତାହାର ଅର୍ଥ ଉତ୍କଳ ଭାଷାରେ ଜାଣିବାକୁ ଇଚ୍ଛା କରନ୍ତି, ତାହା ସେ ଅନାୟାସରେ ଜାଣିବାକୁ ସମର୍ଥ ହେବେ ।

ଏବେ ଆମ୍ଭେ ଆଶାକରୁଁ, ସର୍ବସାଧାରଣ ଏହି ଗ୍ରନ୍ଥକୁ ଆମୂଳ ବାରେ ହେଲେ ପାଠକରି ଆମ୍ଭର ଶ୍ରମ ସଫଳ କରିବେ । ଇତି । ଶ୍ରୀହରିଃ ।

ମୟୂରଭଞ୍ଜ
୧-୧୦-୯୭

ଅକିଞ୍ଚନ
ଶ୍ରୀ ଗୋବିନ୍ଦଚନ୍ଦ୍ର ମହାପାତ୍ର ଶର୍ମା ।

# ଆଦି ପର୍ବ

## ପୂର୍ବାର୍ଦ୍ଧ

## ସୂଚୀ

# ଉତ୍ତରାର୍ଦ୍ଧ

# ମହାଭାରତ

## ଆଦି ପର୍ବ

### ପ୍ରଥମ ଅଧ୍ୟାୟ

ନାରାୟଣ, ନରୋତ୍ତମ ନର ଓ ସରସ୍ୱତୀ ଦେବୀଙ୍କୁ ପ୍ରଣାମ କରି ଜୟ କୀର୍ତ୍ତନ କରିବ ।

କୌଣସି ସମୟରେ ନୈମିଷାରଣ୍ୟରେ (୧) ପୌରାଣିକ, ସୂତକୁଳପ୍ରସୂତ, ଲୋମହର୍ଷଣତନୟ, ଉଗ୍ରଶ୍ରବା ବିନୟରେ ନମ୍ର ହୋଇ କୁଳପତି (୨) ଶୌନକଙ୍କ ଦ୍ୱାଦଶ ବାର୍ଷିକ ଯଜ୍ଞରେ ଧୃତବ୍ରତ ସୁଖୋପବିଷ୍ଟ ବ୍ରହ୍ମର୍ଷିମାନଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ନୈମିଷାରଣ୍ୟବାସୀ ଋଷିମାନେ ତାହାଙ୍କୁ ଆଶ୍ରମାଗତ ଦେଖି ବିଚିତ୍ର କଥାମାନ ଶ୍ରବଣ କରିବା ନିମନ୍ତେ ଚତୁର୍ଦ୍ଦିଗରେ ବେଷ୍ଟନ କଲେ । ସାଧୁଜନପୂଜିତ ସୂତନନ୍ଦନ କୃତାଞ୍ଜଳି ହୋଇ ସେହି ଋଷିମାନଙ୍କୁ ଅଭିବାଦନ ପୂର୍ବକ "ତପସ୍ୟାର ଉନ୍ନତି ହେଉଅଛି ?" ପ୍ରଶ୍ନ କଲେ ।

ଅନନ୍ତର ସେହି ତପସ୍ୱୀମାନେ ଉପବିଷ୍ଟ ହେଲାରୁ ଲୋମହର୍ଷଣ-ପୁତ୍ର ବିନୀତ ଭାବରେ ଗୋଟିଏ ନିର୍ଦ୍ଦିଷ୍ଟ ଆସନ ପରିଗ୍ରହଣ କଲେ । ପରେ ସେହି ଋଷିଙ୍କ ମଧ୍ୟରୁ ଜଣେ ତାହାଙ୍କୁ ସୁଖୋପବିଷ୍ଟ ଓ ବିଗତଶ୍ରମ ବିଲୋକନ କରି କଥାର ଅବତାରଣା କରାଇବା ଅଭିପ୍ରାୟରେ ପଚାରିଲେ—"ହେ ପଦ୍ମପଲାଶଲୋଚନ ସୂତନନ୍ଦନ ! ଆପଣ କେଉଁ ସ୍ଥାନରୁ ଆଗମନ କରୁଅଛନ୍ତି ଓ କେଉଁ ସ୍ଥାନରେ ଏତେକାଳ ଥିଲେ ବୋଲନ୍ତୁ ।"

---

(୧) ଭଗବାନ ଦାନବବଳ ସଂହାର କରି ଗୌରମୁଖ ନାମକ ଋଷିଙ୍କୁ କହିଲେ, ଆମ୍ଭେ ନିମିଷକ ମଧ୍ୟରେ ଏହି ସ୍ଥାନରେ ଦାନବସେନା ବିନାଶ କରିଅଛୁ; ଅତଏବ ଏହି ସ୍ଥାନ ନୈମିଷାରଣ୍ୟ ବୋଲି ଖ୍ୟାତ ହେବ ।

(୨) ଦଶସହସ୍ର ବ୍ରାହ୍ମଣଙ୍କୁ ଯେଉଁ ବିପ୍ରର୍ଷି ଅନ୍ନଦାନାଦି ଦେଇ ଅଧ୍ୟାପନ କରନ୍ତି, ତାହାଙ୍କୁ କୁଳପତି ବୋଲି ।

ବାଗ୍ମୀ ଉଗ୍ରଶ୍ରବା ଏହିରୂପେ ପୃଷ୍ଟ ହେବାରୁ ବିଶୁଦ୍ଧାନ୍ତଃକରଣ ତପୋଧନମାନଙ୍କର ସେହି ବିସ୍ତୀର୍ଣ୍ଣ ସଭରେ ଯଥା ନିୟମରେ ପ୍ରକୃତରୂପେ ତାହାଙ୍କର ଚରିତାଶ୍ରିତ କଥା କହିବାକୁ ଆରମ୍ଭ କଲେ ।

ସୂତପୁତ୍ର କହିଲେ, "ହେ ବ୍ରହ୍ମର୍ଷିଗଣ ! ମୁନିଶ୍ରେଷ୍ଠ ବୈଶମ୍ପାୟନ, ମହାତ୍ମା ଭୂପେନ୍ଦ୍ର ପରୀକ୍ଷିତ୍‌ପୁତ୍ର ରାଜର୍ଷି ଜନମେଜୟଙ୍କ ସର୍ପଯଜ୍ଞରେ ତାହାଙ୍କ ନିକଟରେ ଯଥାନିୟମରେ କୃଷ୍ଣଦ୍ୱୈପାୟନଙ୍କ କୀର୍ତ୍ତିତ ଯେଉଁସବୁ ଅତି ପବିତ୍ର ନାନାବିଧ ବିଚିତ୍ର ଅର୍ଥଯୁକ୍ତ ମହାଭାରତୀୟ * କଥା କହିଥିଲେ ଆମ୍ଭେ ସେହି ସବୁ କଥା ଶ୍ରବଣ କରି ବହୁବିଧ ତୀର୍ଥ ଓ ନାନା ଆୟତନ ପର୍ଯ୍ୟଟନପୂର୍ବକ ଦ୍ୱିଜଗଣନିଷେବିତ ପବିତ୍ର ସ୍ୟମନ୍ତପଞ୍ଚକ ନାମକ ସ୍ଥାନକୁ ଗମନ କରିଥିଲୁଁ । ପୂର୍ବେ ଯେଉଁ ସ୍ଥାନରେ କୌରବ, ପାଣ୍ଡବ ଓ ଅନ୍ୟାନ୍ୟ ଭୂପାଳମାନଙ୍କର ଯୁଦ୍ଧ ହୋଇଥିଲା, ଆମ୍ଭେ ସେହି ସ୍ଥାନରୁ ଆପଣମାନଙ୍କର ଦର୍ଶନାଭିଳାଷରେ ଏହି ଆଶ୍ରମକୁ ଆସିଅଛୁ । ଆମ୍ଭ ଜାଣିବାରେ ଆପଣମାନେ ସମସ୍ତେ ଦୀର୍ଘଜୀବୀ ଓ ବ୍ରହ୍ମସ୍ୱରୂପ । ହେ ମହାଭାଗ ସୂର୍ଯ୍ୟାଗ୍ନିତୁଲ୍ୟ ତେଜସ୍ୱୀ ଦ୍ୱିଜଗଣ ! ଆପଣମାନେ ସ୍ନାତ ଓ ଶୁଚି ହୋଇ ଏହି ଯଜ୍ଞରେ ଜପ ସମାପନ କରି, ହୁତାଶନରେ ଆହୁତି ପ୍ରଦାନ କରି ସୁସ୍ଥ ଚିତ୍ତରେ ଆସନରେ ଆସୀନ ରହିଅଛନ୍ତି । ଆମ୍ଭେ କଣ ଧର୍ମାର୍ଥ-ସମ୍ବଳିତ ପବିତ୍ର ପୌରାଣିକୀ କଥା ଓ ମହାନୁଭବ ରାଜାମାନଙ୍କର ଓ ଋଷି-ମାନଙ୍କର ଇତିବୃତ୍ତ କୀର୍ତ୍ତନ କରିବୁଁ ?"

ଋଷିମାନେ ଉତ୍ତର ଦେଲେ, ହେ ସୂତପୁତ୍ର ! ମହର୍ଷି ବେଦବ୍ୟାସ ଯେଉଁ ପୁରାଣ କୀର୍ତ୍ତନ କରିଅଛନ୍ତି, ଦେବତା ଓ ବ୍ରହ୍ମର୍ଷିମାନେ ଯାହାକୁ ଶ୍ରବଣ କରି ସାତିଶୟ ପ୍ରଶଂସା କରିଅଛନ୍ତି, ମୁନିବର ବୈଶମ୍ପାୟନ ବେଦବ୍ୟାସଙ୍କ ଅନୁମତିକ୍ରମେ ପରିତୋଷ ସହକାରେ ନିୟମାନୁସାରେ ଜନମେଜୟଙ୍କ ସର୍ପଯଜ୍ଞରେ ସେହି ଆଖ୍ୟାନପ୍ରଧାନ ବିଚିତ୍ରପଦ ଓ ପର୍ବ-ନିୟୁକ୍ତ, ସୂକ୍ଷ୍ମାର୍ଥସମନ୍ୱିତ, ନ୍ୟାୟାନୁଗତ, ବେଦାର୍ଥାଳଙ୍କୃତ, ଭାରତାଖ୍ୟ ଇତିହାସର ଯେଉଁ ନାନାଶାସ୍ତ୍ର ବିଜୃମ୍ଭିତ, ଗ୍ରନ୍ଥାନ୍ତରର ଅର୍ଥଯୁକ୍ତ ପବିତ୍ର

---

* ପୂର୍ବକାଳରେ ଋଷିମାନେ ତୁଳାଦଣ୍ଡର ଏକପାର୍ଶ୍ୱରେ ଚାରି ବେଦକୁ ଓ ଅପର ପାର୍ଶ୍ୱରେ ମହାଭାରତକୁ ସ୍ଥାପନ କରିଥିଲେ; ମହାଭାରତ ଗୁରୁତ୍ୱ ଓ ମହତ୍ତ୍ୱରେ ବେଦଚତୁଷ୍ଟୟଠାରୁ ଶ୍ରେଷ୍ଠ ହେଲେ । ସେହି କାରଣରୁ ଏହାର ନାମ ମହାଭାରତ ହୋଇଅଛି ।

କଥା କହୁଥିଲେ ଆମ୍ଭେମାନେ ଅଦ୍ଭୁତକର୍ମା ବେଦବ୍ୟାସଙ୍କର ସେହି ବେଦ-ଚତୁଷ୍ଟୟସ୍ୱାର୍ଥ ପ୍ରତିପାଦନୀ ପାପଭୟବିନାଶିନୀ ପବିତ୍ର ସଂହିତା ଶ୍ରବଣ କରିବାକୁ ଅଭିଳାଷୀ ହୋଇଅଛୁ ।

ଉଗ୍ରଶ୍ରବା କହିଲେ, ହେ ତପୋଧନଗଣ ! ଯେ ଜଗତର ଆଦିପୁରୁଷ ଓ ଈଶ୍ୱର, ସମସ୍ତେ ଯାହାଙ୍କୁ ସ୍ତବ କରନ୍ତି ଓ ଯାହାଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ଆହୁତି ପ୍ରଦାନ କରନ୍ତି, ଯେ ସତ୍ୟସ୍ୱରୂପ, ବ୍ରହ୍ମ ସ୍ୱରୂପ, ବ୍ୟକ୍ତାବ୍ୟକ୍ତ ସ୍ୱରୂପ, ଅଦ୍ୱିତୀୟ, ଅବିନାଶୀ ଓ ସନାତନ, ଯେ ଏହି ଅସତ୍ ସଦସତ୍ ଓ ସଦସଦ୍ଭିନ୍ନ ବିଶ୍ୱର ସ୍ରଷ୍ଟା, ଯେ ଉତ୍କୃଷ୍ଟ ନିକୃଷ୍ଟ ସମସ୍ତ ଦ୍ରବ୍ୟର ଜନୟିତା, ଯେ ଅତି ପୁରାତନ, ସମସ୍ତଙ୍କ ଶ୍ରେଷ୍ଠ, ମଙ୍ଗଳର ନିଦାନ, ମଙ୍ଗଳ ସ୍ୱରୂପ, ସର୍ବବ୍ୟାପୀ, ବରେଣ୍ୟ, ଅପାପବିଦ୍ଧ ଓ ପରିଶୁଦ୍ଧ, ସେହି ଚରାଚରଗୁରୁ, ଇନ୍ଦ୍ରିୟଗଣର ଅଧୀଶ୍ୱର ନାରାୟଣଙ୍କୁ ନମସ୍କାର କରି ସର୍ବଲୋକପୂଜିତ, ଅଦ୍ଭୁତକର୍ମା ମହାତ୍ମା ବେଦବ୍ୟାସଙ୍କ ପବିତ୍ର ମତ କୀର୍ତ୍ତନ କରିବୁଁ ।

କେତେକ ପଣ୍ଡିତମାନେ ଭୂଲୋକର ଏହି ଇତିହାସ କୀର୍ତ୍ତନ କରିଅଛନ୍ତି, କେତେକ ପଣ୍ଡିତମାନେ କୀର୍ତ୍ତନ କରୁଅଛନ୍ତି ଓ ଅପର ଅନେକ କୀର୍ତ୍ତନ କରିବେ । ବ୍ରାହ୍ମଣମାନେ ଯେଉଁ ଶୁଭ ଶବ୍ଦସମନ୍ୱିତ ଏବଂ ଦିବ୍ୟ ଓ ମାନୁଷୀୟ ଆଚାର କଳାପରେ ଅଳଙ୍କୃତ, ନାନାବିଧ ଛନ୍ଦୋବନ୍ଧଯୁକ୍ତ ବିଦ୍ୱାନ୍‌ମାନଙ୍କର ପ୍ରିୟଶାସ୍ତ୍ରକୁ ବାହୁଲ୍ୟରେ ଓ ସଂକ୍ଷେପରେ ଅଭ୍ୟାସ କରିଥାଆନ୍ତି, ସେହି ଏହି ଶାସ୍ତ୍ର ତ୍ରିଭୁବନରେ ବିପୁଳଜ୍ଞାନ ପ୍ରତିପାଦକ ବୋଲି ପ୍ରତିଷ୍ଠିତ ହୋଇଅଛି ।

ଏହି ବିଶ୍ୱ ସଂସାର ସକଳ ଦିଗରେ ଅନ୍ଧ ତମସାବୃତ, ଆଲୋକ-ପରିହୀନ ଓ ପ୍ରଭାଶୂନ୍ୟ ଥିଲା । ସୃଷ୍ଟିର ପ୍ରାରମ୍ଭରେ ପ୍ରାଣିମାନଙ୍କର ଅବିନାଶୀ ବୀଜ ସ୍ୱରୂପ ଏକ ବୃହତ୍ ଅଣ୍ଡ ଉତ୍ପନ୍ନ ହେଲା । ପଣ୍ଡିତମାନେ ସେହି ଅଣ୍ଡକୁ ଦିବ୍ୟ ମହତ୍ କାରଣ ବୋଲି କୀର୍ତ୍ତନ କରନ୍ତି । ଯେ ସତ୍ୟ ସ୍ୱରୂପ, ଜ୍ୟୋତିଃ ସ୍ୱରୂପ, ସନାତନ, ଅଦ୍ଭୁତ, ଅଚିନ୍ତନୀୟ, ସର୍ବତ୍ର ସମଭାବାପନ୍ନ, ସୂକ୍ଷ୍ମ, ଅପରିସ୍ଫୁଟ ଓ କାରଣ ସ୍ୱରୂପ, ସେହି ସଦସଦାତ୍ମକ ପରଂବ୍ରହ୍ମ ଯେଉଁ ଅଣ୍ଡରେ ଆବିର୍ଭୂତ ଥିଲେ ବୋଲି ଶୁଣାଯାଏ ; ଯାହାଙ୍କଠାରୁ ପିତାମହ ପ୍ରଭୁ, ଅଦ୍ୱିତୀୟ ପ୍ରଜାପତି, ସୁରଗୁରୁ ବ୍ରହ୍ମା, ରୁଦ୍ର, ମନୁ, ବିଷ୍ଣୁ ଓ ପରମେଷ୍ଠୀ ଉତ୍ପନ୍ନ ହେଲେ ; ତତ୍ପରେ ପ୍ରଚେତସ,

ଦକ୍ଷ, ଦକ୍ଷଙ୍କର ସପ୍ତପୁତ୍ର (୧) ଓ ଏକବିଂଶତି ପ୍ରଜାପତି (୨) ଜନ୍ମଗ୍ରହଣ କଲେ ; ଋଷିମାନେ ଯାହାଙ୍କୁ ଜାଣନ୍ତି, ସେହି ଅପ୍ରମେୟ ପୁରୁଷଙ୍କଠାରୁ ବିଶ୍ୱଦେବଗଣ, ଆଦିତ୍ୟଗଣ, ବସୁଗଣ, ଅଶ୍ୱିନୀକୁମାରଯୁଗଳ, ଯକ୍ଷଗଣ, ସାଧ୍ୟଗଣ, ପିଶାଚଗଣ, ଗୁହ୍ୟକଗଣ ଓ ପିତୃଗଣ ସମୁଦ୍ଭୂତ ହେଲେ । ଅନନ୍ତର ବିଦ୍ୱାନ୍ ପ୍ରଶାନ୍ତଚେତା ସାଧୁତମ ବ୍ରହ୍ମର୍ଷିଗଣ, ସର୍ବଗୁଣସମ୍ପନ୍ନ ବହୁସଂଖ୍ୟକ ରାଜର୍ଷି ଉତ୍ପନ୍ନ ହେଲେ । ତଦନନ୍ତର ଜଳ, ସ୍ୱର୍ଗ, ପୃଥିବୀ, ବାୟୁ, ଆକାଶ, ଦିକ୍, ବତ୍ସର, ଋତୁ, ମାସ, ପକ୍ଷ, ଦିନ, ରାତ୍ରି ଓ ଲୋକପ୍ରୟୋଜନୋପଯୋଗୀ ଅନ୍ୟାନ୍ୟ ସମସ୍ତ ଦ୍ରବ୍ୟ କ୍ରମେ କ୍ରମେ ସମୁତ୍ପନ୍ନ ହେଲେ ।

ସ୍ଥାବର ଜଙ୍ଗମାତ୍ମକ ଏହି ଯେଉଁ ଭୂତମୟ ଜଗତ୍ ଅବଲୋକନ କରାଯାଉଅଛି, ପ୍ରଳୟ ଉପସ୍ଥିତ ହେଲେ ଏହା ସମୁଦାୟ ବିଲୀନ ହୋଇଯିବ । ପର୍ଯ୍ୟାୟକାଳ ଉପସ୍ଥିତ ହେଲେ ଯେରୂପ ପ୍ରତ୍ୟେକ ଋତୁ ନିଜର କଳଲୟ ପୁଷ୍ପ ଓ ଶିଶିରାଦି ନାନାପ୍ରକାର ନିଜର ସହଜ ଚିହ୍ନମାନ ଧାରଣ କରେ, ସେହି ରୂପ ଯୁଗପ୍ରାରମ୍ଭରେ ସମସ୍ତ ପଦାର୍ଥ ଆପଣା ଆପଣା ସ୍ୱରୂପ ପ୍ରାପ୍ତ ହୁଅନ୍ତି । ଅନାଦି ଅନନ୍ତ, ଭୂତ ସଂହାରକାରୀ, ଅବିନାଶୀ ଏହି ସଂସାରଚକ୍ର ଏହିରୂପେ ନିରନ୍ତର ପରିବର୍ତ୍ତିତ ହେଉଅଛି । ୪୦ ।

ସଂକ୍ଷେପରେ କହିବାକୁ ଗଲେ ତେତିଶ ସହସ୍ର ତେତିଶ ଶତ ତେତିଶ ଦେବତାଙ୍କ ସୃଷ୍ଟି ହେଲା । ବୃହଦ୍ଭାନୁ, ଚକ୍ଷୁ, ଆତ୍ମା, ବିଭାବସୁ, ସବିତା, ଋଚୀକ, ଅର୍କ, ଭାନୁ, ଆଶାବହ, ରବି ଓ ମହ୍ୟ ଅର୍ଥାତ୍ ମନୁ ଏହିମାନେ ବିବସ୍ୱାନଙ୍କର ପୁତ୍ର । ଏମାନେ ସମସ୍ତେ ରବିଙ୍କର ଜ୍ୟେଷ୍ଠ, ମହ୍ୟ ସମସ୍ତଙ୍କର କନିଷ୍ଠ । ମହ୍ୟଙ୍କର ପୁତ୍ର ଦେବଭ୍ରାଟ୍, ତାହାଙ୍କ ପୁତ୍ର ସୁଭ୍ରାଟ୍; ସୁଭ୍ରାଟଙ୍କ ପୁତ୍ର ଦଶଜ୍ୟୋତି ଅର୍ଥାତ୍ ଅଗ୍ନି (୩), ଶତଜ୍ୟୋତି ଅର୍ଥାତ୍ ଚନ୍ଦ୍ର ଓ ସହସ୍ରଜ୍ୟୋତି ଅର୍ଥାତ୍ ସୂର୍ଯ୍ୟ ନାମରେ ବିବିଧ ବିଦ୍ୟାସମ୍ପନ୍ନ ବହୁପ୍ରଜାଶାଳୀ ତିନି ପୁତ୍ର ଜନ୍ମିଲେ । ଅନନ୍ତର ମହାତ୍ମା ଦଶଜ୍ୟୋତିଙ୍କର ଦଶ

---

(୧) କ୍ରୋଧ, ତମଃ, ଦମ, ବିକ୍ରୀତ, ଅଙ୍ଗିରା, କର୍ଦ୍ଦମ ଓ ଅଶ୍ୱ ଏମାନେ ଦକ୍ଷଙ୍କର ସପ୍ତପୁତ୍ର ଅଟନ୍ତି ।

(୨) ସପ୍ତଋଷି ଓ ଚତୁର୍ଦ୍ଦଶ ମନୁ ଏମାନଙ୍କୁ ଏକବିଂଶତି ପ୍ରଜାପତି କହନ୍ତି ।

(୩) ଅଗ୍ନିଙ୍କର ଦଶଜ୍ୟୋତିର ନାମ ଯଥା—ଧୂମ୍ରା, ଅର୍ଚ୍ଚିଃ, ଉଷ୍ମା, ଜ୍ୱଳନୀ, ଜ୍ୱାଳିନୀ, ବିସ୍ଫୁଲିଙ୍ଗିନୀ, ସୁଶ୍ରୀ, ସୁରୂପା, କପିଳା, ହବ୍ୟକବ୍ୟବହା ।

ସହସ୍ର ପୁତ୍ର, ଶତଜ୍ୟୋତିଙ୍କର ଲକ୍ଷ ପୁତ୍ର ଓ ସହସ୍ରଜ୍ୟୋତିଙ୍କର ଦଶଲକ୍ଷ ପୁତ୍ର ହେଲେ । ଏହିମାନଙ୍କଠାରୁ କୁରୁବଂଶ, ଯଦୁବଂଶ, ଭରତବଂଶ, ଯଯାତି-ବଂଶ, ଇକ୍ଷ୍ୱାକୁବଂଶ ଓ ଅନ୍ୟାନ୍ୟ ସୁବିସ୍ତୀର୍ଣ୍ଣ ଅନେକ ରାଜର୍ଷିବଂଶ ସମୁଦ୍ଭୂତ ହେଲେ । ୪୭ ।

ମହର୍ଷି ବେଦବ୍ୟାସ ପ୍ରାଣିମାନଙ୍କର ସ୍ଥାନ, ତ୍ରିବିଧ ରହସ୍ୟ, ଗୃହ୍ୟ ବେଦ, ଯୋଗଶାସ୍ତ୍ର, ବିଜ୍ଞାନଶାସ୍ତ୍ର, ଧର୍ମ୍ମ, ଅର୍ଥ, କାମ ଓ ଏମାନଙ୍କର ପ୍ରତିପାଦକ ନାନାବିଧ ଶାସ୍ତ୍ର ଓ ଲୋକଯାତ୍ରାବିଧାନ ଏହିମାନ ଜାଣିଥିଲେ । ଏହି ଗ୍ରନ୍ଥରେ ବ୍ୟାଖ୍ୟା ସହିତ ସମସ୍ତ ଇତିହାସ, ବହୁବିଧ ଶ୍ରୁତି ଓ ସେହି ଗ୍ରନ୍ଥନିଚୟର ଲକ୍ଷଣ ଯଥାକ୍ରମରେ ଅଭିହିତ ହୋଇଅଛି ।

ଏହି ସଂସାରରେ କୌଣସି ପଣ୍ଡିତମାନେ ସଂକ୍ଷେପରେ କେହି କେହି ଅବା ବାହୁଲ୍ୟରେ ଶାସ୍ତ୍ରମାନଙ୍କୁ ଜାଣିବାକୁ ବାସନା କରନ୍ତି । ଏହି କାରଣରୁ ମହର୍ଷି ଏହି ମହତ୍ ଜ୍ଞାନଶାସ୍ତ୍ରକୁ ସଂକ୍ଷେପରେ ଓ ସବିସ୍ତରରେ କହିଅଛନ୍ତି ।

କେହି କେହି ପଣ୍ଡିତମାନେ ମନୁଠାରୁ ଅର୍ଥାତ୍ "ନାରାୟଣଙ୍କୁ ନମସ୍କାର କରି" ଏହି ମନ୍ତ୍ରଠାରୁ, କେହି କେହି ଆସ୍ତିକ ପର୍ବର ପ୍ରଥମରୁ, କେହି କେହି ଅବା ଉପରିଚର ରାଜାଙ୍କ ଆଖ୍ୟାନର ଆଦ୍ୟରୁ ଏହି ମହା-ଭାରତର ପ୍ରାରମ୍ଭ ବୋଧକରି ସେହିଠାରୁ ଅଧ୍ୟୟନ କରନ୍ତି । ପଣ୍ଡିତମାନେ ନାନା ପ୍ରକାରରେ ଏହି ସଂହିତାର ଜ୍ଞାନକୁ ଉଦ୍ଦୀପିତ କରନ୍ତି । କେହି କେହି ଗ୍ରନ୍ଥମାନଙ୍କୁ ବ୍ୟାଖ୍ୟା କରିବାରେ କୁଶଳ, କେହି ବା ଧାରଣା କରିବାକୁ ନିପୁଣ । ୫୩ ।

ପରାଶରପୁତ୍ର ବିଦ୍ୱାନ୍ ବ୍ରହ୍ମର୍ଷି ସତ୍ୟବତୀସୁତ ତପସ୍ୟା ଓ ବ୍ରହ୍ମଚର୍ଯ୍ୟ ପ୍ରଭାବରେ ସନାତନ ବେଦଶାସ୍ତ୍ର ବିଭାଗ କରି ଏହି ପବିତ୍ର ଇତିହାସ ରଚନା କଲେ । ପ୍ରଭାବଶାଳୀ ଦ୍ୱୈପାୟନ ଏହି ମହାପୁଣ୍ୟ ଇତିହାସ ରଚନା କରି ଚିନ୍ତା କରି ବସିଲେ ଯେ କିପରି ଏହାକୁ ଶିଷ୍ୟ-ମାନଙ୍କୁ ଅଧ୍ୟୟନ କରାଇବେ । ଲୋକଗୁରୁ ଭଗବାନ୍ କମଳଯୋନି ମହର୍ଷି ଦ୍ୱୈପାୟନଙ୍କର ଏହି ଚିନ୍ତା ଅବଗତ ହୋଇ ତାହାଙ୍କ ପ୍ରୀତି ସମ୍ପାଦନ ନିମନ୍ତେ ଲୋକମାନଙ୍କର ହିତକାମନାରେ ସେହି ସ୍ଥାନରେ ଉପସ୍ଥିତ ହେଲେ । ବେଦବ୍ୟାସ ତାହାଙ୍କୁ ଦେଖିବା ମାତ୍ରେ ବିସ୍ମିତ ଓ ମୁନିଗଣ-କର୍ତ୍ତୃକ ପରିବୃତ ହୋଇ କୃତାଞ୍ଜଳି ପୂର୍ବକ ବିସ୍ମିତ ଭାବରେ ଗୋଟିଏ

ଶ୍ରେଷ୍ଠ ଆସନ ପ୍ରଦାନ କଲେ । ହିରଣ୍ୟଗର୍ଭ ସେହି ଆସନରେ ଆସୀନ ହେଲାରୁ ମହର୍ଷି ତାହାଙ୍କ ଆସନ ସମୀପରେ ଦଣ୍ଡାୟମାନ ହୋଇ ରହିଲେ । ଅନନ୍ତର କୃଷ୍ଣଦ୍ୱୈପାୟନ ପରମେଷ୍ଠୀ ବ୍ରହ୍ମାଙ୍କ କର୍ତ୍ତୃକ ଅନୁଜ୍ଞାତ ହୋଇ ପ୍ରୀତ ମନରେ ସସ୍ମିତ ବଦନରେ ସେହି ସ୍ଥାନରେ ଉପବିଷ୍ଟ ହେଲେ । ମହାତେଜା ସତ୍ୟବତୀନନ୍ଦନ ବ୍ରହ୍ମାଙ୍କୁ କହିଲେ, ଆମ୍ଭେ ମନେ ମନେ ସକଳ ଲୋକଙ୍କର ପରମପୂଜିତ ଏହି କାବ୍ୟ ରଚନା କରିଅଛୁ; ତହିଁରେ ବେଦର ରହସ୍ୟ ଓ ସାଙ୍ଗ ଉପନିଷଦ ଓ ବେଦଚତୁଷ୍ଟୟର ବିସ୍ତୀର୍ଣ୍ଣ କ୍ରିୟା-କଳାପ ଓ ଇତିହାସ ଓ ପୁରାଣମାନଙ୍କର ପ୍ରକାଶ, ଭୂତ ଭବିଷ୍ୟତ ଓ ବର୍ତ୍ତମାନ ଏହି କାଳତ୍ରୟର ନିର୍ଣ୍ଣୟ, ଜରା ମୃତ୍ୟୁ, ଭୟ ବ୍ୟାଧି, ଭାବ ଓ ଅଭାବର ନିରୂପଣ, ବିବିଧ ଧର୍ମ୍ମ ଓ ଆଶ୍ରମର ଲକ୍ଷଣ, ସମୁଦାୟ ପୁରାଣୋକ୍ତ ଚତୁର୍ବର୍ଣ୍ଣର ବିଧିସକଳ ଓ ତପସ୍ୟା, ବ୍ରହ୍ମଚର୍ଯ୍ୟ, ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ତାରା ଓ ଯୁଗଚତୁଷ୍ଟୟର ପରିମାଣ ଓ ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଧ୍ୟାତ୍ମଶାସ୍ତ୍ର, ନ୍ୟାୟଶାସ୍ତ୍ର, ଶିକ୍ଷାଶାସ୍ତ୍ର, ଚିକିତ୍ସାଶାସ୍ତ୍ର, ଦାନଧର୍ମ, ପାଶୁପତଧର୍ମ ଓ ଭଗବାନଙ୍କର ଦିବ୍ୟ ଓ ମାନବ ଜନ୍ମ ପରିଗ୍ରହର ସକାରଣ ବିବରଣ; ପବିତ୍ର ତୀର୍ଥ, ଦେଶ, ନଦୀ, ପର୍ବତ, ବନ, ସମୁଦ୍ର, ଦିବ୍ୟନଗର, କଳ୍ପଶାସ୍ତ୍ର, * ଯୁଦ୍ଧକୌଶଳ, ବାକ୍ୟ ବିଶେଷ, ଜାତିବିଶେଷ ଓ ଲୋକଯାତ୍ରାବିଧାନ ଏହି ସମସ୍ତ ଅଭିହିତ ହୋଇଅଛି । ଏତଦ୍‌ଭିନ୍ନ ଅନ୍ୟାନ୍ୟ ସମସ୍ତ ବିଷୟ ମଧ୍ୟ ପ୍ରତିପାଦନ କରି-ଅଛୁ । କିନ୍ତୁ ଭୂମଣ୍ଡଳରେ ଏହାର ଲେଖକ କେହି ନାହିଁ ।

ବ୍ରହ୍ମା କହିଲେ, ମୁନିବର ! ଆମ୍ଭେ ଜାଣୁଁ ତତ୍ତ୍ୱଜ୍ଞାନଶାଳିତା ହେତୁରୁ ତୁମ୍ଭେ ତପୋନିରତ ଉତ୍କୃଷ୍ଟ ମୁନିମାନଙ୍କ ଅପେକ୍ଷା ଶ୍ରେଷ୍ଠ ଓ ଜନ୍ମାବଧି ତୁମ୍ଭର ବାକ୍ୟ ସତ୍ୟ ଓ ବ୍ରହ୍ମନିଷ୍ଠ । ଅତଏବ ତୁମ୍ଭେ ଏହାକୁ କାବ୍ୟ ବୋଲି କହିବାରୁ କାବ୍ୟ ବୋଲି ଏହି ଗ୍ରନ୍ଥ ବିଖ୍ୟାତ ହେବ । ଅନ୍ୟାନ୍ୟ ଆଶ୍ରମବାସିମାନେ ଯେପରି ଗୃହସ୍ଥାଶ୍ରମର ଗୁଣ ବର୍ଣ୍ଣନା କରିପାରନ୍ତି ନାହିଁ, ସେହିପରି ପଣ୍ଡିତମାନେ ଏହି କାବ୍ୟର ଗୁଣ ବର୍ଣ୍ଣନା କରିବାକୁ ସମର୍ଥ ନୁହନ୍ତି । ଏହି କାବ୍ୟ ଲେଖିବା ନିମିତ୍ତ ତୁମ୍ଭେ ଗଣେଶଙ୍କୁ ସ୍ମରଣ କର ।

---

* ଧନୁର୍ବେଦୋକ୍ତ ବ୍ୟୂହରଚନାଦି ଶାସ୍ତ୍ର

ଉଗ୍ରଶ୍ରବା କହିଲେ ହେ ମୁନିଗଣ ! ବ୍ୟାସଙ୍କୁ ଏହିରୂପ କହି ବ୍ରହ୍ମା ନିଜ ଭବନକୁ ଗମନ କଲେ । ତତ୍ପରେ ସତ୍ୟବତୀନନ୍ଦନ ଗଣନାଥଙ୍କୁ ସ୍ମରଣ କଲେ । ବ୍ୟାସଦେବ ଯେଉଁ ସ୍ଥାନରେ ବସିଥିଲେ ଭକ୍ତ ମନୋରଥପୂରକ ବିଘ୍ନବିନାଶନ ଗଣନାୟକ ସେହି ସ୍ଥାନରେ ଉପସ୍ଥିତ ହେଲେ । ମୁନି ତାହାଙ୍କୁ ସତ୍କାର କରି ବସାଇଲେ । ମହର୍ଷି କହିଲେ, ହେ ଅନଘ ହେରମ୍ବ ! ମୁଁ କହି ଯାଉଅଛି ଆପଣ ମୋର ମନଃକଳ୍ପିତ ଏହି ଭାରତର ଲେଖକ ହେଉନ୍ତୁ । ଗଣପତି ଉତ୍ତର କଲେ, ହେ ତପୋଧନ ! ଆମ୍ଭେ ଲେଖିବାକୁ ଆରମ୍ଭ କଲେ ଆମ୍ଭର ଲେଖନୀ ଯେବେ କ୍ଷଣକାଳ ଅବସ୍ଥିତି ନ କରିବ, ତେବେ ଆମ୍ଭେ ଲେଖକ ହୋଇପାରିବୁଁ । ବ୍ୟାସ ତାହାଙ୍କୁ କହିଲେ, ଆପଣ ମଧ୍ୟ ଅର୍ଥବୋଧ ନ କରି ଲେଖିବେ ନାହିଁ । ଗଣପତି ତଥାସ୍ତୁ ବୋଲି ଲେଖକ ହେଲେ । ମହର୍ଷି ଦ୍ୱୈପାୟନ ଏହି ନିମନ୍ତେ କୌତୂହଳ କରି ସମୟ ସମୟରେ ଅତି ଗୂଢ଼ାର୍ଥ ଗ୍ରନ୍ଥ ଗ୍ରନ୍ଥି (ବ୍ୟାସକୂଟ) ରଚନା କରିଅଛନ୍ତି ଏବଂ ପ୍ରତିଜ୍ଞା-ପୂର୍ବକ କହିଅଛନ୍ତି ଯେ ଏହି ଗ୍ରନ୍ଥରେ ଅଷ୍ଟସହସ୍ର ଅଷ୍ଟଶତ ଶ୍ଳୋକ ଅଛି ଯାହାର ଅର୍ଥକୁ କେବଳ ସେ ଓ ଶୁକ ଜାଣନ୍ତି, ସଞ୍ଜୟ ଜାଣନ୍ତି କି ନା ସନ୍ଦେହ । ଦୃଢ଼ତରରୂପେ ଗ୍ରଥିତ ସେହି ସକଳ ଶ୍ଳୋକକୂଟର ନିଗୂଢ଼ ଅର୍ଥ କେହି ଅଦ୍ୟାପି କରିପାରନ୍ତି ନାହିଁ । ସର୍ବଜ୍ଞ ଗଣପତି ସୁଦ୍ଧା ସେହି ସବୁ କୂଟର ଅର୍ଥବୋଧ କରିବାକୁ କ୍ଷଣକାଳ ବିଳମ୍ବ କରୁଥିଲେ । ସେହି ଅବସରରେ ବେଦବ୍ୟାସ ବହୁସଂଖ୍ୟକ ଶ୍ଳୋକ ରଚନା କରୁଥିଲେ । ୭୩ ।

ଲୋକମାନେ ଅଜ୍ଞାନତିମିରରେ ଅନ୍ଧ ହୋଇ ଇତସ୍ତତଃ ବୃଥା ଭ୍ରମଣ କରୁଥିଲେ । ଏହି ମହାଭାରତ, ଜ୍ଞାନଶଳାକାଦ୍ୱାରା ସେମାନଙ୍କ ନେତ୍ର ଉନ୍ମୀଳିତ କରିଦେଲା । ଏହି ମହାଭାରତ ସୂର୍ଯ୍ୟସ୍ୱରୂପ ହୋଇ ସଂକ୍ଷେପରେ ଓ ବାହୁଲ୍ୟରେ ଧର୍ମ, ଅର୍ଥ, କାମ ଓ ମୋକ୍ଷର ବିଷୟ କୀର୍ତ୍ତନ କରି ଲୋକଙ୍କର ଅଜ୍ଞାନାନ୍ଧକାର ନିରାକରଣ କରିଅଛି । ଏହି ପୁରାଣରୂପ ପୂର୍ଣ୍ଣଶଶଧର ଶ୍ରୁତିରୂପ କୌମୁଦୀ ବିକାଶ କରି ମାନବଗଣର ବୁଦ୍ଧିରୂପ କୈରବକୁଳର ଉନ୍ମେଷ କରିଅଛି । ଏହି ଇତିହାସ ପ୍ରଦୀପ ଲୋକଙ୍କର ଅଜ୍ଞାନାବରଣ ବିନାଶ କରି ସମସ୍ତ ଭୁବନ ଗୃହକୁ ଯଥାବିଧି ଆଲୋକିତ କରିଅଛି । ସଂଗ୍ରହାଧ୍ୟାୟ ଏହି ବୃକ୍ଷର ବୀଜ, ପୌଲୋମ ଓ ଆସ୍ତିକ ପର୍ବ ଏହାର ମୂଳ, ସମ୍ଭବ ପର୍ବ ଏହାର ବିସ୍ତୃତ ସ୍କନ୍ଧ, ସଭା ଓ ବନପର୍ବ ଏହାର ବିଟଙ୍କ ଅର୍ଥାତ୍ ପକ୍ଷିମାନଙ୍କର ବସିବାର ସ୍ଥାନ, ଅରଣ୍ୟ

ପର୍ବ ଏହାର ପର୍ବ, ବିରାଟ ଓ ଉଦ୍‌ଯୋଗ ପର୍ବ ଏହାର ସାର, ଭୀଷ୍ମ ପର୍ବ ଏହାର ମହାଶାଖା, ଦ୍ରୋଣପର୍ବ ଏହାର ପଲ୍ଲବ, କର୍ଣ୍ଣ ପର୍ବ ଏହାର ଶ୍ୱେତବର୍ଣ୍ଣ ପୁଷ୍ପ, ଶଲ୍ୟ ପର୍ବ ଏହାର ସୌରଭ, ସ୍ତ୍ରୀ ଓ ଐଷିକ ପର୍ବ ଏହାର ଛାୟା, ଶାନ୍ତି ପର୍ବ ଏହାର ମହତ୍ ଫଳ, ଅଶ୍ୱମେଧ ପର୍ବ ଏହାର ଅମୃତମୟ ରସ, ଆଶ୍ରମବାସିକ ପର୍ବ ଏହାର ଆଧାର, ମୌଷଳ ପର୍ବ ଏହାର ଅତ୍ୟୁଚ୍ଚ ଶାଖାର ପ୍ରାନ୍ତଭାଗ । ଶାନ୍ତସ୍ୱଭାବ ଦ୍ୱିଜମାନେ ଏହି ମହାଭାରତ ପାଦପର ସେବା କରନ୍ତି । ପର୍ଜ୍ଜନ୍ୟ ଯେରୂପ ପ୍ରଜାଗଣଙ୍କର ଉପଜୀବ୍ୟ ହୁଅଇ ଏହି ଅକ୍ଷୟ ଭାରତବୃକ୍ଷ ସେହିରୂପ କବିଶ୍ରେଷ୍ଠମାନଙ୍କର ଉପଜୀବ୍ୟ ହେବ । ଆମ୍ଭେ ସେହି ଭାରତତରୁର ସୁସ୍ୱାଦୁ ଓ ପବିତ୍ର ରସ-ଯୁକ୍ତ ଚିରସ୍ଥାୟୀ, ଅମରମାନଙ୍କଦ୍ୱାରା ସୁଦ୍ଧା ଅଚ୍ଛେଦ୍ୟ ଫଳ ଓ ପୁଷ୍ପ ବର୍ଣ୍ଣନା କରିବୁ । ୯୩ ।

ପୂର୍ବକାଳରେ ଧର୍ମାତ୍ମା କୃଷ୍ଣଦ୍ୱୈପାୟନ ଜନନୀ ଓ ପ୍ରଜ୍ଞାଶାଳୀ ଭୀଷ୍ମଦେବଙ୍କ ନିୟୋଗାନୁସାରେ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ * ଅଗ୍ନିତ୍ରୟର ନ୍ୟାୟ ତେଜସ୍ୱୀ ସନ୍ତାନତ୍ରୟ ଉତ୍ପାଦନ କରିଥିଲେ । ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଏହି ତିନି ପୁତ୍ର ଉତ୍ପାଦନ କରି ଦ୍ୱୈପାୟନ ତପସ୍ୟା ନିମନ୍ତେ ପୁନର୍ବାର ନିଜ ଆଶ୍ରମକୁ ଗମନ କଲେ । ଅନନ୍ତର ପୁତ୍ରମାନେ ବୃଦ୍ଧ ହୋଇ ସଦ୍‌ଗତି ଲାଭ କଲାରୁ ମହର୍ଷି ନରଲୋକରେ ଭାରତ ପ୍ରଚାର କଲେ । ସେ ରାଜା ଜନମେଜୟ ଓ ସହସ୍ର ସହସ୍ର ବ୍ରାହ୍ମଣମାନଙ୍କ କର୍ତ୍ତୃକ ପରିପୃଷ୍ଟ ହୋଇ ସ୍ୱନିକଟରେ ଉପବିଷ୍ଟ ବୈଶମ୍ପାୟନଙ୍କୁ ଭାରତ କୀର୍ତ୍ତନ କରିବାର ଆଦେଶ କଲେ । ମୁନିବର ବୈଶମ୍ପାୟନ ଯଜ୍ଞର ନିତ୍ୟକର୍ମା-ବସାନରେ ବାରମ୍ବାର ପରିପୃଷ୍ଟ ହୋଇ ସଦସ୍ୟମାନଙ୍କ ସହିତ ଉପବେଶନ ପୂର୍ବକ ମହାଭାରତ ଶ୍ରବଣ କରାଇବାରେ ଉଦ୍ୟତ ରହିଲେ । ୯୮ ।

ଭଗବାନ ଦ୍ୱୈପାୟନ ଏହି ମହାଭାରତରେ କୁରୁବଂଶର ବିସ୍ତାର, ଗାନ୍ଧାରୀଙ୍କ ଧର୍ମଶୀଳତା, ବିଦୁରଙ୍କ ପ୍ରଜ୍ଞା, କୁନ୍ତୀଙ୍କ ଧୈର୍ଯ୍ୟ, କୃଷ୍ଣଙ୍କର ମାହାତ୍ମ୍ୟ, ପାଣ୍ଡବଗଣଙ୍କ ସତ୍ୟପରାୟଣତା ଓ ଧୃତରାଷ୍ଟ୍ରପୁତ୍ରଙ୍କର ଦୁଷ୍ଟତା ସମ୍ୟକ୍ ରୂପେ ବର୍ଣ୍ଣନା କରିଅଛନ୍ତି । ୧୦୦ ।

ସେ ପ୍ରଥମରେ ଚତୁର୍ବିଂଶତି ସହସ୍ର ଶ୍ଳୋକରେ ଭାରତସଂହିତା ରଚନା କରିଥିଲେ । ପଣ୍ଡିତମାନେ ଉପାଖ୍ୟାନଶୂନ୍ୟ ତେତିକ ଶ୍ଳୋକକୁ

* ଅର୍ଥାତ୍ ଅମ୍ବିକା ଅମ୍ବାଳିକାଦିଙ୍କ ଗର୍ଭରେ ।

ଭାରତ ବୋଲି କହନ୍ତି । ତଦନନ୍ତର ଋଷି ସଂକ୍ଷେପରେ ସାର୍ଦ୍ଧଶତ ଶ୍ଳୋକାତ୍ମକ ସମସ୍ତ ବୃତ୍ତାନ୍ତ ଓ ସମୁଦାୟ ପର୍ବର ଅନୁକ୍ରମଣିକା ଅଧ୍ୟାୟ ରଚନା କଲେ । ଦ୍ୱୈପାୟନ ସର୍ବାଗ୍ରେ ସ୍ୱୀୟ ପୁତ୍ର ଶୁକଦେବଙ୍କୁ ଏହି ମହାଭାରତ ଅଧ୍ୟୟନ କରାଇଲେ । ପରେ ସେହି ପ୍ରଭୁପ୍ରବର ପ୍ରତିରୂପ ଅନ୍ୟାନ୍ୟ ଶିଷ୍ୟମାନଙ୍କୁ ପ୍ରଦାନ କଲେ । ୧୦୪ ।

ଷାଠିଏ ଲକ୍ଷ ଶ୍ଳୋକରେ ଆଉ ଖଣ୍ଡିଏ ସଂହିତା ଋଷି ରଚନା କରିଥିଲେ । ସେହି ସଂହିତାରୁ ତିଂଶଲକ୍ଷ ଶ୍ଳୋକ ଦେବଲୋକରେ, ପଞ୍ଚଦଶଲକ୍ଷ ଶ୍ଳୋକ ପିତୃଲୋକରେ, ଚତୁର୍ଦ୍ଦଶଲକ୍ଷ ଶ୍ଳୋକ ଗନ୍ଧର୍ବଲୋକରେ ଓ ନରଲୋକରେ ଏକଲକ୍ଷ ଶ୍ଳୋକ ପ୍ରତିଷ୍ଠିତ ଅଛି ।

ଦେବର୍ଷି ନାରଦ ଅମରମାନଙ୍କୁ, ଅସିତ ଦେବଳ ପିତୃଗଣଙ୍କୁ ଓ ଶୁକଦେବ ଗନ୍ଧର୍ବ ଯକ୍ଷ ଓ ରାକ୍ଷସମାନଙ୍କୁ ସେହିସବୁ ଗ୍ରନ୍ଥ ଶ୍ରବଣ କରାଇଲେ । ବେଦବେତ୍ତାଙ୍କ ଶ୍ରେଷ୍ଠ ଧର୍ମାତ୍ମା ବ୍ୟାସଶିଷ୍ୟ ବୈଶମ୍ପାୟନ ଏହି ମର୍ତ୍ତ୍ୟ-ଲୋକରେ ଅବଶିଷ୍ଟ ସବୁ ପ୍ରଚାର କଲେ । ଆମ୍ଭେ ସେହି ଲକ୍ଷଶ୍ଳୋକମୟୀ ଭାରତସଂହିତା କହୁଅଛୁ, ଆପଣମାନେ ଶ୍ରବଣ କରନ୍ତୁ ।

ଦୁର୍ଯ୍ୟୋଧନ କ୍ରୋଧମୟ ମହାବୃକ୍ଷ, କର୍ଣ୍ଣ ତାହାର ସ୍କନ୍ଧ, ଶକୁନି ତାହାର ଶାଖାନିଚୟ, ଦୁଃଶାସନ ତାହାର ସମୃଦ୍ଧ ପୁଷ୍ପ ଓ ଫଳ, ଅପରି-ଣାମଦର୍ଶୀ ରାଜା ଧୃତରାଷ୍ଟ୍ର ତାହାର ମୂଳ । ଯୁଧିଷ୍ଠିର ଧର୍ମମୟ ମହାବୃକ୍ଷ, ଅର୍ଜ୍ଜୁନ ଏହାର ସ୍କନ୍ଧ, ଭୀମସେନ ଏହାର ଶାଖାସମୂହ, ମାଦ୍ରୀଙ୍କ ପୁତ୍ରଯୁଗଳ ଏହାର ସମୃଦ୍ଧ ଫଳ ଓ ପୁଷ୍ପ, ବ୍ରାହ୍ମଣଗଣ ବେଦ ଓ କୃଷ୍ଣ ଏହାର ମୂଳ ।

ପାଣ୍ଡୁରାଜା ବୁଦ୍ଧି ଓ ବିକ୍ରମରେ ଅନେକ ଦେଶ ଜୟ କରି ପରି-ଶେଷରେ ମୃଗୟାଶୀଳ ହୋଇ ତପସ୍ୱୀମାନଙ୍କ ସହିତ ଅରଣ୍ୟରେ ବାସ କରିଥିଲେ । ଦିନେ ସେ ସମ୍ଭୋଗାସକ୍ତ ଗୋଟିଏ ମୃଗରୂପୀ ଋଷିଙ୍କୁ ବିନାଶ କରିବାରୁ ଅତି କଷ୍ଟକର ଆପଦରେ ପତିତ ହେଲେ । କୁନ୍ତୀ ଓ ମାଦ୍ରୀଙ୍କ ଗର୍ଭରେ ଧର୍ମଶାସ୍ତ୍ରର ବିଧାନାନୁସାରେ ଧର୍ମ, ବାୟୁ, ଇନ୍ଦ୍ର ଓ ଅଶ୍ୱିନୀକୁମାର-ଦ୍ୱୟଙ୍କର ସମାଗମରେ ପାଣ୍ଡବମାନଙ୍କର ଜନ୍ମ ହେଲା । ପାର୍ଥଗଣଙ୍କର ଅର୍ଥାତ୍ କୁନ୍ତୀ ଓ ମାଦ୍ରୀଙ୍କ ଗର୍ଭଜାତ ପୁତ୍ରମାନଙ୍କର ଯଥାକ୍ରମେ ଆଗମାନୁ-ସାରେ ଜାତକର୍ମାଦି ବିଧାନ ସକଳ ସମ୍ପାଦିତ ହେଲା । ସେମାନେ ପରିଶୁଦ୍ଧ ଅରଣ୍ୟ ମଧ୍ୟରେ ମହାତ୍ମା ମୁନିମାନଙ୍କର ପବିତ୍ର ଆଶ୍ରମସମୂହରେ ତାପସକୁମାରଙ୍କ ସହିତ ଜନନୀଦ୍ୱୟ କର୍ତ୍ତୃକ ସମ୍ବର୍ଦ୍ଧିତ ଓ ପରିପାଳିତ

ହେବାକୁ ଲାଗିଲେ । ଅନନ୍ତର ଏକ ସମୟରେ ଋଷିମାନେ ସ୍ୱାଭାବିକ ଜଟାଧାରୀ ବ୍ରହ୍ମଚାରୀ ମନୋହର ସେହି ଶିଶୁମାନଙ୍କୁ ଧୃତରାଷ୍ଟ୍ରଙ୍କ ନିକଟକୁ ଘେନି ଆସିଲେ ଓ କହିଲେ ଏମାନେ ପାଣ୍ଡୁପୁତ୍ର ; ତୁମ୍ଭମାନଙ୍କ ପୁତ୍ର, ଭ୍ରାତା ଓ ସୁହୃତ୍ । ଏହା କହି ସେମାନେ ସେ ସ୍ଥାନରୁ ଅନ୍ତର୍ହିତ ହେଲେ । ସେମାନଙ୍କୁ ଦେଖି କୌରବମାନେ, ଅନ୍ୟାନ୍ୟ ଶ୍ରେଷ୍ଠ ଜାତିମାନେ ଓ ପୁରବାସିମାନେ ବିପୁଳ ଆନନ୍ଦରେ କୋଳାହଳ କଲେ । କେହି କେହି କହିଲେ, ଏମାନେ ପାଣ୍ଡୁଙ୍କ ପୁତ୍ର ନୁହନ୍ତି । କେହି କହିଲେ, ଏମାନେ ତାହାଙ୍କ ପୁତ୍ର । ଅପର କେହି କହିଲେ, ପାଣ୍ଡୁଙ୍କର ବହୁ କାଳରୁ ମୃତ୍ୟୁ ହୋଇଅଛି, ଏମାନେ କିପରି ତାହାଙ୍କ ପୁତ୍ର ହେଲେ । କିନ୍ତୁ ସାଧାରଣରେ ରାଜଧାନୀର ସମସ୍ତେ କହିଲେ, କାଳକ୍ରମେ ସୌଭାଗ୍ୟବଶତଃ ଆମ୍ଭେମାନେ ପାଣ୍ଡୁପୁତ୍ରଙ୍କୁ ଦେଖିଲୁଁ । ସେମାନେ ପଚାରିଲେ, ହେ ପାଣ୍ଡୁ-ପୁତ୍ରଗଣ ! ଆପଣମାନେ କୁଶଳରେ ଆସିଲେ ତ ? କହିବା ହେଉନ୍ତୁ । ଏହି କୋଳାହଳ ନିବୃତ୍ତ ହେବା ପରେ ଦଶଦିଗ ପ୍ରତିଧ୍ୱନିତ କରି ଅନ୍ତର୍ହିତ ପ୍ରାଣିମାନଙ୍କର ତୁମୁଳ ଶବ୍ଦ ଶ୍ରୁତ ହେଲା ଓ ପାଣ୍ଡବମାନଙ୍କର ପୁରପ୍ରବେଶ କାଳରେ ଶୁଭସୂଚକ ପୁଷ୍ପବୃଷ୍ଟି ସୌରଭ ସଞ୍ଚାର ଓ ଶଙ୍ଖ ଦୁନ୍ଦୁଭି ଧ୍ୱନି ହୋଇଥିଲା । ଅଥଚ ପାଣ୍ଡବମାନଙ୍କ ପ୍ରତି ପ୍ରୀତିସୂଚକ ପୁରବାସୀମାନଙ୍କର ହର୍ଷଜନିତ କୀର୍ତ୍ତିବର୍ଦ୍ଧକ ଗଗନସ୍ପର୍ଶୀ ମହା କୋଳାହଳ ଜାତ ହୋଇଥିଲା । ୧୨୧ ।

ପାଣ୍ଡବମାନେ ନିଖିଳ ବେଦ ଓ ନାନାବିଧ ଶାସ୍ତ୍ର ଅଧ୍ୟୟନ କରି ସମ୍ମାନ ସହକାରେ ଅକୁତୋଭୟରେ ସେଠାରେ ବାସ କଲେ । ପ୍ରଜା-ମାନେ ଯୁଧିଷ୍ଠିରଙ୍କ ସଦାଚାରରେ, ଭୀମର ଧୈର୍ଯ୍ୟରେ, ଅର୍ଜ୍ଜୁନର ପରାକ୍ରମରେ, କୁନ୍ତୀଙ୍କ ଗୁରୁ ଶୁଶ୍ରୂଷାରେ, ନକୁଳ ଓ ସହଦେବଙ୍କ ବିନୟରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ବାସ୍ତବରେ ସମସ୍ତ ଲୋକେ ପାଣ୍ଡବଙ୍କ ଶୌର୍ଯ୍ୟରେ ପରମ ପରିତୋଷ ପ୍ରାପ୍ତ ହୋଇଥିଲେ । ଅନନ୍ତର ଅର୍ଜ୍ଜୁନ ଭୂପାଳମାନଙ୍କ ସମକ୍ଷରେ ଦୁଷ୍କର କର୍ମ ସମାଧାନ କରି ସ୍ୱୟମ୍ବରା ଦ୍ରୌପଦୀଙ୍କୁ ଲାଭ କରିଥିଲେ । ସେହିଦିନଠାରୁ ଅର୍ଜ୍ଜୁନ ଏହି ଭୂଲୋକରେ ସମସ୍ତ ଧନୁର୍ଦ୍ଧରଙ୍କ ପୂଜ୍ୟ ଓ ସମରରେ ଦିନକରଙ୍କ ପ୍ରାୟ ଦୁର୍ନିରୀକ୍ଷ ହେଲେ । ସେ ସମସ୍ତ କ୍ଷିତିପାଳ ଓ ମହତ୍ ସେନାମାନଙ୍କୁ ଜୟ କରି ରାଜା ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞର ଆହରଣ କରିଥିଲେ । ଯୁଧିଷ୍ଠିର ବାସୁଦେବଙ୍କ ମନ୍ତ୍ର ପ୍ରଭାବରେ ଓ ଭୀମାର୍ଜ୍ଜୁନଙ୍କ ବାହୁବଳରେ ବଳଗର୍ବିତ

ଜରାସନ୍ଧ ଓ ଚେଦିପତି ଶିଶୁପାଳଙ୍କୁ ନିହତ କରି ଅନ୍ନଦାନ, ଦକ୍ଷିଣାଦାନ, ଓ ଅନ୍ୟାନ୍ୟ ଗୁଣସମ୍ପନ୍ନ ରାଜସୂୟ ଯଜ୍ଞ ସମାପନ କଲେ । ନାନାସ୍ଥାନରୁ ଦୁର୍ଯ୍ୟୋଧନଙ୍କ ନିକଟକୁ ମଣି, କାଞ୍ଚନ, ରତ୍ନ, ଗୋ, ହସ୍ତୀ, ଅଶ୍ୱ, ଧନ, ବିଚିତ୍ରବସନ, ପ୍ରାବାର (ଅର୍ଥାତ୍ ଶିବିର), କବନିକା, କମ୍ବଳ, ଅଜିନଶ୍ରେଷ୍ଠ, ରଙ୍କୁ ମୃଗର ଲୋମଜାତ ଶଯ୍ୟା ଏହି ସବୁ ଉପଢୌକନ ଆସିଲା ।

ପାଣ୍ଡବମାନଙ୍କର ଈଦୃଶ ସମୃଦ୍ଧିଶାଳିନୀ ସମ୍ପଦ ଦେଖି ଦୁର୍ଯ୍ୟୋଧନଙ୍କ ଅନ୍ତଃକରଣରୁ ଈର୍ଷାର ସମୁତ୍ଥାନ ଓ କ୍ରୋଧର ଆବିର୍ଭାବ ହେଲା । ରାଜସୂୟ ଯଜ୍ଞରେ ମୟଦାନବ ଯେଉଁ ବିମାନ ସଦୃଶ ସଭାକୁ ପାଣ୍ଡବଙ୍କଠାରେ ଉପହାର ଦେଇଥିଲେ, ସେହି ସଭାକୁ ପରିଦର୍ଶନ କରି ଦୁର୍ଯ୍ୟୋଧନ ଅତିଶୟ ପରିତପ୍ତ ହୋଇଥିଲେ । ଭ୍ରମବଶତଃ ସେ ସେହି ସଭାରେ ସ୍ଖଳିତପଦ ହେବାରୁ କୃଷ୍ଣଙ୍କ ସମକ୍ଷରେ ଭୀମ ତାହାଙ୍କୁ ଗ୍ରାମ୍ୟଲୋକ ପରି ଉପହାସ କରିଥିଲେ । ନାନାବିଧ ଭୋଜ୍ୟବସ୍ତୁ ଓ ବିବିଧ ରତ୍ନରାଶି ଉପ-ଭୋଗ କରି ସୁଦ୍ଧା ମନସ୍ତାପ ହେତୁରୁ ଦୁର୍ଯ୍ୟୋଧନ ଦିନକୁ ଦିନ କ୍ଷୀଣ, ମ୍ଳାନ ଓ ପାଣ୍ଡୁବର୍ଣ୍ଣ ହେଲେ । ଅନୁଜୀବୀମାନେ ଧୃତରାଷ୍ଟ୍ରଙ୍କୁ ଏକଥା ଜଣାଇବାରୁ ସୁତପ୍ରିୟ ଧୃତରାଷ୍ଟ୍ର ଦ୍ୟୂତକ୍ରୀଡ଼ାର ଅନୁଜ୍ଞା ଦେଲେ । ତାହା ଶୁଣି ବାସୁଦେବଙ୍କର ପ୍ରଭୂତ କୋପ ଜାତ ହେଲା । ସେ ଅତ୍ୟନ୍ତ ଅପ୍ରୀତମନା ହୋଇ ବିବାଦର ଅନୁମୋଦନ କଲେ ଓ ବିଦୁର, ଭୀଷ୍ମ, ଦ୍ରୋଣ ଓ ଶାରଦ୍ୱତ କୃପଙ୍କ ଅନଭିମତରେ ଯେଉଁ ଭୟଙ୍କର ସଂଗ୍ରାମ ହେଲା ତହିଁରେ ଉଭୟ ପକ୍ଷରୁ କ୍ଷତ୍ରିୟକୁଳର ବିନାଶ ନିମନ୍ତେ ଦ୍ୟୂତ ପ୍ରଭୃତି ନାନାବିଧ ଘୋର ଦୁର୍ନୀତିମାନଙ୍କୁ ତୁଚ୍ଛ ଜ୍ଞାନ କଲେ । ୧୩୮ ।

ପାଣ୍ଡବମାନେ ଜୟଲାଭ କଲାରୁ ରାଜା ଧୃତରାଷ୍ଟ୍ର ଅତ୍ୟନ୍ତ ଅପ୍ରିୟ ସେହି ଜୟବାର୍ତ୍ତା ଶ୍ରବଣ କରି ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଶକୁନିଙ୍କ ଅଭିପ୍ରାୟ ଅବଗତ ହୋଇ ବହୁକ୍ଷଣ ଚିନ୍ତା କରି ସଞ୍ଜୟଙ୍କୁ କହିଲେ, ସଞ୍ଜୟ ! ତୁମ୍ଭେ ଆମ୍ଭର ସମୁଦାୟ ବାକ୍ୟ ଶ୍ରବଣ କର । ତୁମ୍ଭେ ଶାସ୍ତ୍ରଜ୍ଞ, ମେଧାବୀ, ବୁଦ୍ଧିମାନ୍ ଓ ପ୍ରାଜ୍ଞମାନଙ୍କ ମାନଭାଜନ; ଅତଏବ ଆମ୍ଭ ଉପରେ ଦୋଷାରୋପ କରିବା ତୁମ୍ଭର ଉଚିତ ବୋଧ ହେବନାହିଁ । ଯୁଦ୍ଧରେ ଆମ୍ଭର ମତ ନାହିଁ, କୁଳକ୍ଷୟରେ ଆମ୍ଭର ପ୍ରୀତି ନାହିଁ, ନିଜ ପୁତ୍ର ଓ ପାଣ୍ଡୁପୁତ୍ରଙ୍କ ମଧ୍ୟରେ ମୋର କୌଣସି ପ୍ରଭେଦ ଜ୍ଞାନ ନାହିଁ ।

କ୍ରୋଧ-ପରାୟଣ ଆମ୍ଭର ପୁତ୍ରମାନେ ବୃଦ୍ଧ ବୋଲି ଆମ୍ଭ ପ୍ରତି ଦୋଷାରୋପଣ କରନ୍ତି । ଆମ୍ଭେ ଅନ୍ଧ, ଅତଏବ ଦୀନତା ପ୍ରଯୁକ୍ତ ପୁତ୍ରସ୍ନେହ-ବଶରୁ ଆମ୍ଭଙ୍କୁ ତାହା ସହ୍ୟ କରିବାକୁ ହୁଏ । ଅଚେତନ ଦୁର୍ଯ୍ୟୋଧନ ମୋହାଭିଭୂତ ହେବାରୁ ଆମ୍ଭେ ମଧ୍ୟ ତାହା ସଙ୍ଗେ ମୋହାଭିଭୂତ ହେଲୁଁ । ଦୁର୍ଯ୍ୟୋଧନ ରାଜସୂୟ ଯଜ୍ଞରେ ସାତିଶୟ ତେଜସ୍ୱୀ ଯୁଧିଷ୍ଠିରଙ୍କ ଐଶ୍ୱର୍ଯ୍ୟ ଅବଲୋକନ କରି ସଭାରୋହଣ ଓ ଦର୍ଶନ କାଳରେ ତାଦୃଶ ଉପହାସ ପ୍ରାପ୍ତ ହୁହାଇ ରୋଷପରବଶ ହୋଇ ଓ କ୍ଷତ୍ରିୟ ଥାଇ ହୁଦ୍ଧା ସ୍ୱୟଂ ପାଣ୍ଡବମାନଙ୍କୁ ସମରରେ ପରାଜୟ କରିବାକୁ ଅଶକ୍ତ ହୋଇ ରାଜ୍ୟଲକ୍ଷ୍ମୀଙ୍କୁ ଲାଭ କରିବାରେ ନିରୁତ୍ସାହ ହେଲେ । ଅନନ୍ତର ଗାନ୍ଧାର ରାଜାଙ୍କ ସହିତ କପଟ ଦ୍ୟୁତର ମନ୍ତ୍ରଣା କଲେ । ଆମ୍ଭେ ଏ ବିଷୟରେ ଯଥାର୍ଥ ରୂପେ ଯାହା ଯାହା ଜାଣୁଁ, ହେ ସଞ୍ଜୟ ! ତାହା ସବୁ ଶ୍ରବଣ କର । ହେ ସୂତ-ନନ୍ଦନ ! ତୁମ୍ଭେ ଆମ୍ଭର ବୁଦ୍ଧିଯୁକ୍ତ ସେହି ସକଳ ବାକ୍ୟ ଯଥାର୍ଥରୂପେ ଶ୍ରବଣ କଲେ ଆମ୍ଭଙ୍କୁ ଜ୍ଞାନଚକ୍ଷୁ ବୋଲି ଜାଣିବ ।

ମୁଁ ଯେତେବେଳେ ଶୁଣିଲି ଅର୍ଜ୍ଜୁନ ବିଚିତ୍ର ଶରାସନ ଆକର୍ଷଣ କରି ଲକ୍ଷ୍ୟବିଦ୍ଧ ଓ ଭୂତଳରେ ପାତିତ କଲେ ଓ ଦର୍ଶନକାରୀ ଧରାପତିମାନଙ୍କୁ ଅବହେଳା କରି ଦ୍ରୌପଦୀଙ୍କୁ ହରଣ କରି ଆଣିଲେ, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା ରହିଲା ନାହିଁ । ଯେତେବେଳେ ଶୁଣିଲି, ଅର୍ଜ୍ଜୁନ ଦ୍ୱାରକାରେ ମାଧବଭଗିନୀ ସୁଭଦ୍ରାଙ୍କର ପାଣିଗ୍ରହଣ କଲେ ଓ ବଳରାମ ଓ କୃଷ୍ଣ ଦୁହେଁ ଇନ୍ଦ୍ରପ୍ରସ୍ଥକୁ ଆଗମନ କଲେ, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି, ଦେବରାଜ ଇନ୍ଦ୍ର ଖାଣ୍ଡବଦାହରେ ବାରିବର୍ଷଣ କରିବାରୁ ଅର୍ଜ୍ଜୁନ ଦିବ୍ୟ ଶରଜାଲ ଦ୍ୱାରା ତାହା ନିବାରଣ କରି ଅଗ୍ନିଙ୍କୁ ପରିତୃପ୍ତ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଯେ ପଞ୍ଚପାଣ୍ଡବ କୁନ୍ତୀଙ୍କ ସହିତ ଜତୁଗୃହରୁ ପରିତ୍ରାଣ ପାଇଲେ ଓ ବିଦୁର ସେମାନଙ୍କ ସ୍ୱାର୍ଥ-ସିଦ୍ଧିରେ ନିଯୁକ୍ତ ଥିଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଯେ ଅର୍ଜ୍ଜୁନ ସଭା ମଧ୍ୟରେ ଲକ୍ଷ୍ୟ ଭେଦ କରି ଦ୍ରୌପଦୀଙ୍କୁ ଲାଭ କଲେ ଓ ବୀରବର ପାଞ୍ଚାଳ ଓ ପାଣ୍ଡବମାନେ ପରସ୍ପର ମିଳିତ ହେଲେ, ହେ ସଞ୍ଜୟ ! ତଦବଧି ଆଉ ମୁଁ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଭୀମସେନ ପୁର ମଧ୍ୟରେ ଗମନ କରି ମାଗଧମାନଙ୍କ ଶ୍ରେଷ୍ଠ କ୍ଷତ୍ରିୟମାନଙ୍କ ମଧ୍ୟରେ ଅତି

ତେଜସ୍ୱୀ ଜରାସନ୍ଧଙ୍କୁ ବାହୁଯୁଦ୍ଧ ଦ୍ୱାରା ବିନାଶ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଯେ ପାଣ୍ଡୁପୁତ୍ରମାନେ ଦିଗ୍‌ବିଜୟରେ ସମୁଦାୟ ଭୂପାଳମାନଙ୍କୁ ବଳପୂର୍ବକ ବଶୀଭୂତ କରି ରାଜସୂୟ ମହାଯଜ୍ଞ ସମାପ୍ତ କଲେ; ହେ ସଞ୍ଜୟ ! ସେହି ଅବଧି ଆଉ ମୋ ଜୟର ଆଶା ରହିଲା ନାହିଁ । ୧୫୪ ।

ଯେତେବେଳେ ଶୁଣିଲି ଅଶ୍ରୁକଣ୍ଠୀ, ଅତି ଦୁଃଖିତା, ଏକବସ୍ତ୍ରସନା, ରଜସ୍ୱଳା, ସନାଥା, ଦ୍ରୌପଦୀଙ୍କୁ ଅନାଥା ପରି ସଭାକୁ ଆନୟନ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ମନ୍ଦବୁଦ୍ଧି ଧୂର୍ତ୍ତ ଦୁଃଶାସନ ସଭା ମଧ୍ୟରେ ଦ୍ରୌପଦୀର ବସନରାଶି ଆକର୍ଷଣ କଲେହେଁ ତାହାର ପ୍ରାନ୍ତ ପ୍ରାପ୍ତ ହେଲେ ନାହିଁ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ସୁବଳନନ୍ଦନ ଶକୁନି ଅକ୍ଷକ୍ରୀଡ଼ାରେ ଯୁଧିଷ୍ଠିରଙ୍କୁ ପରାଜୟ କରି ତାହାଙ୍କ ରାଜ୍ୟ ହରଣ କଲେହେଁ ଅପ୍ରମେୟ ବଳବିକ୍ରମଶାଳୀ ଭ୍ରାତୃଗଣ ତାହାଙ୍କର ଅନୁଗତ ରହିଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ୧୫୮ ।

ଯେତେବେଳେ ଶୁଣିଲି ବନବାସରେ ପ୍ରସ୍ଥିତ ଧର୍ମାତ୍ମା ପାଣ୍ଡବଗଣ କ୍ଳେଶପ୍ରାପ୍ତ ହୋଇ ସୁଦ୍ଧା ଜ୍ୟେଷ୍ଠଭ୍ରାତାଙ୍କ ପ୍ରତି ସ୍ନେହ ନିବେଦନ ଓ ବୈର ସାଧନ ନିମିତ୍ତ ବାହୁବୀକ୍ଷଣାଦି ନାନାବିଧ ଚେଷ୍ଟା ପ୍ରଦର୍ଶନ କଲେ ସେହି ଅବଧି ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ସହସ୍ର ସହସ୍ର ଭିକ୍ଷାଭୋଜୀ ମହାତ୍ମା ସ୍ନାତକ ବ୍ରାହ୍ମଣ ବନସ୍ଥ ଯୁଧିଷ୍ଠିରଙ୍କର ଅନୁଗତ ହେଲେ ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଅର୍ଜୁନ କିରାତରୂପୀ ଦେବଦେବ ମହାଦେବଙ୍କୁ ଯୁଦ୍ଧରେ ସନ୍ତୁଷ୍ଟ କରି ପାଶୁପତ ମହାସ୍ତ୍ର ପ୍ରାପ୍ତ ହେଲେ ; ହେ ସଞ୍ଜୟ ! ତଦବଧି ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ସତ୍ୟସନ୍ଧ ଯୁଧିଷ୍ଠିର ସ୍ୱର୍ଗରେ ଅବସ୍ଥିତି କରି ବ୍ରତଧାରଣ ପୂର୍ବକ ଯଥାବିଧାନରେ ଦିବ୍ୟଅସ୍ତ୍ର ଶିକ୍ଷା କଲେ, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଅର୍ଜୁନ ବରଦାନରେ ଦେବଗଣଙ୍କର ଅଜେୟ ପୁଲୋମପୁତ୍ର କାଳକେୟ ଅସୁରଗଣଙ୍କୁ ପରାଜୟ କଲେ, ହେ

ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଶତ୍ରୁନସୂଦନ କିରୀଟୀ ଅସୁରମାନଙ୍କର ବିନାଶ ନିମନ୍ତେ ଇନ୍ଦ୍ର-ଲୋକକୁ ଗମନ କରି କୃତକାର୍ଯ୍ୟ ହୋଇ ପ୍ରତ୍ୟାଗମନ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଭୀମସେନ ଓ ଅନ୍ୟାନ୍ୟ ପାଣ୍ଡୁତନୟମାନେ ମନୁଷ୍ୟଙ୍କ ଅଗମ୍ୟ ଦେଶକୁ ଗମନ କରି କୁବେରଙ୍କ ସହିତ ମିଳିତ ହେଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ୧୬୪ ।

ଯେତେବେଳେ ଶୁଣିଲି ଯେ କର୍ଣ୍ଣ-ବୁଦ୍ଧିରେ ପ୍ରବୃତ୍ତ ହୋଇ ଆମ୍ଭର ପୁତ୍ରମାନେ ଘୋଷଯାତ୍ରା ବ୍ୟପଦେଶରେ ବଲ୍‌କଲଧାରୀ ପାଣ୍ଡବମାନଙ୍କୁ ଐଶ୍ୱର୍ଯ୍ୟ ଦେଖାଇବାକୁ ଯାଇ ଗନ୍ଧର୍ବମାନଙ୍କ କର୍ତ୍ତୃକ ବନ୍ଧ ହେଲେ ଓ ପାଣ୍ଡବମାନଙ୍କ ଦ୍ୱାରା ମୁକ୍ତ ହେଲେ, ସେହି ଅବଧି ହେ ସଞ୍ଜୟ ! ଆଉ ଜୟର ଆଶା କରେ ନାହିଁ ।

ଯେତେବେଳେ ଶୁଣିଲି ଧର୍ମ ଯକ୍ଷରୂପ ଧାରଣ କରି ଧର୍ମରାଜଙ୍କ ସହିତ ସମାଗତ ହୋଇ କତିପୟ ପ୍ରଶ୍ନ କଲେ, ତଦବଧି ହେ ସଞ୍ଜୟ ! ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ପାଣ୍ଡବମାନେ ପ୍ରଚ୍ଛନ୍ନ ବେଶରେ କୃଷ୍ଣାଙ୍କ ସହିତ ବିରାଟ ରାଜ୍ୟରେ ବାସ କଲେ, କିନ୍ତୁ ଆମ୍ଭର ପୁତ୍ରମାନେ ତାହାଙ୍କୁ ଜାଣି ପାରିଲେ ନାହିଁ, ହେ ସଞ୍ଜୟ ! ତଦବଧି ଜୟର ଆଶା କରେ ନାହିଁ ।

ଯେତେବେଳେ ଶୁଣିଲି ବିରାଟ ରାଜ୍ୟବାସୀ ମହାତ୍ମା କିରୀଟୀ ଏକ-ରଥ ହୋଇ ଆମ୍ଭର ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କୁ ରଣରେ ପରାସ୍ତ କଲେ, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ମତ୍ସ୍ୟାଧିପତି ବିରାଟ ବସ୍ତ୍ରାଲଙ୍କାରଭୂଷିତା ଆପଣାର ଦୁହିତା ଉତ୍ତରାଙ୍କୁ ପ୍ରଦାନ କଲେ ଓ ଅର୍ଜୁନ ଆପଣାର ସୁତ ନିମନ୍ତେ ତାହାଙ୍କୁ ପ୍ରତିଗ୍ରହ କଲେ, ତଦବଧି ହେ ସଞ୍ଜୟ ! ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ପରାଜିତ, ନିର୍ଦ୍ଧନ, ନିର୍ବାସିତ ଓ ଆତ୍ମୀୟସ୍ୱଜନବିରହିତ ହେଲେ ହେଁ ଯୁଧିଷ୍ଠିରଙ୍କର ସପ୍ତଅକ୍ଷୌହିଣୀ ସେନା ସଂଗୃହୀତ ହୋଇଅଛି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ୧୬୧ ।

ଯେତେବେଳେ ଶୁଣିଲି ପଣ୍ଡିତମାନେ ଏହି ପୃଥିବୀକୁ ଯାହାଙ୍କର ଗୋଟିଏ ପଦବିକ୍ଷେପ ବୋଲି ବୋଲନ୍ତି, ସେ ବାସୁଦେବ ମାଧବ ସର୍ବ-ପ୍ରକାରେ ପାଣ୍ଡବମାନଙ୍କର ପ୍ରୟୋଜନ ସାଧନରେ ଯତ୍ନବାନ୍ ଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ନାରଦ କହିଲେ ଅର୍ଜ୍ଜୁନ ଓ କୃଷ୍ଣ ନରନାରାୟଣ ଆମ୍ଭେ ବ୍ରହ୍ମ-ଲୋକରେ ଏମାନଙ୍କୁ ସମ୍ୟକ୍‌ରୂପେ ଦର୍ଶନ କରୁ, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ ।

ଯେତେବେଳେ ଶୁଣିଲି କୃଷ୍ଣ ଲୋକଙ୍କ ହିତାର୍ଥ ସନ୍ଧି କରିବାକୁ ଅଭିଳାଷୀ ହୋଇ କୌରବମାନଙ୍କ ନିକଟରେ ଉପସ୍ଥିତ ହେଲେ, କିନ୍ତୁ ତଦ୍‌ବିଷୟରେ ଅକୃତକାର୍ଯ୍ୟ ହୋଇ ଗମନ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି କର୍ଣ୍ଣ ଓ ଦୁର୍ଯ୍ୟୋଧନ କେଶବଙ୍କୁ ନିଗ୍ରହ କରିବାର ଅଭିପ୍ରାୟ କଲେ ଓ ସେ ଆପଣାର ବିଶ୍ୱରୂପ ସେମାନଙ୍କୁ ଦେଖାଇଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି କୃଷ୍ଣଙ୍କ ପ୍ରସ୍ଥାନ ସମୟରେ କୁନ୍ତୀ କାତର ହୋଇ ଏକାକିନୀ ତାହାଙ୍କ ରଥ ସମ୍ମୁଖରେ ଦଣ୍ଡାୟମାନ ହେଲେ ଓ କୃଷ୍ଣ ତାହାଙ୍କୁ ଆଶ୍ୱାସନା ଦେଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି କୃଷ୍ଣ ଓ ଶାନ୍ତନୁତନୟ ଭୀଷ୍ମ ସେମାନଙ୍କ ମନ୍ତ୍ରୀ ହେଲେ ଓ ଭରଦ୍ୱାଜସୁତ ଦ୍ରୋଣାଚାର୍ଯ୍ୟ ସେମାନଙ୍କୁ ଆଶୀର୍ବାଦ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଭୀଷ୍ମଙ୍କୁ କର୍ଣ୍ଣ କହିଲେ ଯେ ତୁମ୍ଭେ ଯୁଦ୍ଧ କଲେ ଆମ୍ଭେ ଯୁଦ୍ଧ କରିବୁ ନାହିଁ, ଏହା କହି ସେନାତ୍ୟାଗ କରି ଚାଲିଗଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି, କୃଷ୍ଣ, ଅର୍ଜ୍ଜୁନ ଓ ଅପରିମେୟ ପ୍ରତାପଶାଳୀ ଗାଣ୍ଡୀବଧନୁ ଏହି ପ୍ରଖର ବୀର୍ଯ୍ୟଶାଳୀ ତିନିଜଣ ଏକତ୍ରିତ ହୋଇଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଅର୍ଜ୍ଜୁନ ରଥ ଉପରେ ମୋହାଭିଭୂତ ଓ ଅବସନ୍ନ ହେବାରୁ କୃଷ୍ଣ ତାହାଙ୍କୁ ନିଜ ଶରୀରରେ ସମୁଦାୟ ଭୁବନ ପ୍ରଦର୍ଶନ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଶତ୍ରୁମର୍ଦ୍ଦନ ଭୀଷ୍ମ ସମରରେ ଅୟୁତ ରଥୀ ବିନାଶ କରିଅଛନ୍ତି, କିନ୍ତୁ ତହିଁରେ ପାଣ୍ଡବଙ୍କର

ପ୍ରଖ୍ୟାତନାମା କୌଣସି ବ୍ୟକ୍ତି ହତ ହୋଇନାହାନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଧର୍ମ-ପରାୟଣ ଗାଙ୍ଗେୟ ଭୀଷ୍ମ ସ୍ୱୟଂ ଆପଣା ମୃତ୍ୟୁ ଉପାୟ ବିଧାନ କଲେ ଓ ପାଣ୍ଡବମାନେ ହୃଷ୍ଟ ହୋଇ ତାହା ସମ୍ପାଦନ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ପାର୍ଥ ଶିଖଣ୍ଡୀଙ୍କୁ ସମ୍ମୁଖରେ ରଖି ଶୂରପ୍ରଧାନ ଯୁଦ୍ଧରେ ଅଜେୟ ଭୀଷ୍ମଙ୍କୁ ଆହତ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ୧୮୩ ।

ଯେତେବେଳେ ଶୁଣିଲି ବୀରବର ବୃଦ୍ଧ ଭୀଷ୍ମ ବିଚିତ୍ର ପୁଙ୍ଖବାଣ-ସମୂହରେ ସୋମକମାନଙ୍କୁ ଅଳ୍ପାବଶିଷ୍ଟ କରି ସ୍ୱୟଂ ବାଣସମୂହରେ କ୍ଷତ-ବିକ୍ଷତ ହୋଇ ଶରଶଯ୍ୟାରେ ଶୟନ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଶାନ୍ତନୁତନୟ ଭୀଷ୍ମ ଶରଶଯ୍ୟାରେ ଶୟାନ ହୋଇ ପାନୀୟ ନିମିତ୍ତ ଆଦେଶ କଲେ ଓ ଅର୍ଜ୍ଜୁନ ଭୂମି ଭେଦ କରି ତାହାଙ୍କୁ ତୃପ୍ତ କଲେ, ତଦବଧି ଆଉ ଜୟର ଆଶା କରେ ନାହିଁ । ୧୮୫ ।

ଯେତେବେଳେ ଶୁଣିଲି ପବନ, ଇନ୍ଦ୍ର ଓ ସୂର୍ଯ୍ୟ କୁନ୍ତୀପୁତ୍ରଙ୍କର ଅନୁକୂଳ ହୋଇ ଜୟ ସାଧନରେ ନିଯୁକ୍ତ ଅଛନ୍ତି ଓ ଶୃଗାଳ କୁକୁର ପ୍ରଭୃତି ଶ୍ୱାପଦମାନେ ସୁଦ୍ଧା ନିରନ୍ତର ଆମ୍ଭମାନଙ୍କୁ ଭୟ ପ୍ରଦର୍ଶନ କରୁ-ଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ ।

ଯେତେବେଳେ ଶୁଣିଲି ବିଚିତ୍ର ଯୋଦ୍ଧା ଦ୍ରୋଣ ସଂଗ୍ରାମରେ ଅସ୍ତ୍ର-ମାନଙ୍କର ନାନାବିଧ ପ୍ରୟୋଗ ଦେଖାଇ ସୁଦ୍ଧା ପ୍ରଧାନତର ପାଣ୍ଡବମାନଙ୍କୁ ସଂହାର କରି ପାରୁନାହାନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଅସ୍ମତ୍ପକ୍ଷୀୟ ମହାରଥ ସଂଶପ୍ତକଗଣ ଅର୍ଜ୍ଜୁନଙ୍କୁ ବିନାଶ କରିବାକୁ ସଂସ୍ଥାପିତ ହୋଇ ଅର୍ଜ୍ଜୁନଙ୍କଦ୍ୱାରା ବିନିହତ ହୋଇଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଗୃହୀତଶସ୍ତ୍ର ଭରଦ୍ୱାଜତନୟ ଦ୍ରୋଣାଚାର୍ଯ୍ୟ ଅନ୍ୟର ଅଭେଦ୍ୟ ବ୍ୟୂହ ରକ୍ଷା କଲେ ହେଁ ଅଦ୍ୱିତୀୟ ବୀର ସୁଭଦ୍ରାତନୟ ଅଭିମନ୍ୟୁ ସେହି ବ୍ୟୂହକୁ ଭେଦ କରି ପ୍ରବିଷ୍ଟ ହୋଇଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ମହାରଥୀମାନେ ପାର୍ଥଙ୍କୁ ବଧ କରିବାକୁ ଅସମର୍ଥ ହୋଇ ସମସ୍ତେ ମିଳି

ଘୃଣୀଆଡ଼ୁ ପରିବେଷ୍ଟନ କରି ବାଳକ ଅଭିମନ୍ୟୁଙ୍କୁ ବଧ କଲେ ଓ ହୃଷ୍ଟ ହେଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ମୋର ମୂଢ଼ ପୁତ୍ରମାନେ ଅଭିମନ୍ୟୁଙ୍କୁ ବିନାଶ କରି ହର୍ଷରେ କୋଳାହଳ କରୁଅଛନ୍ତି ଓ ଅର୍ଜ୍ଜୁନ କ୍ରୋଧରେ ସିନ୍ଧୁରାଜ ଜୟଦ୍ରଥଙ୍କୁ ବଧ କରିବାକୁ ପ୍ରତିଜ୍ଞା କରିଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି—ଅର୍ଜ୍ଜୁନ ଜୟଦ୍ରଥଙ୍କୁ ବଧ କରିବାର ପ୍ରତିଜ୍ଞା କରି ସେ ପ୍ରତିଜ୍ଞାକୁ ସତ୍ୟ କରି ଶତ୍ରୁଙ୍କଠାରୁ ଉତ୍ତୀର୍ଣ୍ଣ ହୋଇଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ୧୯୨ ।

ଯେତେବେଳେ ଶୁଣିଲି ଅର୍ଜ୍ଜୁନଙ୍କ ଅଶ୍ୱମାନେ କ୍ଳାନ୍ତ ହେବାରୁ ବାସୁଦେବ ସେମାନଙ୍କୁ ବନ୍ଧନମୁକ୍ତ କରି ଜଳପାନ କରାଇ ପୁନରପି ରଥରେ ଯୋଜନା କରି ଯୁଦ୍ଧକୁ ଗମନ କଲେ; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ବାହନମାନେ ଅକ୍ଷମ ହେବାରୁ ଅର୍ଜ୍ଜୁନ ସାରଥିଙ୍କ ଆସନରେ ଅବସ୍ଥିତ କରି ଗାଣ୍ଡୀବ ଧନୁଦ୍ୱାରା ଆମ୍ଭମାନଙ୍କର ଯୋଦ୍ଧାମାନଙ୍କୁ ନିବାରିତ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି, ବୃଷ୍ଣିକୁଳପ୍ରସୂତ ସାତ୍ୟକି ହସ୍ତୀସୈନ୍ୟଦ୍ୱାରା ଦୁର୍ଦ୍ଧର୍ଷ ଦ୍ରୋଣ-ସେନାଙ୍କୁ ମର୍ଦ୍ଦିତ କରି କୃଷ୍ଣ ଓ ପାର୍ଥଙ୍କ ନିକଟକୁ ଗମନ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି, କର୍ଣ୍ଣ ବୀରବର ଭୀମଙ୍କୁ ଶରାସନର ଅଗ୍ରଭାଗଦ୍ୱାରା ଅଶେଷ କ୍ଳେଶ ପ୍ରଦାନ କରି ନାନାବିଧ କଟୁବାକ୍ୟରେ ଭର୍ତ୍ସନା କରି, କିନ୍ତୁ ବଧ ନ କରି ପରିତ୍ୟାଗ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ ।

ଯେତେବେଳେ ଶୁଣିଲି, ଦ୍ରୋଣ, କୃତବର୍ମା, କୃପ, କର୍ଣ୍ଣ, ଅଶ୍ୱତ୍ଥାମା ଓ ମଦ୍ରରାଜ ବୀରବର ଶଲ୍ୟ ସମସ୍ତେ ଜୟଦ୍ରଥବଧ ସହ୍ୟ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି, କର୍ଣ୍ଣଙ୍କ ସହିତ ଘଟୋତ୍କଚର ଯୁଦ୍ଧ ଉପସ୍ଥିତ ହେବାରୁ ଅର୍ଜ୍ଜୁନଙ୍କ ବଧ ନିମନ୍ତେ ଦେବରାଜ ଯେଉଁ ଶକ୍ତି କର୍ଣ୍ଣଙ୍କୁ ଦେଇଥିଲେ ସେହି ଶକ୍ତିକୁ ସୂତପୁତ୍ର କର୍ଣ୍ଣ ଘୋର ରାକ୍ଷସ ଘଟୋତ୍କଚ

ପ୍ରତି ପ୍ରୟୋଗ କଲେହେଁ ମାଧବ ତାହାଙ୍କୁ ନିଷ୍ଫଳ କରିଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ ।

ଯେତେବେଳେ ଶୁଣିଲି ଅଦ୍ୱିତୀୟ ବୀର ଦ୍ରୋଣାଚାର୍ଯ୍ୟ ପ୍ରାୟୋପବେଶନ କରି ରଥ ମଧ୍ୟରେ ଅବସ୍ଥିତି କରିବାରୁ ଧୃଷ୍ଟଦ୍ୟୁମ୍ନ ଧର୍ମକୁ ଅତିକ୍ରମ କରି ତାହାଙ୍କୁ ଛିନ୍ନ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ମାଦ୍ରୀଙ୍କ ପୁତ୍ର ନକୁଳ ସମରରେ ସୈନ୍ୟ ମଧ୍ୟରେ ମଣ୍ଡଳାକାରରେ ଭ୍ରମଣ କରି ଅଶ୍ୱତ୍ଥାମାଙ୍କ ସହିତ ସମଭାବରେ ଦ୍ୱୈରଥ ଯୁଦ୍ଧ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଦ୍ରୋଣ ନିହତ ହେବାରୁ ତାହାଙ୍କ ପୁତ୍ର ଅଶ୍ୱତ୍ଥାମା ଦିବ୍ୟ ନାରାୟଣାସ୍ତ୍ର ନିକ୍ଷେପ କରି ସୁଦ୍ଧା ପାଣ୍ଡବମାନଙ୍କୁ ନିଧନ କରିପାରି ନାହାନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି, ଭୀମସେନ ସମରରେ ଦୁର୍ଯ୍ୟୋଧନଙ୍କର ସହୋଦର ଦୁଃଶାସନର ରୁଧିର ପାନ କରିଅଛନ୍ତି ଓ କେହି ତାହାଙ୍କୁ ନିବାରଣ କରିପାରି ନାହାନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ ।

ଯେତେବେଳେ ଶୁଣିଲି, ଅର୍ଜ୍ଜୁନ ଏହି ଦେବଗୁହ୍ୟ ଭ୍ରାତୃଯୁଦ୍ଧରେ ବୀରପ୍ରଧାନ ଦୁର୍ଦ୍ଧର୍ଷ କର୍ଣ୍ଣଙ୍କୁ ନିହତ କରିଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି, ଦ୍ରୋଣପୁତ୍ର ଅଶ୍ୱତ୍ଥାମା, ଶୂରବର ଦୁଃଶାସନ ଓ ଉଗ୍ରସ୍ୱଭାବ କୃତବର୍ମାଙ୍କୁ ଧର୍ମରାଜ ଯୁଧିଷ୍ଠିର ଜୟ କରିଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଯେ ଯେଉଁ ମଦ୍ରରାଜ ଶଲ୍ୟ ସର୍ବଦା ସମରରେ କୃଷ୍ଣଙ୍କୁ ଜୟ କରିବାକୁ ଇଚ୍ଛା କରୁଥିଲେ, ସେହି ଶଲ୍ୟଙ୍କୁ ଯୁଧିଷ୍ଠିର ରଣରେ ନିହତ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ୨୦୭ ।

ଯେତେବେଳେ ଶୁଣିଲି ପାଣ୍ଡୁପୁତ୍ର ସହଦେବ କଳହ ଓ ଦ୍ୟୂତକ୍ରୀଡ଼ାର ନିଦାନ, ମାୟାବୀ, ପାପିଷ୍ଠ ସୁବଳନନ୍ଦନ ଶକୁନିଙ୍କୁ ରଣରେ ବିନାଶ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଦୁର୍ଯ୍ୟୋଧନ ଭଗ୍ନବଳ, ରଥହୀନ ଓ ରଣ-

ଶ୍ରାନ୍ତ ହୋଇ, ଏକାକୀ ହ୍ରଦକୁ ଯାଇ ଜଳର ସ୍ତମ୍ଭନ କରି ଶୟାନ କରି-ଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ। ଯେତେବେଳେ ଶୁଣିଲି ପାଣ୍ଡବମାନେ ବାସୁଦେବଙ୍କ ସହିତ ହ୍ରଦକୁ ଗମନ କରି ଦଣ୍ଡାୟମାନ ହୋଇ ଅତି କ୍ରୋଧୀ ଆମ୍ଭର ପୁତ୍ରକୁ ତିରସ୍କାର କରି-ଅଛନ୍ତି; ହେ ସଞ୍ଜୟ ! ସେତେବେଳେ ଆଉ ଜୟର ଆଶା କରେ ନାହିଁ। ଯେତେବେଳେ ଶୁଣିଲି ଦୁର୍ଯ୍ୟୋଧନ ଗଦାଯୁଦ୍ଧରେ ନାନାବିଧ ବିଚିତ୍ର ଗତି ପ୍ରଦର୍ଶନପୂର୍ବକ ମଣ୍ଡଳାକାରରେ ଭ୍ରମଣ କରୁ କରୁ କୃଷ୍ଣଙ୍କ ବୁଦ୍ଧିରେ ଅନ୍ୟାୟ ରୂପେ ଆହତ ହୋଇଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଅଶ୍ୱତ୍ଥାମା ପ୍ରଭୃତି ବୀରମାନେ ନିଦ୍ରିତ ପାଞ୍ଚାଳମାନଙ୍କର ଓ ଦ୍ରୌପଦୀଙ୍କ ପୁତ୍ରମାନଙ୍କୁ ବିନଷ୍ଟ କରି ଘୃଣିତ ଓ ଅଯଶସ୍କର କର୍ମ କରିଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଅଶ୍ୱତ୍ଥାମା ଯେ ଅସ୍ତ୍ରଦ୍ୱାରା ଉତ୍ତରାଙ୍କ ଗର୍ଭପାତନ କରିଅଛନ୍ତି, ଭୀମସେନ କ୍ରୁଦ୍ଧ ହୋଇ ଅଶ୍ୱତ୍ଥାମାଙ୍କ ପଶ୍ଚାତ୍ ପଶ୍ଚାତ୍ ଧାବମାନ ହୋଇ ସେହି ଐଷିକାସ୍ତ୍ରକୁ ତାହାଙ୍କ ପ୍ରତି ନିକ୍ଷେପ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ୨୧୨ ।

ଯେତେବେଳେ ଶୁଣିଲି ଅର୍ଜ୍ଜୁନ ସ୍ୱସ୍ତି ବୋଲି କହି ସ୍ୱୀୟ ଅସ୍ତ୍ରଦ୍ୱାରା ବ୍ରହ୍ମର୍ଷିର ଅସ୍ତ୍ରକୁ ନିବାରିତ କରିଅଛନ୍ତି ଓ ଅଶ୍ୱତ୍ଥାମା ମଣି ଓ ରତ୍ନ ପ୍ରଦାନ କରିଅଛନ୍ତି, ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ । ଯେତେବେଳେ ଶୁଣିଲି ଦ୍ରୋଣପୁତ୍ର ଅଶ୍ୱତ୍ଥାମା ବିରାଟତନୟା ଉତ୍ତରାଙ୍କ ଗର୍ଭପାତ କରିବାରୁ ଦ୍ୱୈପାୟନ ଓ କେଶବ ତାହାଙ୍କୁ ଶାପ ପ୍ରଦାନ କରିଅଛନ୍ତି; ହେ ସଞ୍ଜୟ ! ତଦବଧି ଆଉ ଜୟର ଆଶା କରେ ନାହିଁ ।

ଗାନ୍ଧାରୀଙ୍କର ପୁତ୍ର, ପୌତ୍ର, ପିତା, ଭ୍ରାତା ଓ ବନ୍ଧୁ କେହି ନାହାନ୍ତି, ଏକ୍ଷଣେ ସେ ଶୋଚନୀୟ ଅବସ୍ଥା ପ୍ରାପ୍ତ ହୋଇଅଛନ୍ତି, ପାଣ୍ଡବ-ମାନେ ଦୁଷ୍କର କାର୍ଯ୍ୟ କରି ପୁନର୍ବାର ନିଷ୍କଣ୍ଟକ ରାଜ୍ୟ ଲାଭ କରିଅଛନ୍ତି।

୨୧୨ । ଯଦି ଅଶ୍ୱତ୍ଥାମା ଜୀବିତ ଥାନ୍ତେ, ତେବେ ତାଙ୍କଦ୍ୱାରା ଦୁର୍ଯ୍ୟୋଧନଙ୍କ କ୍ଷେତ୍ରରେ ପୁତ୍ରୋତ୍ପାଦନ କରି ବଂଶରକ୍ଷା କରି ହୋଇଥାନ୍ତା ; ମାତ୍ର ଅଶ୍ୱତ୍ଥାମାଙ୍କ ରତ୍ନହରଣାଦି ଦୁର୍ଗତି ହେବାରୁ ସେ ଆଶା ରହିତ ହେଲା ।

ଙ୍କ କଷ୍ଟ ! ଏହି ଯୁଦ୍ଧରେ ଆମ୍ଭ ପକ୍ଷୀୟ ତିନି ଜଣ ଓ ପାଣ୍ଡବମାନଙ୍କର ସାତ ଜଣ ସମୁଦାୟରେ ଦଶ ଜଣ ମାତ୍ର ଅବଶିଷ୍ଟ ଅଛନ୍ତି । କ୍ଷତ୍ରିୟ-ମାନଙ୍କର ଏହି ଘୋରତର ସଂଗ୍ରାମରେ ଅଷ୍ଟାଦଶ ଅକ୍ଷୌହିଣୀ ନିହତ ହୋଇଅଛନ୍ତି । ୨୧୭ । ହେ ସୂତ ! ଆମ୍ଭେ ସବୁ ଦିଗ ଘୋର ଅନ୍ଧକାରମୟ ଦେଖୁଅଛୁ । ମୋହରେ ଅଭିଭୂତ ହେଉଅଛୁ, ଚୈତନ୍ୟ ଲାଭ କରିବାକୁ ପାରୁ ନାହୁଁ ଓ ଆମ୍ଭର ମନ ଅତ୍ୟନ୍ତ ବିହ୍ୱଳ ହେଉଅଛି । ୨୧୮ ।

' ଉଗ୍ରଶ୍ରବା କହିଲେ—ହେ ଋଷିଗଣ ! ଧୃତରାଷ୍ଟ୍ର ଏହି ସବୁ କଥା କହି ବହୁତର ବିଳାପ କରି ଅତ୍ୟନ୍ତ ଦୁଃଖିତ ଓ ମୂର୍ଚ୍ଛିତ ହେଲେ । ପରେ ଆଶ୍ୱାସିତ ହୋଇ ପୁନରାୟ ସଞ୍ଜୟଙ୍କୁ କହିଲେ, ହେ ସଞ୍ଜୟ ! ଏପରି ଘଟଣା ହେବାରୁ ଆମ୍ଭେ ଶୀଘ୍ର ପ୍ରାଣ ପରିତ୍ୟାଗ କରିବାକୁ ଇଚ୍ଛା କରୁଅଛୁ, ଆମ୍ଭର ଜୀବନଧାରଣରେ ଆଉ ଅଣୁମାତ୍ର ଫଳ ଦେଖୁନାହୁଁ । ୨୧୯ ।

ଉଗ୍ରଶ୍ରବା କହିଲେ—ହେ ତପସ୍ୱିଗଣ ! ଦୀନଭାବାପନ୍ନ ଧୃତରାଷ୍ଟ୍ର ଏହିସବୁ କଥା କହି ହସ୍ତୀପ୍ରାୟ ଦୀର୍ଘନିଃଶ୍ୱାସ ପରିତ୍ୟାଗ ପୂର୍ବକ ବିଳାପ କରି କରି ବାରମ୍ବାର ମୋହପ୍ରାପ୍ତ ହେଲେ । ସେ କାଳରେ ଧୀମାନ୍ ସଞ୍ଜୟ ତାହାଙ୍କୁ ଏହି ମହାର୍ଥଯୁକ୍ତ ବାକ୍ୟ କହିଲେ—ମହାରାଜ ! ଆପଣ ବୁଦ୍ଧିମାନ୍ ନାରଦ ଓ ଦ୍ୱୈପାୟନଙ୍କ ମୁଖରୁ ଶୁଣିଅଛନ୍ତି ଯେ ଅନେକ ଲୋକ ସର୍ବଗୁଣସମ୍ପନ୍ନ ଅତି ପ୍ରଧାନ ରାଜବଂଶରେ ଜନ୍ମ ପରିଗ୍ରହପୂର୍ବକ ମହୋତ୍ସାହ, ମହାବଳ, ଦିବ୍ୟାସ୍ତ୍ର-ବିଶାରଦ ଓ ଇନ୍ଦ୍ରତୁଲ୍ୟ ତେଜସ୍ୱୀ ହୋଇ ଧର୍ମାନୁସାରେ ପୃଥିବୀ ଜୟ ଓ ଦକ୍ଷିଣା ସହିତ ନାନାବିଧ ଯଜ୍ଞ ସମାପନ କରି ଇହ-ଲୋକରେ ଯଶୋଲାଭ କରି ପରିଶେଷରେ ମୃତ୍ୟୁର ବଶବର୍ତ୍ତୀ ହୋଇ-ଅଛନ୍ତି । ପୂର୍ବକାଳରେ ଦେବର୍ଷି ନାରଦ ପୁତ୍ରଶୋକସନ୍ତପ୍ତ ଶୈବ୍ୟରାଜାଙ୍କ ନିକଟରେ ମହାରଥ ଶୈବ୍ୟ, ବିଜୟୀଶ୍ରେଷ୍ଠ ସଞ୍ଜୟ, ସୁହୋତ୍ର, ରନ୍ତିଦେବ, ମହାଦ୍ୟୁତି, କାକ୍ଷୀବାନ୍, ବାହ୍ଲୀକ, ଦମନ, ଶର୍ଯ୍ୟାତି, ଅଜିତ, ନଳ, ଶତ୍ରୁସୂଦନ ବିଶ୍ୱାମିତ୍ର, ମହାବଳ ଅମ୍ବରୀଷ, ମରୁତ୍ତ, ମନୁ, ଇକ୍ଷ୍ୱାକୁ, ଗୟ, ଭରତ, ଦଶରଥାତ୍ମଜ ରାମ, ପରଶୁରାମ, ଶଶବିନ୍ଦୁ, ଭଗୀରଥ, କୃତବୀର୍ଯ୍ୟ, ମହାଭାଗ ଜନମେଜୟ ଓ ଦେବତାମାନେ ସ୍ୱୟଂ ଯାହାଙ୍କୁ ଯଜ୍ଞ କରାଉ-ଥିଲେ ଓ ଯାହାଙ୍କ ଚୈତ୍ୟ ଓ ଯୂପସମୂହରେ ଏହି ସକାନନାମେଦିନୀ

୨୧୭—କୃପ, ଅଶ୍ୱତ୍ଥାମା ଓ କୃତବର୍ମା ତିନିଜଣ, କୃଷ୍ଣ, ସାତ୍ୟକି ଓ ପଞ୍ଚପାଣ୍ଡବ ସାତ ଜଣ, ଏପରି ସମୁଦାୟ ଦଶ ଜଣ ।

ଅଙ୍କିତ ହୋଇଥିଲା ସେହି ଶୁଭକର୍ମା ଯଯାତି ଏହି ଚତୁର୍ବିଂଶତି ଭୂପାଳଙ୍କ ଉପାଖ୍ୟାନ କୀର୍ତ୍ତନ କରିଅଛନ୍ତି । ଏତଦ୍ଭିନ୍ନ ଅନେକ ବୀର୍ଯ୍ୟବାନ୍ ମହାରଥ ମହାତ୍ମାବୃନ୍ଦ ଗୁଣସମ୍ପନ୍ନ ନରପତି ପୂର୍ବେ ପରଲୋକକୁ ଗମନ କରିଅଛନ୍ତି । ୨୨୯ ।

ହେ ପ୍ରଭୋ ! ଇଦାନୀଂ ଶ୍ରବଣ କରାଯାଏ ଯେ ପୁରୁ, କୁରୁ, ଯଦୁ, ଶୂର, ମହାଦ୍ୟୁତି, ବିଷ୍ବଗଶ୍ୱ, ଅଣୁହ, ଯୁବନାଶ୍ୱ, କକୁତ୍ସ୍ଥ, ବିକ୍ରମଶାଳୀ, ରଘୁ, ବିଜୟ, ବୀତିହୋତ୍ର, ଅଙ୍ଗ, ଭବ, ଶ୍ୱେତ, ବୃହଦ୍‌ଗୁରୁ, ଉଶୀନର, ଶତରଥ, କଙ୍କ, ଦୁଲିଦୁହ, ଦ୍ରୁମ, ଦମ୍ଭୋଦ୍ଭବ, ପରି, ବେଣ, ସଗର, ସଙ୍କୃତି, ନିମି, ଅଜେୟ, ପରଶୁ, ପୁଣ୍ଡ୍ର, ଶମ୍ଭୁ, ଅନଘ-ଦେବାବୃଧ, ଦେବାହ୍ୱୟ, ସୁପ୍ରତିମ, ସୁପ୍ରତୀକ, ବୃହଦ୍ରଥ, ମହୋତ୍ସାହ, ବିନୀତାତ୍ମା, ସୁକ୍ରତୁ, ନିଷଧାଧିପତି ନଳ, ସତ୍ୟବ୍ରତ, ଶାନ୍ତଭୟ, ସୁମିତ୍ର, ପ୍ରଭୁ, ସୁବଳ, ଜାନୁଜଙ୍ଘ, ଅନରଣ୍ୟ, ଅର୍କ, ପ୍ରିୟଭୃତ୍ୟ, ଶୁଚିବ୍ରତ, ବଳବନ୍ଧୁ, ନିରାମର୍ଦ୍ଦ, କେତୁଶୃଙ୍ଗ, ବୃହଦ୍‌ବଳ, ଧୃଷ୍ଟକେତୁ, ବୃହତ୍‌କେତୁ, ନିରାମୟ, ଦୀପ୍ତକେତୁ, ଅବିକ୍ଷିତ, ଚପଳ, ଧୂର୍ତ୍ତ, କୃତବନ୍ଧୁ, ଦୃଢ଼େଷୁଧି, ମହାପୁରାଣସମ୍ଭାବ୍ୟ, ପ୍ରତ୍ୟଙ୍ଗ, ପରହା ଓ ଶ୍ରୁତି ଏହି ସମସ୍ତ ରାଜା ଓ ଏହାଙ୍କ ଭିନ୍ନ ଅନ୍ୟାନ୍ୟ ଶତ ଶତ ସହସ୍ର ସହସ୍ର ଅଯୁତ ଅଯୁତ ଓ ପଦ୍ମ ପଦ୍ମ ସଂଖ୍ୟକ ଧୀମାନ୍ ମହାବଳଶାଳୀ ଭୂପାଳଗଣ ଆପଣଙ୍କ ପୁତ୍ରମାନଙ୍କ ପ୍ରାପ୍ୟ ବିପୁଳ ବିଭବ ପରିତ୍ୟାଗ କରି ନିଧନପ୍ରାପ୍ତ ହୋଇଅଛନ୍ତି । ୨୩୭ ।

ବିଦ୍ୟାବଳରେ ଉତ୍କୃଷ୍ଟ କବିମାନେ ପୁରାଣରେ ଯେଉଁମାନଙ୍କର ଦିବ୍ୟ କର୍ମାବଳୀ, ବିକ୍ରମ, ଦାନ, ମାହାତ୍ମ୍ୟ, ଆସ୍ତିକ୍ୟ, ଶୌଚ, ଦୟା ଓ ସରଳତା କୀର୍ତ୍ତନ କରିଅଛନ୍ତି ସେହି ସର୍ବଗୁଣସମ୍ପନ୍ନ ଧରାପତିମାନେ ସୁଦ୍ଧା ନିଧନପ୍ରାପ୍ତ ହୋଇଅଛନ୍ତି । ହେ ମହାରାଜ ! ଆପଣଙ୍କର ପୁତ୍ରମାନେ ଦୁରାତ୍ମା, କ୍ରୋଧରେ ଉଦ୍ଦୀପିତ, ଲୋଭରେ ଅଭିଭୂତ ଓ ଅତ୍ୟନ୍ତ ଦୁଷ୍ଟଚରିତ୍ର ଥିଲେ । ସେମାନଙ୍କ ନିମନ୍ତେ ଆପଣଙ୍କର ଶୋକ କରିବା ଉଚିତ ନୁହେଁ; ଯେହେତୁ ଆପଣ ଶାସ୍ତ୍ରଜ୍ଞ, ମେଧାବୀ, ବୁଦ୍ଧିମାନ୍ ଓ ପ୍ରାଜ୍ଞଗଣ ପୂଜିତ । ଯେଉଁମାନଙ୍କ ବୁଦ୍ଧି ଶାସ୍ତ୍ରାନୁଗାମିନୀ, ସେମାନେ କଦାପି ମୋହରେ ଅଭିଭୂତ ହୁଅନ୍ତି ନାହିଁ । ୨୪୨ ।

ହେ ନରନାଥ ! ଦୈବନିଗ୍ରହ ଓ ଦୈବାନୁଗ୍ରହ ଆପଣଙ୍କୁ ବିଦିତ ଅଛି । ଅତଏବ ପୁତ୍ରଗଣଙ୍କ ରକ୍ଷା ବିଷୟରେ ଏକାନ୍ତ ଅନୁଶୋଚନା

କରିବା ବିଧେୟ ନୁହେଁ । ଯାହା ଭବିତବ୍ୟ ତାହା ନିଶ୍ଚୟ ଘଟିଥାଏ; ତନ୍ନିମନ୍ତେ ପାଇଁ ଅନୁଶୋଚନା କରିବା କର୍ତ୍ତବ୍ୟ ନୁହେଁ । କେଉଁ ବ୍ୟକ୍ତି ଆପଣାର ପ୍ରଖର ବୁଦ୍ଧିବଳରେ ଦୈବୀ ଘଟନାକୁ ନିବାରଣ କରିପାରେ ? ବିଧାତୃ-ବିହିତ ପଥ ଅତିକ୍ରମ କରିବାକୁ କେହି ସମର୍ଥ ହୋଇ ପାରନ୍ତି ନାହିଁ । ଜନ୍ମ, ମୃତ୍ୟୁ ଓ ସୁଖ ଦୁଃଖ ଏହି ସବୁ କାଳମୂଳକ । କାଳ ଭୂତମାନଙ୍କୁ ସୃଷ୍ଟି କରୁଅଛି; କାଳ ପ୍ରଜାସମୂହଙ୍କୁ ସଂହାର କରୁଅଛି । ପୁନରପି ସେହି କାଳ ପ୍ରଜାସଂହାରକାରୀ କାଳକୁ ଶାନ୍ତ କରୁଅଛି । କାଳ ଜୀବଲୋକରେ ଶୁଭାଶୁଭ ପଦାର୍ଥସକଳ ସୃଜନ କରୁଅଛି । କାଳ ପ୍ରଜାମାନଙ୍କୁ ସଂହାର କରି ପୁନର୍ବାର ଉତ୍ପାଦନ କରୁଅଛି । ସମୁଦାୟ ଜଗତ ସୁପ୍ତ ହେଲେ ଏକାକୀ କାଳ ଜାଗରିତ ଥାଏ । କାଳକୁ କେହି ଅତିକ୍ରମ କରି ପାରନ୍ତି ନାହିଁ । କାଳ ଅପ୍ରତିହତ ହୋଇ ସମଭାବରେ ସକଳ ଭୂତଠାରେ ବିଚରଣ କରୁଅଛି । ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ସମୁଦାୟ ପଦାର୍ଥ ଏହି କାଳ-ନିର୍ମିତ; ଏହା ଜାଣି ମୋହରେ ଅଚେତନ ହେବା ଆପଣଙ୍କର ଉଚିତ ହେଉନାହିଁ । ୨୪୯ ।

ଉଗ୍ରଶ୍ରବା କହିଲେ—ହେ ମୁନିଗଣ ! ଏପରି କହି ଗାବଲଗଣି ସୂତପୁତ୍ର ଶୋକରେ ସନ୍ତପ୍ତ ନରପତି ଧୃତରାଷ୍ଟ୍ରଙ୍କୁ ଆଶ୍ୱାସିତ କରି ସେହି କାଳରେ ସୁସ୍ଥ କଲେ । ମହର୍ଷି କୃଷ୍ଣଦ୍ୱୈପାୟନ ଏ ବିଷୟରେ ଗୋଟିଏ ପବିତ୍ର ଉପନିଷଦ୍ କହିଅଛନ୍ତି । ବିଦ୍ୱାନ୍ ସାଧୁତମ କବିମାନେ ନରଲୋକ ମଧ୍ୟରେ ପୁରାଣରେ ତାହା କୀର୍ତ୍ତନ କରିଥାନ୍ତି । ଭାରତର ଅଧ୍ୟୟନ ପୁଣ୍ୟ-ଜନକ । ଯେଉଁ ବ୍ୟକ୍ତି ଶ୍ରଦ୍ଧା ସହକାରେ ଏହାର କୌଣସି ଶ୍ଳୋକର ଗୋଟିଏ ଚରଣ ସୁଦ୍ଧା ପାଠ କରେ, ତାହାର ସମସ୍ତ ପାପ ନିଃଶେଷରେ ବିନଷ୍ଟ ହୁଏ । ଏଥିରେ ଦେବ, ଦେବର୍ଷି, ନିର୍ମଳ ଶୁଭକର୍ମା ବ୍ରହ୍ମର୍ଷି, ଯକ୍ଷ ଓ ମହୋରଗଗଣଙ୍କ କଥା କୀର୍ତ୍ତିତ ହୋଇଅଛି । ଯେ ସତ୍ୟସ୍ୱରୂପ ପୁଣ୍ୟଜନକଂ ଅତି ପବିତ୍ର, ନିତ୍ୟ, ପରଂବ୍ରହ୍ମ, ନିଶ୍ଚଳ, ସନାତନ ଓ ଜ୍ୟୋତିଃସ୍ୱରୂପ; ପଣ୍ଡିତମାନେ ଯାହାଙ୍କର ଦିବ୍ୟ କର୍ମାବଳୀ କୀର୍ତ୍ତନ କରନ୍ତି, ଯାହାଙ୍କଠାରୁ ସତ୍ ଓ ସଦସଦାତ୍ମକ ବିଶ୍ୱ ସମୁଦ୍ଭୂତ ହୋଇଅଛି, ଯାହାଙ୍କଠାରୁ ନିରବ-ଚ୍ଛିନ୍ନ ସୃଷ୍ଟିପ୍ରବାହ, ଯାଗାଦି, ପ୍ରବୃତ୍ତି, ଜନ୍ମ, ମୃତ୍ୟୁ ଓ ପୁନର୍ଜନ୍ମ ପ୍ରବର୍ତ୍ତିତ ହେଉଅଛି, ଯେ ଆତ୍ମାର ଅଧିଷ୍ଠାତା, ପଞ୍ଚଭୂତ ସ୍ୱରୂପ, ତ୍ରିଗୁଣାତ୍ମକ ଓ ଅବ୍ୟକ୍ତ ପ୍ରଭୃତି ବସ୍ତୁରୁ ଭିନ୍ନ, ଯାହାଙ୍କୁ ଜୀବନ୍ମୁକ୍ତ, ଧ୍ୟାନପରାୟଣ, ଯୋଗବଳଶାଳୀ, ପ୍ରଧାନତମ ଯତିମାନେ ମୁକୁରଗତ ପ୍ରତିବିମ୍ବପ୍ରାୟ ଆତ୍ମା-

ଠାରେ ଅବସ୍ଥିତ ଅବଲୋକନ କରନ୍ତି, ସେହି ଭଗବାନ ବାସୁଦେବ ଏହି ଗ୍ରନ୍ଥରେ କୀର୍ତ୍ତିତ ହୋଇଅଛନ୍ତି । ୨୫୮ ।

ସଦା ଧର୍ମପରାୟଣ କ୍ରିୟାଯୁକ୍ତ ବ୍ୟକ୍ତି, ନିରନ୍ତର ଶ୍ରଦ୍ଧାନ୍ୱିତ ହୋଇ ଏହି ଅନୁକ୍ରମଣିକାଧ୍ୟାୟ ପାଠକଲେ ପାପରୁ ମୁକ୍ତ ହୁଅନ୍ତି । ଆସ୍ତିକ ବ୍ୟକ୍ତି ଭାରତର ଏହି ଅଧ୍ୟାୟକୁ ଆଦରରୁ ସତତଃ ଶ୍ରବଣ କଲେ କ୍ଳେଶସମୂହରେ ଅବସନ୍ନ ହୁଅନ୍ତି ନାହିଁ ଅଥଚ ପ୍ରାତଃକାଳରେ ଓ ସନ୍ଧ୍ୟା ସମୟରେ ଏହି ଅନୁକ୍ରମଣିକାଧ୍ୟାୟର କଅଂଶ ଜପକଲେ ଅହୋରାତ୍ର-ସଞ୍ଚିତ ଯାବତୀୟ ପାପରୁ ତତ୍‌କ୍ଷଣାତ୍ ମୁକ୍ତ ହୁଅନ୍ତି । ଏହି ସତ୍ୟ ଅମୃତମୟ ଅଧ୍ୟାୟ ମହାଭାରତର ଦେହସ୍ୱରୂପ । ଯେମନ୍ତ ଦଧିମଧ୍ୟରେ ନବନୀତ, ଦ୍ୱିପଦମାନଙ୍କ ମଧ୍ୟରେ ବ୍ରାହ୍ମଣ, ବେଦମାନଙ୍କ ମଧ୍ୟରେ ଆରଣ୍ୟକ, ଔଷଧିମାନଙ୍କ ମଧ୍ୟରେ ଅମୃତ, ହ୍ରଦ ସମୂହ ମଧ୍ୟରେ ସମୁଦ୍ର, ଚତୁଷ୍ପଦ-ମାନଙ୍କ ମଧ୍ୟରେ ଗୌ ଶ୍ରେଷ୍ଠ, ସେହିରୂପ ଇତିହାସମାନଙ୍କ ମଧ୍ୟରେ ମହାଭାରତ ଶ୍ରେଷ୍ଠ । ଯେଉଁ ବ୍ୟକ୍ତି ଶ୍ରାଦ୍ଧ ସମୟରେ ଅନ୍ତତଃ ଏହାର ଗୋଟିଏ ଶ୍ଳୋକର ଗୋଟିଏ ପାଦ ବ୍ରାହ୍ମଣମାନଙ୍କୁ ଶୁଣାନ୍ତି, ତାହାଙ୍କର ଅନ୍ନ ଓ ପାନ ଅକ୍ଷୟ ହୋଇ ପିତୃଲୋକର ତୃପ୍ତି ସାଧନ କରେ । ଇତିହାସ ଓ ପୁରାଣ ଦ୍ୱାରା ବେଦର ପୋଷକତା ହୁଏ । ଅଳ୍ପବିଦ୍ୟା ଲୋକଙ୍କ ନିକଟରେ ବେଦ ଭୀତ ହୁଅନ୍ତି ଯେ ଏ ବ୍ୟକ୍ତି ଆମ୍ଭଙ୍କୁ ପ୍ରହାର କରିବେ । ବିଦ୍ୱାନ୍ ବ୍ୟକ୍ତି କୃଷ୍ଣଦ୍ୱୈପାୟନଙ୍କ ପ୍ରଣୀତ ଏହି ବେଦ ଶ୍ରବଣ କରାଇ ଅର୍ଥଲାଭ ଓ ଭ୍ରୂଣହତ୍ୟାଦି ପାପସମୂହକୁ ନିଃସଂଶୟରେ ଭସ୍ମସାତ୍ କରନ୍ତି । ଯେ ଶୁଚି ହୋଇ ପ୍ରତି ପର୍ବଶେଷରେ ଏହି ଅନୁକ୍ରମଣିକାଧ୍ୟାୟକୁ ପାଠ କରନ୍ତି, ଆମ୍ଭ ମତରେ ତାହାଙ୍କର ସମଗ୍ର ମହାଭାରତ ଶ୍ରବଣ କରିବାର ଫଳ ହୁଏ । ଯେଉଁ ନର ଶ୍ରଦ୍ଧାନ୍ୱିତ ହୋଇ ନିତ୍ୟ ଏହି ଋଷିପ୍ରଣୀତ ଅଧ୍ୟାୟକୁ ଶ୍ରବଣ କରନ୍ତି ସେ ସୁଦୀର୍ଘ ଆୟୁ, କୀର୍ତ୍ତି ଓ ସ୍ୱର୍ଗ ଲାଭ କରନ୍ତି । ୨୬୮ ।

ପୂର୍ବକାଳରେ ଦେବତାମାନେ ମିଳିତ ହୋଇ ତୁଳାଦଣ୍ଡର ଏକପାର୍ଶ୍ୱରେ ଚାରିବେଦ ଓ ଅନ୍ୟପାର୍ଶ୍ୱରେ ଏହି ଭାରତକୁ ସ୍ଥାପନ କରି ଧରିଲେ । ଦେଖିଲେ ଯେତେବେଳେ ଏହି ଭାରତ ସରହସ୍ୟ ବେଦ-ଚତୁଷ୍ଟୟ ଅପେକ୍ଷା ଭାରରେ ଅଧିକ ହେଲା, ସେହି ଅବଧି ଏହି ଭୂମଣ୍ଡଳରେ ଏହାକୁ "ମହାଭାରତ" ବୋଲି ଖ୍ୟାତ କଲେ । ବର୍ତ୍ତମାନ କାଳରେ ଏହି ଗ୍ରନ୍ଥ ମହତ୍ତ୍ୱରେ ଓ ଭାରବତ୍ତ୍ୱରେ ଅଧିକ ହେଲା ; ସେହି ମହତ୍ତ୍ୱ ଓ ଭାରବତ୍ତ୍ୱ

ହେତୁରୁ ଏହାକୁ ମହାଭାରତ ବୋଲାଯାଏ । ଯେ ଏହି 'ମହାଭାରତ' ଶବ୍ଦର ବ୍ୟୁତ୍ପତ୍ତିଲଭ୍ୟ ଅର୍ଥ ଜାଣନ୍ତି ସେ ସକଳ ପାପରୁ ମୁକ୍ତ ହୁଅନ୍ତି । ଚାନ୍ଦ୍ରାୟଣ ବ୍ରତାଦି ତପସ୍ୟା ସତ୍କାର୍ଯ୍ୟ ଅଟେ, ବେଦାଧ୍ୟୟନ ସତ୍କାର୍ଯ୍ୟ ଅଟେ, ଯଥାଯଥ ବେଦବିଧିର ଅନୁଷ୍ଠାନ ସତ୍କାର୍ଯ୍ୟ ଅଟେ, କ୍ଷୁତ୍ପିପାସା ସହ୍ୟ କରି ନ୍ୟାୟ ମାର୍ଗରେ ବିତ୍ତୋପାର୍ଜନ କରିବା ସତ୍କାର୍ଯ୍ୟ ଅଟେ, କିନ୍ତୁ ଏଗୁଡ଼ିକ ଚିତ୍ତଶୁଦ୍ଧି ଦ୍ୱାରା କୃତ ନ ହୋଇ ଦମ୍ଭମୂଳକ ହେଲେ ପାପର କାରଣ ହୁଅନ୍ତି ।୨୭୨।

---

## ଦ୍ୱିତୀୟ ଅଧ୍ୟାୟ

ଋଷିମାନେ ପ୍ରଶ୍ନକଲେ—ହେ ସୂତନନ୍ଦନ ! ତୁମ୍ଭେ ଯେଉଁ ସମନ୍ତ-ପଞ୍ଚକର କଥା ନିର୍ଦ୍ଦେଶ କଲ ତାହାର ସବିଶେଷ ବିବରଣ ଆମ୍ଭେମାନେ ଶ୍ରବଣ କରିବାକୁ ଅଭିଳାଷ କରୁଁ । ସୌତି କହିଲେ--ହେ ବିପ୍ରଗଣ ! ସମନ୍ତପଞ୍ଚକର ପରମ କଲ୍ୟାଣକର କଥା ଅବିକଳ ବର୍ଣ୍ଣନ କରୁଅଛୁଁ, ଶ୍ରବଣ କରନ୍ତୁ । ତ୍ରେତା ଓ ଦ୍ୱାପରର ସନ୍ଧିରେ ସମସ୍ତ ଶସ୍ତ୍ରଧାରୀଙ୍କ ଶ୍ରେଷ୍ଠ ଅନଳତୁଲ୍ୟ ତେଜସ୍ୱୀ ପରଶୁରାମ ଅମର୍ଷପରାୟଣ ହୋଇ ପୃଥିବୀକୁ ବାରମ୍ବାର ନିଃକ୍ଷତ୍ରିୟ କଲେ ଓ କ୍ଷତ୍ରିୟମାନଙ୍କ ରୁଧିରରୁ ସମନ୍ତପଞ୍ଚକ ପଞ୍ଚହ୍ରଦ ସୃଷ୍ଟିକରି ସେହି ଶୋଣିତଦ୍ୱାରା ପିତୃଲୋକଙ୍କର ତର୍ପଣ କଲେ । ଅନନ୍ତର ଋଚୀକ ପ୍ରଭୃତି ତଦୀୟ ପିତୃଗଣ ସେଠାରେ ଉପସ୍ଥିତ ହୋଇ କହିଲେ, ହେ ମହାଭାଗ, ମହାଦ୍ୟୁତି ରାମ ! ତୁମ୍ଭର ପିତୃଭକ୍ତି ଓ ପରାକ୍ରମ ଦର୍ଶନରେ ଯତ୍ପରୋନାସ୍ତି ପ୍ରୀତ ହୋଇଅଛୁଁ । ଯଥାଭିଲଷିତ ବର ପ୍ରାର୍ଥନା କର । ରାମ ନିବେଦନ କଲେ—ଯଦି ଆପଣମାନେ ପ୍ରୀତ ହୋଇଥାନ୍ତି ଓ ଯଦି ଆମ୍ଭ ପ୍ରତି ଆପଣମାନଙ୍କର ଅନୁଗ୍ରହ ଜନ୍ମିଥାଏ, ତେବେ ରୋଷବଶ ହୋଇ କ୍ଷତ୍ରକୁଳ ଧ୍ୱଂସ କରିବାରୁ ଯେ ପାପଗ୍ରସ୍ତ ହୋଇଅଛୁଁ ଆମ୍ଭଙ୍କୁ ତହିଁରୁ ନିର୍ମୁକ୍ତ କରନ୍ତୁ ଓ ଏହି ପଞ୍ଚହ୍ରଦ ପୃଥିବୀରେ ଯେପରି ତୀର୍ଥରୂପରେ ବିଶ୍ରୁତ ହୁଏ ଆପଣମାନେ ତଦ୍ରୂପ ଅନୁମତି କରନ୍ତୁ । ପିତୃଗଣ 'ତଥାସ୍ତୁ' ବୋଲି ଯଥାପ୍ରାର୍ଥିତ ବର ପ୍ରଦାନ କଲେ ଓ ଏଥର କ୍ଷମା କର ବୋଲି କହିଲେ । ତଦବଧି ଜାମଦଗ୍ନ୍ୟ ନିରସ୍ତ ରହିଲେ । ୧୦ ।

ଏହିରୂପେ ପଞ୍ଚରୁଧିର ହ୍ରଦରୁ ସେ ସ୍ଥାନ ସମନ୍ତପଞ୍ଚକ ବୋଲି ବିଖ୍ୟାତ ହେଲା । ପଣ୍ଡିତମାନେ କହନ୍ତି, ଯେଉଁ ଦ୍ରବ୍ୟ ଯେଉଁ ସ୍ଥାନରେ ପ୍ରଧାନ ଚିହ୍ନ ସ୍ୱରୂପ ଉପଲକ୍ଷିତ ହୁଅଇ ସେହି ଦ୍ରବ୍ୟଦ୍ୱାରା ସେହି ପ୍ରଦେଶ ଅଭିହିତ ହେବା ଉଚିତ । କାଳକ୍ରମରେ ଦ୍ୱାପର ଓ କଳିର ସନ୍ଧି ଉପସ୍ଥିତ ହେବାରୁ ସେହି ଭୂଦୋଷ ବର୍ଜିତ ବିସ୍ତୀର୍ଣ୍ଣ ପରମ ପବିତ୍ର ତୀର୍ଥରେ କୁରୁ ପାଣ୍ଡବମାନଙ୍କର ଅଷ୍ଟାଦଶ ଅକ୍ଷୌହିଣୀ ସେନା ଯୁଦ୍ଧାର୍ଥ ସମବେତ ହୋଇ ନିଧନପ୍ରାପ୍ତ ହୋଇଥିଲେ । ହେ ବ୍ରତପରାୟଣ ତପୋଧନଗଣ ! ସେହି ପ୍ରଦେଶ ଯେପରି ପରମ ପବିତ୍ର ରମଣୀୟ ତୀର୍ଥରୂପରେ ଲୋକକ୍ଷୟରେ ପ୍ରଖ୍ୟାତ ହୋଇଅଛି, ତତ୍ସମୁଦାୟ ଆପଣମାନଙ୍କ ନିକଟରେ କୀର୍ତ୍ତନ କଲି ।

ଅନନ୍ତର ଋଷିମାନେ କହିଲେ, ହେ ଲୋମହର୍ଷଣକୁମାର ! ତୁମ୍ଭେ ଯେଉଁ ଅକ୍ଷୌହିଣୀର କଥା କହିଲ ତହିଁରେ ପଦାତି, ଅଶ୍ୱ, ରଥ ଓ ହସ୍ତୀଙ୍କର ଯେପରି ପରିମାଣ ତାହା ଶୁଣିବାକୁ ଇଚ୍ଛା କରୁ । ତୁମ୍ଭଙ୍କୁ ସମସ୍ତ ବିଦିତ ଅଛି, ଯଥାଯଥ ଭାବରେ ବର୍ଣ୍ଣନା କରି ଆମ୍ଭମାନଙ୍କର ଔତ୍ସୁକ୍ୟ ଦୂର କର । ସୌତି କହିଲେ, ଗୋଟିଏ ରଥ, ଗୋଟିଏ ହସ୍ତୀ, ପଞ୍ଚପଦାତି ଓ ତିନି ଅଶ୍ୱରେ ଗୋଟିଏ ପତ୍ତି ବୋଲାଯାଏ । ପଣ୍ଡିତମାନେ ଏହିରୂପ ତିନି ପତ୍ତିରେ ଗୋଟିଏ ସେନାମୁଖ ବୋଲି ବୋଲନ୍ତି । ତିନି ସେନାମୁଖରେ ଗୋଟିଏ ଗୁଲ୍ମ, ତିନି ଗୁଲ୍ମରେ ଏକ ଗଣ, ତିନି ଗଣରେ ଏକ ବାହିନୀ, ତିନି ବାହିନୀରେ ଏକ ପୃତନା, ତିନି ପୃତନାରେ ଏକ ଚମୂ, ତିନି ଚମୂରେ ଏକ ଅନୀକିନୀ ଓ ଦଶ ଅନୀକିନୀରେ ଏକ ଅକ୍ଷୌହିଣୀ ହୁଏ ବୋଲି କହନ୍ତି । ସୁତରାଂ ଗଣିତ ତତ୍ତ୍ୱଜ୍ଞମାନେ ଏକ ଅକ୍ଷୌହିଣୀ ସେନାରେ ଏକବିଂଶତି ସହସ୍ର ଅଷ୍ଟଶତ ସପ୍ତତି (୨୧୮୭୦) ରଥ, ତାବତ୍ ସଂଖ୍ୟକ ଗଜ, ଏକଲକ୍ଷ ନବସହସ୍ର ତ୍ରିପଞ୍ଚାଶତ୍ (୧୦୯୦୫୩) ପଦାତି ଓ ପଞ୍ଚଷଷ୍ଟି ସହସ୍ର ଷଟ୍ ଶତଦଶ (୬୫୬୧୦) ଅଶ୍ୱର ସଂଖ୍ୟା ସ୍ଥିର କରି-ଅଛନ୍ତି ।

ସୌତି କହିଲେ, ହେ ତପୋଧନଗଣ ! ଆମ୍ଭେ ଯେପରି ସବିସ୍ତାରେ ବର୍ଣ୍ଣନା କଲୁଁ, ତତ୍ତ୍ୱବିତ୍ମାନେ ଏହାକୁ ଅକ୍ଷୌହିଣୀ କହନ୍ତି । ହେ ଦ୍ୱିଜ-ଶ୍ରେଷ୍ଠ ! ଏ ରୂପ ଅଷ୍ଟାଦଶ ଅକ୍ଷୌହିଣୀ କୁରୁ ପାଣ୍ଡବ ସେନା ଥିଲେ, ସେମାନେ ଏହି ସ୍ଥାନରେ ସମବେତ ହୋଇଥିଲେ ଓ ଅଦ୍ଭୁତ ପ୍ରଭାବଶାଳୀ

କାଳ କୌରବମାନଙ୍କୁ ଉପଲକ୍ଷ ମାତ୍ର କରି ସେହି ସ୍ଥଳରେ ତତ୍ ସମସ୍ତ ସେନା ସଂହାର କଲେ ।

ପରମ ଶସ୍ତ୍ରବେତ୍ତା ଭୀଷ୍ମ ଦଶଦିନ ଯୁଦ୍ଧ କଲେ, ଦ୍ରୋଣ ପାଞ୍ଚଦିନ, କର୍ଣ୍ଣ ଦୁଇଦିନ ଓ ଶଲ୍ୟ ଦିନାର୍ଦ୍ଧ ମାତ୍ର ସଂଗ୍ରାମ କଲେ, ତତ୍ପରେ ଅର୍ଦ୍ଧଦିବସ ଗଦାଯୁଦ୍ଧ ହେଲା । ଭୀମ ଓ ଦୁର୍ଯ୍ୟୋଧନ ମଧ୍ୟରେ ଅର୍ଦ୍ଧଦିବସ ଗଦାଯୁଦ୍ଧ ହେଲା । ସେହିଦିନ ନିଶା ସମୟରେ ଅଶ୍ୱତ୍ଥାମା, ହାର୍ଦ୍ଦିକ୍ୟ ଓ କୃପାଚାର୍ଯ୍ୟ ନିଃଶଙ୍କ ଚିତ୍ତରେ ପ୍ରସୁପ୍ତ ଯୁଧିଷ୍ଠିରଙ୍କର ଅବଶିଷ୍ଟ ସୈନ୍ୟ ସଂହାର କଲେ । ୩୨ ।

ହେ ସୌନକ ! ଆପଣଙ୍କ ସଙ୍ଗରେ ଭାରତାଖ୍ୟ ଯେଉଁ ଉତ୍କୃଷ୍ଟ ଆଖ୍ୟାନ କୀର୍ତ୍ତନ କରୁଅଛୁଁ; ବ୍ୟାସଶିଷ୍ୟ ଧୀମାନ୍ ବୈଶମ୍ପାୟନ ଜନମେଜୟ ସଦନରେ ତାହା କୀର୍ତ୍ତନ କରିଥିଲେ । ଭୂପତିବୃନ୍ଦଙ୍କ କୀର୍ତ୍ତି ଓ ବୀର୍ଯ୍ୟ ସବିସ୍ତାର ବର୍ଣ୍ଣନ କରିବା ନିମିତ୍ତ ଏହାର ଆଦ୍ୟରେ ପୌଷ୍ୟ, ପୌଲୋମ ଓ ଆସ୍ତୀକ ଏହି ତିନି ପର୍ବ ଉକ୍ତ ହୋଇଅଛି । ବିଚିତ୍ର ଅର୍ଥ, ପଦ ଓ ଆଖ୍ୟାନରେ ଏହା ପରିପୂର୍ଣ୍ଣ ଓ ନାନାବିଧ ଆଚାର ବ୍ୟବହାରର ବର୍ଣ୍ଣନାରେ ସମାକୀର୍ଣ୍ଣ; ଯେମନ୍ତ ମୋକ୍ଷାର୍ଥୀମାନେ ବୈରାଗ୍ୟର ଆଶ୍ରୟ ନିଅନ୍ତି, ସେହିପରି ପ୍ରାଜ୍ଞଲୋକ ଏହି ଗ୍ରନ୍ଥର ଅନୁସରଣ କରନ୍ତି । ଯେପରି ସମସ୍ତ ବେଦିତବ୍ୟ ପଦାର୍ଥ ମଧ୍ୟରେ ଆତ୍ମା ଶ୍ରେଷ୍ଠ ଓ ସକଳ ପ୍ରିୟଦ୍ରବ୍ୟ ମଧ୍ୟରେ ଜୀବନ ଶ୍ରେଷ୍ଠ, ସେହିପରି ମହାର୍ଥ ପରିପୂର୍ଣ୍ଣ ଏହି ଇତିହାସ ଗ୍ରନ୍ଥ ଯାବତୀୟ ଆଗମ ଅପେକ୍ଷା ଉତ୍କୃଷ୍ଟ । ଯେମନ୍ତ ଆହାର ବ୍ୟତିରେକେ ଶରୀର ଧାରଣ ହୁଏ ନାହିଁ, ତେମନ୍ତ ଭାରତର ଅବଲମ୍ବନ ବ୍ୟତିରେକେ ଭୂମଣ୍ଡଳରେ କୌଣସି କଥା ପ୍ରଚଳିତ ବୋଲି ଲକ୍ଷିତ ହୁଏ ନାହିଁ । ଯେମନ୍ତ ଅଭ୍ୟୁଦୟାକାଂକ୍ଷୀ ଭୃତ୍ୟମାନେ ସତ୍କୁଳ ଜାତ ପ୍ରଭୁଙ୍କ ଉପାସନା କରନ୍ତି, ତେମନ୍ତ କବିମାନେ ଏହି ମହାକାବ୍ୟକୁ ଉପଜୀବ୍ୟ ସ୍ୱରୂପ ଅବଲମ୍ବନ କରନ୍ତି । ଯେରୂପ ବେଦରେ ଓ ଲୋକବ୍ୟବହାରରେ ଯାବତୀୟ ବାକ୍ୟ, ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣରୁ ସମୁତ୍ପନ୍ନ, ତଦ୍ରୂପ ଏହି ସର୍ବୋତ୍ତମ ଇତିହାସ ଗ୍ରନ୍ଥରୁ ଶ୍ରେୟଃସାଧିନୀ ବୁଦ୍ଧି ଉଦ୍ଭୂତ ହୁଅଇ । ଏବମ୍ବିଧ ପ୍ରଜ୍ଞାପୂର୍ଣ୍ଣ, ବିଚିତ୍ରାର୍ଥଯୁକ୍ତ, ବେଦାର୍ଥଭୂଷିତ, ସୂକ୍ଷ୍ମ ସୂକ୍ଷ୍ମ ଅର୍ଥ ଓ ମୀମାଂସା ଦ୍ୱାରା ବିଭୂଷିତ, ଭାରତ ନାମକ ଇତିହାସ ଗ୍ରନ୍ଥର ପର୍ବସଂଗ୍ରହ ଶ୍ରବଣ କରନ୍ତୁ ।

ସର୍ବପ୍ରଥମ ଅନୁକ୍ରମଣିକା ପର୍ବ, ଦ୍ୱିତୀୟ ପର୍ବ ସଂଗ୍ରହ ପର୍ବ, ତତ୍ପରେ ପୌଷ୍ୟ, ପୌଲୋମ, ଆସ୍ତୀକ, ଆଦିବଂଶାବତାରଣ, ତତ୍ପରେ ରୋମହର୍ଷଣ ପରମାଦ୍ଭୁତ ସମ୍ଭବ ପର୍ବ; ଏଥିରେ ଜତୁଗୃହ ଦାହ, ହିଡ଼ିମ୍ବ-ବଧ ଓ ହିଡ଼ିମ୍ବୀ ପରିଣୟ ଉକ୍ତ ହୋଇଅଛି । ତତ୍ପରେ ବକବଧ ଓ ଚୈତ୍ରରଥ ପର୍ବ; ତତ୍ପରେ ପାଞ୍ଚାଳୀ ସ୍ୱୟମ୍ବର; ଏଥିରେ କ୍ଷତ୍ର ଧର୍ମାନୁସାରେ ଅର୍ଜ୍ଜୁନଙ୍କ ବିଜୟବାର୍ତ୍ତା କୀର୍ତ୍ତିତ ହୋଇଅଛି । ତତ୍ପରେ ବୈବାହିକ ପର୍ବ; ବିଦୁରାଗମନ ଓ ରାଜ୍ୟଲାଭ, ଅର୍ଜ୍ଜୁନଙ୍କ ବନବାସ; ତତ୍ପରେ ସୁଭଦ୍ରାହରଣ; ସୁଭଦ୍ରାହରଣ ପରେ ଯୌତୁକହରଣ; ତତ୍ପରେ ଖାଣ୍ଡବଦାହ ନାମକ ପର୍ବ, ମୟଦାନବର ସାକ୍ଷାତ୍କାର ଏହାର ଅନ୍ତର୍ଭୁକ୍ତ ।

ତତ୍ପରେ ସଭାପର୍ବ, ମନ୍ତ୍ରଣା ପର୍ବ, ଜରାସନ୍ଧ ବଧ, ଦିଗ୍‌ବିଜୟ, ରାଜସୂୟ, ଅର୍ଘାଭିହରଣ, ଶିଶୁପାଳବଧ, ଦ୍ୟୂତକ୍ରୀଡ଼ା, ଅନୁଦ୍ୟୂତ ପର୍ବ । ଆରଣ୍ୟକ, କିର୍ମ୍ମୀରବଧ, ତତ୍ପରେ ଅର୍ଜ୍ଜୁନାଭିଗମନ ଓ କୈରାତ ପର୍ବ; ଏଥିରେ ଅର୍ଜ୍ଜୁନ ଓ କିରାତରୂପୀ ମହେଶ୍ୱରଙ୍କ ଯୁଦ୍ଧ ବର୍ଣ୍ଣିତ ହୋଇ-ଅଛି । ୫୦ । ତତ୍ପରେ ଇନ୍ଦ୍ରଲୋକାଭିଗମନ; ତତ୍ପରେ ଧର୍ମକଥାର ଆକର, କରୁଣରସାଶ୍ରିତ ନଳୋପାଖ୍ୟାନ ପର୍ବ; ତତ୍ପରେ ଧୀମାନ୍ ଯୁଧିଷ୍ଠିରଙ୍କର ତୀର୍ଥଯାତ୍ରା, ଜଟାସୁର ବଧ, ଯକ୍ଷଯୁଦ୍ଧ, ନିବାତକବଚ ଯୁଦ୍ଧ, ଅଜଗରୋ-ପାଖ୍ୟାନ, ମାର୍କଣ୍ଡେୟ ସମସ୍ୟା, ଦ୍ରୌପଦୀ ସତ୍ୟଭାମା ସମ୍ବାଦ, ଘୋଷଯାତ୍ରା, ମୃଗସ୍ୱପ୍ନୋଦ୍ଭବ ବ୍ରୀହିଦ୍ରୌଣିକ ପର୍ବ, ଐନ୍ଦ୍ରଦ୍ୟୁମ୍ନୋପାଖ୍ୟାନ, ଦ୍ରୌପଦୀ-ହରଣ, ଜୟଦ୍ରଥବିମୋଚନ, ପତିବ୍ରତା ସାବିତ୍ରୀଙ୍କ ଅଦ୍ଭୁତ ମାହାତ୍ମ୍ୟ କଥନ, ରାମୋପାଖ୍ୟାନ, କୁଣ୍ଡଳାହରଣ, ଆରଣ୍ୟ ପର୍ବ । ବିରାଟ୍ ପର୍ବ, ପାଣ୍ଡବଗଣଙ୍କ ପ୍ରବେଶ ସମୟ ପାଳନ, କୀଚକ ବଧ, ଗୋଗ୍ରହଣ ଓ ଅଭିମନ୍ୟୁ ଓ ବିରାଟ୍ ଦୁହିତାଙ୍କର ବିବାହ । ତତ୍ପରେ ମହାଦ୍ଭୁତ ଉଦ୍ୟୋଗ ପର୍ବ; ତତ୍ପରେ ସଞ୍ଜୟଙ୍କର ପ୍ରୟାଣ, ଚିନ୍ତାବଶରୁ ଧୃତରାଷ୍ଟ୍ରଙ୍କର ଜାଗରଣ; ଅଧ୍ୟାତ୍ମ ବିଦ୍ୟାର ଉପଯୋଗୀ ସନତ୍ସୁଜାତଙ୍କ ଉପାଖ୍ୟାନ; ଯାନସନ୍ଧି; ଭଗବାନ୍ କୃଷ୍ଣଙ୍କ ଯାତ୍ରା; ମାତଲୀୟୋପାଖ୍ୟାନ; ଗାଲବ ଚରିତ୍ର; ସାବିତ୍ରୀ ଓ ବାମଦେବ୍ୟୋପାଖ୍ୟାନ ଓ କୃଷ୍ଣଙ୍କ ସହିତ ମହାତ୍ମା କର୍ଣ୍ଣଙ୍କର ବିବାଦ ପର୍ବ; ତତ୍ପରେ କୁରୁପାଣ୍ଡବ ସେନାଙ୍କର ନିର୍ଯ୍ୟାଣ ପର୍ବ; ପଦାତି ରଥ ଗଣନା; କ୍ରୋଧୋଦ୍ଦୀପକ ଉଲୂକ ଦୂତାଗମନ ଓ ଅମ୍ବୋପାଖ୍ୟାନ ବର୍ଣ୍ଣିତ ହୋଇଅଛି । ୭୪ ।

ଅନନ୍ତର ଭୀଷ୍ମାଭିଷେକ ଓ ଜମ୍ବୁଖଣ୍ଡ ନିର୍ମାଣ କଥା; ଅନନ୍ତର ଭୂମିପର୍ବ, ଏଥିରେ ଦ୍ୱୀପବିସ୍ତାର କୀର୍ତ୍ତିତ ହୋଇଅଛି । ତତ୍ପରେ ଭଗବଦ୍-ଗୀତା ଓ ଭୀଷ୍ମପର୍ବ । ତତ୍ପରେ ଦ୍ରୋଣାଭିଷେକ, ସଂଶପ୍ତକବଧ, ଅଭିମନ୍ୟୁ-ବଧ, ଅର୍ଜ୍ଜୁନଙ୍କ ପ୍ରତିଜ୍ଞା, ଜୟଦ୍ରଥବଧ, ଘଟୋତ୍କଚବଧ ଓ ଲୋମହର୍ଷଣ ଦ୍ରୋଣବଧ ଆନୁପୂର୍ବିକ ଅଭିହିତ ହୋଇଅଛି; ତତ୍ପରେ ନାରାୟଣାସ୍ତ୍ର ତ୍ୟାଗ । କର୍ଣ୍ଣପର୍ବ ଓ ଶଲ୍ୟପର୍ବ । ତତ୍ପରେ ହ୍ରଦ ପ୍ରବେଶ । ଗଦାଯୁଦ୍ଧ ଓ ସାରସ୍ୱତ ପର୍ବ, ଏଥିରେ ତୀର୍ଥ ବଂଶାନୁକୀର୍ତ୍ତନ ଅଛି । ତତ୍ପରେ ଅତି ବୀଭତ୍ସ ସୌପ୍ତିକ ପର୍ବ ଓ ସୁଦାରୁଣ ଐଷୀକ ପର୍ବ । ତତ୍ପରେ ଜଳପ୍ରଦାନ, ସ୍ତ୍ରୀ ବିଳାପ ଓ କୁରୁଗଣଙ୍କର ଔର୍ଦ୍ଧ୍ୱଦେହିକ କ୍ରିୟା । ତତ୍ପରେ ବ୍ରାହ୍ମଣରୂପୀ ରାକ୍ଷସ ଚାର୍ବାକର ବଧ ଉକ୍ତ ହୋଇଅଛି; ତଦନନ୍ତର ଧୀମାନ୍ ଧର୍ମରାଜଙ୍କ ଅଭିଷେଚନ; ଅନନ୍ତର ଗୃହବିଭାଗ । ତଦନନ୍ତର ଶାନ୍ତି ପର୍ବ; ଏହି ପର୍ବରେ ରାଜଧର୍ମ, ଆପଦ୍ଧର୍ମ, ମୋକ୍ଷଧର୍ମ ଉକ୍ତ ହୋଇଅଛି; ତତ୍ପରେ ଶୁକ ପ୍ରଶ୍ନାଭିଗମନ,—ବ୍ରହ୍ମପ୍ରଶ୍ନାନୁଶାସନ, ଦୁର୍ବାସାଙ୍କ ପ୍ରାଦୁର୍ଭାବ; ମାୟା ସମ୍ବାଦ । ତତ୍ପରେ ଆନୁଶାସନିକ ପର୍ବ; ତତ୍ପରେ ଧୀମାନ୍ ଭୀଷ୍ମଙ୍କ ସ୍ୱର୍ଗାରୋହଣ; ତତ୍ପରେ ସର୍ବପାପନାଶକ ଆଶ୍ୱମେଧିକ ପର୍ବ, ତତ୍ପରେ ଅଧ୍ୟାତ୍ମତତ୍ତ୍ୱବୋଧକ ଅନୁଗୀତା ପର୍ବ । ତତ୍ପରେ ଆଶ୍ରମବାସ ପୁତ୍ରଦର୍ଶନ । ତତ୍ପରେ ନାରଦାଭିଗମନ, ଅତିଦାରୁଣ ମୌଷଳ ପର୍ବ; ମହାପ୍ରସ୍ଥାନିକ ପର୍ବ, ସ୍ୱର୍ଗାରୋହଣ ପର୍ବ, ତଦନନ୍ତର ଖିଲ ନାମକ ହରିବଂଶ ପର୍ବ, ଏଥିରେ ବିଷ୍ଣୁ ପର୍ବ, ଶିଶୁଚର୍ଯ୍ୟା, କଂସବଧ, ଅତି ଅଦ୍ଭୁତ ରୂପେ ଅଭିହିତ ହୋଇଅଛି । ୮୨ । ମହାତ୍ମା ବ୍ୟାସ ଏହି ପ୍ରକାରେ ଶତପର୍ବପୂର୍ଣ୍ଣ ଭାରତ ଗ୍ରନ୍ଥ ରଚନା କରିଅଛନ୍ତି । ପରେ ଲୋମହର୍ଷଣ ପୁତ୍ର ଉଗ୍ରଶ୍ରବା ନୈମିଷା-ରଣ୍ୟରେ ତତ୍ସମସ୍ତ ଅଷ୍ଟାଦଶ ପର୍ବରେ ବିଭକ୍ତ କରି ଯଥାଯଥରୂପେ କୀର୍ତ୍ତନ କରିଅଛନ୍ତି । ଭାରତର ସଂକ୍ଷେପ ସ୍ୱରୂପ ଏହି ପର୍ବସଂଗ୍ରହ କଥିତ ହେଲା ।

ପୌଷ୍ୟ, ପୌଲୋମ, ଆଦିବଂଶାବତାରଣ, ଆସ୍ତୀକ, ସମ୍ଭବ, ଜତୁଗୃହଦାହ, ହିଡ଼ିମ୍ବବଧ, ବକବଧ, ଚୈତ୍ରରଥ, ଦ୍ରୌପଦୀ ସ୍ୱୟମ୍ବର, କ୍ଷତ୍ରଧର୍ମାନୁସାରେ ରାଜବୃନ୍ଦ ପରାଜୟପୂର୍ବକ ବିବାହ, ବିଦୁରାଗମନ, ରାଜ୍ୟ-ପ୍ରାପ୍ତି, ଅର୍ଜ୍ଜୁନଙ୍କ ବନବାସ, ସୁଭଦ୍ରାହରଣ, ଯୌତୁକାନୟନ, ଖାଣ୍ଡବ-ଦାହ, ମୟଦର୍ଶନ ଏହି ସମସ୍ତ ପର୍ବ ଆଦିପର୍ବର ଅନ୍ତର୍ଗତ; ପୌଷ୍ୟ ପର୍ବରେ ଉତଙ୍କ ମୁନିଙ୍କ ମାହାତ୍ମ୍ୟ କୀର୍ତ୍ତିତ ଅଛି; ପୌଲମରେ ଭୃଗୁବଂଶ ବିସ୍ତାର;

ଆସ୍ତୀକରେ ସମୁଦାୟ ନାଗ ଓ ଗରୁଡ଼ଙ୍କ ଉତ୍ପତ୍ତି, କ୍ଷୀରସମୁଦ୍ର ମନ୍ଥନ, ଉଚ୍ଚୈଃଶ୍ରବାର ଜନ୍ମ, ଜନମେଜୟଙ୍କ ସର୍ପଯଜ୍ଞ ଓ ତଦୁପଲକ୍ଷରେ ମହାମହିମ କୁରୁପାଣ୍ଡବ ସମ୍ବନ୍ଧୀୟ ଏହି ଭାରତକଥାର ପ୍ରାରମ୍ଭ ଯଥାକ୍ରମରେ ବର୍ଣ୍ଣିତ ହୋଇଅଛି । ତତ୍ପରେ ସମ୍ଭବ ପର୍ବ, ଏଥିରେ ଭୂପତିବୃନ୍ଦଙ୍କ ଓ ଅନ୍ୟାନ୍ୟ ଶୂରଗଣଙ୍କ ଓ ଦ୍ୱୈପାୟନ ଋଷିଙ୍କ ଜନ୍ମ, ମହାତେଜସ୍ୱୀ ଦେବ, ଦୈତ୍ୟ, ଦାନବ ଓ ଯକ୍ଷଗଣଙ୍କ ଅଂଶାବତାରଣ, ନାଗ, ସର୍ପ, ଗନ୍ଧର୍ବ, ପକ୍ଷୀ ଓ ଅନ୍ୟାନ୍ୟ ନାନାବିଧ ପ୍ରାଣୀଙ୍କ ଉତ୍ପତ୍ତି, ଯାହାଙ୍କ ନାମାନୁସାରେ କୁରୁପାଣ୍ଡବକୁଳ, ଭରତକୁଳ ବୋଲି କଥିତ ହୋଇଅଛି; ତପଃପରାୟଣ ମହର୍ଷି କଣ୍ୱଙ୍କ ଆଶ୍ରମରେ ଶକୁନ୍ତଳାଙ୍କ ଗର୍ଭରେ ଦୁଷ୍ମନ୍ତଙ୍କ ଔରସରେ ସେହି ଭରତଙ୍କ ଉତ୍ପତ୍ତି; ଶାନ୍ତନୁଙ୍କ ଗୃହରେ ଭାଗୀରଥୀର ଗର୍ଭରେ ମହାତ୍ମା ବସୁଗଣଙ୍କ ଜନ୍ମ ଓ ସ୍ୱର୍ଗାରୋହଣ, ତଦୀୟ ତେଜର ସମଷ୍ଟି ସ୍ୱରୂପ ଭୀଷ୍ମଙ୍କ ସମ୍ଭବ, ତାହାଙ୍କର ରାଜ୍ୟତ୍ୟାଗ ଓ ବ୍ରହ୍ମଚର୍ଯ୍ୟ ବ୍ରତାବଲମ୍ବନ, ପ୍ରତିଜ୍ଞାପାଳନ, ଚିତ୍ରାଙ୍ଗଦଙ୍କ ରକ୍ଷା, ଚିତ୍ରାଙ୍ଗଦଙ୍କ ମୃତ୍ୟୁ ପରେ ତଦୀୟ କନିଷ୍ଠଭ୍ରାତା ବିଚିତ୍ରବୀର୍ଯ୍ୟଙ୍କ ରକ୍ଷା ଓ ତାହାଙ୍କର ରାଜ୍ୟାଭିଷେକ, ଅଣୀମାଣ୍ଡବ୍ୟ ଶାପରେ ନରଜାତିରେ ଧର୍ମରାଜଙ୍କ ଜନ୍ମ, ବରଦାନ ନିବନ୍ଧନ କୃଷ୍ଣଦ୍ୱୈପାୟନଙ୍କଠାରୁ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କ ଜନ୍ମ ଓ ତଦନନ୍ତର ପାଣ୍ଡବମାନଙ୍କର ଉତ୍ପତ୍ତି, ବାରଣାବତ ଯାତ୍ରା ବିଷୟରେ, ଦୁର୍ଯ୍ୟୋଧନଙ୍କ ମନ୍ତ୍ରଣା ଓ ତତ୍କର୍ତ୍ତୃକ ପାଣ୍ଡବମାନଙ୍କଠାକୁ କୂଟର ପ୍ରେରଣ, ଧୀମାନ୍ ଯୁଧିଷ୍ଠିରଙ୍କ ହିତାର୍ଥ ପଥରେ ମ୍ଳେଚ୍ଛ ଭାଷାରେ ବିଦୁରକୃତ ହିତୋପଦେଶ ଓ ତାହାଙ୍କ ଉପଦେଶାନୁସାରେ ସୁଡ଼ଙ୍ଗ ନିର୍ମାଣ, ଜତୁଗୃହରେ ନିଦ୍ରିତ ନିଷାଦୀ ତାହାର ପଞ୍ଚପୁତ୍ର ଓ ପୁରୋଚନର ଦାହ । ଘୋର ବନରେ ପାଣ୍ଡବମାନଙ୍କର ହିଡ଼ିମ୍ବାରାକ୍ଷସୀ ସହିତ ଭେଟ ଓ ସେହି ସ୍ଥଳରେ ମହାବଳ ଭୀମ କର୍ତ୍ତୃକ ହିଡ଼ିମ୍ବାରାକ୍ଷସର ବଧ; ଏହି ସ୍ଥଳରେ ଘଟୋତ୍କଚର ଉତ୍ପତ୍ତି ପରିକୀର୍ତ୍ତିତ ହୋଇଅଛି; ଅମିତତେଜା ମହର୍ଷି ବେଦବ୍ୟାସଙ୍କର ଦର୍ଶନ ଓ, ତାହାଙ୍କର ଆଜ୍ଞାକ୍ରମେ ଏକଚକ୍ରା ନଗରରେ ଗୋଟିଏ ବ୍ରାହ୍ମଣ ଗୃହରେ ପାଣ୍ଡବମାନଙ୍କର ଅଜ୍ଞାତବାସ । ୧୦୬ । ବକାସୁରର ବଧ ଓ ତନ୍ନିମିତ୍ତରେ ନଗରବାସୀମାନଙ୍କର ବିସ୍ମୟ, କୃଷ୍ଣା ଓ ଧୃଷ୍ଟଦ୍ୟୁମ୍ନଙ୍କର ଉତ୍ପତ୍ତି କଥନ; ବ୍ରାହ୍ମଣମୁଖରୁ ଦ୍ରୌପଦୀଙ୍କ ସ୍ୱୟମ୍ବର କଥା ଶ୍ରବଣ କରି ବ୍ୟାସଙ୍କ ଉପଦେଶାନୁସାରେ ଦ୍ରୌପଦୀଙ୍କୁ ପାଇବା ଅଭିଳାଷ କରି ସ୍ୱୟମ୍ବର ଦର୍ଶନ ନିମନ୍ତେ କୌତୁହଳାକ୍ରାନ୍ତ ହୋଇ ପାଣ୍ଡବମାନଙ୍କର ପାଞ୍ଚାଳ ପ୍ରଦେଶାଭି-

ମୁଖରେ ଯାତ୍ରା କରିବା; ପଥରେ ଅର୍ଜୁନ ଗଙ୍ଗାତୀରରେ ଅଙ୍ଗାରପର୍ଣ୍ଣକୁ ଜୟକରି ତାହା ସହିତ ମୈତ୍ରୀବନ୍ଧନ କଲେ । ତଦନନ୍ତର ସେହି ଅଙ୍ଗାର-ପର୍ଣ୍ଣଙ୍କଠାରୁ ତପତୀ, ବଶିଷ୍ଠ ଓ ଔର୍ବଙ୍କର ଅତି ଉତ୍ତମ ଆଖ୍ୟାନ ଶ୍ରବଣ କଲେ । ଭ୍ରାତୃମାନେ ସମସ୍ତେ ମିଳିତ ହୋଇ ପାଞ୍ଚାଳ ଦେଶକୁ ଗମନ କରି ସେହି ପାଞ୍ଚାଳ ନଗରରେ ଧନଞ୍ଜୟ ଲକ୍ଷ୍ୟଭେଦ କରି ସମସ୍ତ ମହୀପାଳଙ୍କ ମଧ୍ୟରେ ଦ୍ରୌପଦୀଙ୍କୁ ଲାଭ କଲେ । ଯେଉଁ ସ୍ଥାନରେ ସ୍ୱୟମ୍ବର-ଗତ କ୍ରୋଧାନ୍ଧ ଭୂପତିମାନଙ୍କୁ ଓ ଶଲ୍ୟ ଓ କର୍ଣ୍ଣଙ୍କୁ ଘୋରତର ଯୁଦ୍ଧରେ ଭୀମ ଓ ଅର୍ଜୁନ ଦୁଇଭ୍ରାତା ବେଗେ ପରାଜୟ କଲେ, ତେତେବେଳେ ସେମାନଙ୍କର ଅପ୍ରମେୟ ଅମାନୁଷ ବୀର୍ଯ୍ୟ ଦର୍ଶନ କରି ମହାମତି ବଳରାମ ଓ କୃଷ୍ଣଚନ୍ଦ୍ର ସେମାନଙ୍କୁ ପାଣ୍ଡବ ବୋଲି ଅନୁମାନ କଲେ ଓ ସେମାନଙ୍କ ସହିତ ସମାଗମ ନିମିତ୍ତ ଭାର୍ଗବଗୃହକୁ ଗମନ କଲେ । କୃଷ୍ଣା ପଞ୍ଚ-ଜଣଙ୍କର ପତ୍ନୀ ହେବାର ଶୁଣି ଦ୍ରୁପଦ ରାଜାଙ୍କର ବିମର୍ଷ ଓ ସେହି ସ୍ଥଳରେ ପଞ୍ଚଇନ୍ଦ୍ରଙ୍କ ଅଦ୍ଭୁତୋପାଖ୍ୟାନ ବର୍ଣ୍ଣିତ ହୋଇଅଛି । ଦ୍ରୌପଦୀଙ୍କର ଦେବବିଧାନାନୁଯାୟୀ ଅଲୌକିକ ବିବାହ, ପାଣ୍ଡବମାନଙ୍କ ନିକଟକୁ ଦୁର୍ଯ୍ୟୋଧନ କର୍ତ୍ତୃକ ବିଦୁରଙ୍କ ପ୍ରେରଣ, ବିଦୁରଙ୍କ ଆଗମନ ଓ କୃଷ୍ଣଙ୍କ ଦର୍ଶନ, ଖାଣ୍ଡବ ପ୍ରସ୍ଥରେ ବାସ, ରାଜ୍ୟାର୍ଦ୍ଧର ତ୍ୟାଗ, ନାରଦଙ୍କ ଉପଦେଶାନୁସାରେ ଦ୍ରୌପଦୀଙ୍କ ସମ୍ବନ୍ଧରେ ସମୟ ବିଭାଗ, ସୁନ୍ଦୋ-ପସୁନ୍ଦଙ୍କ ଉପାଖ୍ୟାନ, ଅନନ୍ତର ଦ୍ରୌପଦୀଙ୍କ ସହିତ ଏକାନ୍ତରେ ଆସୀନ ଯୁଧିଷ୍ଠିରଙ୍କ ଗୃହକୁ ଅର୍ଜୁନ ପ୍ରବେଶ କରି ଓ ଅସ୍ତ୍ର ଗ୍ରହଣ କରି ବ୍ରାହ୍ମଣଙ୍କ ଅପହୃତ ଗୋଧନମୋଚନ; ସେହି ହେତୁରୁ ବୀର ଅର୍ଜୁନ ସ୍ୱୀକୃତ ନିୟମ ପ୍ରତିପାଳନ କରି ବନକୁ ଗମନ କରିବା; ସେହି ବନବାସରେ ପାର୍ଥଙ୍କ ସହିତ ପଥ ମଧ୍ୟରେ ଉଲୂପୀର ସମାଗମ, ପବିତ୍ର ତୀର୍ଥ ପର୍ଯ୍ୟଟନ, ବଭ୍ରୁବାହନଙ୍କ ଜନ୍ମ; ସେହି ସମୟରେ ଅର୍ଜୁନଙ୍କଦ୍ୱାରା ତପସ୍ୱୀ ବ୍ରାହ୍ମଣଙ୍କ ଅଭିସମ୍ପାତରେ ନକ୍ରଯୋନିପ୍ରାପ୍ତ ପଞ୍ଚଅପ୍ସରାଙ୍କର ବିମୋଚନ, ପ୍ରଭାସ ତୀର୍ଥରେ ପାର୍ଥଙ୍କ ସହିତ କୃଷ୍ଣଙ୍କର ସମାଗମ, ବାସୁଦେବଙ୍କ ଆଦେଶାନୁ-ସାରେ ଅର୍ଜୁନ କର୍ତ୍ତୃକ ସୁଭଦ୍ରାହରଣ, ସୁଭଦ୍ରାଙ୍କ ଗର୍ଭରେ ମହାତେଜା ଅଭିମନ୍ୟୁଙ୍କ ଜନ୍ମ । ୧୬୨ । ଦ୍ରୌପଦୀଙ୍କ ସନ୍ତାନମାନଙ୍କର ଉତ୍ପତ୍ତି ବିବରଣ ଏଥିରେ କୀର୍ତ୍ତିତ ହୋଇଅଛି; ତହିଁପରେ ଯମୁନାତୀରରେ ବିହାରାର୍ଥ ପ୍ରସ୍ଥିତ କୃଷ୍ଣ ଓ ଅର୍ଜୁନଙ୍କର ଚକ୍ର ଓ ଧନୁଃପ୍ରାପ୍ତି, ଖାଣ୍ଡବ-ଦାହ, ଅଗ୍ନିରୁ ମୟ ଓ ଅଶ୍ୱସେନଙ୍କର ବିମୋଚନ, ମନ୍ଦପାଳ ମହର୍ଷିଙ୍କର

ଶାର୍ଙ୍ଗିଠାରେ ପୁତ୍ରୋତ୍ପତ୍ତି ବିବରଣ ଇତ୍ୟାଦି ବହୁ ବିସ୍ତୃତ ଘଟନାମାନ ଆଦି ପର୍ବରେ କୀର୍ତ୍ତିତ ଅଛି । ମହାତ୍ମା ମହାତେଜା ବ୍ୟାସମୁନି (୨୨୭) ଦୁଇଶତ ସପ୍ତବିଂଶତି ଅଧ୍ୟାୟରେ (୮୮୮୪) ଅଷ୍ଟସହସ୍ର ଅଷ୍ଟଶତ ଚତୁର-ଶୀତି ଶ୍ଳୋକରେ ଏତତ୍‌ସମୁଦାୟ ବର୍ଣ୍ଣନ କରିଅଛନ୍ତି ।

ଦ୍ୱିତୀୟ ବହୁବୃତ୍ତାନ୍ତପୂର୍ଣ୍ଣ ସଭାପର୍ବ, ପାଣ୍ଡବମାନଙ୍କର ସଭାନିର୍ମାଣ, କିଙ୍କରଗଣଙ୍କ ଦର୍ଶନ, ଦେବଦର୍ଶୀ ନାରଦଙ୍କ ମୁଖରୁ ଲୋକପାଳମାନଙ୍କ ସଭାଖ୍ୟାନ ଶ୍ରବଣ, ରାଜସୂୟାରମ୍ଭ, ଜରାସନ୍ଧର ବଧ, ରାଜଗୃହ ପର୍ବତର ଗହ୍ୱରରେ ନିରୁଦ୍ଧ ରାଜଗଣଙ୍କୁ କୃଷ୍ଣକର୍ତ୍ତୃକ ବିମୋଚନ, ପାଣ୍ଡବମାନଙ୍କର ଦିଗ୍‌ବିଜୟ କୀର୍ତ୍ତିତ ହୋଇଅଛି । ଏହି ମହାକ୍ରତୁରେ ଉପହାର ଦେନି ଭୂପତିମାନଙ୍କର ଆଗମନ ଓ ଅର୍ଘ୍ୟଦାନ ପ୍ରସ୍ତାବରେ ଶିଶୁପାଳର ବଧ, ଯଜ୍ଞର ଐଶ୍ୱର୍ଯ୍ୟ ଦର୍ଶନରେ କ୍ଷୁବ୍ଧ ଓ ବିମର୍ଷିତ ଦୁର୍ଯ୍ୟୋଧନଙ୍କ ପ୍ରତି ସଭାସ୍ଥଳରେ ଭୀମଙ୍କ ଉପହାସ, ଯଦ୍ଦ୍ୱାରା ଦୁର୍ଯ୍ୟୋଧନଙ୍କର କ୍ରୋଧ ହେଲା ଓ ଯେଉଁ କାରଣରୁ ଦ୍ୟୂତକ୍ରୀଡ଼ାର ମନ୍ତ୍ରଣା ହେଲା, ଯେଉଁ ଦ୍ୟୂତରେ ଧୂର୍ତ୍ତ ଶକୁନି ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ପରାଜୟ କଲେ, ଯେଉଁ ଦ୍ୟୂତ ସମୁଦ୍ରରେ ମଗ୍ନପ୍ରାୟ ଖିଦ୍ୟମାନା ପୁତ୍ରବଧୂ ଦ୍ରୁପଦକୁମାରୀ ନୌକାକୁ ପ୍ରାଜ୍ଞବର ଧୃତରାଷ୍ଟ୍ର ଉଦ୍ଧାର କଲେ, ଦୁର୍ଯ୍ୟୋଧନ ନରପତି ପାଣ୍ଡବମାନଙ୍କୁ ବିପଦୁତ୍ତୀର୍ଣ୍ଣ ଜାଣି ସେମାନଙ୍କୁ ଅକ୍ଷକ୍ରୀଡ଼ାର୍ଥ ପୁନରାହ୍ୱାନ କଲେ, ତଦନନ୍ତର ଦୁର୍ଯ୍ୟୋଧନ ସେମାନଙ୍କୁ ପରାସ୍ତ କରି ବନବାସ କରିବାକୁ ପ୍ରେରଣ କଲେ । ସଭା-ପର୍ବରେ ଏହି ସମସ୍ତ ବୃତ୍ତାନ୍ତ ମହର୍ଷିଙ୍କ କର୍ତ୍ତୃକ କଥିତ ହୋଇଅଛି । ଏଥିରେ (୭୮) ଅଷ୍ଟସପ୍ତତି ଅଧ୍ୟାୟ ଓ (୨୫୧୧) ଦୁଇ ସହସ୍ର ପଞ୍ଚଶତ ଏକାଦଶ ଶ୍ଳୋକ ଅଛି । ୧୩୭ ।

ଏଥି ଉତ୍ତାରୁ ଆରଣ୍ୟ ନାମକ ତୃତୀୟ ପର୍ବ, ଏ ପର୍ବଟି ବୃହତ୍ । ମହାତ୍ମା ପାଣ୍ଡବଗଣ ବନଗମନ କଲାରୁ ପୁରବାସୀଙ୍କର ଧୀମାନ୍ ଯୁଧିଷ୍ଠିରଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ; ଅନୁଗତ ଦ୍ୱିଜମାନଙ୍କ ଭରଣାର୍ଥ ଧୌମ୍ୟଙ୍କ ଉପ-ଦେଶାନୁସାରେ ମହାତ୍ମା ଯୁଧିଷ୍ଠିରଙ୍କ କର୍ତ୍ତୃକ ସୂର୍ଯ୍ୟୋପାସନା, ସୂର୍ଯ୍ୟଦେବଙ୍କ ପ୍ରସାଦରୁ ଧର୍ମରାଜଙ୍କର ଅନ୍ନପ୍ରାପ୍ତି; ଧୃତରାଷ୍ଟ୍ରଙ୍କ କର୍ତ୍ତୃକ ହିତବାଦୀ ବିଦୁରଙ୍କ ପରିତ୍ୟାଗ ; ପାଣ୍ଡୁପୁତ୍ରଙ୍କ ନିକଟକୁ ବିଦୁରଙ୍କ ଗମନ, ପୁଣି ଧୃତରାଷ୍ଟ୍ରଙ୍କ ଅନୁମତିକ୍ରମେ ବିଦୁରଙ୍କର ପ୍ରତ୍ୟାବର୍ତ୍ତନ; କର୍ଣ୍ଣଙ୍କ ଉତ୍ତେଜନାରେ ଧୃତରାଷ୍ଟ୍ରପୁତ୍ର ଦୁର୍ମତି ଦୁର୍ଯ୍ୟୋଧନଙ୍କର ବନସ୍ଥ ପାଣ୍ଡବମାନଙ୍କର ବଧ

ବିଷୟକ ମନ୍ତ୍ରଣା; ସେହି ଦୁଷ୍ଟାଭିପ୍ରାୟ ଜାଣିପାରି ବ୍ୟାସଦେବଙ୍କର ସତ୍ୱର ଆଗମନ ଓ ଦୁର୍ଯୋଧନାଦିଙ୍କ ଗମନ ନିବାରଣ; ସୁରଭିଙ୍କ ଉପାଖ୍ୟାନ, ମୈତ୍ରେୟଙ୍କ ଆଗମନ ଓ ଧୃତରାଷ୍ଟ୍ରଙ୍କୁ ଉପଦେଶଦାନ ଓ ସେହି ମୈତ୍ରେୟଙ୍କ ଦ୍ୱାରା ଦୁର୍ଯୋଧନଙ୍କ ପ୍ରତି ଶାପୋତ୍ସର୍ଗ, ରଣକ୍ଷେତ୍ରରେ ଭୀମସେନଙ୍କଦ୍ୱାରା କିର୍ମୀରର ବଧ; ବୃଷ୍ଣି ବଂଶୀୟଗଣଙ୍କର ଓ ପଞ୍ଚାଳ ବଂଶୀୟମାନଙ୍କର ବନକୁ ଆଗମନ; ପାଣ୍ଡବମାନେ ଛଳକ୍ରମେ ଦ୍ୟୁତକ୍ରୀଡ଼ାରେ ଶକୁନିଙ୍କ କର୍ତ୍ତୃକ ନିର୍ଜିତ ହୋଇଅଛନ୍ତି ଶୁଣି ବାସୁଦେବଙ୍କର କ୍ରୋଧଜାତ ହେବାରୁ ଅର୍ଜୁନଙ୍କ କର୍ତ୍ତୃକ ବାସୁଦେବଙ୍କର ସାନ୍ତ୍ୱନା; କୃଷ୍ଣଙ୍କ ସନ୍ନିଧାନରେ ଦ୍ରୌପଦୀଙ୍କ ବିଳାପ ଓ କୃଷ୍ଣଙ୍କ କର୍ତ୍ତୃକ ସେହି ଦୁଃଖିତାଙ୍କର ଆଶ୍ୱାସନା ପ୍ରକାଶିତ ହୋଇଅଛି; ସୌଭ ବଧ ଉପାଖ୍ୟାନ ସୁଦ୍ଧା ଏଥିରେ କୃଷ୍ଣ କହିଅଛନ୍ତି; କୃଷ୍ଣଙ୍କ କର୍ତ୍ତୃକ ସପୁତ୍ରା ସୁଭଦ୍ରାଙ୍କର ଦ୍ୱାରକାପୁରୀକୁ ଆନୟନ; ଧୃଷ୍ଟଦ୍ୟୁମ୍ନଙ୍କ ସମଭିବ୍ୟାହାରରେ ଦ୍ରୌପଦୀଙ୍କ କୁମାରମାନଙ୍କର ଆନୟନ; ତଦନନ୍ତର ରମଣୀୟ ଦ୍ୱୈତବନରେ ପାଣ୍ଡବମାନଙ୍କର ପ୍ରବେଶ, ପାଞ୍ଚାଳୀ ଓ ଭୀମଙ୍କ ସହିତ ରାଜା ଯୁଧିଷ୍ଠିରଙ୍କ କଥୋପକଥନ ଏଥିରେ କୀର୍ତ୍ତିତ ହୋଇଅଛି ।

ପାଣ୍ଡବଙ୍କ ନିକଟକୁ ବ୍ୟାସଙ୍କ ଆଗମନ ଓ ମହର୍ଷିଙ୍କ କର୍ତ୍ତୃକ ଧର୍ମରାଜଙ୍କୁ "ପ୍ରତିସ୍ମୃତି" ନାମ୍ନୀ ବିଦ୍ୟାଦାନ, ତଦନନ୍ତର ବ୍ୟାସ ପ୍ରତିଗମନ କଲାରୁ କାମ୍ୟକ ବନକୁ ପାଣ୍ଡବମାନଙ୍କର ପ୍ରୟାଣ, ଅମିତତେଜା ଅର୍ଜୁନଙ୍କର ଅସ୍ତ୍ରଲାଭାର୍ଥ ପ୍ରବାସ ଗମନ; କିରାତରୂପୀ ମହାଦେବଙ୍କ ସହିତ ସଂଗ୍ରାମ, ଲୋକପାଳମାନଙ୍କର ଦର୍ଶନ ଓ କିରୀଟୀଙ୍କର ଅସ୍ତ୍ରଲାଭ, ଅଧିକନ୍ତର ଅସ୍ତ୍ରଲାଭାର୍ଥ କିରୀଟୀଙ୍କର ଇନ୍ଦ୍ରଲୋକ ଗମନ, ଏଥିରେ ଧୃତରାଷ୍ଟ୍ରଙ୍କର ବହୁଚିନ୍ତାର ଉତ୍ପତ୍ତି, ମହାତ୍ମା ମହର୍ଷି ବୃହଦଶ୍ୱଙ୍କ ଦର୍ଶନ ଓ ସ୍ୱୀୟନଦାରୁଣ ଦ୍ୟୁତକ୍ରୀଡ଼ନ ସ୍ମରଣ କରି ଯୁଧିଷ୍ଠିରଙ୍କ ବିଳାପ, ଏଥିରେ ଧର୍ମକଥାଯୁକ୍ତ କରୁଣରସୋଦ୍ଦୀପକ ନଳୋପାଖ୍ୟାନ ଓ ଦମୟନ୍ତୀ ଓ ନଳରାଜାଙ୍କ ଚରିତ୍ର କୀର୍ତ୍ତିତ ହୋଇଅଛି ; ସେହି ମହର୍ଷିଙ୍କଠାରୁ "ଅକ୍ଷହୃଦୟ" ନାମକ ବିଦ୍ୟାପ୍ରାପ୍ତି ; ସେହି ସ୍ଥଳରେ ପାଣ୍ଡବମାନଙ୍କ ଉଦ୍ଦେଶ୍ୟରେ ଲୋମଶ ଋଷିଙ୍କର ସ୍ୱର୍ଗରୁ ଆଗମନ ଓ ବନବାସସ୍ଥିତ ପାଣ୍ଡବମାନଙ୍କଠାରେ ଲୋମଶ କର୍ତ୍ତୃକ ଅର୍ଜୁନଙ୍କର ସ୍ୱର୍ଗଗମନର ପ୍ରବୃତ୍ତି କଥିତ ହୋଇଅଛି; ସ୍ୱର୍ଗବାସୀ ଅର୍ଜୁନଙ୍କ ସମ୍ବାଦ ପାଇ ଅର୍ଜୁନଙ୍କ ବାକ୍ୟାନୁସାରେ ଅନ୍ୟାନ୍ୟ ପାଣ୍ଡବଙ୍କର ତୀର୍ଥାଭିଗମନ ଓ ତୀର୍ଥମାନଙ୍କର ଫଳପ୍ରାପ୍ତି ଓ ପବିତ୍ରତା କୀର୍ତ୍ତିତ ହୋଇଅଛି ;

ନାରଦ ମହର୍ଷିଙ୍କ କର୍ତ୍ତୃକ ପୁଲସ୍ତ୍ୟ ତୀର୍ଥଯାତ୍ରା ଓ ସେହି ତୀର୍ଥକୁ ମହାତ୍ମା ପାଣ୍ଡବମାନଙ୍କର ଯାତ୍ରା (୧୬୦) ; କୁଣ୍ଡଳଦ୍ୱୟ ଦେଇ ଇନ୍ଦ୍ରଙ୍କଠାରୁ କର୍ଣ୍ଣଙ୍କ ରକ୍ଷା ପାଇବାର ଗୟାସୁରର ଯଜ୍ଞସମୃଦ୍ଧି ସୁଦ୍ଧା ଏଥିରେ କୀର୍ତ୍ତିତ ହୋଇଅଛି ।

ଅଗସ୍ତ୍ୟଙ୍କ ଉପାଖ୍ୟାନ, ଯହିଁରେ ବାତାପିଭକ୍ଷଣ ଓ ସନ୍ତାନଲାଭାର୍ଥ ତାହାଙ୍କର ଲୋପାମୁଦ୍ରା ପରିଗ୍ରହ ; ଋଷିକୁମାର ବ୍ରହ୍ମଚାରୀ ଋଷ୍ୟଶୃଙ୍ଗଙ୍କ ଚରିତ ; ଜମଦଗ୍ନିପୁତ୍ର ମହାତେଜା ପରଶୁରାମଙ୍କ ଉପାଖ୍ୟାନ, ଯହିଁରେ କାର୍ତ୍ତବୀର୍ଯ୍ୟ ଓ ହୈହୟମାନଙ୍କର ନିଧନ ବର୍ଣ୍ଣିତ ହୋଇଅଛି ଓ ପ୍ରଭାସ ତୀର୍ଥରେ ବୃଷ୍ଣିବଂଶୀୟମାନଙ୍କ ସହିତ ପାଣ୍ଡବମାନଙ୍କର ସମାଗମ ; ସୁକନ୍ୟାର ଉପାଖ୍ୟାନ, ଯହିଁରେ ଭୃଗୁବଂଶୀୟ ଚ୍ୟବନ, ଶର୍ଯ୍ୟାତିଙ୍କ ଯଜ୍ଞରେ ଅଶ୍ୱିନୀକୁମାରଦ୍ୱୟଙ୍କୁ ସୋମପାୟୀ କଲେ ; ସେମାନଙ୍କ ପ୍ରସାଦରୁ ଚ୍ୟବନମୁନି ଯୌବନଶ୍ରୀ ପ୍ରାପ୍ତ ହେଲେ, ଏଥିରେ ମହାରାଜା ମାନ୍ଧାତାଙ୍କ ଉପାଖ୍ୟାନ କୀର୍ତ୍ତିତ ହୋଇଅଛି (୧୬୬) । ଜନ୍ତୁ ନାମକ ରାଜପୁତ୍ରଙ୍କ ଉପାଖ୍ୟାନ, ଯହିଁରେ ସୋମକରାଜା (ଜନ୍ତୁନାମକ) ପୁତ୍ରର ବଧ କରି ଯଜ୍ଞାନୁଷ୍ଠାନ କଲେ ଓ ତାହାର ଫଳସ୍ୱରୂପ ସେ ଶତପୁତ୍ର ଲାଭ କଲେ ; ତଦନନ୍ତର ପରମୋତ୍କୃଷ୍ଟ ଶ୍ୟେନ ଓ କପୋତର ଉପାଖ୍ୟାନ ଯହିଁରେ, ଇନ୍ଦ୍ର, ଅଗ୍ନି ଓ ଧର୍ମ ଶିବିରାଜାଙ୍କୁ ପ୍ରଶ୍ନମାନ କରିଥିଲେ, ଏଥିରେ ଅଷ୍ଟାବକ୍ରଙ୍କର ଉପାଖ୍ୟାନ, ଯହିଁରେ ଜନକ ଯଜ୍ଞରେ ନୈୟାୟିକ ଶ୍ରେଷ୍ଠ ବରୁଣ ପୁତ୍ର ବନ୍ଦିଙ୍କ ସହିତ ଅଷ୍ଟାବକ୍ରଙ୍କ ବିବାଦ ଉପସ୍ଥିତ ହେଲା ଓ ଯହିଁରେ ମହାତ୍ମା ଅଷ୍ଟାବକ୍ର ବନ୍ଦିଙ୍କୁ ବିଚାରରେ ପରାଜିତ କରି ସାଗର ଋଷିଙ୍କୁ ଜୟକରି ପିତାଙ୍କୁ ଉଦ୍ଧାର କଲେ; ଯବକ୍ରୀତ ଓ ମହାତ୍ମା ରୈଭ୍ୟଙ୍କ ଉପାଖ୍ୟାନ ; ପାଣ୍ଡବମାନଙ୍କର ଗନ୍ଧମାଦନ ଯାତ୍ରା ଓ ନାରାୟଣାଶ୍ରମରେ ବାସ ; ଗନ୍ଧମାଦନରେ ପୁଷ୍ପାହରଣାର୍ଥ ଦ୍ରୌପଦୀଙ୍କ କର୍ତ୍ତୃକ ମହାବାହୁ ଭୀମସେନ ନିଯୁକ୍ତ ହୋଇ ଯାଉଁ ଯାଉଁ ପଥରେ କଦଳୀବନମଧ୍ୟରେ ମହାବଳ ହନୁମାନଙ୍କୁ ଦେଖିଲେ ଓ କହ୍ଲାର ତୋଳିବା ନିମିତ୍ତ ସରୋବରକୁ ଆଲୋଡ଼ିତ କଲେ; ଯହିଁରେ ମହାବଳ ରାକ୍ଷସମାନଙ୍କ ସହିତ ଓ ମଣିମାନ୍ ପ୍ରଭୃତି ବୀର୍ଯ୍ୟଶାଳୀ ଯକ୍ଷଙ୍କ ସହିତ ଭୀମସେନଙ୍କର ସଂଗ୍ରାମ ଘଟିଲା ; ବୃକୋଦର କର୍ତ୍ତୃକ ଜଟାସୁର ରାକ୍ଷସର ବଧ ; ତଦନନ୍ତର ରାଜର୍ଷି ବୃଷପର୍ବାଙ୍କ ଅଭିଗମନ ; ତତ୍ପରେ ଏମାନଙ୍କର ଆର୍ଷ୍ଟିଷେଣ ଋଷିଙ୍କ ଆଶ୍ରମକୁ ଗମନ ଓ ବାସ, ଏହି ସମୟରେ ମହାତ୍ମା ଭୀମଙ୍କୁ ଦ୍ରୌପଦୀଙ୍କର ଉତ୍ସାହ ପ୍ରଦାନ (୧୬୬), ଭୀମଙ୍କର

କୈଳାସାରୋହଣ, ଯେଉଁଠାରେ ବଳଦର୍ପିତ ମଣିମାନ୍ ପ୍ରଭୃତି ଯକ୍ଷଗଣଙ୍କ ସହିତ ଘୋରଯୁଦ୍ଧ ଉପସ୍ଥିତ ହେଲା, ଯେଉଁ ସ୍ଥଳରେ କୁବେରଙ୍କ ସହିତ ପାଣ୍ଡବମାନଙ୍କର ସମାଗମ ହେଲା ; ସେହିଠାରେ ଅର୍ଜ୍ଜୁନ ସ୍ୱର୍ଗବାସରୁ ଆସି ଭ୍ରାତାମାନଙ୍କ ସହିତ ମିଳିତ ହେଲେ ; ସବ୍ୟସାଚୀ ଦିବ୍ୟାସ୍ତ୍ରମାନଙ୍କୁ ଲାଭ କରି ହିରଣ୍ୟପୁରବାସୀ ନିବାତକବଚ ସହିତ ଯୁଦ୍ଧ କଲେ ।

ଦେବଶତ୍ରୁ ହିରଣ୍ୟପୁରବାସୀ ନିବାତକବଚଗଣ ଓ ପୁଲୋମପୁତ୍ର କାଳକେୟଗଣଙ୍କ ସହିତ କିରୀଟୀଙ୍କର ଯୁଦ୍ଧ ଓ ତହିଁରେ ଏମାନଙ୍କର ଯେପରି ବଧ ହେଲା ସେ ସମସ୍ତ ଧୀମାନ୍ ଅର୍ଜ୍ଜୁନ ସ୍ୱୟଂ ଧର୍ମରାଜଙ୍କ ସମୀପରେ କହିଲେ ଓ ଦିବ୍ୟାସ୍ତ୍ରମାନ ପ୍ରଦର୍ଶନ କରିବାର ଉପକ୍ରମ କାଳରେ ଦେବର୍ଷି ନାରଦଙ୍କ କର୍ତ୍ତୃକ ତତ୍ପ୍ରତିଷେଧ; ଗନ୍ଧମାଦନରୁ ପାଣ୍ଡବମାନଙ୍କର ଅବରୋହଣ (୧୮୨); ଅତି ଗହନ ଅରଣ୍ୟ ମଧ୍ୟରେ ପର୍ବତତୁଲ୍ୟକାୟ ମହାବଳ ଭୁଜଗେନ୍ଦ୍ର କର୍ତ୍ତୃକ ଭୀମଙ୍କର ଆକ୍ରମଣ; ଯହିଁରେ ପ୍ରଶ୍ନର ଉତ୍ତର ଦାନ କରି ଯୁଧିଷ୍ଠିର ଭୀମସେନଙ୍କୁ ମୁକ୍ତ କଲେ; ତଦନନ୍ତର ମହାତ୍ମା ପାଣ୍ଡବମାନଙ୍କର ପୁନରପି କାମ୍ୟକ ବନକୁ ଆଗମନ, ପୁନଶ୍ଚ ସେହି ପୁରୁଷଶ୍ରେଷ୍ଠ ପାଣ୍ଡବମାନଙ୍କୁ ଦେଖିବା କାରଣ କୃଷ୍ଣଙ୍କର ଆଗମନ; ଦେବର୍ଷି ନାରଦ ମାର୍କଣ୍ଡେୟଙ୍କ ସହିତ ଉପବେଶନରେ ସର୍ବ-ପ୍ରକାର ଉପାଖ୍ୟାନ, ଯହିଁରେ ପରମର୍ଷି ମାର୍କଣ୍ଡେୟ ବେଣପୁତ୍ର ପୃଥୁରାଜଙ୍କ ଚରିତକୁ ଓ ମହାତ୍ମା ତାର୍କ୍ଷ୍ୟମୁନିଙ୍କର ଓ ସରସ୍ୱତୀଙ୍କର ଯେଉଁ କଥୋପକଥନ ହୋଇଥିଲା ତାହା କହିଥିଲେ; ମତ୍ସ୍ୟୋପାଖ୍ୟାନ, ମାର୍କଣ୍ଡେୟଙ୍କ ସମସ୍ୟା, ଇନ୍ଦ୍ରଦ୍ୟୁମ୍ନୋପାଖ୍ୟାନ, ଧୁନ୍ଧୁମାର ଚରିତ ଓ ପତିବ୍ରତାର ଆଖ୍ୟାନ, ଅଙ୍ଗିରାଙ୍କ ଚରିତ, ଦ୍ରୌପଦୀ ସତ୍ୟଭାମା ସମ୍ବାଦ କୀର୍ତ୍ତିତ ହୋଇଅଛି । ପାଣ୍ଡବମାନଙ୍କର ପୁନଶ୍ଚ ଦ୍ୱୈତବନକୁ ପ୍ରତ୍ୟାଗମନ; ଘୋଷଯାତ୍ରା, ଯହିଁରେ ଗନ୍ଧର୍ବମାନେ ଦୁର୍ଯ୍ୟୋଧନଙ୍କୁ ବନ୍ଧନ କଲେ, ଲଜ୍ଜିତ ସେହି ଦୁରାତ୍ମାର ଅର୍ଜ୍ଜୁନ କର୍ତ୍ତୃକ ମୋଚନ, ଏହିଠାରେ ଯୁଧିଷ୍ଠିରଙ୍କ ନିକଟରେ ମୃଗସ୍ୱପ୍ନ ନିଦର୍ଶନ ଅର୍ଥାତ୍ ଦେବତା ଓ ବ୍ରାହ୍ମଣାର୍ଥ ସୁଦ୍ଧା ବହୁ ଜୀବହିଂସା ପ୍ରଶସ୍ତ ନୁହେଁ (୧୯୧), ବନଶ୍ରେଷ୍ଠ କାମ୍ୟକ ବନକୁ ପୁନଃ ପ୍ରସ୍ଥାନ, ଏହି ସ୍ଥଳେ ବହୁ ବିସ୍ତୃତ ବ୍ରୀହିଦ୍ରୌଣିକ ଉପାଖ୍ୟାନ; ଏହି ସ୍ଥଳେ ଦୁର୍ବାସାଙ୍କ ଉପାଖ୍ୟାନ ପରିକୀର୍ତ୍ତିତ ହୋଇଅଛି ।

ଆଶ୍ରମ ମଧ୍ୟରୁ ଜୟଦ୍ରଥ କର୍ତ୍ତୃକ ଦ୍ରୌପଦୀହରଣ, ଯହିଁରେ ମହାବଳ ବାୟୁତୁଲ୍ୟ ବେଗଶାଳୀ ଭୀମସେନ କର୍ତ୍ତୃକ ଜୟଦ୍ରଥଙ୍କ ପ୍ରତି

ଅନୁଧାବନ, ଯହିଁରେ ମହାବଳ ଭୀମସେନ ଜୟଦ୍ରଥକୁ ପଞ୍ଚଶିଖ କଲେ, ଏହି ପର୍ବରେ ବହୁ ବିସ୍ତୃତ ରାମାୟଣ ଉପାଖ୍ୟାନ, ଯହିଁରେ ରାମ କର୍ତ୍ତୃକ ସମ୍ମୁଖ ଯୁଦ୍ଧରେ ରାବଣ ଆକ୍ରାନ୍ତ ହୋଇ ନିହତ ହେଲେ, ଏହି ସମସ୍ତ ବୃତ୍ତାନ୍ତ ଅଛି; ଏଥିରେ ସାବିତ୍ରୀଙ୍କ ଉପାଖ୍ୟାନ କୀର୍ତ୍ତିତ ହୋଇଅଛି; ଏଥିରେ କୁଣ୍ଡଳଯୁଗଳ ପ୍ରଦାନ କରି କର୍ଣ୍ଣଙ୍କର ମୁକ୍ତିଲାଭ ଓ ଯହିଁରେ ପୁରନ୍ଦର ପ୍ରୀତ ହୋଇ କର୍ଣ୍ଣଙ୍କୁ ଗୋଟିଏ ପୁରୁଷଘାତିନୀ ଶକ୍ତି ପ୍ରଦାନ କଲେ, ଅରଣୀ-ହରଣୋପାଖ୍ୟାନ, ଯହିଁରେ ଧର୍ମ ସ୍ୱୀୟ ସନ୍ତାନ ଯୁଧିଷ୍ଠିରଙ୍କୁ ହିତୋପଦେଶ ପ୍ରଦାନ କରିଅଛନ୍ତି; ତତ୍ପରେ ବରପ୍ରାପ୍ତ ହୋଇ ପାଣ୍ଡବମାନଙ୍କର ପଶ୍ଚିମ ଦିଗକୁ ଗମନ; ଏହି ସମସ୍ତ ବୃତ୍ତାନ୍ତ ଘଟିତ ତୃତୀୟ ପର୍ବ, ଆରଣ୍ୟକ ନାମରେ କୀର୍ତ୍ତିତ ହୋଇଅଛି; ଏହି ପର୍ବରେ (୨୬୯) ଦ୍ୱିଶତ ଏକୋନ-ସପ୍ତତି ଅଧ୍ୟାୟ ଓ (୧୧୬୬୪) ଏକାଦଶ ସହସ୍ର ଛଅଶତ ଚୌଷଠି ଶ୍ଳୋକ ଅଛି ।

ଏଥି ଉତ୍ତାରୁ ବିସ୍ତୃତ ବିରାଟ ପର୍ବର ବୃତ୍ତାନ୍ତ ଶ୍ରବଣ କର । ବିରାଟ ନଗରରେ ପ୍ରବେଶ ହୋଇ ପାଣ୍ଡବମାନେ ଶ୍ମଶାନଭୂମିସ୍ଥ ବିପୁଳ ଶମୀବୃକ୍ଷ ଉପରେ ଆପଣା ଅସ୍ତ୍ରଶସ୍ତ୍ର ସଂସ୍ଥାପନ କରି ଛଦ୍ମବେଶରେ ବିରାଟ ଗୃହରେ ଅବସ୍ଥିତ ହେଲେ, କାମରେ ହତଜ୍ଞାନ ଦ୍ରୌପଦୀସମ୍ଭୋଗାଭିଳାଷୀ ଦୁରାତ୍ମା କୀଚକର ଭୀମସେନ କର୍ତ୍ତୃକ ବଧ; ଏଣେ ପାଣ୍ଡବମାନଙ୍କର ଅନୁସନ୍ଧାନାର୍ଥ ଅନେକାନେକ ଚରଗଣଙ୍କୁ ଦୁର୍ଯ୍ୟୋଧନ ଚତୁର୍ଦ୍ଦିଗକୁ ପ୍ରେରଣ କରିବାର, କିନ୍ତୁ ଚରମାନଙ୍କର ମହାତ୍ମା ପାଣ୍ଡବମାନଙ୍କର କୌଣସି ସନ୍ଧାନ ନ ପାଇବାର; ଏହି ସମୟରେ ଆଦୌ ତ୍ରିଗର୍ତ୍ତଗଣ କର୍ତ୍ତୃକ ବିରାଟର ଗୋଧନ ହରଣ, ଯହିଁରେ ସେମାନଙ୍କ ସହିତ ଲୋମହର୍ଷଣ ଘୋରତର ଯୁଦ୍ଧ ଘଟି-ଥିଲା; ଯହିଁରେ ବିରାଟରାଜା ଭୀମସେନ କର୍ତ୍ତୃକ ବନ୍ଧନମୁକ୍ତ ହୋଇ ଲଜ୍ଜିତ ହେଲେ, ପରେ ପାଣ୍ଡବମାନଙ୍କ କର୍ତ୍ତୃକ ବିରାଟ ରାଜ୍ୟର ସମସ୍ତ ଗୋଧନ ଉଦ୍ଧୃତ ହେବା, ଅନନ୍ତର କୌରବଗଣ ପୁନର୍ବାର ସେମାନଙ୍କର ଗୋଧନ ହରଣ କଲେ, ଯହିଁରେ ସମସ୍ତ କୁରୁବଳ ଏକମାତ୍ର ଅର୍ଜ୍ଜୁନ କର୍ତ୍ତୃକ ପରାଜିତ ହେଲେ ଓ ସେହି କିରୀଟୀଙ୍କ ବଳରେ ସେହି ଗୋଧନମାନେ ପୁନରାନୀତ ହେଲେ; ତତ୍ପରେ ବିରାଟ ନରପତି ସୁଭଦ୍ରାଙ୍କ ପୁତ୍ର ଶତ୍ରୁଘାତୀ ଅଭିମନ୍ୟୁଙ୍କୁ ଉଦ୍ଦେଶ୍ୟ କରି ନିଜ ଦୁହିତା ଉତ୍ତରାକୁ ଅର୍ଜ୍ଜୁନଙ୍କୁ ସମ୍ପ୍ରଦାନ କଲେ । ଏହି ସକଳ ବିଷୟ ବିରାଟ ନାମକ ଚତୁର୍ଥ ପର୍ବରେ ବର୍ଣ୍ଣିତ ହୋଇଅଛି ।

ବେଦବ୍ୟାସ ମହର୍ଷି ଏହାକୁ ସପ୍ତଷଷ୍ଟି,(୬୭)ଅଧ୍ୟାୟରେ ବିଭକ୍ତ କରି(୨୦୫୦) ଦୁଇ ସହସ୍ର ପଞ୍ଚାଶତ୍ ଶ୍ଳୋକାତ୍ମକ କରିଅଛନ୍ତି ।

ହେ ମୁନିଗଣ ! ଉଦ୍ୟୋଗ ନାମକ ପର୍ବକୁ ପଞ୍ଚମ ବୋଲି ଜାଣ; ଅତଃପର ତାହା ଶ୍ରବଣ କର । ଉପପ୍ଲବ୍ୟ ନାମକ ସ୍ଥାନରେ ସେନାନିବେଶ ହେଲାରୁ ପରସ୍ପର ଜିଗୀଷାବଶରେ ଦୁର୍ଯ୍ୟୋଧନ ଓ ଅର୍ଜ୍ଜୁନ ବାସୁଦେବଙ୍କ ନିକଟରେ ଉପସ୍ଥିତ ହେଲେ ଓ କହିଲେ, "ଏହି ଆସନ୍ନ ସମୟରେ ଆପଣ ଆମ୍ଭମାନଙ୍କୁ ସାହାଯ୍ୟ କରିବାକୁ ସମର୍ଥ ହୋଇଅଛନ୍ତି ।" ଏହା-ଶୁଣି ସୁଚତୁର କୃଷ୍ଣ ବୋଇଲେ, ହେ ପୁରୁଷଶ୍ରେଷ୍ଠଦ୍ୱୟ ! ଏକ ପକ୍ଷରେ ଆମ୍ଭେ ଯୁଦ୍ଧ ନ କରି ମନ୍ତ୍ରୀ ସ୍ୱରୂପ ରହିବୁଁ, ଅପର ପକ୍ଷରେ ଆମ୍ଭର ଏକ ଅକ୍ଷୌହିଣୀ ସେନା ଯୁଦ୍ଧ କରିବେ, ଏହି ଦୁଇଥିରୁ ତୁମ୍ଭମାନଙ୍କର କାହାର କି ଅଭିଳାଷ ବୋଲ ଆମ୍ଭେ ପ୍ରଦାନ କରିବୁଁ ।" ଏହା ଶୁଣି ଦୁର୍ମତି ପାପାତ୍ମା ଦୁର୍ଯ୍ୟୋଧନ ସୈନ୍ୟ ବରଣ କଲେ; ଧନଞ୍ଜୟ ଯୁଦ୍ଧ-ବିମୁଖ ବାସୁଦେବଙ୍କୁ ସଚିବ ପଦରେ ବରଣ କଲେ । ମଦ୍ରରାଜ ଶଲ୍ୟ ପାଣ୍ଡବଙ୍କୁ ସାହାଯ୍ୟ ପ୍ରଦାନ କରିବାକୁ ଆସୁଥିଲେ; ପଥମଧ୍ୟରେ ସୁଯୋଧନ ଉପହାର ପ୍ରଦାନଦ୍ୱାରା ବଞ୍ଚନା କରି ତାହାଙ୍କୁ ବରଦାନରେ ଉଦ୍ୟତ ଦେଖି "ଆମ୍ଭର ସାହାଯ୍ୟ କର" ବୋଲି ପ୍ରାର୍ଥନା କଲେ । ଶଲ୍ୟ ତାହା ପ୍ରତିଶ୍ରୁତ ହୋଇ ପାଣ୍ଡବମାନଙ୍କ ଉଦ୍ଦେଶ୍ୟରେ ଗମନ କଲେ ଓ ସେଠାରେ ସଦ୍ଭାବପୂର୍ଣ୍ଣ ଚିତ୍ତରେ ଇନ୍ଦ୍ରଙ୍କର ବୃତ୍ରାସୁର ବିଜୟବାର୍ତ୍ତା କୀର୍ତ୍ତନ କଲେ । ଅନନ୍ତର ପାଣ୍ଡବମାନେ କୌରବଙ୍କ ନିକଟକୁ ପୁରୋହିତ ପ୍ରେରଣ କଲେ ।

ପ୍ରତାପଶାଳୀ ମହାରାଜା ଧୃତରାଷ୍ଟ୍ର ବିଚକ୍ଷଣାର୍ଯ୍ୟଙ୍କ ବାକ୍ୟ ଓ ଇନ୍ଦ୍ର-ବିଜୟର ତାତ୍ପର୍ଯ୍ୟ ଓ ତାଙ୍କର ଆଗମନର ଉଦ୍ଦେଶ୍ୟ ପୁରୋହିତଙ୍କ ନିକଟରୁ ଅବଗତ ହୋଇ ଶମ କାମନାରେ ସଞ୍ଜୟଙ୍କୁ ଦୂତସ୍ୱରୂପ ପାଣ୍ଡବଙ୍କ ସମୀପକୁ ପଠାଇଲେ ଓ ପାଣ୍ଡବମାନେ ବାସୁଦେବଙ୍କ କର୍ତ୍ତୃକ ଅଧିଷ୍ଠିତ ହୋଇଥିବାର ଶୁଣି ଧୃତରାଷ୍ଟ୍ର ଚିନ୍ତାରେ ବିଗତନିଦ୍ର ହେଲେ । ବିଦୁର ମନୀଷୀ ଧୃତରାଷ୍ଟ୍ରଙ୍କୁ ବିଚିତ୍ର ଓ ହିତକର ବାକ୍ୟ ଶ୍ରବଣ କରାଇବାକୁ ଲାଗିଲେ ଓ ଭାବୀ ଶୋକଚିନ୍ତାରେ ମଗ୍ନ ମନସ୍ତାପାନ୍ୱିତ ସେହି ମହାରାଜାଙ୍କୁ ସନତ୍ସୁ-ଜାତ ପରମୋତ୍କୃଷ୍ଟ ଅଧ୍ୟାତ୍ମବିଦ୍ୟା ଶ୍ରବଣ କରାଇଲେ । ସଞ୍ଜୟ ପ୍ରଭାତରେ ରାଜସଭାକୁ ଗମନ କରି ଧନଞ୍ଜୟଙ୍କୁ ପରମାତ୍ମା ସ୍ୱରୂପ ବାସୁଦେବଙ୍କଠାରୁ ଅଭିନ୍ନ ବୋଲି କୀର୍ତ୍ତନ କଲେ । ୨୨୫ ।

ମହାମତି ବାସୁଦେବ ଅନୁକମ୍ପାପରବଶ ହୋଇ ଶାନ୍ତି ଓ ସନ୍ଧି ସ୍ଥାପନାର୍ଥ ହସ୍ତିନାପୁରରେ ସ୍ୱୟଂ ଉପସ୍ଥିତ ହେଲେ । ନଷ୍ଟମତି ଦୁର୍ଯୋଧନ ଉଭୟପକ୍ଷଙ୍କ ହିତାର୍ଥ ଶମପ୍ରାର୍ଥୀ କୃଷ୍ଣଙ୍କୁ ପ୍ରତ୍ୟାଖ୍ୟାନ କଲେ । ଏହି ସ୍ଥଳେ ଦମ୍ଭୋଦ୍ଭବ ଭୂପତିଙ୍କ ଉପାଖ୍ୟାନ, ମହାତ୍ମା ମାତଲିଙ୍କର ନିଜ ଦୁହିତା ନିମିତ୍ତ ବରାନ୍ୱେଷଣ ଓ ମହର୍ଷି ଗାଲବଙ୍କ ଚରିତ ଓ ବିଦୁଲା ପୁତ୍ରଙ୍କ ଅନୁଶାସନ କୀର୍ତ୍ତିତ ହୋଇଅଛି । ଅରିନ୍ଦମ କୃଷ୍ଣ, କର୍ଣ୍ଣ ଦୁର୍ଯୋଧନାଦିଙ୍କର ମନ୍ତ୍ରଣା ଅବଗତ ହୋଇ ରାଜଗଣ ସମକ୍ଷରେ ସ୍ୱୀୟ ବିଶ୍ୱରୂପ ପ୍ରକଟିତ କରିଲ । କର୍ଣ୍ଣଙ୍କୁ ନିଜ ରଥରେ ଆରୋହଣ କରାଇ ତାହାଙ୍କ ସହିତ ଅଶେଷ ମନ୍ତ୍ରଣା କଲେ । କିନ୍ତୁ ଗର୍ବାନ୍ଧତାପ୍ରଯୁକ୍ତ ତାହାଙ୍କର ସେ ପରାମର୍ଶକୁ କର୍ଣ୍ଣ ପ୍ରତ୍ୟାଖ୍ୟାତ କଲେ । ପରେ ଅରିନ୍ଦମ ବାସୁଦେବ ହସ୍ତିନାପୁରରୁ ଉପପ୍ଳବ୍ୟକୁ ପ୍ରତ୍ୟାଗତ ହୋଇ ପାଣ୍ଡବମାନଙ୍କଠାରେ ଆଦ୍ୟୋପାନ୍ତ ସମସ୍ତ ବର୍ଣ୍ଣନ କଲେ । ଶତ୍ରୁଘାତି ପାଣ୍ଡୁନନ୍ଦନମାନେ ତାହାଙ୍କ ବାକ୍ୟ ଶ୍ରବଣାନନ୍ତର, ହିତାହିତ ବିବେଚନା ପୂର୍ବକ ସଂଗ୍ରାମର ଆୟୋଜନ କରିବାକୁ ପ୍ରବୃତ୍ତ ହେଲେ । ଏଣେ ହସ୍ତିନାପୁରରୁ ହସ୍ତୀ, ଅଶ୍ୱ, ରଥ, ପଦାତିଗଣ ବଳସଂଖ୍ୟାନ ଯୁଦ୍ଧାର୍ଥ ନିର୍ଗତ ହେବାକୁ ଆରମ୍ଭ କଲେ । ରାଜା ଦୁର୍ଯୋଧନ ଉଲୂକ ନାମକ ଏକ ବ୍ୟକ୍ତିଙ୍କୁ ଦୌତ୍ୟ କାର୍ଯ୍ୟରେ ନିଯୁକ୍ତ କରି ଯୁଦ୍ଧର ପୂର୍ବଦିନ ପାଣ୍ଡବଙ୍କ ନିକଟକୁ ପଠାଇଲେ । ତତ୍ପରେ ରଥାତିରଥ ସଂଖ୍ୟା ଓ କାଶୀରାଜ ଦୁହିତା ଅମ୍ବାଙ୍କ ଉପାଖ୍ୟାନ କଥିତ ହୋଇଅଛି । ଏହି ବହୁ ବିସ୍ତୃତ ସନ୍ଧିବିଗ୍ରହ ବିଷୟକ ବୃତ୍ତାନ୍ତଯୁକ୍ତ ଉଦ୍ୟୋଗପର୍ବ ଭାରତରେ ପଞ୍ଚମ ବୋଲି ଉକ୍ତ ହୁଏ । ଏଥିରେ (୧୮୬) ଏକଶତ ଷଡ଼ଶୀତି ଅଧ୍ୟାୟ ଓ (୬୬୯୮) ଛଅ ସହସ୍ର ଛଅଶତ ଅଷ୍ଟନବତି ଶ୍ଳୋକ ଅଛି । ୨୩୮ ।

ଅତଃପର ବିଚିତ୍ର ବୃତ୍ତାନ୍ତଯୁକ୍ତ ଭୀଷ୍ମପର୍ବ ବର୍ଣ୍ଣିତ ହୋଇଅଛି । ଏଥିରେ ପ୍ରଥମତଃ ସଞ୍ଜୟଙ୍କକର୍ତ୍ତୃକ ଜମ୍ବୁଖଣ୍ଡନିର୍ମାଣକଥନ, ଯହିଁରେ ଯୁଧିଷ୍ଠିରଙ୍କ ସୈନ୍ୟସକଳ ବିଷାଦପ୍ରାପ୍ତ ହୋଇଥିଲେ ; ଦଶଦିନ ପର୍ଯ୍ୟନ୍ତ ଘୋରତର ସୁଦାରୁଣ ଯୁଦ୍ଧ ବର୍ଣ୍ଣିତ ଅଛି ; ଯହିଁରେ ଯୁଧିଷ୍ଠିରଙ୍କ ହିତାକାଂକ୍ଷୀ ମହାମତି ଶ୍ରୀକୃଷ୍ଣ ଅଧ୍ୟାତ୍ମବିଦ୍ୟା ବ୍ୟାଖ୍ୟାପୂର୍ବକ ଅର୍ଜ୍ଜୁନଙ୍କ ମୋହଜନ୍ୟ ବିଷାଦ ନିବାରଣ କଲେ । ଉଦାରଚେତା ନିର୍ଭୀକ ବାସୁଦେବ ରଥରୁ ଅବତରଣ-ପୂର୍ବକ ଭୀଷ୍ମଙ୍କୁ ସଂହାର କରିବା ନିମିତ୍ତ ପ୍ରତୋଦ ହସ୍ତରେ ବେଗେ ପ୍ରଧାବିତ ହେଲେ । ଯହିଁରେ ସମସ୍ତ ଅସ୍ତ୍ରଧାରୀଙ୍କ ଶ୍ରେଷ୍ଠ ଗାଣ୍ଡୀବଧନ୍ୱା ସମରରେ କୃଷ୍ଣ କର୍ତ୍ତୃକ ବାଗ୍‌ଦଣ୍ଡରେ ଅଭିହିତ ହେଲେ । ମହାବୀର ଅର୍ଜ୍ଜୁନ ଶିଖଣ୍ଡୀଙ୍କୁ

ପୃଷ୍ଠଭାଗରେ ସ୍ଥାପନପୂର୍ବକ ଭୀଷ୍ମଙ୍କୁ ନିଶିତଶର ଦ୍ୱାରା ପ୍ରହାର କରି ରଥରୁ ପାତିତ କଲେ ; ଯହିଁରେ ଶାନ୍ତନୁତନୟ ଶରଶଯ୍ୟାରେ ଶୟାନ ହେଲେ । ଏହି ସକଳ ବିଷୟ ଭୀଷ୍ମନାମକ ଭାରତୀୟ ଷଷ୍ଠପର୍ବରେ କୀର୍ତ୍ତିତ ହୋଇଅଛି । ଏଥିରେ ଅଧ୍ୟାୟ ସଂଖ୍ୟା (୧୧୭) ଏକଶତ ସପ୍ତଦଶ । ବେଦବେତ୍ତା ମହର୍ଷି ବ୍ୟାସଙ୍କ କର୍ତ୍ତୃକ ଏହି ପର୍ବରେ (୫୮୮୪) ପଞ୍ଚସହସ୍ର ଅଷ୍ଟଶତ ଚତୁରଶୀତି ଶ୍ଳୋକ ସଂଖ୍ୟାତ ହୋଇଅଛି । ୨୪୮ ।

ତଦନନ୍ତର ବହୁ ବୃତ୍ତାନ୍ତପୂର୍ଣ୍ଣ ବିଚିତ୍ର ଦ୍ରୋଣ ପର୍ବ କୀର୍ତ୍ତିତ ହୋଇଅଛି ; ଯହିଁରେ ପ୍ରତାପସମ୍ପନ୍ନ ଦ୍ରୋଣାଚାର୍ଯ୍ୟ ସେନାପତ୍ୟରେ ଅଭିଷିକ୍ତ ହେଲେ, ସେହି ମହାସ୍ତ୍ରବିତ୍ ଦୁର୍ଯ୍ୟୋଧନଙ୍କର ମନଃପ୍ରୀତି ସମ୍ପାଦନାର୍ଥ ପାଣ୍ଡୁପୁତ୍ର ଧୀମାନ୍ ଧର୍ମରାଜଙ୍କୁ ରଣକ୍ଷେତ୍ରରୁ ବନ୍ଧନପୂର୍ବକ ଆଣିବାର ପ୍ରତିଜ୍ଞା କଲେ, ଯହିଁରେ ସଂଶପ୍ତକଗଣ ପାର୍ଥଙ୍କୁ ରଣାଙ୍ଗନରୁ ଅପସାରିତ କଲେ, ଯହିଁରେ ଭଗଦତ୍ତ ମହାରାଜ ସୁପ୍ରତୀକ ନାମକ କରିରାଜର ବଳରେ ସଂଗ୍ରାମରେ ପୁରନ୍ଦର ତୁଲ୍ୟ ପରାକ୍ରାନ୍ତ ହୋଇ ଉଠିଲେ । ସେ ମଧ୍ୟ ଧନଞ୍ଜୟଙ୍କ ଦ୍ୱାରା ଶାନ୍ତ ହେଲେ; ଜୟଦ୍ରଥ ପ୍ରଭୃତି ଅନେକାନେକ ମହାରଥ ଏକତ୍ରିତ ହୋଇ ଏକାକୀ ଯୁଦ୍ଧରେ ପ୍ରବୃତ୍ତ; ଅପ୍ରାପ୍ତଯୌବନ କିନ୍ତୁ ମହାବୀର୍ଯ୍ୟସମ୍ପନ୍ନ ବାଳକ ଅଭିମନ୍ୟୁଙ୍କୁ ବିନାଶ କଲେ; ଯହିଁରେ ଅଭିମନ୍ୟୁ ନିହତ ହେବାରୁ କ୍ରୋଧୋଦ୍ଦୀପ୍ତ କିରୀଟୀ ଯୁଦ୍ଧରେ ସପ୍ତ ଅକ୍ଷୌହିଣୀ ସେନା ସଂହାର ପୂର୍ବକ ଜୟଦ୍ରଥଙ୍କୁ ଯମାଳୟକୁ ପ୍ରେରଣ କଲେ; ଯହିଁରେ ମହାବଳ ଭୀମସେନ ଓ ମହାରଥ ସାତ୍ୟକି ମହାରାଜ ଯୁଧିଷ୍ଠିରଙ୍କ ଆଦେଶାନୁସାରେ ପାର୍ଥଙ୍କ ଅନ୍ୱେଷଣାର୍ଥ, ଦେବତାଙ୍କ ଦ୍ୱାରା ମଧ୍ୟ ଅପରାଜେୟ କୌରବସେନା ଭେଦ କରି ପ୍ରବେଶ କଲେ; ଯୁଦ୍ଧ କ୍ଷେତ୍ରରେ ନବକୋଟି ସଂଶପ୍ତକ ବୀରଙ୍କ ମଧ୍ୟରେ ହତାବଶିଷ୍ଟ ସଂଶପ୍ତକଗଣ ନିହତ ହେଲେ; କିରୀଟୀ ଅକ୍ଷତ ଶରୀରରେ କୁରୁସୈନ୍ୟଙ୍କ ମଧ୍ୟରୁ ନିଷ୍କ୍ରାନ୍ତ ହୋଇ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ଓ ପାଷାଣଯୋଧୀ ନାରାୟଣୀ ସେନାଙ୍କୁ ଓ ସମରରେ ବିଚିତ୍ରଯୋଧୀ ଗୋପାଳମାନଙ୍କୁ ଯମସଦନକୁ ପ୍ରେରଣ କଲେ । ଅଳମ୍ବୁଷ, ଶ୍ରୁତାୟୁ, ବୀର୍ଯ୍ୟବାନ୍ ଜରାସନ୍ଧ, ସୋମଦତ୍ତି, ବିରାଟ, ମହାରଥ ଦ୍ରୁପଦ ଓ ଘଟୋତ୍କଚ ପ୍ରଭୃତି ଅନ୍ୟାନ୍ୟ ଯୋଦ୍ଧୃଗଣ ଏହି ପର୍ବରେ ନିହତ ହେବାର କଥିତ ଅଛି; ଏଥିରେ ଦ୍ରୋଣାଚାର୍ଯ୍ୟ ସମର କ୍ଷେତ୍ରରେ ନିଧନପ୍ରାପ୍ତ ହେଲେ; ଅଶ୍ୱତ୍ଥାମା କ୍ରୋଧପରବଶ

ହୋଇ ଅତି ଭୟଙ୍କର ନାରାୟଣାସ୍ତ୍ର ପ୍ରାଦୁର୍ଭୂତ କଲେ; ଅନନ୍ତର ଯହିଁରେ ଆଗ୍ନେୟ ଓ ଅତ୍ୟୁତ୍ତମ ରୁଦ୍ର ମାହାତ୍ମ୍ୟ, ବାସୁଦେବଙ୍କ ଆଗମନ ଓ କୃଷ୍ଣାର୍ଜ୍ଜୁନଙ୍କ ମହିମା କୀର୍ତ୍ତିତ ହୋଇଅଛି; ଏହି ଉଦାହୃତ ସୁମହତ୍ ପର୍ବଟି ଭାରତରେ ସପ୍ତମ; ଯେଉଁମାନେ ଶୌର୍ଯ୍ୟଶାଳୀ ପୁରୁଷଶ୍ରେଷ୍ଠ ଭୂପାଳଗଣ ପୂର୍ବେ ନିର୍ଦ୍ଦିଷ୍ଟ ହୋଇଅଛନ୍ତି ସେମାନେ ପ୍ରାୟ ସମସ୍ତେ ନିଧନପ୍ରାପ୍ତ ହେବାର ଏହି ପର୍ବରେ କଥିତ ହୋଇଅଛି । ଏହି ଦ୍ରୋଣ ପର୍ବରେ ପରାଶର ପୁତ୍ର, ତତ୍ତ୍ୱଦର୍ଶୀ ମୁନିଙ୍କ କର୍ତ୍ତୃକ ଚିନ୍ତା ପୁରଃସର (୧୭୦) ଏକଶତ ସପ୍ତତି ଅଧ୍ୟାୟ ଓ (୮୯୦୯) ଅଷ୍ଟସହସ୍ର ନଅଶତ ନଅ ଶ୍ଳୋକ ସଂଖ୍ୟାତ ହୋଇଅଛି । ୨୬୨ ।

ଅତଃପର ପରମାଦ୍ଭୁତ କର୍ଣ୍ଣପର୍ବ ବୃତ୍ତାନ୍ତ ଉକ୍ତ ହୋଇଅଛି । ଯହିଁରେ ଧୀମାନ୍ ଶଲ୍ୟଙ୍କ ସାରଥ୍ୟ କାର୍ଯ୍ୟରେ ନିଯୋଗ ଓ ତ୍ରିପୁରାସୁର ବଧୋପାଖ୍ୟାନ ଆଖ୍ୟାତ ହୋଇଅଛି ଓ ପ୍ରୟାଣ କାଳରେ କର୍ଣ୍ଣ ଓ ଶଲ୍ୟଙ୍କର ପରସ୍ପର ପରୁଷଭାଷଣ, କର୍ଣ୍ଣଙ୍କ ତିରସ୍କାରାର୍ଥ ଶଲ୍ୟକର୍ତ୍ତୃକ ସାକ୍ଷେପରେ ହଂସକାକୀୟୋପାଖ୍ୟାନ କଥନ; ମହାତ୍ମା ଅଶ୍ୱତ୍ଥାମାଙ୍କ କର୍ତ୍ତୃକ ପାଣ୍ଡ୍ୟରାଜାଙ୍କ ନିପାତ, ଦଣ୍ଡସେନଙ୍କର ଓ ତତ୍ପରେ ଦଣ୍ଡଙ୍କ ବଧ; ସମସ୍ତ ଧନୁର୍ଦ୍ଧରଙ୍କ ସମକ୍ଷରେ କର୍ଣ୍ଣଙ୍କ ସହିତ ଦ୍ୱୈରଥ ଯୁଦ୍ଧରେ ଯୁଧିଷ୍ଠିରଙ୍କର ପ୍ରାଣ ସଂଶୟ; ଯୁଧିଷ୍ଠିର ଓ ଅର୍ଜ୍ଜୁନଙ୍କର ପରସ୍ପର ବିରୋଧ ଓ ମାଧବକର୍ତ୍ତୃକ ଅର୍ଜ୍ଜୁନଙ୍କ କୋପ ଶାନ୍ତ ଉକ୍ତ ହୋଇଅଛି; ଭୀମସେନ ପୂର୍ବ ପ୍ରତିଜ୍ଞା ସ୍ମରଣ ପୂର୍ବକ ସମ୍ମୁଖ ସମରରେ ଦୁଃଶାସନଙ୍କ ହୃଦୟ ବିଦୀର୍ଣ୍ଣ କରି ଶୋଣିତ ପାନ କଲେ; ପାର୍ଥ କର୍ତ୍ତୃକ ଦ୍ୱୈରଥ ଯୁଦ୍ଧରେ କର୍ଣ୍ଣ ନିହତ ହେବାର; ଭାରତ ଚିନ୍ତାକାରମାନେ ଏହାକୁ ଅଷ୍ଟମ ପର୍ବ ବୋଲି ନିର୍ଦ୍ଦେଶ କରନ୍ତି । ଏହି କର୍ଣ୍ଣ ପର୍ବରେ (୬୯) ଏକୋନସପ୍ତତି ଅଧ୍ୟାୟ ଓ (୪୯୬୪) ଚାରି ସହସ୍ର ନଅଶତ ଚଉଷଠି ଶ୍ଳୋକ କୀର୍ତ୍ତିତ ହୋଇଅଛି ।

ଅନନ୍ତର ଅତ୍ୟାଶ୍ଚର୍ଯ୍ୟ ଶଲ୍ୟ ପର୍ବ ପ୍ରକୀର୍ତ୍ତିତ ହୋଇଅଛି । କୌରବ ସୈନ୍ୟ ବୀରଶୂନ୍ୟ ହେବାରୁ ଶଲ୍ୟ ସେନାପତି ପଦରେ ଅଭିଷିକ୍ତ ହେଲେ; ଯହିଁରେ କୌମାରାଖ୍ୟାନ, ଅଭିଷେକ କାର୍ଯ୍ୟ ଓ ରଥଯୁଦ୍ଧ ବୃତ୍ତାନ୍ତମାନ ଭାଗ ଭାଗ ହୋଇ କୀର୍ତ୍ତିତ ହୋଇଅଛି । ଏହି ଶଲ୍ୟ ପର୍ବରେ ପ୍ରଧାନ ପ୍ରଧାନ କୌରବମାନଙ୍କର ବିନାଶ ଓ ମହାତ୍ମା ଧର୍ମରାଜଙ୍କ କର୍ତ୍ତୃକ ଶଲ୍ୟଙ୍କ ନିଧନ କୀର୍ତ୍ତନ ହୋଇଅଛି; ସହଦେବଙ୍କ କର୍ତ୍ତୃକ ରଣରେ ଶକୁନିଙ୍କ ସଂହାର ସୁଦ୍ଧା ଏଥିରେ ବର୍ଣ୍ଣିତ ହୋଇଅଛି; ପ୍ରାୟ ସମଗ୍ର କୌରବ ସୈନ୍ୟ

କ୍ଷୟପ୍ରାପ୍ତ ହେବାରୁ ଓ ଅତ୍ୟଳ୍ପ ମାତ୍ର ଅବଶିଷ୍ଟ ରହିବାରୁ ଦୁର୍ଯ୍ୟୋଧନ ହ୍ରଦ ମଧ୍ୟରେ ପ୍ରବେଶ ପୂର୍ବକ ଜଳସ୍ତମ୍ଭନ କରି ସେଠାରେ ଅବସ୍ଥାନ କଲେ; ଭୀମସେନ ବ୍ୟାଧଗଣଙ୍କ ମୁଖରୁ ସେହି ସମ୍ବାଦ ପାଇଲେ; ଅଭିମାନୀ କ୍ରୋଧପରିପୂର୍ଣ ରାଜା ଦୁର୍ଯ୍ୟୋଧନ ବୁଦ୍ଧିମାନ୍ ଧର୍ମରାଜଙ୍କ ତିରସ୍କାର ବଚନ ସହ୍ୟ କରିବାକୁ ନ ପାରି ସହସା ହ୍ରଦରୁ ସମୁତ୍ଥିତ ହେଲେ ଓ ମହାବଳ ଭୀମସେନଙ୍କ ସହିତ ଗଦାଯୁଦ୍ଧ କଲେ; ଏହି ସମର ସମୟରେ ହଳଧରଙ୍କ ଆଗମନ; ଏଥିରେ ସରସ୍ୱତୀ ଦେବୀ ଓ ତୀର୍ଥବୃନ୍ଦଙ୍କ ପବିତ୍ରତା କୀର୍ତ୍ତିତ ଓ ତୁମୁଳ ଗଦାଯୁଦ୍ଧ ବର୍ଣ୍ଣିତ ହୋଇଅଛି; ଯହିଁରେ ଭୀମ ସଂଗ୍ରାମରେ ଭୀମ-ବେଗସମ୍ପନ୍ନ ଗଦାଘାତଦ୍ୱାରା ମହାରାଜା ଦୁର୍ଯ୍ୟୋଧନଙ୍କ ଊରୁଦ୍ୱୟ ଭଗ୍ନ କଲେ; ଏହି ଅଦ୍ଭୁତାର୍ଥ ଘଟିତ ପର୍ବ ନବମ ବୋଲି ନିର୍ଦ୍ଦିଷ୍ଟ ଅଛି । ଏହି ପର୍ବରେ (୫୯) ଏକୋନଷଷ୍ଟି ଅଧ୍ୟାୟ କୀର୍ତ୍ତିତ ଅଛି । କୁରୁକୁଳର କୀର୍ତ୍ତି ପ୍ରଚୁରକାରୀ ମହାତ୍ମନ ଦ୍ୱୈପାୟନ ଏଥିରେ ବହୁ ବୃତ୍ତାନ୍ତାନ୍ୱିତ (୩୨୨୦) ତିନିସହସ୍ର ଦୁଇଶତ କୋଡ଼ିଏ ଶ୍ଳୋକ ପରିଗଣିତ କରି-ଅଛନ୍ତି । ୨୮୩ ।

ଅତଃପର ନିଦାରୁଣ ସୌପ୍ତିକ ପର୍ବ କଥା କୀର୍ତ୍ତିତ ହୋଇଅଛି । ରଣସ୍ଥାନରୁ ପାଣ୍ଡବମାନେ ନିଜ ଶିବିରକୁ ଗମନ କଲାରୁ ସାୟଂ ସମୟରେ କୃତବର୍ମା, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା, ଶୋଣିତସିକ୍ତାଙ୍ଗ ଭଗ୍ନୋରୁଯୁଗଳ କ୍ରୋଧପରିପୂର୍ଣ ମହାରାଜା ଦୁର୍ଯ୍ୟୋଧନଙ୍କ ନିକଟକୁ ଗମନ କରି ସେଠାରେ ଦେଖିଲେ କୁରୁନାଥ ରଣକ୍ଷେତ୍ରରେ ଧୂଳିରେ ପତିତ ହୋଇଅଛନ୍ତି; ତାହା ଦେଖି ଦୃଢ଼କ୍ରୋଧ ଦ୍ରୋଣପୁତ୍ର ପ୍ରତିଜ୍ଞା କଲେ ଯେ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ପାଞ୍ଚାଳଗଣ ଓ ମନ୍ତ୍ରୀବର୍ଗ ସହିତ ପାଣ୍ଡୁପୁତ୍ରମାନଙ୍କୁ ନିପାତ ନ କରି ଆମ୍ଭେ କଦାପି କବଚ ପରିତ୍ୟାଗ କରିବୁ ନାହିଁ । ବିକଳାଙ୍ଗ ରାଜା ଦୁର୍ଯ୍ୟୋଧନଙ୍କୁ ଏହିରୂପ କହି ତିନିଜଣ ସନ୍ଧ୍ୟା ସମୟରେ ମହାରଣ୍ୟରେ ପ୍ରବେଶ କଲେ ; ସେଠାରେ ଗୋଟିଏ ବୃହତ୍ ବଟ ବିଟପୀ ମୂଳରେ ଉପବେଶନ କଲେ, ସେ ସ୍ଥଳରେ ପେଚକ କର୍ତ୍ତୃକ ବହୁ ବାୟସ ବିନଷ୍ଟ ହେଉଥିବାର ଦେଖି ପିତୃବଧ ସ୍ମରଣପୂର୍ବକ କ୍ରୋଧାନଳରେ ପ୍ରଜ୍ୱଳିତ ହୋଇ ଶିବିରରେ ସୁପ୍ତ ପାଞ୍ଚାଳଗଣଙ୍କର ସଂହାର କରିବାକୁ ସ୍ଥିର କଲେ ; ଦ୍ରୋଣତନୟ ପାଣ୍ଡବ-ମାନଙ୍କର ଶିବିରଦ୍ୱାରକୁ ଗମନ କରି ଦେଖିଲେ ସେଠାରେ ଘୋରରୂପ, ଭୀମଦର୍ଶନ ଗୋଟିଏ ନିଶାଚର ସ୍ୱୀୟ ଶରୀର ଦ୍ୱାରା ଆକାଶ ପର୍ଯ୍ୟନ୍ତ ଆବୃତ କରି ରହିଅଛନ୍ତି । ଅଶ୍ୱତ୍ଥାମା ତାହାଙ୍କୁ ଲକ୍ଷ୍ୟକରି ଅସ୍ତ୍ର ପରିତ୍ୟାଗ

କଲେ କିନ୍ତୁ ତାହାଙ୍କ କର୍ତ୍ତୃକ ସ୍ୱୀୟ ଅସ୍ତ୍ରସକଳ ବ୍ୟର୍ଥ ଦେଖି ଅତି ଉଗ୍ରସ୍ୱ ବିରୂପାକ୍ଷ ମହାଦେବଙ୍କର ଆରାଧନାରେ ତତ୍ପର ହେଲେ ।

ଅନନ୍ତର ନିଶୀଥ ସମୟରେ ଅଶ୍ୱତ୍ଥାମା, କୃପ ଓ କୃତବର୍ମାଙ୍କ ସହିତ ମିଳିତ ହୋଇ ଶିବିର ମଧ୍ୟସ୍ଥିତ ପ୍ରସୁପ୍ତ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ସପରିବାର ପାଞ୍ଚାଳଗଣଙ୍କୁ ଓ ଦ୍ରୌପଦୀଙ୍କର ତନୟମାନଙ୍କୁ ସଂହାର କଲେ ; ଯହିଁରେ କେବଳ ଶ୍ରୀକୃଷ୍ଣଙ୍କ ଅନୁଗ୍ରହରୁ ମହାଧନୁର୍ଦ୍ଧର ସାତ୍ୟକି ଓ ପଞ୍ଚପାଣ୍ଡବ ରକ୍ଷା ପାଇଲେ, ତଦ୍ଭିନ୍ନ ସମସ୍ତେ ସେହି କାଳରେ ନିଧନ ପ୍ରାପ୍ତ ହେଲେ । ଧୃଷ୍ଟଦ୍ୟୁମ୍ନଙ୍କ ସାରଥି କାତରଭାବରେ ପାଣ୍ଡବମାନଙ୍କ ସମକ୍ଷରେ ଅଶ୍ୱତ୍ଥାମା କର୍ତ୍ତୃକ ନିଦ୍ରିତ ପାଞ୍ଚାଳୀତନୟମାନଙ୍କର ହତ୍ୟାକାଣ୍ଡ ନିବେଦନ କଲେ ; ଯହିଁରେ ପିତୃ ଭ୍ରାତୃ ବଧରେ କାତରା ଦ୍ରୌପଦୀ ପୁତ୍ରଶୋକବିହ୍ୱଳା ହୋଇ ଅନଶନ ସଂକଳ୍ପ କରି ସ୍ୱାମୀମାନଙ୍କ ନିକଟରେ ଉପସ୍ଥିତ ହେଲେ । ଯେ ହେତୁରୁ ଭୀମପରାକ୍ରମ ଭୀମସେନ ଅତି ଦୁଃଖିତା ଦ୍ରୌପଦୀଙ୍କ ଶୋକପୂର୍ଣ୍ଣ ସକାତରବାକ୍ୟ ଶ୍ରବଣ କରି ତାହାଙ୍କ ସନ୍ତୋଷବିଧାନାର୍ଥ ଗଦା ଗ୍ରହଣ-ପୂର୍ବକ କ୍ରୋଧକମ୍ପିତ କଳେବରରେ ଗୁରୁପୁତ୍ର ଅଶ୍ୱତ୍ଥାମାଙ୍କ ପଶ୍ଚାତ୍ ପଶ୍ଚାତ୍ ଧାବମାନ ହେଲେ ; ଯହିଁରେ ଭରଦ୍ୱାଜତନୟ ଦ୍ରୌଣି ଭୀମସେନଙ୍କ ଭୟରେ ଭୀତ ହୋଇ ଅତି କ୍ରୋଧଭରରେ ଦୈବଘଟନାରୁ ପାଣ୍ଡବଶୂନ୍ୟ ପୃଥିବୀ କରଣାର୍ଥ ଅସ୍ତ୍ର ପରିତ୍ୟାଗ କଲେ ; ଯହିଁରେ ବାସୁଦେବ ଦ୍ରୌଣିଙ୍କର ସେହି ପ୍ରତିଜ୍ଞା ନିବାରଣ କରି "ଏରୂପ କରନା" ବୋଲି କହିଲେ ; ଅର୍ଜ୍ଜୁନ ନିଜ ଅସ୍ତ୍ରବଳରେ ଦ୍ରୌଣିଙ୍କ ଅସ୍ତ୍ରବେଗ ଶାମ୍ୟ କଲେ । ୩୦୦ । ତେତେବେଳେ ଦୁରାତ୍ମାର ଅଶ୍ୱତ୍ଥାମାଙ୍କ ଦ୍ରୋହବୁଦ୍ଧି ଦେଖି ଦ୍ରୌଣି ଓ ଦ୍ୱୈପାୟନାଦି ପରସ୍ପର ଶାପ ପ୍ରଦାନ କଲେ । ଜୟଶ୍ଳାଘୀ ପାଣ୍ଡବଗଣ ମହାରଥ ଅଶ୍ୱତ୍ଥାମାଙ୍କ ନିକଟରୁ ମଣିଗ୍ରହଣପୂର୍ବକ ହୃଷ୍ଟ-ଚିତ୍ତରେ ଦ୍ରୁପଦକୁମାରୀଙ୍କୁ ପ୍ରଦାନ କଲେ । ମହାଭାରତର ଏହି ଦଶମପର୍ବ ସୌପ୍ତିକ ନାମରେ ନିର୍ଦ୍ଦିଷ୍ଟ ହୋଇଅଛି । ଏହି ପର୍ବରେ ବ୍ରହ୍ମବାଦୀ ମହାତେଜା ମହାମୁନି ବେଦବ୍ୟାସ (୧୮) ଅଷ୍ଟାଦଶ ଅଧ୍ୟାୟ ଓ ଅଷ୍ଟଶତ ସପ୍ତତି (୮୭୦) ଶ୍ଳୋକର ସଂଖ୍ୟା କରିଅଛନ୍ତି ।୩୦୪ ।

ଅତଃପର କରୁଣରସୋଦ୍ଦୀପକ ସ୍ତ୍ରୀପର୍ବର ବୃତ୍ତାନ୍ତ କଥିତ ହୋଇଅଛି । ଯହିଁରେ ପୁତ୍ରଶୋକସନ୍ତପ୍ତ, ପ୍ରଜ୍ଞାଚକ୍ଷୁ, ଭୀମଦ୍ୱେଷୀ, ଧୃତରାଷ୍ଟ୍ର ନରପତି ଭୀମ ବିବେଚନାରେ କୃଷ୍ଣଙ୍କ ଆନୀତ ଲୌହମୟ ଭୀମ ପ୍ରତିମାକୁ

ଭଗ୍ନ କଲେ ଓ ଯହିଁରେ ବିଦୁର ମୋକ୍ଷୋପଦେଶକ ହେତୁ ପ୍ରଦର୍ଶନ କରି ପୁତ୍ରଶୋକାର୍ତ୍ତ ଧୀମାନ୍ ଧୃତରାଷ୍ଟ୍ରଙ୍କ ସାଂସାରିକ ମୋହନିବାରଣ ଓ ତାହାଙ୍କୁ ଆଶ୍ୱାସ ଦାନ କଲେ । ଏହିଠାରେ ଶୋକାର୍ତ୍ତ ଧୃତରାଷ୍ଟ୍ରଙ୍କ ଅନ୍ତଃପୁର ଲଳନାମାନଙ୍କ ସହିତ ରଣସ୍ଥଳ ଦର୍ଶନାର୍ଥ ଗମନ କୀର୍ତ୍ତିତ ହୋଇଅଛି । ଯହିଁରେ ବୀରପତ୍ନୀମାନଙ୍କର କାରୁଣ୍ୟଜନକ ବିଳାପ ବର୍ଣ୍ଣିତ ହୋଇଅଛି ; ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ କ୍ରୋଧାବେଶ ଓ କ୍ଷଣେ କ୍ଷଣେ ମୋହ ବର୍ଣ୍ଣିତ ହୋଇଅଛି ; ଯେଉଁ ରଣସ୍ଥଳରେ କ୍ଷତ୍ରିୟମାନେ ସେହିସବୁ ସଂଗ୍ରାମରୁ ଅନିବର୍ତ୍ତୀ ରଣପଣ୍ଡିତ ପିତା ଭ୍ରାତା ଓ ପୁତ୍ରମାନଙ୍କୁ ନିହତ ହୋଇଥିବାର ଦର୍ଶନ କଲେ । ଏହି ସ୍ଥଳରେ ପାଣ୍ଡବସଖା ଶ୍ରୀକୃଷ୍ଣ ପୁତ୍ରପୌତ୍ର ବଧରୁ କାତର ଗାନ୍ଧାରୀଙ୍କ କ୍ରୋଧୋପଶମ କଲେ । ୩୧୧ ।

ଅନନ୍ତର ଧାର୍ମିକବର ପ୍ରଜ୍ଞାଶାଳୀ ମହାରାଜ ଯୁଧିଷ୍ଠିର ସମରଶାୟୀ ରାଜାମାନଙ୍କର ମୃତ ଶରୀରମାନଙ୍କୁ ଯଥାବିଧି ଦାହ କରାଇଲେ । ରାଜାମାନଙ୍କ ଉଦ୍ଦେଶ୍ୟରେ ଉଦକଦାନ ରୂପ ଜଳକାର୍ଯ୍ୟ ଉପସ୍ଥିତ ହେବାରୁ କୁନ୍ତୀ କର୍ଣ୍ଣଙ୍କୁ ଆପଣାର କାନୀନ ପୁତ୍ର ବୋଲି ଅଙ୍ଗୀକାର ଓ ପ୍ରକାଶ କଲେ । ଶୋକ ବୈକ୍ଲବ୍ୟର କାରଣ ଏହି ଏକାଦଶ ପର୍ବକୁ ପରମର୍ଷି ବ୍ୟାସଦେବ ରଚନା କରିଅଛନ୍ତି । କାରୁଣ୍ୟ ରସପୂର୍ଣ୍ଣ ଏହି ପର୍ବକୁ ଶ୍ରବଣ କିମ୍ବା ପାଠ କଲେ ସଜ୍ଜନମାନଙ୍କର ଚିତ୍ତ ଶୋକଭରରେ ବିକଳ ଓ ନୟନ ଅଶ୍ରୁଜଳରେ ଆକୁଳିତ ହୁଏ । ଏହି ପର୍ବରେ (୨୭) ସପ୍ତବିଂଶତି ଅଧ୍ୟାୟ କୀର୍ତ୍ତିତ ହୋଇଅଛି । ଧୀମାନ୍ ବ୍ୟାସଦେବ ଭାରତର ଏହି ଆଖ୍ୟାନଟିକୁ (୭୭୫) ସପ୍ତଶତ ପଞ୍ଚସପ୍ତତି ଶ୍ଳୋକରେ ରଚନା କରିଅଛନ୍ତି । ୩୧୭ ।

ଅତଃପର ବୁଦ୍ଧିଶକ୍ତିର ବିବର୍ଦ୍ଧନକାରୀ ଶାନ୍ତି ନାମକ ଦ୍ୱାଦଶ ପର୍ବର କଥା ବର୍ଣ୍ଣିତ ଅଛି । ଯହିଁରେ ଧର୍ମରାଜ ଯୁଧିଷ୍ଠିର ପିତୃ, ଭ୍ରାତୃ, ପୁତ୍ର, ମାତୁଳ, ସମ୍ବନ୍ଧୀ ପ୍ରଭୃତିଙ୍କୁ ବଧ କରି, ପରିଶେଷରେ ବନ୍ଧୁଜନ-ବିୟୋଗବଶରୁ ସାତିଶୟ କାତର ହୋଇ ନିର୍ବେଦ ସାଗରରେ ନିମଗ୍ନ ହେଲେ । ଏହି ଶାନ୍ତି ପର୍ବରେ ଶରଶଯ୍ୟାଶାୟୀ ଗଙ୍ଗାତନୟ ଭୀଷ୍ମ ଧର୍ମରାଜ ଯୁଧିଷ୍ଠିରଙ୍କୁ ସମ୍ୟକ୍ ଜ୍ଞାନଲାଭାଭିଳାଷୀ ରାଜନ୍ୟଗଣଙ୍କ ପରିବେଦିତବ୍ୟ, ନୀତିପରିପୂର୍ଣ୍ଣ ଯଥାକାଳକର୍ତ୍ତବ୍ୟ ରାଜଧର୍ମମାନ ଓ ବହୁବିସ୍ତୃତ ବିଚିତ୍ର ମୋକ୍ଷଧର୍ମମାନ ଉପଦେଶ ଦେଇଅଛନ୍ତି । ଏହି ପ୍ରାଜ୍ଞଜନକ କଥା ସମନ୍ୱିତ ଦ୍ୱାଦଶ ପର୍ବରେ ହେ ତପୋଧନଗଣ ! ମହର୍ଷି ବେଦବ୍ୟାସ (୩୩୯) ତ୍ରିଶତ

ଊନଚତ୍ୱାରିଂଶତ୍ ଅଧ୍ୟାୟ ଓ (୧୪୭୩୨) ଚତୁର୍ଦ୍ଦଶ ସହସ୍ର ସପ୍ତଶତ ଦ୍ୱାତ୍ରିଂଶତ୍ ଶ୍ଳୋକ ରଚନା କରିଅଛନ୍ତି । ୩୨୯ ।

ତତ୍ପରେ ପରମୋତ୍କୃଷ୍ଟ ଅନୁଶାସନ ପର୍ବ କଥା । ଯହିଁରେ କୁରୁରାଜ ଯୁଧିଷ୍ଠିର ଭାଗୀରଥୀପୁତ୍ର ଭୀଷ୍ମଙ୍କ ନିକଟରେ ଧର୍ମନିର୍ଣ୍ଣୟ ଶ୍ରବଣ କରି ଶାନ୍ତ-ଚିତ୍ତ ହେଲେ । ଏହି ପର୍ବରେ ଧର୍ମାର୍ଥ ହିତଜନକ ଆଚାର ପ୍ରାୟ ସମସ୍ତ କଥିତ ହୋଇଅଛି ଓ ବିବିଧ ଦାନର ନାନା ପ୍ରକାର ଫଳଶ୍ରୁତି ମଧ୍ୟ କୀର୍ତ୍ତିତ ହୋଇଅଛି । ସତ୍ ଓ ଅସତ୍ ପାତ୍ରର ସବିଶେଷ ନିର୍ବାଚନ ଦାନ-ସମୂହର ଉତ୍କୃଷ୍ଟ ବିଧି, ଆଚାର ବିନିଶ୍ଚୟ, ସତ୍ୟର ପରମାଗତି, ଗୋ-ବ୍ରାହ୍ମଣମାନଙ୍କର ମାହାତ୍ମ୍ୟ, ଦେଶକାଳାନୁଯାୟୀ ଧର୍ମମାନଙ୍କର ରହସ୍ୟ-କଥନ ଓ ଭୀଷ୍ମଦେବଙ୍କର ସ୍ୱର୍ଗପ୍ରାପ୍ତି ମଧ୍ୟ ଏଥିରେ ପରିକୀର୍ତ୍ତିତ ହୋଇଅଛି । ଏହି ଅନୁଶାସନ ପର୍ବ ବହୁବୃତ୍ତାନ୍ତ ଘଟିତ ଓ ଅତି ଉତ୍ତମ, ଏହି ତ୍ରୟୋଦଶ ପର୍ବ ଧର୍ମନିଶ୍ଚୟକାରକ ଅଟେ । ଏଥିରେ (୧୪୬) ଏକଶତ ଷଟ୍‌ଚତ୍ୱାରିଂଶତ୍ ଅଧ୍ୟାୟ ଓ ଅଷ୍ଟସହସ୍ର ଶ୍ଳୋକ ପରିଗଣିତ ହୋଇ-ଅଛି । ୩୩୬-୭ ।

ତଦନନ୍ତର ଆଶ୍ୱମେଧିକ ପର୍ବ ନାମକ ଚତୁର୍ଦ୍ଦଶ ପର୍ବ କଥିତ ହୋଇଅଛି । ଏହି ପର୍ବରେ ଶ୍ରୁତିସୁଖ ସମ୍ବର୍ତ୍ତ ଓ ମରୁତ୍ତ ରାଜାଙ୍କ ଉପାଖ୍ୟାନ, ଧର୍ମରାଜଙ୍କର ସୁବର୍ଣ୍ଣକୋଷ ସମ୍ପ୍ରାପ୍ତି ଓ ପରୀକ୍ଷିତଙ୍କ ଜନ୍ମ, ପୂର୍ବେ ଅଶ୍ୱତ୍ଥାମାଙ୍କ ଅସ୍ତ୍ରାଗ୍ନିରେ ଦଗ୍ଧ ହୋଇଥିଲେ ହେଁ କୃଷ୍ଣଙ୍କ ଦ୍ୱାରା ତାହାଙ୍କର ପୁନଃ ସଞ୍ଜୀବନ; ଯଜ୍ଞୀୟ ଉତ୍କୃଷ୍ଟ ଅଶ୍ୱରକ୍ଷଣାର୍ଥ ଅନୁଗାମୀ ଅର୍ଜ୍ଜୁନଙ୍କର ନାନାଦେଶ ଓ ଜନପଦବାସୀ କ୍ରୋଧପରାୟଣ ରାଜନ୍ୟବୃନ୍ଦଙ୍କ ସହିତ ଯୁଦ୍ଧ, ପୁତ୍ରିକାପୁତ୍ର ଚିତ୍ରାଙ୍ଗଦାର ଗର୍ଭଜାତ ସ୍ୱପୁତ୍ର ବଭ୍ରୁବାହନର ସଂଗ୍ରାମରେ ମହାବୀର ଧନଞ୍ଜୟଙ୍କ ପ୍ରାଣସଂଶୟ; ସୁଦର୍ଶନାଖ୍ୟାନ, ବୈଷ୍ଣବ-ଧର୍ମ କଥା, ଅଶ୍ୱମେଧ ମହାଯଜ୍ଞର ଅବସାନରେ ନକୁଳଙ୍କ ଉପାଖ୍ୟାନ, ମହାବୀର ଅର୍ଜ୍ଜୁନଙ୍କ ନିକଟରେ ଶ୍ରୀକୃଷ୍ଣ ଯେଉଁସବୁ ସନାତନ ଧର୍ମ କଥା କହିଥିଲେ ତତ୍ ସମୁଦାୟର ଅନୁଗୀତା; ଗୁରୁ ଶିଷ୍ୟଙ୍କ ସମ୍ବାଦ ଓ ବ୍ରାହ୍ମଣ ଗୀତା ଏହି ପର୍ବରେ କୀର୍ତ୍ତିତ ହୋଇଅଛି । ଏହି ଆଶ୍ୱମେଧିକ ପର୍ବ କଥା ଅତ୍ୟଦ୍ଭୁତ । ଏହି ପର୍ବରେ ତତ୍ତ୍ୱଦର୍ଶୀ ଭଗବାନ ସତ୍ୟବତୀ ସୁତ ଏକଶତ ତିନି ଅଧ୍ୟାୟ ଓ (୩୩୨୦) ତିନିସହସ୍ର ତିନିଶତ ବିଂଶତି ଶ୍ଳୋକର ସଂଖ୍ୟା କରିଅଛନ୍ତି । ୩୪୦ ।

ତଦନନ୍ତର ଆଶ୍ରମବାସ ନାମକ ପଞ୍ଚଦଶ ପର୍ବ । ଏହି ପର୍ବରେ ରାଜା ଧୃତରାଷ୍ଟ୍ର ରାଜ୍ୟପଦ ପରିତ୍ୟାଗ ପୂର୍ବକ ସ୍ୱୀୟ ମହର୍ଷୀ ଗାନ୍ଧାରୀ ଓ ପ୍ରିୟ ମନ୍ତ୍ରୀ ବିଦୁରଙ୍କ ସହିତ ଆଶ୍ରମବାସ ପ୍ରବେଶ କଲେ; ଯାହା ଦେଖି ଗୁରୁଜନ ସେବାନୁରକ୍ତା ସାଧ୍ୱୀ କୁନ୍ତୀ ପୁତ୍ରରାଜ୍ୟ ପରିତ୍ୟାଗ କରି ବନଗାମୀ ରାଜା ଧୃତରାଷ୍ଟ୍ରଙ୍କର ଅନୁଗାମିନୀ ହେଲେ । ଯହିଁରେ ମହାରାଜା ଧୃତରାଷ୍ଟ୍ର ଯୁଦ୍ଧରେ ନିହତ ପୁତ୍ରପୌତ୍ରଗଣଙ୍କୁ ଓ ଅନ୍ୟାନ୍ୟ ବୀରଗଣଙ୍କୁ ପୁନରାଗତ ଦର୍ଶନ କଲେ, ସେ କୃଷ୍ଣ ଦ୍ୱୈପାୟନଙ୍କ ଅନୁଗ୍ରହରେ ଏହି ଅତ୍ୟାଶ୍ଚର୍ଯ୍ୟ ପରମାଦ୍ଭୁତ ବିଷୟମାନ ସଂଦର୍ଶନ କରି ଶୋକ ପରିତ୍ୟାଗ ପୂର୍ବକ ସସ୍ତ୍ରୀକ ପରମମଙ୍ଗଳ ମୋକ୍ଷପଦ ଲାଭ କଲେ । ଯହିଁରେ ବିଦୁର ଓ ଜିତେନ୍ଦ୍ରିୟ ଗାବଲଗଣିପୁତ୍ର ସଞ୍ଜୟ ଦୁହେଁ ପରମ ଧର୍ମ ଆଶ୍ରୟ କରି ଶ୍ରେଷ୍ଠ ଗତି ଲାଭ କଲେ ।

ତତ୍ପରେ ଧର୍ମରାଜ ଯୁଧିଷ୍ଠିର ଦେବର୍ଷି ନାରଦଙ୍କଠାରୁ ବୃଷ୍ଣି ବଂଶର ଧ୍ୱଂସ ବୃତ୍ତାନ୍ତ ଶ୍ରବଣ କଲେ । ଏହି ଆଶ୍ରମବାସାଖ୍ୟ ପର୍ବ ଅତି ଅଦ୍ଭୁତ । ଏହି ପର୍ବରେ ତତ୍ତ୍ୱଦର୍ଶୀ ମହର୍ଷି ବେଦବ୍ୟାସ (୪୨) ଦ୍ୱିଚତ୍ୱାରିଂଶ- ଦଧ୍ୟାୟ ଓ (୧୫୦୬) ଏକସହସ୍ର ପଞ୍ଚଶତ ଷଟ୍ ଶ୍ଳୋକ ସଂଖ୍ୟା କରି ଅଛନ୍ତି (୩୫୧-୨) ।

ହେ ପୁରାଣଦର୍ଶୀ ଋଷିଗଣ ! ଅତଃପର ଏହି ଦାରୁଣ ମୌଷଳ ପର୍ବ କଥା ଅବଧାନ କରନ୍ତୁ, ଯହିଁରେ ସେହି ଶସ୍ତ୍ରାଘାତ-ସହିଷ୍ଣୁ ପୁରୁଷଶ୍ରେଷ୍ଠ ଯଦୁବୀରଗଣ ବ୍ରହ୍ମଶାପଗ୍ରସ୍ତ ହୋଇ ସମୁଦ୍ର ସମୀପରେ ମଦ୍ୟପାନୋନ୍ମତ୍ତ ହୋଇ ଦୁର୍ଦ୍ଦୈବ ବଶତଃ ଏରକା ନାମକ ବଜ୍ରତୁଲ୍ୟ କଠିଣ ତୃଣଦ୍ୱାରା ପରସ୍ପର ନିହତ ହେଲେ । ଯହିଁରେ କେଶବ ଓ ବଳରାମ ଦୁହେଁ ସ୍ୱକୀୟ ବଂଶ ଧ୍ୱଂସ କରି ସ୍ୱୟଂ ସର୍ବସଂହାରକାରୀ ସମାଗତ ମହତ୍ କାଳକୁ ଅତିକ୍ରମ କରିବାକୁ ଅସମର୍ଥ ହେଲେ । ୩୫୫ । ଯହିଁରେ ନରଶ୍ରେଷ୍ଠ ଅର୍ଜୁନ ଦ୍ୱାରବତୀ ନଗରକୁ ଆସି ତାହାକୁ ବୃଷ୍ଣିଶୂନ୍ୟ ବିଲୋକନ କରି ଅତିଶୟ ବିଷାଦ ଓ ମନଃପୀଡ଼ା ପ୍ରାପ୍ତ ହେଲେ । ସେ ଅଗ୍ରେ ନିଜ ମାତୁଳ ନରଶ୍ରେଷ୍ଠ ବାସୁଦେବଙ୍କର ଔର୍ଦ୍ଧ୍ୱଦେହିକ କ୍ରିୟା ସମାପନ କରି ତତ୍ପରେ ଯଦୁବୀରମାନଙ୍କର ମହତ୍ ହତ୍ୟାକର୍ମ ଦୃଷ୍ଟିଗୋଚର କଲେ । ଆଗେ ମହାତ୍ମା କୃଷ୍ଣ ଓ ବଳରାମଙ୍କର ଶରୀର ସଂସ୍କାର କରି ପରେ ଅପର ପ୍ରଧାନ ପ୍ରଧାନ ବୃଷ୍ଣିବୀରମାନଙ୍କର ଶରୀର ସଂସ୍କାର କଲେ । ତଦନନ୍ତର ସେ ଦ୍ୱାର- ବତୀରୁ ବାଳକ ଓ ବୃଦ୍ଧମାନଙ୍କୁ ସଙ୍ଗେ ଘେନି ଗମନ କରୁଁ କରୁଁ ପୌର-

ଜନଙ୍କୁ ଅତ୍ୟନ୍ତ ଆପଦ୍‌ଗ୍ରସ୍ତ ଓ ଗାଣ୍ଡୀବର ପରାଭବ ହେବାର ଦେଖିଲେ । ସେହି ସମୟରେ ଦିବ୍ୟାସ୍ତ୍ରମାନଙ୍କର ଅପ୍ରସନ୍ନତା, ବୃଷ୍ଣି ବଂଶୀୟ ନାୟକମାନଙ୍କର ନାଶ, ପ୍ରଭୁପଣର ଅନିତ୍ୟତା ଦର୍ଶନ କରି ନିର୍ବେଦ ପ୍ରାପ୍ତ ହେଲେ ଓ ବ୍ୟାସଙ୍କ ଆଦେଶାନୁସାରେ ଧର୍ମରାଜ ଯୁଧିଷ୍ଠିରଙ୍କ ସନ୍ନିଧାନରେ ଉପସ୍ଥିତ ହୋଇ ସନ୍ନ୍ୟାସ ଗ୍ରହଣାଭିଳାଷୀ ହେଲେ । ମୌଷଳ ନାମକ ଷୋଡ଼ଶ ପର୍ବରେ ଏହି କଥାମାନ କୀର୍ତ୍ତିତ ହୋଇଅଛି । ତତ୍ତ୍ୱଦର୍ଶୀ ବ୍ୟାସଦେବ ଏହି ପର୍ବରେ ଅଷ୍ଟ ଅଧ୍ୟାୟର ଓ ତିନିଶତ ବିଂଶତି ଶ୍ଳୋକର ସଂଖ୍ୟା କରିଅଛନ୍ତି । ୩୬୨ ।

ତହିଁପରେ ମହାପ୍ରସ୍ଥାନିକ ନାମକ ସପ୍ତଦଶ ପର୍ବ । ଯହିଁରେ ପୁରୁଷଶ୍ରେଷ୍ଠ ପାଣ୍ଡବଗଣ ଦ୍ରୌପଦୀଙ୍କ ସହିତ ମହାପ୍ରସ୍ଥାନରେ ଗମନ କଲେ । ଯହିଁରେ ସେମାନେ ଲୌହିତ୍ୟ ସାଗରକୁ ପ୍ରାପ୍ତ ହୋଇ ଅଗ୍ନିଙ୍କୁ ଦର୍ଶନ କଲେ ; ଯେଉଁଠାରେ ଅଗ୍ନିଙ୍କ ଆଦେଶାନୁସାରେ ତାହାଙ୍କର ପୂଜାକରି ତାହାଙ୍କୁ ଗାଣ୍ଡୀବଧନୁ ପ୍ରଦାନ କଲେ ; ଯହିଁରେ ଯୁଧିଷ୍ଠିର ଭ୍ରାତୃଗଣଙ୍କୁ ଓ ଦ୍ରୌପଦୀଙ୍କୁ କ୍ରମେ କ୍ରମେ ନିପତିତ ହେବାର ଦେଖି ସୁଦ୍ଧା ତାହାଙ୍କୁ ତ୍ୟାଗ କରି ଓ ତାହାଙ୍କ ଆଡ଼କୁ ଅବଲୋକନ ନ କରି ଗମନ କଲେ । ଏହି ସପ୍ତଦଶ ପର୍ବ ମହାପ୍ରସ୍ଥାନିକ ନାମରେ ଖ୍ୟାତ ଅଟେ ।

ଯହିଁରେ ତତ୍ତ୍ୱଦର୍ଶୀ ବ୍ୟାସଦେବ ତିନି ଅଧ୍ୟାୟର ଓ ତିନିଶତ ବିଂଶତି ଶ୍ଳୋକର ସଂଖ୍ୟା କରିଅଛନ୍ତି । ତପରେ ଅଲୌକିକ ଓ ଅତି ଉତ୍ତମ ସ୍ୱର୍ଗପର୍ବ ; ଯହିଁରେ ଧର୍ମରାଜ ଯୁଧିଷ୍ଠିର ସ୍ୱର୍ଗରୁ ଆଗତ ଦେବରଥରେ ନିଜ ସମଭିବ୍ୟାହାରୀ କୁକ୍କୁର ବ୍ୟତିରେକେ ଆରୋହଣ କରିବାକୁ ଇଚ୍ଛା ନ କରିବାରୁ ତାହାଙ୍କର ଧର୍ମରେ ଅବିଚଳିତ ମତି ଅବଲୋକନ କରି ଧର୍ମ ଶ୍ୱାନରୂପକୁ ପରିତ୍ୟାଗ କରି ନିଜରୂପ ଧାରଣ କରି ଯୁଧିଷ୍ଠିରଙ୍କୁ ଦର୍ଶନ ଦେଲେ ଓ ଯୁଧିଷ୍ଠିର ଧର୍ମଙ୍କ ସଙ୍ଗରେ ସ୍ୱର୍ଗକୁ ଗମନ କଲେ ଓ ଦେବଦୂତଙ୍କ ଦ୍ୱାରା ଛଳ କ୍ରମେ ନରକ ଦର୍ଶିତ ହେବାରୁ ଅତିଶୟ ଯାତନା ପ୍ରାପ୍ତ ହେଲେ । ଯେଉଁଠାରେ ଧର୍ମାତ୍ମା ଯୁଧିଷ୍ଠିର ଯମଙ୍କ ନିଦେଶବର୍ତ୍ତୀ ନିଜଭ୍ରାତୃବର୍ଗଙ୍କର ସକରୁଣ ବିଳାପଧ୍ୱନି ଶ୍ରବଣ କଲେ । ଧର୍ମ ଓ ସୁରପତି ଇନ୍ଦ୍ର ଯୁଧିଷ୍ଠିରଙ୍କୁ ଶୁଭାଶୁଭ କର୍ମର ଫଳ ଦେଖାଇ ଦେଲେ । ଅନନ୍ତର ଧର୍ମରାଜ ଯୁଧିଷ୍ଠିର ଆକାଶ ଗଙ୍ଗାରେ ସ୍ନାନ କରି ମାନୁଷ ଦେହ ପରିତ୍ୟାଗ ପୂର୍ବକ ସ୍ୱର୍ଗରେ ନିଜର ଧର୍ମୋପାର୍ଜିତ ସ୍ଥାନ ପ୍ରାପ୍ତ ହୋଇ ଓ ଇନ୍ଦ୍ରାଦି ସୁରଗଣଙ୍କ

ସହିତ ପୂଜିତ ହୋଇ ଆନନ୍ଦରେ କାଳାତିପାତ କଲେ । ଏହାକୁ ବ୍ୟାସଦେବ ଅଷ୍ଟାଦଶପର୍ବ ବୋଲି କୀର୍ତ୍ତିତ କରିଅଛନ୍ତି । ହେ ତପୋଧନଗଣ ! ଧୀମାନ୍ ବ୍ୟାସଦେବ ଏହି ପର୍ବରେ ପଞ୍ଚ ଅଧ୍ୟାୟ ଓ ଦୁଇଶତ ନବଶ୍ଳୋକର ସଂଖ୍ୟା କରିଅଛନ୍ତି । *

ଏହିରୂପେ ଅଷ୍ଟାଦଶ ପର୍ବର କଥା ବିଶେଷରୂପେ କହି ପରେ ହରିବଂଶ ଓ ଭବିଷ୍ୟପର୍ବ କୀର୍ତ୍ତିତ ହୋଇଅଛି । ଏହି ହରିବଂଶ ଓ ଭବିଷ୍ୟ ପର୍ବରେ ଦ୍ୱାଦଶ ସହସ୍ର ଶ୍ଳୋକ ଅଛି । † ଭାରତର ଏହି ସମସ୍ତ ପର୍ବ ସମାଖ୍ୟାତ ହେଲା ।

ଯୁଦ୍ଧାର୍ଥ ଅଷ୍ଟାଦଶ ଅକ୍ଷୌହିଣୀ ସେନା ସମବେତ ହେଲେ ଓ ସେହି ଦାରୁଣ ସମର କ୍ରମାନ୍ୱୟେ ଅଷ୍ଟାଦଶ ଦିବସ ଅବଧି ହୋଇ-ଥିଲା । ୩୮୦ ।

ଯେଉଁ ଦ୍ୱିଜ ସାଙ୍ଗବେଦକୁ ଓ ଉପନିଷଦ୍‌ମାନ ଜାଣନ୍ତି କିନ୍ତୁ ଏହି ଭାରତର ଆଖ୍ୟାନ ଜାଣନ୍ତି ନାହିଁ, ସେ ଦ୍ୱିଜ ବିଚକ୍ଷଣ ହୁଅନ୍ତି ନାହିଁ ।

ଅମିତବୁଦ୍ଧି ମହାମୁନି ବେଦବ୍ୟାସ ଏହି ଭାରତ ଗ୍ରନ୍ଥକୁ ଅର୍ଥ-ଶାସ୍ତ୍ର, ଧର୍ମଶାସ୍ତ୍ର ଓ କାମଶାସ୍ତ୍ର ସ୍ୱରୂପ କୀର୍ତ୍ତନ କରିଅଛନ୍ତି । ଯେପରି କୋକିଳର ରବ ଶ୍ରବଣ କରି ରୁକ୍ଷ କାକରବ ଶୁଣିବାରେ ରୁଚି ଜନ୍ମେ ନାହିଁ, ତଦ୍‌ବତ୍ ଏହି ଭାରତ ଆଖ୍ୟାନ ଶ୍ରବଣ କଲେ ଅନ୍ୟକଥା ଶୁଣିବାର ଅଭିଳାଷ ହୁଏନାହିଁ । ଯେଉଁରୂପ ପଞ୍ଚମହାଭୂତରୁ ଆଧିଭୌତିକ, ଆଧି-ଦୈବିକ ଓ ଆଧ୍ୟାତ୍ମିକ ତ୍ରିବିଧ ରଚନା ସମ୍ପୂର୍ଣ୍ଣ ହୋଇଅଛି, ତଦ୍ରୂପ ଏହି ପରମୋତ୍କୃଷ୍ଟ ଇତିହାସ ପାଠକଲେ କବି ବୁଦ୍ଧି ଜାତ ହୁଏ । ହେ ଦ୍ୱିଜଗଣ ! ଯେପରି ଅନ୍ତରୀକ୍ଷ ମଧ୍ୟରେ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଜ୍ଜ ଚତୁର୍ବିଧ ପ୍ରାଣୀ ଅଛନ୍ତି, ସେହିପରି ଏହି ପୁରାଣରେ ପଦ୍ମାଦି ଅଷ୍ଟାଦଶ

---

* ଏହି ପର୍ବରେ କର୍ଣ୍ଣଙ୍କର ନରକ ପ୍ରାପ୍ତି ଓ ତଦୁଦ୍ଧାର ଓ ସେହି ସ୍ୱର୍ଗରେ ମହାତ୍ମା ଯୁଧିଷ୍ଠିରଙ୍କ ସହିତ ବୀରବର୍ଗଙ୍କ ସମାଗମ ଓ ବୀରବୃନ୍ଦଙ୍କର ନିଜ ନିଜ କର୍ମାନୁସାରେ ସ୍ଥାନ ପ୍ରାପ୍ତି ବିଷୟ କ୍ୱଚିତ୍ କୌଣସି ପୁସ୍ତକରେ ଲେଖାଥାଏ ।

† ହରିବଂଶ ପର୍ବରେ ବିଷ୍ଣୁପର୍ବ, ଶିଶୁର ଆଚରଣପର୍ବ, ବିଷ୍ଣୁଙ୍କ କର୍ତ୍ତୃକ କଂସବଧ ପର୍ବ ଓ ଅଦ୍ଭୁତ ଓ ମହତ୍ ଭବିଷ୍ୟପର୍ବ ଅନ୍ତର୍ଭୁକ୍ତ ହୋଇଅଛି ।

ପୁରାଣମାନେ ଅନ୍ତର୍ଭୁକ୍ତ ଅଛନ୍ତି । ଯେରୂପ ମନର ବିଚିତ୍ର କ୍ରିୟାମାନ ଇନ୍ଦ୍ରିୟମାନଙ୍କର ଆଶ୍ରୟ, ସେହିରୂପ ଏହି ଆଖ୍ୟାନ ସମସ୍ତ ତାନାଙ୍କ କ୍ରିୟା ଓ ଶମାଦି ଗୁଣର ଆଶ୍ରୟ ଅଟେ । ଯେମନ୍ତ ଆହାର ବ୍ୟତିରେକେ ଶରୀର ଧାରଣ ହୁଏ ନାହିଁ, ତଦ୍ରୂପ ଏହି ଆଖ୍ୟାନର କଥା ଅବଲମ୍ବନ ବ୍ୟତିରେକେ ବୈଦିକ କୌଣସି କଥା ପୃଥିବୀରେ ପ୍ରଚଳିତ ନାହିଁ । ଯେରୂପ ଅଭ୍ୟୁଦୟାକାଂକ୍ଷୀ ଭୃତ୍ୟମାନେ ସତ୍‌କୁଳଜାତ ପ୍ରଭୁଙ୍କର ଉପାସନା କରନ୍ତି, ତଦ୍ରୂପ ଉତ୍କୃଷ୍ଟ କବିବର୍ଗ ଏହି ଅପୂର୍ବ ଭାରତାଖ୍ୟାନର ସେବା କରିଥାନ୍ତି । ଯେମନ୍ତ ଅପର ତିନି ଆଶ୍ରମ ଗୃହସ୍ଥାଶ୍ରମର ତୁଲ୍ୟ ହୋଇ-ପାରନ୍ତି ନାହିଁ ତେମନ୍ତ ଅପର କବିମାନେ ଏହି ଭାରତାଖ୍ୟାନକୁ ବଳି ପାରନ୍ତି ନାହିଁ । ୩୮୯ ।

ହେ ମୁନିଗଣ ! ଆପଣମାନେ ସତତ ଉନ୍ନତମନା, ଆପଣ-ମାନଙ୍କ ମତି ଧର୍ମରେ ଥାଉ; ଯେହେତୁ ପରଲୋକଗତ ବ୍ୟକ୍ତିଙ୍କର ସେହି ଧର୍ମ ଏକମାତ୍ର ବନ୍ଧୁ । ନିପୁଣ ବ୍ୟକ୍ତିମାନେ ଅର୍ଥ ଓ ସ୍ତ୍ରୀମାନଙ୍କର ସେବା କରନ୍ତି ସତ୍ୟ, କିନ୍ତୁ ସବୁ ଆତ୍ମଭାବକୁ କିମ୍ବା ସ୍ଥିରତାକୁ ପ୍ରାପ୍ତ ହୁଅନ୍ତି ନାହିଁ । ୩୯୦ ।

ଯେଉଁ ବ୍ୟକ୍ତି ଦ୍ୱୈପାୟନଙ୍କ ଓଷ୍ଠପୁଟନିଃସୃତ ପୁଣ୍ୟଜନକ ପରମ ପବିତ୍ର ପାପବିନାଶକ ମଙ୍ଗଳମୟ ଓ ଅପ୍ରମେୟ ଅର୍ଥାତ୍ ଯାହାଠାରୁ ଉତ୍କୃଷ୍ଟ ଜ୍ଞାନର ବିଷୟ ଆଉ କିଛି ନାହିଁ, ଏହି କଥ୍ୟମାନ ଭାରତ ଆଖ୍ୟାନକୁ ଅଧ୍ୟୟନ କରନ୍ତି, ତାହାଙ୍କର ପୁଷ୍କର ତୀର୍ଥଜଳରେ ସ୍ନାନର କି ପ୍ରୟୋଜନ ? ବ୍ରାହ୍ମଣ ଇନ୍ଦ୍ରିୟଗଣଙ୍କର ବଶୀଭୂତ ହୋଇ ଦିବସରେ ଯେଉଁ ପାପ କରନ୍ତି, ସାୟଂକାଳରେ ମହାଭାରତ ପାଠ କରି ସେ ପାପରୁ ମୁକ୍ତ ହୁଅନ୍ତି, ରାତ୍ରିରେ ଯେଉଁ ପାପ କାର୍ଯ୍ୟ ମନ ଓ ବଚନଦ୍ୱାରା କରନ୍ତି, ପ୍ରାତଃ କାଳରେ ଏହି ଭାରତ ପାଠ କରି ସେହି ପାପରୁ ବିନିର୍ମୁକ୍ତ ହୁଅନ୍ତି । ଯେଉଁ ବ୍ୟକ୍ତି ବେଦବେତ୍ତା ବହୁଶ୍ରୁତ ବିପ୍ରଙ୍କୁ ନିତ୍ୟ କନକମଣ୍ଡିତ ଶୃଙ୍ଗୀ ଶତଧେନୁ ପ୍ରଦାନ କରନ୍ତି ଓ ଯେ ପୁଣ୍ୟମୟ ଏହି ଭାରତ କଥାକୁ ନିତ୍ୟ ଶ୍ରବଣ କରନ୍ତି, ସେ ଦୁହିଁଙ୍କର ସମାନ ପୁଣ୍ୟଫଳ । ଏହି ଭାରତାଖ୍ୟାନ ଯେ ସର୍ବୋତ୍ତମ, ମହାର୍ଥସମ୍ପନ୍ନ ଓ ବୃହତ୍ ତାହା ଏହି ପର୍ବସଂଗ୍ରହରୁ ଉପଲବ୍ଧ ହୁଅଇ । ଯେରୂପ ବିସ୍ତୀର୍ଣ୍ଣ ଲବଣ ସମୁଦ୍ର ନୌକା ସାହାଯ୍ୟରେ ସୁଖାବହ ହୁଏ, ତଦ୍ରୂପ ଏହି ପର୍ବସଂଗ୍ରହ ପାଠରେ ବୁଦ୍ଧିମାନ୍ ବ୍ୟକ୍ତିଙ୍କର ସୁଖୋଦୟ ହୁଅଇ ।

# ତୃତୀୟ ଅଧ୍ୟାୟ

ସୌତି କହିଲେ—ହେ ମୁନିଗଣ ! ପରୀକ୍ଷିତଙ୍କ ତନୟ ଜନମେଜୟ ମହାରାଜା ଭ୍ରାତୃଗଣଙ୍କ ସହିତ କୁରୁକ୍ଷେତ୍ରରେ ଦୀର୍ଘସତ୍ର କରୁଅଛନ୍ତି । ତାହାଙ୍କର ତିନି ସହୋଦର ଶ୍ରୁତସେନ, ଉଗ୍ରସେନ ଓ ଭୀମସେନ । ସେମାନଙ୍କର ଯଜ୍ଞକ୍ରିୟା ସମୟରେ ଗୋଟିଏ ସାରମେୟ ଆସି ଉପସ୍ଥିତ ହେଲା । ଜନମେଜୟଙ୍କ ଭ୍ରାତାମାନେ ସେହି କୁକ୍‌କୁରକୁ ଆଘାତ କରିବାରୁ ସେ ରୋଦନ କରି କରି ନିଜ ମାତା ସମୀପକୁ ଗମନ କଲା । ତାହାର ମାତା ଆପଣାର ପୁତ୍ରକୁ କ୍ରନ୍ଦନ କରିବାର ଦେଖି ପଚାରିଲା, ବତ୍ସ ! ତୁମ୍ଭେ କିପାଇଁ କାନ୍ଦୁଅଛ ? କେ ତୁମ୍ଭଙ୍କୁ ପ୍ରହାର କରିଅଛି ? ସେ କୁକ୍‌କୁର ମାତୃ-ବାକ୍ୟ ଶ୍ରବଣ କରି ଉତ୍ତର କଲା, "ଜନମେଜୟଙ୍କ ଭ୍ରାତୃଗଣଙ୍କ କର୍ତ୍ତୃକ ଆମ୍ଭେ ଆହତ ହୋଇଅଛୁ ।" ସାରମା ବୋଇଲା, "ବତ୍ସ ! ସ୍ପଷ୍ଟ ଜଣାଯାଉ-ଅଛି ତୁମ୍ଭେ ସେମାନଙ୍କଠାରେ କୌଣସି ପ୍ରକାରେ ଅପରାଧୀ ହୋଇଅଛ, ସେହି ହେତୁରୁ ସେମାନେ ତୁମ୍ଭଙ୍କୁ ପ୍ରହାର କରିଅଛନ୍ତି ।" ସେ ପୁନରାୟ ବୋଇଲା—'ମାତଃ ! ଆମ୍ଭେ ସେମାନଙ୍କର କୌଣସି ଅନିଷ୍ଟ କରିନାହୁଁ, ଯଜ୍ଞ ଘୃତ ଅବଲେହନ କରିବା ତେଣେ ଥାଉ, ତହିଁରେ ଦୃଷ୍ଟିପାତ ସୁଦ୍ଧା କରି ନାହୁଁ ।' ତାହା ଶୁଣି ତାହାର ମାତା ପୁତ୍ରଦୁଃଖରେ ଦୁଃଖିତା ହୋଇ ଯେଉଁଠାରେ ରାଜର୍ଷି ଜନମେଜୟ ଭ୍ରାତୃଗଣଙ୍କ ସହିତ ଯଜ୍ଞାରମ୍ଭ କରି-ଥିଲେ ସେଠାରେ ଉପସ୍ଥିତ ହେଲା ଓ ରୋଷ ସହିତ କହିଲା "ଆମ୍ଭର ପୁତ୍ର କୌଣସି ଅପରାଧ କରିନାହିଁ । ଯଜ୍ଞର ହବିରେ ଦୃଷ୍ଟିପାତ ଅଥବା ତାକୁ ଅବଲେହନ କରିନାହିଁ, କି କାରଣରୁ ଏହାକୁ ପ୍ରହାର କରି-ଅଛନ୍ତି ?" ସେମାନେ କୌଣସି ଉତ୍ତର ନ ଦେବାରୁ ସେହି ଶୁନୀ ସେମାନଙ୍କୁ ଲକ୍ଷ୍ୟ କରି (ଜନମେଜୟଙ୍କୁ) ବୋଇଲା, "ଯେଣୁ ଆପଣମାନେ ନିରପରାଧ ମୋହର ପୁତ୍ରକୁ ଅକାରଣ ପ୍ରହାର କରିଅଛନ୍ତି, ଅତଏବ ଆମ୍ଭେ ଏହି ଅଭିଶାପ ଦେଉଅଛୁଁ ଯେ ଆପଣ ଅତର୍କିତ ଭୟଦ୍ୱାରା ଆକ୍ରାନ୍ତ ହେବେ ।" ୯ ।

ରାଜା ଜନମେଜୟ ଦେବଶୁନୀ ସରମାର ଏବଂବିଧ ଅଭିଶାପ ବଚନ ବାରମ୍ବାର ଶ୍ରବଣ କରି ଅତିଶୟ ଭୀତ ଓ ବ୍ୟାକୁଳ ହେଲେ ।୧୦। ଅନନ୍ତର ସେ ମହାରାଜା ଯଜ୍ଞ ସମାପନାନ୍ତେ ହସ୍ତିନାପୁରକୁ ପ୍ରତ୍ୟାଗମନ

କରି ଶାପଜନିତ ପାପର ଶାନ୍ତି କରିପାରିବେ ବୋଲି ଗୋଟିଏ ପୁରୋହିତର ଅନ୍ୱେଷଣରେ ଯତ୍ନପରାୟଣ ଯତ୍ନ କଲେ । ଏକ ସମୟରେ ମୃଗୟାରେ ପରୀକ୍ଷିତପୁତ୍ର ଜନମେଜୟ ନିଜ ରାଜ୍ୟ ମଧ୍ୟରେ କୌଣସି ପ୍ରଦେଶରେ ଗୋଟିଏ ଆଶ୍ରମ ଅବଲୋକନ କଲେ । ସେହି ଆଶ୍ରମରେ ଶ୍ରୁତଶ୍ରବା ନାମରେ ଗୋଟିଏ ଋଷି ବାସ କରୁଥିଲେ । ତାହାଙ୍କର ତପସ୍ୟାନୁରକ୍ତ ସୋମଶ୍ରବା ନାମରେ ଗୋଟିଏ ପୁତ୍ର ଥିଲେ । ପରୀକ୍ଷିତ ଜନମେଜୟ ସେହି ଋଷିପୁତ୍ରଙ୍କ ନିକଟକୁ ଗମନ କରି ତାହାଙ୍କୁ ପୌରୋହିତ୍ୟ ନିମିତ୍ତ ଅନୁରୋଧ କଲେ । ସେ ଋଷିଙ୍କୁ ପ୍ରଣାମ କରି କହିଲେ, 'ଭଗବନ୍! ଆପଣଙ୍କର ଏହି ପୁତ୍ର ଆମ୍ଭର ପୁରୋହିତ ହେଉନ୍ତୁ ।' ତପୋଧନ ଏହି ରୂପ ଅଭିହିତ ହୋଇ ଜନମେଜୟଙ୍କୁ କହିଲେ "ମହାରାଜ ! ଗୋଟିଏ ସର୍ପୀ ଆମ୍ଭର ଶୁକ୍ର ପାନ କରିଥିଲା । ତାହାର ଗର୍ଭରୁ ଆମ୍ଭର ଏହି ପୁତ୍ର ଜନ୍ମ ପରିଗ୍ରହ କରିଅଛି । ଏ ମହା ତପସ୍ୱୀ, ସ୍ୱାଧ୍ୟାୟସମ୍ପନ୍ନ ଓ ମଦୀୟ ତପୋବୀର୍ଯ୍ୟ ସମ୍ଭୂତ; ମହାଦେବଙ୍କ ଶାପ ବ୍ୟତୀତ ଆପଣଙ୍କର ଆଉ ସମସ୍ତ ଶାପ ବିମୋଚନ କରି ପାରିବେ, କିନ୍ତୁ ଏହାଙ୍କର ଗୋଟିଏ ଗୂଢ଼ ବ୍ରତ ଅଛି ଯେ ଯଦ୍ୟପି କୌଣସି ବ୍ରାହ୍ମଣ ଏହାଙ୍କୁ କୌଣସି ଅର୍ଥ ପ୍ରାର୍ଥନା କରନ୍ତି ତେବେ ସେ ତାଙ୍କୁ ତାହା ଦିଅନ୍ତି । ଆପଣ ଯଦି ଏହା ସହ୍ୟ କରିପାରିବେ ତେବେ ଏହାଙ୍କୁ ଘେନି ଯାଅ ।" ୧୮ ।

ମୁନିବର ଏପରି କହିବାରୁ ମହାରାଜା ଜନମେଜୟ ପ୍ରତ୍ୟୁତ୍ତର କଲେ, "ଆପଣ ଯେପରି କହିଲେ ତହିଁରେ ଆମ୍ଭେ ସମ୍ମତ ଅଛୁ" । ଅନନ୍ତର ରାଜା ଜନମେଜୟ ସେହି ପୁରୋହିତଙ୍କୁ ଘେନି ରାଜଧାନୀକୁ ପ୍ରତ୍ୟାଗତ ହୋଇ ଭ୍ରାତାମାନଙ୍କୁ କହିଲେ "ହେ ଭ୍ରାତୃଗଣ ! ଆମ୍ଭେ ଏହାଙ୍କୁ ପୁରୋହିତ ପଦରେ ବରଣ କରିଅଛୁଁ । ଏ ଯାହା କହିବେ, ତୁମ୍ଭେମାନେ କୌଣସି ବିଚାର ନ କରି ତାହା ସମ୍ପନ୍ନ କରିବ । ଭ୍ରାତୃଗଣ ନରପତିଙ୍କ ଦ୍ୱାରା ଏହି ରୂପ ଆଦିଷ୍ଟ ହୋଇ ମୁନିକୁମାରଙ୍କ ବାକ୍ୟପାଳନରେ ତତ୍ପର ରହିଲେ ।

ରାଜା ଜନମେଜୟ ଭ୍ରାତାଙ୍କୁ ଏହିପରି ଆଦେଶ ଦେଇ ତକ୍ଷଶିଳା ଦେଶକୁ ଯାତ୍ରା କରି ସେହି ଦେଶକୁ ଆପଣାର ବଶୀଭୂତ କଲେ । ୨୦ । ଏହି ସମୟରେ ଆପୋଦଙ୍କ ପୁତ୍ର ଧୌମ୍ୟ ନାମରେ ଗୋଟିଏ ଋଷି ଥିଲେ । ଉପମନ୍ୟୁ, ଆରୁଣି ଓ ବେଦ ନାମରେ ତାହାଙ୍କର ତିନିଗୋଟି ଶିଷ୍ୟ

ଥିଲେ । ଏକଦା ସେ ଋଷି ପଞ୍ଚାଳ ଦେଶର ଶିଷ୍ୟ ଆରୁଣିକୁ କହିଲେ, "ବତ୍ସ ! ଯାଅ, ଆମ୍ଭ କ୍ଷେତ୍ରରେ ଗୋଟିଏ ବନ୍ଧ ଦିଅ ।" ପାଞ୍ଚାଳ୍ୟ ଆରୁଣି ଆଚାର୍ଯ୍ୟଙ୍କ ଦ୍ୱାରା ଏହି ରୂପ ସନ୍ଦିଷ୍ଟ ହୋଇ ସେହି ସ୍ଥାନକୁ ଗମନ କରି ବହୁ କ୍ଲେଶ କରି ମଧ୍ୟ ବନ୍ଧ ବାନ୍ଧିବାକୁ ଅସମର୍ଥ ହୋଇ ପରିଶେଷରେ ଗୋଟିଏ ଉପାୟ କଳ୍ପନା କଲେ । ଅନନ୍ତର ଏହି ଉପାୟ କରିବ ବୋଲି ବିଚାରି ସ୍ୱୟଂ ସେହି ବନ୍ଧ ମଧ୍ୟରେ ଶୟନ କରିବାରୁ ଜଳ ସ୍ଥିର ହୋଇ ରହିଲା । ୨୪ ।

ତଦନନ୍ତର ଏକଦା ଆପୋଦ ଧୌମ୍ୟ ଶିଷ୍ୟମାନଙ୍କୁ ପଚାରିଲେ, 'ହେ ଶିଷ୍ୟଗଣ ! ପାଞ୍ଚାଳ୍ୟ ଆରୁଣି କାହାନ୍ତି ?' ସେମାନେ ଉତ୍ତର ଦେଲେ, ଆପଣ ତ ତାହାଙ୍କୁ ବନ୍ଧ ବାନ୍ଧିବାକୁ ପ୍ରେରଣ କରିଅଛନ୍ତି । ଶିଷ୍ୟଙ୍କଠାରୁ ଏହା ଶୁଣି ଧୌମ୍ୟ କହିଲେ 'ହେ ଶିଷ୍ୟମାନେ ! ଚାଲ, ଆରୁଣି ଯେଉଁଠାକୁ ଗମନ କରିଅଛନ୍ତି, ଆମ୍ଭେମାନେ ସମସ୍ତେ ସେଠାକୁ ଯିବା ।' ଧୌମ୍ୟ ସେଠାକୁ ଯାଇ ତାହାଙ୍କୁ ଉଚ୍ଚ ସ୍ୱରରେ ଆହ୍ୱାନ କଲେ "ହେ ବତ୍ସ ଆରୁଣି ! ତୁମ୍ଭେ କେଉଁଠାରେ ଅଛ ଆସ ।"

ଆରୁଣି ଉପାଧ୍ୟାୟଙ୍କର ସେହି ବଚନ ଶ୍ରବଣ କରି ତତ୍କ୍ଷଣାତ୍ କେଦାରଖଣ୍ଡରୁ ଉତ୍ଥାନ କରି ତାହାଙ୍କ ନିକଟରେ ଉପସ୍ଥିତ ହେଲେ ଓ ବୋଇଲେ, "ଭଗବନ୍ ! ଏହି ଆମ୍ଭେ ଆସିଅଛୁଁ ।" ଅନିବାର୍ଯ୍ୟ ଜଳନିର୍ଗମ ରୋଧ କରିବା ନିମିତ୍ତ ଆମ୍ଭେ ସ୍ୱୟଂ ବନ୍ଧରେ ଶୟନ କରିଥିଲୁଁ । ସହସା ଆପଣଙ୍କ କଣ୍ଠଧ୍ୱନି ଶ୍ରବଣ କରି କେଦାରଖଣ୍ଡ ବିଦାରଣ ପୂର୍ବକ ଆପଣଙ୍କ ନିକଟରେ ଉପସ୍ଥିତ ହୋଇଅଛୁଁ ଓ ଆପଣଙ୍କୁ ଅଭିବାଦନ କରୁଅଛୁଁ । କି କର୍ମ କରିବୁ ଆଜ୍ଞା କରନ୍ତୁ । ଶିଷ୍ୟ ଏହିରୂପ କହିବାରୁ ଗୁରୁ କହିଲେ 'ବତ୍ସ ! ତୁମ୍ଭେ କେଦାରଖଣ୍ଡ ବିଦାରଣ କରି ଉତ୍ଥିତ ହେବାରୁ ତୁମ୍ଭ ନାମ ଉଦ୍ଦାଳକ ହେଲା । ତୁମ୍ଭେ ଆମ୍ଭର ବାକ୍ୟ ପାଳନ କରିଅଛ, ଏଥିନିମନ୍ତେ ତୁମ୍ଭର ଶ୍ରେୟଃଲାଭ ହେବ ଓ ସମସ୍ତ ବେଦ ଓ ସମୁଦାୟ ଧର୍ମଶାସ୍ତ୍ର ତୁମ୍ଭଠାରେ ପ୍ରତିଭାତ ରହିବ'—ଏହା ବୋଲି ଅନୁଗ୍ରହ ପ୍ରକାଶ କଲେ । ପାଞ୍ଚାଳ୍ୟ ଆରୁଣି ଗୁରୁ କର୍ତ୍ତୃକ ଏହିରୂପ ଆଦିଷ୍ଟ ଓ ଅନୁଗୃହୀତ ହୋଇ ଅଭିଳଷିତ ଦେଶକୁ ଗମନ କଲେ । ୩୨ ।

ସେହି ଆପୋଦ ଧୌମ୍ୟଙ୍କର ଉପମନ୍ୟୁ ନାମରେ ଅପର ଯେଉଁ ଶିଷ୍ୟଟି ଥିଲେ ତାହାଙ୍କୁ ଦିନେ ଉପାଧ୍ୟାୟ ବୋଇଲେ "ହେ ଉପମନ୍ୟୁ !

ତୁମ୍ଭେ ଆମ୍ଭର ଗୋରୁମାନଙ୍କୁ ରକ୍ଷାକର"—ଏହା କହି ପ୍ରେରଣ କଲେ ।
ଉପମନ୍ୟୁ ଅଗୃଯ୍ୟଙ୍କ ବଚନାନୁସାରେ ଗୋରୁ ରକ୍ଷାରେ ନିଯୁକ୍ତ ରହିଲେ ।
ଦିନେ ସେ ଗୋରୁ ରକ୍ଷାକରି ସାୟଂକାଳରେ ଗୁରୁଙ୍କ ଗୃହକୁ ଆଗମନ
କରି ଆଗୃଯ୍ୟଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ପ୍ରଣାମ କଲେ । ଉପାଧ୍ୟାୟ
ତାହାଙ୍କୁ ସ୍ଥୂଳକାୟ ଅବଲୋକନ କରି ପ୍ରଶ୍ନ କଲେ, 'ବତ୍ସ ଉପମନ୍ୟୁ !
ତୁମ୍ଭେ ସ୍ଥୂଳକାୟ ଦିଶୁଅଛ; କି ପ୍ରକାରେ ଜୀବିକା ନିର୍ବାହ କର ?' ସେ
ଗୁରୁଙ୍କୁ ଉତ୍ତର କଲେ, ଭଗବନ୍ ! ଆମ୍ଭେ ଭିକ୍ଷାଦ୍ୱାରା ଜୀବିକା ନିର୍ବାହ କରୁ ।'
ଆଗୃଯ୍ୟ ତାହାଙ୍କୁ କହିଲେ 'ବତ୍ସ ! ଆମ୍ଭଙ୍କୁ ନିବେଦନ ନ କରି ଭୈକ୍ଷ୍ୟ
ଅନ୍ନ ଭୋଜନ କରିବ ନାହିଁ ।'

ଉପମନ୍ୟୁ ଏହିରୂପେ ଆଦିଷ୍ଟ ହେବାରୁ ଭିକ୍ଷା କରି ଆଣି ଗୁରୁଙ୍କୁ
ନିବେଦନ କଲେ ।୩୮। ଗୁରୁ ସମସ୍ତ ଭିକ୍ଷାନ୍ନ ତାହାଙ୍କଠାରୁ ଗ୍ରହଣ କଲେ,
ଉପମନ୍ୟୁ ହେଉ ବୋଲି କହି ପୁନର୍ବାର ଗୋରକ୍ଷା କରିବାକୁ ଗଲେ ।
ପରଦିନ ଦିବସରେ ଗୋରକ୍ଷା କରି ସାୟଂକାଳରେ ଗୁରୁଙ୍କ ଗୃହକୁ ଆଗମନ
କରି ତାହାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ପ୍ରଣାମ କଲେ । ଉପାଧ୍ୟାୟ
ତାହାଙ୍କୁ ସ୍ଥୂଳକଳେବର ଦେଖି ପଚାରିଲେ "ହେ ବତ୍ସ ଉପମନ୍ୟୁ ! ଆମ୍ଭେ
ତୁମ୍ଭର ସମୁଦାୟ ଭିକ୍ଷାଲବ୍ଧ ଅନ୍ନ ଗ୍ରହଣ କରୁଁ, ଏବେ କିପରି ଜୀବିକା
ନିର୍ବାହ କର ?" ୪୦ ।

ଉପମନ୍ୟୁ ଏହି ପ୍ରକାରେ ପୃଷ୍ଟ ହେବାରୁ ଗୁରୁଙ୍କୁ ଉତ୍ତର ଦେଲେ,
ଆମ୍ଭେ ପ୍ରଥମ ଭିକ୍ଷାନ୍ନ ଆପଣଙ୍କୁ ସମର୍ପଣ କରି ଆଉ ଥରେ ଭିକ୍ଷାକରି
ତଦ୍ୱାରା ଜୀବନ ରକ୍ଷା କରୁଁ । ଗୁରୁ ତାହାଙ୍କୁ କହିଲେ, 'ବତ୍ସ ! ଏ କାର୍ଯ୍ୟ
ଗୁରୁକୁଳବାସୀର କର୍ତ୍ତବ୍ୟ ନୁହେ । ତୁମ୍ଭେ ଅନ୍ୟାନ୍ୟ ଭିକ୍ଷୋପଜୀବିମାନଙ୍କର
ବୃତ୍ତିର ବ୍ୟାଘାତ କରୁଅଛ । ଏପରି ଜୀବିକା ନିର୍ବାହରେ ତୁମ୍ଭେ ଲୋଭୀ
ଥିବାର ପ୍ରକାଶ ପାଉଅଛି ।'

ଉପମନ୍ୟୁ 'ତଥାସ୍ତୁ' ବୋଲି ପୁନର୍ବାର ଆରଦିନ ଗୋରକ୍ଷା କରିବାକୁ
ଗଲେ । ସାୟଂକାଳରେ ଉପାଧ୍ୟାୟଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ପ୍ରଣାମ
କଲେ । ଉପାଧ୍ୟାୟ ତାହାଙ୍କୁ ପୂର୍ବପରି ସ୍ଥୂଳକାୟ ଦେଖି ପଚାରିଲେ, 'ବତ୍ସ
ଉପମନ୍ୟୁ ! ଆମ୍ଭେ ତୁମ୍ଭର ସମଗ୍ର ଭିକ୍ଷାନ୍ନ ଗ୍ରହଣ କରିଅଛୁ ; ତୁମ୍ଭେ ଆଉ
ଥରେ ଭିକ୍ଷା କରନାହିଁ, ତଥାପି ସ୍ଥୂଳକାୟ ଦିଶୁଅଛ । ଏବେ କିପରି ଜୀବିକା
ନିର୍ବାହ କର ?' ୪୪ । ସେ ଏହିରୂପେ ପୃଷ୍ଟ ହୋଇ ଉପାଧ୍ୟାୟଙ୍କୁ କହିଲେ

'ଭଗବନ୍ ! ଏହି ଗୋଗଣର ଦୁଗ୍ଧଦ୍ୱାରା ଜୀବିକା ନିର୍ବାହ କରେଁ ।' ଉପାଧ୍ୟାୟ ବୋଇଲେ, 'ଆମ୍ଭେ ତୁମ୍ଭଙ୍କୁ ଅନୁଜ୍ଞା ଦେଇନାହୁଁ, ଅତଏବ ତୁମ୍ଭର ଦୁଗ୍ଧ ପାନ କରିବା ବିଧେୟ ନୁହେଁ ।' ୪୫ ।

ଉପମନ୍ୟୁ ତଥାସ୍ତୁ ବୋଲି ପ୍ରତିଜ୍ଞା କରି ପୁନର୍ବାର ଗୋରକ୍ଷା କରି ସାୟାହ୍ନରେ ଗୁରୁଙ୍କ ସମୀପରେ ଉପସ୍ଥିତ ହୋଇ ପ୍ରଣାମ କଲେ ।

ଉପାଧ୍ୟାୟ ତାହାଙ୍କୁ ସ୍ଥୂଳ ଥିବାର ଅବଲୋକନ କରି ପଚାରିଲେ, 'ବତ୍ସ ! ତୁମ୍ଭେ ଆଜ ଏବେ ଭିକ୍ଷାନ୍ନ ଭୋଜନ କର ନାହିଁ, କିମ୍ବା ପୁନର୍ବାର ଭିକ୍ଷା କର ନାହିଁ, କି ଦୁଗ୍ଧ ପାନ କରନାହିଁ, ତଥାପି ସ୍ଥୂଳ ହୋଇଅଛ; ଅତଏବ କି ପ୍ରକାରେ ଜୀବିକା ନିର୍ବାହ କରୁଅଛ ?' ସେ ଏହିରୂପ ପୃଷ୍ଟ ହୋଇ ବୋଇଲେ, 'ଆପଣେ ! ବତ୍ସମାନେ ମାତୃସ୍ତନ୍ୟ ପାନକରି ଯେଉଁ ଫେଣ ତୁଣ୍ଡରୁ ବାହାର କରି ପକାନ୍ତି ସେହି ଫେଣସବୁ ଆମ୍ଭେ ଭକ୍ଷଣ କରୁ ।' ୪୮ । ଉପାଧ୍ୟାୟ କହିଲେ, "ଏହି ବତ୍ସମାନେ ବଡ଼ ଗୁଣବନ୍ତ, ତୁମ୍ଭଠାରେ ଦୟା ବହି ବହୁତର ଫେନ ଉଦ୍‌ଗୀରଣ କରନ୍ତି । ତୁମ୍ଭେ ଏହି ଫେନ ଆହାର କରି ସେହି ବତ୍ସମାନଙ୍କର ଜୀବିକାର ବାଧା କରୁଅଛ । ଅତଏବ ଆଜ ଫେନ ଭକ୍ଷଣ କରିବା ତୁମ୍ଭର ଉଚିତ ନୁହେଁ ।' ଉପମନ୍ୟୁ ତଥାସ୍ତୁ ବୋଲି ଅଙ୍ଗୀକାର କରି ପୁନର୍ବାର ଗୋରକ୍ଷା କରିବାରେ ପ୍ରବୃତ୍ତ ହେଲେ । ୪୯ । ଉପମନ୍ୟୁ ଭିକ୍ଷାନ୍ନ ଭକ୍ଷଣ କଲେ ନାହିଁ କି ପୁନର୍ବାର ଭିକ୍ଷାକରି ଆହାର କଲେ ନାହିଁ କି ଦୁଗ୍ଧପାନ କଲେ ନାହିଁ କି ବତ୍ସୋଦ୍‌ଗୀର୍ଣ୍ଣ ଫେନ ସୁଦ୍ଧା ପାନ କଲେ ନାହିଁ । ୫୦ ।

ଏକଦା ଉପମନ୍ୟୁ ଅରଣ୍ୟ ମଧ୍ୟରେ କ୍ଷୁଧାର୍ତ୍ତ ହୋଇ ଅର୍କ ପତ୍ର ଭକ୍ଷଣ କଲେ । ସେହି କଟୁ, ତିକ୍ତ, କ୍ଷାର, ରୁକ୍ଷ ଓ ତୀକ୍ଷ୍ଣ ବିପାକ ଅର୍କ ପତ୍ର ଭକ୍ଷଣ କରିବାରୁ ତାହାଙ୍କ ନେତ୍ରରେ ରୋଗ ଜାତ ହୋଇ ସେ ଅନ୍ଧ ହେଲେ । ଅନ୍ଧ ହୋଇ ଇତସ୍ତତଃ ଭ୍ରମଣ କରିବାରୁ ଗୋଟାଏ କୂପରେ ପତିତ ହେଲେ । ୫୧ । ସୂର୍ଯ୍ୟ ଅସ୍ତାଚଳଚୂଡ଼ାବଲମ୍ବୀ ହୋଇ ସୁଦ୍ଧା ଉପମନ୍ୟୁ ଫେରି ନ ଆସିବାରୁ ଉପାଧ୍ୟାୟ ଶିଷ୍ୟଙ୍କୁ ପଚାରିଲେ, 'ହେ ଶିଷ୍ୟଗଣ ! ଉପମନ୍ୟୁ କିପାଇଁ ଆସୁନାହାନ୍ତି ?' ଶିଷ୍ୟମାନେ ଉତ୍ତର କଲେ, 'ହେ ଆଚାର୍ଯ୍ୟ ! ଉପମନ୍ୟୁ ଅରଣ୍ୟକୁ ଗୋରକ୍ଷା କରିବାକୁ ଗମନ କରିଅଛନ୍ତି ।' ଉପାଧ୍ୟାୟ ସେମାନଙ୍କୁ କହିଲେ, 'ଆମ୍ଭେ ଉପମନ୍ୟୁଙ୍କୁ

ସର୍ବ ପ୍ରକାରେ ପ୍ରତିଷେଧ କରିବାରୁ ସେ ନିଶ୍ଚୟ କୁପିତ ହୋଇଅଛି, ଏହି ହେତୁରୁ ଏତେବେଳ ଯାଏ ଆଗମନ କରିନାହିଁ । ଅତଏବ ଚାଲ ଆମ୍ଭେମାନେ ସମସ୍ତେ ଯାଇ ଅନ୍ୱେଷଣ କରିବା ।'

ଏହା କହି ଉପାଧ୍ୟାୟ ସଶିଷ୍ୟ ବନକୁ ଗମନ କରି ଉଚ୍ଚୈଃସ୍ୱରରେ ଆହ୍ୱାନ କଲେ, "ହେ ବତ୍ସ ଉପମନ୍ୟୁ ! ତୁମ୍ଭେ କେଉଁଠାରେ ଅଛ ? ଆସ ।" ସେ ଉପାଧ୍ୟାୟଙ୍କ ବାକ୍ୟ ଶ୍ରବଣ କରି ଉଚ୍ଚୈଃସ୍ୱରରେ ଉତ୍ତର ଦେଲେ, 'ଆପଣେ ! ଆମ୍ଭେ ଏହି କୂପରେ ପତିତ ହୋଇଅଛୁ ।' ତାହାଙ୍କ ବଚନ ଶୁଣି ଉପାଧ୍ୟାୟ ପ୍ରଶ୍ନ କଲେ 'କପରି ତୁମ୍ଭେ କୂପରେ ପତିତ ହେଲ ?' ସେ କହିଲେ 'ଭଗବନ୍ ! ଆମ୍ଭେ ଅର୍କପତ୍ର ଭକ୍ଷଣ କରି ଅନ୍ଧ ହୋଇ କୂପରେ ପତିତ ହୋଇଅଛୁ ?' ଉପାଧ୍ୟାୟ କହିଲେ 'ବତ୍ସ ! ତୁମ୍ଭେ ଅଶ୍ୱିନୀ-କୁମାରଦ୍ୱୟଙ୍କୁ ସ୍ତୁତି କର, ସେମାନେ ଦେବବୈଦ୍ୟ, ତୁମ୍ଭଙ୍କୁ ଚକ୍ଷୁଦାନ କରିବେ ।' ଉପମନ୍ୟୁ ଏହି ରୂପେ ଆଦିଷ୍ଟ ହୋଇ ଋଗ୍‌ବେଦୋକ୍ତ ବାକ୍ୟ ଦ୍ୱାରା ଅଶ୍ୱିନୀକୁମାରଦ୍ୱୟଙ୍କ ସ୍ତବ କରିବାକୁ ଆରମ୍ଭ କଲେ । ୫୬ ।

"ହେ ଅଶ୍ୱିନୀକୁମାରଯୁଗଳ ! ଆପଣମାନେ ସୃଷ୍ଟି ପୂର୍ବେ ବିଦ୍ୟ-ମାନ ଥିଲେ, ଆପଣମାନେ ହିରଣ୍ୟଗର୍ଭ ରୂପେ ସୃଷ୍ଟି ପୂର୍ବରୁ ଉତ୍ପନ୍ନ ହୋଇଥିଲେ । ଆପଣମାନେ ବିଚିତ୍ର ପ୍ରପଞ୍ଚ ରୂପେ ପ୍ରକାଶମାନ ହୋଇ-ଅଛନ୍ତି । ଆମ୍ଭେ ଶ୍ରବଣଜନ୍ୟ ଜ୍ଞାନ ଓ ମନନ ଧ୍ୟାନାତ୍ମକ ପର୍ଯ୍ୟାଲୋଚନା ଦ୍ୱାରା ଆପଣମାନଙ୍କୁ ପ୍ରାପ୍ତ ହେବାକୁ ଅଭିଳାଷ କରୁଅଛୁ । ଦେଶ କାଳ ଓ ବସ୍ତୁଦ୍ୱାରା ଆପଣମାନଙ୍କର ପରିଚ୍ଛେଦ କରି ହୁଏ ନାହିଁ । ଆପଣମାନେ ମାୟା ଓ ମାୟାରୂଢ଼ ଚୈତନ୍ୟ ରୂପେ ଦ୍ୟୋତମାନ ରହିଅଛନ୍ତି । ଆପଣ-ମାନେ ପକ୍ଷୀରୂପେ ଦେହବୃକ୍ଷରେ ଆରୋହଣ କରି ରହିଅଛନ୍ତି । ଆପଣ-ମାନେ ସୃଷ୍ଟି ବିଷୟରେ ପରମାଣୁର ପରତନ୍ତ୍ର ନୁହନ୍ତି ବା ସତ୍ତ୍ୱ-ରଜଃ-ତମୋଗୁଣର ଅଧୀନ ନୁହନ୍ତି । ଆପଣମାନେ ବାକ୍ୟ ଓ ମନର ଅଗୋଚର । ଆପଣମାନେ ସତ୍ତ୍ୱଗତ ବିକ୍ଷେପ ଶକ୍ତିଦ୍ୱାରା ଏହି ନିଖିଳ ଭୁବନକୁ ସୃଷ୍ଟି କରୁଅଛନ୍ତି ।

ଆପଣମାନେ ଅତି ରମଣୀୟ ଓ ସଙ୍ଗରହିତ ବ୍ରହ୍ମସ୍ୱରୂପ । ପ୍ରଳୟ କାଳରେ ଆପଣମାନେ ସକଳ ବିଶ୍ୱର ଅଧିଷ୍ଠାନ ସ୍ୱରୂପ । ଆପଣମାନେ ଭ୍ରମଶୂନ୍ୟ ଓ ଅବିନଶ୍ୱର । ଆପଣମାନେ ଅତି ସୁନ୍ଦର ନାସିକାଯୁକ୍ତ । ଆପଣମାନେ କାଳକୁ ଜୟ କରିଅଛନ୍ତି । ଆପଣମାନେ ହିନକରଙ୍କୁ ସୃଷ୍ଟି

କର ଦିବା ଓ ରାତ୍ରିରୂପେ ଶୁକ୍ଳ ଓ କୃଷ୍ଣବର୍ଣ୍ଣ ତନ୍ତୁଦ୍ୱାରା ସମ୍ବତ୍ସର ରୂପ ବସ୍ତ୍ର ବୟନ କରୁଅଛନ୍ତି । ତଦ୍ଦ୍ୱାରା ଆପଣମାନେ ଦେବ ଓ ପିତୃଲୋକର ଯାନ ପ୍ରସ୍ତୁତ କରୁଅଛନ୍ତି ଓ କର୍ମଫଳର ଉପଭୋଗ ନିମିତ୍ତ ସେହି ସେହି ଲୋକ-ମାନଙ୍କୁ ଗମନର ପଥ ପ୍ରଦାନ କରୁଅଛନ୍ତି । ଆପଣମାନେ ଅଶ୍ୱିନୀକୁମାର ରୂପଦ୍ୱାରା ପରମାତ୍ମାଙ୍କର କାଳରୂପ ଶକ୍ତିଗ୍ରସ୍ତ ଜୀବରୂପା ପକ୍ଷିଣୀକୁ ମୁକ୍ତ କରୁଅଛନ୍ତି । ରାଗାଦି ବିଷୟାସକ୍ତ ଅତ୍ୟନ୍ତ ମୂଢ଼ ପୁରୁଷମାନେ ଯେଉଁ କାଳ ପର୍ଯ୍ୟନ୍ତ ଇନ୍ଦ୍ରିୟଗଣର ଅଧୀନତାରେ ବଦ୍ଧ ଥାନ୍ତି, ସେ କାଳ ପର୍ଯ୍ୟନ୍ତ ସର୍ବଦୋଷ ସ୍ପର୍ଶଶୂନ୍ୟ ଆପଣମାନଙ୍କୁ ଶରୀରୀ ବୋଲି ବୋଧ କରନ୍ତି । ଦିବା ରାତ୍ରିରୂପ ତ୍ରିଶତଷଷ୍ଟି (୩୬୦) ସଂଖ୍ୟକ ଧେନୁ ସର୍ବବିନାଶକ ଓ ସର୍ବୋତ୍ପାଦକ ବତ୍ସର ରୂପ ଯେଉଁ ଗୋଟିଏ ବତ୍ସକୁ ପ୍ରସବ କରନ୍ତି ଓ ତତ୍ତ୍ୱଜିଜ୍ଞାସୁ ବ୍ୟକ୍ତି-ମାନେ ଯେଉଁ ବତ୍ସଦ୍ୱାରା ବିଭିନ୍ନ ଫଳପ୍ରଦ କ୍ରିୟାବଳୀରୁ ତତ୍ତ୍ୱଜ୍ଞାନରୂପ ଦୁଗ୍ଧ ଦୋହନ କରନ୍ତି, ଆପଣମାନେ ସେହି ବତ୍ସର ଜନୟିତା ।

ଯେଉଁ କାଳଚକ୍ରର ସଂବତ୍ସରରୂପ ନାଭିରେ ଅବସ୍ଥିତ ହୋଇ ଦିବସ ଓ ରାତ୍ରିରୂପ ସପ୍ତଶତ ବିଂଶତି (୭୨୦) ଅର ଦ୍ୱାଦଶ ମାସ ସ୍ୱରୂପ ନେମିକୁ ଆଶ୍ରୟ କରିଅଛି, ଆପଣମାନେ ସତତ ସେହି ମାୟାମୟ ଅବିନଶ୍ୱର କାଳଚକ୍ରକୁ ପ୍ରବର୍ତ୍ତିତ କରୁଅଛନ୍ତି; ସେହି କାଳଚକ୍ର ଇହଲୋକ ଓ ପର-ଲୋକବାସୀ ସମସ୍ତ ପ୍ରଜାଙ୍କୁ ସ୍ପର୍ଶ କରୁଅଛି । ମେଷାଦି ରାଶି ସ୍ୱରୂପ ଦ୍ୱାଦଶ ଅର, ଋତୁଗଣ ସ୍ୱରୂପ ଛଅ ନାଭି ଓ ସମ୍ବତ୍ସର ସ୍ୱରୂପ ଏକ ଅକ୍ଷବିଶିଷ୍ଟ ଓ କର୍ମଫଳର ଆଧାର ସ୍ୱରୂପ ଯେଉଁ ଚକ୍ରଟି ରହିଅଛି, କାଳାଭିମାନୀ ଦେବତାମାନେ ସୁଦ୍ଧା ଯହିଁରେ ଆସକ୍ତ ହୋଇଅଛନ୍ତି, ଆପଣମାନେ ସେହି କାଳଚକ୍ରରୁ ଆମ୍ଭଙ୍କୁ ମୁକ୍ତ କରନ୍ତୁ; ଆମ୍ଭେ ଜନ୍ମମରଣରୂପ ଦୁଃଖରେ ବିଷାଦପ୍ରାପ୍ତ ହେଉଅଛୁ । ଆପଣମାନେ ଆକାଶାଦି ସମସ୍ତ ପ୍ରପଞ୍ଚ ସ୍ୱରୂପ, ଆପଣମାନେ କର୍ମ ସ୍ୱରୂପ ଓ ଇହଲୋକ ପରଲୋକ ଭୋଗ୍ୟ କର୍ମଫଳ ସ୍ୱରୂପ। ବିଷୟାଦି ସମସ୍ତ ଆପଣମାନଙ୍କଠାରେ ତିରୋହିତ ହେଉଅଛି; ଅତଏବ ଆପଣମାନେ ସମସ୍ତଙ୍କ ଆତ୍ମା ସ୍ୱରୂପ ଓ ଉପାସ୍ୟ । ଆପଣମାନେ ପରଂବ୍ରହ୍ମ ସ୍ୱରୂପ ହୋଇ ଜ୍ଞାନସାଧନ ସମ୍ପତ୍ତି ପରିତ୍ୟାଗ ପୂର୍ବକ ଇନ୍ଦ୍ରିୟଗଣଙ୍କୁ ବିଷୟଭୋଗଜନିତ ଆନନ୍ଦଦ୍ୱାରା ବିଷୟଭୂମିରେ ବିଚରଣ କରି ଅନାଦି ବିଷୟ ବାସନାର ବଶରେ ସଂସାରରେ ବଦ୍ଧ ହୋଇଅଛନ୍ତି ।

ହେ ଅଶ୍ୱିନୀକୁମାରଯୁଗଳ ! ଆପଣମାନେ ସୃଷ୍ଟିର ପୂର୍ବେ ଦଶଦିକ୍, ଏକ ସୂର୍ଯ୍ୟ ଓ ଆକାଶମଣ୍ଡଳ ସୃଷ୍ଟି କରିଅଛନ୍ତି । ଋଷିମାନେ ସେହି ସୂର୍ଯ୍ୟ-

କୃତ ଦିକ୍ ଓ କାଳକୁ ଅବଲମ୍ବନ କରି ବେଦବିହିତ କାର୍ଯ୍ୟକଳାପର ଅନୁଷ୍ଠାନ କରନ୍ତି ଓ ଦେବତା ଓ ମାନବମାନେ ଆପଣା ଆପଣା ଅଧିକାରାନୁରୂପ ଐଶ୍ୱର୍ଯ୍ୟ ଭୋଗ କରନ୍ତି । ହେ ଅଶ୍ୱିନୀତନୟଦ୍ୱୟ ! ଆପଣମାନେ ଲୋହିତ, କୃଷ୍ଣ ଓ ଶୁକ୍ଳବର୍ଣ୍ଣ ବିଶିଷ୍ଟ ଆକାଶାଦି ସୂକ୍ଷ୍ମ ପଞ୍ଚଭୂତର ମିଶ୍ରଣଦ୍ୱାରା ବିବିଧ ପ୍ରକାର ଦ୍ରବ୍ୟ ସୃଷ୍ଟି କରିଅଛନ୍ତି; ତଦ୍ଦ୍ୱାରା ଚତୁର୍ଦ୍ଦଶ ଭୁବନର ରଚନା ହୋଇଅଛି । ତତସ୍ଥ ଜୀବଗଣ ଶରୀର, ଇନ୍ଦ୍ରିୟ ଓ ବୁଦ୍ଧିର ଅନୁଗତ ହୋଇ ବିଷୟଭୋଗ କରୁଅଛନ୍ତି ଓ ଦେବ, ମନୁଷ୍ୟ ଓ ପଶ୍ୱାଦି ଏହି ପୃଥିବୀକୁ ଆଶ୍ରୟ କରି ରହିଅଛନ୍ତି । ଆମ୍ଭେ ଆପଣଙ୍କର ଓ ଆପଣମାନେ ଯେଉଁ ଅବ୍ୟକ୍ତ ଆକାଶର ସୃଷ୍ଟି କରିଅଛନ୍ତି ସେହି କାର୍ଯ୍ୟ ସମୂହର ପୂଜା କରୁ । ଆପଣମାନେ ନିତ୍ୟ, ମୁକ୍ତ ଓ କର୍ମଫଳର ଉତ୍ପାଦକ । ଆପଣମାନଙ୍କ ସାହାଯ୍ୟ ବ୍ୟତିରେକେ ଦେବତାମାନେ ସୁଦ୍ଧା କୌଣସି ବିଷୟରେ କୃତକାର୍ଯ୍ୟ ହୋଇ ପାରନ୍ତି ନାହିଁ । ଆପଣମାନେ ପିତାମାତା ସ୍ୱରୂପ ହୋଇ ପ୍ରଥମେ ମୁଖଦ୍ୱାରା ଅନ୍ନରୂପ ଗର୍ଭଧାରଣ କରନ୍ତି; ପରେ ଚୈତନ୍ୟବିହୀନ ଦେହ ଉପସ୍ଥେନ୍ଦ୍ରିୟ ଦ୍ୱାରା ସେହି ଗର୍ଭକୁ ପ୍ରସବ କରେ । ବାଳକ ଉତ୍ପନ୍ନ ହେବା ମାତ୍ର ମାତାର ସ୍ତନ୍ୟପାନରେ ପ୍ରବୃତ୍ତ ହୁଏ । ଆପଣମାନେ ଅଶ୍ୱିନୀସମ୍ଭୂତ ବ୍ରହ୍ମସ୍ୱରୂପ; ଅଧୁନା ଜୀବନରକ୍ଷା ନିମିତ୍ତ ଆମ୍ଭ ନୟନର ପ୍ରତିବନ୍ଧକତା ଆନୟନ କରନ୍ତୁ । ଗୁଣଗାନ ଦ୍ୱାରା ଆମ୍ଭେ ଆପଣମାନଙ୍କର ସ୍ତବ କରିବାକୁ ସମର୍ଥ ନୋହୁ । ଆମ୍ଭେ ପଥ ମଧ୍ୟରେ ନୟନହୀନ ଓ ମୋହାଭିଭୂତ ହୋଇ ଏହି ଦୁର୍ଗମ କୂପରେ ପତିତ ହୋଇଅଛୁ, ବର୍ତ୍ତମାନ ଆପଣମାନେ ରକ୍ଷାକର୍ତ୍ତା । ଅତଏବ ଆପଣମାନଙ୍କର ଶରଣ ଗ୍ରହଣ କଲୁଁ ।"

ଉପମନ୍ୟୁ ଉକ୍ତ ରୂପ ସ୍ତବ କରିବାରୁ ଅଶ୍ୱିନୀକୁମାରଯୁଗଳ ସେହି ସ୍ଥାନରେ ଉପସ୍ଥିତ ହେଲେ ଓ କହିଲେ, 'ହେ ଉପମନ୍ୟୁ ! ଆମ୍ଭେମାନେ ତୁମ୍ଭ ପ୍ରତି ପ୍ରୀତ ହୋଇଅଛୁ, ତୁମ୍ଭ ନିମିତ୍ତ ଏହି ପିଷ୍ଟକ ଅଛି, ଭକ୍ଷଣ କର ।' ଉପମନ୍ୟୁ ଏହି ରୂପ ଅଭିହିତ ହୋଇ କହିଲେ, 'ହେ ଅଶ୍ୱିନୀତନୟଦ୍ୱୟ ! ଆପଣମାନେ କଦାପି ଅନୃତ କହନ୍ତି ନାହିଁ; ତଥାପି ଆମ୍ଭେ ଗୁରୁଙ୍କୁ ନିବେଦନ ନ କରି ଏହି ଅପୂପ ଭକ୍ଷଣ କରିବାକୁ ସାହସୀ ହେଉ ନାହୁଁ ।' ଅନନ୍ତର ଅଶ୍ୱିନୀକୁମାରଦ୍ୱୟ ତାହାଙ୍କୁ କହିଲେ, 'ହେ ଉପମନ୍ୟୁ ! ପୂର୍ବେ ତୁମ୍ଭର ଗୁରୁ ଏହିରୂପ ସ୍ତବ କରିବାରୁ ଆମ୍ଭେମାନେ ପ୍ରସନ୍ନ ହୋଇ ତାହାଙ୍କୁ ଗୋଟିଏ ପିଷ୍ଟକ ପ୍ରଦାନ କରିଥିଲୁଁ । ସେ ତାଙ୍କର ଗୁରୁଙ୍କୁ ନିବେଦନ

କରି ଭକ୍ଷଣ କରିଥିଲେ; ଅତଏବ ତୁମ୍ଭର ଉପାଧ୍ୟାୟ ଯେପରି କରିଅଛନ୍ତି, ତୁମ୍ଭେ ମଧ୍ୟ ତଦ୍ରୂପ କର ।' ଉପମନ୍ୟୁ ଏହିରୂପ ଅଭିହିତ ହେବାରୁ ଉତ୍ତର କଲେ, 'ହେ ଅଶ୍ୱିନୀକୁମାରଦ୍ୱୟ ! ଆମ୍ଭେ ଆପଣମାନଙ୍କଠାରେ ଅନୁନୟ କରୁଅଛୁ ଯେ ଗୁରୁଙ୍କୁ ନିବେଦନ ନ କରି ଏହି ଅପୂପ ଭକ୍ଷଣ କରିବାକୁ ସାହସୀ ହେଉନାହୁଁ ।'

ଅଶ୍ୱିନୀତନୟଦ୍ୱୟେ କହିଲେ, 'ହେ ଉପମନ୍ୟୁ ! ଆମ୍ଭେମାନେ ତୁମ୍ଭର ଈଦୃଶ ଗୁରୁଭକ୍ତିରେ ପ୍ରୀତ ହେଲୁଁ । ତୁମ୍ଭର ଉପାଧ୍ୟାୟଙ୍କ ଦନ୍ତସକଳ ଲୌହମୟ ଓ ତୁମ୍ଭର ଦନ୍ତସକଳ ହିରଣ୍ମୟ ହେବ ଓ ତୁମ୍ଭେ ଚକ୍ଷୁଷ୍ମାନ୍ ହେବ ଓ ଜ୍ଞାନଲାଭ କରିବ ।' *

ଅଶ୍ୱିନୀକୁମାରଙ୍କ ବାକ୍ୟ ପ୍ରମାଣେ ଉପମନ୍ୟୁ ଦୃଷ୍ଟିଲାଭ କରି ଉପାଧ୍ୟାୟଙ୍କ ନିକଟକୁ ଆଗମନ ଓ ତାହାଙ୍କୁ ଅଭିବାଦନ ପୂର୍ବକ ସମସ୍ତ ବୃତ୍ତାନ୍ତ ନିବେଦନ କଲେ । ଗୁରୁ ତହିଁରେ ତାହାଙ୍କ ପ୍ରତି ପ୍ରୀତ ହୋଇ କହିଲେ, 'ବତ୍ସ ! ଅଶ୍ୱିନୀକୁମାରଯୁଗଳ ତୁମ୍ଭଙ୍କୁ ଯେରୂପ କହିଅଛନ୍ତି, ତୁମ୍ଭେ ତଦନୁରୂପ ଶ୍ରେୟଲାଭ କରିବ; ସମଗ୍ର ବେଦ ଓ ସମସ୍ତ ଧର୍ମଶାସ୍ତ୍ର ତୁମ୍ଭ ଅନ୍ତଃକରଣରେ ପ୍ରତିଭାତ ହେବ ।' ଉପମନ୍ୟୁଙ୍କର ଏହିପରି ପରୀକ୍ଷା ହେଲା ।

ଅନନ୍ତର ଆୟୋଦ ଧୌମ୍ୟଙ୍କର ବେଦନାମରେ ଅପର ଯେଉଁ ଶିଷ୍ୟ ଥିଲେ, ତାହାଙ୍କୁ ଉପାଧ୍ୟାୟ ଆଦେଶ କଲେ, "ବତ୍ସ ବେଦ ! ତୁମ୍ଭେ କିଛିକାଳ ଆମ୍ଭ ଗୃହରେ ରହି ଶୁଶ୍ରୂଷା କର; ତୁମ୍ଭର ମଙ୍ଗଳ ହେବ ।" ସେ 'ଆଜ୍ଞା ହେଉ' ବୋଲି କହି ଦୀର୍ଘକାଳ ଗୁରୁଙ୍କର ଶୁଶ୍ରୂଷା କରିବାରେ ରହିଲେ । ଉପାଧ୍ୟାୟ ସର୍ବଦା ତାହା ଉପରେ ବଳୀବର୍ଦ୍ଦ ପ୍ରାୟ ନାନାବିଧ ଭାର ଅର୍ପଣ କରନ୍ତି । ସେ ସବୁ ବିଷୟରେ ଅନୁକୂଳ ହୋଇ ଶୀତ, ଉଷ୍ଣ, କ୍ଷୁଧା ଓ ତୃଷ୍ଣାଜନିତ ଦୁଃଖମାନଙ୍କୁ ସହ୍ୟ କରି କାର୍ଯ୍ୟ ସମ୍ପାଦନ କରନ୍ତି । ବହୁକାଳ ପରେ ଗୁରୁ ତୁଷ୍ଟ ହେଲେ । ତାହାଙ୍କ ପରିତୋଷରୁ ବେଦ ଶ୍ରେୟ ଓ ସର୍ବଜ୍ଞତା ଲାଭ କଲେ । ଏହିପରି ବେଦଙ୍କର ପରୀକ୍ଷା ହେଲା ।

* ଲୌହମୟ ଦନ୍ତଦ୍ୱାରା ଗୁରୁଙ୍କ ନିର୍ଦ୍ଦୟତ୍ୱ ସୂଚିତ ହେଉଅଛି, ହିରଣ୍ମୟ ଦନ୍ତଦ୍ୱାରା ଦୟା ପ୍ରକାଶ ହେଉଅଛି । ଫଳିତାର୍ଥ ଏହି ଯେ ତୁମ୍ଭେ ନିଜ ଶିଷ୍ୟଙ୍କ ପ୍ରତି ସଦୟ ବ୍ୟବହାର କରିବ । ତୁମ୍ଭ ଗୁରୁଙ୍କ ପ୍ରାୟ ନିର୍ଦ୍ଦୟ ହେବ ନାହିଁ ।

ବେଦ ଉପାଧ୍ୟାୟଙ୍କ କର୍ତ୍ତୃକ ଅନୁଜ୍ଞାତ ହୋଇ ଗୁରୁକୁଳରୁ ପ୍ରତ୍ୟାବର୍ତ୍ତନ ପୂର୍ବକ ଗୃହସ୍ଥାଶ୍ରମ ଅବଲମ୍ବନ କଲେ ।

ତାହାଙ୍କଠାରେ ତିନଜଣ ଶିଷ୍ୟ ଉପଗତ ହେଲେ । କୌଣସି କର୍ମ କର, କି ଗୁରୁ ଶୁଶ୍ରୂଷା କର ବୋଲି ସେ କିଛିମାତ୍ର ଶିଷ୍ୟଙ୍କୁ କହନ୍ତି ନାହିଁ; କାରଣ ସେ ସ୍ୱୟଂ ଗୁରୁକୁଳରେ ବାସ କରିବାର ଦୁଃଖ ଅନୁଭବ କରିଥିଲେ ।

ତଦନନ୍ତର କିୟତ୍କାଳ ପରେ ଜନମେଜୟ ଓ ପୌଷ୍ୟନାମରେ ଦୁଇଜଣ କ୍ଷତ୍ରିୟ ଆସି ବେଦଙ୍କୁ ଉପାଧ୍ୟାୟ କାର୍ଯ୍ୟରେ ବରଣ କଲେ । ବେଦ ଯାଜ୍ୟ କାର୍ଯ୍ୟୋପଲକ୍ଷରେ ପ୍ରବାସଗମନରେ ଉଦ୍ୟତ ହୋଇ ଉତ୍ତଙ୍କ ନାମକ ଶିଷ୍ୟଙ୍କୁ ଗୃହକାର୍ଯ୍ୟରେ ନିଯୁକ୍ତ କରି ଆଦେଶ କଲେ, 'ଉତ୍ତଙ୍କ ! ଆମ୍ଭେ ଇଚ୍ଛାକରୁଁ ଆମ୍ଭ ଅନୁପସ୍ଥିତିରେ ଆମ୍ଭ ଗୃହରେ ଯେଉଁ ବିଷୟର ଅଭାବ ହେବ, ତାହା ତୁମ୍ଭେ ପୂରଣ କରିବ ।' ଉତ୍ତଙ୍କଙ୍କୁ ଏହିପରି ଆଦେଶ ଦେଇ ବେଦ ପ୍ରବାସ ଗମନ କଲେ ।

ଅନନ୍ତର ଉତ୍ତଙ୍କ ଶୁଶ୍ରୂଷାପରାୟଣ ହୋଇ ଗୁରୁଙ୍କ ଆଦେଶ ପ୍ରତିପାଳନ କରି ତାହାଙ୍କ ଗୃହରେ ବାସ କଲେ । ଏମନ୍ତ ସମୟରେ ସେହି ଆଶ୍ରମବାସୀ ସ୍ତ୍ରୀମାନେ ଏକତ୍ର ହୋଇ ଉତ୍ତଙ୍କଙ୍କୁ ଆହ୍ୱାନ କରି କହିଲେ, 'ବତ୍ସ ! ତୁମ୍ଭର ଉପାଧ୍ୟାୟିନୀ ଋତୁମତୀ ହୋଇଅଛନ୍ତି ; ଉପାଧ୍ୟାୟ ପ୍ରବାସରେ ଅଛନ୍ତି ; ଏବେ ଯହିଁରେ ତାହାଙ୍କର ଋତୁ ନିଷ୍ଫଳ ନ ହୁଏ , ତାହା ତୁମ୍ଭେ କର । ଉପାଧ୍ୟାୟିନୀ ବିଷଣ୍ଣ ହେଉଅଛନ୍ତି ।' ସେ ସ୍ତ୍ରୀମାନଙ୍କ କର୍ତ୍ତୃକ ଏହିରୂପ ଅଭିହିତ ହୋଇ ପ୍ରତ୍ୟୁତ୍ତର କଲେ, 'ଆମ୍ଭେ ସ୍ତ୍ରୀମାନଙ୍କ କଥାରେ କୁକର୍ମ କରିବୁ ନାହିଁ ; ଆଚାର୍ଯ୍ୟ ଆମ୍ଭଙ୍କୁ ମନ୍ଦକର୍ମ କରିବାକୁ କହି ଯାଇ ନାହାନ୍ତି ।'

କିୟତ୍କାଳ ପରେ ଉପାଧ୍ୟାୟ ପ୍ରବାସରୁ ଗୃହକୁ ପ୍ରତ୍ୟାଗମନ କଲେ ଓ ସେହି ବୃତ୍ତାନ୍ତ ସକଳ ଅବଗତ ହୋଇ ଉତ୍ତଙ୍କଙ୍କ ପ୍ରତି ପ୍ରୀତ ହେଲେ ଓ କହିଲେ, "ବତ୍ସ ଉତ୍ତଙ୍କ ! ତୁମ୍ଭର କି ପ୍ରିୟ ସମ୍ପାଦନ କରିବୁଁ ? ତୁମ୍ଭେ ଧର୍ମତଃ ଆମ୍ଭର ଶୁଶ୍ରୂଷା କରିଅଛ ; ତଦ୍ଦ୍ୱାରା ଆମ୍ଭର ପରସ୍ପରଙ୍କର ପ୍ରୀତି ବର୍ଦ୍ଧନ ହେଲା । ଅତଏବ ଅନୁମତି କରୁଅଛୁଁ, ଗୃହକୁ ପ୍ରତିଗମନ କର । ତୁମ୍ଭର ସମସ୍ତ ମନୋରଥ ପୂର୍ଣ୍ଣ ହେବ ।"

ଉତ୍ତଙ୍କ ଏହିରୂପେ ଆଦିଷ୍ଟ ହୋଇ କହିଲେ, "ଆଚାର୍ଯ୍ୟ ! ଆମ୍ଭେ ଆପଣଙ୍କର କି ପ୍ରିୟ ସମ୍ପାଦନ କରିବୁଁ ? ସମସ୍ତେ ଏହିରୂପେ କହନ୍ତି ଯେ ଯେଉଁ ବ୍ୟକ୍ତି ଅଧର୍ମପୂର୍ବକ ଅର୍ଥାତ୍ ଦକ୍ଷିଣା ଗ୍ରହଣ ନ କରି ଅଧ୍ୟାପନ କରନ୍ତି ଓ ଯେଉଁ ବ୍ୟକ୍ତି ଅଧର୍ମପୂର୍ବକ ଅର୍ଥାତ୍ ଦକ୍ଷିଣା ନ ଦେଇ ଅଧ୍ୟୟନ କରନ୍ତି, ସେ ଦୁହିଙ୍କ ମଧ୍ୟରୁ ଜଣକର ମୃତ୍ୟୁ ହୁଏ ଓ ପରସ୍ପରରେ ବିଦ୍ୱେଷ ଜନ୍ମ ହୁଅଇ । ଅତଏବ ଆପଣଙ୍କର ଅନୁଜ୍ଞା ଗ୍ରହଣ କରି ଅଭିମତ ଗୁରୁଦକ୍ଷିଣା ଆହରଣ କରିବାକୁ ଅଭିଳାଷ କରୁଅଛୁଁ ।" ଉତ୍ତଙ୍କ ଏହିରୂପ କହିବାରୁ ଉପାଧ୍ୟାୟ କହିଲେ, "ବତ୍ସ ଉତ୍ତଙ୍କ ! କିଛିକାଳ ଏହିଠାରେ ବାସ କର, ପରେ କହିବା ।"

ଅନନ୍ତର ଉତ୍ତଙ୍କ କୌଣସି ସମୟରେ ଗୁରୁଙ୍କୁ କହିଲେ, 'ଉପାଧ୍ୟାୟ ! ଆପଣ ଆଜ୍ଞା କରନ୍ତୁ କିରୂପ ଗୁରୁଦକ୍ଷିଣା ଆପଣଙ୍କର ପ୍ରିୟ ; ଆମ୍ଭେ ତାହା ଆହରଣ କରିବୁଁ ।' ଉପାଧ୍ୟାୟ ତାହାଙ୍କୁ କହିଲେ, 'ବତ୍ସ ଉତ୍ତଙ୍କ ! ତୁମ୍ଭେ କିରୂପ ଗୁରୁଦକ୍ଷିଣା ଦେବ ବୋଲି ଆମ୍ଭଙ୍କୁ ବାରମ୍ବାର ପ୍ରଶ୍ନ କରୁଅଛ ; ଅତଏବ ଯାଅ, ଗୃହ ମଧ୍ୟରେ ପ୍ରବେଶ କରି ତୁମ୍ଭର ଉପାଧ୍ୟାୟିନୀଙ୍କୁ ପଚାରି କଣ ଆହରଣ କରିବ ।' ଉତ୍ତଙ୍କ ଉପାଧ୍ୟାୟଙ୍କ କର୍ତ୍ତୃକ ଏପରି ଅଭିହିତ ହୋଇ ଉପାଧ୍ୟାୟିନୀଙ୍କୁ ପଚାରିଲେ, 'ଭଗବତି ! ଆଚାର୍ଯ୍ୟ ଆମ୍ଭଙ୍କୁ ଗୃହକୁ ଗମନ କରିବାକୁ ଅନୁମତି ପ୍ରଦାନ କରିଅଛନ୍ତି ; କିନ୍ତୁ ଆମ୍ଭେ ତାହାଙ୍କର ଅଭିଳଷିତ ଗୁରୁଦକ୍ଷିଣା ପ୍ରଦାନ କରି ଋଣହୀନ ହୋଇ ଗମନ କରିବାକୁ ବାସନା କରୁଅଛୁଁ ? ଅତଏବ କିରୂପ ଗୁରୁଦକ୍ଷିଣା ଆନୟନ କରିବୁଁ ଆପଣ ଆଜ୍ଞା ଦେଉନ୍ତୁ ।' ଉପାଧ୍ୟାୟିନୀ ଏହିରୂପ ପୃଷ୍ଟ ହୋଇ କହିଲେ, "ବତ୍ସ ଉତ୍ତଙ୍କ ! ତୁମ୍ଭେ ପୌଷ୍ୟ ରାଜାଙ୍କ ନିକଟକୁ ଗମନ କର, ତାହାଙ୍କର ସହଧର୍ମିଣୀ ଯେଉଁ ଦିଓଟି କୁଣ୍ଡଳ ଧାରଣ କରିଅଛନ୍ତି, ତାହାକୁ ଯାଚ୍ଞା କରି ଆଣ । ଆଜିଠାରୁ ଚତୁର୍ଥ ଦିବସରେ ପୁଣ୍ୟକ ନାମରେ ବ୍ରତ ହେବ । ଆମ୍ଭେ ସେହିଦିନ ସେ କୁଣ୍ଡଳଦ୍ୱୟରେ ବିଭୂଷିତା ହୋଇ ବ୍ରାହ୍ମଣମାନଙ୍କୁ ପରିବେଷଣ କରିବୁଁ, ଅଭିଳାଷ କରୁଅଛୁ । ତୁମ୍ଭେ ଏହା ସମ୍ପନ୍ନ କର, ତାହାହେଲେ ତୁମ୍ଭର ମଙ୍ଗଳ, ନ ହେଲେ ମଙ୍ଗଳ କାହିଁ ?"

ଉପାଧ୍ୟାୟିନୀଙ୍କ କର୍ତ୍ତୃକ ଏହିରୂପ ଆଦିଷ୍ଟ ହୋଇ ଉତ୍ତଙ୍କ ପ୍ରସ୍ଥାନ କଲେ । ଗମନ କରୁଁ କରୁଁ ପଥ ମଧ୍ୟରେ ଦେଖିଲେ ଜଣେ ମହାକାୟ

ପୁରୁଷ ଗୋଟିଏ ବୃହଦାକାର ବୃଷଭରେ ଆରୋହଣ କରି ଗମନ କରୁ-ଅଛନ୍ତି । ସେହି ପୁରୁଷ ଉତ୍ତଙ୍କଙ୍କୁ ଦେଖି କହିଲେ, 'ଉତ୍ତଙ୍କ ! ତୁମ୍ଭେ ଏହି ବୃଷଭର ପୁରୀଷ ଭକ୍ଷଣ କର ।' ଉତ୍ତଙ୍କ ତହିଁରେ ଅନିଚ୍ଛା ପ୍ରକାଶ କଲେ । ସେହି ପୁରୁଷ ଉତ୍ତଙ୍କଙ୍କୁ ପୁନର୍ବାର କହିଲେ, 'ଉତ୍ତଙ୍କ ! ତୁମ୍ଭେ ଭକ୍ଷଣ କର, ବିଳମ୍ବ କରନା । ପୂର୍ବେ ତୁମ୍ଭର ଉପାଧ୍ୟାୟ ଏହାର ପୁରୀଷ ଭକ୍ଷଣ କରିଥିଲେ । ଏହିରୂପ କହିବାରୁ ଉତ୍ତଙ୍କ "ହେଉ" ବୋଲି କହି ସେହି ବୃଷଭର ମଳମୂତ୍ର ଭକ୍ଷଣ କଲେ ଓ ସସମ୍ଭ୍ରମରେ ଉତ୍ଥିତ ହୋଇ ଆଚମନ କରି ଭୂପତି ପୌଷ୍ୟଙ୍କ ନିକଟକୁ ଗମନ କଲେ ।

ଅନନ୍ତର ଉତ୍ତଙ୍କ ସେଠାରେ ଉପସ୍ଥିତ ହୋଇ ଦେଖିଲେ ରାଜା ପୌଷ୍ୟ ଆସନରେ ଉପବିଷ୍ଟ ଅଛନ୍ତି । ଉତ୍ତଙ୍କ ରାଜାଙ୍କୁ ଆଶୀର୍ବଚନଦ୍ୱାରା ଅଭିନନ୍ଦନ କରି କହିଲେ, "ମହାରାଜ ! ଆମ୍ଭେ ଯାଚକ ହୋଇ ଆପଣଙ୍କ-ଠାକୁ ଆସିଅଛୁଁ ।' ରାଜା ତାହାଙ୍କୁ ଅଭିବାଦନ କରି କହିଲେ, 'ଭଗବନ୍ ! ଆମ୍ଭେ ପୌଷ୍ୟ । କି କରିବୁଁ ବୋଲନ୍ତୁ ।' ଉତ୍ତଙ୍କ କହିଲେ, "ରାଜନ୍ ! ଆମ୍ଭେ ଗୁରୁଦକ୍ଷିଣା ନିମିତ୍ତ କୁଣ୍ଡଳଦ୍ୱୟ ଯାଚ୍ଞା କରିବାକୁ ଆସିଅଛୁ । ଆପଣଙ୍କ ମହିଷୀ ଯେଉଁ କୁଣ୍ଡଳ ଧାରଣ କରିଅଛନ୍ତି, ଆପଣ ତାହା ଆମ୍ଭଙ୍କୁ ଦାନ କରନ୍ତୁ ।" ପୌଷ୍ୟ କହିଲେ, "ଭଗବନ୍ ! ଆପଣ ଅନ୍ତଃପୁର ମଧ୍ୟରେ ପ୍ରବେଶ କରି ମହିଷୀଙ୍କଠାରେ ଯାଚ୍ଞା କରନ୍ତୁ ।"

ଉତ୍ତଙ୍କ ଏହିରୂପ ଆଦିଷ୍ଟ ହୋଇ ଅବରୋଧରେ ପ୍ରବେଶ କରି ରାଜ୍ଞୀଙ୍କର ଦେଖା ପାଇଲେ ନାହିଁ । ସେଠାରୁ ପୌଷ୍ୟଙ୍କ ନିକଟକୁ ଆସି କହିଲେ, "ମହାରାଜ ! ମିଥ୍ୟା ବଚନଦ୍ୱାରା ଆମ୍ଭଙ୍କୁ ବଞ୍ଚନା କରିବା ଆପଣଙ୍କର କର୍ତ୍ତବ୍ୟ ନୁହେଁ । ଆପଣଙ୍କ ମହିଷୀ ଅନ୍ତଃପୁରରେ ନାହାନ୍ତି । ଆମ୍ଭେ ତାହାଙ୍କୁ ଦେଖିବାକୁ ପାଇଲୁ ନାହିଁ ।" ସେ ଏହିରୂପ କହିବାରୁ ପୌଷ୍ୟ କ୍ଷଣକାଳ ଚିନ୍ତା କରି ତାହାଙ୍କୁ କହିଲେ, 'ଆପଣ ସ୍ମରଣ କରନ୍ତୁ ଯେ ଆପଣ ଉଚ୍ଛିଷ୍ଟ ହୋଇଅଛନ୍ତି, ଆମ୍ଭର ମହିଷୀ ପତିବ୍ରତା ଥିବାରୁ ଉଚ୍ଛିଷ୍ଟ ଓ ଅଶୁଚି ବ୍ୟକ୍ତି ତାହାଙ୍କର ଦର୍ଶନ ପାନ୍ତି ନାହିଁ । ସେ କଦାପି ଅଶୁଚିର ଦୃଷ୍ଟିଗୋଚର ହୁଅନ୍ତି ନାହିଁ ।'

ଅନନ୍ତର ଉତ୍ତଙ୍କ ଏହିରୂପ ଅଭିହିତ ହୋଇ ସ୍ମରଣ କରି କହିଲେ, 'ମହାରାଜ ! ସତ୍ୟ, ଆମ୍ଭେ ସତ୍ୱର ଉତ୍ଥିତ ହୋଇ ଗମନ କରୁ କରୁ ଆଚମନ କରିଅଛୁ ।' ପୌଷ୍ୟ କହିଲେ, ଆପଣଙ୍କର ଏହି ବ୍ୟତିକ୍ରମ

ଘଟିଅଛି; ସହସା ଉତ୍ଥିତ ହୋଇ ଗମନ କରୁ କରୁ ଆଚମନ ସିଦ୍ଧ ହୁଏ ନାହିଁ । ଉତ୍ତଙ୍କ କହିଲେ, 'ଯଥାର୍ଥ ବୋଲିବା ହେଲେ ।' ଏହା କହି ପୂର୍ବାଭିମୁଖ ହୋଇ ଉପବେଶନ କରି ହସ୍ତପଦବଦନ ପ୍ରକ୍ଷାଳନ ପୂର୍ବକ ନିଃଶବ୍ଦ, ଫେନରହିତ ଅନୁଷ୍ଣ ଜଳ ତିନିବାର ପାନ କରି ଦୁଇଥର ଓଷ୍ଠ ମାର୍ଜନ କରି ଓ ଇନ୍ଦ୍ରିୟମାନଙ୍କୁ ଜଳଦ୍ୱାରା ଧୌତ କରି ଅନ୍ତଃପୁର ମଧ୍ୟରେ ପ୍ରବେଶ କଲେ ଓ ରାଜ୍ଞୀଙ୍କୁ ଦେଖିଲେ । ରାଜ୍ଞୀ ଉତ୍ତଙ୍କଙ୍କୁ ଦେଖି ଗାତ୍ରୋତ୍ଥାନ ପୂର୍ବକ ଅଭିବାଦନ ଓ ସ୍ୱାଗତ ପ୍ରଶ୍ନ କରି ବୋଇଲେ, 'ଭଗବନ୍ ! ଆମ୍ଭେ କି କରିବୁ ଆଜ୍ଞା କରନ୍ତୁ ।' ଉତ୍ତଙ୍କ କହିଲେ, "ରାଜ୍ଞି ! ଆମ୍ଭେ ଗୁରୁଦକ୍ଷିଣା ନିମିତ୍ତ ଏହି ଦୁଇ କୁଣ୍ଡଳ ଯାଚ୍ଞା କରୁଅଛୁଁ, ଆପଣ ପ୍ରଦାନ କରନ୍ତୁ ।" ମହିଷୀ ତାଙ୍କର ଗୁରୁଭକ୍ତି ଦର୍ଶନରେ ପ୍ରୀତ ହୋଇ ଏ ସତ୍ପାତ୍ର, ଏହାଙ୍କର ପ୍ରାର୍ଥନା ଭଙ୍ଗ କରିବା ଉଚିତ ନୁହେଁ । ଏହି ବିବେଚନା କରି କୁଣ୍ଡଳଦ୍ୱୟ ଅବମୋଚନ କରି ଉତ୍ତଙ୍କଙ୍କୁ ପ୍ରଦାନ କଲେ ଓ କହିଲେ, 'ନାଗରାଜା ତକ୍ଷକ ଏହି କୁଣ୍ଡଳ ଅନେକ ଥର ପ୍ରାର୍ଥନା କଲେଣି, ଅତଏବ ଆପଣ ଅତି ସାବଧାନ ପୂର୍ବକ ନେଇଯିବେ ।' ଉତ୍ତଙ୍କ କହିଲେ, 'ରାଜ୍ଞି ! ଆପଣ ନିଶ୍ଚିନ୍ତ ଥାଆନ୍ତୁ, ନାଗରାଜ ତକ୍ଷକ ଆମ୍ଭଙ୍କୁ ପରାଭୂତ କରି ପାରିବେ ନାହିଁ ।'

ଉତ୍ତଙ୍କ ଏହା କହି ମହିଷୀଙ୍କ ଠାରୁ ବିଦାୟ ନେଇ ପୌଷ୍ୟଙ୍କ ନିକଟକୁ ଆସି କହିଲେ, 'ହେ ପୌଷ୍ୟ! ଆମ୍ଭେ ପରମ ପରିତୁଷ୍ଟ ହୋଇଅଛୁ ।' ପୌଷ୍ୟ ତାହାଙ୍କୁ କହିଲେ, 'ଭଗବନ୍ ! ବହୁକାଳ ପରେ ସତ୍ପାତ୍ର ପ୍ରାପ୍ତି ହୁଏ, ଆପଣ ଗୁଣବାନ୍ ଅତିଥି, ଅତଏବ ଶ୍ରାଦ୍ଧ କରିବାକୁ ଇଚ୍ଛା କରୁଁ । ଆପଣ କ୍ଷଣକାଳ ଅପେକ୍ଷା କରନ୍ତୁ ।' ଉତ୍ତଙ୍କ କହିଲେ, 'ରାଜନ୍ ! ଆମ୍ଭେ ଅପେକ୍ଷା କରୁଅଛୁ ଓ ଇଚ୍ଛାକରୁ ଯେ ପ୍ରକାର ଅନ୍ନ ଉପସ୍ଥିତ ଅଛି, ଆପଣ ଶୀଘ୍ର ତାହା ଆନୟନ କରନ୍ତୁ ।' ପୌଷ୍ୟ ତଥାସ୍ତୁ ବୋଲି ଯେରୂପ ଅନ୍ନ ଉପସ୍ଥିତ ଥିଲା, ତାହା ତାହାଙ୍କୁ ଭୋଜନ କରିବାକୁ ଦେଲେ । ଅନନ୍ତର ଉତ୍ତଙ୍କ ସେହି ଅନ୍ନ କେଶଯୁକ୍ତ ଓ ଶୀତଳ ଦେଖି ଅଶୁଚି ମନେ କରି ପୌଷ୍ୟଙ୍କୁ କହିଲେ, 'ଆପଣ ଆମ୍ଭଙ୍କୁ ଅଶୁଚି ଅନ୍ନ ପ୍ରଦାନ କଲେ, ସେହି ହେତୁ ଆପଣ ଅନ୍ଧ ହେବେ ।' ପୌଷ୍ୟ କହିଲେ, 'ଆପଣ ଅଦୁଷ୍ଟ ଅନ୍ନକୁ ଦୁଷ୍ଟ ମନେ କରିଅଛନ୍ତି, ଅତଏବ ଆପଣ ଅନପତ୍ୟ ହେବେ ।' ଉତ୍ତଙ୍କ କହିଲେ, 'ମହାରାଜ ! ଅଶୁଚି ଅନ୍ନ ପ୍ରଦାନ କରି ପ୍ରତିଶାପ ଦେବା ଉଚିତ ନୁହେଁ, ଅତଏବ ଅନ୍ନ ଅଶୁଚି ହୋଇଅଛି କି ନା ପ୍ରତ୍ୟକ୍ଷ କରନ୍ତୁ ।'

ପରେ ପୌଷ୍ୟ ସେହି ଅନ୍ନକୁ ଅବଲୋକନ କରି ଅଶୁଚି ଥିବାର ପ୍ରତ୍ୟକ୍ଷ କଲେ ।

ଅନନ୍ତର ପୌଷ୍ୟ ମୁକ୍ତକେଶୀ ସ୍ତ୍ରୀ କର୍ତ୍ତୃକ ଆନୀତ ସେହି କେଶଯୁକ୍ତ ଓ ଶୀତଳ ଅନ୍ନକୁ ଅଶୁଚି ଜାଣି ତପୋଧନ ଉତ୍ତଙ୍କଙ୍କୁ ପ୍ରସନ୍ନ କରିବାକୁ ବସିଲେ ଓ କହିଲେ "ଭଗବନ୍ ! ଅଜ୍ଞାନବଶତଃ ଏହି ସକେଶ ଶୀତଳ ଅନ୍ନ ଆନୀତ ହୋଇଅଛି, ଅତଏବ ଆପଣଙ୍କଠାରେ କ୍ଷମା ପ୍ରାର୍ଥନା କରୁଅଛୁ, ଯେପରି ଆମ୍ଭେ ଅନ୍ଧ ନୋହୁ ।" ଉତ୍ତଙ୍କ କହିଲେ, 'ମହାରାଜ ! ଆମ୍ଭର ବାକ୍ୟ ମିଥ୍ୟା ହେବ ନାହିଁ, ଆପଣ ଅନ୍ଧ ହୋଇ ଅନତିବିଳମ୍ବରେ ଚକ୍ଷୁଷ୍ମାନ୍ ହେବେ । ଆଉ ଆପଣ ଯେଉଁ ଅଭିଶାପ ଦେଇଅଛନ୍ତି, ତାହା ଆମ୍ଭଙ୍କୁ ଯେପରି ନ ଫଳେ ।' ପୌଷ୍ୟ କହିଲେ, 'ଆମ୍ଭେ ଶାପ ପ୍ରତ୍ୟାହରଣ କରିବାକୁ ସମର୍ଥ ନୋହୁ; ଅଦ୍ୟାପି ଆମ୍ଭର କୋପ ଶାନ୍ତ ହୋଇନାହିଁ । ଆପଣ କି ଏହା ଜାଣନ୍ତି ନାହିଁ ଯେ ବ୍ରାହ୍ମଣଙ୍କ ହୃଦୟ ନବନୀତ ତୁଲ୍ୟ ଓ ବାକ୍ୟ ତୀକ୍ଷ୍ଣଧାର କ୍ଷୁର ତୁଲ୍ୟ । କିନ୍ତୁ କ୍ଷତ୍ରିୟର ଏହି ଦୁହେଁ ଠିକ୍ ବିପରୀତ, ଅର୍ଥାତ୍ ହୃଦୟ ତୀକ୍ଷ୍ଣଧାର କ୍ଷୁର ସଦୃଶ ଓ ବାକ୍ୟ ନବନୀତ ତୁଲ୍ୟ ଅଟେ । ଅତଏବ ଆମ୍ଭେ ଜାତିସିଦ୍ଧ ତୀକ୍ଷଣ ହୃଦୟତାବଶରୁ ଏହି ଶାପର ଅନ୍ୟଥା କରିପାରୁନାହୁଁ । ଆପଣ ଗମନ କରନ୍ତୁ ।' ଉତ୍ତଙ୍କ କହିଲେ, 'ରାଜନ୍ ! ଆପଣ ଅନ୍ନର ଅଶୁଚି ଭାବ ପ୍ରତ୍ୟକ୍ଷ କରି ଆମ୍ଭଙ୍କୁ ଅନୁନୟ କରିଅଛନ୍ତି ଓ ଆପେ କହିଅଛନ୍ତି ଯେ ଆପଣ ଦୋଷଶୂନ୍ୟ ଅନ୍ନକୁ ଦୋଷଯୁକ୍ତ ବୋଲି କହୁଅଛନ୍ତି; ଅତଏବ ଆପଣ ନିଃସନ୍ତାନ ହେବେ । କିନ୍ତୁ ଅନ୍ନ ଦୋଷ-ଶୂନ୍ୟ ନୁହେଁ । ଅତଏବ ଏହି ଶାପ ଆମ୍ଭ ପ୍ରତି ସଫଳ ହେବ ନାହିଁ; ଆମ୍ଭେ ବାହାରିଲୁ'—ଏହା କହି ଉତ୍ତଙ୍କ କୁଣ୍ଡଳଦ୍ୱୟ ଗ୍ରହଣ କରି ପ୍ରସ୍ଥାନ କଲେ ।

ତଦନନ୍ତର ପଥ ମଧ୍ୟରେ ଉତ୍ତଙ୍କ ଦେଖିଲେ, ଗୋଟିଏ ନଗ୍ନ କ୍ଷପଣକ କେତେବେଳେ ଦୃଶ୍ୟ ଓ କେତେବେଳେ ଅଦୃଶ୍ୟ ହୋଇ ଆସୁ-ଅଛି । ଉତ୍ତଙ୍କ ସେହି କୁଣ୍ଡଳଦ୍ୱୟ ଭୂମିତଳରେ ରଖି ଉଦକକ୍ରିୟା କରିବାକୁ ଗଲେ । ଏହି ଅବସରରେ ସେହି କ୍ଷପଣକ ସତ୍ୱର ଆସି ସେହି କୁଣ୍ଡଳ ଗ୍ରହଣ କରି ପଳାୟନ କଲା ।

ଉତ୍ତଙ୍କ ଉଦକକ୍ରିୟା ସମାପନ କରି ଶୁଚି ଓ ସଂଯତ ହୋଇ ଦେବ ଗୁରୁଙ୍କୁ ପ୍ରଣାମପୂର୍ବକ ମହାବେଗରେ ସେହି କ୍ଷପଣକର ପଶ୍ଚାତ୍ ପଶ୍ଚାତ୍

ଧାବମାନ ହେଲେ ଓ ତକ୍ଷକ ନିକଟବର୍ତ୍ତୀ ହେବାରୁ ତାହାକୁ ଧରିଲେ । ତକ୍ଷକ ଧୃତ ହେବା ମାତ୍ର କ୍ଷପଣକ ରୂପ ପରିତ୍ୟାଗପୂର୍ବକ ନିଜ ରୂପ ଧାରଣ କରି ହଠାତ୍ ବିସ୍ତୀର୍ଣ୍ଣ ଓ ମହତ୍ ଭୂଗର୍ଭରେ ପ୍ରବେଶ କଲା । ପରେ ନାଗଲୋକକୁ ଗମନ କରି ନିଜ ଭବନରେ ଉପସ୍ଥିତ ହେଲା । ଉତଙ୍କ ରାଜମହିଷୀଙ୍କ ବାକ୍ୟ ସ୍ମରଣ କରି ତକ୍ଷକର ଅନୁଗମନରେ ଉଦ୍ୟତ ହେଲେ ଓ କାଷ୍ଠଦଣ୍ଡ ଦ୍ୱାରା ସେହି ଗର୍ତ୍ତ ଖନନ କରିବାରେ ପ୍ରବୃତ୍ତ ହେଲେ, କିନ୍ତୁ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଇନ୍ଦ୍ର ଦେଖିଲେ ଯେ ଉତଙ୍କ ଅତିଶୟ କ୍ଳେଶ ପାଉଅଛନ୍ତି, ତହୁଁ ସେ ବଜ୍ରକୁ ଆଦେଶ ଦେଲେ, 'ତୁମ୍ଭେ ଯାଇ ବ୍ରାହ୍ମଣର ସାହାଯ୍ୟ କର ।' ଏହା କହି ବଜ୍ରକୁ ପ୍ରେରଣ କଲେ । ବଜ୍ର କାଷ୍ଠଦଣ୍ଡ ମଧ୍ୟରେ ପ୍ରବେଶ କରିବାରୁ ସେହି ଗର୍ତ୍ତ ବିଦାରିତ ହେଲା, ଉତଙ୍କ ତନ୍ମଧ୍ୟରେ ପ୍ରବେଶ କଲେ । ଉତଙ୍କ ତନ୍ମଧ୍ୟକୁ ଯାଇ ବହୁବିଧ ପ୍ରାସାଦ, ହର୍ମ୍ମ୍ୟ, ବଲଭି ଓ ଶତ ଶତ ପଟ୍ଟଶାଳାସଙ୍କୁଳ ଓ ନାନାବିଧ ଆଶ୍ଚର୍ଯ୍ୟ କ୍ରୀଡ଼ାସ୍ଥାନ ସମାକୀର୍ଣ୍ଣ ନାଗଲୋକ ଅବଲୋକନ କଲେ । ପରେ ସେହି ନାଗଗଣର ସ୍ତୁତି କରିବାରେ ପ୍ରବୃତ୍ତ ହେଲେ । ଐରାବତ ଯେଉଁ ସର୍ପଙ୍କର ରାଜା, ଯେଉଁ ସର୍ପମାନେ ସମରରେ ଶୋଭମାନ ହୋଇ ବିଦ୍ୟୁଦ୍‌ଯୁକ୍ତ ପବନଚାଳିତ ମେଘତୁଲ୍ୟ ବେଗରେ ସଞ୍ଚରଣ କରି ବାଣବର୍ଷଣ କରନ୍ତି, ଯେଉଁମାନେ ଐରାବତ ସମ୍ଭୂତ ସୁରୂପ ବହୁରୂପ ବିଚିତ୍ର କୁଣ୍ଡଳଶୋଭିତ ହୋଇ ସ୍ୱର୍ଗଲୋକରେ ବିରାଜିତ ଅଛନ୍ତି, ଗଙ୍ଗାର ଉତ୍ତର ତୀରରେ ଯେଉଁ ସର୍ପମାନଙ୍କର ବହୁସଂଖ୍ୟକ ବାସସ୍ଥାନ ଅଛି, ଆମ୍ଭେ ସେହି ସମୁଦାୟ ନାଗମାନଙ୍କୁ ସ୍ତବ କରୁଅଛୁଁ । ସୂର୍ଯ୍ୟଙ୍କ କିରଣରୂପ ସୈନ୍ୟ ମଧ୍ୟରେ ଐରାବତଙ୍କ ବ୍ୟତିରେକେ ଆଉ କିଏ ପରିଭ୍ରମଣ କରିପାରନ୍ତି ?

ଏହି ଧୃତରାଷ୍ଟ୍ରଙ୍କ ଗମନକାଳରେ ଅଷ୍ଟାବିଂଶତି ସହସ୍ର ଅଷ୍ଟନାଗ ଶ୍ରେଣୀବଦ୍ଧ ହୋଇ ତାହାଙ୍କର ଅନୁଗମନ କରନ୍ତି । ଯେଉଁମାନେ ଧୃତରାଷ୍ଟ୍ରଙ୍କ ସମୀପବର୍ତ୍ତୀ ଓ ଯେଉଁମାନେ ଦୂରଗାମୀ, ଐରାବତଙ୍କର (୧) ସେହି ସମସ୍ତ ଜ୍ୟେଷ୍ଠଭ୍ରାତାମାନଙ୍କୁ ନମସ୍କାର କଲୁଁ । ପୂର୍ବେ କୁରୁକ୍ଷେତ୍ରରେ ଓ ଖାଣ୍ଡବରେ ଯାହାଙ୍କର ବସତି ଥିଲା, ସେହି ନାଗରାଜ ତକ୍ଷକଙ୍କୁ ଆମ୍ଭେ କୁଣ୍ଡଳ ପାଇବା ନିମିତ୍ତ ସ୍ତବ କଲୁଁ । ତକ୍ଷକ ଓ ଅଶ୍ୱସେନ ଦୁହେଁ ଏହାଙ୍କର ସହଚର ହୋଇ କୁରୁକ୍ଷେତ୍ରର ଇକ୍ଷୁମତୀ ନଦୀ ତୀରରେ ବାସ କରୁଥିଲେ । ଶ୍ରୁତସେନ

(୧) ଐରାବତ ନାଗଙ୍କ ଭ୍ରାତାର ନାମ ଧୃତରାଷ୍ଟ୍ର ଅଟେ ।

ନାମକରେ ତକ୍ଷକଙ୍କର ଯେଉଁ କନିଷ୍ଠଭ୍ରାତା ସ୍ୱର୍ଯ୍ୟଙ୍କଠାରେ ନାଗପ୍ରଧାନତା ପ୍ରାର୍ଥନା କରି କୁରୁକ୍ଷେତ୍ରରେ ବାସ କରୁଥିଲେ, ଆମ୍ଭେ ସେହି ମହାତ୍ମାଙ୍କୁ ସର୍ବଦା ନମସ୍କାର କରୁଁ । ସେହି ବିପ୍ରର୍ଷି ଉତ୍ତଙ୍କ ଉକ୍ତ ରୂପ ସ୍ତବ କରି ସୁଦ୍ଧା କୁଣ୍ଡଳ ପ୍ରାପ୍ତ ହେଲେ ନାହିଁ । ତହୁଁ ସେ ଭାବନା କଲେ ।

ଉତ୍ତଙ୍କ ଯେତେବେଳେ ସ୍ତବ କରି ସୁଦ୍ଧା କୁଣ୍ଡଳ ପ୍ରାପ୍ତ ନ ହେଲେ, ସେତେବେଳେ ସେ ଦେଖିଲେ ଦୁଇଗୋଟି ସ୍ତ୍ରୀ ଉତ୍ତମ ବେମାଯୁକ୍ତ (୧) ତନ୍ତ୍ରରେ ବସ୍ତ୍ର ବୟନ କରୁଅଛନ୍ତି । ସେହି ତନ୍ତ୍ରରେ କୃଷ୍ଣ ଓ ଶୁକ୍ଳ ତନ୍ତୁସବୁ ନିହିତ ରହିଅଛି । ଦ୍ୱାଦଶ ଅର ବିଶିଷ୍ଟ ଗୋଟିଏ ଚକ୍ରକୁ ଛଅଟି କୁମାର ପରିବର୍ତ୍ତନ କରୁଅଛନ୍ତି । ଗୋଟିଏ ପୁରୁଷ ଓ ଗୋଟିଏ ଅଶ୍ୱ ସେଠାରେ ରହିଅଛି । ଏହା ଦେଖି ଉତ୍ତଙ୍କ ସେମାନଙ୍କୁ ବକ୍ଷ୍ୟମାଣ ବାକ୍ୟରେ ସ୍ତବ କରିବାକୁ ଆରମ୍ଭ କଲେ । ୧୪୫ ।

"ଏହି ଚତୁର୍ବିଂଶତି ପର୍ବଯୁକ୍ତ ଚତୁସ୍ଥାୟୀ ନିତ୍ୟଭ୍ରମଣଶୀଳ ଚକ୍ରରେ (୩୬୦) ତ୍ରିଶତ ଷଷ୍ଟି ତନ୍ତୁ ଅର୍ପିତ ଅଛି; ଛଅଟି କୁମାର ଏହାକୁ ପରିବର୍ତ୍ତିତ କରୁଅଛନ୍ତି । ବିଶ୍ୱରୂପା ଯୁବତୀଦ୍ୱୟ ଏହି ତନ୍ତ୍ରରେ କୃଷ୍ଣ ଓ ଶୁକ୍ଳ ତନ୍ତୁମାନଙ୍କୁ ଅର୍ପଣ କରି ବସ୍ତ୍ରବୟନ କରୁଅଛନ୍ତି ଓ ଭୂତଗଣଙ୍କୁ ଓ ଭୁବନମାନଙ୍କୁ ସତତ ପରିବର୍ତ୍ତନ କରୁଅଛନ୍ତି । ଯେ ବଜ୍ରର ସ୍ୱାମୀ, ଭୁବନର ରକ୍ଷାକର୍ତ୍ତା, ବୃତ୍ରାସୁରର ହନ୍ତା, ନମୁଚିର ନିହନ୍ତା, ଯେଉଁ ମହାତ୍ମା କୃଷ୍ଣବର୍ଣ୍ଣ ବସ୍ତ୍ରଯୁଗଳ ପରିଧାନ କରିଅଛନ୍ତି, ଯେ ଲୋକରେ ସତ୍ୟ ଓ ଅନୃତର ବିଭାଗ କରୁଅଛନ୍ତି (୨), ଯେ ଜଳଗର୍ଭରୁ ପ୍ରସୂତ ବୈଶ୍ୱାନର ତୁଲ୍ୟ ଅଶ୍ୱକୁ ବାହନ ନିମିତ୍ତ ପ୍ରାପ୍ତ ହୋଇଅଛନ୍ତି, ସେହି ଜଗତ୍ପତି ତ୍ରିଲୋକନାଥ ପୁରନ୍ଦରଙ୍କୁ ନମସ୍କାର କରୁଅଛୁଁ ।"

ଅନନ୍ତର ସେହି ପୁରୁଷ ଉତ୍ତଙ୍କଙ୍କୁ କହିଲେ, 'ହେ ତପୋଧନ ! ଆମ୍ଭେ ତୁମ୍ଭର ଏହି ସ୍ତବରେ ପ୍ରୀତ ହୋଇଅଛୁ; ତୁମ୍ଭର କି ପ୍ରିୟ କରିବୁଁ ବୋଲ ।' ଉତ୍ତଙ୍କ ତାହାଙ୍କୁ କହିଲେ, 'ଭଗବନ୍ ! ସମୁଦାୟ ସର୍ପ ଆମ୍ଭର ବଶବର୍ତ୍ତୀ ହେଉନ୍ତୁ ।' ସେହି ପୁରୁଷ ପୁନର୍ବାର ଉତ୍ତଙ୍କଙ୍କୁ କହିଲେ, 'ମୁନେ ! ତୁମ୍ଭେ ଏହି ଅଶ୍ୱର ଅପାନ ଦେଶରେ ଅଗ୍ନି ସଂଯୋଗ କର ।' ପରେ ଉତ୍ତଙ୍କ ଅଶ୍ୱର ଅପାନ ଦେଶରେ ଅଗ୍ନି

(୧) ବସ୍ତ୍ର ବୁଣିବାର କାଷ୍ଠଦଣ୍ଡକୁ ବେମା ବୋଲଯାଏ ।
(୨) ଅର୍ଥାତ୍ ପରମାତ୍ମା ଓ ଜୀବର ବିଶେଷ କରୁଅଛନ୍ତି ।

ପ୍ରଦାନ କଲେ । ତହିଁରେ ଅଶ୍ୱର ସମସ୍ତ ଶରୀରରନ୍ଧ୍ରରୁ ସଧୂମ ଅଗ୍ନି-ଶିଖାମାନ ନିର୍ଗତ ହେଲା । ତଦ୍ଦ୍ୱାରା ନାଗଲୋକ ପ୍ରଧୂପିତ ହେବାରୁ ସମ୍ଭ୍ରାନ୍ତ ତକ୍ଷକ ଅନଳର ତେଜୋଭୟରେ ବିଷଣ୍ଣ ହୋଇ କୁଣ୍ଡଳଦ୍ୱୟ ଗ୍ରହଣ କରି ହଠାତ୍ ନିଜ ନିକେତନରୁ ନିର୍ଗତ ହେଲେ ଓ ଉତ୍ତଙ୍କଙ୍କୁ କହିଲେ, 'ମୁନେ ! ଆପଣ ଏହି କୁଣ୍ଡଳଯୁଗଳ ଗ୍ରହଣ କରନ୍ତୁ ।' ଉତ୍ତଙ୍କ କୁଣ୍ଡଳଯୁଗଳକୁ ହସ୍ତରେ ଗ୍ରହଣ କରି ବିଚାରିଲେ, ଅଦ୍ୟ ଉପାଧ୍ୟାୟିନୀଙ୍କର ସେହି ପୁଣ୍ୟକ ବ୍ରତ ! ଆମ୍ଭେ ବହୁଦୂର ଆଗମନ କରିଅଛୁଁ । କପରି ସେଠାକୁ ଗମନ କରି ତାହାଙ୍କର ସମ୍ଭାବନା କରିବୁଁ ?' ୧୫୫ ।

ଅନନ୍ତର ସେହି ପୁରୁଷ ଉତ୍ତରଙ୍କୁ ଚିନ୍ତାକୁଳିତ ବିଲୋକନ କରି ବୋଇଲେ, 'ହେ ତପୋଧନ ! ଏହି ଅଶ୍ୱରେ ଆରୋହଣ କର, ଏ କ୍ଷଣକାଳ ମଧ୍ୟରେ ଆପଣଙ୍କୁ ଗୁରୁକୁଳକୁ ନେଇଯିବ ।' ଉତ୍ତଙ୍କ 'ତଥାସ୍ତୁ' ବୋଲି ସେହି ଅଶ୍ୱରେ ଆରୋହଣପୂର୍ବକ ଗୁରୁକୁଳକୁ ପ୍ରତ୍ୟାଗତ ହେଲେ । ଉପାଧ୍ୟାୟିନୀ ସ୍ନାତ ହୋଇ ଉପବେଶନ କରି କେଶସଂସ୍କାର କରୁ କରୁ ଉତ୍ତଙ୍କ ଆସିଲେ ନାହିଁ ବୋଲି ତାହାଙ୍କ ପ୍ରତି ଶାପ ବିସର୍ଜନ କରିବାକୁ ମାନସ କରିଅଛନ୍ତି ; ଏମନ୍ତ ସମୟରେ ଉତ୍ତଙ୍କ ତାଙ୍କ ସମୀପରେ ପ୍ରବିଷ୍ଟ ହୋଇ ପ୍ରଣାମପୂର୍ବକ କୁଣ୍ଡଳଦ୍ୱୟ ପ୍ରଦାନ କଲେ । ଉପାଧ୍ୟାୟିନୀ ଉତ୍ତଙ୍କଙ୍କୁ କହିଲେ, 'ବତ୍ସ ଉତ୍ତଙ୍କ ! ତୁମ୍ଭେ ଯଥାକାଳରେ ଉପଯୁକ୍ତ ସ୍ଥାନରେ ଉପସ୍ଥିତ ହୋଇଅଛ ; ସୁଖରେ ଆସିଲ ତ ? ଭାଗ୍ୟେ ନିରପରାଧ ତୁମ୍ଭଙ୍କୁ ଶାପ ଦେଇନାହିଁ ; ତୁମ୍ଭର ମଙ୍ଗଳ ଉପସ୍ଥିତ ; ତୁମ୍ଭେ ସିଦ୍ଧି ଲାଭ କର ।' ୧୫୯ ।

ଅନନ୍ତର ଉତ୍ତଙ୍କ ଉପାଧ୍ୟାୟଙ୍କୁ ଅଭିବାଦନ କଲେ । ଉପାଧ୍ୟାୟ ସ୍ୱାଗତ ପ୍ରଶ୍ନ କରି ବୋଇଲେ, 'ବତ୍ସ ଉତ୍ତଙ୍କ ! ତୁମ୍ଭେ ଏତେ ବିଳମ୍ବ କାହିଁକି କଲ ?' ଉତ୍ତଙ୍କ ଉତ୍ତର କଲେ, 'ଭଗବନ୍ ! ନାଗରାଜ ତକ୍ଷକ ଆମ୍ଭ କୁଣ୍ଡଳ ଆଣିବାରେ ବିଘ୍ନ ଘଟାଇଥିଲେ ; ଏହି କାରଣରୁ ଆମ୍ଭେ ନାଗଲୋକକୁ ଗମନ କରିଥିଲୁଁ ; ସେଠାରେ ଦେଖିଲୁଁ ଦୁଇଗୋଟି ସ୍ତ୍ରୀ ତନ୍ତ୍ର ଯୋଜନା କରି ବସ୍ତ୍ର ବୟନ କରୁଅଛନ୍ତି ; ସେହି ତନ୍ତୁରେ ଶ୍ୱେତ ଓ କୃଷ୍ଣବର୍ଣ୍ଣ ସୂତ୍ରସବୁ ଅଛି ; ଏ କିଏ ? ସେଠାରେ ଦେଖିଲୁ ଛଅଟି କୁମାର ଦ୍ୱାଦଶ ଅରବିଶିଷ୍ଟ ଗୋଟିଏ ଚକ୍ରକୁ ପରିବର୍ତ୍ତିତ କରୁଅଛନ୍ତି ; ଏ ଅବା

କ’ଣ ? ଗୋଟିଏ ପୁରୁଷଙ୍କୁ ଦେଖିଲୁଁ, ସେ କିଏ ? ଗୋଟିଏ ଅତି ଉଚ୍ଚ ଅଶ୍ୱ ଦେଖିଲୁଁ, ସେ ବା କିଏ ? ଆଉ ପଥରେ ଗମନ କଲାବେଳେ ଗୋଟିଏ ବୃଷଭ ଦେଖିଲୁଁ, ସେ କିଏ ? ଗୋଟିଏ ପୁରୁଷ ସେହି ବୃଷଭରେ ଆରୋହଣ କରିଥିଲେ ; ସେ ଶିଷ୍ଟ ବ୍ୟବହାରପୂର୍ବକ ଆମ୍ଭଙ୍କୁ କହିଲେ, ‘ଉତ୍ତଙ୍କ ! ତୁମ୍ଭେ ଏହି ବୃଷର ପୁରୀଷ ଭକ୍ଷଣ କର, ପୂର୍ବେ ତୁମ୍ଭର ଉପାଧ୍ୟାୟ ମଧ୍ୟ ଏହା ଭକ୍ଷଣ କରିଅଛନ୍ତି । ପରେ ଆମ୍ଭେ ତାହାଙ୍କ ବଚନାନୁସାରେ ସେହି ବୃଷଭର ପୁରୀଷ ଭକ୍ଷଣ କଲୁଁ । ସେହି ପୁରୀଷ କଣ ? ଆମ୍ଭେ ଆପଣଙ୍କଠାରୁ ଏହି ସମୁଦାୟ ବୃତ୍ତାନ୍ତ ଶ୍ରବଣ କରିବାକୁ ଇଚ୍ଛାକରୁଁ । ୧୬୫ ।

ଉପାଧ୍ୟାୟ ଉତ୍ତଙ୍କ କର୍ତ୍ତୃକ ଏହିପରି ପୃଷ୍ଟ ହୋଇ ବୋଇଲେ, ‘ବତ୍ସ ! ତୁମ୍ଭେ ଯେଉଁ ଦୁଇଗୋଟି ସ୍ତ୍ରୀ ଦେଖିଲ, ସେ ଦୁହେଁ ଧାତା ଓ ବିଧାତା ; ଶୁକ୍ଳ ଓ କୃଷ୍ଣବର୍ଣ୍ଣ ଯେଉଁସବୁ ସୂତ୍ର ଦେଖିଲ, ସେମାନେ ଦିବା ଓ ରାତ୍ରି । ଯେଉଁ ଛଅଟି କୁମାର ଦ୍ୱାଦଶାର ଚକ୍ରକୁ ପରିବର୍ତ୍ତିତ କରୁଥିବାର ଦେଖିଲ, ସେମାନେ ଛଅଋତୁ । ସେହି ଚକ୍ର ବତ୍ସର ଅଟେ ; ତହିଁରେ ଯେଉଁ ଦ୍ୱାଦଶଟି ଅର ସେମାନେ ବାରମାସ ; ଯେଉଁ ପୁରୁଷ ଦେଖିଲ ସେ ପର୍ଜ୍ଜନ୍ୟ ; ଅଶ୍ୱ ଯେ ସେ ଅଗ୍ନି । ପଥରେ ଯାଉଁ ଯାଉଁ ଯେଉଁ ବୃଷଭକୁ ଦେଖିଲ ସେ କରିରାଜ ଐରାବତ ; ଯେଉଁ ପୁରୁଷ ତଦୁପରି ଆରୂଢ଼ ଥିଲେ, ସେ ଇନ୍ଦ୍ର । ତୁମ୍ଭେ ଯେଉଁ ପୁରୀଷ ଭକ୍ଷଣ କଲ ତାହା ଅମୃତ । ଏହି ନିମିତ୍ତ ନାଗଲୋକରେ ତୁମ୍ଭେ ବିନଷ୍ଟ ହୋଇନାହିଁ । ସେହି ଭଗବାନ୍ ଇନ୍ଦ୍ର ଆମ୍ଭର ସଖା ; ସେ ଦୟାକରି ତୁମ୍ଭପ୍ରତି ଏବଂପ୍ରକାର ଅନୁଗ୍ରହ ପ୍ରକାଶ କରିଅଛନ୍ତି । ସେହି ହେତୁ ତୁମ୍ଭେ କୁଣ୍ଡଳ ଘେନି ପ୍ରତ୍ୟାଗତ ହେଲ । ଅତଏବ ହେ ସାଧୋ ! ଆମ୍ଭେ ତୁମ୍ଭଙ୍କୁ ଅନୁମତି ପ୍ରଦାନ କରୁଅଛୁଁ, ତୁମ୍ଭେ ଶ୍ରେୟ ପ୍ରାପ୍ତ ହେବ ।” ୧୭୦ ।

ଭଗବାନ୍ ଉତ୍ତଙ୍କ ଉପାଧ୍ୟାୟଙ୍କ କର୍ତ୍ତୃକ ଅନୁଜ୍ଞାତ ହୋଇ କ୍ରୁଦ୍ଧ ଚିତ୍ତରେ ତକ୍ଷକକୃତ ଅପରାଧର ପ୍ରତିକାର କରିବାକୁ ବାସନା କରି ହସ୍ତିନାପୁରକୁ ପ୍ରସ୍ଥାନ କଲେ । ସେ ଶୀଘ୍ର ହସ୍ତିନାପୁରରେ ଉପସ୍ଥିତ ହୋଇ ରାଜା ଜନ୍ମେଜୟଙ୍କ ନିକଟକୁ ଗମନ କଲେ । ଜନ୍ମେଜୟ ତହିଁ ପୂର୍ବରୁ ତକ୍ଷଶିଳାକୁ ଗମନ କରି ସେଠାରେ ଜୟଲାଭ କରି ପ୍ରତ୍ୟାବୃତ୍ତ ହୋଇଥିଲେ । ଉତ୍ତଙ୍କ ସେ ନରପତିଙ୍କୁ ମନ୍ତ୍ରିଗଣ ପରିବୃତ ଦେଖି ଯଥାବିଧି

ଜପୂର୍ଯୁକ୍ତ ଆଶୀର୍ବାଦ ପ୍ରୟୋଗପୂର୍ବକ ଉପଯୁକ୍ତ ସମୟରେ ବଣିଷ୍ଟାର୍ଥସମ୍ପନ୍ନ ବାକ୍ୟରେ ତାହାଙ୍କୁ କହିଲେ, 'ହେ ନୃପଶ୍ରେଷ୍ଠ ! ଆପଣଙ୍କ କର୍ତ୍ତବ୍ୟ କର୍ମ ଥାଉଁ ଆପଣ ବାଳକର ବଶରୁ ଅନ୍ୟ କାର୍ଯ୍ୟରେ ପ୍ରବୃତ୍ତ ହେଉ-ଅଛନ୍ତି ।' ୧୭୪ ।

ଉଗ୍ରଶ୍ରବା କହିଲେ, ହେ ଋଷିଗଣ ! ରାଜା ଜନମେଜୟ ଉତ୍ତଙ୍କଙ୍କ ଦ୍ୱାରା ଏହିରୂପେ ଅଭିହିତ ହୋଇ ତାହାଙ୍କ ଯଥାବିଧି ଅର୍ଚ୍ଚନା କରି କହିଲେ, ହେ ମୁନିବର ! ଆମ୍ଭେ ଏହି ସବୁ ପ୍ରଜାଙ୍କୁ ପ୍ରତିପାଳନ କରି ସ୍ୱୀୟ ରାଜଧର୍ମ ରକ୍ଷା କରୁଅଛୁଁ; ଏବେ ଆପଣ ଯେଉଁ ନିମିତ୍ତ ଆଗମନ କରିଅଛନ୍ତି, ସେହି କର୍ତ୍ତବ୍ୟ କର୍ମ କି, ତାହା ଆମ୍ଭଙ୍କୁ କହିବା ହେଉନ୍ତୁ ।

ଉଗ୍ରଶ୍ରବା କହିଲେ, ହେ ମୁନିଗଣ ! ପୁଣ୍ୟାତ୍ମାମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ଦ୍ୱିଜୋତ୍ତମ ଉତ୍ତଙ୍କ ନରପତିଙ୍କ କର୍ତ୍ତୃକ ଏହିରୂପ ଅଭିହିତ ହୋଇ ବଳଶାଳୀ ରାଜା ଜନମେଜୟଙ୍କୁ ଉତ୍ତର କଲେ, ହେ ନରନାଥ ! ଆପଣ ସ୍ୱୀୟ କର୍ତ୍ତବ୍ୟକର୍ମ ସମାଧାନ କରନ୍ତୁ । ହେ ରାଜନ୍ ! ପୂର୍ବେ ଦୁରାତ୍ମା ତକ୍ଷକ ଆପଣଙ୍କ ପିତାଙ୍କୁ ବିନଷ୍ଟ କରିଥିଲେ, ଆପଣ ତାହାଁର ପ୍ରତିବିଧାନ କରନ୍ତୁ । ଏହି ବୈଧ କର୍ମର ଅନୁଷ୍ଠାନ କାଳ ଉପସ୍ଥିତ ହୋଇଅଛି; ଅତଏବ ଆପଣ ସେହି ମହାତ୍ମା ପିତାଙ୍କର ଯେଉଁ କ୍ଷତି ହୋଇଅଛି, ତାହାର ପ୍ରତିକାର କରନ୍ତୁ । ସେହି ନିରପରାଧ ନରପତି ଦୁରାତ୍ମା କର୍ତ୍ତୃକ ସନ୍ଦଷ୍ଟ ହୋଇ ବଜ୍ରାହତ ତରୁପ୍ରାୟ ପଞ୍ଚତ୍ୱ ପ୍ରାପ୍ତ ହେଲେ । ପନ୍ନଗାଧମ ତକ୍ଷକ ଆପଣଙ୍କ ପିତାଙ୍କୁ ଦଂଶନ କରି ଅକାର୍ଯ୍ୟ କରିଅଛି । ସେହି ପାପକାରୀ ତକ୍ଷକ ରାଜର୍ଷିବଂଶର ରକ୍ଷାକର୍ତ୍ତା ଦେବତାତୁଲ୍ୟ ନରପତିଙ୍କ ନିକଟକୁ ଆଗମନାଭିଳାଷୀ ଧନ୍ୱନ୍ତରିଙ୍କୁ ପ୍ରତିନିବୃତ୍ତ କଲା । ଅତଏବ ମହାରାଜ ! ସର୍ପଯଜ୍ଞର ପ୍ରଜ୍ୱଳିତ ହୁତାଶନରେ ସେହି ପାପାତ୍ମାକୁ ଆହୁତି ପ୍ରଦାନ କରିବା ଆପଣଙ୍କର ବିଧେୟ, ଏଥିର ଅନୁଷ୍ଠାନ ଶୀଘ୍ର କରନ୍ତୁ । ଏହା କଲେ ଆପଣଙ୍କ ପିତାଙ୍କର ବୈରନିର୍ଯ୍ୟାତନ ହେବ ଓ ଆମ୍ଭର ମଧ୍ୟ ସୁମହତ୍ ପ୍ରିୟକାର୍ଯ୍ୟ ସମ୍ପନ୍ନ ହେବ । ହେ ଅନଘ ପୃଥିବୀପାଳ ! ଆମ୍ଭେ ଗୁରୁଦକ୍ଷିଣା ନିମିତ୍ତ ଗମନ କରିଥିଲୁଁ, ସେ ଦୁରାତ୍ମା ଆମ୍ଭର ସେହି କାର୍ଯ୍ୟରେ ବିଘ୍ନ ଉତ୍ପାଦନ କରିଥିଲା । ୧୮୫ ।

ସୌତି ବୋଇଲେ, ହେ ମୁନିମାନେ ! ରାଜା ଜନମେଜୟ ଏହା ଶ୍ରବଣ କରି ତକ୍ଷକ ପ୍ରତି କୁପିତ ହେଲେ । ଯେମନ୍ତ ଘୃତ ପ୍ରଦାନଦ୍ୱାରା

ଅଗ୍ନି ଦୀପିତ ହୁଅଇ, ସେହି ପ୍ରକାର ଉତଙ୍କଙ୍କ ବଚନରେ ନରପତିଙ୍କର କ୍ରୋଧାନଳ ପ୍ରଜ୍ଜ୍ୱଳିତ ହେଲା । ସେ ଅତ୍ୟନ୍ତ ଦୁଃଖିତ ହୋଇ ଉତଙ୍କଙ୍କ ସମୀପରେ ମନ୍ତ୍ରିମାନଙ୍କୁ ପିତାଙ୍କର ସ୍ୱର୍ଗପ୍ରାପ୍ତିର ବିବରଣ ପ୍ରଶ୍ନକଲେ । ଉତଙ୍କ ଯେତେବେଳେ ଜନମେଜୟଙ୍କୁ ତାହାଙ୍କ ପିତାଙ୍କ ମରଣ ବୃତ୍ତାନ୍ତ ଶ୍ରବଣ କରାଇଲେ, ତାହା ଶୁଣି ସେହି ରାଜା ଦୁଃଖ ଓ ଶୋକରେ ଅଭିଭୂତ ହେଲେ । ୧୮ ।

---

## ଚତୁର୍ଥ ଅଧ୍ୟାୟ

ଲୋମହର୍ଷଣଙ୍କ ପୁତ୍ର, ପୌରାଣିକ ସୌତି ଉଗ୍ରଶ୍ରବା, ନୈମିଷାରଣ୍ୟରେ କୁଳପତି ଶୌନକଙ୍କ ଦ୍ୱାଦଶ ବାର୍ଷିକ ଯଜ୍ଞରେ, ଅଭ୍ୟାଗତ ଋଷିମାନଙ୍କ ସମୀପରେ ଉପସ୍ଥିତ ହୋଇ କୃତାଞ୍ଜଳିପୁଟରେ ସେମାନଙ୍କୁ କହିଲେ, ହେ ଋଷିଗଣ ! ଆପଣମାନେ ଅଧୁନା କି ଶ୍ରବଣ କରିବାକୁ ଇଚ୍ଛା କରୁଅଛନ୍ତି ? ଆମ୍ଭେ କି ବୋଲିବା ?

ଋଷିମାନେ ବୋଇଲେ, ହେ ଲୋମହର୍ଷଣପୁତ୍ର ! ଶୌନକ ସମାଗତ ହେଲେ ଆମ୍ଭେମାନେ କଥାପ୍ରସଙ୍ଗରେ ଆପଣଙ୍କୁ ପରବ୍ରହ୍ମ ବିଷୟକ କଥାସବୁ ପ୍ରଶ୍ନ କରିବୁଁ । ଆପଣ ସେହି ସବୁ କଥା ବୋଲିବା ହେବେ । ଭଗବାନ୍ କୁଳପତି ଶୌନକ ବର୍ତ୍ତମାନ ଅଗ୍ନି ଗୃହରେ ଅବସ୍ଥିତି କରୁଅଛନ୍ତି । ସେ ଦେବତା, ଅସୁର, ମନୁଷ୍ୟ, ନାଗ ଓ ଗନ୍ଧର୍ବମାନଙ୍କର ଅଲୌକିକ ବୃତ୍ତାନ୍ତ ସବୁ ସମ୍ପୂର୍ଣ୍ଣ ରୂପେ ଜାଣନ୍ତି । ସେ ଏହି ଯଜ୍ଞର କୁଳପତି ଓ କାର୍ଯ୍ୟଦକ୍ଷ ବିଦ୍ୱାନ୍, ଧୀସମ୍ପନ୍ନ, ଗୃହୀତବ୍ରତ ଓ କର୍ମକାଣ୍ଡ ଓ ଉପନିଷଦାଦି ଜ୍ଞାନକାଣ୍ଡରେ ସମସ୍ତଙ୍କ ଗୁରୁ ; ସେ ସତ୍ୟବାଦୀ, ଶାନ୍ତିପରାୟଣ, ତପସ୍ୱୀ ଓ ଆମ୍ଭ ସମସ୍ତଙ୍କର ମାନ୍ୟ; ତାହାଙ୍କୁ ପ୍ରତୀକ୍ଷା କରନ୍ତୁ । ସେ ପରମ ପୂଜିତ ଆସନରେ ଆସୀନ ହୋଇ ଯେଉଁସବୁ ପ୍ରଶ୍ନ କରିବେ, ଆପଣ ତହିଁର ପ୍ରତ୍ୟୁତ୍ତର ପ୍ରଦାନ କରିବା ହେବେ । ଉଗ୍ରଶ୍ରବା କହିଲେ 'ହେଉ' । ମହାତ୍ମା ଗୁରୁ ଉପବିଷ୍ଟ ହୋଇ ଆମ୍ଭଙ୍କୁ ପ୍ରଶ୍ନକଲେ, ଆମ୍ଭେ ବିବିଧ ବିଷୟକ ପବିତ୍ର କଥାମାନ କୀର୍ତ୍ତନ କରିବା ।

ଅନନ୍ତର ଦ୍ୱିଜଶ୍ରେଷ୍ଠ ଶୌନକ ବ୍ରହ୍ମଯଜ୍ଞୀୟ ବାକ୍ୟଦ୍ୱାରା ଦେବଗଣଙ୍କୁ ଓ ଜଳଦ୍ୱାରା ପିତୃଗଣଙ୍କୁ ତର୍ପଣ କରି ଯେଉଁ ସ୍ଥାନରେ ବ୍ରତଧାରୀ ସିଦ୍ଧ ବ୍ରହ୍ମର୍ଷିବୃନ୍ଦ ସୂତପୁତ୍ରଙ୍କୁ ଅଗ୍ରେ କରି ସୁଖରେ ଉପବିଷ୍ଟ ହୋଇଥିଲେ, ସେହି ଯଜ୍ଞାୟତନକୁ ସମାଗତ ହେଲେ । ପରେ ଋତ୍ୱିକ୍ ଓ ସଦସ୍ୟଗଣ ଉପବିଷ୍ଟ ହେଲାରୁ କୁଳପତି ଶୌନକ ସ୍ୱୟଂ ଉପବିଷ୍ଟ ହୋଇ ଏହି କଥା କହିବାକୁ ଆରମ୍ଭ କଲେ ।

---

## ପଞ୍ଚମ ଅଧ୍ୟାୟ

ଶୌନକ କହିଲେ, ବତ୍ସ ଲୋମହର୍ଷଣପୁତ୍ର ! ପୂର୍ବେ ତୁମ୍ଭର ପିତା ସମସ୍ତ ପୁରାଣ ଅଧ୍ୟୟନ କରିଥିଲେ, ତୁମ୍ଭେ କ ସେହି ସମୁଦାୟ ଅଧ୍ୟୟନ କରିଅଛ ? ପୁରାଣରେ ଅଲୌକିକ କଥା ସବୁ ଓ ଧୀସମ୍ପନ୍ନ ବ୍ୟକ୍ତିମାନଙ୍କର ଆଦିବଂଶର ବୃତ୍ତାନ୍ତ ବର୍ଣ୍ଣିତ ହୋଇଥାଏ । ଆମ୍ଭେ ପୂର୍ବେ ତୁମ୍ଭ ପିତାଙ୍କଠାରୁ ସେହି ସବୁ ଶ୍ରବଣ କରିଅଛୁଁ । ତନ୍ମଧ୍ୟରେ ପ୍ରଥମେ ଆମ୍ଭେ ତୁମ୍ଭଠାରୁ ଭୃଗୁବଂଶର ବୃତ୍ତାନ୍ତ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ, ତୁମ୍ଭେ ସେହି କଥା କୀର୍ତ୍ତନ କର; ଆମ୍ଭେମାନେ ସେହି କଥା ଶ୍ରବଣ କରିବାକୁ ପ୍ରସ୍ତୁତ ଅଛୁଁ ।

ଉଗ୍ରଶ୍ରବା କହିଲେ, ହେ ମୁନିଗଣ ! ବୈଶମ୍ପାୟନ ପ୍ରଭୃତି ମହାନୁଭବ ଦ୍ୱିଜଶ୍ରେଷ୍ଠମାନେ ପୂର୍ବକାଳରେ ସମ୍ୟକ୍‌ରୂପେ ଯାହା ଅଧ୍ୟୟନ ଓ କୀର୍ତ୍ତନ କରିଥିଲେ, ଆମ୍ଭର ପିତା ଯାହା ଅଧ୍ୟୟନ କରିଥିଲେ ଓ ଆମ୍ଭେ ତାହାଙ୍କଠାରୁ ସମ୍ୟକ୍ ରୂପେ ଯାହା ଅଧ୍ୟୟନ କରିଅଛୁଁ, ସେହି ସବୁ କଥା ଶ୍ରବଣ କରିବା ହେଉନ୍ତୁ । ହେ ଭୃଗୁନନ୍ଦନ ! ଇନ୍ଦ୍ର ପ୍ରଭୃତି ଦେବଗଣ, ଋଷିଗଣ ଓ ମରୁଦ୍‌ଗଣ, ଯେଉଁ ପ୍ରଧାନତମ ଭୃଗୁବଂଶର ସମ୍ମାନନା କରନ୍ତି, ଆମ୍ଭେ ପ୍ରଥମେ ପୁରାଣର ଆଶ୍ରୟ ସ୍ୱରୂପ ସେହି ଭୃଗୁବଂଶ ଯଥାବତ୍ କୀର୍ତ୍ତନ କରୁଅଛୁଁ, ଶ୍ରବଣ କରିବା ହେଉନ୍ତୁ ।

ଆମ୍ଭେମାନେ ଶୁଣିଅଛୁଁ, ମହର୍ଷି ଭଗବାନ୍ ଭୃଗୁ ବରୁଣଙ୍କ ଯଜ୍ଞରେ ସ୍ୱୟମ୍ଭୂ ବ୍ରହ୍ମାଙ୍କ କର୍ତ୍ତୃକ ଅଗ୍ନିରୁ ସମୁତ୍ପାଦିତ ହୋଇଥିଲେ ।

ଭୃଗୁଙ୍କ ପୁତ୍ରଙ୍କ ନାମ ଚ୍ୟବନ; ସେ ପିତାଙ୍କର ଅତିଶୟ ପ୍ରିୟ ଥିଲେ । ଚ୍ୟବନଙ୍କ ପୁତ୍ରଙ୍କ ନାମ ପ୍ରମତି; ସେ ଧାର୍ମିକ ଥିଲେ । ପରେ ଘୃତାଚୀଙ୍କ ଗର୍ଭରେ ରୁରୁ ନାମରେ ପ୍ରମତିଙ୍କର ଗୋଟିଏ ପୁତ୍ର ଜନ୍ମିଲେ । ପରେ ପ୍ରମଦ୍ବରାଙ୍କ ଗର୍ଭରେ ବେଦପାରଗ, ଧର୍ମାତ୍ମା, ଆପଣାର ବଂଶର ପ୍ରଧାନ ପୁରୁଷ ଶୁନକ ନାମରେ ରୁରୁଙ୍କର ଗୋଟିଏ ପୁତ୍ର ଜନ୍ମିଲେ । ସେ ତପସ୍ୱୀ, ଯଶସ୍ୱୀ, ଶାସ୍ତ୍ରଜ୍ଞ, ବ୍ରହ୍ମଜ୍ଞମାନଙ୍କ ଶ୍ରେଷ୍ଠ, ଧର୍ମପରାୟଣ, ସତ୍ୟବାଦୀ, ଶମାଦିଗୁଣ ବିଶିଷ୍ଟ ଓ ନିୟମିତାହାରୀ ଥିଲେ ।

ଶୌନକ କହିଲେ, ହେ ସୌତି ! ଆମ୍ଭେ ପଚାରୁଅଛୁଁ, ସେହି ମହାତ୍ମା ଭୃଗୁନନ୍ଦନଙ୍କର ନାମ ଚ୍ୟବନ କିମ୍ପା ହେଲା, ତାହା ତୁମ୍ଭେ ବୋଲ ।

ଉଗ୍ରଶ୍ରବା କହିଲେ, ମୁନିବର ! ଭଗବାନ୍ ଭୃଗୁଙ୍କର ଅତିଶୟ ପ୍ରେୟସୀ ତ୍ରିଭୁବନବିଖ୍ୟାତା ପୁଲୋମା ନାମରେ ଗୋଟିଏ ପତ୍ନୀ ଥିଲେ । ଭୃଗୁଙ୍କ ବୀର୍ଯ୍ୟରେ ସେହି ସତୀଙ୍କର ଗର୍ଭ ହେଲା । ହେ ଭୃଗୁକୁମାର ! ସମସ୍ୱଭାବା, ଧର୍ମପତ୍ନୀ ପୁଲୋମାଙ୍କ ଗର୍ଭ ଉପଚିତ ହୋଇଥାଏ, ଦିନେ ଯଶସ୍ୱୀ ଧାର୍ମିକପ୍ରବର ଭୃଗୁ ସ୍ନାନାର୍ଥ ବହିର୍ଗତ ହେଲେ । ଏମନ୍ତ ସମୟରେ ପୁଲୋମା ନାମରେ ଗୋଟାଏ ରାକ୍ଷସ ସେହି ଆଶ୍ରମକୁ ଆଗମନ କଲା । ସେ ରାକ୍ଷସ ଆଶ୍ରମ ମଧ୍ୟରେ ପ୍ରବେଶପୂର୍ବକ ପରମସୁନ୍ଦରୀ ଭୃଗୁପତ୍ନୀଙ୍କୁ ଅବଲୋକନ କରି କାମାବିଷ୍ଟ ଓ ବିଚେତନ ହେଲା । ଚାରୁଦର୍ଶନା ପୁଲୋମା ବନ୍ୟ ଫଳମୂଳାଦିଦ୍ୱାରା ସେହି ଅଭ୍ୟାଗତ ରାକ୍ଷସର ଅତିଥି ସତ୍କାର କଲେ । ହେ ଦ୍ୱିଜବୃନ୍ଦ ! ତତ୍କାଳରେ କାମବିମୋହିତ ସେହି ରାକ୍ଷସ ପରମ ରୂପବତୀ ଭୃଗୁପତ୍ନୀଙ୍କୁ ହରଣ କରିବା ବାସନାରେ ହୃଷ୍ଟ ହେଲା ଓ କାର୍ଯ୍ୟ ସିଦ୍ଧ ହୋଇଅଛି ବୋଲି କହି ଉଠି ଛିଡ଼ା ହେଲା ; କାରଣ ଏହି ଯେ, ପୂର୍ବେ ସେ ରାକ୍ଷସ ଏହି ଚାରୁହାସିନୀ ରମଣୀଙ୍କୁ ପତ୍ନୀତ୍ୱରେ ବରଣ କରିଥିଲା । ପରେ ତାହାଙ୍କୁ ତାଙ୍କ ପିତା ଯଥାଶାସ୍ତ୍ର ଭୃଗୁଙ୍କୁ ପ୍ରଦାନ କଲେ । ହେ ଭାର୍ଗବ ! ଏହି ପାପକାର୍ଯ୍ୟ ସେହି ରାକ୍ଷସର ମନରେ ଅନୁକ୍ଷଣ ଜାଗରୁକ ଥିଲା । ତେତେବେଳେ ରାକ୍ଷସ ଏହି ଅବସର ମନେ କରି ହରଣ କରିବାର ମାନସ କଲା । ପରେ ଅଗ୍ନି ଗୃହରେ ଜ୍ୱଳନ୍ତ ପାବକକୁ ଦେଖି ସେହି ପ୍ରଜ୍ୱଳିତ ହୁତାଶନକୁ ପ୍ରଶ୍ନ କଲା, ହେ ପାବକ ! ଆମ୍ଭେ ତୁମ୍ଭଙ୍କୁ ପଚାରୁଅଛୁ, ଏ କାହାର ଭାର୍ଯ୍ୟା, ଆମ୍ଭଙ୍କୁ ସତ୍ୟ କରି କହ । ହେ ପାବକ !

ତୁମ୍ଭେ ଦେବଗଣଙ୍କ ମୁଖ ସ୍ୱରୂପ ; ଆମ୍ଭେ ତୁମ୍ଭଙ୍କୁ ପ୍ରଶ୍ନ କରୁଅଛୁ, ତୁମ୍ଭେ କହ ଏ କାହାର ଭାର୍ଯ୍ୟା । ଆମ୍ଭେ ପୂର୍ବେ ଏହି ବରବର୍ଣ୍ଣିନୀଙ୍କୁ ଭାର୍ଯ୍ୟାପଣରେ ବରଣ କରିଥିଲୁଁ । ପରେ ଏହାଙ୍କ ପିତା ଅଧର୍ମ କରି ଏହାଙ୍କୁ ଭୃଗୁଙ୍କୁ ପ୍ରଦାନ କଲେ । ଏଥିରେ ଯେବେ ଏହି ନିର୍ଜ୍ଜନବାସିନୀ ବରାରୋହା ଭୃଗୁଙ୍କ ପତ୍ନୀ ହେଲେ, ତେବେ କହ ଆମ୍ଭେ ଏହାଙ୍କୁ ହରଣ କରିନେଉଁ । ଭୃଗୁ ଆମ୍ଭର ପୂର୍ବ ଭାର୍ଯ୍ୟା ଏହି ସୁମଧ୍ୟମାଙ୍କୁ ଯେ ଗ୍ରହଣ କରିଅଛନ୍ତି, ସେହି କାରଣରୁ କ୍ରୋଧ-ହୁତାଶନ ଆମ୍ଭର ହୃଦୟ ଦଗ୍ଧ କରି ବିଦ୍ୟମାନ ରହିଅଛି ।

ଉଗ୍ରଶ୍ରବା କହିଲେ, ହେ ମୁନିଗଣ ! ଏହି ରାକ୍ଷସ ପ୍ରଜ୍ଜ୍ୱଳିତ ବୈଶ୍ୱାନରଙ୍କୁ ଏହିରୂପ ଆମନ୍ତ୍ରଣ କରି ଭୃଗୁଙ୍କ ଭାର୍ଯ୍ୟା ବିଷୟରେ ସନ୍ଦିହାନ ହୋଇ ବାରମ୍ବାର ପ୍ରଶ୍ନକଲା, ହେ ସର୍ବଜ୍ଞ ପାବକ ! ତୁମ୍ଭେ ସକଳ ଭୂତର ଅନ୍ତର୍ଯ୍ୟାମୀ ଓ ପାପପୁଣ୍ୟର ସାକ୍ଷୀ । ତୁମ୍ଭେ ସତ୍ୟ କରି କହ, ପାପକାରୀ ଭୃଗୁ ଆମ୍ଭର ପୂର୍ବ ଭାର୍ଯ୍ୟାଙ୍କୁ ଅପହରଣ କରିଅଛନ୍ତି । ସେହି ଏହି କାମିନୀ ଆମ୍ଭର ଭାର୍ଯ୍ୟା କି ନା, ତୁମ୍ଭେ ସତ୍ୟକରି କହ । ହେ ଜାତବେଦ ! ତୁମ୍ଭେ ସତ୍ୟବଚନ ବୋଲ, ଆମ୍ଭେ ତୁମ୍ଭଠାରୁ ଏହାର ତଥ୍ୟ ଶ୍ରବଣ କରି ତୁମ୍ଭ ସମକ୍ଷରେ ଆଶ୍ରମରୁ ଏହି ଭୃଗୁଭାର୍ଯ୍ୟାଙ୍କୁ ହରଣ କରିବୁଁ ।

ସୌତି ବୋଇଲେ, ହେ ତପୋଧନମାନେ ! ଅନଳ ରାକ୍ଷସର ଏହିରୂପ ବାକ୍ୟ ଶ୍ରବଣରେ ଦୁଃଖିତ ହେଲେ । ଏଣେ ଅସତ୍ୟ ଓ ତେଣେ ଭୃଗୁଙ୍କର ଅଭିଶାପ, ଏହି ଦୁଇଥିରୁ ଭୀତ ହୋଇ ସେହି ଅନଳ ମୃଦୁ ସ୍ୱରରେ ଉତ୍ତର କଲେ, ହେ ଦାନବନନ୍ଦନ ! ତୁମ୍ଭେ ପୂର୍ବେ ଏହି ପୁଲୋମାଙ୍କୁ ବରଣ କରିଥିଲ ସତ୍ୟ, କିନ୍ତୁ ଯଥାବିଧି ମନ୍ତ୍ର ପ୍ରୟୋଗପୂର୍ବକ ଏହାଙ୍କୁ ବରଣ କରିନାହଁ । ମହାଯଶା ପିତା ସତ୍ପାତ୍ରଲୋଭରେ ଏହି ଯଶସ୍ୱିନୀ କନ୍ୟାଙ୍କୁ ଭୃଗୁଙ୍କୁ ପ୍ରଦାନ କଲେ ; ତୁମ୍ଭଙ୍କୁ ପ୍ରଦାନ କଲେ ନାହିଁ । ହେ ଦାନବ ! ମହର୍ଷି ଭୃଗୁ ବେଦବିହିତ କାର୍ଯ୍ୟଦ୍ୱାରା ବିଧିପୂର୍ବକ ଆମ୍ଭଙ୍କୁ ଅଗ୍ରେ ସ୍ଥାପିତ କରି ଏହି କନ୍ୟାଙ୍କୁ ଭାର୍ଯ୍ୟା ବୋଲି ଗ୍ରହଣ କରିଅଛନ୍ତି । ହେ ଦାନବଶ୍ରେଷ୍ଠ ! ତୁମ୍ଭେ ପୂର୍ବେ ଯାହାଙ୍କୁ ବରଣ କରିଥିଲ, ସେହି କନ୍ୟା ଏହି ଅଟନ୍ତି ଆମ୍ଭେ ଜାଣୁଁ । ଆମ୍ଭେ ମିଥ୍ୟାକଥା କହି ପାରିବୁ ନାହିଁ, ଯେ ହେତୁ ମିଥ୍ୟାକଥା ଲୋକରେ କଦାପି ପୂଜନୀୟ ହୁଅଇ ନାହିଁ ।

---

# ଷଷ୍ଠ ଅଧ୍ୟାୟ

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ଅନନ୍ତର ସେହି ରାକ୍ଷସ ଅଗ୍ନିଙ୍କର ତଦ୍ରୂପ ବାକ୍ୟ ଶ୍ରବଣ କରି ବରାହ ରୂପ ଧାରଣ ପୂର୍ବକ ମନ ଓ ବାୟୁର ସଦୃଶ ଦ୍ରୁତବେଗରେ ସେହି ପୁଲୋମାଙ୍କୁ ହରଣ କରି ନେଇ-ଗଲେ । ହେ ଭୃଗୁନନ୍ଦନ ! ତତ୍କାଳରେ ସେହି ଭୃଗୁନନ୍ଦନ କ୍ରୋଧାନ୍ୱିତ ହୋଇ ମାତୃଗର୍ଭରୁ ଚ୍ୟୁତ ହେଲେ; ଏହି କାରଣରୁ ତାହାଙ୍କର ନାମ 'ଚ୍ୟବନ' ହେଲା । ରାକ୍ଷସ ମାତୃଗର୍ଭନିଃସୃତ ସୂର୍ଯ୍ୟସମ ତେଜସ୍ୱୀ ସେହି ଶିଶୁକୁ ଅବଲୋକନ କରି ପୁଲୋମାଙ୍କୁ ପରିତ୍ୟାଗ ପୂର୍ବକ ଭସ୍ମୀଭୂତ ହୋଇ ଭୂପୃଷ୍ଠରେ ପତିତ ହେଲା ।

ଅତ୍ୟନ୍ତ ଦୁଃଖିତା ବରାରୋହା ପୁଲୋମା ସେହି ଭୃଗୁନନ୍ଦନ ଚ୍ୟବନଙ୍କୁ ଘେନି ପ୍ରସ୍ଥାନ କଲେ । ସର୍ବଲୋକ ପିତାମହ ଭଗବାନ୍ ବ୍ରହ୍ମା ସ୍ୱୟଂ ପରମ ରୂପବତୀ ପୁତ୍ରବଧୂ ସେହି ଭୃଗୁପତ୍ନୀଙ୍କୁ ରୋଦନପରାୟଣା ଓ ଅଶ୍ରୁପୂର୍ଣ୍ଣନୟନା ଅବଲୋକନ କରି ସାନ୍ତ୍ୱନା କଲେ । ତପୋନିରତ ଭୃଗୁଙ୍କ ପତ୍ନୀ ପୁଲୋମା ଯେଉଁ ପଥରେ ଗମନ କଲେ, ସେହି ପଥରେ ତାହାଙ୍କର ଅଶ୍ରୁବିନ୍ଦୁ ବର୍ଷଣଦ୍ୱାରା ଗୋଟିଏ ମହାନଦୀ ଉତ୍ପନ୍ନ ହେଲା । ଭଗବାନ୍ ପିତାମହ ବ୍ରହ୍ମା ସେହି ନଦୀକୁ ପୁତ୍ରବଧୂଙ୍କ ପଶ୍ଚାତ୍ ପଶ୍ଚାତ୍ ଚ୍ୟବନଙ୍କ ଆଶ୍ରମାଭିମୁଖରେ ଗମନ କରିବାର ଦେଖି ତାହାର ନାମ "ବଧୂସର" ଦେଲେ । ପ୍ରତାପଶାଳୀ ଭୃଗୁନନ୍ଦନ ଏହିରୂପେ ଚ୍ୟବନ ନାମରେ ବିଖ୍ୟାତ ହେଲେ ।

ଅନନ୍ତର ମହାତପା ଭୃଗୁ ନିଜ ଆଶ୍ରମରେ ଚ୍ୟବନ ଓ ଭାର୍ଯ୍ୟାଙ୍କୁ ଉଦ୍‌ବେବସ୍ଥାପନ୍ନ ଦେଖି ରୋଷପରବଶ ହୋଇ ପୁଲୋମାଙ୍କୁ ପ୍ରଶ୍ନ କଲେ, ହେ ଶୁଚିହାସିନି ! ହରଣାଭିଳାଷୀ ରାକ୍ଷସଠାରେ କିଏ ତୁମ୍ଭର ପରିଚୟ ଦେଲା ? ସେହି ରାକ୍ଷସ ତ ତୁମ୍ଭଙ୍କୁ ଆମ୍ଭର ଭାର୍ଯ୍ୟା ବୋଲି ଜାଣି ନ ଥିଲା । ତୁମ୍ଭେ ଯଥାର୍ଥ କହ, ଆମ୍ଭେ କ୍ରୁଦ୍ଧ ହୋଇଅଛୁଁ, ବର୍ତ୍ତମାନ ତାହାଙ୍କୁ ଶାପ ପ୍ରଦାନ କରିବାକୁ ଇଚ୍ଛା କରୁଅଛୁଁ । କେଉଁ ବ୍ୟକ୍ତି ଆମ୍ଭ ଶାପରୁ ଭୀତ ନ ହୁଏ ? କାହାର ଏ ଅପକର୍ମ ?

ପୁଲୋମା କହିଲେ, ଭଗବନ୍ ! ବହ୍ନି ସେହି ରାକ୍ଷସ ନିକଟରେ ଆମ୍ଭର ପରିଚୟ ପ୍ରଦାନ କରିଅଛନ୍ତି । ସେହି ହେତୁ ରାକ୍ଷସ ଆମ୍ଭଙ୍କୁ

ହରଣ କଲା, ଆମ୍ଭେ କୁରରୀ ପ୍ରାୟ ରୋଦନ କରୁଥାଉଁ । ପରେ ଆମ୍ଭେ ତୁମ୍ଭର ଏବଂ ପୁତ୍ରର ତେଜଃପ୍ରଭାବରେ ମୁକ୍ତ ହେଲୁଁ; ଆଜ ସେହି ରାକ୍ଷସ ଭସ୍ମୀଭୂତ ହୋଇ ଆମ୍ଭଙ୍କୁ ପରିତ୍ୟାଗ ପୂର୍ବକ ଭୂତଳରେ ପତିତ ହେଲା । ଉଗ୍ରଶ୍ରବା କହିଲେ, ବ୍ରହ୍ମନ୍ ! ଭୃଗୁ ପୁଲୋମାଙ୍କ ବାକ୍ୟ ଶ୍ରବଣ କରି ଅତିଶୟ କ୍ରୁଦ୍ଧ ହୋଇ "ତୁମ୍ଭେ ସର୍ବଭକ୍ଷକ ହେବ" ଏହା ବୋଲି ବହ୍ନିଙ୍କୁ ଶାପ ପ୍ରଦାନ କଲେ ।

## ସପ୍ତମ ଅଧ୍ୟାୟ

ଉଗ୍ରଶ୍ରବା କହିଲେ, ହେ ମୁନିଗଣ ! ତଦନନ୍ତର ଭୃଗୁଙ୍କ ଅଭିଶାପରେ ଅଗ୍ନି କ୍ରୁଦ୍ଧ ହୋଇ ବୋଇଲେ, ବ୍ରହ୍ମନ୍ ! ଆପଣ ନ ବୁଝି ଆମ୍ଭପ୍ରତି ଏ କି ଅନିଷ୍ଟକାର୍ଯ୍ୟ କଲେ ? ଆମ୍ଭେ ଧର୍ମ ପ୍ରତିପାଳନପୂର୍ବକ ପକ୍ଷପାତବିହୀନ ହୋଇ ଯଥାର୍ଥ ଉତ୍ତର ଦେଇଅଛୁଁ, ଏଥିରେ ଆମ୍ଭର ଅପରାଧ କି ? ଯେଉଁ ସାକ୍ଷୀ ପୃଷ୍ଟ ହୋଇ ଜାଣିଶୁଣି ମିଥ୍ୟା ସାକ୍ଷ୍ୟ ପ୍ରଦାନ କରେ, ସେ ନିଜକୁଳର ପୂର୍ବତନ ସପ୍ତପୁରୁଷ ଓ ଅଧସ୍ତନ ସପ୍ତପୁରୁଷଙ୍କୁ ବିନାଶ କରେ । ଯେଉଁ ବ୍ୟକ୍ତି ଘଟନାର ଯଥାର୍ଥ ତତ୍ତ୍ୱ ଜାଣି ସୁଦ୍ଧା ତାହା କହେ ନାହିଁ, ସେ ମଧ୍ୟ ଉକ୍ତ ପାପରେ ଲିପ୍ତ ହୁଏ, ଏଥିରେ ସନ୍ଦେହ ନାହିଁ । ଆମ୍ଭେ ମଧ୍ୟ ତୁମ୍ଭଙ୍କୁ ଅଭିଶାପ ପ୍ରଦାନ କରିପାରୁଁ, କିନ୍ତୁ ବ୍ରାହ୍ମଣମାନଙ୍କୁ ଆମ୍ଭେ ମାନ୍ୟ କରୁଁ, ଏହି କାରଣରୁ କ୍ଷାନ୍ତ ହେଲୁଁ । ବ୍ରହ୍ମନ୍ ! ତୁମ୍ଭେ ସବୁ ବିଷୟ ଜାଣ, ତଥାପି ଯାହା କହୁଛୁ ଶ୍ରବଣ କର । ଆମ୍ଭେ ଯୋଗପ୍ରଭାବରେ ଆପଣାକୁ ବହୁ ପ୍ରକାରରେ ବିଭକ୍ତ କରି ଗାର୍ହପତ୍ୟ ପ୍ରଭୃତି ମୂର୍ତ୍ତି ଭେଦରେ ବହୁଜନ ସମ୍ପାଦ୍ୟ ଗବାନୟନାଦି ସତ୍ରରେ, ଗର୍ଭାଧାନାଦି କର୍ମରେ ଓ ଜ୍ୟୋତିଷ୍ଟୋମାଦି ଯଜ୍ଞରେ ଅବସ୍ଥିତ କରୁଅଛୁଁ । ବେଦୋକ୍ତ ବିଧାନଦ୍ୱାରା ଆମ୍ଭଠାରେ ଯେଉଁ ହବି ଆହୁତ ହୁଏ, ତଦ୍ଦ୍ୱାରା ଦେବଗଣ ଓ ପିତୃଗଣ ପରିତୃପ୍ତ ହୁଅନ୍ତି । ଆମ୍ଭଠାରେ ହୂୟମାନ ସୋମରସ, ଘୃତ, ପୟଃ ପ୍ରଭୃତି ଦ୍ରବ୍ୟମାନ ଦେବଗଣ ଓ ପିତୃଗଣଙ୍କ ଶରୀର ରୂପେ ପରିଣତ ହୁଅଇ । ଦେବଗଣ ଓ ପିତୃଗଣଙ୍କ ଉଦ୍ଦେଶ୍ୟରେ ଦର୍ଶ ଓ ପୌର୍ଣ୍ଣମାସ ଯାଗ ଏକତ୍ର ଅନୁଷ୍ଠିତ ହୁଅଇ । ସେହି କାରଣରୁ ଦେବଗଣ ପିତୃଗଣଙ୍କ ସ୍ୱରୂପ

ଓ ପିତୃଗଣ ଦେବଗଣଙ୍କ ସ୍ୱରୂପ ; ତଜ୍ଜନ୍ୟ ସେମାନେ ପର୍ବ ସମୟରେ କେତେବେଳେ ଏକୀଭୂତ ଓ କେତେବେଳେ ପୃଥକ୍‌ଭୂତ ହୋଇ ପରିଦୃଶ୍ୟ-ମାନ ହୁଅନ୍ତି । ଆମ୍ଭଠାରେ ଯାହା ଆହୁତ ହୁଏ, ଦେବଗଣ ଓ ପିତୃଗଣ ତାହା ଭକ୍ଷଣ କରନ୍ତି ; ଅତଏବ ଆମ୍ଭେ ଦେବଗଣ ଓ ପିତୃଗଣଙ୍କ ମୁଖସ୍ୱରୂପ, ପିତୃଗଣ ଅମାବାସ୍ୟାରେ ଓ ଦେବଗଣ ପୂର୍ଣ୍ଣିମାରେ ଆମ୍ଭର ମୁଖଦ୍ୱାରା ଅର୍ଚ୍ଚିତ ହୁଅନ୍ତି ଓ ଆମ୍ଭର ମୁଖଦ୍ୱାରା ହୁତ ହବ୍ୟମାନ ଭକ୍ଷଣ କରନ୍ତି ; ଅତଏବ ଆମ୍ଭେ ଏମାନଙ୍କର ମୁଖସ୍ୱରୂପ ହୋଇ କିରୂପେ ସର୍ବଭକ୍ଷକ ହେବୁଁ ?

ଉଗ୍ରଶ୍ରବା କହିଲେ, ହେ ମୁନିବର ! ଅନନ୍ତର ଅଗ୍ନି କ୍ଷଣକାଳ ଚିନ୍ତାକରି ବ୍ରାହ୍ମଣମାନଙ୍କର ଅଗ୍ନିହୋତ୍ର, ଜ୍ୟୋତିଷ୍ଟୋମାଦି ଯଜ୍ଞ, ଗବା-ମୟନାଦି ସତ୍ର ଓ ଗର୍ଭାଧାନାଦି କର୍ମସମୂହରୁ ତିରୋହିତ ହେଲେ । ପରେ ପ୍ରଜାବର୍ଗ ଅଗ୍ନି ବ୍ୟତିରେକେ ଓଙ୍କାର, ବଷଟ୍‌କାର, ସ୍ୱଧା ଓ ସ୍ୱାହାଶୂନ୍ୟ ହୋଇ ଅତିଶୟ ଦୁଃଖିତ ହେଲେ । ଅନନ୍ତର ଋଷିଗଣ ଅତ୍ୟନ୍ତ ଉଦ୍‌ବିଗ୍ନ ଓ ଦେବତାମାନଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ହେ ନିଷ୍ପାପ ଅମରଗଣ ! ଅଗ୍ନିଙ୍କ ବିନାଶବଶରୁ ଅଗ୍ନିହୋତ୍ରାଦି କ୍ରିୟାର ବିଲୋପ ହେବାରୁ ଲୋକତ୍ରୟ କର୍ତ୍ତବ୍ୟାକର୍ତ୍ତବ୍ୟବିମୂଢ଼ ହୋଇଅଛନ୍ତି ; ଅତଏବ ଏ ବିଷୟରେ ଯାହା କର୍ତ୍ତବ୍ୟ ହୁଏ ବିଧାନ କରନ୍ତୁ, ଯେପରି କାଳକ୍ଷେପ ନ ହୁଏ । ଅନନ୍ତର ଦେବଗଣ ଓ ଋଷିଗଣ ବ୍ରହ୍ମାଙ୍କ ସମୀପକୁ ଯାଇ ଅଗ୍ନିଙ୍କର ଶାପ ଓ କ୍ରିୟାଲୋପର ବିଷୟ ନିବେଦନ କରି କହିଲେ, ହେ ମହାଭାଗ ! ଭୃଗୁ କୌଣସି କାରଣବଶତଃ ଅଗ୍ନିଙ୍କୁ ଶାପ ପ୍ରଦାନ କରିଅଛନ୍ତି, କିନ୍ତୁ ହୁତାଶନ ଦେବଗଣଙ୍କର ମୁଖସ୍ୱରୂପ ଓ ଯଜ୍ଞର ଅଗ୍ରଭାଗଭୋଜୀ ହୋଇ କିରୂପେ ତ୍ରିଲୋକରେ ସର୍ବଭକ୍ଷକ ହେବେ ?

ପ୍ରଜାପତି ସେମାନଙ୍କର ସେହି ବାକ୍ୟ ଶ୍ରବଣ କରି ଅବିନାଶୀ ଭୂତଭାବନ ବୈଶ୍ୱାନରଙ୍କୁ ଆହ୍ୱାନପୂର୍ବକ କହିଲେ, ହେ ବୈଶ୍ୱାନର ! ତୁମ୍ଭେ ନିଶ୍ଚୟ ସମସ୍ତ ଲୋକର କର୍ତ୍ତା ଓ ସଂହର୍ତ୍ତା ; ତୁମ୍ଭେ ଲୋକତ୍ରୟଙ୍କୁ ଧାରଣ କରୁଅଛ ; ତୁମ୍ଭେ ଅଗ୍ନିହୋତ୍ରାଦି କ୍ରିୟାସମୂହର ପ୍ରବର୍ତ୍ତକ । ହେ ଲୋକେଶ୍ୱର ! ଯଦ୍ଦ୍ୱାରେ କ୍ରିୟାବଳୀ ଉଚ୍ଛିନ୍ନ ନ ହୁଏ, ତାହାର ବିଧାନ କର । ହେ ହୁତାଶନ ! ତୁମ୍ଭେ ଈଶ୍ୱର ହୋଇ କି ହେତୁ ଏପରି ବିମୂଢ଼ ହେଉଅଛ । ତୁମ୍ଭେ ସକଳ ଲୋକର ସର୍ବଦା ପବିତ୍ର ଓ ସକଳ ଭୂତର ଗତି । ହେ ଅନଳ ! ତୁମ୍ଭେ ସକଳ ଶରୀରରେ ସର୍ବଭକ୍ଷକ ହେବ ନାହିଁ ; ତୁମ୍ଭର

ଅପାନ ଦେଶରେ ଯେଉଁ ସମସ୍ତ ଅଗ୍ନି ଅଛି, ସେହି ଅଗ୍ନି ସକଳ ଭକ୍ଷଣ କରିବ ଓ ତୁମ୍ଭର ଯେଉଁ ମାଂସଭକ୍ଷଣୀ ତନୁ ଅଛି, ସେହି ତନୁ ସକଳ ଭକ୍ଷଣ କରିବ । ଯେପରି ସୂର୍ଯ୍ୟକିରଣ ସଂସ୍ପର୍ଶରେ ସମସ୍ତ ଦ୍ରବ୍ୟ ଶୁଚି ହୁଏ, ତଦ୍ରୂପ ତୁମ୍ଭର ଶିଖାଦ୍ୱାରା ଦଗ୍ଧ ହୋଇ ସମସ୍ତ ଦ୍ରବ୍ୟ ଶୁଚିବନ୍ତ ହେବ । ହେ ବହ୍ନି ! ତୁମ୍ଭେ ସ୍ୱୀୟ ପ୍ରଭାବ ବିନିର୍ଗତ ପରମତେଜଃ ସ୍ୱରୂପ । ଅତଏବ ସ୍ୱୀୟ ତେଜଦ୍ୱାରା ଋଷିଙ୍କ ଶାପକୁ ସତ୍ୟ କର ; ଓ ତୁମ୍ଭର ମୁଖଦ୍ୱାରା ଆହୁତ ଦେବଗଣଙ୍କର ଭାଗ ଓ ତୁମ୍ଭର ଆପଣାର ଭାଗ ଗ୍ରହଣ କର ।

ଉଗ୍ରଶ୍ରବା କହିଲେ, ମୁନିଗଣ ! ବହ୍ନି ବ୍ରହ୍ମାଙ୍କୁ ତଥାସ୍ତୁ ବୋଲି, ତାହାଙ୍କ ଆଦେଶ ପ୍ରତିପାଳନାର୍ଥ ପ୍ରସ୍ଥାନ କଲେ । ଦେବଗଣ ଓ ଋଷିଗଣ ହୃଷ୍ଟ ହୋଇ ସ୍ୱ ସ୍ୱ ସ୍ଥାନକୁ ପ୍ରସ୍ଥାନ କଲେ । ଋଷିଗଣ ପୂର୍ବପ୍ରାୟ କ୍ରିୟା-କଳାପର ଅନୁଷ୍ଠାନ କରିବାରେ ପ୍ରବୃତ୍ତ ହେଲେ । ସ୍ୱର୍ଗରେ ଦେବଗଣ ଓ ଭୂଲୋକରେ ଭୂତ-ସମୂହ ଅତିଶୟ ଆନନ୍ଦିତ ହେଲେ ଓ ବହ୍ନି ବିଗତ-ପାପ ହୋଇ ପରମପ୍ରୀତ ହେଲେ । ଭଗବାନ୍ ବହ୍ନି ଏହିରୂପେ ଭୃଗୁଙ୍କଠାରୁ ଶାପ ପ୍ରାପ୍ତ ହୋଇଥିଲେ । ଅଗ୍ନିଶାପ ବିଷୟକ ପୂର୍ବକାଳୀନ ଇତିହାସ, ପୁଲୋମ ରାକ୍ଷସର ବିନାଶ ଓ ଚ୍ୟବନଙ୍କ ଉତ୍ପତ୍ତି କୀର୍ତ୍ତିତ ହେଲା ।

---

## ଅଷ୍ଟମ ଅଧ୍ୟାୟ

ଉଗ୍ରଶ୍ରବା କହିଲେ, ହେ ବ୍ରହ୍ମନ୍ ! ସେହି ଭୃଗୁତନୟ ଚ୍ୟବନ ସୁକନ୍ୟାଙ୍କ ଗର୍ଭରେ ପ୍ରମତି ନାମରେ ଗୋଟିଏ ଅତିଶୟ ତେଜସ୍ୱୀ ମହାନୁଭାବ ପୁତ୍ର ଉତ୍ପାଦନ କଲେ, ପ୍ରମତି ଘୃତାଚୀଙ୍କ ଗର୍ଭରେ ରୁରୁ ନାମକ ଗୋଟିଏ ସୁତ ଉତ୍ପାଦନ କଲେ । ପରେ ରୁରୁ ପ୍ରମଦ୍ୱରାଙ୍କ ଗର୍ଭରେ ଶୁନକ ନାମରେ ଗୋଟିଏ ତନୟ ଉତ୍ପାଦନ କଲେ । ଶୁନକ ମହାବଳ ପରାକ୍ରାନ୍ତ ସକଳ ଭୃଗୁବଂଶୀୟମାନଙ୍କର ଆନନ୍ଦବର୍ଦ୍ଧନ, ଅତି କଠୋର ତପସ୍ୟାରେ ଅନୁରକ୍ତ ଓ ଅତିଶୟ ଯଶସ୍ୱୀ ହୋଇଥିଲେ ।

ହେ ବ୍ରହ୍ମନ୍ ! ଏକ୍ଷଣି ଆମ୍ଭେ ସେହି ଭୂରିତେଜା ରୁରୁଙ୍କର ସମଗ୍ର ଚରିତ ବର୍ଣ୍ଣନ କରିବୁଁ ଶ୍ରବଣ କରନ୍ତୁ । ହେ ବିପ୍ରର୍ଷେ ! ପୂର୍ବେ

ସ୍ଥୂଳକେଶ ନାମରେ ଗୋଟିଏ ମହାନ୍ ଋଷି ଥିଲେ । ସେ ସମସ୍ତ ପ୍ରାଣୀଙ୍କ ହିତ ସାଧନରେ ରତ, ତପସ୍ୱୀ ଓ ବିଦ୍ୟାସମ୍ପନ୍ନ ଥିଲେ । ସେହି କାଳରେ ଗନ୍ଧର୍ବରାଜ ବିଶ୍ୱାବସୁ ମେନକାଙ୍କର ଗର୍ଭ ଉତ୍ପାଦନ କଲେ । ହେ ଭୃଗୁନନ୍ଦନ ! ସେହି ନିର୍ଲଜ୍ଜା, ନିର୍ଦ୍ଦୟା ଅପ୍‌ସରା ମେନକା ସ୍ଥୂଳକେଶ ଋଷିଙ୍କ ଆଶ୍ରମ ନିକଟବର୍ତ୍ତୀ ଗୋଟିଏ ନଦୀଘାଟରେ ଗନ୍ଧର୍ବରାଜ ଜନିତ ସେହି ଗର୍ଭ ପରିତ୍ୟାଗ କରି ପ୍ରସ୍ଥାନ କଲେ । ସେହି ତେଜସ୍ୱୀ ମହର୍ଷି ସ୍ଥୂଳକେଶ ନଦୀଘାଟରେ ନିର୍ଜ୍ଜନରେ ପରିତ୍ୟକ୍ତା ବାନ୍ଧବବିହୀନା ଅମରକନ୍ୟା ସଦୃଶ ତେଜସ୍ୱିନୀ ସେହି କନ୍ୟାକୁ ଦେଖିଲେ । ମହାଦ୍ୱିଜ ମୁନିପ୍ରଧାନ ସ୍ଥୂଳକେଶ ସେହି କନ୍ୟାକୁ ଦେଖି କରୁଣାବିଷ୍ଟ ହୋଇ ଗ୍ରହଣ କଲେ ଓ ତାହାର ପ୍ରତିପୋଷଣ କଲେ । ସେହି ବରାରୋହା କନ୍ୟା ଋଷିଙ୍କର ଶୁଭ ଆଶ୍ରମରେ ବୃଦ୍ଧିଲାଭ କଲେ । ମହାଭାଗ ମହର୍ଷି ସ୍ଥୂଳକେଶ ବିଧି-ପୂର୍ବକ ଯଥାକ୍ରମରେ ସେହି କନ୍ୟାର ଜାତକର୍ମାଦି ସମ୍ପାଦନ କଲେ । ସେହିରୂପେ ଗୁଣଶୀଳସମ୍ପନ୍ନା କନ୍ୟା, ସବୁ ପ୍ରମଦାଙ୍କ ଅପେକ୍ଷା ବରା ଅର୍ଥାତ୍ ଉତ୍କୃଷ୍ଟା ହେବାରୁ ତାହାଙ୍କର ନାମ ଋଷି ପ୍ରମଦ୍‌ବରା ଦେଲେ ।

ସେହି ସମୟରେ ଧର୍ମାତ୍ମା ରୁରୁ ସ୍ଥୂଳକେଶଙ୍କ ଆଶ୍ରମରେ ପ୍ରମଦ୍-ବରାଙ୍କୁ ବିଲୋକନ କରି ମଦନରେ ଅଭିଭୂତ ହେଲେ ।

ଅନନ୍ତର ରୁରୁ ବୟସ୍ୟମାନଙ୍କଦ୍ୱାରା ପିତା ପ୍ରମତିଙ୍କୁ ଏହି କଥା ଶ୍ରବଣ କରାଇଲେ । ଯଶସ୍ୱୀ ସ୍ଥୂଳକେଶଙ୍କୁ ପ୍ରମତି ସେହି କନ୍ୟାଙ୍କୁ ଯାଚ୍‌ଞା କଲେ । ପିତା ସ୍ଥୂଳକେଶ ଉତ୍ତରଫାଲ୍‌ଗୁନୀ ନକ୍ଷତ୍ରରେ ବିବାହ ହେବାର ଅଗ୍ରେ ସ୍ଥିର କରି ପରେ ରୁରୁଙ୍କୁ ସେହି କନ୍ୟା ପ୍ରମଦ୍‌ବରାଙ୍କୁ ପ୍ରଦାନ କଲେ । ବିବାହର କେତେକ ଦିବସ ପୂର୍ବରୁ ଏକଦା ସେହି ବରବର୍ଣ୍ଣିନୀ କନ୍ୟା ସଖୀମାନଙ୍କ ସହିତ କ୍ରୀଡ଼ା କରୁଥିଲେ । ସେହିଠାରେ ଗୋଟିଏ ସର୍ପ ତିର୍ଯକ ଭାବରେ ବିସ୍ତୃତ ହୋଇ ନିଦ୍ରିତ ଥିଲା; କିନ୍ତୁ ପ୍ରମଦ୍‌ବରା ତାହାକୁ ଦେଖି ନ ପାରି ତାହା ଉପରେ କାଳ ପ୍ରେରିତ ହୋଇ ପାଦ ନିକ୍ଷେପ କଲେ । ଭୁଜଙ୍ଗ ମଧ୍ୟ ମୃତ୍ୟୁକର୍ତ୍ତୃକ ପ୍ରେରିତ ହେଲା ପ୍ରାୟ ଆପଣାର ବିଷାକ୍ତ ଦଶନମାନଙ୍କୁ ସେହି କନ୍ୟାଙ୍କ ଅଙ୍ଗରେ ନିପାତିତ କଲା । ଦଂଷ୍ଟ ହେବା ମାତ୍ର ପ୍ରମଦ୍‌ବରା ବିବର୍ଣ୍ଣ, ବିଶ୍ରୀ, ଆଭରଣବିହୀନ ଓ ବିଚେତନ ହୋଇ ସହସା ଭୂତଳରେ ପତିତ ହେଲେ ।

ତେତେବେଳେ ବନ୍ଧୁଗଣଙ୍କର ନୟନାନନ୍ଦକାରିଣୀ ସେହି କନ୍ୟା, ମୁକ୍ତକେଶୀ, ଗତଜୀବନା ଓ ହତଶ୍ରୀ ହୋଇ ଅତିଶୟ ଦର୍ଶନୀୟାକୃତି ହୋଇଥିଲେ । ସର୍ପବିଷାର୍ଦ୍ଦିତ ସେହି କନ୍ୟା ଭୂତଳରେ ପ୍ରସୁପ୍ତ ହୋଇଥିଲା ପ୍ରାୟ ବୋଧ ହେଲା । କ୍ଷୀଣମଧ୍ୟା ସେହି ବାଳା ତତ୍କାଳରେ ଅଧିକତର ମନୋରମା ବୋଧ ହେଲେ; ପରେ ତାହାଙ୍କ ପିତା ସ୍ଥୂଳକେଶ ଓ ଅପର ତପସ୍ୱୀମାନେ ସେହି କମଳକାନ୍ତି କନ୍ୟାକୁ ଭୂତଳରେ ପତିତ ଓ ବିଚେଷ୍ଟିତ ହୋଇଥିବାର ଦେଖିଲେ ।

ଅନନ୍ତର ସ୍ୱସ୍ତ୍ୟାତ୍ରେୟ, ମହାଜାନୁ, କୁଶିକ, ଶଙ୍ଖମେଖଳ, ଉଦ୍ଦାଳକ, କଠ, ମହାଯଶା ଶ୍ୱେତ, ଭରଦ୍ୱାଜ, କୌଣକୁତ୍ସ୍ୟ, ଆର୍ଷ୍ଟିଷେଣ, ଗୌତମ, ସପୁତ୍ର ପ୍ରମତି ପ୍ରଭୃତି ସମସ୍ତ ଦ୍ୱିଜବର ଓ ଅନ୍ୟାନ୍ୟ ବନବାସି-ମାନେ କୃପାପରାୟଣ ହୋଇ ସେହି ସ୍ଥାନକୁ ଆଗମନ କଲେ । ଏମାନେ ଭୁଜଙ୍ଗବିଷପୀଡ଼ିତ ସେହି କନ୍ୟାକୁ ଅବଲୋକନ କରି କରୁଣାବିଷ୍ଟ ହୋଇ ରୋଦନ କରିବାକୁ ଆରମ୍ଭ କଲେ । ରୁରୁ ଅତିଶୟ ଦୁଃଖିତ ହୋଇ ସେଠାରୁ ବହିର୍ଗତ ହେଲେ । କିନ୍ତୁ ଅନ୍ୟାନ୍ୟ ଦ୍ୱିଜବରମାନେ ସେହିଠାରେ ଉପବିଷ୍ଟ ହୋଇ ରହିଲେ ।

---

## ନବମ ଅଧ୍ୟାୟ

ଉଗ୍ରଶ୍ରବା କହିଲେ, ହେ ମୁନିବୃନ୍ଦ ! ମହାତ୍ମା ବ୍ରାହ୍ମଣମାନେ ସେ ସ୍ଥାନରେ ରହିବାରୁ ରୁରୁ ବନ ମଧ୍ୟରେ ପ୍ରବେଶ କରି ଉଚ୍ଚୈଃସ୍ୱରରେ ରୋଦନ କରିବାକୁ ଆରମ୍ଭ କଲେ । ସେ ଶୋକରେ ଅଭିଭୂତ ହୋଇ କରୁଣ ବଚନରେ ବହୁତ ବିଳାପ କରି ପ୍ରିୟତମା ପ୍ରମଦ୍ୱରାଙ୍କୁ ସ୍ମରଣ କରି କହିଲେ, ହା ବିଧାତଃ ! ଆମ୍ଭର ଓ ଆମ୍ଭର ବାନ୍ଧବମାନଙ୍କର ଶୋକ-ବର୍ଦ୍ଧିନୀ ହୋଇ ସେ କୃଶାଙ୍ଗୀ ଏବେ ଭୂମିରେ ଶୟନ କରି ରହିଅଛି ; ଏଥିରୁ ଅଧିକ ଦୁଃଖ କି ଅଛି ? ଆମ୍ଭେ ଯେବେ କେବେ ଦାନ କରିଥାଉଁ, କେବେ ତପସ୍ୟା କରିଥାଉଁ, ଅଥବା ସମ୍ୟକ୍‌ରୂପେ ଗୁରୁ ଶୁଶ୍ରୂଷା କରିଥାଉଁ, ତେବେ ଆମ୍ଭର ପ୍ରିୟତମା ଜୀବିତ ହୋଇ ଉଠୁ । ଆମ୍ଭେ ଯେବେ ଜନ୍ମାବଧି

ଆତ୍ମସଂଯମ ଓ ବ୍ରତଧାରଣ କରିଥାଉଁ, ତେବେ ଏହି କାମିନୀ ପ୍ରମଦ୍‌ବରା ଭୂମିଶଯ୍ୟାରୁ ଉତ୍ଥିତ ହେଉ ।

ରୁରୁ ଭାର୍ଯ୍ୟାଙ୍କ ନିମିତ୍ତ ଦୁଃଖିତ ହୋଇ ବନ ମଧ୍ୟରେ ବାରମ୍ବାର ଏହି ପ୍ରକାର ବିଳାପ କରୁଅଛନ୍ତି, ଏମନ୍ତ ସମୟରେ ଦେବଦୂତ ନିକଟକୁ ଆସି ତାହାଙ୍କୁ କହିଲେ, ହେ ଧର୍ମାତ୍ମନ୍ ରୁରେ ! ତୁମ୍ଭେ ଦୁଃଖରେ ବାକ୍ୟ-ଦ୍ୱାରା ଯାହା ପ୍ରାର୍ଥନା କରୁଅଛ ତାହା ମିଥ୍ୟା, ଯେ ହେତୁ ଗତାୟୁ ବ୍ୟକ୍ତିର ଆୟୁର୍ଲାଭ ହୁଏ ନାହିଁ । ହେ ବତ୍ସ ! ଗନ୍ଧର୍ବର ଔରସଜାତ ଅତି ଦୀନ ଏହି ଅପ୍‌ସରା କନ୍ୟାର ଆୟୁଃଶେଷ ହୋଇଅଛି ; ଅତଏବ ତୁମ୍ଭେ କୌଣସି ପ୍ରକାରେ ଶୋକରେ ମନୋନିବେଶ କର ନା । ମହାତ୍ମା ଦେବଗଣ ଏଥିର ଗୋଟିଏ ଉପାୟ ପୂର୍ବରୁ ବିଧାନ କରିଅଛନ୍ତି । ତାହା ଯଦି ତୁମ୍ଭେ କରିପାର ତେବେ ସେ କନ୍ୟା ଜୀବିତା ହେବ ।

ରୁରୁ କହିଲେ ହେ ଖେଚର ! ଦେବଦୂତ ! ଦେବତାମାନେ କି ଉପାୟ କରିଅଛନ୍ତି ଯଥାର୍ଥ କରି କହ । ଆମ୍ଭେ ଶୁଣି ତାହା ନିଶ୍ଚୟ କରିବୁଁ । ଆପଣ ଆମ୍ଭଙ୍କୁ ରକ୍ଷା କରନ୍ତୁ । ଦେବଦୂତ କହିଲେ, ଭୃଗୁ-ନନ୍ଦନ ରୁରେ ! ତୁମ୍ଭେ ଏହି କନ୍ୟାକୁ ତୁମ୍ଭର ଆୟୁର ଅର୍ଦ୍ଧଭାଗ ପ୍ରଦାନ କର, ତାହାହେଲେ ତୁମ୍ଭର ପତ୍ନୀ ପ୍ରମଦ୍‌ବରା ଉତ୍ଥିତ ହେବେ ।

ରୁରୁ କହିଲେ, ହେ ଖେଚରୋତ୍ତମ ! ଆମ୍ଭେ ପ୍ରମଦ୍‌ବରାଙ୍କୁ ଆୟୁର ଅର୍ଦ୍ଧଭାଗ ପ୍ରଦାନ କରୁଅଛୁଁ । ଆମ୍ଭର ପ୍ରିୟା ରୂପରେ ଓ ଭୂଷଣରେ ଭୂଷିତ ହୋଇ ଉତ୍‌ଥାନ କରନ୍ତୁ ।

ଉଗ୍ରଶ୍ରବା ବୋଇଲେ, ହେ ମୁନିଗଣ ! ଅନନ୍ତର ଗନ୍ଧର୍ବରାଜ ଓ ଦେବଦୂତ ଦୁହେଁ ଧର୍ମରାଜଙ୍କ ନିକଟକୁ ଗମନ କରି କହିଲେ, ହେ ଧର୍ମରାଜ ! ଯଦି ଆପଣ ଅନୁମତି କରନ୍ତି ତାହାହେଲେ ରୁରୁଙ୍କ ଭାର୍ଯ୍ୟା ମୃତା ପ୍ରମଦ୍‌ବରା ରୁରୁଙ୍କ ଅର୍ଦ୍ଧାୟୁ ଲାଭ କରି କୁଶଳରେ ଉତ୍ଥିତ ହେଉନ୍ତୁ । ଧର୍ମରାଜ ବୋଇଲେ, ହେ ଦେବଦୂତ ! ଯଦି ତୁମ୍ଭେ ଇଚ୍ଛାକର, ତେବେ ରୁରୁଙ୍କ ପତ୍ନୀ ମୃତା ପ୍ରମଦ୍‌ବରା ରୁରୁଙ୍କର ଅର୍ଦ୍ଧାୟୁ ପ୍ରାପ୍ତ ହୋଇ ଉତ୍ଥିତ ହେଉ ।

ଉଗ୍ରଶ୍ରବା କହିଲେ, ହେ ତପୋଧନଗଣ ! ଧର୍ମରାଜ ଏହି କଥା କହିବାରୁ ପରମସୁନ୍ଦରୀ ପ୍ରମଦ୍‌ବରା ରୁରୁଙ୍କ ଅର୍ଦ୍ଧାୟୁ ପ୍ରାପ୍ତ ହୋଇ ସୁପ୍ତବ୍ୟକ୍ତି

ପ୍ରାପ୍ତ ଉତ୍ଥିତ ହେଲେ । କେବଳ ରୁରୁଙ୍କ ଜନ୍ମବୃତ୍ତାନ୍ତରେ ଏହା ଦୃଷ୍ଟ ହୁଅଇ ଯେ ଭାର୍ଯ୍ୟାଙ୍କ ନିମିତ୍ତ ରୁରୁଙ୍କର ଦୀର୍ଘାୟୁର ଅର୍ଦ୍ଧଭାଗ ବିଲୁପ୍ତ ହୋଇଥିଲା ।

ଅନନ୍ତର ରୁରୁଙ୍କର ପିତା ପ୍ରମତି ଓ ପ୍ରମଦ୍‌ବରାଙ୍କ ପିତା ସ୍ଥୂଳକେଶ ଦୁହେଁ ଶୁଭଦିନରେ ଆନନ୍ଦ ସହକାରେ ତାହାଙ୍କର ଉଦ୍‌ବାହକ୍ରିୟା ସମାଧାନ କଲେ । ସେହି ପତିପତ୍ନୀ ଦୁହେଁ ମଧ୍ୟ ପରସ୍ପର ହିତାଭିଳାଷୀ ହୋଇ ବିହାର କଲେ । ରୁରୁ କମଳକେଶର ସଦୃଶ ପ୍ରଭାବତୀ ଦୁର୍ଲଭ ଭାର୍ଯ୍ୟାଙ୍କୁ ଲାଭ କରି ପ୍ରତିଜ୍ଞାପୂର୍ବକ ସର୍ପବଂଶ ବିନାଶ ନିମିତ୍ତ ସଂକଳ୍ପ କଲେ ।

ସର୍ପଦଂଶନ କରିବା ମାତ୍ର ସେ କ୍ରୋଧପରବଶ ହୋଇ ଅସ୍ତ୍ରଗ୍ରହଣ ପୂର୍ବକ ଆତ୍ମଶକ୍ତି ଅନୁସାରେ ସର୍ବଦା ସର୍ପଙ୍କୁ ସଂହାର କରନ୍ତି । ଏକଦା ରୁରୁ ମହଦ୍‌ବନରେ ପ୍ରବେଶ କରି ଦେଖିଲେ ଗୋଟାଏ ଡୁଣ୍ଡୁଭ ସେହି ସ୍ଥାନରେ ଶୟନ କରିଅଛି । ରୁରୁ କୁପିତ ହୋଇ ଯମଦଣ୍ଡସଦୃଶ ଦଣ୍ଡ ଉତ୍ତୋଳନ କରି ତାହାକୁ ବିନାଶ କରିବାକୁ ଅଭିଳାଷୀ ହେଲେ । ପରେ ଡୁଣ୍ଡୁଭ କହିଲା, ହେ ତପୋଧନ ! ଆମ୍ଭେ ଆପଣଙ୍କର କୌଣସି ଅପରାଧ କରିନାହୁଁ ; ଅତଏବ ଆପଣ କି ନିମିତ୍ତ କ୍ରୋଧପରତନ୍ତ୍ର ହୋଇ ଆମ୍ଭଙ୍କୁ ବିନାଶ କରିବାକୁ ଉଦ୍ୟତ ହେଉଅଛନ୍ତି ?

---

## ଦଶମ ଅଧ୍ୟାୟ

ରୁରୁ କହିଲେ, ହେ ଉରଗ ! ଗୋଟିଏ ସର୍ପ ଆମ୍ଭର ପ୍ରାଣସମା ଭାର୍ଯ୍ୟାକୁ ଦଂଶନ କରିଥିଲା । ଅତଏବ ଆମ୍ଭେ ଏହି ଘୋର ପ୍ରତିଜ୍ଞା କରିଅଛୁଁ ଯେ ଯେତେବେଳେ ଆମ୍ଭେ ଯେଉଁ ସର୍ପକୁ ଦେଖିବୁଁ, ତେତେବେଳେ ତାହାକୁ ସଂହାର କରିବୁଁ । ସେହି ହେତୁ ଆମ୍ଭେ ତୁମ୍ଭଙ୍କୁ ସଂହାର କରିବାକୁ ଇଚ୍ଛା କରୁଅଛୁଁ । ତୁମ୍ଭେ ବର୍ତ୍ତମାନ ପ୍ରାଣତ୍ୟାଗ କରିବ । ଡୁଣ୍ଡୁଭ କହିଲା, ହେ ବ୍ରହ୍ମନ୍ ! ଯେଉଁ ସବୁ ଭୁଜଙ୍ଗ ମନୁଷ୍ୟଙ୍କୁ ଦଂଶନ କରନ୍ତି ସେମାନେ ଅନ୍ୟ ଜାତି । ଅତଏବ ସର୍ପ ସାଦୃଶ୍ୟ ଦେଖି ଡୁଣ୍ଡୁଭଙ୍କୁ ବିନାଶ କରିବା ଆପଣଙ୍କର ଉଚିତ ନୁହେ । ଡୁଣ୍ଡୁଭମାନଙ୍କର ସୁଖ-ଭୋଗ ଓ ଲାଭର ବିଷୟ ଅନ୍ୟାନ୍ୟ ସର୍ପଙ୍କଠାରୁ ପୃଥକ୍, କିନ୍ତୁ ଅନର୍ଥ

ଘଟନା ଓ ଦୁଃଖଭୋଗ ଏକ ପ୍ରକାର ଅଟେ; ଅତଏବ ଧର୍ମଜ୍ଞ ହୋଇ ଡୁଣ୍ଡୁଭମାନଙ୍କୁ ବଧ କରିବା ଆପଣଙ୍କର ଉଚିତ ନୁହେଁ ।

ଉଗ୍ରଶ୍ରବା କହିଲେ, ହେ ତପୋଧନବୃନ୍ଦ ! ମହର୍ଷି ରୁରୁ ସେହି ଭୁଜଙ୍ଗର ଏହିରୂପ ବାକ୍ୟ ଶ୍ରବଣ କରି ତାହାକୁ ଭୟବିହ୍ୱଳ ବୋଧକରି ତାହାର ପ୍ରାଣ ବଧ କଲେ ନାହିଁ । ପରନ୍ତୁ ତାହାକୁ ସାନ୍ତ୍ୱନା ଦେଇ ପ୍ରାୟ ପଚାରିଲେ, ତୁମ୍ଭେ କିଏ ? କି କାରଣରୁ ଏରୂପ ବିହିଂସ୍ରାଙ୍ଗପ୍ରାପ୍ତ ହୋଇଅଛ ? ଆମ୍ଭଙ୍କୁ କହ । ଡୁଣ୍ଡୁଭ କହିଲା, ହେ ରୁରେ ! ପୂର୍ବେ ଆମ୍ଭେ ସହସ୍ରପାତ୍ ନାମରେ ଋଷି ଥିଲୁଁ । ଗୋଟିଏ ବ୍ରାହ୍ମଣର ଶାପରେ ଭୁଜଙ୍ଗତ୍ୱ ପ୍ରାପ୍ତ ହୋଇଅଛୁଁ । ରୁରୁ ବୋଇଲେ, ହେ ବ୍ରହ୍ମନ୍ ! ବ୍ରାହ୍ମଣ କି ନିମିତ୍ତ କୁପିତ ହୋଇ ତୁମ୍ଭଙ୍କୁ ଶାପ ପ୍ରଦାନ କଲେ ? ଆଉ କେତେଦିନ ଯାଏଁ ତୁମ୍ଭର ଏହି ଡୁଣ୍ଡୁଭ ଶରୀର ରହିବ ?

---

## ଅଧ୍ୟାୟ—୧୧

ଡୁଣ୍ଡୁଭ କହିଲା, ହେ ତପୋଧନଗଣ ! ପୂର୍ବକାଳରେ 'ଖଗମ' ନାମରେ ସତ୍ୟବାଦୀ ତପୋବଳ ସମ୍ପନ୍ନ ଆମ୍ଭର ଗୋଟିଏ ସଖା ଥିଲେ । ଏକଦା ସେ ଅଗ୍ନିହୋତ୍ର ଯାଗରେ ପ୍ରସକ୍ତ ଥାନ୍ତି, ଆମ୍ଭେ ବାଳକ ସ୍ୱଭାବ-ବଶତଃ କ୍ରୀଡ଼ା କରୁ କରୁ ଗୋଟିଏ ତୃଣର ସର୍ପ ନିର୍ମାଣ କରି ତାହାଙ୍କୁ ଭୟ ପ୍ରଦର୍ଶନ କରିଥିଲୁଁ । ତହିଁରେ ସେ ମୂର୍ଚ୍ଛାଗତ ହେଲେ । ଅନନ୍ତର ସେହି ସତ୍ୟବାଦୀ ବ୍ରତପରାୟଣ ତପୋଧନ ଚୈତନ୍ୟ ଲାଭ କରି ଆମ୍ଭଙ୍କୁ କୋପାନଳରେ ଭସ୍ମୀଭୂତ କଲା ପ୍ରାୟ ହୋଇ କହିଲେ, ସଖେ ! ତୁମ୍ଭେ ଆମ୍ଭଙ୍କୁ ବିଭୀଷିକା ଦେଖାଇବା ନିମିତ୍ତ ଯେପରି ବୀର୍ଯ୍ୟଶୂନ୍ୟ ଭୁଜଙ୍ଗମ ନିର୍ମାଣ କରିଅଛ, ଆମ୍ଭର ଅଭିଶାପରୁ ତୁମ୍ଭେ ତଦ୍ରୂପ ବୀର୍ଯ୍ୟଶୂନ୍ୟ ଭୁଜଙ୍ଗମ ହେବ । ହେ ତପୋଧନ ! ଆମ୍ଭେ ତାହାଙ୍କର ତପସ୍ୟାର ପ୍ରଭାବ ଜାଣୁଁ ; ଏହି ନିମିତ୍ତ ଆମ୍ଭେ ଅତିଶୟ ଉଦ୍‌ବିଗ୍ନ ହୃଦୟରେ ପ୍ରଣତିପୂର୍ବକ କୃତାଞ୍ଜଳି-ପୁଟରେ ତାହାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ବୋଇଲୁଁ, ହେ ବ୍ରହ୍ମନ୍ ! ଆମ୍ଭେ ସଖା ବୋଲି ପରିହାସରେ ଏପରି କଲୁଁ, ଏବେ ଆମ୍ଭଙ୍କୁ କ୍ଷମା

କରନ୍ତୁ ଓ ଏହି ଶାପ ପ୍ରତିନବୃତ୍ତ କରନ୍ତୁ । ସେହି ତପୋଧନ ଆମ୍ଭଙ୍କୁ ଅତିଶୟ ଉଦ୍‌ବିଗ୍ନଚିତ୍ତ ବିଲୋକନ କରି ସୁସମ୍ଭ୍ରାନ୍ତ ହୋଇ ବାରମ୍ବାର ଉଷ୍ଣ ନିଃଶ୍ୱାସ ପରିତ୍ୟାଗପୂର୍ବକ ଆମ୍ଭଙ୍କୁ କହିଲେ, ହେ ତପୋଧନ ! ଆମ୍ଭେ କଦାପି କୌଣସି କ୍ରମେ ମିଥ୍ୟା କଥା କହିନାହୁଁ, ଅତଏବ ଆମ୍ଭେ ଯାହା କହିଅଛୁ, ତାହାର ଅନ୍ୟଥା ହେବ ନାହିଁ । ହେ ଅନଘ ! ଆମ୍ଭେ ତୁମ୍ଭଙ୍କୁ ଯାହା କହିବୁଁ, ତୁମ୍ଭେ ଶୁଣ, ସେହି ବାକ୍ୟ ସର୍ବଦା ତୁମ୍ଭ ହୃଦୟରେ ଜାଗରୂକ ଥାଉ । ମହର୍ଷି ପ୍ରମତିଙ୍କର ଅତି ପବିତ୍ର ରୁରୁ ନାମରେ ଗୋଟିଏ ପୁତ୍ର ଜନ୍ମିବେ, ତାହାଙ୍କୁ ଦର୍ଶନ କଲାକ୍ଷଣି ତୁମ୍ଭର ଶାପମୋଚନ ହେବ । ଆପଣ ସେହି ପ୍ରମତିଙ୍କ ପୁତ୍ର ସୁବିଖ୍ୟାତ ରୁରୁ ଅଟନ୍ତି । ଅତଏବ ଆମ୍ଭେ ବର୍ତ୍ତମାନ ନିଜ ରୂପ ପରିଗ୍ରହ କରି ଆପଣଙ୍କୁ କିଛି ହିତକର ବାକ୍ୟ କହିବୁଁ ।

ସେହି ମହାଯଶା ବିପ୍ରର୍ଷି ଡୁଣ୍ଡୁଭରୂପ ପରିତ୍ୟାଗ କରି ପୁନର୍ବାର ନିଜ ଭାସ୍ୱର ରୂପ ପ୍ରାପ୍ତ ହେଲେ ଓ ଅନୁପମ ତେଜସ୍ୱୀ ରୁରୁଙ୍କୁ ଏହି କଥା କହିଲେ, ହେ ପ୍ରାଣିଗଣଙ୍କ ଶ୍ରେଷ୍ଠ ! ଅହିଂସା ପରମ ଧର୍ମ, ଅତଏବ ବ୍ରାହ୍ମଣର ଜୀବକୁଳ ହିଂସା କରିବା କଦାପି ଉଚିତ ନୁହେଁ । ଏହି ରୂପ ଶ୍ରୁତି ଅଛି ଯେ ବ୍ରାହ୍ମଣ ଏହି ସଂସାରରେ ଶାନ୍ତ ସ୍ୱଭାବ, ବେଦବେଦାଙ୍ଗ-ବେତ୍ତା ଓ ସର୍ବଭୂତଙ୍କର ଅଭୟପ୍ରଦ ହେବେ । ଅହିଂସା, ସତ୍ୟବାକ୍ୟ, କ୍ଷମା ଓ ବେଦାଭ୍ୟାସ ଏହି କେତୋଟି ବ୍ରାହ୍ମଣର ଧର୍ମ ବୋଲି ନିର୍ଣ୍ଣୀତ ହୋଇଅଛି । କ୍ଷତ୍ରିୟଙ୍କର ଯେଉଁ ଧର୍ମ, ତାହା ଆପଣଙ୍କର ଅଭୀଷ୍ଟ ନୁହେଁ । ଦଣ୍ଡଧାରଣ, ଉଗ୍ରତା ଓ ପ୍ରଜାପାଳନ ଏ ସବୁ କ୍ଷତ୍ରିୟର କାର୍ଯ୍ୟ । ହେ ଦ୍ୱିଜୋତ୍ତମ ରୁରେ ! ପୂର୍ବେ ଜନମେଜୟଙ୍କ ସର୍ପଯଜ୍ଞରେ ସର୍ପକୁଳର ବିନାଶ ଓ ସେହି ଯଜ୍ଞରେ ତପୋବୀର୍ଯ୍ୟସମ୍ପନ୍ନ, କ୍ଷମତାଶାଳୀ, ବେଦ-ବେଦାଙ୍ଗ ପାରଗ, ଦ୍ୱିଜଶ୍ରେଷ୍ଠ, ଆସ୍ତୀକ ମୁନିଙ୍କଠାରୁ ସେହି ସମସ୍ତ ଭୟଗ୍ରସ୍ତ ସର୍ପକୁଳର ପରିତ୍ରାଣ ବିବରଣ ଆମ୍ଭଠାରୁ ଶ୍ରବଣ କରନ୍ତୁ ।

---

## ଅଧ୍ୟାୟ—୧୨

ରୁରୁ କହିଲେ, ହେ ଦ୍ୱିଜସତ୍ତମ ! ସେହି ରାଜା ଜନମେଜୟ, ସର୍ପଯଜ୍ଞରେ କି ରୂପେ କି ନିମିତ୍ତ ସର୍ପଗଣଙ୍କୁ ବିନାଶ କଲେ, ଆଉ କି ନିମିତ୍ତ ଧୀମାନ୍ ଆସ୍ତୀକ ସର୍ପମାନଙ୍କୁ ରକ୍ଷା କରିଥିଲେ, ଆମ୍ଭେ ତାହା ସମସ୍ତ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ଋଷି କହିଲେ, ହେ ରୁରୋ ! ଆପଣ ଅତି ମହତ୍ ସମସ୍ତ ଆସ୍ତୀକ ଚରିତ ବ୍ରାହ୍ମଣଗଣଙ୍କ ମୁଖରୁ ଶ୍ରବଣ କରିବେ । ଏହା କହି ଅନ୍ତର୍ହିତ ହେଲେ ।

ଉଗ୍ରଶ୍ରବା କହିଲେ, ହେ ମୁନିଗଣ ! ମହର୍ଷି ରୁରୁ ସେହି ଅନ୍ତର୍ହିତ ତପୋଧନଙ୍କୁ ଅନ୍ୱେଷଣ କରୁଁ କରୁଁ ସମସ୍ତ ଅରଣ୍ୟ ପର୍ଯ୍ୟଟନ କଲେ । ପରିଶେଷରେ ଅତିଶୟ ଶ୍ରାନ୍ତ ହୋଇ ଭୂତଳରେ ପତିତ ହେଲେ । ତତ୍କାଳରେ ଋଷିଙ୍କର ସେହି ଅମୋଘ ବାକ୍ୟ ବାରମ୍ବାର ଭାବି ଅତିଶୟ ମୋହପ୍ରାପ୍ତ ଓ ବିଚେତନପ୍ରାୟ ହେଲେ । ତତ୍ପରେ ରୁରୁ ଚୈତନ୍ୟ ଲଭି ପିତାଙ୍କ ନିକଟକୁ ଆଗମନ କରି ସେହିସବୁ ବୃତ୍ତାନ୍ତ ତାହାଙ୍କଠାରେ ନିବେଦନ କଲେ । ପିତା ପୃଷ୍ଟ ହୋଇ ସେହି ସମଗ୍ର ଉପାଖ୍ୟାନ ବର୍ଣ୍ଣନ କଲେ ।

---

## ଅଧ୍ୟାୟ—୧୩

ଶୌନକ କହିଲେ, ହେ ସୂତନନ୍ଦନ ! ନୃପଶ୍ରେଷ୍ଠ ରାଜା ଜନମେଜୟ କି ନିମିତ୍ତ ସର୍ପଯଜ୍ଞଦ୍ୱାରା ସର୍ପକୁଳର ଅନ୍ତକ ହୋଇଥିଲେ ଓ କି କାରଣରୁ ଜିତେନ୍ଦ୍ରିୟବର ଦ୍ୱିଜମୁଖ୍ୟ ଆସ୍ତୀକ ପ୍ରଦୀପ୍ତ ହୁତାଶନରୁ ଭୁଜଙ୍ଗମାନଙ୍କୁ ମୁକ୍ତ କରିଥିଲେ, ସେହି ସକଳ ବୃତ୍ତାନ୍ତ ଆଦ୍ୟୋପାନ୍ତ ଯଥାର୍ଥରୂପେ ଅଶେଷ ପ୍ରକାରେ ବର୍ଣ୍ଣନ କର । ଯେଉଁ ରାଜା ସର୍ପସତ୍ର ଅନୁଷ୍ଠାନ କରିଥିଲେ, ସେ କାହାଙ୍କର ପୁତ୍ର ଓ ସେ ଦ୍ୱିଜବର କାହାଙ୍କର ସନ୍ତାନ, ଏ ସବୁ ତୁମ୍ଭେ ଆମ୍ଭ ନିକଟରେ କୀର୍ତ୍ତନ କର । ସୂତନନ୍ଦନ କହିଲେ, ହେ ବାଗ୍ମିପ୍ରବର ବିପ୍ର ! ଆମ୍ଭେ ଏହି ମହତ୍ ଆସ୍ତୀକୋପାଖ୍ୟାନ ସମ୍ପୂର୍ଣ୍ଣରୂପେ ଓ ଅଶେଷ ପ୍ରକାରେ ବର୍ଣ୍ଣନ କରୁଅଛୁଁ ଶ୍ରବଣ କରନ୍ତୁ ।

ଶୌନକ କହିଲେ, ହେ ସୂତନନ୍ଦନ ! ଯଶସ୍ୱୀ ପୁରାତନ ଋଷି ଦ୍ୱିଜବର ଆସ୍ତୀକଙ୍କର ସେହି ମନୋହର ଆଖ୍ୟାନକୁ ଆମ୍ଭେ ବିଶେଷରୂପେ ଶ୍ରବଣ କରିବାକୁ ଅଭିଳାଷ କରୁଅଛୁଁ । ଉଗ୍ରଶ୍ରବା କହିଲେ, ହେ ମୁନିବର ! ବ୍ରାହ୍ମଣମାନେ ଏହି ଇତିହାସକୁ ପୁରାଣ ବୋଲି କୀର୍ତ୍ତନ କରନ୍ତି । ପୂର୍ବେ ମେଧାବୀ ବ୍ୟାସଶିଷ୍ୟ ସୂତକୁଳପ୍ରସୂତ ଆମ୍ଭର ପିତା ଲୋମହର୍ଷଣ ନୈମିଷାରଣ୍ୟବାସୀ ବ୍ରାହ୍ମଣମାନଙ୍କୁ କୃଷ୍ଣଦ୍ୱୈପାୟନ ପ୍ରୋକ୍ତ ଏହି ଉପାଖ୍ୟାନ ଶ୍ରବଣ କରାଇଥିଲେ । ଆମ୍ଭେ ତାହାଙ୍କ ନିକଟରୁ ଯେରୂପ ଶ୍ରବଣ କରିଅଛୁଁ, ବର୍ତ୍ତମାନ ପଚାରିବାରୁ ଆମ୍ଭେ ସେହି ସର୍ବପାପବିନାଶନ ଆସ୍ତୀକୋପାଖ୍ୟାନ ଅବିକଳ ସେହିରୂପ ସବିଶେଷ ତୁମ୍ଭଙ୍କୁ କହିବୁଁ ।

ଆସ୍ତୀକଙ୍କ ପିତାଙ୍କ ନାମ ଜରତ୍କାରୁ । ସେ ବ୍ରହ୍ମାଙ୍କ ପ୍ରାୟ ପ୍ରଭାବଶାଳୀ, ବ୍ରହ୍ମଚାରୀ, ନିୟମିତାହାରୀ, ନିରନ୍ତର କଠୋର ତପସ୍ୟାରତ, ମହାତପସ୍ୱୀ, ଊର୍ଦ୍ଧ୍ୱରେତା, ଯାଯାବରପ୍ରଧାନ, ଧର୍ମଜ୍ଞ ଓ ବ୍ରତପରାୟଣ ଥିଲେ । ମହାଭାଗ ତପଃପ୍ରଭାବସମ୍ପନ୍ନ ସେହି ଜରତ୍କାରୁ ମୁନି କୌଣସି କୌଣସି ସମୟରେ ଯତ୍ରସାୟଂଗୃହ ହୋଇ ତୀର୍ଥସ୍ନାନ ଓ ତୀର୍ଥପର୍ଯ୍ୟଟନ କରି ସମସ୍ତ ପୃଥିବୀ ଭ୍ରମଣ କରୁଥିଲେ । ମହାତେଜା ଦୀପ୍ତ ହୁତାଶନସମ ପ୍ରଭାଶାଳୀ ସେହି ମୁନି ବାୟୁଭକ୍ଷ, ବିଷୟଭୋଗବିହୀନ, ବୀତନିଦ୍ର ଓ ଶୁଷ୍କକଳେବର ଇତସ୍ତତଃ ଗଳିତ ପତ୍ର ଭୋଜନ କରି ଅଶିକ୍ଷିତଚେତା ବ୍ୟକ୍ତିମାନଙ୍କର ଦୁଃସାଧ୍ୟ ବ୍ରତନିୟମ ଅନୁଷ୍ଠାନ କରୁଥିଲେ ।

କୌଣସି ସମୟରେ ଜରତ୍କାରୁ ମୁନି ପର୍ଯ୍ୟଟନ କରୁଁ କରୁଁ ସ୍ୱୀୟ ପୂର୍ବପୁରୁଷଙ୍କୁ ଊର୍ଦ୍ଧ୍ୱପଦ ଓ ଅଧଃଶିରା ହୋଇ ଏକ ମହାଗର୍ତ୍ତରେ ଲମ୍ବମାନ ଥିବାର ଦେଖିଲେ । ଜରତ୍କାରୁ ସେମାନଙ୍କୁ ପଚାରିଲେ, ହେ ମହାପୁରୁଷଗଣେ! ଆପଣମାନେ କିଏ ? ଏହି * ବୀରଣ ସ୍ତମ୍ଭର ମୂଳକୁ ଗୋଟିଏ ମୂଷିକ ପ୍ରାୟ ଭକ୍ଷଣ କରି ସାରିଲାଣି । ଆପଣମାନେ କି ହେତୁରୁ ତହିଁରେ ଓହଳି ହୋଇ-ଅଛନ୍ତି ?

* ଗର୍ତ୍ତଟି ଭୂଲୋକ; ଊର୍ଦ୍ଧ୍ୱପଦ ଅଧୋମୁଖ ଦ୍ୱାରା ବୁଝାଉଅଛି ଯେ ସେମାନେ ସ୍ୱର୍ଗରୁ ପଡ଼ିବା ଭୟରେ ତଦ୍ରୂପ ହୋଇଅଛନ୍ତି ; ମୂଷିକ ଦ୍ୱାରା କାଳ ବୁଝାଉଅଛି ।

ବୀରଣସ୍ତମ୍ଭ—ବେଣାମୋଟା ।

ପିତୃଗଣ କହିଲେ, ହେ ବ୍ରହ୍ମନ୍ ! ଆମ୍ଭେମାନେ ବ୍ରତପରାୟଣ ଯାଯାବର ନାମକ ମୁନି ଅଟୁଁ । ସନ୍ତାନ ଅଭାବରୁ ଆମ୍ଭେମାନେ ଅଳ୍ପଭାଗ୍ୟ । ଆମ୍ଭର ଜରତ୍କାରୁ ନାମରେ ଗୋଟିଏ ମନ୍ଦଭାଗ୍ୟ ସନ୍ତାନ ଅଛି । ସେହି ମୂଢ଼ମତି କେବଳ ତପସ୍ୟାରେ ରତ ଥାଏ । ପୁତ୍ରୋତ୍ପାଦନ ନିମିତ୍ତ ଦାର-ପରିଗ୍ରହ କରିବାକୁ ତାହାର ବାସନା ନାହିଁ, ଅତଏବ ସନ୍ତାନର ଅଭାବରୁ ଆମ୍ଭେମାନେ ଏହି ଗର୍ତ୍ତରେ ଲମ୍ବମାନ ରହିଅଛୁ । ଆମ୍ଭମାନଙ୍କର ନାଥ ଜରତ୍କାରୁ ଥାଉଁ ଥାଉଁ ଆମ୍ଭେମାନେ ଦୁଷ୍କୃତକାରୀପ୍ରାୟ ଅନାଥ ହୋଇ ରହିଅଛୁଁ । ହେ ସାଧୁଶ୍ରେଷ୍ଠ ! ତୁମ୍ଭେ କିଏ ? ଆମ୍ଭଙ୍କୁ ଦେଖି ବନ୍ଧୁପ୍ରାୟ ଶୋକ କରୁଅଛ । ହେ ବ୍ରହ୍ମନ୍ ! ତୁମ୍ଭେ କିଏ ? କି କାରଣରୁ ଏଠାରେ ଦଣ୍ଡାୟମାନ ହୋଇ ଶୋଚନୀୟ ଦଶାଗ୍ରସ୍ତ ଆମ୍ଭମାନଙ୍କୁ ଦେଖି ଶୋକ ପ୍ରକାଶ କରୁଅଛ ? ଏହା ଆମ୍ଭେମାନେ ଜାଣିବାକୁ ଇଚ୍ଛା କରୁଁ ।

ଜରତ୍କାରୁ କହିଲେ, ହେ ଋଷିଗଣ ! ଆମ୍ଭର ନାମ ଜରତ୍କାରୁ ; ଆପଣମାନେ ଆମ୍ଭର ପୂର୍ବପୁରୁଷ, ଏବେ କି କରିବାକୁ ହେବ, ଅବଧାନ କରନ୍ତୁ । ପିତୃଗଣ କହିଲେ, ବତ୍ସ ! ତୁମ୍ଭେ ଆପଣା ନିମିତ୍ତ ଓ ଆମ୍ଭମାନଙ୍କ ନିମିତ୍ତ, ଅଥବା କଲେ ଧର୍ମ ହେବ ଏହି ନିମିତ୍ତ ଆମ୍ଭମାନଙ୍କ ବଂଶରେ ସୁତୋତ୍ପାଦନ ବିଷୟରେ ଯତ୍ନବାନ୍ ହୁଅ ।

ହେ ତାତ ! ପୁତ୍ରବାନ୍ ବ୍ୟକ୍ତିମାନେ ଯେରୂପ ସଦ୍‌ଗତି ଲାଭ କରନ୍ତି, ଅନ୍ୟ ଲୋକେ ବହୁ ପୁଣ୍ୟଫଳ ଓ ଚିରସଞ୍ଚିତ ତପସ୍ୟାଦ୍ୱାରା ତାଦୃଶ ସଦ୍‌ଗତି ଲାଭ କରିବାକୁ ପାରନ୍ତି ନାହିଁ । ହେ ପୁତ୍ର ! ତୁମ୍ଭେ ଏହି କାରଣରୁ ଆମ୍ଭମାନଙ୍କର ନିୟୋଗାନୁସାରେ ଦାରପରିଗ୍ରହ ଓ ପୁତ୍ରୋ-ତ୍ପାଦନରେ ଯତ୍ନ ଓ ମନୋନିବେଶ କର, ଏତିକି ଆମ୍ଭର ପରମ ହିତକର ହେବ ।

ଜରତ୍କାରୁ କହିଲେ, ହେ ପିତୃଗଣ ! ଆମ୍ଭେ ଉପଭୋଗ ନିମିତ୍ତ ଦାରପରିଗ୍ରହ ଓ ଧନୋପାର୍ଜ୍ଜନ କରିବୁ ନାହିଁ; କେବଳ ଆପଣମାନଙ୍କର ହିତାର୍ଥ ଦାରପରିଗ୍ରହ କରିବୁଁ । କିନ୍ତୁ କନ୍ୟା ଯେବେ ମୋର ସମାନ ନାମ୍ନୀ ହେବ ଓ ତାହାର ବନ୍ଧୁମାନେ ଇଚ୍ଛାପୂର୍ବକ ଭିକ୍ଷାସ୍ୱରୂପ ଦାନ କରିବେ, ତେବେ ଏହି ନିୟମରେ ଆମ୍ଭେ କନ୍ୟା ଲାଭକରି ତାହାକୁ ବିଧିପୂର୍ବକ ବିବାହ କରିବୁଁ । ନ ହେଲେ ବିବାହ କରିବୁ ନାହିଁ । କିନ୍ତୁ ଆମ୍ଭେ ଦରିଦ୍ର ; କିଏ ଆମ୍ଭଙ୍କୁ କନ୍ୟାଦାନ କରିବେ ? ତେବେ ଯଦି କେହି

ଭିକ୍ଷାସ୍ୱରୂପ ଦାନ କରେ, ତେବେ ପରିଗ୍ରହ କରିବୁଁ । ହେ ପିତୃଗଣ ! ଉକ୍ତ ନିୟମରେ ଦାରପରିଗ୍ରହ କରିବାକୁ ନିରନ୍ତର ଯତ୍ନ କରିବୁଁ, ଏଥିର ଅନ୍ୟଥା କରିବୁ ନାହିଁ । ତଦ୍ଦ୍ୱାରା ଆପଣମାନଙ୍କ ଉଦ୍ଧାର ନିମିତ୍ତ ସନ୍ତାନୋତ୍ପତ୍ତି ହେବ ଓ ଆପଣମାନେ ଶାଶ୍ୱତ ସ୍ଥାନ ଲାଭ କରି ପ୍ରମୋଦରେ ରହିବା ହେବେ ।

---

## ଅଧ୍ୟାୟ—୧୪

ଉଗ୍ରଶ୍ରବା କହିଲେ, ହେ ମୁନିବର ! ଅନନ୍ତର ସେହି ବିପ୍ର ଦାରପରିଗ୍ରହ ନିମିତ୍ତ ସମସ୍ତ ଭୂମଣ୍ଡଳ ଭ୍ରମଣ କଲେ, କିନ୍ତୁ କୌଣସିଠାରେ ଭାର୍ଯ୍ୟାଲାଭ କରିପାରିଲେ ନାହିଁ । ଏକ ସମୟରେ ସେ ପିତୃଗଣଙ୍କ ବାକ୍ୟ ସ୍ମରଣ କରି ଅରଣ୍ୟରେ ପ୍ରବେଶ ପୂର୍ବକ କନ୍ୟାଭିକ୍ଷାର୍ଥୀ ହୋଇ ଉଚ୍ଚୈଃସ୍ୱରରେ 'କନ୍ୟା ଭିକ୍ଷା ଦିଅ' ବୋଲି ତିନୋଟି ଶବ୍ଦକୁ ରହି ରହି ଉଚ୍ଚାରଣ କଲେ । ତେତେବେଳେ ବାସୁକୀ ନିଜର ଭଗିନୀକୁ ତାହାଙ୍କୁ ଦେବାକୁ ଉଦ୍ୟତ ହେଲେ, କିନ୍ତୁ ସେ କନ୍ୟା ସମାନନାମ୍ନୀ ନ ଥିବାରୁ ତାକୁ ସେ ପରିଗ୍ରହ କଲେ ନାହିଁ । କନ୍ୟା ସ୍ୱନାମ୍ନୀ ହେବ ଓ ବିବାହ କରିବାକୁ ଉଦ୍ୟତ ହେବ, ତେବେ ବିବାହ କରିବୁଁ—ଏହି ଚିନ୍ତାରେ ଜରତ୍କାରୁ ମଗ୍ନ ହେଲେ । ପରେ ମହାପ୍ରାଜ୍ଞ ମହାତପା ଜରତ୍କାରୁ ବାସୁକୀଙ୍କୁ କହିଲେ, ହେ ଭୁଜଙ୍ଗମ ! ତୁମ୍ଭର ଏହି ଭଗିନୀଙ୍କ ନାମ କି, ସତ୍ୟ କରି କହ । ବାସୁକୀ କହିଲେ, ଆମ୍ଭର ଏହି ଅନୁଜାଙ୍କ ନାମ ଜରତ୍କାରୁ । ଆମ୍ଭେ ଏହି ସୁନ୍ଦରୀଙ୍କୁ ପ୍ରଦାନ କଲୁଁ, ଭାର୍ଯ୍ୟାର୍ଥ ଗ୍ରହଣ କରନ୍ତୁ । ହେ ଦ୍ୱିଜୋତ୍ତମ ! ଆମ୍ଭେ ଏହାଙ୍କୁ ଆପଣଙ୍କ ଲାଗି ଏତେକାଳ ରଖିଅଛୁଁ, ଏବେ ଗ୍ରହଣ କରନ୍ତୁ । ଏହା ବୋଲି ବାସୁକୀ ପରମ ସୁନ୍ଦରୀ ଭଗ୍ନୀଙ୍କୁ ପ୍ରଦାନ କଲେ । ଜରତ୍କାରୁ ମଧ୍ୟ ବିଧିବିହିତ ନିୟମାନୁସାରେ ତାହାଙ୍କର ପାଣିଗ୍ରହଣ କଲେ ।

---

## ଅଧ୍ୟାୟ—୧୫

ଉଗ୍ରଶ୍ରବା କହିଲେ, ହେ ବେଦଜ୍ଞଶ୍ରେଷ୍ଠ ! ପୂର୍ବେ ସର୍ପମାନଙ୍କର ମାତା ସର୍ପଙ୍କୁ ଶାପ ଦେଇଥିଲେ ଯେ ଜନମେଜୟଙ୍କ ଯଜ୍ଞରେ ବହ୍ନି ତୁମ୍ଭଙ୍କୁ ଭସ୍ମ କରିବ, ଭୁଜଗୋତ୍ତମ ବାସୁକୀ ସେହି ଅଭିଶାପର ଶାନ୍ତି ନିମିତ୍ତ ବ୍ରତପରାୟଣ ମହାତ୍ମା ଜରତ୍କାରୁ ଋଷିଙ୍କୁ ଭଗ୍ନୀ ସମ୍ପ୍ରଦାନ କଲେ । ସେ ମଧ୍ୟ ଯଥାବିଧାନରେ ତାହାଙ୍କୁ ବିବାହ କଲେ । ତାହାଙ୍କ ଗର୍ଭରେ ଆସ୍ତୀକ ନାମରେ ମହାମନା ଗୋଟିଏ ପୁତ୍ର ଜନ୍ମଗ୍ରହଣ କଲେ । ସେହି ସନ୍ତାନ ତପସ୍ୱୀ, ମହାତ୍ମା, ବେଦବେଦାଙ୍ଗ ପାରଗ, ସମସ୍ତ ପ୍ରାଣୀଙ୍କଠାରେ ସମାନାନୁରାଗୀ ଓ ପିତାମାତାଙ୍କର ଭୟବିନାଶକ ଥିଲେ । ଏ ରୂପ ଶୁଣା ଯାଇଅଛି ଯେ ବହୁକାଳପରେ ପାଣ୍ଡୁକୁଳୋଦ୍ଭବ ନରପତି ଜନମେଜୟ ସର୍ପସତ୍ର ନାମରେ ଗୋଟିଏ ମହାଯଜ୍ଞ ଅନୁଷ୍ଠାନ କରିଥିଲେ । ସର୍ପକୁଳ-ବିନାଶ ନିମନ୍ତେ ସେହି ଯଜ୍ଞ ଆରବ୍ଧ ହେବାରୁ ମହାତପା ଆସ୍ତୀକ ମାତୁଳମାନଙ୍କୁ ଓ ମାତୁଳପୁତ୍ରମାନଙ୍କୁ ଓ ଅନ୍ୟାନ୍ୟ ଭୁଜଙ୍ଗମାନଙ୍କୁ ତହିଁରୁ ମୁକ୍ତ କରିଥିଲେ ।

ହେ ବ୍ରହ୍ମନ୍ ! ବ୍ରତପରାୟଣ ଜରତ୍କାରୁ ସନ୍ତାନୋତ୍ପାଦନ ଓ ତପସ୍ୟାଦ୍ୱାରା ପିତୃଗଣଙ୍କୁ ଉଦ୍ଧାର କରିଥିଲେ । ସେ ପୁତ୍ରୋତ୍ପାଦନଦ୍ୱାରା ପିତୃଋଣ, ବିବିଧ ଯଜ୍ଞଦ୍ୱାରା ଦେବଋଣ ଓ ସ୍ୱାଧ୍ୟାୟଦ୍ୱାରା ଋଷିଙ୍କ ଋଣରୁ ମୁକ୍ତ ହୋଇଥିଲେ । ସେହି ଜରତ୍କାରୁ ବହୁବିଧ ଦକ୍ଷିଣାଯୁକ୍ତ ନାନାବିଧ ଯଜ୍ଞଦ୍ୱାରା ଦେବଗଣଙ୍କୁ, ବ୍ରହ୍ମଚର୍ଯ୍ୟଦ୍ୱାରା ଋଷିଗଣଙ୍କୁ ଓ ସନ୍ତାନୋତ୍ପାଦନ-ଦ୍ୱାରା ପିତୃଗଣଙ୍କୁ ପରିତୃପ୍ତ କରିଥିଲେ । ଆସ୍ତୀକ ନାମଧେୟ ପୁତ୍ର ଅତ୍ୟୁତ୍କୃଷ୍ଟ ଧର୍ମଲାଭ କରି ସେହି ଋଷି ଓ ପିତୃଋଣ ସ୍ୱରୂପ ଗୁରୁଭାରକୁ ଅପନୟନ କରି ବହୁକାଳ ଉତ୍ତାରୁ ପିତୃପିତାମହଗଣଙ୍କ ସହିତ ସ୍ୱର୍ଗ-ଲୋକକୁ ଗମନ କରିଥିଲେ । ହେ ଭୃଗୁକୁଳଶ୍ରେଷ୍ଠ ! ଆମ୍ଭେ ଏହି ଆସ୍ତୀକୋପାଖ୍ୟାନ ବର୍ଣ୍ଣନ କଲୁଁ । ଆଉ କି କହିବୁ ବୋଲିବା ହେଉନ୍ତୁ ।

# ଅଧ୍ୟାୟ—୧୭

ଶୌନକ କହିଲେ, ହେ ସୂତପୁତ୍ର ! ତୁମ୍ଭେ ସେହି ସାଧୁ ଓ ପଣ୍ଡିତ ଆସ୍ତୀକଙ୍କ ଉପାଖ୍ୟାନ ପୁନର୍ବାର ବିସ୍ତାରରୂପେ କୀର୍ତ୍ତନ କର, ତାହା ଶୁଣିବାକୁ ଆମ୍ଭମାନଙ୍କର ଅତିଶୟ ଅଭିଳାଷ ଜାତ ହୋଇଅଛି । ହେ ସୌମ୍ୟ ! ତୁମ୍ଭେ ମଧୁର ଓ ମନୋଜ୍ଞରୂପେ ଉପାଖ୍ୟାନମାନଙ୍କୁ କୀର୍ତ୍ତନ କରୁଅଛ । ତୁମ୍ଭର ପିତା ଯେରୂପ କହୁଥିଲେ, ତୁମ୍ଭେ ତଦ୍ରୂପ କହୁଅଛ । ଏଥିରେ ଆମ୍ଭେମାନେ ଅତି ପ୍ରୀତ ହେଉଅଛୁଁ । ତୁମ୍ଭର ପିତା ଆମ୍ଭମାନଙ୍କ ଶୁଶ୍ରୂଷାରେ ସର୍ବଦା ରତ ଥାନ୍ତି । ଅତଏବ ଏହି ଉପାଖ୍ୟାନକୁ ତୁମ୍ଭର ପିତା ଯେପରି କହୁଥିଲେ, ତୁମ୍ଭେ ସେହିପରି କହ ।

ଉଗ୍ରଶ୍ରବା କହିଲେ, ହେ ଆୟୁଷ୍ମନ୍ ! ଆମ୍ଭେ ଏହି ଆସ୍ତୀକୋପାଖ୍ୟାନ ପିତାଙ୍କଠାରୁ ଯେରୂପ ଶୁଣିଅଛୁ, ଆପଣଙ୍କ ନିକଟରେ ସେହିରୂପ ଅବିକଳ କହୁଅଛୁ । ପୂର୍ବେ ସତ୍ୟଯୁଗରେ ଦକ୍ଷପ୍ରଜାପତିଙ୍କର ଶୁଭଲକ୍ଷଣା ଦୁଇଗୋଟି କନ୍ୟା ଥିଲେ । ସେ ଦୁହେଁ ଅଲୌକିକ ରୂପବତୀ, ତାହାଙ୍କ ନାମ ବିନତା ଓ କଦ୍ରୁ । ସେ ଦୁଇଭଉଣୀ କଶ୍ୟପ ଋଷିଙ୍କର ଭାର୍ଯ୍ୟା । ପ୍ରଜାପତିଙ୍କ ସଦୃଶ ପ୍ରତାପଶାଳୀ ସେହି କଶ୍ୟପ ଋଷି ଦୁଇପତ୍ନୀଙ୍କ ପ୍ରତି ଅତିଶୟ ପ୍ରୀତ ଓ ହୃଷ୍ଟ ହୋଇ ଦୁହିଁଙ୍କୁ ବରଦାନ କରିବାକୁ ଅଙ୍ଗୀକାର କଲେ । ସେମାନେ ମଧ୍ୟ କଶ୍ୟପଙ୍କଠାରୁ ବର ପ୍ରାପ୍ତ ହେବାର ଶୁଣି ସମଧିକ ପ୍ରୀତ ଓ ହୃଷ୍ଟଚିତ୍ତ ହେଲେ । ପ୍ରଥମେ କଦ୍ରୁ ବର ପ୍ରାର୍ଥନା କଲେ, "ତୁଲ୍ୟତେଜସ୍ୱୀ ସହସ୍ରନାଗ ମୋର ପୁତ୍ର ହେଉନ୍ତୁ ।" ତତ୍ପରେ ବିନତା କହିଲେ, ବଳ, ତେଜ, ବପୁ ଓ ବିକ୍ରମରେ କଦ୍ରୁପୁତ୍ରଙ୍କଠାରୁ ଅଧିକ ହୋଇ ମୋର ଦୁଇଗୋଟି ପୁତ୍ର ହେଉନ୍ତୁ । କଶ୍ୟପ ବିନତାଙ୍କୁ ତାଙ୍କର ଅଭିଳଷିତ ଦ୍ୱିବିଧ ପୁତ୍ରଦ୍ୱୟ ଲାଭ ରୂପ ବର ପ୍ରଦାନ କଲେ । ବିନତା କଶ୍ୟପଙ୍କୁ "ଏହା ହେଉ" ବୋଲି କହି ପ୍ରାର୍ଥିତ ବର ଯଥାରୂପ ପାଇ ହୃଷ୍ଟ ହେଲେ । ବିନତା ସମଧିକ ବୀର୍ଯ୍ୟଶାଳୀ ପୁତ୍ରଦ୍ୱୟ ଲାଭକରି ଆପଣାକୁ କୃତକୃତ୍ୟ ମନେକଲେ । କଦ୍ରୁ ମଧ୍ୟ ତୁଲ୍ୟତେଜସ୍ୱୀ ସହସ୍ରପୁତ୍ର ଲାଭକରି ଆପଣାକୁ ଚରିତାର୍ଥ ମନେକଲେ । ଅନନ୍ତର ମହାତପା କଶ୍ୟପ ପତ୍ନୀଦ୍ୱୟଙ୍କୁ "ତୁମ୍ଭେମାନେ ଯତ୍ନପୂର୍ବକ ଗର୍ଭଧାରଣ କରିବ" ବୋଲି କହି ସ୍ୱୟଂ ଅରଣ୍ୟକୁ ଗମନ କଲେ ।

ଉଗ୍ରଶ୍ରବା କହିଲେ, ହେ ବିପ୍ରେନ୍ଦ୍ର ! ବହୁକାଳ ପରେ କଦ୍ରୁ ସହସ୍ରେ ଅଣ୍ଡ ଓ ବିନତା ଦୁଇ ଅଣ୍ଡ ପ୍ରସବ କଲେ । ପରିଚାରିକାମାନେ ଅତ୍ୟନ୍ତ ହୃଷ୍ଟ ହୋଇ ସେମାନଙ୍କର ସେହି ସବୁ ଅଣ୍ଡକୁ ଉଷ୍ଣବିଶିଷ୍ଟ ଭାଣ୍ଡ ମଧ୍ୟରେ ପଞ୍ଚଶତ ବର୍ଷ ସ୍ଥାପନ କଲେ । ପଞ୍ଚଶତ ବର୍ଷପରେ ଭାଣ୍ଡ ମଧ୍ୟରୁ କଦ୍ରୁ ପୁତ୍ରମାନେ ବହିର୍ଗତ ହେଲେ, କିନ୍ତୁ ବିନତାଙ୍କ ଅଣ୍ଡଦ୍ୱୟରୁ ପୁତ୍ର ନିର୍ଗତ ହେବାର ଦେଖାଗଲା ନାହିଁ । ପୁତ୍ରାର୍ଥିନୀ ତପସ୍ୱିନୀ ବିନତା ନିତାନ୍ତ ଲଜ୍ଜିତା ହୋଇ ଗୋଟିଏ ଅଣ୍ଡକୁ ଭେଦକଲେ ଓ ତହିଁରେ ଦେଖିଲେ ଯେ ପୁତ୍ରଟିର ଶରୀରର ପୂର୍ବାର୍ଦ୍ଧ ମାତ୍ର ସଗଠିତ ହୋଇଅଛି, ଅପରାର୍ଦ୍ଧ କିଛିମାତ୍ର ପ୍ରକାଶିତ ହୋଇନାହିଁ । ଏପରି ଶ୍ରବଣ କରାହୋଇଅଛି ଯେ ସେହି ପୁତ୍ର ଅତିଶୟ କ୍ରୁଦ୍ଧ ହୋଇ ଜନନୀକୁ ଶାପପ୍ରଦାନ କଲେ ଯେ, ମାତଃ ! ତୁମ୍ଭେ ଲୋଭର ବଶୀଭୂତ ହୋଇ ଯେଣୁ ଆମ୍ଭଙ୍କୁ ଅସମ୍ପୂର୍ଣ୍ଣ କଳେବର କଲ, ତେଣୁ ତୁମ୍ଭେ ଯାହା ସହିତ ସ୍ପର୍ଦ୍ଧା କରୁଅଛ, ତାହାର ଦାସୀ ସ୍ୱରୂପ ପଞ୍ଚଶତ ବର୍ଷ ରହିବ । ହେ ଜନନି ! ଯଦି ତୁମ୍ଭେ ଅପର ଅଣ୍ଡକୁ ଭେଦକରି ସେହି ଯଶସ୍ୱୀ ସନ୍ତାନକୁ ମୋ ପରି ଅଙ୍ଗହୀନ ବା ବିକଳାଙ୍ଗ ନ କର, ତେବେ ସେହି ପୁତ୍ର ତୁମ୍ଭର ଦାସୀତ୍ୱ ମୋଚନ କରିବ । ଯଦି ତୁମ୍ଭେ ଏହି ପୁତ୍ରର ବିଶିଷ୍ଟ ବଳ ବାଞ୍ଛା କର, ତେବେ ଧୈର୍ଯ୍ୟାବଲମ୍ବନ କରି ଏହାଙ୍କର ଜନ୍ମ ସମୟ ଆଉ ପଞ୍ଚଶତ ବର୍ଷର ପ୍ରତୀକ୍ଷା କର ।

ହେ ବ୍ରହ୍ମନ୍ ! ସେହି ପୁତ୍ର ବିନତାଙ୍କୁ ଏହି ପ୍ରକାର ଶାପପ୍ରଦାନ କରି ଅନ୍ତରୀକ୍ଷକୁ ଗମନ କରି ସୂର୍ଯ୍ୟଙ୍କ ରଥରେ ଅଧିଷ୍ଠିତ ହୋଇ ରହିଲେ । ଆଦିତ୍ୟ ତାହାଙ୍କର ସାରଥ୍ୟ କର୍ମ କଳ୍ପନା କରିଦେଲେ । ପ୍ରତ୍ୟହ ପ୍ରଭାତ ସମୟରେ ସେ ଅରୁଣରୂପେ ପରିଦୃଶ୍ୟମାନ ହୁଅନ୍ତି । ତଦନନ୍ତର ପନ୍ନଗାଶନ ପତଙ୍ଗରାଜ ଗରୁଡ଼ ମଧ୍ୟ ଯଥା ସମୟରେ ଜାତ ହେଲେ । ହେ ଭୃଗୁଶ୍ରେଷ୍ଠ ! ସେ ଜନ୍ମିବା ମାତ୍ର କ୍ଷୁଧିତ ହୋଇ ବିଧାତାଙ୍କ ବିହିତ ନିଜର ଭକ୍ଷ୍ୟଦ୍ରବ୍ୟ ଲାଭ ନିମିତ୍ତ ନିଜର ଜନନୀ ବିନତାଙ୍କୁ ପରିତ୍ୟାଗ କରି ନଭୋମଣ୍ଡଳକୁ ଗମନ କଲେ ।

# ଅଧ୍ୟାୟ --୧୬

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ଏହି ସମୟରେ କଦ୍ରୁ ଓ ବିନତା ଦୁଇ ଭଗିନୀ ବିଲୋକନ କଲେ ଯେ ଦେବତାମାନେ ଯେଉଁ ଅଶ୍ୱକୁ ପୂଜା କରନ୍ତି, ଯେଉଁ ସର୍ବୋତ୍କୃଷ୍ଟ ଅଶ୍ୱରତ୍ନ ଅମୃତ ମନ୍ଥନ କାଳରେ ଜାତ ହୋଇଥିଲା, ସେହି ଅମୋଘ ବଳଶାଳୀ, ଜଗତ ମଧ୍ୟରେ ଶ୍ରେଷ୍ଠ, ଜରାବିହୀନ , ସର୍ବଲକ୍ଷଣଭୂଷିତ ଉଚ୍ଚୈଃଶ୍ରବା ଅଶ୍ୱ ସେମାନଙ୍କ ନିକଟ ଦେଇ ଗମନ କରୁଅଛି ।

ଶୌନକ କହିଲେ, ହେ ସୂତନନ୍ଦନ ! ଦେବତାମାନେ କି ନିମିତ୍ତ କେଉଁ ସ୍ଥାନରେ ଅମୃତ ମନ୍ଥନ କରିଥିଲେ, ଯହିଁରୁ ସେହି ମହାଦ୍ୟୁତି ମହାବୀର୍ଯ୍ୟ ଅଶ୍ୱରାଜ ଜନ୍ମିଥିଲେ, ଆମ୍ଭଙ୍କୁ ବୋଲ ।

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ସୁମେରୁ ନାମରେ ଜ୍ୱଳନ୍ତ ତେଜୋରାଶି ସଦୃଶ ଗୋଟିଏ ଅତି ଉତ୍କୃଷ୍ଟ ପର୍ବତ ଅଛି, ଯାହାର କାଞ୍ଚନୋଜ୍ଜ୍ୱଳ ଶୃଙ୍ଗମାନେ ସ୍ୱକୀୟ ଜ୍ୟୋତିଦ୍ୱାରା ସୂର୍ଯ୍ୟଙ୍କ ପ୍ରଭାକୁ ଆକ୍ଷିପ୍ତ କରୁଅଛନ୍ତି ; ଯେଉଁ କାଞ୍ଚନମଣ୍ଡିତ ବିଚିତ୍ର ଶୋଭାଶାଳୀ ପର୍ବତରେ ଦେବତା ଓ ଗନ୍ଧର୍ବମାନେ ଅବସ୍ଥିତି କରନ୍ତି; ଅତି ମନୋହର ହୋଇଥିବାରୁ ଯାହାର ଶୋଭା ମନ ଅଥବା ବାକ୍ୟଦ୍ୱାରା ପରିମାଣ କରା ହୋଇ ନ ପାରେ ; ଯେଉଁଠାକୁ ଅଧର୍ମପରାୟଣ ବ୍ୟକ୍ତିମାନେ ଗତି କରି ପାରନ୍ତି ନାହିଁ ; ଯହିଁରେ ଅତି ଭୀଷଣ ହିଂସ୍ର ଜନ୍ତୁମାନେ ସତତ ବିଚରଣ କରନ୍ତି ; ଦିବ୍ୟ ଔଷଧି ଦ୍ୱାରା ଯେ ବିଶେଷରୂପେ ଦୀପିତ ହୁଅଇ ; ଯେଉଁ ମହାଗିରି ଉଚ୍ଚତ୍ୱ ଦ୍ୱାରା ଆକାଶକୁ ଆବରଣ କରି ରଖିଅଛି ; ଯେ ଇତର ଲୋକଙ୍କର ମନର ମଧ୍ୟ ଅଗୋଚର ; ନଦୀ ଓ ବୃକ୍ଷମାନେ ଯାହାର ଶୋଭାବର୍ଦ୍ଧନ କରୁଅଛନ୍ତି ; ଯହିଁରେ ନାନାବିଧ ସୁନ୍ଦର ବିହଙ୍ଗମଗଣ କଳରବ କରୁଅଛନ୍ତି ; ମହା-ତେଜସ୍ୱୀ ତପୋନିୟମସମ୍ପନ୍ନ ଦେବତାମାନେ ସେହି ପର୍ବତର ବହୁରତ୍ନ-ସମନ୍ୱିତ, ଶୁଭପ୍ରଦ, ଆକାଶସଦୃଶ ବିସ୍ତୀର୍ଣ୍ଣ ଶୃଙ୍ଗରେ ସମାଗତ ଓ ଆସୀନ ହୋଇ ଅମୃତ ଲାଭ ନିମିତ୍ତ ମନ୍ତ୍ରଣା କରିବାକୁ ଆରମ୍ଭ କଲେ । ଦେବତା-ମାନେ ଚିନ୍ତାକୁଳିତ ହୋଇ ମନ୍ତ୍ରଣା କରୁଅଛନ୍ତି, ଏମନ୍ତ ସମୟରେ ନାରାୟଣ ବ୍ରହ୍ମାଙ୍କୁ କହିଲେ, ହେ ପିତାମହ ! ଦେବଗଣ ଓ ଅସୁରଗଣ

ମିଳିତ ହୋଇ ସମୁଦ୍ରକୁ କଳସ କରି ମନ୍ଥନ କରନ୍ତୁ । ମହୋଦଧି ମଥିତ ହେଲେ ତହିଁରୁ ଅମୃତ ଉତ୍ପନ୍ନ ହେବ । ଦେବତାମାନେ ସମସ୍ତ ଔଷଧୀ ଓ- ରତ୍ନ ପ୍ରାପ୍ତ ହୋଇ ସୁଦ୍ଧା ସାଗରକୁ ମନ୍ଥନ କରିବେ, ପରିଶେଷରେ ଅମୃତ ଲାଭ ହେବ ।

---

## ଅଧ୍ୟାୟ—୧୮

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ଅନନ୍ତର ଦେବତାମାନେ ସେହି ଅତ୍ୟୁନ୍ନତ ଶୃଙ୍ଗସମୂହଶୋଭିତ, ଲତାଜାଲସମାକୀର୍ଣ୍ଣ ନାନା ବିହଙ୍ଗନିନାଦିତ, ନାନାବିଧ ହିଂସ୍ରଜନ୍ତୁସମାକୁଳ, ଦେବ-କିନ୍ନର- ଅପ୍ସରାଗଣ ନିଷେବିତ, ଏକାଦଶ ସହସ୍ର ଯୋଜନ ସମୁନ୍ନତ ଓ ଭୂମଧ୍ୟରେ ଏକାଦଶ ସହସ୍ର ଯୋଜନ ପ୍ରୋଥିତ ପର୍ବତବରକୁ ଉତ୍ତୋଳନ କରିବାକୁ ଅସମର୍ଥ ହୋଇ ଏକତ୍ରୋପବିଷ୍ଟ ବିଷ୍ଣୁ ଓ ବ୍ରହ୍ମାଙ୍କ ସମୀପକୁ ଗମନ କରି କହିଲେ, ହେ ବ୍ରହ୍ମା ! ହେ ବିଷ୍ଣୁ ! ଆପଣମାନେ ମନ୍ଦରୋଦ୍ଧରଣ ବିଷୟରେ ସୁଯୁକ୍ତି ପ୍ରଦାନ କରନ୍ତୁ ଓ ଆମ୍ଭମାନଙ୍କ ହିତାର୍ଥ ସ୍ୱୟଂ ତଦ୍ ବିଷୟରେ ଯତ୍ନବାନ୍ ହୁଅନ୍ତୁ । ହେ ଭାର୍ଗବ ! ଅମେୟାତ୍ମା କମଳନେତ୍ର ବିଷ୍ଣୁ ବ୍ରହ୍ମାଙ୍କ ସହିତ 'ତଥାସ୍ତୁ' ବୋଲି ସ୍ୱୀକାର କରି ଫଣୀନ୍ଦ୍ରଙ୍କୁ ତଦ୍ବିଷୟରେ ନିଯୋଗ କଲେ ।

ତଦନନ୍ତର ମହାବୀର୍ଯ୍ୟଶାଳୀ ଅନନ୍ତ, ବ୍ରହ୍ମା ଓ ବିଷ୍ଣୁଙ୍କ ବାକ୍ୟରେ ପ୍ରୋତ୍ସାହିତ ହୋଇ ଉତ୍ଥାନପୂର୍ବକ ବନ ଓ ବନବାସୀଙ୍କ ସହିତ ସେହି ପର୍ବତରାଜକୁ ବଳପୂର୍ବକ ଉନ୍ମୂଳିତ କଲେ । ପରେ ଦେବଗଣ ବାସୁକିଙ୍କ ସମଭିବ୍ୟାହାରରେ ସମୁଦ୍ର ନିକଟରେ ଉପସ୍ଥିତ ହୋଇ କହିଲେ, ହେ ରତ୍ନାକର ! ଆମ୍ଭେମାନେ ଅମୃତ ନିମିତ୍ତ ତୁମ୍ଭର ଜଳ ମନ୍ଥନ କରିବୁଁ । ସମୁଦ୍ର କହିଲେ,ଯଦି ତହିଁରେ ଆମ୍ଭର ଅଂଶ ରହିବ,ତେବେ ଆମ୍ଭେ ମନ୍ଦର ବିଲୋଡ଼ନଜନିତ ବିପୁଳ ମର୍ଦ୍ଦନ ସହ୍ୟ କରିବୁଁ । ତତ୍ପରେ ସୁରାସୁରଗଣ କୂର୍ମରାଜଙ୍କୁ କହିଲେ, ହେ କୂର୍ମରାଜ ! ସମୁଦ୍ର ମଧ୍ୟରେ ତୁମ୍ଭଙ୍କୁ ଏହି ଗିରିବରର ଆଧାର ହେବାକୁ ହେବ । କୂର୍ମରାଜ ତଥାସ୍ତୁ ବୋଲି ନିଜ

ପୃଷ୍ଠ ଦେଖାଇଦେଲେ । କୂର୍ମରାଜଙ୍କ ପୃଷ୍ଠସ୍ଥିତ ସେହି ମନ୍ଦର ପର୍ବତକୁ ଇନ୍ଦ୍ର ଯନ୍ତ୍ରଦ୍ୱାରା ପରିଗୃହୀତ କଲେ ।

ଅନନ୍ତର ଦେବତାମାନେ ମନ୍ଦର ଅଚଳକୁ ମନ୍ଥନଦଣ୍ଡ ଓ ବାସୁକିଙ୍କୁ ରଜ୍ଜୁ କରି ଅମ୍ଭୋନିଧି ସମୁଦ୍ରକୁ ମନ୍ଥନ କରିବାକୁ ଆରମ୍ଭ କଲେ । ହେ ବ୍ରହ୍ମନ୍ ! ମହାବଳ ଅସୁରମାନେ ନାଗରାଜଙ୍କ ମୁଖଭାଗ ଧାରଣ କଲେ ଓ ଦେବତାମାନେ ମିଳିତ ହୋଇ ତାହାଙ୍କର ପୁଚ୍ଛଦେଶ ଧାରଣ କରି ରହିଲେ । ଭଗବାନ୍ ଅନନ୍ତଦେବ ନାରାୟଣଙ୍କ ସ୍ୱରୂପ; ଏହି ନିମିତ୍ତ ନାରାୟଣ ତାହାଙ୍କର ମସ୍ତକ ଧାରଣ କରି ପୁନଃ ପୁନଃ ଉତ୍କ୍ଷିପ୍ତ କରି ଭୂମିରେ ନିପାତିତ କଲେ । ଅନନ୍ତର ଦେବତାମାନେ ବାସୁକିଙ୍କୁ ବଳପୂର୍ବକ ଆକର୍ଷଣ କରିବାରୁ ତାହାଙ୍କ ମୁଖରୁ ବାରମ୍ବାର ଧୂମ ଓ ଅଗ୍ନିଶିଖା ସହିତ ଶ୍ୱାସବାୟୁ ବିନିର୍ଗତ ହେଲା ।

ସେହି ଧୂମରାଶି ବିଦ୍ୟୁଦ୍‌ବିଶିଷ୍ଟ ମେଘମାଳାରୂପେ ପରିଣତ ହୋଇ ଶ୍ରମସନ୍ତାପକର୍ଷିତ ଦେବତାମାନଙ୍କ ଉପରେ ବାରିବର୍ଷଣ କଲା ଓ ସେହି ଗିରିବରର ଶୃଙ୍ଗପ୍ରାନ୍ତରୁ ପୁଷ୍ପବୃଷ୍ଟି ସୁରାସୁରଗଣଙ୍କ ଉପରେ ବିକୀର୍ଣ୍ଣ ହେଲା ।

ସେହି ସମୟରେ ଦେବ ଓ ଦାନବଙ୍କ କର୍ତ୍ତୃକ ମନ୍ଦର ଘୂର୍ଣିତ ହେବାରୁ ମଥ୍ୟମାନ ସାଗରମଧ୍ୟରୁ ମହାମେଘ ଗର୍ଜ୍ଜନତୁଲ୍ୟ ଅତି ଭୀଷଣ ଶବ୍ଦ ସମୁତ୍ଥିତ ହେଲା । ସେହି ଲବଣ ଜଳଧିରେ ମହାଯାଦ ଶତ ଶତ ଜଳଚର ମହାଗିରିଦ୍ୱାରା ନିଷ୍ପିଷ୍ଟ ହୋଇ ଲୟପ୍ରାପ୍ତ ହେଲେ ଓ ପାତାଳ ତଳବାସୀ ବରୁଣଲୋକସ୍ଥ ବିବିଧ ପ୍ରାଣିଗଣ ସେହି ମନ୍ଦର ମହୀଧରଦ୍ୱାରା ବିଲୀନ ହେଲେ । ସେହି ମହାଗିରି ନିରନ୍ତର ସଞ୍ଚାଳିତ ହେବାରୁ ବିହଙ୍ଗ-ରାଜ ସହିତ ମହାତରୁ ସମସ୍ତ ପରସ୍ପର ସଂଘର୍ଷିତ ହୋଇ ଶିଖର ଦେଶରୁ ନିପତିତ ହେଲେ । ନୀଳ ନୀରଦ ଯେପରି ସୌଦାମିନୀ ଦାମଦ୍ୱାରା ଆବୃତ ହୁଅଇ, ତଦ୍ରୂପ ବୃକ୍ଷସଂଘର୍ଷଣଜନିତ ବୈଶ୍ୱାନର ବାରମ୍ବାର ପ୍ରଜ୍ୱଳିତ ହୋଇ ଆପଣାର ଶିଖାସମୂହଦ୍ୱାରା ମନ୍ଦର ପର୍ବତକୁ ଆବରଣ କଲା ଓ ପର୍ବତସଞ୍ଚାରୀ କରିଯୂଥ ଓ ଗୁହାବିନିର୍ଗତ ସିଂହମାନଙ୍କୁ ଓ ଅପରାପର ବହୁବିଧ ପ୍ରାଣିମାନଙ୍କୁ ଗତଜୀବିତ ଓ ଭସ୍ମୀଭୂତ କଲା । ତତ୍କାଳରେ ଦେବରାଜ ଇନ୍ଦ୍ର ମେଘସମ୍ଭୂତ ସଲିଳଦ୍ୱାରା ସେହି ଦାହକାରୀ ଅଗ୍ନିଶିଖା-ମାନଙ୍କୁ ସର୍ବତୋଭାବେ ନିର୍ବାପିତ କଲେ ।

ମହାବୃକ୍ଷବୃନ୍ଦର ବିବିଧ ପ୍ରକାର ନିର୍ଯ୍ୟାସ ଓ ଅନେକ ଔଷଧି-ମାନଙ୍କର ରସ ସମୁଦ୍ରଜଳରେ ନିଃସୃତ ହୋଇପଡ଼ିଲା । ସେହି ସବୁ ଦ୍ରୁମୌଷଧିର ଅମୃତ-ବୀର୍ଯ୍ୟଶାଳୀ-ରସୋତ୍ତମ-ସମ୍ଭୂତ ଦୁଗ୍ଧର ଓ ସୁବର୍ଣ୍ଣମୟ-ପର୍ବତସ୍ଥ-ଅଲୌକିକ-ପ୍ରଭାବ ନାନାଜାତୀୟ ମଣି-ନିଃସୃତ-ଜଳର ପ୍ରଭାବରୁ ଦେବତାମାନେ ଅମରତ୍ୱ ଲାଭକଲେ । ସେହି ସାଗରବାରି ନାନାପ୍ରକାର ରସ ସହିତ ମିଶ୍ରିତ ହୋଇ ଦୁଗ୍ଧରୂପରେ ପରିଣତ ହେଲା ଓ ସେହି ଦୁଗ୍ଧରୁ ଘୃତ ଉତ୍ପନ୍ନ ହେଲା ।

ଅନନ୍ତର ଦେବତାମାନେ ସୁଖାସୀନ ବରଦାତା ବ୍ରହ୍ମାଙ୍କୁ କହିଲେ, ହେ ବ୍ରହ୍ମନ୍ ! ନାରାୟଣଙ୍କୁ ଛାଡ଼ି ଆଉ ସମସ୍ତ ଦେବ ଓ ଦାନବ ଶ୍ରାନ୍ତ ହୋଇଅଛନ୍ତି । ବହୁକାଳରୁ ସମୁଦ୍ରମନ୍ଥନ ଆରବ୍ଧ ହୋଇଅଛି, ଅଦ୍ୟାବଧି ସେହି ଅମୃତ ଜାତ ହେଲା ନାହିଁ । ତହିଁରେ ବ୍ରହ୍ମା ନାରାୟଣଙ୍କୁ କହିଲେ, ହେ ଭଗବନ୍ ! ଆପଣ ଏମାନଙ୍କର ବଳବିଧାନ କରନ୍ତୁ, ଆପଣ ଏ ବିଷୟରେ ପରମଗତି । ବିଷ୍ଣୁ କହିଲେ, ହେ ବ୍ରହ୍ମନ୍ ! ଯେଉଁମାନେ ଏ କର୍ମରେ ନିଯୁକ୍ତ ଅଛନ୍ତି, ଆମ୍ଭେ ସେମାନଙ୍କୁ ବଳପ୍ରଦାନ କରୁଅଛୁଁ । ସେମାନେ କଳଶରୂପ ସମୁଦ୍ରକୁ ମନ୍ଦରପର୍ବତଚାଳନାଦ୍ୱାରା ଆଲୋଡ଼ିତ କରନ୍ତୁ ।

ଉଗ୍ରଶ୍ରବା କହିଲେ, ହେ ମୁନିଶ୍ରେଷ୍ଠ ! ଦେବ ଓ ଦାନବବୃନ୍ଦ ନାରାୟଣଙ୍କ ବାକ୍ୟ ଶ୍ରବଣରେ ବଳବାନ୍ ଓ ମିଳିତ ହୋଇ ସାଗରର ସେହି ଘୃତକୁ ପୁନର୍ବାର ଅତିଶୟ ଆଲୋଡ଼ିତ କରିବାରେ ପ୍ରବୃତ୍ତ ହେଲେ । ପରେ ମଥ୍ୟମାନ ସମୁଦ୍ରରୁ ଶତସହସ୍ର କିରଣ ବିରାଜିତ, ପ୍ରସନ୍ନମୂର୍ତ୍ତି, ଶୀତାଂଶୁ, ଅତ୍ୟୁଜ୍ଜ୍ୱଳ ଚନ୍ଦ୍ର ଉତ୍ପନ୍ନ ହେଲେ । ଅନନ୍ତର ଶ୍ୱେତ ସରୋଜବାସିନୀ ଲକ୍ଷ୍ମୀ, ପରେ ସୁରାଦେବୀ, ତତ୍ପରେ ଶ୍ୱେତବର୍ଣ୍ଣ ଅଶ୍ୱ, ତଦନନ୍ତର ସେହି ଘୃତରୁ ନାରାୟଣଙ୍କ ବକ୍ଷସ୍ଥଳସ୍ଥ କୌସ୍ତୁଭ ସମ୍ଭୂତ ହେଲା । ଲକ୍ଷ୍ମୀ, ସୁରା, ଚନ୍ଦ୍ର ଓ ମନୋଜବ ଅଶ୍ୱ, ସୂର୍ଯ୍ୟଙ୍କ ଗମନାଗମନ ପଥ ଦେଇ, ଯେଉଁ ସ୍ଥାନରେ ଦେବତାମାନେ ବାସ କରନ୍ତି, ସେହି ସ୍ଥାନକୁ ଗଲେ । ଅନନ୍ତର ମୂର୍ତ୍ତିମାନ୍ ଦେବତା ସ୍ୱରୂପ ଧନ୍ୱନ୍ତରି ଅମୃତପୂର୍ଣ୍ଣ ଶ୍ୱେତବର୍ଣ୍ଣ କମଣ୍ଡଳୁ ଧାରଣ କରି ଉତ୍ଥିତ ହେଲେ ।

ଦାନବମାନେ ସମସ୍ତେ ଏହି ପରମାଦ୍ଭୁତ ବ୍ୟାପାର ଦୃଷ୍ଟି-ଗୋଚର କରି "ଏ ଆମ୍ଭର, ଏ ଆମ୍ଭର" ବୋଲି କହିବାରୁ ଅମୃତ

ନିମିତ୍ତ ମହାକୋଳାହଳ ଉପସ୍ଥିତ ହେଲା । ଅନନ୍ତର ଶ୍ୱେତବର୍ଣ୍ଣ ଚତୁର୍ଦ୍ଦନ୍ତ-ଶୋଭିତ ମହାକାୟ ଐରାବତ ନାମରେ ଗୋଟିଏ କରିବର ଉତ୍ପନ୍ନ ହେଲେ; ଦେବରାଜ ଇନ୍ଦ୍ର ତାହାଙ୍କୁ ଧରିଲେ । ଅତିଶୟ ମନ୍ଥନ କରିବାରୁ ତତ୍ପରେ କାଳକୂଟ ଜାତ ହୋଇ ଓ ସଧୂମ ଅନଳ ପ୍ରାୟ ପ୍ରଜ୍ୱଳିତ ହୋଇ ଜଗତକୁ ଆବୃତ କଲା । ତାହାର ଗନ୍ଧ ଆଘ୍ରାଣ କରି ତିନିଲୋକ ମୋହିତ ହୋଇ ପଡ଼ିଲେ । ସେହି ସମୟରେ ବ୍ରହ୍ମାଙ୍କ ବାକ୍ୟରେ ମନ୍ତ୍ରମୂର୍ତ୍ତି ମହେଶ୍ୱର ଲୋକରକ୍ଷାର୍ଥ ସେହି ବିଷପାନ କରି ନିଜ କଣ୍ଠରେ ଧାରଣ କଲେ । ତଦବଧି ସେ ନୀଳକଣ୍ଠ ନାମରେ ବିଖ୍ୟାତ ହେଲେ ।

ଦାନବମାନେ ଏହି ଅଦ୍ଭୁତ ବ୍ୟାପାର ଦର୍ଶନ କରି ହତାଶ ହେଲେ ଓ ଅମୃତ ଓ ଲକ୍ଷ୍ମୀଙ୍କ ନିମିତ୍ତ ଅତିଶୟ ଶତ୍ରୁତାଚରଣ କଲେ । ଅନନ୍ତର ନାରାୟଣମୋହିନୀ ମାୟାକୁ ଅବଲମ୍ବନ ଓ ଅଦ୍ଭୁତ ସ୍ତ୍ରୀ ରୂପ ଧାରଣ କରି ଦାନବମାନଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ମୂଢ଼ମତି ଦାନବ ଓ ଦୈତ୍ୟମାନେ ଅମୃତକୁ ସେହି ରମଣୀଙ୍କୁ ପ୍ରଦାନ କଲେ ।

---

## ଅଧ୍ୟାୟ—୧୯

ଉଗ୍ରଶ୍ରବା କହିଲେ, ହେ ମୁନିବର ! ଅନନ୍ତର ଦୈତ୍ୟ ଓ ଦାନବଗଣ ମିଳିତ ହୋଇ ଅଙ୍ଗରେ ଉତ୍କୃଷ୍ଟ କବଚ ଧାରଣ ଓ ନାନାବିଧ ଅସ୍ତ୍ରସବୁ ଗ୍ରହଣ କରି ଦେବତାମାନଙ୍କ ଅଭିମୁଖକୁ ଧାବମାନ ହେଲେ । ତାହା ଦେଖି ବୀର୍ଯ୍ୟଶାଳୀ ଭଗବାନ ବିଷ୍ଣୁ ନରଙ୍କ ସହିତ ହୋଇ ଦୈତ୍ୟେନ୍ଦ୍ରମାନଙ୍କ ନିକଟରୁ ସେହି ଅମୃତକୁ ହରଣ କଲେ । ସେହି ତୁମୁଳ ସମ୍ଭ୍ରମରେ ଦେବତାମାନେ ବିଷ୍ଣୁଙ୍କ ନିକଟରୁ ଅମୃତ ପ୍ରାପ୍ତ ହୋଇ ପାନ କଲେ । ଦେବଗଣ ସେହି ଅଭିଲଷିତ ଅମୃତକୁ ପାନ କରିବା ସମୟରେ ରାହୁ ନାମରେ ଗୋଟିଏ ଦାନବ ଦେବରୂପକୁ ଧାରଣ କରି ଅମୃତ ପାନ କଲା । ସେହି ଦାନବର କଣ୍ଠଦେଶ ପର୍ଯ୍ୟନ୍ତ ଅମୃତ ଯାଇ-ଅଛି, ଏମନ୍ତ ସମୟରେ ଦେବତାଙ୍କ ହିତ କାମନା କରି ଚନ୍ଦ୍ର ଓ ସୂର୍ଯ୍ୟ ଦୁହେଁ ସେ ବିଷୟ କହିଦେଲେ । ତହିଁରେ ଚକ୍ରଧର ବିଷ୍ଣୁ ଚକ୍ରଦ୍ୱାରା ବଳପୂର୍ବକ ଅମୃତପାୟୀ ସେହି ଦୈତ୍ୟର ଅଳଙ୍କୃତ ମସ୍ତକକୁ ଛେଦନ

କଲେ । ଦାନବର ସେହି ଗିରିଶୃଙ୍ଗତୁଲ୍ୟ ଚକ୍ରଚ୍ଛିନ୍ନ ବିପୁଳ ମସ୍ତକ ଆକାଶକୁ ଛୁଇଁକି ଉତ୍ଥିତ ହୋଇ ଅତି ଭୟଙ୍କର ଶବ୍ଦ କଲା । ଦୈତ୍ୟର ସେହି କବନ୍ଧ ଭୂତଳରେ ପତିତ ଓ ଲୁଣ୍ଠିତ ହୋଇ ପର୍ବତ, ବନ ଓ ଦ୍ୱୀପ ସହିତ ପୃଥିବୀକୁ କମ୍ପିତ କଲା । ତଦବଧି ଚନ୍ଦ୍ର ସୂର୍ଯ୍ୟ ଦୁହିଁଙ୍କ ସହିତ ରାହୁମୁଖର ଚିରକାଳ ନିମିତ୍ତ ବିଷମ ବୈରିଭାବ ଜନ୍ମିଲା । ଏହି କାରଣରୁ ସେ ଅଦ୍ୟାପି ଦୁହିଙ୍କୁ ଗ୍ରାସ କରଇ । ଭଗବାନ ବିଷ୍ଣୁ ଅନୁପମ ନାରୀରୂପ ପରିତ୍ୟାଗ କରି ନାନାବିଧ ଭୀଷଣ ଅସ୍ତ୍ରଦ୍ୱାରା ପ୍ରକମ୍ପିତ କଲେ ।

ଅନନ୍ତର ଲବଣସମୁଦ୍ରତଟରେ ସୁରାସୁରଙ୍କର ଘୋରତର ବିପୁଳ ସଂଗ୍ରାମ ଆରମ୍ଭ ହେଲା । ତତ୍କାଳରେ ସହସ୍ର ସହସ୍ର ତୀକ୍ଷଣଧାର ବିପୁଳ ପ୍ରାସ, ସୁତୀକ୍ଷ୍ଣାଗ୍ର ତୋମର ଓ ଅନ୍ୟାନ୍ୟ ନାନାପ୍ରକାର ଅସ୍ତ୍ରମାନ ପତିତ ହେଲା । ପରେ ଦାନବମାନଙ୍କ ମଧ୍ୟରେ କେହି କେହି ଚକ୍ରଦ୍ୱାରା ବିଦୀର୍ଣ୍ଣ ହୋଇ ବହୁଳ ରୁଧିର ବମନ କରି କରି, କେହି କେହି ଖଡ୍ଗ ଦ୍ୱାରା ଛିନ୍ନ ହୋଇ ରୁଧିର ବମନ କରି କରି, କେହି ଅବା ଶକ୍ତିଦ୍ୱାରା ବିଦାରିତ ହୋଇ ଶୋଣିତ ବମନ କରି କରି, କେହି କେହି ଅବା ଗଦାଦ୍ୱାରା ଭଗ୍ନକଳେବର ହୋଇ ରକ୍ତବମନ କରି କରି ଧରଣୀ-ତଳରେ ନିପତିତ ହେଲେ ।

ତତ୍କାଳରେ ଦାନବମାନଙ୍କର ତପ୍ତକାଞ୍ଚନପ୍ରଭ କୁସୁମଦାମ-ସୁଶୋଭିତ ମସ୍ତକମାନ ନିଦାରୁଣ ପଟ୍ଟିଶ ଦ୍ୱାରା ଛିନ୍ନ ହୋଇ ନିରନ୍ତର ଭୂତଳରେ ପତିତ ହେଲା । ସମରନିହତ ମହାସୁରକୁଳ ରୁଧିରାକ୍ତ କଳେବର ହୋଇ ଧାତୁରାଗରଞ୍ଜିତ ଗିରିଶୃଙ୍ଗପ୍ରାୟ ଶୟାନ ରହିଲେ । ଆହତ ଲୋହିତବର୍ଣ୍ଣ ହେବାବେଳେ ଶସ୍ତ୍ରଦ୍ୱାରା ପରସ୍ପର ଛେଦନକାରୀ ଦେବ-ଦାନବମାନଙ୍କ ଅସଂଖ୍ୟ ହାହାକାର ଉତ୍ଥିତ ହେଲା । ତୀକ୍ଷ୍ଣ ଆୟସ ପରିଘ ଆଘାତ କରିବାଦ୍ୱାରା ଦୂରରୁ ଓ ନିକଟରେ ମୁଷ୍ଟିଘାତଦ୍ୱାରା ଯେଉଁ ସବୁ ଶବ୍ଦ ଦେବଦାନବଙ୍କ ମଧ୍ୟରେ ପରସ୍ପର ଆଘାତରୁ ସମରରେ ଜାତ ହେଲା, ସେ ଶବ୍ଦମାନ ଗଗନ ସ୍ପର୍ଶ କଲାପ୍ରାୟ ବୋଧ ହେଲା । ସେହିଠାରେ 'ଛେଦନ କର', 'ଭେଦ କର', 'ପ୍ରଧାବିତ ହୁଅ', 'ପାତିତ କର' 'ଅଭିସରଣ କର', ଏହି ଘୋରତର ଶବ୍ଦମାନ କେବଳ ଶୁଣାଗଲା ।

ଏହି ପ୍ରକାରେ ସେହି ମହାଭୟଦାୟୀ ତୁମୁଳ ଯୁଦ୍ଧ ହେଉଅଛି; ଏମନ୍ତ ସମୟରେ ନରଦେବ ଓ ନାରାୟଣଦେବ ସେଠାରେ ଉପସ୍ଥିତ

ହେଲେ । ଭଗବାନ ବିଷ୍ଣୁ ନରଦେବଙ୍କର ଦିବ୍ୟ ଶରାସନ ଅବଲୋକନ କରି ଦାନବକୁଳନାଶୀ ନିଜ ଚକ୍ରକୁ ସ୍ମରଣ କଲେ । ଅନନ୍ତର ମହାପ୍ରତାପ-ଶାଳୀ, ଶତ୍ରୁତାପନ, ଦିନକର ପ୍ରାୟ ଉଜ୍ଜ୍ୱଳ, ଅଖଣ୍ଡମଣ୍ଡଳ, ସମରରେ ଭୀଷଣଦର୍ଶନ ସେହି ସୁଦର୍ଶନଚକ୍ର ସ୍ମୃତ ହେବା ମାତ୍ରକେ ଗଗନରୁ ଅବତୀର୍ଣ୍ଣ ହେଲା । ତେତେବେଳେ କରିକରପ୍ରାୟ ଦୀର୍ଘବାହୁ ନାରାୟଣ, ପ୍ରଜ୍ଜ୍ୱଳିତ ହୁତାଶନସମ ପ୍ରଭାବନ୍ତ, ଭୟଙ୍କର, ତୀବ୍ର ବେଗଗାମୀ, ଅତି ବଳବାନ୍ ଶତ୍ରୁନଗରବିଦାରଣକାରୀ ସମାଗତ ସେହି ଚକ୍ରକୁ ବିପକ୍ଷଦଳ ପ୍ରତି ନିକ୍ଷେପ କଲେ । ତତ୍କାଳରେ କଳାନଳସମ ତେଜସ୍ୱୀ ବେଗବାନ୍ ସୁଦର୍ଶନ ପୁରୁଷୋତ୍ତମଙ୍କ କରପ୍ରେରିତ ହୋଇ ସଂଗ୍ରାମରେ ସହସ୍ର ସହସ୍ର ଦୈତ୍ୟ-ଦାନବଙ୍କୁ ବିଦାରିତ କରି ପୁନଃ ପୁନଃ ପତିତ ହେଲା । କୌଣସିଠାରେ ସେହି ଚକ୍ର ଅନଳପ୍ରାୟ ପ୍ରଜ୍ଜ୍ୱଳିତ ହୋଇ ଦାନବଗଣଙ୍କୁ ଅବଲୋକନ କଲା, କୌଣସିଠାରେ ଅବା ସହସା ଅସୁରମାନଙ୍କୁ ଛିନ୍ନ କଲା ଓ କେତେବେଳେ ଆକାଶରେ, କେତେବେଳେ ଅବା କ୍ଷିତିତଳେ ବାରମ୍ବାର ପ୍ରେରିତ ହୋଇ ସମରଭୂମିରେ ପିଶାଚପ୍ରାୟ ରୁଧିର ପାନ କଲା ।

ତତ୍କାଳରେ ଜଳଶୂନ୍ୟ ମେଘପ୍ରାୟ ଶୋଭାବିଶିଷ୍ଟ ଅଦୀନଚେତା ମହାବଳ ସହସ୍ର ସହସ୍ର ଅସୁରମାନେ ଆକାଶକୁ ଆରୋହଣ କରି ପର୍ବତ ଦ୍ୱାରା ପୁନଃ ପୁନଃ ସୁରଗଣଙ୍କୁ ଦଳନ କଲେ । ଅନନ୍ତର ନାନାବିଧ ମେଘରୂପୀ ଅତି ଭୀଷଣ ସକାନନ ମହାଗିରିସବୁ ପରସ୍ପର ଆହତ ଓ ଗଳିତାଗ୍ରସାନୁ ହୋଇ ଦ୍ରୁତ ବେଗରେ ସଶବ୍ଦରେ ଗଗନରୁ ପତିତ ହେଲେ । ଏହି ରୂପେ ପରସ୍ପର ଗର୍ଜ୍ଜନକାରୀ ଦେବ ଦାନବଙ୍କର ଘୋରତର ସଂଗ୍ରାମ ପ୍ରବର୍ତ୍ତିତ ହେଲା । ଚତୁର୍ଦ୍ଦିଗରେ ମହାଦ୍ରିପାତର ଅଭିଘାତରେ ସକାନନା ମେଦିନୀ ବିଚଳିତ ହେଲା । ଅନନ୍ତର ନରଦେବ ଅସୁରମାନଙ୍କର ସେହି ମହାଭୟଙ୍କର ସମରରେ ଉତ୍କୃଷ୍ଟ ସୁବର୍ଣ୍ଣମଣ୍ଡିତ ପ୍ରଧାନ ପ୍ରଧାନ ବାଣଦ୍ୱାରା ଗିରିଶୃଙ୍ଗମାନଙ୍କୁ ବିଦାରିତ କରି ଶରଜାଳରେ ଆକାଶମାର୍ଗ ଆବୃତ କଲେ । ସେ ସମୟରେ ମହାବଳ ଦାନବଦଳ ସୁରବୃନ୍ଦକର୍ତ୍ତୃକ ନିପୀଡ଼ିତ ହୋଇ ଓ ଜ୍ୱଳିତ ପାବକସମ ତେଜୋବନ୍ତ ଗଗନଗତ ସୁଦର୍ଶନକୁ ଅତ୍ୟନ୍ତ କୁପିତ ଦେଖି ଲବଣ ସମୁଦ୍ର ମଧ୍ୟରେ ଓ ଭୂଗର୍ଭରେ ପ୍ରବେଶ କଲେ । ଅନନ୍ତର ଦେବତାମାନେ ଜୟଲବ୍ଧ କରି ସମୁଚିତ ସତ୍କାରପୂର୍ବକ ମନ୍ଦରାଚଳକୁ ତାହାର ସ୍ଥାନରେ ସ୍ଥାପିତ କଲେ । ପରେ ଅମୃତଧାରୀ

ସୁରବୃନ୍ଦ ସର୍ବତୋଭାବେ ଆକାଶ ଓ ସ୍ୱର୍ଗ ନିନାଦିତ କରି ଯଥାସ୍ଥାନକୁ ଗମନ କଲେ । ତଦନନ୍ତର ସେମାନେ ବିପୁଳ ହର୍ଷ ସହିତ ସେହି ଅମୃତକୁ ରକ୍ଷା କରି ପରିଶେଷରେ ଦେବରାଜ ଇନ୍ଦ୍ରଙ୍କ ସହିତ ଏକମତ ହୋଇ ସେହି ଅମୃତନିଧିକୁ ନରଦେବଙ୍କୁ ପ୍ରଦାନ କଲେ ।

---

## ଅଧ୍ୟାୟ—୨୦

ଉଗ୍ରଶ୍ରବା କହିଲେ, ହେ ମୁନିବର ! ଯେଉଁରୂପେ ଅମୃତମନ୍ଥନ ହୋଇଥିଲା ଓ ଯେଉଁ ଅମୃତମନ୍ଥନରେ ଅତୁଳପରାକ୍ରମ ସେହି ଶ୍ରୀମାନ୍ ଅଶ୍ୱ ଉତ୍ପନ୍ନ ହୋଇଥିଲା ତତ୍ ସମୁଦାୟ ଆପଣଙ୍କୁ କହିଲି । କଦ୍ରୂ ସେହି ଅଶ୍ୱରାଜକୁ ଅବଲୋକନ କରି ବିନତାକୁ କହିଲେ, ଭଦ୍ରେ ! ଉଚ୍ଚୈଃଶ୍ରବାର କିପରି ବର୍ଣ୍ଣ, ଶୀଘ୍ର ବୋଲ । ବିନତା କହିଲେ, ଶୁଭେ ! ଏହି ଅଶ୍ୱ ନିଶ୍ଚୟ ଶ୍ୱେତବର୍ଣ୍ଣ; ଏବେ ତୁମ୍ଭେ କି ବର୍ଣ୍ଣ ମନେ କରୁଅଛ କହ । ପରେ ଆମ୍ଭେ-ମାନେ ଏ ବିଷୟରେ ପଣ କରିବା । କଦ୍ରୂ କହିଲେ, ଆମ୍ଭେ ମନେ କରୁ-ଅଛୁଁ ଏହି ଅଶ୍ୱର ପୁଚ୍ଛ କୃଷ୍ଣବର୍ଣ୍ଣ । ଆସ, ଆମ୍ଭ ସହିତ ଦାସୀତ୍ୱପଣ ସ୍ଥିର କର । ଉଗ୍ରଶ୍ରବା କହିଲେ, ତପୋଧନ! କଦ୍ରୂ ଓ ବିନତା ଏହିରୂପେ ପରସ୍ପର ଦାସୀତ୍ୱପଣ ସ୍ଥିର କରି 'କାଲି ଅଶ୍ୱକୁ ଦେଖିବା' କହି ନିଜ ନିଜ ଗୃହକୁ ଗମନ କଲେ ।

ଅନନ୍ତର କଦ୍ରୂ କପଟାଚରଣ କରିବାର ଅଭିଳାଷ କରି ଆପଣାର ସହସ୍ର ପୁତ୍ରଙ୍କୁ ଆଜ୍ଞା ଦେଲେ, ହେ ପୁତ୍ରଗଣ ! ତୁମ୍ଭେମାନେ କୃଷ୍ଣବର୍ଣ୍ଣ ଲୋମ ସ୍ୱରୂପ ହୋଇ ଶୀଘ୍ର ଏହି ଅଶ୍ୱକୁ ଆଚ୍ଛନ୍ନ କର; ଯେପରି ଆମ୍ଭେ ଦାସୀ ନ ହେଉଁ, ଯେଉଁମାନେ ଆମ୍ଭର ବାକ୍ୟରକ୍ଷା ନ କଲ, ସେମାନଙ୍କୁ ଆମ୍ଭେ ଅଭିଶାପ ଦେଉଅଛୁଁ ଯେ ଧୀମାନ୍ ରାଜର୍ଷି ପାଣ୍ଡୁନନ୍ଦନ ଜନମେଜୟ ଯେତେବେଳେ ସର୍ପଯଜ୍ଞ କରିବେ, ତେତେବେଳେ ଅଗ୍ନି ସେମାନଙ୍କୁ ଭସ୍ମ କରିବେ । କଦ୍ରୂ ଦୈବାତ୍ ଯେଉଁ ଅତି କଠିନ ଶାପ ପ୍ରଦାନ କଲେ, ପିତାମହ ବ୍ରହ୍ମା ସ୍ୱୟଂ ତାହା ଶ୍ରବଣ କଲେ । ସର୍ପମାନଙ୍କ ସଂଖ୍ୟା ଅଧିକ ହୋଇଥିବାରୁ ଦେବଗଣ ସହ ପ୍ରଜାପତି ସେହି ଅଭିଶାପକୁ ଅନୁମୋଦନ କଲେ । ଏହି ସକଳ ସର୍ପ ଅତି ତୀକ୍ଷ୍ଣ ବିଷଧାରୀ, ଦନ୍ଦଶୂକ

ଓ ମହାବଳପରାକ୍ରାନ୍ତ । ଜନନୀ ଏହି ପରପୀଡ଼ାଦାୟୀ ସର୍ପମାନଙ୍କର ପ୍ରଖର ବିଷ ହେତୁରୁ ଓ ପ୍ରଜାମାନଙ୍କର ହିତ ନିମିତ୍ତ ଉପଯୁକ୍ତ ଦଣ୍ଡବିଧାନ କରିଥିଲେ । ଅନ୍ୟାନ୍ୟ ପ୍ରାଣୀମାନଙ୍କ ମଧ୍ୟରେ ଯେଉଁମାନେ ଦୋଷପରାୟଣ ହୁଅନ୍ତି, ଦୈବ ସେମାନଙ୍କ ଉପରେ ପ୍ରାଣାନ୍ତକାରୀ ଦଣ୍ଡ ବିନିପାତିତ କରନ୍ତି । ବ୍ରହ୍ମା ସତ୍କାର ପୂର୍ବକ କଦ୍ରୁଙ୍କୁ ଏହି କଥା କହି କଶ୍ୟପଙ୍କୁ ଆହ୍ୱାନ କରି କହିଲେ, ହେ ଅନଘ ପରନ୍ତପ ! ଯେଉଁମାନେ ତୀବ୍ରବିଷ ଦନ୍ଦଶୂକ, ମହାକାୟ ସର୍ପ ଆପଣଙ୍କ ଔରସରେ ଜନ୍ମଗ୍ରହଣ କରିଅଛନ୍ତି, ସେମାନଙ୍କର ଜନନୀ ସେମାନଙ୍କୁ ଅଭିଶାପ ପ୍ରଦାନ କରିଅଛନ୍ତି । ହେ ତାତ ! ଏ ବିଷୟରେ ଆପଣଙ୍କର କ୍ରୋଧ କରିବା କୌଣସି ହିମେ ଉଚିତ ନୁହେଁ । କାରଣ ଆପଣ ଦେଖିଅଛନ୍ତି ଯେ ପୁରାଣରେ ସର୍ପକୁଳର ବିନାଶ ଲିଖିତ ଅଛି । କଶ୍ୟପଙ୍କୁ ସୃଷ୍ଟିକର୍ତ୍ତା ବ୍ରହ୍ମା ମହାତ୍ମା ପ୍ରଜାପତି ଏହି କଥା କହି ପ୍ରସନ୍ନ କରି ବିଷହରୀ ବିଦ୍ୟା ପ୍ରଦାନ କଲେ ।

---

## ଅଧ୍ୟାୟ—୨୧

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ରଜନୀ ପ୍ରଭାତ ଓ ଦିବାକର ଉଦିତ ହେଲାରୁ ଈର୍ଷାଗ୍ରସ୍ତ, ରୋଷପରବଶ, ଦାସୀତ୍ୱପଣରେ ଆବଦ୍ଧ କଦ୍ରୁ ଓ ବିନତା ଦୁଇ ଭଗିନୀ ଉଚ୍ଚୈଃଶ୍ରବାଙ୍କୁ ଦେଖିବାକୁ ଗଲେ । ପରେ ସେମାନେ କିୟଦ୍ଦୂର ଗମନ କରି ମହାସାଗରକୁ ଦେଖିଲେ । ଯେଉଁ ସାଗର ଅତିବୃହତ୍, ଅତଳସ୍ପର୍ଶ ଓ ବାୟୁଦ୍ୱାରା କ୍ଷୋଭିତ ହୋଇ ମହାଶବ୍ଦ କରୁଅଛି; ଯେଉଁ ସମୁଦ୍ର ତିମିଙ୍ଗିଳ, ମକର, ମତ୍ସ୍ୟ ଓ ବିବିଧାକାର ଅନ୍ୟାନ୍ୟ ସହସ୍ର ସହସ୍ର ପ୍ରାଣୀସମୂହରେ ପରିପୂର୍ଣ୍ଣ; ଯାହା ବିକୃତାକାର, ଅତିଭୀଷଣ, ଉଗ୍ରସ୍ୱଭାବ, ଜଳଚର କୂର୍ମ ଓ ଗ୍ରାହସମୂହରେ ନିରନ୍ତର ସମାକୀର୍ଣ୍ଣ ହେବାରୁ ଅଦୃଶ୍ୟ ହୋଇଅଛି; ଯେଉଁ ସାଗର ସକଳ ରତ୍ନର ଆକର, ବରୁଣ ଓ ନାଗଗଣଙ୍କର ଅତି ରମଣୀୟ ଆବାସଭୂମି, ବାଡ଼ବାନଳର ଆଳୟ, ଅସୁରସମୂହର ବାନ୍ଧବ, ସ୍ଥଳଚର ପ୍ରାଣୀମାନଙ୍କ ପକ୍ଷରେ ଅତି ଭୟଙ୍କର ଓ ସଲିଳର ଆଧାର; ଯେ ଦେବଗଣଙ୍କର ଶୁଭକର ଦିବ୍ୟବାସସ୍ଥାନ, ଅମୃତର ପରମ ଆକର, ଅପ୍ରମେୟ, ଅଚିନ୍ତନୀୟ, ବିସ୍ମୟଜନକ ଓ ପବିତ୍ର ଜଳରେ ପରିପୂର୍ଣ୍ଣ; ଯେ ଜଳଚରମାନଙ୍କର

ଘୋରତର ନିନାଦରେ ରୌଦ୍ରରୂପ ଧାରଣ କରିଅଛି; ଯହିଁରୁ ଭୈରବ ରବମାନ ଉତ୍ଥିତ ହେଉଅଛି; ଯେ ଗମ୍ଭୀର ଆବର୍ତ୍ତସମୂହରେ ବ୍ୟାପ୍ତ ହୋଇ ସମସ୍ତ ଭୂତଙ୍କର ଭୟପ୍ରଦ ହୋଇଅଛି, ଯେ ବେଳାନ୍ଦୋଳିତ ପବନ ବେଗରେ ବିକ୍ଷୋଭିତ ହୋଇ ଉଚ୍ଛ୍ରିତ ହେଉଅଛି; ବୋଧହୁଏ ଯେହ୍ନେ ଚଞ୍ଚଳ ତରଙ୍ଗସବୁ ହସ୍ତ ସଞ୍ଚାଳନ କରି ନୃତ୍ୟ କରୁଅଛି; ଚନ୍ଦ୍ରର ହ୍ରାସ ବୃଦ୍ଧି ଅନୁସାରେ ତରଙ୍ଗମାଳା ଉତ୍ଥିତ ହୋଇ ଯାହାକୁ ବ୍ୟାପ୍ତ କରେ ଓ ଯେ କ ପାଞ୍ଚଜନ୍ୟ ଶଙ୍ଖର ଜନ୍ମସ୍ଥାନ; ଅମିତତେଜା ଭଗବାନ ନାରାୟଣ ମେଦିନୀମଣ୍ଡଳ ଉଦ୍ଧାର କରିବା ନିମିତ୍ତ ବରାହ ଆକାର ଧାରଣ କରି ଯାହାର ଜଳ ଆଲୋଡ଼ିତ ଓ ଆବିଳ କରିଥିଲେ; ଧୃତବ୍ରତ ବ୍ରହ୍ମର୍ଷି ଅତ୍ରି ଯାହାର ପାତାଳ ତଳଗତ ତଳ ସ୍ପର୍ଶ କରିପାରି ନାହାନ୍ତି; ଅମିତତେଜା ପଦ୍ମନାଭ ବିଷ୍ଣୁ ପ୍ରଳୟ କାଳରେ ଯୋଗନିଦ୍ରାକୁ ଆଶ୍ରୟ କଲାରୁ ଯେଉଁ ସାଗର ତାହାଙ୍କର ଶଯ୍ୟା ହୋଇଥିଲା; ବଜ୍ରପାତଶଙ୍କିତ ମୈନାକ ପର୍ବତକୁ ଯେ ଅଭୟ ଦାନ କରିଥିଲା; ଘୋରଣ ଯୁଦ୍ଧରେ ନିପୀଡ଼ିତ ଅସୁରଗଣଙ୍କର ଯେ ପ୍ରଧାନ ଆଶ୍ରୟସ୍ଥାନ; ଯେଉଁ ଅର୍ଣ୍ଣବ ବାଡ଼ବାମୁଖଜାତ ପ୍ରଦୀପ୍ତ ବହ୍ନିକୁ ଜଳରୂପ ହବି ପ୍ରଦାନ କରଇ; ଯେ ମଙ୍ଗଳମୟ; ଯେଉଁ ଅମେୟ ଅତି ବିସ୍ତୀର୍ଣ୍ଣ ସାଗରର ପାର ମିଳଇ ନାହିଁ; ସହସ୍ର ସହସ୍ର ମହାନଦୀ ଯେହ୍ନେ ସ୍ପର୍ଦ୍ଧା କରି ଯେଉଁ ସରିତ୍ପତି ନିକଟକୁ ଅଭିସାର କରନ୍ତି; କଦ୍ରୁ ଓ ବିନତା ଦୁଇଜଣ ସତତ ପରିପୂର୍ଣ୍ଣ, ତରଙ୍ଗଦ୍ୱାରା ଯେହ୍ନେ ନୃତ୍ୟମାନ, ଅତି ଗମ୍ଭୀର, ଭୟାନକ ରୂପେ ତିମିମକରସମୂହରେ ସଙ୍କୁଳ, ଜଳଚରମାନଙ୍କର ରୌଦ୍ରନାଦ ଦ୍ୱାରା ଗର୍ଜ୍ଜନକାରୀ, ବିସ୍ତୀର୍ଣ୍ଣ, ଅମ୍ବରବର୍ଣ୍ଣ, ଅତଳସ୍ପର୍ଶ, ଅନନ୍ତ ଜଳର ଆଧାର ସେହି ମହାର୍ଣ୍ଣବକୁ ଅବଲୋକନ କଲେ ।

---

## ଅଧ୍ୟାୟ—୨୨

ଉଗ୍ରଶ୍ରବା କହିଲେ, ହେ ଦ୍ୱିଜସତ୍ତମ ! ସର୍ପମାନେ ପରସ୍ପର ମନ୍ତ୍ରଣା କରି ଏହି ପ୍ରତିଜ୍ଞା କଲେ ଯେ ଆମ୍ଭେମାନେ ଜନନୀଙ୍କ ବାକ୍ୟ ଅବଶ୍ୟ ପାଳନ କରିବା; କପାଁ କି, ତାହାଙ୍କର ମନୋରଥ ସଫଳ ନ ହେଲେ ସେ ସ୍ନେହଶୂନ୍ୟ ହୋଇ ଆମ୍ଭମାନଙ୍କୁ ଦଗ୍ଧ କରିବେ । ପ୍ରସନ୍ନ ହେଲେ ଏହି ଶାପରୁ ଆମ୍ଭମାନଙ୍କୁ ମୁକ୍ତ କରିପାରନ୍ତି । ଅତଏବ ଆମ୍ଭେ-

ମାନେ ସେହି ଅଶ୍ୱର ପୁଚ୍ଛ କୃଷ୍ଣବର୍ଣ୍ଣ କରିବା, ଏଥିରେ ସଂଶୟ ନାହିଁ । ନାଗମାନେ ଏହି ରୂପ ଯୁକ୍ତିକରି ଉଚ୍ଚୈଃଶ୍ରବା ଅଶ୍ୱର ପୁଚ୍ଛ ଦେଶରେ କୃଷ୍ଣ-କୁଣ୍ଡଳାକାରରେ ପରିଣତ ହୋଇ ରହିଲେ । ହେ ଦ୍ୱିଜସତ୍ତମ ! ଇତ୍ୟବସରରେ ପଣକାରିଣୀ ଦକ୍ଷପ୍ରଜାପତିତନୟା କଦ୍ରୁ ଓ ବିନତା ଭଗିନୀଦ୍ୱୟ ଗଗନପଥରେ ଉତ୍‌ଥିତ ହୋଇ ସହସା ବାୟୁବେଗବିକମ୍ପିତ ଗମ୍ଭୀର ନିନାଦ-ଯୁକ୍ତ ତିମିଙ୍ଗିଳ ସମାକୀର୍ଣ୍ଣ, ମକରକୁଳାବୃତ, ଅତି ଭୀଷଣ, ବହୁ ସହସ୍ର ପ୍ରାଣି-ଗଣରେ ପରିପୂର୍ଣ୍ଣ, ଭୟଙ୍କର ଦୁରବଗାହ, ଅତି ଗମ୍ଭୀର, ସକଳ ରତ୍ନର ଆକର, ବରୁଣଦେବଙ୍କ ନିବାସ ସ୍ଥାନ, ନାଗଗଣଙ୍କର ରମଣୀୟ ଆଳୟ, ସରିତ୍ ସମୂହର ପତି, ବାଡ଼ବାନଳର ଆବାସ, ଅସୁର ନିକରର ଓ ଭୀଷଣ ପ୍ରାଣିସମୂହର ବାସଭବନ, ସୁରବୃନ୍ଦର ସୁଖନିକେତନ, ଅମୃତର ଏକମାତ୍ର ଆକର, ସକଳ ସ୍ଥାନରେ ବହୁ ସହସ୍ର ମହାନଦୀ କର୍ତ୍ତୃକ ଆପୂର୍ଯ୍ୟମାଣ, ତରଳ ତରଙ୍ଗକଳାପରେ ଯେହ୍ନେ ନର୍ତ୍ତନଶୀଳ, ଅଗାଧ, ଅପ୍ରମେୟ, ଅଚିନ୍ତନୀୟ, ଅତି ଦୁର୍ଦ୍ଧର୍ଷ, ସର୍ବଦା ପରିପୂର୍ଣ୍ଣ, ଗର୍ଜ୍ଜନଶୀଳ, ପବିତ୍ରଜଳବିଶିଷ୍ଟ ଓ ଅତି ରମଣୀୟ ଜଳନିଧିକୁ ଦର୍ଶନ କରୁ କରୁ ପ୍ରୀତି ପ୍ରଫୁଲ୍ଲ ମନରେ ଦ୍ରୁତ ପଦରେ ତାହାର ଅପର ବେଳାତଟରେ ଉପସ୍ଥିତ ହେଲେ ।

---

## ଅଧ୍ୟାୟ—୨୩

ଉଗ୍ରଶ୍ରବା କହିଲେ, କଦ୍ରୁ ବିନତାଙ୍କ ସହିତ ସମୁଦ୍ର ଅତିକ୍ରମ କରି ସତ୍ୱର ପଦରେ ତୁରଙ୍ଗମ ସମୀପରେ ଅବତୀର୍ଣ୍ଣ ହୋଇ ଦେଖିଲେ, ମହାବେଗଶାଳୀ ସେହି ଅଶ୍ୱଶ୍ରେଷ୍ଠ ଶଶାଙ୍କ କିରଣପ୍ରାୟ ଉଜ୍ଜ୍ୱଳ ଶ୍ୱେତବର୍ଣ୍ଣ, କେବଳ ତାହାର ପୁଚ୍ଛଦେଶର କେଶକଳାପ କୃଷ୍ଣବର୍ଣ୍ଣ; ତାହା ଦେଖି ବିନତା ଯତ୍ପରୋନାସ୍ତି ବିଷଣ୍ଣ ହେଲେ । ତତ୍କାଳରେ କଦ୍ରୁ ତାହାଙ୍କୁ କିଙ୍କରୀର କର୍ମ ସମ୍ପାଦନରେ ନିଯୁକ୍ତ କଲେ । ବିନତା ଆପଣାକୁ ପଣରେ ପରାଜିତ ଜାଣି ଅଗତ୍ୟା ଦୁଃଖିତ ମନରେ ସପତ୍ନୀଙ୍କର ଦାସ୍ୟ କର୍ମ କଲେ । ଏହି ସମୟରେ ଗରୁଡ଼ ଜନନୀଙ୍କର ଆନୁକୂଲ୍ୟ ଗ୍ରହଣ ନ କରି ଯଥାକାଳରେ ସ୍ୱୟଂ ଡିମ୍ବବିଦାରଣ କରି ବହିର୍ଗତ ହେଲେ । ମହାବଳସମ୍ପନ୍ନ, ପ୍ରବଳ ପରାକ୍ରମଶାଳୀ, କାମବୀର୍ଯ୍ୟ, ପ୍ରଳୟାଗ୍ନି ସମପ୍ରଭ, ବିଦ୍ୟୁତ୍ତୁଲ୍ୟ, ପିଙ୍ଗଳନେତ୍ର,

କାମରୂପ, କାମଗାମୀ, ଅତି ଭୟଙ୍କର ବିହଙ୍ଗରାଜ ଗରୁଡ଼ ଅଗ୍ନିରାଶି ସଦୃଶ ସ୍ୱୀୟ ଅଙ୍ଗପ୍ରଭାବରେ ଦଶଦିକ୍ ଆଲୋକମୟ କରି ସହସା ଆକାଶରେ ଆରୋହଣପୂର୍ବକ ଘୋରତର ଶବ୍ଦ କରି ଦ୍ୱିତୀୟ ବହ୍ନି ସ୍ୱରୂପ ପ୍ରଚଣ୍ଡ ଓ ଅତି ବୃହତ୍ କଳେବର ଧାରଣ କଲେ ।

ତାହା ଦେଖି ଦେବତାମାନେ ଅତି ଖିନ୍ନ ମନରେ ବିଶ୍ୱରୂପୀ ହବ୍ୟ ଆସନସ୍ଥ ଭଗବାନ ହୁତାଶନଙ୍କର ଶରଣାପନ୍ନ ହେଲେ ଓ ଯଥାବିଧି ପ୍ରଣତିପୂର୍ବକ ଅତି କାତର ବଚନରେ ଭାଷିଲେ, ହେ ଅଗ୍ନେ ! ଆପଣ ଆଉ ବର୍ଦ୍ଧନଶୀଳ ହୁଅନ୍ତୁ ନାହିଁ । ଆପଣ ଆମ୍ଭମାନଙ୍କୁ କି ନିମିତ୍ତ ଦଗ୍ଧ କରିବାକୁ ଇଚ୍ଛା କରୁଅଛନ୍ତି ? ଦେଖନ୍ତୁ ଅତି ବୃହତ୍ ପ୍ରଜ୍ୱଳିତ ଅଗ୍ନିରାଶି ତୁମ୍ଭର ଶରୀରରୁ ପ୍ରସର୍ପିତ ହେଉଅଛି । ଅଗ୍ନି ବୋଇଲେ, ହେ ଅସୁର-ନିଧନକାରୀ ଦେବବୃନ୍ଦ ! ଆପଣମାନେ ଯେରୂପ ମନେ କରୁଅଛନ୍ତି, ତଦ୍ରୂପ ନୁହେଁ । ଏ ଆମ୍ଭର ତୁଲ୍ୟ-ତେଜସ୍ୱୀ, ମହାବଳ, ବିନତାନନ୍ଦବର୍ଦ୍ଧନ ଗରୁଡ଼ ଜନ୍ମ ପରିଗ୍ରହ କରି କଳେବର ବୃଦ୍ଧି କରିଅଛନ୍ତି । ତାହାଙ୍କର ତେଜୋ-ରାଶି ନିରୀକ୍ଷଣ କରି ଆପଣମାନେ ମୋହାବିଷ୍ଟ ହୋଇଅଛନ୍ତି । ନାଗକୁଳ-କ୍ଷୟକର ମହାବଳ ସେହି କଶ୍ୟପନନ୍ଦନ ସତତ ଦେବତାମାନଙ୍କର ହିତ-ସାଧନ ଓ ଦୈତ୍ୟ ରାକ୍ଷସକୁଳର ଅହିତାଚରଣ କରିବେ; ଅତଏବ ହେ ଦେବଗଣ ! ଆପଣମାନଙ୍କର ଭୟର କୌଣସି କାରଣ ନାହିଁ । ଏବେ ଆପଣମାନେ ତେଜସ୍ୱୀ ଗରୁଡ଼ଙ୍କୁ ଅବଲୋକନ କରିବା ନିମିତ୍ତ ଆମ୍ଭ ସହିତ ଆସନ୍ତୁ ।

ହୁତାଶନ ଏପରି ଭାଷିବାରୁ ଅମରଗଣ ମହର୍ଷିଗଣଙ୍କ ସମଭିବ୍ୟା-ହାରରେ ସେଠାକୁ ଗମନ କରି ବିହିତ ବାକ୍ୟରେ ସୁପର୍ଣ୍ଣୋପାଧିକ ପରବ୍ରହ୍ମରୂପ ଗରୁଡ଼ଙ୍କର ସ୍ତବ କରିବାକୁ ଆରମ୍ଭ କଲେ, 'ହେ ବୈନତେୟ ! ତୁମ୍ଭେ ମନ୍ତ୍ରମାନଙ୍କ ମଧ୍ୟରେ ପ୍ରଣବ ସ୍ୱରୂପ, ତୁମ୍ଭେ ମହାଭାଗ, ଅର୍ଥାତ୍ ଯଜ୍ଞସମୂହର ଭୋକ୍ତା, ତୁମ୍ଭେ ଦେବ ଅର୍ଥାତ୍ ଦ୍ୟୁତିଶୀଳ, ତୁମ୍ଭେ ପତଗେଶ୍ୱର ଅର୍ଥାତ୍ ଜୀବରୂପ ପକ୍ଷିନିକରର ନିୟନ୍ତା, ତୁମ୍ଭେ ପ୍ରଭୁ ଅର୍ଥାତ୍ ଚରାଚର ପ୍ରପଞ୍ଚର ଅଧିଷ୍ଠାତା, ତୁମ୍ଭେ ତପନ ଅର୍ଥାତ୍ ଅନ୍ତକର୍ତ୍ତା, ତୁମ୍ଭେ ସୂର୍ଯ୍ୟ ଅର୍ଥାତ୍ ଜଗତର ଉପାଦାନ ସାମଗ୍ରୀ, ତୁମ୍ଭେ ପରମେଷ୍ଠୀ ଅର୍ଥାତ୍ ହିରଣ୍ୟ ଗର୍ଭରୂପେ ବିଶ୍ୱପ୍ରପଞ୍ଚର କାରଣ, ତୁମ୍ଭେ ଦକ୍ଷାଦି ନିମିତ୍ତ ଭୂତ ପ୍ରଜାପତି, ତୁମ୍ଭେ ଇନ୍ଦ୍ର ଅର୍ଥାତ୍ ନିଖିଳ ଦେବଗଣଙ୍କର ରାଜା, ତୁମ୍ଭେ ହୟମୁଖ ଅର୍ଥାତ୍ ହୟଗ୍ରୀବାବତାର, ତୁମ୍ଭେ ଶର ଅର୍ଥାତ୍ ମହାଦେବଙ୍କର

ତ୍ରିପୁରାସୁର ବିଜୟରେ ବାଣଭୂତ ବିଷ୍ଣୁ, ତୁମ୍ଭେ ଜଗତର ପତି, ତୁମ୍ଭେ ଈଶ୍ୱରଙ୍କର ମୁଖ ସ୍ୱରୂପ ବ୍ରାହ୍ମଣ, ତୁମ୍ଭେ ପଦ୍ମଯୋନି ଚତୁର୍ମୁଖ, ତୁମ୍ଭେ ଜ୍ଞାନଶୀଳ ବିପ୍ର, ତୁମ୍ଭେ ଅଗ୍ନି ଓ ପବନ ଅର୍ଥାତ୍ ସର୍ବଦେବଙ୍କର ଆତ୍ମା, ତୁମ୍ଭେ ଚେତନାରୂପ ଧାତା, ତୁମ୍ଭେ ମାୟାରୂପ ବିଧାତା, ତୁମ୍ଭେ ବିଷ୍ଣୁ ଅର୍ଥାତ୍ ସର୍ବବ୍ୟାପକ, ତୁମ୍ଭେ ଦେବେଶ୍ୱର, ତୁମ୍ଭେ ମହାନ୍ ଅର୍ଥାତ୍ ମହତତ୍ତ୍ୱ, ତୁମ୍ଭେ ଅଭିଭୂ ଅର୍ଥାତ୍ ଅଭିମାନ ରୂପ ଅହଙ୍କାର, ତୁମ୍ଭେ ସତତ ଅବିକୃତ, ତୁମ୍ଭେ ମହତ୍‌ଯଶ ଅର୍ଥାତ୍ ନିର୍ଗୁଣ ବ୍ରହ୍ମ, ତୁମ୍ଭେ ଆବଦ୍ଧାରୂପ ପ୍ରଭା, ତୁମ୍ଭେ ବୁଦ୍ଧିବୃତ୍ତି, ତୁମ୍ଭେ ସମସ୍ତଙ୍କର ଏକମାତ୍ର ଶରଣ ।

'ତୁମ୍ଭେ ପୁଣ୍ୟର ସାଗର, ତୁମ୍ଭେ ସାଧୁ, ତୁମ୍ଭେ ପରିପୂର୍ଣ୍ଣସତ୍ତ୍ୱ, ତୁମ୍ଭେ ସମୃଦ୍ଧିଶାଳୀ, ତୁମ୍ଭେ ସଂଗ୍ରାମରେ ଦୁର୍ବିଷହ । ହେ ପୁଣ୍ୟଶ୍ଳୋକ ଗରୁଡ଼ ! ତୁମ୍ଭଠାରୁ ଏହି ସମସ୍ତ ଜଗତ୍ ଉତ୍ପନ୍ନ ହୋଇଅଛି, ତୁମ୍ଭେ ଭୂତ ଭବିଷ୍ୟତ୍ ବର୍ତ୍ତମାନ କାଳମାନଙ୍କର ଅନାଗତ ଓ ଉପଗତ ସ୍ୱରୂପ, ତୁମ୍ଭେ ଉତ୍ତମ ଅର୍ଥାତ୍ ଚନ୍ଦ୍ରାଦି, ଦ୍ୟୁତିମାନ୍ ଭାନୁସ୍ୱରୂପ, ତୁମ୍ଭର ଜ୍ୟୋତିଦ୍ୱାରା ଏହି ଚରାଚର ପ୍ରପଞ୍ଚସବୁ ଅବଭାସିତ ହେଉଅଛି, ତୁମ୍ଭେ ସ୍ୱୀୟ ପ୍ରଭାପୁଞ୍ଜରେ ଦିବାକରଙ୍କ ଜ୍ୟୋତିକୁ ପ୍ରତିଶୂନ୍ୟ କରୁଅଛ, ତୁମ୍ଭେ ଧ୍ରୁବ ଓ ଅଧ୍ରୁବ ଓ ମୃତ୍ୟୁ ସ୍ୱରୂପ; ହେ ଅନଳଦ୍ୟୁତେ ! ଦିନକର ପରିକୁପିତ ହେଲେ ଯେପରି ପ୍ରଜା ପୁଞ୍ଜଙ୍କୁ ଦଗ୍‌ଧ କରନ୍ତି ସେହିପରି ତୁମ୍ଭେ ସମସ୍ତ ଭସ୍ମସାତ୍ କରୁଅଛ, ତୁମ୍ଭେ ଯୁଗ ପରିବର୍ତ୍ତନ ସମୟର ସର୍ବବିନାଶକ ପ୍ରଳୟାଗ୍ନିପ୍ରାୟ ଭୟଙ୍କର ରୂପ ଧାରଣ କରିଅଛ । ଆମ୍ଭେମାନେ ମହାତେଜସ୍ୱୀ, ମହାବଳ, ତଡ଼ିତ୍‌ସମ ପ୍ରଭାଶାଳୀ, ଗଗନବିହାରୀ, ସମସ୍ତ ପଦାର୍ଥର କାର୍ଯ୍ୟ ଓ କାରଣ, ବରଦାତା, ଅପରିମିତ ବଳସମ୍ପନ୍ନ, ଖଗେଶ୍ୱର ଗରୁଡ଼ଙ୍କର ଶରଣାଗତ ହେଲୁଁ । ହେ ଜଗତ୍‌ପ୍ରଭୋ ! ତୁମ୍ଭର ତପ୍ତକାଞ୍ଚନନିଭ ଅଙ୍ଗକାନ୍ତି ଦ୍ୱାରା ଏହି ଜଗନ୍ମଣ୍ଡଳ ନିରନ୍ତର ପ୍ରତପ୍ତ ହେଉଅଛି । ଭୟାତୁର, ପରାଜିତ ଦେବତା-ବୃନ୍ଦ ବିମାନାରୋହଣ ପୂର୍ବକ ଆକାଶ ମାର୍ଗରେ ଇତସ୍ତତଃ ପଳାୟନପର ହେଉଅଛନ୍ତି, ତୁମ୍ଭେ ସେମାନଙ୍କୁ ପରିତ୍ରାଣ କର । ହେ ପକ୍ଷୀନ୍ଦ୍ର ! ତୁମ୍ଭେ ପରମ ଦୟାଶୀଳ, ମହାନୁଭବ କଶ୍ୟପଙ୍କର ପୁତ୍ର; ଅତଏବ କ୍ରୋଧ ନିବାରଣ କରି ଜଗତ ପ୍ରତି କୃପା ବିତରଣ କର । ତୁମ୍ଭେ ଈଶ୍ୱର, ଅଧୁନା ଧୈର୍ଯ୍ୟାବଲମ୍ବନ ପୂର୍ବକ ଆମ୍ଭମାନଙ୍କୁ ରକ୍ଷା କର । ଆମ୍ଭେମାନେ ବିଷମ ବିପଦଜାଳରେ ଆଚ୍ଛନ୍ନ ହୋଇଅଛୁ । ତୁମ୍ଭର ବଜ୍ରନିର୍ଘୋଷତୁଲ୍ୟ ଭୀଷଣ ରବରେ ନଭୋମଣ୍ଡଳ, ଦିଙ୍ମଣ୍ଡଳ, ଦେବଲୋକ ଓ ଆମ୍ଭମାନଙ୍କର ଅନ୍ତଃ-

କରଣ ନିରନ୍ତର କମ୍ପମାନ ହେଉଅଛୁ । ତୁମ୍ଭେ ଅନଳରାଶି ତୁଲ୍ୟ ସ୍ୱୀୟ କଳେବର ସଙ୍କୁଚିତ କର । କୁପିତ କୃତାନ୍ତପ୍ରାୟ ତୁମ୍ଭର ଅତି ଭୟଙ୍କର ଶରୀର ଦର୍ଶନରେ ଆମ୍ଭମାନଙ୍କର ମନ ବ୍ୟଥିତ ଓ ଖିନ୍ନ ହେଉଅଛି । ହେ ଭଗବାନ ପତଗେନ୍ଦ୍ର ! ପ୍ରସନ୍ନ ହୋଇ ଶରଣାଗତ ଜନ ପ୍ରତି ସୁଖ-ପ୍ରଦ ହୁଅ ।

ଦେବଗଣ ଓ ଋଷିଗଣ ଏହିରୂପ ସ୍ତବ କରିବାରେ ସୁପର୍ଣ୍ଣ ଗରୁଡ଼ ସ୍ୱୀୟ ତେଜୋରାଶି ପ୍ରତିସଂହାର କଲେ ।

---

## ଅଧ୍ୟାୟ—୨୪

ସୌତି ବୋଇଲେ, ସୁପର୍ଣ୍ଣ ଗରୁଡ଼ ଦେବତା ଓ ଋଷିମାନଙ୍କର ଏହିରୂପ ସ୍ତବ ଶ୍ରବଣ କରି ଆପଣାର ଅତି ବୃହତ୍ କଳେବରକୁ ଅବଲୋକନ କରି ସ୍ୱୀୟ ତେଜଃପୁଞ୍ଜର ପ୍ରତିସଂହାର କଲେ ଓ କହିଲେ, 'ଆମ୍ଭେ ଆପଣା ତେଜର ସଙ୍କୋଚ କରୁଅଛୁଁ । ଆପଣମାନଙ୍କୁ ଆଉ ଖିନ୍ନ ହେବାକୁ ହେବ ନାହିଁ । ଏହା କହି ପତଗେଶ୍ୱର ଗରୁଡ଼ ଅଗ୍ରଜ ଅରୁଣଙ୍କୁ ନିଜ ପୃଷ୍ଠରେ ଆରୋହଣ କରାଇ ପିତୃଗୃହରୁ ବହିର୍ଗତ ହୋଇ ସାଗରତୀରବାସିନୀ ସ୍ୱୀୟ ଜନନୀଙ୍କ ସମୀପକୁ ଗମନ କଲେ । ସେହି କାଳରେ ଆଦିତ୍ୟଦେବ ତ୍ରିଦିବବୃନ୍ଦଙ୍କ ପ୍ରତି ପରିକୁପିତ ହୋଇ ପ୍ରଖର କିରଣଜାଳ ବିସ୍ତାର କରି ତ୍ରିଲୋକ ଦଗ୍ଧ କରିବାକୁ ପ୍ରବୃତ୍ତ ହେବାର ଦେଖି ଖଗରାଜ ସ୍ୱୀୟ ଭ୍ରାତା ଅରୁଣଙ୍କୁ ନେଇ ଉଦୟାଚଳରେ ସ୍ଥାପନ କଲେ ।

ରୁରୁ ପଚାରିଲେ, କି ନିମିତ୍ତ ଭଗବାନ୍ ସୂର୍ଯ୍ୟ ଲୋକସମୂହ ଦଗ୍ଧ କରିବାକୁ ଉଦ୍ୟତ ହୋଇଥିଲେ ଓ ଅମରମାନେ ବା ତାହାଙ୍କର କି ଅନିଷ୍ଟ ସାଧନ କରିଥିଲେ ଯେ ସେ ସେମାନଙ୍କ ପ୍ରତି ଏପରି ପ୍ରକୁପିତ ହେଲେ ? ପ୍ରମତି କହିଲେ, 'ରାହୁ ପ୍ରଚ୍ଛନ୍ନ ରୂପେ ଅମୃତ ପାନ କରିବାର ଦେଖି ଚନ୍ଦ୍ର ଓ ଆଦିତ୍ୟ ଦୁହେଁ ତ୍ରିଦିବଙ୍କ ନିକଟରେ ସେ ବିଷୟ ପ୍ରକାଶ କରିବାରୁ ହେ ଅନଘ ! ତଦବଧି ଦୁହିଁଙ୍କ ସହିତ ରାହୁଙ୍କର ବୈରାନୁବନ୍ଧ ହେବାରୁ ସେହି ନୃଶଂସ ରାହୁଗ୍ରହ ସମୟ ସମୟରେ ସୂର୍ଯ୍ୟଦେବଙ୍କୁ ଗ୍ରାସ କରନ୍ତି । ଅନନ୍ତର ଭଗବାନ୍ ସୂର୍ଯ୍ୟ ଏହି ନିମିତ୍ତ ସନ୍ଦୁଦ୍ଧ ହେ ସେ

ଅମରଗଣଙ୍କର ମଙ୍ଗଳ ନିମିତ୍ତ ରାହୁଙ୍କ କୋପରେ ପଡ଼ିଲେ ଓ ତନ୍ନି-ବନ୍ଧନ ସେ ଏକାକୀ ଅନର୍ଥକର ପାପର ଫଳଭୋଗୀ ହେଲେ ଓ ତାହାଙ୍କ ବିପତ୍‌କାଳରେ କେହି ତାହାଙ୍କର ସାହାଯ୍ୟ କଲେ ନାହିଁ । ଯେତେବେଳେ ଦୁଷ୍ଟ ରାହୁ ତାହାଙ୍କୁ ଗ୍ରାସ କରଇ, ତେତେବେଳେ ଦେବତାମାନେ ତାହା ସ୍ୱଚକ୍ଷୁରେ ଦେଖି ସୁଦ୍ଧା ଅନାୟାସରେ ସହ୍ୟ କରନ୍ତି । ଏହି ହେତୁରୁ ସେ ସେଦିନ ସମୁଦାୟ ଲୋକବିନାଶ ନିମିତ୍ତ ନିଃସଂଶୟ ଅବସ୍ଥିତ ରହିଲେ । ସୂର୍ଯ୍ୟଦେବ ତଦ୍ରୂପ କୃତସଂକଳ୍ପ ହୋଇ ଅସ୍ତଗିରିର ଶିଖରଶାୟୀ ହେଲେ ଓ ବିଶ୍ୱସଂସାର ସଂହାର କରିବା ମାନସରେ ସେହି ସ୍ଥଳର ସ୍ୱକୀୟ ତେଜୋରାଶି ପରିବର୍ଦ୍ଧିତ କରିବାକୁ ଲାଗିଲେ ।

ଅନନ୍ତର ମହର୍ଷିଗଣ ଦେବତାମାନଙ୍କ ସମୀପକୁ ଗମନ କରି ବୋଇଲେ, ଅଦ୍ୟ ଅର୍ଦ୍ଧରାତ୍ରିବେଳେ ସର୍ବଲୋକଭୟଙ୍କର ତ୍ରିଲୋକ-ନିଧନକାରୀ ମହାଦାହ ଆରମ୍ଭ ହେବ । ଏହା ଶୁଣି ଦେବତାମାନେ ମହର୍ଷିଙ୍କ ସମଭିବ୍ୟାହାରରେ ସର୍ବଲୋକପିତାମହ ବ୍ରହ୍ମାଙ୍କ ନିକଟରେ ଉପନୀତ ହୋଇ ବିନୟନମ୍ର ବଚନରେ ନିବେଦନ କଲେ, ହେ ଭଗବନ୍ ! ଅଦ୍ୟ ସହସା କି କାରଣରୁ ମହାଦାହ ଉପସ୍ଥିତ ହେଲା ? ସୂର୍ଯ୍ୟଦେବ ଲକ୍ଷିତ ହେଉନାହାନ୍ତି, ତଥାପି ସର୍ବଲୋକର କ୍ଷୟ ଉପସ୍ଥିତ ! ଭଗବାନ୍ ଆଦିତ୍ୟ ଯେତେବେଳେ ଉଦିତ ହେବେ, ତେତେବେଳେ ନ ଜାଣି କି ଦୁର୍ଦ୍ଦଶା ଘଟିବ ! ପିତାମହ କହିଲେ, "ରବି ଏହି ଲୋକ ସମସ୍ତ କ୍ଷୟକରଣାର୍ଥ ଉଦ୍ୟୋଗୀ ହୋଇ ଅଛନ୍ତି । ସେ ଉଦିତ ହୋଇ ସ୍ୱଳ୍ପକାଳ ମଧ୍ୟରେ ସମସ୍ତ ଭୁବନ ଭସ୍ମରାଶି କରିବେ । ହେ ଦେବଗଣ ! ଏଥି ପୂର୍ବରୁ ଆମ୍ଭେ ଏହାର ସମୁଚିତ ପ୍ରତିକାର କରି ରଖିଅଛୁଁ ! ମହାତ୍ମା ଧୀମାନ୍ କଶ୍ୟପଙ୍କର ଅରୁଣ ନାମକ ମହାକାୟ ତେଜସ୍ୱୀ ଗୋଟିଏ ପୁତ୍ର ଜନ୍ମିଅଛନ୍ତି । ତାହାଙ୍କୁ ସୂର୍ଯ୍ୟଙ୍କ ସମ୍ମୁଖରେ ନେଇ ରଖିଦିଅ । ଅରୁଣ ଆଦିତ୍ୟଙ୍କର ସାରଥ୍ୟ କାର୍ଯ୍ୟକରି ତଦୀୟ ତେଜୋରାଶି ପ୍ରତିସଂହାର କରିବେ ; ତାହାହେଲେ ମହର୍ଷିଗଣଙ୍କର, ଦେବତାଙ୍କର ଓ ସମସ୍ତ ଲୋକର ସ୍ୱସ୍ତିଲାଭର ସମ୍ଭାବନା ।" ପ୍ରମତି କହିଲେ, ତଦନନ୍ତରେ ମହାବଳ ଅରୁଣ ପିତାମହଙ୍କ ଆଦେଶାନୁସାରେ ସବିତୃଦେବ ଉଦିତ ହେଲାରୁ ତାହାଙ୍କୁ ଆବରଣ କରି ତଦୀୟ ସମ୍ମୁଖରେ ଆସୀନ ହେଲେ । ସୂର୍ଯ୍ୟଦେବ ଯେଉଁ କାରଣରୁ ରୋଷାବିଷ୍ଟ ହୋଇଥିଲେ ଓ ଅରୁଣ ଯେଉଁ

ନମିତ୍ତ ତାହାଙ୍କର ସାରଥ୍ୟ ସ୍ୱୀକାର କଲେ, ତାହା ଆଦ୍ୟୋପାନ୍ତ ସମସ୍ତ କୀର୍ତ୍ତନ କଲୁଁ । ଅଧୁନା ପୂର୍ବୋଲ୍ଲିଖିତ ପ୍ରଶ୍ନର ପ୍ରତ୍ୟୁତ୍ତର ପ୍ରଦାନ କରୁଅଛୁଁ, ଶ୍ରବଣ କରନ୍ତୁ ।

---

## ଅଧ୍ୟାୟ—୨୪

ସୌତି କହିଲେ, କାମଗମ, ମହାବୀର୍ଯ୍ୟ, ମହାବଳସମ୍ପନ୍ନ ବିହଙ୍ଗରାଜ ଗରୁଡ଼ ଜଳନିଧିର ଅପରତୀରସ୍ଥ ସ୍ୱୀୟ ଜନନୀଙ୍କ ସନ୍ନିଧାନକୁ ଗମନ କଲେ । ସେଠାରେ ପଣପରାଜିତା ତାହାଙ୍କ ଜନନୀ ବିନତା ସପତ୍ନୀଙ୍କର ଦାସୀବୃତ୍ତି ଆଶ୍ରୟ ପୂର୍ବକ ଦୁର୍ବିଷହ ଦୁଃଖାନଳରେ ନିରନ୍ତର ଦଗ୍ଧ ହୋଇ ଦୀନଭାବରେ କାଳକ୍ଷେପ କରୁଥିଲେ । ଏକଦା ବିନତା ପୁତ୍ର ସମୀପରେ ବସିଥିଲେ, ଏମନ୍ତ ସମୟରେ କଦ୍ରୁ ତାହାଙ୍କୁ ଆହ୍ୱାନ କରି ବୋଇଲେ, 'ବିନତେ ! ଦେଖ, ସମୁଦ୍ର ଗର୍ଭରେ ଗୋଟିଏ ସ୍ଥାନରେ ସୁରୁଦର୍ଶନ ଗୋଟିଏ ଆଳୟ ଅଛି, ସେଠାରେ ନାଗଗଣ ବାସ କରନ୍ତି, ସେହି ସ୍ଥାନକୁ ତୁମ୍ଭେ ଆମ୍ଭଙ୍କୁ ଘେନି ଚାଲ ।' ସୁପର୍ଣ୍ଣମାତା ବିନତା ଆଜ୍ଞା-ପ୍ରାପ୍ତି ମାତ୍ର କଦ୍ରୁଙ୍କୁ ପୃଷ୍ଠଦେଶରେ ଆରୋହଣ କରାଇ ଚାଲିଲେ ଓ ଗରୁଡ଼ ମାତୃଅନୁମତିକ୍ରମେ କଦ୍ରୁପୁତ୍ର ନାଗବୃନ୍ଦଙ୍କୁ ପୃଷ୍ଠରେ ବହି ମାତାଙ୍କର ଅନୁସରଣ କଲେ । ବିହଙ୍ଗମ ଗରୁଡ଼ ସୂର୍ଯ୍ୟାଭିମୁଖରେ ଗମନ କରିବାରୁ, ପନ୍ନଗକୁଳ ଦୁଃସହ ସୂର୍ଯ୍ୟକିରଣଦ୍ୱାରା ସାତିଶୟ ସନ୍ତପ୍ତ ହୋଇ ମୂର୍ଚ୍ଛିତ ହେଲେ ।

କଦ୍ରୁ ପୁତ୍ରଗଣଙ୍କୁ ତଦବସ୍ଥ ଦେଖି ଇନ୍ଦ୍ରଙ୍କୁ ସ୍ତବ କରିବାକୁ ଆରମ୍ଭ କଲେ—"ହେ ସର୍ବଦେବେଶ ! ତୁମ୍ଭଙ୍କୁ ନମସ୍କାର କରୁ । ହେ ବଳନିସୂଦନ ! ତୁମ୍ଭଙ୍କୁ ନମସ୍କାର କରୁ । ହେ ନମୁଚିସୂଦନ ! ତୁମ୍ଭଙ୍କୁ ନମସ୍କାର କରୁ । ହେ ଶଚୀପତେ ସହସ୍ରାକ୍ଷ ! ତୁମ୍ଭେ ସଲିଳଦ୍ୱାରା ସୂର୍ଯ୍ୟରଶ୍ମିସନ୍ତପ୍ତ ସର୍ପଗଣଙ୍କୁ ରକ୍ଷାକର । ୮ । ହେ ଅମରୋତ୍ତମ ! ତୁମ୍ଭେ ଆମ୍ଭମାନଙ୍କର ପରମତ୍ରାଣ-କର୍ତ୍ତା; ହେ ପୁରନ୍ଦର ! ତୁମ୍ଭେ ପ୍ରଚୁର ବାରିବର୍ଷଣସମର୍ଥ; ତୁମ୍ଭେ ବାୟୁ, ତୁମ୍ଭେ ମେଘ, ତୁମ୍ଭେ ଆକାଶରେ ବୈଦ୍ୟୁତାଗ୍ନି, ତୁମ୍ଭେ ମେଘଗଣର ପ୍ରେରକ । ତୁମ୍ଭଙ୍କ ମହାମେଘ ବୋଲି । ୧୦ । ତୁମ୍ଭେ ଘୋରରୂପ ଅତୁଳ

ବଜ୍ର, ତୁମ୍ଭେ ଗର୍ଜ୍ଜନକାରୀ ବାରିଧର, ତୁମ୍ଭେ ସମସ୍ତ ଲୋକର ସ୍ରଷ୍ଟା ଓ ସଂହର୍ତ୍ତା; ତୁମ୍ଭେ ଅଜେୟ, ତୁମ୍ଭେ ସମସ୍ତ ଭୂତଙ୍କର ଜ୍ୟୋତି ଅର୍ଥାତ୍ ଚିଦ୍ରୂପ; ତୁମ୍ଭେ ଆଦିତ୍ୟ, ତୁମ୍ଭେ ବିଭାବସୁ, ତୁମ୍ଭେ ଅଦ୍ଭୁତ ମହାଭୂତ, ତୁମ୍ଭେ ରାଜା, ତୁମ୍ଭେ ସୁରମାନଙ୍କର ଶ୍ରେଷ୍ଠ, ତୁମ୍ଭେ ବିଷ୍ଣୁ, ତୁମ୍ଭେ ସହସ୍ରାକ୍ଷ, ତୁମ୍ଭେ ଦେବତା, ତୁମ୍ଭେ ପରମଗତି । ହେ ଦେବ ! ତୁମ୍ଭେ ସମସ୍ତ ଅମୃତ ସ୍ୱରୂପ, ତୁମ୍ଭେ ପରମପୂଜିତ ସୋମ ଅର୍ଥାତ୍ ଈଶ୍ୱର; ତୁମ୍ଭେ ମୁହୂର୍ତ୍ତ, ତୁମ୍ଭେ ତିଥି, ତୁମ୍ଭେ ଲବ, ତୁମ୍ଭେ କ୍ଷଣ, ତୁମ୍ଭେ ଶୁକ୍ଳପକ୍ଷ, ତୁମ୍ଭେ କୃଷ୍ଣପକ୍ଷ, ତୁମ୍ଭେ କଳା, ତୁମ୍ଭେ କାଷ୍ଠା, ତୁମ୍ଭେ ତ୍ରୁଟି, ତୁମ୍ଭେ ବତ୍ସର, ତୁମ୍ଭେ ଋତୁ, ତୁମ୍ଭେ ମାସ, ତୁମ୍ଭେ ରଜନୀ, ତୁମ୍ଭେ ଦିନ, ତୁମ୍ଭେ ଗିରିକାନନଯୁକ୍ତ ଉତ୍ତମ ବସୁନ୍ଧରା, ତୁମ୍ଭେ ଦିବାକରଯୁକ୍ତ, ତୁମ୍ଭେ ତମୋବିରହିତ ଆକାଶ, ତୁମ୍ଭେ ବହୁଳ ମୀନ-ମକର-ତିମି-ତିମିଙ୍ଗିଳସଙ୍କୁଳ ଉତ୍ତାଳ ତରଙ୍ଗମାଳ-ବିଶିଷ୍ଟ ମହୋଦଧି । ୧୫ । ତୁମ୍ଭେ ଅତ୍ୟନ୍ତ ଯଶସ୍ୱୀ । ଏହି ନିମିତ୍ତ ପଣ୍ଡିତ-ପ୍ରଧାନ ମହର୍ଷିବୃନ୍ଦ ପ୍ରଫୁଲ୍ଲ ଚିତ୍ତରେ ନିୟତ ତୁମ୍ଭର ଅର୍ଚ୍ଚନା କରନ୍ତି । ତୁମ୍ଭେ ସ୍ତୁତ ହୋଇ ସମ୍ପଦ ନିମିତ୍ତ ଯଜ୍ଞରେ ପ୍ରଦତ୍ତ ହବି ଓ ସୋମରସ ପାନ କର । ହେ ଅତୁଳବଳଶାଳୀ ! ବିପ୍ରମାନେ ଇହଲୋକରେ ଫଳଲାଭ ନିମିତ୍ତ ସତତ ତୁମ୍ଭର ପୂଜା କରନ୍ତି; ତୁମ୍ଭେ ସମସ୍ତ ବେଦାଙ୍ଗରେ କୀର୍ତ୍ତିତ ହୋଇଅଛ; ତୁମ୍ଭଙ୍କୁ ପାଇବା ନିମିତ୍ତ ଯାଗପରାୟଣ ଦ୍ୱିଜେନ୍ଦ୍ରମାନେ ସର୍ବ ପ୍ରଯତ୍ନରେ ବେଦାଙ୍ଗମାନଙ୍କର ପରସ୍ପର ଅବିରୋଧ ସମ୍ପାଦନ କରନ୍ତି ।

---

## ଅଧ୍ୟାୟ—୨୬

ଉଗ୍ରଶ୍ରବା କହିଲେ, ହେ ମୁନିବର ! କଦ୍ରୁ ଏହିରୂପ ସ୍ତବ କରିବାରୁ ଭଗବାନ ଅଶ୍ୱବାହନ ଇନ୍ଦ୍ରନୀଳବର୍ଣ୍ଣ ଜଳଦଜାଲରେ ସମସ୍ତ ଗଗନମଣ୍ଡଳ ଆଚ୍ଛନ୍ନ କଲେ ଓ ମେଘମାନଙ୍କୁ ଆଜ୍ଞା କଲେ, "ତୁମ୍ଭେ ଶୁଭକର ବାରି ବର୍ଷଣ କର ।" ଜଳଦମାନେ ସୌଦାମିନୀଦାମରେ ସମୁଜ୍ଜ୍ୱଳ ହୋଇ ଗଗନମଣ୍ଡଳରେ ପରସ୍ପର ନିରନ୍ତର ଗର୍ଜନ କରି ପ୍ରଚୁର ବାରି ବର୍ଷଣ କଲେ । ଘୋରତର ଗର୍ଜ୍ଜନକାରୀ ଅଦ୍ଭୁତଦର୍ଶନ ଜଳଦମାନେ ଅଜସ୍ର ଅପରିମିତ ବାରି ବର୍ଷଣ କରିବାରୁ ବୋଧହେଲା ଯେହ୍ନେ ଆକାଶମଣ୍ଡଳ ପ୍ରଳୟକାଳୀନ ମେଘରେ ଆଚ୍ଛନ୍ନ ହେଲା । ବିଦ୍ୟୁତ୍ ଓ ପବନକମ୍ପନ,

ମେଘଗର୍ଜ୍ଜନ ଓ ଅନବରତ ପତିତ ଧାରାତରଙ୍ଗଦ୍ୱାରା ଆକାଶ ନୃତ୍ୟକଲ୍ପପ୍ରାପ୍ତ ବୋଧ ହେଲା । ସେହିସବୁ ମେଘ ନିରନ୍ତର ବାରିଧାରା ବର୍ଷଣ କରିବାରୁ ଗଗନମଣ୍ଡଳ ଚନ୍ଦ୍ରସୂର୍ଯ୍ୟବିହୀନ ବୋଲି ପ୍ରତୀତ ହେଲା । ଇନ୍ଦ୍ର ବାରିବର୍ଷଣ କରିବାରୁ ସର୍ପମାନଙ୍କର ଅତିଶୟ ଆନନ୍ଦ ହେଲା ଓ ପୃଥିବୀ ଜଳରେ ପରିପୂର୍ଣ୍ଣ ହେଲା । ସେହି ନିର୍ମଳ ଶୀତଳ ଜଳ ପାତାଳରେ ପ୍ରବିଷ୍ଟ ହେଲା, ପ୍ରଚୁର ସଲିଳ ତରଙ୍ଗରେ ପୃଥିବୀ ଆଚ୍ଛାଦିତ ହେଲା ଓ ଭୁଜଙ୍ଗମାନେ ଜନନୀଙ୍କ ସହିତ ରମଣୀୟକ ଦ୍ୱୀପରେ ଉପସ୍ଥିତ ହେଲେ । ୮ ।

---

## ଅଧ୍ୟାୟ—୨୬

ଉଗ୍ରଶ୍ରବା କହିଲେ, ହେ ମୁନିବର ! ଅନନ୍ତର ସର୍ପମାନେ ଜଳ-ଧାରାରେ ଅଭିଷିକ୍ତ ଓ ଅତ୍ୟନ୍ତ ହର୍ଷପ୍ରାପ୍ତ ହୋଇ ଗରୁଡ଼ ପୃଷ୍ଠରେ ଆରୋହଣ କରି ଅତି ଶୀଘ୍ର ସେହି ଦ୍ୱୀପରେ ଉପନୀତ ହେଲେ । ମକରଗଣଙ୍କ ଆବାସ-ଭୂମି, ବିଶ୍ୱକର୍ମାନିର୍ମିତ ସେହି ଦ୍ୱୀପରେ ଉପସ୍ଥିତ ହୋଇ ସେମାନେ ପ୍ରଥମେ ଅତି ଘୋରାକୃତି ଲବଣାସୁରକୁ ଦର୍ଶନ କଲେ । ପରେ ସର୍ପମାନେ ଗରୁଡ଼ଙ୍କ ସହିତ ଗୋଟିଏ ମନୋହର କାନନରେ ପ୍ରବିଷ୍ଟ ହେଲେ । ସେହି କାନନ ନିରନ୍ତର ସାଗରଜଳରେ ଅଭିଷିକ୍ତ ହେଉଅଛି; ପକ୍ଷୀମାନେ କଳରବ କରୁଅଛନ୍ତି; ବିଚିତ୍ର ଫଳପୁଷ୍ପଶୋଭିତ ତରୁରାଜିରେ ତାହା ପରିବୃତ୍ତ ରହିଅଛି; ମନୋହର ଅଟ୍ଟାଳିକା, ନିର୍ମଳ ଜଳପୂର୍ଣ୍ଣ ସରୋବର ଓ ହବ୍ୟ ହ୍ରଦସମୂହରେ ଅଲଙ୍କୃତ ରହିଅଛି । ସେହି କାନନରେ ଅତି ପବିତ୍ର ସୁଗନ୍ଧ ଗନ୍ଧବହ ମନ୍ଦ ମନ୍ଦ ବହୁଅଛି । ଗଗନସ୍ପର୍ଶୀ ଚନ୍ଦନ ତରୁ ଓ ଅନ୍ୟାନ୍ୟ ବୃକ୍ଷରାଜି ପବନ ବେଗରେ ଆନ୍ଦୋଳିତ ହୋଇ ପୁଷ୍ପବର୍ଷଣ କରି ସେହି କାନନର ଶୋଭା ସମ୍ପାଦନ କରୁଅଛି । ସେହି କାନନରେ ବାୟୁ ବେଗରେ ଅନ୍ୟାନ୍ୟ ବୃକ୍ଷମାନଙ୍କରୁ କୁସୁମ ନିକର ପତିତ ହେବାରୁ ବୋଧ ହେଲା ଯେହ୍ନେ ସର୍ପମାନଙ୍କ ଉପରେ ପୁଷ୍ପବୃଷ୍ଟି ହେଉଅଛି । କଦ୍ରୁ ପୁତ୍ର-ମାନେ ସେମାନଙ୍କର ହର୍ଷପ୍ରଦ ହବ୍ୟ, ମନର ଆନନ୍ଦଜନକ, ଗନ୍ଧର୍ବ ଓ ଅପ୍‌ସରାମାନଙ୍କର ପ୍ରିୟ ଉନ୍ମତ୍ତ ମଧୁକରମାନଙ୍କର ଗୁଣୁ ଗୁଣୁ ରବରେ ପରିପୂର୍ଣ୍ଣ, ମନୋହରାକାର, ଅତି ପ୍ରିୟଦର୍ଶନ, ମଙ୍ଗଳାଳୟ, ଅତି ପବିତ୍ର,

ସର୍ବପ୍ରକାର ମନୋରମ ବସ୍ତୁସମୂହରେ ସୁଶୋଭିତ, ନାନାବିଧ ପତଙ୍ଗକୁଳଙ୍କ କଳରବରେ ପ୍ରତିଧ୍ୱନିତ, ସେହି କାନନ ପ୍ରାପ୍ତ ହୋଇ ବିହରଣ କଲେ ।

ଅନନ୍ତର କଦ୍ରୁ ପୁତ୍ରମାନେ ମହାବୀର୍ଯ୍ୟଶାଳୀ ପକ୍ଷିରାଜ ଗରୁଡ଼ଙ୍କୁ କହିଲେ, ହେ ବିହଙ୍ଗମ ! ତୁମ୍ଭେ ଆକାଶ ମାର୍ଗରେ ପର୍ଯ୍ୟଟନ କରି ବହୁବିଧ ରମଣୀୟ ଦେଶମାନଙ୍କୁ ଅବଲୋକନ କରିଥାଅ, ଅତଏବ ଆମ୍ଭ-ମାନଙ୍କୁ ଏତଦପେକ୍ଷା ରମଣୀୟ ଅନ୍ୟ କୌଣସି ନିର୍ମଳ ଜଳଯୁକ୍ତ ଦ୍ୱୀପକୁ ଘେନି ଚାଲ । ତହିଁରେ ଗରୁଡ଼ କ୍ଷଣକାଳ ଚିନ୍ତା କରି ଜନନୀଙ୍କୁ ପ୍ରଶ୍ନ କଲେ, "ମାତଃ ! ଆମ୍ଭେ କି ନିମିତ୍ତ ସର୍ପମାନଙ୍କର ବାକ୍ୟ ପାଳନ କରିବୁ ?" ବିନତା କହିଲେ, "ହେ ପତଙ୍ଗଶ୍ରେଷ୍ଠ ! ଆମ୍ଭେ ଦୁର୍ଦ୍ଦୈବବଶତଃ ସର୍ପ-ମାନଙ୍କର ଛଳକୃତ ମିଥ୍ୟାପଣରେ ପରାଜିତ ହୋଇ ସପତ୍ନୀଙ୍କ ଦାସୀ ହୋଇଅଛୁ ।" ଜନନୀ ଦାସୀଭାବର କାରଣ କହିବାରୁ ଗଗନବିହାରୀ ଗରୁଡ଼ ସେହି ଦୁଃଖରେ ଦୁଃଖିତ ହୋଇ, ସର୍ପମାନଙ୍କୁ କହିଲେ, "ହେ ପନ୍ନଗଗଣ ! ଆମ୍ଭେ କି ଦ୍ରବ୍ୟ ଆହରଣ କଲେ ତୁମ୍ଭମାନଙ୍କର ଦାସତ୍ୱରୁ ମୁକ୍ତ ହୋଇ ପାରିବୁ ତାହା ସତ୍ୟ କରି କହ ।" ଉଗ୍ରଶ୍ରବା କହିଲେ, ମୁନିବର ! ସର୍ପମାନେ ଗରୁଡ଼ଙ୍କର ଏହି ବାକ୍ୟ ଶ୍ରବଣ କରି ବୋଇଲେ, "ହେ ଖେଚର ! ତୁମ୍ଭେ ନିଜେ ତେଜୋବଳରେ ଅମୃତ ଆହରଣ କର, ତାହାହେଲେ ତୁମ୍ଭର ଦାସତ୍ୱ ମୋଚନ ହେବ ।" ୧୮ ।

---

## ଅଧ୍ୟାୟ—୨୮

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ଗରୁଡ଼ ସର୍ପଗଣଙ୍କ କର୍ତ୍ତୃକ ଏହିରୂପ ଅଭିହିତ ହୋଇ ମାତାଙ୍କୁ ବୋଇଲେ, ହେ ମାତଃ ! ଆମ୍ଭେ ଅମୃତ ଆହରଣ କରିବା ନିମିତ୍ତ ଗମନ କରୁଅଛୁ, ପଥ ମଧ୍ୟରେ କି ଆହାର କରିବୁ, ତାହା ଜାଣିବାକୁ ଇଚ୍ଛା କରୁ ।

ବିନତା କହିଲେ, ବତ୍ସ ! ନିର୍ଜ୍ଜନ ସମୁଦ୍ର ମଧ୍ୟରେ ନିଷାଦ-ମାନଙ୍କର ଉତ୍ତମ ବାସସ୍ଥାନ ଅଛି, ସେଠାରେ ସହସ୍ର ସହସ୍ର ନିଷାଦ

ବାସ କରନ୍ତି । ତୁମ୍ଭେ ସେମାନଙ୍କୁ ଭକ୍ଷଣ କରି ଅମୃତ ଆହରଣ କର । କିନ୍ତୁ ତୁମ୍ଭେ କୌଣସି ପ୍ରକାରେ ବ୍ରହ୍ମହତ୍ୟା କରିବାକୁ ମାନସ କରିବ ନାହିଁ, ଯେ ହେତୁ ବ୍ରାହ୍ମଣ ଅନଳତୁଲ୍ୟ ସମସ୍ତଙ୍କର ଅବଧ୍ୟ । ବ୍ରାହ୍ମଣ କୁପିତ ହେଲେ ଅଗ୍ନି, ସୂର୍ଯ୍ୟ, ବିଷ ଓ ଶସ୍ତ୍ର ସ୍ୱରୂପ ହୁଅନ୍ତି । ବ୍ରାହ୍ମଣ-ମାନେ ସମସ୍ତ ପ୍ରାଣୀଙ୍କର ଗୁରୁ ବୋଲି ଶାସ୍ତ୍ରରେ ପରିକୀର୍ତ୍ତିତ ହୋଇଅଛନ୍ତି; ଏହି କାରଣରୁ ବ୍ରାହ୍ମଣ ସାଧୁମାନଙ୍କର ମାନ୍ୟ ! ଅତଏବ ବତ୍ସ ! ତୁମ୍ଭେ ଅତିଶୟ କ୍ରୁଦ୍ଧ ହେଲେହେଁ କଦାଚ ବ୍ରାହ୍ମଣମାନଙ୍କୁ ବଧ କରିବ ନାହିଁ । ୬ । କୌଣସି ମତେ ଅନିଷ୍ଟାଚରଣ କରିବ ନାହିଁ । ହେ ଅନଘ ! ବ୍ରତପରାୟଣ ବ୍ରାହ୍ମଣ କୁପିତ ହେଲେ ଯେରୂପ ଭସ୍ମ କରିପାରେ, ଅଗ୍ନି କି ସୂର୍ଯ୍ୟ ସେପରି ଭସ୍ମ କରିପାରନ୍ତି ନାହିଁ । ଅତଏବ ଆମ୍ଭେ ବ୍ରାହ୍ମଣର ଯେଉଁ ଲକ୍ଷଣ କହିବୁ, ତାହାକୁ ବ୍ରାହ୍ମଣ ବୋଲି ଜାଣିବ । ବ୍ରାହ୍ମଣ ସମସ୍ତ ଭୂତଙ୍କର ଅଗ୍ରଜ, ସକଳ ବର୍ଣ୍ଣର ଶ୍ରେଷ୍ଠ, ସକଳ ବର୍ଣ୍ଣର ପିତା ଓ ସକଳ ବର୍ଣ୍ଣର ଗୁରୁ ।

ଗରୁଡ଼ କହିଲେ, ହେ ମାତଃ ! ବ୍ରାହ୍ମଣର ରୂପ କି ପ୍ରକାର ? ସ୍ୱଭାବ କି ରୂପ ଓ ପରାକ୍ରମ କେମନ୍ତ ? ସେ ଅଗ୍ନିଙ୍କ ପ୍ରାୟ ତେଜସ୍ୱୀ କି ସୌମ୍ୟଦର୍ଶନ ? ମାତଃ ! ଯେଉଁ ସକଳ ଶୁଭଲକ୍ଷଣଦ୍ୱାରା ଆମ୍ଭେ ବ୍ରାହ୍ମଣଙ୍କୁ ଚିହ୍ନି ପାରିବୁଁ, ଆପଣ ତତ୍ସମୁଦାୟ ହେତୁ-ନିର୍ଦ୍ଦେଶ ପୂର୍ବକ ଆମ୍ଭଙ୍କୁ କହ ! ଆମ୍ଭେ ଏହି ସବୁ ଜାଣିବାକୁ ଇଚ୍ଛା କରୁଅଛୁଁ । ୯ । ବିନତା କହିଲେ, ବତ୍ସ ! ଯେ ତୁମ୍ଭର କଣ୍ଠଗତ ହୋଇ ଗିଳିତ ବଡ଼ିଶ ପ୍ରାୟ ପୀଡ଼ାଦାୟକ ହେବ ଓ ଜ୍ୱଳନ୍ତ ଅଙ୍ଗାର ପ୍ରାୟ କଣ୍ଠ ଦଗ୍‌ଧ କରିବ, ତାହାକୁ ଉତ୍କୃଷ୍ଟ ବ୍ରାହ୍ମଣ ବୋଲି ଜାଣିବ । ତୁମ୍ଭେ ଅତ୍ୟନ୍ତ କ୍ରୁଦ୍ଧ ହେଲେହେଁ ବ୍ରାହ୍ମଣଙ୍କୁ କଦାଚ ହନନ କରିବ ନାହିଁ । ବିନତା ପୁତ୍ର-ବାତ୍ସଲ୍ୟ ବଶତଃ ପୁନର୍ବାର ଏହି କଥା କହିଲେ, ଯେ ତୁମ୍ଭର ଜଠରରେ ଜୀର୍ଣ୍ଣ ହେବନାହିଁ, ତାହାକୁ ଉତ୍ତମ ବ୍ରାହ୍ମଣ ବୋଲି ଜାଣିବ । ୧୨ ।

ସର୍ପଗଣଙ୍କ କର୍ତ୍ତୃକ ପ୍ରତାରିତା, ଅତ୍ୟନ୍ତ ଦୁଃଖିତା ବିନତା, ପୁତ୍ରଙ୍କର ଅତୁଳ ବୀର୍ଯ୍ୟ ଜାଣି ସୁଦ୍ଧା ବାତ୍ସଲ୍ୟବଶରୁ ପ୍ରୀତମନରେ ତାହାଙ୍କୁ ଆଶୀର୍ବାଦ କଲେ, ହେ ପୁତ୍ର ! ବାୟୁ ତୁମ୍ଭର ପକ୍ଷଦ୍ୱୟ ରକ୍ଷାକରନ୍ତୁ, ଚନ୍ଦ୍ର ଓ ସୂର୍ଯ୍ୟ ତୁମ୍ଭର ପୃଷ୍ଠଦେଶ ରକ୍ଷାକରନ୍ତୁ । ବହ୍ନି ତୁମ୍ଭର ଶିରୋଦେଶ ରକ୍ଷା କରନ୍ତୁ । ବସୁଗଣ ତୁମ୍ଭର ସର୍ବଶରୀର ରକ୍ଷା କରନ୍ତୁ । ଆମ୍ଭେ ମଧ୍ୟ

ଏହି ସ୍ଥାନରେ ଥାଇ ସର୍ବଦା ତୁମ୍ଭର ସ୍ୱସ୍ତ୍ୟୟନରେ ରତ ଥିବୁଁ । ହେ ପୁତ୍ର ! ତୁମ୍ଭେ ସ୍ୱକାର୍ଯ୍ୟ ସିଦ୍ଧି ନିମିତ୍ତ ନିର୍ବିଘ୍ନରେ ଗମନ କର ।

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ଅନନ୍ତର ବଳବାନ୍ ଗରୁଡ଼ ଜନନୀଙ୍କ ବାକ୍ୟ ଶ୍ରବଣପୂର୍ବକ ପକ୍ଷଦ୍ୱୟ ବିସ୍ତାର କରି ନଭୋମଣ୍ଡଳରେ ଉତ୍ଥିତ ହେଲେ । କିୟତ୍କ୍ଷଣ ପରେ ସେ ବୁଭୁକ୍ଷିତ ହୋଇ ଦ୍ୱିତୀୟ କାଳାନ୍ତକ ଯମ ପ୍ରାୟ ନିଷାଦମାନଙ୍କ ନିକଟରେ ଉପସ୍ଥିତ ହେଲେ । ନିଷାଦଙ୍କୁ ସଂହାର କରିବା ନିମିତ୍ତ ଗରୁଡ଼ ଗଗନସ୍ପର୍ଶୀ ଧୂଳିରାଶି ଉତ୍ଥିତ କଲେ । ସେହି ଧୂଳିନିଚୟ ପତିତ ହେବାରୁ ସାଗରବାରି ଶୁଷ୍କ ହେବାକୁ ଆରମ୍ଭ କଲା, ଆଉ ତାହାଙ୍କ ପକ୍ଷପବନ ବେଗରେ ସମୀପସ୍ଥ ପର୍ବତଜାତ ବୃକ୍ଷସକଳ କମ୍ପିତ ହେଲା । ୧୮ ।

ସେହି ଅବସରରେ ପକ୍ଷୀରାଜ ଗରୁଡ଼ ନିଷାଦମାନଙ୍କର ପଥରୋଧ କରି ଅତି ପ୍ରକାଣ୍ଡ ଆନନ ବିସ୍ତାର କରି ରହିଲେ । ଅନନ୍ତର ନିଷାଦଗଣ ଭୟାନ୍ୱିତ ହୋଇ ଭୁଜଙ୍ଗଭୋଜୀ ଗରୁଡ଼ଙ୍କ ମୁଖ ମଧ୍ୟରେ ପ୍ରବିଷ୍ଟ ହେବାକୁ ଆରମ୍ଭ କଲେ । ଯେମନ୍ତ ବାୟୁବେଗରେ ଅରଣ୍ୟର ବୃକ୍ଷସକଳ ପରିଚାଳିତ ହେଲେ ସହସ୍ର ସହସ୍ର ପକ୍ଷୀ ଅତ୍ୟନ୍ତ ବ୍ୟାକୁଳ ଓ ପବନୋଦ୍ଧୃତ ରଜୋ-ନିବହଦ୍ୱାରା ବିମୋହିତ ହୋଇ ଆକାଶକୁ ଗମନ କରନ୍ତି, ସେହିରୂପ ନିଷାଦମାନେ ଗରୁଡ଼ଙ୍କ ଅତି ପ୍ରକାଣ୍ଡ ବିସ୍ତୃତ ଆନନ ମଧ୍ୟରେ ପ୍ରବେଶ କଲେ । ସେହି ସମୟରେ ଶତ୍ରୁତାପନ ମହାବଳ ବୁଭୁକ୍ଷିତ ବିହଙ୍ଗମରାଜ ଗରୁଡ଼ ଅତ୍ୟନ୍ତ ବ୍ୟସ୍ତସମସ୍ତ ହୋଇ ବହୁସଂଖ୍ୟକ ମତ୍ସ୍ୟଜୀବିମାନଙ୍କୁ ବିନାଶ କରିବା ଅଭିପ୍ରାୟରେ ତୁଣ୍ଡ ସଙ୍କୁଚିତ କଲେ । ୨୧ ।

---

## ଅଧ୍ୟାୟ—୨୯

ଉଗ୍ରଶ୍ରବା କହିଲେ, ମୁନିବର ! ଗୋଟିଏ ବ୍ରାହ୍ମଣ ଭାର୍ଯ୍ୟା ସହିତ ଗରୁଡ଼ଙ୍କ କଣ୍ଠରେ ପ୍ରବିଷ୍ଟ ହୋଇ ପ୍ରଦୀପ୍ତ ଅଙ୍ଗାର ପ୍ରାୟ କଣ୍ଠଦେଶ ଦାହ କରିବାକୁ ଆରମ୍ଭ କଲେ । ତେତେବେଳେ ଗରୁଡ଼ ତାହାଙ୍କୁ କହିଲେ, ହେ ଦ୍ୱିଜୋତ୍ତମ ! ଆମ୍ଭେ ମୁଖ ବ୍ୟାଦାନ କରୁଅଛୁଁ, ଆପଣ ଶୀଘ୍ର ନିର୍ଗତ ହେଉନ୍ତୁ । ବ୍ରାହ୍ମଣ ନିରନ୍ତର ପାପାଚରଣ କଲେ ସୁଦ୍ଧା ଆମ୍ଭର ବଧ

ନୁହନ୍ତି । ଗରୁଡ଼ ଏହି କଥା କହିବାରୁ ବ୍ରାହ୍ମଣ ପ୍ରତ୍ୟୁତ୍ତର କଲେ, ହେ ପକ୍ଷୀରାଜ ! ଆମ୍ଭର ଭାର୍ଯ୍ୟା ନିଷାଦୀ ମଧ୍ୟ ଆମ୍ଭ ସହିତ ନିର୍ଗତ ହେଉ । ଗରୁଡ଼ କହିଲେ, ହେ ଦ୍ୱିଜବର ! ଏତେବେଳ ଯାଏ ସୁଦ୍ଧା ଆପଣ ଆମ୍ଭର ଜଠରାନଳ ତେଜରେ ଜୀର୍ଣ୍ଣ ହୋଇ ନାହାନ୍ତି, ଅତଏବ ନିଷାଦୀ ସହିତ ତ୍ୱରିତ ବିନିର୍ଗତ ହୋଇ ଆତ୍ମରକ୍ଷା କରନ୍ତୁ । ୪ ।

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ଅନନ୍ତର ବ୍ରାହ୍ମଣ ନିଷାଦୀ ସହିତ ବହିର୍ଗତ ହୋଇ ଗରୁଡ଼ଙ୍କୁ ଆଶୀର୍ବାଦ କରି ଅଭିମତ ପ୍ରଦେଶକୁ ପ୍ରସ୍ଥାନ କଲେ । ବ୍ରାହ୍ମଣ ଭାର୍ଯ୍ୟାଙ୍କ ସହିତ ନିର୍ଗତ ହୁଅନ୍ତେ ପକ୍ଷିରାଜ ଗରୁଡ଼ ପକ୍ଷଦ୍ୱୟ ବିସ୍ତାର କରି ମନୋବେଗରେ ଆକାଶରେ ଉତ୍‌ଥିତ ହେଲେ । କିୟତ୍‌କ୍ଷଣପରେ ସେ ପିତାଙ୍କୁ ଦେଖି ତାହାଙ୍କୁ ପ୍ରଶ୍ନ କରିବାରେ ସେ ନ୍ୟାୟାନୁସାରେ ସମସ୍ତ ଉତ୍ତର କଲେ । ମହାତ୍ମା ମହର୍ଷି କଶ୍ୟପ ଗରୁଡ଼ଙ୍କୁ କହିଲେ, ହେ ପୁତ୍ର ! ତୁମ୍ଭମାନଙ୍କର ତ କୁଶଳ ? ତୁମ୍ଭେ ପ୍ରତ୍ୟହ ପ୍ରଚୁର ପରିମାଣରେ ନିର୍ବିଘ୍ନରେ ଭୋଜନ ପ୍ରାପ୍ତ ହୁଅ ତ ? ନରଲୋକରେ ତୁମ୍ଭର ପର୍ଯ୍ୟାପ୍ତ ଭକ୍ଷ୍ୟଦ୍ରବ୍ୟ ଅଛି ତ ? ଗରୁଡ଼ କହିଲେ, ତାତ ! ଆମ୍ଭର ମାତା ଓ ଭ୍ରାତା ନିରନ୍ତର କୁଶଳରେ ଅଛନ୍ତି ; ଆମ୍ଭେ କୁଶଳରେ ଅଛୁଁ, ହଁ ; କିନ୍ତୁ ପ୍ରତ୍ୟହ କୁଶଳରେ ପର୍ଯ୍ୟାପ୍ତ ଭୋଜନ ହୁଅଇ ନାହିଁ । ସର୍ପମାନେ ଅମୃତ ଆହରଣ କରିବାକୁ ଆମ୍ଭଙ୍କୁ ପଠାଇଅଛନ୍ତି । ଆମ୍ଭେ ଜନନୀଙ୍କ ଦାସୀତ୍ୱ ମୋଚନ କରିବା ନିମିତ୍ତ ଅଦ୍ୟ ଅମୃତ ଆହରଣ କରିବୁଁ । ୧୦ । 'ତୁମ୍ଭେ ନିଷାଦଗଣଙ୍କୁ ଭକ୍ଷଣକର' ବୋଲି ମାତା ଆମ୍ଭଙ୍କୁ ଆଦେଶ କରିଥିଲେ, କିନ୍ତୁ ସହସ୍ର ସହସ୍ର ନିଷାଦ ଭକ୍ଷଣ କରି ସୁଦ୍ଧା ଆମ୍ଭର ତୃପ୍ତି ହୋଇନାହିଁ । ଅତଏବ ହେ ଭଗବନ୍ ! ଆପଣ ଆମ୍ଭର ଅପର ଭକ୍ଷ୍ୟ ନିର୍ଦ୍ଦେଶ କରି ଦେଉନ୍ତୁ, ଯାହା ଭକ୍ଷଣ କରି ଆମ୍ଭେ ଅମୃତ ଆହରଣ କରିବାକୁ ସମର୍ଥ ହେବୁଁ । ହେ ପ୍ରଭୋ ! କ୍ଷୁଧା ଓ ପିପାସା ଶାନ୍ତି ନିମିତ୍ତ ଆପଣ ଆମ୍ଭର ଭକ୍ଷ୍ୟ ନିର୍ଦ୍ଦେଶ କରନ୍ତୁ ।

କଶ୍ୟପ କହିଲେ, ବତ୍ସ ! ଏହି ଯେ ସରୋବର ଦେଖୁଅଛ, ଏ ଅତି ପବିତ୍ର ଓ ଦେବଲୋକରେ ମଧ୍ୟ ବିଖ୍ୟାତ । ଏଥିରେ ଗୋଟିଏ ହସ୍ତୀ ଅଧୋମୁଖ ହୋଇ କୂର୍ମରୂପୀ ନିଜ ଅଗ୍ରଜକୁ ସର୍ବଦା ଆକର୍ଷଣ କରୁଅଛି । ଏମାନଙ୍କର ଜନ୍ମାନ୍ତରୀଣ ବୈରର କାରଣ ଓ ଉଭୟଙ୍କର ଯେ ପ୍ରକାର

ଶରୀର ପରିମାଣ, ସେହି ସମସ୍ତର ଗୂଢ଼ ତତ୍ତ୍ୱ ଆମ୍ଭେ ତୁମ୍ଭ ନିକଟରେ ବର୍ଣ୍ଣନ କରୁଅଛୁ, ଶ୍ରବଣ କର ।

ବିଭାବସୁ ନାମଧେୟ ଅତି କୋପନସ୍ୱଭାବ ଗୋଟିଏ ମହର୍ଷି ଥିଲେ । ୧୯ । ମହାତପସ୍ୱୀ 'ସୁପ୍ରତୀକ' ନାମରେ ତାହାଙ୍କର ଗୋଟିଏ ଅନୁଜ ସହୋଦର ଥିଲେ । ମହର୍ଷି ସୁପ୍ରତୀକଙ୍କର ଇଚ୍ଛା ଥିଲା ଯେ ପୈତୃକ ଧନ ଏକତ୍ର ନ ରହୁ । ଏହି ନିମିତ୍ତ ସେ ପ୍ରତ୍ୟହ ବିଭାଗ କଥା କହନ୍ତି । ଏଥିରେ ବିଭାବସୁ ସୁପ୍ରତୀକଙ୍କୁ କହିଲେ, ଭ୍ରାତଃ ! ଅନେକ ଲୋକ ମୋହବଶତଃ ସର୍ବଦା ବିଭାଗ କରିବାକୁ ଇଚ୍ଛା କରନ୍ତି; କିନ୍ତୁ ବିଭକ୍ତ ହେଲେ ସେମାନେ ଧନମୋହରେ ବିମୋହିତ ହୋଇ ପରସ୍ପର ବିରୋଧ କରୁଥାନ୍ତି । ତେତେବେଳେ ମିତ୍ରରୂପଧାରୀ ଶତ୍ରୁମାନେ ସେହି ସ୍ୱାର୍ଥପରାୟଣ ମୂଢ଼ଚେତା ଭ୍ରାତାମାନଙ୍କୁ ନିଜ ନିଜ ଧନ ବିଭକ୍ତ କରି ନବାର ଦେଖି ସେମାନଙ୍କ ମଧ୍ୟରେ ଆତ୍ମବିଚ୍ଛେଦ ଜନ୍ମାଇ ଦିଅନ୍ତି । ପରେ ଶତ୍ରୁମାନେ ସେମାନଙ୍କ ମଧ୍ୟରେ ଆତ୍ମବିଚ୍ଛେଦ ହେବାର ଦେଖି ବୈରିତା ବୃଦ୍ଧି କରି ଦେଉଥାନ୍ତି । ଏହିରୂପେ ଆତ୍ମବିଚ୍ଛେଦ ହେଲେ ଅବିଳମ୍ବେ ସେମାନଙ୍କର ସର୍ବନାଶ ହୁଅଇ । ଏହି ହେତୁରୁ ସାଧୁମାନେ ଗୁରୁବାକ୍ୟରେ ଓ ଶାସ୍ତ୍ରର ଶାସନରେ ଅନାବଦ୍ଧ, ମର୍ଯ୍ୟାଦାଭଙ୍ଗ ଭୟରେ ପରସ୍ପର ଶଙ୍କାଶାଳୀ, ଭ୍ରାତାମାନଙ୍କର ଧନ ବିଭାଗର ପ୍ରଶଂସା କରନ୍ତି ନାହିଁ । ହେ ସୁପ୍ରତୀକ ! ହେ ସୁପ୍ରତୀକ ! ତୁମ୍ଭେ ଆତ୍ମବିଚ୍ଛେଦ କରି ଧନ ବିଭାଗ କାମନା କରୁଅଛ; କୌଣସି ପ୍ରକାରେ ଅମ୍ଭେ ତୁମ୍ଭଙ୍କୁ ନିବାରଣ କରିବାକୁ ସମର୍ଥ ହେଉ-ନାହୁଁ, ଅତଏବ ତୁମ୍ଭେ ହସ୍ତିତ୍ୱ ପ୍ରାପ୍ତହେବ । ସୁପ୍ରତୀକ ଏହିରୂପ ଅଭିଶପ୍ତ ହୋଇ ବିଭାବସୁଙ୍କୁ କହିଲେ, ହେ ଭ୍ରାତଃ ! ତୁମ୍ଭେ ମଧ୍ୟ ଜଳଚର କଚ୍ଛପ ହେବ । ୨୩ ।

ମୂଢ଼ଚେତା ସୁପ୍ରତୀକ ଓ ବିଭାବସୁ ଏହିରୂପେ ଅର୍ଥ ନିମିତ୍ତ ପରସ୍ପରର ଶାପରେ ଗଜତ୍ୱ ଓ କଚ୍ଛପତ୍ୱ ପ୍ରାପ୍ତ ହୋଇଅଛନ୍ତି । ସେହି ମହାକାୟ ଦୁଇଭ୍ରାତା ରୋଷଦୋଷବଶରୁ ତିର୍ଯ୍ୟକ୍ ଯୋନି ପ୍ରାପ୍ତହୋଇ ଓ ଶରୀରର ମହତ୍ତ୍ୱ ଓ ବଳରେ ଦର୍ପିତ ହୋଇ ଓ ପୂର୍ବ ବୈରର ଅନୁସରଣ କରି ପରସ୍ପର ଦ୍ୱେଷରେ ରତ ହୋଇ ଏହି ସରୋବରରେ ବାସ କରୁଅଛନ୍ତି । ସେହି ସୁଶ୍ରୀ ମହାଗଜ ସରୋବର ତୀରରେ ଉପସ୍ଥିତ ହେଲେ ତାହାର ବୃଂହିତଧ୍ୱନି ଶ୍ରବଣ କରି ଜଳମଧ୍ୟଗତ ମହାକାୟ କଚ୍ଛପ ସମସ୍ତ ସରୋବର ବିକ୍ଷୋଭିତ କରି ଉତ୍ଥିତ ହୁଏ ।

ତାହାକୁ ଦେଖି ବୀର୍ଯ୍ୟଶାଳୀ ଗଜ ଶୁଣ୍ଡକୁଣ୍ଡଳିତ କରି ଜଳରେ ପ୍ରବେଶ କରଇ ଓ ଦନ୍ତ, ଶୁଣ୍ଡାଗ୍ର, ଲାଙ୍ଗୁଳ ଓ ପାଦଚତୁଷ୍ଟୟର ବେଗରେ ବହୁ ମତ୍ସ୍ୟ ସମାକୀର୍ଣ୍ଣ ସେହି ସରୋବର ଆଲୋଡ଼ନ କରୁଥାଏ । ବୀର୍ଯ୍ୟବାନ୍ କଚ୍ଛପ ମଧ୍ୟ ମସ୍ତକ ଉନ୍ନତ କରି ଯୁଦ୍ଧାର୍ଥ ଉପସ୍ଥିତ ହୁଅଇ । ଏହି ଗଜର ଶରୀର ଛଅ ଯୋଜନ ଉଚ୍ଚ ଓ ଦ୍ୱାଦଶ ଯୋଜନ ବିସ୍ତୃତ । କଚ୍ଛପ ତିନି ଯୋଜନ ଉଚ୍ଚ ଓ ତାହାର ଶରୀର ବେଷ୍ଟନ ଦଶଯୋଜନ । ୩୦ । ସେମାନେ ଦୁହେଁ ପରସ୍ପର ବଧାଭିଳାଷୀ ହୋଇ ଯୁଦ୍ଧରେ ଉନ୍ମତ୍ତ ହୋଇଅଛନ୍ତି, ତୁମ୍ଭେ ଶୀଘ୍ର ସେମାନଙ୍କୁ ଭକ୍ଷଣ କରି ଆପଣାର ବାଞ୍ଛିତ କାର୍ଯ୍ୟ ସାଧନ କର । ତୁମ୍ଭେ ସେହି ମହାମେଘତୁଲ୍ୟବର୍ଣ୍ଣ କଚ୍ଛପ ଓ ମହାଗିରି ସଦୃଶ ଘୋରରୂପୀ ହସ୍ତୀକୁ ଆହାର କରି ଅମୃତ ଆହରଣ କର । ୩୨ ।

ଉଗ୍ରଶ୍ରବା କହିଲେ, ହେ ମୁନିବର ! କଶ୍ୟପ ଗରୁଡ଼ଙ୍କୁ ଏହି କଥା କହି ଆଶୀର୍ବାଦ କଲେ ଯେ ହେ ଅଣ୍ଡଜ ! ଦେବତାମାନଙ୍କ ସହିତ ଯୁଦ୍ଧବେଳେ ତୁମ୍ଭର ମଙ୍ଗଳ ହେଉ । ପୂର୍ଣ୍ଣକୁମ୍ଭ, ଗୋ, ବ୍ରାହ୍ମଣ ଓ ଅନ୍ୟାନ୍ୟ ଯେ ସବୁ ମଙ୍ଗଳଜନକ ଦ୍ରବ୍ୟ ଅଛି, ସେ ସମୁଦାୟ ତୁମ୍ଭର ଶୁଭକର ହେଉ । ଦେବଗଣଙ୍କ ସହିତ ସମର କରିବା ସମୟରେ ଋଗ୍‌ବେଦ, ସାମବେଦ, ଯଜୁର୍ବେଦ, ପବିତ୍ର ହବି, ସମସ୍ତ ରହସ୍ୟ ଶାସ୍ତ୍ର ଓ ସମଗ୍ର ବେଦ ତୁମ୍ଭର ବଳ ବିଧାନ କରନ୍ତୁ । ୩୫ ।

ଗରୁଡ଼ ପିତାଙ୍କ କର୍ତ୍ତୃକ ଏହିରୂପ ଅଭିହିତ ହୋଇ ସେହି ନିକଟବର୍ତ୍ତୀ ସରୋବରକୁ ଗମନ କଲେ । ସେଠାକୁ ଯାଇ ନାନାବିଧ ବିହଙ୍ଗସମାକୀର୍ଣ୍ଣ ନିର୍ମଳ ଜଳପୂର୍ଣ୍ଣ ସରୋବର ଅବଲୋକନ କଲେ । ଭୀଷଣ ବେଗଶାଳୀ ଗଗନଚର ବିହଗରାଜ ଗରୁଡ଼ ପିତାଙ୍କର ସେହି ବାକ୍ୟ ଶ୍ରବଣ କରି ଗୋଟିଏ ପଦର ନଖରେ ଗଜକୁ ଓ ଅନ୍ୟ ପଦର ନଖରେ କଚ୍ଛପକୁ ଗ୍ରହଣ କରି ଆକାଶରେ ଅନେକ ଉଚ୍ଚକୁ ଉତ୍ଥିତ ହେଲେ; ଅନନ୍ତର ଗରୁଡ଼ ନିରାଲମ୍ବ ଭାବରେ ଗଗନମାର୍ଗରେ ଭ୍ରମଣ କରି ତୀର୍ଥ ଅର୍ଥାତ୍ ମେରୁଶୃଙ୍ଗ ଦେଖି ତହିଁ ଦେବତରୁଗଣଙ୍କ ନିକଟରେ ଉପସ୍ଥିତ ହେଲେ । ତେତେବେଳେ ସେହି ଦିବ୍ୟ ସ୍ୱର୍ଣ୍ଣମୟ ବୃକ୍ଷସବୁ ତାହାଙ୍କ ପକ୍ଷବାତରେ ଆହତ ଓ ଭୀତ ହୋଇ ଜାଣିଲେ ଆମ୍ଭମାନଙ୍କୁ ଭଗ୍ନ କରିବେ ଏହା ଭାବି ଅତିଶୟ କମ୍ପିତ ହେଲେ । ଖେଚର ଗରୁଡ଼

ଅଭିଳଷିତ ଫଳଦାୟୀ ଦେବତରୁମାନଙ୍କୁ ଅତିକ୍ରମ କରି ଦେଖି (୪୦) ଅନୁପମରୂପ, ଅତୁଳକାୟ, ସ୍ୱର୍ଣ୍ଣମୟ ଓ ରଜତମୟ ଫଳସମୂହରେ ବିଭୂଷିତ, ପ୍ରବାଳମୟ ଶାଖାଯୁକ୍ତ, ସାଗରଜଳରେ ଅଭିଷିକ୍ତ, ନିରନ୍ତର ଦୀପ୍ୟମାନ ଅନ୍ୟାନ୍ୟ ମହାତରୁମାନଙ୍କ ନିକଟରେ ଉପନୀତ ହେଲେ । ସେମାନଙ୍କ ମଧ୍ୟରେ ଅତିଶୟ ଉଚ୍ଚ ଅତି ପ୍ରକାଣ୍ଡ ଗୋଟିଏ ବଟବୃକ୍ଷ ବିହଙ୍ଗଶ୍ରେଷ୍ଠ ଗରୁଡ଼ଙ୍କୁ ମନୋବେଗରେ ଆଗମନ କରୁଥିବାର ଦେଖି କହିଲେ, ହେ ପକ୍ଷିରାଜ ! ଆପଣ ଆମ୍ଭର ଶତଯୋଜନ ବିସ୍ତୃତ ଏହି ମହାଶାଖାରେ ଉପବିଷ୍ଟ ହୋଇ ଗଜ ଓ କଚ୍ଛପଙ୍କୁ ଭକ୍ଷଣ କରନ୍ତୁ । ୪୩ । ଅନନ୍ତର ପର୍ବତସମ କଳେବର ବେଗବାନ୍ ବିହଙ୍ଗମବର ଦ୍ରୁତବେଗରେ ଅବତୀର୍ଣ୍ଣ ହେବାମାତ୍ର ପକ୍ଷିସହସ୍ରସେବିତ ସେହି ଦ୍ରୁମ କମ୍ପିତ ହେଲା ଓ ଅବିରଳ ପତ୍ରସମୂହଯୁକ୍ତ ତାହାର ଶାଖା ଭଗ୍ନ ହେଲା । ୪୪ ।

## ଅଧ୍ୟାୟ—୩୦

ଉଗ୍ରଶ୍ରବା କହିଲେ, ମହାବଳସମ୍ପନ୍ନ ଗରୁଡ଼ଙ୍କ ପଦସ୍ପର୍ଶମାତ୍ର ସେହି ପ୍ରକାଣ୍ଡ ତରୁଶାଖା ଭଗ୍ନ ହେବାରୁ ସେ ତାହାକୁ ଧାରଣ କରି ବିସ୍ମୟୋତ୍ଫୁଲ୍ଲ ହୃଦୟରେ ଇତସ୍ତତଃ ଦୃଷ୍ଟିସଞ୍ଚାରଣ କରି ଦେଖିଲେ, ବାଳଖିଲ୍ୟ ଋଷିମାନେ ସେହି ମହାଶାଖାରେ ଅଧୋମୁଖରେ ଲମ୍ବମାନ ହୋଇଅଛନ୍ତି । ୨ । ତପୋନିରତ ଲମ୍ବମାନ ସେହି ସବୁ ବ୍ରହ୍ମର୍ଷିଗଣଙ୍କୁ ଦର୍ଶନ କରିବା ମାତ୍ର ପତଗିରାଜ ମନେ କଲେ, 'ଆମ୍ଭେ ବ୍ରହ୍ମହତ୍ୟା କରିବୁଁ ନାହିଁ । ୩ । ଯେବେ ଏହି ତରୁଶାଖା ପତିତ ହୁଏ, ତେବେ ମୌନବ୍ରତ ଋଷିମାନଙ୍କର ପ୍ରାଣ ବିନାଶ ହେବ ।' ଏହିରୂପ ଭାବି ସେ ବ୍ରହ୍ମହତ୍ୟା ଭୟରେ ଗଜ ଓ କଚ୍ଛପଙ୍କୁ ନଖରେ ଦୃଢ଼ରୂପେ ଧରି ସ୍ୱୀୟ ଚଞ୍ଚୁପୁଟ-ଦ୍ୱାରା ସେହି ଭଗ୍ନ ତରୁଶାଖା ଗ୍ରହଣ କଲେ । ଗରୁଡ଼ଙ୍କର ସେହି ଅତି ଦୈବ ଓ ଅତ୍ୟଦ୍ଭୁତ କର୍ମ ଦେଖି ମହର୍ଷିମାନେ ବିସ୍ମୟାକୁଳିତ ହେଲେ ଓ ଯେ ହେତୁରୁ ସେ ପନ୍ନଗାସନ ଖଗଶ୍ରେଷ୍ଠ ଗୁରୁଭାର ଗ୍ରହଣ କରି ଉଡ୍ଡୀନ ହେଲେ, ତହୁଁ ତାହାଙ୍କର ନାମ ଗରୁଡ଼ * ଦେଲେ ।

* ଗୁରୁ (ଶବ୍ଦର ଅର୍ଥ ମହତ୍ତ୍ୱ) + ଡ଼ୀ (ଧାତୁର ଅର୍ଥ ଉଡ଼ିବା)—ଏହି ଦୁଇଥିରୁ ଗରୁଡ଼ ଶବ୍ଦର ଉତ୍ପତ୍ତି ।

ତଦନନ୍ତର ଗରୁଡ଼ ପକ୍ଷବାତରେ ପର୍ବତମାନଙ୍କୁ କମ୍ପିତ କରି ଥିର ଥିର ସେଠାରୁ ପ୍ରସ୍ଥାନ କଲେ ଓ ବାଲଖିଲ୍ୟ ଋଷିମାନଙ୍କର ପ୍ରାଣ-ରକ୍ଷା ନିମିତ୍ତ ଗଜ ଓ କଚ୍ଛପକୁ ଧରି ନାନାଦେଶ ପରିଭ୍ରମଣ କଲେ କିନ୍ତୁ ସେମାନଙ୍କର ଉପଯୁକ୍ତ ସ୍ଥାନ କୌଣସିଠାରେ ପ୍ରାପ୍ତ ହେଲେ ନାହିଁ । ପରିଶେଷରେ ସେ ପର୍ବତଶ୍ରେଷ୍ଠ ଗନ୍ଧମାଦନରେ ଉପସ୍ଥିତ ହୋଇ ତପସ୍ୟାରତ ସ୍ୱୀୟ ପିତା କଶ୍ୟପଙ୍କୁ ଦର୍ଶନ କଲେ ।

ତଦୀୟ ପିତା ଭଗବାନ୍ କଶ୍ୟପ, ସେହି ଦିବ୍ୟରୂପୀ ତେଜୋ-ବଳସମ୍ପୂର୍ଣ୍ଣ, ମନ ଓ ପବନ ତୁଲ୍ୟ ବେଗବାନ୍, ଗିରିଶୃଙ୍ଗସମ କଳେବର, ଉଦ୍ୟତ ବ୍ରହ୍ମଦଣ୍ଡସଦୃଶ, ଅଚିନ୍ତନୀୟ *, ଅନଭିଧେୟ, ସର୍ବଭୂତ ଭୟଙ୍କର, ମହାବଳଶାଳୀ, ଭୀଷଣାକାର, ଅଗ୍ନିସଦୃଶ ଦୀପ୍ତିଶୀଳ, ଦେବଦାନବ-ରାକ୍ଷସମାନଙ୍କର ସୁଦ୍ଧା ଅଧୃଷ୍ୟ ଓ ଅଜେୟ, ଗିରିଶୃଙ୍ଗ ବିଦାରଣକ୍ଷମ, ସମୁଦ୍ର ଜଳଶୋଷକ, ତ୍ରିଲୋକଦଳନସମର୍ଥ, ଭୟଙ୍କର କୃତାନ୍ତ-ସମଦର୍ଶନ, ବିହଙ୍ଗମକୁ ସମାଗତ ଦେଖି ଓ ତଦୀୟ ମନୋଗତ ଅଭିପ୍ରାୟ ବୁଝିପାରି କହିଲେ (୧୪), 'ପୁତ୍ର ! ଏପରି ସାହସ କଦାପି କରିବ ନାହିଁ । ଦେଖ ତୁମ୍ଭଙ୍କୁ ଯେପରି ସହସା ଯାତନା ଭୋଗ କରିବାକୁ ନ ପଡ଼େ । ଏହି ସମସ୍ତ ମରୀଚିପ ବାଲଖିଲ୍ୟ ଋଷିମାନେ କ୍ରୁଦ୍ଧ ହୋଇ ତୁମ୍ଭଙ୍କୁ ଯେପରି ଭସ୍ମ ନ କରନ୍ତି ।'

ଉଗ୍ରଶ୍ରବା କହିଲେ, ତଦନନ୍ତର କଶ୍ୟପ ପୁତ୍ର ନିମିତ୍ତ ତପଃ-ପ୍ରଭାବରେ ନିଷ୍ପାପ, ମହାଭାଗ ବାଲଖିଲ୍ୟମାନଙ୍କୁ ପ୍ରସନ୍ନ କଲେ ଓ କହିଲେ, 'ହେ ତପୋଧନଗଣ ! ଗରୁଡ଼ ଲୋକହିତାର୍ଥ ଯେଉଁ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି, ଆପଣମାନେ ସେହି ମହତ୍ କର୍ମ ସମ୍ପାଦନରେ ଏହାଙ୍କୁ ଅନୁଜ୍ଞା ଦେଉନ୍ତୁ । ୧୭ ।

ଉଗ୍ରଶ୍ରବା କହିଲେ, ବାଲଖିଲ୍ୟ ଋଷିମାନେ ଭଗବାନ୍ କଶ୍ୟପଙ୍କ କର୍ତ୍ତୃକ ଏହିରୂପ ଅଭିହିତ ହୋଇ ସେହି ଶାଖା ପରିତ୍ୟାଗ ପୂର୍ବକ ତପସ୍ୟା ନିମିତ୍ତ ପରମ ପବିତ୍ର ହିମାଳୟ ପର୍ବତକୁ ପ୍ରସ୍ଥାନ କଲେ । ୧୮ ।

---

* ଗରୁଡ଼ ଏତେ ବଡ଼ ଆକାର ଧରିଥିଲେ ଯେ ତାହାଙ୍କର ସେ ଆକାର ମନରେ କରିହୁଏ ନାହିଁ । ଅତଏବ ଅଚିନ୍ତନୀୟ ପ୍ରଭୃତି କେତେକ ବିଶେଷଣ ବ୍ୟାସ ଦେଇଅଛନ୍ତି ।

ଅନନ୍ତର ସେମାନେ ଗମନ କଲାରୁ ବିନତାନନ୍ଦନ ମୁଖରେ ତରୁଶାଖା ଧରିଥିବାରୁ ବିକୃତ ବାକ୍ୟରେ ଅବ୍ୟକ୍ତ ସ୍ୱରରେ ପିତା କଶ୍ୟପଙ୍କୁ ପଚାରିଲେ, 'ଭଗବନ୍ ! ଆମ୍ଭେ କେଉଁଠାରେ ଏହି ତରୁ-ଶାଖାକୁ ପରିତ୍ୟାଗ କରିବୁଁ ? କେଉଁଠାରେ ମାନବଶୂନ୍ୟ ଦେଶ ଅଛି କହି ଦେଉନ୍ତୁ ।' ତେତେବେଳେ କଶ୍ୟପ ଗୋଟିଏ ପର୍ବତ କହିଦେଲେ ଯେଉଁଠାରେ ମନୁଷ୍ୟ ନାହାନ୍ତି, ଯେ ସର୍ବଦା ହିମାଚ୍ଛନ୍ନ, ଅପର ଲୋକେ ଯେଉଁଠାକୁ ମନରେ ସୁଦ୍ଧା ଗମନ କରି ନ ପାରନ୍ତି, ସେହି ପର୍ବତକୁ ନିର୍ଦ୍ଦେଶ କରିଦେଲେ । ୨୧ ।

ମହାଖଗ ମହାବଳ ଗରୁଡ଼, ତରୁଶାଖା ଓ ଗଜ ଓ କଚ୍ଛପଙ୍କୁ ଘେନି ଅତି ବେଗରେ ସେହି ପ୍ରକାଣ୍ଡ ପର୍ବତୋଦ୍ଦେଶ୍ୟରେ ଗମନ କଲେ । ଗରୁଡ଼ ଯେଉଁ ଶାଖାକୁ ଘେନି ପ୍ରସ୍ଥାନ କଲେ ସେହି ଶାଖିଶାଖା ଏପରି ବୃହତ୍ ଯେ ଅତି ସ୍ଥୂଳ ଓ ଦୀର୍ଘ ଶତଚର୍ମ ରଜ୍ଜୁଦ୍ୱାରା ସୁଦ୍ଧା ତାହାର ବେଷ୍ଟନ ବନ୍ଧନ ହୋଇ ନ ପାରେ । ୨୩ । ଅନନ୍ତର ଗଗନଚର ବିହଙ୍ଗମରାଜ କ୍ଷଣକାଳରେ ଶତସହସ୍ର ଯୋଜନାନ୍ତରସ୍ଥ ସେହି ପର୍ବତରେ ଉପସ୍ଥିତ ହୋଇ ପିତୃବାକ୍ୟାନୁସାରେ ତାହା ଉପରେ ସେହି ମହତୀ ବୃକ୍ଷଶାଖାକୁ ସଶବ୍ଦରେ ତ୍ୟାଗ କଲେ । ସେହି ଶୈଳରାଜ ଗରୁଡ଼ର ପକ୍ଷବାତରେ ଆହତ ହୋଇ କମ୍ପିତ ହେଲା ଓ ତତ୍ରତ୍ୟ ପାଦପ ସକଳ ଉନ୍ମୂଳିତ ହୋଇ ଚତୁଃପାର୍ଶ୍ୱରେ ପୁଷ୍ପବର୍ଷଣ କଲେ; ଯେଉଁ ମଣିକାଞ୍ଚନ ବିଚିତ୍ର ଶୃଙ୍ଗମାନେ ଗିରିବରକୁ ସୁଶୋଭିତ କରିଥିଲେ, ସେମାନେ ମଧ୍ୟ ବିଶୀର୍ଣ୍ଣ ହୋଇ ଚତୁଃପାର୍ଶ୍ୱରେ ପତିତ ହେଲେ । ବହୁସଂଖ୍ୟକ ତରୁ ସେହି ବୃକ୍ଷଶାଖା-କର୍ତ୍ତୃକ ଅଭିହତ ହୋଇ ସ୍ୱର୍ଣ୍ଣବର୍ଣ୍ଣ ପୁଷ୍ପଦ୍ୱାରା ବିଦ୍ୟୁଦ୍ବିଶିଷ୍ଟ ଜଳଧର ପଟଳ ପ୍ରାୟ ଶୋଭା ପ୍ରାପ୍ତ ହେଲେ । ୨୮ ।

ହେମସଦୃଶ ତରୁମାନେ ଭୂମିରେ ପତିତ ଓ ଧାତୁରାଗରେ ସଂଯୁକ୍ତ ହୋଇ ସୂର୍ଯ୍ୟକିରଣଦ୍ୱାରା ପ୍ରତିରଞ୍ଜିତ ହେଲା ପ୍ରାୟ ଦିଶିଲେ । ଅନନ୍ତର ଗରୁଡ଼ ସେହି ଗିରିଶୃଙ୍ଗରେ ଉପବିଷ୍ଟ ହୋଇ ଗଜ କଚ୍ଛପ ଦୁହିଁଙ୍କି ଭକ୍ଷଣ କଲେ । ୩୦ । କୂର୍ମ ଓ କୁଞ୍ଜର ଦୁହିଙ୍କି ଭକ୍ଷଣ କରି ପର୍ବତଶୃଙ୍ଗର ଅଗ୍ର ଭାଗରୁ ମହାବେଗରେ ଉଡ୍ଡୀନ ହେଲେ । ତହିଁରେ ଦେବତାମାନଙ୍କର ଭୟସୂଚକ ଉତ୍ପାତମାନ ଆରମ୍ଭ ହେଲା । ଇନ୍ଦ୍ରଙ୍କର ପ୍ରିୟ ବଜ୍ର ଭୟରେ ପ୍ରଜ୍ୱଳିତ ହେଲା । ଦିବସରେ ଆକାଶରୁ ଧୂମ ଓ

ଅଗ୍ନିଶିଖା ସହିତ ଉଲ୍କାପାତ ହେଲା । ବସୁ, ରୁଦ୍ର, ଆଦିତ୍ୟ, ସାଧ୍ୟ, ମରୁତ୍ ଓ ଅପରାପର ଗଣଦେବତାଙ୍କର ପ୍ରହରଣମାନ ପରସ୍ପର ଉପଦ୍ରବରେ ପ୍ରବୃତ୍ତ ହେଲେ । ୩୪ । ଦେବାସୁରଙ୍କ ଯୁଦ୍ଧକାଳରେ ସୁଦ୍ଧା ତଦ୍ରୂପ ଅଭୂତପୂର୍ବ ବ୍ୟାପାର ଘଟି ନ ଥିଲା । ନିର୍ଘାତ ସହିତ ବାୟୁ ପ୍ରବାହିତ ହେଲା, ଉଲ୍କାସବୁ ସହସ୍ର ସହସ୍ର ପତିତ ହେଲା । ମେଘ ବ୍ୟତିରେକେ ଆକାଶରେ ମହା ଗର୍ଜ୍ଜନମାନ ଜାତ ହେଲା । ଦେବତାଙ୍କ ଦେବ ଇନ୍ଦ୍ର ମଧ୍ୟ ରକ୍ତବୃଷ୍ଟି କଲେ । ଅମରଗଣଙ୍କ ମାଳାବଳୀ ମ୍ଳାନ ଓ ତେଜ ନଷ୍ଟ ହେଲା । ଭୟାନକ ଉତ୍ପାତ ମେଘମାନେ ଅନେକ ରକ୍ତବୃଷ୍ଟି କଲେ । ଧୂଳିସମୂହ ଉତ୍ଥିତ ହୋଇ ଦେବତାଙ୍କ ମୁକୁଟରାଜକୁ ମଳିନ କରିଦେଲା । ଏଥିରେ ଦେବରାଜ ଇନ୍ଦ୍ର ଅପରଦେବଙ୍କ ସହିତ ଏହି ସମସ୍ତ ଦାରୁଣ ଉତ୍ପାତ ଦର୍ଶନ କରି ତ୍ରସ୍ତ ହୋଇ ବୃହସ୍ପତିଙ୍କୁ ପଚାରିଲେ (୩୮), 'ଭଗବନ୍ ! କି ନିମିତ୍ତ ଏହି ସବୁ ଘୋର ଉତ୍ପାତ ସହସା ଉତ୍ଥିତ ହେଲା ? ଆମ୍ଭମାନଙ୍କୁ ଯୁଦ୍ଧରେ ପରାଜିତ କରିବ ଏପରି ଶତ୍ରୁ ଆମ୍ଭେ ଦେଖୁନାହୁଁ ।' ବୃହସ୍ପତି ବୋଇଲେ, ହେ ଦେବେନ୍ଦ୍ର ଶତକ୍ରତୋ ! ତୁମ୍ଭର ଅପରାଧରୁ ଓ ପ୍ରମାଦରୁ, ମହାତ୍ମା ବାଲଖିଲ୍ୟ ମହର୍ଷିଙ୍କ ତପଃପ୍ରଭାବରୁ କଶ୍ୟପ ମୁନିଙ୍କ ପୁତ୍ର ବିନତାଗର୍ଭଜାତ କାମରୂପୀ, ବଳବାନ୍ ଖେଚର ଅମୃତ ହରଣାର୍ଥ ପ୍ରବିଷ୍ଟ ହୋଇଅଛନ୍ତି । ସେହି ବଳଶ୍ରେଷ୍ଠ ବିହଙ୍ଗମ ସୋମହରଣ କରିବାକୁ ସମର୍ଥ ଅଟନ୍ତି । ଏହାଙ୍କଠାରେ ସବୁ ସମ୍ଭବ, ଅସାଧ୍ୟ କାର୍ଯ୍ୟ ସୁଦ୍ଧା ଏ ସୁସାଧ୍ୟ କରିପାରନ୍ତି । ୪୨ ।

ଉଗ୍ରଶ୍ରବା କହିଲେ, ଶକ୍ର ଏହି ବଚନ ଶ୍ରବଣ କରି ଅମୃତରକ୍ଷକମାନଙ୍କୁ ବୋଇଲେ, ମହାବୀର୍ଯ୍ୟବଳ ପକ୍ଷୀ ଅମୃତହରଣାର୍ଥ ଏହି ଉଦ୍ୟତ ହୋଇଅଛି । ଆମ୍ଭେ ତୁମ୍ଭଙ୍କୁ ଡାକି ବୋଲୁଅଛୁଁ ଯେପରି ସେ ବଳପୂର୍ବକ ଅମୃତ ହରଣ ନ କରେ । ବୃହସ୍ପତି କହିଲେ, ସେ ପକ୍ଷୀର ବଳ ଅତୁଳ । ସେହି ବାକ୍ୟ ଶୁଣି ବିବୁଧଗଣ ବିସ୍ମିତ ଓ ଆପଣା କାର୍ଯ୍ୟରେ ସଯତ୍ନ ହେଲେ । ପ୍ରତାପଶାଳୀ ଇନ୍ଦ୍ର ବଜ୍ର ଧରି ଅମୃତକୁ ପରିବାରଣ କରି ଅବସ୍ଥିତ ହେଲେ । ୪୫ । ମନସ୍ୱୀ ସୁରୋତ୍ତମମାନେ ସର୍ବାବୟବରେ ବିଚିତ୍ର କାଞ୍ଚନମୟ ଓ ବୈଦୂର୍ଯ୍ୟଖଚିତ ମହାର୍ହ କବଚ ଧାରଣ କରି ଓ ଗାତ୍ରରେ ଦୀପ୍ତିମନ୍ତ ଦୃଢ଼ଚର୍ମ ଓ ବିବିଧ ପ୍ରକାର ଭୟଙ୍କର ତୀକ୍ଷ୍ଣଧାର ଶସ୍ତ୍ରମାନ ଧରି ଅବସ୍ଥିତ ହେଲେ ।

ଅଥଚ ସଧୂମ ସ୍ଫୁଲିଙ୍ଗ ଅଗ୍ନି ଉଦ୍‌ଗୀରଣକାରୀ ଚକ୍ର, ପରିଘ, ତ୍ରିଶୂଳ, ପରଶ୍ୱଧ ଓ ଶକ୍ତି ଓ ବିବିଧ ତୀକ୍ଷ୍ଣ ନିର୍ମଳ କରବାଳମାନଙ୍କୁ ଓ ଉଗ୍ରଦର୍ଶନ ଗଦାମାନଙ୍କୁ ଆପଣା ଆପଣା ଦେହାନୁରୂପ ଗ୍ରହଣ କଲେ । ୪୯ । ସେହି ସବୁ ଦୀପ୍ତିମନ୍ତ ଶସ୍ତ୍ରଦ୍ୱାରା ଓ ଦିବ୍ୟାଭରଣ ତେଜରେ ଦୀପ୍ତିମନ୍ତ ସୁରଗଣମାନେ ସମୁଜ୍ଜ୍ୱଳ ଭାବରେ ସ୍ଥିତ ହେଲେ । ଅନୁପମ ବଳବୀର୍ଯ୍ୟ ଓ ତେଜୋଧାରୀ, ଅସୁରପୁର ବିଦାରଣକାରୀ, ସୁରବୃନ୍ଦ ବହ୍ନି-ସଦୃଶ ବପୁ ଧରି ଅମୃତରକ୍ଷଣରେ ସ୍ଥିରମନା ହେଲେ । ୫୧ । ଶତସହସ୍ର ପରିଘସମାକୁଳ ସମର ସ୍ଥଳ ଏପରି ବୋଧ ହେଲା ଯେ ସୂର୍ଯ୍ୟରଶ୍ମି ବିକାଶିତ ଆଉ ଗୋଟିଏ ଆକାଶ ଧରଣୀ ତଳରେ ଖସିପଡ଼ିଅଛି । ୫୨ ।

---

## ଅଧ୍ୟାୟ—୩୧

ଶୌନକ ପଚାରିଲେ, ହେ ସୂତନନ୍ଦନ ! ସୁରପତି ଇନ୍ଦ୍ରଙ୍କର କି ଅପରାଧ ଓ କି ପ୍ରମାଦ ଘଟିଥିଲା ? ବାଲଖିଲ୍ୟ ଋଷିମାନଙ୍କର ତପୋବଳରେ ବା ଗରୁଡ଼ କି କାରଣରୁ ସମ୍ଭୂତ ହେଲେ ? ଦେବର୍ଷି କଶ୍ୟପଙ୍କର କିମ୍ପାଇଁ ପକ୍ଷିରାଜ ପୁତ୍ର ଜନ୍ମ ହେଲେ ଓ ସେହି ଖେଚର ବିହଙ୍ଗମ କି ନିମିତ୍ତ ସର୍ବ-ପ୍ରାଣିଙ୍କର ଅଧର୍ଷଣୀୟ ଓ ଅବଧ୍ୟ କାମଗମୀ ଓ କାମବୀର୍ଯ୍ୟ ହେଲେ ? ଆମ୍ଭେ ଏହି ସମସ୍ତ ଶୁଣିବାକୁ ଇଚ୍ଛାକରୁଁ । ଯେବେ ପୁରାଣରେ କୀର୍ତ୍ତିତ ଥାଏ, ତେବେ ବର୍ଣ୍ଣନ କରିବା ହେଉନ୍ତୁ ।

ଉଗ୍ରଶ୍ରବା କହିଲେ, ହେ ଦ୍ୱିଜବର ! ଆପଣ ଯାହା ଆମ୍ଭଙ୍କୁ ପଚାରିଲେ, ତାହା ପୁରାଣର ବିଷୟ ; ମୁଁ ସଂକ୍ଷେପରେ କହୁଅଛି, ଆପଣ ଶୁଣିବା ହେଉନ୍ତୁ । ପ୍ରଜାପତି କଶ୍ୟପ ପୁତ୍ର କାମନାରେ ଯଜ୍ଞାରମ୍ଭ କଲେ । ତହିଁରେ ଦେବତା ଓ ଗନ୍ଧର୍ବ ଏମାନେ ସାହାଯ୍ୟ ପ୍ରଦାନ କଲେ । ଇନ୍ଦ୍ରଙ୍କୁ ଓ ବାଲଖିଲ୍ୟ ଋଷିଙ୍କୁ କଶ୍ୟପ ଇନ୍ଧନାନୟନରେ ନିଯୁକ୍ତ କଲେ । ଦେବରାଜ ଇନ୍ଦ୍ର ଅତ୍ୟନ୍ତ ବଳବାନ୍ ଥିବାରୁ ଆପଣା ବଳ ଅନୁସାରେ ଗିରିସନ୍ନିଭ କାଷ୍ଠ ଅନାୟାସରେ ବହନ କଲେ । ପଥରେ ଦେଖିଲେ ଯେ ବୃଦ୍ଧ ଅଙ୍ଗୁଷ୍ଠ ପରିମାଣ ବାଲଖିଲ୍ୟ ଋଷିମାନେ ସମସ୍ତେ ମିଳିତ ହୋଇ ଖଣ୍ଡିଏ ପଲାଶ କାଠିକୁ ବହି ଆଣୁଅଛନ୍ତି । ନିରାହାର ବଶରୁ ସେମାନଙ୍କ ଶରୀର ଅତିଶୟ କୃଶ

ହୋଇଅଛୁ । ଗୋଷ୍ପଦ ଜଳରେ ମଗ୍ନ ହୋଇ କ୍ଳେଶ ପାଉଅଛନ୍ତି । ବୀର୍ଯ୍ୟୋନ୍ମତ୍ତ ପୁରନ୍ଦର ସେମାନଙ୍କୁ ଦେଖି ବିସ୍ମୟାବିଷ୍ଟ ହୋଇ ଅବହାସ କରି ଓ ନମସ୍କାରାଦି ନ କରି ଶୀଘ୍ର ପ୍ରସ୍ଥାନ କଲେ । ୧୦ । ଏଥି ଉତ୍ତାରୁ ସେହି ଋଷିମାନେ ରୋଷ ସମାବିଷ୍ଟ ହୋଇ ଇନ୍ଦ୍ରଙ୍କର ଭୟାବହ ଗୋଟିଏ ମହତ୍ କର୍ମ ଆରମ୍ଭ କଲେ । ୧୧ ।

ହେ ବ୍ରତପରାୟଣ ମୁନିବର ! ସୁତପା ସେହି ଋଷିମାନେ ଉଚ୍ଚାବଚ ମନ୍ତ୍ରମାନଙ୍କୁ ପାଠକରି ଏହି କାମନାରେ ଅଗ୍ନିରେ ଆହୁତି ପ୍ରଦାନ କଲେ ଯେ ଦେବରାଜଙ୍କ ଭୟପ୍ରଦ ଓ କାମବୀର୍ଯ୍ୟ ଓ କାମଗାମୀ ଆଉ ଗୋଟିଏ ଇନ୍ଦ୍ର ଦେବତାମାନଙ୍କର ଉତ୍ପନ୍ନ ହେଉନ୍ତୁ ; ଓ ଆମ୍ଭମାନଙ୍କର ତପସ୍ୟାର ଫଳରୁ ଶୌର୍ଯ୍ୟରେ ଓ ବୀର୍ଯ୍ୟରେ ଇନ୍ଦ୍ରଙ୍କଠାରୁ ଶତଗୁଣ ଓ ମନୋବେଗ ହୋଇ ଗୋଟିଏ ଦାରୁଣ ପ୍ରାଣୀ ଉଦ୍ଭୂତ ହେଉ । ୧୪ ।

ଦେବରାଜ ଶତକ୍ରତୁ ଏହା ଜାଣିପାରି ଅତିଶୟ ସନ୍ତପ୍ତ ହୋଇ ବ୍ରତପରାୟଣ କଶ୍ୟପଙ୍କର ଶରଣାପନ୍ନ ହେଲେ । ୧୫ । ପ୍ରଜାପତି କଶ୍ୟପ ଇନ୍ଦ୍ରଙ୍କର ସେହି ସମସ୍ତ କଥା ଶ୍ରବଣ କରି ବାଲଖିଲ୍ୟ ମୁନିମାନଙ୍କ ନିକଟକୁ ଗମନ କରି ପଚାରିଲେ, 'ଆପଣମାନଙ୍କର କର୍ମସିଦ୍ଧି ହେଉଅଛି ତ ?' ସତ୍ୟବାଦୀ ବାଲଖିଲ୍ୟ ଋଷିମାନେ ଉତ୍ତର ଦେଲେ, 'ହଁ ହେଉଅଛି ।'

ପ୍ରଜାପତି କଶ୍ୟପ ସାନ୍ତ୍ୱନାପୂର୍ବକ ସେମାନଙ୍କୁ କହିଲେ, ବ୍ରହ୍ମାଙ୍କଦ୍ୱାରା ଏହି ଇନ୍ଦ୍ର ତ୍ରିଭୁବନରେ ପ୍ରତିଷ୍ଠିତ ହୋଇଅଛନ୍ତି । ହେ ତପୋଧନମାନେ ! ଆପଣମାନେ ମଧ୍ୟ ଇନ୍ଦ୍ରଙ୍କ ନିମିତ୍ତ ଯତ୍ନବନ୍ତ ହୋଇ-ଅଛନ୍ତି । ବ୍ରହ୍ମାଙ୍କ ବଚନ ବ୍ୟର୍ଥ କରିବା ଆପଣମାନଙ୍କର କର୍ତ୍ତବ୍ୟ ନୁହେଁ । ଆପଣମାନଙ୍କର ଏହି ସଙ୍କଳ୍ପକୁ ମିଥ୍ୟା କରିବା ଆମ୍ଭର ମଧ୍ୟ ଉଦ୍ଦେଶ୍ୟ ନୁହେ । ୧୯ । ଅତଏବ ସେହି ମହାବଳ ବୀର୍ଯ୍ୟଶାଳୀ ପ୍ରାଣୀ ପକ୍ଷୀଙ୍କର ଇନ୍ଦ୍ର ହେଉନ୍ତୁ ଓ ଦେବରାଜ କ୍ଷମା ପ୍ରାର୍ଥନା କରୁଅଛନ୍ତି, ତାହାଙ୍କ ପ୍ରତି ଆପଣ-ମାନେ ପ୍ରସନ୍ନ ହେଉନ୍ତୁ । ୨୦ । ମୁନିଶ୍ରେଷ୍ଠ ପ୍ରଜାପତି କଶ୍ୟପଙ୍କର ସେହି ବଚନ ଶୁଣି ବାଲଖିଲ୍ୟ ଋଷିମାନେ ତାହାଙ୍କର ସମ୍ବର୍ଦ୍ଧନା କରି ପ୍ରତ୍ୟୁତ୍ତର କଲେ, ହେ ପ୍ରଜାପତେ ! ଆମ୍ଭେମାନେ ସମସ୍ତେ ଇନ୍ଦ୍ରଙ୍କ ନିମନ୍ତେ ଏହି ଯଜ୍ଞ ଆରମ୍ଭ କରିଅଛୁଁ ; ଆପଣ ମଧ୍ୟ ଅପତ୍ୟାର୍ଥ ଗୋଟିଏ ଯଜ୍ଞାରମ୍ଭ କରିଅଛନ୍ତି । ଅତଏବ ଆପଣ ଏହି ଫଳାଭିସନ୍ଧି କର୍ମ ପ୍ରତିଗ୍ରହ କରି ଯେପରି ଶ୍ରେୟ ହେବାର ଦେଖନ୍ତି, ସେହିପରି ବିଧାନ କରନ୍ତୁ । ୨୩ ।

ଉଗ୍ରଶ୍ରବା ଉତ୍ତର କଲେ, ଏହି ସମୟରେ ଶୁଭଲକ୍ଷଣା ଯଶସ୍ୱିନୀ ଦକ୍ଷପ୍ରଜାପତି ତନୟା ବିନତା ଦେବୀ, ପୁତ୍ରକାମନାରେ ବ୍ରତପରାୟଣା ଓ ପୁଂସବନ ଦ୍ୱାରା ଶୁଚି ହୋଇ ଭର୍ତ୍ତାଙ୍କ ସମୀପକୁ ଗମନ କଲେ । କଶ୍ୟପ ତାହାଙ୍କୁ ବୋଇଲେ, ହେ ଦେବି ! ତୁମ୍ଭର ଅଭିଳାଷ ସଫଳ ହେବ । ବାଲଖିଲ୍ୟ ଋଷିମାନଙ୍କର ତପସ୍ୟା ପ୍ରଭାବରୁ ଓ ଆମ୍ଭର ସଂକଳ୍ପାନୁସାରେ ତ୍ରୈଲୋକ୍ୟପୂଜିତ ମହାଭାଗ ଓ ବୀର ହୋଇ ଦୁଇଗୋଟି ପୁତ୍ର ତୁମ୍ଭର ଜାତ ହେବେ । ଭଗବାନ୍ କଶ୍ୟପ ପୁନରପି ବିନତାଙ୍କୁ କହିଲେ, ତୁମ୍ଭେ ଅପ୍ରମତ୍ତ ଓ ସାବଧାନ ହୋଇ ଏହି ସୁମହୋଦୟ ଗର୍ଭକୁ ଧାରଣ କର । ୨୮ ।

ସର୍ବଲୋକସମ୍ଭାବିତ, କାମରୂପ ଓ ବଳବାନ୍ ତୁମ୍ଭର ଏହି ଦୁଇ ବିହଙ୍ଗମ ପୁତ୍ର ସର୍ବ ପକ୍ଷିଙ୍କ ଉପରେ ଆଧିପତ୍ୟ କରିବେ । ୨୯ । ତଦନନ୍ତର ପ୍ରଜାପତି କଶ୍ୟପ ପ୍ରୀତ ମନରେ ଶତକ୍ରତୁଙ୍କୁ ଉଦ୍ଦେଶ୍ୟ କରି କହିଲେ, ହେ ପୁରନ୍ଦର ! ଏ ଦୁହେଁ ତୁମ୍ଭର ସହାୟକାରୀ ଭ୍ରାତା ହେବେ । ଏହାଙ୍କଦ୍ୱାରା ତୁମ୍ଭର କୌଣସି ଅପକାର ଘଟିବ ନାହିଁ ; ତୁମ୍ଭର ସନ୍ତାପର ଆଉ କାରଣ ନାହିଁ, ତୁମ୍ଭେ ଇନ୍ଦ୍ର ହୋଇଥିବ ; କିନ୍ତୁ ହେ ଶକ୍ର ! ତୁମ୍ଭେ ଆଉ କଦାପି ବାଗ୍‌ବଜ୍ର, ଅତି କୋପୀ, ବ୍ରହ୍ମବାଦୀ ଋଷିମାନଙ୍କୁ ଦର୍ପବଶରୁ କୋପିତ ବା ଅବମାନିତ କରିବ ନାହିଁ ।

ଏହିରୂପେ ଅଭିହିତ ହୋଇ ଇନ୍ଦ୍ର ନିଃଶଙ୍କ ଚିତ୍ତରେ ତ୍ରିପିଷ୍ଟପକୁ ଗମନ କଲେ । ବିନତା ମଧ୍ୟ ସିଦ୍ଧମନୋରଥ ଓ ମୁଦିତ ହେଲେ । ୩୩ । ଅରୁଣ ଓ ଗରୁଡ଼ ନାମରେ ଦୁଇପୁତ୍ରଙ୍କୁ ବିନତା ଜନ୍ମ କଲେ । ତନ୍ମଧ୍ୟରେ ଅରୁଣ ବିକଳାଙ୍ଗ ଓ ସୂର୍ଯ୍ୟଙ୍କ ସମ୍ମୁଖବର୍ତ୍ତୀ ହେଲେ (୩୪) ଓ ଗରୁଡ଼ ପକ୍ଷିଙ୍କ ମଧ୍ୟରେ ଇନ୍ଦ୍ର ସ୍ୱରୂପ ଅଭିଷିକ୍ତ ହେଲେ । ହେ ଭୃଗୁନନ୍ଦନ ! ଏବେ ସେହି ଗରୁଡ଼ଙ୍କର ଅତି ଅଦ୍ଭୁତ କର୍ମ ଶ୍ରବଣ କର ।

---

# ଅଧ୍ୟାୟ—୩୨

ଉଗ୍ରଶ୍ରବା କହିଲେ, ହେ ଦ୍ୱିଜବର ! ତଦନନ୍ତର ବୃହସ୍ପତିଙ୍କ ବଚନାନୁସାରେ ସମସ୍ତ ଦେବଗଣ ବହୁବିଧ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ଅତି ସତର୍କତାପୂର୍ବକ ଅମୃତ ରକ୍ଷା କରୁଥିଲେ, ଏମନ୍ତ ସମୟରେ ବିହଙ୍ଗମରାଜ ଗରୁଡ଼ ମହାବେଗରେ ସେମାନଙ୍କ ସମୀପରେ ଆସି ଉପସ୍ଥିତ ହେଲେ । ଦେବତାମାନେ ଗରୁଡ଼ଙ୍କୁ ମହାବଳସମ୍ପନ୍ନ ବିଲୋକନ କରି କମ୍ପାନ୍ୱିତ ହେଲେ ଓ ଭୟରେ କର୍ତ୍ତବ୍ୟଜ୍ଞାନଶୂନ୍ୟ ହୋଇ ପରସ୍ପର ପ୍ରହାର କରିବାକୁ ଲାଗିଲେ । ୨ । ସେମାନଙ୍କ ମଧ୍ୟରେ ଅପ୍ରମେୟ ବଳଶାଳୀ, ବିଦ୍ୟୁଦଗ୍ନିସମପ୍ରଭ ମହାବୀର୍ଯ୍ୟ ବିଶ୍ୱକର୍ମା ଅମୃତ ରକ୍ଷା କରୁଥିଲେ । ୩ । ସେ ପତଗେନ୍ଦ୍ରଙ୍କ ସହିତ କ୍ଷଣକାଳ ଘୋର ଯୁଦ୍ଧ କରି ପରିଶେଷରେ ତଦୀୟ ପକ୍ଷ, ନଖ ଓ ତୁଣ୍ଡାଘାତରେ କ୍ଷତ ହୋଇ ପଡ଼ିଗଲେ । ୪ । ଆକାଶ-ବିହାରୀ ଗରୁଡ଼ ପକ୍ଷବାୟୁରେ ପ୍ରଭୂତ ଧୂଳିରାଶି ଉତ୍ଥିତ କରି ତଦ୍ୱାରା ସମସ୍ତ ଲୋକକୁ ନିରାଲୋକ ଓ ଦେବତାଙ୍କୁ ଆଚ୍ଛନ୍ନ କଲେ । ସେହି ରଜୋରାଶିଦ୍ୱାରା ଅବକୀର୍ଣ୍ଣ ହୋଇ ଦେବତାମାନେ ମୋହପ୍ରାପ୍ତ ହେଲେ ଓ ଅମୃତ ରକ୍ଷା-କାରୀମାନେ ମଧ୍ୟ ତଦ୍ରୂପ ହୋଇ କିଛିମାତ୍ର ଦେଖି ପାରିଲେ ନାହିଁ ।

ଏହି ପ୍ରକାରେ ଗରୁଡ଼ ତ୍ରିଦିବାଳୟଙ୍କୁ ଆକୁଳିତ କରି ପକ୍ଷ ଓ ତୁଣ୍ଡପ୍ରହାରଦ୍ୱାରା ଦେବତାମାନଙ୍କୁ ବିଦୀର୍ଣ୍ଣ କଲେ । ତହୁଁରେ ଦେବରାଜ ସହସ୍ରାକ୍ଷ ବାୟୁଙ୍କୁ ଆଦେଶ କଲେ, ହେ ମାରୁତ ! ତୁମ୍ଭେ ଏହି ରଜୋ-ରାଶିକୁ ବିକ୍ଷିପ୍ତ କର, ଏ ତୁମ୍ଭର କାର୍ଯ୍ୟ ଅଟେ । ଇନ୍ଦ୍ରଙ୍କ ବଚନାନୁସାରେ ବଳଶାଳୀ ବାୟୁ ଶୀଘ୍ର ସେହି ରଜୋରାଶିକୁ ଅପସାରିତ କଲେ । ୮ । ତହୁଁରେ ତିମିର ନାଶ ହେବାରୁ ଦେବତାମାନେ ଗରୁଡ଼ଙ୍କୁ ପ୍ରହାର କଲେ । ମହାବଳ ପରାକ୍ରାନ୍ତ, ଶତ୍ରୁନିସୂଦନକାରୀ, ମହାବୀର୍ଯ୍ୟ, ପକ୍ଷିରାଟ୍ ସୁରଗଣଙ୍କଦ୍ୱାରା ଆହତ ହୋଇ ଆକାଶସ୍ଥ ମହାମେଘ ପ୍ରାୟ ସର୍ବପ୍ରାଣୀଙ୍କୁ ଭୟାକୁଳ କରି ଦେବତାମାନଙ୍କ ଊର୍ଦ୍ଧ୍ୱଦେଶରେ ଆକାଶପଥରେ ଆରୋହଣ କଲେ । ୧୧ । ବର୍ମଧାରୀ ସମସ୍ତ ବିବୁଧ ଓ ବାସବ, ପଟ୍ଟିଶ, ପରିଘ, ଶୂଳ ଓ ଗଦା ପ୍ରଭୃତି ନାନାବିଧ ଅସ୍ତ୍ରଦ୍ୱାରା ଅଥଚ କ୍ଷୁରପ୍ରାୟ ଉଜ୍ଜ୍ୱଳ ଓ ଆଦିତ୍ୟସମ ତେଜସ୍ୱୀ ଚକ୍ରଦ୍ୱାରା ପକ୍ଷିରାଜଙ୍କୁ ପ୍ରହାର କଲେ ।

କିନ୍ତୁ ସେ ତଦ୍ଦ୍ୱାରା ଆହତ ହୋଇ ସୁଦ୍ଧା ଏକାକୀ ଅକମ୍ପିତ ଭାବରେ ତୁମୁଳ ଯୁଦ୍ଧ କଲେ । ପ୍ରତାପଶାଳୀ ବୈନତେୟ ଆକାଶରେ ଅବସ୍ଥିତ ହୋଇ ନିଜ ପକ୍ଷ ଓ ବକ୍ଷଦ୍ୱାରା ଦେବତାମାନଙ୍କୁ ଚତୁର୍ଦ୍ଦିଗକୁ ବିକ୍ଷିପ୍ତ କଲେ । ୧୪ ।

ଅନନ୍ତର ଯୁଦ୍ଧରେ ଗରୁଡ଼କର୍ତ୍ତୃକ ଦେବତାମାନେ ବିକ୍ଷିପ୍ତ ହୋଇ ପଳାୟନପର ହେଲେ । ଗରୁଡ଼ଙ୍କର ନଖ ଓ ତୁଣ୍ଡରେ କ୍ଷତ ହୋଇ ପ୍ରଚୁର ଶୋଣିତ ସ୍ରାବ କଲେ, ପତଗେନ୍ଦ୍ରଦ୍ୱାରା ପ୍ରଧର୍ଷିତ ହୋଇ ସାଧ୍ୟଗଣ ଓ ଗନ୍ଧର୍ବଗଣ ପୂର୍ବଦିଗକୁ ଓ ବସୁଗଣ ଓ ରୁଦ୍ରଗଣ ଦକ୍ଷିଣ ଦିଗକୁ ଗମନ କଲେ । ୧୬ । ଆଦିତ୍ୟଗଣ ପଶ୍ଚିମ ଦିଗକୁ ଓ ଅଶ୍ୱିନୀକୁମାର ଯୁଗଳ ଉତ୍ତର ଦିଗକୁ ଗମନ କଲେ । ଏହିରୂପେ ମହାତେଜସ୍ୱୀ ଦେବତାମାନେ ପଛକୁ ଚାହିଁ ଚାହିଁ ଓ ଯୁଦ୍ଧ କରି କରି ପଳାୟନ କଲେ । ମହାବଳ ବିହଙ୍ଗମ ପକ୍ଷିରାଟ୍ ବିନତାସୁତ ପ୍ରଳୟ-କାଳରେ ପରନ୍ତପ ମହାଦେବଙ୍କ ପ୍ରାୟ ଅଶ୍ୱକନ୍ଦ, ରେଣୁକ, କ୍ରଥନ, ତପନ, ଉଲୂକ, ଶ୍ୱସନ, ନିମିଷ, ପ୍ରରୁଜ ଓ ପୁଳିନନାମଧାରୀ ନବଯକ୍ଷଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ନଖ ଓ ତୁଣ୍ଡାଗ୍ରଦ୍ୱାରା ଛିନ୍ନ ଭିନ୍ନ କଲେ । ୨୦ । ମହାବଳ ଓ ମହୋତ୍ସାହ ସେହି ଯକ୍ଷମାନେ ସର୍ବା-ବୟବରେ ବିକ୍ଷତ ହୋଇ ରୁଧିରଧାରାବର୍ଷୀ ବାରିବାହ ପ୍ରାୟ ଶୋଭା ପ୍ରାପ୍ତ ହେଲେ । ଅବଶେଷରେ ପତଗେନ୍ଦ୍ର ଗରୁଡ଼ ସେହି ସବୁ ବୀର-ପୁରୁଷଙ୍କର ଜୀବନବିନାଶ ପୂର୍ବକ ଅମୃତ ନିମିତ୍ତ ଗମନ କରି ଦେଖିଲେ ଯେ ମହାନ୍ ଅଗ୍ନିଜ୍ୱାଳ ସେହି ଅମୃତର ଚତୁଷ୍ପାର୍ଶ୍ୱ ଆକାଶକୁ ଆବରଣ କରିଅଛି ଓ ତାହାର ଶିଖାସମୂହ ପ୍ରଚଣ୍ଡ ବାୟୁଦ୍ୱାରା ସଞ୍ଚାଳିତ ହୋଇ ସ୍ୱୟଂ ତୀକ୍ଷ୍ଣାଂଶୁକୁ ସୁଦ୍ଧା ଦଗ୍ଧକରି ଉପକ୍ରମ କରୁଅଛି । ତାହା ଦେଖି ତପସ୍ୱୀ ମହାତ୍ମା ଗରୁଡ଼ ଅଷ୍ଟସହସ୍ର ଏକଶତମୁଖ ଧାରଣ କରି ତଦ୍ଦ୍ୱାରା ଅନେକ ନଦୀମାନଙ୍କୁ ପାନ କରି ଅତି ଶୀଘ୍ର ବେଗରେ ପ୍ରତ୍ୟାବର୍ତ୍ତନ କଲେ । ଶତ୍ରୁତାପନ ପକ୍ଷିରଥ ସେହି ନଦୀମାନଙ୍କ ଜଳଦ୍ୱାରା ଜ୍ୱଳନ୍ତ ଅଗ୍ନିକୁ ଆଚ୍ଛାଦିତ କଲେ । ଏହିରୂପେ ଅଗ୍ନି ଶାନ୍ତ କରି ତନ୍ମଧ୍ୟରେ ପ୍ରବେଶ କାମନାରେ ଗୋଟିଏ କ୍ଷୁଦ୍ର ବପୁ ଧାରଣ କଲେ । ୨୪ ।

# ଅଧ୍ୟାୟ—୩୩

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ମରୀଚନିକରପ୍ରାପ୍ତ ଉଜ୍ଜ୍ୱଳ ସୁବର୍ଣ୍ଣମୟ କଳେବର ଧରି ବାରିପ୍ରବାହ ସମୁଦ୍ରରେ ପ୍ରବେଶ କଲାପ୍ରାୟ ସେହି ପକ୍ଷୀ ବଳପୂର୍ବକ ଅଗ୍ନି ମଧ୍ୟରେ ପ୍ରବେଶ କଲେ । ଦେଖିଲେ ଯେ କଦମ୍ବକୁସୁମସଦୃଶ ଅମୃତର ଚତୁର୍ଦ୍ଦିଗରେ କ୍ଷୁରସହସ୍ରଯୁକ୍ତ, ଅତୀବ ତୀକ୍ଷ୍ଣ ଧାର ଗୋଟିଏ ଲୌହମୟ ଚକ୍ର ପରିଭ୍ରମଣ କରୁଅଛି । ଅମୃତହରଣକାରୀଙ୍କ ଛେଦନାର୍ଥ ଦେବତାମାନେ ସେହି ଅନଳସମ ପ୍ରଭାଶାଳୀ ଭୟଙ୍କର ଯନ୍ତ୍ରକୁ ନିର୍ମାଣ କରିଅଛନ୍ତି । ସେହି ଖେଚର ଗରୁଡ଼ ଉକ୍ତ ଯନ୍ତ୍ରର ଅର ମଧ୍ୟରେ ଅତ୍ୟଳ୍ପ ଛିଦ୍ର ଅବଲୋକନ କରି ତତ୍‌କ୍ଷଣାତ୍ ଶରୀର ସଙ୍କୋଚପୂର୍ବକ ତଦ୍ଦ୍ୱାରା ପ୍ରବେଶ କରି ଦେଖିଲେ ଯେ ଚକ୍ରର ଅଧୋଭାଗରେ ପ୍ରଦୀପ୍ତ ଅନଳସନ୍ନିଭ ମହାବୀର୍ଯ୍ୟ, ପ୍ରଜ୍ଜ୍ୱଳିତ ମୁଖ ଓ ନେତ୍ର, ବିଦ୍ୟୁତ୍‌ସଦୃଶ ଜିହ୍ୱାବିଶିଷ୍ଟ, ଅତି କ୍ରୁଦ୍ଧ ଦୁଇଗୋଟି ସର୍ପ ସେହି ଅମୃତକୁ ରକ୍ଷା କରୁଅଛନ୍ତି । ତାହାଙ୍କର ଚକ୍ଷୁ ସର୍ବଦା ସଂରବ୍ଧ ଓ ଅନିମିଷ, ତନ୍ମଧ୍ୟରୁ ଗୋଟିଏ ଯେବେ କାହାକୁ ଥରେ ଅବଲୋକନ କରେ, ତେବେ ସେ ତତ୍‌କ୍ଷଣାତ୍ ଭସ୍ମସାତ୍ ହୁଏ । ବୈନତେୟ ସୁପର୍ଣ୍ଣ ସେ ଦୁଇ ସର୍ପଙ୍କ ଚକ୍ଷୁମାନଙ୍କୁ ରଜୋରାଶିରେ ଆବୃତ କଲେ ଓ ସେମାନେ ଗରୁଡ଼ଙ୍କୁ ଦେଖି ନ ପାରିବାରୁ ତାହାଙ୍କର ଶରୀର ଅତ୍ୟଳ୍ପ କାଳରେ ଖଣ୍ଡ ଖଣ୍ଡ କରି ଅମୃତ ଆନୟନାର୍ଥ ଗମନ କଲେ । ୯ । ଯନ୍ତ୍ରକୁ ଉନ୍ମଥିତ ଓ ଅମୃତକୁ ଉତ୍ପାଟିତ କରି ମହାବଳଶାଳୀ ବୈନତେୟ ଅତି ବେଗରେ ଉଡ୍ଡୀନ ହେଲେ । ସେହି ଗଗନବିହାରୀ ଅମୃତପାନ ନ କରି କେବଳ ମାତ୍ର ତାହାକୁ ଘେନି ଅର୍କପ୍ରଭାକୁ ପକ୍ଷବିସ୍ତାର ଦ୍ୱାରା ନିବାରିତ କରି ଅନାୟାସରେ ଆଗମନ କଲେ । ଆସୁ ଆସୁ ଆକାଶମାର୍ଗରେ ତାହାଙ୍କର ବିଷ୍ଣୁଙ୍କ ସହିତ ସାକ୍ଷାତ୍ ହେଲା । ସେହି ନିର୍ଲୋଭ କର୍ମ ଦେଖି ନାରାୟଣ ତାହାଙ୍କ ପ୍ରତି ସନ୍ତୁଷ୍ଟ ହେଲେ । ଅବ୍ୟୟ ଦେବ ସେହି ବିହଗଙ୍କୁ ବୋଇଲେ, 'ତୁମ୍ଭେ କି ବର ପ୍ରାର୍ଥନା କରୁଅଛ ବୋଲ ।' ଗରୁଡ଼ ଉତ୍ତର କଲେ, ଆମ୍ଭେ ତୁମ୍ଭ ଉପରିଭାଗରେ ଅବସ୍ଥିତ କରିବୁ ଓ ବିନା ଅମୃତପାନରେ ଅଜର ଓ ଅମର ହୋଇଥିବୁ । ବିନତାସୁତଙ୍କୁ ବିଷ୍ଣୁ 'ଅସ୍ତୁ' ବୋଲି କହିଲେ । ବରଗ୍ରହଣ କରି ସାରି ଗରୁଡ଼ ବିଷ୍ଣୁଙ୍କୁ ବୋଇଲେ, 'ଭଗବନ୍ ! ଆପଣ ବର ବରଣ କରନ୍ତୁ, ଆମ୍ଭେ ବର ପ୍ରଦାନ କରିବୁ ।' ବିଷ୍ଣୁ ବୋଇଲେ, 'ଗରୁଡ଼ !

ତୁମ୍ଭେ ଆମ୍ଭର ବାହନ ହୁଅ ।’ ଏହି ବର ପ୍ରାର୍ଥନା କଲେ ଓ ବୋଇଲେ ଯେ ‘ତୁମ୍ଭେ ଆମ୍ଭର ଧ୍ୱଜା ଉପରେ ଅବସ୍ଥାନ କର ।’ ଗରୁଡ଼ ନାରାୟଣଙ୍କୁ ‘ଅସ୍ତୁ’ ବୋଲି କହି ବାୟୁ ଅପେକ୍ଷା ଅଧିକ ବେଗରେ ଗମନ କଲେ । ଅନନ୍ତର ଇନ୍ଦ୍ର ପକ୍ଷିରାଜ ଗରୁଡ଼ଙ୍କୁ ଅମୃତ ହରଣ ପୂର୍ବକ ଆକାଶ ପଥରେ ପ୍ରସ୍ଥାନ କରିବାର ଦେଖି ରୋଷାନ୍ୱିତ ହୋଇ ବଜ୍ରପ୍ରହାର କଲେ । ସେ ବଜ୍ରାହତ ହୋଇ ସୁଦ୍ଧା ହସି ହସି ଇନ୍ଦ୍ରଙ୍କୁ ମଧୁର ବଚନରେ ବୋଇଲେ, ଯେଉଁ ଋଷିଙ୍କ ଅସ୍ଥିରେ ବଜ୍ର ନିର୍ମିତ ହୋଇଅଛି ସେହି ଋଷିଙ୍କର, ବଜ୍ରର ଓ ତୁମ୍ଭର ମାନ ରକ୍ଷା ହେତୁ ଏହି ଗୋଟିଏ ପକ୍ଷକୁ ଆମ୍ଭେ ବିସର୍ଜନ କଲୁଁ । ତୁମ୍ଭେ ଏହାର ଅନ୍ତ ପାଇବ ନାହିଁ । ବଜ୍ରପାତରେ ଆମ୍ଭର କୌଣସି ବେଦନା ହୋଇ ନାହିଁ । ଏହା କହି ସେହି ପକ୍ଷିରାଜ ଗୋଟିଏ ପକ୍ଷ ତ୍ୟାଗ କଲେ । ସେହି ପରିତ୍ୟକ୍ତ ପକ୍ଷର ସୌନ୍ଦର୍ଯ୍ୟ ଅବଲୋକନ କରି ସମସ୍ତ ପ୍ରାଣୀ ହୃଷ୍ଟ ହେଲେ ଓ ତଦବଧି ଗରୁଡ଼ଙ୍କ ନାମ ସୁପର୍ଣ୍ଣ ବୋଲି ରଖିଲେ ।

ସହସ୍ରାକ୍ଷ ପୁରନ୍ଦର ସେହି ମହଦାଶ୍ଚର୍ଯ୍ୟ କର୍ମ ଦେଖି ଓ ଏହି ଖଗ ମହତ୍ ପ୍ରାଣୀ ହୋଇଥିବାର ସ୍ଥିର କରି ବୋଇଲେ, ହେ ଖଗୋତ୍ତମ ! ଆମ୍ଭେ ତୁମ୍ଭ ସହିତ ଚିରକାଳ ନିମିତ୍ତ ମିତ୍ରତା ଇଚ୍ଛା କରୁଅଛୁଁ ଓ ତୁମ୍ଭର କେତେ ବଳ ତାହା ଜାଣିବାକୁ ଅଭିଳାଷ କରୁଅଛୁ । ୨୫ ।

---

## ଅଧ୍ୟାୟ—୩୪

ଇନ୍ଦ୍ରଙ୍କ ବାକ୍ୟ ଶ୍ରବଣ କରି ଗରୁଡ଼ କହିଲେ, ହେ ପୁରନ୍ଦର ! ତୁମ୍ଭେ ଇଚ୍ଛା କରୁଅଛ, ଅତଏବ ତୁମ୍ଭ ସହିତ ଆମ୍ଭର ସଖ୍ୟ ହେଉ । ଆମ୍ଭର ବଳ ଅତି ମହତ୍ ଓ ଅସହ୍ୟ ବୋଲି ଜାଣ । ହେ ଶତକ୍ରତୋ ! ସାଧୁ ଲୋକେ ଆପଣାର ବଳର ପ୍ରଶଂସା ଓ ଆପଣାର ଗୁଣ ସଂକୀର୍ତ୍ତନ ଆଦୌ କରନ୍ତି ନାହିଁ । ୩ । ହେ ଶକ୍ର ! ଆମ୍ଭର ଏହି ମହତ୍ ବଳ ଜାଣ ଯେ ସାଗର ଜଳ ସହିତ, ପର୍ବତମାନଙ୍କ ସହିତ ଓ ବନସମୂହ ସହିତ ଏହି ପୃଥିବୀକୁ ଓ ତୁମ୍ଭଙ୍କୁ ଗୋଟିଏ ପକ୍ଷରେ ବହନ କରିପାରୁ; ଅଥଚ ଏହି ସ୍ଥାବର ଜଙ୍ଗମାତ୍ମକ ସମସ୍ତ ଲୋକ ଯେବେ ଏକତ୍ରୀଭୂତ ହୁଏ, ତେବେ ତାହାକୁ ମଧ୍ୟ ଅନାୟାସରେ ବହନ କରିପାରୁଁ ।

ଉଗ୍ରଶ୍ରବା କହିଲେ, ହେ ଶୌନକ ! ଗରୁଡ଼ଙ୍କର ଏହିପରି ବାକ୍ୟ ଶ୍ରବଣ କରି ସର୍ବଲୋକ ହିତକାଂକ୍ଷୀ ଦେବରାଜ ଇନ୍ଦ୍ର ବୋଇଲେ, ହେ ବୀର-ଶ୍ରେଷ୍ଠ ଗରୁଡ଼ ! ତୁମ୍ଭେ ଯାହା କହିଲ, ତାହା ସବୁ ତୁମ୍ଭଠାରେ ସମ୍ଭବ । ଏବେ ତୁମ୍ଭେ ଆମ୍ଭ ସହିତ ଅତି ଉତ୍ତମ ମିତ୍ରତା ସଂଗ୍ରହ କର । ଅମୃତରେ ଯେବେ ତୁମ୍ଭର ପ୍ରୟୋଜନ ନାହିଁ, ତେବେ ଆମ୍ଭ ଅମୃତ ଆମ୍ଭଙ୍କୁ ଦିଅ । ଯେଉଁମାନଙ୍କୁ ତୁମ୍ଭେ ଏହି ଅମୃତକୁ ଦେବ, ସେମାନେ କେବଳ ଆମ୍ଭଙ୍କୁ କଷ୍ଟ ଦେବେ । ଗରୁଡ଼ କହିଲେ, କୌଣସି କାରଣରୁ ଆମ୍ଭେ ଏହି ଅମୃତକୁ ନେଉଅଛୁଁ । ଆମ୍ଭେ ଏହା କାହାରିକୁ ନେବାକୁ ଦେବୁ ନାହିଁ । ହେ ତ୍ରିଦିବେଶ୍ୱର ସହସ୍ରାକ୍ଷ ! ଯେଉଁଠାରେ ଆମ୍ଭେ ଏହାକୁ ନିକ୍ଷିପ୍ତ କରିବୁ, ତୁମ୍ଭେ ସେଠାରୁ ଏହାକୁ ଶୀଘ୍ର ହରଣ କରି ନେଇଯିବ । ଇନ୍ଦ୍ର କହିଲେ, ହେ ଅଣ୍ଡଜ ! ତୁମ୍ଭେ ଯେଉଁ ବାକ୍ୟ କହିଲ, ତହିଁରେ ଆମ୍ଭେ ତୁଷ୍ଟ ହେଲୁଁ । ହେ ଖଗୋତ୍ତମ ! ତୁମ୍ଭେ ଯେଉଁ ବର ଆମ୍ଭଠାରୁ ଇଚ୍ଛାକର, ତାହା ଗ୍ରହଣ କର । ୧୧ ।

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ଇନ୍ଦ୍ରଙ୍କର ସେହି ବାକ୍ୟ ଶ୍ରବଣାନନ୍ତର କଦ୍ରୂପୁତ୍ରଙ୍କର ଅତ୍ୟାଚାର ଓ ସ୍ୱୀୟ ଜନନୀଙ୍କର ଛଳକୃତ ଦାସ୍ୟ ସ୍ମରଣକରି ଗରୁଡ଼ କହିଲେ, ହେ ଶକ୍ର ! ଆମ୍ଭେ ସବୁ କରିବାକୁ ସମର୍ଥ ହେଲେହେଁ ତୁମ୍ଭଙ୍କୁ ଏହି ପ୍ରାର୍ଥନା କରୁଅଛୁଁ ଯେ ମହାବଳ ଭୁଜଗମାନେ ଆମ୍ଭର ଭକ୍ଷ୍ୟ ହେଉନ୍ତୁ । ୧୩ । ତଦନନ୍ତର ଦାନବ-ସଂହାରକାରୀ ଇନ୍ଦ୍ର 'ତଥାସ୍ତୁ' ବୋଲି କହି ଯୋଗିଜନଶ୍ରେଷ୍ଠ ମହାତ୍ମା ଦେବଦେବ ହରିଙ୍କ ନିକଟରେ ଉପସ୍ଥିତ ହେଲେ । ସେ ଗରୁଡ଼ଙ୍କ ବଚନକୁ ଅନୁମୋଦନ କଲେ, ତହୁଁ ଭଗବାନ୍ ତ୍ରିଦିବନାଥ ପୁନର୍ବାର ଗରୁଡ଼ଙ୍କୁ କହିଲେ, ହେ ପକ୍ଷୀନ୍ଦ୍ର ! ତୁମ୍ଭେ ଅମୃତ ରଖିବାମାତ୍ର ଆମ୍ଭେ ତାହା ହରଣ କରି ଆଣିବୁଁ । ଏହା ଶୁଣି ସୁପର୍ଣ୍ଣ ଅତି ବେଗରେ ମାତାଙ୍କ ସନ୍ନିଧାନକୁ ଆଗମନ କଲେ ଓ ହୃଷ୍ଟ ଚିତ୍ତରେ ସର୍ପମାନଙ୍କୁ କହିଲେ, ଆମ୍ଭେ ଏହି ଅମୃତ ଆନୟନ କରିଅଛୁଁ, ବର୍ତ୍ତମାନ ତୁମ୍ଭ ନିମିତ୍ତ କୁଶୋପରି ସ୍ଥାପନ କରିବୁଁ ; ତୁମ୍ଭେମାନେ ସ୍ନାନାନ୍ତେ ଶୁଚି ହୋଇ ପାନ କର । ତୁମ୍ଭେମାନେ ଯାହା କହିଥିଲ ଆମ୍ଭେ ତାହା ସମ୍ପନ୍ନ କରିଅଛୁଁ । ଅତଏବ ଅଦ୍ୟାବଧି ଆମ୍ଭର ମାତା ଦାସୀତ୍ୱରୁ ମୁକ୍ତ ହେଉନ୍ତୁ । ତଦନନ୍ତର ସର୍ପମାନେ 'ଅସ୍ତୁ' ବୋଲି କହି ସ୍ନାନ କରିବାକୁ ଗମନ କଲେ । ଏହି ଅବସରରେ ଇନ୍ଦ୍ର ଆସି ଅମୃତ ହରଣ କରି ତ୍ରିଦିବାଳୟକୁ ପ୍ରସ୍ଥାନ କଲେ । ୨୧ ।

ଅନନ୍ତର ସର୍ପମାନେ ସ୍ନାନ ସାର ଜପାଦ୍ଧ କର୍ମ ଓ ମଙ୍ଗଳାଚରଣ ସମାପ୍ତିପୂର୍ବକ ଅମୃତଭକ୍ଷଣାର୍ଥ ଅତୀବ ହୃଷ୍ଟମନରେ ସେଠାରେ ଆସି ଉପସ୍ଥିତ ହେଲେ । କିନ୍ତୁ ଯେଉଁ କୁଶାସନ ଉପରେ ଅମୃତ ସ୍ଥାପିତ ହୋଇ ଥିଲା, ସେଠାରୁ ତାହା ହୃତ ହୋଇଅଛି ଜାଣି ସେମାନେ ବିବେଚନା କଲେ, ଆମ୍ଭେମାନେ ଯେପରି ଛଳ କରି ବିନତାଙ୍କୁ ଦାସୀ କରିଥିଲୁଁ, ଗରୁଡ଼ ମଧ୍ୟ ସେହିପରି ପ୍ରବଞ୍ଚନା କରି ତାହାଙ୍କର ଦାସ୍ୟମୋଚନ କଲା । ତଦନନ୍ତର ସେମାନେ ସେଠାରେ ଅମୃତ ରଖା ହୋଇଥିଲା ବୋଲି ସେହି କୁଶାସନକୁ ଅବଲୋକନ କଲେ । ତଦ୍ଦ୍ୱାରା ସେମାନଙ୍କ ଜିହ୍ୱା ଦୁଇଭାଗରେ ବିଭକ୍ତ ହେଲା । ଅମୃତସ୍ପର୍ଶରେ କୁଶ ମଧ୍ୟ ପବିତ୍ର ହେଲା । ମହାତ୍ମା ଗରୁଡ଼ ଏହିରୂପେ ସ୍ୱର୍ଗରୁ ଅମୃତ ହରଣ ଓ ସେହି ଅମୃତକୁ ସର୍ପଙ୍କ ନିକଟକୁ ଆନୟନ ଓ ସର୍ପଙ୍କୁ ଦ୍ୱିଜିହ୍ୱ କଲେ । ଅନନ୍ତର ସୁପର୍ଣ୍ଣ ପରମ-ପରିତୋଷ ଚିତ୍ତରେ ମାତାଙ୍କ ସହିତ ସେହି କାନନରେ ବାସ କରିବାକୁ ଆରମ୍ଭ କଲେ ଓ ସମସ୍ତ ସର୍ପଗଣଙ୍କ କର୍ତ୍ତୃକ ପରମପୂଜିତ ହୋଇ ଭୁଜଙ୍ଗ ଭକ୍ଷଣପୂର୍ବକ ଜନନୀଙ୍କର ଆନନ୍ଦ ବର୍ଦ୍ଧନ କଲେ । ଯେଉଁ ବ୍ୟକ୍ତି ବ୍ରାହ୍ମଣ ସଭାରେ ଏହି ଉପାଖ୍ୟାନ ଶ୍ରବଣ ଅଥବା ପାଠ କରନ୍ତି, ସେ ପତଙ୍ଗରାଜ ମହାତ୍ମା ଗରୁଡ଼ଙ୍କର ମହିମା କୀର୍ତ୍ତନଜନିତ ପୁଣ୍ୟ ସଞ୍ଚୟ କରି ନିଃସନ୍ଦେହ ସ୍ୱର୍ଗଧାମକୁ ଗମନ କରନ୍ତି । ୨୬ ।

---

## ଅଧ୍ୟାୟ—୩୫

ଶୌନକ କହିଲେ, ହେ ସୂତନନ୍ଦନ ! ମାତାଙ୍କଦ୍ୱାରା ଭୁଜଙ୍ଗ-ମାନଙ୍କର ଶାପ ଓ ଅରୁଣଙ୍କ କର୍ତ୍ତୃକ ବିନତାଙ୍କ ଶାପ ଏହି ଦୁଇଥିର କାରଣ, ସ୍ୱାମୀଙ୍କଠାରୁ କଦ୍ରୁ ଓ ବିନତାଙ୍କର ବରଲାଭ ଓ ବିନତାଙ୍କର ଦୁଇ ପକ୍ଷୀ-ପୁତ୍ରଙ୍କ ନାମ ତୁମ୍ଭେ କୀର୍ତ୍ତନ କଲ କିନ୍ତୁ ପନ୍ନଗମାନଙ୍କ ନାମ ତୁମ୍ଭେ କହିଲ ନାହିଁ । ଅତଏବ ଆମ୍ଭେମାନେ ପ୍ରଧାନ ପ୍ରଧାନ ସର୍ପଙ୍କର ନାମ ଶୁଣିବାକୁ ଇଚ୍ଛା କରୁଅଛୁଁ ।

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ପନ୍ନଗମାନଙ୍କର ନାମ ବହୁତ ଥିବାରୁ ସମୁଦାୟ ନ କହି ପ୍ରଧାନ ପ୍ରଧାନଙ୍କର ନାମ କହୁଅଛୁଁ । ଶ୍ରବଣ କର । ୪ ।

ଶେଷନାଗ ସର୍ବାଗ୍ରେ ଜନ୍ମଗ୍ରହଣ କଲେ । ତତ୍ପରେ ବାସୁକି, ତଦନନ୍ତର ଐରାବତ, ତକ୍ଷକ, କର୍କୋଟକ, ଧନଞ୍ଜୟ, କାଳୟ, ମଣିନାଗ, ଆପୂରଣ ନାଗ, ପିଞ୍ଜରକ, ଏଲାପତ୍ର, ବାମନ, ନୀଳ, ଅନୀଳ, କଲ୍ମାଷ, ଶବଳ, ଆର୍ଯ୍ୟକ, ଉଗ୍ରକ, କଳଶ, ପୋତକ, ସୁମନାଖ୍ୟ, ଦଧିମୁଖ, ବିମଳପିଣ୍ଡକ, ଆପ୍ତକର୍କୋଟକ, ଶଙ୍ଖ, ବାଲଶିଖ, ନିଷ୍ଠାନକ, ହେମଗୁହ, ନହୁଷ, ପିଙ୍ଗଳ, ବାହ୍ୟକର୍ଣ୍ଣ, ହସ୍ତିପଦ, ମୁଦ୍‌ଗରପିଣ୍ଡକ, କମ୍ବଳ, ଅଶ୍ୱତର କାଳୀୟକ, ବୃତ୍ତ, ସମ୍ବର୍ତ୍ତକ, ପଦ୍ମ, ଶଙ୍ଖମୁଖ, କୁଷ୍ମାଣ୍ଡକ, କ୍ଷେମକ, ପିଣ୍ଡାରକ, କରବୀର, ପୁଷ୍ପଦଂଷ୍ଟ୍ର, ବିଲ୍ୱକ, ବିଲ୍ୱପାଣ୍ଡୁର, ମୂଷକାଦ, ଶଙ୍ଖଶିର ପୂର୍ଣ୍ଣଭଦ୍ର, ହରିଦ୍ରକ, ଅପରାଜିତ, ଜ୍ୟୋତିକ, ଶ୍ରୀବହ, କୌରବ୍ୟ, ଧୃତରାଷ୍ଟ୍ର, ବୀର୍ଯ୍ୟବାନ ଶଙ୍ଖପିଣ୍ଡ, ବିରଜା, ସୁବାହୁ, ବୀର୍ଯ୍ୟବାନ୍ ଶାଳପିଣ୍ଡ, ହସ୍ତିପିଣ୍ଡ, ପିଠରକ, ସୁମୁଖ, କୌଣପାଶନ, କୁଠର, କୁଞ୍ଜର, ପ୍ରଭାକର, କୁମୁଦ, କୁମୁଦାକ୍ଷ, ତିତ୍ତିରି, ହଳିକ, ମହାନାଗକର୍ଦ୍ଦମ, ବହୁମୂଳକ, କର୍କର, ଅକର୍କର, କୁଣ୍ଡୋଦର, ମହୋଦର । ୧୭ । ହେ ଦ୍ୱିଜସତ୍ତମ ! ଏହି ପ୍ରଧାନ ପ୍ରଧାନ ନାଗମାନଙ୍କ ନାମ କୀର୍ତ୍ତନ କଲୁଁ । ବାହୁଲ୍ୟ ଭୟରେ ଅପରାପର ନାଗଙ୍କ ନାମ କହି ପାରିଲୁଁ ନାହିଁ ।

ଏମାନଙ୍କର ପୁଣି ସନ୍ତାନ ଓ ତାଙ୍କର ସନ୍ତତି ଅସଂଖ୍ୟ । ହେ ତପୋଧନ ! ସେହି କାରଣରୁ ତାହାଙ୍କର କଥା କହିଲୁ ନାହିଁ । ସେମାନେ ବହୁ ସହସ୍ର, ବହୁ ଅୟୁତ, ବହୁ ଅର୍ବୁଦ ; ସେମାନଙ୍କର ସଂଖ୍ୟା କରି ହୁଏ ନାହିଁ । ୧୯ ।

---

## ଅଧ୍ୟାୟ – ୩୬

ଶୌନକ କହିଲେ, ବତ୍ସ ! ବୀର୍ଯ୍ୟବାନ୍ ଦୁର୍ଦ୍ଧର୍ଷ ସର୍ପମାନଙ୍କର ନାମ କହିଲ, କିନ୍ତୁ ସେମାନେ ମାତୃଦତ୍ତ ଶାପ ପାଇ କି କଲେ, ତାହା କହ ।

ଉଗ୍ରଶ୍ରବା କହିଲେ, ସର୍ପମାନଙ୍କ ମଧ୍ୟରେ ମହାଯଶସ୍ୱୀ, ଭଗବାନ୍ ଶେଷନାଗ ଜନନୀ କଦ୍ରୁଙ୍କୁ ପରିତ୍ୟାଗ କରି ବାୟୁଭକ୍ଷ, ବ୍ରତପରାୟଣ, ତପୋନିରତ, ଏକାଗ୍ରମନା ଓ ଜିତେନ୍ଦ୍ରିୟ ହୋଇ ଗନ୍ଧମାଦନ, ବଦରୀ,

ଗୋକର୍ଣ୍ଣ, ପୁଷ୍କରାରଣ୍ୟ, ହିମାଳୟ ପ୍ରଭୃତି ସମସ୍ତ ତୀର୍ଥରେ ଓ ଆଶ୍ରମରେ ନିରନ୍ତର କଠୋର ତପସ୍ୟା କଲେ ।୭। ତପସ୍ୟା କରୁଁ କରୁଁ ତାହାଙ୍କର ଶରୀରର ମାଂସ, ଚର୍ମ, ଶିରା ସବୁ ଶୁଷ୍କ ହୋଇ ଆସିଲା । ତେତେବେଳେ ପିତାମହ ବ୍ରହ୍ମା ଜଟାଚୀରଧାରୀ ସେହି ସନ୍ତ୍ୟଧୃତ ତପସ୍ୱୀଙ୍କୁ କହିଲେ, ହେ ଶେଷ ! ତୁମ୍ଭେ କି କରୁଅଛ ? ପ୍ରଜାଙ୍କର ମଙ୍ଗଳ ସାଧନ କର । ତୁମ୍ଭର ତୀବ୍ର ତପସ୍ୟାଦ୍ୱାରା ପ୍ରଜାମାନେ ସନ୍ତପ୍ତ ହେଉ ଅଛନ୍ତି; ଅତଏବ ତୁମ୍ଭ ହୃଦୟରେ କି ସ୍ଥିର କରିଅଛ, ପ୍ରକାଶ କରି କହ ।

ଶେଷ କହିଲେ, ଆମ୍ଭର ଭାଇମାନେ ସମସ୍ତେ ମନ୍ଦଚିତ୍ତ, ଆମ୍ଭେ ସେମାନଙ୍କ ସହିତ ବାସ କରିବାକୁ ଇଚ୍ଛା କରୁନାହୁଁ; ଆପଣ ଏହା ଅନୁମୋଦନ କରନ୍ତୁ । ଏମାନେ ସମସ୍ତେ ପରସ୍ପର ଶତ୍ରୁପ୍ରାୟ ପରସ୍ପରଙ୍କୁ ଦ୍ୱେଷ କରନ୍ତି । ଅତଏବ ଆମ୍ଭେ ଏହି ତପସ୍ୟା କରୁଅଛୁଁ ଯେପରି ସେମାନେ ଆମ୍ଭର ଦୃଷ୍ଟିପଥରେ ପତିତ ନ ହୁଅନ୍ତି । ସେମାନେ ସତତ ସସୁତା ବିନତାଙ୍କର ଅନିଷ୍ଟ କରନ୍ତି । ଅନ୍ତରୀକ୍ଷବିହାରୀ ବିନତାସୁତ ଗରୁଡ଼ ନାମରେ ଆମ୍ଭର ଆଉ ଗୋଟିଏ ଭ୍ରାତା ଅଛନ୍ତି । ଆମ୍ଭ ପିତା କଶ୍ୟପଙ୍କ ବର ହେତୁରୁ ସେ ମହାବଳିଷ୍ଠ, ଏମାନେ ତାଙ୍କୁ ଦ୍ୱେଷ କରନ୍ତି; ଅତଏବ ଆମ୍ଭେ ତପସ୍ୟାଦ୍ୱାରା ଏହି କଳେବର ପରିତ୍ୟାଗ କରିବାକୁ ସଙ୍କଳ୍ପ କରିଅଛୁଁ ଯେ ଜନ୍ମାନ୍ତରରେ ସୁଦ୍ଧା ସେହି ଦୁର୍ଜନଙ୍କ ସହିତ ସମାଗମ ନ ହୁଏ ।୧୨।

ଶେଷଙ୍କର ସେହି ବଚନ ଶୁଣି ପିତାମହ ଉତ୍ତର କଲେ, ଆମ୍ଭେ ତୁମ୍ଭର ସମସ୍ତ ଭ୍ରାତାଙ୍କର ଚେଷ୍ଟା ଅବଗତ ଅଛୁଁ । ତୁମ୍ଭ ମାତାଙ୍କର ଅପରାଧରୁ ଭ୍ରାତାମାନଙ୍କର ମହତ୍ ଭୟ ଉପସ୍ଥିତ ହୋଇଅଛି । ହେ ଭୁଜଙ୍ଗମ ! ପୂର୍ବରୁ ସେହି ଅଭିଶାପର ପ୍ରତିକାର କରା ହୋଇଅଛି । ତୁମ୍ଭେ ସମସ୍ତ ଭ୍ରାତାଙ୍କ ନିମିତ୍ତ ଶୋକ କରନାହିଁ । ଆମ୍ଭଠାରୁ ଅଭିମତ ବର ପ୍ରାର୍ଥନା କର ।୧୫। ଆମ୍ଭେ ଅଦ୍ୟ ତୁମ୍ଭଙ୍କୁ ବର ପ୍ରଦାନ କରିବୁଁ । ତୁମ୍ଭଠାରେ ଆମ୍ଭର ପରମା ପ୍ରୀତି ହୋଇଅଛି । ହେ ପନ୍ନଗୋତ୍ତମ ! ସୌଭାଗ୍ୟକ୍ରମେ ତୁମ୍ଭର ମତି ଧର୍ମରେ ନିବିଷ୍ଟ ହୋଇଅଛି । ଆଉ ତୁମ୍ଭର ବୁଦ୍ଧି ଉତ୍ତରୋତ୍ତର ଧର୍ମରେ ସୁସ୍ଥିର ହେଉ । ଶେଷ କହିଲେ, ହେ ପିତାମହ ! ଆପଣ ଏହି ବର ଦେଉନ୍ତୁ ଯେ ଆମ୍ଭର ମତି ଧର୍ମ, ଶମ ଓ ତପସ୍ୟାରେ ରତ ଥାଉ ।

ବ୍ରହ୍ମା କହିଲେ, ହେ ଶେଷ ! ଆମ୍ଭେ ତୁମ୍ଭର ଇନ୍ଦ୍ରିୟ ଶମ ଦମ ଦର୍ଶନରେ ପ୍ରୀତ ହୋଇଅଛୁଁ । କିନ୍ତୁ ଆମ୍ଭ ନିୟୋଗାନୁସାରେ ତୁମ୍ଭଙ୍କୁ ପ୍ରଜାହିତ ଗୋଟିଏ କାର୍ଯ୍ୟ କରିବାକୁ ହେବ । ୧୮ । ହେ ଶେଷ ! ଶୈଳ, ବନ, ସାଗର, ଗ୍ରାମ, ନଗର ଓ ବିହାରଭୂମି ସହିତ ଏ ସଚଳା ଧରଣୀକୁ ଏପରି ଧାରଣ କରିବ ଯେ ସେ ଅଚଳା ହେବ । ଶେଷ କହିଲେ, ହେ ଦେବ ! ବରଦ ପ୍ରଜାପତେ ! ମହୀପତେ ! ଭୂତପତେ ! ଜଗତ୍ପତେ ! ଆପଣ ଯେପରି ବୋଲିବା ହେଲେ, ତଦ୍ରୂପ ଆମ୍ଭେ ଏହି ମହୀକୁ ନିଶ୍ଚଳ କରି ଧାରଣ କରିବୁଁ, ଆପଣ ତାହାକୁ ଆମ୍ଭ ମସ୍ତକରେ ସ୍ଥାପନ କରନ୍ତୁ । ୨୦ । ବ୍ରହ୍ମା କହିଲେ, ହେ ଭୁଜଗୋତ୍ତମ ! ଏ ପୃଥିବୀ ତୁମ୍ଭଙ୍କୁ ସ୍ୱୟଂ ବିବର ପ୍ରଦାନ କରିବ, ତୁମ୍ଭେ ଏହାର ଅଧୋଭାଗକୁ ଗମନ କର । ଏହି ଧରାକୁ ତୁମ୍ଭେ ଧାରଣ କଲେ ଆମ୍ଭର ମହତ୍ ପ୍ରିୟକାର୍ଯ୍ୟ କରିବାର ହେବ । ୨୧ ।

ଉଗ୍ରଶ୍ରବା କହିଲେ, ପ୍ରଜାପତିଙ୍କ ବଚନାନୁସାରେ ଭୁଜଗବରାଗ୍ରଜ ଶେଷ ପୃଥିବୀର ବିବର ମଧ୍ୟରେ ପ୍ରବେଶ କରି ସସାଗରା ଏହି ଧରଣୀ ଦେବୀକୁ ସମ୍ୟକ୍‌ରୂପେ ତଦବଧି ମସ୍ତକରେ ଧାରଣ କଲେ । ତାହା ଦେଖି ବ୍ରହ୍ମା କହିଲେ, ହେ ଧର୍ମଦେବ ! ନାଗୋତ୍ତମ ! ତୁମ୍ଭେ ନିଜ ଫଣାମାନଙ୍କ-ଦ୍ୱାରା ଏହି ମହୀକୁ ଏକାକୀ ଯେପରି ଧାରଣ କରିଅଛ, ସେପରି ଆମ୍ଭେ ଅଥବା ବଳଭିତ୍ ଇନ୍ଦ୍ର ଧାରଣ କରିପାରୁଁ; ଆଉ କେହି ପାରନ୍ତି ନାହିଁ ।

ଉଗ୍ରଶ୍ରବା କହିଲେ, ପ୍ରତାପଶାଳୀ ଅନନ୍ତନାଗ ତଦବଧି ଭୂମିର ଅଧୋଭାଗରେ ବାସ କରୁଅଛନ୍ତି ଓ ବ୍ରହ୍ମାଙ୍କ ଶାସନକ୍ରମେ ଏକାକୀ ବସୁଧାକୁ ଧାରଣ କରିଅଛନ୍ତି । ଅମରୋତ୍ତମ ଭଗବାନ୍ ପିତାମହ ଗରୁଡ଼ଙ୍କୁ ନେଇ ସୁପର୍ଣ୍ଣଙ୍କ ସହିତ ମିତ୍ର କରିଦେଲେ । ୨୫ ।

---

## ଅଧ୍ୟାୟ—୩୭

ଉଗ୍ରଶ୍ରବା କହିଲେ, ନାଗଶ୍ରେଷ୍ଠ ବାସୁକି ମାତାଙ୍କଠାରୁ ସେହି ଅଭିଶାପ ଶ୍ରବଣ କରି ଐରାବତ ପ୍ରଭୃତି ଧର୍ମପରାୟଣ ଭ୍ରାତୃଗଣଙ୍କ ସହିତ ମନ୍ତ୍ରଣା କଲେ ଯେପରି କି ସେ ଅଭିଶାପ ବିଫଳ ହେବ ।

ବାସୁକି କହିଲେ, ହେ ଅନଘ ଭ୍ରାତୃଗଣ ! ମାତା ଆମ୍ଭମାନଙ୍କୁ ଯେଉଁ ଅଭିଶାପ ଦେଇଅଛନ୍ତି, ତାହା ତୁମ୍ଭେମାନେ ସମସ୍ତେ ଜାଣ ; ସେହି

ଅଭିଶାପରୁ ମୁକ୍ତ ଲଭିବା କାରଣ ଆମ୍ଭେମାନେ ମନ୍ତ୍ରଣା ଓ ଯତ୍ନ କରିବା । ସର୍ବପ୍ରକାର ଅଭିଶାପର ପ୍ରତିଘାତ ଅଛି, ମାତାଙ୍କ ଅଭିଶାପରୁ ମୁକ୍ତି ପାଇବାର ଉପାୟ କୌଣସିଠାରେ ନାହିଁ । ବିଶେଷରେ ଅବ୍ୟୟ, ଅପ୍ରମେୟ, ସତ୍ୟଲୋକ ପତି, ବ୍ରହ୍ମାଙ୍କ ସାକ୍ଷାତରେ ମାତା ଆମ୍ଭମାନଙ୍କୁ ଶାପ ପ୍ରଦାନ କରି ଅଛନ୍ତି । ତାହା ଶୁଣି ଆମ୍ଭ ହୃଦୟରେ କମ୍ପ ଜାତ ହେଉଅଛି । ନିଶ୍ଚୟ ଆମ୍ଭ ସମସ୍ତଙ୍କର ବିନାଶ ଉପସ୍ଥିତ ହେଲା । ସେହି ଅବ୍ୟୟ ଦେବ ଶାପ ଦେବା ବେଳେ ଆମ୍ଭ ମାତାଙ୍କୁ ନିଷେଧ କଲେ ନାହିଁ । ଏହି ହେତୁରୁ ଯହିଁରେ ଭୁଜଙ୍ଗମମାନଙ୍କର ଅନାମୟ ହୁଏ, ତାହା ଅଦ୍ୟ ମନ୍ତ୍ରଣା କରିବା । ଆଉ କାଳକ୍ଷେପ କରିବା ଅନୁଚିତ । ଆମ୍ଭେମାନେ ସମସ୍ତେ ବୁଦ୍ଧିମାନ୍ ଓ ବିଚକ୍ଷଣ ଅଟୁଁ, ଆମ୍ଭେମାନେ ମନ୍ତ୍ରଣା କଲେ ଶାପମୋକ୍ଷଣର ଉପାୟ ଉଦ୍ଭାବନ କରିପାରିବା । ୮ । ଯେପରି ପୂର୍ବକାଳରେ ଅଗ୍ନି ଗୁହାଗତ ଓ ଅଦୃଶ୍ୟ ହେବାରୁ ଦେବତାମାନେ ମନ୍ତ୍ରଣା କରି ତାହାଙ୍କର ଦର୍ଶନ ଲାଭ କଲେ, ତଦ୍ରୂପ ଯହିଁରେ ଜନମେଜୟଙ୍କର ସର୍ପବିନାଶ ନିମିତ୍ତ ସେହି ସର୍ପଯଜ୍ଞ ନ ହୁଏ, ଅଥବା ଯଜ୍ଞ କରି ନ ପାରନ୍ତି ତାହାର ପ୍ରତିକାର କରିବା ।

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ବାସୁକିଙ୍କ ବଚନାନୁସାରେ ମନ୍ତ୍ରବୁଦ୍ଧିବିଶାରଦ ସମସ୍ତ କଦ୍ରୁପୁତ୍ରମାନେ 'ତଥାସ୍ତୁ' ବୋଲି କହି କର୍ତ୍ତବ୍ୟାବଧାରଣରେ ଯତ୍ନବାନ୍ ହେଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲେ ଯେ ଆମ୍ଭେମାନେ କେତେକ ବ୍ରାହ୍ମଣ ରୂପ ଧାରଣ କରି ଜନମେଜୟଙ୍କୁ ଯଜ୍ଞ ନ କରିବାର ଭିକ୍ଷା ପ୍ରାର୍ଥନା କରିବା । ପଣ୍ଡିତାଭିମାନୀ ଅପର ନାଗମାନେ କହିଲେ ଯେ ଆମ୍ଭେମାନେ ସମସ୍ତେ ଯାଇ ଜନମେଜୟଙ୍କ ମନ୍ତ୍ରୀ ହେବା, କର୍ତ୍ତବ୍ୟ ବିଷୟରେ ସେ ଆମ୍ଭମାନଙ୍କୁ ପଚାରିଲେ ଯଜ୍ଞ ନ କରିବା ବିଷୟରେ ଆମ୍ଭେମାନେ ପରାମର୍ଶ ଦେବା । ବୁଦ୍ଧିମାନଙ୍କ ଶ୍ରେଷ୍ଠ ରାଜା ଆମ୍ଭମାନଙ୍କୁ ବୁଦ୍ଧିବିଶାରଦ ଦେଖି ଯଜ୍ଞ କରିବେ କି ନା ପଚାରିଲେ ଆମ୍ଭେମାନେ ସେ ଯଜ୍ଞର ଐହିକ ଓ ପାରତ୍ରିକ ବହୁଦୋଷ ଓ ବହୁବିଧ ହେତୁ ଓ କାରଣ ଦେଖାଇ ଯହିଁରେ ସେ ଯଜ୍ଞ ନ ହୁଏ ତାହା କହିବା । ଅଥବା ସେହି କ୍ରତୁରେ ସର୍ପଯଜ୍ଞ ବିଧିବିତ୍, ରାଜକାର୍ଯ୍ୟ ହିତକାରୀ ଯେ ଉପାଧ୍ୟାୟ ହେବେ, ତାହାଙ୍କୁ କେହି ଭୁଜଗ ଯାଇ ଦଂଶନ କରୁ, ସେ ମରି-ଗଲେ ଆଉ ଯଜ୍ଞ ହୋଇ ପାରିବ ନାହିଁ । ପୁନରପି ଯେଉଁ ସର୍ପସଞ୍ଜ୍ଞ ବ୍ୟକ୍ତି ଋତ୍ୱିକ୍ ହେବେ, ସେମାନଙ୍କୁ ସମସ୍ତେ ଦଂଶନ କରିବା; ତାହା ହେଲେ ଯଜ୍ଞ ହୋଇ ପାରିବ ନାହିଁ । ୧୮ । ଅପର ଦୟାଳୁ ଧର୍ମାତ୍ମା

ନାଗମାନେ କହିଲେ, ତୁମ୍ଭର ସେ ପରାମର୍ଶସବୁ ନିର୍ବୁଦ୍ଧି କଥା; ବ୍ରହ୍ମହତ୍ୟା କଦାପି ମଙ୍ଗଳଜନକ ନୁହେଁ । ୧୯ । ବ୍ୟସନ ଉପସ୍ଥିତ ହେଲେ ସମ୍ୟକ୍ ପ୍ରକାରେ ସଦ୍ଧର୍ମାଚରଣ ଦ୍ୱାରା ଯେଉଁ ଶାନ୍ତିଲାଭ ହୁଏ, ସେ ଉତ୍ତମ । ଅଧର୍ମ-ମୂଳକ କାର୍ଯ୍ୟ ନିଶ୍ଚୟ ସମସ୍ତ ଜଗତ୍ ଦହନ କରେ । ୨୦ । ଆଉ କେତେକ ନାଗମାନେ ବୋଇଲେ ଯେ ଆମ୍ଭେମାନେ ବିଦ୍ୟୁତ୍ ଓ ମେଘ ହୋଇ ବାରିବର୍ଷଣାଦି ଦ୍ୱାରା ପ୍ରଜ୍ଜ୍ୱଳିତ ହୁତାଶନକୁ ନିର୍ବାପିତ କରିବା ।୨୧। ଅପର ନାଗମାନେ କହିଲେ ଯେ ଯାଜ୍ଞିକମାନେ କାର୍ଯ୍ୟାନ୍ତରରେ ବ୍ୟାପୃତ ଥିବାବେଳେ ଆମ୍ଭେମାନେ ରାତିରେ ଯାଇ ସ୍ରୁକ୍ ଓ ଯଜ୍ଞଭାଣ୍ଡ ପ୍ରଭୃତି ଅପହରଣ କରି ଆଣିବା; ତହିଁରେ ଯଜ୍ଞର ବିଘ୍ନ ଘଟିବ । ଅଥବା ଯଜ୍ଞ-ସ୍ଥଳକୁ ସର୍ପମାନେ ଶତ ଶତ ଓ ସହସ୍ର ସହସ୍ର ଯାଇ ସମସ୍ତଙ୍କୁ ଦଂଶନ କରନ୍ତୁ, ତାହା ହେଲେ ସମସ୍ତଙ୍କର ନାଶ ହେବ । ଅଥବା ଭୁଜଙ୍ଗମାନେ ଯାଇ ନିଜ ମୂତ୍ର ଓ ପୁରୀଷଦ୍ୱାରା ସଂସ୍କୃତ ଅନ୍ନକୁ ଦୂଷିତ କରନ୍ତୁ, ତାହା ହେଲେ ସମସ୍ତ ଭୋଜ୍ୟ ନଷ୍ଟ ହେବ । ଅପର କତିପୟ ନାଗମାନେ ବୋଇଲେ ଯେ ଆମ୍ଭେମାନେ ଋତ୍ୱିକ୍ ହୋଇ ସର୍ବାଗ୍ରେ ଦକ୍ଷିଣା ଦିଅ ବୋଲି କହି ଯଜ୍ଞ ବିଘ୍ନ କରିବା । ୨୫ । ଏ ରୂପ କଲେ ଜନମେଜୟ ଆମ୍ଭ ବଶ୍ୟ ହେବେ ଓ ଆମ୍ଭେ ଯାହା କହିବା ତାହା କରିବେ । ଅପର ନାଗମାନେ କହିଲେ, ରାଜା ଜଳରେ କ୍ରୀଡ଼ା କଲାବେଳେ ତାହାଙ୍କୁ ଘରକୁ ଆଣି ବାନ୍ଧି ରଖିବା, ତହିଁରେ ସେହି କ୍ରତୁ ହୋଇ ପାରିବ ନାହିଁ । ପଣ୍ଡିତମାନୀ ଅପର ନାଗମାନେ ବୋଇଲେ, ଏତେ କଥାରେ କି ଅଛି ? ସେହି ରାଜାଙ୍କୁ ଶୀଘ୍ର ଧରି ଦଂଶନ କରିବା; ରାଜା ମୃତ ହେଲେ ସର୍ବ ଅନର୍ଥର ମୂଳ ଛିନ୍ନ ହେବ ।

ହେ ରାଜନ୍, ଈକ୍ଷଣ-ଶ୍ରେଷ୍ଠ ! ବାସୁକି ! ଆମ୍ଭମାନଙ୍କର ଏହି ନିଶ୍ଚୟ ପରାମର୍ଶ ଆପଣଙ୍କ ମନକୁ ଯାହା ଆସେ, ସତ୍ୱର ବିଧାନ କରନ୍ତୁ । ଏହା କହି ସମସ୍ତେ ସେହି ପନ୍ନଗୋତ୍ତମ ବାସୁକିଙ୍କୁ ରହିଁ ରହିଲେ । ବାସୁକି ଚିନ୍ତା କରି ସେହି ଭୁଜଙ୍ଗମାନଙ୍କୁ କହିଲେ, ହେ ଭୁଜଙ୍ଗମମାନେ ! ତୁମ୍ଭର ଏହି ପରାମର୍ଶ ଆମ୍ଭ ମତରେ କରଣୀୟ ନୁହେଁ । ତୁମ୍ଭର ସର୍ବ ପନ୍ନଗଙ୍କର ବୁଦ୍ଧି ଆମ୍ଭଙ୍କୁ ରୁଚୁ ନାହିଁ । ୩୧ । ଆପଣମାନଙ୍କର ଯାହା ହିତ ହେବ, ତାହା ତହିଁରେ କି ଅଛି ? ଆମ୍ଭ ବିଚାରରେ ମହାତ୍ମା କଶ୍ୟପଙ୍କୁ ପ୍ରସନ୍ନ କରିବା ଶ୍ରେୟଃ । ହେ ଭୁଜଙ୍ଗମମାନେ ! ଜ୍ଞାତିବର୍ଗର ଓ ଆମ୍ଭ ନିଜର ମଙ୍ଗଳ ନିମିତ୍ତ ଆପଣମାନଙ୍କର ବଚନାନୁସାରେ କାର୍ଯ୍ୟ

କରିବା ଆମ୍ଭର ଅଭିମତ ନୁହେଁ । ଆପଣମାନଙ୍କର ଯାହା ହିତ ହେବ, ତାହା ଆମ୍ଭେ କରିବୁ । ତନ୍ନିମିତ୍ତ ଆମ୍ଭେ ଅତିଶୟ ଚିନ୍ତାନ୍ୱିତ ଅଛୁ । ଆମ୍ଭେ ଜ୍ୟେଷ୍ଠ ଥିବାରୁ ଆପଣମାନଙ୍କ ରକ୍ଷା ନିମିତ୍ତ ଗୁଣଦୋଷ ଆମ୍ଭର ଆଶ୍ରିତ ଅଟେ । ୩୪ ।

---

## ଅଧ୍ୟାୟ—୩୮

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ସର୍ପଗଣଙ୍କର ଓ ବାସୁକିଙ୍କ ବାକ୍ୟ ଶ୍ରବଣ କରି ଏଲାପତ୍ର ନାମକ ଗୋଟିଏ ସର୍ପ କହିଲେ, ହେ ରାଜନ୍ ! ସେ ଯଜ୍ଞ ଯେ ନୋହିବ ଏମନ୍ତ ନୁହେଁ; ପାଣ୍ଡବେୟ ଜନମେଜୟ ରାଜା ଯେ ସେ ଭୟାବହ ଯଜ୍ଞ ନ କରିବେ, ଏମନ୍ତ ନୁହେଁ । ଅତଏବ ଯେଉଁ ବ୍ୟକ୍ତି ଦୈବୋପହତ ହୁଏ, ତାହାର ସେହି ଦୈବଙ୍କର ଆଶ୍ରୟ ଗ୍ରହଣ କରିବାକୁ ହୁଏ । ଦୈବକୁ ଅତିକ୍ରମ କରି ଅନ୍ୟର ଶରଣ ନେବା ବୃଥା । ଅତଏବ ହେ ପନ୍ନଗସତ୍ତମବୃନ୍ଦ ! ଆମ୍ଭମାନଙ୍କର ଦୈବକୁ ଆଶ୍ରୟ କରିବା ବିଧେୟ । ଆପଣମାନେ ଆମ୍ଭର ବଚନ ଶୁଣନ୍ତୁ ।

ହେ ନାଗମାନେ ! ଶୁଣିବା ହେଉନ୍ତୁ ଯେତେବେଳେ ଆମ୍ଭର ମାତା ଅଭିଶାପ ଦେଲେ, ସେତେବେଳେ ଭୟରେ ଆମ୍ଭେ ତାହାଙ୍କ କୋଡ଼ରେ ଥାଇ ଦୁଃଖାର୍ତ୍ତ ଦେବଗଣଙ୍କର ଏହି ବଚନ ଶୁଣିଲୁ । ସେମାନେ ପିତାମହ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ହେ ପ୍ରଭୋ ! ମହାଦ୍ୟୁତି ପିତାମହ ! ଆପଣଙ୍କ ସାକ୍ଷାତରେ ଅତୀବ କଠିନ ହୃଦୟା କଦ୍ରୁ ସ୍ୱୀୟ ସନ୍ତାନମାନଙ୍କୁ ଯେପରି ଅଭିଶାପ ଦେଲେ, ସେହିପରି ଆଉ କେଉଁ ଜନନୀ ପ୍ରିୟ ପୁତ୍ରମାନଙ୍କୁ ଲାଭ କରି ତାହାଙ୍କୁ ତଦ୍ରୂପ ନିଷ୍ଠୁର ଅଭିଶାପ ଦେଇପାରେ ! ଆପଣ ମଧ୍ୟ ତଥାସ୍ତୁ ବୋଲି ତାହାଙ୍କ ବଚନକୁ ଅନୁମୋଦନ କଲେ । ଅତଏବ କି କାରଣରୁ ଆପଣ ତାହାଙ୍କୁ ବାରଣ ନ କଲେ, ତାହା ଆମ୍ଭେମାନେ ଜାଣିବାକୁ ଇଚ୍ଛାକରୁ ।

ବ୍ରହ୍ମା କହିଲେ, ପନ୍ନଗମାନଙ୍କ ମଧ୍ୟରେ ଅନେକ ତୀକ୍ଷ୍ଣବିଷ, ଘୋରରୂପ, ବିଷାକ୍ତ । ପ୍ରଜାଙ୍କ ହିତକାମନାରେ ଆମ୍ଭେ ସେ କାଳରେ କଦ୍ରୁଙ୍କୁ ବାରଣ କଲୁ ନାହିଁ । ଯେଉଁ ସର୍ପମାନେ କ୍ଷୁଦ୍ର ବୁଦ୍ଧି, ପାପାଚାରୀ ଓ

ବହିଷ୍କାଲୁଣ, ସେମାନଙ୍କର ବିନାଶ ହେବ। କିନ୍ତୁ ଯେଉଁମାନେ ଧର୍ମାଚରଣ କରନ୍ତି ସେମାନଙ୍କର ବିନାଶ ହେବ ନାହିଁ। ସେହି ସମୟ ଆଗତ ହେଲେ, ଯେଉଁ ଉପାୟରେ ସେହି ମହାଭୟରୁ ସର୍ପଗଣଙ୍କର ମୁକ୍ତି ଲାଭ ହେବ, ତାହା ବର୍ଣ୍ଣନ କରୁଅଛୁଁ ଶ୍ରବଣ କର। ୧୧। ଯାଯାବର କୁଳରେ ଜରତ୍କାରୁ ନାମକ ତପସ୍ୱୀ, ଜିତେନ୍ଦ୍ରିୟ, ଧୀମାନ୍ ଗୋଟିଏ ମହର୍ଷି ଉତ୍ପନ୍ନ ହେବେ। ୧୨। ସେହି ଜରତ୍କାରୁଙ୍କର ଆସ୍ତୀକ ନାମରେ ଗୋଟିଏ ତପସ୍ୱୀ ପୁତ୍ର ଜାତ ହେବେ। ସେ ସେହି ଯଜ୍ଞର ପ୍ରତିଷେଧ କରିବେ ଓ ଧାର୍ମିକ ଭୁଜଗମାନଙ୍କୁ ରକ୍ଷା କରିବେ। ଦେବତାମାନେ ପଚାରିଲେ, ହେ ବ୍ରହ୍ମନ୍! ସେହି ମହାତପା ଜରତ୍କାରୁ କାହା ଗର୍ଭରେ ସେହି ବୀର୍ଯ୍ୟବାନ୍ ମହାତ୍ମା ପୁତ୍ରଙ୍କୁ ଜାତ କରିବେ? ବ୍ରହ୍ମା ଉତ୍ତର କଲେ, ସେ ଦ୍ୱିଜବରଙ୍କର ନିଜ ନାମଧେୟ ଜରତ୍କାରୁ ବୋଲି ଖ୍ୟାତ୍ୟା ହେବେ, ତାହାଙ୍କଠାରେ ସେ ଆପଣା ପ୍ରାୟ ବୀର୍ଯ୍ୟଶାଳୀ ପୁତ୍ର ଜାତ କରିବେ। ସର୍ପରାଜ ବାସୁକିଙ୍କର ଭଗ୍ନୀ ଜରତ୍କାରୁଙ୍କଠାରେ ଯେଉଁ ପୁତ୍ର ହେବ, ସେ ନାଗମାନଙ୍କୁ ମୁକ୍ତ କରିବେ। ୧୩। ଏଲାପତ୍ର କହିଲେ, ଦେବତାମାନେ ବ୍ରହ୍ମାଙ୍କ ବାକ୍ୟ ଶ୍ରବଣମାତ୍ର ପିତାମହଙ୍କୁ 'ଅସ୍ତୁ' ବୋଲି କହିଲେ ଓ ବିରିଞ୍ଚି ଦେବତାମାନଙ୍କୁ ଏ ରୂପ କହି ନିଜବଳୁ ଗମନ କଲେ। ଅତଏବ ହେ ବାସୁକି! ଆମ୍ଭେ ବର୍ତ୍ତମାନ ଏହି ଉପାୟ ଦେଖୁଅଛୁଁ ଯେ ଯେତେବେଳେ ଜରତ୍କାରୁ ଋଷି ତୁମ୍ଭର ଜରତ୍କାରୁ ନାମକ ଭଗିନୀଙ୍କୁ ଭିକ୍ଷା ମାଗିବେ, ତେତେବେଳେ ତୁମ୍ଭେ ନାଗମାନଙ୍କର ଭୟଶାନ୍ତି ନିମିତ୍ତ ତାହାଙ୍କୁ ସେହି ତପସ୍ୱୀଙ୍କୁ ସମର୍ପଣ କରିବ।

---

## ଅଧ୍ୟାୟ—୩୯

ଉଗ୍ରଶ୍ରବା କହିଲେ, ହେ ଦ୍ୱିଜସତ୍ତମ! ସମସ୍ତ ସର୍ପମାନେ ଏଲାପତ୍ରଙ୍କ ବାକ୍ୟଶ୍ରବଣରେ ଯତ୍ପରୋନାସ୍ତି ହର୍ଷଲାଭ କରି ତାହାଙ୍କୁ ସାଧୁବାଦ ପ୍ରଦାନ କଲେ। ବାସୁକି ମଧ୍ୟ ଅତିଶୟ ହୃଷ୍ଟ ହୋଇ ତଦବଧି ସ୍ୱୀୟ ଭଗିନୀ ବାଳା ଜରତ୍କାରୁଙ୍କୁ ପରମ ସମାଦରରେ ପ୍ରତିପାଳନପର ହେଲେ। ଅନନ୍ତର ଅଳ୍ପ ସମୟ ପରେ ଦେବାସୁରମାନେ ବରୁଣାଳୟକୁ ମନ୍ଥନ କଲେ। ବଳବାନ୍ମାନଙ୍କର ଶ୍ରେଷ୍ଠ ବାସୁକି ନାଗ ମନ୍ଥନରଜ୍ଜୁ

ହୋଇଥିଲେ । ଦେବତାମାନେ ସେହି ମନ୍ଥନ କର୍ମ ସମାଧାନ କରି ବାସୁକିଙ୍କ ସମଭିବ୍ୟାହାରରେ ପିତାମହ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ କହିଲେ, ହେ ଭଗବନ୍ ! ବାସୁକି ମାତାଙ୍କ ଅଭିଶାପରେ ଭୀତ ହୋଇ ଅତିଶୟ ସନ୍ତପ୍ତ ହୋଇଅଛନ୍ତି । ଏ ନିଜ ଜ୍ଞାତିବର୍ଗର ସଦା ହିତାଭିଳାଷୀ; ଆମ୍ଭମାନଙ୍କର ମଧ୍ୟ ଏ ନାଗରାଜ ପ୍ରିୟକାରୀ । ଅତଏବ ହେ ଦେବ ! ଆପଣ ପ୍ରସନ୍ନ ହୋଇ ଏହାଙ୍କ ମନୋଜ୍ୱରକୁ ଶାନ୍ତ କରନ୍ତୁ । ୭ ।

ସୁରଗଣଙ୍କ ବାକ୍ୟ ଶ୍ରବଣ କରି ବ୍ରହ୍ମା କହିଲେ, ହେ ଦେବଗଣ ! ପୂର୍ବେ ଏଲାପତ୍ର ନାଗ ଏହି ବାସୁକିଙ୍କୁ ଯାହା କହିଥିଲେ ତାହା ଆମ୍ଭର ଆନ୍ତରିକ କଥା । ୮ । ଅତଏବ ନାଗେନ୍ଦ୍ର ବାସୁକି ଯଥାକାଳରେ ଆମ୍ଭର ବଚନାନୁସାରେ କାର୍ଯ୍ୟ ସମ୍ପାଦନ କରନ୍ତୁ । ଯେଉଁମାନେ ପାପାଚାରୀ, ସେମାନେ ବିନଷ୍ଟ ହେବେ କିନ୍ତୁ ଧର୍ମାଚାରମାନେ ବିନଷ୍ଟ ହେବେ ନାହିଁ । ସେହି ଦ୍ୱିଜ ଜରତ୍କାରୁ ଉତ୍ପନ୍ନ ହୋଇ ଅତ୍ୟୁଗ୍ର ତପସ୍ୟାରେ ରତ ହୋଇ-ଅଛନ୍ତି । ଅତଏବ ବାସୁକି ଆପଣାର ଭଗିନୀ ଜରତ୍କାରୁଙ୍କୁ ତାହାଙ୍କୁ ପ୍ରଦାନ କରନ୍ତୁ । ହେ ଦେବଗଣ ! ଏଲାପତ୍ର ଭୁଜଗ ନାଗଙ୍କ ହିତରେ ଯେଉଁ ବଚନ କହିଅଛନ୍ତି ତାହା ତଦ୍ରୂପ ହେବ, କଦାପି ଅନ୍ୟଥା ହେବ ନାହିଁ । ୧୧ ।

ଉଗ୍ରଶ୍ରବା କହିଲେ, ଶାପମୋହିତ ନାଗେନ୍ଦ୍ର ବାସୁକି ପିତାମହଙ୍କର ଏହି ବଚନ ଶ୍ରବଣ କରି ଜରତ୍କାରୁ ଋଷିଙ୍କୁ ନିଜ ଭଗ୍ନୀଙ୍କୁ ଦବାର ନିଶ୍ଚୟ କରି ତାହାଙ୍କ ଅନ୍ୱେଷଣରେ ଅନେକ ସର୍ପଙ୍କୁ ନିଯୁକ୍ତ କଲେ ଓ ସେମାନଙ୍କୁ ଆଦେଶ ଦେଲେ ଯେ ଯେତେବେଳେ ସେହି ଋଷି ଭାର୍ଯ୍ୟା ବରଣ କରିବାକୁ ଇଚ୍ଛା କରିବେ, ତେତେବେଳେ ସେହି ସମ୍ବାଦ ଶୀଘ୍ର ଆସି ଆମ୍ଭଙ୍କୁ କହିବ; ତଦ୍ଦ୍ୱାରା ଆମ୍ଭମାନଙ୍କର ଶ୍ରେୟୋଲାଭ ହେବ ।

## ଅଧ୍ୟାୟ—୪୦

ଶୌନକ ପ୍ରଶ୍ନ କଲେ, ହେ ସୂତନନ୍ଦନ ! କି କାରଣରୁ ଜରତ୍କାରୁ ବୋଲି ସେହି ମହାତ୍ମା ଋଷିଙ୍କର ନାମ ହେଲା, ତାହାର ପ୍ରକୃତ ଅର୍ଥ ତୁମ୍ଭେ କୋଲ । ଉଗ୍ରଶ୍ରବା କହିଲେ, ଜରତ୍ ଶବ୍ଦର ଅର୍ଥ କ୍ଷୀଣ ଓ କାରୁ ଶବ୍ଦର ଅର୍ଥ ଦାରୁଣ । ତାହାଙ୍କର ଶରୀର କାମଲୋଭାଦିର ଉତ୍ତେଜକ ହୋଇ ସ୍ଥୂଳ ଥିଲା, ସେହି ଧୀମାନ୍ ଋଷି ତୀବ୍ର ତପସ୍ୟାଦ୍ୱାରା ଆପଣା ଶରୀରକୁ କ୍ରମଶଃ କ୍ଷୀଣ କଲେ ବୋଲି କଥିତ ଅଛି । ହେ ବ୍ରହ୍ମନ୍ ! ବାସୁକିଙ୍କ ଭଗିନୀଙ୍କର ନାମ ମଧ୍ୟ ସେହି କାରଣରୁ ଜରତ୍କାରୁ ବୋଲି ହୋଇଅଛି । ୪ । ଧର୍ମାତ୍ମା ଶୌନକ ଏହା ଶୁଣି ହାସ୍ୟ କରି ଉଗ୍ରଶ୍ରବାଙ୍କୁ ସମ୍ବୋଧନ କରି ବୋଇଲେ, ହେ ଉଗ୍ରଶ୍ରବଃ ! ସମାନ ବୟସ ଓ ରୂପ-ବିଶିଷ୍ଟ ବ୍ୟକ୍ତିଙ୍କର ବିବାହ ସଙ୍ଗତ ଅଟେ । ତୁମ୍ଭେ ଯାହା କହିଲ ତାହା ଆମ୍ଭେ ସବୁ ଶୁଣିଲୁଁ; ଆସ୍ତୀକ ମୁନି ଯେପରି ଜାତ ହେଲେ ତାହା ଜାଣିବାକୁ ଇଚ୍ଛା କରୁଅଛୁ । ତାହାଙ୍କର ବଚନ ଶୁଣି ଉଗ୍ରଶ୍ରବା ଶାସ୍ତ୍ରାନୁ-ସାରେ ଆସ୍ତୀକଙ୍କ ଜନ୍ମ ବୃତ୍ତାନ୍ତ କହିବାକୁ ଆରମ୍ଭ କଲେ । ୬ ।

ସୌତି କହିଲେ, ନାଗରାଜ ବାସୁକି ଜରତ୍କାରୁ ଋଷିଙ୍କୁ ସ୍ୱୀୟ ଭଗିନୀଙ୍କୁ ଦାନ କରିବାକୁ କୃତସଂକଳ୍ପ ହୋଇ ତାହାଙ୍କ ଅନ୍ୱେଷଣାର୍ଥ ସମର୍ଥ ପନ୍ନଗମାନଙ୍କୁ ଆଦେଶ ପ୍ରଦାନପୂର୍ବକ ସ୍ୱୟଂ ଅନବହିତ ଭାବରେ କାଳଯାପନ କଲେ । ଅନନ୍ତର ବହୁକାଳ ଅତୀତ ହେଲା, ତଥାପି ସେହି ସଂଶିତବ୍ରତ ମହାତପା ଧୀମାନ୍ ମୁନି ନିରନ୍ତର ତପସ୍ୟାରେ ରତ ହୋଇ ଦାରଗ୍ରହଣରେ ଆକାଂକ୍ଷା କଲେ ନାହିଁ । ସେ ମହାତ୍ମା ଊର୍ଦ୍ଧ୍ୱରେତା; କେବଳ ତପସ୍ୟାରେ ପ୍ରସକ୍ତ ହୋଇ ସମସ୍ତ ପୃଥିବୀ ପରିଭ୍ରମଣ କରି ଦାରପରିଗ୍ରହ କଥା ମନରେ ସୁଦ୍ଧା କଲେ ନାହିଁ । ୯ । ହେ ବ୍ରହ୍ମନ୍ ! କିୟତ୍‌କାଳ ପରେ * କୌରବବଂଶସମ୍ଭୂତ ପରୀକ୍ଷିତ ବୋଲି ରାଜା ହେଲେ; ସେ ସ୍ୱୀୟ ପ୍ରପିତାମହ ମହାବାହୁ ପାଣ୍ଡୁଙ୍କପ୍ରାୟ ଯୁଦ୍ଧରେ ଧନୁର୍ଦ୍ଧର ଓ ମୃଗୟାରେ ଆସକ୍ତ ଥିଲେ । ୧୧ । ସେହି ଭୂପତି ନିରନ୍ତର ମୃଗ, ବରାହ, ତରକ୍ଷୁ, ମହିଷମାନଙ୍କୁ ଓ ଅନ୍ୟାନ୍ୟ ବିବିଧ ବନଚର ଜନ୍ତୁଙ୍କୁ ବାଣବିଦ୍ଧ କରି ଇତସ୍ତତଃ ପରିଭ୍ରମଣ କରୁଥିଲେ । ୧୨ ।

---

* କଳିଯୁଗ ପ୍ରାରମ୍ଭରେ ।

ଏକାଦା ରାଜା ପରୀକ୍ଷିତ ଆନତପର୍ବ ବାଣଦ୍ୱାରା ଗୋଟିଏ ମୃଗକୁ ବିଦ୍ଧକରି ପୃଷ୍ଠଦେଶରେ ଧନୁକୁ ଲମ୍ବିତ କରି ସେହି ମୃଗର ଅନୁସରଣରେ ଗହନ ବନ ମଧ୍ୟରେ ପ୍ରବେଶ କଲେ । ୧୩ । ପୂର୍ବକାଳରେ ଦେବଲୋକରେ ଯେପରି ଭଗବାନ୍ ରୁଦ୍ର ଯଜ୍ଞ ମୃଗକୁ ବିଦ୍ଧ କରି ତାହାର ଅନ୍ୱେଷଣାର୍ଥ ହସ୍ତରେ ଧନୁ ଘେନି ଇତସ୍ତତଃ ଭ୍ରମଣ କରିଥିଲେ, ତଦ୍ରୂପ ପରୀକ୍ଷିତ ସେହି ବାଣବିଦ୍ଧ ମୃଗର ଅନ୍ୱେଷଣରେ ବନ ମଧ୍ୟରେ ବିଚରଣ କଲେ । ୧୪ । ପୂର୍ବେ ପରୀକ୍ଷିତଙ୍କର ବାଣବିଦ୍ଧ ହୋଇ କୌଣସି ମୃଗ ପ୍ରାଣ ଘେନି ପଳାଇବାର ଦେଖା ନ ଥିଲା । କିନ୍ତୁ ଏଥର ଯେ ଗୋଟାଏ ମୃଗ ତାହାଙ୍କ ବାଣରେ ବିଦ୍ଧ ହୋଇ ପଳାୟନ କଲା ଓ ସେହି ମୃଗର ଅନୁସରଣ କରି ପରୀକ୍ଷିତ ଯେ କ୍ରମଶଃ ଅତି ଦୂର ଦେଶକୁ ନୀତ ହେଲେ, ଏ କେବଳ ତାହାଙ୍କର ଅଚିର କାଳରେ ସ୍ୱର୍ଗଗମନର ପୂର୍ବଲକ୍ଷଣ ମାତ୍ର । ୧୬ ।

ଅନନ୍ତର ରାଜା ପରୀକ୍ଷିତ ଅତୀବ ପରିଶ୍ରାନ୍ତ ଓ ତୃଷାର୍ତ୍ତ ହୋଇ ଅରଣ୍ୟ ଅଭ୍ୟନ୍ତରରେ ଦେଖିଲେ ଗୋଟିଏ ଋଷି ଗୋଚାରଣ ସ୍ଥାନରେ ବସି ସ୍ତନ୍ୟପାନାସକ୍ତ ବତ୍ସମାନଙ୍କ ମୁଖନିଃସୃତ ଫେନ ପାନ କରୁଅଛନ୍ତି । ନରପତି କ୍ଷୁଧା ଓ ଶ୍ରମରେ ଅତିଶୟ କାତର ହୋଇଥିଲେ, ଅତଏବ ଦ୍ରୁତପଦରେ ସେହି ବ୍ରତପରାୟଣ ମୁନିଙ୍କ ନିକଟରେ ଉପସ୍ଥିତ ହୋଇ ଧନୁକୁ ଉତ୍ତୋଳନ କରି ପଚାରିଲେ, ହେ ବ୍ରହ୍ମନ୍ ! ଆମ୍ଭେ ଅଭିମନ୍ୟୁଙ୍କ ତନୟ ରାଜା ପରୀକ୍ଷିତ ଅଟୁଁ । ଆମ୍ଭର ବାଣରେ ଆହତ ହୋଇ ଗୋଟିଏ ମୃଗ ପଳାୟନ କରିଅଛି । ଆପଣ କି ତାହାକୁ ଦେଖିଅଛନ୍ତି ? ମୌନବ୍ରତ ମୁନି କିଛିମାତ୍ର ଉତ୍ତର ଦେଲେ ନାହିଁ । ତହିଁରେ ରାଜା ରୋଷାନ୍ୱିତ ହୋଇ ଧନୁର ଅଗ୍ରଭାଗଦ୍ୱାରା ଗୋଟିଏ ମୃତ ସର୍ପ ଉଠାଇ ତାହାଙ୍କ ସ୍କନ୍ଧରେ ସ୍ଥାପନ କଲେ; କିନ୍ତୁ ଋଷି ତହିଁରେ କିଛି ମାତ୍ର କ୍ଷୁବ୍ଧ ହେଲେ ନାହିଁ, କି ଭଲ ମନ୍ଦ କିଛି କହିଲେ ନାହିଁ । ଏଥିରେ ରାଜା ମୁନିଙ୍କୁ ତଦବସ୍ଥାପନ୍ନ ଅବଲୋକନ କରି କ୍ରୋଧ ପରିତ୍ୟାଗ ପୂର୍ବକ ବ୍ୟଥିତ ହୃଦୟରେ ସ୍ୱୀୟ ନଗରାଭିମୁଖରେ ପ୍ରସ୍ଥାନ କଲେ । ଋଷି ମଧ୍ୟ ସେହିପରି ବସି ରହିଲେ । ସେହି ମହାମୁନି ଅତୀବ କ୍ଷମାଶୀଳ, ଈଦୃଶ ଅପମାନିତ ହୋଇ ସୁଦ୍ଧା ଧୈର୍ଯ୍ୟାବଲମ୍ବନ କରି ରହିଲେ । ସ୍ୱଧର୍ମନିଷ୍ଠ ପରୀକ୍ଷିତଙ୍କୁ ଶାପ ପ୍ରଦାନ କଲେ ନାହିଁ । ୨୩ । ଭରତକୁଳଶ୍ରେଷ୍ଠ ରାଜଶାର୍ଦ୍ଦୂଳ ପରୀକ୍ଷିତ ସେହି ଋଷିଙ୍କୁ ମୌନବ୍ରତୀ ବୋଲି ଜାଣି ନ ଥିଲେ; ଏହି କାରଣରୁ ତାହାଙ୍କର ତଦ୍ରୂପ ଅବମାନନା କଲେ । ୨୪ ।

ସେହି ମୁନିଙ୍କର ଶୃଙ୍ଗୀ ନାମଧେୟ ଅତି ତେଜସ୍ୱୀ ତପୋନିଷ୍ଠ ବ୍ରତପରାୟଣ ମହାକ୍ରୋଧୀ ଗୋଟିଏ ତରୁଣ ତନୟ ଥିଲେ । ତାହାଙ୍କର ସ୍ୱଭାବ ଏପରି କୋପନ ଯେ ସେ ବାରେ କୁପିତ ହେଲେ ତାହାଙ୍କୁ ପ୍ରସନ୍ନ କରାଯାଏ ନାହିଁ । ୨୫ । କେତେବେଳେ କେତେବେଳେ ସେହି ମୁନି ସୁସଂଯତ ହୋଇ ସର୍ବଲୋକହିତକାରୀ ସୁଖୋପାବିଷ୍ଟ ଦେବଦେବ ଭଗବାନ୍ ବ୍ରହ୍ମାଙ୍କର ଅର୍ଚ୍ଚନା କରିବାକୁ ଗମନ କରନ୍ତି । ହେ ଦ୍ୱିଜସତ୍ତମ ! ଏକଦା ସେ ଉପାସନାବସାନରେ ବ୍ରହ୍ମାଙ୍କ କର୍ତ୍ତୃକ ଅନୁଜ୍ଞାତ ହୋଇ ଗୃହକୁ ପ୍ରତ୍ୟାଗମନ କରୁଅଛନ୍ତି, ଏମନ୍ତ ସମୟରେ ତାହାଙ୍କର ସଖା କୃଶ ନାମରେ ଗୋଟିଏ ଋଷିକୁମାର କ୍ରୀଡ଼ା କରୁଁ କରୁଁ କଥାପ୍ରସଙ୍ଗରେ ପରିହାସ କରି ଶୃଙ୍ଗୀଙ୍କ ପିତାଙ୍କର ଶୋଚନୀୟ ଦଶା ବର୍ଣ୍ଣନ କଲେ । ଶୃଙ୍ଗୀ ନିଜ ପିତାଙ୍କର ଅବମାନନା ଶ୍ରବଣ କରି ପ୍ରବଳ ରୋଷାବେଶରେ ପ୍ରଜ୍ୱଳିତ ଓ ବିଷକଳ୍ପ ହେଲେ । କୃଶ କହିଲେ, ହେ ଶୃଙ୍ଗିନ୍ ! ତୁମ୍ଭେ ଏରୂପ ତେଜସ୍ୱୀ ଓ ତପସ୍ୱୀ, କିନ୍ତୁ ତୁମ୍ଭର ପିତା ସ୍କନ୍ଧରେ ମୃତ ସର୍ପ ବହନ କରୁଅଛନ୍ତି । ଅତଏବ ତୁମ୍ଭେ ଆଉ ବୃଥା ଗର୍ବ କର ନା । ଅଦ୍ୟାବଧି ଆମ୍ଭମାନଙ୍କ ପରି ବ୍ରହ୍ମଜ୍ଞାନୀ, ସିଦ୍ଧ, ତପସ୍ୱୀ ଋଷିକୁମାରମାନେ କିଛି କହିଲେ, ତୁମ୍ଭେ କୌଣସି ଉତ୍ତର କରିବ ନାହିଁ । ଏବେ ତୁମ୍ଭର ପୌରୁଷ କାହିଁ ? ତୁମ୍ଭର ସେହି ସଗର୍ବବାକ୍ୟ କାହିଁ ? ଅନତିକାଳ ମଧ୍ୟରେ ତୁମ୍ଭେ ଗୃହକୁ ଯାଇ ଦେଖିବ ଯେ ତୁମ୍ଭର ପିତା ଶବ ବହନ କରିଅଛନ୍ତି । ହେ ମୁନିଶ୍ରେଷ୍ଠ ! ତୁମ୍ଭର ପିତା ନିରପରାଧରେ ଏରୂପ ଅବମାନିତ ହୋଇ ସୁଦ୍ଧା କୌଣସି କଥା କହିଲେ ନାହିଁ । ଏଥିରେ ଆମ୍ଭେ ଅତିଶୟ ଦୁଃଖିତ ହୋଇଅଛୁଁ ।

---

## ଅଧ୍ୟାୟ—୪୧

ଉଗ୍ରଶ୍ରବା କହିଲେ, ସେହି ତେଜସ୍ୱୀ ଶୃଙ୍ଗୀ ଏ ପ୍ରକାର ଅଭିହିତ ହେବାରୁ କୋପ ସମନ୍ୱିତ ହେଲେ । ପିତା ମୃତସର୍ପ ଧାରଣ କରିବାର ଶୁଣି କ୍ରୋଧରେ ପରିତପ୍ତ ହେଲେ ଓ କୃଶଙ୍କ ପ୍ରତି ଦୃଷ୍ଟିପାତ କରି ପ୍ରଶ୍ନ କଲେ, ଆମ୍ଭର ପିତା କିପରି ଅଦ୍ୟ ମୃତସର୍ପ ବହନ କଲେ ? କୃଶ କହିଲେ, ରାଜା ପରୀକ୍ଷିତ ଅଦ୍ୟ ମୃଗୟା କରିବାକୁ ଆସି ତୁମ୍ଭ ପିତାଙ୍କ

ସ୍କନ୍ଧରେ ମୃତ ଭୁଜଙ୍ଗମକୁ ଦେଇ ଗମନ କଲେ । ଶୃଙ୍ଗୀ କହିଲେ, ହେ କୃଶ ! ଆମ୍ଭର ପିତା ସେହି ଦୁରାତ୍ମା ରାଜା ପରୀକ୍ଷିତଙ୍କର କି ଅନିଷ୍ଟ କଲେ, ତାହା ତୁମ୍ଭେ ସତ୍ୟ କରି କହ ଓ ଆମ୍ଭ ତପସ୍ୟାର ପ୍ରଭାବ ଦେଖ । ୪ । କୃଶ କହିଲେ, ଅଭିମନ୍ୟୁତନୟ ରାଜା ପରୀକ୍ଷିତ ମୃଗୟାକୁ ଆସି ବାଣଦ୍ୱାରା ଦ୍ରୁତଗାମୀ ଗୋଟିଏ ମୃଗକୁ ବିଦ୍ଧ କଲେ । ସେହି ମୃଗ ବାଣବିଦ୍ଧ ହୋଇ ପଳାୟନ କଲା । ରାଜା ତାହାର ଅନୁସରଣରେ ପ୍ରବୃତ୍ତ ହୋଇ ଏକାକୀ ବନେ ବନେ ଭ୍ରମଣ କଲେ, କିନ୍ତୁ ସେ ମୃଗ କାହିଁ ଗଲା ତାହାର ଭେଟ ପାଇଲେ ନାହିଁ । ଅବଶେଷରେ କ୍ଷୁଧା ଓ ପିପାସା ଓ ଶ୍ରମରେ ନିତାନ୍ତ କାତର ହୋଇ ତୁମ୍ଭ ପିତାଙ୍କୁ ସେ ମୃଗ କଥା ପୁନଃ ପୁନଃ ପଚାରିଲେ । କିନ୍ତୁ ସେ ମୌନବ୍ରତ ଧାରଣ କରି ସ୍ଥାଣୁ ପ୍ରାୟ ସ୍ଥିତ ହୋଇଥିବାରୁ କିଛି ମାତ୍ର ଉତ୍ତର ଦେଲେ ନାହିଁ । ସେହି ହେତୁରୁ ରାଜା ଧନୁର ଅଗ୍ରଭାଗରେ ଗୋଟାଏ ମୃତ ସର୍ପକୁ ତାହାଙ୍କ ସ୍କନ୍ଧରେ ନିକ୍ଷେପ କଲେ । ୮ । ହେ ଶୃଙ୍ଗିନ୍ ! ବ୍ରତପରାୟଣ ତୁମ୍ଭର ପିତା ତଦବଧି ସେହିପରି ଅଛନ୍ତି, କିନ୍ତୁ ରାଜା ନିଜ ରାଜଧାନୀ ହସ୍ତିନାକୁ ପ୍ରସ୍ଥାନ କଲେ । ୯ ।

ଉଗ୍ରଶ୍ରବା କହିଲେ, ଏହିପରି ପିତାଙ୍କର ସ୍କନ୍ଧରେ ଶବସ୍ଥାପନ ବାର୍ତ୍ତା ଶ୍ରବଣ କରି ମୁନିକୁମାର ଶୃଙ୍ଗୀ କୋପାନଳରେ ପ୍ରଜ୍ୱଳିତ ହେଲେ । ରୋଷଭରରେ ତାହାଙ୍କର ଲୋଚନ ରକ୍ତବର୍ଣ୍ଣ ହେଲା । ତେତେବେଳେ ସେହି କ୍ରୋଧପରାୟଣ ତେଜସ୍ୱୀ ଋଷିକୁମାର କୋପାବିଷ୍ଟ ହୋଇ ବାରି ସ୍ପର୍ଶ କରି କ୍ରୋଧବେଗବଶରୁ ରାଜାଙ୍କୁ ଏହି ବୋଲି ଶାପ ପ୍ରଦାନ କଲେ—ଯେଉଁ ରାଜାଧମ ମୌନବ୍ରତାବଲମ୍ବୀ ବୃଦ୍ଧ ପିତାଙ୍କ ସ୍କନ୍ଧରେ ମୃତ ପନ୍ନଗକୁ ପରିତ୍ୟାଗ କଲେ, ଆମ୍ଭର ବଚନାନୁସାରେ ସେହି କୁରୁବଂଶର ଅଯଶସ୍କର, ବ୍ରାହ୍ମଣ-ମାନଙ୍କର ଅବମାନନାକାରୀ ଓ ପାପାଚାରୀ, ରାଜା ପରୀକ୍ଷିତକୁ ଆଜଠାରୁ ସପ୍ତମ ଦିନରେ ଅତି ଉଗ୍ର ବିଷଧର ପନ୍ନଗେଶ୍ୱର ତକ୍ଷକ ଯମସଦନକୁ ଅବଶ୍ୟ ନେଇଯିବ ।

ଉଗ୍ରଶ୍ରବା କହିଲେ, ଶୃଙ୍ଗୀ ଅତି ରୋଷବଶରେ ରାଜା ପରୀକ୍ଷିତଙ୍କୁ ଏହିରୂପ ଶାପ ପ୍ରଦାନ କରି ଗୋଷ୍ଠସ୍ଥିତ ସର୍ପଶବଧର ପିତାଙ୍କ ନିକଟକୁ ଗମନ କଲେ । ସେଠାରେ ପିତୃସ୍କନ୍ଧରେ ମୃତସର୍ପ ସନ୍ଦର୍ଶନ କରି ପୁନର୍ବାର କ୍ରୋଧରେ ଆକୁଳିତ ହେଲେ ଓ ଦୁଃଖବଶରୁ ଅଶ୍ରୁତ୍ୟାଗ କରି ପିତାଙ୍କୁ କହିଲେ, ହେ ପିତଃ ! ଦୁରାତ୍ମା ରାଜା ପରୀକ୍ଷିତ ଆପଣଙ୍କର ଅତିଶୟ

ଅବମାନନା କରିଅଛନ୍ତି । ଏହା ଶୁଣିଲକ୍ଷଣି ଆମ୍ଭେ କ୍ରୋଧରେ ଅସ୍ଥିର ହୋଇ ତାହାଙ୍କୁ ଶାପପ୍ରଦାନ କରିଅଛୁଁ । ସେହି ଦୁରାତ୍ମା କୁରୁକୁଳାଧମ ଯେରୂପ ଅତି ଗର୍ହିତ କର୍ମ କରିଅଛି, ଆମ୍ଭେ ତାହାକୁ ତଦନୁରୂପ କଠିନ ଶାପ ଦେଇଅଛୁଁ । ପନ୍ନଗଶ୍ରେଷ୍ଠ ତକ୍ଷକ ସପ୍ତମ ଦିନରେ ସେହି ପାପାତ୍ମାକୁ ମହାଭୟଙ୍କର ଯମାଳୟକୁ ନେଇଯିବ । ୧୮ ।

ହେ ବ୍ରହ୍ମନ୍ ! ରୋଷାବିଷ୍ଟ ପୁତ୍ରର ବାକ୍ୟ ଶ୍ରବଣ କରି ଶମୀକ ଋଷି କହିଲେ, ବତ୍ସ ! ତୁମ୍ଭେ ଆମ୍ଭର ପ୍ରିୟକାର୍ଯ୍ୟ କରିନାହଁ । ତପସ୍ୱୀଙ୍କର ଏହା ଧର୍ମ ନୁହେଁ; ଆମ୍ଭେମାନେ ସେହି ନରେନ୍ଦ୍ରଙ୍କର ରାଜ୍ୟରେ ବାସ କରୁଅଛୁଁ । ସେ ନ୍ୟାୟ ମାର୍ଗରେ ଆମ୍ଭମାନଙ୍କୁ ରକ୍ଷା କରୁଅଛନ୍ତି; ଅତଏବ ତାହାଙ୍କର ଗର୍ହିତ କରିବା ଆମ୍ଭର ଅଭିପ୍ରେତ ନୁହେଁ । ରାଜ୍ୟେଶ୍ୱର ଯେବେ କଦାଚିତ୍ କୌଣସି ଅପରାଧ କରନ୍ତି, ତେବେ ଆମ୍ଭ ସଦୃଶ ବ୍ୟକ୍ତିଙ୍କର ତାହା କ୍ଷମା କରିବା ବିଧେୟ । ୨୧ । ହେ ପୁତ୍ର ! ଧର୍ମଙ୍କୁ ନଷ୍ଟ କଲେ ଧର୍ମ ଆମ୍ଭମାନଙ୍କୁ ନିଶ୍ଚୟ ନଷ୍ଟ କରିବେ । ଦେଖ, ଯେବେ ରାଜା ଆମ୍ଭମାନଙ୍କୁ ସର୍ବଦା ରକ୍ଷା ନ କରନ୍ତି, ତେବେ ଆମ୍ଭମାନଙ୍କର କ୍ଳେଶର ସୀମା ରହିବ ନାହିଁ କି ଅଭିଲଷିତ ଧର୍ମକର୍ମର ଅନୁଷ୍ଠାନ ଓ ନିର୍ବିଘ୍ନରେ ତାହାର ସମ୍ପାଦନ ହୋଇ ପାରିବ ନାହିଁ । ବତ୍ସ ! ଧର୍ମପରାୟଣ ନରପତିମାନେ ଆମ୍ଭମାନଙ୍କୁ ରକ୍ଷା କରନ୍ତି; ସେହି ହେତୁରୁ ଆମ୍ଭେ ବିପୁଳ ଧର୍ମୋପାର୍ଜ୍ଜନରେ ସକ୍ଷମ ହେଉଁ । ଅତଏବ ସେହି ଅର୍ଜ୍ଜିତ ଧର୍ମରେ ନ୍ୟାୟାନୁସାରେ ରାଜାଙ୍କର ଅଂଶ ଅଛି । ସୁତରାଂ ରାଜା କୌଣସି ଅପରାଧ କଲେ ସୁଦ୍ଧା ତାହା କ୍ଷମା କରିବା ଉଚିତ । ୨୪ । ବିଶେଷରେ ପରୀକ୍ଷିତ ସ୍ୱୀୟ ପିତାମହ ପାଣ୍ଡୁଙ୍କ ସଦୃଶ ଆମ୍ଭମାନଙ୍କର ରକ୍ଷଣାବେକ୍ଷଣ କରୁଅଛନ୍ତି । ଅତଏବ ପ୍ରଜାପାଳକ ଏହି ରାଜାଙ୍କୁ ରକ୍ଷାକରି ପ୍ରଜାବର୍ଗର ମଙ୍ଗଳ କାମନା କରିବା କର୍ତ୍ତବ୍ୟ । ୨୫ ।

ଆମ୍ଭେ ନିଶ୍ଚୟ ଜାଣୁଅଛୁ ଅଦ୍ୟ ସେହି ସାଧୁଚରିତ ନରପତି ପରିଶ୍ରାନ୍ତ ଓ କ୍ଷୁଧିତ ହୋଇ ଆମ୍ଭର ମୌନବ୍ରତାବଲମ୍ବନ କରିଥିବାର ନ ଜାଣି ଏହିରୂପ କର୍ମ କରିଅଛନ୍ତି । ୨୬ । ପୁତ୍ର ! ରାଜ୍ୟ ଅରାଜକ ହେଲେ ନିରନ୍ତର ଦସ୍ୟୁପୀଡ଼ାଦି ଦୋଷ ଘଟଇ । ପ୍ରଜାମାନେ ଦୁର୍ବୃତ୍ତ ହେଲେ ରାଜ୍ୟେଶ୍ୱର ଦଣ୍ଡବିଧାନଦ୍ୱାରା ସେମାନଙ୍କୁ ଶାସନ କରନ୍ତି । ଦଣ୍ଡଭୟରୁ ପୁନର୍ବାର ଶାନ୍ତି ସଂସ୍ଥାପନ ହୁଅଇ । ଭୟରେ ଉଦ୍‌ବିଗ୍ନ ହେଲେ କେହି ଧର୍ମକର୍ମର ଅନୁଷ୍ଠାନ କରି ପାରନ୍ତି ନାହିଁ । ୨୮ । ରାଜା ଧର୍ମସଂସ୍ଥାପନ

କରନ୍ତି । ଧର୍ମାଚରଣ ଦ୍ୱାରା ସ୍ୱର୍ଗଲାଭ ହୁଅଇ । ରାଜାଙ୍କ ଅନୁଗ୍ରହରୁ ସମସ୍ତ ଯଜ୍ଞକ୍ରିୟା ସୁସମ୍ପନ୍ନ ହୁଅଇ । ସେହି ଯଜ୍ଞଦ୍ୱାରା ଦେବଗଣଙ୍କର ତୃପ୍ତିଲାଭ ହୁଅଇ, ଦେବତାଙ୍କଠାରୁ ବୃଷ୍ଟି ହୁଅଇ । ବୃଷ୍ଟି ହେଲେ ଶସ୍ୟ ଜାତ ହୁଏ । ଶସ୍ୟଦ୍ୱାରା ମନୁଷ୍ୟମାନେ ପ୍ରାଣଧାରଣ କରନ୍ତି । ଅତଏବ ରାଜେଶ୍ୱର ରାଜା ମନୁଷ୍ୟମାନଙ୍କର ବିଧାତା ସ୍ୱରୂପ । ଭଗବାନ୍ ମନୁ ମଧ୍ୟ କହିଅଛନ୍ତି ରାଜା ଦଶଜଣ ବେଦାଧ୍ୟାୟୀଙ୍କ ତୁଲ୍ୟ ପୂଜନୀୟ ଅଟନ୍ତି । ସେହି ସତ୍ତ୍ୱସ୍ୱଭାବାପନ୍ନ ରାଜା ଅଦ୍ୟ ଶ୍ରାନ୍ତ ଓ କ୍ଷୁଧାର୍ତ୍ତ ହୋଇ ଆମ୍ଭର ମୌନବ୍ରତ ଧାରଣର ବୃତ୍ତାନ୍ତ ନ ଜାଣି ଏପରି କର୍ମ କରିଅଛନ୍ତି ବୋଲି ମୁଁ ଅନୁମାନ କରୁଅଛି । ବତ୍ସ ! ତୁମ୍ଭେ ବାଳକ, ନ ବୁଝି କପାଇଁ ଏପରି ଦୁଷ୍କର୍ମ କଲ ? କୌଣସି ପ୍ରକାରେ ରାଜା ଆମ୍ଭର ଶାପର ପାତ୍ର ନୁହନ୍ତି ।

---

## ଅଧ୍ୟାୟ—୪୨

ଶୃଙ୍ଗୀ କହିଲେ, ହେ ତାତ ! ଏ ବିଷୟରେ ଯେବେ ଆମ୍ଭର ଅସମସାହସିକତା ଅଥବା ଦୁଷ୍କର୍ମ ହୋଇଥାଏ, କିମ୍ବା ଏଥିରେ ଯେବେ ଆପଣଙ୍କର ପ୍ରୀତି ବା ଅପ୍ରୀତି ହୋଇଥାଏ, ସେ ଯାହା ହେଉ ଆମ୍ଭେ ଯାହା କହିଅଛୁଁ ତାହା କଦାପି ମିଥ୍ୟା ହେବ ନାହିଁ । ହେ ପିତଃ ! ଆମ୍ଭେ ଆପଣଙ୍କୁ କହୁଅଛୁଁ, ଏହା କଦାପି ଅନ୍ୟଥା ହେବ ନାହିଁ । ଶାପ କଥା ଦୂରକୁ ଥାଉ, ଆମ୍ଭେ ପରିହାସରେ ସୁଦ୍ଧା କଦାପି ମିଥ୍ୟା କଥା କହୁନାହିଁ । ସୁତରାଂ ଆମ୍ଭର ଶାପ କୌଣସି ପ୍ରକାରେ ମିଥ୍ୟା ହେବାର ନୁହେଁ । ୨ । ଶମୀକ କହିଲେ, ବତ୍ସ ! ଆମ୍ଭେ ତୁମ୍ଭଙ୍କୁ ଉଗ୍ର-ପ୍ରଭାବଶାଳୀ ଓ ସତ୍ୟବାଦୀ ବୋଲି ଜାଣୁଁ । ତୁମ୍ଭେ କଦାପି ମିଥ୍ୟା କଥା କହ ନାହିଁ ! ଅତଏବ ତୁମ୍ଭର ଶାପ ମିଥ୍ୟା ହେବାର ନୁହେଁ । ପୁତ୍ର ଅଧିକ ବୟସ୍କ ହେଲେହେଁ ତାହାକୁ ସର୍ବଦା ଶାସନ କରିବା ପିତାର ଅବଶ୍ୟ କର୍ତ୍ତବ୍ୟ, ତହିଁରେ ପୁତ୍ର କ୍ରମଶଃ ଗୁଣବାନ୍ ଓ ମହାଯଶସ୍ୱୀ ହୁଏ । ତୁମ୍ଭେ ତ ବାଳକ, ନିରନ୍ତର ତପସ୍ୟା କରୁଥାଅ; ତୁମ୍ଭଙ୍କୁ ନିଶ୍ଚୟ ଶାସନ କରିବୁଁ । ମହା ପ୍ରଭାବଶାଳୀ ତପୋଧନମାନଙ୍କର ଅତିଶୟ କୋପବୃଦ୍ଧି ହୁଅଇ । ୫ । ତୁମ୍ଭେ ଆମ୍ଭର ପ୍ରିୟ ପୁତ୍ର, ତୁମ୍ଭର ଅବିବେକତା

ଓ ଅକସ୍ମାତ୍ ଅସଙ୍ଗତ କାର୍ଯ୍ୟ ଦେଖି ତୁମ୍ଭଙ୍କୁ ଉପଦେଶ ଦେବା ଆବଶ୍ୟକ ହେଉଅଛି । ଅତଏବ ତୁମ୍ଭେ ଅବହିତ ହୋଇ ଶ୍ରବଣ କର ।

'ହେ ଧାର୍ମିକଶ୍ରେଷ୍ଠ ! ତୁମ୍ଭେ ଶାନ୍ତପରାୟଣ ହୋଇ ଓ ବନ୍ୟ ଫଳମୂଳ ଆହାର ଓ ଏ ପ୍ରକାର କ୍ରୋଧକୁ ଦମନ କରି ଧର୍ମ କାର୍ଯ୍ୟର ଅନୁଷ୍ଠାନ କର, ତାହା ହେଲେ ତୁମ୍ଭର ଧର୍ମ ଅବ୍ୟାହତ ରହିବ । ୭ । ଦେଖ, କ୍ରୋଧ ଯତମାନଙ୍କର ବହୁ ଦୁଃଖସଞ୍ଚିତ ଧର୍ମଗୁଡ଼ିକୁ ନଷ୍ଟ କରେ । ଧର୍ମବିହୀନ ବ୍ୟକ୍ତିଙ୍କର ସଦ୍‌ଗତିଲାଭ ହୁଅଇ ନାହିଁ । ୮ । କ୍ଷମାଶୀଳ ତପସ୍ୱୀଙ୍କର ଶମ ଯେ ସେ ସିଦ୍ଧିର ଅଦ୍ୱିତୀୟ ଉପାୟ । କ୍ଷମାଶୀଳର ଇହଲୋକ ଓ ପରଲୋକ ଉଭୟତ୍ର ମଙ୍ଗଳ । ୯ । ଅତଏବ ତୁମ୍ଭେ ନିରନ୍ତର କ୍ଷମାଶୀଳ ଓ ଜିତେନ୍ଦ୍ରିୟ ହୋଇ ବ୍ୟବହାର କରିବ, କ୍ଷମାଶୀଳ ବ୍ୟକ୍ତି ବ୍ରହ୍ମଲୋକ ପ୍ରାପ୍ତ ହୁଅନ୍ତି । ୧୦ । ହେ ବତ୍ସ ! ଆମ୍ଭେ ଶମଗୁଣ ଅବଲମ୍ବନ କରି ଯାହା କରି ପାରିବୁଁ ଅଦ୍ୟ ତାହା କରିବୁଁ । ରାଜାଙ୍କ ନିକଟକୁ ଏହି ସମାଚାର ପଠାଇବୁଁ ଯେ ଆପଣ ଆମ୍ଭଙ୍କୁ ଯେଉଁ ଅପମାନ କରିଥିଲେ, ତାହା ଦେଖି ଅତି ବାଳକ ଓ ଅପରିଣତବୁଦ୍ଧି ଆମ୍ଭର ପୁତ୍ର କୋପବଶ ହୋଇ ଆପଣଙ୍କୁ ଅଭିଶାପ ପ୍ରଦାନ କରିଅଛି । ୧୨ ।

ଉଗ୍ରଶ୍ରବା କହିଲେ, ସୁବ୍ରତ ମହାତପା ଶମୀକ ଋଷି ଦୟାବିଷ୍ଟ ହୋଇ ଗୌରମୁଖ ନାମକ ସୁଶୀଳ ଓ ସମାହିତ ଶିଷ୍ୟକୁ ପରୀକ୍ଷିତ ନୃପତିଙ୍କ ନିକଟକୁ ପ୍ରେରଣ କଲେ ଓ ତାହାଙ୍କୁ ଆଦେଶ କଲେ ଯେ ତୁମ୍ଭେ ପ୍ରଥମେ ରାଜାଙ୍କର କୁଶଳ ପ୍ରଶ୍ନକରି ପଶ୍ଚାତ୍ ଏହିସବୁ ବୃତ୍ତାନ୍ତ ନିବେଦନ କରିବ । ୧୪ । ଦ୍ୱିଜବର ଗୌରମୁଖ ଗୁରୁଙ୍କ ନିୟୋଗାନୁସାରେ ଶୀଘ୍ର କୁରୁବଂଶାବତଂସ ନରପତିଙ୍କ ରାଜଧାନୀରେ ଉପସ୍ଥିତ ହୋଇ ଦ୍ୱାରୀଙ୍କଦ୍ୱାରା ଜଣାଇ ରାଜଭବନରେ ପ୍ରବେଶ କଲେ ଓ ନରେନ୍ଦ୍ରଙ୍କଠାରୁ ସତ୍କାର ପାଇ ଶ୍ରାନ୍ତି ଦୂର କରି ମନ୍ତ୍ରୀଙ୍କ ସନ୍ନିଧିରେ ରାଜା ପରୀକ୍ଷିତଙ୍କୁ ଶମୀକ ଋଷିଙ୍କ କଥିତ ସେହି ଭୟଙ୍କର ବାର୍ତ୍ତା ଜଣାଇଲେ ।

ଗୌରମୁଖ କହିଲେ, ହେ ରାଜେନ୍ଦ୍ର ! ପରମଧର୍ମାତ୍ମା ଶାନ୍ତ ଦାନ୍ତ ମହାତପା ଶମୀକ ଋଷି ଆପଣଙ୍କ ବିଷୟରେ ବାସ କରନ୍ତି । ହେ ନରଶ୍ରେଷ୍ଠ ! ଆପଣ ଧନୁର ଅଗ୍ରଭାଗଦ୍ୱାରା ଗୋଟିଏ ମୃତ ସର୍ପକୁ ମୌନବ୍ରତାବଲମ୍ବୀ ସେହି ଋଷିଙ୍କ ସ୍କନ୍ଧରେ ନିକ୍ଷେପ କଲେ । ଋଷି

ଆପଣଙ୍କୁ କ୍ଷମା କଲେ, କିନ୍ତୁ ତାହାଙ୍କ ପୁତ୍ର ଆପଣଙ୍କୁ କ୍ଷମା ଦେଲେ ନାହିଁ । ହେ ରାଜେନ୍ଦ୍ର ! ସେ ପିତାଙ୍କର ଅଜ୍ଞାତରେ ଅଦ୍ୟ ତୁମ୍ଭଙ୍କୁ ଏହି ଶାପ ଦେଇଅଛନ୍ତି ଯେ ଅଦ୍ୟାବଧି ସପ୍ତରାତ୍ରିରେ ତକ୍ଷକଦ୍ୱାରା ଆପଣଙ୍କ ମୃତ୍ୟୁ ଘଟିବ । ୨୦ । ମହାରାଜାଙ୍କୁ ଏହି ଶାପରୁ ରକ୍ଷାକର ବୋଲି ଋଷି ପୁନଃ ପୁନଃ କହିଲେ, କିନ୍ତୁ ତାହାଙ୍କ ପୁତ୍ର କହିଲେ ଯେ କେହି ସେ ଶାପକୁ ଅନ୍ୟଥା କରିବାକୁ ସମର୍ଥ ହେବେ ନାହିଁ । ମୁନିଶ୍ରେଷ୍ଠ ଶମୀକ କୌଣସି ପ୍ରକାରରେ ସୁଦ୍ଧା କୋପାବିଷ୍ଟ ସେହି ପୁତ୍ରକୁ ଶାନ୍ତ କରିପାରିଲେ ନାହିଁ । ତତ୍ପରେ ସେ ଆପଣଙ୍କ ହିତକାମନାରେ ଆମ୍ଭଙ୍କୁ ଏହି ସନ୍ଦେଶ ଦେଇ ପଠାଇଅଛନ୍ତି ।

ଉଗ୍ରଶ୍ରବା କହିଲେ, ତପସ୍ୱୀ କୁରୁନନ୍ଦନ ରାଜା ପରୀକ୍ଷିତ ଗୌରମୁଖଙ୍କର ସେହି ଭୟାବହ ବାକ୍ୟ ଶ୍ରବଣ କରି ସ୍ୱକୃତ ପାପକର୍ମ ନିମିତ୍ତ ଅତିଶୟ ପରିତାପ କରିବାରେ ପ୍ରବୃତ୍ତ ହେଲେ । ୨୩ । ମୁନିଶ୍ରେଷ୍ଠ ଶମୀକ ମୌନବ୍ରତ ଅବଲମ୍ବନ କରୁଥିବାରୁ ତତ୍କାଳରେ କୌଣସି ଉତ୍ତର ଦେଇ ନ ଥିବାର ଶୁଣି ତାହାଙ୍କର ଶୋକ ଆହୁରି ବର୍ଦ୍ଧିତ ହେଲା । ପୁନଶ୍ଚ ଯେଉଁ ଋଷି ଅବମାନନା ପ୍ରାପ୍ତ ହୋଇ ସୁଦ୍ଧା ଏତାଦୃଶ ଦୟା-ପ୍ରକାଶ କରିଅଛନ୍ତି, ତାହା ସ୍ମରଣ କରି ବାରମ୍ବାର ଅନୁତାପ କଲେ । ଅମର ସଦୃଶ ସେହି ନରପତି ଆପଣା କଲ୍‌ମଷ ନିମିତ୍ତ ଯେତେ ସନ୍ତପ୍ତ ହେଲେ, ଆପଣା ମୃତ୍ୟୁସମ୍ବାଦରେ ତେତେ ଶୋକ କରି ନ ଥିଲେ । ତତ୍ପରେ ରାଜା ଗୌରମୁଖକୁ ଏହା କହି ବିଦାୟ ଦେଲେ ଯେ ସେ ମୁନିବର ତାହାଙ୍କଠାରେ ପ୍ରସନ୍ନ ଥାଉନ୍ତୁ ।

ଗୌରମୁଖ ପ୍ରସ୍ଥାନ କଲାରୁ ରାଜା ସଂବିଗ୍ନଚିତ୍ତ ହୋଇ ମନ୍ତ୍ରୀଙ୍କ ସହିତ ମନ୍ତ୍ରଣା କଲେ । ୮ । ସେ ସ୍ୱୟଂ ମନ୍ତ୍ରତତ୍ତ୍ୱବିଶାରଦ ହୋଇ ସୁଦ୍ଧା ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ଗୋଟିଏ ସ୍ତମ୍ଭ ପରେ ଗୋଟିଏ ପ୍ରାସାଦ ନିର୍ମାଣ କରାଇଲେ । ସେଠାରେ ଆତ୍ମରକ୍ଷାର୍ଥ ଚତୁଃପାର୍ଶ୍ୱରେ ବହୁ ଚିକିତ୍ସକ, ନାନାବିଧ ଔଷଧ ଓ ମନ୍ତ୍ରସିଦ୍ଧ ବ୍ରାହ୍ମଣମାନଙ୍କୁ ନିଯୁକ୍ତ କରି ରଖିଲେ । ଧର୍ମପରାୟଣ ନରପତି ମନ୍ତ୍ରିଗଣଙ୍କ କର୍ତ୍ତୃକ ସର୍ବପ୍ରକାରେ ପରିରକ୍ଷିତ ହୋଇ ସେହି ସ୍ଥାନରେ ସମସ୍ତ ରାଜକାର୍ଯ୍ୟ ପର୍ଯ୍ୟାଲୋଚନା କଲେ । କୌଣସି ବ୍ୟକ୍ତି ସୁଦ୍ଧା ପ୍ରାସାଦାରୂଢ଼ ରାଜାଙ୍କ ସାକ୍ଷାତକୁ ଗମନ କରି ପାରନ୍ତି ନାହିଁ । ଏମନ୍ତ କି ବାୟୁ ମଧ୍ୟ ସଞ୍ଚରଣ କରି ତନ୍ମଧ୍ୟରେ ପ୍ରବେଶ କରି ପାରୁ ନ

ଥିଲି । ୩୨ । ଅନନ୍ତରେ ସପ୍ତମ ଦିବସ ସମାଗତ ହେବାରୁ ବ୍ରାହ୍ମଣଶ୍ରେଷ୍ଠ ବିଦ୍ୱାନ୍ ମହର୍ଷି କଶ୍ୟପ ରାଜାଙ୍କୁ ଚିକିତ୍ସା କରି ନିର୍ବିଷ କରିବା ନିମିତ୍ତ ପ୍ରସ୍ଥାନ କଲେ । ସେ ଶୁଣିଥିଲେ ଯେ ନାଗଶ୍ରେଷ୍ଠ ତକ୍ଷକ, ରାଜା ପରୀକ୍ଷିତଙ୍କୁ ଦଂଶନ କରି ଯମାଳୟକୁ ପ୍ରେରଣ କରିବେ । ୩୪ । ଅତଏବ ତକ୍ଷକ ଦଂଶନ କଲେ ଆମ୍ଭେ ଚିକିତ୍ସା ଦ୍ୱାରା ରାଜାଙ୍କୁ ଅରୁଗ୍ଣ କରି ଧର୍ମ ଓ ଅର୍ଥ ଉଭୟ ଲାଭ କରିବୁ ।

ଏହି ରୂପ ଚିନ୍ତାକରି କଶ୍ୟପ ଏକାଗ୍ର ଚିତ୍ତରେ ଗମନ କରୁଅଛନ୍ତି, ଏମନ୍ତ ସମୟରେ ନାଗରାଜ ତକ୍ଷକ ବୃଦ୍ଧ ବ୍ରାହ୍ମଣ ରୂପ ପରିଗ୍ରହ କରି ପଥ ମଧ୍ୟରେ ତାହାଙ୍କ ସହିତ ସାକ୍ଷାତ୍ କଲେ ଓ କହିଲେ, ହେ ମୁନିଜନ-ଶ୍ରେଷ୍ଠ ! ଆପଣ ଏତେ ସତ୍ୱର ହୋଇ କେଉଁଠାକୁ ଗମନ କରୁଅଛନ୍ତି ? କି କାର୍ଯ୍ୟ ସମାଧାନ କରିବାକୁ ଆପଣଙ୍କର ଅଭିଳାଷ ଜନ୍ମିଅଛି ? ୩୭ । କଶ୍ୟପ କହିଲେ, ଅଦ୍ୟ ନାଗପ୍ରଧାନ ତକ୍ଷକ କୁରୁବଂଶସମ୍ଭୂତ ଶତ୍ରୁ-ନିସୂଦନ ରାଜା ପରୀକ୍ଷିତଙ୍କୁ ସ୍ୱୀୟ ତେଜଦ୍ୱାରା ଭସ୍ମସାତ୍ କରିବେ । ହେ ସୌମ୍ୟ ! ଅଗ୍ନିସମ ତେଜସ୍ୱୀ ନାଗେନ୍ଦ୍ର ଦଂଶନ କଲେ ଆମ୍ଭେ ତତ୍‌କ୍ଷଣାତ୍ ଚିକିତ୍ସାଦ୍ୱାରା ସେହି ପାଣ୍ଡୁବଂଶାବତଂସ ଅପରିମିତ ବଳଶାଳୀ ଭୂପତିଙ୍କୁ ବିଷମୁକ୍ତ କରିବୁ । ଏହି ଅଭିପ୍ରାୟରେ ଦ୍ରୁତ ପଦରେ ସେଠାକୁ ଯାଉଅଛୁ । ତକ୍ଷକ କହିଲେ ହେ ବ୍ରହ୍ମନ୍ ! ଆମ୍ଭେ ସେହି ତକ୍ଷକ, ଆମ୍ଭେ ଭୂପତିଙ୍କୁ ଭସ୍ମାବଶେଷ କରିବୁ । ଆମ୍ଭେ ଦଂଶନ କଲେ ଆପଣ ଚିକିତ୍ସାଦ୍ୱାରା କିଛି କରିପାରିବେ ନାହିଁ, ଅତଏବ ଏହିଠାରୁ ପ୍ରତିନିବୃତ୍ତ ହେଉନ୍ତୁ । ୪୦ । କଶ୍ୟପ କହିଲେ, ତୁମ୍ଭେ ରାଜାଙ୍କୁ ଦଂଶନ କଲେ ଆମ୍ଭେ ନିଶ୍ଚୟ ସ୍ୱୀୟ ବିଦ୍ୟା ପ୍ରଭାବରେ ତାହାଙ୍କୁ ଆରୋଗ୍ୟ କରିବୁ, ତଦ୍‌ବିଷୟରେ ସନ୍ଦେହ ନାହିଁ ।

---

## ଅଧ୍ୟାୟ—୪୩

ତକ୍ଷକ କହିଲେ, ହେ କଶ୍ୟପ ! ଆମ୍ଭେ ଯାହାକୁ ଦଂଶନ କରିବୁ, ତାହାକୁ ଯେବେ ଆପଣ ଚିକିତ୍ସା କରି ନିର୍ବିଷ କରି ପାରନ୍ତି, ତେବେ ଆମ୍ଭେ ଏହି ବଟବୃକ୍ଷକୁ ଦଂଶନ କରୁଅଛୁ । ଆପଣ ଏହାକୁ ପୁନର୍ଜୀବିତ କରନ୍ତୁ । ହେ ଦ୍ୱିଜଶ୍ରେଷ୍ଠ ! ଆପଣ ଯେତେ ମନ୍ତ୍ରବଳ କରନ୍ତୁ ପଛକେ ଓ ଯେତେ ଯତ୍ନ କରନ୍ତୁ ନା କାହିଁକି, ଆପଣଙ୍କ ସମକ୍ଷରେ ଏହି ବଟବୃକ୍ଷକୁ

ଭସ୍ମସାତ୍ କରୁଅଛୁ । ୨ । କଶ୍ୟପ କହିଲେ, ହେ ନାଗ ! ଯଦି ତୁମ୍ଭେ ଇଚ୍ଛାକର, ତେବେ ସତ୍ୱର ଏହି ବଟବୃକ୍ଷକୁ ଦଂଶନ କର, ଆମ୍ଭେ ଅଧୁନା ତାହାର ଜୀବନ ଦାନ କରିବୁ, ସନ୍ଦେହ ନାହିଁ ।

ଉଗ୍ରଶ୍ରବା କହିଲେ, କଶ୍ୟପ ଏହି ରୂପ କହିବାରୁ ନାଗରାଜ ତକ୍ଷକ ବଟବୃକ୍ଷ ନିକଟକୁ ଯାଇ ତାହାକୁ ଦଂଶନ କଲା । ଦଂଶନ କରିବା ମାତ୍ର ତକ୍ଷକର ତୀବ୍ର ବିଷପ୍ରତାପରେ ସେହି ତରୁବର ଏକାବେଳକେ ଭସ୍ମୀଭୂତ ହୋଇଗଲା । ୫ । ଅନନ୍ତର ବୃକ୍ଷକୁ ଦଗ୍ଧ କରି ତକ୍ଷକ କଶ୍ୟପଙ୍କୁ କହିଲେ, ହେ ଦ୍ୱିଜଶ୍ରେଷ୍ଠ ! ଏବେ ଆପଣ ସାମର୍ଥ୍ୟାନୁରୂପ ଆୟାସ ସ୍ୱୀକାର କରି ଏହି ତରୁବରକୁ ପୁନର୍ଜୀବିତ କରନ୍ତୁ ! ୬ ।

ଉଗ୍ରଶ୍ରବା କହିଲେ, ତଦନନ୍ତର କଶ୍ୟପ ଆଶୀବିଷ ପ୍ରଭାବରେ ଭସ୍ମୀଭୂତ ସେହି ବୃକ୍ଷର ସମସ୍ତ ଭସ୍ମ ସଂଗ୍ରହ କରି କହିଲେ, ହେ ପନ୍ନଗେନ୍ଦ୍ର ! ଅଦ୍ୟ ଆମ୍ଭର ବିଦ୍ୟାବଳ ଦର୍ଶନ କର; ଆମ୍ଭେ ତୁମ୍ଭର ସମକ୍ଷରେ ଏହି ବୃକ୍ଷକୁ ଜୀବିତ କରୁଅଛୁଁ । ସେହି କାଳରେ ଦ୍ୱିଜଶ୍ରେଷ୍ଠ ବିଦ୍ୱାନ୍ ଭଗବାନ କଶ୍ୟପ ସ୍ୱୀୟ ବିଦ୍ୟା ପ୍ରଭାବରେ ସେହି ଭସ୍ମରାଶୀକୃତ ତରୁବରକୁ ପୁନର୍ଜୀବିତ କଲେ । ପ୍ରଥମରେ ଅଙ୍କୁର, ତତ୍ପରେ ପତ୍ରଦ୍ୱୟ, କ୍ରମେ କ୍ରମେ ପତ୍ରସମୂହ, ଶାଖା, ମହାଶାଖା ପ୍ରଭୃତି ସମସ୍ତ ଉତ୍ପନ୍ନ ହେଲା । ୧୦ । ତାହା ଦେଖି ତକ୍ଷକ, ମହାତ୍ମା କଶ୍ୟପଙ୍କୁ ସମ୍ବୋଧନ କରି କହିଲା, ହେ ବ୍ରହ୍ମନ୍ ! ଆପଣ ସର୍ବଶକ୍ତିମାନ; ଆମ୍ଭର କମ୍ବା ଅପର ବ୍ୟକ୍ତିର ବିଷ ଆପଣ ନଷ୍ଟ କରି ପାରନ୍ତି । ଆପଣଙ୍କ ପକ୍ଷରେ ଏହା ଅଦ୍ଭୁତ ବ୍ୟାପାର ନୁହେଁ । ହେ ଦ୍ୱିଜେନ୍ଦ୍ର ! ଆପଣ କି ଅଭିଳାଷ କରି ଚିକିତ୍ସା କରିବାକୁ ଗମନ କରୁଅଛନ୍ତି ? ରାଜା ପରୀକ୍ଷିତଙ୍କଠାରୁ ଆପଣ ଯେଉଁ ଅଭିଲଷିତ ଫଳ ଲାଭ କରିବା ହେବେ, ତାହା ଦୁର୍ଲଭ ହେଲେ ହେଁ ଆମ୍ଭେ ଆପଣଙ୍କୁ ତାହା ପ୍ରଦାନ କରିବୁ । ହେ ଦ୍ୱିଜବର ! ବିପ୍ରଶାପଗ୍ରସ୍ତ ରାଜାଙ୍କ ପରମାୟୁଃ ଶେଷ ହୋଇଅଛି, ସୁତରାଂ ଆପଣ ସେଠାକୁ ଯାଇ କୃତକାର୍ଯ୍ୟ ହେବେ କି ନା, ସନ୍ଦେହର ସ୍ଥଳ ଅଟେ । ୧୪ । ଯଦି ଜୀବନଦାନରେ ଅପାରଗ ହୁଅନ୍ତି, ତେବେ ଆପଣଙ୍କର ତ୍ରିଲୋକବ୍ୟାପୀ ପ୍ରଦୀପ୍ତ ଯଶୋରାଶି ପ୍ରଭାହୀନ ରାହୁଗ୍ରସ୍ତ ଭାସ୍କରଙ୍କ ପ୍ରାୟ ଏକାବେଳକେ ବିଲୁପ୍ତ ହୋଇଯିବ । ଅତଏବ ଆପଣ ସେଠାକୁ ଗମନ କରନ୍ତୁ ନାହିଁ । ୧୫ । କଶ୍ୟପ କହିଲେ, ହେ ଭୁଜଙ୍ଗମ ! ଆମ୍ଭେ ଧନଲାଭାର୍ଥୀ ହୋଇ ସେଠାକୁ ଗମନ କରୁଅଛୁ,

ତୁମ୍ଭେ ଆମ୍ଭଙ୍କୁ ଧନ ପ୍ରଦାନ କର । ଆମ୍ଭେ ସୁବର୍ଣ୍ଣ ପାଇଲେ ପ୍ରତିନିବୃତ୍ତ ହେବୁ । ୧୬ । ତକ୍ଷକ କହିଲେ, ହେ ଦ୍ୱିଜବର ! ଆପଣ ରାଜାଙ୍କ ନିକଟରୁ ଯେତେ ଧନ ପାଇ ପାରନ୍ତେ, ଆମ୍ଭେ ତାହା ଅପେକ୍ଷା ଅଧିକ ଧନ ଆପଣଙ୍କୁ ଦେଉଅଛୁ, ଆପଣ ନିବୃତ୍ତ ହେଉନ୍ତୁ । ୧୭ ।

ଉଗ୍ରଶ୍ରବା କହିଲେ, ଦ୍ୱିଜସତ୍ତମ ! ଅତି ତେଜସ୍ୱୀ, ବୁଦ୍ଧିମାନ୍ କଶ୍ୟପ ତକ୍ଷକଙ୍କର ବାକ୍ୟ ଶ୍ରବଣ କରି ରାଜା ପରୀକ୍ଷିତଙ୍କ ମୃତ୍ୟୁ ବିଷୟ ଜାଣିବା ନିମିତ୍ତ ଧ୍ୟାନ କରିବାକୁ ଆରମ୍ଭ କଲେ । ୧୮ । ପରେ ଦିବ୍ୟଜ୍ଞାନ ପ୍ରଭାବରୁ ପାଣ୍ଡୁବଂଶୋଦ୍ଭବ ନୃପତିଙ୍କର ପରମାୟୁଃ ଶେଷ ହୋଇଥିବାର ଜାଣି ତକ୍ଷକଙ୍କ ନିକଟରୁ ଅଭିଳାଷାନୁରୂପ ଧନଲାଭ କରି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଏହିରୂପେ ମହାତ୍ମା କଶ୍ୟପ ନିବୃତ୍ତ ହେବାରୁ ତକ୍ଷକ ଛଦ୍ମବେଶରେ ଦ୍ରୁତ ପଦରେ ହସ୍ତିନାପୁରକୁ ପ୍ରସ୍ଥାନ କଲେ । ଗମନ କାଳରେ ପଥି ମଧ୍ୟରେ ଶୁଣିବାକୁ ପାଇଲେ, ରାଜା ନାନାପ୍ରକାର ବିଷହର ମନ୍ତ୍ର ଓ ଔଷଧ ଦ୍ୱାରା ସର୍ବପ୍ରକାରେ ସୁରକ୍ଷିତ ହୋଇ ଅତି ସାବଧାନରେ କାଳଯାପନ କରୁଅଛନ୍ତି । ଉଗ୍ରଶ୍ରବା କହିଲେ, ତାହା ଶୁଣି ତକ୍ଷକ ମନରେ ବିଚାରିଲେ ଯେ ମାୟାବଳରେ ନରପତିଙ୍କୁ ବଞ୍ଚିତ କରିବେ । ଏବେ କି ଉପାୟ ଅବଲମ୍ବନ କରିବାକୁ ହେବ ଭାବି ସ୍ୱୀୟ ଅନୁଚରବର୍ଗଙ୍କୁ ତାପସରୂପ ଧାରଣ କରାଇ ନରପତିଙ୍କ ସମୀପକୁ ପଠାଇ ଦେଲେ ଓ ସେମାନଙ୍କୁ କହିଦେଲେ ଯେ ତୁମ୍ଭେମାନେ କହିବ ତୁମ୍ଭର ବିଶେଷ କାର୍ଯ୍ୟ ଅଛି । ଏହିରୂପ ଛଳନା କରି ହସ୍ତରେ ଫଳୋଦକାଦି ଘେନି ଅବ୍ୟଗ୍ରଭାବରେ ରାଜାଙ୍କ ନିକଟରେ ଉପସ୍ଥିତ ହେବ ଓ ଆଶୀର୍ବାଦ ସ୍ୱରୂପ ଏହି ଫଳକୁଶ ଓ ବାରି ନୃପତିଙ୍କ ହସ୍ତରେ ପ୍ରଦାନ କରିବ ।

ନାଗଗଣ ତକ୍ଷକଙ୍କ ନିର୍ଦ୍ଦେଶାନୁସାରେ ସେଠାରେ ଉପସ୍ଥିତ ହେଲେ ଓ ରାଜାଙ୍କୁ ଫଳ, ପୁଷ୍ପ, କୁଶୋଦକ ପ୍ରଦାନ କଲେ । ବୀର୍ଯ୍ୟବାନ୍ ନୃପତିଶ୍ରେଷ୍ଠ ପରୀକ୍ଷିତ ପରମ ସମାଦରରେ ତାହା ସବୁ ଗ୍ରହଣ କଲେ ଓ ସେମାନଙ୍କୁ ପାରିତୋଷିକ ପ୍ରଦାନ କରି ସ୍ୱସ୍ଥାନକୁ ଗମନ କରିବାକୁ ବୋଇଲେ । କପଟ ତାପସରୂପଧାରୀ ସେହି ସକଳ ସର୍ପଗଣ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ । ରାଜା ଅମାତ୍ୟ ଓ ସୁହୃଦ୍‌ଗଣଙ୍କୁ ବୋଇଲେ, ତୁମ୍ଭେମାନେ ଆମ୍ଭ ସହିତ ତାପସମାନଙ୍କ ଆନୀତ ଏହି ସୁମିଷ୍ଟ ଫଳ ଭକ୍ଷଣ କର । ୨୮ । ଅନନ୍ତର ରାଜା ବ୍ରହ୍ମଶାପଜନିତ ଦୁର୍ଦ୍ଦୈବ କର୍ତ୍ତୃକ ତାଡ଼ିତ ହୋଇ ସଚିବ-

ଗଣଙ୍କ ସହିତ ସେହି ସକଳ ଫଳ ଭକ୍ଷଣରେ ଉଦ୍ୟତ ହେଲେ । ଯେଉଁ ଫଳରେ ତକ୍ଷକ ପ୍ରବିଷ୍ଟ ହୋଇଥିଲା, ସେହି ଫଳକୁ ଘଟଣାକ୍ରମେ ରାଜା ଭକ୍ଷଣାର୍ଥ ଗ୍ରହଣ କଲେ । ଅନନ୍ତର ଭକ୍ଷଣ କରୁ କରୁ ସେହି ଫଳ ମଧ୍ୟରୁ ତାମ୍ରବର୍ଣ୍ଣ, କୃଷ୍ଣନୟନ, କଦାକାର ଅତି କ୍ଷୁଦ୍ର ଗୋଟିଏ କୃମି ବହିର୍ଗତ ହେଲା । ନୃପଶ୍ରେଷ୍ଠ ପରୀକ୍ଷିତ ସେହି କୃମି ଗ୍ରହଣ କରି ସଚିବମାନଙ୍କୁ କହିଲେ, ଦେଖ ଦିବାକର ଅସ୍ତଗତ ହେଉଅଛନ୍ତି; ଅଦ୍ୟ ଆମ୍ଭର ଆଉ ବିଷଭୟ ନାହିଁ । ୩୨ । ଏକ୍ଷଣେ ଋଷିଙ୍କ ବାକ୍ୟ ସତ୍ୟ ହେଉ । ଏହି କୃମି ତକ୍ଷକ ସ୍ୱରୂପ ଧରି ଆମ୍ଭଙ୍କୁ ଦଂଶନ କରୁ । ତାହା ହେଲେ ବ୍ରାହ୍ମଣଙ୍କ ଅବମାନନାଜନିତ ଦୋଷ ପରିହାର ହେବ । ୩୩ । ମନ୍ତ୍ରିଗଣ ସୁଦ୍ଧା ଦୈବ ଦୁର୍ବିପାକବଶତଃ ତାହାଙ୍କ ମତର ଅନୁବର୍ତ୍ତୀ ହେଲେ । ସେହି ସମୟରେ ନଷ୍ଟଚେତନ ମୁମୂର୍ଷୁ ରାଜା ଅବିଲମ୍ବରେ ସେହି କୃମିକୁ ଗ୍ରୀବାଦେଶରେ ସ୍ଥାପନ କରି ହାସ୍ୟ କରିବାରେ ପ୍ରବୃତ୍ତ ହେଲେ । ୩୪ । ସେ ହାସ୍ୟ କରୁଥାନ୍ତି, ଏମନ୍ତ ସମୟରେ ନାଗରାଜ କୃମିରୂପୀ ତକ୍ଷକ ନିଜ ଦେହ ଧାରଣ କରି ତତ୍କ୍ଷଣାତ୍ ସେହି ଫଳ ମଧ୍ୟରୁ ବହିର୍ଗତ ହେଲା ଓ ସ୍ୱୀୟ ଭୋଗଦ୍ୱାରା ରାଜା ପରୀକ୍ଷିତଙ୍କ ଗ୍ରୀବାଦେଶ ବଳପୂର୍ବକ ବେଷ୍ଟନ କରି ଘୋରତର ଗର୍ଜନପୂର୍ବକ ତାହାଙ୍କୁ ଦଂଶନ କଲା ।

---

## ଅଧ୍ୟାୟ—୪୪

ଉଗ୍ରଶ୍ରବା କହିଲେ, ତକ୍ଷକର ଶରୀରଦ୍ୱାରା ପରିବେଷ୍ଟିତ ନୃପତିଙ୍କୁ ଅବଲୋକନ କରି ଅମାତ୍ୟବର୍ଗ ଅତିଶୟ ଦୁଃଖିତ ମନରେ ଓ ବିଷଣ୍ଣ ବଦନରେ ରୋଦନ କରିବାରେ ପ୍ରବୃତ୍ତ ହେଲେ । ତଦନନ୍ତର ଶୋକ-ପରିପୂର୍ଣ ମନ୍ତ୍ରିଗଣ ତକ୍ଷକର ଭୀଷଣ ଗର୍ଜନ ଶୁଣିବା ମାତ୍ର ବିସ୍ମିତ ହୋଇ ପଳାୟନପର ହେଲେ ଓ ଦେଖିଲେ ପନ୍ନଗଶ୍ରେଷ୍ଠ ତକ୍ଷକ ସ୍ୱୀୟ ପଦ୍ମାରୁଣ ଦେହପ୍ରଭାଦ୍ୱାରା ଆକାଶରେ ସୀମାନ୍ତରେଖା ବିଧାନ କରି ଗମନ କରୁଅଛି । ତଦନନ୍ତର ସର୍ପର ବିଷସମ୍ଭୂତ ଅଗ୍ନିଦ୍ୱାରା ପ୍ରଜ୍ୱଳିତ ସେହି ଗୃହକୁ ଅବଲୋକନ କରି ଭୟ ହେତୁରୁ ସମସ୍ତେ ଯଥାଭିଲଷିତ ଦିଗକୁ ପଳାୟନ କଲେ । ରାଜା ବଜ୍ରାହତ ପ୍ରାୟ ହୋଇ ଭୂତଳରେ ପତିତ ହେଲେ ।

ତତ୍ପରେ ତକ୍ଷକତେଜ ଦ୍ୱାରା ନୃପତି ହତ ହେବାରୁ ତଦୀୟ ମନ୍ତ୍ରୀମାନେ ଓ ରାଜପୁରୋହିତମାନେ ରାଜାଙ୍କର ପାରଲୌକିକ ସତ୍କ୍ରିୟା-ମାନ ସମ୍ପାଦନ କଲେ । ପୁରବାସୀ ସମସ୍ତ ଜନମାନେ ପରୀକ୍ଷିତଙ୍କର ଶିଶୁସୁତଙ୍କୁ ନୃପାସନରେ ବସାଇଲେ । ଯେଉଁ କୁରୁପ୍ରବୀର ଅମିତ୍ରଘାତୀ ନୃପଙ୍କୁ ଜନମେଜୟ ବୋଲି ଲୋକେ ବୋଲନ୍ତି, ସେହି କୁରୁପୁଙ୍ଗବ ବୀର ନୃପତି ବାଳକ ହେଲେହେଁ ମନ୍ତ୍ରୀ ଓ ପୁରୋହିତଙ୍କୁ ଯେହି ଦ୍ରାକ୍ଷଣ ପ୍ରାୟ ନିଜ ପିତାମହ ଯୁଧିଷ୍ଠିରଙ୍କ ପ୍ରାୟ ରାଜ୍ୟଶାସନ କଲେ । ତତ୍ପରେ ରାଜାଙ୍କୁ ସମର୍ଥ ହେବାର ଦେଖି ସେହି ନୃପଙ୍କର ମନ୍ତ୍ରିମାନେ ସୁବର୍ଣ୍ଣବର୍ମା ନାମକ କାଶିରାଜାଙ୍କର ଦୁହିତା ବପୁଷ୍ଟମାକୁ ନୃପତିଙ୍କ ନିମିତ୍ତ ବରଣ କଲେ । କାଶିରାଜ ଆପଣାର କନ୍ୟା ବପୁଷ୍ଟମାଙ୍କୁ କୁରୁପ୍ରବୀର ନରପତିଙ୍କୁ ଧର୍ମାନୁସାରେ ପ୍ରଦାନ କଲେ । ଜନମେଜୟ ତାହାଙ୍କୁ ପ୍ରାପ୍ତ ଓ ମୁଦିତ ହୋଇ ଅନ୍ୟ ନାରୀଠାରେ କଦାପି ମନୋନିବେଶ କଲେ ନାହିଁ । ଯେପରି ରାଜନ୍ୟବର ପୁରୁରବା ଉର୍ବଶୀଙ୍କୁ ପ୍ରାପ୍ତ ହୋଇ ପୂର୍ବେ ବିହାର କରିଥିଲେ, ସେହିପରି ପୁଷ୍ପବନରାଜି ଓ ସରୋବର ତଟରେ ସେହି ବଳଶାଳୀ ରାଜା ପ୍ରସନ୍ନମନରେ ବିହାର କଲେ । ବିଖ୍ୟାତ ରୂପସୀ ଅବରୋଧ ସୁନ୍ଦରୀ ପତିବ୍ରତା ବପୁଷ୍ଟମା ମନୋମତ ଭୂପତିଙ୍କୁ ପତି ପାଇ ବିହାର କାଳରେ ହୃଷ୍ଟଚିତ୍ତରେ ତାହାଙ୍କର ଅତିଶୟ ସୁଖ ପ୍ରଦାନ କରିଥିଲେ ।

---

## ଅଧ୍ୟାୟ—୪୫

ଉଗ୍ରଶ୍ରବା କହିଲେ, ଏହି ସମୟରେ ମହାତପା ଓ ଅତି ତେଜସ୍ୱୀ ଜରତ୍କାରୁ ମୁନି କଠୋର ବ୍ରତ ଅବଲମ୍ବନ ପୂର୍ବକ ବହୁ ପବିତ୍ର ତୀର୍ଥରେ ସ୍ନାନ କରି ଯତ୍ରସାୟଂଗୃହ ହୋଇ ସମସ୍ତ ପୃଥିବୀ ପର୍ଯ୍ୟଟନ କରୁଥିଲେ । ନିରାହାର, ବାୟୁଭକ୍ଷ ଓ କ୍ରମଶଃ ଶୀର୍ଣ୍ଣଦେହ ହୋଇ ଭ୍ରମଣ କରୁଁ କରୁଁ ଏକଦା ଦେଖିଲେ ଯେ ତାହାଙ୍କର ପିତୃଗଣ ଗୋଟିଏ ଉଶୀରସ୍ତମ୍ବକୁ * ଅବଲମ୍ବନ କରି ମହାଗର୍ତ୍ତରେ ଅଧୋମୁଖ ହୋଇ ଲମ୍ବମାନ ରହିଅଛନ୍ତି ।

* ଉଶୀରସ୍ତମ୍ବ—ବେଣାମୋଡ଼ା ।

ସେ ଉଶୀରସ୍ତମ୍ବର ମୂଳରେ ମୂଷିକ ଗର୍ତ୍ତ କରି ସମୁଦାୟ ଭକ୍ଷଣ କରିଅଛି, କେବଳ ଗୋଟିଏ ମାତ୍ର ତନ୍ତୁ ଲାଗିଅଛି । ଏହା ଦେଖି ସେହି ଋଷି ନିରାହାର ଶୀର୍ଣ୍ଣକଳେବର ଦୀନଦଶାପନ୍ନ ଓ ସ୍ୱସ୍ୱ ପରିତ୍ରାଣାକାଂକ୍ଷୀ ପିତୃଗଣଙ୍କ ସମୀପରେ ଉପସ୍ଥିତ ହୋଇ ଅତିଶୟ ବିନୀତ ଭାବରେ ପ୍ରଶ୍ନ-କଲେ (୫), ଆପଣମାନେ କିଏ ? କି କାରଣରୁ ଏକମାତ୍ର ଜୀର୍ଣ୍ଣ ଉଶୀର-ସ୍ତମ୍ବକୁ ଆଶ୍ରୟ କରି ଅଧୋମୁଖରେ ଗର୍ତ୍ତରେ ଲମ୍ବମାନ ହୋଇ ରହି-ଅଛନ୍ତି ? ବିଲବାସୀ ମୂଷିକ ସେହି ଉଶୀରସ୍ତମ୍ବର ମୂଳ ପର୍ଯ୍ୟନ୍ତ ଭକ୍ଷଣ କଲାଣି, କେବଳ ଗୋଟିଏ ଚେର ଲାଗିଅଛି । ସେହି ଅବଶିଷ୍ଟ ଚେରଟିକି ମଧ୍ୟ ଦୁଷ୍ଟ ମୂଷିକ ଅଳ୍ପକାଳ ମଧ୍ୟରେ ଛେଦନ କରିବ । ୭ । ତାହାହେଲେ ଆପଣମାନେ ନିଶ୍ଚୟ ମଥା ତଳକୁ କରି ଗର୍ତ୍ତମଧ୍ୟରେ ନିପତିତ ହେବେ । ଆପଣମାନଙ୍କୁ ଏବଂବିଧ ବିପଦ୍‌ଗ୍ରସ୍ତ ଦେଖି ଆମ୍ଭର ବିଷମ ଦୁଃଖ ଜାତ ହେଲା । ଏବେ ଆଜ୍ଞା କରନ୍ତୁ ଆପଣମାନଙ୍କର କି ପ୍ରିୟକାର୍ଯ୍ୟ ସମ୍ପାଦନ କରିବୁଁ । ୯ । ଯଦି ଆମ୍ଭର ଚିରସଞ୍ଚିତ ତପସ୍ୟାର ଚତୁର୍ଥାଂଶ, ତୃତୀୟ ବା ଅର୍ଦ୍ଧାଂଶ କିମ୍ବା ସମଗ୍ର ତପସ୍ୟାଦ୍ୱାରା ଆପଣମାନେ ଉପସ୍ଥିତ ବିପଦରୁ ଉତ୍ତୀର୍ଣ୍ଣ ହୋଇପାରନ୍ତି, ତେବେ ତହିଁରେ ସୁଦ୍ଧା ଆମ୍ଭେ କୁଣ୍ଠିତ ହେବୁ ନାହିଁ ।

ପିତୃଗଣ ଉତ୍ତର କଲେ, ହେ ବିପ୍ରଶ୍ରେଷ୍ଠ ! ବୃଦ୍ଧ ବ୍ରହ୍ମଚାରି ! ଆପଣ ସ୍ୱକୀୟ ତପସ୍ୟାର ଫଳ ଦାନ କରି ଆମ୍ଭମାନଙ୍କୁ ପରିତ୍ରାଣ କରିବାକୁ ଅଭିଳାଷ କରୁଅଛନ୍ତି, କିନ୍ତୁ ତପସ୍ୟାର ପ୍ରଭାବରେ ଆମ୍ଭମାନଙ୍କର ଏହି କଷ୍ଟ ଅପନୟନ କରିବାକୁ ସମର୍ଥ ହୋଇ ପାରିବ ନାହିଁ । ୧୨ । ଆମ୍ଭମାନଙ୍କର ମଧ୍ୟ ତପସ୍ୟାର ଫଳ ଅଛି । ହେ ବକ୍ତୃପ୍ରଧାନ ! ସନ୍ତାନର ଅଭାବରୁ ଆମ୍ଭମାନଙ୍କର ବଂଶ ଲୋପପ୍ରାପ୍ତ ହୋଇଅଛି । ସେହି ହେତୁ ଆମ୍ଭେମାନେ ଏହି ଅପବିତ୍ର ନରକରେ ପତିତ ହେଉଅଛୁଁ । ପିତାମହ ବ୍ରହ୍ମା କହିଅଛନ୍ତି, ସନ୍ତାନ ପରମ ଧର୍ମ ଅର୍ଥାତ୍ ସନ୍ତାନ ଜାତ ନ ହେଲେ ଧର୍ମ କର୍ମରେ ଅଧିକାର ଜନ୍ମଇ ନାହିଁ । ସେହି କାରଣରୁ ଆମ୍ଭେମାନେ ଏହି ଗର୍ତ୍ତରେ ଲମ୍ବମାନ ରହିଅଛୁଁ ; ଆମ୍ଭଙ୍କୁ କିଛି ବୁଦ୍ଧି ଦିଶୁନାହିଁ । ୧୪ । ଆପଣଙ୍କ ପୌରୁଷ ଭୁବନବିଖ୍ୟାତ ହେଲେହେଁ ଆପଣଙ୍କୁ ଚିହ୍ନିପାରୁ ନାହୁଁ । ଆପଣ ବୃଦ୍ଧ ଓ ମହାଭାଗ ; କରୁଣାଧୀନ ହୋଇ ଶୋଚନୀୟ ଦଶାଗ୍ରସ୍ତ ଆମ୍ଭମାନଙ୍କୁ ପଚାରିବାରୁ ଆମ୍ଭେ ଯେ କିଏ ତାହା କହୁଅଛୁଁ, ହେ ଦ୍ୱିଜ ! ଆପଣ ଶୁଣିବା ହେଉନ୍ତୁ ।

ହେ ମୁନେ ! ଆମ୍ଭେମାନେ ବ୍ରତପରାୟଣ ଯାଯାବର ନାମଧେୟ ଋଷି ଅଟୁଁ । ୧୭ । ସନ୍ତାନ ଅଭାବରୁ ଆମ୍ଭମାନଙ୍କର ବଂଶ ଲୋପପ୍ରାପ୍ତ ହୋଇଅଛି ଓ ସେହି କାରଣରୁ ଆମ୍ଭେମାନେ ପୁଣ୍ୟାର୍ଜିତ ଲୋକରୁ ଭ୍ରଷ୍ଟ ହୋଇ ଈଦୃଶ ଦଶାଗ୍ରସ୍ତ ହୋଇଅଛୁଁ । ଆମ୍ଭମାନଙ୍କର ତୀବ୍ର ତପସ୍ୟା ନଷ୍ଟ ହୋଇଅଛି । ଆମ୍ଭମାନଙ୍କର ଗୋଟିଏ ମାତ୍ର ସନ୍ତାନ ଅଛନ୍ତି । ସେ ଥାଇ ନ ଥିଲା ପ୍ରାୟ । କାରଣ ଆମ୍ଭମାନଙ୍କର ଅଳ୍ପଭାଗ୍ୟବଶରୁ ସେ ମନ୍ଦଭାଗ୍ୟ ସର୍ବଦା ତପସ୍ୟାରେ ରତ ହୋଇଅଛନ୍ତି । ତାହାଙ୍କର ନାମ ଜରତ୍କାରୁ ବୋଲି ବିଖ୍ୟାତ ଅଛି । ସେ ମହାତ୍ମା ବେଦବେଦାଙ୍ଗମାନଙ୍କୁ ଅଧିକାର କରି ଜିତେନ୍ଦ୍ରିୟ ଓ ବ୍ରତଧାରୀ ହୋଇ କଠୋର ତପସ୍ୟାରେ ରତ ହୋଇ-ଅଛନ୍ତି । ତାହାଙ୍କର ତପସ୍ୟା ପ୍ରତି ଆସକ୍ତ ହେବାରୁ ଆମ୍ଭମାନଙ୍କର ଈଦୃଶ କଷ୍ଟ ଦଶା ଉପସ୍ଥିତ ହୋଇଅଛି । ତାହାଙ୍କର ଭାର୍ଯ୍ୟା ଅଥବା ପୁତ୍ର କି ବାନ୍ଧବ କେହି ଗୋଟିଏ ସୁଦ୍ଧା ନାହିଁ । ୨୦ । ସେହି କାରଣରୁ ଆମ୍ଭେମାନେ ଗର୍ତ୍ତରେ ଲମ୍ବିତ ଓ ଜ୍ଞାନଶୂନ୍ୟ ହୋଇ ଅନାଥ ପ୍ରାୟ ରହିଅଛୁଁ । ଆପଣ ତାହାଙ୍କୁ ଦେଖିଲେ ବୋଲିବା ହେବେ 'ତୁମ୍ଭର ପିତୃଗଣ ପୁତ୍ରାଭାବରୁ ଦୀନ-ଭାବାପନ୍ନ ଓ ଅଧଃଶିର ହୋଇ ଗର୍ତ୍ତରେ ଲମ୍ବମାନ ରହିଅଛନ୍ତି । ଅତଏବ ତୁମ୍ଭେ ଦାରପରିଗ୍ରହ କରି ପୁତ୍ରୋତ୍ପାଦନରେ ଯତ୍ନବାନ୍ ହୁଅ ।'

ହେ ତପୋଧନ ! ବର୍ତ୍ତମାନ ତୁମ୍ଭେ ଆମ୍ଭ ବଂଶରେ ଏକମାତ୍ର ତନ୍ତୁ ଅବଶିଷ୍ଟ ଅଛ । ଏହି ଯେଉଁ ଅର୍ଦ୍ଧଭକ୍ଷିତ ବୀରଣସ୍ତମ୍ବକୁ ଆମ୍ଭେମାନେ ଆଶ୍ରୟ କରିବାର ଆପଣ ଦେଖୁଅଛନ୍ତି, ସେ ସ୍ତମ୍ବର ମୂଳ ଆମ୍ଭମାନଙ୍କର ବଂଶର ସନ୍ତାନ ଅଟେ । ତାହାର ନାମ ଜରତ୍କାରୁ ଓ ସେ ସଦା ତପସ୍ୟାରେ ଆସକ୍ତ । ହେ ବ୍ରହ୍ମନ୍ ! ସେହି ସ୍ତମ୍ବର ମୂଳକୁ ଯେ ମୂଷିକ ଭକ୍ଷଣ କରିବାର ଦେଖୁଅଛ ସେ ମୂଷିକ ନୁହେ; ମହାବଳଶାଳୀ କାଳ ଅଟେ । ସେହି କାଳ ଅପାର୍ଥଦର୍ଶୀ, ତପସ୍ୟାଲୋଭୀ, ମନ୍ଦବୁଦ୍ଧି, ପାଷାଣ ତୁଲ୍ୟ ଜରତ୍କାରୁଙ୍କୁ ଅଳ୍ପ ଅଳ୍ପ କରି ସଂହାର କରୁଅଛି । ହେ ସଜ୍ଜନଶ୍ରେଷ୍ଠ ! ତାହାଙ୍କର ତପସ୍ୟା ଆମ୍ଭମାନଙ୍କୁ ଉଦ୍ଧାର କରିବ ନାହିଁ ! ଆମ୍ଭମାନଙ୍କର ମୂଳ ପ୍ରାୟ ଛିନ୍ନ ହୋଇଅଛି ଓ ଆମ୍ଭେ ପୁଣ୍ୟଭ୍ରଷ୍ଟ ହୋଇ ହତଚେତନ ହୋଇଅଛୁ । ଦୁଷ୍କୃତିଙ୍କ ପ୍ରାୟ ଆମ୍ଭେମାନେ ଅଧଃପ୍ରବିଷ୍ଟ ହୋଇଅଛୁଁ ; ଆମ୍ଭଙ୍କୁ ଦେଖନ୍ତୁ । ଆମ୍ଭେମାନେ ଏହି ଗର୍ତ୍ତରେ ସବାନ୍ଧବ ପତିତ ହେଲେ ଜରତ୍କାରୁ ମଧ୍ୟ ତହିଁରେ ପତିତ ଓ ନରକଗାମୀ ହେବେ ।

ହେ ତାତ ! ତପସ୍ୟା, ଯଜ୍ଞ ଅଥବା ଅନ୍ୟ ଯେ ସମସ୍ତ ପରମ ପବିତ୍ର ଅତ୍ୟୁତ୍ତମ କାର୍ଯ୍ୟ ଅଛି, ତତ୍ସମୁଦାୟ ପୁତ୍ରୋତ୍ପାଦନତୁଲ୍ୟ ହୋଇ ନ ପାରେ । ଆପଣ ଆମ୍ଭଙ୍କୁ ଯେପରି ଦେଖିବା ହେଲେ, ଜରତ୍କାରୁଙ୍କ ସହିତ ସାକ୍ଷାତ ହେଲେ ତାଙ୍କୁ ଅବିକଳ ତଦ୍ରୂପ କହିବା ହେବେ । ହେ ବ୍ରହ୍ମନ୍ ! ଆପଣ ଜରତ୍କାରୁଙ୍କୁ ଅନୁଗ୍ରହପୂର୍ବକ କହିବା ହେବେ ଯେ ସେ ଦାରପରିଗ୍ରହ କରି ପୁତ୍ରୋତ୍ପାଦନରେ ଯତ୍ନଶୀଳ ହେବେ । ହେ ସତ୍ତମ ! ଆମ୍ଭମାନେ ବୋଧ କରୁଅଛୁ ଯେ ଆପଣ ତାହାଙ୍କର କୌଣସି ବନ୍ଧୁ ହେବେ କିପାଁ କି ଆପଣ ଏକବଂଶୋଦ୍ଭବ ପରମବନ୍ଧୁପ୍ରାୟ ଆମ୍ଭ ଦୁଃଖରେ ଦୁଃଖୀ ହେଉଅଛନ୍ତି । ଅତଏବ ଆପଣ କିଏ ? ବନ୍ଧୁପ୍ରାୟ ଆମ୍ଭ ଦୁଃଖରେ ଦୁଃଖୀ ହେଉଅଛନ୍ତି, ତାହା ଶୁଣିବାକୁ ଇଚ୍ଛା କରୁଅଛୁ ।

---

## ଅଧ୍ୟାୟ—୪୬

ଉଗ୍ରଶ୍ରବା କହିଲେ, ଜରତ୍କାରୁ ପିତୃଗଣଙ୍କର ସେହି ବାକ୍ୟ ଶ୍ରବଣ କରି ଅତିଶୟ ଶୋକାର୍ତ୍ତ ହୋଇ ବାଷ୍ପରୁଦ୍ଧ ସ୍ୱରରେ ସେମାନଙ୍କୁ ଉତ୍ତର ଦେଲେ, ହେ ପିତୃଗଣ ! ଆପଣମାନେ ଆମ୍ଭର ପିତୃପିତାମହ । ଏବେ ଆପଣମାନଙ୍କର କି ପ୍ରିୟକାର୍ଯ୍ୟ ସମ୍ପନ୍ନ କରିବାକୁ ହେବ ଆଜ୍ଞା କରନ୍ତୁ ।୨। ଆମ୍ଭେ ଆପଣମାନଙ୍କର ଅପରାଧୀ ସୁତ ଜରତ୍କାରୁ । ଆମ୍ଭର ଯେଉଁ ଦୁଷ୍କୃତି ହୋଇଅଛି, ତାହାର ସମୁଚିତ ଦଣ୍ଡ ବିଧାନ କରନ୍ତୁ । ପିତୃଗଣ ବୋଇଲେ ହେ ପୁତ୍ର ! ତୁମ୍ଭେ ଯଦୃଚ୍ଛାକ୍ରମେ ଭ୍ରମଣ କରୁ କରୁ ଆମ୍ଭମାନଙ୍କର ସୌଭାଗ୍ୟବଶତଃ ଏହି ସ୍ଥାନରେ ଉପସ୍ଥିତ ହୋଇଅଛ । ହେ ତପସ୍ୱି ! ତୁମ୍ଭେ ଏ ପର୍ଯ୍ୟନ୍ତ କିପାଇଁ ଦାର ସଂଗ୍ରହ କଲ ନାହିଁ ? ୪ । ଜରତ୍କାରୁ କହିଲେ, ହେ ପିତୃଗଣ ! ଆମ୍ଭର ହୃଦୟରେ ଏହି ଅଭିଳାଷ ଯେ ଆମ୍ଭେ ଊର୍ଦ୍ଧ୍ୱରେତା ହୋଇ ଶରୀର ତ୍ୟାଗ କରି ପରଲୋକ ଗମନ କରିବୁ । ଆମ୍ଭ ମନରେ ଅଛି ଯେ ଆମ୍ଭେ କଦାପି ଦାର ଗ୍ରହଣ କରିବୁ ନାହିଁ । କିନ୍ତୁ ଆପଣଙ୍କୁ ପକ୍ଷୀପ୍ରାୟ ଗର୍ତ୍ତରେ ଲମ୍ବମାନ ଦେଖି, ଆମ୍ଭେ ଅଦ୍ୟାବଧି ବ୍ରହ୍ମଚର୍ଯ୍ୟରୁ ନିବୃତ୍ତ ହେଲୁ । ହେ ପିତାମହଗଣ ! ଆପଣମାନଙ୍କର ପ୍ରିୟ କାର୍ଯ୍ୟ ସମ୍ପାଦନ କରିବା ପାଇଁ ନିଃସଂଶୟ ବିବାହ କରିବୁ । କିନ୍ତୁ ଯେବେ

ଯେ କନ୍ୟାର ନାମ ଆମ୍ଭର ନାମ ସହିତ ଐକ୍ୟ ହୁଏ, ଯେବେ ହେ କନ୍ୟା ବିନା ପ୍ରାର୍ଥନାରେ ସ୍ୱୟଂ ଆସି ଉପସ୍ଥିତ ହୁଏ ଓ ଯେବେ ତାହାର ପୋଷିବାର ଭାର ଆମ୍ଭ ପ୍ରତି ଅର୍ପିତ ନ ହୁଏ, ତେବେ ସେ କନ୍ୟାକୁ ଆମ୍ଭେ ବିବାହ କରିବୁ; ତାହା ନ ହେଲେ କଦାପି ବିବାହ କରିବୁ ନାହିଁ, ଏହା ସତ୍ୟ କହୁଅଛୁ । ଏହିରୂପେ ବିବାହିତା ସ୍ତ୍ରୀର ଗର୍ଭରେ ଆପଣମାନଙ୍କର ପରିତ୍ରାଣାର୍ଥ ଯେଉଁ ପୁତ୍ର ଉତ୍ପନ୍ନ ହେବ, ତାହାର ଦ୍ୱାରା ଆପଣମାନେ ଚିରକାଳ ନିମିତ୍ତ ଅକ୍ଷୟ ସ୍ୱର୍ଗଲାଭ କରିବା ହେବେ । ୧୦ ।

ଉଗ୍ରଶ୍ରବା କହିଲେ, ହେ ଶୌନକ ! ପିତୃଗଣଙ୍କୁ ଏହି ରୂପ କହି ସେହି ମୁନିବର ଜରତ୍କାରୁ ସମସ୍ତ ପୃଥିବୀ ପରିଭ୍ରମଣ କଲେ, କିନ୍ତୁ ବୃଦ୍ଧ ବୋଲି କୌଣସିଠାରେ ଭାର୍ଯ୍ୟାଲାଭ କରି ପାରିଲେ ନାହିଁ । ଅବଶେଷରେ ନିର୍ବେଦପ୍ରାପ୍ତ ହୋଇ ପିତୃଗଣଙ୍କ ଆଜ୍ଞାବଶତଃ ଅରଣ୍ୟରେ ପ୍ରବେଶପୂର୍ବକ ଦୁଃଖିତ ମନରେ ଉଚ୍ଚୈଃସ୍ୱରରେ ରୋଦନ କରିବାକୁ ଆରମ୍ଭ କଲେ । ପରେ ପ୍ରଜ୍ଞାଶାଳୀ ସେହି ମୁନି ପିତୃଗଣଙ୍କର ହିତକାମନାରେ ଅରଣ୍ୟ ମଧ୍ୟରେ ତିନିଥର ଏହି ବାକ୍ୟ ଉଚ୍ଚାରଣ କଲେ, "ଆମ୍ଭେ କନ୍ୟା ଭିକ୍ଷା ମାଗୁଅଛୁ । ଅତଏବ ଏଠାରେ ଯେଉଁ ସବୁ ସ୍ଥାବର ଜଙ୍ଗମ ଅଥଚ ଅଦୃଶ୍ୟ ପ୍ରାଣୀ ଅଛ, ତୁମ୍ଭେମାନେ ଆମ୍ଭର ବାକ୍ୟ ଶ୍ରବଣ କର । ୧୪ । ଆମ୍ଭେ ଏତେକାଳ କେବଳ ଉଗ୍ରତପସ୍ୟାରେ ରତ ଥିଲୁଁ, ସେହି କାରଣରୁ ଆମ୍ଭର ପିତୃଗଣ ଅତିଶୟ ଦୁଃଖିତ ହୋଇ ସନ୍ତାନ ଲାଭାର୍ଥ ଆମ୍ଭଙ୍କୁ ଦାର-ପରିଗ୍ରହ କରିବାକୁ ଆଜ୍ଞା କରିଅଛନ୍ତି । ୧୫ । ଏବେ ଆମ୍ଭେ ପିତୃଗଣଙ୍କର ଆଦେଶାନୁସାରେ ବିବାହ କରିବା ନିମିତ୍ତ ସମସ୍ତ ଭୂମଣ୍ଡଳରେ କନ୍ୟା ଭିକ୍ଷା କରି ବୁଲୁଅଛୁ, ଆମ୍ଭେ ଅତି ଦରିଦ୍ର ଓ ଦୁଃଖୀ । ଆମ୍ଭେ ଏହି ମହୀ-ମଣ୍ଡଳରେ ସକଳ ପ୍ରାଣୀଙ୍କ ନିକଟରେ କନ୍ୟା ପ୍ରାର୍ଥନା କରୁଅଛୁ । ଯଦି ତୁମ୍ଭର କାହାରି କନ୍ୟା ଥାଏ, ତେବେ ଆମ୍ଭଙ୍କୁ ପ୍ରଦାନ କର । କିନ୍ତୁ ଯେ କନ୍ୟା ଆମ୍ଭର ସନାମ୍ନୀ ହେବ ଓ ଭିକ୍ଷା ସ୍ୱରୂପ ଉପସ୍ଥିତ ହେବ ଓ ଆମ୍ଭଙ୍କୁ ତାହାର ଭରଣପୋଷଣର ଭାର ନେବାକୁ ହେବ ନାହିଁ, ତୁମ୍ଭେ-ମାନେ ଏହିପରି କନ୍ୟା ଆମ୍ଭଙ୍କୁ ପ୍ରଦାନ କର ।" ୧୮ ।

ଅନନ୍ତର ଯେଉଁସବୁ ସର୍ପ ଜରତ୍କାରୁଙ୍କ ଅନ୍ୱେଷଣରେ ନିଯୁକ୍ତ ହୋଇଥିଲେ, ସେମାନେ ତାହାଙ୍କର ପ୍ରାର୍ଥନା ବାକ୍ୟ ଶୁଣି ଅବିଳମ୍ବରେ ବାସୁକିଙ୍କ ନିକଟରେ ଉପଗତ ହୋଇ ସେହି ସମ୍ବାଦ ପ୍ରଦାନ କଲେ ।

ହେ ବ୍ରହ୍ମନ୍ ! ନାଗରାଜ ବାସୁକ ଅନୁଚରଙ୍କ ମୁଖରୁ ଜରତ୍କାରୁଙ୍କର ବିବାହ କରିବାର ଅଭିଳାଷ ଶୁଣିବା ମାତ୍ର ବସ୍ତ୍ରାଳଙ୍କାର ବିଭୂଷିତା ସ୍ୱୀୟ ଭଗିନୀଙ୍କୁ ଘେନି ବନ ମଧ୍ୟରେ ସେହି ମୁନିଙ୍କ ନିକଟକୁ ଆଗମନ କଲେ (୨୦) ଓ ମହାତ୍ମା ଜରତ୍କାରୁଙ୍କୁ ଭିକ୍ଷା ସ୍ୱରୂପ ସେହି କନ୍ୟାକୁ ପ୍ରଦାନ କଲେ । କିନ୍ତୁ ସେହି କନ୍ୟା ସନାମ୍ନୀ କି ନା ଓ ତାହାର ଭରଣର ଭାର ଗ୍ରହଣ କରିବାକୁ ହେବ କି ନା ଏହି ବିଷୟରେ ସନ୍ଦେହ ଉପସ୍ଥିତ ହେବାରୁ ସେହି ଋଷି ସହସା ଭାର୍ଯ୍ୟାଗ୍ରହଣ କରିବାକୁ ସ୍ୱୀକୃତ ହେଲେ ନାହିଁ । ଅନନ୍ତର ହେ ଭୃଗୁନନ୍ଦନ ! ମୋକ୍ଷ ପଥବର୍ତ୍ତୀ ସେହି ଋଷି ଦାର ପରିଗ୍ରହରେ ସଂଶୟ-ଚିତ୍ତ ହୋଇ ବାସୁକିଙ୍କୁ ସେହି କନ୍ୟାର ନାମ ପଚାରିଲେ ଓ କହିଲେ ଯେ ସେ ସେହି କନ୍ୟାର ଭରଣପୋଷଣ କରିପାରିବେ ନାହିଁ । ୨୩ ।

## ଅଧ୍ୟାୟ—୪୭

ଉଗ୍ରଶ୍ରବା କୋଇଲେ, ତାହା ଶୁଣି ବାସୁକ ଜରତ୍କାରୁ ଋଷିଙ୍କି କହିଲେ, ହେ ତପୋଧନ ! ତପସ୍ୱିନୀ ଆମ୍ଭର ଏହି ଭଗିନୀ ଆପଣଙ୍କର ସନାମ୍ନୀ ଅଟନ୍ତି । ଆପଣ ଏହାଙ୍କୁ ଭାର୍ଯ୍ୟାସ୍ୱରୂପ ପ୍ରତିଗ୍ରହ କରନ୍ତୁ । ହେ ଦ୍ୱିଜବର । ଆମ୍ଭେ ସାଧ୍ୟାନୁସାରେ ଯାବଜ୍ଜୀବନ ଏହାଙ୍କର ପ୍ରତିପୋଷଣ କରିବୁଁ । ହେ ତାପସଶ୍ରେଷ୍ଠ ! ଆମ୍ଭେ ଆପଣଙ୍କ ନିମିତ୍ତ ଏତେକାଳ ଏହି କନ୍ୟାକୁ ରଖିଅଛୁଁ । ଜରତ୍କାରୁ କହିଲେ, ତେବେ ଆମ୍ଭର ଏହି ନିୟମ ରହିଲା, ଆମ୍ଭେ କଦାପି ଏହାଙ୍କର ଭରଣପୋଷଣ କରିବୁ ନାହିଁ । ଅଥଚ ଏହି କନ୍ୟା କଦାପି ଆମ୍ଭର ଅପ୍ରିୟ କାର୍ଯ୍ୟ କରିବେ ନାହିଁ । ଯଦି କରନ୍ତି ତେବେ ତାହାଙ୍କୁ ପରିତ୍ୟାଗ କରିବୁଁ । ୩ ।

ଉଗ୍ରଶ୍ରବା କହିଲେ, ବାସୁକ ଭଗିନୀଙ୍କର ଭରଣପୋଷଣ କରିବୁଁ ବୋଲି ବୋଲିବାରୁ ଜରତ୍କାରୁ ନାଗରାଜଙ୍କ ଭବନକୁ ଗମନ କଲେ । ଅନନ୍ତର ମନ୍ତ୍ରବିତ୍ ତପୋବୃଦ୍ଧ ମହାବ୍ରତ ସେହି ଧର୍ମାତ୍ମା ଋଷି ଯଥାବିଧି ମନ୍ତ୍ରୋଚ୍ଚାରଣପୂର୍ବକ ଭୁଜଗେନ୍ଦ୍ର ଭଗ୍ନୀର ପାଣିଗ୍ରହଣ କଲେ ଓ ମହର୍ଷି-ଗଣଙ୍କଦ୍ୱାରା ସ୍ତୂୟମାନ ହୋଇ ଭାର୍ଯ୍ୟାଙ୍କ ସହିତ ନାଗରାଜଙ୍କର ମନୋମତ, ପୂର୍ବକଳ୍ପିତ ବହୁମୂଲ୍ୟ ଶଯ୍ୟାଦିଦ୍ୱାରା ସୁସଜ୍ଜୀଭୂତ ପରମ ରମଣୀୟ

ବାସଗୃହରେ ପ୍ରବେଶ କରି ସେଠାରେ ବାସ କଲେ । ୭ । ସେହି ଋଷି ଭାର୍ଯ୍ୟାଙ୍କ ସହିତ ପଣ କଲେ ଯେ କଦାପି ଆମ୍ଭର ବିପ୍ରିୟ କାର୍ଯ୍ୟ କରିବ ନାହିଁ କି ଅପ୍ରିୟ ବାକ୍ୟ କହିବ ନାହିଁ । ଯଦି ତୁମ୍ଭେ ବିପ୍ରିୟ କରିବ, ତେବେ ଆମ୍ଭେ ତୁମ୍ଭ ବାସରେ ରହିବୁ ନାହିଁ ଓ ତୁମ୍ଭଙ୍କୁ ପରିତ୍ୟାଗ କରିବୁଁ । ତୁମ୍ଭେ ଆମ୍ଭର ଏହି ବଚନକୁ ସତ୍ୟ ଜାଣ ।' ତହୁଁରେ ନାଗପତିଙ୍କର ସ୍ୱସା ଅତିଶୟ ହର୍ଷିତ୍ତ ଓ ଦୁଃଖାନ୍ୱିତା ହୋଇ ତାହାଙ୍କୁ "ହେଉ" ବୋଲି କହିଲେ ଓ ଶ୍ୱେତକାକୀୟ * ଉପାୟ ଅବଲମ୍ବନ କରି ସ୍ୱାମୀଙ୍କର ପରିଚର୍ଯ୍ୟା କରିବାରେ ନିଯୁକ୍ତ ରହିଲେ । ୧୧ ।

ଏକଦା ବାସୁକିଙ୍କର ସେହି ଭଗିନୀ ଋତୁସ୍ନାତା ହୋଇ ଯଥା ନିୟମରେ ସ୍ୱାମୀଙ୍କ ସେବାରେ ପ୍ରବୃତ୍ତ ହେଲେ । ସେହି ମହାତ୍ମାଙ୍କଠାରୁ ତାହାଙ୍କର ପ୍ରଜ୍ୱଳିତ ବୈଶ୍ୱାନରସନ୍ନିଭ ଅତି ତେଜସ୍ୱୀ-ଗର୍ଭ ଧାରଣ ହେଲା । ସେହି ଗର୍ଭ ଶୁକ୍ଳପକ୍ଷୀୟ ଚନ୍ଦ୍ରପ୍ରାୟ କ୍ରମଶଃ ବୃଦ୍ଧିପ୍ରାପ୍ତ ହେଲା । କିୟଦ୍ଦିବସ ପରେ ମହାଯଶସ୍ୱୀ ଜରତ୍କାରୁ ଋଷି ସ୍ୱୀୟ ସହଧର୍ମିଣୀ ଜରତ୍କାରୁଙ୍କର ଉତ୍ସଙ୍ଗରେ ମସ୍ତକ ଅର୍ପଣ କରି ଅତିଶୟ ପରିଶ୍ରାନ୍ତ ହେଲା ପ୍ରାୟ ଘୋର ନିଦ୍ରାରେ ଅଭିଭୂତ ହେଲେ । ହେ ବ୍ରହ୍ମନ୍ ! ସେହି ବିପ୍ରର୍ଷି ଶୟନ କରିଅଛନ୍ତି, ଏମନ୍ତ ସମୟରେ ଦିବା ଅବସାନ ହୋଇ ସୂର୍ଯ୍ୟ ଅସ୍ତଗିରିକୁ ଗମନ କଲେ । ଏହା ଦେଖି ଜରତ୍କାରୁ ଭାବିଲେ ଯେ ବର୍ତ୍ତମାନ କି କରିବା ବିଧେୟ । ପତିଙ୍କୁ ଜାଗରିତ କରିବା କର୍ତ୍ତବ୍ୟ କି ନା ? ଏହି ଧର୍ମାତ୍ମା ଅତିଶୟ ଉଗ୍ରସ୍ୱଭାବ । ଯେବେ ଏହାଙ୍କର ନିଦ୍ରାଭଙ୍ଗ କରିବୁଁ, ତେବେ ସେ ନିଶ୍ଚୟ ଆମ୍ଭ ପ୍ରତି କ୍ରୁଦ୍ଧ ହେବେ । ଯଦି ଏହାଙ୍କୁ ଜାଗରିତ ନ କରୁଁ, ତେବେ ସନ୍ଧ୍ୟା ସମୟ ଉତ୍ତୀର୍ଣ୍ଣ ହୋଇଯିବ ଓ ଏହାଙ୍କର ଧର୍ମଲୋପ ହେବ । ଅତଏବ କଣ କଲେ ଆମ୍ଭର ଅପରାଧ ନ ହେବ, ଆମ୍ଭେ କିଛି ସ୍ଥିର କରି ପାରୁନାହୁଁ । କିନ୍ତୁ ଧର୍ମଶୀଳ ବ୍ୟକ୍ତିଙ୍କର ଧର୍ମଲୋପ

---

* ଶ୍ୱା—କୁକୁର; ଏତ—ମୃଗ ଓ କାକ; ଏହିମାନଙ୍କ ପରି ଅର୍ଥାତ୍ କୁକୁରପରି ନିରନ୍ତର ଜାଗରିତ ଓ ମୃଗପରି ଭୟଚକିତ ଓ କାକପ୍ରାୟ ଇଙ୍ଗିତଜ୍ଞ ହୋଇ ସ୍ୱାମୀଙ୍କର ଶୁଶ୍ରୂଷାପର ହେଲେ । କେହି କେହି ଶ୍ୱେତକାକ ଶବ୍ଦର ଅର୍ଥ ବକ ବୋଲି ବୋଲନ୍ତି । ବର୍ଷାକାଳରେ ବକୀ ଯେପରି କୁଳାୟସ୍ଥିତ ବକର ପରିଚର୍ଯ୍ୟା କରେ, ତଦ୍ରୂପ ନାଗପତିଙ୍କ ସ୍ୱସା ନିଜ ପତିଙ୍କର ସେବା ଓ ପୋଷଣାଦି କଲେ ।

ଓ କୋପ ଏହି ଦୁହିଁଙ୍କ ମଧ୍ୟରେ ଧର୍ମଲୋପ ଅଧିକତର ଦୂଷଣୀୟ ; ସୁତରାଂ ଯହିଁରେ ଧର୍ମପରାୟଣ ଏହି ମହର୍ଷିଙ୍କର ଧର୍ମ ଲୋପ ନ ହୁଏ, ତାହା କରିବା ବିଧେୟ । ୧୯ ।

ଅନନ୍ତର ବନ ମଧ୍ୟରେ ଏହା ନିଶ୍ଚୟ କରି ମଧୁରଭାଷିଣୀ, ନାଗରାଜ-ଭଗିନୀ, ତ୍ରପାପ୍ତ ଅନଳତୁଲ୍ୟ ତପୋବୀର୍ଯ୍ୟସମ୍ପନ୍ନ, ନିଦ୍ରାଭିଭୂତ ସେହି ଋଷିଙ୍କୁ ବିନୟନମ୍ର ବଚନରେ କହିଲେ, ହେ ମହାଭାଗ ! ସୂର୍ଯ୍ୟଦେବ ଅସ୍ତ ହେଉଅଛନ୍ତି, ଆପଣ ଆଉ ନିଦ୍ରା ନ କରି ଗାତ୍ରୋତ୍ଥାନ କରନ୍ତୁ ଓ ଆଚମନ କରି ସାୟଂସନ୍ଧ୍ୟା ସମାପନ କରନ୍ତୁ * । ସାୟଂକାଳୀନ ହୋମ-ବିଧିର ସମୟ ଉପସ୍ଥିତ । ଏହି ମୁହୂର୍ତ୍ତ ଅତି ରମ୍ୟ ଅଥଚ ଦାରୁଣ † । ହେ ପ୍ରଭୋ ! ପଶ୍ଚିମ ଦିଗରେ ସନ୍ଧ୍ୟା ପ୍ରବୃତ୍ତ ହେଉଅଛି, ମହାତପା ଭଗବାନ୍ ଜରତ୍କାରୁ ସ୍ୱୀୟ ଭାର୍ଯ୍ୟାଙ୍କର ଏ ପ୍ରକାର ବାକ୍ୟ ଶ୍ରବଣ ମାତ୍ର ଅତିଶୟ କ୍ରୋଧାନ୍ୱିତ ହୋଇ କୋପସ୍ଫୁରିତାଧରରେ କହିଲେ, ହେ ଭୁଜଙ୍ଗମେ ! ତୁମ୍ଭେ ଆମ୍ଭର ଅବମାନନା କଲ । ୧୪ । ଆମ୍ଭେ ଆଉ ତୁମ୍ଭ ନିକଟରେ ବାସ କରିବୁ ନାହିଁ; ଏବେ ସ୍ୱସ୍ଥାନକୁ ଗମନ କରିବୁ । ହେ ବାମୋରୁ ! ଆମ୍ଭେ ନିଦ୍ରିତ ଥିଲେ ସୂର୍ଯ୍ୟଦେବଙ୍କର ଯଥାସମୟରେ ଅସ୍ତ ଗମନ କରିବାର ସାମର୍ଥ୍ୟ ନାହିଁ, ଏ କଥା ଆମ୍ଭ ହୃଦୟରେ ଜାଗରୂକ ଅଛି । ଦେଖ, ସାମାନ୍ୟ ବ୍ୟକ୍ତି ସୁଦ୍ଧା ଅପମାନିତ ହୋଇ ଅପମାନ ସ୍ଥଳରେ ବାସ କରିବାକୁ ଇଚ୍ଛା କରେ ନାହିଁ । ତେବେ ଆମ୍ଭେ ଅଥବା ଆମ୍ଭ ସଦୃଶ ଧର୍ମଶୀଳ ବ୍ୟକ୍ତି ଯେ ଏ ପ୍ରକାର ଅବମାନିତ ହୋଇ ବାସ କରିବେ, ଏହା କୌଣସି ପ୍ରକାରେ ସମ୍ଭବ ନୁହେଁ ।

ଭର୍ତ୍ତାଙ୍କଠାରୁ ଏ ପ୍ରକାର ହୃଦୟବିଦାରକ ବଚନ ଶ୍ରବଣ କରି ବାସୁକିଙ୍କ ଭଗିନୀ ଜରତ୍କାରୁ ବୋଇଲେ, ହେ ବିପ୍ର ! ଅବମାନନା କରିବା ଅଭିପ୍ରାୟରେ ଆମ୍ଭେ ଆପଣଙ୍କୁ ଜାଗରିତ କରିନାହୁଁ । ହେ ବିପ୍ର ! ଆପଣଙ୍କର ଧର୍ମଲୋପ ନ ହେଉ, ଏହି ଅଭିଳାଷରେ ଆମ୍ଭେ ଆପଣଙ୍କୁ ଉଠାଇଲୁ । ଏହା ଶୁଣି ମହାତପା ଜରତ୍କାରୁ ଭାର୍ଯ୍ୟାଙ୍କୁ ତ୍ୟାଗ କରିବା

---

* ସାୟଂ ସମୟରେ ସନ୍ଧ୍ୟା ବନ୍ଦନାଦି ନିତ୍ୟକର୍ମ ଯଥାକାଳରେ ସମାହିତ ନ ହେଲେ ଅଧର୍ମ ହେବାର ସମ୍ଭାବନା ।

† ଧର୍ମଶାସନ ହେତୁରୁ ରମ୍ୟ ଅର୍ଥାତ୍ ସୁଖଜନକ ଓ ଭୂତାଦିଙ୍କର ପ୍ରଚାର ହେତୁରୁ ଦାରୁଣ ।

ମାନସରେ ଅତିଶୟ କୋପାନ୍ୱିତ ହୋଇ କହିଲେ, ହେ ଭୁଜଙ୍ଗମେ ! ଆମ୍ଭର ବାକ୍ୟ ମିଥ୍ୟା ହେବାର ନୁହେଁ । ଆମ୍ଭେ ନିଶ୍ଚୟ ପ୍ରସ୍ଥାନ କରିବୁଁ । ୩୦ । ପୂର୍ବେ ତୁମ୍ଭ ସହିତ ପରସ୍ପରରେ ଏହି ନିୟମ ହୋଇ-ଥିଲା । ହେ ଭଦ୍ରେ ! ଯେତେଦିନ ଆମ୍ଭେ ଏଠାରେ ରହିଲୁଁ, ସେତେଦିନ ସୁଖରେ ରହିଲୁ । ତୁମ୍ଭେ ତୁମ୍ଭର ଭ୍ରାତାଙ୍କୁ କହିବ ଯେ ମହର୍ଷି ଏଠାରୁ ପ୍ରସ୍ଥାନ କଲେ । ହେ ଭୀରୁ ! ଆମ୍ଭେ ଗଲେ ତୁମ୍ଭେ ମଧ୍ୟ ଶୋକ କରିବ ନାହିଁ । ୩୨ ।

ଏପରି ନିଗଦିତ ହେବାରୁ ଶୋଭନାଙ୍ଗୀ ଜରତ୍କାରୁ ନିଜ ପତି ଜରତ୍କାରୁଙ୍କୁ ପ୍ରତ୍ୟୁତ୍ତର ଦେଲେ । ଭର୍ତ୍ତୃବିୟୋଗଜନିତ ଶୋକରେ ତାହାଙ୍କ ନୟନରୁ ଅଶ୍ରୁ ବିଗଳିତ ହେଉଥାଏ; ମୁଖ ପରିଶୁଷ୍କ ଓ ହୃଦୟ କମ୍ପିତ ହେଉଥାଏ । କୌଣସି ମତେ ସେ ଧୈର୍ଯ୍ୟାବଲମ୍ବନ କରି କୃତାଞ୍ଜଳି-ପୁଟରେ ଗଦ୍‌ଗଦ ସ୍ୱରରେ ନିବେଦନ କଲେ, ହେ ଧର୍ମଜ୍ଞ ! ଏହି ନିରପରାଧିନୀ ସହଧର୍ମିଣୀଙ୍କୁ ଆପଣଙ୍କର ପରିତ୍ୟାଗ କରିବା ବିଧେୟ ନୁହେଁ । ୩୫ । ହେ ଦ୍ୱିଜୋତ୍ତମ ! ଆମ୍ଭେ ଧର୍ମପଥରେ ଥାଇ ନିରନ୍ତର ଆପଣଙ୍କର ପ୍ରିୟକାର୍ଯ୍ୟ ଓ ହିତ ଚିନ୍ତା କରୁଁ । ଯେ ଉଦ୍ଦେଶ୍ୟରେ ଆମ୍ଭର ଭ୍ରାତା ଆପଣଙ୍କ ସହିତ ଆମ୍ଭର ବିବାହ ନିଷ୍ପନ୍ନ କଲେ, ତାହା ତ ଅବଧି ଏହି ମନ୍ଦଭାଗିନୀ ଲାଭ କରିନାହିଁ । ବାସୁକି ଏହା ଶୁଣି କି କହିବେ ? ହେ ସତ୍ତମ ! ଆମ୍ଭର ଜ୍ଞାତିଗଣ ମାତୃଶାପଗ୍ରସ୍ତ ହୋଇ-ଅଛନ୍ତି । ୩୭ । ତାହାଙ୍କର ଅଭିଳାଷ ଯେ ଆପଣଙ୍କ ଔରସରୁ ଆମ୍ଭ ଗର୍ଭରେ ଗୋଟିଏ ପୁତ୍ର ଜାତ ହେଉ । କିନ୍ତୁ ତାହା ଏ ପର୍ଯ୍ୟନ୍ତ ଦୃଶ୍ୟ ହୋଇନାହିଁ । ଆପଣଙ୍କଠାରୁ ସେ ପୁତ୍ର ଲାଭ କଲେ ଆମ୍ଭ ଜ୍ଞାତିବର୍ଗଙ୍କର ମଙ୍ଗଳ ହେବ । ୩୮ । ହେ ଦ୍ୱିଜ ! ଆମ୍ଭେ ଜ୍ଞାତିବର୍ଗର ହିତାଭିଳାଷିଣୀ ହୋଇ ପ୍ରାର୍ଥନା କରୁଅଛୁଁ, ଆପଣ ପ୍ରସନ୍ନ ହେଉନ୍ତୁ । ଯହିଁରେ ଆପଣଙ୍କ ସହିତ ଆମ୍ଭର ଘଟିତ ସମ୍ବନ୍ଧ ନିଷ୍ଫଳ ନ ହୁଏ, ତାହା କରିବା ହେଉନ୍ତୁ । ୩୯ । ହେ ସତ୍ତମ ! ଆପଣ ଏଡ଼େ ମହାତ୍ମା ହୋଇ ଏହି ଅବ୍ୟକ୍ତ ରୂପ ଗର୍ଭକୁ ନିଧାନ କରି କିପରି ଅନପରାଧିନୀକୁ ପରିତ୍ୟାଗ କରି ପ୍ରସ୍ଥାନ କରୁଅଛନ୍ତି ? ୪୦ ।

ଭାର୍ଯ୍ୟାଙ୍କର ଏହି ବଚନ ଶ୍ରବଣ କରି ସେହି ତପୋଧନ ଜରତ୍କାରୁ ଯୁକ୍ତିସଙ୍ଗତ ଓ ଅନୁରୂପ ଉତ୍ତର ପ୍ରଦାନ କଲେ । ହେ ସୁଭଗେ !

ବୈଶ୍ୱାନର ତୁଲ୍ୟ ତୁମ୍ଭର ଯେଉଁ ଗର୍ଭ ଆବିର୍ଭୂତ ହୋଇଅଛି, ଏହି ଗର୍ଭରେ ବେଦବେଦାଙ୍ଗପାରଗ ପରମଧର୍ମାତ୍ମା ଗୋଟିଏ ଋଷି ଅଛନ୍ତି । ୪୨ । ଏହା କହି ଧର୍ମାତ୍ମା ମହର୍ଷି ଜରତ୍କାରୁ ପୁନର୍ବାର ଉଗ୍ରତପସ୍ୟା କରିବାକୁ କୃତନିଶ୍ଚୟ ହୋଇ ପ୍ରସ୍ଥାନ କଲେ । ୪୩ ।

---

# ଅଧ୍ୟାୟ—୪୮

ଉଗ୍ରଶ୍ରବା କହିଲେ, ହେ ତପୋଧନ ! ସ୍ୱାମୀ ପ୍ରସ୍ଥାନ କରିବା ଉତ୍ତାରୁ ନାଗରାଜଭଗିନୀ ଜରତ୍କାରୁ ଅବିଳମ୍ବରେ ଭ୍ରାତାଙ୍କ ସମୀପକୁ ଆସି ଯାହା ଘଟିଲା, ତାହା ଆଦ୍ୟୋପାନ୍ତ ସମସ୍ତ ନିବେଦନ କଲେ । ୧ । ନାଗରାଜ ବାସୁକି ଏହି ସୁମହତ୍ ଅପ୍ରିୟ ଶ୍ରବଣ କରି ଅତିଶୟ ଦୁଃଖିତ ହୋଇ ଦୀନଭାବାପନ୍ନ ଭଗ୍ନୀକୁ କହିଲେ (୨), ଭଦ୍ରେ ! ଯେଉଁ ଅଭି-ପ୍ରାୟରେ ଆମ୍ଭେ ତୁମ୍ଭଙ୍କୁ ଜରତ୍କାରୁ ଋଷିଙ୍କୁ ଦାନ କରିଥିଲୁଁ, ତାହା ତୁମ୍ଭେ ଅବଗତ ଅଛ । ପୂର୍ବେ ପିତାମହ ବ୍ରହ୍ମା ଦେବତାମାନଙ୍କ ସମକ୍ଷରେ ବ୍ୟକ୍ତ କରିଥିଲେ, ନାଗକୁଳର ହିତାର୍ଥ ସେହି ଋଷିଙ୍କ ଔରସରୁ ତୁମ୍ଭର ଯଦି ଗୋଟିଏ ସନ୍ତାନ ଉତ୍ପନ୍ନ ହୁଏ, ତେବେ ସେହି ବୀର୍ଯ୍ୟବାନ୍ ପୁତ୍ର ସର୍ପଯଜ୍ଞରୁ ଆମ୍ଭମାନଙ୍କୁ ରକ୍ଷା କରିବେ । ୪ । ହେ ସୁଭଗେ ! ସେହି ମୁନି-ସତ୍ତମଙ୍କଠାରୁ ତୁମ୍ଭର କି ଗର୍ଭ ହୋଇଅଛି ? ଆମ୍ଭର ବାସନା ଏହି ଯେ ସେହି ମନୀଷୀଙ୍କର ଦାରଗ୍ରହଣ ନିଷ୍ଫଳ ନ ହୁଏ । ୫ । ଯଦିତ ଏପରି ପ୍ରଶ୍ନ ତୁମ୍ଭଙ୍କୁ ପଚାରିବା ଆମ୍ଭର କର୍ତ୍ତବ୍ୟ ନୁହେଁ, ତଥାପି ଗୁରୁତର କାର୍ଯ୍ୟ ବୋଲି ଅଗତ୍ୟା କାର୍ଯ୍ୟସିଦ୍ଧି ବିଷୟ ଜାଣିବା ଉଦ୍ଦେଶ୍ୟରେ ଆମ୍ଭେ ଏପରି ପ୍ରଶ୍ନ କଲୁ । ୬ । ତୁମ୍ଭର ସ୍ୱାମୀ ମହାତପସ୍ୱୀ, ଯେତେ କହିଲେ ହେଁ ସେ ଆଉ ଫେରି ଆସିବେ ନାହିଁ, ଆମ୍ଭେ ଏହା ଉତ୍ତମ ରୂପେ ଜାଣୁ । ଅତଏବ ତାଙ୍କ ପଶ୍ଚାତ୍ ଗମନ କରି ନିବୃତ୍ତ କରାଇବାକୁ ଆମ୍ଭେ ଯିବୁ ନାହିଁ, କାଳେ ସେ ଆମ୍ଭଙ୍କୁ ଅଭିଶାପ ପ୍ରଦାନ କରନ୍ତି ।୭। ହେ ଭଦ୍ରେ ! ତୁମ୍ଭର ସ୍ୱାମୀଙ୍କର ସମସ୍ତ ବିଚେଷ୍ଟିତ ଆଦ୍ୟୋପାନ୍ତ ବର୍ଣ୍ଣନ କରି ଆମ୍ଭ ହୃଦୟରୁ ଚିରସ୍ଥିତ ଶଲ୍ୟ ଉଦ୍ଧାର କର । ୮ ।

ତହିଁରେ ଜରତ୍କାରୁ ଦୁଃଖସନ୍ତପ୍ତ ନାଗରାଜ ବାସୁକିଙ୍କୁ ଆଶ୍ୱାସ ପ୍ରଦାନ ପୂର୍ବକ କହିଲେ (୯), ହେ ରାଜନ୍ ! ଗମନ କାଳରେ ସେହି ମହାତ୍ମା ମହାତପା ମହର୍ଷିଙ୍କୁ ଆମ୍ଭେ ଅପତ୍ୟବିଷୟ ପ୍ରଶ୍ନ କରିଥିଲୁ । ତହିଁରେ ସେ ଅଛି ବୋଲି କହି ଚାଲିଗଲେ । ୧୦ । ଆମ୍ଭର ସ୍ମରଣ ଅଛି ପରି-ହାସରେ ସୁଦ୍ଧା ସେ କଦାପି ବିତଥ ବଚନ କହିନାହାନ୍ତି । ସୁତରାଂ ଏହି ଆପଦବେଳେ ସେ କିମ୍ପାଇଁ ଅତଥ୍ୟ କହନ୍ତେ । ସେ ବୋଇଲେ, ହେ ଭୁଜଙ୍ଗମେ ! ତୁମ୍ଭେ ଅନୁତାପ କର ନା, ତୁମ୍ଭର ଜ୍ୱଳନ ଓ ସୂର୍ଯ୍ୟ ସଦୃଶ ପୁତ୍ର ଉତ୍ପନ୍ନ ହେବ । ଆମ୍ଭଙ୍କୁ ଏହା କହି, ହେ ଭ୍ରାତଃ, ଆମ୍ଭର ଭର୍ତ୍ତା ସେହି ତପୋଧନ ପ୍ରସ୍ଥାନ କଲେ । ଏହି କାରଣରୁ ତୁମ୍ଭ ମନସ୍ଥିତ ମହତ୍ ଦୁଃଖକୁ ବିସର୍ଜନ କର । ୧୩ ।

ଉଗ୍ରଶ୍ରବା କହିଲେ, ନାଗରାଜ ବାସୁକି ଭଗିନୀଙ୍କର ବାକ୍ୟ ଶ୍ରବଣରେ ପରମହର୍ଷ ଲାଭ କରି 'ତଥାସ୍ତୁ' ବୋଲି କହିଲେ ଓ ସାନ୍ତ୍ୱନା ଅଥଚ ଅର୍ଥଦାନ ଦ୍ୱାରା ଓ ଅନୁରୂପ ସତ୍କାର ଦ୍ୱାରା ସହୋଦରାଙ୍କର ଯଥୋଚିତ ସମ୍ବର୍ଦ୍ଧନା ଓ ସମାଦର କଲେ । ୧୫ । ହେ ଦ୍ୱିଜବର ! କ୍ରମେ ଶୁକ୍ଳପକ୍ଷର ଶଶଧର ଯେପରି ଗଗନରେ ଦିନକୁ ଦିନ ବୃଦ୍ଧିପ୍ରାପ୍ତ ହୁଅନ୍ତି, ତଦ୍ରୂପ ସେହି ମହାତେଜା ଓ ମହାପ୍ରଭଗର୍ଭ ଦିନକୁ ଦିନ ପରିବର୍ଦ୍ଧିତ ହେଲା । ୧୬ । ହେ ବ୍ରହ୍ମନ୍ ! ଯଥା କାଳରେ ଭୁଜଙ୍ଗଭଗିନୀ ଜରତ୍କାରୁ ପିତୃ ଓ ମାତୃକୁଳର ଭୟବିନାଶକ ଦେବତନୟ ସଦୃଶ ଗୋଟିଏ ସୁତ ପ୍ରସବ କଲେ । ୧୭ । ସେହି କୁମାର ନାଗରାଜଙ୍କ ନିକେତନରେ ବର୍ଦ୍ଧିତ ହେଲେ । ବୁଦ୍ଧି ଓ ସତ୍ତ୍ୱଗୁଣସମ୍ପନ୍ନ ସେହି ବାଳକ ବାଲ୍ୟ କାଳରୁ ବ୍ରତ-ପରାୟଣ ହୋଇ ଭୃଗୁବଂଶସମ୍ଭୂତ ଚ୍ୟବନମୁନିଙ୍କ ନିକଟରୁ ସମୁଦାୟ ବେଦ ଓ ବେଦାଙ୍ଗ ଅଧ୍ୟୟନ କଲେ । ତାହାଙ୍କର ନାମ ଲୋକରେ "ଆସ୍ତୀକ" ବୋଲି ବିଖ୍ୟାତ ହେଲା । ୧୯ । ଯେଣୁ ଏହାଙ୍କର ପିତା 'ଅସ୍ତି' ବୋଲି କହି ବନକୁ ଚାଲିଗଲେ, ତେଣୁକରି ଏହାଙ୍କର ନାମ "ଆସ୍ତୀକ" ବୋଲି ବିଶ୍ରୁତ ହେଲା । ୨୦ । ଅପ୍ରମେୟ ବୁଦ୍ଧିଶକ୍ତିସମ୍ପନ୍ନ ସେହି ବାଳକ ନାଗରାଜଙ୍କର ପ୍ରଯତ୍ନରେ ପରିରକ୍ଷିତ ହୋଇ ସ୍ୱେଚ୍ଛାକ୍ରମେ ଇତସ୍ତତଃ ଭ୍ରମଣ କରି ଧୀମାନ୍ ଦେବାଧିଦେବ ଭଗବାନ୍ ଶୂଳପାଣିଙ୍କ ସଦୃଶ ଦିନକୁ ଦିନ ବୃଦ୍ଧିପ୍ରାପ୍ତ ହୋଇ ସର୍ପମାନଙ୍କର ହର୍ଷବର୍ଦ୍ଧନ କଲେ । ୨୨ ।

# ଅଧ୍ୟାୟ—୪୯

ଶୌନକ କହିଲେ, ହେ ସୂତପୁତ୍ର ! ରାଜା ଜନମେଜୟ ମନ୍ତ୍ରିମାନଙ୍କୁ ନିଜ ପିତାଙ୍କର ସ୍ୱର୍ଗଗମନର ବିଷୟ ଯାହା ପ୍ରଶ୍ନ କରିଥିଲେ, ତାହା ତୁମ୍ଭେ ଆମ୍ଭ ନିକଟରେ ବିସ୍ତାର କରି କୀର୍ତ୍ତନ କର । ୧ ।

ଉଗ୍ରଶ୍ରବା କହିଲେ, ହେ ବ୍ରହ୍ମନ୍ ! ରାଜା ମନ୍ତ୍ରିମାନଙ୍କୁ ଯେରୂପ ପ୍ରଶ୍ନ କରିଥିଲେ ଓ ମନ୍ତ୍ରିମାନେ ପରୀକ୍ଷିତଙ୍କର ନିଧନ ବୃତ୍ତାନ୍ତ ଯେରୂପ ବର୍ଣ୍ଣନ କରିଥିଲେ, ଶ୍ରବଣ କରନ୍ତୁ । ୨ । ଜନମେଜୟ କହିଲେ, ହେ ମନ୍ତ୍ରିଗଣ ! ଆମ୍ଭର ଯଶସ୍ୱୀ ପିତା ଯେଉଁ ପ୍ରକାରେ ପରଲୋକ ପ୍ରାପ୍ତ ହୋଇଅଛନ୍ତି, ତୁମ୍ଭେମାନେ ସେହି ବୃତ୍ତାନ୍ତ ସବିଶେଷ ଅବଗତ ଅଛ । ୩ । ଅଧୁନା ତୁମ୍ଭମାନଙ୍କଠାରୁ ପିତାଙ୍କର ନିଧନ ବୃତ୍ତାନ୍ତ ସମସ୍ତ ଅବଗତ ହୋଇ ତହିଁର ପ୍ରତିକାର କରିବୁଁ, ଯହିଁରେ ଲୋକମାନଙ୍କର ମଙ୍ଗଳ ହେବ ; ଏହାର ବିପରୀତ କରିବୁ ନାହିଁ । ୪ ।

ଉଗ୍ରଶ୍ରବା କହିଲେ, ମହାତ୍ମା ରାଜା ଜନମେଜୟ ଏରୂପ ପଚାରିବାରୁ ପ୍ରଜ୍ଞାଶାଳୀ ଧର୍ମବେତ୍ତା ମନ୍ତ୍ରୀମାନେ ନିବେଦନ କଲେ, ହେ ପୃଥିବୀପତେ ! ଆପଣ ମହାତ୍ମା ନୃପଶ୍ରେଷ୍ଠ ସ୍ୱୀୟ ପିତାଙ୍କର ଚରିତ୍ର ଓ ସ୍ୱର୍ଗଲାଭର ବିବରଣ ପ୍ରଶ୍ନ କରୁଅଛନ୍ତି, ଅତଏବ ଶ୍ରବଣ କରନ୍ତୁ । ୬ ।

ଅତି ଉଦାରଚିତ୍ତ, ମହାନୁଭବ, ପ୍ରଜାବତ୍ସଳ ଆପଣଙ୍କ ପିତା ଯେପରି ଗୁଣଗ୍ରାମଶାଳୀ ଥିଲେ ଅଧୁନା ତାହା କୀର୍ତ୍ତନ କରୁଅଛୁ । ୭ । ଅତୁଳ ପରାକ୍ରମ ସମ୍ପନ୍ନ, ଶ୍ରୀମାନ୍ ଧର୍ମବିତ୍ ସେହି ରାଜା ମୂର୍ତ୍ତିମାନ୍ ଧର୍ମଙ୍କ ପ୍ରାୟ ଧର୍ମାନୁସାରେ ଧରଣୀଦେବୀଙ୍କୁ ରକ୍ଷା କରୁଥିଲେ । ତାହାଙ୍କ ସମୟରେ ବ୍ରହ୍ମଣାଦି ଚତୁର୍ବର୍ଣ୍ଣ ସ୍ୱ ସ୍ୱ ଧର୍ମରେ ରତ ଥିଲେ । ତାହାଙ୍କର କେହି ଦ୍ୱେଷକାରୀ ନ ଥିଲା । ସେ ମଧ୍ୟ କାହାରି ବିଦ୍ୱେଷ କରୁ ନ ଥିଲେ । ପ୍ରଜାପତିଙ୍କ ପ୍ରାୟ ସବୁ ପ୍ରାଣୀଙ୍କଠାରେ ତାହାଙ୍କର ସମାନ ଦୃଷ୍ଟି ଥିଲା । ହେ ରାଜନ୍ ! ତାହାଙ୍କର ସୁପାଳନ ଗୁଣରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର, ଚତୁର୍ବର୍ଣ୍ଣ ସ୍ୱ ସ୍ୱ କାର୍ଯ୍ୟରେ ନିରତ ହୋଇ ସୁଖରେ କାଳଯାପନ କରିଥିଲେ । ସେ ବିଧବା, ବିକଳାଙ୍ଗ, ଦୀନ ଓ ଦରିଦ୍ରମାନଙ୍କର ଭରଣ-ପୋଷଣ କରୁଥିଲେ । ୧୧ । ଦ୍ୱିତୀୟ ଶଶାଙ୍କ ସଦୃଶ ତାହାଙ୍କର ଦର୍ଶନରେ

ସର୍ବ ପ୍ରାଣୀଙ୍କର ନୟନ ତୃପ୍ତି ହେଉଥିଲା । ସେହି ଶ୍ରୀମାନ୍ ସତ୍ୟବାଦୀ ଅତୁଳ-ବିକ୍ରମ ନରପତିଙ୍କଠାରୁ ସମସ୍ତେ ପୁଷ୍ଟ ଓ ପରିତୁଷ୍ଟ ହେଉଥିଲେ । ୧୨ । ହେ ଜନମେଜୟ ! ତୁମ୍ଭର ଯଶସ୍ୱୀ ପିତା କୃପାଚାର୍ଯ୍ୟଙ୍କ ନିକଟରୁ ଧନୁର୍ବେଦ ଶିକ୍ଷା କରିଥିଲେ । ସେ ସର୍ବପ୍ରାଣୀଙ୍କର ବିଶେଷରେ କୃଷ୍ଣଙ୍କର ଅତି ପ୍ରିୟପାତ୍ର ଥିଲେ । ୧୩ । କୁରୁବଂଶ ପରି କ୍ଷୀଣ ହେବାରୁ ସୁଭଦ୍ରାନନ୍ଦନ ଅଭିମନ୍ୟୁଙ୍କ ଔରସରେ ଉତ୍ତରାଙ୍କ ଗର୍ଭରେ ତାହାଙ୍କର ଜନ୍ମ ହୋଇଥିଲା । ଏହି ହେତୁରୁ ତାହାଙ୍କର ନାମ ପରୀକ୍ଷିତ ହେଲା । ସେ ବଳବାନ୍, ରାଜଧର୍ମାର୍ଥକୁଶଳ, ସର୍ବଗୁଣାଲଙ୍କୃତ, ଜିତେନ୍ଦ୍ରିୟ, ଆତ୍ମବାନ୍ (୧), ମେଧାବୀ (୨), ଧାର୍ମିକ, ଷଡ଼୍‌ବର୍ଗଜେତା (୩), ମହାବୁଦ୍ଧି ଓ ଅଲୌକିକ ନୀତିଶାସ୍ତ୍ରବେତ୍ତା (୪) ଥିଲେ । ୧୬ । ହେ ରାଜନ୍ ! ତୁମ୍ଭର ପିତା ପ୍ରଜାପାଳନ କରୁଁ କରୁଁ ଷାଠିଏବର୍ଷ ବୟଃକ୍ରମ (୫) ବେଳେ ସକଳ ଲୋକଙ୍କୁ ଶୋକସାଗରରେ ପରିକ୍ଷିପ୍ତ କରି ଲୋକଯାତ୍ରା ସମ୍ବରଣ କଲେ । ୧୭ । ହେ ପୁରୁଷଶ୍ରେଷ୍ଠ ! ତଦନନ୍ତର ସହସ୍ରବର୍ଷ ପୂର୍ବରୁ କୁରୁବଂଶ-ଭୁକ୍ତ ଏହି ରାଜ୍ୟକୁ ଆପଣ ଧର୍ମତଃ ପ୍ରାପ୍ତ ହୋଇ ଓ ବାଲ୍ୟକାଳରୁ ଅଭିଷିକ୍ତ ହୋଇ ସର୍ବଭୂତଙ୍କୁ ପ୍ରତିପାଳନ କରୁଅଛନ୍ତି । ୧୮ ।

ଜନମେଜୟ କହିଲେ, ମହାମହିମଶାଳୀ ପୂର୍ବପୁରୁଷମାନଙ୍କର ଚରିତ୍ର ଅବଗତ ହୋଇ ସ୍ପଷ୍ଟ ବୋଧ ହେଉଅଛି ଯେ ଆମ୍ଭମାନଙ୍କ ବଂଶରେ କସ୍ମିନ୍ କାଳରେ ପ୍ରଜାଙ୍କର ପ୍ରିୟ ଓ ପ୍ରିୟକାରୀ ନ ହୋଇ କୌଣସି ରାଜା ନ ଥିଲେ । ଅତଏବ ଆମ୍ଭର ପିତା ତଦ୍ରୂପ ରାଜା ହୋଇ କି ପାଇଁ ଅକାଳରେ ନିଧନପ୍ରାପ୍ତ ହେଲେ ପ୍ରକାଶ କରି କହ । ଆମ୍ଭେ ତୁମ୍ଭମାନଙ୍କ ନିକଟରୁ ସେ ବିଷୟ ଯଥାଯଥ ଶୁଣିବାକୁ ବାସନା କରୁଁ । ୨୦ ।

---

(୧) ଆତ୍ମବାନ୍—ବୁଦ୍ଧିମାନ୍ । (୨) ମେଧାବୀ—ସ୍ମୃତିଶକ୍ତିସମ୍ପନ୍ନ ।

(୩) ଷଡ଼୍‌ବର୍ଗ—କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ।

(୪) ନୀତିଶାସ୍ତ୍ର—କାମନ୍ଦକୀ, ନୀତିମୁଖ ପ୍ରଭୃତି ।

(୫) ଟୀକାକାର—ନୀଳକଣ୍ଠ ବୋଲନ୍ତି, ରାଜା ପରୀକ୍ଷିତ ୩୬ ବର୍ଷ ବୟସରେ ରାଜ୍ୟରେ ଅଭିଷିକ୍ତ ହୋଇ ୨୪ ବର୍ଷ ମାତ୍ର ରାଜ୍ୟ ଶାସନ କଲେ । ଅତଏବ ମୂଳରେ ଯେ ଷାଠିଏ ବର୍ଷ ବୋଲି ଉଲ୍ଲେଖ ଅଛି, ତାହା ରାଜ୍ୟପ୍ରାପ୍ତି ସମୟରୁ ଗଣନା ନ ହୋଇ ଜନ୍ମକାଳରୁ ଗଣନା କରା ହୋଇଅଛି ।

ଉଗ୍ରଶ୍ରବା କହିଲେ, ରାଜାଙ୍କର ହିତୈଷୀ ମନ୍ତ୍ରିମାନେ ନୃପତିଙ୍କ ଦ୍ୱାରା ପରିପୃଷ୍ଟ ହୋଇ ରାଜା ପରୀକ୍ଷିତଙ୍କର ମରଣ ବୃତ୍ତାନ୍ତ ଆଦ୍ୟୋପାନ୍ତ ବର୍ଣ୍ଣନ କରିବାକୁ ଆରମ୍ଭ କଲେ । ୨୧ । ମନ୍ତ୍ରିମାନେ କହିଲେ, ରାଜନ୍ ! ଆପଣଙ୍କର ପିତା ମହାବାହୁ ମହାରାଜ ପାଣ୍ଡୁଙ୍କ ସଦୃଶ ସକଳଶାସ୍ତ୍ର-ବିଶାରଦ, ଯୁଦ୍ଧରେ ଶ୍ରେଷ୍ଠ ଧନୁର୍ଦ୍ଧର ଓ ନିରନ୍ତର ମୃଗୟାଶୀଳ ଥିଲେ । ଏକଦା ସେ ସମସ୍ତ ରାଜକାର୍ଯ୍ୟର ଭାର ଆମ୍ଭମାନଙ୍କ ହସ୍ତରେ ନ୍ୟସ୍ତ କରି ମୃଗୟାର୍ଥ ବନଗମନ କଲେ । ସେ ବାଣଦ୍ୱାରା ଗୋଟିଏ ମୃଗ ବିଦ୍ଧ କଲେ; ସେହି ମୃଗ ପଳାୟନ କଲା । ରାଜା ମଧ୍ୟ ବଦ୍ଧନିସ୍ତ୍ରିଂଶ *, ଧନୁଷ୍ପାଣି ଓ ପାଦଗାମୀ ହୋଇ ମୃଗର ପଶ୍ଚାତ୍ ପଶ୍ଚାତ୍ ଧାବମାନ ହୋଇ ଅରଣ୍ୟାନୀ ମଧ୍ୟରେ ପ୍ରବିଷ୍ଟ ହେଲେ । କିନ୍ତୁ ସେ ମୃଗର ଭେଟ ପାଇଲେ ନାହିଁ । ରାଜା ବୟୋଧିକ; ତାହାଙ୍କର ବୟସ ଷଷ୍ଟିବର୍ଷ ହୋଇଥିଲା । ସେ ଜରାନ୍ୱିତ ଥିଲେ । ତହିଁରେ ପରିଶ୍ରାନ୍ତ ଓ କ୍ଷୁଧିତ ହୋଇ ମହାରଣ୍ୟରେ ଗୋଟିଏ ମୁନିବରଙ୍କୁ ଦର୍ଶନ କଲେ । ରାଜା ସେହି ମୁନିଙ୍କୁ ପ୍ରଶ୍ନ କଲେ, ମାତ୍ର ସେହି ମୁନି ମୌନବ୍ରତ ଅବଲମ୍ବନ କରିଥିବାରୁ ପୃଷ୍ଟ ହେଲେହେଁ କୌଣସି ଉତ୍ତର ଦେଲେ ନାହିଁ । ୨୭ ।

କ୍ଷୁଧା ଓ ଶ୍ରମରେ ପ୍ରପୀଡ଼ିତ ହୋଇ ମୁନିଙ୍କି ମୌନ, ଶ୍ରାନ୍ତ ଓ ସ୍ଥାଣୁ ପ୍ରାୟ ସ୍ଥିର ରହିବାର ବିଲୋକନ କରି ସେ ହଠାତ୍ କୋପର ବଶୀଭୂତ ହେଲେ । ୨୮ । ସେ ମୁନି ଯେ ମୌନବ୍ରତ ଅବଲମ୍ବନ କରିଥିଲେ, ତାହା ସେ ରାଜାଙ୍କର ବୋଧ ହେଲା ନାହିଁ । ଆପଣଙ୍କର ପିତା କ୍ରୋଧାବିଷ୍ଟ ହୋଇ ସେହି ମୁନିଙ୍କର ଅପମାନ କଲେ, ଅର୍ଥାତ୍ ଧନୁର ଅଗ୍ରଭାଗରେ ଧରାତଳରୁ ଗୋଟିଏ ମୃତ ସର୍ପକୁ ନେଇ ଶୁଦ୍ଧାନ୍ତଃକରଣ ସେହି ଋଷିଙ୍କ ସ୍କନ୍ଧରେ ଉତ୍କ୍ଷିପ୍ତ କଲେ । ୩୦ । ସେହି ଧୀମାନ୍ ଋଷି ସ୍କନ୍ଧରେ ମୃତ ସର୍ପକୁ ଧାରଣ କରି ରହିଲେ ଓ ରାଜାଙ୍କୁ ସାଧୁ କି ଅସାଧୁ କିଛି କହିଲେ ନାହିଁ । ୩୧ ।

---

* ନିସ୍ତ୍ରିଂଶ—ତରବାରି ।

# ଅଧ୍ୟାୟ—୫୦

ମନ୍ତ୍ରୀମାନେ କହିଲେ, ହେ ରାଜେନ୍ଦ୍ର ! ମହାରାଜ ପରୀକ୍ଷିତ କ୍ଷୁଧାର୍ତ୍ତ ହୋଇ ମୁନିଙ୍କ ସ୍କନ୍ଧ ଦେଶରେ ଉକ୍ତରୂପ ମୃତ ଭୁଜଙ୍ଗମ ଅର୍ପଣ କରି ସ୍ୱୀୟ ରାଜଧାନୀକୁ ପ୍ରତିଗମନ କଲେ । ୧ । ସେହି ଋଷିଙ୍କର ଗବସମ୍ଭୂତ ମହା-ତେଜସ୍ୱୀ, ଅତି କୋପନ ସ୍ୱଭାବ ତୀକ୍ଷ୍ଣ ଶକ୍ତିଶାଳୀ ଶୃଙ୍ଗୀ ନାମକ ଗୋଟିଏ ପୁତ୍ର ଥିଲେ । ୨ । ସେହି ଶୃଙ୍ଗୀ ଲୋକପିତାମହ ବ୍ରହ୍ମାଙ୍କୁ ଅର୍ଚ୍ଚନାପୂର୍ବକ ତତ୍‌କର୍ତ୍ତୃକ ଅନୁଜ୍ଞାତ ହୋଇ ଆଶ୍ରମାଭିମୁଖରେ ପ୍ରତ୍ୟାଗମନ କରୁଥିଲେ, ଏମନ୍ତ ସମୟରେ ସ୍ୱୀୟ ସଖାଗଣଙ୍କଠାରୁ ଶ୍ରବଣ କଲେ ଯେ ହେ ରାଜ-ଶାର୍ଦ୍ଦୂଳ ! ସେହି ଘୋରତପସ୍ୱୀ ମୁନିପ୍ରବର, ଜିତେନ୍ଦ୍ରିୟ, ବିଶୁଦ୍ଧାନ୍ତଃକରଣ, ଅଦ୍ଭୁତକର୍ମରେ ସ୍ଥିତ, ତପସ୍ୟାଦ୍ୱାରା ବିଶୁଦ୍ଧାତ୍ମା, ସଦାଚାରସଂଯୁକ୍ତ, ଶୁଭ-କଥାରତ, ନିର୍ଲୋଭ, ମହାଶୟ, ଅସୂୟାରହିତ *, ବୃଦ୍ଧ, ମୌନ-ବ୍ରତପରାୟଣ, ସର୍ବପ୍ରାଣୀଙ୍କର ଶରଣ୍ୟ ମହାତ୍ମାଙ୍କୁ ଅବମାନନା କରିବା ଉଦ୍ଦେଶ୍ୟରେ ତାହାଙ୍କ ସ୍କନ୍ଧରେ ଗୋଟିଏ ମୃତ ସର୍ପ ଅର୍ପଣ କରିଅଛନ୍ତି ଓ ସେହି ଋଷି କିଛି ନ କହି ତଦବସ୍ଥ ହୋଇଅଛନ୍ତି । ମହାତେଜସ୍ୱୀ ଋଷିପୁତ୍ର, ବାଳକ ହେଲେ ହେଁ ସ୍ଥବିରପ୍ରାୟ ତାହାଙ୍କର ତେଜ ଥିଲା । ସୁତରାଂ ସେ ତାହା ଶ୍ରବଣମାତ୍ର ଅତି ରୋଷବଶରୁ ତେଜୋମୟ ହୋଇ ଆପଣଙ୍କ ପିତାଙ୍କୁ ଲକ୍ଷ୍ୟ କରି ଶୀଘ୍ର ଉଦକ ସ୍ପର୍ଶପୂର୍ବକ ବୋଇଲେ—ଯେ ଦୁରାତ୍ମା ଆମ୍ଭର ନିରପରାଧୀ ପିତାଙ୍କ ସ୍କନ୍ଧରେ ମୃତ ସର୍ପ ନିକ୍ଷେପ କରିଅଛି, ତାହାକୁ ଆମ୍ଭ ବାକ୍ୟବଳରେ ପ୍ରେରିତ ହୋଇ ତିଗ୍ମତେଜା ଆଶୀବିଷ ତକ୍ଷକନାଗ କ୍ରୁଦ୍ଧ ହୋଇ ଆଜଠାରୁ ସପ୍ତମ ଦିବସରେ ସ୍ୱତେଜଦ୍ୱାରା ପ୍ରଦହନ କରିବ । ୧୧ ।

ହେ ବୟସ୍ୟ ! ଆମ୍ଭର ତପସ୍ୟାର ପ୍ରଭାବ ଦର୍ଶନ କର । ଏହା ବୋଲି ଯେଉଁଠାରେ ତାହାଙ୍କର ପିତା ଥିଲେ, ସେହିଠାକୁ ଗମନ କଲେ । ପିତାଙ୍କୁ ଦର୍ଶନ କରି ତାହାଙ୍କୁ ଶାପ ବିଷୟ ଗୋଚର କଲେ । ୧୨ । ସେହି ମୁନିବର ଶମୀକ ଗୁଣବାନ୍ ଓ ଶୀଳସମ୍ପନ୍ନ ଗୌରମୁଖ ନାମକ ଶିଷ୍ୟଙ୍କୁ ଆପଣଙ୍କ ପିତାଙ୍କ ନିକଟକୁ ପ୍ରେରଣ କଲେ । ୧୩ । ଗୌରମୁଖ ରାଜାଙ୍କ ସମୀପରେ ଉପବିଷ୍ଟ ଓ ବିଗତଶ୍ରମ ହୋଇ ସମସ୍ତ ବୃତ୍ତାନ୍ତ ଆମୂଳ

---

* ଅସୂୟା—ଈର୍ଷା ।

କହିଲେ—"ହେ ମହୀପତେ ! ତୁମ୍ଭେ ଆମ୍ଭ ପୁତ୍ରଦ୍ୱାରା ଶପ୍ତ ହୋଇଅଛ, ଅତଏବ ସତର୍କ ଥାଅ । ହେ ମହାରାଜ ! ତକ୍ଷକ ନିଜ ତେଜଦ୍ୱାରା ତୁମ୍ଭଙ୍କୁ ଦହନ କରିବ ।" ହେ ଜନମେଜୟ ! ଆପଣଙ୍କର ପିତା ସେହି ଭୟାବହ ବଚନ ଶ୍ରବଣ କରି ପନ୍ନଗଶ୍ରେଷ୍ଠ ତକ୍ଷକଠାରୁ ପରିତ୍ରସ୍ତ ହୋଇ ଆପଣାକୁ ସାବଧାନ ହେଲେ । ତହିଁ ଉତ୍ତାରୁ ସେହି ସପ୍ତମ ଦିବସ ଉପସ୍ଥିତ ହେବାରୁ ରାଜାଙ୍କ ସମୀପକୁ ବ୍ରହ୍ମର୍ଷି କଶ୍ୟପ ଗମନ କରିବାକୁ ଇଚ୍ଛା କଲେ । ନାଗେନ୍ଦ୍ର ତକ୍ଷକ ସେହି ଋଷିଙ୍କୁ ଗମନ କାଳରେ ଦେଖିଲେ । ୧୭ । ପନ୍ନଗେନ୍ଦ୍ର କଶ୍ୟପଦ୍ୱିଜଙ୍କୁ ଦେଖି ତ୍ୱରିତ ବୋଇଲେ, ଆପଣ କେଉଁଠାକୁ ଏତେ ବେଗରେ ଗମନ କରୁଅଛନ୍ତି ଓ କି କାର୍ଯ୍ୟ କରିବାକୁ ଅଭିଳାଷ କରୁଅଛନ୍ତି ? ୧୮ ।

କଶ୍ୟପ ବୋଇଲେ, ହେ ଦ୍ୱିଜ ! * କୁରୁଶ୍ରେଷ୍ଠ ରାଜା ପରୀକ୍ଷିତ ଯେଉଁଠାରେ ଅଛନ୍ତି, ଆମ୍ଭେ ସେହିଠାକୁ ଗମନ କରୁଅଛୁଁ । ଭୁଜଙ୍ଗମ ତକ୍ଷକ ଅଦ୍ୟ ତାହାଙ୍କୁ ଦହନ କରିବ । ୧୯ । ଆମ୍ଭେ ସେହି ରାଜାଙ୍କୁ ତତ୍‌କ୍ଷଣାତ୍ ନିର୍ବିଷ କରିବା ନିମିତ୍ତ ତ୍ୱରିତ ଗମନ କରୁଅଛୁ । ଆମ୍ଭେ ରାଜାଙ୍କୁ ରକ୍ଷା କଲେ ସର୍ପ ତାହାଙ୍କୁ ଅଭିଭବ କରିପାରିବ ନାହିଁ । ୨୦ ।

ତକ୍ଷକ ବୋଇଲେ, ଆମ୍ଭେ ଦଂଶନ କଲେ କିପାଇଁ ଆପଣ ତାହାଙ୍କୁ ସଞ୍ଜୀବିତ କରିବାକୁ ଇଚ୍ଛା କରୁଅଛନ୍ତି ? ହେ ବ୍ରହ୍ମନ୍ ! ଆମ୍ଭେ ସେହି ତକ୍ଷକ । ଆମ୍ଭର ଅଦ୍ଭୁତ ପରାକ୍ରମ ଦର୍ଶନ କର । ୨୧ । ଆମ୍ଭେ ସେହି ନୃପତିଙ୍କୁ ଦଂଶନ କଲେ ଆପଣ ତାହାଙ୍କୁ ସଞ୍ଜୀବିତ କରିବାକୁ ସମର୍ଥ ହେବେ ନାହିଁ । ଏହା କହି ସେହି ତକ୍ଷକ ତତ୍ସ୍ଥ ଗୋଟିଏ ବନସ୍ପତିକୁ † ଦଂଶନ କଲେ । ଦଷ୍ଟ ହେବା ମାତ୍ର ସେହି ନଗ ଭସ୍ମୀଭୂତ ହେଲା । ତତ୍ପରେ, ହେ ରାଜନ୍ ! କଶ୍ୟପ ସେହି ବୃକ୍ଷକୁ ପୁନର୍ଜୀବିତ କଲେ । ୨୩ । ତତ୍ପରେ ତକ୍ଷକ ସେହି ଋଷିଙ୍କୁ ପ୍ରଲୋଭିତ କରିବା ଅଭିଳାଷରେ ପ୍ରଶ୍ନ କଲେ, ଆପଣ କି ଉଦ୍ଦେଶ୍ୟରେ ରାଜାଙ୍କ ନିକଟକୁ ଗମନ କରୁଅଛନ୍ତି, ବୋଲିବା ହେଉନ୍ତୁ । ଏପରି ବାକ୍ୟ ଶୁଣି କଶ୍ୟପ ପୁନର୍ବାର ତକ୍ଷକଙ୍କୁ ବୋଇଲେ, ଆମ୍ଭେ ଧନଲାଭ ଆଶାରେ ସେଠାକୁ ଗମନ କରୁଅଛୁ । ତକ୍ଷକ ସେହି ମହାତ୍ମାଙ୍କୁ କୋମଳ ବଚନରେ ବୋଇଲେ, ଆପଣ

---

* ଦ୍ୱିଜ—ସର୍ପ ।
† ବନସ୍ପତି—ବୃକ୍ଷ ।

ରାଜାଙ୍କଠାରୁ ଯେବେ ଅର୍ଥ ପାଇବାର ଆଶା ରଖନ୍ତି, ତହିଁରୁ ଅଧିକ ଅର୍ଥ ଆମ୍ଭଠାରୁ ଗ୍ରହଣ କରି ଓ ହେ ଅନଘ ! ରାଜାଙ୍କ ନିକଟକୁ ଗମନ ନ କରି ନିବୃତ୍ତ ହୁଅ । ୨୬ ।

ମାନବଶ୍ରେଷ୍ଠ କଶ୍ୟପ ଏବଂବିଧ ବଚନ ଶୁଣି ତକ୍ଷକଙ୍କଠାରୁ ଅଭିଲଷିତ ଧନ ଲାଭ କରି ନିବୃତ୍ତ ହେଲେ । ୨୭ । ସେହି ବିପ୍ର ପ୍ରତିଗମନ କଲାପରେ ତକ୍ଷକ ଛଦ୍ମବେଶ ଧାରଣ କରି ନୃପତିଶ୍ରେଷ୍ଠ ଓ ଧାର୍ମିକ ଆପଣଙ୍କ ପିତାଙ୍କ ନିକଟରେ ଉପସ୍ଥିତ ହେଲେ । ୨୮ । ଆପଣଙ୍କ ପିତା ସାବଧାନ ହୋଇ ପ୍ରାସାଦ ଉପରେ ସ୍ଥିତ ଓ ସତର୍କ ଥିଲେହେଁ ବିଷବହ୍ନି-ଦ୍ୱାରା ତାହାଙ୍କୁ ଦଗ୍ଧ କଲେ । ତତ୍ପରେ ହେ ପୁରୁଷବ୍ୟାଘ୍ର ! ବିପକ୍ଷମାନଙ୍କୁ ବିଜୟ କରିବା ନିମିତ୍ତ ଆପଣଙ୍କୁ ତାହାଙ୍କ ସ୍ଥାନରେ ଅଭିଷିକ୍ତ କଲେ । ୨୯। ହେ ନୃପସତ୍ତମ ! ଆମ୍ଭେମାନେ ଯାହା ଦେଖିଅଛୁଁ ଓ ଶୁଣିଅଛୁଁ, ସେହି ଦାରୁଣ କଥାମାନ ଆପଣଙ୍କୁ ନିବେଦନ କଲୁଁ । ୩୦ । ହେ ନରଶ୍ରେଷ୍ଠ ! ଆପଣଙ୍କ ପିତାଙ୍କର ଓ ଉତଙ୍କ ଋଷିଙ୍କର ପ୍ରଭାବ ବୃତ୍ତାନ୍ତ ଶ୍ରବଣ କଲେ, ଏବେ ଯାହା ବିଧେୟ ତାହା କରିବା ହେଉନ୍ତୁ । ୩୧ ।

ସୌତି କହିଲେ, ଅନନ୍ତର ଅରିନ୍ଦମ ରାଜା ଜନମେଜୟ ସବୁ ମନ୍ତ୍ରୀଙ୍କି କହିଲେ, ତକ୍ଷକ ଯେତେବେଳେ ବନସ୍ପତିକୁ ଦଗ୍ଧ କରିଥିଲା ଓ କଶ୍ୟପ ଯେ ସେହି ବୃକ୍ଷର ଜୀବନ ପ୍ରଦାନ କଲେ, ଏହି ଆଶ୍ଚର୍ଯ୍ୟ ବିଷୟ ତୁମ୍ଭେମାନେ କାହାଠାରୁ ଶ୍ରବଣ କଲ ? ଆମ୍ଭର ବୋଧହୁଏ ପନ୍ନଗାଧମ ପାପାତ୍ମା ତକ୍ଷକ ମନରେ ଭାବିଥିଲା ଯେ କଶ୍ୟପଙ୍କ ମନ୍ତ୍ରଦ୍ୱାରା ବନସ୍ପତି ବିଷମୁକ୍ତ ହୋଇ ଜୀବନ ପ୍ରାପ୍ତ ହୋଇଅଛି ; ଆମ୍ଭେ ରାଜାଙ୍କୁ ଦଂଶନ କଲେ ଏ ବ୍ରାହ୍ମଣ ଯାଇ ଯଦ୍ୟପି ପରୀକ୍ଷିତଙ୍କୁ ବଞ୍ଚାଇଦିଏ, ତେବେ ଲୋକେ କହିବେ ତକ୍ଷକର ଆଉ ତାଦୃଶ ବିଷ ନାହିଁ ; ଏହା କହି ଉପହାସ କରିବେ । ଅତଏବ ଏହି ବିଷୟ ମନେ ଭାବି କଶ୍ୟପଙ୍କୁ ସନ୍ତୁଷ୍ଟ କରି ବିଦାୟ କରିଦେଲା, ଏଥିରେ କୌଣସି ସନ୍ଦେହ ନାହିଁ । ୩୨ । ପରନ୍ତୁ ଆମ୍ଭେ ଯେଉଁ ଉପାୟରେ ହେଉ ସେହି ପନ୍ନଗାଧମର ଏହି ପାପର ପ୍ରତିଫଳ ପ୍ରଦାନ କରିବୁଁ । କିନ୍ତୁ ଆମ୍ଭେ ଗୋଟିଏ ବିଷୟ ଶୁଣିବାକୁ ଇଚ୍ଛା କରୁଅଛୁଁ । ନିର୍ଜ୍ଜନ ବନରେ ତକ୍ଷକ ଓ କଶ୍ୟପଙ୍କର କଥାବାର୍ତ୍ତା ଓ ସେହି ଘଟନା ଘଟିଥିଲା । ତାହା କିଏ ଶୁଣିଥିଲା ଓ କିଏ ଦେଖିଥିଲା, ଆପଣମାନେ କିପରି ତାହା ଅବଗତ ହେଲେ ? ଏହା ସବିଶେଷ ଶୁଣିଲେ ପନ୍ନଗ-ମାନଙ୍କର ସଂହାର କରିବାର ଉପାୟ ସ୍ଥିର କରିବୁଁ । ୩୮ । ମନ୍ତ୍ରୀମାନେ

ଉତ୍ତର କଲେ, ହେ ରାଜନ୍ ! ପୂର୍ବେ ପଥ ମଧ୍ୟରେ କଶ୍ୟପ ଓ ତକ୍ଷକଙ୍କ ସମାଗମ ବୃତ୍ତାନ୍ତ ଯେଉଁ ବ୍ୟକ୍ତି ଆମ୍ଭମାନଙ୍କ ନିକଟରେ ଯେରୂପ ବର୍ଣ୍ଣନ କରିଥିଲା ତାହା କହୁଅଛୁଁ ଶ୍ରବଣ କରନ୍ତୁ । ୩୯ ।

ହେ ପାର୍ଥିବ ! ଜଣେ ବ୍ୟକ୍ତି ଇନ୍ଧନାର୍ଥ ସେହି ବୃକ୍ଷରେ ଆରୋହଣ କରି ଶୁଷ୍କ ଶାଖା ସବୁ ସଞ୍ଚୟ କରୁଥିଲା ; ତକ୍ଷକ ଓ ବ୍ରାହ୍ମଣ ଦୁହେଁ ବୃକ୍ଷାରୂଢ଼ ସେହି ବ୍ୟକ୍ତିକୁ ଦେଖି ନ ଥିଲେ ; ହେ ରାଜନ୍ ! ସେହି ବ୍ୟକ୍ତି ତକ୍ଷକର ବିଷାଗ୍ନି ଦ୍ୱାରା ବନସ୍ପତି ସହିତ ଭସ୍ମୀଭୂତ ହୋଇଥିଲା । ୪୧ । ପରେ କଶ୍ୟପଙ୍କ ପ୍ରଭାବରୁ ବୃକ୍ଷସହ ପୁନର୍ଜ୍ଜୀବିତ ହେଲା । ସେହି ବ୍ୟକ୍ତି ଆମ୍ଭମାନଙ୍କ ନିକଟକୁ ଆସି ତକ୍ଷକ ଓ ବ୍ରାହ୍ମଣର ସମସ୍ତ ବୃତ୍ତାନ୍ତ ବର୍ଣ୍ଣନ କଲା । ୪୨ । ହେ ରାଜନ୍ ! ଆମ୍ଭେମାନେ ଯାହା ଦେଖିଅଛୁଁ ଓ ଶୁଣିଅଛୁଁ, ତାହା ସମସ୍ତ ନିବେଦନ କଲୁଁ । ହେ ନୃପଶାର୍ଦ୍ଦୂଳ ! ଏବେ ଆପଣ ଶୁଣି ଯାହା ବିହିତ ହୁଏ କରନ୍ତୁ । ୪୩ ।

ଉଗ୍ରଶ୍ରବା କହିଲେ, ରାଜା ଜନମେଜୟ ମନ୍ତ୍ରିମାନଙ୍କର ବଚନ ଶ୍ରବଣରେ ସାତିଶୟ ଦୁଃଖିତ ଓ ପରିତପ୍ତ ହୋଇ କରକୁ କର ପେଷଣ କଲେ ଓ ରାଜୀବଲୋଚନ ମହାରାଜ ଜନମେଜୟ ସେହି ସମୟରେ ବାରମ୍ବାର ଦୀର୍ଘନିଶ୍ୱାସ ପରିତ୍ୟାଗପୂର୍ବକ ବିଶେଷ ରୋଦନ ଓ ନେତ୍ରଦ୍ୱୟରୁ ଅଶ୍ରୁ ବିମୋଚନ କଲେ । ୪୫ । ତତ୍ପରେ ନୃପତି କୋପସମନ୍ୱିତ ହୋଇ ମୁହୂର୍ତ୍ତକାଳ ଧ୍ୟାନ କରି ମନୋମଧ୍ୟରେ ନିଶ୍ଚୟ କରି ମନ୍ତ୍ରିମାନଙ୍କୁ ବୋଇଲେ (୪୭), ଆମ୍ଭେ ପିତାଙ୍କର ସ୍ୱର୍ଗଗମନ ବୃତ୍ତାନ୍ତ ଆପଣଙ୍କଠାରୁ ଶ୍ରବଣ କରି ଦୁରାତ୍ମା ତକ୍ଷକ ବିପକ୍ଷରେ ଯେଉଁ ପ୍ରତିକାର ଆମ୍ଭ ମନରେ ନିଶ୍ଚୟ କଲୁ ତାହା ଅବଗତ ହୁଅ । ୪୮ ।

ଆମ୍ଭ ବିବେଚନାରେ ଦୁରାତ୍ମା ତକ୍ଷକ ଶୃଙ୍ଗୀ ନାମକ ଋଷିକୁମାରଙ୍କୁ କେବଳ ହେତୁ କରି ଆମ୍ଭ ପିତାଙ୍କୁ ବିନଷ୍ଟ କରିଅଛି, ସେହି ତକ୍ଷକର ଦୌରାତ୍ମ୍ୟ ଦେଖ । କଶ୍ୟପ ଆସୁଥିଲେ; ସେ ବିପ୍ର ନିଶ୍ଚୟ ଆମ୍ଭ ପିତାଙ୍କୁ ଜୀବିତ କରିଥାନ୍ତେ, କିନ୍ତୁ ତକ୍ଷକ ତାହାଙ୍କୁ ନିବୃତ୍ତ କଲା । ୫୦ । କଶ୍ୟପଙ୍କ ପ୍ରସାଦରୁ ଓ ମନ୍ତ୍ରିବର୍ଗର ବିନୟରୁ ଯଦି ଆମ୍ଭର ପିତା ଜୀବିତ ହୁଅନ୍ତେ, ତେବେ ତାହାର କି ହାନି ହୁଅନ୍ତା ? ୫୧ । ଅପରାଜିତ ପାର୍ଥିବଙ୍କ ନିକଟକୁ ଦ୍ୱିଜସତ୍ତମ କଶ୍ୟପ ସଞ୍ଜୀବିତ କରଣାର୍ଥ ଆଗମନ କରୁଥିଲେ ; ସେ ତକ୍ଷକ

ମୋହ * ବଶରୁ ତାହାଙ୍କୁ ବାରଣ କଲା । ୫୨ । ନୃପତିଙ୍କୁ ଜୀବିତ ନ କରିବା ପାଇଁ ଦ୍ୱିଜଙ୍କୁ ଦ୍ରବ୍ୟଦାନ କରିବା କାର୍ଯ୍ୟଟି ଦୁରାତ୍ମା ତକ୍ଷକର ମହାନ୍ ଅପରାଧ । ୫୩ । ଆମ୍ଭେ ଉତ୍ତଙ୍କଙ୍କର ପ୍ରୀତି ନିମିତ୍ତ ଆମ୍ଭର ଓ ତୁମ୍ଭ ସମସ୍ତଙ୍କର ପ୍ରିୟାନୁଷ୍ଠାନ କରିବା କାରଣ ପିତାଙ୍କର ବୈରନିର୍ଯାତନ କରିବୁ । ୫୪ ।

---

## ଅଧ୍ୟାୟ—୫୧

ଉଗ୍ରଶ୍ରବା କହିଲେ, ହେ ବ୍ରହ୍ମନ୍ ! ଭରତର୍ଷଭ, ପୃଥ୍ୱୀପତି ପରୀକ୍ଷିତପୁତ୍ର, ଶ୍ରୀମାନ୍ ମହାରାଜା ଜନମେଜୟ, ଉକ୍ତ ପ୍ରକାରେ କହି ମନ୍ତ୍ରିମାନଙ୍କ କର୍ତ୍ତୃକ ଅନୁମୋଦିତ ହୋଇ ସର୍ପଯଜ୍ଞ ନିମିତ୍ତ ପ୍ରତିଜ୍ଞାରୂଢ଼ ହେଲେ । ସେହି ବଚନନିଷ୍ଠ ବସୁଧାଧିପ ପୁରୋହିତଙ୍କୁ ଓ ଋତ୍ୱିଜଙ୍କୁ ଆହ୍ୱାନ କରି କାର୍ଯ୍ୟ ସମାଧା କରିବାକୁ କହିଲେ; ଅଥଚ ବୋଇଲେ ଯେ ପାପାତ୍ମା ଦୁରାତ୍ମା ତକ୍ଷକ ଆମ୍ଭର ପିତାଙ୍କୁ ହିଂସା କରିଅଛି । ଆମ୍ଭେ ମଧ୍ୟ ସେହିରୂପ ତାହାର ପ୍ରତିକାର କରିବାକୁ ମାନସ କରିଅଛୁଁ । ଯହିଁରେ ନାଗରାଜ ତକ୍ଷକକୁ ସବାନ୍ଧବ ପ୍ରଦୀପ୍ତ ହୁତାଶନରେ ପ୍ରକ୍ଷିପ୍ତ କରିପାରିବୁଁ, ଏପରି କର୍ମ ଆପଣମାନଙ୍କୁ ବିଦିତ ଅଛି କି ନା ବୋଲନ୍ତୁ । ସେ ଯେପରି ଆମ୍ଭର ପିତାଙ୍କୁ ପୂର୍ବେ ବିଷାଗ୍ନିଦ୍ୱାରା ଦଗ୍ଧ କରିଥିଲା, ସେହିପରି ଆମ୍ଭେ ମଧ୍ୟ ପାପାତ୍ମା ପନ୍ନଗକୁ ଦହନ କରିବାକୁ ଇଚ୍ଛାକରୁଁ । ୫ ।

ଋତ୍ୱିଜମାନେ କହିଲେ, ହେ ରାଜନ୍ ! ଆମ୍ଭେମାନେ ପୁରାଣରେ ଅଧ୍ୟୟନ କରିଅଛୁଁ ସର୍ପ-ସତ୍ର ନାମରେ ଗୋଟିଏ ମହତ୍ ଯଜ୍ଞ ଅଛି । ତୁମ୍ଭ ନିମିତ୍ତ ଦେବତାମାନେ ସେହି ଯଜ୍ଞ ବିଧାନ କରିଅଛନ୍ତି । ୬ । ହେ ରାଜନ୍ ! ପୌରାଣିକମାନେ ବୋଲନ୍ତି ଆପଣଙ୍କ ବ୍ୟତିରେକେ ସେହି ସତ୍ର ଅନ୍ୟ କୌଣସି ରାଜା ସାଧନ କରିପାରିବେ ନାହିଁ । ହେ ମହାରାଜ ! ଆମ୍ଭେମାନେ ସମସ୍ତେ ସେହି ମହାସତ୍ରର ଅନୁଷ୍ଠାନମାନ ଅବଗତ ଅଛୁଁ । ୭ । ସୌତି କହିଲେ, ହେ ସତ୍ତମ ! ଋତ୍ୱିକ୍‌ମାନଙ୍କର ତଦ୍ରୂପ ବଚନ ଶ୍ରବଣ କରି ଦୀପ୍ତ ହୁତାଶନ ମୁଖରେ ପ୍ରବିଷ୍ଟ ହୋଇ ତକ୍ଷକ ଦଗ୍ଧ ହେଲା ବୋଲି ରାଜା ମନରେ କଲେ । ୮ ।

---

* ଅଜ୍ଞାନ ଓ ଅହଙ୍କାର ।

ଅନନ୍ତର ରାଜା ଜନମେଜୟ ମନ୍ତ୍ରବିତ୍ ବ୍ରାହ୍ମଣମାନଙ୍କୁ କହିଲେ, ଆମ୍ଭେ ସେହି ସର୍ପଯଜ୍ଞ ଆରମ୍ଭ କରିବୁଁ, ଆପଣମାନେ ଆମ୍ଭର ମହତ୍ ଯଜ୍ଞର ଅନୁଷ୍ଠାନ କରନ୍ତୁ । ୯ । ହେ ଦ୍ୱିଜସତ୍ତମ ! ତଦନନ୍ତର ବେଦବିତ୍ ଓ ବୁଦ୍ଧିମାନ୍‌ଶ୍ରେଷ୍ଠ ଋତ୍ୱିକ୍‌ଗଣ ଶାସ୍ତ୍ରାନୁସାରେ ଯଜ୍ଞାୟତନ ନିମିତ୍ତ ଭୂମିମାପ କରାଇଲେ । ପରମ ସମୃଦ୍ଧିଯୁକ୍ତ, ଦ୍ୱିଜଗଣନିଷେବିତ ଓ ପ୍ରଭୂତ ଧନଧାନ୍ୟ ଋତ୍ୱିକ୍‌ନିଚୟ ସୁସେବିତ ଅଭୀପ୍‌ସିତ ଯଜ୍ଞାୟତନ ନିର୍ମାଣ କରି ସର୍ପସତ୍ର ନିମିତ୍ତ ରାଜାଙ୍କୁ ଦୀକ୍ଷିତ କଲେ । ପରନ୍ତୁ ଯଜ୍ଞ ପୂର୍ବରୁ ସର୍ପସତ୍ରର ବିଘ୍ନକର ଗୋଟିଏ ମହତ୍ କାରଣ ଦୃଶ୍ୟ ହେଲା । ଯଜ୍ଞାୟତନ ଆରମ୍ଭ ହେବାବେଳେ ବାସ୍ତୁବିଦ୍ୟାବିଶାରଦ ବୁଦ୍ଧିସମ୍ପନ୍ନ ସ୍ଥପତି, ସୂତ୍ରଧାର, ସୂତପୌରାଣିକ ବୋଇଲେ (୧୫), ଯେଉଁ ସ୍ଥାନରେ ଓ ଯେଉଁ ସମୟରେ ଏହି ଯଜ୍ଞାୟତନର ମାପ ଆରବ୍ଧ ହେଲା, ତହିଁରୁ ବୋଧ ହେଉଅଛି ଯେ ଜଣେ ବ୍ରାହ୍ମଣ ହେତୁରୁ ଏହି ସତ୍ର ସମ୍ପୂର୍ଣ୍ଣ ହେବ ନାହିଁ । ୧୬ । ଏହା ଶୁଣି ଯଜ୍ଞାରମ୍ଭ ପୂର୍ବରୁ ମହାରାଜ ଦ୍ୱାସ୍ଥକୁ ଆଜ୍ଞାକଲେ ଯେ ମତେ ଅବଗତ ନ କରି କୌଣସି ବ୍ୟକ୍ତିକୁ ଯଜ୍ଞସ୍ଥାନକୁ ପ୍ରବେଶ କରିବାକୁ ଛାଡ଼ିବ ନାହିଁ । ୧୭ ।

---

## ଅଧ୍ୟାୟ—୫୨

ସୌତି କହିଲେ, ତଦନନ୍ତର ସର୍ପସତ୍ରର ବିଧାନାନୁସାରେ ଯଜ୍ଞ-କର୍ମ ପ୍ରବୃତ୍ତ ହେଲା ଓ ଯାଜକମାନେ ସ୍ୱ ସ୍ୱ କର୍ମରେ ବିଧିବତ୍ ପ୍ରବୃତ୍ତ ହେଲେ । କୃଷ୍ଣବର୍ଣ୍ଣବସ୍ତ୍ରରେ ଶରୀର ଆବୃତ୍ତ କରି, ଧୂମରେ ସଂରକ୍ତ-ଲୋଚନ ହୋଇ ମନ୍ତ୍ର ସହିତ ପ୍ରଦୀପ୍ତ ଅନଳରେ ଆହୁତି ପ୍ରଦାନ କଲେ । ୨ । ସମସ୍ତ ଉରଗମାନଙ୍କର ମନକୁ କମ୍ପିତ କରି ଅଗ୍ନିମୁଖରେ ସର୍ପମାନଙ୍କୁ ଆହୁତି କଲେ । ୩ । ତଦନନ୍ତର ପ୍ରଦୀପ୍ତ ହବ୍ୟବାହନରେ ସର୍ପମାନେ ନିପତିତ ହେଲେ । ଜ୍ଞାନଶୂନ୍ୟ ହୋଇ ଦୁଃଖରେ ପରସ୍ପର ଡକାଡକି ହୋଇ ବିସ୍ଫୁରିତ ହୋଇ, ପୁଚ୍ଛ ଓ ଶିରରେ ପରସ୍ପର ବେଷ୍ଟିତ ହୋଇ ବାରମ୍ବାର ଚିତ୍ରଭାନୁକୁ ପ୍ରାପ୍ତ ହେଲେ । ୫ । ଶ୍ୱେତ, କୃଷ୍ଣ, ନୀଳ, ବୃଦ୍ଧ ଓ ଶିଶୁ ସମସ୍ତ ପ୍ରକାର ସର୍ପମାନେ ବିବିଧ ବ୍ୟାକୁଳ ଶବ୍ଦରେ ପ୍ରଜ୍ୱଳିତ ଅଗ୍ନିରେ ପତିତ ହେଲେ । ୬ । ହେ ସାଗ୍ନିକ ଶ୍ରେଷ୍ଠ !

କ୍ରୋଶ ଯୋଜନ ଓ ଗୋକର୍ଣ୍ଣପରିମିତ ସର୍ପମାନେ ଅଗ୍ନିରେ ନିରନ୍ତର ବେଗରେ ପତିତ ହେଲେ । ୭ । ଏହିରୂପେ ସେହି ପ୍ରଜ୍ଜ୍ୱଳିତ ହୁତାଶନରେ ଲକ୍ଷ ଲକ୍ଷ ଓ ଅୟୁତାୟୁତ ଅର୍ବୁଦାର୍ବୁଦ ସର୍ପସବୁ ଅବଶାଙ୍ଗ ହୋଇ ବିନଷ୍ଟ ହେଲେ । ୮ । କେହି କେହି ଅଶ୍ୱ ପ୍ରାୟ, କେହି କେହି କରିକର ତୁଲ୍ୟ, କେତେକ ସର୍ପ ମତ୍ତମାତଙ୍ଗ ପ୍ରାୟ ବୃହଦ୍‌ଦେହ ଓ ବଳବାନ୍, ଏହିରୂପ କ୍ଷୁଦ୍ର ଓ ବୃହତ୍ ବିବିଧପ୍ରକାର ବହୁତର ବିଷଧର, ଓ ଘୋର, ଅଥଚ ପରିଘ ନାମକ ମହାପରାକ୍ରାନ୍ତ ଦନ୍ଦଶୂକ ଉରଗମାନେ ମାତୃଶାପ-ଦ୍ୱାରା ପ୍ରପୀଡ଼ିତ ହୋଇ ଅଗ୍ନିରେ ନିପତିତ ହେଲେ । ୧୦ ।

---

## ଅଧ୍ୟାୟ—୫୩

ଶୌନକ ପ୍ରଶ୍ନ କଲେ, ତତ୍କାଳରେ ପାଣ୍ଡୁପୁତ୍ର ଶ୍ରୀମାନ୍ ଜନମେଜୟଙ୍କର ସର୍ପସତ୍ରରେ କେଉଁ ମହର୍ଷିମାନେ ଋତ୍ୱିକ୍ ହୋଇଥିଲେ ? ସର୍ପଗଣଙ୍କର ଅତିଶୟ ବିଷାଦଜନକ ଭୟାବହ ସୁଦାରୁଣ ସର୍ପସତ୍ରରେ କେଉଁମାନେ ସଦସ୍ୟ ହୋଇଥିଲେ ? ସର୍ପସତ୍ରରେ କେଉଁମାନେ ବିଶେଷ ବିଧିଜ୍ଞ ? ହେ ସୂତପୁତ୍ର ଆପଣ ସବିସ୍ତର ଏହିସବୁ କଥା କହିବାକୁ ସମର୍ଥ ଅଟନ୍ତି । ୩ ।

ସୌତି କହିଲେ, ହାୟ ! ତତ୍କାଳରେ ନରପତିଙ୍କର ସେହି ସତ୍ରରେ ଯେଉଁମାନେ ଋତ୍ୱିକ୍ ଥିଲେ ଓ ଯେଉଁମାନେ ସଦସ୍ୟ ଥିଲେ, ସେହି ଶ୍ରୀମଦ୍‌ବ୍ୟକ୍ତିଙ୍କର ନାମମାନ କହୁଅଛୁଁ ଶୁଣ । ସେହି ସତ୍ରରେ ଚଣ୍ଡଭାର୍ଗବ ନାମରେ ଜଣେ ବ୍ରାହ୍ମଣ ହୋତା ଥିଲେ, ସେ ଚ୍ୟବନ ଋଷିଙ୍କ ବଂଶରେ ପ୍ରସିଦ୍ଧ ଓ ବେଦବିଦ୍‌ଗଣଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇଥିଲେ । ୫ । କୌତ୍ସ ନାମରେ ଜଣେ ବୃଦ୍ଧ ବ୍ରାହ୍ମଣ ଉଦ୍‌ଗାତା ଥିଲେ; ଜୈମିନି ମୁନି ବ୍ରହ୍ମା; ଶାର୍ଙ୍ଗରବ ଓ ପିଙ୍ଗଳ ଅଧ୍ୱର୍ଯ୍ୟୁ ହୋଇଥିଲେ; ସପୁତ୍ର ଓ ସଶିଷ୍ୟ ବ୍ୟାସ, ଉଦ୍ଦାଳକ, ଶ୍ୱେତକେତୁ ଓ ପିଙ୍ଗଳ, ଅସିତ, ଦେବଳ, ନାରଦ, ଓ ପର୍ବତ, ଆତ୍ରେୟ, କୁଣ୍ଡ ଓ ଜଠର ଓ କାଳଘଟ ନାମକ ଦ୍ୱିଜ, ବାତ୍ସ୍ୟ, ବୃଦ୍ଧ ଶ୍ରୁତଶ୍ରବା, ଜପସ୍ୱାଧ୍ୟାୟରତ କୋହଳ, ଦେବଶର୍ମା ଓ ତତ୍ତୁଲ୍ୟ ଖ୍ୟାତିସମ୍ପନ୍ନ ମୌଦ୍‌ଗଲ୍ୟ ଋଷି,—ଏମାନେ ସମସ୍ତେ ଓ ଆହୁରି

ଅନେକ ବେଦପାରଗ ବ୍ରାହ୍ମଣ ପରୀକ୍ଷିତତନୟଙ୍କର ସେହି ସତ୍ରରେ ସଦସ୍ୟ ହୋଇଥିଲେ । ୧୦ । ସେହି ସର୍ପସତ୍ର ନାମକ ମହାକ୍ରତୁରେ ଋତ୍ୱିକ୍‌ମାନେ ହବନ ଆରମ୍ଭ କରନ୍ତେ ପ୍ରାଣଭୟରେ ଆକୁଳିତ ହୋଇ ସର୍ପମାନେ ଅଗ୍ନିରେ ପତିତ ହେଲେ । ୧୧ । ସେହି ସର୍ପମାନଙ୍କର ବସା ଓ ମେଦବାହିନୀ ଅନେକ କୁଲ୍ୟା * ପ୍ରବର୍ତ୍ତିତ ହେଲା ଓ ତତ୍କାଳରେ ନିରନ୍ତର ଦହ୍ୟମାନ ସର୍ପମାନଙ୍କର ତୁମୁଳ ପୂତିଗନ୍ଧ ପୂରିତ ବାୟୁ ପ୍ରବାହିତ ହେଲା । ମନ୍ତ୍ରବଳରେ ନିରନ୍ତର ଆକାଶରେ ଆଗତ, ପତନୋନ୍ମୁଖ, ପତିତ ଅଥଚ ଅଗ୍ନିରେ ଦହ୍ୟମାନ ସର୍ପମାନଙ୍କର ଚୀତ୍କାର ଧ୍ୱନି ଅନିଶ ଶ୍ରୁତ ହେଲା । ୧୩ । ଜନମେଜୟ ରାଜା ସର୍ପଯାଗରେ ଦୀକ୍ଷିତ ହୋଇଥିବାର ଶୁଣି ସର୍ପରାଜ ତକ୍ଷକ ତତ୍‌କ୍ଷଣାତ୍ ଇନ୍ଦ୍ରଙ୍କ ସମୀପକୁ ଗମନ କଲେ । ୧୪ । ସର୍ପଶ୍ରେଷ୍ଠ ତକ୍ଷକ ସେଠାରେ ଉପନୀତ ହୋଇ ସମସ୍ତ ବୃତ୍ତାନ୍ତ ଯଥାବତ୍ କହିଲା ପରେ ସ୍ୱୀୟ ଅପରାଧ ସ୍ୱୀକାର କରି, ଧୀତ ହୋଇ ଇନ୍ଦ୍ରଙ୍କର ଶରଣାପନ୍ନ ହେଲେ । ୧୫ । ଇନ୍ଦ୍ର ପ୍ରସନ୍ନ ହୋଇ ତାହାଙ୍କୁ କହିଲେ, ହେ ସର୍ପରାଜ ତକ୍ଷକ ! ଏହି ସୁରଲୋକରେ ତୁମ୍ଭର ସେହି ସର୍ପସତ୍ରର ଭୟ କିଛି ନାହିଁ । ୧୬ । ଆମ୍ଭେ ତୁମ୍ଭ ନିମିତ୍ତ ପୂର୍ବରୁ କହି ବ୍ରହ୍ମାଙ୍କୁ ପ୍ରସନ୍ନ କରିଅଛୁ; ଅତଏବ ତୁମ୍ଭର ଭୟ ନାହିଁ; ତୁମ୍ଭର ମାନସିକ ଜ୍ୱର ଦୂର ହେଉ । ୧୭ ।

ସୌତି କହିଲେ, ସେହି ସର୍ପଶ୍ରେଷ୍ଠ ଇନ୍ଦ୍ରଙ୍କ କର୍ତ୍ତୃକ ଆଶ୍ୱାସିତ ହେବାରୁ ତାହାଙ୍କ ଆଳୟରେ ମୁଦିତ ଓ ସୁଖୀ ହୋଇ ବାସ କଲେ । ୧୮ । ଏଣେ ସର୍ପମାନେ ନିରନ୍ତର ଅଗ୍ନିରେ ପତିତ ହେବାରୁ ବାସୁକି ଅଳ୍ପଶେଷ-ପରିବାର ହୋଇ ଅତିଶୟ ଦୁଃଖିତ ଓ ପରିତପ୍ତ ହେଲେ । ୧୯ । ଘୋର ଶୋକ ପନ୍ନଗୋତ୍ତମ ବାସୁକିଙ୍କୁ ଆବିଷ୍ଟ କଲା । ତେତେବେଳେ ସେ ଘୂର୍ଣ୍ଣମାନ ହୃଦୟରେ ସ୍ୱୀୟ ଭଗିନୀଙ୍କୁ କହିଲେ, ହେ ଭଦ୍ରେ ! ଆମ୍ଭର ସମସ୍ତ ଅଙ୍ଗ ଦଗ୍‌ଧ ହେଲାପ୍ରାୟ ହେଉଅଛି; ଦିଗମାନେ ଆମ୍ଭଙ୍କୁ ଦୃଶ୍ୟ ହେଉନାହାନ୍ତି । ଅତିଶୟ ମୋହରେ ଆମ୍ଭେ ଅବସନ୍ନ ହେଉଅଛୁ ଓ ଆମ୍ଭର ମନ ଘୂର୍ଣ୍ଣିତ ହେଲାପ୍ରାୟ ହେଉଅଛି । ଆମ୍ଭର ଦୃଷ୍ଟି ଭ୍ରମଣ କରୁଅଛି; ମନ ବିଦୀର୍ଣ୍ଣ ହେଲାପ୍ରାୟ ବୋଧ ହେଉଅଛି । ସେହି ଦୀପ୍ତ ହିରଣ୍ୟରେତାରେ ଆମ୍ଭେ ମଧ୍ୟ ଅବଶ ହୋଇ ପତିତ ହେବୁ ବୋଲି ପ୍ରତୀତି ହେଉଅଛି । ୨୨ ।

* କୁଲ୍ୟା—ନାଳ, ସାନ ସ୍ରୋତ ।

ପରୀକ୍ଷିତପୁତ୍ରଙ୍କର ଏହି ଯଜ୍ଞ ଆମ୍ଭମାନଙ୍କ ବିନାଶାର୍ଥ ପ୍ରବର୍ତ୍ତିତ ହୋଇ-ଅଛି । ସ୍ପଷ୍ଟ ଜଣାଯାଉଅଛି ଅଦ୍ୟ ଆମ୍ଭେ ମଧ୍ୟ ପ୍ରେତରାଜଙ୍କ ଭବନକୁ ଗମନ କରିବୁ । ୨୩ । ହେ ଭଗିନି ! ଯେଉଁ ନିମିତ୍ତ ତୁମ୍ଭକୁ ଜରତ୍କାରୁ ଋଷିଙ୍କୁ ଆମ୍ଭେ ଦେଇଥିଲୁଁ, ସେଥିର ସମୟ ଉପସ୍ଥିତ ହେଉଅଛି । ତୁମ୍ଭେ ଆମ୍ଭଙ୍କୁ ସବାନ୍ଧବରେ ରକ୍ଷାକର । ୨୪ । ହେ ଭୁଜଗୋତ୍ତମେ ! ଆମ୍ଭଙ୍କୁ ବ୍ରହ୍ମା ପୂର୍ବରୁ କହିଅଛନ୍ତି ଆସ୍ତୀକ ଋଷି ଅବଶ୍ୟ ସେହି ପ୍ରବର୍ତ୍ତିତ ଯଜ୍ଞକୁ ପ୍ରତିଷେଧ କରିବେ । ୨୫ । ଅତଏବ ବତ୍ସେ ! ତୁମ୍ଭେ ତୁମ୍ଭର ବୃଦ୍ଧସମ୍ମତ, ବେଦବିଦ୍‌ବର କୁମାରଙ୍କୁ କହ ସେ ଆମ୍ଭଙ୍କୁ ପୋଷ୍ୟବର୍ଗ ସହିତ ଉଦ୍ଧାର କରନ୍ତୁ ।

---

## ଅଧ୍ୟାୟ—୫୪

ସୌତି କହିଲେ, ତଦନନ୍ତର ଭୁଜଗରାଜ ବାସୁକିଙ୍କର ବଚନାନୁସାରେ ଭୁଜଙ୍ଗମା ଜରତ୍କାରୁ ଆପଣାର ପୁତ୍ରଙ୍କୁ ଆହ୍ୱାନ କରି ଏହି କଥା କହିଲେ ଯେ ଆମ୍ଭର ଭ୍ରାତା ଆମ୍ଭଙ୍କୁ ତୁମ୍ଭର ପିତାଙ୍କୁ ଯେଉଁ ଉଦ୍ଦେଶ୍ୟରେ ପ୍ରଦାନ କରିଥିଲେ ତହିଁର ସମୟ ଉପସ୍ଥିତ ହୋଇଅଛି, ତୁମ୍ଭେ ବିହିତ ପ୍ରତିକାର କର । ୨ । ଆସ୍ତୀକ ଉତ୍ତର ଦେଲେ, କି ନିମିତ୍ତ ଆମ୍ଭର ମାତୁଳ ଆପଣଙ୍କୁ ଆମ୍ଭର ପିତାଙ୍କୁ ପ୍ରଦାନ କରିଥିଲେ, ତାହା ବୋଲ, ଆମ୍ଭେ ଶୁଣିଲେ ତାହା ତଦ୍ରୂପ କରିବୁ । ସୌତି ବୋଇଲେ, ତଦନନ୍ତର ବାନ୍ଧବଗଣ ହିତୈଷିଣୀ ନାଗରାଜଙ୍କ ଭଗିନୀ ଜରତ୍କାରୁ ଧୀର ଭାବରେ ତାହାଙ୍କୁ ବୋଇଲେ । ୪ । ଜରତ୍କାରୁ କହିଲେ, ସମସ୍ତ ପନ୍ନଗମାନଙ୍କର ମାତା କଦ୍ରୂଙ୍କ ନାମ ତୁମ୍ଭେ ଶୁଣିଅଛ । ଯେଉଁ କାରଣରୁ ସେ କୁପିତ ହୋଇ ପୁତ୍ରମାନଙ୍କୁ ଅଭିଶାପ ଦେଲେ ତାହା ଶୁଣ । "ରେ ପୁତ୍ରମାନେ ! ବିନତାଙ୍କ ସହିତ ଆମ୍ଭର ଦାସତ୍ୱ ପଣରେ ସୁଦ୍ଧା ତୁମ୍ଭେମାନେ ସେହି ଅଶ୍ୱରାଜ ଉଚ୍ଚୈଃଶ୍ରବାଙ୍କୁ ମିଥ୍ୟା କଲ ନାହିଁ, ଅତଏବ ଆମ୍ଭେ ଅଭିଶାପ ଦେଉଅଛୁ ଯେ ଜନମେଜୟଙ୍କ ଯଜ୍ଞରେ ଅନଳ ସାରଥି ତୁମ୍ଭମାନଙ୍କୁ ଦହନ କରିବ ଓ ତୁମ୍ଭେମାନେ ତହିଁରେ ପଞ୍ଚତ୍ୱପ୍ରାପ୍ତ ହୋଇ ପ୍ରେତଲୋକକୁ ଗମନ କରିବ ।" ୭ ।

ସାକ୍ଷାତ୍ ଲୋକପିତାମହ ବ୍ରହ୍ମା ଶପ୍ତବତୀ କଦ୍ରୂଙ୍କୁ 'ତଥାସ୍ତୁ' ବୋଲି କହି ତାହାଙ୍କ ଅଭିଶାପକୁ ଅନୁମୋଦନ କଲେ । ୮ । ସେହି

କାଳରେ ବାସୁକି ମଧ୍ୟ ପିତାମହଙ୍କ ବଚନ ଶ୍ରବଣ କରି ଅମୃତ ମଥନ କାଳରେ ଦେବତାଙ୍କ ଶରଣାପନ୍ନ ହେଲେ । ୯ । ଦେବତାମାନେ ସର୍ବୋତ୍ତମ ଅମୃତଲାଭ କରି ସିଦ୍ଧାର୍ଥ ହେଲେ । ଆମ୍ଭର ଭ୍ରାତାଙ୍କୁ ଘେନି ସମସ୍ତ ସୁରଗଣ ପିତାମହଙ୍କ ନିକଟକୁ ଗମନ କରି ତାହାଙ୍କୁ ପ୍ରସନ୍ନ କଲେ ଓ ଯହିଁରେ କି ସେ ଶାପ ନ ଫଳିବ ସେ ବିଷୟ ଅବ୍‌ଜସମ୍ଭବଙ୍କୁ ଜଣାଇଲେ । ୧୧ । ଦେବତାମାନେ କହିଲେ, ଏହି ନାଗରାଜ ବାସୁକି ତାହାଙ୍କର ଜ୍ଞାତିଙ୍କ ଦୁଃଖରେ ଦୁଃଖିତ ହୋଇଅଛନ୍ତି । ମାତାଙ୍କ ସେହି ଅଭିଶାପ କିପରି ନ ଫଳିବ, ହେ ଭଗବନ୍ ! ତାହାର ବିଧାନ କରନ୍ତୁ । ୧୨ । ବ୍ରହ୍ମା କହିଲେ, ଜରତ୍କାରୁ ନାମରେ ଋଷି ଜରତ୍କାରୁ ନାମ୍ନୀ ଭାର୍ଯ୍ୟାଙ୍କୁ ବିବାହ କଲେ ତାହାଙ୍କଠାରୁ ଯେଉଁ ଦ୍ୱିଜ ଜାତ ହେବେ, ସେ ପନ୍ନଗମାନଙ୍କୁ ଶାପରୁ ମୁକ୍ତ କରିବେ । ୧୩ । ହେ ଅମରପ୍ରଖ୍ୟ ! ଏହି ବଚନ ଶୁଣି ପନ୍ନଗୋତ୍ତମ ବାସୁକି ଆମ୍ଭଙ୍କୁ ତୁମ୍ଭର ମହାତ୍ମା ପିତାଙ୍କୁ ପ୍ରଦାନ କଲେ । ୧୪ । ସେହି ସମୟ ଆଗତ ହେବା ପୂର୍ବରୁ ତୁମ୍ଭେ ଆମ୍ଭଠାରୁ ଜାତ ହେଲ । ସେ କାଳ ଏବେ ପ୍ରାପ୍ତ ହୋଇଅଛି, ତୁମ୍ଭେ ଆମ୍ଭମାନଙ୍କୁ ଭୟରୁ ରକ୍ଷା କରିବାକୁ ସମର୍ଥ ଅଟ । ୧୫ । ସେହି ହେତୁରୁ ତୁମ୍ଭେ ଆମ୍ଭର ଭ୍ରାତାଙ୍କୁ ମଧ୍ୟ ପାବକରୁ ଉଦ୍ଧାର କରିବାକୁ ସମର୍ଥ ହୋଇଅଛ । ଆମ୍ଭେ ଯେ ଏହି ଶାପ ମୋଚନାର୍ଥ ତୁମ୍ଭ ପିତାଙ୍କୁ ସମର୍ପିତ ହୋଇଥିଲୁଁ ତାହା ଯେପରି ବୃଥା ନ ହୁଏ; ଅଥବା ହେ ପୁତ୍ର ! ତୁମ୍ଭେ କି ବିଚାରୁଅଛ କହ । ୧୬ ।

ସୌତି ବୋଇଲେ—ଆସ୍ତୀକ ଦୁଃଖସନ୍ତପ୍ତ ବାସୁକିଙ୍କ ଜୀବନଦାନ କଳ୍ପପ୍ରାପ୍ୟ ମାତାଙ୍କୁ ତଥାସ୍ତୁ ବୋଲି କହିଲେ । ହେ ପନ୍ନଗୋତ୍ତମ ମହାସତ୍ତ୍ୱ ବାସୁକେ ! ଆମ୍ଭେ ତୁମ୍ଭଙ୍କୁ ସେହି ଶାପରୁ ମୁକ୍ତ କରିବୁ, ସତ୍ୟ କହୁଅଛୁ । ୧୮ । ହେ ନାଗ ! ତୁମ୍ଭେ ସୁସ୍ଥମନା ହୁଅ, ତୁମ୍ଭର ଭୟ ନାହିଁ । ହେ ରାଜନ୍ ! ଯେପରି ତୁମ୍ଭର ଶ୍ରେୟ ହୁଏ, ତହିଁରେ ଆମ୍ଭେ ପ୍ରଯତ୍ନ କରିବୁ । ୧୯ । ହେଳାରେ କହିଲେ ହେଁ ଆମ୍ଭର ବଚନ କଦାପି ଅନୃତ ହୋଇ ନାହିଁ । ଅନ୍ୟ ବେଳ କଥା କି କହିବା । ହେ ମାତୁଳ ! ଦୀକ୍ଷିତ ସେହି ନୃପବର ଜନମେଜୟଙ୍କୁ ଆମ୍ଭେ ମଙ୍ଗଳମୟ ବଚନଦ୍ୱାରା ଅଦ୍ୟ ତୁଷ୍ଟ କରିବୁ, ହେ ସଜ୍ଜନଶ୍ରେଷ୍ଠ ! ଯହିଁରେ ସେ ନୃପତିଙ୍କ ଯଜ୍ଞ ନିବର୍ତ୍ତିତ ହେବ । ହେ ନାଗରାଜ ମହାମତେ ! ଆମ୍ଭଠାରେ ସମସ୍ତ ସମ୍ଭାବନା କର । ସେହି ବିଷୟରେ ଆମ୍ଭର ସଂକଳ୍ପ କଦାପି ମିଥ୍ୟା ହେବ ନାହିଁ । ୨୨ । ବାସୁକି କହିଲେ, ହେ ଆସ୍ତୀକ ! ବ୍ରହ୍ମଦଣ୍ଡରେ ନିପୀଡ଼ିତ ହୋଇ ଆମ୍ଭର ମନ

ପରିଘୂର୍ଣ୍ଣିତ ହେଉଅଛି, ହୃଦୟ ବିଦୀର୍ଣ୍ଣ ହେଉଅଛି ଓ ଦିଗମାନେ ଆମ୍ଭଙ୍କୁ ଦୃଶ୍ୟ ହେଉ ନାହାନ୍ତି । ଆସ୍ତୀକ ବୋଇଲେ, ହେ ପନ୍ନଗୋତ୍ତମ ! ତୁମ୍ଭର ଆଉ ସନ୍ତାପ କରିବା କର୍ତ୍ତବ୍ୟ ନୁହେଁ । ପ୍ରଦୀପ୍ତ ଅଗ୍ନିରୁ ତୁମ୍ଭର ଯେଉଁ ଭୟ ଜାତ ହେଉଅଛି, ତାହା ଆମ୍ଭେ ଦୂର କରିବୁ । କାଳାଗ୍ନି ସମାନ ତେଜସ୍କ, ମହାଘୋର ବ୍ରହ୍ମଦଣ୍ଡକୁ ଆମ୍ଭେ ବିନାଶ କରିବୁ, ତୁମ୍ଭର ଭୟ କରିବାର କାରଣ ନାହିଁ । ୨୬ ।

ସୌତି କହିଲେ, ତଦନନ୍ତର ସେହି ଦ୍ୱିଜଶ୍ରେଷ୍ଠ ଆସ୍ତୀକ ବାସୁକଙ୍କର ଘୋର ମନୋଜ୍ୱରକୁ ଅପନୋଦନ କରି ଓ ଆତ୍ମ ଶରୀରରେ ତାହା ଧାରଣ କରି ଯେଉଁ ଯଜ୍ଞରେ ରାଜ୍ୟର ସମସ୍ତ ଗୁଣିଗଣ ସମବେତ ହୋଇଥିଲେ, ଜନମେଜୟଙ୍କର ସେହି ଯଜ୍ଞରେ ଭୁଜଗେନ୍ଦ୍ରମାନଙ୍କର ମୁକ୍ତି ନିମିତ୍ତ ଅତି ସତ୍ୱର ଗମନ କଲେ । ୨୭ । ଆସ୍ତୀକ ଯାଇ ସୂର୍ଯ୍ୟ ଓ ବହ୍ନି ସଦୃଶ ତେଜସ୍ୱୀ, ସଦସ୍ୟଗଣ ପରିବୃତ, ଉତ୍ତମ ଯଜ୍ଞାୟତନକୁ ଦର୍ଶନ କଲେ । ୨୮ । ପରନ୍ତୁ ସେହି ଦ୍ୱିଜଶ୍ରେଷ୍ଠ ପ୍ରବେଶାର୍ଥୀ ହେବାରୁ ଦ୍ୱାଃସ୍ଥ-ମାନଙ୍କ ଦ୍ୱାରା ବାରିତ ହେଲେ, ତହୁଁ ସେ ସେହି ଯଜ୍ଞର ସ୍ତବ କରିବାରେ ପ୍ରବୃତ୍ତ ହେଲେ । ୨୯ । ପୁଣ୍ୟକାରୀଙ୍କ ବରିଷ୍ଠ ସେ ଦ୍ୱିଜସତ୍ତମ, ବରିଷ୍ଠ ଯଜ୍ଞାୟତନରେ ପ୍ରବିଷ୍ଟ ହୋଇ ଅନନ୍ତକୀର୍ତ୍ତି ରାଜା, ଋତ୍ୱିକ୍ ଓ ସଦସ୍ୟ-ଗଣଙ୍କୁ ଅଥଚ ଅଗ୍ନିଙ୍କୁ ସ୍ତୁତି କଲେ ।

---

## ଅଧ୍ୟାୟ—୫୫

ଆସ୍ତୀକ କହିଲେ—ହେ ଭରତାଗ୍ରଗଣ୍ୟ ! ପରୀକ୍ଷିତନନ୍ଦନ ! ପ୍ରୟାଗରେ ସୋମଙ୍କ ଯଜ୍ଞ, ବରୁଣଙ୍କ ଯଜ୍ଞ ଓ ପ୍ରଜାପତିଙ୍କ ଯଜ୍ଞ ଅନୁଷ୍ଠିତ ହୋଇଥିଲା, ତୁମ୍ଭର ଏହି ଯଜ୍ଞ ତଦ୍ରୂପ ହେଉଅଛି । ଆମ୍ଭର ଆତ୍ମୀୟବର୍ଗର ମଙ୍ଗଳ ହେଉ * । ୧ । ହେ ଭରତାଗ୍ରଗଣ୍ୟ ପାରୀକ୍ଷିତ ! ଅପରନ୍ତୁ

---

* "ଆମ୍ଭର ଆତ୍ମୀୟ ବର୍ଗରେ ମଙ୍ଗଳ" ବୋଲିବାରେ ଦୁଇଗୋଟି ଅଭିପ୍ରାୟ ବ୍ୟକ୍ତ ହେଲା । ସାଧାରଣରେ ବୁଝିଲେ ଯେ ବକ୍ତା ଋତ୍ୱିକ୍, ଅନ୍ୟାନ୍ୟ ଯଜ୍ଞକାରୀ ବ୍ରାହ୍ମଣ ଓ ରାଜା ଏମାନଙ୍କର ମଙ୍ଗଳ ହେଉ, କିନ୍ତୁ ଗୂଢ଼ ଅଭିସନ୍ଧି ଏହି ଯେ ବକ୍ତା ସର୍ପବଂଶୋଦ୍ଭବ ଥିବାରୁ ନାଗକୁଳର ମଙ୍ଗଳ ବୁଝାଇଲା ।

ଇନ୍ଦ୍ରଙ୍କର ଶତସଂଖ୍ୟକ ଯଜ୍ଞ ହୋଇଥିବାର କଥିତ ଅଛି । ତୁମ୍ଭର ଏହି ଯଜ୍ଞ ସେହି ଶତ ଯଜ୍ଞ ତୁଲ୍ୟ । ଆମ୍ଭର ଆତ୍ମୀୟଗଣଙ୍କର ମଙ୍ଗଳ ହେଉ । ୨ । ହେ ଭରତାଗ୍ରଗଣ୍ୟ ପାରୀକ୍ଷିତ ! ଯେରୂପ ଯମଙ୍କ ଯଜ୍ଞ, ହରିମେଧା ଋଷିଙ୍କ ଯଜ୍ଞ, ଓ ରନ୍ତିଦେବ ରାଜାଙ୍କ ଯଜ୍ଞ ହୋଇଥିଲା, ତୁମ୍ଭର ଏହି ଯଜ୍ଞ ସେହିରୂପ ହେଉଅଛି । ଆମ୍ଭର ଆତ୍ମୀୟ ଜନଙ୍କ ମଙ୍ଗଳ ହେଉ । ୩ । ଗୟ ନାମକ ରାଜାଙ୍କର ଓ ଶଶବିନ୍ଦୁ ରାଜାଙ୍କର ଯଜ୍ଞ ଓ ବୈଶ୍ରବଣ ରାଜାଙ୍କର ଯଜ୍ଞ ଯେରୂପ ହୋଇଥିଲା, ହେ ଭରତାଗ୍ରଗଣ୍ୟ ପାରୀକ୍ଷିତ ! ତୁମ୍ଭର ଏହି ଯଜ୍ଞ ତଦ୍ରୂପ ହେଉଅଛି । ଆମ୍ଭର ଆତ୍ମୀୟଗଣଙ୍କର ସୁକୁଶଳ ହେଉ । ୪ । ନୃଗ ରାଜାଙ୍କର ଯଜ୍ଞ, ଆଜମୀଢ଼ ରାଜାଙ୍କର ଯଜ୍ଞ ଓ ଦଶରଥାତ୍ମଜ ରାମଚନ୍ଦ୍ରଙ୍କର ଯଜ୍ଞ ଯେରୂପ ହୋଇଥିଲା, ହେ ଭରତାଗ୍ରଗଣ୍ୟ ! ତୁମ୍ଭର ଏହି ଯଜ୍ଞ ତଦ୍ରୂପ ହେଉଅଛି, ଆମ୍ଭମାନଙ୍କର ଆତ୍ମୀୟବର୍ଗର କଲ୍ୟାଣ ହେଉ । ୫ । ଶ୍ରୁତ ହୁଏ ଯେ, ଯୁଦ୍ଧରେ ସୁସ୍ଥିର, ଦେବସୂନୁ ଆଜମୀଢ଼ ରାଜାଙ୍କର ଯଜ୍ଞ ଦ୍ୟୁଲୋକରେ ବିଖ୍ୟାତ ଅଛି, ହେ ଭରତାଗ୍ର ପାରୀକ୍ଷିତ ! ତୁମ୍ଭର ଏହି ଯଜ୍ଞ ତଦ୍‌ବତ୍ ହେଉଅଛି; ଆମ୍ଭର ପ୍ରିୟବର୍ଗଙ୍କର ସ୍ୱସ୍ତି ହେଉ । ୬ । ସତ୍ୟବତୀସୁତ କୃଷ୍ଣଦ୍ୱୈପାୟନ ମହର୍ଷିଙ୍କର ଯଜ୍ଞ, ଯେଉଁ ଯଜ୍ଞରେ କି ସେ ସ୍ୱୟଂ କର୍ମ କରିଥିଲେ, ହେ ପାରୀକ୍ଷିତ ଭରତାଗ୍ରଗଣ୍ୟ ! ତୁମ୍ଭର ଏହି ଯଜ୍ଞ ତତ୍ସଦୃଶ ହେଉଅଛି, ଆମ୍ଭମାନଙ୍କର ଆତ୍ମୀୟବର୍ଗର ସ୍ୱସ୍ତି ହେଉ । ୭ । ବୃତ୍ରହନ୍ତା ଇନ୍ଦ୍ରଙ୍କ ଯଜ୍ଞରେ ଯେରୂପ ଋତ୍ୱିକ୍‌ବୃନ୍ଦ ଥିଲେ, ତୁମ୍ଭ ଯଜ୍ଞରେ ମଧ୍ୟ ତଦ୍ରୂପ ସୂର୍ଯ୍ୟସମାନ ତେଜସ୍ୱୀ ଏହିମାନେ ଆସୀନ ହୋଇଅଛନ୍ତି । ଏମାନଙ୍କର ଜାଣିବାର ଆଉ କିଛି ଅଧିକ ନାହିଁ । ଏମାନଙ୍କୁ ଯାହା ଦାନ କରାଯିବ, ତାହାର ଫଳ କଦାପି ନଷ୍ଟ ହେବାର ନୁହେଁ । ୮ ।

ଆମ୍ଭେ ନିଶ୍ଚୟ ଜାଣୁ ଯେ ଦ୍ୱୈପାୟନଙ୍କ ସଦୃଶ ଋତ୍ୱିକ୍ କୌଣସି ଲୋକରେ ସୁଦ୍ଧା ନାହାନ୍ତି । ଏହାଙ୍କର ଶିଷ୍ୟ ସମସ୍ତ ଋତ୍ୱିକ୍‌ମାନେ ସ୍ୱକୀୟ କର୍ମରେ କୁଶଳ ହୋଇ ପୃଥିବୀରେ ବିଚରଣ କରନ୍ତି । ୯ । ବିଭାବସୁ, ଚିତ୍ରଭାନୁ, ହିରଣ୍ୟରେତା, ହୁତଭୁକ୍, କୃଷ୍ଣବର୍ତ୍ମା, ହବ୍ୟବାହନ, ମହାତ୍ମା ଅଗ୍ନି ପ୍ରକୃଷ୍ଟରୂପେ ଦକ୍ଷିଣାବର୍ତ୍ତ ଭାବେ ପ୍ରଦୀପ୍ତ ହୋଇ ତୁମ୍ଭର ଦତ୍ତ ହବିକୁ କାମନା କରୁଅଛନ୍ତି । ୧୦ । ପ୍ରଜାମାନଙ୍କର ପାଳୟିତା ତୁମ୍ଭ ସମାନ ନରପତି ଏହି ଜୀବଲୋକରେ ଅନ୍ୟ କେହି ନାହିଁ । ଧୈର୍ଯ୍ୟ ଗୁଣ ହେତୁ ଆମ୍ଭେ ସର୍ବଦା ତୁମ୍ଭଠାରେ ପ୍ରୀତ ଥାଉଁ । ତୁମ୍ଭେ ବରୁଣ କି

ଧର୍ମରାଜ ଯମ, ତାହା କହିବା ନୁହେଁ । ୧୧ । ଇହଲୋକରେ ତୁମ୍ଭେ ସାକ୍ଷାତ୍ ବଜ୍ରପାଣି ଇନ୍ଦ୍ରଙ୍କ ତୁଲ୍ୟ, ପ୍ରଜାମାନଙ୍କର ତ୍ରାଣକର୍ତ୍ତା; ଆମ୍ଭମାନଙ୍କ ମତରେ ହେ ପୁରୁଷେନ୍ଦ୍ର ! ଇହଲୋକରେ ତୁମ୍ଭ ବ୍ୟତିରେକେ ଆଉ କେହି ଭୂପତି ନାହାନ୍ତି, କି ଜନ୍ମ ହୋଇ ନ ଥିଲେ । ୧୨ । ତୁମ୍ଭେ ଖଟ୍ୱାଙ୍ଗ, ନାଭାଗ ଓ ଦିଲୀପଙ୍କ ସଦୃଶ; ଯଯାତି ଓ ମାନ୍ଧାତାଙ୍କ ସମାନ ପ୍ରଭାବଶାଳୀ; ଆଦିତ୍ୟଙ୍କ ତେଜ ତୁଲ୍ୟ ତେଜସ୍ୱୀ, ଭୀଷ୍ମଙ୍କ ସଦୃଶ ତୁମ୍ଭେ ସୁବ୍ରତ ହୋଇ ବିରାଜିତ ଅଛ । ୧୩ । ଆମ୍ଭ ମତରେ ବାଲ୍ମୀକିଙ୍କ ପ୍ରାୟ ତୁମ୍ଭର ବୀର୍ଯ୍ୟ ଗୁପ୍ତ; ବଶିଷ୍ଠଙ୍କ ପ୍ରାୟ ତୁମ୍ଭର କୋପ ବଶୀଭୂତ; ତୁମ୍ଭର ପ୍ରଭୁତ୍ୱ ଇନ୍ଦ୍ରଙ୍କ ପ୍ରଭୁତ୍ୱ ସମାନ ଓ ତୁମ୍ଭର ଦ୍ୟୁତି ନାରାୟଣଙ୍କ ଦ୍ୟୁତି ପ୍ରାୟ ପ୍ରକାଶ ପାଉଅଛି । ୧୪ । ଯମ ଯେପରି ଧର୍ମାଧର୍ମ ନିଶ୍ଚୟ କରିପାରନ୍ତି, କୃଷ୍ଣ ଯେପରି ସର୍ବଗୁଣୋପପନ୍ନ, ତୁମ୍ଭେ ମଧ୍ୟ ସେମାନଙ୍କ ସଦୃଶ । ବସୁଗଣଙ୍କ ପ୍ରାୟ ତୁମ୍ଭେ ସମ୍ପତ୍ତିର ନିବାସସ୍ଥାନ; ଅଥଚ ତୁମ୍ଭେ ସମସ୍ତ ଯଜ୍ଞମାନଙ୍କର ନିଧାନ । ୧୫ । ବଳରେ ତୁମ୍ଭେ ଦମ୍ଭୋଦ୍ଭବଙ୍କ ସମାନ, ପରଶୁରାମଙ୍କ ସଦୃଶ ଶାସ୍ତ୍ରବିତ୍ ଓ ଅସ୍ତ୍ରବିତ୍ । ଔର୍ବ ଓ ତ୍ରିତ ନାମକ ଋଷିଙ୍କ ସମ ତୁମ୍ଭେ ତେଜସ୍ୱୀ ଅଟ ଓ ଭଗୀରଥଙ୍କ ସଦୃଶ ତୁମ୍ଭେ ଦୁଷ୍ପ୍ରେକ୍ଷଣୀୟ * ।

ସୌତି କହିଲେ, ଏହିରୂପେ ସ୍ତୁତ ହୋଇ ରାଜା, ସଦସ୍ୟ, ଋତ୍ୱିକ୍, ହବ୍ୟବାହ ସମସ୍ତେ ପ୍ରସନ୍ନ ହେଲେ । ସେମାନଙ୍କର କୃତ ଇଙ୍ଗିତ ବୁଝିପାରି ରାଜା ଜନମେଜୟ ଉତ୍ତର କଲେ ।

---

## ଅଧ୍ୟାୟ—୫୭

ଜନମେଜୟ କହିଲେ—ଏ ବାଳକ ହୋଇ ସୁଦ୍ଧା ସ୍ଥବିରଙ୍କ ପ୍ରାୟ କଥା କହୁଅଛନ୍ତି । ଆମ୍ଭ ଅଭିମତରେ ଏ ବାଳକ ନୋହି ସ୍ଥବିର ଅଟନ୍ତି । ଆମ୍ଭର ଇଚ୍ଛା ଯେ ଏହାଙ୍କୁ ଅଭିଲଷିତ ବର ପ୍ରଦାନ କରିବୁ; ଅତଏବ ହେ ବିପ୍ରଗଣ ! ଆପଣମାନେ ଏ ବିଷୟରେ ଯଥାବିହିତ ବିଧାନ କରନ୍ତୁ ।

---

* ଅର୍ଥାତ୍ ତୁମ୍ଭର ତେଜ ଏତେ ଯେ ତୁମ୍ଭଙ୍କୁ ଚାହିଁ ହୁଏ ନାହିଁ ।

ସଦସ୍ୟମାନେ ଉତ୍ତର ଦେଲେ, ବିପ୍ର ବାଳକ ହେଲେ ହେଁ ରାଜାଙ୍କର ମାନ୍ୟ ଅଟନ୍ତି । ସେ ପୁଣି ବିଦ୍ୱାନ୍, ସେ ତ ଅବଶ୍ୟ ଯଥାବତ୍ ମାନ୍ୟ ହେବେ । ତୁମ୍ଭଠାରୁ ଏ ସର୍ବକାମନା ଲଭର ଯୋଗ୍ୟ ଅଟନ୍ତି, କିନ୍ତୁ ଅଦ୍ୟ ଯହିଁରେ ତକ୍ଷକ ଶୀଘ୍ର ଆସିବ, ତାହା କରିବା ବିଧେୟ । ୨ ।

ସୌତି କହିଲେ, ତଦନନ୍ତର ରାଜା ଦ୍ୱିଜଙ୍କୁ "ବର ପ୍ରାର୍ଥନା କର" ବୋଲି ବରଦାନରେ ଉଦ୍ୟତ ହେବାରୁ ହୋତା ଅନତିହୃଷ୍ଟ ହୋଇ କହିଲେ—ଯେ ପର୍ଯ୍ୟନ୍ତ ଏ କର୍ମରେ ତକ୍ଷକ ଆସି ଉପସ୍ଥିତ ନୋହୁଅଛନ୍ତି, ସେ ପର୍ଯ୍ୟନ୍ତ ସ୍ଥିର ରହ । ୩ ।

ଜନମେଜୟ ବୋଇଲେ, ଯେରୂପେ ଆମ୍ଭର ଏହି କର୍ମ ସମାପ୍ତ ହୁଏ ଯେପରି ତକ୍ଷକ ଶୀଘ୍ର ଆସେ, ଆପଣମାନେ ଯଥେଷ୍ଟ ଶକ୍ତି ସହକାରେ ସେହି ରୂପ ପ୍ରଯତ୍ନ କରନ୍ତୁ; ସେ ଆମ୍ଭର ପ୍ରଧାନ ଶତ୍ରୁ । ୪ ।

ଋତ୍ୱିକ୍‌ବୃନ୍ଦ କହିଲେ, ହେ ରାଜନ୍ ! ଆମ୍ଭମାନଙ୍କ ଶାସ୍ତ୍ରରେ ଯେ ରୂପ ପ୍ରକାଶ ପାଉଅଛି ଓ ବହ୍ନି ଯେରୂପ ଭାବ ଧାରଣ କରିଅଛନ୍ତି, ତହିଁରୁ ବୋଧ ହେଉଅଛି ତକ୍ଷକ ଭୀତ ହୋଇ ଇନ୍ଦ୍ରଙ୍କ ଆଳୟରେ ରହି-ଅଛି । ୫ ।

ଲୋହିତାକ୍ଷ, ମହାତ୍ମା ସୂତନାମକ ପୌରାଣିକ ପୂର୍ବରୁ ଯେପରି ଜାଣିଥିଲେ ରାଜାଙ୍କ କର୍ତ୍ତୃକ ପୃଷ୍ଟ ହୋଇ ସେ ମଧ୍ୟ ତଦ୍ରୂପ ଉତ୍ତର ଦେଲେ, ହେ ନରରାଜ ! ବ୍ରାହ୍ମଣମାନେ ଯାହା କହୁଅଛନ୍ତି, ତାହା ଯଥାର୍ଥ ଅଟେ । ହେ ରାଜନ୍ ! ଆମ୍ଭେ ପୁରାଣରୁ ଅବଗତ ହୋଇ ବୋଲୁଅଛୁ ଇନ୍ଦ୍ର ତାହାଙ୍କୁ ବର ଦେଇଅଛନ୍ତି "ତୁମ୍ଭେ ଆମ୍ଭ ନିକଟରେ ଗୁପ୍ତ ଭାବରେ ବାସ କର, ଅଗ୍ନି ତୁମ୍ଭଙ୍କୁ ଦହନ କରିବେ ନାହିଁ ।" ୬ । ସର୍ପସତ୍ରଦୀକ୍ଷିତ ଜନମେଜୟ ଏହା ଶୁଣି ତପ୍ୟମାନ ହେଲେ ଓ ହୋତାଙ୍କୁ କର୍ମ କର ବୋଲି ବୋଇଲେ । ହୋତା ମଧ୍ୟ ସେହି ସର୍ପ ଯେଉଁଠାରେ ଥିଲେ ସେଠାରୁ ମନ୍ତ୍ରବଳରେ ଆହ୍ୱାନ କଲେ । ତହିଁରେ ଇନ୍ଦ୍ର ସ୍ୱୟଂ ଆଗମନ କଲେ । ୮ । ମହାନୁଭବ ଇନ୍ଦ୍ର ବିମାନରେ ଆଗମନ କଲାବେଳେ ତାହାଙ୍କ ଚତୁଃପାର୍ଶ୍ୱରେ ସମସ୍ତ ଦେବତାମାନେ ସମ୍ୟକ୍ ରୂପେ ସ୍ତୁତି କରୁଥାନ୍ତି । ବଳାହକମାନେ ଓ ବିଦ୍ୟାଧର ଓ ଅପ୍‌ସରାମାନେ ତାହାଙ୍କ ପଶ୍ଚାତ୍ ଆଗମନ କରୁଥାନ୍ତି । ୯ ।

ସେହି ନାଗ ଭୟୋଦ୍‌ବିଗ୍ନ ହୋଇ ଇନ୍ଦ୍ରଙ୍କ ଉତ୍ତରୀୟ ମଧ୍ୟରେ ଲୁକ୍‌କାୟିତ ଥାଇ ମଙ୍ଗଳ ନାହିଁ ବୋଲି ମନରେ କରୁଥାଏ । ଏଣେ ରାଜା ତକ୍ଷକର ବିନାଶ ଇଚ୍ଛା କରି କ୍ରୁଦ୍ଧ ହୋଇ ପୁନର୍ବାର ମନ୍ତ୍ରବିତ୍‌ମାନଙ୍କୁ ବୋଇଲେ । ୧୦ । ଜନମେଜୟ କହିଲେ, ହେ ବିପ୍ରବୃନ୍ଦ ! ଯଦି ସେହି ନାଗ ତକ୍ଷକ ଇନ୍ଦ୍ରଙ୍କ ଭବନରେ ଅଛି, ତେବେ ଇନ୍ଦ୍ରଙ୍କ ସହିତ ତାହାକୁ ବିଭାବସୁରେ ପାତନ କର । ୧୧ ।

ସୌତି କହିଲେ, ଜନମେଜୟ ରାଜାଙ୍କ ଦ୍ୱାରା ତକ୍ଷକବଧରେ ନିୟୋଜିତ ହୋଇ ହୋତା, ଇନ୍ଦ୍ରାଳୟବର୍ତ୍ତୀ ତକ୍ଷକ ପନ୍ନଗକୁ ତଦ୍ରୂପ ଆହ୍ୱାନ କରି ଆହୁତି ପ୍ରଦାନ କଲେ । ୧୨ । ସେହି ପ୍ରକାର ଆହ୍ୱାନରେ ପୁରନ୍ଦରଙ୍କ ସହିତ ତକ୍ଷକ କ୍ଷଣକାଳ ମଧ୍ୟରେ ବ୍ୟଥିତ ହୋଇ ଆକାଶରେ ଦୃଶ୍ୟ ହେଲେ । ୧୩ । ପୁରନ୍ଦର ସେହି ଯଜ୍ଞକୁ ଦେଖି ଅତିଶୟ ଖିନ୍ନ ହେଲେ ଓ ତ୍ରସ୍ତ ହୋଇ ତକ୍ଷକଙ୍କୁ ପରିତ୍ୟାଗ କରି ସ୍ୱ ଭବନକୁ ଗମନ କଲେ । ୧୪ । ଇନ୍ଦ୍ର ଗମନ କଲାରୁ, ହେ ରାଜେନ୍ଦ୍ର ! ତକ୍ଷକ ଭୟ-ମୋହିତ ଓ ମନ୍ତ୍ରଶକ୍ତିର ବଶବର୍ତ୍ତୀ ହୋଇ ପାବକାର୍ଚ୍ଚି ସମୀପକୁ ଆଗମନ କଲେ । ତାହାଙ୍କୁ ଦେଖି ଋତ୍ୱିକ୍‌ମାନେ ଏହି ବଚନ ବୋଇଲେ । ୧୫ । ହେ ପ୍ରଭୋ ! ରାଜେନ୍ଦ୍ର ! ଏବେ ଆପଣଙ୍କ କର୍ମ ଯଥାବିଧି ସମ୍ପନ୍ନ ହେଲା, ଆପଣ ଏ ଦ୍ୱିଜବରଙ୍କୁ ବର ପ୍ରଦାନ କରିବାକୁ ଯୋଗ୍ୟ ଅଟନ୍ତି । ୧୬ । ଜନମେଜୟ ବୋଇଲେ, ହେ ଅପ୍ରମେୟ ! ତୁମ୍ଭେ ବାଳକ ରୂପ ଧାରଣ କରିଅଛ, ତୁମ୍ଭର ଅନୁରୂପ ବରକୁ ଆମ୍ଭେ ପ୍ରଦାନ କରିବୁ, ତୁମ୍ଭର ହୃଦୟ-ସ୍ଥିତ ଅଭିମତ ବର ବରଣ କର; ଅଦେୟ ହେଲେ ହେଁ ଆମ୍ଭେ ପ୍ରଦାନ କରିବୁ । ୧୭ ।

ଋତ୍ୱିକ୍‌ମାନେ ବୋଇଲେ, ହେ ନୃପ ! ଏହି ସେ ତକ୍ଷକ ଭୈରବ ରବ କରି ଶୀଘ୍ର ଆଗମନ କରୁଅଛି ଓ ଏହାର ମହାନ୍ ନାଦ ଶ୍ରୁତିଗୋଚର ହେଉଅଛି । ୧୮ । ବଜ୍ରଧାରୀ ଇନ୍ଦ୍ର ନିଶ୍ଚୟ ତାହାକୁ ମୁକ୍ତ କରିଅଛନ୍ତି ଓ ସେହି ପନ୍ନଗେନ୍ଦ୍ର ନାଗ ମନ୍ତ୍ରବଳରେ ସ୍ୱର୍ଗରୁ ନିପତିତ ହେଉଅଛି ଓ ଆକାଶରେ ନଷ୍ଟଜ୍ଞାନ, ଘୂର୍ଣ୍ଣିତ ହୋଇ ତୀବ୍ର ନିଃଶ୍ୱାସମାନ ତ୍ୟାଗ ପୂର୍ବକ ଅଗ୍ନି ସମୀପକୁ ଆଗମନ କରୁଅଛି । ୧୯ । ସୌତି କହିଲେ, ନାଗେନ୍ଦ୍ର ତକ୍ଷକ ଅଗ୍ନିରେ ପତିତ ନ ହେଉଣୁ ଆସ୍ତୀକ ବୋଇଲେ, ହେ ଜନମେଜୟ !

ଯେବେ ବର ଦେବ, ତେବେ ଆମ୍ଭେ ବାରଣ କରୁଅଛୁ "ଏହି ସର୍ପ ସତ୍ର ବିରାମ ଲାଭ କରୁ ଓ ଉରଗମାନେ ଏଥିରେ ନିପତିତ ନୋହନ୍ତୁ ।" ୨୧ । ଏ ପ୍ରକାର ଉକ୍ତ ହେବାରୁ ପରୀକ୍ଷିତ ପୁତ୍ର ହୃଷ୍ଟମନା ନୋହି ଆସ୍ତୀକଙ୍କୁ ବୋଇଲେ, ହେ ବିଭୋ ! ସୁବର୍ଣ୍ଣ, ରଜତ, ଧେନୁନିଚୟ, ଅଥବା ଅନ୍ୟ ଯାହା ତୁମ୍ଭର ଅଭିଲଷିତ ସେହି ବର ଆମ୍ଭେ ଦେଉଅଛୁ; କିନ୍ତୁ ହେ ବିପ୍ର ! ଆମ୍ଭର ଏହି ଯଜ୍ଞ ବିରତ ନୋହୁ । ୨୩ । ଆସ୍ତୀକ ବୋଇଲେ, ହେ ରାଜନ୍ ! ଆମ୍ଭେ ତୁମ୍ଭଙ୍କୁ ସୁବର୍ଣ୍ଣ, ରଜତ ଅଥବା ଧେନୁ ପ୍ରାର୍ଥନା କରୁନାହୁଁ; କିନ୍ତୁ ତୁମ୍ଭର ଏହି ସତ୍ର ବିରତ ହେଉ ଓ ଆମ୍ଭ ମାତୃକୁଳର ମଙ୍ଗଳ ହେଉ । ୨୪ ।

ସୌତି ବୋଇଲେ, ପରୀକ୍ଷିତପୁତ୍ର ଆସ୍ତୀକଙ୍କର ଏ ପ୍ରକାର ବଚନ ଶ୍ରବଣ କରି ବକ୍ତୃବର ସେହି ନରପତି ପୁନଃ ପୁନଃ ଆସ୍ତୀକଙ୍କୁ ବୋଇଲେ ଯେ, ହେ ଦ୍ୱିଜବରୋତ୍ତମ ! ତୁମ୍ଭେ ଅନ୍ୟ ବର ପ୍ରାର୍ଥନା କର, ତୁମ୍ଭର ମଙ୍ଗଳ ହେବ । କିନ୍ତୁ ହେ ଭୃଗୁନନ୍ଦନ ! ସେହି ଆସ୍ତୀକ ଅନ୍ୟ ବର ଯାଚଞ୍ଚା କଲେ ନାହିଁ । ୨୬ । ତଦନନ୍ତର, ହେ ତାତ ! ସମସ୍ତ ବେଦବିତ୍ ଓ ସଦସ୍ୟଗଣ ରାଜାଙ୍କୁ ବୋଇଲେ ଯେ ଏହି ବ୍ରାହ୍ମଣ ତାହାର ପ୍ରାର୍ଥିତ ବର ଲାଭ କରୁ । ୨୭ ।

---

## ଅଧ୍ୟାୟ—୫୭

ଶୌନକ କହିଲେ, ଏହି ସର୍ପସତ୍ରରେ ହବ୍ୟବାହନ ମଧ୍ୟରେ ଯେଉଁ ସମସ୍ତ ସର୍ପ ପତିତ ହୋଇଥିଲେ, ହେ ସୂତାତ୍ମଜ ! ସେମାନଙ୍କର ନାମ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁ । ୧ । ସୌତି କହିଲେ, ହେ ଦ୍ୱିଜସତ୍ତମ ! ସହସ୍ର ସହସ୍ର, ଅଯୁତ ଅଯୁତ ଓ ଅର୍ବୁଦ ଅର୍ବୁଦ ବହୁସଂଖ୍ୟକ ସର୍ପ ଏଥିରେ ପତିତ ହୋଇଥିଲେ, ସେମାନଙ୍କର ନାମ ସଂଖ୍ୟା କରି ହେବାର ନୁହେଁ । ୨ । ତଥାପି ଅଗ୍ନିରେ ଆହୁତ କେତେଗୁଡ଼ିଏ ମୁଖ୍ୟ ମୁଖ୍ୟ ପନ୍ନଗ-ମାନଙ୍କର ନାମାବଳୀ, ଆମ୍ଭର ଯେତେ ସ୍ମରଣ ଅଛି କହୁଅଛୁ, ତାହା ଆମ୍ଭଠାରୁ ବୋଧ କରିବା ହେଉନ୍ତୁ । ୩ । ନୀଳ, ରକ୍ତ, କୃଷ୍ଣ, ଘୋର,

ମହାକାଳ, ବଷୋଳ୍ବଣ ପ୍ରଭୃତି ବାସୁକିକୁଳସମ୍ଭୂତ ଯେଉଁ ସମସ୍ତ ସର୍ପ ମାତୃ ବାଗ୍ ଦଣ୍ଡରେ ପୀଡ଼ିତ ଓ ମନ୍ତ୍ର ପ୍ରଭାବରେ ଅବଶାଙ୍ଗ ଅଥଚ କାତର ହୋଇ ଅଗ୍ନିରେ ଆହୁତ ହୋଇଥିଲେ, ସେମାନଙ୍କ ମଧ୍ୟରୁ ପ୍ରଧାନ ପ୍ରଧାନ କେତେକ ସର୍ପଙ୍କ ନାମ ପ୍ରଥମରେ ଶୁଣିବା ହେଉନ୍ତୁ । କୋଟିଶ, ମାନସ, ପୂର୍ଣ୍ଣ, ଶଲ, ପାଲ, ହଲୀମକ, ପିଚ୍ଛଲ, କୌଣପ, ଚକ୍ର, କାଲବେଗ, ପ୍ରକାଲନ, ହିରଣ୍ୟବାହୁ, ଶରଣ, କକ୍ଷ, କାଲଦନ୍ତକ—ଏହିସବୁ ବାସୁକିପୁତ୍ର ନାଗମାନେ ହବ୍ୟବାହନରେ ପ୍ରବିଷ୍ଟ ହୋଇଥିଲେ । ହେ ବିପ୍ର ! ସେହିପରି କୁଳସମ୍ଭୂତ ଅନ୍ୟାନ୍ୟ ବହୁସଂଖ୍ୟକ ନାଗ ପ୍ରଦୀପ୍ତ ଅଗ୍ନିରେ ଆହୁତ ହୋଇଥିଲେ । ସେମାନେ ସମସ୍ତେ ଘୋରରୂପ ଓ ମହାବଳ । ୭ । ସମ୍ପ୍ରତି ତକ୍ଷକ କୁଳରେ କେତେଗୁଡ଼ିଏ ସମୁତ୍ପନ୍ନ ସର୍ପଙ୍କର ନାମ କହିବା, ନିବୋଧିତ କର । ପୁଚ୍ଛାଣ୍ଡକ, ମଣ୍ଡଳକ, ପିଣ୍ଡସେକ୍ତା, ଉଭଣକ, ଉଚ୍ଛିଖ, ଶରଭ, ଭଙ୍ଗ, ବିଲ୍ୱତେଜ, ବିରୋହଣ, ଶିଲୀ, ଶଲକର, ମୂକ, ସୁକୁମାର, ପ୍ରବେପକ, ମୁଦ୍‌ଗର, ଶିଶୁରୋମା, ସୁରୋମା, ମହାହନୁ—ଏହିସବୁ ତକ୍ଷକାତ୍ମଜ ନାଗମାନେ ମଧ୍ୟ ହବ୍ୟବାହନରେ ପ୍ରବେଶ କରିଥିଲେ । ୧୦ । ପାରାବତ, ପାରିଜାତ, ପାଣ୍ଡର, ହରିଣ, କୃଶ, ବିହଙ୍ଗ, ଶରଭ, ମେଦ, ପ୍ରମୋଦ, ସଂହତାପନ—ଏମାନେ ଐରାବତକୁଳଜାତ; ଏମାନେ ମଧ୍ୟ ହବ୍ୟବାହନରେ ପ୍ରବେଶ କରିଥିଲେ । ହେ ଦ୍ୱିଜୋତ୍ତମ ! ଏବେ କୌରବ୍ୟକୁଳଜାତ ନାଗଙ୍କ ନାମ ଶ୍ରବଣ କର । ଏରକ, କୁଣ୍ଡଳ, ବେଣୀ, ବେଣୀସ୍କନ୍ଧ, କୁମାରକ, ବାହୁକ ଶୃଙ୍ଗବେର ଓ ଧୂର୍ତ୍ତକ, ପ୍ରାତ ଓ ରାତକ । ୧୩ । କୌରବ୍ୟକୁଳଜ ଏମାନେ ଅଗ୍ନିରେ ପ୍ରବେଶ କରିଥିଲେ ।

ହେ ବ୍ରହ୍ମନ୍ ! ବାତବେଗ ବିଷୋଲ୍ବଣ ପ୍ରଭୃତି ଧୃତରାଷ୍ଟ୍ର କୁଳଜ ନାଗ ନାମାବଳୀ ମତ୍କର୍ତ୍ତୃକ ଯଥାଯଥ କୀର୍ତ୍ତିତ ହେଉଅଛି ଶ୍ରବଣ କର । ଶଙ୍କୁକର୍ଣ୍ଣ, ପୀଠରକ, କୁଠାର ଓ ମୁଖସେଚକ, ପୂର୍ଣ୍ଣାଙ୍ଗଦ, ପୂର୍ଣ୍ଣମୁଖ, ପ୍ରହାସ, ଶକୁନି, ଦରି, ଅମାହଠ, କାମଠକ, ସୁଷେଣ, ମାନସ, ଅବ୍ୟୟ, ଭୈରବ, ମୁଣ୍ଡବେଦାଙ୍ଗ, ପିଶଙ୍ଗ, ଉଦ୍ରପାରକ, ଋଷଭ, ବେଗବାନ୍, ନାଗ, ପିଣ୍ଡାରକ ଓ ମହାହନୂ । ୧୭ । ରକ୍ତାଙ୍ଗ, ସର୍ବସାରଙ୍ଗ, ସମୃଦ୍ଧ, ପଟବାସକ, ବରାହକ, ବୀରଣକ, ସୁଚିତ୍ର, ଚିତ୍ରବେଗିକ । ୧୮ । ପରାଶର, ତରୁଣକ, ମଣି, ସ୍କନ୍ଦ ଓ ଅରୁଣି, ହେ ବ୍ରହ୍ମନ୍ ! କୀର୍ତ୍ତିବର୍ଦ୍ଧନ ପ୍ରଧାନ ପ୍ରଧାନ ଏହି ନାଗମାନେ ମତ୍କର୍ତ୍ତୃକ କୀର୍ତ୍ତିତ ହେଲେ । ବାହୁଲ୍ୟ ହେତୁରୁ ସମସ୍ତଙ୍କ ନାମ

ପରିକୀର୍ତ୍ତିତ ହେଲା ନାହିଁ । ଉକ୍ତ ସର୍ପଙ୍କର ସନ୍ତତି ଓ ତାହାଙ୍କର ସନ୍ତତି କେତେ ଯେ ପ୍ରଦୀପ୍ତ ପାବକରେ ପତିତ ହୋଇଥିଲେ, ତାହାର ପରିସଂଖ୍ୟା ହୋଇପାରେ ନାହିଁ । ତ୍ରିଶୀର୍ଷ ଓ ସପ୍ତଶୀର୍ଷ ଓ ତଦ୍ରୂପ ଆଉ କେତେଗୁଡ଼ିଏ ଦଶଶୀର୍ଷ; କାଳାଗ୍ନି ରୂପ ବିଷଧାରୀ, ମହାକାର, ମହାବେଗ, ଶୈଳଶୃଙ୍ଗ, ସମ୍ମୁଚ୍ଛ୍ରାୟ ପ୍ରଭୃତି ଲକ୍ଷ ଲକ୍ଷ ଘୋରତର ସର୍ପଗଣ ଆହୁତ ହୋଇଥିଲେ । ଯୋଜନାୟାମ ବିସ୍ତାର, ଦ୍ୱିଯୋଜନସମାୟୁତ, କାମରୂପ, କାମବଳ, ଦୀପ୍ତାନଳପ୍ରାୟ ବିଷୋଲ୍ବଣ ପ୍ରଭୃତି ଅସଂଖ୍ୟ ବିଷଧରଗଣ ବ୍ରହ୍ମଦଣ୍ଡରେ ନିପୀଡ଼ିତ ହୋଇ ସେହି ମହାସତ୍ରରେ ଦଗ୍ଧ ହୋଇଥିଲେ । ୨୪ ।

---

## ଅଧ୍ୟାୟ—୫୮

ସୌତି କହିଲେ, ଜନମେଜୟ ରାଜା ଆସ୍ତୀକ ମୁନିଙ୍କୁ ବର ଦେବା ବେଳେ ଏହି ଗୋଟିଏ ଆଶ୍ଚର୍ଯ୍ୟ ବିଷୟ ଆମ୍ଭେ ତାହାଙ୍କ ସମ୍ବନ୍ଧରେ ଶ୍ରବଣ କରିଅଛୁ ଯେ ଇନ୍ଦ୍ରଙ୍କ ହସ୍ତରୁ ତକ୍ଷକ ନାଗ ଚ୍ୟୁତ ହୋଇ ସୁଦ୍ଧା ଆକାଶରେ ଅବସ୍ଥିତ ରହିଲେ । ଏହା ଦେଖି ଜନମେଜୟ ରାଜା ଚିନ୍ତାନ୍ୱିତ ହେଲେ । ବାରମ୍ବାର ଯଥାବିଧାନରେ ହୂୟମାନ ହୋଇ ସୁଦ୍ଧା ସେହି ଭୟାକୁଳ ତକ୍ଷକ ପ୍ରଦୀପ୍ତ ବହ୍ନିରେ ନିପତିତ ହେଲେ ନାହିଁ ।

ଶୌନକ କହିଲେ, ହେ ସୂତ ! ସେହି ମନୀଷୀ ବିପ୍ରଗଣଙ୍କର ମନ୍ତ୍ର-ସମୂହ କି ତତ୍କାଳରେ ପ୍ରତିଭାତ ହୋଇ ନ ଥିଲା ଯେ ସେହି ତକ୍ଷକ ଅଗ୍ନିରେ ପତିତ ହେଲେ ନାହିଁ ? ୩ ।

ସୌତି କହିଲେ, ଇନ୍ଦ୍ରଙ୍କ ହସ୍ତରୁ ପତିତ ହେବା କାଳରେ ବିଶେଷ ତପ୍ତ ଓ ସଂଜ୍ଞାହୀନ ସେହି ତକ୍ଷକଙ୍କୁ ରହ ରହ ରହ ବୋଲି ତିନଥର ଆସ୍ତୀକ କହିଲେ । ତହୁଁ ସେ ତକ୍ଷକ ଭୟାକୁଳିତ ଚିତ୍ତରେ ଆକାଶ ଓ ପୃଥିବୀ ମଧ୍ୟରେ ଅନ୍ତରୀକ୍ଷରେ ସ୍ଥିତ ହେଲେ । ତଦନନ୍ତର ସଦସ୍ୟମାନଙ୍କ ଦ୍ୱାରା ବାରମ୍ବାର ଅନୁରୁଦ୍ଧ ହୋଇ ରାଜା ବୋଇଲେ, "ଆସ୍ତୀକ ଯାହା କହିଲେ ତାହା ହେଉ, ଏହି କର୍ମ ସମାପ୍ତ କରନ୍ତୁ; ପନ୍ନଗମାନଙ୍କର ଅନାମୟ ହେଉ; ଏହି ଆସ୍ତୀକ ପ୍ରୀତ ହେଉନ୍ତୁ ଓ ସୂତଙ୍କର ସେହି ବଚନ

ସତ୍ୟ ହେଉ ।" ୮ । ତଦନନ୍ତର ପ୍ରୀତିପ୍ରଦ ଗୋଟାଏ ହଳହଳା ଶବ୍ଦ ଜାତ ହେଲା । ଆସ୍ତୀକଙ୍କୁ ବର ଦେବା ପରେ ପରୀକ୍ଷିତପୁତ୍ର ଜନମେଜୟ ରାଜାଙ୍କର ସେହି ଯଜ୍ଞ ଉପରତ ହେଲା । ଭରତକୁଳ ପ୍ରଧାନ ଜନମେଜୟ ରାଜା ପ୍ରୀତିଯୁକ୍ତ ହେଲେ । ୧୦ । ଋତ୍ୱିକ୍‌ମାନଙ୍କୁ, ସଦସ୍ୟଗଣଙ୍କୁ ଓ ଆଉ ଯେତେ ସେଠାକୁ ସମାଗତ ହୋଇଥିଲେ, ସେମାନଙ୍କୁ ରାଜା ଶତ ଶତ ଓ ସହସ୍ର ସହସ୍ର ବିତ୍ତ ଦାନ କଲେ । ୧୧ । ତନ୍ମଧ୍ୟରେ ଯେ ପୂର୍ବରୁ କହିଥିଲେ ଯେ ତୁମ୍ଭର ଏହି ସର୍ପସତ୍ର ନିବୃତ୍ତି ବିଷୟରେ ଜଣେ ବ୍ରାହ୍ମଣ ନିମିତ୍ତ ହେବେ, ସେହି ଲୋହିତାକ୍ଷ ସ୍ଥପତି, ସୂତନାମଧାରୀ ବିପ୍ରଙ୍କୁ ଅପ୍ରମେୟ ପରାକ୍ରମ ସେହି ନରପତି ବହୁତର ଅର୍ଥ, ଅନେକ ଦ୍ରବ୍ୟ ଓ ଭୋଜନାଚ୍ଛାଦନ ପ୍ରଦାନ କଲେ । ତଦନନ୍ତର ବିଧି ଅନୁସାରେ ଅବଭୃଥ ସ୍ନାନ କଲେ । ୧୪ । ରାଜା ପ୍ରୀତମନା ହୋଇ କୃତକୃତ୍ୟ ଆସ୍ତୀକଙ୍କୁ ବସନ ଭୂଷଣ ଦାନଦ୍ୱାରା ପ୍ରୀତକରି ଗୃହକୁ ପଠାଇଦେଲେ ଓ ତାଙ୍କୁ ବୋଇଲେ ଯେ ସେ ପୁନର୍ବାର ଆସି ରାଜାଙ୍କର ଅଶ୍ୱମେଧ ମହାଯଜ୍ଞରେ ସଦସ୍ୟ ହେବେ ।

ଆସ୍ତୀକ ତଥାସ୍ତୁ ବୋଲି କହି ମୁଦାନ୍ୱିତ ହୋଇ ଶୀଘ୍ର ପ୍ରତିଗମନ କଲେ । ଆସ୍ତୀକ ଏହି ଅସାମାନ୍ୟ କାର୍ଯ୍ୟ ସମାହିତ କରି ଜନମେଜୟଙ୍କୁ ପରିତୁଷ୍ଟ କରି ଓ ସ୍ୱୟଂ ପରମ ପ୍ରୀତ ହୋଇ ମାତୁଳାଳୟକୁ ଗମନପୂର୍ବକ ମାତାଙ୍କର ଚରଣରେ ପ୍ରଣାମ କରି ଆନୁପୂର୍ବିକ ସମସ୍ତ ବୃତ୍ତାନ୍ତ ନିବେଦନ କଲେ । ୧୮ ।

ସୌତି ବୋଇଲେ, ଉକ୍ତ ବୃତ୍ତାନ୍ତମାନ ଶ୍ରବଣ କରି ଯେଉଁ ସ୍ଥଳରେ ଯେତେ ନାଗ ଥିଲେ, ସେମାନେ ସମସ୍ତେ ପ୍ରୀତିଯୁକ୍ତ ହେଲେ ଓ ଆସ୍ତୀକଙ୍କୁ ବୋଇଲେ—ତୁମ୍ଭେ କି ବର ଯାଚ୍ଞା କରୁଅଛ କର । ନାଗମାନେ ଆସ୍ତୀକଙ୍କୁ ବେଷ୍ଟନ କରି ଭୂୟୋଭୂୟଃ ତାହାଙ୍କୁ ପ୍ରଶ୍ନ କଲେ, ହେ ବିଦ୍ୱନ୍ ! ଆମ୍ଭେମାନେ ଅଦ୍ୟ ତୁମ୍ଭର କି ପ୍ରିୟକାର୍ଯ୍ୟ କରିବୁ ବୋଲ । ହେ ବତ୍ସ ! ଆମ୍ଭେମାନେ ସମସ୍ତେ ପ୍ରୀତ ଓ ମୋହିତ ହୋଇଅଛୁ । ୨୦ ।

ଆସ୍ତୀକ ଉତ୍ତର କଲେ, ଏହି ଲୋକରେ ପ୍ରସନ୍ନାତ୍ମା ବ୍ରାହ୍ମଣମାନେ ଓ ଅପର ମାନବମାନେ ଯେଉଁମାନେ କି ଆମ୍ଭର ଏହି ଧର୍ମାଖ୍ୟାନ ପାଠ କରିବେ, ସେମାନଙ୍କର କିଛି ମାତ୍ର ଭୟ ତୁମ୍ଭମାନଙ୍କଠାରୁ ନ ହେଉ । ୨୧ ।

ଅନନ୍ତର ସେମାନେ ଅତି ପ୍ରସନ୍ନ ଚିତ୍ତରେ ସେହି ଭାଗିନେୟଙ୍କୁ କହିଲେ, ହେ ଭାଗିନେୟ ! ତୁମ୍ଭର ଏହି ବର ସତ୍ୟ ହେଲା । ଆମ୍ଭେ-ମାନେ ନମ୍ର ଭାବରେ ପ୍ରୀତିଯୁକ୍ତ ହୋଇ ତୁମ୍ଭର ଏହି ବାଞ୍ଛିତ ପ୍ରତିପାଳନ କରିବୁ । ୨୨ । ଦିବସରେ ଅଥବା ରାତିରେ ଯେ କେହି 'ଅସିତ' 'ଆର୍ତ୍ତିମ' ଓ 'ସୁନୀଥ'ଙ୍କୁ ସ୍ମରଣ କରିବେ, ତାହାଙ୍କର ସର୍ପଭୟ ହେବ ନାହିଁ । ୨୩ । ଯେଉଁ ମହାଯଶା ଆସ୍ତୀକ ଜରତ୍କାରୁଙ୍କ ଗର୍ଭରେ ଓ ଜରତ୍କାରୁଙ୍କ ଔରସରୁ ଜନ୍ମିଥିଲେ ଓ ଯେ ସର୍ପସତ୍ରରେ ତୁମ୍ଭମାନଙ୍କୁ ରକ୍ଷା କରିଥିଲେ ସେହି ମହାଭାଗଙ୍କୁ ସ୍ମରଣ କରୁଅଛୁ, ତୁମ୍ଭେ ଆମ୍ଭଙ୍କୁ ହିଂସା କରିବାକୁ ସମର୍ଥ ନୁହଁ । ୨୪ । ହେ ମହାବିଷ, ସର୍ପ ! ତୁମ୍ଭମାନଙ୍କର କଲ୍ୟାଣ ହେଉ, ତୁମ୍ଭେ ଅପସର୍ପିତ ହୁଅ, ତୁମ୍ଭେ ଗମନ କର । ଜନମେଜୟଙ୍କ ଯଜ୍ଞ ସମାପ୍ତି କାଳରେ ଆସ୍ତୀକଙ୍କ ବଚନ ଶ୍ରବଣ କର । ୨୫ । ଆସ୍ତୀକଙ୍କ ବଚନ ଶ୍ରବଣ କରି ଯେଉଁ ସର୍ପ ପ୍ରତିନିବୃତ୍ତ ନ ହୁଅଇ, ତାହାର ମସ୍ତକ ଶିଂଶବୃକ୍ଷର ଫଳପ୍ରାୟ ଶତଧା ହୋଇଯାଏ । ୨୬ ।

ସୌତି କହିଲେ, ସମାଗତ ପ୍ରଧାନ ପ୍ରଧାନ ଭୁଜଙ୍ଗରାଜ ସେହି ଦ୍ୱିଜରାଜଙ୍କୁ ଉକ୍ତରୂପ କହିବାରୁ ସେ ମହାତ୍ମା ବିପୁଳ ପ୍ରୀତି ପ୍ରାପ୍ତ ହୋଇ ସ୍ୱ ଗୃହକୁ ଗମନ କରିବାକୁ ମନ ବଳାଇଲେ । ୨୭ । ଉକ୍ତ ଦ୍ୱିଜଶ୍ରେଷ୍ଠ ଧର୍ମାତ୍ମା, ସର୍ପସତ୍ରରୁ ପନ୍ନଗମାନଙ୍କୁ ମୁକ୍ତ କରି ପୁତ୍ର ପୌତ୍ରବାନ୍ ହୋଇ କାଳପ୍ରାପ୍ତିବେଳେ ମୋକ୍ଷଲାଭ କଲେ । ୨୮ । ଆମ୍ଭେ ଏହି ଯେଉଁ ଆସ୍ତୀକଙ୍କ ଆଖ୍ୟାନ କୀର୍ତ୍ତନ କଲୁଁ, ସେହି ଆଖ୍ୟାନ ପାଠ କଲେ ସର୍ପଙ୍କଠାରୁ ଭୟ ହୁଅଇ ନାହିଁ ! ୨୯ ।

ହେ ବ୍ରହ୍ମନ୍ ! ଭାର୍ଗବୋତ୍ତମ ! ଆପଣଙ୍କର ପୂର୍ବଜ ମହାଶୟ ରୁରୁ ନାମକ ପୁତ୍ର ଜିଜ୍ଞାସୁ ହୋଇ ଯେରୂପ କହିଥିଲେ ଓ ଆମ୍ଭେ ଯାହା ଶୁଣିଥିଲୁ ସେହି ଆସ୍ତୀକ କବିଙ୍କର ସୁନ୍ଦର ଚରିତ ଆଦ୍ୟପ୍ରାନ୍ତ ଅବିକଳ କଥନ କଲୁ । ୩୧ । ହେ ବ୍ରହ୍ମନ୍ ! ଡୁଣ୍ଡୁଭର କଥା ଶ୍ରବଣାନନ୍ତର ଆମ୍ଭେ ଆପଣଙ୍କ କର୍ତ୍ତୃକ ଯାହା ପୃଷ୍ଟ ହୋଇଥିଲୁ ସେହି ଧର୍ମ ଓ ପୁଣ୍ୟବର୍ଦ୍ଧନ ଆସ୍ତୀକାଖ୍ୟାନ କଥିତ ହେଲା । ହେ ଅରିନ୍ଦମ ! ଅଧୁନା ତୁମ୍ଭର ସେହି ସୁମହତ୍ କୌତୂହଳ ଅପଗତ ହେଉ !

---

# ଅଧ୍ୟାୟ—୫୯

ଶୌନକ କହିଲେ, ହେ ସୂତନନ୍ଦନ ! ତୁମ୍ଭେ ଆମ୍ଭ ନିକଟରେ ଭୃଗୁବଂଶ ପ୍ରଭୃତି ଯେଉଁ ସମସ୍ତ ବୃତ୍ତାନ୍ତ କୀର୍ତ୍ତନ କଲ, ତହିଁରେ ଆମ୍ଭେ ତୁମ୍ଭ ପ୍ରତି ଅତିଶୟ ପ୍ରୀତ ହୋଇଅଛୁ । ୧ । ପୁନର୍ବାର ଆମ୍ଭେ ତୁମ୍ଭଙ୍କୁ କହୁଅଛୁ ଯେ ବ୍ୟାସଙ୍କ ସମ୍ବନ୍ଧୀୟ ଯେତେ କଥା ଅଛି, ସେ ସବୁ ତୁମ୍ଭେ ଆମ୍ଭ ନିକଟରେ ଯଥାବତ୍ କୀର୍ତ୍ତନ କର । ୨ । ପରମ ଦୁଷ୍କର ସେହି ସର୍ପସତ୍ରରେ ଯଜ୍ଞୀୟ କର୍ମ ସମାପନାନନ୍ତର ମହାତ୍ମା ସଦସ୍ୟ ଓ ପଣ୍ଡିତଗଣଙ୍କ ମଧ୍ୟରେ ଯେଉଁ ସବୁ ବିଚିତ୍ର କଥାମାନ ହୋଇଥିଲା, ସେ ସବୁ କଥା ଆମ୍ଭେ ଯଥାବତ୍ ଶୁଣିବାକୁ ଇଚ୍ଛା କରୁଅଛୁ, ତୁମ୍ଭେ ଆମ୍ଭ ନିକଟରେ ସମସ୍ତ କୀର୍ତ୍ତନ କର । ୪ ।

ସୌତି କହିଲେ, ହେ ତପୋଧନ ! ବ୍ରାହ୍ମଣମାନେ ଯଜ୍ଞକର୍ମର ଅବସରବେଳେ ବେଦାଶ୍ରିତ ଅନେକ କଥା କହିଥିଲେ, ତନ୍ମଧ୍ୟରେ ବ୍ୟାସ ଭାରତ ନାମକ ବିଚିତ୍ର ଆଖ୍ୟାନ କହିଥିଲେ । ୫ ।

ଶୌନକ କହିଲେ, ହେ ସୂତପୁତ୍ର ! ଯଜ୍ଞ କର୍ମାବସର କାଳରେ କୃଷ୍ଣଦ୍ୱୈପାୟନ, ଜନମେଜୟଙ୍କ କର୍ତ୍ତୃକ ପୃଷ୍ଟ ହୋଇ ପାଣ୍ଡବମାନଙ୍କର ଯଶସ୍କର ମହାଭାରତ ନାମରେ ଯେଉଁ ଆଖ୍ୟାନ ବିଧିପୂର୍ବକ ଶ୍ରବଣ କରାଇ-ଥିଲେ, ବିଶୁଦ୍ଧାତ୍ମା ମହର୍ଷିଙ୍କର ମନଃସାଗରସମ୍ଭୂତ ସେହି ପବିତ୍ର କଥାସବୁ ଯଥାବିଧି ଶ୍ରବଣ କରିବାକୁ ଅଭିଳାଷ କରୁ । ହେ ସାଧୁଶ୍ରେଷ୍ଠ ! ସର୍ବରତ୍ନ-ମୟୀ ସେହି କଥାସବୁ କୀର୍ତ୍ତନ କର, ଆମ୍ଭେ ଶୁଣିବାକୁ ଇଚ୍ଛା କରୁ । ୮ ।

ସୌତି ବୋଇଲେ, ହେ ଋଷିପ୍ରବର ! ଆମ୍ଭେ ଆପଣଙ୍କ ନିକଟରେ ବେଦବ୍ୟାସ କଥିତ ମହାଭାରତ ନାମରେ ଅତି ଉତ୍କୃଷ୍ଟ ମହତ୍ ଆଖ୍ୟାନ ପ୍ରଥମରୁ ସବୁ କୀର୍ତ୍ତନ କରିବୁ । ୯ । ହେ ଦ୍ୱିଜ ! ଆମ୍ଭେ ସମସ୍ତ ଅଶେଷ ରୂପେ କହୁଅଛୁ, ଶ୍ରବଣ କରନ୍ତୁ । ଆମ୍ଭର ମଧ୍ୟ ସେ ସମସ୍ତ ଶଂସନ କରିବାକୁ ମହାନ ହର୍ଷଜାତ ହେଉଅଛି । ୧୦ ।

# ଅଧ୍ୟାୟ—୬୦

ସୌତି କହିଲେ, ହେ ମୁନିପ୍ରବର ! ବେଦବିଦ୍ୟାବିଶାରଦ ମହର୍ଷି କୃଷ୍ଣଦ୍ୱୈପାୟନ ଜନମେଜୟଙ୍କ ସର୍ପସତ୍ରରେ ଦୀକ୍ଷିତ ଶ୍ରବଣ କରି ସେଠାରେ ଉପସ୍ଥିତ ହେଲେ । ୧ । ଯେଉଁ ପାଣ୍ଡବଙ୍କ ପିତାମହଙ୍କୁ * ଶକ୍ତିଙ୍କ ପୁତ୍ର ପରାଶରଙ୍କ ଔରସରୁ, କନ୍ୟାବସ୍ଥାରେ ସତ୍ୟବତୀ ଯମୁନା ପୁଳିନରେ ଜନ୍ମ କରିଥିଲେ; ଜାତ ହେବା ମାତ୍ର ସେ ଆପଣାର ଦେହକୁ ଅତିଶୟ ବର୍ଦ୍ଧିତ କରିଥିଲେ; ଯେଉଁ ମହାଯଶା, ସାଙ୍ଗବେଦ, ଇତିହାସ ସହ ଅଧ୍ୟୟନ କରିଥିଲେ; ଯାହାଙ୍କୁ ତପସ୍ୟାରେ କି ବେଦାଧ୍ୟୟନରେ, କି ବ୍ରତରେ କି ଉପବାସରେ, କି ସନ୍ତାନୋତ୍ପାଦନରେ, କି ଯଜ୍ଞରେ କେହି ସମକକ୍ଷ ହୋଇ ନାହାନ୍ତି; ଯେଉଁ ବେଦବିଦ୍ୟାବିଶାରଦ ମହର୍ଷି ବେଦକୁ ଚାରିଭାଗରେ ବିଭାଗ କରିଥିଲେ; ସେ ସର୍ବଜ୍ଞ, ପଣ୍ଡିତ, ସତ୍ୟବ୍ରତ ଓ ଶୁଦ୍ଧାତ୍ମା; ଯେଉଁ ପୁଣ୍ୟଶ୍ଳୋକ ମହାଯଶା, ଶାନ୍ତନୁଙ୍କ ବଂଶ ବିସ୍ତାର କରିବା ନିମିତ୍ତ, ପାଣ୍ଡୁ, ଧୃତରାଷ୍ଟ୍ର ଓ ବିଦୁରଙ୍କୁ ଜନ୍ମ ଦେଇଥିଲେ, ସେହି ମହାତ୍ମା ବେଦ ଓ ବେଦାଙ୍ଗପାରଗ ଶିଷ୍ୟବର୍ଗଙ୍କ ସହିତ, ରାଜର୍ଷି ଜନମେଜୟଙ୍କ ସର୍ପସତ୍ରୀୟ ସଭା ମଧ୍ୟରେ ପ୍ରବିଷ୍ଟ ହେଲେ । ୭ । ଦେବତାଙ୍କ କର୍ତ୍ତୃକ ପୁରନ୍ଦର ବେଷ୍ଟିତ ହେଲାପ୍ରାୟ ସଦସ୍ୟଗଣଙ୍କ ଦ୍ୱାରା, ମୂର୍ଦ୍ଧାଭିଷିକ୍ତ ନାନା ଜନପଦେଶ୍ୱରଙ୍କଦ୍ୱାରା ଓ ଯଜ୍ଞକର୍ମରେ କୁଶଳ ବ୍ରହ୍ମାଙ୍କ ସଦୃଶ ଋତ୍ୱିକଗଣଙ୍କଦ୍ୱାରା ପରିବୃତ ଜନମେଜୟଙ୍କୁ ଯଜ୍ଞସ୍ଥାନରେ ଆସୀନ ଥିବାର ଦର୍ଶନ କଲେ । ୯ । ଭରତକୁଳସତ୍ତମ, ରାଜର୍ଷି ଜନମେଜୟ ବ୍ୟାସଙ୍କୁ ସମାଗତ ଦେଖି ସ୍ୱଗଣ ସହିତ ପ୍ରୀତିପୂର୍ବକ ଶୀଘ୍ର ଅଭ୍ୟୁତ୍‌ଥାନ କଲେ । ୧୦ । ଶକ୍ର ବୃହସ୍ପତିଙ୍କୁ ଆସନ ଦେବାପ୍ରାୟ, ରାଜର୍ଷି ସଦସ୍ୟଗଣଙ୍କ ଅନୁମତି କ୍ରମେ ବ୍ୟାସଙ୍କୁ କାଞ୍ଚନାସନ ପ୍ରଦାନ କଲେ । ୧୧ । ଦେବର୍ଷିଗଣଙ୍କ ପୂଜିତ, ଆସନୋପବିଷ୍ଟ, ସେହି ବରଦ ଋଷିଙ୍କୁ ରାଜେନ୍ଦ୍ର ଜନମେଜୟ ଶାସ୍ତ୍ରସମ୍ମତ କର୍ମାନୁସାରେ ପୂଜା କଲେ । ୧୨ । ଅର୍ଥାତ୍ ପାଦ୍ୟ, ଆଚମନୀୟ, ଅର୍ଘ୍ୟ ଓ ଧେନୁ ବିଧାନାନୁକ୍ରମେ, ତଦ୍‌ଗ୍ରହଣଯୋଗ୍ୟ, ପିତାମହତୁଲ୍ୟ ସେହି କୃଷ୍ଣଙ୍କୁ ନିବେଦନ କଲେ । ୧୩ । ବ୍ୟାସଦେବ ଜନମେଜୟଙ୍କର ସେହି ପୂଜା ଗ୍ରହଣ କରି, ଧେନୁଟିକୁ ନିଜ ଆଶ୍ରମକୁ ପଠାଇବାର ଅନୁଜ୍ଞା ଦେଇ ପ୍ରୀତ ହେଲେ । ୧୪ ।

* ପାଣ୍ଡବଙ୍କ ପିତାମହ—ବ୍ୟାସ ।

ରାଜା ଜନମେଜୟ ଏହିରୂପେ ପ୍ରଣୟ ସହିତ ପ୍ରପିତାମହଙ୍କର ପୂଜା କରି ତାହାଙ୍କ ସମ୍ମୁଖରେ ଉପବିଷ୍ଟ ହୋଇ ପ୍ରୀତ ମନରେ ତାହାଙ୍କୁ ଅନାମୟ ପ୍ରଶ୍ନ କଲେ । ୧୫ । ଭଗବାନ୍ ବ୍ୟାସଦେବ ମଧ୍ୟ ତାହାଙ୍କୁ ସ୍ୱକୀୟ କୁଶଳବାର୍ତ୍ତା ପ୍ରତିବେଦନ କଲେ; ଅଥଚ ସର୍ବସଦସ୍ୟଗଣଙ୍କ ଦ୍ୱାରା ପୂଜିତ ହୋଇ ସେମାନଙ୍କୁ ପ୍ରତିପୂଜିତ କଲେ । ୧୬ । ତଦନନ୍ତର ସମସ୍ତ ସଦସ୍ୟ-ଗଣଙ୍କ ସହିତ ଜନମେଜୟ କୃତାଞ୍ଜଳି ହୋଇ ପ୍ରଶ୍ନ କଲେ । ୧୭ । ଜନମେଜୟ ବୋଇଲେ, ଭଗବନ୍ ! ଆପଣ କୌରବ ଓ ପାଣ୍ଡବଗଣଙ୍କର ସମସ୍ତ ଚରିତ ପ୍ରତ୍ୟକ୍ଷ କରିଅଛନ୍ତି; ଅତଏବ ଆମ୍ଭର ପିତାମହମାନେ ସମସ୍ତେ ରାଗଦ୍ୱେଷାଦି ବିହୀନ ଓ ଦେବାନୁରକ୍ତ ଚିତ୍ତ ହୋଇ ସୁଦ୍ଧା କି କାରଣରୁ ସେହି ଭୂତାନ୍ତକାରୀ ଘୋର ଯୁଦ୍ଧରେ ପ୍ରବୃତ୍ତ ହେଲେ, ହେ ଦ୍ୱିଜୋତ୍ତମ ! ଆପଣ ସବୁ ବୃତ୍ତାନ୍ତ ଯାହା ଯେ ରୂପ ଘଟିଥିଲା ତାହା ତଦ୍ରୂପ ବୋଲିବା ହେଉନ୍ତୁ । ୨୦ ।

ସୌତି କହିଲେ, ତାହାଙ୍କର ସେହି ବଚନ ଶ୍ରବଣ କରି କୃଷ୍ଣ-ଦ୍ୱୈପାୟନ ତତ୍କାଳରେ ସମାସୀନ ନିଜ ଶିଷ୍ୟ ବୈଶମ୍ପାୟନଙ୍କୁ ଆଦେଶ କଲେ । ୨୧ । କୁରୁ ପାଣ୍ଡବଙ୍କର ପୂର୍ବକାଳରେ ଯେପରି ବିରୋଧ ଜାତ ହେଲା ଓ ଯାହା ଆମ୍ଭଠାରୁ ଶ୍ରବଣ କରିଅଛ, ତାହା ସମସ୍ତ ଏହାଙ୍କୁ ବୋଲ । ୨୨ ।

ସେହି ବିପ୍ରର୍ଷି ଗୁରୁଙ୍କ ଆଜ୍ଞା ପ୍ରାପ୍ତ ହୋଇ ରାଜା ଜନମେଜୟଙ୍କୁ ଓ ସଦସ୍ୟଗଣଙ୍କୁ ଅଥଚ ସମାଗତ ଅପର ପାର୍ଥିବଙ୍କୁ କୁରୁ ପାଣ୍ଡବଙ୍କର ସର୍ବବିନାଶକାରୀ ଯୁଦ୍ଧ ବୃତ୍ତାନ୍ତ ସମ୍ବଳିତ ସମସ୍ତ ପୁରାତନ ଇତିହାସ ବର୍ଣ୍ଣନା କଲେ । ୨୪ ।

---

## ଅଧ୍ୟାୟ—୬୧

ବୈଶମ୍ପାୟନ କହିଲେ, ମହାରାଜ ! ପ୍ରଥମେ ଭକ୍ତିସହ କାୟ-ମନୋବାକ୍ୟରେ ଗୁରୁଦେବଙ୍କୁ ପ୍ରଣାମ କରି ଓ ସମସ୍ତ ବ୍ରାହ୍ମଣ ଓ ଅନ୍ୟାନ୍ୟ ବିଦ୍ୱାନ୍‌ଜନମାନଙ୍କୁ ସତ୍କାର କରି ସର୍ବଲୋକବିଖ୍ୟାତ ମହର୍ଷି ଧୀମାନ୍, ମହାତ୍ମା ଏହି ବ୍ୟାସଙ୍କର ସମୁଦାୟ ମତ କୀର୍ତ୍ତନ କରିବୁ । ୨ । ଆପଣ

ଏହି ଭାରତୀୟ କଥା ଶୁଣିବାର ଯୋଗ୍ୟପାତ୍ର ଅଟନ୍ତି; ଅଥଚ ଗୁରୁଙ୍କ ମୁଖ-ନିଃସୃତ ଆଦେଶପ୍ରାପ୍ତ ହୋଇ ଆମ୍ଭର ମନ ପ୍ରୋତ୍ସାହିତ ହେଉଅଛି । ୩ । ହେ ରାଜନ୍ ! ଶୁଣିବା ହେଉନ୍ତୁ; ଯେପରି କୁରୁ ପାଣ୍ଡବଗଣଙ୍କର ଭେଦଜାତ ହେଲା; ରାଜ୍ୟ ନିମିତ୍ତ ଯେପରି ଦ୍ୟୂତକ୍ରୀଡ଼ା ସମ୍ଭୂତ ହେଲା, ଯେପରି ବନବାସ ହେଲା ଓ ଯେପରି ପୃଥିବୀ କ୍ଷୟକାରକ ଯୁଦ୍ଧ ଘଟିଲା, ହେ ଭରତର୍ଷଭ ! ଆପଣ ପ୍ରଶ୍ନ କରିବାରୁ ତାହା ଆମ୍ଭେ ଆପଣଙ୍କୁ କହିବୁ । ୫ ।

ଯୁଧିଷ୍ଠିରାଦି ବୀରମାନେ ପିତାଙ୍କ ମୃତ୍ୟୁପରେ ବନରୁ ନିଜ ଗୃହକୁ ପ୍ରତ୍ୟାଗମନ କରି ଅଚିର କାଳ ମଧ୍ୟରେ ବେଦରେ, ଶାସ୍ତ୍ରରେ ଓ ଧନୁର୍ବିଦ୍ୟାରେ କୃତବିଦ୍ୟ ହେଲେ । ୬ । ପାଣ୍ଡବମାନଙ୍କୁ ବଳ, ବୀର୍ଯ୍ୟ, ତେଜ ଓ ଶ୍ରୀସମ୍ପନ୍ନ ଅଥଚ ପୌରଜନସମ୍ମତ ଦେଖି କୌରବମାନେ ଈର୍ଷ୍ୟାନ୍ୱିତ ହେଲେ । ୭ । ଅନନ୍ତର କ୍ରୂରମତି ଦୁର୍ଯ୍ୟୋଧନ, କର୍ଣ୍ଣ ଓ ସୁବଳନନ୍ଦନ ଶକୁନି, ପାଣ୍ଡବମାନଙ୍କ ପ୍ରତି ନାନାବିଧ ନିଗ୍ରହ ଓ ନିର୍ବାସନାଦି ଆରମ୍ଭ କଲେ । ୮ । ତଦନନ୍ତର ପରାକ୍ରମଶାଳୀ ଦୁର୍ଯ୍ୟୋଧନ, କୁଳିଙ୍ଗ ମତାବଲମ୍ବନ ପୂର୍ବକ ଅର୍ଥାତ୍ କୁଳିଙ୍ଗ ପକ୍ଷୀ ଯେପରି ସିଂହମୁଖ ବ୍ୟାଦାନ କଲାବେଳେ ତାହାର ଦଂଷ୍ଟ୍ରାଭ୍ୟନ୍ତରରୁ ମାଂସ ଭକ୍ଷଣ କରେ, ତଦ୍ରୂପ ବିବିଧୋପାୟଦ୍ୱାରା ରାଜ୍ୟ ନିମିତ୍ତ ପାଣ୍ଡବମାନଙ୍କୁ ପୀଡ଼ିତ କଲେ । ପାପମତି ଦୁର୍ଯ୍ୟୋଧନ ଭୀମଙ୍କୁ ବିଷ ଭକ୍ଷଣ କରାଇଲେ । କିନ୍ତୁ ବୃକୋଦର ସେହି ବିଷକୁ ଅନ୍ନ ସହିତ ଜୀର୍ଣ୍ଣ କଲେ । ୧୦ । ପୁନର୍ବାର ଗଙ୍ଗାତଟସ୍ଥିତ ପ୍ରମାଣକୋଟି ନାମକ ତୀର୍ଥରେ ସୁସୁପ୍ତ ବୃକୋଦରଙ୍କୁ ବନ୍ଧନ କରି ଗଙ୍ଗା-ନଦୀର ତୋୟରେ ପ୍ରକ୍ଷିପ୍ତ କରି ଗୃହକୁ ପ୍ରତ୍ୟାଗମନ କଲେ । ୧୧ । କୁନ୍ତୀପୁତ୍ର ମହାବାହୁ ଭୀମସେନ ଚେତନାପ୍ରାପ୍ତ ହୋଇ ବନ୍ଧନକୁ ଛେଦନ କରି ବ୍ୟଥାଶୂନ୍ୟ ହୋଇ ଉଠିଲେ । ୧୨ । ବନକରେ ସେ ସୁପ୍ତ ହୋଇ-ଥିବା ବେଳେ ତୀକ୍ଷ୍ଣବିଷ କୃଷ୍ଣସର୍ପଙ୍କଦ୍ୱାରା ଦୁର୍ଯ୍ୟୋଧନ ତାହାଙ୍କୁ ସର୍ବାଙ୍ଗରେ ଦଂଶନ କରାଇଲେ; ତଥାପି ଶତ୍ରୁହନ୍ତା ଭୀମସେନ ପ୍ରାଣତ୍ୟାଗ କଲେ ନାହିଁ । ୧୩ । ପାଣ୍ଡବଙ୍କ ପ୍ରତି ଏତାଦୃଶ ଅତ୍ୟାଚାର ହେବାରୁ ମହାମତି ବିଦୁର ତତ୍ସମୁଦାୟର ପ୍ରତୀକାର ଓ ସେମାନଙ୍କର ରକ୍ଷା ବିଷୟରେ ଅବହିତ ହୋଇଥାନ୍ତି । ୧୪ । ସ୍ୱର୍ଗସ୍ଥ ଇନ୍ଦ୍ର ଯେପରି ସମସ୍ତ ଜୀବଲୋକର ସୁଖାବହ, ତଦ୍ରୂପ ବିଦୁର ପାଣ୍ଡବମାନଙ୍କର ସୁଖାବହ ହୋଇ-ଥିଲେ । ୧୫ । ଗୋପନରେ ଓ ପ୍ରକାଶ୍ୟରେ ବିବିଧ ଉପାୟମାନ ଆଚରଣ କରି ଦୁର୍ଯ୍ୟୋଧନ ଦୈବରକ୍ଷିତ ପାଣ୍ଡବମାନଙ୍କ ବିନାଶ କରିବାକୁ

ଅସମର୍ଥ ହେବାରୁ (ଧୃତରାଷ୍ଟ୍ରଙ୍କ ଆଜ୍ଞାକ୍ରମେ) କର୍ଣ୍ଣ, ଦୁଃଶାସନ ଓ ସଚିବମାନଙ୍କ ମନ୍ତ୍ରଣାନୁସାରେ ପାଣ୍ଡବମାନଙ୍କୁ ଜତୁମୟ ଗୃହକୁ ପ୍ରବେଶ କରାଇଲେ । ୧୭ । ଅମ୍ବିକାସୁତ ରାଜା ଧୃତରାଷ୍ଟ୍ର ପୁତ୍ରଙ୍କର ପ୍ରିୟେଚ୍ଛୁ ଓ ରାଜ୍ୟଭୋଗାଭିଳାଷୀ ହୋଇ ପାଣ୍ଡବମାନଙ୍କୁ ନିର୍ବାସିତ କଲେ । ୧୮ । ସେମାନେ ସମସ୍ତେ ଏକତ୍ର ହୋଇ ହସ୍ତିନାପୁରରୁ ପ୍ରସ୍ଥାନ କଲେ । ପ୍ରସ୍ଥାନକାଳୀନ ବିଦୁର ସେ ମହାତ୍ମାମାନଙ୍କୁ ମନ୍ତ୍ରଣା ପ୍ରଦାନ କଲେ । ୧୯ । ସେହି ହେତୁରୁ ସେମାନେ ନିଶୀଥରେ ଜତୁଗୃହରୁ ବନକୁ ପଳାୟନ କରି ମୁକ୍ତିଲାଭ କଲେ । ତଦନନ୍ତର ସେମାନେ ବାରଣାବତ ନଗରକୁ ଗମନ କଲେ । ୨୦ ।

ମାତାଙ୍କ ସହିତ ପରମ ତପସ୍ୱୀ ମହାତ୍ମା ପାଣ୍ଡବମାନେ ପୁରୋଚନଠାରୁ ଆପଣାକୁ ରକ୍ଷା କରି ଜତୁଗୃହରେ ଧୃତରାଷ୍ଟ୍ରଙ୍କ ଆଜ୍ଞାକ୍ରମେ ବର୍ଷେକାଳ ବାସକରି ରହିଲେ । ବିଦୁରଙ୍କ ପରାମର୍ଶାନୁସାରେ ଗୋଟାଏ ସୁରଙ୍ଗ ନିର୍ମାଣ କରାଇ ଜତୁଗୃହକୁ ଅଗ୍ନି ସଂଦୀପିତ କରି ପୁରୋଚନକୁ ଦଗ୍ଧ କରି ଭୟ ସଂବିଗ୍ନ ହୋଇ ମାତାଙ୍କ ସହିତ ପଳାୟନ କଲେ । ୨୩ । ବନ ମଧ୍ୟରେ ଗୋଟିଏ ନିର୍ଝର ନିକଟରେ ଦାରୁଣ ହିଡ଼ିମ୍ବ ରାକ୍ଷସକୁ ଦେଖିଲେ । ସେହି ରାକ୍ଷସେନ୍ଦ୍ରକୁ ବିନାଶ କରି ଆତ୍ମପ୍ରକାଶ ଭୟରୁ ଓ ଧୃତରାଷ୍ଟ୍ର ପୁତ୍ରଙ୍କର ଭୟରୁ ପାଣ୍ଡବମାନେ ନିଶାକାଳରେ ପଳାୟନ କଲେ । ହିଡ଼ିମ୍ବାରାକ୍ଷସୀ ସହିତ ତାହାଙ୍କର ଭେଟ ହେଲା ଓ ତାହାର ଗର୍ଭରୁ ଭୀମଙ୍କ ଔରସରେ ଘଟୋତ୍କଚନାମକ ପୁତ୍ର ଜାତ ହେଲା । ୨୫ । ତଦନନ୍ତର ନରଶ୍ରେଷ୍ଠ, ବ୍ରତାନୁଷ୍ଠ ବେଦାଧ୍ୟୟନ ସମ୍ପନ୍ନ ପାଣ୍ଡବମାନେ "ଏକଚକ୍ରା" ନଗରୀକୁ ଗମନ କରି ସେଠାରେ ଗୋଟିଏ ବ୍ରାହ୍ମଣର ନିବାସରେ ବ୍ରହ୍ମଚାରୀ ବେଶ ଧାରଣ କରି ମାତାଙ୍କ ସହିତ କିୟତ୍‌କାଳ ବାସକଲେ । ୨୭ । ସେଠାରେ ମହାବାହୁ ବୃକୋଦର "ବକ" ନାମଧାରୀ ମହାବଳ ଗୋଟାଏ କ୍ଷୁଧାର୍ତ୍ତ ପୁରୁଷାଦକୁ ଦେଖିଲେ । ୨୮ । ପୁରୁଷବ୍ୟାଘ୍ର ପାଣ୍ଡବ ଆପଣାର ବାହୁବଳରେ ତାହାକୁ ମଧ୍ୟ ବିନଷ୍ଟ କରି ନଗରବାସୀମାନଙ୍କୁ ପରିସାନ୍ତ୍ୱିତ କଲେ । ୨୯ ।

ଅନନ୍ତର ପାଣ୍ଡବମାନେ ପାଞ୍ଚାଳ ଦେଶରେ ଦ୍ରୌପଦୀ ସ୍ୱୟମ୍ବର ହୋଇଥିବାର ଶ୍ରବଣ କରି ସେଠାରେ ଉପସ୍ଥିତ ହେଲେ ଓ ତାହାଙ୍କୁ ଲାଭ କଲେ । ୩୦ । ଅରିନ୍ଦମ ପାଣ୍ଡବମାନେ ଦ୍ରୌପଦୀଙ୍କୁ ଲାଭ କରି

ପାଞ୍ଚାଳ ଦେଶରେ ଏକବର୍ଷ ସମୟ ବାସ କଲେ; ତଦନନ୍ତର ସମସ୍ତେ ତାହାଙ୍କର ପରିଚୟ ପ୍ରାପ୍ତ ହେବାରୁ ସେମାନେ ହସ୍ତିନାପୁରକୁ ପ୍ରତ୍ୟାଗମନ କଲେ । ୩୧ ।

ରାଜା ଧୃତରାଷ୍ଟ୍ର ଓ ଭୀଷ୍ମ ଦୁହେଁ ପାଣ୍ଡବମାନଙ୍କୁ କହିଲେ, "ହେ ବତ୍ସମାନେ ! କୌଣସି ପ୍ରକାରେ ତୁମ୍ଭ ଭ୍ରାତୃମାନଙ୍କ ମଧ୍ୟରେ ବିରୋଧ ନ ଘଟୁ; ଏହି କାରଣରୁ ଆମ୍ଭେମାନେ ତୁମ୍ଭମାନଙ୍କ ନିମିତ୍ତ ଖାଣ୍ଡବ ପ୍ରସ୍ଥରେ ବାସସ୍ଥାନ ସ୍ଥିର କରିଅଛୁଁ; ଅତଏବ ତୁମ୍ଭେମାନେ ମାତ୍ସର୍ଯ୍ୟଶୂନ୍ୟ ହୋଇ ବାସକରିବା କାରଣ ନାନାବିଧ ଜନପଦଯୁକ୍ତ ଓ ରାଜପଥରେ ବିଭକ୍ତ ଖାଣ୍ଡବପ୍ରସ୍ଥକୁ ପ୍ରସ୍ଥାନ କର ।" ସେ ଦୁହିଙ୍କ ବଚନ ଘେନି ପାଣ୍ଡବମାନେ ସମସ୍ତ ସୁହୃଜ୍ଜନ ପରିବୃତ ହୋଇ ଆପଣାର ରତ୍ନାଦି ସହିତ ଖାଣ୍ଡବପ୍ରସ୍ଥ ନଗରକୁ ଗମନ କଲେ । ସେଠାରେ ସେମାନେ ଅନେକ ସମ୍ବତ୍ସର ବାସ-କଲେ । ୩୫ । ଶସ୍ତ୍ର ପ୍ରତାପଦ୍ୱାରା ସେମାନେ ଅନ୍ୟାନ୍ୟ ମହୀପତିମାନଙ୍କୁ ନିଜର ବଶୀଭୂତ କଲେ । ଏହି ପ୍ରକାରେ ଧାର୍ମିକ ଓ ସତ୍ୟବ୍ରତ ପରାୟଣ, ପ୍ରମାଦବିହୀନ, କ୍ଷମାଶୀଳ ପାଣ୍ଡବମାନେ ବହୁସଂଖ୍ୟକ ଶତ୍ରୁମାନଙ୍କୁ ପରାଜିତ କଲେ । ମହାଯଶା ଭୀମସେନ ପ୍ରାଚୀଦିଗକୁ ଜୟକଲେ । ୩୭ ।

ବୀର ଅର୍ଜ୍ଜୁନ ଉତ୍ତର ଦିଗକୁ ଜୟ କଲେ । ନକୁଳ ପଶ୍ଚିମ ଦିଗକୁ ଓ ଶତ୍ରୁବୀରସଂହାରକାରୀ ସହଦେବ ଦକ୍ଷିଣ ଦିଗକୁ ଜୟ କଲେ । ୩୮ । ଏହିରୂପେ ସେମାନେ ସମସ୍ତ ପୃଥିବୀକୁ ବଶୀଭୂତ କଲେ । ଯଥାର୍ଥ ବିକ୍ରମ-ଶାଳୀ, ସୂର୍ଯ୍ୟସମତେଜସ୍ୱୀ, ପଞ୍ଚପାଣ୍ଡବ ଓ ସୂର୍ଯ୍ୟ ଏରୂପ ଛଅଟି ସୂର୍ଯ୍ୟ ପୃଥିବୀରେ ଦୃଶ୍ୟ ହେଲେ । ତଦନନ୍ତର କୌଣସି ନିମିତ୍ତ ଅବଲମ୍ବନ କରି ତେଜସ୍ୱୀ ଧର୍ମରାଜ ଯୁଧିଷ୍ଠିର ଆପଣା ପ୍ରାଣରୁ ଅଧିକ ଭ୍ରାତା ସବ୍ୟସାଚୀଙ୍କୁ ବନକୁ ପ୍ରେରଣ କଲେ । ୪୧ । ପୁରୁଷବ୍ୟାଘ୍ର, ସ୍ଥିରମତି, ଗୁଣଶାଳୀ ଅର୍ଜ୍ଜୁନ ପୂର୍ଣ୍ଣ ଏକବର୍ଷ ଓ ଏକମାସ ବନରେ ନିବାସ କଲେ । ୪୨ । ତନ୍ମଧ୍ୟରେ ଏକଦା ବିଭତ୍ସୁ ଦ୍ୱାରକାକୁ ହୃଷୀକେଶଙ୍କ ନିକଟକୁ ଗମନ କରିଥିଲେ । ସେଠାରେ ଅର୍ଜ୍ଜୁନ ବାସୁଦେବଙ୍କର ଅନୁଜା, ଭଦ୍ରଭାଷିଣୀ, କମଳନୟନା ସୁଭଦ୍ରାଙ୍କୁ ଲଭ କଲେ । ଇନ୍ଦ୍ରଙ୍କର ଶଚୀ ଓ କୃଷ୍ଣଙ୍କର ଲକ୍ଷ୍ମୀ ତୁଲ୍ୟ ସୁଭଦ୍ରା ଅର୍ଜ୍ଜୁନଙ୍କଠାରେ ପ୍ରୀତିଯୁକ୍ତ ହେଲେ । ହେ ନୃପୋତ୍ତମ ! ତଦନନ୍ତର କୁନ୍ତୀସୁତ ବୀଭତ୍ସୁ ବାସୁଦେବଙ୍କୁ ଘେନି ଖାଣ୍ଡବ ବନରେ ହବ୍ୟବାହନଙ୍କୁ ପରିତୃପ୍ତ କଲେ । ବ୍ୟବସାୟର ସହାୟ ଘେନି ବିଷ୍ଣୁଙ୍କ

ଶତ୍ରୁବଧ ଯେପରି ସୁଖକର ହୁଏ, ତଦ୍ରୂପ ବାସୁଦେବଙ୍କ ସହିତରେ ଅର୍ଜ୍ଜୁନଙ୍କର କୌଣସି କର୍ମରେ ଶ୍ରମ ବୋଧ ହୁଏ ନାହିଁ । ଅଗ୍ନି ତୃପ୍ତ ହୋଇ ଅର୍ଜ୍ଜୁନଙ୍କୁ ଗାଣ୍ଡୀବ ନାମକ ଉତ୍କୃଷ୍ଟ ଧନୁ, ଦୁଇଗୋଟି ଅକ୍ଷୟ ତୂଣୀର ଓ କପିଧ୍ୱଜ ରଥକୁ ପ୍ରଦାନ କଲେ । ଯେଉଁ ଖାଣ୍ଡବରେ ଶାଭତ୍ସୁ ମହାସୁର ମୟଙ୍କୁ ମୁକ୍ତ କଲେ (୪୮) ସେହି ମୟ ନାମକ ଅସୁର ସର୍ବରତ୍ନ-ଖଚିତ ଦିବ୍ୟସଭା ନିର୍ମାଣ କଲେ, ଯହିଁରେ ଅତିଶୟ ଦୁର୍ମତି ଓ ମନ୍ଦ ଚରିତ ଦୁର୍ଯ୍ୟୋଧନ ଲୋଭ କଲେ । ୪୯ । ତଦନନ୍ତର ସେ ସୁବଳପୁତ୍ର ଶକୁନିଙ୍କଦ୍ୱାରା ଯୁଧିଷ୍ଠିରଙ୍କୁ ପ୍ରବଞ୍ଚିତ କରି ଚତୁର୍ଦ୍ଦଶ ବର୍ଷର ବନକୁ ପ୍ରସ୍ଥାପନ କଲେ । ୫୦ । ତନ୍ମଧ୍ୟରେ ଏକବର୍ଷ ଅଜ୍ଞାତ ବନବାସ ଓ ତ୍ରୟୋଦଶ ବର୍ଷ ରାଜ୍ୟମଧ୍ୟରେ ବନବାସ ।

ହେ ମହାରାଜ ! ଚତୁର୍ଦ୍ଦଶବର୍ଷ ଉପସ୍ଥିତ ହୁଅନ୍ତେ ପାଣ୍ଡବମାନେ ସ୍ୱକୀୟ ସମ୍ପତ୍ତି ଯାଚ୍ଞା କଲେ କିନ୍ତୁ ଲାଭ କଲେ ନାହିଁ, ଏହି କାରଣରୁ ଯୁଦ୍ଧ ପ୍ରବର୍ତ୍ତିଲା । ପାଣ୍ଡବମାନେ କ୍ଷତ୍ରିୟଙ୍କୁ ବିନାଶ କରି ଓ ଦୁର୍ଯ୍ୟୋଧନ ନୃପଙ୍କୁ ନିହତ କରି ନଷ୍ଟ ପ୍ରାୟ ରାଜ୍ୟକୁ ପ୍ରାପ୍ତ ହେଲେ । ହେ ବିଜୟିବର ! ଏହି ପ୍ରକାରେ ଧର୍ମାତ୍ମା ପାଣ୍ଡବମାନଙ୍କର ପୂର୍ବବୃତ୍ତ, ରାଜ୍ୟ ବିନାଶାର୍ଥ ଯୁଦ୍ଧ ଓ ଜୟ ଘଟିଥିଲା । ୫୩ ।

---

## ଅଧ୍ୟାୟ—୭୨

ଜନମେଜୟ ବୋଇଲେ, ହେ ଦ୍ୱିଜୋତ୍ତମ ! ଆପଣ ସଂକ୍ଷେପରେ ମହାଭାରତୀୟ ଆଖ୍ୟାନ ଓ କୁରୁପାଣ୍ଡବଙ୍କର ମହତ୍ଚରିତ କଥନ କଲେ । ହେ ତପୋଧନ ! ଏବେ ସେହି ବିଚିତ୍ର ଅର୍ଥଯୁକ୍ତ କଥାକୁ ସବିସ୍ତର ଶୁଣିବାକୁ ଆମ୍ଭର ଅତିବ କୌତୂହଳ ଜାତ ହୋଇଅଛି; ଆପଣ କହିବା ହେଉନ୍ତୁ । ୨ । ଆମ୍ଭେ ପୂର୍ବପୁରୁଷଙ୍କର କଥା ଶ୍ରବଣ କରି ତୃପ୍ତ ହେଉ-ନାହୁଁ, ଆପଣ ସବିସ୍ତର ସେହି କଥାକୁ ପୁନର୍ବାର କହିବା ହେଉନ୍ତୁ । ୩ । ପାଣ୍ଡବମାନେ ଧର୍ମପରାୟଣ ହୋଇ ସୁଦ୍ଧା ଅବଧଲୋକଙ୍କୁ ବଧ କରି ଲୋକରେ ଯେ ପ୍ରଶଂସିତ ହୋଇଅଛନ୍ତି, ଏହାର କାରଣ ସାମାନ୍ୟ ନୁହଇ । ୪ । କି ହେତୁରୁ ସେହି ନିରପରାଧ ନରଶ୍ରେଷ୍ଠ ପାଣ୍ଡବମାନେ

କ୍ଷମତାଶାଳୀ ହୋଇ ସୁଦ୍ଧା ଦୁରାତ୍ମାମାନଙ୍କୁ କ୍ଷମା କଲେ ? ୫ । ହେ ଦ୍ୱିଜୋତ୍ତମ ! ବୃକୋଦରଙ୍କର ଦଶସହସ୍ର କରୀର ବଳ ଥାଇ ସୁଦ୍ଧା ଏତାଦୃଶ କ୍ଲେଶ ପ୍ରାପ୍ତ ହୋଇ ଆପଣାର କ୍ରୋଧକୁ ସମ୍ବରଣ କଲେ ? ୬ । କି ହେତୁରୁ ଦ୍ରୁପଦରାଜସୁତା କୃଷ୍ଣାସତୀ, ଓ ଦୁରାତ୍ମାଙ୍କୁ କ୍ରୋଧ ନେତ୍ରରେ ଦଗ୍ଧ କରିବାର ସମର୍ଥ ଥାଇ ସୁଦ୍ଧା ଧୃତରାଷ୍ଟ୍ର ପୁତ୍ରଙ୍କୁ କ୍ରୋଧ ଦୃଷ୍ଟିଦ୍ୱାରା ଦହନ ନ କଲେ ? ୭ । ଧୃତରାଷ୍ଟ୍ରପୁତ୍ରଙ୍କଦ୍ୱାରା କ୍ଳିଷ୍ଟ ହୋଇ ସୁଦ୍ଧା ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ କି ହେତୁରୁ ଦ୍ୟୂତକ୍ରୀଡ଼ାସକ୍ତ ଯୁଧିଷ୍ଠିରଙ୍କୁ ଅନୁଗତ ହେଲେ ? ୮ । ଧାର୍ମିକଶ୍ରେଷ୍ଠ ଧର୍ମଙ୍କ ପୁତ୍ର ଯୁଧିଷ୍ଠିର ତାଦୃଶ କ୍ଲେଶ ସହିବାର ଅଯୋଗ୍ୟ ହୋଇ ସୁଦ୍ଧା କି କାରଣରୁ ସେହି ସବୁ କ୍ଲେଶ ସହ୍ୟ କଲେ ? ୯ । ଏକାକୀ ଧନଞ୍ଜୟ କୃଷ୍ଣଙ୍କୁ ସାରଥି କରି କି ପ୍ରକାରେ ଏତେ ସୈନ୍ୟଙ୍କୁ ଯମସଦନକୁ ପ୍ରେରଣ କଲେ ? ୧୦ । ହେ ତପୋଧନ ! ଆପଣ ଏହା ସବୁ ମତେ ବୋଲିବା ହେଉନ୍ତୁ; ସେହି ମହାରଥି-ମାନେ ଯାହା ଯାହା କରିଥିଲେ, ତାହା ଅବିକଳ ଆପଣ ବୋଲନ୍ତୁ । ୧୧ ।

ବୈଶମ୍ପାୟନ ବୋଇଲେ, ମହାରାଜ ! କୃଷ୍ଣଦ୍ୱୈପାୟନଙ୍କ କଥିତ, ଅତି ବିସ୍ତୀର୍ଣ୍ଣ ଏହି ପବିତ୍ର ଆଖ୍ୟାନ ଆନୁପୂର୍ବିକ କୀର୍ତ୍ତନ କରିବାକୁ ହେବ, ଅତଏବ ଆପଣ ସମସ୍ତ ନିରୂପଣ କରିବା ହେଉନ୍ତୁ । ୧୨ । ଅମିତତେଜା, ସର୍ବଲୋକପୂଜିତ, ମହାତ୍ମା ମହର୍ଷି ବ୍ୟାସଙ୍କର ସମୁଦାୟ ମତ ଆମ୍ଭେ ପ୍ରବର୍ତ୍ତମାୟ କରିବୁ । ୧୩ । ଅପରିମିତ ଓଜଃ ସମ୍ପନ୍ନ ସତ୍ୟବତୀଙ୍କ ଆତ୍ମଜ, ପୁଣ୍ୟବନ୍ତ ଲୋକଙ୍କ ଶ୍ରବଣାର୍ଥ ଏହି ଶତସହସ୍ର ଶ୍ଳୋକ ରଚନା କରି-ଅଛନ୍ତି । ୧୪ । ଯେଉଁ ବିଦ୍ୱାନ୍ ଏହାକୁ ପରକୁ ଶୁଣାନ୍ତି ଓ ଯେଉଁ ନର ଶ୍ରବଣ କରନ୍ତି, ସେମାନେ ସମସ୍ତେ ବ୍ରହ୍ମଲୋକ ପ୍ରାପ୍ତ ହୋଇ ଦେବ-ତୁଲ୍ୟ ହୁଅନ୍ତି । ୧୫ । ଏହି ପୁରାଣ ବେଦମାନଙ୍କ ତୁଲ୍ୟ, ପବିତ୍ର ଓ ଉତ୍ତମ, ଶ୍ରବଣୀୟ ମଧ୍ୟରେ ଉତ୍ତମ ଓ ଋଷିମାନଙ୍କର ପୂଜିତ ଅଟେ । ୧୬ । ଏହି ପବିତ୍ର ଇତିହାସରେ ଅର୍ଥ, କାମ ଓ ମୋକ୍ଷ ବିଶେଷରୂପେ ଉପଦିଷ୍ଟ ହୋଇଅଛି । ୧୭ ।

ବିଦ୍ୱାନ୍ ବ୍ୟକ୍ତିମାନେ, ଅକ୍ଷୁଦ୍ର, ଦାନଶୀଳ, ସତ୍ୟବ୍ରତ ଓ ଅନାସ୍ତିକ ଲୋକଙ୍କୁ ସମସ୍ତ ବେଦ ସ୍ୱରୂପ କୃଷ୍ଣଦ୍ୱୈପାୟନଙ୍କର ଏହି ଉପାଖ୍ୟାନକୁ ଶ୍ରବଣ କରାଇ ଅର୍ଥଲାଭ କରନ୍ତି । ୧୮ । ଏହି ଇତିହାସ ଶ୍ରବଣରେ ଭ୍ରୂଣହତ୍ୟାପାପ ନଷ୍ଟ ହୁଅଇ; ତହିଁରେ ସନ୍ଦେହ ନାହିଁ । ଚନ୍ଦ୍ର ଯେମନ୍ତ ରାହୁମୁଖରୁ ମୁକ୍ତ ହୁଅନ୍ତି, ତଦ୍ରୂପ ଅତି ଦାରୁଣ ପୁରୁଷ ସୁଦ୍ଧା ଏହି

ଇତିହାସକୁ ଶ୍ରବଣ କରି ସର୍ବପାପରୁ ମୁକ୍ତ ହୁଅନ୍ତି । ଏହି ଇତିହାସର ନାମ ଜୟ; ବିଜିଗୀଷୁ ବ୍ୟକ୍ତିଙ୍କର ଏହା ଶ୍ରୋତବ୍ୟ । ୧୦ । ରାଜାମାନେ ଏହାକୁ ଶ୍ରବଣ କଲେ ମହୀକୁ ଜୟ କରନ୍ତି, ଶତ୍ରୁମାନଙ୍କୁ ପରାଜିତ କରନ୍ତି । ଏତତ୍ପାଠ ଅଥବା ଶ୍ରବଣରେ ପୁତ୍ରଲାଭ ହୁଅଇ ଓ ମହତ୍ ମଙ୍ଗଳ ସାଧିତ ହୁଅଇ । ୨୧ । ଯୁବରାଜ ଜନମେଜୟଙ୍କ ସହିତ ଏହି ଇତିହାସ ବହୁବାର ଶ୍ରବଣ କଲେ ବୀର ପୁତ୍ରକୁ ଓ ରାଜ୍ୟଭାଗିନୀ କନ୍ୟାକୁ ଜନ୍ମ କରନ୍ତି । ୨୨ । ଅପରିମିତବୁଦ୍ଧି ବ୍ୟାସଦେବଙ୍କ ପ୍ରୋକ୍ତ ଏହି ଉପାଖ୍ୟାନ ପବିତ୍ର ଧର୍ମ-ଶାସ୍ତ୍ର, ଉତ୍କୃଷ୍ଟ ଅର୍ଥଶାସ୍ତ୍ର, ଅଥଚ ମୋକ୍ଷଶାସ୍ତ୍ର ଅଟଇ । ୨୩ । ସମ୍ପ୍ରତି କେହି କେହି ଏହି ମହାଭାରତକୁ କୀର୍ତ୍ତନ କରୁଅଛନ୍ତି ଓ ଭବିଷ୍ୟତରେ ଅପର ଅନେକ ଲୋକେ ଶ୍ରବଣ କରିବେ । ୨୪ । ପୁତ୍ରମାନେ ଏହାକୁ ଶ୍ରବଣ କଲେ ପିତାର ଶୁଶ୍ରୂଷା କରନ୍ତି, ପ୍ରେଷ୍ୟ ଅର୍ଥାତ୍ ଦୂତମାନେ ପ୍ରିୟକାରୀ ହୁଅନ୍ତି । ୨୪ । ଯେଉଁ ନର ଏହାକୁ ଶ୍ରବଣ କରେ ସେ ଶାରୀରିକ, ବାଚିକ ଓ ମାନସିକ ପାପମାନଙ୍କୁ ଶୀଘ୍ର ସମ୍ୟକ୍‌ରୂପେ ତ୍ୟାଗ କରଇ । ୨୫ । ଯେଉଁମାନେ ଭରତକୁଳର ଜନ୍ମବୃତ୍ତାନ୍ତ ଅସୂୟାଶୂନ୍ୟ ଚିତ୍ତରେ ଶ୍ରବଣ କରନ୍ତି, ସେମାନଙ୍କର କୌଣସିଠାରେ ବ୍ୟାଧିଭୟ ଓ ପରଲୋକଭୟ ଥାଏ ନାହିଁ । ୨୬ । ମହାତ୍ମା ପାଣ୍ଡବମାନଙ୍କର ଓ ପ୍ରଚୁର ସମ୍ପତ୍ତିଶାଳୀ, ଅମିତତେଜା, ସର୍ବବିଦ୍ୟାସମ୍ପନ୍ନ ବିଖ୍ୟାତକର୍ମା ଅପରାପର କ୍ଷତ୍ରିୟମାନଙ୍କର କୀର୍ତ୍ତି ପ୍ରକାଶ କରିବା ମାନସରେ ପୁଣ୍ୟଚିକୀର୍ଷୁ ମହର୍ଷି କୃଷ୍ଣଦ୍ୱୈପାୟନ, ଯଶସ୍କର, ଆୟୁଷ୍କର ଓ ପୁଣ୍ୟଜନକ ଅଥଚ ସ୍ୱର୍ଗ ଓ ଅର୍ଥର ସାଧନ ଏହି ପୁରାଣକୁ ରଚନା କରିଅଛନ୍ତି ।

ଯେ ପୁଣ୍ୟ କରିବା ନିମିତ୍ତ ଇହଲୋକରେ ପବିତ୍ର ବ୍ରାହ୍ମଣମାନଙ୍କୁ ଏହି ମହାଭାରତ ଶ୍ରବଣ କରାନ୍ତି, ତାହାଙ୍କର ଧର୍ମ ଅବିନାଶୀ ହୋଇଥାଏ । ଯେ ଶୁଚି ହୋଇ କୁରୁମାନଙ୍କର ପ୍ରଥିତ ବଂଶଚରିତକୁ ସତତ କୀର୍ତ୍ତନ କରନ୍ତି, ତାହାଙ୍କର ବଂଶ ବିପୁଳ ହୁଅଇ ଓ ସେ ଲୋକରେ ଅତିଶୟ ପୂଜ୍ୟ ହୁଅନ୍ତି । ଯେଉଁ ବ୍ରାହ୍ମଣ ବ୍ରତାବଲମ୍ବନ କରି ଏହି ପୁଣ୍ୟ ଭାରତକୁ ବର୍ଷାକାଳରେ ଚାରିମାସ ଅଧ୍ୟୟନ କରନ୍ତି, ସେ ସର୍ବପାପରୁ ମୁକ୍ତ ହୁଅନ୍ତି । ଯେ ଭାରତ ପାଠ କରନ୍ତି, ତାହାଙ୍କୁ "ବେଦପାରଗ" ବୋଲାଯାଏ । ୩୨ । ଯହିଁରେ ଦେବତାଗଣ, ରାଜର୍ଷିଗଣ ଓ ଧୂତପାପ ପୁଣ୍ୟବନ୍ତ ବ୍ରହ୍ମର୍ଷିମାନେ କୀର୍ତ୍ତିତ ହୋଇଅଛନ୍ତି; ଯହିଁରେ କେଶବଙ୍କର କଥା ବର୍ଣ୍ଣିତ ହୋଇଅଛି; ଯହିଁରେ ଭଗବାନ୍ ଦେବରାଜାଙ୍କର ଓ ଦେବୀଙ୍କର ମାହାତ୍ମ୍ୟ କୀର୍ତ୍ତିତ

ହୋଇଅଛି; ଯହିଁରେ ଷାଣ୍ମାତୁର କାର୍ତ୍ତିକଙ୍କର ଜନ୍ମବୃତ୍ତାନ୍ତ କଥିତ ହୋଇ-ଅଛି; ଯହିଁରେ ବ୍ରାହ୍ମଣଙ୍କର ଓ ଗୋଗଣର ମାହାତ୍ମ୍ୟ ବର୍ଣ୍ଣିତ ଅଛି, ସର୍ବ-ଦେବ ତୁଲ୍ୟ ସେହି ମହାଭାରତକୁ ସମସ୍ତ ଧର୍ମବୁଦ୍ଧି ବ୍ୟକ୍ତିଙ୍କର ଶ୍ରବଣ କରିବାର ବିଧେୟ । ୩୫ । ଯେଉଁ ବ୍ୟକ୍ତି ଏହି ଗ୍ରନ୍ଥକୁ ପର୍ବମାନଙ୍କରେ ବ୍ରାହ୍ମଣଙ୍କୁ ଶ୍ରବଣ କରାନ୍ତି, ସେ ନିଷ୍ପାପ ହୋଇ ସ୍ୱର୍ଗକୁ ଜୟ କରି ନିତ୍ୟ ବ୍ରହ୍ମଲୋକ ଲାଭ କରନ୍ତି । ୩୬ । ଶ୍ରାଦ୍ଧ କାଳରେ ଯେ ଅନ୍ତତଃ ଏଥିରୁ ଏକ ଶ୍ଳୋକର ପାଦେ ହେଲେହେଁ ବ୍ରାହ୍ମଣଙ୍କୁ ଶୁଣାନ୍ତି, ତାହାଙ୍କର ସେହି ଶ୍ରାଦ୍ଧ ପିତୃଲୋକଙ୍କର ଅକ୍ଷୟ ତୃପ୍ତିକାରକ ହୁଏଇ । ୩୭ । ମନୁଷ୍ୟ ଦିବସରେ ଇନ୍ଦ୍ରିୟ ବା ମନଦ୍ୱାରା ଜ୍ଞାନତଃ ବା ଅଜ୍ଞାନତଃ ଯେଉଁ ପାପ କରେ, ତାହା ମହାଭାରତ ଶ୍ରବଣମାତ୍ର ବିଲୀନ ହୁଏଇ । ୩୮ ।

ଏଥିରେ ଭରତକୁଳର ମହତ୍ ଜନ୍ମ ବୃତ୍ତାନ୍ତ କୀର୍ତ୍ତିତ ହୋଇଅଛି ବୋଲି ଏହାର ନାମ "ମହାଭାରତ" ହେଲା । ୩୯ । ଯେ ଏହି ମହାଭାରତ ଶବ୍ଦର ନିରୁକ୍ତ ଅର୍ଥ ଜାଣନ୍ତି ସେ ସର୍ବପାପରୁ ମୁକ୍ତ ହୁଅନ୍ତି । ଏଥିରେ ଭରତ କୁଳର ପରମାଦ୍ଭୁତ ଇତିହାସ କଥିତ ହୋଇଅଛି । ଏହି ହେତୁରୁ ଏହାକୁ କୀର୍ତ୍ତନ କଲେ ଲୋକେ ମହତ୍ ପାପରୁ ମୁକ୍ତ ହୁଅନ୍ତି । ମହର୍ଷି କୃଷ୍ଣଦ୍ୱୈପାୟନ ତପସ୍ୟା ଓ ନିୟମ ଆଚରଣ କରି ନିତ୍ୟ ପ୍ରାତରୁତ୍ଥାନ-ପୂର୍ବକ ଶୁଚି ହୋଇ ତିନି ବର୍ଷରେ ଏହି ମହାଭାରତକୁ ଆଦ୍ୟରୁ ଶେଷ କରି ଅଛନ୍ତି । ୪୨ । ଏହି ହେତୁରୁ ବ୍ରାହ୍ମଣମାନେ ମଧ୍ୟ ନିୟମ ସଂଯୁକ୍ତ ହୋଇ କୃଷ୍ଣଦ୍ୱୈପାୟନଙ୍କ ପ୍ରୋକ୍ତ ଏହି ପବିତ୍ର ଭାରତୀୟ କଥାକୁ ଶ୍ରବଣ କରିବେ ଅଥବା ଅନ୍ୟକୁ ଶ୍ରବଣ କରାଇବେ । ଏଥିରେ ସେମାନେ ନିଷିଦ୍ଧ କର୍ମର ଅନୁଷ୍ଠାନ ଓ ବିହିତ କର୍ମର ଅନୁଷ୍ଠାନଜନ୍ୟ ଦୋଷରେ ଲିପ୍ତ ଥିଲେ ହେଁ ତାହାଙ୍କୁ କ୍ଳେଶ ଭୋଗ କରିବାକୁ ହୁଏଇ ନାହିଁ । ୪୪ ।

ଯେଉଁ ନର ଧର୍ମକାମନାରେ ଏହି ଗ୍ରନ୍ଥକୁ ସମୁଦାୟ ଶ୍ରବଣ କରନ୍ତି, ତାହାଙ୍କର କାମନା ସିଦ୍ଧି ହୁଏଇ । ୪୫ । ଏହି ମହା ପବିତ୍ର ଇତିହାସକୁ ଶ୍ରବଣ କଲେ ଯେରୂପ ସନ୍ତୋଷ ଲାଭ ହୁଏଇ, ସ୍ୱର୍ଗଲାଭରେ ସୁଦ୍ଧା ତଦ୍ରୂପ ତୁଷ୍ଟି ହୁଏଇ ନାହିଁ । ୪୬ । ଯେଉଁ ପୁଣ୍ୟଶୀଳ ନର ଶ୍ରଦ୍ଧାନ୍ୱିତ ହୋଇ ଏହି ଅଦ୍ଭୁତ ଆଖ୍ୟାନକୁ ଶୁଣେ ଅଥବା ଶୁଣାଏ, ସେ ରାଜସୂୟ ଓ ଅଶ୍ୱମେଧ ଯଜ୍ଞର ଫଳପ୍ରାପ୍ତ ହୁଏଇ । ୪୭ । ଯେପରି ଭଗବାନ ସମୁଦ୍ର ଓ ମହାଗିରି ମେରୁ ରତ୍ନନିଧି ବୋଲି ବିଖ୍ୟାତ ହୋଇଅଛି, ସେହିପରି ଏହି

ମହାଭାରତ ମଧ୍ୟ ରତ୍ନନିଧି । ୪୮ । ଏହି ମହାଭାରତ ବେଦତୁଲ୍ୟ ଅତି ପବିତ୍ର, ଉତ୍କୃଷ୍ଟ, ଶ୍ରବଣଯୋଗ୍ୟ, ଶ୍ରୁତିସୁଖାବହ, ପବିତ୍ରକାରୀ ଓ ଶୀଳବର୍ଦ୍ଧନ ଅଟଇ । ୪୯ । ହେ ରାଜନ୍ ! ଯେ ଯାଚକକୁ ଏହି ମହାଭାରତ ପ୍ରଦାନ କରନ୍ତି, ତାହାଙ୍କର ସସାଗରା ପୃଥିବୀ ଦାନ କରିବାର ଫଳ ଲାଭ ହୁଅଇ । ୫୦ । ହେ ପାପରହିତ ! ପୁଣ୍ୟ ଓ ବିଜୟ୍ନ ନିମିତ୍ତ, ହର୍ଷକାରୀ ଏହି ସମସ୍ତ ଦିବ୍ୟ କଥାକୁ ଆମ୍ଭେ କହୁଅଛୁ, ଶ୍ରବଣ କର । ୫୧ ।

ମହର୍ଷି କୃଷ୍ଣଦ୍ୱୈପାୟନ ନିରନ୍ତର ଉଦ୍ୟମଶାଳୀ ହୋଇ ଏହି ଅଦ୍ଭୁତ ମହାଭାରତ ଆଖ୍ୟାନକୁ ତିନି ବର୍ଷରେ ପ୍ରଣୟନ କରିଅଛନ୍ତି ।୫୨। ହେ ଭରତର୍ଷଭ ! ଧର୍ମ, ଅର୍ଥ, କାମ ଓ ମୋକ୍ଷ ବିଷୟରେ ଯାହା ଏଥିରେ ବର୍ଣ୍ଣିତ ଅଛି, ତାହା ଅନ୍ୟତ୍ର ନାହିଁ ଓ ଏଥିରେ ଯାହା ନାହିଁ, ତାହା ଆଉ କେଉଁଠାରେ ସୁଦ୍ଧା ନାହିଁ । ୫୩ ।

---

## ଅଧ୍ୟାୟ—୬୩

ବୈଶମ୍ପାୟନ ବୋଇଲେ—ମହାରାଜ ! "ଉପରିଚର" ନାମଧେୟ ଗୋଟିଏ ନରପତି ଥିଲେ । ସେ ସର୍ବଦା ମୃଗୟାରେ ଅନୁରକ୍ତ । ୧ । ଇନ୍ଦ୍ରଙ୍କ ଉପଦେଶକ୍ରମେ ପୌରବ ତନୟ ମହୀପତି ବସୁ * "ଚେଦି" ନାମକ ରମଣୀୟ ଦେଶକୁ ଗ୍ରହଣ କରିଥିଲେ । ୨ । ବସୁ ଅତ୍ୟନ୍ତ ତପସ୍ୱୀ ଥିବାରୁ ଶସ୍ତ୍ରାଦି ପରିତ୍ୟାଗ ପୂର୍ବକ ଆଶ୍ରମରେ ବସତି କଲେ । ଇନ୍ଦ୍ରାଦି ସମସ୍ତ ଦେବଗଣ ରାଜାଙ୍କ ନିକଟରେ ଉପସ୍ଥିତ ହୋଇ ତପସ୍ୟାଦ୍ୱାରା ସେ ରାଜା ଇନ୍ଦ୍ରତ୍ୱ ଲାଭ କରିବାର ଆଶଙ୍କା ଚିନ୍ତା କରି ସାନ୍ତ୍ୱନା ବାକ୍ୟଦ୍ୱାରା ତାହାଙ୍କୁ ତପସ୍ୟାରୁ ବିରତ କଲେ । ୪ ।

ଦେବତାମାନେ ବୋଇଲେ, ହେ ପୃଥିବୀପତେ ! ଯହିଁରେ ଏହି ଧର୍ମ ପୃଥିବୀରେ ସଙ୍କୀର୍ଣ୍ଣ ନ ହୁଏ, ତହିଁରେ ଆମ୍ଭର ଇଚ୍ଛା; ଅତଏବ ଆପଣ ଧର୍ମ ପ୍ରତିପାଳନ କରନ୍ତୁ । ତାହାହେଲେ ପୃଥିବୀର ସମସ୍ତ ଲୋକେ ଧର୍ମ ପ୍ରତିପାଳନ କରିବେ । ୫ । ଇନ୍ଦ୍ର କହିଲେ, ହେ ନରାଧିପ ! ତୁମ୍ଭେ ସର୍ବଦା ଉଦ୍ୟମୀ ଓ ମନୋଯୋଗୀ ହୋଇ ଏହି ଲୋକରେ ଧର୍ମ ପ୍ରତିପାଳନ କର,

---

* ବସୁ ଓ ଉପରିଚର ଏପରି ତାଙ୍କର ଦୁଇଗୋଟି ନାମ ।

ତାହାହେଲେ ତୁମ୍ଭେ ଧର୍ମଯୁକ୍ତ ହୋଇ ଅନନ୍ତକାଳ ପୁଣ୍ୟ ଲୋକମାନଙ୍କୁ ପ୍ରାପ୍ତ ହେବ । ୬ । ଆମ୍ଭେ ସ୍ୱର୍ଗସ୍ଥ ହୋଇ ଭୂମିସ୍ଥିତ ତୁମ୍ଭର ନିତ୍ୟସଖା ଓ ପ୍ରିୟ ହୋଇଥିବୁ । ପୃଥିବୀରେ ଯେଉଁ ଦେଶ ରମ୍ୟ, ତୁମ୍ଭେ ସେଠାରେ ବାସ କର । ୭ । ଏହି ଚେଦି ଦେଶ ପ୍ରଭୂତ ଧନ ଧାନ୍ୟବାନ୍, ପବିତ୍ର ଓ ପଶୁ-ସଙ୍କୁଳର ହିତ ସାଧକ ସ୍ଥାନ ଅଟେ । ସ୍ୱର୍ଗତୁଲ୍ୟ ରମଣୀୟ, ପରମରମଣୀୟ, ଉର୍ବରତାଦି ଭୂମିଗୁଣବିଶିଷ୍ଟ, ଅଥଚ ଧନରତ୍ନଯୁକ୍ତ ଥିବାରୁ ଅର୍ଥବନ୍ତ ହୋଇଅଛି । ଏହି ଦେଶର ଭୂମି ଧନରେ ପରିପୂର୍ଣ୍ଣ; ଅତଏବ ହେ ଚେଦିପତି ! ତୁମ୍ଭେ ଏହି ଦେଶରେ ବାସ କର । ୯ । ଏଥିର ଜନପଦ ଧର୍ମଶୀଳ ଓ ସାଧୁଜନମାନେ ସଦା ସନ୍ତୁଷ୍ଟ । ଏଠାରେ ପରିହାସରେ ସୁଦ୍ଧା କେହି ମିଥ୍ୟା କମ୍ବା ପ୍ରଳାପ କରନ୍ତି ନାହିଁ, ଅନ୍ୟ ସମସ୍ତ କଥା କି ବୋଲିବା । ୧୦ । ପୁତ୍ରମାନେ ପିତାଙ୍କଠାରୁ ବିଭକ୍ତ ହୁଅନ୍ତି ନାହିଁ ଓ ସର୍ବଦା ଗୁରୁ ଶୁଶ୍ରୂଷାରେ ରତ ଥାନ୍ତି । ଏ ଦେଶରେ କେହି କୃଷକ ବଳୀବର୍ଦ୍ଧମାନଙ୍କୁ ଶକଟରେ ଯୋଜନା କରନ୍ତି ନାହିଁ କି ସେମାନଙ୍କୁ ପୃଷ୍ଠରେ ବହନ୍ତି ନାହିଁ । ୧୧ ।

ହେ ମାନଦ ! ଏହି ଚେଦି ଦେଶରେ ସର୍ବ ବର୍ଣ୍ଣର ଲୋକମାନେ ସ୍ୱଧର୍ମରେ ସଦା ରତ ଥାନ୍ତି । ଲୋକତ୍ରୟରେ ଯାହା ଯେଉଁଠାରେ ଘଟୁଅଛି, ତାହା ଆପଣଙ୍କୁ ଅବିଦିତ ନାହିଁ । ଦେବଭୋଗ୍ୟ, ସ୍ଫଟିକମୟ ଆକାଶଗାମୀ ଏହି ମହତ୍ ଓ ଦିବ୍ୟ ବିମାନକୁ ଆପଣଙ୍କୁ ଆମ୍ଭେ ପ୍ରଦାନ କଲୁଁ ; ଏହି ବିମାନ ଆପଣଙ୍କ ନିକଟରେ ସର୍ବଦା ଉପସ୍ଥିତ ଥିବ । ୧୩ । ମର୍ତ୍ତ୍ୟଲୋକରେ ଆପଣ ଏକା ଏହି ଉତ୍କୃଷ୍ଟ ବିମାନରେ ଆରୋହଣ କରି ମୂର୍ତ୍ତିମାନ୍ ଦେବତାଙ୍କ ପ୍ରାୟ ଉପରିସ୍ଥ ହୋଇ ବିଚରଣ କରିବା ହେବେ । ୧୪ । ଆପଣଙ୍କୁ ଆମ୍ଭେ ଏହି ଅମ୍ଲାନପଙ୍କଜା ବୈଜୟନ୍ତୀମାଳା ପ୍ରଦାନ କରୁଅଛୁଁ ; ସଂଗ୍ରାମରେ ଆପଣ ଏହାକୁ ଧାରଣ କରିବା ହେବେ ; ଶସ୍ତ୍ରମାନେ ଆପଣଙ୍କୁ ରକ୍ଷା କରି ନ ପାରିଲେ ଏହି ମାଳା ଆପଣଙ୍କୁ ରକ୍ଷା କରିବ । ୧୫ । ହେ ନରାଧିପ ! ଏହି ମାଳା ଇନ୍ଦ୍ରଙ୍କ ପ୍ରଦତ୍ତ ମାଳା ବୋଲି ବିଖ୍ୟାତ ହେବ ଓ ଆପଣଙ୍କର ଏ ଗୋଟିଏ ଉତ୍କୃଷ୍ଟ ଓ ମହତ୍ ଚିହ୍ନ ସ୍ୱରୂପ ହୋଇ ରହିବ । ୧୬ ।

ବୈଶମ୍ପାୟନ କହିଲେ, ହେ ରାଜନ୍ ! ଅନନ୍ତର ବୃତ୍ରନିସୂଦନ ଇନ୍ଦ୍ର ପ୍ରୀତିସୂଚକ ଗୋଟିଏ ଶିଷ୍ଟଜନପାଳନୀ ବୈଣବୀ ଯଷ୍ଟି ପ୍ରଦାନ କଲେ । ୧୭ ।

ଏକ ବତ୍ସର ଗତ ହେଲାରୁ ଭୂପତି ବସୁ ଇନ୍ଦ୍ରଙ୍କ ପୂଜା ନିମିତ୍ତ ସେହି ବେଣୁଯଷ୍ଟିକୁ ଭୂମିରେ ପ୍ରବେଶ କରାଇଲେ । ୧୮ । ତଦବଧି ସେହି ନରପତିଙ୍କପ୍ରାୟ ଅପରାପର ଶ୍ରେଷ୍ଠ କ୍ଷିତିପତିମାନେ ପ୍ରତିବର୍ଷ ଥରେ ଭୂମିରେ ଯଷ୍ଟି ପ୍ରବେଶ କରାନ୍ତି । ୧୯ । ପରଦିବସ ସେହି ବଂଶଯଷ୍ଟିକୁ ବସ୍ତ୍ରାଲଙ୍କାରା-ଦିରେ ବିଭୂଷିତ କରି ଉପରକୁ ଟେକନ୍ତି ଓ ତହିଁରେ ବିଧିପୂର୍ବକ ମାଳାମାନଙ୍କୁ ଲମ୍ବିତ କରନ୍ତି । ଭଗବାନ ଶଙ୍କର ମହାତ୍ମା ବସୁଙ୍କର ପ୍ରୀତି ସମ୍ପାଦନାର୍ଥ ସ୍ୱୟଂ ହଂସ ରୂପକୁ ଧାରଣ କରି ସେହି ଯଷ୍ଟିରେ ପୂଜିତ ହୁଅନ୍ତି । ରାଜ-ଶ୍ରେଷ୍ଠ ବସୁଙ୍କର କୃତ ସେହି ସୁନ୍ଦର ପୂଜାକୁ ଦେଖି ପ୍ରଭୁ ଦେବ ମହେନ୍ଦ୍ର ପ୍ରୀତ ହୋଇ ବୋଇଲେ, ଯେଉଁ ନର ଅଥବା ରାଜା, ଚେଦିପତିଙ୍କ ସଦୃଶ ହର୍ଷରେ ଆମ୍ଭର ମହିମାର ପୂଜା କରିବେ, ସେମାନଙ୍କର ଓ ସେମାନେ ଯେଉଁ ଦେଶରେ ନିବାସ କରନ୍ତି ସେ ଦେଶମାନଙ୍କର ଐଶ୍ୱର୍ଯ୍ୟ ଓ ବିଜୟ ହେବ; ସେହି ଜନପଦ ବର୍ଦ୍ଧିତ ଓ ପ୍ରମୁଦିତ ହେବ । ହେ ନରାଧିପ ! ଏହି ପ୍ରକାରେ ମହାରାଜା ବସୁ ମହାତ୍ମା ଇନ୍ଦ୍ରଙ୍କଦ୍ୱାରା ସତ୍କୃତ ହେଲେ । ଯେଉଁ ମାନବଗଣ ସର୍ବଦା ଶକ୍ରଙ୍କର ଏହି ପୂଜାର ଉତ୍ସବକୁ ଭୂମି ରତ୍ନାଦି ଦାନ ଦ୍ୱାରା ସମ୍ପାଦନ କରନ୍ତି ସେମାନେ ଲୋକରେ ପୂଜ୍ୟ ହୁଅନ୍ତି । ବରଦାନ, ମହାଯଜ୍ଞ ଓ ଶକ୍ରୋତ୍ସବ ବିଧାନର ଉପଦେଶ ପ୍ରଦାନ ଦ୍ୱାରା ଦେବରାଜ ଇନ୍ଦ୍ର ମଧ୍ୟ ନରପତି ବସୁଙ୍କର ଯଥୋଚିତ ସମ୍ମାନନା କରିଥିଲେ । ଚେଦିପତି ବସୁ ଚେଦି ଦେଶରେ ବାସ କରି ଧର୍ମାନୁସାରେ ଏହି ପୃଥିବୀକୁ ପାଳନ ଓ ଇନ୍ଦ୍ରଙ୍କର ପ୍ରୀତି ନିମିତ୍ତ ତାହାଙ୍କର ଉତ୍ସବ ବିଧାନ କଲେ । ଅପରିମିତ ତେଜସ୍ୱୀ ଏହି ଚେଦିପତିଙ୍କର ମହାପରାକ୍ରମଶାଳୀ ପଞ୍ଚପୁତ୍ର ଥିଲେ । ୨୯ ।

ସମ୍ରାଟ୍ ବସୁ ସେହି ପୁତ୍ରମାନଙ୍କୁ ନାନା ଦେଶରେ ଅଭିଷିକ୍ତ କଲେ । ତନ୍ମଧ୍ୟରେ ଗୋଟିକର ନାମ ବୃହଦ୍ରଥ । ସେ ମଗଧ ଦେଶରେ ବିଖ୍ୟାତ ନରପତି ହୋଇଥିଲେ । ୩୦ । ଆଉ ଗୋଟିକର ନାମ ପ୍ରତ୍ୟଗ୍ରହ, ଗୋଟିକର ନାମ କୁଶାମ୍ବ, ଏହାଙ୍କୁ ମଣିବାହନ ବୋଲି ଆହ୍ୱାନ କରନ୍ତି । ଅପର ପୁତ୍ରର ନାମ ମାବେଲ୍ଲ, ଅପର ପୁତ୍ରର ନାମ ଯଦୁ, ସେ କଦାପି କାହାଠାରେ ପରାସ୍ତ ହୁଅନ୍ତି ନାହିଁ । ୩୧ । ହେ ରାଜନ୍ ! ପ୍ରଖର ବଳଶାଳୀ ନରପତି ବସୁଙ୍କର ଉକ୍ତ ପଞ୍ଚପୁତ୍ର ଥିଲେ । ସେମାନେ ନିଜ ନିଜ ନାମରେ ଦେଶ ଓ ନଗରମାନଙ୍କୁ ସ୍ଥାପିତ କଲେ । ୩୨ ।

ବସୁଙ୍କର ଏହି ପଞ୍ଚପୁତ୍ରଙ୍କଠାରୁ ପାଞ୍ଚଗୋଟି ଚିରସ୍ଥାୟୀ ରାଜବଂଶ ଜାତ ହେଲେ । ମହାତ୍ମା ରାଜା ବସୁ ଯେତେବେଳେ ଇନ୍ଦ୍ରଙ୍କ ପ୍ରଦତ୍ତ ସ୍ଫଟିକ

ବିମାନରେ ଆରୋହଣ କରି ଗଗନପଥରେ ବିଚରଣ କରୁଥିଲେ, ତେତେ-ବେଳେ ଗନ୍ଧର୍ବମାନେ ଓ ଅପ୍‌ସରାଗଣ ତାହାଙ୍କର ଉପାସନା କରୁଥିଲେ । ଉପରି ବିଚରଣ କରିବାରୁ ତାହାଙ୍କର ନାମ "ଉପରିଚର" ହୋଇଥିଲା । ୩୪ । ତାହାଙ୍କର ରାଜଧାନୀ ନିକଟରେ ଶୁକ୍ତିମତୀ ନାମରେ ଗୋଟିଏ ନଦୀ ପ୍ରବାହିତ ହେଉଥିଲା । "କୋଳାହଳ" ନାମରେ ଗୋଟିଏ ସଚେତନ ପର୍ବତ କାମାସକ୍ତ ହୋଇ ସେହି ନଦୀକୁ ଅବରୋଧ କଲା । ୩୫ । ତହୁଁ ବସୁ ସେହି କୋଳାହଳ ନାମକ ଗିରିକୁ ପାଦଦ୍ୱାରା ତାଡ଼ନା କଲେ । ପଦାଘାତ ସ୍ଥାନରେ ଗୋଟିଏ ବିବର ହୋଇଗଲା ଓ ଶୁକ୍ତିମତୀ ସେହି ବିବର ଦେଇ ନିଷ୍କ୍ରମଣ କଲା । ୩୬ । ସେହି ନଦୀଗର୍ଭରେ କୋଳାହଳ ପର୍ବତ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜାତ କଲା । ନଦୀ ମୁକ୍ତିଲାଭ କରି ପ୍ରୀତି ପୂର୍ବକ ରାଜାଙ୍କୁ ସେହି ଦୁଇଗୋଟି ସନ୍ତାନକୁ ପ୍ରଦାନ କଲେ । ୩୭ । ତହୁଁ ସେ ରାଜର୍ଷିସତ୍ତମ ଯେଉଁ ପୁତ୍ରଟି ଜାତ ହେଲା, ତାହାକୁ ଅରିନ୍ଦମବସୁପ୍ରଦ ବସୁ ନିଜର ସେନାପତି କଲେ (୩୮) ଓ ଗିରିକା ନାମ୍ନୀ କନ୍ୟାକୁ ନିଜର ପତ୍ନୀ କଲେ ।

ଅନନ୍ତର ବସୁପତ୍ନୀ ଗିରିକାର ଋତୁକାଳ ଉପସ୍ଥିତ ହେବାରୁ ପୁଂସବନରେ ସ୍ନାତ ଓ ଶୁଚି ହୋଇ ପତିଙ୍କୁ ରମଣ କାଳ ଉପସ୍ଥିତ ହେବା ଜଣାଇଲେ, କିନ୍ତୁ ବସୁଙ୍କର ପିତୃଗଣ ତାହାଙ୍କ ପ୍ରତି ପ୍ରୀତ ହୋଇ ସେହି-ଦିନ ବୋଇଲେ, "ହେ ମତିମାନ୍‌ମାନଙ୍କର ଶ୍ରେଷ୍ଠ ! ତୁମ୍ଭେ ଅଦ୍ୟ ମୃଗ ବିନାଶ କର ।" ରାଜା ବସୁ ପିତୃଗଣଙ୍କର ନିୟୋଗ ଅତିକ୍ରମ ନ କରି ଅତିଶୟ ରୂପସମ୍ପନ୍ନା, ଲକ୍ଷ୍ମୀଙ୍କପ୍ରାୟ ସୁନ୍ଦରୀ ସେହି ଗିରିକାଙ୍କୁ ସ୍ମରଣ କରି କାମାସକ୍ତ ଚିତ୍ତରେ ମୃଗୟାରେ ପ୍ରବୃତ୍ତ ହେଲେ । ୪୨ । ଅଶୋକ, ଚୂତ, ଅତିମୁକ୍ତକ, ପୁନ୍ନାଗ, କର୍ଣ୍ଣିକାର, ବକୁଳ, ପାଟଳବର୍ଣ୍ଣପାଟଳ, ନାରିକେଳ, ଚନ୍ଦନ, ଅର୍ଜ୍ଜୁନ ପ୍ରଭୃତି ନାନାବିଧ ରମଣୀୟ ଓ ପବିତ୍ର ମହାବୃକ୍ଷମାନଙ୍କର ପୁଷ୍ପ ଓ ସ୍ୱାଦୁ ଫଳରେ ରମଣୀୟ ଅଥଚ କୋକିଳାମାନଙ୍କର ନାଦଯୁକ୍ତ ଓ ମତ୍ତ ଭ୍ରମରମାନଙ୍କର ଗୁଞ୍ଜରମୟ ବସନ୍ତକାଳୀନ ସେହି ଚୈତ୍ର ରଥୋପମ ବନକୁ ମନ୍ମଥାକୁଳିତମତି ରାଜା ବସୁ ବିଲୋକନ କଲେ କିନ୍ତୁ ଗିରିକାଙ୍କୁ ନିକଟରେ ନ ଦେଖି କାମସନ୍ତପ୍ତ ହୋଇ ଇତସ୍ତତଃ ସଞ୍ଚରଣ କରୁ କରୁ ପଲ୍ଲବରେ ସୁଶୋଭିତ ଓ ପୁଷ୍ପସ୍ତବକରେ ସଞ୍ଛାଦିତ ଶାଖାଗ୍ର ଗୋଟିଏ ରମଣୀୟ ଅଶୋକ ତରୁତଳେ ଉପସ୍ଥିତ ହେଲେ । ୪୭ ।

ମଧୁଗନ୍ଧରେ ସଂଯୁକ୍ତ, ପୁଷ୍ପଗନ୍ଧ ମନୋହର ସେହି ଚତୁର୍ଦ୍ଦିଗ ଶୁଦ୍ଧସ୍ଥାନରେ ସେ ନରାଧିପ ସୁଖରେ ଆସୀନ ହୋଇ ଗିରିକାଙ୍କୁ ସ୍ମରଣ କରି ତାହାଙ୍କ ସହିତ ମାନସିକ ସୁରତ ଆଚରଣ କଲେ । ତଦ୍ଦ୍ୱାରା ସେ ଗହନ ବନରେ ତାହାଙ୍କର ରେତଃ ସ୍ଖଳନ ହେଲା । ୪୯ । ସ୍କନ୍ନ ହେବା ମାତ୍ର ଭୂମିପତି ସେହି ରେତକୁ ଗୋଟିଏ ପତ୍ରରେ ପ୍ରତିଗ୍ରହଣ କଲେ ଯେ ତାହାଙ୍କର ରେତଃପତନ ମିଥ୍ୟା ନ ହେଉ । ୫୦ । ଆମ୍ଭର ରେତଃ ବୃଥା ନ ହେଉ ଓ ଆମ୍ଭ ପତ୍ନୀଙ୍କର ଆର୍ତ୍ତବ ନିଷ୍ଫଳ ନ ହେଉ, ଏହି ଅଭିସନ୍ଧିରେ ସେ ରାଜା ପୁନଃ ପୁନଃ ବିଚାର କରି ଜାଣିଲେ ଯେ ତାହାଙ୍କର ରେତଃ ଅମୋଘ ଓ ମହିଷୀଙ୍କ ନିକଟକୁ ସେ ରେତଃ ପ୍ରେରଣ କରିବାର ସମୟ ଉପସ୍ଥିତ ହୋଇଅଛି । ସୂକ୍ଷ୍ମ ଧର୍ମାର୍ଥ ତତ୍ତ୍ୱଜ୍ଞ ନରପତି ସେହି ଶୁକ୍ରକୁ ଅଭିମନ୍ତ୍ରିତ କରି ସମୀପବର୍ତ୍ତୀ ଶୀଘ୍ରଗାମୀ ଗୋଟିଏ ଶ୍ୟେନପକ୍ଷୀ ନିକଟକୁ ଯାଇ ତାହାକୁ କହିଲେ, "ହେ ସୌମ୍ୟ ! ତୁମ୍ଭେ ଆମ୍ଭର ପ୍ରୀତି ନିମିତ୍ତ ଏହି ଏହି ଶୁକ୍ରକୁ ଆମ୍ଭ ଗୃହକୁ ନେଇଯାଅ । ୪୫ । ଅଦ୍ୟ ଗିରିକାଙ୍କର ଆର୍ତ୍ତବ; ତାହାଙ୍କୁ ଶୀଘ୍ର ଏହି ଶୁକ୍ର ଦେବ ।"

ବେଗବାନ୍ ଶ୍ୟେନପକ୍ଷୀ ସେହି ଶୁକ୍ରକୁ ନେଇ ପରମ ବେଗରେ ଗମନ କଲା । ପଥରେ ତାହାକୁ ଆଉ ଗୋଟିଏ ଶ୍ୟେନ ଦେଖି ତାହାକୁ କୌଣସି ଆମିଷ ନେଇ ଯାଉଥିବାର ଶଙ୍କାରେ ବିଚାରି ତାହା ପ୍ରତି ଧାବମାନ ହେଲା । ଆକାଶରେ ସେ ଦୁହିଁଙ୍କର ତୁଣ୍ଡ ଯୁଦ୍ଧ ହେଲା । ୫୭ । ଯୁଦ୍ଧ କରୁ କରୁ ସେହି ରେତଃ ଯମୁନା ଜଳରେ ପତିତ ହେଲା । ବ୍ରହ୍ମଶାପବଶରୁ ଅଦ୍ରିକା ନାମରେ ଗୋଟିଏ ଅତି ସୁନ୍ଦରୀ ଅପ୍ସରା ଯମୁନାରେ ମତ୍ସ୍ୟରୂପୀ ହୋଇ ବାସ କରୁଥିଲା । ମତ୍ସ୍ୟରୂପିଣୀ ସେହି ଅଦ୍ରିକା ଶ୍ୟେନପାଦ ପରିଭ୍ରଷ୍ଟ ବସୁରାଜାଙ୍କର ସେ ଶୁକ୍ରକୁ ଶୀଘ୍ର ଗିଳିଦେଲା । ହେ ଭରତସତ୍ତମ ! ତହୁଁ ଦଶମ ମାସରେ ମତ୍ସ୍ୟଜୀବୀମାନେ ଏକଦା ସେହି ମତ୍ସ୍ୟକୁ ଜାଲରେ ବନ୍ଧନ କଲେ ଓ ତାହାର ଉଦରରୁ ମନୁଷ୍ୟରୂପୀ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ବାହାର କଲେ । ୬୧ । ସେହି ଆଶ୍ଚର୍ଯ୍ୟ ବିଷୟକୁ ସେମାନେ ଯାଇ ରାଜାଙ୍କୁ ଜଣାଇଲେ ଯେ ମତ୍ସ୍ୟୀକାୟରୁ ଏହି ଦୁଇଗୋଟି ମନୁଷ୍ୟ ଶିଶୁ ସମ୍ଭୂତ ହୋଇଅଛନ୍ତି । ୬୨ ।

ସେ ଦୁହିଁଙ୍କ ମଧ୍ୟରୁ ରାଜା ଉପରିଚର ପୁତ୍ରଟିକୁ ଗ୍ରହଣ କଲେ । ସେହି ପୁତ୍ରଟି ମତ୍ସ୍ୟ ନାମରେ ଧାର୍ମିକ ଓ ସତ୍ୟସନ୍ଧରେ ରାଜା ହେଲେ । ୬୩ ।

ସେହି ଅପ୍‌ସରା କ୍ଷଣକାଳରେ ଶାପରୁ ମୁକ୍ତ ହେଲା । ଭଗବାନ୍ ପୂର୍ବେ ଏପରି କହିଥିଲେ "ହେ ଶୁଭେ ! ତୁମ୍ଭେ ଦୁଇଗୋଟି ମନୁଷ୍ୟସନ୍ତାନ ଜନ୍ମ କରି ଶାପରୁ ମୁକ୍ତ ହେବ" ସେହିପରି ସେ ବରାପ୍‌ସରା ଦୁଇଗୋଟି ମାନବ ଜନ୍ମ କରି ମତ୍ସ୍ୟଘାତୀଙ୍କଦ୍ୱାରା ବିଦୀର୍ଣ୍ଣ ହୋଇ ମତ୍ସ୍ୟରୂପକୁ ତ୍ୟାଗ କରି ଓ ଦିବ୍ୟରୂପକୁ ପ୍ରାପ୍ତ ହୋଇ ସିଦ୍ଧଋଷିଗଣଙ୍କର ଗତି କରିବା ପଥରେ ଗମନ କଲେ ।୬୬। ସେହି ମତ୍ସ୍ୟର ଗର୍ଭରୁ ଯେଉଁ କନ୍ୟାଟି ଜାତ ହୋଇଥିଲା ଓ ଯାହାର ଶରୀର ମତ୍ସ୍ୟଗନ୍ଧି ହୋଇଥିଲା ତାହାକୁ ରାଜା ଧୀବରକୁ ଦେଇ ବୋଇଲେ, ଏଟିକି ତୁମ୍ଭେ କନ୍ୟା କର ।୬୭।

କାଳକ୍ରମରେ ସେ କନ୍ୟା ରୂପବତୀ, ବଳବତୀ ଓ ସର୍ବଗୁଣରେ ଅଳଙ୍କୃତ ହେଲେ । ସତ୍ୟବତୀ ନାମ୍ନୀ ସେହି କନ୍ୟା ମତ୍ସ୍ୟଜୀବୀଙ୍କର ସଂସର୍ଗବଶରୁ କେତୁକାଳ "ମତ୍ସ୍ୟଗନ୍ଧା" ନାମ ଧାରଣ କରିଥିଲେ । ଏକଦା ମତ୍ସ୍ୟଗନ୍ଧା ପିତାର ଶୁଶ୍ରୂଷା ନିମିତ୍ତ ଜଳରେ ନାବ ବାହୁଥିଲେ ।୬୯। ପରାଶର ଋଷି ତୀର୍ଥାଟନକୁ ଯାଉଁ ଯାଉଁ ବସୁନରପତିଙ୍କର, ଦିବ୍ୟରୂପବତୀ, ରମ୍ଭାରୁ ଅତୀବ ରୂପସମ୍ପନ୍ନା ଓ ସିଦ୍ଧଗଣଙ୍କର ସୁଦ୍ଧା ଅଭିଲଷଣୀୟା ସେହି ଦୁହିତାସିମାଙ୍କୁ ଅବଲୋକନ କରି କାମରେ ବଶବର୍ତ୍ତୀ ହେଲେ (୭୧) ଓ ତାହାଙ୍କୁ ଭାଷିଲେ, ହେ କଲ୍ୟାଣି ! ତୁମ୍ଭେ ଆମ୍ଭ ସହିତ ସଙ୍ଗମ କର । କନ୍ୟା ଉତ୍ତର ଦେଲେ, ହେ ଭଗବନ୍ ! ଉଭୟ ପାରରେ ଋଷିମାନେ ଆମ୍ଭଙ୍କୁ ରହିଅଛନ୍ତି, ଏପରି ସ୍ଥଳେ ଆମ୍ଭର କିପରି ସଙ୍ଗମ ହେବ ? ଏ ପ୍ରକାରେ ଅଭିହିତ ହେବାରୁ ସେହି ପ୍ରଭାବଶାଳୀ ଋଷି ଏପରି ନୀହାର ସର୍ଜ୍ଜନା କଲେ ଯେ ସେ ସମୁଦାୟ ସ୍ଥାନ ଅନ୍ଧକାରାଚ୍ଛନ୍ନ ପ୍ରାୟ ଦୃଶ୍ୟ-ହେଲା । ତଦନନ୍ତର ପରମର୍ଷିଙ୍କ ସୃଷ୍ଟ କୁଜ୍‌ଝଟିକା ଦେଖି ସେ ସାଧ୍ୱୀକନ୍ୟା ବିସ୍ମିତ ଓ ଲଜ୍ଜିତ ହୋଇ ବୋଇଲା, "ହେ ଭଗବନ୍ ! ଆମ୍ଭଙ୍କୁ ନିରନ୍ତର ପିତୃବଶବର୍ତ୍ତିନୀ କୁମାରୀ ବୋଲି ଜାଣିବା ହେଉନ୍ତୁ । ହେ ଅନଘ ! ତୁମ୍ଭ ସହିତ ସଂଯୋଗ ହେଲେ ଆମ୍ଭର କନ୍ୟାପଣ ଦୂଷିତ ହେବ । କନ୍ୟାଭାବ ଦୂଷିତ ହେଲେ, ହେ ଋଷେ ! ଆମ୍ଭେ କିପରି ଗୃହକୁ ଗମନ କରିବୁଁ ? ହେ ଦ୍ୱିଜୋତ୍ତମ ! ସେଠାରେ କିପରି ଅବସ୍ଥିତ କରିବୁଁ ? ହେ ଭଗବନ୍ ! ଏହି ବିଷୟମାନ ଚିନ୍ତାକରି ଯାହା ବିଧେୟ ତାହା କରିବା ହେଉନ୍ତୁ ।" ୭୬ ।

କନ୍ୟାର ଉକ୍ତପ୍ରକାର ବାକ୍ୟ ଶ୍ରବଣ କରି ଋଷିସତ୍ତମ ପ୍ରୀତିମାନ୍ ହୋଇ ବୋଇଲେ, ହେ ଭବନି ! ଆମ୍ଭର ପ୍ରିୟକାର୍ଯ୍ୟ ସାଧନ କରି ତୁମ୍ଭେ

ପୁନର୍ବାର କୁମାରୀତ୍ୱ ପ୍ରାପ୍ତ ହେବ । ହେ ଭୀରୁ ! ତୁମ୍ଭର ଯାହା ଇଚ୍ଛା, ସେହି ବର ପ୍ରାର୍ଥନା କର । ହେ ଶୁଚିସ୍ମିତେ ! ଆମ୍ଭର ପ୍ରସାଦ କଦାପି ବୃଥା ହୋଇ ନାହିଁ ।୭୯। ମତ୍ସ୍ୟଗନ୍ଧା ଏହିରୂପେ ଅଭିହିତ ହୋଇ ଆପଣା ଗାତ୍ରର ଉତ୍ତମ ସୌଗନ୍ଧ୍ୟ ପ୍ରାର୍ଥନା କଲେ । ସେହି ଭଗବାନ୍ କନ୍ୟାର କାଂକ୍ଷିତ ବର ପ୍ରଦାନ କଲେ ।୮୦। ତହୁଁ ସେ କନ୍ୟା ବରପ୍ରାପ୍ତ ଓ ପ୍ରୀତ ହୋଇ ସ୍ତ୍ରୀଭାବ ଲାଭକରି ଅଦ୍ଭୁତକର୍ମା ଋଷିଙ୍କ ସହିତ ସଂସର୍ଗ କଲେ ।୮୧। ଏହିରୂପେ ତାହାଙ୍କର ଗନ୍ଧବତୀ ନାମଟି ଜଗତରେ ବିଖ୍ୟାତ ହେଲା । ପୃଥ୍ୱୀରେ ନରମାନେ ତାହାଙ୍କର ଶରୀରର ସୁଗନ୍ଧ ଯୋଜନେ ଦୂରରୁ ଆଘ୍ରାଣ କଲେ ।୮୨। ଏହି କାରଣରୁ ତାହାଙ୍କର "ଯୋଜନଗନ୍ଧା" ବୋଲି ଆଉ ଗୋଟିଏ ନାମ ପ୍ରଥିତ ହେଲା । ଭଗବାନ୍ ପରାଶର ମଧ୍ୟ ନିଜ ନିବେଶନକୁ ଗମନ କଲେ ।୮୩।

ସତ୍ୟବତୀ ଏପରି ଉତ୍ତମ ବର ଲାଭରେ ପ୍ରୀତ ହୋଇ ପରାଶରଙ୍କ ସଂଯୋଗରେ ସଦ୍ୟଃ ଗର୍ଭପ୍ରସବ କଲେ । ଯମୁନା ପୁଳିନରେ ପରାଶରଙ୍କର ବୀର୍ଯ୍ୟବାନ୍ ପୁତ୍ର ଜନ୍ମ ହେଲା ।୮୪। ସେ ମାତାଙ୍କ ଆଜ୍ଞା ଗ୍ରହଣ କରି ତପସ୍ୟାରେ ମନୋନିବେଶ କଲେ ଓ ମାତାଙ୍କୁ ବୋଇଲେ ଯେ ତୁମ୍ଭେ ଆମ୍ଭଙ୍କୁ ସ୍ମରଣ କଲେ ଆମ୍ଭେ ତତ୍କ୍ଷଣାତ୍ ତୁମ୍ଭର ନିର୍ଦ୍ଦିଷ୍ଟ କର୍ମରେ ଉପସ୍ଥିତ ହେବୁଁ ।୮୫। ଏହିରୂପେ ଦ୍ୱୈପାୟନ ପରାଶରଙ୍କ ଔରସରେ ଓ ସତ୍ୟବତୀଙ୍କ ଗର୍ଭରେ ଜନ୍ମଗ୍ରହଣ କଲେ । ସେହି ବାଳକ ଦ୍ୱୀପରେ ଭୂମିଷ୍ଠ ହେବାରୁ ତାହାଙ୍କର ନାମ ଦ୍ୱୈପାୟନ ହେଲା ।୮୬। ବିଦ୍ୱାନ୍ ଦ୍ୱୈପାୟନ ଦେଖିଲେ ଯେ ଯୁଗକୁ ଯୁଗ ଧର୍ମ ଏକ ଏକ ପାଦରେ ହ୍ରାସ ହେଉଅଛି ଓ ମାନବମାନଙ୍କର ଆୟୁ ଓ ଶକ୍ତି ମଧ୍ୟ ହୀନ ହେଉଅଛି; ତହୁଁ ସେ ବ୍ରାହ୍ମଣଗଣଙ୍କ ପ୍ରତି ଅନୁଗ୍ରହ କରି ବେଦମାନଙ୍କର ରକ୍ଷାନିମିତ୍ତ ତାହାକୁ ବ୍ୟାସ ଅର୍ଥାତ୍ ଭାଗ ଭାଗ କଲେ । ସେହି ହେତୁରୁ ତାହାଙ୍କର ନାମ ବ୍ୟାସ ହେଲା ।୮୮।

ବରିଷ୍ଠ ଓ ବରଦ ପ୍ରଭୁ ବ୍ୟାସ ସୁମନ୍ତୁଙ୍କୁ, ଜୈମିନିଙ୍କୁ, ପୈଲଙ୍କୁ ଓ ଆତ୍ମଜ ଶୁକଙ୍କୁ ଓ ବୈଶମ୍ପାୟନଙ୍କୁ ଚାରି ବେଦ ଓ ମହାଭାରତ ପାଠ କରାଇଲେ । ସେମାନେ ଭାରତର ମୂଳୀଭୂତ ବେଦମାନଙ୍କର ସଂହିତା ସବୁ ପୃଥକ୍ ପୃଥକ୍ ପ୍ରକାଶିତ କଲେ ।୯୦। ଅମିତଦ୍ୟୁତି, ମହାବୀର୍ଯ୍ୟ,ମହାଯଶା ଶାନ୍ତନୁତନୟ ଭୀଷ୍ମ ଅଷ୍ଟବସୁଙ୍କ ଔରସରେ ଓ ଗଙ୍ଗାଙ୍କ ଗର୍ଭରେ ଜନ୍ମ ପରିଗ୍ରହ କଲେ

। ୯୧ । ପୂର୍ବକାଳରେ ବେଦାର୍ଥବେତ୍ତା, ମହାଯଶା, ବ୍ରହ୍ମର୍ଷି, ଭଗବାନ୍ ଅଣୀମାଣ୍ଡବ୍ୟ ଚୌର ନ ଥାଇ ଚୌର ବୋଲି ଶୂଳରେ ପ୍ରୋତ ହୋଇ-ଥିଲେ । ୯୨ । ସେ ମହର୍ଷି ଧର୍ମଙ୍କୁ ଆହ୍ୱାନ କରି ବୋଇଲେ, ହେ ଧର୍ମ ! ଆମ୍ଭର ସ୍ମରଣ ହେଉଅଛି ଯେ ଆମ୍ଭେ ବାଲ୍ୟକାଳରେ ଇଷୀକାଦ୍ୱାରା ଗୋଟିଏ ଝିଙ୍କିକାକୁ ବିଦ୍ଧ କରିଥିଲୁ, ଆଉ କୌଣସି ପାପ ଆମ୍ଭେ କରିଥିବାର ସ୍ମରଣ ହେଉ ନାହିଁ । ୯୪ । କିନ୍ତୁ ଆମ୍ଭେ ପାପର ସହସ୍ର ଗୁଣ ତପସ୍ୟା କରି ସୁଦ୍ଧା ଙ୍କ କାରଣରୁ ସେହି ପାପକୁ ପରାଜୟ ନ କଲୁ । ସର୍ବପ୍ରାଣିବଧ ମଧ୍ୟରେ ବ୍ରାହ୍ମଣବଧ ଗରୀୟାନ୍ । ୯୫ । ସେହି ହେତୁରୁ, ରେ କଲ୍‌ବିଷୀ ଧର୍ମ ! ତୁ ଶୂଦ୍ରଯୋନିରେ ଜନ୍ମିବୁ । ସେହି ଶାପରୁ ଧର୍ମ ଶୂଦ୍ର ଯୋନିରେ ବିଦ୍ୱାନ୍ ବିଦୁର ରୂପରେ ଅକଲ୍‌ବିଷ ଓ ଧର୍ମମୟ ଦେହ ଧରି ଜାତ ହେଲେ । ମୁନିକଳ୍ପ ସୂତ ସଞ୍ଜୟ ଗବଲ୍‌ଗଣଙ୍କ ଠାରୁ ଜନ୍ମ ହେଲେ । ୯୬ ।

ମହାବଳ କୁଣ୍ଡଳ ଦ୍ୟୋତିତାନନ କର୍ଣ୍ଣ କବଚ ସହିତ ସୂର୍ଯ୍ୟଙ୍କ-ଠାରୁ କୁମାରୀ କୁନ୍ତୀଙ୍କ ଗର୍ଭରେ ଜନ୍ମିଲେ । ଲୋକଙ୍କ ପ୍ରତି ଅନୁଗ୍ରହ କରି ଲୋକ ନମସ୍କୃତ, ମହାଯଶା, ବିଷ୍ଣୁ ବସୁଦେବଙ୍କଠାରୁ ଦେବକୀଙ୍କ ଗର୍ଭରେ ପ୍ରାଦୁର୍ଭୂତ ହେଲେ ।୯୯। ପଣ୍ଡିତମାନେ ଯାହାଙ୍କୁ ଅନାଦିନିଧନ, ଜଗତ୍କର୍ତ୍ତା, ଜଗତର ପ୍ରଭୁ, ଅବ୍ୟକ୍ତ ଓ ଅକ୍ଷରବ୍ରହ୍ମ ଓ ତ୍ରିଗୁଣାତ୍ମକ ସର୍ବପ୍ରଧାନ ବୋଲି ବୋଲନ୍ତି (୧୦୦), ଯେ ଆତ୍ମା, ଅବ୍ୟୟ, ପ୍ରକୃତି, ସମସ୍ତଙ୍କର କାରଣ, ପ୍ରଭୁ, ପୁରୁଷ, ବିଶ୍ୱକର୍ମା, ସତ୍ତ୍ୱଗୁଣର ଆଧାର, ପ୍ରଣବ ସ୍ୱରୂପ, ଅନନ୍ତ, ଅଚଳ, ଦେବହଂସ, ନାରାୟଣ, ପ୍ରଭାବଶାଳୀ, ବିଧାତା, ଅଜର, ହବ୍ୟ, ପରମପୁରୁଷ, ଅବିନାଶୀ, କୈବଲ୍ୟ, ନିର୍ଗୁଣ, ଅପରିଚ୍ଛିନ୍ନ, ଅନାଦି ଓ ଜନ୍ମ-ରହିତ, ସେହି ସର୍ବଲୋକ ପିତାମହ ଜଗତ୍କର୍ତ୍ତା ବିଭୁ ପୁରୁଷ ଧର୍ମବର୍ଦ୍ଧନ ନିମିତ୍ତ ଅନ୍ଧକ ବୃଷ୍ଣି ବଂଶରେ ଜନ୍ମଗ୍ରହଣ କଲେ । ୧୦୩ । ଅସ୍ତ୍ରଜ୍ଞ, ମହା-ବୀର୍ଯ୍ୟ, ସର୍ବଶାସ୍ତ୍ରବିଶାରଦ ଓ ନାରାୟଣଙ୍କର ଅନୁବ୍ରତ ସାତ୍ୟକି ଓ କୃତବର୍ମା ଦୁହେଁ ଯଥାକ୍ରମରେ ସତ୍ୟକ ଓ ହୃଦିକଙ୍କଠାରୁ ଜନ୍ମ ହେଲେ । ୧୦୫ । ଉଗ୍ରତପା ମହର୍ଷି ଭରଦ୍ୱାଜଙ୍କର ସ୍ଖଳିତ ରେତ ଦ୍ରୋଣୀରେ ପତିତ ହୋଇ ବର୍ଦ୍ଧିତ ହେବାରୁ ଦ୍ରୋଣ ଜନ୍ମଗ୍ରହଣ କଲେ । ୧୦୬ ।

ଗୌତମବଂଶୀୟ ଶରଦ୍‌ବାନଙ୍କର ବୀର୍ଯ୍ୟ ଶରସ୍ତମ୍ଭରେ ପତିତ ହୋଇ ତହିଁରୁ ଅଶ୍ୱତ୍ଥାମାଙ୍କ ଜନନୀ ଓ ମହାବଳ କୃପ ଦୁହେଁ ଜାତ ହେଲେ । ୧୦୭ । ଅନନ୍ତର ମହାବଳ ଅଶ୍ୱତ୍ଥାମା ଦ୍ରୋଣାଚାର୍ଯ୍ୟଙ୍କଠାରୁ

ଜନ୍ମ ହେଲେ । ଯଜ୍ଞ କର୍ମମାନ ହେଉଥିବା କାଳୀନ ଅନଳ ସଦୃଶ ଦ୍ୟୁତି-ମାନ୍ ବୀର ଧୃଷ୍ଟଦ୍ୟୁମ୍ନ ଗୃପଦସ୍ତ ହୋଇ ଦ୍ରୋଣଙ୍କ ବିନାଶ ନିମିତ୍ତ ଯଜ୍ଞୀୟ ପାବକରୁ ଜାତ ହେଲେ । ୧୦୯ । ସେହି ଯଜ୍ଞବେଦୀରେ ଶୁଭ ଲକ୍ଷଣବର୍ତ୍ତି, ତେଜସ୍ୱିନୀ, କୃଷ୍ଣା, ଉଜ୍ଜ୍ୱଳକାୟ ଓ ଅନୁପମ ରୂପ ଧାରଣ କରି ଜାତ ହେଲେ । ୧୧୦ । ତଦନନ୍ତର ପ୍ରହ୍ଲାଦ ଶିଷ୍ୟ, ନଗ୍ନଜିତ୍ ଓ ସୁବଳ ଜନ୍ମ ହେଲେ । ସୁବଳଙ୍କ ପୁତ୍ର ଦେବକୋପରୁ ଧର୍ମହନ୍ତା ହେଲେ । ୧୧୧ । ସେହି ଗାନ୍ଧାରରାଜ ସୁବଳଙ୍କଠାରୁ ଅର୍ଥଶାସ୍ତ୍ରବିଶାରଦ ଶକୁନି ଓ ଦୁର୍ଯ୍ୟୋଧନଙ୍କ ଜନନୀ ଗାନ୍ଧାରୀ ଜାତ ହେଲେ । ୧୧୨ ।

କୃଷ୍ଣ ଦ୍ୱୈପାୟନଙ୍କଠାରୁ ବିଚିତ୍ରବୀର୍ଯ୍ୟଙ୍କର ପତ୍ନୀଙ୍କ ଗର୍ଭରେ ନରପତି ଧୃତରାଷ୍ଟ୍ର ଓ ମହାବାହୁ ପାଣ୍ଡୁ ଜନ୍ମ ହେଲେ । ୧୧୩ । ସେହି ଦ୍ୱୈପାୟନଙ୍କଠାରୁ ଶୂଦ୍ରଯୋନିରେ ଧର୍ମାର୍ଥ ନିପୁଣ, ଧୀମାନ୍, ମେଧାବୀ ଓ ନିଷ୍ପାପୀ ବିଦୁର ଜନ୍ମଗ୍ରହଣ କଲେ । ୧୧୪ ।

କୁନ୍ତୀ ଓ ମାଦ୍ରୀ ଦୁଇ ସ୍ତ୍ରୀଙ୍କ ଗର୍ଭରେ ପାଣ୍ଡୁଙ୍କର ଦେବସମ ପଞ୍ଚ-ପୁତ୍ର ଜାତ ହେଲେ । ସେମାନଙ୍କ ମଧ୍ୟରେ ଯୁଧିଷ୍ଠିର ଅଗ୍ରଜ ଓ ଗୁଣରେ ଜ୍ୟେଷ୍ଠ । ୧୧୫ । ଧର୍ମଙ୍କଠାରୁ ଯୁଧିଷ୍ଠିର, ମାରୁତଙ୍କଠାରୁ ବୃକୋଦର ଓ ଇନ୍ଦ୍ରଙ୍କଠାରୁ ସର୍ବଶାସ୍ତ୍ରଜ୍ଞମାନଙ୍କ ଶ୍ରେଷ୍ଠ ଶ୍ରୀମାନ୍ ଧନଞ୍ଜୟ ଜନ୍ମିଲେ । ୧୧୬ । ଅଶ୍ୱିନୀକୁମାରଦ୍ୱୟଙ୍କଠାରୁ ରୂପସମ୍ପନ୍ନ ଓ ସଦା ଗୁରୁଶୁଶ୍ରୂଷାରେ ରତ ଯମଜ ନକୁଳ ଓ ସହଦେବ ଜନ୍ମ ହେଲେ । ୧୧୭ । ପୁନଶ୍ଚ ଧୀମାନ୍ ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନ ପ୍ରଭୃତି ଶତପୁତ୍ର ଜନ୍ମ ହେଲେ । ଯୁଯୁତ୍ସୁ ଓ କରଣ ନାମରେ ତାଙ୍କର ଆଉ ଦୁଇଗୋଟି ପୁତ୍ର ଥିଲେ ।୧୧୮। ତନ୍ମଧ୍ୟରେ ହେ ଭାରତ ! ଦୁଃଶାସନ, ଦୁଃସହ, ଦୁର୍ମର୍ଷଣ, ବିକର୍ଣ୍ଣ, ଚିତ୍ରସେନ, ବିବିଂଶତି, ଜୟ, ସତ୍ୟବ୍ରତ, ପୁରୁମିତ୍ର, କରଣ ଓ ଯୁଯୁତ୍ସୁ, ଏହି ଏକାଦଶ ଜଣ ମହାରଥ ହୋଇଥିଲେ । ୧୨୦ । ମହାତ୍ମା ପାଣ୍ଡୁଙ୍କ ପୌତ୍ର ଓ କୃଷ୍ଣଙ୍କର ଭାଗିନେୟ ଅଭିମନ୍ୟୁ ଅର୍ଜ୍ଜୁନଙ୍କ ଔରସରୁ ସୁଭଦ୍ରାଙ୍କ ଗର୍ଭରେ ଜାତ ହୋଇ-ଥିଲେ । ୧୨୧ । ପଞ୍ଚପାଣ୍ଡବଙ୍କ ଔରସରେ ଦ୍ରୌପଦୀଙ୍କ ଗର୍ଭରେ ସର୍ବଶାସ୍ତ୍ର-ବିଶାରଦ, ରୂପସମ୍ପନ୍ନ, ପଞ୍ଚପୁତ୍ର ଜନ୍ମଗ୍ରହଣ କଲେ । ୧୨୨ । ଯୁଧିଷ୍ଠିରଙ୍କ-ଠାରୁ ପ୍ରତିବିନ୍ଧ୍ୟ, ବୃକୋଦରଙ୍କଠାରୁ ସୁତସୋମ, ଅର୍ଜ୍ଜୁନଙ୍କଠାରୁ ଶ୍ରୁତକୀର୍ତ୍ତି, ନକୁଳଙ୍କଠାରୁ ଶତାନୀକ, ତଥା ସହଦେବଙ୍କଠାରୁ ପ୍ରତାପଶାଳୀ ଶ୍ରୁତସେନ ଜାତ ହେଲେ । ଭୀମଙ୍କ ଦ୍ୱାରା ହିଡ଼ିମ୍ବାରାକ୍ଷସୀ ଗର୍ଭରେ ଘଟୋତ୍କଚ ଜନ୍ମିଲେ

। ୧୨୪ । ଦ୍ରୁପଦଙ୍କ ଔରସରେ ଶିଖଣ୍ଡୀ ଜନ୍ମ ହେଲେ । ସେ କନ୍ୟା ହୋଇ ପୁରୁଷତ୍ୱ ପ୍ରାପ୍ତ ହେଲେ । ସ୍ଥୂଣ ନାମରେ ଗୋଟିଏ ଯକ୍ଷ, ପ୍ରିୟ କରିବା ଇଚ୍ଛାରେ ସେହି କନ୍ୟାଟିକୁ ପୁରୁଷ କଲେ । ୧୨୫ ।

କୁରୁ ଓ ପାଣ୍ଡବଙ୍କ ଯୁଦ୍ଧରେ ଯୁଦ୍ଧ କରିବେ ବୋଲି ବହୁ ଶତସହସ୍ର ରାଜା ସମାଗତ ହୋଇଥିଲେ । ୧୨୬ । ସେହି ଅସଂଖ୍ୟ ରାଜାମାନଙ୍କର ନାମମାନ ଦଶସହସ୍ର ବର୍ଷରେ ସୁଦ୍ଧା କହି ହେବ ନାହିଁ, କିନ୍ତୁ ଯେଉଁମାନେ ତନ୍ମଧ୍ୟରେ ମୁଖ୍ୟ ଓ ଯାହାଙ୍କ ଦ୍ୱାରା ଏହି ଭାରତାଖ୍ୟାନ ବିସ୍ତୃତ ହୋଇଅଛି, ସେହିମାନଙ୍କ ନାମ କୀର୍ତ୍ତିତ ହେଲା । ୧୨୭ ।

---

## ଅଧ୍ୟାୟ—୬୪

ଜନମେଜୟ ବୋଇଲେ—ହେ ବ୍ରହ୍ମନ୍ ! ଯେଉଁ ସକଳ ରାଜାଙ୍କର ନାମ କୀର୍ତ୍ତନ କଲେ ଓ ଯାହାଙ୍କର ନାମମାନ କୀର୍ତ୍ତନ କରିନାହାନ୍ତି, ସେହି ସମସ୍ତ ନରପାଳ ଓ ଅନ୍ୟାନ୍ୟ ତେଜସ୍ୱୀ ନରପାଳମାନଙ୍କର ବୃତ୍ତାନ୍ତ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୧ । ହେ ମହାଭାଗ ! ସେହି ଦେବକଳ୍ପ ମହାରଥମାନେ ଯେଉଁ ହେତୁରୁ ପୃଥିବୀରେ ଜନ୍ମିଥିଲେ ତାହା ସମ୍ୟକ୍‌ରୂପେ ବ୍ୟାଖ୍ୟା କରିବା ହେଉନ୍ତୁ । ୨ ।

ବୈଶମ୍ପାୟନ ବୋଇଲେ, ହେ ରାଜନ୍ ! ଆମ୍ଭେ ଶୁଣିଅଛୁଁ ଯେ ଏ ବିଷୟଟି ଦେବତାମାନଙ୍କର ରହସ୍ୟ ଅଟେ; ଅତଏବ ସ୍ୱୟମ୍ଭୁଙ୍କୁ ନମସ୍କାର କରି ସେହି ସବୁ ରହସ୍ୟ ତୁମ୍ଭଙ୍କୁ କହିବୁଁ । ୩ । ପୂର୍ବକାଳରେ ଜମଦଗ୍ନି ତନୟ ପରଶୁରାମ ଏକବିଂଶତିବାର ପୃଥିବୀକୁ ନିଃକ୍ଷତ୍ରିୟା କରି ମହେନ୍ଦ୍ର ନାମକ ପର୍ବତୋତ୍ତମରେ ତପସ୍ୟା କରିଥିଲେ । ୪ । ଭାର୍ଗବ ପୃଥିବୀକୁ ନିଃକ୍ଷତ୍ରିୟା କରିବାରୁ କ୍ଷତ୍ରିୟାମାନେ ପୁତ୍ରାର୍ଥିନୀ ହୋଇ ବ୍ରାହ୍ମଣମାନଙ୍କ ନିକଟ ଉପସ୍ଥିତ ହେଲେ । ୫ । ବ୍ରାହ୍ମଣମାନେ ବ୍ରତଧାରଣ କରି ଋତୁକାଳ ଦେଖି ସେହି କ୍ଷତ୍ରିୟାଙ୍କ ସହିତ ସମାଗମନ କଲେ । ହେ ନରବ୍ୟାଘ୍ର ! ସେମାନେ କାମାଭିଭୂତ ହୋଇ ବା ଋତୁକାଳ ବ୍ୟତୀତ ଅନ୍ୟ ସମୟରେ କ୍ଷତ୍ରିୟାଙ୍କ ସହିତ ଅଭିଗମନ କରିନାହାନ୍ତି । ୬ । ହେ ରାଜନ୍ !

ସେହି ସହସ୍ର ସହସ୍ର କ୍ଷତ୍ରିୟ ପତ୍ନୀମାନେ ବ୍ରାହ୍ମଣମାନଙ୍କଠାରୁ ଗର୍ଭଧାରଣ କରି ପୁନର୍ବାର କ୍ଷତ୍ରିୟ ଜାତିର ବୃଦ୍ଧି ନିମିତ୍ତ ପୂର୍ବାପେକ୍ଷା ଅଧିକତର ବୀର୍ଯ୍ୟଶାଳୀ କୁମାର ଓ କୁମାରୀମାନଙ୍କୁ ପ୍ରସବ କଲେ । ୭ । ଏହିରୂପେ କ୍ଷତ୍ରିୟମାନେ ତପସ୍ୱୀ ବ୍ରାହ୍ମଣଗଣଙ୍କ କର୍ତ୍ତୃକ କ୍ଷତ୍ରିୟାଙ୍କ ଗର୍ଭରେ ଉତ୍ପନ୍ନ ହୋଇ ଧର୍ମାଚରଣ ଦ୍ୱାରା ସୁଦୀର୍ଘ ଆୟୁ ସମନ୍ୱିତ ହୋଇଲ । ତତ୍ପରେ ବ୍ରାହ୍ମଣ ପ୍ରଭୃତି ଚତୁର୍ବର୍ଣ୍ଣ ସମୃଦ୍ଧ ହେଲେ । ସେମାନେ ଋତୁକାଳରେ କେବଳ ପତ୍ନୀଙ୍କ ସହିତ ଗମନ ଓ ଋତୁ ଭିନ୍ନ ସମୟରେ ବା କାମାଭିଭୂତ ହୋଇ ସ୍ତ୍ରୀ ସମ୍ଭୋଗ କରୁ ନ ଥିଲେ । ହେ ଭରତଶ୍ରେଷ୍ଠ ! ତଦ୍ରୂପ ତିର୍ଯ୍ୟକ୍ ଯୋନିଗତ ପ୍ରାଣିମାନେ ମଧ୍ୟ ଋତୁକାଳରେ ଦାରାଭିଗମନ କରୁଥିଲେ । ଏହି କାରଣରୁ ଧର୍ମବଳରେ ହେ ପୃଥିବୀପାଳ ! ଧର୍ମ ଓ ବ୍ରତପରାୟଣ ପ୍ରଜାବର୍ଗ ସର୍ବପ୍ରକାର ଆଧି ଓ ବ୍ୟାଧିମୁକ୍ତ ହୋଇ ଶତ ସହସ୍ର ବର୍ଷ ପରମାୟୁ ଲାଭ କରି ବର୍ଦ୍ଧିତ ହେଲେ । ୧୨ ।

ଅନନ୍ତର କ୍ଷତ୍ରିୟମାନେ ସସାଗରା ସଶୈଳବନପତ୍ତନା ଏହି ବସୁନ୍ଧରାକୁ ପୁନର୍ବାର ଅଧିକାର କଲେ । ୧୩ । କ୍ଷତ୍ରିୟମାନେ ଧର୍ମରେ ଏହି ପୃଥିବୀକୁ ପାଳିବାରୁ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ପ୍ରମୋଦ ପ୍ରାପ୍ତ ହେଲେ ।୧୪।

ନରାଧିପମାନେ କାମ ଓ କ୍ରୋଧସମ୍ଭୂତ ଦୋଷମାନଙ୍କୁ ନିରସ୍ତ କରି ଧର୍ମରେ ଦଣ୍ଡ୍ୟ ବ୍ୟକ୍ତିକୁ ଦଣ୍ଡ ଦେଇ ପ୍ରଜାଙ୍କୁ ପାଳନ କଲେ । ୧୫ । କ୍ଷତ୍ରିୟମାନେ ଧର୍ମପରାୟଣ ହେବାରୁ ସହସ୍ରାକ୍ଷ ଶଚୀପତି ଯେଉଁ ଦେଶରେ ଓ କାଳରେ ଯେପରି ଆବଶ୍ୟକ, ତଦ୍ରୂପ ବର୍ଷାକରି ପ୍ରଜାଙ୍କୁ ପାଳିଲେ । ୧୬ । ହେ ଜନାଧିପ ! ସେ ସମୟରେ କେହି ବାଲ୍ୟକାଳରେ ମୃତ୍ୟୁ ଲଭିଲେ ନାହିଁ କି ଯୌବନପ୍ରାପ୍ତ ନ ହୋଇ ଦାରପରିଗ୍ରହ କଲେ ନାହିଁ । ୧୭ । ଏହି ପ୍ରକାରେ ହେ ଭରତର୍ଷଭ ! ଆୟୁଷ୍ମତୀ ପ୍ରଜାଙ୍କଦ୍ୱାରା ସାଗରାନ୍ତା ମେଦିନୀ ସମ୍ପୂର୍ଣ୍ଣ ହେଲା । ୧୮ । କ୍ଷତ୍ରିୟମାନେ ବହୁ ଦକ୍ଷିଣାଯୁକ୍ତ ବୃହତ୍ ଯଜ୍ଞମାନଙ୍କୁ ସମ୍ପନ୍ନ କଲେ ଓ ବିପ୍ରମାନେ ଉପନିଷଦ ସହିତ ସାଙ୍ଗବେଦମାନଙ୍କୁ ଅଧ୍ୟୟନ କଲେ । ୧୯ । ତତ୍କାଳରେ ହେ ନୃପ ! ବ୍ରାହ୍ମଣମାନେ ବେଦ ବିକ୍ରୟ କରୁ ନ ଥିଲେ ଅଥବା ଶୂଦ୍ରଙ୍କ ସାକ୍ଷାତରେ ବେଦମାନଙ୍କୁ ଉଚ୍ଚାରଣ କରୁ ନ ଥିଲେ । ୨୦ । ବୈଶ୍ୟମାନେ ଏହି କ୍ଷିତିରେ ବଳୀବର୍ଦ୍ଦଦ୍ୱାରା କୃଷି କରାଉଥିଲେ ଓ କୃଶାଙ୍ଗ ବଳଦମାନଙ୍କୁ ଭାରବହନରେ ନିଯୁକ୍ତ ନ କରି ତାଙ୍କୁ ପ୍ରତିପାଳନ କରୁଥିଲେ । ୨୧ । ଯେଉଁ ଗାଈର ବତ୍ସମାନେ ଘାସ ଧରି

ନ ଥାନ୍ତି, ସେହି ଗାଈମାନଙ୍କୁ ତତ୍କାଳର ଲୋକେ ଦୋହନ କରୁ ନ ଥିଲେ । ବଣିକମାନେ କୂଟ ପରିମାଣଦ୍ୱାରା ପଣ୍ୟଦ୍ରବ୍ୟ ବିକ୍ରୟ କରୁ ନ ଥିଲେ । ୨୨ । ହେ ନରବ୍ୟାଘ୍ର ! ଧର୍ମପରାୟଣ ମାନବମାନେ ଧର୍ମକୁ ଗ୍ରହିଁ ଧର୍ମ କର୍ମମାନଙ୍କୁ ସମ୍ପାଦନ କରୁଥିଲେ । ୨୩ । ହେ ନରାଧିପ ! ସର୍ବବର୍ଣ୍ଣର ଲୋକମାନେ ସ୍ୱକର୍ମ ନିରତ ଥିଲେ । ଏହି ପ୍ରକାରେ ହେ ନରବ୍ୟାଘ୍ର ! ତତ୍କାଳରେ କଦାପି ଧର୍ମର ହ୍ରାସ ହେଉ ନ ଥିଲା । ୨୪ । ହେ ଭରତର୍ଷଭ ! ଧେନୁମାନେ ଓ ନାରୀମାନେ ଯଥା ସମୟରେ ପ୍ରସୂତା ହେଉଥିଲେ ଓ ଋତୁ ଅନୁସାରେ ବୃକ୍ଷମାନେ ପୁଷ୍ପ ଓ ଫଳବାନ୍ ହେଉଥିଲେ । ୨୫ । ହେ ନୃପ ! ଏହିରୂପେ ସେହି ସତ୍ୟଯୁଗରେ ସମୁଦାୟ ମହୀ ବହୁତର ପ୍ରାଣୀରେ ପରିପୂର୍ଣ୍ଣ ହେଲା । ୨୬ ।

ହେ ମନୁଜେଶ୍ୱର ! ଏହିରୂପେ ମନୁଷ୍ୟ ଲୋକର ଉଦୟ ହେବାରୁ ରାଜାମାନଙ୍କର ଭାର୍ଯ୍ୟାଙ୍କ ଗର୍ଭରେ ଅସୁରମାନେ ଜନ୍ମିଲେ । ୨୭ । ସେମାନେ ଦେବତାଙ୍କଦ୍ୱାରା ଯୁଦ୍ଧରେ ବହୁବାର ନିର୍ଜ୍ଜିତ ହୋଇ ସ୍ୱର୍ଗରୁ ଓ ଐଶ୍ୱର୍ଯ୍ୟରୁ ଭ୍ରଂଶିତ ହୋଇ ଏହି କ୍ଷିତିରେ ଜାତ ହେଲେ । ୨୮ ।

ହେ ବିଭୋ ରାଜେନ୍ଦ୍ର ! ମନସ୍ୱୀ ଅସୁରମାନେ ମର୍ତ୍ତ୍ୟଲୋକରେ ଦେବତ୍ୱ କରିବା ଅଭିଳାଷରେ ଗୋ, ଅଶ୍ୱ, ମୃଗ, ମହିଷ, ହସ୍ତୀ, ଗର୍ଦ୍ଦଭ, ଉଷ୍ଟ୍ର, ପକ୍ଷୀ, ହିଂସ୍ରବ୍ୟାଘ୍ର ପ୍ରଭୃତି ପ୍ରାଣୀଙ୍କ ରୂପ ଧରି ଜାତ ହେଲେ । ୩୦ । ଜାତ ଓ ଜାୟମାନ ଅସୁରଙ୍କ ଭାରରେ ଧରା ଭାରାକ୍ରାନ୍ତା ହୋଇ ଆପଣାକୁ ଆପେ ଧାରଣ କରିବାକୁ ଅସମର୍ଥ ହେଲା । ୩୧ ।

ତଦନନ୍ତର ଦିତି ଓ ଦନୁଜଙ୍କଠାରୁ କେତେକ ମଦାନ୍ୱିତ ପୁତ୍ର ଜାତ ହୋଇ ଏହି ଲୋକରେ ମହୀପାଳ ହେଲେ । ୩୨ । ସେହି ବୀର୍ଯ୍ୟଶାଳୀ, ଅରିମର୍ଦ୍ଦନ, ଅସୁରମାନେ ନାନାପ୍ରକାର ରୂପ ଧାରଣ କରି ସାଗର ପର୍ଯ୍ୟନ୍ତ ଏହି ମହୀକୁ ଆବରଣ କଲେ ଓ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ଅନ୍ୟାନ୍ୟ ଜୀବମାନଙ୍କୁ ଆପଣା ପ୍ରଭାବରେ ପୀଡ଼ିତ କଲେ । ୩୪ । ହେ ରାଜନ୍ ! ସେହି ଅବ୍ରହ୍ମଣ୍ୟ ଅସୁରମାନେ ବୀର୍ଯ୍ୟମଦରେ ଓ ବଳମଦରେ ମତ୍ତ ହୋଇ ଆଶ୍ରମସ୍ଥିତ ମହର୍ଷିମାନଙ୍କୁ ଧର୍ଷିତ କରି ଓ ସର୍ବପ୍ରାଣୀଙ୍କୁ ତ୍ରସ୍ତ ଓ ହତ କରି ଲକ୍ଷ ଲକ୍ଷ ହୋଇ ଏହି ମହୀରେ ସର୍ବତ୍ର ବିଚରଣ କଲେ । ୩୬ । ହେ ରାଜନ୍ ! ଉକ୍ତ ପ୍ରକାରେ ବୀର୍ଯ୍ୟବଳଦୃପ୍ତ ମହାସୁରଙ୍କ-ଦ୍ୱାରା ମହୀ ପୀଡ଼ିତ ହୋଇ ବ୍ରହ୍ମାଙ୍କ ସମୀପରେ ଉପସ୍ଥିତ ହେଲେ । ୩୭ ।

ଦାନବଗଣଙ୍କ କର୍ତ୍ତୃକ ବଳପୂର୍ବକ ଆକ୍ରାନ୍ତ ହେବାରୁ ବାସୁକି, ଦିଗ୍‌ଗଜ କିମ୍ବା କୂର୍ମ କେହି ଏହି ସପର୍ବତ ମହୀକୁ ଧାରଣ କରି ପାରିଲେ ନାହିଁ । ୩୮ । ତଦନନ୍ତର ମହୀ ମହୀପାଳ ଭରାକ୍ରାନ୍ତା ଓ ଭୟପୀଡ଼ିତା ହୋଇ ସର୍ବଭୂତଙ୍କର ପିତାମହ ବ୍ରହ୍ମାଙ୍କର ଶରଣାଗତ ହେଲେ । ୩୯ । ମହାଭାଗ ଦେବଦ୍ୱିଜ ଓ ମହର୍ଷିଙ୍କଦ୍ୱାରା ସତ୍କୃତ ହୋଇ ସେହି ପୃଥିବୀ ଅବ୍ୟୟଦେବ, ଲୋକକର୍ତ୍ତା ବ୍ରହ୍ମାଙ୍କୁ ଦର୍ଶନ କଲେ ଓ ଦେବକାର୍ଯ୍ୟରେ ନିଯୁକ୍ତ, ହର୍ଷୋତ୍‌ଫୁଲ୍ଲ ଗନ୍ଧର୍ବ ଓ ଅପ୍‌ସରାଗଣଙ୍କ କର୍ତ୍ତୃକ ବନ୍ଦ୍ୟମାନ ସେହି ଦେବଙ୍କୁ ନମସ୍କାର କଲେ । ୪୧ ।

ଏଥି ଉତ୍ତାରୁ ହେ ଭାରତ ! ସମସ୍ତ ଲୋକପାଳଙ୍କ ସନ୍ନିଧିରେ ଶରଣାର୍ଥିନୀ ଭୂମି ତାହାଙ୍କୁ ଜଣାଇଲେ । ୪୨ । ସର୍ବଲୋକପାଳ ପ୍ରଧାନ ସ୍ୱୟମ୍ଭୂ ପରମେଷ୍ଠିଙ୍କୁ ପୂର୍ବରୁ ଭୂମିଙ୍କ ନିବେଦିତ ସମସ୍ତ ବିଷୟ ବିଦିତ-ଥିଲା । ୪୩ । କାରଣ ସେ ଜଗତର ସ୍ରଷ୍ଟା । ଅତଏବ ହେ ଭାରତ ! ସୁରାସୁର ଲୋକମାନଙ୍କର ଅଶେଷ ମନୋଗତ କଥା ତାହାଙ୍କୁ କିମ୍ପାଇ ବୋଧ ନ ହେବ । ୪୪ । ହେ ମହାରାଜ ! ସେହି ଭୂମିଙ୍କୁ, ଭୂମିପତି, ପ୍ରଭୁ, ଓ ସର୍ବପ୍ରାଣୀଙ୍କର ଜନ୍ମଦାତା, ଈଶ୍ୱର, ଶମ୍ଭୁ ଓ ପ୍ରଜାପତି ବୋଇଲେ, ହେ ବସୁନ୍ଧରେ ! ଯେଉଁ କାରଣରୁ ତୁମ୍ଭେ ଆମ୍ଭ ସମୀପକୁ ଆଗମନ କରିଅଛ, ସେହି ବିଷୟରେ ଆମ୍ଭେ ସମସ୍ତ ଦେବତାମାନଙ୍କୁ ନିଯୁକ୍ତ କରିବୁଁ । ୪୬ । ବୈଶମ୍ପାୟନ ବୋଇଲେ, ହେ ରାଜନ୍ ! ଏହା କହି ସର୍ବ ପ୍ରାଣିସ୍ରଷ୍ଟା ସେହି ଦେବ ବ୍ରହ୍ମା ମହୀଙ୍କି ବିଦାୟ ଦେଲେ ଓ ସର୍ବ ବିବୁଧମାନଙ୍କୁ ସ୍ୱୟଂ ଆଦେଶ ଦେଲେ । ଏହି ଭୂମିଙ୍କର ଭାର ଅପନୋଦନ କରିବାନିମିତ୍ତ ଓ ବିରୋଧ କରିବା କାରଣ ତୁମ୍ଭେମାନେ ଏହି ପୃଥିବୀରେ ଜନ୍ମ ହୁଅ । ୪୮ । ଗନ୍ଧର୍ବ ଓ ଅପ୍‌ସରାଙ୍କୁ ମଧ୍ୟ ଆଣି ସେମାନଙ୍କୁ ସମସ୍ତଙ୍କୁ ତାହାଙ୍କର କରଣୀୟ ଯାହା, ତାହା ସେହି ଭଗବାନ୍ କହିଦେଲେ । ୪୯ ।

ବ୍ରହ୍ମା ବୋଇଲେ, ମନୁଷ୍ୟ ଲୋକରେ ତୁମ୍ଭେମାନେ ଆପଣା ଅଂଶରେ ଅନେକ ହୋଇ ଜନ୍ମ ହୁଅ । ଅନନ୍ତର ଶକ୍ରଙ୍କୁ ଆଦିକରି ସମସ୍ତେ ସୁରଗୁରୁଙ୍କର ତଥ୍ୟ, ଅର୍ଥ୍ୟ ଓ ପଥ୍ୟ ବଚନ ଶ୍ରବଣ କରି ତାହାଙ୍କୁ ଗ୍ରହଣ କଲେ । ୫୦ । ତଦନନ୍ତର ସେମାନେ ସମସ୍ତେ ଆପଣା ଆପଣା ଅଂଶରେ ପୃଥିବୀରେ ଜନ୍ମିବା ନିମିତ୍ତ ପ୍ରସ୍ତୁତ ଥାଇ ଅମିତ୍ରଘ୍ନ ନାରାୟଣଙ୍କ ଦର୍ଶନାର୍ଥ ବୈକୁଣ୍ଠରେ ଉପଗତ ହେଲେ । ୫୧ ।

ଯେ ଚକ୍ର ଓ ଗଦାଧାରୀ, ପୀତବସନ, ଉଜ୍ଜ୍ୱଳକାନ୍ତି, ପଦ୍ମନାଭ, ସୁରାରିନାଶକ, ବିଶାଳ ଓ ସୁବୃହତ୍‌ନେତ୍ର, ଯେ ପ୍ରଜାପତିଙ୍କର ପତି, ଦେବ, ସୁରନାଥ, ମହାବଳ, ଶ୍ରୀବତ୍ସାଙ୍କିତ ହୃଦୟ, ହୃଷୀକେଶ, ସର୍ବଦୈବତପୂଜିତ ସେହି ପୁରୁଷୋତ୍ତମଙ୍କୁ ପୃଥିବୀର ଶୋଧନ ନିମିତ୍ତ ଇନ୍ଦ୍ର ବୋଇଲେ, "ଆପଣ ନିଜ ଅଂଶରେ ଅବତାର ଗ୍ରହଣ କର ।" ହରି ତାଙ୍କୁ 'ତଥାସ୍ତୁ' ବୋଲି ବୋଇଲେ । ୫୪ ।

---

## ଅଧ୍ୟାୟ—୬୫

ବୈଶମ୍ପାୟନ ବୋଇଲେ—ଅନନ୍ତର ନାରାୟଣଙ୍କ ସହିତ ଇନ୍ଦ୍ର ପ୍ରତିଜ୍ଞା କଲେ ଯେ ସୁରଗଣଙ୍କ ସହିତ ସେମାନେ ସମସ୍ତେ ଆପଣା ଆପଣା ଅଂଶରେ ସ୍ୱର୍ଗରୁ ପୃଥିବୀରେ ଅବତରଣ କରିବେ । ୧ । ସବୁ ଦେବତା-ମାନଙ୍କୁ ଶକ୍ର ମଧ୍ୟ ସ୍ୱୟଂ ଆଦେଶ ଦେଇ ପୁନର୍ବାର ନାରାୟଣଙ୍କ ସ୍ଥାନରୁ ନିର୍ଗତ ହେଲେ । ୨ । ଅମରାରିଙ୍କ ବିନାଶ ନିମିତ୍ତ ଓ ସର୍ବଲୋକର ହିତ ସାଧନ ନିମିତ୍ତ ଦେବତାମାନେ ସମସ୍ତେ କ୍ରମରେ ମହୀକୁ ଅବତରଣ କଲେ । ୩ । ତଦନନ୍ତର ବ୍ରହ୍ମର୍ଷିଙ୍କ ବଂଶରେ ଓ ରାଜର୍ଷିଙ୍କ କୁଳରେ, ହେ ରାଜ-ଶାର୍ଦ୍ଦୂଳ ! ଦେବତାମାନେ ଆପଣା ଇଚ୍ଛାନୁରୂପ ଜନ୍ମ ହେଲେ ଓ ଦାନବ, ରାକ୍ଷସ, ଗନ୍ଧର୍ବ, ପନ୍ନଗ ପ୍ରଭୃତିଙ୍କୁ ଓ ଅନ୍ୟାନ୍ୟ ଅସଂଖ୍ୟ ହିଂସ୍ର ଜନ୍ତୁମାନଙ୍କୁ ସଂହାର କଲେ । ୫ । ହେ ଭରତସତ୍ତମ ! ସେମାନେ ଏପରି ବଳବନ୍ତ ହୋଇଥିଲେ ଯେ ଦାନବ, ରାକ୍ଷସ, ଗନ୍ଧର୍ବ ବା ପନ୍ନଗମାନେ ସେମାନଙ୍କୁ ବାଲ୍ୟକାଳରେ ସୁଦ୍ଧା ବଧ କରିବାକୁ ଅସମର୍ଥ ହୋଇଥିଲେ । ୬ ।

ଜନମେଜୟ ବୋଇଲେ, ଦେବ ଓ ଦାନବଗଣଙ୍କର, ଗନ୍ଧର୍ବ ଓ ଅପ୍‌ସରାମାନଙ୍କର, ସମସ୍ତ ମାନବମାନଙ୍କର, ଯକ୍ଷ ଓ ରକ୍ଷଗଣଙ୍କର, ଅଥଚ ସର୍ବ ପ୍ରାଣିମାନଙ୍କର ଯେପରି ଜନ୍ମ ହେଲା ତାହା ଆମ୍ଭେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁ, ଆପଣ ସେହି ସମ୍ଭବ ବୃତ୍ତାନ୍ତ ବୋଲିବାକୁ ଯୋଗ୍ୟ ହେଉନ୍ତୁ । ୮ ।

ବୈଶମ୍ପାୟନ ବୋଇଲେ—ହେଉ, ସ୍ୱୟମ୍ଭୂଙ୍କୁ ନମସ୍କାର କରି ସୁରେନ୍ଦ୍ରମାନଙ୍କର ଓ ସମସ୍ତ ଲୋକଙ୍କର ଯେପରି ପ୍ରଭବ ଓ ପ୍ରଳୟ ହେଲା ତାହା ଆମ୍ଭେ ତୁମ୍ଭଙ୍କୁ କହିବୁ । ୯ ।

ବ୍ରହ୍ମାଙ୍କର ଛଅଗୋଟି ମନୋଭବ ପୁତ୍ର ବିଦିତ ଅଛନ୍ତି, ତାହାଙ୍କର ନାମ ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ ଓ କ୍ରତୁ । ୧୦ । ମରୀଚିଙ୍କ ପୁତ୍ର କଶ୍ୟପ, କଶ୍ୟପଙ୍କଠାରୁ ଏହି ସମସ୍ତ ପ୍ରଜା ଜାତ ହେଲେ । ଦକ୍ଷପ୍ରଜାପତିଙ୍କ ଠାରୁ ମହାଭାଗା ତ୍ରୟୋଦଶ କନ୍ୟା ଜାତ ହେଲେ । ହେ ମନୁଜବ୍ୟାଘ୍ର ! ତାହାଙ୍କର ନାମ ଅଦିତି, ଦିତି, ଦନୁ, କାଳା, ଦନାୟୁ, ସିଂହିକା, କ୍ରୋଧା, ପ୍ରାଧା, ବିଶ୍ୱା, ବିନତା, କପିଳା, ମୁନି ଓ କଦ୍ରୁ । ହେ ଭରତ ! ଏହାଙ୍କର ବୀର୍ଯ୍ୟସମ୍ପନ୍ନ ପୁତ୍ର ଓ ପୌତ୍ର ଅସଂଖ୍ୟ ଜାତ ହେଲେ । ୧୩ ।

ଅଦିତିଙ୍କଠାରୁ ଭୁବନେଶ୍ୱର ଦ୍ୱାଦଶ ଆଦିତ୍ୟ ଜନ୍ମିଲେ । ହେ ଭରତ ! ତାହାଙ୍କର ନାମ ବୋଲୁଅଛୁ ଶୁଣ । ଧାତା, ମିତ୍ର, ଅର୍ଯ୍ୟମା, ଶକ୍ର, ବରୁଣ, ଅଂଶ, ଭଗ, ବିବସ୍ୱାନ୍, ପୂଷା, ସବିତା, ତ୍ୱଷ୍ଟା ଓ ବିଷ୍ଣୁ । ଏହି ଦ୍ୱାଦଶାଦିତ୍ୟଙ୍କ ମଧ୍ୟରେ କନିଷ୍ଠ ସମସ୍ତଙ୍କ ଅପେକ୍ଷା ଗୁଣରେ ଅଧିକ ଅଟନ୍ତି । ୧୬ ।

ଦିତିଙ୍କର ଗୋଟିଏ ପୁତ୍ର, ତାହାଙ୍କର ନାମ ହିରଣ୍ୟକଶିପୁ । ହିରଣ୍ୟକଶିପୁଙ୍କର ପଞ୍ଚପୁତ୍ର ଜନ୍ମିଥିଲେ । ତନ୍ମଧ୍ୟରେ ମହାତ୍ମା ପ୍ରହ୍ଲାଦ ସର୍ବଜ୍ୟେଷ୍ଠ, ତାହାଙ୍କ ତଳେ ସଂହ୍ରାଦ, ତୃତୀୟ ଅନୁହ୍ରାଦ, ତତ୍ପରେ ଶିବି ଓ ବାସ୍କଳ ଦୁଇଗୋଟି । ୧୮ ।

ହେ ଭରତ ! ତାହାଙ୍କର ନାମ ବିରୋଚନ, କୁମ୍ଭ ଓ ନିକୁମ୍ଭ । ବିରୋଚନଙ୍କଠାରୁ ପ୍ରତାପବାନ୍ ବଳି ଜାତ ହେଲେ । ବଳିଙ୍କର ପୁତ୍ର ବାଣ ନାମକ ବିଖ୍ୟାତ ମହାସୁର ଥିଲେ । ୨୦ । ସେହି ବାଣ ରୁଦ୍ରଙ୍କର ଅନୁଚର ଥିଲେ ଓ ତାହାଙ୍କର ନାମ ମହାକାଳ ବୋଲି ବିଖ୍ୟାତ ଥିଲା ।

ହେ ଭରତ ! ଦନୁଙ୍କର ଚତ୍ୱାରିଂଶତ ପୁତ୍ର ସର୍ବତ୍ର ବିଖ୍ୟାତ ହୋଇଥିଲେ । ୨୧ । ସେମାନଙ୍କ ମଧ୍ୟରେ ପ୍ରଥମ ମହାଯଶା ବିପ୍ରଚିତ୍ତି ରାଜା ହୋଇଥିଲେ; ଶମ୍ବର, ନମୁଚି, ପୁଲୋମା, ଅସିଲୋମା, କେଶୀ, ଦୁର୍ଜ୍ଜୟ, ଅୟଃଶିରା, ଅଶ୍ୱଶିରା, ବୀର୍ଯ୍ୟବାନ୍, ଅଶ୍ୱଶଙ୍କୁ, ଗଗନମୂର୍ଦ୍ଧା, ବେଗବାନ୍, କେତୁମାନ୍, ସ୍ୱର୍ଭାନୁ, ଅଶ୍ୱ, ଅଶ୍ୱପତି, ବୃଷପର୍ବା, ଅଜକ, ଅଶ୍ୱଗ୍ରୀବ, ସୂକ୍ଷ୍ମ, ମହାବଳ, ତୁହୁଣ୍ଡ, ଇଷୁପାଦ, ଏକଚକ୍ର, ବିରୂପାକ୍ଷ, ହର ଓ ଅହର, ନିଚନ୍ଦ୍ର, ନିକୁମ୍ଭ, କୁପଟ, କପଟ, ଶରଭ, ଶଲଭ, ସୂର୍ଯ୍ୟ ଓ ଚନ୍ଦ୍ର ଏମାନେ ଦନୁବଂଶୋଦ୍ଭବ ଦାନବ; ତାହାଙ୍କର ନାମ ପରିକୀର୍ତ୍ତିତ ହେଲା । ୨୬ । ଦେବଗଣଙ୍କ ମଧ୍ୟରେ ପରିଗଣିତ ସୂର୍ଯ୍ୟ ଓ ଚନ୍ଦ୍ର ପୃଥକ୍ ଓ ଦାନବଙ୍କ

ମଧ୍ୟରେ ପୂର୍ବୋଲ୍ଲିଖିତ ସୂର୍ଯ୍ୟ ଓ ଚନ୍ଦ୍ର ସେ ପୃଥକ୍ । ୨୭ । ହେ ରାଜନ୍ ! ଦନୁବଂଶରେ ଏହିଗୁଡ଼ିକ ବିଖ୍ୟାତ ଦାନବ ଥିଲେ ଓ ସେହି ବଂଶରେ ମହାବଳ ପରାକ୍ରାନ୍ତ ଆହୁରି ଦଶଗୋଟି ଦାନବ ଜନ୍ମିଥିଲେ । ୨୮ । ତାହାଙ୍କର ନାମ ଏକାକ୍ଷ, ଶାରମୃତପ, ପ୍ରଲମ୍ବ, ନରକ, ବାତାପୀ, ଶତ୍ରୁତପନ, ଶଠ, ଗବିଷ୍ଠ, ବନାୟୁ, ଦୀର୍ଘଜିହ୍ୱ । ହେ ଭାରତ ! ଏମାନଙ୍କର ପୁଣି ପୁତ୍ର ଓ ପୌତ୍ର ଅସଂଖ୍ୟ ହୋଇଥିଲେ । ୩୦ । ସିଂହିକା ଚନ୍ଦ୍ରାର୍କଙ୍କ ଶତ୍ରୁ ରାହୁଙ୍କୁ, ସୁଚନ୍ଦ୍ରକୁ, ଚନ୍ଦ୍ରହନ୍ତାକୁ ଓ ଚନ୍ଦ୍ରାର୍କମର୍ଦ୍ଦନକୁ ଏପରି ଚାରିପୁତ୍ରଙ୍କୁ ପ୍ରସବ କରିଥିଲେ । ୩୧ । ତଦ୍ବ୍ୟତୀତ ସେହି କ୍ରୂରର କ୍ରୂର ସ୍ୱଭାବାପନ୍ନ ଅସଂଖ୍ୟ ପୁତ୍ର ପୌତ୍ର ଥିଲେ । ତନ୍ମଧ୍ୟରେ କ୍ରୋଧବଶ ନାମରେ ଗୋଟିଏ ଗଣ ଓ କ୍ରୂରକର୍ମା ଓ ଅରିମର୍ଦ୍ଦନ ନାମରେ ରାକ୍ଷସ ଥିଲେ । ୩୨ । ଦନାୟୁର ଅସୁରଶ୍ରେଷ୍ଠ ଚାରିପୁତ୍ର ହୋଇଥିଲେ । ତାହାଙ୍କର ନାମ ବିକ୍ଷର, ବଳ, ବୀର ଓ ମହାସୁର ବୃତ୍ର । ୩୩ ।

କାଳାର ଗର୍ଭରୁ କାଳ ସଦୃଶ ଅସୁରଙ୍କ ମଧ୍ୟରେ ବିଖ୍ୟାତ ମହାବଳ, ଶତ୍ରୁତାପନ ଅନେକଗୁଡ଼ିଏ ପୁତ୍ର ଜନ୍ମିଲେ । ୩୪ । ତନ୍ମଧ୍ୟରେ ବିନାଶନ, କ୍ରୋଧ, କ୍ରୋଧହନ୍ତା, କ୍ରୋଧଶତ୍ରୁ ଓ କାଳକେୟ ପ୍ରଭୃତି ପ୍ରଧାନ । ୩୫ । ଅସୁରମାନଙ୍କର ଉପାଧ୍ୟାୟ ଶୁକ୍ର ଗୋଟିଏ ଋଷିଙ୍କର ପୁତ୍ର ଥିଲେ । ସେହି ଉଶନାଙ୍କର ଚାରିପୁତ୍ର ଅସୁରଗଣଙ୍କର ଯାଜକ ବୋଲି ଖ୍ୟାତ ହୋଇଥିଲେ । ତଦ୍ଭିନ୍ନ ତ୍ୱଷ୍ଟାଧର ଓ ଅତ୍ରି ଏ ଦୁଇଜଣେ ରୌଦ୍ରକର୍ମା ପୁରୋହିତ ଥିଲେ । ଏମାନେ ସମସ୍ତେ ସୂର୍ଯ୍ୟ ସଦୃଶ ତେଜସ୍ୱୀ ଓ ବ୍ରହ୍ମଲୋକ-ପରାୟଣ ଥିଲେ । ୩୭ । ହେ ମହୀପାଳ ! ପୁରାଣରେ ଆମ୍ଭେ ବେଗବାନ୍ ଅସୁରଙ୍କର ଓ ସୁରଗଣଙ୍କର ବଂଶପ୍ରଭବ ଯେପରି ଶ୍ରୁତ ଥିଲୁଁ, ତାହା ଆପଣଙ୍କୁ କହିଲୁଁ । ଏମାନଙ୍କର ଯେତେ ଅପତ୍ୟ ସେମାନେ ଅସଂଖ୍ୟ ଥିବାରୁ ତାହାଙ୍କର ନାମ କହି ନ ହୁଏ । ୩୯ ।

ବିନତାଙ୍କର ଗରୁଡ଼, ଅରୁଣ, ତାର୍କ୍ଷ୍ୟ, ଅରିଷ୍ଟନେମି, ଆରୁଣି ଓ ବାରୁଣି ବୋଲି ପୁତ୍ର ହୋଇଥିଲେ । ୪୦ ।

କଦ୍ରୁଙ୍କର ଶେଷ, ଅନନ୍ତ, ବାସୁକି, ତକ୍ଷକ, କୂର୍ମ ଓ କୁଲିକ ବୋଲି ପୁତ୍ର ଥିଲେ । ୪୧ ।

* ମୁନିଙ୍କର ଷୋଡ଼ଶ ପୁତ୍ର ଥିଲେ, ଯଥା ଭୀମସେନ, ଉଗ୍ରସେନ, ସୁପର୍ଣ୍ଣ, ବରୁଣ, ଗୋପତି, ଧୃତରାଷ୍ଟ୍ର, ସପ୍ତମ ସୂର୍ଯ୍ୟବର୍ଚ୍ଚା, ସତ୍ୟବାକ୍, ଅର୍କପର୍ଣ୍ଣ, ପ୍ରଯୁତ, ଭୀମ, ବିଖ୍ୟାତ ସର୍ବଜ୍ଞ ଓ ଜିତେନ୍ଦ୍ରିୟ ଚିତ୍ରରଥ, ଶାଳିଶିରା, ଚତୁର୍ଦ୍ଦଶରେ ପର୍ଜ୍ଜନ୍ୟ, କଳି ପଞ୍ଚଦଶ ଓ ନାରଦଟି ଷୋଡ଼ଶ । ଏମାନେ ମୁନିଙ୍କ ଗର୍ଭରୁ ଜାତ ହୋଇ ଦେବ ଗନ୍ଧର୍ବ ବୋଲି ପରିକୀର୍ତ୍ତିତ ହୋଇଥିଲେ । ୪୪ ।

ହେ ଭାରତ ! ଅନ୍ୟାନ୍ୟ ପ୍ରଭୃତି ବଂଶମାନଙ୍କୁ ମଧ୍ୟ କୀର୍ତ୍ତିତ କରିବି । ଅନବଦ୍ୟା, ମନୁ, ବଂଶା, ଅସୁରା, ମାର୍ଗଣପ୍ରିୟା, ଅନୂପା, ସୁଭଗା, ଭାସୀ— ଏହି କନ୍ୟାମାନେ ପ୍ରାଧାଙ୍କଠାରୁ ଜାତ ହେଲେ । ସିଦ୍ଧ, ପୂର୍ଣ୍ଣ, ବର୍ହି, ମହାଯଶା ପୂର୍ଣ୍ଣାୟୁ, ବ୍ରହ୍ମଚାରୀ, ରତିଗୁଣ, ସାଧଶ୍ରେଷ୍ଠ ସୁପର୍ଣ୍ଣ, ବିଶ୍ୱାବସୁ, ଭାନୁ ଓ ସୁଚନ୍ଦ୍ର ଏହି ଦଶଗୋଟି ଦେବ ଗନ୍ଧର୍ବ ପ୍ରାଧେୟ ବୋଲି ବିଖ୍ୟାତ ହେଲେ । ଏତଦ୍‌ବ୍ୟତିରେକେ ସେହି ମହାଭାଗା ପ୍ରାଧା ଦେବୀ ମହର୍ଷି କଶ୍ୟପଙ୍କ ସହଯୋଗରେ ବିଖ୍ୟାତ ପୁଣ୍ୟଲକ୍ଷଣ ଅପ୍‌ସରାବଂଶ ପ୍ରସବ କରିଥିଲେ । ସେମାନଙ୍କର ନାମ ଅଳମ୍ବୁଷା, ମିଶ୍ରକେଶୀ, ବିଦ୍ୟୁତ୍‌ପର୍ଣ୍ଣା, ତିଲୋତ୍ତମା, ରକ୍ଷିତା, ରମ୍ଭା, ମନୋରମା, କେଶିନୀ, ସୁବାହୁ, ସୁରତା, ସୁରଜା ଓ ସୁପ୍ରିୟା; ଅଥଚ ଅତିବାହୁ, ବିଖ୍ୟାତ ହାହା, ହୂହୂ ଓ ତୁମ୍ବୁରୁ ବୋଲି ଚାରିଗୋଟି ଗନ୍ଧର୍ବଶ୍ରେଷ୍ଠଙ୍କୁ ମଧ୍ୟ ସେ ପ୍ରସବ କରିଥିଲେ । ୫୧ ।

ପୁରାଣରେ କୀର୍ତ୍ତିତ ଅଛି ଯେ ଅମୃତ, ବ୍ରାହ୍ମଣ, ଗୋ, ଗନ୍ଧର୍ବ ଓ ଅପ୍‌ସରା ଏମାନେ କପିଳାଙ୍କର ଅପତ୍ୟ । ୫୨ ।

ଆପଣଙ୍କ ନିକଟରେ ସର୍ବପ୍ରାଣୀଙ୍କର ସମ୍ଭବ ଯଥାବତ୍ କୀର୍ତ୍ତିତ ହେଲା । ଗନ୍ଧର୍ବ, ଅପ୍‌ସରା, ଭୁଜଙ୍ଗ, ସୁପର୍ଣ୍ଣ, ରୁଦ୍ର, ମରୁତ, ଗୋ ଏବଂ ପୁଣ୍ୟକର୍ମା ଶ୍ରୀମାନ୍ ବ୍ରାହ୍ମଣଙ୍କର ଉତ୍ପତ୍ତି ବିବରଣ ଆନୁପୂର୍ବିକ କଥିତ ହେଲା । ୫୪ । ଏହାକୁ ଶ୍ରବଣ କଲେ ଆୟୁର୍ବୃଦ୍ଧି ହୁଏ, ପୁଣ୍ୟ ହୁଏ, ଶ୍ରୋତା ଲୋକରେ ଧନ୍ୟ ହୁଏ, ଶୁଣିବାକୁ ସୁଖ ଲାଗେ, ଅତଏବ ଏ ଶ୍ରବଣୀୟ ଓ ସତତ ଅସୂୟା ରହିତ ହୋଇ ଅନ୍ୟକୁ ଶୁଣାଇବାର ଯୋଗ୍ୟ ଅଟଇ ।୫୫। ମହାତ୍ମାମାନଙ୍କର ଏହି ବଂଶ ବିବରଣକୁ ଯେ ନିୟମୀ ହୋଇ ବ୍ରାହ୍ମଣ ଓ

---

* ଦକ୍ଷଙ୍କର ମୁନି ଓ ପ୍ରାଧାନାମ୍ନୀ କନ୍ୟା ଥିଲେ; ସେହି ମୁନିଙ୍କର ଏ ଷୋଡ଼ଶ ପୁତ୍ର ।

ଦେବସନ୍ନିଧିରେ ପାଠ କରଇ, ସେ ଅପତ୍ୟଲାଭ କରେ, ନିର୍ମଳ ଯଶ ଓ ଲକ୍ଷ୍ମୀ ଲଭଇ ଓ ପରଲୋକରେ ସଦ୍‌ଗତିକ ପ୍ରାପ୍ତ ହୁଅଇ । ୫୬ ।

---

## ଅଧ୍ୟାୟ—୬୬

ବୈଶମ୍ପାୟନ କହିଲେ—ବ୍ରହ୍ମାଙ୍କର ମାନସ ପୁତ୍ର ଛଅଗୋଟି ମହର୍ଷି ବିଦିତ ଅଛନ୍ତି । ତଭିନ୍ନ ତାହାଙ୍କର ସ୍ଥାଣୁ ନାମକ ପୁତ୍ରଠାରୁ ପରମ ତେଜସ୍ୱୀ ବିଖ୍ୟାତ ଏକାଦଶ ପୁତ୍ର ଜନ୍ମିଥିଲେ; ଯଥା—ମୃଗବ୍ୟାଧ, ସର୍ପ, ମହାଯଶା ନିରୃତି, ଅଜୈକପାଦ, ଅହିବ୍ରଧ୍ନ, ପରନ୍ତପପିନାକୀ, ଦହନୋତ୍‌ଥେଶ୍ୱର, ମହାଦ୍ୟୁତି, କପାଳୀ, ସ୍ଥାଣୁ ଓ ଭଗବାନ୍ ଭଗ । ଏମାନେ ଏକାଦଶ ରୁଦ୍ର ବୋଲି ବିଖ୍ୟାତ । ୩ । ମରୀଚ, ଅଙ୍ଗିର, ଅତ୍ରି, ପୁଲସ୍ତ୍ୟ, ପୁଲହ ଓ କ୍ରତୁ, ଏହି ଛଅଗୋଟି ମହର୍ଷି ବ୍ରହ୍ମାଙ୍କର ବୀର୍ଯ୍ୟବନ୍ତ ପୁତ୍ର । ୪ । ଅଙ୍ଗିରଙ୍କର ତିନପୁତ୍ର, ସେମାନେ ଲୋକରେ ସର୍ବତ୍ର ବିଖ୍ୟାତ । ସେମାନେ ବ୍ରତଧାରୀ ଓ ତାହାଙ୍କର ନାମ ବୃହସ୍ପତି, ଉତଥ୍ୟ ଓ ସମ୍ବର୍ତ୍ତ । ୫ । ହେ ମନୁଜାଧିପ ! ଅତ୍ରିଙ୍କର ବହୁତର ପୁତ୍ର ବୋଲି ଶୁଣାଅଛୁ । ସେମାନେ ସମସ୍ତେ ବେଦବିତ୍, ସିଦ୍ଧ, ଶାନ୍ତାତ୍ମା ଓ ମହର୍ଷି ଥିଲେ । ୬ । ହେ ମନୁଜବ୍ୟାଘ୍ର ! ରାକ୍ଷସ, ବାନର, କିନ୍ନର ଓ ଯକ୍ଷଗଣ ସେହି ଧୀମାନ୍ ପୁଲସ୍ତ୍ୟଙ୍କର ପୁତ୍ର । ୭ । ହେ ରାଜନ୍ ! ଶଲଭ, ସିଂହ, କିଂପୁରୁଷ, ବ୍ୟାଘ୍ର, ଭଲ୍ଲୁକ ଓ ଈହାମୃଗ—ଏମାନେ ପୁଲହଙ୍କର ପୁତ୍ର । କ୍ରତୁଙ୍କର କ୍ରତୁତୁଲ୍ୟ ପୁତ୍ରମାନେ ସୂର୍ଯ୍ୟଙ୍କ ସହଚର ଓ ବାଲଖିଲ୍ୟ ବୋଲି ତିନ ଲୋକରେ ବିଶ୍ରୁତ ଓ ସତ୍ୟବ୍ରତପରାୟଣ ହୋଇଥିଲେ । ୯ । ହେ ପୃଥିବୀପାଳ ! ପ୍ରଶାନ୍ତଚିତ୍ତ, ସୁମହାତପା, ଭଗବାନ୍ ଦକ୍ଷମୁନି ବ୍ରହ୍ମାଙ୍କର ଦକ୍ଷିଣ ଅଙ୍ଗୁଷ୍ଠରୁ ଜାତ ହେଲେ ( ୧୦ ) ଓ ସେହି ମହାତ୍ମାଙ୍କର ଭାର୍ଯ୍ୟା ବ୍ରହ୍ମାଙ୍କର ବାମାଙ୍ଗୁଷ୍ଠରୁ ଜାତ ହୋଇଥିଲେ । ସେହି ଭାର୍ଯ୍ୟାଙ୍କଠାରେ ଦକ୍ଷ ପ୍ରଜାପତି ପଞ୍ଚାଶତ୍ କନ୍ୟା ଜାତ କରିଥିଲେ । ସେହି କନ୍ୟାମାନେ ସମସ୍ତେ ସୁନ୍ଦରୀ ଓ କମଳଲୋଚନା । ଦକ୍ଷଙ୍କର ପୁତ୍ର ନ ଥିବାରୁ ସେ କନ୍ୟାମାନଙ୍କୁ ପୁତ୍ରିକା *

---

*ଏହି କନ୍ୟାର ଭ୍ରାତା ନାହିଁ । ଏହାଙ୍କୁ ଅଳଙ୍କାରରେ ଭୂଷିତ କରି ତୁମ୍ଭଙ୍କୁ ପ୍ରଦତ୍ତ କଲୁଁ । ଏହାଙ୍କଠାରେ ଯେଉଁ ପୁତ୍ର ହେବ ସେ ଆମ୍ଭର ହେବ—ଏରୂପ ପ୍ରତିଜ୍ଞା କରି ଯେଉଁ ପୁତ୍ରୀ ପ୍ରଦତ୍ତ ହୁଏ ତାହାକୁ "ପୁତ୍ରିକା" ବୋଲି ।

କରିଥିଲେ ।୧୨। ସେହି ଦକ୍ଷ ଦଶଗୋଟି କନ୍ୟାଙ୍କୁ ଧର୍ମଙ୍କୁ ଦେଲେ; ସପ୍ତବିଂଶତି ଇନ୍ଦୁଙ୍କୁ ଦେଲେ ଓ କଶ୍ୟପଙ୍କୁ ତ୍ରୟୋଦଶ କନ୍ୟା ଦାନ କଲେ । ସେମାନେ ସମସ୍ତେ "ଦୈବ" ନାମକ ବିଶିଷ୍ଟ ବିଧାନାନୁସାରେ ✝ ପରିଣୀତା ହୋଇଥିଲେ ।୧୩। ତନ୍ମଧ୍ୟରେ ଧର୍ମଙ୍କର ପତ୍ନୀଙ୍କର ନାମ କୀର୍ତ୍ତନ କରୁଅଛୁଁ, ଆମ୍ଭଠାରୁ ଶୁଣିବା ହେଉନ୍ତୁ । କୀର୍ତ୍ତି, ଲକ୍ଷ୍ମୀ, ଧୃତି, ମେଧା, ପୁଷ୍ଟି, ଶ୍ରଦ୍ଧା, କ୍ରିୟା, ବୁଦ୍ଧି, ଲଜ୍ଜା ଓ ମତି, ଏହି ଦଶ । ଭଗବାନ୍ ସ୍ୱୟମ୍ଭୂ ଏହିମାନଙ୍କୁ ଧର୍ମର ଦ୍ୱାରସ୍ୱରୂପ ବିହିତ କରିଥିଲେ ।୧୫। ଚନ୍ଦ୍ରଙ୍କର ସପ୍ତବିଂଶତି ପତ୍ନୀ ଲୋକରେ ବିଖ୍ୟାତ ଅଛନ୍ତି । ସେମାନେ ସମସ୍ତେ କାଳଜ୍ଞାପନାର୍ଥ ନିଯୁକ୍ତ ହୋଇଅଛନ୍ତି * ।୧୬।

ବ୍ରହ୍ମାଙ୍କର ପୁତ୍ର ମନୁ, ତାହାଙ୍କର ପୁତ୍ର ପ୍ରଜାପତି, ତାହାଙ୍କଠାରୁ ଅଷ୍ଟବସୁ ଜନ୍ମ ହୋଇଥିଲେ । ସେମାନଙ୍କ ବିସ୍ତାରିତ ବିବରଣ କହିବୁଁ ଶ୍ରବଣ କର ।୧୭।

ଧର, ଧ୍ରୁବ, ସୋମ, ଅହ, ଅନିଳ, ଅନଳ, ପ୍ରତ୍ୟୂଷ, ପ୍ରଭାସ, ଏମାନେ ଅଷ୍ଟବସୁ ବୋଲି ପ୍ରକୀର୍ତ୍ତିତ ହୋଇଅଛନ୍ତି ।୧୮। ଧୂମ୍ରାଙ୍କ ଗର୍ଭରୁ ଧର ଓ ବ୍ରହ୍ମବିଦ୍ୟାବିଶାରଦ ଧ୍ରୁବ ଜାତ ହେଲେ । ମନସ୍ୱିନୀ ଶ୍ୱସାଠାରୁ ସୋମ ଓ ଅନିଳ ଜନ୍ମିଲେ ।୧୯। ରତାଙ୍କର ପୁତ୍ର ଅହ; ଅନଳ ଶାଣ୍ଡିଲୀଙ୍କର ପୁତ୍ର ଓ ପ୍ରଭାତାଙ୍କର ଦୁଇପୁତ୍ର ପ୍ରତ୍ୟୂଷ ଓ ପ୍ରଭାସ ।୨୦। ଦ୍ରବିଣ ଓ ହୁତ ହବ୍ୟବହ ଏ ଦୁହେଁ ଧରଙ୍କର ପୁତ୍ର ଅଟନ୍ତି । ସଂହାରକର୍ତ୍ତା ଭଗବାନ୍ କାଳ, ଧ୍ରୁବଙ୍କର ପୁତ୍ର ଅଟନ୍ତି ।୨୧। ସୋମଙ୍କର ପୁତ୍ର ବର୍ଚ୍ଚାଃ; ବର୍ଚ୍ଚାଙ୍କଠାରୁ ବର୍ଚ୍ଚସ୍ୱୀ ଜାତ ହେଲେ । ମନୋହରା ବର୍ଚ୍ଚସ୍ୱୀଙ୍କର ଗର୍ଭରୁ ଶିଶିର, ପ୍ରାଣ ଓ ରମଣ ଜାତ ହେଲେ ।୨୨। ଜ୍ୟୋତିଃ, ଶମ, ଶାନ୍ତ ଓ ମୁନି ଏମାନେ ଅହଙ୍କଠାରୁ ଜନ୍ମିଲେ । ଶରବନବାସୀ ଶ୍ରୀମାନ୍ କୁମାର ଅଗ୍ନିଙ୍କର ପୁତ୍ର ଅଟନ୍ତି । ଶାଖ, ବିଶାଖ ଓ ନୈଗମେୟ ଏ ତିନିଜଣ

---

✝ ବ୍ରହ୍ମ, ଦୈବ, ଆର୍ଷ, ପ୍ରାଜାପତ୍ୟ, ଆସୁର, ଗାନ୍ଧର୍ବ, ପୈଶାଚ, ରାକ୍ଷସ ଏରୂପ ଅଷ୍ଟପ୍ରକାର ବିବାହର ବିଧି ।

* ଅଶ୍ୱିନୀ, ଭରଣୀ, କୃତ୍ତିକା ଇତ୍ୟାଦି ସତେଇଶ ନକ୍ଷତ୍ର ନିତ୍ୟ ଗଗନରେ ପରିଭ୍ରମଣ କରୁଥିବାର ଦୃଶ୍ୟ ହୁଅନ୍ତି । ଏମାନଙ୍କ ଦ୍ୱାରା ସମସ୍ତ ନିରୂପିତ ହୁଅଇ ।

କାର୍ତ୍ତିକେୟଙ୍କର ଅନୁଜ । କୃତ୍ତିକା ନକ୍ଷତ୍ରଙ୍କଦ୍ୱାରା ପ୍ରତିପାଳିତ ହୋଇଥିଲେ ବୋଲି କୁମାରଙ୍କର ନାମ କାର୍ତ୍ତିକେୟ ରୂପେ ବିଖ୍ୟାତ ହେଲା । ୨୪ । ଅନିଲଙ୍କ ଭାର୍ଯ୍ୟା ଶିବା, ତାହାଙ୍କ ଗର୍ଭରେ ମନୋଜବ ଓ ଅବିଜ୍ଞାତ ଗତି ନାମରେ ଅଗ୍ନିଙ୍କର ଦୁଇପୁତ୍ର ଜାତ ହେଲେ । ୨୫ । ଦେବଳ ଋଷି ପ୍ରତ୍ୟୁଷଙ୍କର ପୁତ୍ର । ଦେବଳଙ୍କର ଦୁଇପୁତ୍ର, ସେ ଦୁହେଁ କ୍ଷମାଶୀଳ ଓ ମନୀଷୀ ଥିଲେ । ବୃହସ୍ପତିଙ୍କର ଭଗିନୀ ବରସ୍ତ୍ରୀ ବ୍ରହ୍ମବାଦିନୀ ହୋଇ ପ୍ରଥମେ ସଂସାରରେ ଅନାସକ୍ତା ହୋଇ ଯୋଗବଳରେ ସମସ୍ତ ଭୂମଣ୍ଡଳ ପରିଭ୍ରମଣ କଲେ । ପରେ ସେ ବସୁଙ୍କର ଅଷ୍ଟମ, ପ୍ରଭାସଙ୍କର ଭାର୍ଯ୍ୟା ହେଲେ ଓ ତାହାଙ୍କ ଔରସରୁ ଶିଳ୍ପ ପ୍ରଜାପତି, ଦେବତାଙ୍କର ବର୍ଦ୍ଧକୀ, ବିଶ୍ୱକର୍ମା ଜନ୍ମିଲେ, ସେ ସର୍ବ ଶିଳ୍ପକରଙ୍କ ମଧ୍ୟରେ ଶ୍ରେଷ୍ଠ । ଦେବତାଙ୍କର ସମୁଦାୟ ଅଳଙ୍କାର ଓ ବିମାନାଦି ବିଶ୍ୱକର୍ମା ନିର୍ମାଣ କରନ୍ତି । ୨୯ । ଏହାଙ୍କର ଶିଳ୍ପ କର୍ମକୁ ଉପଜୀବ୍ୟ କରି ମନୁଷ୍ୟମାନେ ଜୀବିକା ନିର୍ବାହ କରନ୍ତି ଓ ଶିଳ୍ପୋପଜୀବୀ ଲୋକମାନେ ସେହି ଅକ୍ଷୟ ବିଶ୍ୱକର୍ମାଙ୍କୁ ପୂଜା କରନ୍ତି । ୩୦ ।

ସର୍ବଲୋକ ସୁଖାବହ ଭଗବାନ୍ ଧର୍ମ ନର କଳେବର ଧାରଣପୂର୍ବକ ବ୍ରହ୍ମାଙ୍କର ଦକ୍ଷିଣସ୍ତନ ଭେଦ କରି ବିନିର୍ଗତ ହେଲେ । ୩୧ । ତାହାଙ୍କର ସର୍ବଭୂତ ମନୋହର ତିନିଗୋଟି ଉତ୍କୃଷ୍ଟ ପୁତ୍ର ହୋଇଥିଲେ । ତାହାଙ୍କର ନାମ ଶମ, କାମ ଓ ହର୍ଷ । ସେମାନେ ନିଜ ତେଜଦ୍ୱାରା ଲୋକଙ୍କୁ ରକ୍ଷା କରୁଥିଲେ । ୩୨ । କାମଙ୍କର ପତ୍ନୀ ରତି; ଶମଙ୍କର ଅଙ୍ଗନା ପ୍ରାପ୍ତି; ହର୍ଷଙ୍କର ଭାର୍ଯ୍ୟା ନନ୍ଦା । ଏହି ସ୍ତ୍ରୀମାନଙ୍କୁ ଅବଲମ୍ବନ କରି ଲୋକଯାତ୍ରା ନିର୍ବାହିତ ହେଉଅଛି । ୩୩ । ହେ ନରଶାର୍ଦ୍ଦୂଳ ! ମରୀଚିଙ୍କର ପୁତ୍ର କଶ୍ୟପ, କଶ୍ୟପଙ୍କଠାରୁ ଦେବତା ଓ ଅସୁରମାନେ ଜାତ ହେଲେ । ଅତଏବ ସେହି କଶ୍ୟପଙ୍କୁ ସର୍ବଲୋକର ଜନ୍ମଦାତା ବୋଲି ବୋଲାଯାଏ । ୩୪ ।

ସୂର୍ଯ୍ୟଙ୍କର ଭାର୍ଯ୍ୟା ଘୋଟକୀରୂପଧାରିଣୀ ତ୍ୱାଷ୍ଟ୍ରୀ ଅନ୍ତରୀକ୍ଷରେ ଅଶ୍ୱିନୀକୁମାରଦ୍ୱୟଙ୍କୁ ପ୍ରସବ କଲେ । ୩୫ । ଅଦିତିଙ୍କ ଗର୍ଭରେ ଇନ୍ଦ୍ରାଦି ଦ୍ୱାଦଶ ପୁତ୍ର ଜନ୍ମିଲେ । ତନ୍ମଧ୍ୟରେ ବିଷ୍ଣୁ ସମସ୍ତଙ୍କର କନିଷ୍ଠ, ସେହି ବିଷ୍ଣୁଙ୍କଠାରେ ସର୍ବଲୋକମାନେ ପ୍ରତିଷ୍ଠିତ ହୋଇଅଛନ୍ତି । ୩୬ । ଏହି ତେତିଶଟି * ଦେବତାଙ୍କର ବଂଶାବଳୀ, ପକ୍ଷ ଓ ଗଣକୀର୍ତ୍ତନ କରୁଅଛି ।

* ଅଷ୍ଟବସୁ, ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ପ୍ରଜାପତି ଓ ବଷଟ୍‌କାର ଏହିମାନେ ୩୩ ଦେବତା ।

ରୁଦ୍ରଗଣ, ସାଧ୍ୟଗଣ, ମରୁଦ୍‌ଗଣ, ବସୁଗଣ, ଭାର୍ଗବଗଣ ଓ ବିଶ୍ୱେଦେବଗଣ ଏମାନେ ଏକ ଏକ ପକ୍ଷ । ବିନତାନନ୍ଦନ ଗରୁଡ଼ ଓ ବଳବାନ୍ ଅରୁଣ ଓ ବୃହସ୍ପତି ଏମାନେ ଆଦିତ୍ୟଙ୍କ ମଧ୍ୟରେ ଗଣିତ । ଅଶ୍ୱିନୀକୁମାରଦ୍ୱୟ, ଗୁହ୍ୟକଗଣ, ଯାବତୀୟ ଔଷଧି ଓ ସମସ୍ତ ପଶୁଗଣ ଦେବତାଙ୍କ ମଧ୍ୟରେ ପରିଗଣିତ । ଲୋକମାନେ ଆନୁପୂର୍ବିକ ଏହାଙ୍କର ନାମ କୀର୍ତ୍ତନ କଲେ ସର୍ବ ପାପରୁ ବିମୁକ୍ତ ହୁଅନ୍ତି । ୪୦ ।

ଭଗବାନ୍ ଭୃଗୁ ବ୍ରହ୍ମାଙ୍କର ହୃଦୟପ୍ରଦେଶ ଭେଦ କରି ବିନିର୍ଗତ ହେଲେ । ଭୃଗୁଙ୍କ ପୁତ୍ର ଶୁକ୍ର; ଏ ପରମ ପ୍ରାଜ୍ଞ ଓ କବିଶ୍ରେଷ୍ଠ । ଯେ ତ୍ରୈଲୋକ୍ୟର ପ୍ରାଣଯାତ୍ରା ନିମିତ୍ତ ବର୍ଷାବର୍ଷ ଓ ଭୟାବହ ବିଷୟରେ ଭଗବାନ ସ୍ୱୟମ୍ଭୂଙ୍କ କର୍ତ୍ତୃକ ନିଯୁକ୍ତ ହୋଇ ତ୍ରିଭୁବନ ଭ୍ରମଣ କରୁଅଛନ୍ତି (୪୨), ସେହି ଅସାଧାରଣ ଧୀଶକ୍ତିସମ୍ପନ୍ନ, ବ୍ରତପରାୟଣ, ବ୍ରହ୍ମଚାରୀ, ଯୋଗାଚାର୍ଯ୍ୟ ଶୁକ୍ର ଯୋଗପ୍ରଭାବରୁ ବୃହସ୍ପତି ଓ ଶୁକ୍ର ଉଭୟ କଳେବର ଧାରଣ କରି ଦେବତାଙ୍କର ଓ ଦୈତ୍ୟଙ୍କର ଗୁରୁ ହେଲେ । ୪୩ । ବିଧାତାଙ୍କ କର୍ତ୍ତୃକ ଶୁକ୍ର ଯୋଗକ୍ଷେମ କାର୍ଯ୍ୟରେ ନିଯୁକ୍ତ ହେବାରୁ ଭଗବାନ ଭୃଗୁ ଚ୍ୟବନ ନାମରେ ଯଶସ୍ୱୀ ଧର୍ମାତ୍ମା ଓ ଦୀପ୍ତ ତପସ୍ୱୀ ଆଉ ଗୋଟିଏ ପୁତ୍ର ଉତ୍ପାଦନ କଲେ । ହେ ଭାରତ ! ଯେ ରୋଷାନ୍ୱିତ ହୋଇ ରାକ୍ଷସ ହସ୍ତରୁ ମାତାଙ୍କୁ ରକ୍ଷା କରିବା ନିମିତ୍ତ ଗର୍ଭରୁ ଚ୍ୟୁତ ହୋଇଥିଲେ (୪୫), ମନୁଙ୍କର ଆରୁଷୀ ନାମ୍ନୀ କନ୍ୟା ସେହି ମନୀଷୀ ଚ୍ୟବନଙ୍କର ପତ୍ନୀ ହେଲେ । ଆରୁଷୀଙ୍କର ଊରୁଦେଶ ଭେଦ କରି ଔର୍ବ ନାମରେ ଗୋଟିଏ ପୁତ୍ର ଜନ୍ମିଲେ । ଏ ବାଲ୍ୟକାଳରେ ଅତିଶୟ ତେଜସ୍ୱୀ, ମହାବଳ ପରାକ୍ରାନ୍ତ ଓ ବିବିଧ ଗୁଣଯୁକ୍ତ ହୋଇଥିଲେ । ଔର୍ବଙ୍କର ପୁତ୍ର ଋଚୀକ । ଋଚୀକଙ୍କର ପୁତ୍ର ଜମଦଗ୍ନି । ୪୭ ।

ମହାତ୍ମା ଜମଦଗ୍ନିଙ୍କର ଚାରିପୁତ୍ର ଥିଲେ; ତନ୍ମଧ୍ୟରେ ରାମ ସର୍ବ-କନିଷ୍ଠ କିନ୍ତୁ ଗୁଣରେ ଜ୍ୟେଷ୍ଠ । ସେ ସର୍ବଶାସ୍ତ୍ରରେ କୁଶଳ, ଜିତେନ୍ଦ୍ରିୟ ଓ କ୍ଷତ୍ରିୟାନ୍ତକାରୀ ଥିଲେ । ୪୮ । ଔର୍ବଙ୍କର ଜମଦଗ୍ନି ପ୍ରଭୃତି ଏକଶତ ପୁତ୍ର ଥିଲେ । ସେହି ଶତପୁତ୍ରଙ୍କର ସହସ୍ର ସହସ୍ର ପୁତ୍ର ପୃଥିବୀରେ ବ୍ୟାପ୍ତ ହେଲେ । ୪୯ । ବ୍ରହ୍ମାଙ୍କର ଆଉ ଦୁଇଗୋଟି ପୁତ୍ର ହୋଇ ଥିଲେ; ତାହାଙ୍କର ନାମ ଧାତା ଓ ବିଧାତା । ବ୍ରହ୍ମାଙ୍କର ସମସ୍ତ ଲକ୍ଷଣ ସେହି ଦୁଇ ପୁତ୍ରଙ୍କ-ଠାରେ ଅଛି ଓ ସେ ଦୁହେଁ ଇହଲୋକରେ ମନୁଙ୍କ ସହିତ ବାସ କରୁଅଛନ୍ତି

। ୫୦ । ପଦ୍ମାଳୟା ଶୁଭା ଲକ୍ଷ୍ମୀଦେବୀ ସେହି ଦୁଇ ପୁତ୍ରଙ୍କର ଭଗିନୀ । ବ୍ୟୋମଗ୍ରାମୀ ତୁରଗମାନେ ସେହି ଲକ୍ଷ୍ମୀଦେବୀଙ୍କର ପୁତ୍ର ଅଟନ୍ତି । ୫୧ । ଶୁକ୍ରାଚାର୍ଯ୍ୟଙ୍କ ଔରସରୁ ଯେଉଁ ଦେବୀ ଜାତ ହୋଇ ବରୁଣଙ୍କର ଜ୍ୟେଷ୍ଠା ଭାର୍ଯ୍ୟା ହୋଇଥିଲେ, ସେହି ଦେବୀଙ୍କର ଗର୍ଭରୁ "ବଳ" ନାମକ ପୁତ୍ର ଓ "ସୁରା" ନାମରେ ଗୋଟିଏ ସୁର-ନନ୍ଦିନୀ କନ୍ୟା ଜନ୍ମିଲେ ।୫୨। ଅନ୍ନକାମ ଓ କ୍ଷୁଧାର୍ତ୍ତ ପ୍ରଜାମାନେ ଉଦରପୂର୍ତ୍ତି ନିମିତ୍ତ ପରସ୍ପର ପରସ୍ପରକୁ ଭକ୍ଷଣ କରିବାରୁ ସର୍ବଭୂତ ବିନାଶକ ଅଧର୍ମ ଉତ୍ପନ୍ନ ହେଲେ । ୫୩ ।

ସେହି ଅଧର୍ମଙ୍କର ଭାର୍ଯ୍ୟା ନିରୃତି, ଯାହାଙ୍କ ଔରସରେ ନୈରୃତ, ରାକ୍ଷସଗଣ ଓ ସର୍ବଦା ପାପାଚାରୀ ଘୋରରୂପୀ ଆଉ ତିନିଗୋଟି ପୁତ୍ର ଜନ୍ମିଲେ । ତାହାଙ୍କର ନାମ ଭୟ, ମହାଭୟ ଓ ସର୍ବଭୂତାନ୍ତକ ମୃତ୍ୟୁ । ମୃତ୍ୟୁଙ୍କର ଭାର୍ଯ୍ୟା ବା ପୁତ୍ର କେହି ନାହାନ୍ତି, ଯେଣୁ ସେ ସ୍ୱୟଂ ଅନ୍ତକ । ୫୫ । ତାମ୍ରାଦେବୀ, ସର୍ବଲୋକବିଶ୍ରୁତା କାକୀ, ଶ୍ୟେନୀ, ଭାସୀ, ଧୃତରାଷ୍ଟ୍ରୀ ଓ ଶୁକୀ ନାମରେ ପାଞ୍ଚଗୋଟି କନ୍ୟା ପ୍ରସବ କଲେ । ହେ ଜନାଧିପ ! କାକୀ ଉଲୂକମାନଙ୍କୁ ପ୍ରସବ କଲେ; ଶ୍ୟେନୀ ଶ୍ୟେନ ପକ୍ଷୀଙ୍କୁ, ଭାସୀ କୁକ୍କୁଟ ଓ ଗୃଧ୍ରମାନଙ୍କୁ; ଧୃତରାଷ୍ଟ୍ରୀ ହଂସ, କଳହଂସ ଓ ଚକ୍ରବାକମାନଙ୍କୁ ଓ ସର୍ବଲକ୍ଷଣପୂଜିତା, ଗୁଣସମ୍ପନ୍ନା କଲ୍ୟାଣୀ ଓ ଯଶସ୍ୱିନୀ ଶୁକୀ ଶୁକମାନଙ୍କୁ ପ୍ରସବ କଲେ । ୫୯ । କ୍ରୋଧଙ୍କଠାରୁ କ୍ରୋଧବଶା ନବକନ୍ୟା ଜନ୍ମିଲେ । ତାହାଙ୍କର ନାମ ମୃଗୀ, ମୃଗମନ୍ଦା, ହରି, ଭଦ୍ରମନା, ମାତଙ୍ଗୀ, ଶାର୍ଦ୍ଦୂଳୀ, ଶ୍ୱେତା, ସୁରଭି ଓ ସର୍ବଲକ୍ଷଣସମ୍ପନ୍ନା ଭାମିନୀ ସୁରସା । ୬୧ । ହେ ନରବରୋତ୍ତମ ! ମୃଗମାନେ ସମସ୍ତେ ମୃଗୀଙ୍କଠାରୁ ଜନ୍ମିଅଛନ୍ତି । ଭଲ୍ଲୂକ ଓ ସୃମରଗଣ ମୃଗମନ୍ଦାଠାରୁ ଉତ୍ପନ୍ନ ହୋଇଅଛନ୍ତି । ଭଦ୍ରମନାଙ୍କଠାରୁ ଦେବନାଗ ମହାଗଜ ଐରାବତ ଜନ୍ମ ହେଲେ । ଗୋଲାଙ୍ଗୁଳ ନାମକ ବାନର, ଓ ବେଗବାନ୍ ଅଶ୍ୱମାନେ ହରିଙ୍କଠାରୁ ଜନ୍ମିଲେ । ୬୪ । ସିଂହ, ବ୍ୟାଘ୍ର, ଦ୍ୱୀପୀ ପ୍ରଭୃତି ମହାବଳ ସମସ୍ତ ଜନ୍ତୁଙ୍କୁ ଶାର୍ଦ୍ଦୂଳୀ ଉତ୍ପାଦନ କଲେ । ୬୫ ।

ହେ ନରାଧିପ ! ମାତଙ୍ଗୀ ମାତଙ୍ଗମାନଙ୍କୁ ଓ ଶ୍ୱେତା, ଶ୍ୱେତାଖ୍ୟ ଶୀଘ୍ରଗାମୀ ଦିଗ୍‌ଗଜକୁ ଜାତ କଲେ । ହେ ରାଜନ୍ ! ଗନ୍ଧର୍ବୀ ଓ ରୋହିଣୀ ନାମରେ କଲ୍ୟାଣୀ ଓ ଯଶସ୍ୱିନୀ ଦୁଇଗୋଟି କନ୍ୟାଙ୍କୁ ସୁରଭି ଜନ୍ମ କଲେ । ହେ ଭାରତ ! ତଦ୍‌ବ୍ୟତିରେକେ ସୁରଭିଙ୍କର ଆଉ ଦୁଇଗୋଟି ଦୁହିତା

ଥିଲେ । ତାହାଙ୍କର ନାମ ବିମଳା ଓ ଅନଳା । ଶ୍ୱେନୀଙ୍କଠାରୁ ଗୋରୁ-ଗବୁ ଓ ଗାନ୍ଧର୍ବୀଠାରୁ ଅଶ୍ୱମାନେ ଜାତ ହେଲେ । ଅନଳାଠାରୁ ସପ୍ତପିଣ୍ଡ ଫଳର ବୃକ୍ଷମାନେ * ଜାତ ହେଲେ । ୬୮ । ତଦ୍ଭିନ୍ନ ଅନଳାଙ୍କର ଶୁକୀ ନାମରେ ଗୋଟିଏ କନ୍ୟା ଥିଲେ ଓ ସୁରସାଙ୍କର କଙ୍କ ବୋଲି ଗୋଟିଏ ପୁତ୍ର ଥିଲେ ।

ଅରୁଣାଙ୍କର ଭାର୍ଯ୍ୟା ଶ୍ୟେନୀ ଦୁଇଗୋଟି ମହାବଳ ବୀର୍ଯ୍ୟଶାଳୀ ପୁତ୍ରଙ୍କୁ ଜନ୍ମ କରିଥିଲେ । ସେ ଦୁଇ ପୁତ୍ରଙ୍କର ନାମ ସମ୍ପାତି ଓ ଜଟାୟୁ । ସୁରସାଙ୍କଠାରୁ ନାଗମାନେ ଓ କଦ୍ରୁଙ୍କଠାରୁ ପନ୍ନଗମାନେ ଉତ୍ପନ୍ନ ହେଲେ । ବିନତାଙ୍କର ଗରୁଡ଼ ଓ ଅରୁଣ ବୋଲି ଦୁଇଗୋଟି ବିଖ୍ୟାତ ପୁତ୍ର ଥିଲେ । ହେ ବୁଦ୍ଧିମାନଙ୍କର ଶ୍ରେଷ୍ଠ, ମନୁଜାଧିପ ! ସମସ୍ତ ମହତ୍ ପ୍ରାଣିଗଣଙ୍କର ଜନ୍ମ ବୃତ୍ତାନ୍ତ ବିଶେଷରୂପେ କୀର୍ତ୍ତିତ ହେଲା । ୭୧ । ଏହାକୁ ଶ୍ରବଣ କଲେ ଲୋକେ ପାପରୁ ମୁକ୍ତ ହୁଅନ୍ତି, ସର୍ବଜ୍ଞତ୍ୱ ଲାଭ କରନ୍ତି ଓ ପରିଶେଷରେ ପରମପଦ ପ୍ରାପ୍ତ ହୁଅନ୍ତି ।

---

## ଅଧ୍ୟାୟ—୬୭

ଜନମେଜୟ ବୈଶମ୍ପାୟନଙ୍କୁ ବୋଇଲେ—ହେ ଭଗବନ୍ ! ଦେବ, ଦାନବ, ଗନ୍ଧର୍ବ, ଉରଗ, ରାକ୍ଷସ, ସିଂହ, ବ୍ୟାଘ୍ର, ମୃଗ, ପନ୍ନଗ, ପକ୍ଷୀ ପ୍ରଭୃତି ସମସ୍ତ ଜୀବମାନେ କି ଉଦ୍ଦେଶ୍ୟରେ ମନୁଷ୍ୟଲୋକରେ ଜନ୍ମି କି କି କର୍ମ କରିଅଛନ୍ତି, ଏହି ସମୁଦାୟ ଆନୁପୂର୍ବିକ ଶ୍ରବଣ କରିବାକୁ ଆମ୍ଭର ଅତିଶୟ ବାସନା ହୋଇଅଛି । ୨ । ବୈଶମ୍ପାୟନ ଉତ୍ତର କଲେ, ମନୁଷ୍ୟଲୋକରେ ଯେଉଁ ଯେଉଁ ଦେବତା ଓ ଦାନବଗଣ ଜନ୍ମିଥିଲେ, ଅଗ୍ରେ ତାହାଙ୍କ ବିଷୟ କହୁଅଛୁଁ ଶ୍ରବଣ କରନ୍ତୁ । ୩ ।

ବିପ୍ରଚିତ୍ତି ନାମରେ ଯେଉଁ ଦାନବେନ୍ଦ୍ର ଥିଲେ, ସେ ମର୍ତ୍ତ୍ୟ ଲୋକରେ ଜନ୍ମଗ୍ରହଣ କରି 'ଜରାସନ୍ଧ' ନାମରେ ରାଜା ବୋଲି ବିଖ୍ୟାତ

* ଖର୍ଜ୍ଜୁର, ତାଳ, ହିନ୍ତାଳ, ତାଳୀ, ଖର୍ଜ୍ଜୂରୀ, ଗୁବାକ ଓ ନାରିକେଳ, ସାତଗୋଟିକୁ ପିଣ୍ଡଫଳବୃକ୍ଷ ବୋଲିଯାଏ ।

ହୋଇଥିଲେ । ୪ । ହିରଣ୍ୟକଶିପୁ ନାମରେ ଯେ ଦୈତ୍ୟଙ୍କର ପୁତ୍ର ଥିଲେ, ସେ ନରଲୋକରେ ଜନ୍ମ ହୋଇ ଶିଶୁପାଳ ନାମରେ ବିଖ୍ୟାତ ହେଲେ । ୫ ।

ପ୍ରହ୍ଲାଦଙ୍କର ଅନୁଜ ଭ୍ରାତା ସହ୍ଲାଦ ପୃଥିବୀରେ ଜନ୍ମି ଶଲ୍ୟ ନାମରେ ବାହ୍ଲୀକ ଦେଶରେ ଅଧୀଶ୍ୱର ହେଲେ । ଅନୁହ୍ରାଦ ନାମରେ ପ୍ରହ୍ଲାଦଙ୍କର ଆଉ ଗୋଟିଏ ଅନୁଜ ନରଲୋକରେ ଜନ୍ମି ଧୃଷ୍ଟକେତୁ ନାମରେ ନରେଶ୍ୱର ବୋଲି ବିଖ୍ୟାତ ହେଲେ । ୭ । ଶିବି ନାମରେ ଦୈତ୍ୟଙ୍କର ପୁତ୍ର ଭୂମଣ୍ଡଳରେ ଜନ୍ମଗ୍ରହଣ କରି ମହାରାଜ ଦ୍ରୁମ ନାମରେ ବିଖ୍ୟାତ ହେଲେ । ୮ । ବାସ୍କଳନାମା ଅସୁରରାଜ ଭୂତଳରେ ଜନ୍ମଗ୍ରହଣ କରି ଭଗଦତ୍ତ ନାମରେ ରଜା ବୋଲି ବିଖ୍ୟାତ ହେଲେ । ୯ । ଅୟଃଶିରାଃ, ଅଶ୍ୱଶିରାଃ, ଅୟଃଶଙ୍କୁ, ଗଗନମୂର୍ଦ୍ଧା ଓ ବେଗବାନ୍ ଏହି ପାଞ୍ଚଗୋଟି ମହାବଳ-ପରାକ୍ରାନ୍ତ ମହାସୁର କେକୟ ଦେଶରେ ଜନ୍ମି ସେଠାରେ ଅତି ପ୍ରଧାନ ଭୂପତି ହୋଇଥିଲେ । କେତୁମାନ୍ ନାମରେ ଅତି ପ୍ରତାପବାନ୍ ଅସୁର ଭୂମଣ୍ଡଳରେ ଜନ୍ମି "ଅମିତୌଜା" ନାମରେ ଅତି ଲବ୍ଧପ୍ରତିଷ୍ଠ ନରପତି ହୋଇଥିଲେ । ସ୍ୱର୍ଭାନୁନାମା ସୁବିଖ୍ୟାତ ଦାନବ, ଉଗ୍ରସେନ ନାମରେ ଅତି ନୃଶଂସ ନୃପତି ହେଲେ ।

ଭୁବନବିଖ୍ୟାତ ଅଶ୍ୱନାମଧାରୀ ମହାସୁର ଅବନୀରେ ଜନ୍ମଗ୍ରହଣ କରି ଅଶୋକ ନାମରେ ବିଖ୍ୟାତ ହେଲେ । ଏ ରାଜା ଅସାଧାରଣ ବଳଶାଳୀ ଥିଲେ । କୌଣସି ବ୍ୟକ୍ତି କଦାପି ଏହାଙ୍କୁ ପରାଜିତ କରିପାରି ନାହାନ୍ତି । ଅଶ୍ୱପତି ନାମରେ ଅଶ୍ୱଙ୍କର କନିଷ୍ଠ ଭ୍ରାତା ଭୂମଣ୍ଡଳରେ ହାର୍ଦ୍ଦିକ୍ୟ ଭୂପତି ନାମରେ ବିଖ୍ୟାତ ହେଲେ । ବୃଷପର୍ବା ନାମରେ ସୁବିଖ୍ୟାତ ମହାସୁର ଦୀର୍ଘପ୍ରଜ୍ଞନାମା ଭୂପତି ହେଲେ । ବୃଷପର୍ବାଙ୍କର ଅଜକ ନାମକ ଅନୁଜ ଶାଲ୍ୱ ନାମରେ ସୁବିଖ୍ୟାତ ମହୀପାଳ ହେଲେ । ଅଶ୍ୱଗ୍ରୀବ ନାମରେ ଯେଉଁ ମହାସୁର ଥିଲେ ସେ ଅବନୀମଣ୍ଡଳରେ ରୋଚମାନ ନାମରେ ସୁବିଖ୍ୟାତ ନରପତି ହୋଇଥିଲେ ।

ସୂକ୍ଷ୍ମ ନାମରେ ଯେଉଁ ମତିମାନ୍ ଅସୁର ଥିଲେ, ସେ ବୃହଦ୍ରଥ ବୋଲି ବିଖ୍ୟାତ ରାଜା ହେଲେ । ତୁହୁଣ୍ଡ ନାମରେ ଯେଉଁ ଅସୁରବର ବିଖ୍ୟାତ ଥିଲେ, ସେ ସେନାବିନ୍ଦୁ ନାମରେ ନରପତି ହେଲେ । ଇଷୁପ ନାମରେ ମହାବଳ ମହାସୁର ନଗ୍ନଜିତ୍ ନାମରେ ବିଖ୍ୟାତ ପରାକ୍ରମ ରାଜା

ହୋଇଥିଲେ । ଏକଚକ୍ର ବୋଲି ଯେଉଁ ଅସୁର ବିଖ୍ୟାତ ହୋଇଥିଲେ, ସେ ଭୂତଳରେ ଜନ୍ମି ପ୍ରତିବିନ୍ଧ୍ୟ ନାମରେ ବିଖ୍ୟାତ ରାଜା ହୋଇଥିଲେ । ବିରୂପାକ୍ଷ ନାମଧେୟ ଶତ୍ରୁଯୋଧୀ ମହାସୁର ଭୂତଳରେ ଜନ୍ମଗ୍ରହଣ କରି ଚିତ୍ରଧର୍ମା ନାମରେ ସୁବିଖ୍ୟାତ ନରପତି ହେଲେ । ହରନାମଧାରୀ ଯେଉଁ ଅରିହନ୍ତା ଦାନବ ଥିଲେ, ସେ ଭୂମଣ୍ଡଳରେ ଜନ୍ମ ସୁବାହୁ ନାମରେ ବିଖ୍ୟାତ ଓ ଶ୍ରୀମାନ୍ ନରପତି ହେଲେ । ଶତ୍ରୁପକ୍ଷ କ୍ଷୟକାରୀ ଅହର ନାମଧାରୀ ମହାସୁର କ୍ଷିତିରେ ବହ୍ଲୀକ ନାମଧାରୀ ରାଜା ହେଲେ । ନିଚନ୍ଦ୍ର ନାମଧେୟ ଅତି ସୁନ୍ଦରବଦନ ଯେଉଁ ଅସୁରୋତ୍ତମ ଥିଲେ, ସେ ମୁଞ୍ଜକେଶ ନାମଧାରୀ ଶ୍ରୀମାନ୍ ଓ ବିଖ୍ୟାତ ନରପତି ହୋଇଥିଲେ ।

ନିକୁମ୍ଭ ନାମରେ ଯେଉଁ ମହାବଳଶାଳୀ ଦାନବ ଥିଲେ, ସେ ନରଲୋକରେ ଭୂପତିଶ୍ରେଷ୍ଠ "ଦେବାଧିପ" ନାମରେ ବିଖ୍ୟାତ ହେଲେ । ଶରଭନାମା ମହାଦାନବ ରାଜର୍ଷି ପୌରବ ନାମରେ ବିଖ୍ୟାତ ହେଲେ । କୁପଥ ନାମରେ ମହାବଳ ପରାକ୍ରାନ୍ତ ମହାସୁର ସୁପାର୍ଶ୍ୱ ନାମରେ ସୁବିଖ୍ୟାତ ଭୂପତି ହେଲେ । କପଥ ନାମରେ ମହାସୁର ଧରାତଳରେ ଜନ୍ମି ପାର୍ବତେୟ ବୋଲି ବିଖ୍ୟାତ ହେଲେ । ଏହାଙ୍କର ଶରୀର ସୁମେରୁ ପର୍ବତ ସଦୃଶ ଥିଲା । ଶଲଭ ନାମକ ମହାସୁର ବାହ୍ଲୀକ ଦେଶରେ ପ୍ରହ୍ଲାଦ ନାମରେ ନରପତି ହେଲେ । ଦୈତ୍ୟଶ୍ରେଷ୍ଠ ଚନ୍ଦ୍ର ଭୂପୃଷ୍ଠରେ ଜନ୍ମଗ୍ରହଣ କରି କାମ୍ବୋଜ ଦେଶରେ ଚନ୍ଦ୍ରବର୍ମା ନାମରେ ବିଖ୍ୟାତ ଭୂପତି ହେଲେ । ଅର୍କ ନାମରେ ଯେଉଁ ଦାନବଶ୍ରେଷ୍ଠ ଥିଲେ, ସେ ଋଷିକ ନାମଧେୟ ରାଜର୍ଷିସତ୍ତମ ହେଲେ । ମୃତପା ନାମକ ଯେଉଁ ଅସୁରଶ୍ରେଷ୍ଠ, ସେ ଭୂତଳରେ ପଶ୍ଚିମାନୂପକ ନାମରେ ପ୍ରଥିତ ନରପତି ହେଲେ । ଗବିଷ୍ଠ ବୋଲି ଯେଉଁ ମହାସୁର ଥିଲେ, ସେ ପୃଥିବୀରେ ଦ୍ରୁମସେନ ବୋଲି ନୃପତି ହେଲେ । ମୟୂର ବୋଲି ଯେଉଁ ଶ୍ରୀମାନ୍ ମହାସୁର ଥିଲେ, ସେ ବିଶ୍ୱ ନାମରେ ପୃଥିବୀପତି ହେଲେ । ବିଶ୍ୱଙ୍କର କନିଷ୍ଠ ସହୋଦର ସୁପର୍ଣ୍ଣ ପୃଥିବୀରେ କାଳକୀର୍ତ୍ତି ନାମରେ ରାଜା ହେଲେ । ଅସୁର ପ୍ରଧାନ ଚନ୍ଦ୍ରହନ୍ତା ରାଜର୍ଷି ଶୁନକ ନାମରେ ବିଖ୍ୟାତ ହେଲେ । ଯେଉଁ ଦାନବ ବିନାଶନ ବୋଲି ବିଖ୍ୟାତ ଥିଲେ, ସେ ପୃଥିବୀରେ ଜାନକି ନାମରେ ମନୁଜାଧିପ ହେଲେ । ଦୀର୍ଘଜିହ୍ୱ ବୋଲି ଯେଉଁ ଦାନବଶ୍ରେଷ୍ଠ ଥିଲେ ସେ ପୃଥିବୀରେ କାଶିରାଜ ପଦରେ ବିଖ୍ୟାତ ହେଲେ । ଚନ୍ଦ୍ରସୂର୍ଯ୍ୟ ମର୍ଦ୍ଦନକାରୀ ଯେଉଁ କ୍ରୂର ଗ୍ରହଙ୍କୁ ସିଂହିକା ପ୍ରସବ କରିଥିଲେ ସେ ସହାଥ ନାମରେ ବିଖ୍ୟାତ ମନୁଜାଧିପ ହେଲେ । ୪୦ ।

ଦନାୟୁଷଙ୍କର ପୁତ୍ରମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବିକ୍ଷର ନାମକ ଅସୁର ଭୂମଣ୍ଡଳରେ ବସୁମିତ୍ର ନାମରେ ବସୁଧାଧିପ ହେଲେ । ୪୧ । ଦ୍ଵିତୀୟ ପାଣ୍ଡ୍ୟ ରାଷ୍ଟ୍ରାଧିପ ନାମରେ ବିଖ୍ୟାତ ଭୂପତି ହେଲେ । ୪୨ । ବଳୀ ନାମରେ ବିଖ୍ୟାତ ଯାନ୍ତ ଅସୁର ଭୂତଳରେ ପୌଣ୍ଡ୍ରମତ୍ସ୍ୟକ ନାମରେ ଭୂପତି ହେଲେ । ୪୩ । ମହାସୁର ବୃତ୍ର, ରାଜର୍ଷି ମଣିମାନ୍ ପ୍ରଥିତ ହେଲେ । ୪୪ । ମଣିମାନଙ୍କର କନିଷ୍ଠ ଭ୍ରାତା କ୍ରୋଧହନ୍ତା ନାମରେ ବିଖ୍ୟାତ ନୃପତି ହେଲେ । କ୍ରୋଧବର୍ଦ୍ଧନ ନାମରେ ଯେ ଅସୁର ଥିଲେ, ସେ ଦଣ୍ଡଧାର ପଦରେ ସୁବିଖ୍ୟାତ ନୃପତି ହେଲେ । ୪୬ । କାଳେୟ-ଗଣଙ୍କର ବ୍ୟାଘ୍ରତୁଲ୍ୟ ବିକ୍ରମଶାଳୀ ଯେଉଁ ଆଠ ପୁତ୍ର ଭୂମଣ୍ଡଳରେ ଜନ୍ମିଲେ, ସେମାନଙ୍କର ସର୍ବ ଜ୍ୟେଷ୍ଠ, ମଗଧ ଦେଶରେ ଜୟତ୍ସେନ ନାମରେ ସୁବିଖ୍ୟାତ ନୃପତି ହେଲେ । ୪୮ । ଦ୍ଵିତୀୟ, ଇନ୍ଦ୍ରତୁଲ୍ୟ ପରାକ୍ରମଶାଳୀ ଥିଲେ, ସେ ଅପରାଜିତ ନାମରେ ନରାଧିପ ହେଲେ । ୪୯ । ମହାତେଜାଃ, ମହାମାୟାବୀ ତୃତୀୟ, ନିଷାଦ ଦେଶରେ ମହାପରାକ୍ରମଶାଳୀ ନୃପତି ହେଲେ । ୫୦ । ସେମାନଙ୍କ ମଧ୍ୟରେ ଯେ ଚତୁର୍ଥ ସେ କ୍ଷିତିରେ ଶ୍ରେଣୀମାନ୍ ନାମରେ ରାଜର୍ଷିସତ୍ତମ ହେଲେ । ୫୧ । ମହାତେଜସ୍ଵୀ ପଞ୍ଚମ ପୁତ୍ର ମହୌଜା ନାମରେ ନରପତି ହେଲେ । ୫୨ । ସେମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଷଷ୍ଠ ପୁତ୍ର ଅଭୀରୁ ବୋଲି କ୍ଷିତିମଣ୍ଡଳରେ ବିଖ୍ୟାତ ରାଜର୍ଷିସତ୍ତମ ହେଲେ । ୫୩ । ସପ୍ତମ, ସମସ୍ତ ଅବନୀ ମଣ୍ଡଳରେ ସୁବିଖ୍ୟାତ ସମୁଦ୍ରସେନ ନାମକ ନରପତି ହେଲେ । ୫୪ । ସେହି କାଳେୟଙ୍କର ଅଷ୍ଟମ ବୃହତ୍ ନାମଧାରୀ ଅସୁର, ଭୂତଳରେ ପରମହିତୈଷୀ ଓ ଧାର୍ମିକ ନରପତି ହେଲେ । ୫୫ । କୁକ୍ଷି ନାମକ ମହାବଳ ଦାନବ ପାର୍ବତୀୟ ବୋଲି ବିଖ୍ୟାତ ରାଜା ହେଲେ । ତାହାଙ୍କର ଶରୀର ସୁମେରୁ ପର୍ବତ ସଦୃଶ । ୫୬ । କ୍ରଥନ ନାମରେ ଶ୍ରୀମାନ୍ ଓ ମହାବୀର୍ଯ୍ୟ ମହାସୁର ପୃଥିବୀରେ ସୂର୍ଯ୍ୟାକ୍ଷ ପଦରେ ମହୀପତି ହେଲେ । ୫୭ । ସୂର୍ଯ୍ୟନାମକ ଅତି ସୁନ୍ଦର ମହାସୁର ବାହ୍ଲୀକ ଦେଶରେ ବରଦ ନାମଧାରୀ ସର୍ବଶ୍ରେଷ୍ଠ ଭୂପତି ହେଲେ । ୫୮ । ହେ ରାଜନ୍ ! ଗଣ ନାମରେ ଯେଉଁ କ୍ରୁଦ୍ଧ ସ୍ଵଭାବ ଦାନବର ନାମ ପୂର୍ବେ ଉଲ୍ଲେଖିତ ହୋଇଅଛି, ତାହାଙ୍କଠାରୁ ବହୁସଂଖ୍ୟକ ମହାବଳଶାଳୀ ମହୀପତି ମହୀପୃଷ୍ଠରେ ଜନ୍ମଗ୍ରହଣ କରି-ଥିଲେ ।

ହେ କୌରବ୍ୟ ! ତାହାଙ୍କର ନାମ—ମଦ୍ରକ, କର୍ଣ୍ଣବେଷ୍ଟ, ସିଦ୍ଧାର୍ଥ, କୀଟକ, ସୁବୀର, ସୁବାହୁ, ମହାବୀର, ବାହ୍ଲୀକ, କ୍ରଥ, ବିଚିତ୍ର, ସୁରଥ,

ମାଳ, ଗୀରବାସା, ଭୂମିପାଳ, ଦନ୍ତବକ୍ର, ଦୁର୍ଜ୍ଜୟ, ନୃପଶାର୍ଦ୍ଦୂଳ, ରୁକ୍ମୀ, ଆଷାଢ଼, ବାୟୁବେଗ, ଭୂରିତେଜା, ଏକଲବ୍ୟ, ସୁମିତ୍ର, ବାଟଧାନ, ଗୋମୁଖ, କାରୁଷକଗଣ, କ୍ଷେମମୂର୍ତ୍ତି, ଶ୍ରୁତାୟୁ, ଉଦ୍ଧବ, ବୃହତ୍ସେନ, କ୍ଷେମ, ଅଗ୍ରତୀର୍ଥ, କୁହର, ମତିମାନ୍ ଓ ଈଶ୍ୱର । ଏମାନେ ପୂର୍ବକାଳରେ ମହାବୀର୍ଯ୍ୟ, ମହାବଳଶାଳୀ ଓ ମହାକୀର୍ତ୍ତିବନ୍ତ ହୋଇ କ୍ଷିତିମଣ୍ଡଳରେ ଜନ୍ମ-ଗ୍ରହଣ କରିଥିଲେ । ୬୭ । ମହାବଳ ପରାକ୍ରାନ୍ତ ମହାସୁର 'କାଳନେମି' ଉଗ୍ରସେନଙ୍କ ଔରସରେ ଜନ୍ମଗ୍ରହଣ କରି କଂସ ନାମରେ ବିଖ୍ୟାତ ହେଲେ । ୬୭ । ଦେବରାଜ ତୁଲ୍ୟ ଦେବକ ନାମଧେୟ ଦାନବ ଧରାତଳରେ ଗନ୍ଧର୍ବ-ପତି ନାମକ ପ୍ରଧାନ ଭୂପତି ହେଲେ । ୬୮ ।

ହେ ଭରତକୁଳତିଲକ ! ପବିତ୍ର କୀର୍ତ୍ତି ଦେବର୍ଷି ବୃହସ୍ପତିଙ୍କ ଅଂଶରେ ଭରଦ୍ୱାଜବଂଶାବତଂସ ଅଯୋନିଜ ଦ୍ରୋଣାଚାର୍ଯ୍ୟ ଜନ୍ମଗ୍ରହଣ କଲେ । ୬୯ । ଏ ମହାତ୍ମା ଅସାଧାରଣ ଧନୁର୍ଦ୍ଧର, ଅଦ୍ୱିତୀୟ ପରାକ୍ରମଶାଳୀ, ମହାଯଶସ୍ୱୀ, ମହାତେଜା ଓ ବେଦଜ୍ଞମାନେ ତାହାଙ୍କୁ ବେଦରେ ଓ ଧନୁର୍ବେଦରେ ପାରଦର୍ଶୀ, ଅଦ୍ଭୁତକାର୍ଯ୍ୟକାରୀ ଓ ସ୍ୱକୁଳବର୍ଦ୍ଧନ ବୋଲି ଜ୍ଞାନ କରନ୍ତି । ୭୧ । ହେ ଭାରତ ! ଏକତ୍ୱ ପ୍ରାପ୍ତ ମହାଦେବ ଯମ, କାମ ଓ କ୍ରୋଧ, ଏହି ଚାରିଜଣଙ୍କ ଅଂଶରେ ଶତ୍ରୁପକ୍ଷ କ୍ଷୟକାରୀ, ଶୂର, ବୀର, ଶତ୍ରୁତାପନ, ପଦ୍ମପଲାଶଲୋଚନ, ମହାବୀର୍ଯ୍ୟ, ଅଶ୍ୱତ୍ଥାମା ଜନ୍ମଗ୍ରହଣ କଲେ । ୭୪ । ବଶିଷ୍ଠଙ୍କ ଅଭିଶାପରୁ ଇନ୍ଦ୍ରଙ୍କ ନିଯୋଗକ୍ରମେ ଅଷ୍ଟବସୁ, ଶାନ୍ତନୁଙ୍କ ଔରସରେ ଓ ଗଙ୍ଗାଙ୍କ ଗର୍ଭରେ ଜନ୍ମଗ୍ରହଣ କଲେ । ୭୫ । ତନ୍ମଧ୍ୟରେ ଭୀଷ୍ମ କନିଷ୍ଠ; ଏ ମତିମାନ୍ ବେଦବିଶାରଦ, ବାଗ୍ମୀ, ଶତ୍ରୁକୁଳସଂହାରକାରୀ ଓ କୁରୁଗଣଙ୍କର ଅଭୟଦାତା ଥିଲେ । ୭୬ ।

ସର୍ବଶାସ୍ତ୍ରବିଶାରଦ ଯେଉଁ ଭୀଷ୍ମ ଜମଦଗ୍ନିଙ୍କ ପୁତ୍ର ପରଶୁରାମଙ୍କ ସହିତ ଯୁଦ୍ଧ କରି ଜୟଲାଭ କରିଥିଲେ (୭୭), ହେ ରାଜନ୍ ! କୃପ ନାମକ ଯେଉଁ ବ୍ରହ୍ମର୍ଷି କ୍ଷିତିରେ ଜନ୍ମିଥିଲେ ସେ ଏକାଦଶ ରୁଦ୍ରଙ୍କ ଅଂଶରେ ଜାତ ହୋଇଥିଲେ । ୭୮ । ଅରିମର୍ଦ୍ଦନ ଓ ମହାରଥ ଶକୁନି ନାମକ ରାଜା ଦ୍ୱାପରଙ୍କ ଅଂଶରେ ସମ୍ଭୂତ ହୋଇଥିଲେ । ୭୯ । ବୃଷ୍ଣି କୁଳବର୍ଦ୍ଧନ, ଶତ୍ରୁ-ତାପନ, ସତ୍ୟସନ୍ଧ ଓ ସାତ୍ୟକି ଦୁହେଁ ମରୁଦ୍‌ଗଣଙ୍କଠାରୁ ସମ୍ଭୂତ ହୋଇ-ଥିଲେ । ୮୦ । ହେ ନୃପ ! ଏହି ମନୁଷ୍ୟଲୋକରେ ସର୍ବଶାସ୍ତ୍ରଧାରୀଙ୍କ ଶ୍ରେଷ୍ଠ ଦ୍ରୁପଦରାଜ ମଧ୍ୟ ସେହି ମରୁଦ୍‌ଗଣଙ୍କଠାରୁ ଉତ୍ପନ୍ନ ହୋଇଥିଲେ । ୮୧ ।

ହେ ରାଜନ୍ ! ଅପ୍ରତିମକର୍ମା, କ୍ଷତ୍ରିୟର୍ଷଭ, ଶ୍ରେଷ୍ଠ, କୃତବର୍ମା ମଧ୍ୟ ସେହି ମରୁଦ୍‌ଗଣଙ୍କଠାରୁ ସଞ୍ଜାତ ହୋଇଥିଲେ । ୮୨ । ବିପକ୍ଷ ରାଜ୍ୟର ସନ୍ତାପ-ଜନକ, ଶତ୍ରୁମର୍ଦ୍ଦନ ନରପତି ବିରାଟ ମଧ୍ୟ ସେହି ମରୁଦ୍‌ଗଣଙ୍କ ଅଂଶରେ ସମ୍ଭୂତ ହୋଇଥିଲେ । ୮୩ । ଅରିଷ୍ଟାଙ୍କର ପୁତ୍ର ହଂସ, ଯେ କି ଗନ୍ଧର୍ବପତି ବୋଲି ବିଖ୍ୟାତ ଥିଲେ, ସେ କୁରୁବଂଶ ବର୍ଦ୍ଧନାର୍ଥ କୃଷ୍ଣଦ୍ୱୈପାୟନଙ୍କ ଔରସରେ ଜନ୍ମ ହୋଇ ଧୃତରାଷ୍ଟ୍ର ନାମରେ ପୃଥିବୀରେ ବିଦିତ ହେଲେ । ସେହି ଦୀର୍ଘବାହୁ, ମହାତେଜା, ମହାବାହୁ, ଜ୍ଞାନଚକ୍ଷୁ, ନରାଧିପ, ମାତାଙ୍କ ଦୋଷରୁ ଓ ଋଷିଙ୍କ କୋପରୁ ଜନ୍ମାନ୍ଧ ହେଲେ । ୮୫ । ତାହାଙ୍କର କନିଷ୍ଠ ଭ୍ରାତା ପାଣ୍ଡୁ; ସେ ସତ୍ୟଧର୍ମନିରତ, ଶୁଦ୍ଧାତ୍ମର, ମହାସତ୍ତ୍ୱ, ମହାବଳ ଥିଲେ । ୮୬ । ବୁଦ୍ଧିମାନଙ୍କର ଶ୍ରେଷ୍ଠ ବିଦୁର, ଅତ୍ରି ମୁନିଙ୍କର ପୁତ୍ର, କଳିଙ୍କ ଅଂଶରୁ ଦୁର୍ଯ୍ୟୋଧନ ନୃପ ଜାତ ହେଲେ । ସେ ଦୁର୍ବୁଦ୍ଧି, ଦୁର୍ମତି, କୁରୁକୁଳ କଳଙ୍କ, ସର୍ବଜଗତର ବିଦ୍ୱେଷକାରୀ, ସାକ୍ଷାତ୍ କଳିପୁରୁଷ ଓ ସେ ସର୍ବପ୍ରାଣିବିନାଶକାରୀ ମହତ୍ ବୈରବହ୍ନିକୁ ଉଦ୍ଦୀପିତ କରି ସମସ୍ତଙ୍କୁ ବିନାଶ କରାଇଲେ ।

ପୌଲସ୍ତ୍ୟମାନେ ଦୁର୍ଯ୍ୟୋଧନଙ୍କ ଭ୍ରାତା ହୋଇ ମନୁଷ୍ୟ ଲୋକରେ ଜନ୍ମଗ୍ରହଣ କଲେ । ୯୦ । ହେ ଭରତର୍ଷଭ ! ଦୁଃଶାସନ ପ୍ରଭୃତି କ୍ରୂର କର୍ମ-ନିରତ ଶତଭ୍ରାତାଙ୍କ ମଧ୍ୟରେ ଦୁର୍ମୁଖ, ଦୁଃସହ ପ୍ରଭୃତି ଯାହାଙ୍କ ନାମୋଲ୍ଲେଖ ହୋଇନାହିଁ ଓ ଧୃତରାଷ୍ଟ୍ରଙ୍କର ବୈଶ୍ୟାପୁତ୍ର ଯୁଯୁତ୍ସୁ ଯେ କି ଶତାଧିକ ଆଉ ଗୋଟିଏ ପୁତ୍ର ଥିଲେ, ଏମାନେ ସମସ୍ତେ ରାକ୍ଷସଗଣଙ୍କ ଅଂଶରେ ସମ୍ଭୂତ ହୋଇ ଦୁର୍ଯ୍ୟୋଧନଙ୍କର ସହାୟ ହୋଇଥିଲେ । ୯୨ ।

ଜନମେଜୟ ବୋଇଲେ, ହେ ବିପ୍ରେ ! ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କର କାହାର କି ନାମ ଓ କାହା ପରେ କିଏ ଜନ୍ମିଅଛନ୍ତି ତାହା ଆନୁପୂର୍ବିକ କୀର୍ତ୍ତନ କରିବା ହେଉନ୍ତୁ । ୯୩ ।

ବୈଶମ୍ପାୟନ ଉତ୍ତର କଲେ—ଦୁର୍ଯ୍ୟୋଧନ, ଯୁଯୁତ୍ସୁ, ଦୁଃଶାସନ, ଦୁଃସହ, ଦୁଃଶଳ, ଦୁର୍ମୁଖ, ବିବିଂଶତି, ବିକର୍ଣ୍ଣ, ଜଳସନ୍ଧ, ସୁଲୋଚନ, ବିନ୍ଦ, ଅନୁବିନ୍ଦ, ଦୁର୍ଦ୍ଧର୍ଷ, ସୁବାହୁ, ଦୁଷ୍ପ୍ରଧର୍ଷଣ, ଦୁର୍ମୁଖ, ଦୁଷ୍କର୍ଣ୍ଣ, କର୍ଣ୍ଣ, ଚିତ୍ର, ଉପଚିତ୍ର, ଚିତ୍ରାକ୍ଷ, ଚାରୁ, ଚିତ୍ରାଙ୍ଗଦ, ଦୁର୍ମଦ, ଦୁଷ୍ପ୍ରହର୍ଷ, ବିବିତ୍ସୁ, ବିକଟ, ଶମ, ଊର୍ଣ୍ଣନାଭ, ସୁନାଭ, ନନ୍ଦ, ଉପନନ୍ଦ, ସେନାପତି, ସୁଷେଣ, କୁଣ୍ଡୋଦର, ମହୋଦର, ଚିତ୍ରବାହୁ, ଚିତ୍ରବର୍ମା, ସୁବର୍ମା, ଦୁର୍ବିରେଚନ, ଅୟୋବାହୁ, ମହାବାହୁ, ଚିତ୍ରଚାପ, ସୁକୁଣ୍ଡଳ,

ଭୀମବେଗ, ଭୀମବଳ, ବଳାକୀ, ବଳବର୍ଦ୍ଧନ, ଉଗ୍ରାୟୁଧ, ଭୀମଶର, କନକାୟୁ, ଦୃଢ଼ାୟୁଧ, ଦୃଢ଼ବର୍ମା, ଦୃଢ଼କ୍ଷତ୍ର, ସୋମକୀର୍ତ୍ତି, ଅନୂଦର, ଜରାସନ୍ଧ, ଦୃଢ଼ସନ୍ଧ, ସତ୍ୟସନ୍ଧ, ସହସ୍ରବାକ୍, ଉଗ୍ରଶ୍ରବା, ଉଗ୍ରସେନ, ସେନାନୀ, ଦୁଷ୍ପରାଜୟ, ଅପରାଜିତ, ପଣ୍ଡିତକ, ବିଶାଳାକ୍ଷ, ଦୁରାଧର, ଦୃଢ଼ହସ୍ତ, ସୁହସ୍ତ, ବାତବେଗ, ସୁବର୍ଚ୍ଚା, ଆଦିତ୍ୟକେତୁ, ବହ୍ୱାଶୀ, ନାଗଦତ୍ତ, ଅଗ୍ରଯାୟୀ, ନିଷଙ୍ଗୀ, କବଚୀ, ପାଶୀ, ଦଣ୍ଡଧାର, ଧନୁର୍ଗ୍ରହ, ଉଗ୍ର, ଭୀମରଥ, ବୀର, ବୀରବାହୁ, ଅଲୋଲୁପ, ଅଭୟ, ରୌଦ୍ରକର୍ମା, ଦୃଢ଼ରଥ, ଅନାଧୃଷ୍ୟ, କୁଣ୍ଡଭେଦୀ, ବିରାବୀ, ଦୀର୍ଘଲୋଚନ, ଦୀର୍ଘବାହୁ, ମହାବାହୁ, ବ୍ୟୂଢ଼ୋରୁ, କନକଧ୍ୱଜ, କୁଣ୍ଡାଶୀ ଓ ବିରଜ (ଚିତ୍ରକ); ହେ ରାଜନ୍ ! ଧୃତରାଷ୍ଟ୍ରଙ୍କର ଏହି ଏକଶତ ପୁତ୍ର ଥିଲେ । ଏତଦ୍‌ବ୍ୟତୀତ, ଦୁଃଶଳାନାମ୍ନୀ ଏକ କନ୍ୟା ଓ ଯୁଯୁତ୍ସୁ ନାମରେ ଗୋଟିଏ ବୈଶ୍ୟାଗର୍ଭଜାତ ତନୟ ଜନ୍ମିଥିଲେ । ୧୦୬ । ଏହି * ପ୍ରକାରେ ହେ ରାଜନ୍ ! ଜ୍ୟେଷ୍ଠ ଅନୁଜ୍ୟେଷ୍ଠ କ୍ରମରେ ଏକଶତ ପୁତ୍ର ଓ ଏକ କନ୍ୟାର ନାମ ପ୍ରକୀର୍ତ୍ତିତ ହେଲା । ୧୦୭ । ସେମାନେ ସମସ୍ତେ ଅତିରଥ ଓ ଶୂର, ସମସ୍ତେ ଯୁଦ୍ଧବିଶାରଦ, ସମସ୍ତେ ବେଦବିତ୍, ଶାସ୍ତ୍ରପାରଗ ଓ ସଂଗ୍ରାମ ବିଦ୍ୟାରେ ଓ ଅପରାପର ବିଦ୍ୟାରେ ଶୋଭିତ; ହେ ମହୀପତେ ! ସମସ୍ତେ ଅନୁରୂପ ଦାରପରିଗ୍ରହ କରି-ଥିଲେ । ୧୦୯ । କୁରୁରାଜ ଧୃତରାଷ୍ଟ୍ର ଯଥା ସମୟରେ ସୁବଳପୁତ୍ର ଶକୁନିଙ୍କର ମତାନୁସାରେ ନିଜ କନ୍ୟା ଦୁଃଶଳାଙ୍କୁ ସିନ୍ଧୁଦେଶର ରାଜା ଜୟଦ୍ରଥଙ୍କ ସହିତ ବିବାହ କରିଦେଲେ । ୧୧୦ ।

ହେ ରାଜନ୍ ! ଯୁଧିଷ୍ଠିରଙ୍କୁ ଧର୍ମରାଜାଙ୍କର ଅଂଶ ବୋଲି ଜାଣ ! ଭୀମସେନ ବାତଙ୍କର, ଅର୍ଜ୍ଜୁନ ଦେବରାଜ ଇନ୍ଦ୍ରଙ୍କର, ଓ ସର୍ବଭୂତ ମନୋହର, ପୃଥିବୀରେ ଅଲୌକିକ ରୂପସମ୍ପନ୍ନ ନକୁଳ ଓ ସହଦେବ ଦୁହେଁ ଅଶ୍ୱିନୀକୁମାରଙ୍କ ଅଂଶରେ ଜନ୍ମଗ୍ରହଣ କରିଥିଲେ । ୧୧୨ । ସୁବିଖ୍ୟାତ ସୋମପୁତ୍ର ବର୍ଚ୍ଚା ଅର୍ଜ୍ଜୁନଙ୍କର ପୁତ୍ର ଅଭିମନ୍ୟୁରୂପରେ ଜନ୍ମିଲେ । ୧୧୩ । ବର୍ଚ୍ଚାଙ୍କର ପୃଥ୍ୱୀରେ ଜନ୍ମିବା ପୂର୍ବରୁ ସୋମଦେବ ସୁରଗଣଙ୍କୁ କହିଥିଲେ ଯେ ଆମ୍ଭେ ପ୍ରାଣଠାରୁ ପ୍ରିୟତର ପୁତ୍ରକୁ ଦେଇ

---

* ଏହି ଶତନାମ ମଧ୍ୟରେ ଦୁର୍ମୁଖ ଓ ମହାବାହୁ ଦୁଇ ଦୁଇଥର ଉକ୍ତ ଅଛି । ଏଥିରେ ଏକ ନାମରେ ଦୁଇ ଦୁଇପୁତ୍ର ଥାଇପାରନ୍ତି ଅଥବା ଲେଖକ ପ୍ରମାଦରୁ ଆଉ ଦୁଇନାମର ଅଭାବ ଅଛି ।

ନ ପାରୁଁ । କିନ୍ତୁ ତୁମ୍ଭେମାନେ ଯେବେ ଏହି ପ୍ରତିଜ୍ଞା କର ତେବେ ଆମ୍ଭେ ଏହି ପ୍ରିୟପୁତ୍ରକୁ ତୁମ୍ଭ ହସ୍ତରେ ସମର୍ପଣ କରିପାରୁ ।

ଅସୁରଙ୍କୁ ବଧ କରିବା କେବଳ ଦେବତାଙ୍କର କାର୍ଯ୍ୟ ନୁହେ, ତହିଁରେ ଆମ୍ଭମାନଙ୍କର ମଧ୍ୟ ସାହାଯ୍ୟ କରିବା ବିଧେୟ । ଏହି କାରଣରୁ ଆମ୍ଭେ ଏହାଙ୍କୁ ଦେବାକୁ ସ୍ୱୀକୃତ ହେଲୁଁ । କିନ୍ତୁ ଏହି ବର୍ଚ୍ଚାଃ ପୃଥିବୀରେ ଜନ୍ମଗ୍ରହଣ କରି ବହୁକାଳ ରହିବାକୁ ପାରିବେ ନାହିଁ । ହେ ଅମରଗଣ ! ଇନ୍ଦ୍ରଙ୍କ ଅଂଶରେ ପାଣ୍ଡୁରାଜାଙ୍କର ଅତି ପ୍ରତାପଶାଳୀ ଅର୍ଜ୍ଜୁନ ନାମରେ ଯେଉଁ ପୁତ୍ର ଜନ୍ମିବେ, ବର୍ଚ୍ଚାଃ ତାହାଙ୍କର ପୁତ୍ର ହୋଇ ମର୍ତ୍ତ୍ୟରେ ଜନ୍ମ-ଗ୍ରହଣ କରିବେ ଓ ପ୍ରସିଦ୍ଧ ଅତିରଥଙ୍କ ମଧ୍ୟରେ ପରିଗଣିତ ହୋଇ ଷୋଡ଼ଶବର୍ଷ ପୃଥିବୀରେ ଅବସ୍ଥାନ କରିବେ । ହେ ଅମରସତ୍ତମବୃନ୍ଦ ! ତୁମ୍ଭେମାନେ ଅଂଶାବତାର ହୋଇ ଯେଉଁ ସଂଗ୍ରାମରେ ଅସୁର ନିପାତ କରିବ, ବର୍ଚ୍ଚାଙ୍କର ଷୋଡ଼ଶବର୍ଷ ବୟସ ପୂର୍ଣ୍ଣ ହେବାର କିଛିକାଳ ପୂର୍ବରୁ ସେହି ଯୁଦ୍ଧ ଉପସ୍ଥିତ ହେବ । କିନ୍ତୁ ସେହି ଯୁଦ୍ଧରେ କୃଷ୍ଣ ଓ ଅର୍ଜ୍ଜୁନ ଥିବେ ନାହିଁ । କେବଳ ଅସୁରମାନେ ଚକ୍ରବ୍ୟୂହ ସଂସ୍ଥାପନ କରି ତୁମ୍ଭ-ମାନଙ୍କ ସହିତ ଯୁଦ୍ଧ କରିବେ । ଆମ୍ଭର ଏହି ପୁତ୍ର ସମସ୍ତ ଶତ୍ରୁପକ୍ଷୀୟ ସୈନ୍ୟଙ୍କୁ ବିମୁଖ କରିବେ । ଦୁର୍ଭେଦ୍ୟ ବ୍ୟୂହକୁ ଭେଦକରି ତନ୍ମଧ୍ୟରେ ପ୍ରବେଶ ପୂର୍ବକ ଦିନାର୍ଦ୍ଧ ଭାଗ ମଧ୍ୟରେ ସଂଗ୍ରାମ ନିପୁଣ ଅତିରଥ ଓ ମହାରଥ ସହ ସମସ୍ତ ଶତ୍ରୁଗଣଙ୍କର ଚତୁର୍ଥାଂଶ ବିନାଶ କରି ଯମସଦନକୁ ପ୍ରେରଣ କରିବେ । ତତ୍ପରେ ଦିବାବସାନ ସମୟରେ ଏକତ୍ର ମିଳିତ ବହୁସଂଖ୍ୟକ ମହାରଥମାନଙ୍କ ସହିତ ସଂଗ୍ରାମ କରି ଏ ମହାବାହୁ ପୁନର୍ବାର ଆମ୍ଭ ସମୀପକୁ ଆଗମନ କରିବେ । ୧୨୨ । ଗୋଟିଏ ବୀର ଓ ବଂଶଧର ପୁତ୍ରଙ୍କୁ ଏ ଜନ୍ମ କରି ଆସିବେ । ସେହି ପୁତ୍ରଟି ନଷ୍ଟପ୍ରାୟ କୁରୁବଂଶର ପୁନରୁଦ୍ଧାର କରିବେ । ୧୨୩ । ସୋମଙ୍କର ଉକ୍ତ ପ୍ରକାର ବଚନ ଶ୍ରବଣ କରି ଦେବତାମାନେ ତଥାସ୍ତୁ ବୋଲି ବୋଇଲେ ଓ ତାହାଙ୍କୁ ଯଥା-ବିହିତ ସମ୍ବର୍ଦ୍ଧନା କଲେ । ହେ ରାଜନ୍ ! ଆପଣଙ୍କ ପିତାମହଙ୍କର ଜନ୍ମବୃତ୍ତାନ୍ତ ଏହିରୂପେ କଥିତ ହେଲା । ୧୨୫ ।

ହେ ରାଜନ୍ ! ମହାରଥ ଧୃଷ୍ଟଦ୍ୟୁମ୍ନ ଅଗ୍ନିଙ୍କ ଭାଗରେ ଜନ୍ମ ହେଲେ ଓ ପୂର୍ବେ ଯେ କନ୍ୟା ଥିଲେ ସେହି ଶିଖଣ୍ଡୀ ରାକ୍ଷସର ଅଂଶରୁ ଜନ୍ମ ଗ୍ରହଣ କଲେ । ଦ୍ରୌପଦୀଙ୍କ ଗର୍ଭରୁ ଯେଉଁ ପଞ୍ଚପୁତ୍ର ଜନ୍ମିଲେ

ସେମାନେ ପୂର୍ବଜନ୍ମରେ ବିଶ୍ୱନାମକ ଦେବଗଣ ଥିଲେ । ଏହି ପଞ୍ଚପୁତ୍ରଙ୍କ ମଧ୍ୟରେ ପ୍ରତିବିନ୍ଧ୍ୟ ଯୁଧିଷ୍ଠିରଙ୍କ ଔରସରେ, ଶ୍ରୁତସୋମ ଭୀମଙ୍କ ଔରସରେ, ଶ୍ରୁତକୀର୍ତ୍ତି ଅର୍ଜ୍ଜୁନଙ୍କର, ଶତାନୀକ ନକୁଳଙ୍କର, ଓ ଶ୍ରୁତସେନ ସହଦେବଙ୍କ ଔରସରେ ଜନ୍ମିଲେ । ୨୨୭ । ଯଦୁବଂଶାବତଂସ ଶୂର ନାମକ ରାଜା ବସୁଦେବଙ୍କର ପିତା । ସେହି ଶୂରଙ୍କର ପୃଥା ନାମରେ ଗୋଟିଏ କନ୍ୟା ଥିଲେ । ସେହି କନ୍ୟା ଇତ୍ଥମ୍ଭୂତ ରୂପବତୀ ଥିଲେ ଯେ ଭୂମଣ୍ଡଳରେ ଅନ୍ୟ କୌଣସି କାମିନୀ ରୂପରେ ତାହାଙ୍କର ସାଦୃଶ୍ୟ ଲଭିପାରିଲେ ନାହିଁ । ଶୂରଙ୍କର ପିତୃସ୍ୱସାଙ୍କର ଅନପତ୍ୟ ଥିବାରୁ, ଶୂର ଆଗରୁ ପ୍ରତିଜ୍ଞା କରିଥିଲେ ଯେ ଯେବେ ତାହାଙ୍କର ପୁତ୍ର ଜାତ ହେବ ତେବେ ସେ, ସେ ପୁତ୍ରଙ୍କୁ ତାହାଙ୍କର ପିଉସୀଙ୍କର ପୁତ୍ରଙ୍କୁ ପ୍ରଦାନ କରିବେ । କିନ୍ତୁ ଆଦ୍ୟ ଗର୍ଭରେ ଏହି କନ୍ୟା ଜନ୍ମିବାରୁ ଅନୁଗ୍ରହ ପ୍ରତ୍ୟାଶୀ ହୋଇ ସେହି କନ୍ୟାଙ୍କୁ କୁନ୍ତୀ ଭୋଜରାଜାଙ୍କୁ ପ୍ରଦାନ କଲେ । ୧୩୦ । ପୃଥା ପିତୃଗୃହରେ ବ୍ରାହ୍ମଣ ସେବାରେ ଓ ଅତିଥି ସତ୍କାର କାର୍ଯ୍ୟରେ ନିଯୁକ୍ତ ଥିଲେ । ଏକଦା ସେ ଜିତେନ୍ଦ୍ରିୟ, ବ୍ରତପରାୟଣ, ଘୋର ଉଗ୍ରସ୍ୱଭାବ, ଧର୍ମ-ରହସ୍ୟ-ଜ୍ଞାତା, ବ୍ରାହ୍ମଣ ଦୁର୍ବାସା ଋଷିଙ୍କୁ ସର୍ବପ୍ରଯତ୍ନରେ ପରିଚର୍ଯ୍ୟା କରି ସନ୍ତୁଷ୍ଟ କଲେ । ୧୩୨ ।

ଭଗବାନ୍ ଦୁର୍ବାସା ପ୍ରୀତ ହୋଇ ତାହାଙ୍କୁ କହିଲେ, ହେ ସୁଭଗେ ! ଆମ୍ଭେ ତୁମ୍ଭଠାରେ ପ୍ରୀତ ହୋଇଅଛୁଁ । ତୁମ୍ଭେ ଏହି ମନ୍ତ୍ର-ଦ୍ୱାରା ଯେଉଁ ଯେଉଁ ଦେବତାମାନଙ୍କୁ ଆବାହନ କରିବ ସେହି ସେହି ଦେବତା ପ୍ରସାଦରୁ ପୁତ୍ର ଜନ୍ମ କରିବ । ୧୩୪ । ଏହି ପ୍ରକାରେ ଅଭିହିତ ହେବାରୁ ଯଶସ୍ୱିନୀ ପୃଥା କୌତୁହଳାନ୍ୱିତା ହୋଇ ବାଲ୍ୟକାଳୀନ ଚପଳତା ପ୍ରଯୁକ୍ତ କନ୍ୟାବସ୍ଥାରେ ସୂର୍ଯ୍ୟଦେବତାଙ୍କୁ ଆହ୍ୱାନ କଲେ । ୧୩୫ । ଜଗତ୍-ପ୍ରକାଶ-କର୍ତ୍ତା ତପନ ତାହାଙ୍କର ଗର୍ଭାଧାନ କଲେ ଓ ତାହାଙ୍କଠାରେ ସର୍ବଶସ୍ତ୍ରଧାରୀଙ୍କ ଶ୍ରେଷ୍ଠ ବୀର ପୁତ୍ରଙ୍କୁ ଜାତ କଲେ । ୧୩୬ । ସେ ପୁତ୍ର କୁଣ୍ଡଳ ଓ କବଚ ସହିତ ଓ ସୂର୍ଯ୍ୟଙ୍କ ପ୍ରାୟ ଦୀପ୍ତିମାନ ଓ ସର୍ବାଙ୍ଗ ଶୋଭନ ହୋଇ ଜନ୍ମହେଲେ । ୧୩୭ । ବନ୍ଧୁମାନଙ୍କ ଭୟରୁ ଗୋପନ କରି ସେହି ଯଶସ୍ୱୀ କୁମାରଙ୍କୁ ଜଳରେ ବିସର୍ଜ୍ଜନ କଲେ । ୧୩୮ । ଯଶସ୍ୱୀ ରାଧା-ଭର୍ତ୍ତା ଅଧିରଥ ସେହି ଜଳସ୍ଥ କୁମାରଙ୍କୁ ପ୍ରାପ୍ତ ହୋଇ ରାଧାଙ୍କର ପୁତ୍ର କରିଦେଲେ । ୧୩୯ । ସେହି ଦମ୍ପତି ଶିଶୁଟିର ନାମ ବସୁସେଣ ଦେଲେ । ବସୁସେଣ ଅଳ୍ପଦିନ ମଧ୍ୟରେ ଅତ୍ୟନ୍ତ

ବଳବାନ୍, ଅସ୍ତ୍ରବିଦ୍ୟା ବିଶାରଦ ଓ ବେଦାଙ୍ଗବେତ୍ତା ହେଲେ । ସେ ଯେତେବେଳେ ଜପ କରି ବସନ୍ତି ସେତେବେଳେ କେହି ବ୍ରାହ୍ମଣ ଯାହା ଯାଚଞ୍ଚା କରେ ସେ ମହାତ୍ମା ତାହା ତାଙ୍କୁ ଦାନ କରନ୍ତି ।

ଏକଦା ଭଗବାନ୍ ଇନ୍ଦ୍ର ବ୍ରାହ୍ମଣ ରୂପ ଧାରଣ କରି ଆପଣା ପୁତ୍ରଙ୍କ ନିମିତ୍ତ ବସୁଷେଣଙ୍କୁ ତାହାଙ୍କର ସହଜ କୁଣ୍ଡଳ ଓ କବଚ ପ୍ରାର୍ଥନା କଲେ । କର୍ଣ୍ଣ ତତ୍‌କ୍ଷଣାତ୍ କୁଣ୍ଡଳ ଓ କବଚ ଆପଣାର ଶରୀରରୁ ବାହାର କରି ଇନ୍ଦ୍ରଙ୍କୁ ପ୍ରଦାନ କଲେ । ଇନ୍ଦ୍ର ବିସ୍ମିତ ହୋଇ କର୍ଣ୍ଣଙ୍କୁ ନିଜର ଶକ୍ତି ପ୍ରଦାନ କରି କହିଲେ, ହେ ଦୁର୍ଦ୍ଧର୍ଷ ! ଦେବ, ଅସୁର, ମନୁଷ୍ୟ, ଗନ୍ଧର୍ବ, ନାଗ ଓ ରାକ୍ଷସ ମଧ୍ୟରେ ଯାହାକୁ ତୁମ୍ଭେ ଏହି ଶକ୍ତିକି ପ୍ରହାର କରିବ, ସେ ତତ୍‌କ୍ଷଣାତ୍ ପ୍ରାଣ ବିଯୁକ୍ତ ହେବ । ୧୪୫ । ଇନ୍ଦ୍ର ଏହା କହି ତିରୋହିତ ହେଲେ; ତଦବଧି ବସୁଷେଣଙ୍କ ନାମ ତାହାଙ୍କ କର୍ମାନୁସାରେ ବୈକର୍ତ୍ତନ ଓ କର୍ଣ୍ଣ ବୋଲି ବିଖ୍ୟାତ ହେଲା । ୧୪୬ । ଯେଉଁ ବୀର ଓ ମହାରଥ କବଚ ପରିଧାନ କରି ପୃଥାଙ୍କର ପ୍ରଥମ ଗର୍ଭରେ ଜାତ ହୋଇଥିଲେ ସେହି ମହାତ୍ମା କର୍ଣ୍ଣ ନାମରେ ପ୍ରଥିତ ହୋଇ ସୂତକୁଳରେ ପରିବର୍ଦ୍ଧିତ ହେଲେ । ୧୪୮ । ହେ ରାଜସତ୍ତମ ! ଦିବାକରଙ୍କର ତ୍ରୈସହି ସୂତ କର୍ଣ୍ଣଙ୍କୁ ଦୁର୍ଯୋଧନଙ୍କର ପ୍ରଧାନ ସଚିବ ଓ ତାହାଙ୍କର ଶତ୍ରୁବିନାଶକାରୀ ବୋଲି ଜାଣିବ । ୧୪୯ । ସନାତନ ଦେବ ଦେବ ନାରାୟଣଙ୍କ ଅଂଶରେ ପ୍ରତାପ-ଶାଳୀ ବାସୁଦେବ ଜାତ ହେଲେ । ୧୫୦ । ମହାବଳ ବଳଦେବ ଶେଷ ନାଗଙ୍କ ଅଂଶ ଓ ମହାବଳ ପ୍ରଦ୍ୟୁମ୍ନ ସନତ୍କୁମାରଙ୍କ ଅଂଶ । ୧୫୧ ।

ଏହିରୂପେ ବସୁଦେବଙ୍କ ବଂଶରେ ଦେବତାମାନଙ୍କ ଅଂଶରେ ବହୁସଂଖ୍ୟକ ନରପତି ଜନ୍ମଗ୍ରହଣ କଲେ । ୧୫୨ । ହେ ମହାରାଜ ! ପୂର୍ବେ ଯେଉଁ ସବୁ ଅପ୍‌ସରାମାନଙ୍କର ନାମ କୀର୍ତ୍ତନ କରିଅଛୁ ସେମାନଙ୍କ ଅଂଶରେ ଇନ୍ଦ୍ରଙ୍କ ଆଦେଶକ୍ରମେ ଷୋଡ଼ଶ ସହସ୍ର ଦେବୀ ଜନ୍ମି ବାସୁଦେବଙ୍କର ପରିଗ୍ରହ ହେଲେ । ନାରାୟଣଙ୍କ ପ୍ରୀତି ନିମିତ୍ତ ଲକ୍ଷ୍ମୀଦେବୀ ରୁକ୍ମିଣୀ ରୂପରେ ଭୀଷ୍ମକ ରାଜାଙ୍କ କୁଳରେ ସମୁତ୍ପନ୍ନ ହେଲେ ।୧୫୪। ଅନିନ୍ଦିତା ଶଚୀଦେବୀଙ୍କ ଅଂଶରେ ଦ୍ରୌପଦୀ କନ୍ୟା ହୋଇ ବେଦି ମଧ୍ୟରୁ ଦ୍ରୁପଦ ରାଜକୁଳରେ ଜାତ ହେଲେ । ଉଚ୍ଚତାରେ ଦ୍ରୌପଦୀ ହ୍ରସ୍ୱ ନୁହନ୍ତି କି ଦୀର୍ଘ ନୁହନ୍ତି । ଏହାଙ୍କ ଗାତ୍ରରୁ ନୀଳୋତ୍ପଳର ବାସନା ନିର୍ଗତ ହୁଅଇ । ଚକ୍ଷୁ ପଦ୍ମଦଳପ୍ରାୟ ବିଶାଳ, ନିତମ୍ବ ଅତି ମନୋହର ଓ ବର୍ଣ୍ଣ ବୈଦୁର୍ଯ୍ୟ ମଣିପ୍ରାୟ ଉଜ୍ଜ୍ୱଳ ।

ତାହାଙ୍କର ସବୁ ସୁଲକ୍ଷଣ ଥିଲା ଓ ସେ ପାଞ୍ଚଗୋଟି ପୁରୁଷଙ୍କର ମନୋହାରିଣୀ ହୋଇଥିଲେ । ୧୫୮ । ସିଦ୍ଧି ଓ ଧୃତିଦେବୀଙ୍କ ଅଂଶରେ କୁନ୍ତୀ ଓ ମାଦ୍ରୀ ଜନ୍ମିଲେ । ଏ ଦୁହେଁ ପଞ୍ଚପାଣ୍ଡବଙ୍କର ଜନନୀ । ମତି ନାମ୍ନୀ କନ୍ୟା ସୁବଳଙ୍କ ଅଂଶରେ ଜନ୍ମିଲେ । ହେ ରାଜନ୍ ! ଦେବ, ଦାନବ, ଗନ୍ଧର୍ବ, ଅପ୍ସରା ଓ ରାକ୍ଷସମାନଙ୍କ ଅଂଶାବତାର କୀର୍ତ୍ତନ କଲୁଁ । ସଂଗ୍ରାମଲୋଲୁପ ଯେଉଁ ସବୁ ମହାତ୍ମା ଭୂପତି ନିଃସ୍ୱ ଜନ୍ମଗ୍ରହଣ କରିଥିଲେ ଓ ଯଦୁବଂଶୀୟ ବୀରଗଣଙ୍କର ଓ ଯେଉଁ ବ୍ରାହ୍ମଣ ଓ ବୈଶ୍ୟଗଣ ତଦୁପଲକ୍ଷରେ ଧରାତଳରେ ଜନ୍ମଗ୍ରହଣ କରିଥିଲେ ସେମାନଙ୍କର ନାମ ମଧ୍ୟ କୀର୍ତ୍ତନ କଲୁଁ । ପ୍ରାଜ୍ଞଜନ ଅସୂୟାଶୂନ୍ୟ ହୃଦୟରେ ଦେବ, ଗନ୍ଧର୍ବ ରାକ୍ଷସଗଣଙ୍କର ଏହି ଅଂଶାବତରଣ ଶ୍ରବଣ କଲେ ଧନ, ଆୟୁ, ଯଶ, ପୁତ୍ର ଓ ସର୍ବତ୍ର ବିଜୟ ଲାଭ କରନ୍ତି ଓ ଅତି କ୍ଳେଶରେ ପତିତ ହୋଇଥିଲେ ହେଁ ଅବସନ୍ନ ନ ହୋଇ ଉଦ୍ଧାର ଲାଭ କରନ୍ତି । ୧୬୪ ।

## ଅଧ୍ୟାୟ—୬୮

ଜନମେଜୟ କହିଲେ—ହେ ବ୍ରହ୍ମନ୍ ! ଦେବ-ଦାନବ-ଗନ୍ଧର୍ବ-ରାକ୍ଷସ ଓ ଅପ୍ସରାଗଣଙ୍କର ଅଂଶାବତରଣ ଆପଣଙ୍କ ନିକଟରୁ ଉତ୍ତମ ରୂପେ ଶ୍ରବଣ କଲୁ । ହେ ବିପ୍ର ! ଏବେ ଏହି ବିପ୍ରର୍ଷିମାନଙ୍କ ସମକ୍ଷରେ ଆପଣ କୁରୁବଂଶର ସମସ୍ତ ବୃତ୍ତାନ୍ତ ଆଦ୍ୟରୁ ବର୍ଣ୍ଣନ କରିବା ହେଉନ୍ତୁ; ଆମ୍ଭେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁ । ୨ ।

ବୈଶମ୍ପାୟନ ବୋଇଲେ, ହେ ଭରତସତ୍ତମ ! ଦୁଷ୍ମନ୍ତ ନାମରେ ବୀର୍ଯ୍ୟବାନ୍ ଭୂପତି ପୌରବଗଣଙ୍କର ଆଦିପୁରୁଷ ଥିଲେ, ସେ ସସାଗରା ପୃଥିବୀର ରକ୍ଷାକାରୀ ହୋଇଥିଲେ । ହେ ମନୁଜେଶ୍ୱର ! ସେହି ଦୁଷ୍ମନ୍ତ ସମସ୍ତ ପୃଥିବୀର ଚତୁର୍ଥାଂଶ କର ଭୋଗ କରୁଥିଲେ । ସେହି ରିପୁମର୍ଦ୍ଦନ୍ ଜୟଶୀଳ ମନୁଜନାଥ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ସମାକୀର୍ଣ୍ଣ ମ୍ଳେଚ୍ଛଦେଶ ପର୍ଯ୍ୟନ୍ତ ସମସ୍ତ ଦେଶକୁ ଭୋଗ କରୁଥିଲେ । ୫ । ତାହାଙ୍କ ସମୟରେ ବର୍ଣ୍ଣସଙ୍କର ଥିଲେ ନାହିଁ, ପ୍ରଜାମାନଙ୍କୁ କୃଷିକର୍ମ କରି ଶସ୍ୟୋତ୍ପାଦନ କରିବାକୁ ହେଉ ନ ଥିଲା ଓ କେହି ପାପକାରୀ ନ ଥିଲେ । ୭ । ହେ ନରବ୍ୟାଘ୍ର ! ଦୁଷ୍ୟନ୍ତ

ଯେଉଁ ସମୟରେ ଜନପଦମାନଙ୍କର ଈଶ୍ୱର ହୋଇଥିଲେ ସେହି ସମୟରେ ସମସ୍ତ ବର୍ଣ୍ଣର ଲୋକେ ସ୍ୱଧର୍ମରେ ଓ ଦୈବ କର୍ମରେ ନିଷ୍ଠାଯୁକ୍ତ ହୋଇ ରତ ଥିଲେ, ଅଥଚ ସେହି ମହୀପାଳଙ୍କୁ ଆଶ୍ରୟ କରି ନିର୍ଭୟରେ କାଳହରଣ କରୁଥିଲେ । ୯ । ମେଘ ଯଥା ସମୟରେ ବୃଷ୍ଟି କରୁଥିଲା, ଶସ୍ୟମାନେ ରସବନ୍ତ ହେଉଥିଲେ ଓ ମହୀ ସର୍ବରତ୍ନମୟୀ ଓ ପଶୁମତୀ ହୋଇଥିଲା । ବିପ୍ରମାନେ ସ୍ୱକର୍ମ କରିରତ ଥିଲେ ଓ ସେମାନେ ମିଥ୍ୟା କହୁ ନ ଥିଲେ । ଦୁଷ୍ମନ୍ତ ରାଜା ସ୍ୱୟଂ ମହାବଳବନ୍ତ ଥିଲେ ଓ ତାହାଙ୍କର ଶରୀର ବଜ୍ରତୁଲ୍ୟ କଠିନ ଥିଲା । ବନ ଓ କାନନ ସହିତ ମନ୍ଦର ପର୍ବତକୁ ସୁଦ୍ଧା ତାହାଙ୍କର ଟେକିବାର ସାମର୍ଥ୍ୟ ଥିଲା । ପ୍ରକ୍ଷେପ, ବିକ୍ଷେପ, ପରିକ୍ଷେପ ଓ ଅଭିକ୍ଷେପ ନାମକ ଚାରି ପ୍ରକାର ଗଦାଯୁଦ୍ଧରେ ଓ ସର୍ବପ୍ରକାର ଯୁଦ୍ଧରେ ଅଥଚ ଗଜ ଓ ଅଶ୍ୱାରୋହଣରେ ସେ ରାଜା ସୁନିପୁଣ ଥିଲେ; ବଳରେ ସେ ବିଷ୍ଣୁ ସମାନ ଓ ତେଜରେ ଭାସ୍କରଙ୍କ ତୁଲ୍ୟ ଥିଲେ । ଗମ୍ଭୀରତାରେ ଅର୍ଣ୍ଣବ ସଦୃଶ ଓ ସହିଷ୍ଣୁତାରେ ଧରିତ୍ରୀପ୍ରାୟ ଥିଲେ । ସେହି ମହୀପାଳ ସମସ୍ତଙ୍କର ସ୍ନେହଭାଜନ ଥିଲେ, ତାହାଙ୍କର ପୁର ଓ ରାଜ୍ୟ ସର୍ବଦା ପ୍ରସନ୍ନ ଥିଲା ଓ ପ୍ରମୁଦିତ ପ୍ରଜାମାନଙ୍କୁ ସେ ଧର୍ମଭାବରେ ଶାସନ କରୁଥିଲେ । ୧୫ ।

---

## ଅଧ୍ୟାୟ—୬୯

ଜନମେଜୟ କହିଲେ—ମହାମତି ଭରତଙ୍କର ସମ୍ଭବ ବୃତ୍ତାନ୍ତ ଓ ଚରିତ ଅଥଚ ଶକୁନ୍ତଳାଙ୍କର ଉତ୍ପତ୍ତି ଯେପରି ହୋଇଥିଲା ସେହିପରି ଶୁଣିବାକୁ ଇଚ୍ଛା କରୁ । ବୀର ଦୁଷ୍ୟନ୍ତ ଯେପରି ଶକୁନ୍ତଳାଙ୍କୁ ପ୍ରାପ୍ତ ହେଲେ ତାହାକୁ ଓ ସେ ପୁରୁଷସିଂହଙ୍କର ବିସ୍ତୃତ ଆଖ୍ୟାନକୁ ଶୁଣିବାକୁ ଇଚ୍ଛା କରୁଅଛୁ ! ହେ ଭଗବାନ୍ ! ଆପଣ ତତ୍ତ୍ୱଜ୍ଞ ଓ ବୁଦ୍ଧିମାନଙ୍କର ଶ୍ରେଷ୍ଠ; ସେ ସମସ୍ତ ବୋଲିବା ହେଉନ୍ତୁ । ୨ ।

ବୈଶମ୍ପାୟନ ବୋଇଲେ, ଦିନେ ସେ ମହାବାହୁ ଦୁଷ୍ମନ୍ତ ଅସଂଖ୍ୟ ସୈନ୍ୟସାମନ୍ତ ଓ ପ୍ରଭୂତ ବାହନ ସମଭିବ୍ୟାହାରରେ ଘୋର ଗହନ ବନକୁ ଗମନ କଲେ । ସେ ପରମସୁନ୍ଦର ଚତୁରଙ୍ଗବଳ ଓ ଖଡ୍ଗ-ଶକ୍ତି-ଗଦା-ମୂଷଳ-ପାଣି ବୀରବୃନ୍ଦରେ ପରିବୃତ ହୋଇଥିଲେ । ପ୍ରାସତୋମର-ହସ୍ତ

ଶତ ଶତ ଯୋଧଙ୍କଦ୍ୱାରା ପରିବୃତ ହୋଇ ଗମନ କଲେ; ସେହି ରାଜାଙ୍କ ଗମନ କରିବା କାଳରେ ଯୋଦ୍ଧାଗଣ ସିଂହନାଦରେ, ଶଙ୍ଖ ଦୁନ୍ଦୁଭିର ନିସ୍ୱନରେ, ରଥନେମି ଘର୍ଷଣରେ, ବୃହତ୍ ଗଜମାନଙ୍କର ବୃଂହିତ ଦ୍ୱାରା ଓ ଅଶ୍ୱମାନଙ୍କ ହ୍ରେଷାମିଶ୍ରିତ ନାନାୟୁଧ ଓ ବେଶଧାରୀ ବ୍ୟକ୍ତିଙ୍କର ବାହ୍ୱାସ୍ଫୋଟ ଓ ଆସ୍ଫାଳନ ଶବ୍ଦଦ୍ୱାରା ଘୋର କଳକଳା ଶବ୍ଦ ଶ୍ରୁତ ହେଲା । ୭ । ସ୍ତ୍ରୀମାନେ ପ୍ରାସାଦଶିଖରାରୂଢ଼ ହୋଇ ଶୂର, ଯଶସ୍ୱୀ ଓ ଉତ୍କୃଷ୍ଟ ରାଜଶୋଭାଯୁକ୍ତ ସେହି ନରନାଥଙ୍କୁ ଦର୍ଶନ କଲେ । ୮ । ଶତ୍ରୁସଂହାରକାରୀ ଓ ଶତ୍ରୁ-ଗଜ-ସମୂହ ବିନାଶକାରୀ ସେହି ନରପତିଙ୍କୁ ସ୍ତ୍ରୀମାନେ ଦେଖି ଇନ୍ଦ୍ର ବୋଲି ଜ୍ଞାନ କଲେ । "ଏହି ପୁରୁଷବ୍ୟାଘ୍ର ରଣରେ ବସୁଙ୍କ ସଦୃଶ ପରାକ୍ରମଶାଳୀ ଥିଲେ; ଏହାଙ୍କ ବାହୁବଳରେ ଶତ୍ରୁପକ୍ଷ ବିନଷ୍ଟ ହେଉଥିଲେ ।" ଏହା କହି ସ୍ତ୍ରୀମାନେ ସେହି ନରାଧିପତିଙ୍କୁ ତୁଷ୍ଟ କଲେ ଓ ତାହାଙ୍କ ମୂର୍ଦ୍ଧାରେ ପୁଷ୍ପବୃଷ୍ଟି କଲେ । ୧୦ ।

ବିପ୍ରେନ୍ଦ୍ରମାନଙ୍କ ଦ୍ୱାରା ଚତୁଃପାର୍ଶ୍ୱରେ ବେଷ୍ଟିତ ଓ ସ୍ତୁତ ହୋଇ ଅତି ପ୍ରୀତ ମନରେ ସେ ମୃଗୟା କରିବାକୁ ଗମନ କଲେ । ବ୍ରାହ୍ମଣ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନେ ମତ୍ତ ବାରଣ ସଦୃଶ ବଳଶାଳୀ ଓ ଦେବରାଜପ୍ରତିମ ସେହି ନରପତିଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କଲେ ଓ ଚତୁର୍ଦ୍ଦିଗରୁ ଆଶୀର୍ବଚନ ଓ ଜୟଶବ୍ଦ ଉଚ୍ଚାରଣ କରି ତାହାଙ୍କୁ ଦର୍ଶନ କଲେ । ୧୩ । ପୁରବାସୀ ଓ ନଗରବାସୀ ଜନମାନେ ଅନେକ ଦୂର ଅବଧି ଗମନ କରି ରାଜାଙ୍କ ଅନୁଜ୍ଞା ଅନୁସାରେ ନିବୃତ୍ତ ହେଲେ ।

ସେହି ବସୁଧାଧିପ ସୁପର୍ଣ୍ଣସଦୃଶ ରଥରେ ଆରୋହଣ କରି ତାହାର ନିର୍ଘୋଷଦ୍ୱାରା ପୃଥିବୀ ଓ ଆକାଶକୁ ପରିପୂର୍ଣ୍ଣ କଲେ ଓ ଗମନ କରୁ କରୁ ଦେଖିଲେ ଯେ ସେ ବନ ନନ୍ଦନ ସଦୃଶ ଶୋଭା ଧାରଣ କରିଅଛି । ତହିଁରେ ବିଲ୍ୱ, ଅର୍କ, ଖଦିର, କପିତ୍ଥ ଓ ଧବ ପ୍ରଭୃତି ବୃକ୍ଷମାନେ ପୂର୍ଣ୍ଣ ରହିଅଛନ୍ତି ଓ ପର୍ବତରୁ ବିସ୍ରସ୍ତ ବୃହତ୍ ବୃହତ୍ ପର୍ବତଖଣ୍ଡ ଦ୍ୱାରା ଭୂମି ବିଷମ ହୋଇଅଛି । ବନ ବହୁ ଯୋଜନାବଧି ବିସ୍ତୃତ ଓ ତହିଁରେ ଜଳ କି ମନୁଷ୍ୟ ନାହାନ୍ତି । ମୃଗ, ସିଂହ ଓ ଅପରାପର ଘୋର ବନଚରଙ୍କଦ୍ୱାରା ବୃତ ହୋଇଅଛି । ୧୮ । ଭୃତ୍ୟ ଓ ବଳବାହନ ସହିତ ରାଜା ଦୁଷ୍ମନ୍ତ ସେହି ବନକୁ ଆଲୋଡ଼ିତ କଲେ ଓ ବିବିଧ ମୃଗମାନଙ୍କୁ ବିନାଶ କଲେ । ବହୁସଂଖ୍ୟକ ବ୍ୟାଘ୍ରମାନଙ୍କୁ ସାୟକଦ୍ୱାରା ବିଭେଦ କରି ନିପାତିତ କଲେ । ୨୦ । ସେହି ନରାଧିପ ଦୂରସ୍ଥିତ କେତେକ ମୃଗମାନଙ୍କୁ ଶରଦ୍ୱାରା ବିଦ୍ଧ କଲେ ଓ

ସମୀପାଗତ କେତେକ ମୃଗଙ୍କୁ ଖଡ୍‌ଗଦ୍ୱାରା କର୍ତ୍ତନ କଲେ ।୨୧। ଶକ୍ତିଧାରୀଙ୍କ ଶ୍ରେଷ୍ଠ ସେହି ରାଜା କତିପୟ ଏଣ ମୃଗଙ୍କୁ ଶକ୍ତିଦ୍ୱାରା ହତ କଲେ । ଗଦା-ମଣ୍ଡଳ କ୍ରୀଡ଼ାରେ ଚତୁରଙ୍କ ଅତି ବିକ୍ରମଶାଳୀ ସେହି ନରପତି ଗଦା, ତୋମର, ଅସି ଓ ମୂଷଳମାନଙ୍କୁ କମ୍ପନ କରି ଓ ବନ୍ୟମୃଗ ଓ ପକ୍ଷୀମାନଙ୍କୁ ବିନଷ୍ଟ କରି ବିଚରଣ କଲେ । ୨୩ ।

ଅଦ୍ଭୁତବୀର୍ଯ୍ୟ ରାଜା ଓ ସମରପ୍ରିୟ ସୈନ୍ୟମାନେ ଆଲୋଡ଼ନ କରିବାରୁ ସିଂହମାନେ ସେହି ମହାରଣ୍ୟକୁ ପରିତ୍ୟାଗ କଲେ ।୨୪। ମୃଗଙ୍କ ଯୂଥପତି ବିନଷ୍ଟ ହେବାରୁ ମୃଗମାନେ ଉତ୍କଣ୍ଠିତ ହୃଦୟରେ ଶବ୍ଦ କରି ଇତସ୍ତତଃ ପଳାୟନ କଲେ ଓ ଜଳପାନାର୍ଥ ଯାଇ ନଦୀମାନଙ୍କୁ ଶୁଷ୍କ ଦେଖି ଜଳାଭାବରୁ ଦୁଃଖିତ ଓ ପଳାୟନ କ୍ଳେଶରେ ବ୍ୟଥିତହୃଦୟ ହୋଇ ଅଚେତନ ହୋଇ ଭୂମିରେ ନିପତିତ ହେଲେ । ୨୬ । ମୃଗମାନେ କ୍ଷୁତ୍ପିପାସାର୍ତ୍ତ ହୋଇ ଓ କ୍ଲାନ୍ତ ହୋଇ ଭୂମିରେ ପତିତ ହେବାରୁ କ୍ଷୁଧାର୍ତ୍ତ ସେନାମାନେ ସେମାନଙ୍କୁ ଭକ୍ଷଣ କରିବାରେ ପ୍ରବୃତ୍ତ ହେଲେ । କେହି କେହି ଅବା ସେମାନଙ୍କ ମାଂସକୁ ଯଥାବିଧି କର୍ତ୍ତନ କରି ଅଗ୍ନି ପ୍ରଜ୍ୱଳିତ କରି ତହିଁରେ ରନ୍ଧନ କରି ଆହାର କଲେ । ୨୮ । ସେହି ଅରଣ୍ୟାମଧ୍ୟରେ କେହି କେହି ମତ୍ତହସ୍ତୀ ଶସ୍ତ୍ର ପ୍ରହରଣରେ ଘାତ ଓ ତ୍ରସ୍ତ ହୋଇ ଶୁଣ୍ଡକୁ ସଙ୍କୁଚିତ କରି ଦ୍ରୁତବେଗରେ ପଳାୟନ କଲେ । ୨୯ । କେଉଁ-ଠାରେ ଅବା ବନ୍ୟ ଗଜମାନେ ପୁରୀଷ, ମୂତ୍ର ପରିତ୍ୟାଗ କରି ଓ ରକ୍ତ ବମନାଦି କରି ପଳାୟନପର ହେବାରୁ ବହୁସଂଖ୍ୟକ ମନୁଷ୍ୟ ମର୍ଦ୍ଦିତ ଓ ବିନଷ୍ଟ ହେଲେ । ୩୦ । ମୃତ ମୃଗାଧିପ ଓ ମୃଗାକୀର୍ଣ୍ଣ ସେହି ବନ ବଳରୂପ ମେଘଦ୍ୱାରା ଓ ଶରବୃଷ୍ଟିରୂପ ବର୍ଷଣଧାରାରେ ସମ୍ବୃତ ହୋଇ ଅପୂର୍ବ ଶୋଭା ଧାରଣ କଲା । ୩୧ ।

---

## ଅଧ୍ୟାୟ—୭୦

ବୈଶମ୍ପାୟନ କହିଲେ—ରାଜା ଦୁଷ୍ମନ୍ତ ବାହନ ଓ ସୈନ୍ୟସାମନ୍ତ ସମଭିବ୍ୟାହାରରେ ସହସ୍ର ସହସ୍ର ମୃଗ ବଧ କରି ମୃଗପ୍ରସଙ୍ଗରେ ଅପର ଗୋଟିଏ ବନରେ ଉପଗତ ହେଲେ । ୧ । ସେହି ମହାବଳ, ଶ୍ରାନ୍ତ ଓ କ୍ଷୁତ୍-

ପିପାସାର୍ତ୍ତ ହୋଇ ସେହି ଅରଣ୍ୟାମଧ୍ୟ ଉତ୍ତୀର୍ଣ୍ଣ ହୋଇ ଗୋଟିଏ ମହତ୍ ପ୍ରାନ୍ତର ଦର୍ଶନ କଲେ । ୨ । ନୃପତି ସେହି ପ୍ରାନ୍ତରକୁ ମଧ୍ୟ ଅତିକ୍ରମ କରି ଆଉ ଗୋଟିଏ ସୁନ୍ଦର ମନୋହର ଓ ଆଶ୍ରମସଂଯୁକ୍ତ ମହତ୍ତ୍ଵବର୍ତ୍ତୀ ଦର୍ଶନ କଲେ । ସେ ସ୍ଥାନର ବାୟୁ ଶୀତଳ ହୋଇଅଛି, ପାଦପମାନେ ପୁଷ୍ପିତ ହୋଇଅଛନ୍ତି, ଭୂମି ହରିଦ୍ଵର୍ଣ୍ଣ ତୃଣରେ ଆଚ୍ଛନ୍ନ ହୋଇଅଛି, ସୁମଧୁର ସ୍ଵରଯୁକ୍ତ ବିହଙ୍ଗମମାନେ ପୂର୍ଣ୍ଣ ରହିଅଛନ୍ତି । ପୁଂସ୍କୋକିଳମାନଙ୍କ ଧ୍ଵନି ଓ ଝିଲ୍ଲୀମାନଙ୍କ ଧ୍ଵନି ନାଦରେ ବନ ନିନାଦିତ ହେଉଅଛି । ସୁଖସ୍ପର୍ଶସଂଯୁକ୍ତ ଅତି ବୃହତ୍ ବିଟପମାନଙ୍କରେ ଭୂତଳ ସମାବୃତ ହୋଇଅଛି । ଷଟ୍‌ପଦ-ମାନେ ସେହି ବୃକ୍ଷମୂଳ ଛାୟାରେ ଘୂର୍ଣ୍ଣିତ ହୋଇଅଛନ୍ତି ଓ ପରମ ଶୋଭାରେ ସେ ସ୍ଥାନ ସୁଶୋଭିତ ହୋଇଅଛି । ୬ ।

ସେହି କାନନରେ ପୁଷ୍ପଶୂନ୍ୟ ବା ଫଳବର୍ଜ୍ଜିତ ଅଥବା କଣ୍ଟକଯୁକ୍ତ ହୋଇ ବୃକ୍ଷ ନ ଥିଲା ଓ ସବୁ ବୃକ୍ଷରେ ଭ୍ରମରଗଣ ସଙ୍କୁଳିତ ହୋଇ-ଥିଲେ । ୭ । ମହାଧନୁର୍ଦ୍ଧାରୀ ଦୁଷ୍ମନ୍ତ ବିହଙ୍ଗ-କୁଳ-କୋଳାହଳ-ସଂଯୁକ୍ତ, କୁସୁମ ସମୂହରେ ବିଭୂଷିତ, ମନୋରମ, ସର୍ବଶ୍ରେଷ୍ଠ ଓ ସର୍ବର୍ତ୍ତୁକୁସୁମାଳଙ୍କୃତ, ନିବିଡ଼ ଛାୟାସମନ୍ଵିତ, ସେହି ଅରଣ୍ୟରେ ପ୍ରବେଶ କଲେ । ୮ । ମାରୁତ-ସଞ୍ଚାଳିତ କୁସୁମଯୁକ୍ତ-ବୃକ୍ଷଶାଖା ସମସ୍ତ ସେ କାଳରେ ବାରମ୍ବାର ପୁଷ୍ପବୃଷ୍ଟି କରିବାରେ ପ୍ରବୃତ୍ତ ହେଲେ । ପାଦପମାନେ ବିଚିତ୍ର କୁସୁମ ରୂପ ବସନଦ୍ଵାରା ଓ ବିହଙ୍ଗମମାନଙ୍କର ଗଗନସ୍ପର୍ଶୀ ସୁମଧୁର ଧ୍ଵନିଦ୍ଵାରା ଶୋଭିତ ହେଉଥିଲେ । ୧୦ । ସେହି ସମସ୍ତ ବୃକ୍ଷର ପୁଷ୍ପଭାରବନତ ପ୍ରବାଳରେ ଉପବିଷ୍ଟ ହୋଇ ମଧୁଲୁବ୍ଧ ମଧୁକର-ନିକର ମଧୁର ସ୍ଵରରେ ଗାୟନ କରୁଥିଲେ । ମହାତେଜା ଦୁଷ୍ମନ୍ତ ସେହି ସ୍ଥାନରେ କୁସୁମସମୂହ-ସୁଶୋଭିତ ନାନାପ୍ରଦେଶ ଓ ହୃଦୟର ପ୍ରୀତିବର୍ଦ୍ଧନ ଲତାମଣ୍ଡପମାନଙ୍କୁ ଅବଲୋକନ କରି ପ୍ରମୁଦିତ ହେଲେ । ୧୨ । କୁସୁମାନ୍ଵିତ ଶାଖା ସମୂହଦ୍ଵାରା ପରସ୍ପରଶ୍ଳିଷ୍ଟ ମହେନ୍ଦ୍ର-ଧ୍ଵଜ-ସଦୃଶ ଉଚ୍ଚ-ପାଦପ-ନିକୁରମ୍ବଦ୍ଵାରା ସେହି ବନ ସୁଶୋଭିତ ହୋଇଥିଲା । ସେଠାରେ ସିଦ୍ଧ ଓ ଚାରଣ ସମୂହ, ଗନ୍ଧର୍ବ ଓ ଅପ୍‌ସରାଗଣ ମତ୍ତ ବାନର ଓ କିନ୍ନରମାନେ ନିରନ୍ତରସ୍ଵ କ୍ରୀଡ଼ାରେ ଆସକ୍ତ ଥିଲେ । ସୁଖସ୍ପର୍ଶ, ସୁଶୀତଳ, କୁସୁମ-ରେଣୁ-ବାହୀ ସୁଗନ୍ଧ-ଅନିଳ ଇତସ୍ତତଃ ସଞ୍ଚରଣ କରି କ୍ରୀଡ଼ା କରିବା ବ୍ୟପଦେଶରେ ପାଦପ ସମୀପରେ ଉପସ୍ଥିତ ହେଉଥିଲା । ୧୫ ।

ଏ ପ୍ରକାର ଗୁଣଯୁକ୍ତ ନଦୀ କଲ୍ଲୋଳଭବ, କମନୀୟ ବନକୁ ନୃପତି ଦର୍ଶନ କଲେ । ୧୬ । ସେହି ବନକୁ ଦେଖୁଁ ଦେଖୁଁ ମନୋରମ ଓ ରମଣୀୟ ଗୋଟିଏ ଆଶ୍ରମକୁ ଦେଖିଲେ । ସେଠାରେ ବିହଙ୍ଗମକୁଳ ହୃଷ୍ଟ ହୋଇ ଗାନ କରୁଅଛନ୍ତି; ନାନାବିଧ ବୃକ୍ଷରେ ସେ ସ୍ଥାନ ସମାକୀର୍ଣ୍ଣ ହୋଇଅଛି; ପାବକ ସେଠାରେ ପ୍ରଜ୍ୱଳିତ ହେଉଅଛି; ସେହି ଅପ୍ରତିମ ଆଶ୍ରମକୁ ଦେଖି ଶ୍ରୀମନ୍ ରାଜା ତାହାର ପ୍ରତିପୂଜା ବିଧାନ କଲେ । ଆଶ୍ରମଟି ପୁଣ୍ୟଜଳା ଓ ସୁଖୋଦକା ମାଳିନୀ ନଦୀତୀରବର୍ତ୍ତୀ, ଯତି ଓ ବାଲଖିଲ୍ୟ ଋଷିଙ୍କଦ୍ୱାରା ପରିବୃତ, ମୁନିଗଣସମନ୍ୱିତ ବହୁବିଧ ଅଗ୍ନ୍ୟାଗାରରେ ଓ ପୁଷ୍ପ ସ୍ତରଣଦ୍ୱାରା ବ୍ୟାପ୍ତ ବୃହତ୍ ବୃହତ୍ ନଦୀ କଚ୍ଛରେ * ପରିପୂର୍ଣ୍ଣ । ୨୦ । ଅନେକ ପକ୍ଷୀଗଣ ସମାକୀର୍ଣ୍ଣ ଓ ତପୋବନଦ୍ୱାରା ମନୋରମ ସେହି ନଦୀକୁ ଓ ହିଂସ୍ରଜନ୍ତୁମାନଙ୍କୁ ହିଂସାବିରତ ଦେଖି ସେହି ଅପ୍ରତିରଥ ନୃପତି ଅତିଶୟ ପ୍ରୀତମନା ହେଲେ; ଓ ଦେବଲୋକ ସଦୃଶ ସର୍ବଥା ସୁମନୋରମ ସେହି ଆଶ୍ରମରେ ପ୍ରବିଷ୍ଟ ହେଲେ । ୨୨ । ଆଶ୍ରମ-ପାର୍ଶ୍ୱ-ବାହିନୀ ମାଳିନୀ ନଦୀକୁ ଦେଖିଲେ ଯେ ସେ ତଟସ୍ଥ ସମସ୍ତ ପ୍ରାଣୀମାନଙ୍କର ଜନନୀ ପ୍ରାୟ ଅଧିଷ୍ଠିତ ହୋଇଅଛି । ତାହାର ପୁଳିନରେ ଚକ୍ରବାକମାନେ କ୍ରୀଡ଼ା କରୁଅଛନ୍ତି, ପୁଷ୍ପସଦୃଶ ଫେନ ପ୍ରବାହରେ ଭାସମାନ ହେଉଅଛି; କିନ୍ନରଗଣ, ବାନର ଓ ଋକ୍ଷମାନେ ତାହା ତଟରେ ବାସ କରୁଅଛନ୍ତି, ପବିତ୍ର ସ୍ୱାଧ୍ୟାୟ ଶବ୍ଦରେ ତାହାର ପୁଳିନ ଉପଶୋଭିତ ହୋଇଅଛି । ମତ୍ତବାରଣ, ଶାର୍ଦ୍ଦୂଳ ଓ ଭୁଜଗେନ୍ଦ୍ରମାନେ ତାହାର ତଟରେ ବାସ କରୁଅଛନ୍ତି । ୨୫ ।

ସେହି ନଦୀ ତୀରରେ ମହାତ୍ମା ଭଗବାନ କଶ୍ୟପପୁତ୍ରଙ୍କର ରମଣୀୟ ଓ ମହର୍ଷିଗଣ-ସେବିତ ଶ୍ରେଷ୍ଠ ଆଶ୍ରମ । ସେହି ଆଶ୍ରମକୁ ଓ ତାହାର ସଂଲଗ୍ନ ନଦୀକୁ ଦର୍ଶନ କରି ନୃପତି ତନ୍ମଧ୍ୟକୁ ଗମନ କରିବାର ଅଭିଳାଷ କଲେ । ୨୭ । ସୁରନଦୀଦ୍ୱାରା ଯେପରି ନର-ନାରାୟଣଙ୍କ ଆଶ୍ରମ ଉପଶୋଭିତ ତଦ୍ରୂପ ସମଳଙ୍କୃତ, ଦ୍ୱୀପବତୀ ଓ ରମଣୀୟ ତୀର ମଧ୍ୟବାହିନୀ ମାଳିନୀ ନଦୀଦ୍ୱାରା ଉପଶୋଭିତ, ମତ୍ତ ମୟୂର ଧ୍ୱନିରେ ନିନାଦିତ, ଚୈତ୍ରରଥ ସଦୃଶ ସେହି ମହଦ୍‌ବନରେ ପ୍ରବେଶ କରି ଅତୀବ ଗୁଣସମ୍ପନ୍ନ ଓ ଅତିଶୟ ତେଜସ୍ୱୀ ତପୋଧନ ମହର୍ଷି କଣ୍ୱଙ୍କୁ ଦର୍ଶନ

* କଚ୍ଛ—ନଦୀକୂଳ ଯେଉଁଠାରେ ଜଳପୂର୍ଣ୍ଣ ହୋଇଥାଏ ।

କରିବା ନିମିତ୍ତ, ହସ୍ତୀ, ଅଶ୍ୱ ଓ ପଦାତି ସଙ୍କୁଳ ସେନାଗଣଙ୍କୁ ବନଦ୍ୱାରରେ ରଖି ତାହାଙ୍କୁ ବୋଇଲେ, ଆମ୍ଭେ ରଜୋଗୁଣାତୀତ କାଶ୍ୟପ ମୁନିଙ୍କୁ ଦର୍ଶନ କରିବାକୁ ଯାଉଅଛୁଁ, ତୁମ୍ଭେମାନେ ଆମ୍ଭର ପ୍ରତ୍ୟାଗମନାବଧି ଏହିଠାରେ ଅବସ୍ଥାନ କର । ୩୨ ।

ଏହା କହି ମନୁଜେଶ୍ୱର ଦୁଷ୍ମନ୍ତ, ନନ୍ଦନ-ସଦୃଶ ସେହି ବନରେ ପ୍ରବେଶ କରି କ୍ଷୁଧା ଓ ପିପାସାକୁ ବିସ୍ମୃତ ହୋଇ ନିର୍ମଳ ଆନନ୍ଦ ଅନୁଭବ କଲେ । ସେଠାରେ ନରାଧିପ, ଅମାତ୍ୟ ପ୍ରଭୃତି ରାଜଚିହ୍ନମାନଙ୍କୁ ପରିତ୍ୟାଗ କରି ପୁରୋହିତଙ୍କ ସଙ୍ଗରେ ଯେମନ୍ତ ମୂର୍ତ୍ତିମାନ୍ ତପସ୍ୟା ରୂପ ସେହି ଋଷିଙ୍କୁ ଦର୍ଶନ କରିବା ଇଚ୍ଛାରେ ଗମନ କଲେ । ୩୪ । ଷଟ୍‌ପଦମାନଙ୍କ ଝଙ୍କାର-ପୂରିତ ନାନା ପକ୍ଷିଗଣନିଷେବିତ, ବ୍ରହ୍ମଲୋକ ସମାନ, ସେହି ଆଶ୍ରମକୁ ଦେଖିଲେ ଓ ବୈତାନିକ କର୍ମରେ, ଋଗ୍‌ବେଦୀ ବ୍ରାହ୍ମଣଙ୍କ ଦ୍ୱାରା ଯଥା-ସ୍ୱରରେ ଗୀତ, ମନ୍ତ୍ରମାନଙ୍କୁ ଶ୍ରବଣ କଲେ । ୩୬ । କଳ୍ପସୂତ୍ର ପ୍ରଭୃତି ଅଙ୍ଗ-ବିଦ୍ୟାରେ ନିପୁଣ, ଯଜୁର୍ବେଦୀଙ୍କ ଦ୍ୱାରା ଓ ଭାରୁଣ୍ଡାଦି ସାମଗାୟନ, ନିୟତ ବ୍ରତ ଋଷିମାନଙ୍କ ଦ୍ୱାରା ଓ ଅଥର୍ବ ବେଦପାଠୀ ସୁନିୟତ ବ୍ରାହ୍ମଣଙ୍କ ଦ୍ୱାରା ସେହି ଆଶ୍ରମ ସୁଶୋଭିତ ହୋଇଥିଲା । ୩୮ । ପୂଗପଙ୍କ୍ତିସ୍ଥ ସାମଗମାନେ ଓ ଅଥର୍ବ-ବେଦୀ-ପ୍ରବର ମୁନିମାନେ ଯଥାବିଧି ଉଚ୍ଚାରଣ କରି ସଂହିତାମାନ ପାଠ କରୁଥିଲେ । ଅପର ଦ୍ୱିଜମାନଙ୍କର ଯଥାସ୍ଥାନୋଚ୍ଚାରିତ ସଂସ୍କୃତ ଶବ୍ଦ-କଥନଦ୍ୱାରା ସେହି ଶ୍ରୀମାନ୍ ଆଶ୍ରମ ନିନାଦିତ ହୋଇ ଦ୍ୱିତୀୟ ବ୍ରହ୍ମଲୋକର ଶୋଭା ଧାରଣ କରିଥିଲା । ୪୦ ।

ଯଜ୍ଞ-ସଂସ୍କାର-ବେତ୍ତା * କ୍ରମଶିକ୍ଷାବିଶାରଦ, ନ୍ୟାୟତତ୍ତ୍ୱଜ୍ଞ, ଆତ୍ମ-ବିଜ୍ଞାନସମ୍ପନ୍ନ, ନାନା ବାକ୍ୟର ସମାହାର ଓ ସମବାୟବିଶାରଦ, ବ୍ରହ୍ମୋପାସନାରୂପ ବିଶେଷ କାର୍ଯ୍ୟଜ୍ଞ, ମୋକ୍ଷଧର୍ମପରାୟଣ, ମତ ସ୍ଥାପନରେ ଆଶଙ୍କା ନିରାକରଣ ଓ ସିଦ୍ଧାନ୍ତ କରିବାରେ ସଂପୂର୍ଣ୍ଣ ଅଭିଜ୍ଞ, ଶବ୍ଦଚ୍ଛନ୍ଦ ଓ ନିରୁକ୍ତଶାସ୍ତ୍ରବିଶାରଦ, ଦ୍ରବ୍ୟଗୁଣ ଓ କର୍ମଜ୍ଞ, କାର୍ଯ୍ୟକାରଣବେତ୍ତା, ପକ୍ଷୀ ଓ ବାନରାଦିଙ୍କ ଶବ୍ଦର ଅର୍ଥଜ୍ଞ, ବିସ୍ତୀର୍ଣ୍ଣ ଗ୍ରନ୍ଥ ସମାଶ୍ରିତ, ନାନା ଶାସ୍ତ୍ରରେ ବ୍ୟୁତ୍ପନ୍ନ, ଲୋକରଞ୍ଜନତତ୍ପର, ବେଦପାରଗ ଦ୍ୱିଜଗଣଙ୍କ କର୍ତ୍ତୃକ ଚତୁ-ର୍ଦ୍ଦିଗରେ ଅନୁନାଦିତ ଶବ୍ଦମାନଙ୍କୁ ମହାରାଜା ଦୁଷ୍ମନ୍ତ ଶ୍ରବଣ କଲେ । ୪୫ । ପରବୀରହନ୍ତା ମହୀପତି ସ୍ଥାନେ ସ୍ଥାନେ ଏହିରୂପ ନିୟମଯୁକ୍ତ, ବ୍ରତନିଷ୍ଠ,

* ଇଷ୍ଟକାଦି ଉପାଧାନ ବସାଇବାର କ୍ରମକୁ ଯେ ଜାଣନ୍ତି ।

ଜପହୋମପରାୟଣ ବ୍ରାହ୍ମଣମାନଙ୍କୁ ଓ ପ୍ରସନ୍ନରେ ଦତ୍ତ ରୁଚିର ଓ ବିଚିତ୍ର ଆସନମାନଙ୍କୁ ଦର୍ଶନ କରି ବିସ୍ମିତ ହେଲେ ।୪୭। ଦେବାୟତନମାନଙ୍କରେ ଦ୍ୱିଜମାନଙ୍କ କୃତ ପୂଜା ବିଲୋକନ କରି ସେ ନୃପସତ୍ତମ ଆପଣାକୁ ବ୍ରହ୍ମ-ଲୋକରେ ଉପସ୍ଥିତ ହେବାର ଜ୍ଞାନ କଲେ । ମହର୍ଷି କାଶ୍ୟପଙ୍କ ରକ୍ଷିତ ତପୋଧନୋଚିତ ବିବିଧ ଗୁଣଯୁକ୍ତ ଶୁଭ ଓ ଶ୍ରେଷ୍ଠ ଆଶ୍ରମକୁ ରାଜା ଯେତେ ବିଶେଷ ଦର୍ଶନ କଲେ ତାହାଙ୍କର ଦର୍ଶନ-ସ୍ପୃହା ତେତେ ଅଧିକ ବର୍ଦ୍ଧିତ ହେଲା । ଶତ୍ରୁ ବିନାଶକାରୀ ରାଜା ଦୁଷ୍ମନ୍ତ, ବ୍ରତଧାରୀ ଋଷି ଓ ତପସ୍ୱୀଙ୍କ ଦ୍ୱାରା ପରିବୃତ କାଶ୍ୟପଙ୍କର ଶୁଭ ଓ ନିର୍ଜ୍ଜନ ଅତି ମନୋହର ଆୟତନରେ ଅମାତ୍ୟ ଓ ପୁରୋହିତ ସହ ପ୍ରବିଷ୍ଟ ହେଲେ ।୫୦।

---

## ଅଧ୍ୟାୟ—୭୧

ବୈଶମ୍ପାୟନ କହିଲେ—ଅନନ୍ତର ମହାବାହୁ ଦୁଷ୍ମନ୍ତ ଅମାତ୍ୟ ଓ ପୁରୋହିତଙ୍କୁ ବିଦାୟ ଦେଇ ଏକାକୀ ଗମନ କରୁ କରୁ କଣ୍ୱ ଋଷିଙ୍କ ଆଶ୍ରମରେ ଉପନୀତ ହୋଇ ସେଠାରେ ଶଂସିତବ୍ରତ ସେହି ମହର୍ଷିଙ୍କର ଦର୍ଶନ ପାଇଲେ ନାହିଁ । ସେ ଋଷିଙ୍କୁ ନ ପାଇ ଓ ଆଶ୍ରମକୁ ଶୂନ୍ୟ ଦେଖି ଉଚ୍ଚୈଃସ୍ୱରରେ ଡାକିଲେ, "ଏଠାରେ କିଏ ଅଛି ?" ସେ ଶବ୍ଦରେ ଆଶ୍ରମ ପ୍ରତିନାଦିତ ହେଲା । ତହୁଁ ସେହି ଧ୍ୱନି ଶ୍ରବଣ କରି, ସାକ୍ଷାତ୍ ଲକ୍ଷ୍ମୀଙ୍କପ୍ରାୟ ରୂପବତୀ, ତାପସୀ-ବେଶ-ଧାରିଣୀ ଗୋଟିଏ କନ୍ୟା ସେହି ଆଶ୍ରମରୁ ବହିର୍ଗତ ହେଲେ । ସେହି ଅସିତେକ୍ଷଣା, ରାଜର୍ଷି ଦୁଷ୍ମନ୍ତଙ୍କର ଦର୍ଶନ ମାତ୍ର, ଅଭ୍ୟର୍ଥନା ପୂର୍ବକ ସ୍ୱାଗତ ପ୍ରଶ୍ନ କଲେ । ହେ ରାଜନ୍ ! ସେହି କନ୍ୟା ରାଜାଙ୍କୁ ଆସନ, ପାଦ୍ୟ, ଅର୍ଘ୍ୟଦ୍ୱାରା ଅର୍ଚ୍ଚନା କରି ଅନାମୟ ଓ କୁଶଳ ପ୍ରଶ୍ନ କଲେ । ୫ ।

ଅନନ୍ତର ସସ୍ମିତ ବଦନରେ କହିଲେ, "କି କାର୍ଯ୍ୟ ସମ୍ପନ୍ନ କରିବାକୁ ହେବ ବୋଲନ୍ତୁ । ୬ । ରାଜା ଯଥାବିଧାନରେ ପୂଜିତ ହୋଇ ସେହି ଅନବଦ୍ୟାଙ୍ଗୀ, ମଧୁରଭାଷିଣୀଙ୍କ ପ୍ରତି ଦୃଷ୍ଟିକ୍ଷେପ କରି କହିଲେ—ଭଦ୍ରେ ! ଆମ୍ଭେ ମହାଭାଗ କଣ୍ୱଋଷିଙ୍କୁ ଦର୍ଶନ କରିବାକୁ ଆସିଅଛୁ । ହେ ଶୋଭନେ ! ସେହି ଭଗବାନ୍ କେଉଁଠାକୁ ଗମନ କରିଅଛନ୍ତି, ବୋଲନ୍ତୁ ।

ଶକୁନ୍ତଳା ଉତ୍ତର କଲେ, ଭଗବାନ୍ ପିତା ଫଳାହରଣାର୍ଥ ଆଶ୍ରମରୁ ବହିର୍ଗମନ କରିଅଛନ୍ତି; ଆପଣ ମୁହୂର୍ତ୍ତେ ପ୍ରତୀକ୍ଷା କରିବା ହେଉନ୍ତୁ । ତାହାଙ୍କୁ ପ୍ରତ୍ୟାଗତ ଦେଖିବେ । ୯ ।

ବୈଶମ୍ପାୟନ କହିଲେ, ରାଜା ସେହି ଋଷିଙ୍କୁ ଦେଖିବାକୁ ନ ପାଇ ଶକୁନ୍ତଳାଙ୍କ ମୁଖରୁ ଉକ୍ତ ରୂପ ଶ୍ରବଣ କରି ଓ ଶକୁନ୍ତଳାଙ୍କୁ ବରାରୋହା, ଶ୍ରୀସମ୍ପନ୍ନା, ଚାରୁହାସିନୀ, ତପୋଦମ ପ୍ରଭାବରେ ଅସାଧାରଣ କାନ୍ତିମତୀ ଓ ରୂପଯୌବନସମ୍ପନ୍ନା ଦେଖି କହିଲେ, ହେ ସୁଶ୍ରୋଣି ! ତୁମ୍ଭେ କାହାର କନ୍ୟା ? ହେ ଶୋଭନେ ! ତୁମ୍ଭେ ଈଦୃଶ ରୂପଗୁଣସମ୍ପନ୍ନା ହୋଇ କି ନିମିତ୍ତ ବନକୁ ଆଗମନ କରିଅଛ ? କେଉଁଠାରୁ ଅବା ଆସିଅଛ ? ହେ ଶୁଭେ ! ତୁମ୍ଭେ ଦର୍ଶନମାତ୍ର ଆମ୍ଭର ମନ ହରଣ କଲ । ହେ ଶୋଭନେ ! ଆମ୍ଭେ ତୁମ୍ଭଙ୍କୁ ଜାଣିବାକୁ ଇଚ୍ଛା କରୁଅଛୁ, ତାହା ତୁମ୍ଭେ ଆମ୍ଭଙ୍କୁ ବୋଲ । ୧୩ । ଆଶ୍ରମରେ ରାଜା ଏପରି କହିବାରୁ ସେହି କନ୍ୟା ସହାସ୍ୟ ମୁଖରେ ମଧୁରାକ୍ଷରଯୁକ୍ତ-ବାକ୍ୟରେ କହିଲେ, ହେ ଦୁଷ୍ମନ୍ତ ! ଆମ୍ଭେ ତପସ୍ୱୀ, ଧୃତିଶୀଳ, ଧର୍ମଜ୍ଞ ମହାତ୍ମା କଣ୍ୱଙ୍କର ଦୁହିତା, ଏହା ସର୍ବସମ୍ମତ ।୧୫। ଦୁଷ୍ମନ୍ତ କହିଲେ, ଲୋକପୂଜିତ ମହାଭାଗ, ଭଗବାନ୍ କଣ୍ୱ ଉର୍ଦ୍ଧ୍ୱରେତା, ବରଞ୍ଚ ଧର୍ମ ସ୍ୱୟଂ ବୃତ୍ତରୁ ବିଚଳିତ ହେବେ, ତଥାପି ଶଂସିତ-ବ୍ରତ ସେହି ମହର୍ଷି ନିଜ ବୃତ୍ତରୁ ବିଚଳିତ ହେବାର ନୁହନ୍ତି । ଅତଏବ ହେ ବରବର୍ଣ୍ଣିନି ! ତୁମ୍ଭେ କି ପ୍ରକାର ତାହାଙ୍କର କନ୍ୟା ହେଲ ? ଏ ବିଷୟରେ ଆମ୍ଭର ଅତିଶୟ ସଂଶୟ ଜନ୍ମିଅଛି; ତୁମ୍ଭେ ସେହି ସଂଶୟ ଛେଦନ କର । ୧୭ ।

ଶକୁନ୍ତଳା ବୋଇଲେ—ହେ ରାଜନ୍ ! ଏ ଯେଉଁ ପ୍ରକାର ହୋଇଅଛି ଓ ଯେଉଁ ପ୍ରକାରେ ଶ୍ରବଣ କରିଅଛୁ ଓ ଆମ୍ଭେ ଯେପରି ମହର୍ଷିଙ୍କ ଦୁହିତା ହେଲୁ ତାହା ବୋଲୁଅଛୁ ଶୁଣିବା ହେଉନ୍ତୁ । ୧୮ । ଜଣେ ଋଷି ଆସି ଆମ୍ଭର ଜନ୍ମ-ବୃତ୍ତାନ୍ତ ତାତ କଣ୍ୱଙ୍କୁ ପ୍ରଶ୍ନ କରିଥିଲେ, ତହିଁରେ ସେ ଭଗବାନ୍ ଋଷିଙ୍କୁ ଯେପରି ବର୍ଣ୍ଣନ କରିଥିଲେ, ହେ ପାର୍ଥିବ ! ତାହା ଶ୍ରବଣ କରନ୍ତୁ । ୧୯ । କଣ୍ୱ କହିଲେ, ପୂର୍ବକାଳରେ ବିଶ୍ୱାମିତ୍ର ଋଷି ମହତୀ ତପସ୍ୟା କରି ଦେବରାଜ ଇନ୍ଦ୍ରଙ୍କୁ ଅତି ସନ୍ତାପରେ ତାପିତ କରିଥିଲେ । ୨୦ । ଇନ୍ଦ୍ର ବିଚାରିଲେ, "ଏହି ଋଷି ତପସ୍ୟାବଳରେ ଆମ୍ଭଙ୍କୁ ପଦଚ୍ୟୁତ କରିପାରନ୍ତି" ଏହା ଭାଳି ଇନ୍ଦ୍ର ଭୀତ ହୋଇ ମେନକା ନାମ୍ନୀ ଅପ୍‌ସରାଙ୍କୁ କହିଲେ, ମେନକେ ! ତୁମ୍ଭେ ଦିବ୍ୟ ଗୁଣସମୂହ ଦ୍ୱାରା ସବୁ ଅପ୍‌ସରାଙ୍କ ଅପେକ୍ଷା

ଅଧିକ ହୋଇଅଛ । ହେ କଲ୍ୟାଣି ! ତୁମ୍ଭେ ଆମ୍ଭର ଗୋଟିଏ ଶ୍ରେୟ କର୍ମ କର । ଆମ୍ଭେ ଯାହା କହୁଅଛୁ ଶ୍ରବଣ କର । ୨୨ । ମେନକେ ! ଏହି ଆଦିତ୍ୟ ତୁଲ୍ୟ ତେଜସ୍ୱୀ ମହାତପା ବିଶ୍ୱାମିତ୍ରଙ୍କର ଘୋର ତପସ୍ୟା ଆମ୍ଭର ହୃଦୟକୁ କମ୍ପିତ କରୁଅଛି, ସେହି ଶଂସିତାତ୍ମା ଦୁର୍ଦ୍ଧର୍ଷ ମହର୍ଷି କ୍ରମଶଃ ଉଗ୍ରତର ତପସ୍ୟାରେ ପ୍ରବୃତ୍ତ ହେଉଅଛନ୍ତି । ହେ ସୁମଧ୍ୟମେ ! ଆମ୍ଭେ ତୁମ୍ଭ ପ୍ରତି ଭାରାର୍ପଣ କରୁଅଛୁ । ତୁମ୍ଭେ ଯାଇ ତାହାଙ୍କୁ ପ୍ରଲୋଭିତ କର ଯେ ସେ ଆମ୍ଭଙ୍କୁ ପଦଭ୍ରଷ୍ଟ କରି ନ ପାରନ୍ତି । ତାହାଙ୍କ ତପସ୍ୟାର ବିଘ୍ନୋତ୍ପାଦନରେ ଯତ୍ନବତୀ ହୁଅ, ଯଦ୍ଦ୍ୱାରା ନିର୍ବିଘ୍ନରେ ଆମ୍ଭେ ନିଜ ସ୍ଥାନରେ ରହିବୁ । ୨୫ । ତୁମ୍ଭେ ରୂପ ଯୌବନର ମାଧୁର୍ଯ୍ୟରେ, ଚେଷ୍ଟାଦ୍ୱାରା, ମନ୍ଦ ହାସ୍ୟରେ ଓ ବଚନଦ୍ୱାରା ପ୍ରଲୋଭିତ କରି ତାହାଙ୍କୁ ତପସ୍ୟାରୁ ନିବୃତ୍ତ କର । ୨୬ ।

ମେନକା ବୋଇଲେ—ସେହି ଭଗବାନ୍ ବିଶ୍ୱାମିତ୍ର ମହାତେଜସ୍ୱୀ, ମହାତପସ୍ୱୀ ଓ ଅତିଶୟ କୋପନ ସ୍ୱଭାବ, ଆପଣ ତାହାଙ୍କୁ ଜାଣନ୍ତି । ଯେଉଁ ମହାତ୍ମାଙ୍କ ତେଜ, ତପସ୍ୟା ଓ କୋପରେ ଆପଣ ଦେବରାଜ ହୋଇ ଭୀତ ହେଉଅଛ, ଆମ୍ଭେ ଅବା କି ଛାର ? ତାହାଙ୍କୁ ଭୟ ନ କରିବୁଁ ? ସେ ମହାତ୍ମା ବଶିଷ୍ଠଙ୍କୁ ପ୍ରିୟତମ ପୁତ୍ରଗଣଙ୍କର ବିୟୋଗ ଦୁଃଖ ଅନୁଭୂତ କରାଇଅଛନ୍ତି, ଯେ ପୂର୍ବେ କ୍ଷତ୍ରିୟକୁଳରେ ଜନ୍ମଗ୍ରହଣ କରି ବଳକ୍ରମେ ବ୍ରାହ୍ମଣ ହୋଇଅଛନ୍ତି; ଯେ ସ୍ନାନାଦି କାର୍ଯ୍ୟ କରିବା ନିମିତ୍ତ ଗୋଟିଏ ବହୁଜଳା, ଦୁସ୍ତର ପୁଣ୍ୟତମା ନଦୀକୁ ପ୍ରବାହିତ କଲେ; ଯାହାକୁ ଲୋକେ କୌଶିକୀ * ବୋଲି କହନ୍ତି; ବ୍ୟାଧରୂପୀ ମତଙ୍ଗ † ନାମକ ଧର୍ମାତ୍ମା ରାଜର୍ଷି, ଦୁର୍ଭିକ୍ଷ ସମୟରେ ଉକ୍ତ ନଦୀ ସମୀପରେ ଯେଉଁ ମହାତ୍ମାଙ୍କର ପରିବାରଙ୍କର ଭରଣପୋଷଣ କରିଥିଲେ ଓ ଦୁର୍ଭିକ୍ଷ ଅତୀତ ହେବାରୁ ଯେଉଁ ପ୍ରଭୁ ପୁନର୍ବାର ଆଶ୍ରମକୁ ପ୍ରତ୍ୟାଗତ ହୋଇ ସେହି ନଦୀର ନାମ 'ପାରା' ବୋଲି ରଖିଲେ ଓ ଯେ ପ୍ରୀତମନା ହୋଇ ସ୍ୱୟଂ ସେହି ମତଙ୍ଗ ନାମକ ରାଜର୍ଷିଙ୍କର ଯାଜନ କାର୍ଯ୍ୟ କଲେ; ହେ ସୁରେଶ୍ୱର ! ଆପଣ ମଧ୍ୟ

---

* ବିଶ୍ୱାମିତ୍ରଙ୍କର ନାମ କୁଶିକ, ସେହି ହେତୁରୁ ଏହି ନଦୀର ନାମ କୌଶିକୀ ହୋଇଅଛି ।

† ତ୍ରିଶଙ୍କୁଙ୍କ ନାମ ମତଙ୍ଗ, ତାହାଙ୍କର ତିନିଗୋଟି ପାପ ଥିବାରୁ ତାହାଙ୍କର ନାମ ତ୍ରିଶଙ୍କୁ—(୧) ପିତାଙ୍କର କୋପ (୨) ବଶିଷ୍ଠଙ୍କର ଧେନୁବଧ (୩) ବୃଥା-ପ୍ରୋକ୍ଷିତ ଭକ୍ଷଣ ।

ଯାହାଙ୍କ ଭୟରେ ସୋମରସ ପାନ କରିବାକୁ ଗମନ କରନ୍ତି, ସେ କ୍ରୁଦ୍ଧ ହୋଇ ପ୍ରତିଜ୍ଞା ପୂର୍ବକ ଅନ୍ୟ ଗୋଟିଏ ନକ୍ଷତ୍ର ଲୋକ ନିର୍ମାଣ କଲେ; ଯେ ଗୁରୁ-ଶାପ-ଗ୍ରସ୍ତ ତ୍ରିଶଙ୍କୁଙ୍କୁ ଶରଣ ଦାନ କରିଥିଲେ; ହେ ପ୍ରଭୋ ! ଯାହାଙ୍କର ମହିମା ଏତେଦୂର, ଆମ୍ଭେ ତାହାଙ୍କୁ କିପରି ଭୟ ନ କରିବୁଁ ?

ଆପଣ ଏପରି ବର ଦେଉନ୍ତୁ ଯେ ସେ ରୋଷପରବଶ ହୋଇ ଯେପରି ଆମ୍ଭଙ୍କୁ ଦଗ୍ଧ ନ କରନ୍ତି । ୩୫ । ଯେ ତେଜୋବଳରେ ସମସ୍ତ ଲୋକ ଦଗ୍ଧ କରିପାରନ୍ତି; ପଦାଘାତରେ ଭୂମଣ୍ଡଳ ପରିଚାଳିତ କରି-ପାରନ୍ତି, ସୁମେରୁ ପର୍ବତକୁ ଉଠାଇ ନିକ୍ଷେପ କରିପାରନ୍ତି, ସେହି ପ୍ରଜ୍ୱଳିତ ହୁତାଶନ ସଦୃଶ ତପୋରାଶି-ଯୁକ୍ତ ଜିତେନ୍ଦ୍ରିୟ ମହର୍ଷିଙ୍କୁ ମୋ ପ୍ରାୟ ଅବଳା ଜାତି କିପରି ସ୍ପର୍ଶ କରିପାରେ ? ୩୭ । ହେ ସୁରଶ୍ରେଷ୍ଠ ! ଯାହାଙ୍କର ମୁଖ ପ୍ରଦୀପ୍ତ ହୁତାଶନ ସ୍ୱରୂପ, ଯାହାଙ୍କ ନୟନ ତାରା-ଚନ୍ଦ୍ର-ସୂର୍ଯ୍ୟ ସ୍ୱରୂପ, ଯାହାଙ୍କର ଜିହ୍ୱା କାଳ ସ୍ୱରୂପ, ତାହାଙ୍କୁ ମୋ ପ୍ରାୟ ବ୍ୟକ୍ତି କିପରି ସ୍ପର୍ଶ କରିପାରିବ ? ୩୮ । ଯମ, ସୋମ, ମହର୍ଷିବୃନ୍ଦ, ସାଧ୍ୟଗଣ, ବିଶ୍ୱଦେବାଗଣ ଓ ବାଲଖିଲ୍ୟାଦିଧ ଋଷିମାନେ ଯାହାଙ୍କ ପ୍ରଭାବରେ ଉଦ୍‌ବିଗ୍ନ ହୁଅନ୍ତି, ମୋ ସଦୃଶ ବ୍ୟକ୍ତି କିପରି ଉଦ୍‌ବିଗ୍ନ ନ ହେବ ? ୩୯ । ହେ ସୁରେନ୍ଦ୍ର ! ଆପଣ ଯେଉଁ ସ୍ଥଳେ ଆଜ୍ଞା ଦେଉଅଛନ୍ତି ଯେ ସେହି ଋଷିଙ୍କ ନିକଟକୁ ଗମନ କରିବାକୁ ହେବ, ସେ ସ୍ଥଳେ ଆମ୍ଭେ କିପରି ଗମନ ନ କରିବୁ ? କିନ୍ତୁ ହେ ଦେବରାଜ, ଆପଣ ମୋର ରକ୍ଷାର ଉପାୟ ଚିନ୍ତା କରନ୍ତୁ, ଯେପରିକି ମୁଁ ସୁରକ୍ଷିତା ହୋଇ ଆପଣଙ୍କ କାର୍ଯ୍ୟ ସାଧନାର୍ଥ ବିଚରଣ କରିପାରିବି । ୪୦ । ଆହୁରି ମୋର ପ୍ରାର୍ଥନା ଏହି ଯେ ଯେତେବେଳେ ମୁଁ ସେହି ଆଶ୍ରମରେ କ୍ରୀଡ଼ା କରୁଥିବି, ତେତେବେଳେ ବାୟୁ ମୋର ପରିଧେୟ ବସନ ହରଣ କରନ୍ତୁ; ଓ ଆପଣଙ୍କ ପ୍ରସାଦରୁ ମନ୍ମଥ ମୋର ସେହି କାର୍ଯ୍ୟରେ ସହାୟ ହେଉନ୍ତୁ । ପରନ୍ତୁ ଯେତେବେଳେ ମୁଁ ସେ ଋଷିଙ୍କୁ ପ୍ରଲୋଭିତ କରୁଥିବି, ତେତେବେଳେ ଯେପରି କି ବନ ମଧ୍ୟରୁ ସୁରଭି ବାୟୁ ସଞ୍ଚାରିତ ହେଉଥିବ । ମେନକାଙ୍କର ବାକ୍ୟ ଶ୍ରବଣ କରି ଇନ୍ଦ୍ର 'ତଥାସ୍ତୁ' ବୋଲି ବୋଲିବାରୁ ସେ ଅପ୍‌ସରା କୌଶିକଙ୍କ ଆଶ୍ରମକୁ ପ୍ରସ୍ଥାନ କଲେ । ୪୨ ।

## ଅଧ୍ୟାୟ—୭୨

କଣ୍ୱ କହିଲେ—ଏହା କହି ଦେବରାଜ ଶକ୍ର ସଦାଗତିଙ୍କୁ ଆଦେଶ ଦେଲେ ଓ ମେନକା ବାୟୁଙ୍କ ସହିତ ପ୍ରସ୍ଥାନ କଲେ । ଅନନ୍ତର ସେହି ଖ୍ୟାତ ବରାରୋହା ଅପ୍‌ସରା ବିଶ୍ୱାମିତ୍ରଙ୍କୁ ଆଶ୍ରମରେ ଦେଖିଲେ ଯେ ସେ ତପସ୍ୟାରେ ରତ ହୋଇଅଛନ୍ତି ଓ ତପସ୍ୟାଦ୍ୱାରା ତାହାଙ୍କର କଲ୍‌ମଷମାନ ପ୍ରଣଷ୍ଟ ହୋଇଅଛି । ୨ । ତଦନନ୍ତର ମେନକା ସେହି ଋଷିଙ୍କୁ ପ୍ରଣାମ କରି ତାହାଙ୍କ ସମକ୍ଷରେ କ୍ରୀଡ଼ା କଲେ; ବାୟୁ ମଧ୍ୟ ସେହି ସମୟରେ ତାହାଙ୍କର ସେହି ଶଶି-ସଦୃଶ ବସନକୁ ହରଣ କଲେ । ବରବର୍ଣ୍ଣିନୀ ମେନକା, ବାୟୁଙ୍କର ସେହି କାର୍ଯ୍ୟରେ ବିସ୍ମିତ ହେଲପ୍ରାୟ ଲଜ୍ଜାଭାବ ପ୍ରକାଶ କରି ବସନଗ୍ରହଣ ଛଳନାରେ ଅଗ୍ନିସମ ତେଜସ୍ୱୀ ମହର୍ଷି ବିଶ୍ୱାମିତ୍ରଙ୍କ ଦର୍ଶନ ପଥରେ ସତ୍ୱର ସମାଗତା ହେଲେ । ୪ । ମୁନିସତ୍ତମ ବିଶ୍ୱାମିତ୍ର, ସେହି ଅସାଧାରଣ ରୂପସମ୍ପନ୍ନା, ଅନିନ୍ଦିତା ସମ୍ଭ୍ରାନ୍ତା ଓ ବିଷମସ୍ଥା ମେନକାଙ୍କୁ ବିବସନା ଓ ବସ୍ତ୍ରଗ୍ରହଣାଭିଳାଷିଣୀ ଦେଖିଲେ ଓ ତାହାଙ୍କର ଅସାମାନ୍ୟ ରୂପ ଓ ଗୁଣ ନିରୀକ୍ଷଣ କରି ତତ୍‌କ୍ଷଣାତ୍ କାମଦେବଙ୍କର ବଶବର୍ତ୍ତୀ ହୋଇ ମେନକାଙ୍କର ସଂସର୍ଗ କରିବାକୁ ଅଭିଳାଷ କଲେ ଓ ତାହାଙ୍କୁ ଆହ୍ୱାନ କଲେ । ଅନିନ୍ଦିତା ମେନକା ମଧ୍ୟ ତହିଁରେ ସମ୍ମତା ହେଲେ । ୭ । ତହିଁରେ ମୁନି ଓ ମେନକା ଦୁହେଁ ସେହି ସ୍ଥଳରେ ବହୁକାଳ ବିହାର କଲେ ଓ ଯଥାଭିଲଷିତ କ୍ରୀଡ଼ାସୁଖରେ ବହୁକାଳକୁ ଏକ ଦିବସପ୍ରାୟ ଜ୍ଞାନ କଲେ । ୭ ।

ହିମାଳୟ ପର୍ବତର ରମଣୀୟ ନଦୀ ଉପକୂଳରେ ସେହି ମୁନି ମେନକାଙ୍କ ଗର୍ଭରୁ ଶକୁନ୍ତଳାଙ୍କୁ ଜନ୍ମ ଦେଲେ । ମେନକା ମାଲିନୀ ନଦୀ-ତୀରରେ ସେହି ଗର୍ଭ ପ୍ରସବ କରି ଫଳଭୋଗ ପୂର୍ବକ ତତ୍‌କ୍ଷଣାତ୍ ଇନ୍ଦ୍ର ସଭାକୁ ଗମନ କଲେ । ସିଂହ-ବ୍ୟାଘ୍ର-ସମାକୁଳ ସେହି ନିର୍ଜନ ବନରେ ଅଚିରପ୍ରସୂତ ସେ ଗର୍ଭକୁ ଶୟାନ ଦେଖି ପକ୍ଷୀମାନେ ତାହାକୁ ଚତୁର୍ଦ୍ଦିଗରେ ପରିବୃତ କରି ରହିଲେ ।୧୦। ଅରଣ୍ୟ ମଧ୍ୟରେ ମାଂସ-ଲୋଭୀ ପଶୁମାନେ ସେହି ବାଳାକୁ ହିଂସା ନ କରି ପାରିବେ ବୋଲି ପକ୍ଷୀମାନେ ତାହାକୁ ରକ୍ଷା କଲେ । ସେହି ସମୟରେ ଆମ୍ଭେ ସ୍ନାନାର୍ଥ ଯାଉଁ ଯାଉଁ ସେହି ଜନଶୂନ୍ୟ ଅରଣ୍ୟରେ ଶକୁନ୍ତଗଣ ପରିବେଷ୍ଟିତ ହୋଇ ଗୋଟିଏ କନ୍ୟା ଶୋଇଥିବାର

ଦେଖିଲୁ । ୧୨ । ତଦନନ୍ତର ତାହାକୁ ଆଶ୍ରମକୁ ଆଣି ନିଜର କନ୍ୟା ପରି ପ୍ରତିପାଳନ କଲୁ । ଜନ୍ମଦାତା, ପ୍ରାଣଦାତା ଓ ଯାହାର ଅନ୍ନଭୋଗ କରି-ବାକୁ ହୁଏ, ଏମାନେ ସମସ୍ତେ ପିତା ବୋଲି ଧର୍ମଶାସ୍ତ୍ରରେ କଥିତ ଅଛି । ନିର୍ଜନ ବନରେ ଶକୁନ୍ତମାନେ ଏହି କନ୍ୟାକୁ ପରିବୃତ କରି ରଖିଥିଲେ ବୋଲି ସେ କନ୍ୟାର ନାମ "ଶକୁନ୍ତଳା" ଦେଲୁ । ହେ ବିପ୍ର ! ଶକୁନ୍ତଳାଙ୍କୁ ଏହି ପ୍ରକାର ଆମ୍ଭର କନ୍ୟା ବୋଲି ଜାଣିବ ଓ ଶକୁନ୍ତଳା ଆମ୍ଭଙ୍କୁ ପିତା ବୋଲି ଜାଣନ୍ତୁ । ୧୬ ।

ଶକୁନ୍ତଳା ବୋଇଲେ, ହେ ମନୁଜାଧିପ ! ପିତା ସେହି ଆଗନ୍ତୁକ ଋଷିଙ୍କ ଦ୍ୱାରା ପରିପୃଷ୍ଟ ହୋଇ ଆମ୍ଭର ଜନ୍ମ ବୃତ୍ତାନ୍ତ ସେହି ମହର୍ଷିଙ୍କ ନିକଟରେ ବର୍ଣ୍ଣନ କରିଥିଲେ । ଅତଏବ ଆମ୍ଭଙ୍କୁ କଣ୍ୱଙ୍କ ଦୁହିତା ବୋଲି ଜାଣିବେ । ୧୭ । ଆମ୍ଭେ ଜନ୍ମଦାତା ପିତାଙ୍କୁ ନ ଜାଣି କଣ୍ୱଙ୍କୁ ନିଜ ପିତା ବୋଲି ଜ୍ଞାନ କରୁ । ହେ ରାଜନ୍ ! ଏହି ଘଟନାମାନ ଯେରୂପ ଆମ୍ଭେ ଶ୍ରବଣ କରିଥିଲୁଁ ତାହା ଆପଣଙ୍କ ନିକଟରେ ଯଥାବତ୍ ବର୍ଣ୍ଣନ କଲୁ ।୧୮।

---

## ଅଧ୍ୟାୟ - ୭୩

ଦୁଷ୍ମନ୍ତ ବୋଇଲେ—ହେ କଲ୍ୟାଣି ! ତୁମ୍ଭେ ଯେପରି କହିଲ ତହିଁରୁ ସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ ତୁମ୍ଭେ ରାଜକୁମାରୀ । ହେ ସୁଶ୍ରୋଣି ! ତୁମ୍ଭେ ଆମ୍ଭର ଭାର୍ଯ୍ୟା ହୁଅ; ତନ୍ନିମିତ୍ତ ଆମ୍ଭେ କି କରିବୁ ବୋଲ ।୧ । ଅଦ୍ୟ ତୁମ୍ଭ ନିମିତ୍ତ ସୁବର୍ଣ୍ଣ ହାର, ବସନ, ହିରଣ୍ମୟ କୁଣ୍ଡଳଦ୍ୱୟ, ବିବିଧ ପ୍ରକାର ନଗର ସଞ୍ଜାତ ଦ୍ରବ୍ୟ, ଶୁଭ୍ର ଓ ଶୋଭନ ମଣିରତ୍ନଦ୍ୱୟ ଓ ଅଜିନ ନିଷ୍କାଦି ସମସ୍ତ ଆହରଣ କରୁଅଛୁ । ଅଦ୍ୟ ସମସ୍ତ ରାଜ୍ୟ ତୁମ୍ଭର ହସ୍ତଗତ ହେଉ; ହେ ଶୋଭନେ ! ତୁମ୍ଭେ ଆମ୍ଭର ଭାର୍ଯ୍ୟା ହୁଅ । ହେ ସୁନ୍ଦରି ! ହେ ଭୀରୁ ! ଆମ୍ଭଙ୍କୁ ଗାନ୍ଧର୍ବ ବିବାହରେ ବରଣ କର । ହେ ରମ୍ଭୋରୁ ! ସର୍ବପ୍ରକାର ବିବାହ ମଧ୍ୟରେ ଗାନ୍ଧର୍ବ ବିବାହ ଶ୍ରେଷ୍ଠ ବୋଲି କଥିତ ଅଛି । ୪ ।

ଶକୁନ୍ତଳା କହିଲେ, ରାଜନ୍ ! ଆମ୍ଭର ପିତା ଫଳାହରଣାର୍ଥେ ଏହି ଆଶ୍ରମରୁ ଗମନ କରିଅଛନ୍ତି, ଆପଣ ମୁହୂର୍ତ୍ତେ ଅପେକ୍ଷା କରିବା ହେଉନ୍ତୁ ।

ସେ ଆସି ଆମ୍ଭଙ୍କୁ ଆପଣଙ୍କ ହସ୍ତରେ ସମ୍ପ୍ରଦାନ କରିବେ । ୫ । ଦୁଷ୍ମନ୍ତ କହିଲେ, ହେ ବରାରୋହେ ! ଆମ୍ଭର ଇଚ୍ଛା ଯେ ତୁମ୍ଭେ ସ୍ୱୟଂ ଆମ୍ଭଙ୍କୁ ବରଣ କର । ହେ ଅନିନ୍ଦିତେ ! ଆମ୍ଭେ ତୁମ୍ଭର ନିମିତ୍ତ ଏଠାରେ ଅଛୁ । ଆମ୍ଭର ହୃଦୟ ତୁମ୍ଭଠାରେ ଆସକ୍ତ ହୋଇଅଛି । ୬ । ଦେଖ, ମନୁଷ୍ୟ ଆପେ ଆପଣାର ବନ୍ଧୁ ! ଆପେ ଆପଣାର ଗତି ! ଅତଏବ ଧର୍ମାନୁସାରେ ଆପେ ଆପଣାକୁ ଦାନ କରିପାରେ । ୭ । ଧର୍ମାନୁସାରେ ଅଷ୍ଟପ୍ରକାର ବିବାହ କଥିତ ଅଛି, ଯଥା ବ୍ରାହ୍ମ ଦୈବ, ଆର୍ଷ, ପ୍ରାଜାପତ୍ୟ, ଆସୁର, ଗାନ୍ଧର୍ବ, ରାକ୍ଷସ ଓ ପୈଶାଚ । ୮ । ସ୍ୱାୟମ୍ଭୁବ ମନୁ ସେହି ଅଷ୍ଟପ୍ରକାର ବିବାହ ମଧ୍ୟରେ ଯେଉଁ ବିବାହ ଯାହା ପ୍ରତି ଧର୍ମଯୁକ୍ତ ତାହାର ଆନୁପୂର୍ବିକ ବିବରଣ ଲେଖିଅଛନ୍ତି । ପ୍ରଥମୋକ୍ତ ଚତୁଃପ୍ରକାର ବିବାହ ବ୍ରାହ୍ମଣ ପକ୍ଷରେ ପ୍ରଶସ୍ତ । ହେ ଅନିନ୍ଦିତେ ! ପ୍ରଥମାବଧି କ୍ରମିକ ଛଅପ୍ରକାର ବିବାହ, କ୍ଷତ୍ରିୟ ପକ୍ଷରେ ଧର୍ମ୍ୟ; ରାଜାମାନଙ୍କର ରାକ୍ଷସ ବିବାହ ମଧ୍ୟ ଧର୍ମସମ୍ମତ ଅଟେ । ବୈଶ୍ୟ ଓ ଶୂଦ୍ରଙ୍କ ସମ୍ବନ୍ଧରେ ଆସୁର ବିବାହ ଧର୍ମ୍ୟ ବୋଲି ଉକ୍ତ ଅଛି । ୧୦ । ପ୍ରଥମ ଗଣିତ ପଞ୍ଚପ୍ରକାର ବିବାହ ମଧ୍ୟରେ ବ୍ରାହ୍ମ, ଦୈବ ଓ ପ୍ରାଜାପତ୍ୟ ଏହି ତିନିପ୍ରକାର ବିବାହ ସତ୍‌ପ୍ରକାରେ ଧର୍ମ୍ୟ; ଆର୍ଷ ଓ ଆସୁର ବିବାହ କଦାପି କର୍ତ୍ତବ୍ୟ ନୁହେଁ । ୧୧ । ଧର୍ମର ଏହିପ୍ରକାର ଗତି । ଏହି ବିଧି ଅନୁସାରେ ବିବାହ କର୍ତ୍ତବ୍ୟ । ଅତଏବ ଗାନ୍ଧର୍ବ ଓ ରାକ୍ଷସ ବିବାହ ଯେ କ୍ଷତ୍ରିୟମାନଙ୍କର ଧର୍ମ୍ୟ ଏଥିରେ ଆଉ ଶଙ୍କା କରନା । ସେହି ଦୁଇ ପ୍ରକାର ବିବାହ ପୃଥକ୍ ରୂପେ ହେଉ ବା ମିଶ୍ରିତ ରୂପେ ହେଉ, ଆମ୍ଭମାନଙ୍କ ପକ୍ଷରେ ବିଧେୟ, ଏଥିରେ ସନ୍ଦେହ ନାହିଁ । ୧୩ । ହେ ବରବର୍ଣ୍ଣିନି ! ତୁମ୍ଭଙ୍କୁ ବିବାହ କରିବାକୁ ଆମ୍ଭେ ଅଭିଳାଷୀ ହୋଇଅଛୁ ଓ ତୁମ୍ଭର ମଧ୍ୟ ଇଚ୍ଛା ଅଛି; ଅତଏବ ଗାନ୍ଧର୍ବ ବିବାହ ଅନୁସାରେ ତୁମ୍ଭେ ଅବଶ୍ୟ ଆମ୍ଭର ଭାର୍ଯ୍ୟା ହୋଇପାର । ୧୪ ।

ଶକୁନ୍ତଳା ବୋଇଲେ, ହେ ପ୍ରଭୋ ! ପୌରବଶ୍ରେଷ୍ଠ ! ଯଦି ଏପରି ବିବାହ ଧର୍ମାନୁସାରେ ହୁଏ ଓ ଆତ୍ମ-ସମର୍ପଣ କରିବା ବିଷୟରେ ଆମ୍ଭର ପ୍ରଭୁତ୍ୱ ଥାଏ, ତେବେ ଆମ୍ଭର ଗୋଟିଏ ପଣ ଅଛି ଶ୍ରବଣ କରନ୍ତୁ । ୧୫ । ମହାରାଜ ! ଆମ୍ଭେ ଏହି ନିର୍ଜନରେ କହୁଅଛୁଁ; ଆପଣ ସତ୍ୟରୂପେ ପ୍ରତିଜ୍ଞା କରନ୍ତୁ ଯେ ଯେଉଁ ପୁତ୍ର ଆମ୍ଭ ଗର୍ଭରୁ ଜାତ ହେବ, ସେହି ପୁତ୍ର ଯୁବରାଜ ଓ ରାଜ୍ୟର ଉତ୍ତରାଧିକାରୀ ହେବ । ୧୬ । ହେ ଦୁଷ୍ମନ୍ତ ! ଆମ୍ଭେ ପ୍ରକୃତ ରୂପେ କହୁଅଛୁଁ, ଯେବେ ଏପରି ହୁଏ ତେବେ ତୁମ୍ଭ ସହିତ ଆମ୍ଭର ସଙ୍ଗମ ହେଉ । ୧୭ ।

ବୈଶମ୍ପାୟନ କହିଲେ, ରାଜା ଦୁଷ୍ମନ୍ତ ଆଉ କିଛି ବିଚାର ନ କରି "ଏବମସ୍ତୁ" ଏହିପରି ହେଉ ବୋଲି କହିଲେ; ଶକୁନ୍ତଳାଙ୍କ ବାକ୍ୟରେ ସ୍ୱୀକୃତ ହେଲେ ଓ କହିଲେ, ହେ ଶୁଚିସ୍ମିତେ ! ତୁମ୍ଭେ ଯେପରି ଉପଯୁକ୍ତ ମନେ କରିବ ସେହିପରି ହେବ । ତୁମ୍ଭଙ୍କୁ ରାଜଧାନୀକି ଘେନିଯିବୁଁ । ହେ ସୁଶ୍ରୋଣି ! ଆମ୍ଭେ ତୁମ୍ଭ ନିକଟରେ ସତ୍ୟ କଲୁଁ । ୧୮ । ରାଜା ଦୁଷ୍ମନ୍ତ ଅନିନ୍ଦିତଗାମିନୀ ଶକୁନ୍ତଳାଙ୍କୁ ଏ ରୂପ କହି ଯଥାବିଧାନରେ ପାଣିଗ୍ରହଣ ପୂର୍ବକ ତାହାଙ୍କ ସହିତ ସହବାସ କଲେ । ୧୯ । ଅନନ୍ତର ଆଗମନ କାଳରେ ଶକୁନ୍ତଳାଙ୍କୁ ପୁନଃ ପୁନଃ କହିଲେ, ହେ ଶୁଚିସ୍ମିତେ ! ଆମ୍ଭେ ରାଜଧାନୀକୁ ଗମନ କରି ତୁମ୍ଭ ନିମିତ୍ତ ଚତୁରଙ୍ଗିଣୀ ସେନା ପ୍ରେରଣ କରିବୁଁ ଓ ସେହି ବାହିନୀ ସହିତ ତୁମ୍ଭଙ୍କୁ ରାଜଧାନୀକୁ ଘେନିଯିବୁଁ । ଏହି-ରୂପେ ତାହାଙ୍କୁ ଆଶ୍ୱାସ ପ୍ରଦାନ ପୂର୍ବକ ବିଶ୍ୱସିତ କରି ସ୍ୱୀୟ ରାଜଧାନୀକୁ ପ୍ରତ୍ୟାଗମନ କଲେ । ୨୦ ।

ବୈଶମ୍ପାୟନ କହିଲେ, ହେ ଜନମେଜୟ ! ରାଜା ଶକୁନ୍ତଳାଙ୍କ-ଠାରେ ତଦ୍ରୂପ ପ୍ରତିଶ୍ରୁତ ହୋଇ ମନ ମଧ୍ୟରେ ଚିନ୍ତାକରି କଣ୍ୱଙ୍କ ଆଶ୍ରମକୁ ଗମନ କଲେ । ଅନନ୍ତର ତପସ୍ୱୀ ଭଗବାନ୍ କଣ୍ୱ ଆସିଲେ ଏ ସମସ୍ତ ଶ୍ରବଣ କରି କି କହିବେ ଏହି ବିଷୟ ଚିନ୍ତା କରୁ କରୁ ସ୍ୱପୁରକୁ ପ୍ରବେଶ କଲେ । ୨୨ । ଏଣେ ମୁହୂର୍ତ୍ତିକ ପରେ କଣ୍ୱର୍ଷି ଆଶ୍ରମକୁ ପ୍ରତ୍ୟାଗମନ କଲେ । କିନ୍ତୁ ଶକୁନ୍ତଳା ଲଜ୍ଜାବଶରୁ ପିତାଙ୍କ ସମୀପକୁ ଆସିଲେ ନାହିଁ । ଦିବ୍ୟଜ୍ଞାନସମ୍ପନ୍ନ ମହାତପା ଭଗବାନ୍ କଣ୍ୱ ଦିବ୍ୟଚକ୍ଷୁ-ଦ୍ୱାରା ସମୁଦାୟ ବୃତ୍ତାନ୍ତ ଅବଗତ ହୋଇ ପ୍ରୀତମନା ହେଲେ ଓ କହିଲେ, ହେ ଭଦ୍ରେ ! ଅଦ୍ୟ ତୁମ୍ଭେ ଆମ୍ଭଙ୍କୁ ଅପେକ୍ଷା ନ କରି, ନିର୍ଜ୍ଜନରେ ଯେଉଁ ପୁରୁଷ ସଂସର୍ଗ କରିଅଛ, ତହିଁରେ ଧର୍ମହାନି ହୋଇନାହିଁ । କ୍ଷତ୍ରିୟଙ୍କର ଗାନ୍ଧର୍ବ ବିବାହ ଶ୍ରେଷ୍ଠ ବୋଲି କଥିତ ଅଛି । ନିର୍ଜ୍ଜନ ସ୍ଥଳରେ ସକାମା କାମିନୀ ସହିତ ସକାମ ପୁରୁଷର ଯେଉଁ ମନ୍ତ୍ରରହିତ ସଂସର୍ଗ, ତାହାକୁ ଗାନ୍ଧର୍ବ ବିବାହ ବୋଲିଯାଏ । ୨୭ । ହେ ଶକୁନ୍ତଳେ ! ରାଜା ଦୁଷ୍ମନ୍ତ ଧର୍ମାତ୍ମା, ମହାତ୍ମା ଓ ପୁରୁଷଶ୍ରେଷ୍ଠ; ସେ ତୁମ୍ଭଙ୍କୁ ଭଜନା କରିଅଛନ୍ତି ଓ ତୁମ୍ଭେମଧ୍ୟ ତାହାଙ୍କୁ ପତିତ୍ୱରେ ବରଣ କରିଅଛ । ତୁମ୍ଭ ଗର୍ଭରେ ମହାତ୍ମା ମହାବଳ ଗୋଟିଏ ପୁତ୍ର ଉତ୍ପନ୍ନ ହେବ, ସେହି ତନୟ ଏହି ସସାଗରା ମେଦିନୀକୁ ଭୋଗ କରିବ ଓ ଚକ୍ରବର୍ତ୍ତୀ ହେବ । ବିପକ୍ଷଙ୍କ ପ୍ରତି ରଣଯାତ୍ରା କରିବା କାଳେ ସେହି ମହାତ୍ମାଙ୍କର ରଥଚକ୍ର ସତତ ଅପ୍ରତିହତ ହେବ । ୨୯ ।

ତଦନନ୍ତର ଶକୁନ୍ତଳା ଫଳ ଓ ଯଜ୍ଞ-କାଷ୍ଠର ଭାର ଯଥାସ୍ଥାନରେ ରଖିଦେଇ ମୁନିଙ୍କର ପାଦ ପ୍ରକ୍ଷାଳନ କରି ତାହାଙ୍କୁ ବିଶ୍ରାନ୍ତ ଓ ସୁଖାସୀନ ଦେଖି କହିଲେ, ତାତ ! ପୁରୁଷୋତ୍ତମ ରାଜା ଦୁଷ୍ମନ୍ତଙ୍କୁ ଆମ୍ଭେ ପତିଭାବରେ ବରଣ କରିଅଛୁଁ, ଏବେ ଆପଣ କୃପା କରି ସେହି ରାଜାଙ୍କ ପ୍ରତି ଓ ତାହାଙ୍କ ସଚିବଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ । କଣ୍ୱ କହିଲେ, ହେ ବରବର୍ଣ୍ଣିନି ! ଆମ୍ଭେ ତୁମ୍ଭ କର୍ମରେ ପ୍ରସନ୍ନ ଅଛୁଁ; ହେ ଶୁଭେ ! ତୁମ୍ଭେ ଆମ୍ଭ ନିକଟରୁ ଅଭିଳଷିତ ବର ଗ୍ରହଣ କର । ୩୨ ।

ବୈଶମ୍ପାୟନ କହିଲେ, ତଦନନ୍ତର ଶକୁନ୍ତଳା ଦୁଷ୍ମନ୍ତଙ୍କର ହିତାକାଂକ୍ଷିଣୀ ହୋଇ ପୌରବମାନଙ୍କ ଧର୍ମନିଷ୍ଠତା ଓ ରାଜ୍ୟରୁ ଅସ୍ଖଳନ ଏହି ବରଦ୍ୱୟ ପ୍ରାର୍ଥନା କଲେ । ୩୩ ।

---

## ଅଧ୍ୟାୟ—୭୪

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ରାଜା ଦୁଷ୍ମନ୍ତ ପ୍ରତିଶ୍ରୁତ ହୋଇ ରାଜଧାନୀକୁ ପ୍ରତିଗମନ କଲା ପରେ ସେହି ବାମୋରୁ ଶକୁନ୍ତଳା ଦୁଷ୍ମନ୍ତଙ୍କ ଔରସଜ ପ୍ରଦୀପ୍ତ ଅନଳସମ, ଅପରିମିତ ବୀର୍ଯ୍ୟବାନ୍, ଔଦାର୍ଯ୍ୟ ଗୁଣସମ୍ପନ୍ନ ଗୋଟିଏ କୁମାର ପ୍ରସବ କଲେ । ୨ । ପୁଣ୍ୟଶୀଳ କଣ୍ୱଋଷି ଯଥାବିଧାନରେ ସେହି ବର୍ଦ୍ଧମାନ ବାଳକର ଷଡ୍‌ବର୍ଷ ପୂର୍ଣ୍ଣ ହୁଅନ୍ତେ ଜାତକର୍ମାଦି ସଂସ୍କାର କଲେ । ୩ । ସେହି ବାଳକର ଦନ୍ତ ଶୁଭ୍ର ଓ ତୀକ୍ଷ୍ଣାଗ୍ର, କାୟ ସିଂହର କାୟପ୍ରାୟ ଦୃଢ଼, କର ଚକ୍ରବର୍ତ୍ତୀଚିହ୍ନରେ ଅଙ୍କିତ, ମୂର୍ଦ୍ଧା ବୃହତ୍, ବଳ ମହତ୍ ଓ ଆକୃତି ଦେବ କୁମାର ସଦୃଶ; ଏପରି ହୋଇ ସେହି ବାଳକ ଋଷିଙ୍କ ଆଶ୍ରମରେ ବର୍ଦ୍ଧିତ ହେଲେ । ୪ । ସେହି ବଳବାନ୍ ବାଳକ ଛଅବର୍ଷ ବୟସରେ ଆଶ୍ରମସ୍ଥ ସିଂହ, ବ୍ୟାଘ୍ର, ବରାହ ଓ ମହିଷ, ହସ୍ତୀ ପ୍ରଭୃତିଙ୍କୁ ଧରି ସମୀପବର୍ତ୍ତୀ ବୃକ୍ଷରେ ବନ୍ଧନ କରି ରଖନ୍ତି, ତନ୍ମଧ୍ୟରୁ କାହାରି କାହାରି ଉପରେ ଆରୋହଣ କରି ଓ କାହାକୁ ବା ଦମନ କରି କ୍ରୀଡ଼ାପୂର୍ବକ ଚତୁର୍ଦ୍ଦିଗରେ ଧାବମାନ ହେଉଥାନ୍ତି । କଣ୍ୱାଶ୍ରମବାସୀ ମୁନି-ମାନେ ବୋଇଲେ ଯେ ଏହି ବାଳକ ସର୍ବଜନ୍ତୁମାନଙ୍କୁ ଦମନ କରୁଅଛନ୍ତି,

ଅତଏବ ଏହାଙ୍କ ନାମ "ସର୍ବଦମନ" ହେଉ । ତଦବଧି ସେହି ବଳବାନ୍ ଓ ବିକ୍ରମଶାଳୀ ବାଳକ 'ସର୍ବଦମନ' ନାମ ପ୍ରାପ୍ତ ହେଲେ । ୭ ।

ତହିଁରେ ମହର୍ଷି କଣ୍ୱ ସେହି ବାଳକର ଅଲୌକସାମାନ୍ୟ ବଳ ଓ କାର୍ଯ୍ୟ ଦେଖି ଶକୁନ୍ତଳାଙ୍କୁ କହିଲେ, ଏହି ବାଳକର ଯୁବରାଜ ହେବାର ସମୟ ଉପସ୍ଥିତ ହୋଇଅଛି । ପରନ୍ତୁ ସେ ବାଳକର ତାଦୃଶ ସାମର୍ଥ୍ୟ ଜାଣିପାରି ଶିଷ୍ୟମାନଙ୍କୁ କହିଲେ, ତୁମ୍ଭେମାନେ ଏହି ଆଶ୍ରମରୁ ସପୁତ୍ରା ଶକୁନ୍ତଳାଙ୍କୁ ସର୍ବଲକ୍ଷଣସମ୍ପନ୍ନ ସ୍ୱାମୀଗୃହକୁ ନେଇଯାଅ । ସ୍ତ୍ରୀମାନଙ୍କର ବହୁକାଳ ପିତୃଗୃହରେ ବାସ କରିବା ବିଧେୟ ନୁହେଁ । ତାହାହେଲେ କୀର୍ତ୍ତି, ଚରିତ୍ର ଓ ଧର୍ମ ନଷ୍ଟ ହୋଇପାରେ । ଅତଏବ ଏହାଙ୍କୁ ସ୍ୱାମୀଗୃହକୁ ନେଇଯାଅ, ଆଉ ବିଳମ୍ବ କରନା । ୧୦ । ମହା ତେଜସ୍ୱୀ ଶିଷ୍ୟମାନେ କଣ୍ୱ ଋଷିଙ୍କ ବଚନାନୁସାରେ ସପୁତ୍ରା ଶକୁନ୍ତଳାଙ୍କୁ ଅଗ୍ରେ କରି ହସ୍ତିନା-ପୁରକୁ ଗମନ କଲେ । ୧୧ । ସୁ ଭ୍ରୂ ଶକୁନ୍ତଳା ମଧ୍ୟ ଆପଣାର ଅମର ସଦୃଶ ପ୍ରଭାଶାଳୀ ଓ କମଳଲୋଚନ ପୁତ୍ରକୁ ସଙ୍ଗରେ ନେଇ ଦୁଷ୍ମନ୍ତ ବିଦିତ ସେହି ବନରୁ ଆଗମନ କଲେ । ୧୨ । ପରେ ସେମାନେ ସମସ୍ତେ ତରୁଣ ସୂର୍ଯ୍ୟତୁଲ୍ୟ ତେଜସ୍ୱୀ ସେହି ବାଳକକୁ ସଙ୍ଗରେ ନେଇ ରାଜଦ୍ୱାରରେ ଉପନୀତ ହେଲେ । ଦ୍ୱାରୀ ରାଜାଙ୍କୁ ଜଣାଇବା ପରେ ସେମାନେ ରାଜଭବନରେ ପ୍ରବିଷ୍ଟ ହେଲେ । ଶିଷ୍ୟମାନେ ସପୁତ୍ରା ଶକୁନ୍ତଳାଙ୍କୁ ସେଠାରେ ଛାଡ଼ି ଆଶ୍ରମକୁ ପ୍ରତ୍ୟାଗତ ହେଲେ ।

ଶକୁନ୍ତଳା ରାଜାଙ୍କୁ ଯଥାବିଧି ସତ୍କାର କରି କୋଇଲେ, ହେ ରାଜନ୍ ! ଏ ପୁତ୍ରକୁ ଆପଣ ଆମ୍ଭଠାରେ ଉତ୍ପନ୍ନ କରିଅଛ, ଏହି ସୁରୋପମ ପୁତ୍ରକୁ ଆପଣ ଯୌବରାଜ୍ୟରେ ଅଭିଷିକ୍ତ କରନ୍ତୁ । ୧୫ । ହେ ପୁରୁଷୋତ୍ତମ ! ଆପଣ ଯେପରି ପ୍ରତିଜ୍ଞା କରିଥିଲେ, ତଦ୍ରୂପ ଆଚରଣ କରନ୍ତୁ । ହେ ମହାଭାଗ ! କଣ୍ୱ ଋଷିଙ୍କ ଆଶ୍ରମରେ ଆମ୍ଭ ସହିତ ସଙ୍ଗମ-ବେଳେ ଯେଉଁ ପ୍ରତିଜ୍ଞା କରିଥିଲେ, ତାହା ସ୍ମରଣ କରନ୍ତୁ । ୧୬ । ରାଜା ଶକୁନ୍ତଳାଙ୍କ ସେହି ବାକ୍ୟ ଶ୍ରବଣ କରି କହିଲେ, ମୋର କିଛି ସ୍ମରଣ ହେଉନାହିଁ ! ରେ ଦୁଷ୍ଟ ତାପସୀ ! ତୁମ୍ଭେ କାହାର ଭାର୍ଯ୍ୟା ? ତୁମ୍ଭ ସହିତ ଆମ୍ଭର ଧର୍ମକାମାର୍ଥ ଘଟିତ କୌଣସି ସମ୍ବନ୍ଧ ନାହିଁ; ତୁମ୍ଭେ ଯାଅ ବା ଥାଅ ଯାହା ତୁମ୍ଭର ଇଚ୍ଛା ତାହା କର । ୧୮ ।

ଦୁଷ୍ମନ୍ତ ଏହିରୂପ କହିବାରୁ ତପସ୍ୱିନୀ ବରବର୍ଣ୍ଣିନୀ ଶକୁନ୍ତଳା ଲଜ୍ଜାରେ ଅଭିଭୂତା ଓ ଅଚେତନ ପ୍ରାୟ ହୋଇ ଦୁଃଖରେ ସ୍ଥୂଣା * ପ୍ରାୟ କିୟତ୍‌କାଳ ନିସ୍ତବ୍‌ଧ ହୋଇ ରହିଲେ । ଅଭିମାନ ଓ ଅମର୍ଷବଶରୁ ତାହାଙ୍କର ନୟନଯୁଗଳ ରକ୍ତବର୍ଣ୍ଣ ହେଲା, ଓଷ୍ଠପୁଟ ସ୍ଫୁରିତ ହେଲା ; ତିର୍ଯ୍ୟକ ଭାବରେ ରାଜାଙ୍କ ପ୍ରତି ଦୃଷ୍ଟିପାତ କରି ଦଗ୍‌ଧ କଲା ପ୍ରାୟ ତାହାଙ୍କ ପ୍ରତି କଟାକ୍ଷପାତ କଲେ । ୨୦ । ସେ ରୋଷପରବଶା ହୋଇ ସୁଦ୍ଧା ଆପଣାର ଆକାର ସଂଗୋପନ କରି ତପସ୍ୟାସଞ୍ଚିତ ତେଜ ଧାରଣ କଲେ । ଏହିରୂପେ କ୍ଷଣକାଳ ଚିନ୍ତା କରି ଦୁଃଖ ଓ ଅମର୍ଷଯୁକ୍ତ ହୋଇ କ୍ରୋଧ-ଭରରେ ଭର୍ତ୍ତାଙ୍କ ପ୍ରତି ଦୃଷ୍ଟିପାତ କରି ବୋଇଲେ, ମହାରାଜ ! ଆପଣ ସମୁଦାୟ ବୃତ୍ତାନ୍ତ ଅବଗତ ଥାଇ ସୁଦ୍ଧା 'ଜାଣେନା' ବୋଲି ସାମାନ୍ୟ ଲୋକଙ୍କ ପ୍ରାୟ ନିଃଶଙ୍କ ଚିତ୍ତରେ କିପାଇଁ ଉତ୍ତର ଦାନ କରୁଅଛନ୍ତି ? ୨୩ । ହେ ଦେବ ! ଏ ବିଷୟ ସତ୍ୟ କି ମିଥ୍ୟା ତାହା ଆପଣଙ୍କର ଅନ୍ତଃକରଣ ଜାଣୁଅଛି । ଅତଏବ ଆତ୍ମାକୁ ସାକ୍ଷୀକରି ଯାହା କଲ୍ୟାଣକର ତାହା ବୋଲିବା ହେଉନ୍ତୁ; ଆତ୍ମାକୁ ଅବମାନନା କରନ୍ତୁ ନାହିଁ । ଯେଉଁ ବ୍ୟକ୍ତି ଅନ୍ତଃକରଣରେ ଏକ ପ୍ରକାର ଜାଣି ଅନ୍ୟ ପ୍ରକାର ବ୍ୟକ୍ତ କରେ, ସେହି ଆତ୍ମାପହାରୀ ଚୌର କି ପାପ ନ କରେ ? †

ଆପଣ ମନେ କରୁଅଛନ୍ତି, ଆମ୍ଭେ ଏକାକୀ ବଡ଼; ଯାହା ଇଚ୍ଛା ତାହା କରିପାରୁଁ । କିନ୍ତୁ ହୃଦୟରେ ଯେଉଁ ପୁରାଣ ପୁରୁଷ ବାସ କରୁଅଛନ୍ତି, ତାହାଙ୍କୁ କି ଜାଣନ୍ତି ନାହିଁ ? ଯେ ପାପକର୍ମମାନଙ୍କୁ ଜାଣିପାରନ୍ତି ଓ ଯାହାଙ୍କ ନିକଟରେ ଆପଣ ବୃଜିନ ‡ କରୁଅଛନ୍ତି । ୨୬ । ଲୋକେ ପାପ କର୍ମ କରି ମନରେ କରନ୍ତି ଯେ ତାହା କେହି ଜାଣେ ନାହିଁ, କିନ୍ତୁ ଦେବତାମାନେ ଓ ଏହି ପରମ ପୁରୁଷ ସମସ୍ତ ଜାଣନ୍ତି । ୨୭ ।

ଆଦିତ୍ୟ, ଚନ୍ଦ୍ର, ଅନଳ, ସ୍ୱର୍ଗ, ଭୂମି, ଜଳ, ହୃଦୟ, ଯମ, ଦିବା ଓ ରାତି ଉଭୟ ସନ୍ଧ୍ୟା ଓ ଧର୍ମ ଏମାନେ ନରମାନଙ୍କର ଚରିତ ଜାଣନ୍ତି । ୨୮ । ହୃଦୟସ୍ଥିତ କର୍ମ ସାକ୍ଷୀ, କ୍ଷେତ୍ରଜ୍ଞ ପୁରୁଷ ଯାହାଙ୍କ ପ୍ରତି ତୁଷ୍ଟ ହୁଅନ୍ତି, ସୂର୍ଯ୍ୟଙ୍କ ପୁତ୍ର ଯମ ତାହାଙ୍କର ସମୁଦାୟ ଦୁଷ୍କୃତ ପରିତ୍ୟାଗ କରନ୍ତି । ୨୯ । ଯେଉଁ

---

* ଘରର ଖୁଣ୍ଟ ।

† ଅର୍ଥାତ୍ ସେ ପାପଠାରୁ ଅନ୍ୟ ପାପମାନ ଗଣନୀୟ ନୁହଇ ।

‡ ବୃଜିନ—ପାପ

ଦୁରାତ୍ମା ପୁରୁଷ ପ୍ରତି ସେହି ଷେତ୍ରଜ୍ଞ ପୁରୁଷ ତୁଷ୍ଟ ହୁଅନ୍ତି ନାହିଁ ସେହି ପାପ-କର୍ମା ଦୁଷ୍କୃତକୁ ଯମ ବିଶେଷ ପୀଡ଼ା ଦିଅନ୍ତି । ୩୦ । ଯେଉଁ ବ୍ୟକ୍ତି ସ୍ୱୟଂ ଆତ୍ମାକୁ ଅବଜ୍ଞା କରି ଅନ୍ୟ ପ୍ରକାର ପ୍ରତିପନ୍ନ କରେ, ଦେବତାମାନେ ତାହାର ଶ୍ରେୟ କରନ୍ତି ନାହିଁ କି ତାହାର ଆତ୍ମା ଶ୍ରେୟପ୍ରାପ୍ତିର କାରଣ ହୁଏ ନାହିଁ । ୩୧ । ଆମ୍ଭେ ପତିବ୍ରତା ସ୍ୱୟଂ ଉପସ୍ଥିତ ହୋଇଅଛୁ ବୋଲି ଆପଣ ଆମ୍ଭଙ୍କୁ ଅବଜ୍ଞା କରିବେ ନାହିଁ । ଆମ୍ଭେ ଆପଣଙ୍କର ପୂଜ୍ୟାର୍ହା ଭାର୍ଯ୍ୟା; ସ୍ୱୟଂ ଉପସ୍ଥିତ ହୋଇଅଛୁ, ଆମ୍ଭଙ୍କୁ ଆପଣ ସମାଦର କରୁନାହାନ୍ତି । ୩୨ । ଏହି ସଭା ମଧ୍ୟରେ ଇତର ଲୋକଙ୍କପ୍ରାୟ ଆପଣ କି କାରଣ ଆମ୍ଭଙ୍କୁ ଉପେକ୍ଷା କରୁଅଛନ୍ତି ? ଆମ୍ଭେ କି ଶୂନ୍ୟରେ ରୋଦନ କରୁଅଛୁ ? ଆପଣ କି ଆମ୍ଭ କଥା ଶୁଣୁ ନାହାନ୍ତି ? ୩୩ ।

ହେ ଦୁଷ୍ମନ୍ତ ! ଆମ୍ଭେ ପୁନଃ ପୁନଃ ଯାଚ୍ଞା କରୁଅଛୁ, ଯଦି ତୁମ୍ଭେ ଆମ୍ଭ ବଚନ ପ୍ରତିପାଳନ ନ କର, ତେବେ ଅଦ୍ୟ ତୁମ୍ଭର ମସ୍ତକ ଶତଧା ହୋଇ ସ୍ଫୁଟିତ ହେବ । ୩୪ । ପ୍ରାଚୀନ କବିମାନେ ବୋଲନ୍ତି ଯେ ଭର୍ତ୍ତା ସ୍ୱୟଂ ଗର୍ଭରୂପରେ ଭାର୍ଯ୍ୟାଠାରେ ପ୍ରବେଶ କରି ପୁତ୍ରରୂପରେ ଜାତ ହୁଏ; ଏହି ହେତୁରୁ ଭାର୍ଯ୍ୟାର ନାମ ଜାୟା ହୋଇ-ଅଛି । ଜ୍ଞାନବାନ୍ ବ୍ୟକ୍ତିଙ୍କର ପୁତ୍ର ଜନ୍ମିଲେ ସେହି ପୁତ୍ର ସନ୍ତତିଦ୍ୱାରା ପରଲୋକ ପ୍ରାପ୍ତ ପିତାମହମାନଙ୍କୁ ଉଦ୍ଧାର କରେ । ୩୬ । ଭଗବାନ୍ ସ୍ୱୟଂମ୍ଭୂ ସ୍ୱୟଂ କହିଅଛନ୍ତି 'ପୁ' ନାମକ ନରକରୁ ଉଦ୍ଧାର କରେ ବୋଲି ତାହାର ନାମ ପୁତ୍ର ହୁଏ । ୩୭ । ପୁତ୍ରଦ୍ୱାରା ସ୍ୱର୍ଗ ପ୍ରାପ୍ତି ହୁଅଇ, ପୌତ୍ର-ଦ୍ୱାରା ସେହି ସ୍ୱର୍ଗ ଚିରସ୍ଥାୟୀ ହୁଅଇ ଓ ପ୍ରପୌତ୍ରଦ୍ୱାରା ପିତାମହମାନେ ଆନନ୍ଦିତ ହୁଅନ୍ତି । ୩୮ । ଯେ ଗୃହକାର୍ଯ୍ୟରେ ଦକ୍ଷା, ସେ ଭାର୍ଯ୍ୟା; ଯେ ପତିପ୍ରାଣା ସେ ଭାର୍ଯ୍ୟା; ଯେ ପତିବ୍ରତା ସେ ଭାର୍ଯ୍ୟା; ମନୁଷ୍ୟର ଭାର୍ଯ୍ୟା ଅର୍ଦ୍ଧାଙ୍ଗ; ଭାର୍ଯ୍ୟା ଶ୍ରେଷ୍ଠତମ ସଖା; ଭାର୍ଯ୍ୟା ଏକା ଧର୍ମ ଅର୍ଥ କାମ ଏହି ତ୍ରିବର୍ଗର ମୂଳ ଓ ଭାର୍ଯ୍ୟା ସଂସାରରୁ ନିସ୍ତାର ପାଇବାର ନିଦାନ । ୪୦ । ଭାର୍ଯ୍ୟାବନ୍ତ ବ୍ୟକ୍ତି କ୍ରିୟା କଳାପ କରିବାକୁ ଅଧିକାରୀ । ଯାହାର ଭାର୍ଯ୍ୟା ଅଛି, ସେହି ଗୃହସ୍ଥ; ଯାହାର ଭାର୍ଯ୍ୟା ଅଛି, ସେହି ଆମୋଦ ପ୍ରମୋଦରେ କାଳ ହରଣ କରେ । ଯାହାର ଭାର୍ଯ୍ୟା ଅଛି, ସେହି ଶ୍ରୀମାନ୍ । ୪୧ । ପ୍ରିୟମ୍ୱଦା ଭାର୍ଯ୍ୟା ନିର୍ଜ୍ଜନ ସ୍ଥାନରେ ସତ୍‌ପରାମର୍ଶଦାୟିନୀ ସଖୀ ସ୍ୱରୂପ; ଧର୍ମକର୍ମରେ ହିତୈଷୀ ପିତାଙ୍କ ସଦୃଶ; ପୀଡ଼ିତାବସ୍ଥାରେ ମାତାଙ୍କ ସଦୃଶ ସ୍ନେହବତୀ; ଦୁର୍ଗମ ସଂସାର ମଧ୍ୟରେ ସ୍ୱାମୀଙ୍କର ବିଶ୍ରାମ ସ୍ଥଳ, ଯାହାଙ୍କର

ଦାସ ଥାଏ, ତାହାଙ୍କୁ ସମସ୍ତେ ବିଶ୍ୱାସ କରନ୍ତି; ଅତଏବ ଭାର୍ଯ୍ୟା ମନୁଷ୍ୟଙ୍କର ପରମାଗତି । ୪୩ । ପରଲୋକରେ ବିଷମ ସଙ୍କଟାପନ୍ନ ପତିଙ୍କ ଉଦ୍ଧାର ନିମିତ୍ତ; ପତିବ୍ରତା ଭାର୍ଯ୍ୟା କେବଳ ସହଗାମିନୀ ହୁଅଇ । ୪୪ । ପତ୍ନୀ ଯଦି ଅଗ୍ରେ ପରଲୋକ ଗମନ କରେ, ସେଠାରେ ସେ ପତିଙ୍କ ନିମିତ୍ତ ପ୍ରତୀକ୍ଷା କରିଥାଏ; ଯଦି ଅଗ୍ରେ ପତିଙ୍କର ଦେହତ୍ୟାଗ ହୁଅଇ, ତେବେ ସାଧ୍ୱୀ ଭାର୍ଯ୍ୟା ତତ୍‌କ୍ଷଣାତ୍ ତାହାଙ୍କର ଅନୁଗମନ କରେ । ୪୫ । ହେ ରାଜନ୍ ! ଯେ ହେତୁରୁ ଭର୍ତ୍ତା ଇହଲୋକ ଓ ପରଲୋକ ଉଭୟତ୍ର ଭାର୍ଯ୍ୟାଙ୍କୁ ପ୍ରାପ୍ତ ହୁଅନ୍ତି ସେହି ହେତୁରୁ ପାଣିଗ୍ରହଣ କର୍ମ ବିହିତ ହୋଇଅଛି । ୪୬ ।

ପଣ୍ଡିତମାନେ ବୋଲନ୍ତି ପ୍ରାଣୀ ଆପଣାଠାରୁ ଆପେ ପୁତ୍ର ରୂପରେ ଜନ୍ମ ହୁଅଇ, ଅତଏବ ପୁତ୍ର-ପ୍ରସବିନୀ ଭାର୍ଯ୍ୟାଙ୍କୁ ସ୍ୱୀୟ ମାତାଙ୍କ ପ୍ରାୟ ଜ୍ଞାନ କରିବ । ପୁଣ୍ୟବାନ୍ ବ୍ୟକ୍ତି ସ୍ୱର୍ଗପ୍ରାପ୍ତି ହେଲେ ଯେପରି ଆହ୍ଲାଦିତ ହୁଅନ୍ତି; ଆଦର୍ଶରେ ଦୃଷ୍ଟ ଆପଣାର ପ୍ରତିବିମ୍ବ ପ୍ରାୟ ଭାର୍ଯ୍ୟାର ଗର୍ଭଜାତ ପୁତ୍ରଙ୍କୁ ଦେଖି ଜନକ ସେହିରୂପ ଆନନ୍ଦିତ ହୁଅନ୍ତି । ୪୮ । ଧର୍ମାର୍ତ୍ତ ବ୍ୟକ୍ତି ଶୀତଳ ସଲିଳରେ ଯେପରି ଆହ୍ଲାଦିତ ହୁଅନ୍ତି, ମାନବବୃନ୍ଦ ମନୋଦୁଃଖରେ ଦହ୍ୟମାନ ଓ ବ୍ୟାଧିରେ ଆତୁର ହେଲେ ଭାର୍ଯ୍ୟାହେତୁ ତଦ୍ରୂପ ସନ୍ତୋଷ ପ୍ରାପ୍ତ ହୁଅନ୍ତି । ୪୯ । ପତି ଅତିଶୟ କୋପାବିଷ୍ଟ ହେଲେହେଁ ପତ୍ନୀଙ୍କର ଅପ୍ରିୟ କର୍ମ କରିବା କଦାପି ବିହିତ ନୁହଇ; କାମାକ ରତି, ପ୍ରୀତି ଓ ଧର୍ମ ସମୁଦାୟ ଭାର୍ଯ୍ୟାଙ୍କର ଅଧୀନ । ୫୦ । ରମଣୀମାନେ ଆତ୍ମାର ସନାତନ ପବିତ୍ର ଜନ୍ମକ୍ଷେତ୍ର; ଋଷିମାନଙ୍କର କି ଶକ୍ତି ଯେ ସ୍ତ୍ରୀ ବ୍ୟତିରେକେ ସେମାନେ ପ୍ରଜାସୃଷ୍ଟି କରିବାକୁ ସମର୍ଥ ହେବେ ? ୫୧ । ପୁତ୍ର ଯଦ୍ୟପି ଧରଣୀ ଧୂଳିରେ ଧୂସରିତ ହୋଇ ନିକଟକୁ ଆସି ପିତାଙ୍କ ଅଙ୍ଗକୁ ଆଲିଙ୍ଗନ କରେ, ତେବେ ତଦପେକ୍ଷା ଅଧିକ ଆଉ କି ସୁଖ ଅଛି ?

ହେ ରାଜନ୍ ! ଆପଣଙ୍କର ଏହି ପୁତ୍ର ସ୍ୱୟଂ ଉପସ୍ଥିତ ହୋଇ ସୋତ୍ସୁକ ନୟନରେ କଟାକ୍ଷଦ୍ୱାରା ଆପଣଙ୍କୁ ଦର୍ଶନ କରୁଅଛି, ତଥାପି ଆପଣ କି ନିମିତ୍ତ ଏହାକୁ ଅବଜ୍ଞା କରୁଅଛନ୍ତି ? ୫୩ । ଦେଖିବା ହେଉନ୍ତୁ, ପିପୀଲିକାମାନେ ସୁଦ୍ଧା ଧର୍ମାଧର୍ମଜ୍ଞାନଶୂନ୍ୟ ହୋଇ ପ୍ରସୂତ ଅଣ୍ଡାମାନଙ୍କୁ ରକ୍ଷାକରନ୍ତି; ନଷ୍ଟ କରନ୍ତି ନାହିଁ; ଆପଣ ଧର୍ମଜ୍ଞ ହୋଇ କି ନିମିତ୍ତ ନିଜ ପୁତ୍ରଙ୍କର ଭରଣପୋଷଣ ନ କରିବା ହେବେ ? ଶିଶୁ ସନ୍ତାନ ଆଲିଙ୍ଗନ କଲେ ତାହାର ସ୍ପର୍ଶ ଯେପରି ସୁଖକର ବୋଧ ହୁଅଇ, ସୁକୋମଳ ବସନ, ଅଥବା ଜଳ କି କାମିନୀ ପ୍ରଭୃତି କାହାର ସ୍ପର୍ଶ ତାଦୃଶ ପ୍ରୀତିପଦ

ହୁଅଇ ନାହିଁ । ୫୫ । ଯେପରି ଦ୍ୱିପଦମାନଙ୍କ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ, ଚତୁଷ୍ପଦଙ୍କ ମଧ୍ୟରେ ଗୌ ଶ୍ରେଷ୍ଠ, ଗୌରବାନ୍ ବ୍ୟକ୍ତିଙ୍କ ମଧ୍ୟରେ ଗୁରୁ ଶ୍ରେଷ୍ଠ, ସେହିପରି ସୁଖସ୍ପର୍ଶ ମଧ୍ୟରେ ସୁତ-ସ୍ପର୍ଶ ଶ୍ରେଷ୍ଠ ଅଟଇ । ୫୬ । ଏହି ପ୍ରିୟ-ଦର୍ଶନ ପୁତ୍ର ଆପଣଙ୍କୁ ଆଲିଙ୍ଗନ କରି ସ୍ପର୍ଶ କରୁ, ସୁତସ୍ପର୍ଶ ଅପେକ୍ଷା ସୁଖକର ସ୍ପର୍ଶ ପଦାର୍ଥ ପୃଥିବୀରେ ଆଉ ନାହିଁ । ୫୭ ।

ହେ ଅରିନ୍ଦମ ! ରାଜେନ୍ଦ୍ର ! ତିନବର୍ଷ ପୂର୍ଣ୍ଣ ହୁଅନ୍ତେ ଆମ୍ଭେ ଆପଣଙ୍କର ଶୋକ-ବିନାଶକ ଏହି ପୁତ୍ରକୁ ପ୍ରସବ କଲୁଁ । ୫୮ । ହେ ପୌରବ ! ପୂର୍ବେ ସୂତିକା ଗୃହରେ ଆମ୍ଭ ପ୍ରତି ଆକାଶବାଣୀ ହୋଇଥିଲା, "ଏହି ପୁତ୍ର ଶତସଂଖ୍ୟକ ଅଶ୍ୱମେଧ ଯଜ୍ଞ କରିବ" । ୫୯ । ମାନବମାନେ ଗ୍ରାମାନ୍ତର ଗମନ କରି ପ୍ରତ୍ୟାଗମନ ପୂର୍ବକ ପୁତ୍ରକୁ କ୍ରୋଡ଼ରେ ଘେନି, ମସ୍ତକ ଆଘ୍ରାଣ କରି ମହାନନ୍ଦ ଅନୁଭବ କରନ୍ତି । ୬୦ । ବେଦ ମଧ୍ୟରେ ସୁଦ୍ଧା ଏହି ଅଭିପ୍ରାୟରେ ମନ୍ତ୍ରମାନ ଅଛି । ଦ୍ୱିଜମାନେ ଜାତକର୍ମୋପଲକ୍ଷରେ ସେ ସମସ୍ତ ପାଠ କରନ୍ତି । ତାହା ଆପଣ ମଧ୍ୟ ଅବଗତ ଅଛନ୍ତି, ଯଥା "ତୁମ୍ଭେ ଆମ୍ଭର ଅଙ୍ଗରୁ ଉତ୍ପନ୍ନ ହୋଇଅଛ, ତୁମ୍ଭେ ଆମ୍ଭର ହୃଦୟଜାତ, ପୁତ୍ରରୂପୀ ଆତ୍ମା, ତୁମ୍ଭର ଶତଶରତ ପରମାୟୁ ହେଉ । ହେ ପୁତ୍ର ! ଆମ୍ଭର ଜୀବନ ଓ ଅକ୍ଷୟବଂଶ ତୁମ୍ଭର ଅଧୀନ, ଅତଏବ ତୁମ୍ଭେ ଶତବର୍ଷ ପରମାୟୁ ଲାଭକରି ପରମସୁଖରେ କାଳ ହରଣ କର ।" ୬୨ ।

ହେ ରାଜନ୍ ! ଆପଣଙ୍କ ଅଙ୍ଗରୁ ଦ୍ୱିତୀୟ ପୁରୁଷ ଜାତ ହୋଇଅଛି । ନିର୍ମଳ ସରୋବରରେ ଆତ୍ମ ପ୍ରତିବିମ୍ବପ୍ରାୟ ଆପଣଙ୍କର ଦ୍ୱିତୀୟ ଆତ୍ମା ସ୍ୱରୂପ ଏହି ପୁତ୍ରଙ୍କ ପ୍ରତି ଆପଣ ଦୃଷ୍ଟିପାତ କରନ୍ତୁ ।୬୩। ଯେପରି ଗୋଟିଏ ଗାର୍ହପତ୍ୟ ଅଗ୍ନିରୁ ଦ୍ୱିତୀୟ ଆହବନୀୟ ଅଗ୍ନି ଉତ୍ପନ୍ନ ହୁଅଇ, ସେହିପରି ଆପଣ ଜଣେ ହେଲେ ହେଁ ଆପଣଙ୍କଠାରୁ ଉତ୍ପନ୍ନ ଏହି ପୁତ୍ର ରୂପରେ ଆପଣ ସ୍ୱୟଂ ଦ୍ୱିଧାକୃତ ହୋଇଅଛନ୍ତି । ୬୪ । ମହାରାଜ ! ଯଦି ସ୍ମରଣ ନ ଥାଏ, ତେବେ ଆଦ୍ୟନ୍ତ ସମସ୍ତ ବୃତ୍ତାନ୍ତ କହୁଅଛୁ, ଶ୍ରବଣ କରିବା ହେଉନ୍ତୁ । ଆମ୍ଭେ ଯେତେବେଳେ ପିତାଙ୍କ ଆଶ୍ରମରେ କୁମାରୀ ହୋଇଥିଲୁଁ, ସେତେବେଳେ ଆପଣ ମୃଗୟାକୁ ଗମନ କରି ମୃଗାନୁସରଣକ୍ରମେ ସେଠାକୁ ଗମନ କରି ସେଠାରେ ଉପସ୍ଥିତ ହୋଇ ଆମ୍ଭର ପାଣିଗ୍ରହଣ କଲେ । ଉର୍ବଶୀ, ପୂର୍ବଚିତ୍ତି, ସହଜନ୍ୟା, ମେନକା, ବିଶ୍ୱାଚୀ ଓ ଘୃତାଚୀ ଏହି ଛଅଟି ଅପ୍ସରୀ ସର୍ବାପେକ୍ଷା ଶ୍ରେଷ୍ଠା । ୬୬ । ତନ୍ମଧ୍ୟରେ ବ୍ରହ୍ମାଙ୍କ ଉତ୍ପନ୍ନା ମେନକା

ଅପ୍‌ସରା ଦେବଲୋକରୁ ଭୂତଳକୁ ଆସି ବିଶ୍ୱାମିତ୍ରଙ୍କ ସଂସର୍ଗରେ ଆମ୍ଭଙ୍କୁ ଜନ୍ମ ଦେଲେ । ୬୮ । ତତ୍ପରେ ସେହି ଅସଚ୍ଚରିତ୍ରା ମେନକା ହିମାଳୟ ପ୍ରସ୍ଥରେ ଆମ୍ଭଙ୍କୁ ପ୍ରସବ କରି ଶକୁନ୍ତ-ସନ୍ତାନପ୍ରାୟ ପରିତ୍ୟାଗ କରି ଗମନ କଲେ । ୬୯ । ହାୟ ! ଆମ୍ଭେ ପୂର୍ବ ଜନ୍ମରେ କି ପାପ କରିଥିଲୁଁ ଯେ ବାଲ୍ୟକାଳରେ ମାତା ପିତା ଆମ୍ଭଙ୍କୁ ପରିତ୍ୟାଗ କଲେ । ଏବେ ଆପଣ ମଧ୍ୟ ପରିତ୍ୟାଗ କରୁଅଛନ୍ତି । ୭୦ । ହେଉ, ଆପଣ ଆମ୍ଭଙ୍କୁ ପରିତ୍ୟାଗ କଲେ କରନ୍ତୁ, ଆମ୍ଭେ ସ୍ୱୀୟ ଆଶ୍ରମକୁ ପ୍ରତିଗମନ କରିବୁ, କିନ୍ତୁ ଏହି ବାଳକ ଆପଣଙ୍କ ସନ୍ତାନ, ଏହାକୁ ତ୍ୟାଗ କରିବା ଆପଣଙ୍କର ଉଚିତ ନୁହଇ ।୭୧।

ଦୁଷ୍ମନ୍ତ କହିଲେ, ହେ ଶକୁନ୍ତଳେ ! ତୁମ୍ଭର ଗର୍ଭସମ୍ଭୂତ ଆମ୍ଭର ପୁତ୍ର ଅଛି, ଏହା ଆମ୍ଭେ ଜାଣୁ ନାହିଁ । ସ୍ତ୍ରୀ ଲୋକେ ପ୍ରାୟ ମିଥ୍ୟା କହିଥାନ୍ତି; କିଏ ତୁମ୍ଭ କଥାରେ ବିଶ୍ୱାସ କରିବେ ? ୭୨ । ତୁମ୍ଭର ଜନନୀ ମେନକା; ସେ ବ୍ୟଭିଚାରିଣୀ ଓ ଦୟାହୀନା, ତୁମ୍ଭଙ୍କୁ ନିର୍ମାଲ୍ୟ ପ୍ରାୟ ହିମାଳୟ ପୃଷ୍ଠରେ ପରିତ୍ୟାଗ କରି ଚାଲିଗଲା; ଅଥଚ କ୍ଷତ୍ରିୟ କୁଳୋଦ୍ଭବ, ବ୍ରାହ୍ମଣତ୍ୱ-ଲୁବ୍ଧ ନିର୍ଦ୍ଦୟ ପ୍ରକୃତି ବିଶ୍ୱାମିତ୍ର ମଧ୍ୟ କାମର ବଶୀଭୂତ ହୋଇ ତୁମ୍ଭର ଜନକ ହୋଇଥିଲେ । ୭୪ । ଯଦି ବୋଲ ମେନକା ଅପ୍‌ସରାଙ୍କ ପ୍ରଧାନ ଓ ବିଶ୍ୱାମିତ୍ର ଋଷିଶ୍ରେଷ୍ଠ, ତେବେ ତୁମ୍ଭେ ତାଙ୍କର କନ୍ୟା ହୋଇ କି ନିମିତ୍ତ ପୁଂଶ୍ଚଳୀ ପ୍ରାୟ କଥା କହୁଅଛ ? ୭୫ । ଏହି ଅଶ୍ରଦ୍ଧେୟ ବାକ୍ୟ କହିବାକୁ ତୁମ୍ଭେ ଲଜ୍ଜିତ ହେଉନାହିଁ ? ବିଶେଷରେ ଆମ୍ଭ ସମକ୍ଷରେ ! ରେ ଦୁଷ୍ଟ ତାପସୀ ! ଏଠାରୁ ଗମନ କର । ୭୬ । ସେହି ସର୍ବଶ୍ରେଷ୍ଠ ମହର୍ଷି କିଏ, ଆଉ ତାପସୀ ବେଶଧାରିଣୀ ତୁମ୍ଭେ ଅବା କିଏ ? ୭୭ । ତୁମ୍ଭର ଏହି ପୁତ୍ର ବାଳକ ହୋଇ ସୁଦ୍ଧା ଅତିକାୟ ଓ ଅତି ବଳବାନ୍ ଦୃଷ୍ଟ ହେଉଅଛି । ଅଳ୍ପକାଳ ମଧ୍ୟରେ ଏ କିପରି ଶାଳ-ସ୍ତମ୍ଭପ୍ରାୟ ବର୍ଦ୍ଧିତ ହେଲା ? ୭୮ । ତୁମ୍ଭର ଜନ୍ମ ଅତି ନିକୃଷ୍ଟ, ସେହି ହେତୁରୁ ତୁମ୍ଭେ ପୁଂଶ୍ଚଳୀପ୍ରାୟ କଥା କହୁଅଛ । ମେନକା କାମ-ବଶବର୍ତ୍ତୀ ହୋଇ ଯଦୃଚ୍ଛାକ୍ରମେ ତୁମ୍ଭଙ୍କୁ ଉତ୍ପନ୍ନ କରିଅଛି । ୭୯ । ରେ ତାପସୀ ! ତୁମ୍ଭେ ଯାହା କହୁଅଛ, ସବୁ ଆମ୍ଭଙ୍କୁ ଅଜ୍ଞାତ, ଅଶ୍ରୁତ ଓ ଅନନୁଭୂତ । ଆମ୍ଭେ ତୁମ୍ଭଙ୍କୁ ଜାଣୁନାହୁଁ ତୁମ୍ଭେ ଯେଉଁଠାକୁ ଇଚ୍ଛା ଗମନ କର । ୮୦ ।

ଅନନ୍ତର ଶକୁନ୍ତଳା କହିଲେ, ରାଜନ୍ ! ପରଛିଦ୍ର ସର୍ଷପପ୍ରାୟ ହେଲେ ହେଁ ଦେଖିପାର, କିନ୍ତୁ ଆପଣାର ବିଲ୍ୱ ପରିମିତ ଛିଦ୍ର ଦେଖି ସୁଦ୍ଧା

ଦେଖି ନାହିଁ । ୮୧ । ହେ ଦୁଷ୍ମନ୍ତ ! ମେନକା ତ୍ରିଦଶଙ୍କଠାରେ ରତା ଓ ତ୍ରିଦଶବୃନ୍ଦ ମେନକାଙ୍କ ଠାରେ ଅନୁରକ୍ତ । ଅତଏବ ଆପଣଙ୍କ ଜନ୍ମରୁ ଆମ୍ଭ ଜନ୍ମ ଉତ୍କୃଷ୍ଟ । ୮୨ । ହେ ରାଜେନ୍ଦ୍ର ! ଆପଣ ଭୂତଳରେ ଭ୍ରମଣ କର, ଆମ୍ଭେ ଅନ୍ତରୀକ୍ଷରେ ବିଚରଣ କରୁ, ଅତଏବ ଆମ୍ଭ ଦୁହିଁଙ୍କର ପ୍ରଭେଦ ମେରୁ-ସର୍ଷପ ସଦୃଶ । ୮୩ । ହେ ନୃପ ! ଆମ୍ଭର କେତେ ପ୍ରଭାବ ଦେଖ, ଆମ୍ଭେ ମହେନ୍ଦ୍ର, କୁବେର, ଯମ ଓ ବରୁଣ ଏମାନଙ୍କ ଭବନକୁ ଗମନ କରିପାରୁ । ୮୪ । ହେ ଅନଘ ! ଆମ୍ଭେ ଆପଣଙ୍କ ନିକଟରେ ଗୋଟିଏ ସତ୍ୟ ପ୍ରବାଦ କହୁଅଛୁ, ଦ୍ୱେଷ କରି କହୁନାହୁଁ ; ଅତଏବ ଆପଣ ତାହା ଶ୍ରବଣ କରି ଆମ୍ଭଙ୍କୁ କ୍ଷମା କରିପାରନ୍ତି । ୮୫ । କୁ-ରୂପ ବ୍ୟକ୍ତି ଯେଉଁ ଯାଏ ଆପଣା ମୁଖକୁ ଆଦର୍ଶରେ ଦେଖି ନ ଥାଏ, ତାବତ୍ ସେ ଆପଣାକୁ ଅନ୍ୟ ବ୍ୟକ୍ତି ଠାରୁ ରୂପବାନ୍ ମନେ କରେ । ଯେତେବେଳେ ଦର୍ପଣରେ ଆପଣାର ରୂପକୁ ବିକୃତ ଦେଖେ ତେତେବେଳେ ଆପଣାର ଓ ଅନ୍ୟ ବ୍ୟକ୍ତିର ଯେ ପ୍ରଭେଦ ତାହା ଜାଣିପାରେ । ୮୬ ।

ଅତଏବ ରୂପସମ୍ପନ୍ନ ବ୍ୟକ୍ତି କାହାରିକୁ ଅବଜ୍ଞା କରନ୍ତି ନାହିଁ । ଅଧିକ ଦୁର୍ବାକ୍ୟ ପ୍ରୟୋଗ କଲେ ଲୋକେ କେବଳ ନିନ୍ଦୁକ ଓ ପରପୀଡ଼କ ବୋଲି ପରିଗଣିତ ହୁଅନ୍ତି । ୮୮ । ଶୂକର ଯେପରି ସମୁଦାୟ ବସ୍ତୁ ମଧ୍ୟରେ କେବଳ ପୁରୀଷ ଗ୍ରହଣ କରେ ସେହି ରୂପ ମୂର୍ଖ ବ୍ୟକ୍ତି ବକ୍ତାଙ୍କର ଶୁଭାଶୁଭ ବାକ୍ୟ ଶ୍ରବଣ କରି କେବଳ ଅଶୁଭ ବାକ୍ୟ ଗ୍ରହଣ କରଇ । ୮୯ । ପରନ୍ତୁ ଜଳ ମିଶ୍ରିତ ଦୁଗ୍‌ଧରୁ ହଂସ ଯେପରି ଜଳୀୟ ଅଂଶ ପରିତ୍ୟାଗ କରି ଦୁଗ୍‌ଧ ଗ୍ରହଣ କରଇ, ତଦ୍ରୂପ ପ୍ରାଜ୍ଞ ବ୍ୟକ୍ତି ମଧ୍ୟ ବକ୍ତାର ଶୁଭାଶୁଭ ବାକ୍ୟ ଶ୍ରବଣ କରି କେବଳ ଗୁଣବିଶିଷ୍ଟ ବାକ୍ୟ ଗ୍ରହଣ କରଇ । ୯୦ । ଯେମନ୍ତ ସାଧୁଲୋକ ପରନିନ୍ଦା ଶ୍ରବଣରେ ସନ୍ତପ୍ତ ହୁଅନ୍ତି, ସେହିରୂପ ଦୁର୍ଜ୍ଜନ ପରନିନ୍ଦା ଶ୍ରବଣ କରି ହୃଷ୍ଟଚିତ୍ତ ହୁଅନ୍ତି । ୯୧ । ସାଧୁଲୋକେ ଯେପରି ବୃଦ୍ଧ ବ୍ୟକ୍ତିଙ୍କର ସମ୍ମାନନା କରି ସନ୍ତୋଷ ଲାଭ କରନ୍ତି, ସେହିପରି ଦୁର୍ଜ୍ଜନ ବ୍ୟକ୍ତି ସଜ୍ଜନଙ୍କ ପ୍ରତି ଆକ୍ରୋଶ କରି ଆହ୍ଲାଦିତ ହୁଅନ୍ତି । ୯୨ । ଦୋଷ କାହାକୁ ବୋଲି ତାହା ମୂର୍ଖମାନେ ଜାଣନ୍ତି ନାହିଁ । ଅଥଚ ପରର ଦୋଷାନୁଦର୍ଶୀ ହୋଇ ସୁଖରେ କାଳ ହରଣ କରନ୍ତି । ଯେଉଁ ଦୋଷରେ ସେମାନେ ପଣ୍ଡିତଙ୍କ କର୍ତ୍ତୃକ ନିନ୍ଦନୀୟ ହୁଅନ୍ତି, ପଣ୍ଡିତମାନଙ୍କୁ ସେମାନେ ସେହି ଦୋଷରେ ନିନ୍ଦିତ ବୋଲି ବୋଲନ୍ତି । ଏହା ଅପେକ୍ଷା ଲୋକରେ ହାସ୍ୟଜନକ ଆଉ କି ବସ୍ତୁ

ଅଛୁ ଯେ ସ୍ୱୟଂ ଦୁର୍ଜ୍ଜନ ହୋଇ ସଜ୍ଜନକୁ ଦୁର୍ଜ୍ଜନ ବୋଲି ତିରସ୍କାର କରିବ ? ୯୪ ।

କୁପିତ ଭୁଜଙ୍ଗମଠାରୁ ଯେପରି ଭୟ ଜାତ ହୁଅଇ, ସେହିପରି ସତ୍ୟ-ଧର୍ମ-ଚ୍ୟୁତ ବ୍ୟକ୍ତିଠାରୁ ଆସ୍ତିକ ବ୍ୟକ୍ତି ଯେ ଖୁବ ଉଦ୍‌ବିଗ୍ନ ହେବେ ତହିଁରେ ଆଶ୍ଚର୍ଯ୍ୟ କଅଣ ? ୯୫ । ଯେଉଁ ବ୍ୟକ୍ତି ସ୍ୱୟଂ ଆତ୍ମ-ସ୍ୱରୂପ ପୁତ୍ର ଉତ୍ପାଦନ କରି ସ୍ୱୀକାର ନ କରନ୍ତି, ଦେବତାମାନେ ତାହାଙ୍କୁ ଶ୍ରୀଭ୍ରଷ୍ଟ କରନ୍ତି ଓ ତାହାଙ୍କର ସ୍ୱର୍ଗଭୋଗ ହୁଅଇ ନାହିଁ । ୯୬ । ପିତୃଗଣ ପୁତ୍ରକୁ କୁଳ ଓ ବଂଶର ପ୍ରତିଷ୍ଠାସ୍ୱରୂପ ଓ ସର୍ବ ଧର୍ମୋତ୍ତମ ବୋଲି ନିର୍ଦ୍ଦେଶ କରନ୍ତି ; ଅତଏବ ପୁତ୍ରକୁ ପରିତ୍ୟାଗ କରିବା ଅତ୍ୟନ୍ତ ଅବିଧେୟ । ୯୭ । ଭଗବାନ୍ ମନୁ, ସ୍ୱପତ୍ନୀଗର୍ଭସମ୍ଭୂତ ପାଞ୍ଚ ପ୍ରକାର * ପୁତ୍ର ଓ ଲବ୍‌ଧ, କ୍ରୀତ, ବିବର୍ଦ୍ଧିତ, କୃତକ ଓ ଅନ୍ୟୋତ୍ପନ୍ନ ପୁତ୍ରମାନଙ୍କୁ ନିର୍ଦ୍ଦେଶ କରି ଅଛନ୍ତି । ୯୮ । ହେ ନୃପଶାର୍ଦ୍ଦୂଳ ! ଧର୍ମ, କୀର୍ତ୍ତି ଓ ମନର ପ୍ରୀତିବର୍ଦ୍ଧନ ପୁତ୍ରମାନେ ଜନ୍ମଗ୍ରହଣ କରି ଧର୍ମ-ରୂପ ତରୀ ହୋଇ ପିତୃଲୋକଙ୍କୁ ନରକରୁ ଉଦ୍ଧାର କରନ୍ତି ।୯୯।

ହେ ପୃଥିବୀପତେ ! ସତ୍ୟଧର୍ମ ଓ ଆତ୍ମାକୁ ରକ୍ଷା କରିବାର ହେଲେ ପୁତ୍ର ପରିତ୍ୟକ୍ତ ହୋଇ ନ ପାରେ । ୧୦୦ । ହେ ନରେନ୍ଦ୍ର-ସିଂହ ! ଏ ବିଷୟରେ ଆପଣ କାପଟ୍ୟ ବହନ କରି ପାରନ୍ତି ନାହିଁ । ୧୦୧ । ଶତ ଶତ କୂପ ପ୍ରତିଷ୍ଠା ଅପେକ୍ଷା ଗୋଟିଏ ବାପୀ ପ୍ରତିଷ୍ଠା ଶ୍ରେଷ୍ଠ ; ଶତ ଶତ ବାପୀ ପ୍ରତିଷ୍ଠା ଅପେକ୍ଷା ଗୋଟିଏ ଯଜ୍ଞାଚରଣ ଶ୍ରେଷ୍ଠ ; ଶତ ଶତ ଯଜ୍ଞ ଅପେକ୍ଷା ଗୋଟିଏ ପୁତ୍ର ଶ୍ରେଷ୍ଠ ; ଶତ ଶତ ପୁତ୍ର ଅପେକ୍ଷା ସତ୍ୟନିଷ୍ଠା ଶ୍ରେଷ୍ଠ । ତୁଳାଦଣ୍ଡରେ ଏକପାର୍ଶ୍ୱରେ ସହସ୍ର ଅଶ୍ୱମେଧ ଓ ଅପର ପାର୍ଶ୍ୱରେ ଯେବେ ସତ୍ୟକୁ ରଖି ପରିମାଣ କରାଯାଏ, ତେବେ ସତ୍ୟ ଗୁରୁତର ହେବ । ୧୦୩। ହେ ରାଜନ୍ ! ସମସ୍ତ ବେଦ ଅଧ୍ୟୟନ ଓ ସର୍ବ ତୀର୍ଥରେ ଅବଗାହନ କରିବା ସତ୍ୟବଚନର ସମାନ ହେବ କି ନା ସନ୍ଦେହ । ୧୦୪ । ସତ୍ୟ ସମାନ ଧର୍ମ ନାହିଁ ; ସତ୍ୟଠାରୁ ଶ୍ରେଷ୍ଠତର କିଛି ନାହିଁ ଓ ମିଥ୍ୟା ଅପେକ୍ଷା ତୀବ୍ରତର ପାପ ଆଉ ନାହିଁ । ୧୦୫ । ହେ ରାଜନ୍ ! ସତ୍ୟ ପରଂବ୍ରହ୍ମ, ସତ୍ୟ ପରମ ନିୟମ;

---

* ମନୁର ନବମାଧ୍ୟାୟ ୧୫୮ ଶ୍ଳୋକଠାରେ ଦ୍ୱାଦଶ ପ୍ରକାର ପୁତ୍ରର ନାମ ଓ ଲକ୍ଷଣମାନ ଉକ୍ତ ହୋଇଅଛି । ଔରସ, କ୍ଷେତ୍ରଜ, ଦତ୍ତକ, କୃତ୍ରିମ, ଗୂଢୋତ୍ପନ୍ନ ଓ ଓ ଅପବିଦ୍ଧ ଏ ଛଅଟି ଦାୟାଦ ବନ୍ଧୁ, ଅଥଚ କାନୀନ, ସହୋଢ, କ୍ରୀତ, ପୌନର୍ଭବ ଓ ସ୍ୱୟଂଦତ୍ତ, ଶୌଦ୍ର ଏ ଛଅଟି ଅଦାୟାଦ ବାନ୍ଧବ ।

ହେ ରାଜନ୍ ! ଆପଣ ଆମ୍ଭ ନିକଟରେ ଯେଉଁ ପ୍ରତିଜ୍ଞା କରିବା ହୋଇଥିଲେ; ତାହା ଅତିକ୍ରମ କରିବା ହେଉନାହିଁ । ସତ୍ୟ ଆପଣଙ୍କର ସଙ୍ଗତ (ସଖା) ହେଉ । ୧୦୬ । ମିଥ୍ୟାରେ ଯେବେ ଆପଣଙ୍କର ଆସକ୍ତି ହୁଏ, ଆମ୍ଭ ସତ୍ୟରେ ଆପଣ ବିଶ୍ୱାସ ନ କରନ୍ତି, ତେବେ ଆମ୍ଭେ ସ୍ୱୟଂ ଗମନ କରୁଅଛୁଁ; ଆପଣଙ୍କ ସଦୃଶ ବ୍ୟକ୍ତିଙ୍କ ସହିତ ଆମ୍ଭର ସଙ୍ଗତି ବିଧେୟ ନୁହେଁ । ୧୦୭ । ହେ ଦୁଷ୍ମନ୍ତ ! ତୁମ୍ଭର ବିନା ସହାୟତାରେ ସୁଦ୍ଧା ଆମ୍ଭର ପୁତ୍ର ଏହି ଚତୁଃସମୁଦ୍ରବେଷ୍ଟିତା ଓ ଶୈଳରାଜସମଳଙ୍କୃତା ପୃଥିବୀକୁ ପ୍ରତିପାଳନ କରିବେ । ୧୦୮ ।

ଶକୁନ୍ତଳା ରାଜାଙ୍କୁ ଉକ୍ତରୂପ କହି ପ୍ରସ୍ଥାନ କଲେ । ଅନନ୍ତର ଋତ୍ୱିକ, ପୁରୋହିତ, ଆଗ୍ନର୍ଯ୍ୟ ଓ ମନ୍ତ୍ରୀବୃନ୍ଦରେ ପରିବେଷ୍ଟିତ ରାଜା ଦୁଷ୍ମନ୍ତଙ୍କ ପ୍ରତି ଏହି ଆକାଶବାଣୀ ହେଲା ଯେ ହେ ଦୁଷ୍ମନ୍ତ ! ମାତା ଚର୍ମମୁଣା ପ୍ରାୟ, ପୁତ୍ର ଯେ ସେ ପିତାଙ୍କର, ପିତା ପୁତ୍ରର ରୂପ ଧରି ଜାତ ହୁଅନ୍ତି ; ଅତଏବ ପୁତ୍ରକୁ ଭରଣ କର; ଶକୁନ୍ତଳାଙ୍କୁ ଅବଜ୍ଞା କର ନା । ୧୧୧ । ହେ ନରଦେବ ! ସ୍ୱକୀୟ ରୀର୍ଯ୍ୟ-ସମ୍ଭୂତ ପୁତ୍ର ଯମ ସଦନରୁ ଉଦ୍ଧାର କରଇ । ତୁମ୍ଭେ ଏହି ପୁତ୍ରର ଗର୍ଭଦାତା, ଶକୁନ୍ତଳା ସତ୍ୟ କହିଅଛନ୍ତି । ୧୧୨ । ଆପଣାର ଅଙ୍ଗକୁ ଦୁଇଭାଗ କରି ଜାୟା ପୁତ୍ରକୁ ଜନ୍ମ କରେ । ଅତଏବ ନୃପ ଦୁଷ୍ମନ୍ତ ! ଶକୁନ୍ତଳାଙ୍କ ଗର୍ଭ-ସମ୍ଭବ ଏହି ପୁତ୍ରକୁ ପ୍ରତିପାଳନ କର । ୧୧୩ । ଜୀବିତ ଆତ୍ମଜକୁ ତ୍ୟାଗ କରି ଜୀବିତ ରହିବା ଦୁର୍ଭାଗ୍ୟର ବିଷୟ । ଅତଏବ ଶକୁନ୍ତଳାଙ୍କ ଗର୍ଭ-ସମ୍ଭୂତ ପୁରୁ-କୁଳ-ଜାତ ତୁମ୍ଭର ଏହି ପୁତ୍ରକୁ ପାଳନ କର । ଏ ଗୋଟିଏ ମହାତ୍ମା ଅଟେ । ୧୧୪ । ଆମ୍ଭମାନଙ୍କ ବଚନ ଦ୍ୱାରା ସୁଦ୍ଧା ଏହାଙ୍କୁ ତୁମ୍ଭେ ଭରଣ କରିବାରୁ ତୁମ୍ଭର ଏହି ପୁତ୍ରର ନାମ 'ଭରତ' ହେଉ । ୧୧୫ ।

ଦେବତାମାନଙ୍କର ବ୍ୟାହୃତ ସେହି ବଚନମାନଙ୍କୁ ପୌରବ ରାଜା ଦୁଷ୍ମନ୍ତ ଶ୍ରବଣ କରି ପ୍ରହୃଷ୍ଟ ଚିତ୍ତରେ ପୁରୋହିତ ଓ ଅମାତ୍ୟମାନଙ୍କୁ କହିଲେ, ଆପଣମାନେ ଏହି ଦେବଦୂତଙ୍କ ବାକ୍ୟ ଶ୍ରବଣ କରନ୍ତୁ; ଆମ୍ଭେ ମଧ୍ୟ ତଦ୍ରୂପ ଜାଣୁଁ ଯେ ଏହି ପୁତ୍ର ଆମ୍ଭର । ୧୧୭ । ଆମ୍ଭେ ଯେବେ ଶକୁନ୍ତଳାଙ୍କ ବଚନାନୁସାରେ ଏହାଙ୍କୁ ଗ୍ରହଣ କରିଥାନ୍ତୁ, ତେବେ ଲୋକେ ଶଙ୍କା କରନ୍ତେ ଯେ ଏ ପୁତ୍ର ଶୁଦ୍ଧ ନୁହେଁ । ୧୧୮ ।

ବୈଶମ୍ପାୟନ କହିଲେ, ହେ ଭାରତ ! ଦେବଦୂତଙ୍କ ବଚନାନୁସାରେ ରାଜା ସେହି ପୁତ୍ରକୁ ବିଶୁଦ୍ଧ କରି ହୃଷ୍ଟ ଓ ମୁଦିତ ଚିତ୍ତରେ ପ୍ରତିଗ୍ରହ

କଲେ । ୧୧୯ । ତଦନନ୍ତର ରାଜା ପିତାଙ୍କର କରଣୀୟ ପୁତ୍ରର ସମସ୍ତ କର୍ମ ସମ୍ପାଦନ କରି, ମସ୍ତକ ଆଘ୍ରାଣ ଓ ସ୍ନେହାଲିଙ୍ଗନ କଲେ । ତତ୍କାଳରେ ବିପ୍ରମାନେ ଆଶୀର୍ବାଦ ଓ ବନ୍ଦୀଗଣ ସ୍ତୁତି କଲେ । ରାଜା ପୁତ୍ରସ୍ପର୍ଶରେ ପରମ ସୁଖ ଲାଭ କଲେ ଓ ଧର୍ମାନୁସାରେ ପତିବ୍ରତା ଭାର୍ଯ୍ୟାଙ୍କୁ ସମ୍ମାନନା ଓ ଶାନ୍ତି, ସାନ୍ତ୍ୱନା ପ୍ରଦାନ ପୂର୍ବକ କହିଲେ, ହେ ଦେବି ! ଆମ୍ଭେ ଯେ ତୁମ୍ଭଙ୍କୁ ବିବାହ କରିଥିଲୁଁ, ଏ ବିଷୟ ଲୋକରେ ବିଦିତ ନ ଥିଲା । ସେମାନେ ମନରେ କରନ୍ତେ ଯେ କେବଳ ସୁଖାଭିଳାଷରେ ଆମ୍ଭ ଦୁହିଁଙ୍କର ସଙ୍ଗମ ହୋଇଥିଲା; ଆମ୍ଭେ ତୁମ୍ଭର ପୁତ୍ରଙ୍କୁ ନେଇ ରାଜା କଲୁଁ ଅତଏବ ତୁମ୍ଭ ବିଶୁଦ୍ଧି ନିମିତ୍ତ ଆମ୍ଭେ ଉକ୍ତରୂପ ବିଚାର କଲୁଁ । ୧୨୪ । ପ୍ରିୟେ ! ବିଶାଳାକ୍ଷୀ ! ତୁମ୍ଭେ କ୍ରୁଦ୍ଧ ହୋଇ ଆମ୍ଭ ପ୍ରତି ଯେଉଁ ଯେଉଁ ସବୁ ଅପ୍ରିୟ ବାକ୍ୟ ପ୍ରୟୋଗ କରିଅଛ, ହେ ଶୁଭେ ! ତୁମ୍ଭେ ଆମ୍ଭର ପ୍ରଣୟିନୀ ଥିବାରୁ ତତ୍ସମୁଦାୟ କ୍ଷମା କଲୁଁ । ୧୨୫ । ହେ ଭାରତ ! ରାଜର୍ଷି ଦୁଷ୍ମନ୍ତ ପ୍ରିୟତମା ମହିଷୀ ଶକୁନ୍ତଳାଙ୍କୁ ଏହିରୂପ କହି ଅନ୍ନ, ପାନ ଓ ବସ୍ତ୍ରାଦିଦ୍ୱାରା ସତ୍କାର କଲେ । ୧୨୬ ।

ତଦନନ୍ତର ମହାରାଜ ଦୁଷ୍ମନ୍ତ ଶକୁନ୍ତଳାଙ୍କ ଗର୍ଭସମ୍ଭୂତ ସେହି ତନୟଙ୍କୁ ଭରତ ବୋଲି ନାମ ଦେଇ ଯୌବ ରାଜ୍ୟରେ ଅଭିଷିକ୍ତ କଲେ । ୧୨୭ । ତଦବଧି ସେହି ମହାତ୍ମା ଭରତଙ୍କର ପ୍ରଦୀପ୍ତ, ଅଜେୟ, ଦିବ୍ୟ ଓ ଲୋକବିଖ୍ୟାତ ମହତ୍ ଚକ୍ର ପ୍ରବର୍ତ୍ତିତ ହେଲା । ୧୨୮ । ମହୀପାଳ-ମାନଙ୍କୁ ସେ ପରାଜୟ କରି ବଶବର୍ତ୍ତୀ କରିବାରେ ପ୍ରବୃତ୍ତ ହେଲେ ଓ ସାଧୁମାନଙ୍କର ଆଚରିତ ଧର୍ମ ଅନୁଷ୍ଠାନ କଲେ । ଏତଦ୍ଦ୍ୱାରା ତାହାଙ୍କର ଉତ୍କୃଷ୍ଟ ଯଶ ଲାଭ ହେଲା । ୧୨୯ । ସେହି ପ୍ରତାପବାନ୍ ରାଜା ସାର୍ବଭୌମ ଚକ୍ରବର୍ତ୍ତୀ ହେଲେ ଓ ମରୁତ୍ପତି ଶକ୍ରଙ୍କପ୍ରାୟ ବହୁସଂଖ୍ୟକ ଯଜ୍ଞ ଅନୁଷ୍ଠାନ କଲେ । ମହର୍ଷି କଣ୍ୱ ଭରତଙ୍କୁ ଭୂରିଦକ୍ଷିଣ ଯଜ୍ଞ ଅନୁଷ୍ଠାନ କରାଇଥିଲେ । ସେହି ଶ୍ରୀମାନ୍ ଭରତ 'ଗୋବିତତ' ନାମକ ଅଶ୍ୱମେଧ ଯଜ୍ଞ କରିଥିଲେ, ଯେଉଁ ଯଜ୍ଞରେ ସେହି ରାଜା କଣ୍ୱ-ମହର୍ଷିଙ୍କୁ ସହସ୍ର-ପଦ୍ମ-ସଂଖ୍ୟକ ଧନ ପ୍ରଦାନ କରିଥିବାର ପ୍ରବାଦ ଅଛି । ୧୩୧ ।

ସେହି ଭରତଙ୍କଠାରୁ ଭାରତକୁଳ ବିସ୍ତୀର୍ଣ୍ଣ ହୋଇଅଛି । ସେହି ଭରତଙ୍କଠାରୁ ଏହି ଭାରତୀ କୀର୍ତ୍ତି ହୋଇଅଛି । ସେହି ଭରତ ବଂଶରେ ଯେଉଁ ସବୁ ଦେବତୁଲ୍ୟ, ମହୌଜା, ବ୍ରହ୍ମକଳ୍ପ ବହୁସଂଖ୍ୟକ ରାଜସତ୍ତମ

ଜନ୍ମଗ୍ରହଣ କରିଥିଲେ, ସେହିମାନେ ଭରତ ନାମରେ ବଣ୍ଣୃତ ହେଲେ । ସେମାନଙ୍କର ସମସ୍ତଙ୍କର ନାମ ଅପରିମେୟ । ୧୩୬ । ହେ ଭାରତ ! ସେମାନଙ୍କ ମଧ୍ୟରେ ଯେଉଁମାନେ ପ୍ରଧାନ, ମହାଭାଗ, ଦେବକଳ୍ପ ଓ ସତ୍ୟାର୍ଜ୍ଜବପରାୟଣ, ତୁମ୍ଭ ନିକଟରେ ସେହିମାନଙ୍କର ନାମ କୀର୍ତ୍ତନ କରୁଅଛୁ । ୧୩୦ ।

---

## ଅଧ୍ୟାୟ—୭୫

ବୈଶମ୍ପାୟନ ବୋଇଲେ—ହେ ଅନଘ ! ଦକ୍ଷପ୍ରଜାପତି, ବୈବସ୍ୱତ ମନୁ, ଭରତ, କୁରୁ, ପୁରୁ ଓ ଆଜମୀଢ଼ ରାଜାଙ୍କର ଅଥଚ ହେ ନିଷ୍ପାପ ! ଯାଦବମାନଙ୍କର ଓ ସମସ୍ତ କୌରବଗଣଙ୍କର ଅପିଚ ଭରତବୃନ୍ଦଙ୍କର ଏହି ପବିତ୍ର, ମହାମଙ୍ଗଳକର, ଧନ୍ୟ, ଯଶସ୍ୟ ଓ ପରମାୟୁ-ବୃଦ୍ଧିକାରୀ ବଂଶମାନଙ୍କର ବୃତ୍ତାନ୍ତ ତୁମ୍ଭ ନିକଟରେ କୀର୍ତ୍ତନ କରିବୁ । ୨ । ପ୍ରଚେତାଙ୍କର ଦଶପୁତ୍ର । ସେମାନେ ସମସ୍ତେ ତେଜଦ୍ୱାରା ଉଦ୍ଦୀପ୍ତ; ମହର୍ଷି-ସମ-ତେଜସ୍ୱୀ, ସାଧୁ ଓ ପୁଣ୍ୟଶୀଳ । ଜନ୍ମମାତ୍ର ସେମାନଙ୍କର ମୁଖଜାତ ଅଗ୍ନିଦ୍ୱାରା ଓ ମହାପ୍ରଭାବ ଦ୍ୱାରା ବୃକ୍ଷ ଓ ଔଷଧିରୂପୀ ରାକ୍ଷସମାନେ ଦଗ୍ଧ ହୋଇଗଲେ । ୩ । ସେମାନଙ୍କଠାରୁ ପ୍ରାଚେତସ ଦକ୍ଷପ୍ରଜାପତି ଉତ୍ପନ୍ନ ହୋଇଥିଲେ । ଦକ୍ଷଙ୍କଠାରୁ ଏହି ସମସ୍ତ ପ୍ରଜା ଉତ୍ପନ୍ନ ହୋଇଅଛନ୍ତି । ହେ ପୁରୁଷବ୍ୟାଘ୍ର ! ସେହି ଦକ୍ଷ ଲୋକପିତାମହ । ୪ । ପ୍ରାଚେତସ ଦକ୍ଷମୁନି ବୀରଣୀ ନାମ୍ନୀ ପତ୍ନୀଙ୍କ ସହସଂଗରେ ଆତ୍ମସଦୃଶ ଶଂସିତ-ବ୍ରତ ସହସ୍ରପୁତ୍ର ଉତ୍ପାଦନ କଲେ । ୫ । ଦକ୍ଷ ସମ୍ଭୂତ ସେହି ସହସ୍ର ପୁତ୍ରଙ୍କୁ ନାରଦ ଋଷି ମୋକ୍ଷସାଧନ ଅତ୍ୟୁତ୍ତମ ସାଂଖ୍ୟ ଜ୍ଞାନ ଅଧ୍ୟୟନ କରାଇଲେ । ୬ । ହେ ଜନମେଜୟ ! ତଦନନ୍ତର ସେହି ଦକ୍ଷପ୍ରଜାପତି ପ୍ରଜାସୃଷ୍ଟି କାମନାରେ ପଞ୍ଚାଶତ୍ କନ୍ୟାଙ୍କୁ ପୁତ୍ରଜ୍ଞାନରେ * ଭରଣ ପୋଷଣ କଲେ । ସେହି ପଞ୍ଚାଶତ୍ କନ୍ୟାଙ୍କ ମଧ୍ୟରୁ ସେ ଦଶକନ୍ୟା କଶ୍ୟପଙ୍କୁ ଓ ସପ୍ତବିଂଶତି ଚନ୍ଦ୍ରଙ୍କୁ ସମ୍ପ୍ରଦାନ କଲେ । କଶ୍ୟପଙ୍କର ତ୍ରୟୋଦଶ ପତ୍ନୀଙ୍କ ମଧ୍ୟରେ ଦାକ୍ଷାୟଣୀ ସର୍ବପ୍ରଧାନ ଥିଲେ । ତାହାଙ୍କ ଗର୍ଭରୁ ଦ୍ୱାଦଶ ଆଦିତ୍ୟ ଉତ୍ପନ୍ନ

* ଦୌହିତ୍ରଦ୍ୱାରା କନ୍ୟା ପୁତ୍ରତୁଲ୍ୟ ହୁଅଇ ।

ହେଲେ । ତତ୍ପରେ କଶ୍ୟପଙ୍କ ଔରସରୁ ଇନ୍ଦ୍ରାଦି ଦେବତା ଓ ବିବସ୍ୱାନ୍ ଉତ୍ପନ୍ନ ହେଲେ । ବିବସ୍ୱାନଙ୍କର ଦୁଇପୁତ୍ର ମନୁ ଓ ଯମ । ମନୁ ଅଗ୍ରେ ଜନ୍ମିଥିଲେ, ତତ୍ପରେ ଯମ ଜାତ ହେଲେ । ୧୧ । ମନୁ ଅତିଶୟ ଧୀମାନ୍ ଓ ଧାର୍ମିକ ଥିଲେ । ତାହାଙ୍କଠାରୁ ବ୍ରାହ୍ମଣ କ୍ଷତ୍ରିୟାଦି ମାନବ ବଂଶ ପ୍ରଥିତ ଓ ପ୍ରତିଷ୍ଠିତ ହୋଇଅଛି । ୧୨ । ବ୍ରାହ୍ମଣ କ୍ଷତ୍ରିୟାଦି ମନୁଙ୍କଠାରୁ ଜାତ ହୋଇ-ଥିବାରୁ ତାହାଙ୍କର ମାନବ ସଂଜ୍ଞା ହୋଇଅଛି । ହେ ମହାରାଜ ! ତତ୍ପରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ସଙ୍ଗତି ହେଲା । ୧୩ । ତନ୍ମଧ୍ୟରେ ମନୁଜ ବ୍ରାହ୍ମଣ-ମାନେ ସାଙ୍ଗବେଦ ଧାରଣ କଲେ । ୧୪ । ବେଣ, ଧୃଷ୍ଣୁ, ନରିଷ୍ୟନ୍ତ, ନାଭାଗ, ଇକ୍ଷ୍ୱାକୁ, କାରୂଷ, ଶର୍ଯ୍ୟାତି, ଇଳା, ପୃଷଧ୍ରୁ ଓ ନାଭାଗାରିଷ୍ଟ ମନୁଙ୍କର ଏହି ଦଶଗୋଟି ପୁତ୍ର କ୍ଷତ୍ରିୟ ଧର୍ମପରାୟଣ ହେଲେ । ୧୫ । ଏହି ପୃଥିବୀରେ ସେହି ମନୁଙ୍କର ଆହୁରି ପଞ୍ଚାଶତ୍ ପୁତ୍ର ଜାତ ହୋଇଥିଲେ । ଆମ୍ଭେମାନେ ଶୁଣିଅଛୁ ଯେ ସେମାନେ ପରସ୍ପର ହଣାହଣି ହୋଇ ବିନଷ୍ଟ ହେଲେ । ୧୬ ।

ତଦନନ୍ତର ବିଦ୍ୱାନ ପୁରୁରବା ଇଳାଙ୍କଠାରୁ ଜନ୍ମଗ୍ରହଣ କରିଥିଲେ । ଆମ୍ଭେମାନେ ଶୁଣିଅଛୁଁ ଯେ ପୁରୁରବାଙ୍କର ମାତା ଓ ପିତା ଦୁହେଁ ଇଳା ଥିଲେ । ୧୮ । ମହାଯଶା ପୁରୁରବା ମନୁଷ୍ୟ ହୋଇ ସୁଦ୍ଧା ଅମାନୁଷ ଅନୁଚରବର୍ଗରେ ପରିବୃତ ହୋଇ ସାଗର ମଧ୍ୟସ୍ଥିତ ତ୍ରୟୋଦଶ ଦ୍ୱୀପକୁ ଭୋଗ କରୁଥିଲେ । ୧୯ । ପୁରୁରବା ବୀର୍ଯ୍ୟୋନ୍ମତ୍ତ ହୋଇ ବିପ୍ରଙ୍କ ସହିତ ବିଗ୍ରହ କଲେ ଓ ଆର୍ତ୍ତସ୍ୱରରେ ରୋଦନକାରୀ ବିପ୍ରଙ୍କଠାରୁ ସେମାନଙ୍କର ସମସ୍ତ ରତ୍ନ ହରଣ କଲେ । ୨୦ । ହେ ରାଜନ୍ ! ଅନନ୍ତର ବ୍ରହ୍ମଲୋକରୁ ସନତ୍କୁମାର ଆସି ତାହାଙ୍କୁ ଶ୍ରୁତି ଓ ଯୁକ୍ତି ସମନ୍ୱିତ ଉପଦେଶ ପ୍ରଦାନ କଲେ । କିନ୍ତୁ ସେ ଉପଦେଶକୁ ସେ ପ୍ରତିଗ୍ରହ କଲେ ନାହିଁ । ୨୧ । ତହିଁରେ ଲୋଭାନ୍ୱିତ ଓ ବଳମଦରେ ନଷ୍ଟସଂଜ୍ଞ ସେହି ନରପତିଙ୍କୁ ମହର୍ଷି-ମାନେ କ୍ରୁଦ୍ଧ ହୋଇ ଅଭିଶାପ ଦେବାରୁ ସେ ସଦ୍ୟ ବିନାଶ ପ୍ରାପ୍ତ ହେଲେ । ୨୨ । ସେହି ରାଜରାଜ ପୁରୁରବା ଗନ୍ଧର୍ବ ଲୋକରୁ ଉର୍ବଶୀଙ୍କୁ ଓ ସ୍ୱୟଂ ସମ୍ପାଦନାର୍ଥ ଦକ୍ଷିଣାଗ୍ନି, ଗାର୍ହପତ୍ୟ ଓ ଆହବନୀୟାଖ୍ୟ ଅଗ୍ନିତ୍ରୟଙ୍କୁ ଆନୟନ କରିଥିଲେ । ସେହି ରାଜାଙ୍କ ଔରସରେ ଉର୍ବଶୀଙ୍କ ଗର୍ଭରୁ ଛଅଗୋଟି ପୁତ୍ର ଜନ୍ମିଲେ, ସେମାନଙ୍କ ନାମ ଆୟୁ, ଧୀମାନ୍, ଅମାବସୁ, ଦୃଢ଼ାୟୁ, ବନାୟୁ ଓ ଶତାୟୁ ବୋଲି ଖ୍ୟାତ ଅଛି । ୨୪ । ଆୟୁଙ୍କ

ଊରସରେ ସ୍ୱର୍ଭାନୁ କନ୍ୟାଙ୍କ ଗର୍ଭରେ ନହୁଷ, ବୃଦ୍ଧଶର୍ମା, ରଜି, ଗୟ ଓ ଅନେନା ଏହି ପଞ୍ଚ ପୁତ୍ର ଉତ୍ପନ୍ନ ହୋଇଥିଲେ । ୨୫ ।

ହେ ପୃଥିବୀପତେ ! ଆୟୁଙ୍କ ତନୟ ଧୀମାନ୍ ଓ ସତ୍ୟ ପରାକ୍ରମ ନହୁଷ ଉତ୍କୃଷ୍ଟ ଧର୍ମାନୁସାରେ ରାଜ୍ୟଶାସନ କରୁଥିଲେ । ୨୬ । ପିତୃଗଣ, ଦେବଗଣ, ଋଷିଗଣ, ବିପ୍ର ଓ ଗନ୍ଧର୍ବଗଣ, ସର୍ପ ରାକ୍ଷସ ଓ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନଙ୍କୁ ନହୁଷ ଉତ୍ତମରୂପେ ପାଳନ କରୁଥିଲେ । ୨୭ । ସେହି ବୀର୍ଯ୍ୟବାନ ରାଜା ଦସ୍ୟୁମାନଙ୍କୁ ବିନାଶ କରି, ଋଷିଙ୍କଠାରୁ କର ଗ୍ରହଣ କଲେ ଓ ପଶୁମାନଙ୍କ ପ୍ରାୟ ତାହାଙ୍କ ପୃଷ୍ଠରେ ଭାରବହନ କରାଇଲେ ।୨୮। ସେହି ସମୟରେ ରାଜା ନହୁଷ ଆପଣାର ତେଜ, ତପସ୍ୟା, ବଳ ଓ ବିକ୍ରମ-ଦ୍ୱାରା ଦେବଗଣଙ୍କୁ ଅଭିଭୂତ କରି ସ୍ୱୟଂ ଇନ୍ଦ୍ରତ୍ୱ ଭୋଗ କଲେ * । ୨୯ । ତାହାଙ୍କର ଯତି, ଯଯାତି, ସଂଯାତି, ଆୟାତି, ଅୟତି ଓ ଧ୍ରୁବ ନାମକ ଛଅଗୋଟି ପୁତ୍ର ଜନ୍ମିଥିଲେ । ୩୦ । ଯତି ଯୋଗ ଆଶ୍ରୟ କରି ବ୍ରହ୍ମଙ୍କ ମୁନି ହେଲେ । ନହୁଷ ପୁତ୍ର ସତ୍ୟ-ପରାକ୍ରମ ଯଯାତି ସମ୍ରାଟ ହେଲେ । ୩୧ ।

ଯଯାତି ପୃଥିବୀପାଳନ କରି ବହୁସଂଖ୍ୟକ ଯଜ୍ଞ କରିଥିଲେ । ସେ ସର୍ବଦା ପ୍ରୟତ ହୋଇ ଅତି ଭକ୍ତିରେ ଦେବତା ଓ ପିତୃଗଣଙ୍କର ଅର୍ଚ୍ଚନା କଲେ ଓ କାହାରିଠାରେ ପରାଜିତ ନୋହି ସବୁ ପ୍ରଜାଙ୍କଠାରେ ଅନୁଗ୍ରହ ପ୍ରକାଶ କଲେ । ୩୨ । ତାହାଙ୍କର ଦୁଇ ରାଣୀ ଦେବଯାନୀ ଓ ଶର୍ମିଷ୍ଠାଙ୍କ ଗର୍ଭରେ ସର୍ବଗୁଣସମ୍ପନ୍ନ ଓ ମହା ଧନୁର୍ଦ୍ଧର ପୁତ୍ରମାନେ ଜାତ ହେଲେ । ଦେବଯାନୀଙ୍କଠାରୁ ଯଦୁ ଓ ତୁର୍ବସୁ ଦୁହେଁ ଓ ଶର୍ମିଷ୍ଠାଙ୍କଠାରୁ ଦ୍ରୁହ୍ୟ, ଅନୁ, ପୁରୁ ଜନ୍ମ ହେଲେ । ୩୩ । ସେହି ନହୁଷନନ୍ଦନ ଯଯାତି ବହୁସଂଖ୍ୟକ ବର୍ଷ ରାଜତ୍ୱ କରି ପରଶେଷରେ ରୂପନାଶିନୀ ମହାଘୋର ଜରାବସ୍ଥା ପ୍ରାପ୍ତ ହେଲେ । ୩୪ । ଜରାଭିଭୂତ ହୋଇ ସେହି ରାଜା ନିଜ ପୁତ୍ର ଯଦୁ, ପୁରୁ, ତୁର୍ବସୁ, ଦ୍ରୁହ୍ୟ ଓ ଅନୁଙ୍କୁ ଆହ୍ୱାନ କରି ବୋଇଲେ, ହେ ପ୍ରିୟ ପୁତ୍ରଗଣ ! ଆମ୍ଭେ ଯୁବା ହୋଇ ଯୁବତୀଗଣଙ୍କ ସହିତ ଯଥାଭିଳଷିତ କାମୋପଭୋଗ କରିବାକୁ ଇଚ୍ଛା କରୁଅଛୁଁ । ତୁମ୍ଭେମାନେ ଆମ୍ଭର ସହାୟ

---

* କାଳୀପ୍ରସନ୍ନ ସିଂହଙ୍କ ଗ୍ରନ୍ଥରେ ଓ ଶ୍ରୀରାମପୁର ଅନୁବାଦ ଉଭୟ ପୁସ୍ତକରେ ଋଷିମାନଙ୍କୁ ଇନ୍ଦ୍ରତ୍ୱ ଭୋଗ କରାଇଲେ ବୋଲି ଲିଖିତ ଅଛି । କିନ୍ତୁ ଟୀକାରେ ଜାରସ୍ୱାମୀଙ୍କର ଅର୍ଥ ତହାର ଅର୍ଥାନ୍ତ କଲେ ବୋଲି ଉକ୍ତ ଥିବାରୁ ଓ ଋଷିଙ୍କୁ ଇନ୍ଦ୍ର କରି ନିଜର କୌଣସି ଲାଭ ନ ଥିବାରୁ ଏଠାରେ ପ୍ରକୃତ ଅନୁବାଦ କରାଗଲା ।

ହୁଅ । ୩୭ । ତହିଁରେ ତାହାଙ୍କୁ ଦେବଯାନୀଙ୍କର ପ୍ରଥମ ପୁତ୍ର ବୋଇଲେ, ଆମ୍ଭମାନଙ୍କର ଯୌବନଦ୍ୱାରା ଆପଣଙ୍କର କି କାର୍ଯ୍ୟ କରାଯିବ ? ୩୮ । ଯଯାତି ଉତ୍ତର କଲେ ଯେ ତୁମ୍ଭେ ଆମ୍ଭର ଜରାକୁ ଗ୍ରହଣ କର ଓ ତୁମ୍ଭ ଯୌବନଦ୍ୱାରା ଆମ୍ଭେ ବିଷୟ ଭୋଗ କରୁଁ । ହେ ପୁତ୍ରଗଣ ! ଦୀର୍ଘ ସତ୍ର ଅନୁଷ୍ଠାନ କରିବାରୁ ଶୁକ୍ରାଚାର୍ଯ୍ୟଙ୍କର ଅଭିଶାପରୁ କାମାର୍ଥବିନାଶିନୀ ଜରା ଆମ୍ଭଙ୍କୁ ଆକ୍ରମଣ କରିଅଛି, ଆମ୍ଭେ ସେହି ହେତୁରୁ ଅତିଶୟ ସନ୍ତପ୍ତ ହୋଇଅଛୁଁ । ଅତଏବ ହେ ପୁତ୍ରଗଣ ! ତୁମ୍ଭମାନଙ୍କ ମଧ୍ୟରୁ କେହି ଜଣେ ଆମ୍ଭର ଜରାଗ୍ରସ୍ତ ଶରୀର ନେଇ ରାଜ୍ୟଶାସନ କର ଓ ଆମ୍ଭେ ଅଭିନବ ଯୁବାତନୁ ଧାରଣ କରି କାମ ଭୋଗ କରିବୁଁ । ୪୧ ।

ଯଦୁ ପ୍ରଭୃତି କେହି ତାହାଙ୍କର ଜରାବସ୍ଥାକୁ ଗ୍ରହଣ କଲେ ନାହିଁ । ତଦନନ୍ତର ସର୍ବ କନିଷ୍ଠ ସତ୍ୟ ବିକ୍ରମ ପୁରୁ ତାହାଙ୍କୁ ବୋଇଲେ, ହେ ରାଜନ୍ ! ଆପଣ ଆମ୍ଭର ଯୌବନକାଳୀନ ଅଭିନବ ତନୁଦ୍ୱାରା ବିଷୟ ଭୋଗ କରନ୍ତୁ ଓ ଆପଣଙ୍କ ଆଜ୍ଞାକ୍ରମେ ଆମ୍ଭେ ଜରାବସ୍ଥା ଗ୍ରହଣ କରି ରାଜ୍ୟ ଶାସନ କରିବୁଁ । ୪୩ । ଏପରି ଅଭିହିତ ହେବାରୁ ରାଜର୍ଷି ତପସ୍ୟାବଳରୁ ନିଜର ଜରାବସ୍ଥାକୁ ଆପଣାର ସେହି ମହାତ୍ମା ପୁତ୍ରଙ୍କଠାରେ ସଞ୍ଚାରିତ କରି ସ୍ୱୟଂ ପୌରବଙ୍କର ଯୌବନରେ ଯୁବା ହେଲେ । ୪୫ । ଅପରାଜିତ ନୃପ ଶାର୍ଦ୍ଦୂଳ ଯଯାତି ସହସ୍ର ବର୍ଷ ତଦ୍ରୂପ ଭୋଗ କରି ସୁଦ୍ଧା ଶାର୍ଦ୍ଦୂଳ ପ୍ରାୟ ବିକ୍ରମଶାଳୀ ଥିଲେ । ପତ୍ନୀଦ୍ୱୟଙ୍କ ସହିତ ସେ ଦୀର୍ଘ କାଳ ବିହାର କରି ପୁନର୍ବାର କୁବେରଙ୍କ ଉଦ୍ୟାନରେ ଚୈତ୍ର ରଥରେ ବିଶ୍ୱାଚୀ ଅପ୍ସରାଙ୍କ ସହିତ ଉପଭୋଗ କଲେ । ୪୭ । ସେହି ମହାଯଶା ଯଯାତି ଏତେ ଭୋଗ କରି ସୁଦ୍ଧା କାମଭୋଗରେ ତୃପ୍ତ ନ ହେବାରୁ ଏହି ଗାଥା ଗାନ କଲେ—"କାମ୍ୟଦ୍ରବ୍ୟ ଉପଭୋଗଦ୍ୱାରା କଦାପି କାମ ନିବୃତ୍ତି ହୁଅଇ ନାହିଁ । ଅଗ୍ନିରେ ଯେତେ ଘୃତ ପ୍ରଦାନ କରିବ, ସେ ତେତେ ବର୍ଦ୍ଧିତ ହୁଅଇ" । ୪୯ । ଏହି ରତ୍ନଗର୍ଭା ପୃଥିବୀକୁ ଓ ତତ୍ରସ୍ଥ ସମୁଦାୟ ସୁବର୍ଣ୍ଣ, ପଶୁ ଓ ସ୍ତ୍ରୀମାନଙ୍କୁ ଯେବେ ଜଣେ ଭୋଗ କରିବ, ତେବେ ସୁଦ୍ଧା ତାହାର ତୃପ୍ତି ହେବ ନାହିଁ । ଅତଏବ ଏ କଥା ବିବେଚନା କରି ଶାନ୍ତି ଅବଲମ୍ବନ କରିବା ବିଧେୟ । ୫୦ । ମନୁଷ୍ୟ ଯେତେବେଳେ କାୟ-ମନୋବାକ୍ୟରେ କୌଣସି ପ୍ରାଣୀଠାରେ ଦ୍ରୋହ ଆଚରଣ ନ କରେ, ସେତେବେଳେ ସେ ବ୍ରହ୍ମ ପ୍ରାପ୍ତ ହୁଅଇ । ୫୧ । ମନୁଷ୍ୟ ଯେବେ କାହାରିଠାରୁ ଭୀତ ନୁହଇ ଓ ସେ କାହାରି ଭୟର ହେତୁ ନୁହଇ, କିଛିମାତ୍ର

ଲାଭର ଇଚ୍ଛା କରଇ ନାହିଁ ଓ କାହାରିକି ଦ୍ୱେଷ ନ କରଇ, ସେତେବେଳେ ସେ ବ୍ରହ୍ମସମ୍ପନ୍ନ ହୁଅଇ । ୫୨ । ହେ ନୃପ ! ମହାପ୍ରାଜ୍ଞ ଯଯାତି କାମୋପଭୋଗର ତୁଚ୍ଛତା ଅବଗତ ହୋଇ ବୁଦ୍ଧିବଳରେ ମନକୁ ଦମନ କରି ଆପଣା ସୁତଙ୍କଠାରୁ ଜରାବସ୍ଥାକୁ ପ୍ରତିଗ୍ରହଣ କଲେ ଓ ପୁରୁଙ୍କୁ ଯୌବନ ପ୍ରଦାନ ଓ ରାଜ୍ୟରେ ଅଭିଷିକ୍ତ କରି, ସ୍ୱୟଂ କାମରେ ଅତୃପ୍ତ ହୋଇ ଆତ୍ମଜ ପୁରୁଙ୍କୁ କହିଲେ (୫୪), ତୁମ୍ଭେ ପୁତ୍ର ହେବାରୁ ଆମ୍ଭେ ପୁତ୍ରବାନ୍ ହେଲୁଁ, ତୁମ୍ଭେ ଆମ୍ଭର ବଂଶକର ସୁତ, ତୁମ୍ଭର ନାମରେ ଏହି ବଂଶ ପୌରବ ବଂଶ ବୋଲି ଲୋକରେ ଖ୍ୟାତ ହେବ । ୫୫ ।

ବୈଶମ୍ପାୟନ କହିଲେ, ଅନନ୍ତର ସେହି ନୃପଶାର୍ଦ୍ଦୂଳ ପୁରୁଙ୍କୁ ରାଜ୍ୟରେ ଅଭିଷିକ୍ତ କରି ଭୃଗୁତୁଙ୍ଗ ପର୍ବତରେ ସୁନ୍ଦର ତପସ୍ୟା ଆଚରଣ କଲେ ଓ ବହୁକାଳ ପରେ ଦାରା ସହିତ ଅନଶନ ବ୍ରତ ଆଚରଣ କରି ସ୍ୱର୍ଗପ୍ରାପ୍ତ ହେଲେ । ୫୬ ।

---

## ଅଧ୍ୟାୟ—୭୬

ଜନମେଜୟ ବୋଇଲେ—ଆମ୍ଭମାନଙ୍କର ପୂର୍ବପୁରୁଷ ଯଯାତି ଯେ କି ପ୍ରଜାପତିଙ୍କଠାରୁ ଦଶମ ପୁରୁଷ ଅଟନ୍ତି, ସେ କପରି ଦୁର୍ଲ୍ଲଭ ଶୁକ୍ର ତନୟାଙ୍କୁ ଲାଭ କଲେ ? ହେ ଦ୍ୱିଜୋତ୍ତମ ! ଆମ୍ଭେ ଏ ବିଷୟ ସବିସ୍ତର ଶୁଣିବାକୁ ଇଚ୍ଛା କରୁଅଛୁ । ଆପଣ ପୃଥକ୍ ପୃଥକ୍ ବଂଶକର ରାଜାମାନଙ୍କର ବୃତ୍ତାନ୍ତ ସବୁ ଆନୁପୂର୍ବିକ କୀର୍ତ୍ତନ କରନ୍ତୁ । ୨ ।

ବୈଶମ୍ପାୟନ ବୋଇଲେ, ହେ ଜନମେଜୟ ! ପୂର୍ବକାଳରେ ଯଯାତି ନୃପତି ଦେବରାଜଙ୍କ ସଦୃଶ ପ୍ରତାପୀ ଥିଲେ । ଶୁକ୍ର ଓ ବୃଷପର୍ବା ଋଷି ଯେପରି ତାହାଙ୍କୁ ଜାମାତା କରିଥିଲେ ତାହା ଆପଣ ପ୍ରଶ୍ନ କରିଅଛନ୍ତି । ଆମ୍ଭେ କହୁଅଛୁ ଶୁଣିବା ହେଉନ୍ତୁ । ଏହି ସଚରାଚର ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟ ହେତୁ ସୁରଗଣ ଓ ଅସୁରଗଣଙ୍କ ମଧ୍ୟରେ ଯାହା କଳହ ଉତ୍ପନ୍ନ ହେଲା । ତଦନନ୍ତର ଦେବତାମାନେ ଜୟ ଲଭିବା ଇଚ୍ଛାରେ ଅଙ୍ଗିରାଙ୍କ ପୁତ୍ର ବୃହସ୍ପତିଙ୍କୁ ପୁରୋହିତ ସ୍ୱରୂପ ବରଣ କଲେ ଓ ଅସୁରଗଣ ଶୁକ୍ରଙ୍କୁ ବରଣ କଲେ । ୬ । ସେହି ପୁରୋହିତ ବ୍ରାହ୍ମଣଦ୍ୱୟ ସର୍ବଦା ଆପଣା ମଧ୍ୟରେ

ଅତିଶୟ ସ୍ପର୍ଦ୍ଧା କରୁଥିଲେ । ୭ । ଦେବତାମାନେ ଯୁଦ୍ଧସ୍ଥଳରେ ଯେତେ ଦାନବମାନଙ୍କୁ ସଂହାର କରୁଥିଲେ, ସେମାନଙ୍କୁ ଶୁକ୍ରାଚାର୍ଯ୍ୟ ସଞ୍ଜୀବନୀ ମନ୍ତ୍ରଦ୍ୱାରା ପୁନରୁଜ୍ଜୀବିତ କରୁଥିଲେ । ତହିଁରେ ସେମାନେ ପୁନର୍ବାର ଆସି ଦେବତାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଉଥିଲେ । ୮ । କିନ୍ତୁ ଅସୁରମାନେ ସମର ସ୍ଥଳରେ ଯେଉଁ ଦେବତାମାନଙ୍କୁ ବିନାଶ କରୁଥିଲେ, ସେମାନଙ୍କୁ ଉଦାରବୁଦ୍ଧି ବୃହସ୍ପତି ସଞ୍ଜୀବିତ କରି ପାରୁ ନ ଥିଲେ । କାରଣ ବୀର୍ଯ୍ୟ-ଶାଳୀ ଶୁକ୍ରାଚାର୍ଯ୍ୟ ଯେଉଁ ସଞ୍ଜୀବନୀ ବିଦ୍ୟା ଜାଣିଥିଲେ, ବୃହସ୍ପତି ସେହି ବିଦ୍ୟାକୁ ଅବଗତ ନ ଥିଲେ । ସେହି ହେତୁରୁ ଦେବତାମାନେ ଅତିଶୟ ବିଷଣ୍ଣ ହେଲେ । ୧୦ ।

କବିପୁତ୍ର ଉଶନାଙ୍କ ଠାରୁ ଅତିଶୟ ଭୀତ ହୋଇ ଦେବତାମାନେ ବୃହସ୍ପତିଙ୍କ ଜ୍ୟେଷ୍ଠପୁତ୍ର କଚଙ୍କୁ ଆସି ବୋଇଲେ, ଆମ୍ଭେ ଶରଣାପନ୍ନ ହେଲୁ, ଆମ୍ଭଙ୍କୁ ରକ୍ଷା କର । ଆମ୍ଭର ସାହାଯ୍ୟ କର । ଅମିତତେଜା ଶୁକ୍ରାଚାର୍ଯ୍ୟଙ୍କଠାରେ ଯେଉଁ ସଞ୍ଜୀବନୀ ବିଦ୍ୟା ଅଛି, ତାହା ତୁମ୍ଭେ ସତ୍ୱର ଆହରଣ କର । ଏହା କଲେ ତୁମ୍ଭେ ସବୁବିଷୟରେ ଆମ୍ଭମାନଙ୍କ ସହିତ ଅଂଶୀ ହେବ । ୧୨ । ବୃଷପର୍ବାଙ୍କ ସମୀପରେ ସେହି ବ୍ରାହ୍ମଣଙ୍କ ସହିତ ସାକ୍ଷାତ କରିବାକୁ ତୁମ୍ଭେ ଏକା ସମର୍ଥ ହେବ । ସେଠାରେ ସେ କେବଳ ଦାନବମାନଙ୍କୁ ରକ୍ଷା କରନ୍ତି, ଅନ୍ୟମାନଙ୍କୁ ରକ୍ଷା କରନ୍ତି ନାହିଁ । ୧୩ । ତୁମ୍ଭର ବୟସ ଅଳ୍ପ, ଏ କାରଣରୁ ତୁମ୍ଭେ ତାହାଙ୍କୁ ଆରାଧନା କରିପାରିବ ଓ ତୁମ୍ଭେ ସେହି ମହାତ୍ମାଙ୍କର ପ୍ରିୟତମା କନ୍ୟା ଦେବଯାନୀଙ୍କର ଉପାସନା କରିପାରିବ । ୧୪ । କେବଳ ତୁମ୍ଭେ ଆରାଧନା କରିବାକୁ ସମର୍ଥ, ତୁମ୍ଭ ବ୍ୟତୀତ ଅନ୍ୟ କେହି ପାରିବେ ନାହିଁ; ଦେବଯାନୀ ତୁମ୍ଭର ଶୀଳତା, ଦାକ୍ଷିଣ୍ୟ, ମାଧୁର୍ଯ୍ୟ, ଆଚାର ଓ ଦମ ଦ୍ୱାରା ପରିତୁଷ୍ଟ ହେଲେ ତୁମ୍ଭେ ସେହି ସଞ୍ଜୀବନୀ ବିଦ୍ୟା ଅବଶ୍ୟ ପ୍ରାପ୍ତ ହେବ । ଅନନ୍ତର ବୃହସ୍ପତିଙ୍କ ପୁତ୍ର କଚ ଦେବଗଣଙ୍କ କର୍ତ୍ତୃକ ପୂଜିତ ହୋଇ ବୃଷପର୍ବାଙ୍କ ସମୀପକୁ ଗମନ କଲେ । ୧୭ ।

ହେ ରାଜନ୍ ! ଦେବପ୍ରେରିତ ସେହି କଚ ତ୍ୱରା ପୂର୍ବକ ଗମନ କରି ଅସୁରରାଜଙ୍କ ପୁରୀ ମଧ୍ୟରେ ଶୁକ୍ରଙ୍କୁ ଦେଖି ବୋଇଲେ, ଆମ୍ଭେ ଅଙ୍ଗିରା ଋଷିଙ୍କର ପୌତ୍ର ଓ ବୃହସ୍ପତିଙ୍କର ଔରସ ପୁତ୍ର; ଆମ୍ଭର ନାମ କଚ । ଆପଣ ଆମ୍ଭଙ୍କୁ ଶିଷ୍ୟରୂପେ ଗ୍ରହଣ କରନ୍ତୁ । ହେ ବ୍ରହ୍ମନ୍ ! ଆମ୍ଭେ ଆପଣଙ୍କୁ ଗୁରୁ ସ୍ୱୀକାର କରି ସହସ୍ର ବର୍ଷ ପରମ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବୁ;

ଆମ୍ଭଙ୍କୁ ଅନୁମତି ପ୍ରଦାନ କରନ୍ତୁ । ୨୦ । ଶୁକ୍ର କହିଲେ, ହେ କଚ ! ତୁମ୍ଭର ମଙ୍ଗଳ ହେଉ, ତୁମ୍ଭର ବାକ୍ୟ ସ୍ୱୀକାର କଲୁ । ତୁମ୍ଭେ ଆମ୍ଭର ସମାଦରର ପାତ୍ର । ତୁମ୍ଭଙ୍କୁ ସମାଦର କରିବୁ, ତହିଁରେ ବୃହସ୍ପତିଙ୍କର ମଧ୍ୟ ପୂଜା କରାଯିବାର ହେବ । ୨୧ ।

ବୈଶମ୍ପାୟନ କହିଲେ, କବିପୁତ୍ର ଶୁକ୍ରଙ୍କ ଆଦେଶାନୁସାରେ କଚ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କଲେ । ୨୨ । ହେ ଭାରତ ! କଚ ବ୍ରତକାଳରେ ବ୍ୟାଘାତ ନ କରି ଉପାଧ୍ୟାୟ ଶୁକ୍ର ଓ ଦେବଯାନୀଙ୍କର ଅଭିଯୋଗ ଗ୍ରହଣ କରିବାକୁ ତତ୍ପର ରହିଲେ । ୨୩ । ଯୁବା କଚ ପ୍ରତିଦିନ ନୃତ୍ୟ, ଗୀତ, ବାଦ୍ୟ ଓ ନର୍ତ୍ତନଦ୍ୱାରା ଦେବଯାନୀଙ୍କୁ ସନ୍ତୁଷ୍ଟ କଲେ । ୨୪ । ହେ ଭାରତ ! ଆହୃତ ସେ ପୁଷ୍ପ ଫଳ ପ୍ରଭୃତି ନାନାବିଧ ଦ୍ରବ୍ୟ ଦାନଦ୍ୱାରା ଓ ଭୃତ୍ୟପ୍ରାୟ ଆଜ୍ଞାନୁବର୍ତ୍ତିତା ଦ୍ୱାରା ସମ୍ପ୍ରାପ୍ତଯୌବନା ଦେବଯାନୀଙ୍କୁ ତୁଷ୍ଟ କଲେ । ୨୫ । ଦେବଯାନୀ ମଧ୍ୟ ଗୀତଲଲିତ୍ୟଦ୍ୱାରା ନିୟମ ବ୍ରତଧାରୀ ସେହି ବିପ୍ରଙ୍କୁ ପରିଚର୍ଯ୍ୟା କଲେ । ୨୬ । ଏହିପରି ବ୍ରତଚର୍ଯ୍ୟାରେ କଚଙ୍କର ପଞ୍ଚଶତ ବତ୍ସର ଅତୀତ ହେଲା । ଏହା ବୁଝି ଦିନକରେ ବନ ମଧ୍ୟରେ କଚଙ୍କୁ ଏକାକୀ ଧେନୁରକ୍ଷା କରୁଥିବାର ଦେଖି ଦାନବମାନେ ଅମର୍ଷିତ ହୋଇ ସେ ବୃହସ୍ପତିଙ୍କ ପୁତ୍ର, ଏହି ଦ୍ୱେଷରେ ଓ ସଞ୍ଜୀବନୀ ବିଦ୍ୟା ରକ୍ଷା ନିମିତ୍ତ ଗୋପନରେ ତାହାଙ୍କୁ ହତ କଲେ । ୨୮ । ହତ କରି ତାହାଙ୍କର ଶରୀରକୁ ଖଣ୍ଡ ଖଣ୍ଡ କରି ଶୃଗାଳ ଓ ବୃକମାନଙ୍କୁ ପ୍ରଦାନ କଲେ । ତଦନନ୍ତର ଗୋରୁମାନେ ରକ୍ଷକ ଅଭାବରୁ ଆପଣା ଗୃହକୁ ପ୍ରତ୍ୟାଗମନ କଲେ । ୨୯ । ହେ ଭାରତ ! ଦେବଯାନୀ ଦେଖିଲେ ଯେ କଚ ଆସିନାହାନ୍ତି । କେବଳ ଧେନୁମାନେ ଆସି ଅଛନ୍ତି । କିୟତ୍‌କାଳ ଅପେକ୍ଷା କରି କଚଙ୍କୁ ନ ପାଇ ଦେବଯାନୀ ବୋଇଲେ । ୩୦ ।

ଦେବଯାନୀ ବୋଇଲେ, ପ୍ରଭୋ ! ସୂର୍ଯ୍ୟଦେବ ଅସ୍ତମିତ ହେଲେ, ଆପଣଙ୍କର ଅଗ୍ନିହୋତ୍ର ମଧ୍ୟ ଆହୃତ ହେଲା । ଗୋରୁମାନେ ରକ୍ଷକବିହୀନ ହୋଇ ଗୃହକୁ ପ୍ରତ୍ୟାଗତ ହେଲେ । ତାତ କଚଙ୍କର ଦେଖାନାହିଁ । ହେ ତାତ ! ନିଶ୍ଚୟ ଜଣାଯାଉଅଛି ଯେ କଚ ମୃତ କିମ୍ବା ହତ ହୋଇ ଅଛନ୍ତି । ମୁଁ ଆପଣଙ୍କୁ ସତ୍ୟ କହୁଅଛି ଯେ ତାହାଙ୍କ ବ୍ୟତିରେକେ ମୁଁ ଜୀବନ ଧାରଣ କରିବି ନାହିଁ । ୩୨ ।

ଶୁକ୍ର ବୋଇଲେ, "ହେ କଚ ! ଆଗମନ କର, ତୁମ୍ଭେ ମୃତ ହୋଇଅଛ, ଆମ୍ଭେ ତୁମ୍ଭଙ୍କୁ ସଞ୍ଜୀବିତ କରୁଅଛୁଁ ।" ଏହା କହି, ମୃତ-

ସଞ୍ଜୀବନୀ-ବିଦ୍ୟା ପ୍ରୟୋଗ କରି କଚଙ୍କୁ ଆହ୍ୱାନ କଲେ । ୩୩ । କଚ ଆହୂତ ହେବା ମାତ୍ର ବିଦ୍ୟା ପ୍ରଭାବରେ ହୃଷ୍ଟ ହୋଇ ପ୍ରାଦୁର୍ଭୂତ ହେଲେ ।

ଦେବଯାନୀ କଚଙ୍କୁ ପ୍ରଶ୍ନ କଲେ, କି କାରଣ ତୁମ୍ଭେ ଏତେ ବିଳମ୍ବ କଲ ? କଚ ଉତ୍ତର କଲେ, ହେ ଭାବିନି ! ସମିଧ, କୁଶାଦି ଓ କାଷ୍ଠଭାର ଗ୍ରହଣ କରି ଏହି ଆଶ୍ରମର ନିକଟବର୍ତ୍ତୀ ଗୋଟିଏ ବଟ ବୃକ୍ଷତଳ୍ପାରେ ଗୋବୃନ୍ଦ ସହିତ ଆଶ୍ରୟ ନେଇଥିଲୁଁ, ଅସୁରମାନେ ସେଠାରେ ଆମ୍ଭଙ୍କୁ ଦେଖି 'ତୁ କିଏ' ବୋଲି ପ୍ରଶ୍ନ କଲେ । 'ଆମ୍ଭେ ବୃହସ୍ପତିଙ୍କ ପୁତ୍ର' ଏହା କହିବା ମାତ୍ରକେ ଦାନବମାନେ ଆମ୍ଭଙ୍କୁ ହତ ଓ ଖଣ୍ଡ ଖଣ୍ଡ କରି ଶୃଗାଳ ଓ ବୃକଙ୍କୁ ଦେଇ ସୁଖରେ ନିଜ ଆଳୟକୁ ଗମନ କଲେ । ହେ ଭଦ୍ରେ ! ମହାତ୍ମା ଭାର୍ଗବଙ୍କ ବିଦ୍ୟାଦ୍ୱାରା ଆହୂତ ହେବାରୁ କୌଣସି ପ୍ରକାର ସଞ୍ଜୀବିତ ହୋଇ ତୁମ୍ଭର ସମୀପକୁ ଆଗମନ କଲୁଁ । ୩୪ ।

ପୁନର୍ବାର ଦେବଯାନୀ ତାହାଙ୍କୁ ପୁଷ୍ପାହରଣ କରିବା ନିମିତ୍ତ ବନକୁ ପ୍ରେରଣ କଲେ । ଦାନବମାନେ ତାହାଙ୍କୁ ଦେଖି ହତ ଓ ପେଷଣ କରି ସମୁଦ୍ର ଜଳ ସହିତ ମିଶ୍ରିତ କରିଦେଲେ । କଚଙ୍କର ବିଳମ୍ବ ଦେଖି ଦେବଯାନୀ ପୁନର୍ବାର ପିତାଙ୍କୁ ନିବେଦନ କଲେ । ୩୬ । ଶୁକ୍ରଙ୍କଦ୍ୱାରା ପୁନର୍ବାର ଆହୂତ ହେବାରୁ ଗୁରୁଙ୍କ ପୁତ୍ର କଚ ପୁନର୍ବାର ଆସି ଯାହା ଯାହା ଘଟିଥିଲା, ତାହା ସମସ୍ତ ନିବେଦନ କଲେ । ୩୭ । ତଦନନ୍ତର କିଛିଦିନ ଉତ୍ତାରୁ ଅସୁରମାନେ ତାହାଙ୍କୁ ତୃତୀୟବାର ଦେଖି ଦଗ୍ଧ ଓ ଚୂର୍ଣ୍ଣ କରି ସୁରା ସହିତ ମିଶ୍ରିତ କରି ସେହି ଶୁକ୍ରଙ୍କୁ ପାନ କରିବାକୁ ଦେଲେ । ୩୮ । ଦେବଯାନୀ ମଧ୍ୟ ପୁନର୍ବାର ପିତାଙ୍କୁ କହିଲେ, ତାତ ! ଆମ୍ଭେ କଚଙ୍କୁ ପୁଷ୍ପାହରଣାର୍ଥ ପ୍ରେରଣ କରିଥିଲୁଁ, । ସେ ଏତେବେଳ ଯାଏ ଆସିଲେ ନାହିଁ । ଶୁକ୍ର କହିଲେ, ପୁତ୍ରି ! ବୃହସ୍ପତିଙ୍କ ପୁତ୍ର କଚ ମୃତ ହୋଇଅଛନ୍ତି । ଆମ୍ଭେ ବିଦ୍ୟାପ୍ରଭାବରେ ତାହାଙ୍କୁ ବାରମ୍ବାର ଜୀବିତ କଲୁଁ, କିନ୍ତୁ ଅସୁରମାନେ ତାହାଙ୍କୁ ବାରମ୍ବାର ବଧ କଲେ । ଆମ୍ଭେ କି କରିବୁଁ । ୪୦ ?

ଦେବଯାନୀ ! ତୁମ୍ଭେ ଏପରି ଶୋକ କରନା, ରୋଦନ କରନା, ତୁମ୍ଭ ପ୍ରାୟ ପ୍ରଭାବଶାଳିନୀ ନାରୀଙ୍କର କୌଣସି ନଶ୍ୱର ବ୍ୟକ୍ତି ନିମିତ୍ତ ଶୋକ ପ୍ରକାଶ କରିବା ଅବିଧେୟ । ତୁମ୍ଭ ପ୍ରଭାବରେ ବ୍ରହ୍ମା, ବ୍ରାହ୍ମଣ, ଇନ୍ଦ୍ରାଦି ଦେବବୃନ୍ଦ, ବସୁଗଣ, ଅଶ୍ୱିନୀକୁମାରଯୁଗଳ, ଓ ଅସୁରଗଣ ଓ

ସମସ୍ତ ଜଗତ ପ୍ରଣତ ରହିଅଛନ୍ତି । ଅତଏବ ତୁମ୍ଭର ଶୋକ କରିବା ବିଧେୟ ନୁହେଁ । ଏହି ବ୍ରାହ୍ମଣଙ୍କୁ ଜୀବିତ ରଖିବା ଆମ୍ଭର ଅଶକ୍ୟ ହୋଇଅଛି । ତାହାଙ୍କୁ ପୁନଃ ପୁନଃ ସଞ୍ଜୀବିତ କଲେହେଁ ଅସୁରମାନେ ପୁନଃ ପୁନଃ ହତ କରୁଅଛନ୍ତି । ୪୨ ।

ଦେବଯାନୀ ଉତ୍ତର କଲେ, ବୃଦ୍ଧତମ ଅଙ୍ଗିରା ଯାହାଙ୍କର ପିତାମହ, ତପୋନିଧି ବୃହସ୍ପତି ଯାହାଙ୍କର ପିତା, ଏତାଦୃଶ ଋଷିପୌତ୍ର ଓ ଋଷିପୁତ୍ର ସେହି କଚଙ୍କ ନିମିତ୍ତ କିମ୍ପାଇଁ ଶୋକ ନ କରିବୁଁ । ସେ ସ୍ୱୟଂ ବ୍ରହ୍ମଚାରୀ ଓ ତପୋଧନ ଥିଲେ । ସ୍ୱକୀୟ କର୍ତ୍ତବ୍ୟ କର୍ମରେ ସେ ସଦା ଉତ୍ସାହାନ୍ୱିତ ଓ ଦକ୍ଷ ଥିଲେ । ତାତ ! ସେ ଆମ୍ଭର ଅତିଶୟ ପ୍ରିୟପାତ୍ର ଥିଲେ, ଆମ୍ଭେ ଆଉ ଭୋଜନ କରିବୁ ନାହିଁ । ସେହି କଚଙ୍କ ପଥରେ ଗମନ କରିବୁଁ । ୪୪ ।

ବୈଶମ୍ପାୟନ ବୋଇଲେ, କବିସୁତ ମହର୍ଷି ଶୁକ୍ରାଚାର୍ଯ୍ୟ ଦେବଯାନୀଙ୍କ ଦ୍ୱାରା ଉତ୍ତେଜିତ ହୋଇ, ପୁନଶ୍ଚ ତାହାଙ୍କୁ ଆହ୍ୱାନ କଲେ ଓ କ୍ରୋଧ କରି ବୋଇଲେ, ଯେଉଁ ଅସୁରମାନେ ଆମ୍ଭର ଆଗତ ଶିଷ୍ୟ-ମାନଙ୍କୁ ନଷ୍ଟ କରନ୍ତି, ସେମାନେ ନିଶ୍ଚୟ ଆମ୍ଭ ପ୍ରତି ବିଦ୍ୱେଷାଚରଣ କରନ୍ତି । ୪୫ । ଦୁରାତ୍ମା ଅସୁରମାନେ ଯେପରି ବ୍ୟବହାର କରୁଅଛନ୍ତି, ତହିଁରେ ଆମ୍ଭଙ୍କୁ ବ୍ରହ୍ମହତ୍ୟା ପାତକରେ ପାତକୀ କରୁଅଛନ୍ତି ; ବ୍ରହ୍ମହତ୍ୟା କାହାକୁ ଦଗ୍ଧ ନ କରେ ? ଇନ୍ଦ୍ରଙ୍କୁ ମଧ୍ୟ ଦଗ୍ଧ କରିପାରେ । ଏ ପାପର କି ଧ୍ୱଂସ ଅଛି ? ୪୬ । ଏଣେ ସଞ୍ଜୀବନୀ ବିଦ୍ୟାଦ୍ୱାରା ଆହୂତ କଚ ଗୁରୁଙ୍କ ଜଠରରେ ଥାଇ ଗୁରୁହତ୍ୟା ଭୟରେ ଭୀତ ହୋଇ ଥିରି ଥିରି ଉତ୍ତର କଲେ । ତହିଁରେ ଶୁକ୍ର ତାହାଙ୍କୁ ପଚାରିଲେ, ହେ ବିପ୍ର ! ତୁମ୍ଭେ କେଉଁବାଟେ ଆମ୍ଭ ଉଦରରେ ପ୍ରବିଷ୍ଟ ହୋଇଅଛ ବୋଲ । ୪୭ । କଚ ଉତ୍ତର କଲେ, ହେ ଗୁରୋ ! ଆପଣଙ୍କ ପ୍ରସାଦରୁ ଆମ୍ଭଙ୍କୁ ସ୍ମୃତି ତ୍ୟାଗ କରିନାହିଁ । ଯାହା ଯେପରି ଘଟିଅଛି ତାହା ଆମ୍ଭର ସ୍ମରଣଅଛି । ଗୁରୁଙ୍କ ଉଦର ବିଦାରଣକଲେ କାଳେ ଗୁରୁହତ୍ୟା ଦୋଷ ଲାଗିବ ଓ ଆମ୍ଭ ତପସ୍ୟାର କ୍ଷୟ ହେବ, ଅତଏବ ଆମ୍ଭେ ଆପଣଙ୍କ ଜଠର-ବାସଜନ୍ୟ ଘୋର ଯନ୍ତ୍ରଣା ସହ୍ୟ କରୁଅଛୁଁ । ୪୮ । ହେ କାବ୍ୟ ! ଅସୁରମାନେ ଆମ୍ଭଙ୍କୁ ବଧ, ଦଗ୍ଧ ଓ ଚୂର୍ଣ୍ଣ କରି ସୁରା ସହିତ ମିଶ୍ରିତପୂର୍ବକ ଆପଣଙ୍କୁ ପ୍ରଦାନ କରିଥିଲେ । କିନ୍ତୁ ହେ ବିପ୍ର ! ଆପଣ ଥାଉଁ ଆସୁରୀ ମାୟା କିପରି ବ୍ରାହ୍ମୀମାୟାକୁ ଅତିକ୍ରମ କରିବ ?

ତହିଁରେ ଶୁକ୍ର ଦେବଯାନୀଙ୍କୁ ବୋଇଲେ, ବତ୍ସେ ଏବେ ଦେବଯାନୀ ! କି ପ୍ରକାରେ ତୁମ୍ଭ ପ୍ରିୟ ଅନୁଷ୍ଠାନ କରିବୁଁ ? ଆମ୍ଭର ବିନାଶ ଘଟିଲେ କଚ

ଜୀବିତ ହୋଇପାରନ୍ତି । କାରଣ କଚ ଆମ୍ଭର ଉଦରର ଅଭ୍ୟନ୍ତରରେ ଅଛନ୍ତି । ଆମ୍ଭ ଉଦର ବିଦାରଣ ନ କଲେ ନିର୍ଗତ ହୋଇ ପାରିବେ ନାହିଁ । ୫୦ । ଦେବଯାନୀ ବୋଇଲେ, କଚଙ୍କ ନାଶ ଓ ଆପଣଙ୍କ ଉପଘାତ ଏହି ଦୁଇଗୋଟି ଅଗ୍ନିତୁଲ୍ୟ ଶୋକ ଆମ୍ଭଙ୍କୁ ଦଗ୍ଧ କରୁଅଛି । କଚଙ୍କ ନାଶରେ ଆମ୍ଭର ସୁଖ ନାହିଁ କି ଆପଣଙ୍କ ଉପଘାତରେ ଆମ୍ଭେ ଜୀବିତ ରହିବାକୁ ଅସମର୍ଥ ହେବୁଁ । ୫୧ ।

ତହିଁରେ ଶୁକ୍ର କଚଙ୍କୁ କହିଲେ, ହେ ବୃହସ୍ପତିପୁତ୍ର ! ତୁମ୍ଭେ ତପଃସିଦ୍ଧ ହୋଇଅଛ ଓ ଦେବଯାନୀଙ୍କଠାରେ ଅନୁରକ୍ତ ଅଛ ଓ ଦେବଯାନୀ ମଧ୍ୟ ତୁମ୍ଭଙ୍କୁ ଭଜନା କରୁଅଛନ୍ତି । ଏପରି ସ୍ଥଳେ ଯେବେ ତୁମ୍ଭେ କଚ ରୂପଧାରୀ ଇନ୍ଦ୍ର ନୋହିଥାଅ ତେବେ ଅଦ୍ୟ ତୁମ୍ଭଙ୍କୁ ଏହି ସଞ୍ଜୀବନୀ ବିଦ୍ୟା ଦାନ କରୁଅଛୁଁ, ତାହାକୁ ଲଭ କର । ୫୨ । ବ୍ରାହ୍ମଣ ବ୍ୟତିରେକେ ଅନ୍ୟ ବ୍ୟକ୍ତି ଆମ୍ଭ ଉଦରରେ ପ୍ରବେଶ କରି ଜୀବିତ ନିର୍ଗତ ହୋଇ ନ ପାରେ, ଅତଏବ ତୁମ୍ଭେ ଏହି ବିଦ୍ୟାଲଭ କର । ୫୩ । ତାତ ! ଆମ୍ଭ ଦେହରୁ ନିଷ୍କ୍ରାନ୍ତ ଓ ପୁତ୍ର ସ୍ୱରୂପ ହୋଇ ଆମ୍ଭଙ୍କୁ ଜୀବିତ କର, ଗୁରୁଙ୍କଠାରୁ ବିଦ୍ୟା-ଲଭ କରି କୃତବିଦ୍ୟ ହୋଇ ଧର୍ମପ୍ରତି ଦୃଷ୍ଟି ରଖିବ, କୃତଘ୍ନ ହେବ ନାହିଁ ।

ବୈଶମ୍ପାୟନ କହିଲେ, ବିପ୍ର, କଚ ଗୁରୁଙ୍କଠାରୁ ସଞ୍ଜୀବନୀ ବିଦ୍ୟା ଲଭ କରି ସୂର୍ଯ୍ୟାସ୍ତ ପରେ ପୌର୍ଣ୍ଣମାସୀ ଇନ୍ଦୁପ୍ରାୟ ପ୍ରକାଶମାନ ହୋଇ ତତ୍‌କ୍ଷଣାତ୍ ଶୁକ୍ରଙ୍କ କୁକ୍ଷିଭେଦ କରି ନିର୍ଗତ ହେଲେ । ୫୫ । ସିଦ୍ଧ ସଞ୍ଜୀବନୀ ବିଦ୍ୟାକୁ ଲଭ କରି କଚ ସେହି ବ୍ରହ୍ମରାଶି ଶୁକ୍ରଙ୍କୁ ମୃତ ଓ ପତିତ ଦେଖି ତାହାଙ୍କୁ ଜୀବିତ ଓ ଉତ୍‌ଥାପିତ କରି ଅଭିବାଦନ କଲେ ଓ ବୋଇଲେ, ଯେତେବେଳେ ଆମ୍ଭେ ବିଦ୍ୟାହୀନ ଥିଲୁ ତେତେବେଳେ ଯେ ଆମ୍ଭ ଶ୍ରୋତ ହସ୍ତରେ ବିଦ୍ୟାରୂପ ଅମୃତ ନିଷେକ କରିଥିଲେ ତାହାଙ୍କୁ ଆମ୍ଭେ ପିତାମାତା ସ୍ୱରୂପ ଜ୍ଞାନ କରୁଅଛୁଁ । କୃତଜ୍ଞ ବ୍ୟକ୍ତି ତାହାଙ୍କ ପ୍ରତି ଦ୍ରୋହ କରନ୍ତି ନାହିଁ । ୫୬ ।

ସତ୍ୱର ଦାତା, ସମସ୍ତ ବିଦ୍ୟାମାନଙ୍କର ନିଧାନ ଓ ପୂଜନୀୟ ଗୁରୁଙ୍କୁ ଯେ ଆଦର ନ କରନ୍ତି ସେମାନେ ପ୍ରତିଷ୍ଠାଶୂନ୍ୟ ହୋଇ ପାପ-ଫଳିତ ଲୋକକୁ ଗମନ କରନ୍ତି । ୫୮ ।

ବୈଶମ୍ପାୟନ କହିଲେ, ବିଦ୍ୱାନ ଶୁକ୍ର ସୁରାପାନରୁ ବଞ୍ଚନା ପ୍ରାପ୍ତ ହୋଇ ଓ ଅତି ଘୋର ଜ୍ଞାନ ନାଶକୁ ଲଭି ସେହି ସୁରା ସହିତ ତାଦୃଶ ସୁନ୍ଦର କଚଙ୍କୁ ପାନ କରିଥିବାର ଦେଖିଲେ । କବିପୁତ୍ର ମହାନୁଭବ ଉଶନା ସୁରାପାନ ପ୍ରତି କ୍ରୁଦ୍ଧ ହୋଇ ବିପ୍ରଙ୍କ ହିତ କାମନାରେ ଏହି ବାକ୍ୟ ନିଗଦିତ କଲେ । ଅଦ୍ୟ ପ୍ରଭୃତି ଯେଉଁ ବ୍ରାହ୍ମଣ ମୋହବଶରୁ ମନ୍ଦବୁଦ୍ଧି ହୋଇ ସୁରାପାନ କରିବ, ସେ ବ୍ରାହ୍ମଣ ଧର୍ମରୁ ଚ୍ୟୁତ ହେବ, ତାହାକୁ ବ୍ରହ୍ମହତ୍ୟା ଦୋଷ ଘଟିବ, ଅଥଚ ଇହ ଓ ପରଲୋକରେ ସେ ନିନ୍ଦନୀୟ ହେବ । ୭୧ । ଆମ୍ଭେ ବିପ୍ରଧର୍ମର ଏହି ସୀମା ଓ ମର୍ଯ୍ୟାଦା ସଂସ୍ଥାପନ କଲୁଁ । ଗୁରୁଶୁଶ୍ରୂଷାପରାୟଣ ବ୍ରାହ୍ମଣମାନେ, ଦେବତାମାନେ ଓ ଅନ୍ୟାନ୍ୟ ସମସ୍ତ ଲୋକେ ଏହା ଶ୍ରବଣ କରନ୍ତୁ । ୭୨ । ତପୋନିଧିମାନଙ୍କ ମଧ୍ୟରେ ମହାନୁଭବ ଓ ଅପ୍ରମେୟ ଶୁକ୍ର ଉକ୍ତ ରୂପ କହି ମୂଢ଼ବୁଦ୍ଧି ଦାନବମାନଙ୍କୁ ଆହ୍ୱାନ କରି କହିଲେ—"ରେ ନିର୍ବୋଧ ଦାନବଗଣ ! ଆମ୍ଭସଦୃଶ ପ୍ରଭାବଶାଳୀ ମହାତ୍ମା କଚ ସଞ୍ଜୀବନୀ ବିଦ୍ୟା ପ୍ରଭାବରେ ବ୍ରହ୍ମଭୂତ ହୋଇ ଆମ୍ଭ ସମୀପରେ ବାସ କରିବେ ।" ଏହା କହି ସେ ବିରତ ହେଲେ । ତତ୍ପରେ ଦାନବମାନେ ବିସ୍ମୟାବିଷ୍ଟ ହୋଇ ସ୍ୱ ସ୍ୱ ନିକେତନକୁ ଗମନ କଲେ । ୭୫ । ତଦନନ୍ତର କଚ ଗୁରୁ ଗୃହରେ ସହସ୍ର ସମ୍ୱତ୍ସର ବାସ କରି ଗୁରୁଙ୍କ ଦ୍ୱାରା ଅନୁଜ୍ଞାତ ହୋଇ ତ୍ରିଦଶାଳୟକୁ ଗମନ କରିବାକୁ ଇଚ୍ଛା କଲେ । ୭୬ ।

---

## ଅଧ୍ୟାୟ—୭୭

ବୈଶମ୍ପାୟନ ବୋଇଲେ—କଚଙ୍କର ଗୁରୁକୁଳ ବାସ ଓ ବ୍ରହ୍ମଚର୍ଯ୍ୟ ବ୍ରତସମାପ୍ତିପରେ ଗୁରୁଙ୍କଠାରୁ ବିଦାୟ ହୋଇ ତ୍ରିଦଶାବାସକୁ ଗମନ କରିବା ବେଳେ ଦେବଯାନୀ ତାହାଙ୍କୁ କହିଲେ, ହେ ଅଙ୍ଗିରା ଋଷିଙ୍କ ପୌତ୍ର ! ତୁମ୍ଭେ ଶୀଳତା, ଆଭିଜାତ୍ୟ, ବିଦ୍ୟା, ଦମ ଓ ତପସ୍ୟା ପ୍ରଭାବରେ ଦୀପ୍ତିମାନ ହୋଇଅଛ ଓ ମହାଯଶା ମହର୍ଷି ଅଙ୍ଗିରା ଯେପରି ଆମ୍ଭ ପିତାଙ୍କର ମାନ୍ୟ, ତଦ୍ରୂପ ବୃହସ୍ପତି ମଧ୍ୟ ଆମ୍ଭର ମାନ୍ୟ ଓ ପୂଜ୍ୟ । ହେ ତପୋଧନ ! ଆମ୍ଭେ ଯାହା କହୁଅଛୁଁ ତାହା ଜାଣି ବିବେଚନା କର । ତୁମ୍ଭେ ନିୟମୋପେତ ଓ

ରୁଗ୍ଣ ଥିବା ସମୟରେ ଆମ୍ଭେ ତୁମ୍ଭର ବିଶେଷ ଶୁଶ୍ରୂଷା କରିଥିଲୁଁ । ଏବେ ତୁମ୍ଭେ କୃତବିଦ୍ୟ ହୋଇଅଛ । ଆମ୍ଭେ ତୁମ୍ଭ ପ୍ରତି ଅନୁରକ୍ତ, ଅତଏବ ତୁମ୍ଭେ ମନ୍ତ୍ରୋଚ୍ଚାରଣ ପୂର୍ବକ ଆମ୍ଭର ପାଣି-ଗ୍ରହଣ କର । କଚ ଉତ୍ତର କଲେ, ହେ ଅନବଦ୍ୟାଙ୍ଗି ! ତୁମ୍ଭର ପିତା ଭଗବାନ ଶୁକ୍ର ଯେପରି ଆମ୍ଭର ପୂଜ୍ୟ ଓ ମାନ୍ୟ, ତଦ୍ରୂପ ତୁମ୍ଭେ ମଧ୍ୟ ଆମ୍ଭର ପୂଜନୀୟା ହୋଇଅଛ । ହେ ଭଦ୍ରେ ! ତୁମ୍ଭେ ଆମ୍ଭର ଗୁରୁ ମହାତ୍ମା ଭାର୍ଗବଙ୍କର ପ୍ରାଣ ଅପେକ୍ଷା ପ୍ରିୟତରା କନ୍ୟା; ଅୟି ଦେବଯାନି ! ତୁମ୍ଭର ପିତା ଶୁକ୍ର ଆମ୍ଭର ଗୁରୁ ହୋଇ ଯେପରି ମାନନୀୟ ଅଟନ୍ତି ତୁମ୍ଭେ ମଧ୍ୟ ତଦ୍ରୂପ ; ଅତଏବ ଏପରି ଆମ୍ଭଙ୍କୁ କହିବା ବିଧେୟ ନୁହଇ । ୮ ।

ଦେବଯାନୀ ବୋଇଲେ, ହେ ଦ୍ୱିଜୋତ୍ତମ ! ତୁମ୍ଭେ ଆମ୍ଭର ଗୁରୁ ପୁତ୍ରଙ୍କର ପୁତ୍ର , ଆମ୍ଭ ପିତାଙ୍କର ପୁତ୍ର ନୁହ । ସେହି ହେତୁରୁ ତୁମ୍ଭେ ମଧ୍ୟ ଆମ୍ଭର ପୂଜ୍ୟ ଓ ମାନ୍ୟ ଅଟ । ହେ କଚ ! ତୁମ୍ଭେ ଅସୁରମାନଙ୍କ କର୍ତ୍ତୃକ ପୁନଃ ପୁନଃ ନିହତ ହେବା ଅବଧି ତୁମ୍ଭ ପ୍ରତି ଆମ୍ଭର ଯାଦୃଶୀ ପ୍ରୀତି ତାହା ତୁମ୍ଭେ ଅଦ୍ୟ ସ୍ମରଣ କର । ସୌହାର୍ଦ୍ଦ ଓ ଅନୁରାଗରେ ତୁମ୍ଭ ପ୍ରତି ଆମ୍ଭର ଯେଉଁ ଉତ୍କୃଷ୍ଟ ଭକ୍ତି ତାହା ତୁମ୍ଭେ ଅବଗତ ଅଛ, ଅତଏବ ହେ ଧର୍ମଜ୍ଞ ! ନିରପରାଧିନୀ ତୁମ୍ଭର ଏହି ଅନୁରାଗିଣୀକୁ ତ୍ୟାଗ କରିବା ଉଚିତ ନୁହଇ । ୧୧ । କଚ ବୋଇଲେ—ହେ ଶୁଭବ୍ରତେ ! ଅନିଯୋଜ୍ୟ କାର୍ଯ୍ୟରେ ତୁମ୍ଭେ ଆମ୍ଭଙ୍କୁ ନିୟୁକ୍ତ କରୁଅଛ । ହେ ସୁଭ୍ରୂ ! ଶୁଭେ ! ତୁମ୍ଭେ ଆମ୍ଭର ଗୁରୁଙ୍କ ଅପେକ୍ଷା ଗୁରୁତରା ଅଟ ; ଆମ୍ଭଠାରେ ପ୍ରସନ୍ନ ହୁଅ । ହେ ବିଶାଳାକ୍ଷି ! ଚନ୍ଦ୍ରାନନେ ! ଭଦ୍ରେ ! ଭାବିନି ! କାବ୍ୟଙ୍କର ଯେଉଁ କୁକ୍ଷିରେ ତୁମ୍ଭେ ବାସ କରିଥିଲ ଆମ୍ଭେ ମଧ୍ୟ ସେହିଠାରେ ବାସ କଲୁଁ । ହେ ସୁମଧ୍ୟମେ ! ତୁମ୍ଭେ ଧର୍ମରେ ଆମ୍ଭର ଭଗିନୀ ହୋଇ ଏପରି କହିବା କର୍ତ୍ତବ୍ୟ ନୁହଇ । ହେ ଭଦ୍ରେ ! ଆମ୍ଭେ ଉତ୍ତମ ମନରେ ଅଛୁଁ, ଆମ୍ଭର କ୍ରୋଧ ହୋଇନାହିଁ, ତୁମ୍ଭଙ୍କୁ ଏବେ ବିଦାୟ ପ୍ରାର୍ଥନା କରୁଅଛୁଁ, ପଥରେ ମୋର ମଙ୍ଗଳ ହେଉ ବୋଲି ଆଶୀର୍ବାଦ କର । କଥା-ବସରରେ ଧର୍ମର ଅବିରୋଧ ଭାବରେ ଆମ୍ଭଙ୍କୁ ସ୍ମରଣ କରୁଥିବ; ଓ ସାବଧାନ ହୋଇ ନିତ୍ୟ ଆମ୍ଭର ଗୁରୁଙ୍କର ଆରାଧନା କରୁଥିବ । ୧୫ ।

ଦେବଯାନୀ ବୋଇଲେ, ଆମ୍ଭେ ଧର୍ମ କାମାର୍ଥ ବିଷୟ ତୁମ୍ଭଠାରେ ପୁନଃ ପୁନଃ ପ୍ରାର୍ଥନା କରୁଅଛୁଁ, ଯଦି ତୁମ୍ଭେ ପ୍ରତ୍ୟାଖ୍ୟାନ କରିବ ତେବେ ତୁମ୍ଭର ଏହି ବିଦ୍ୟା ସିଦ୍ଧିପ୍ରାପ୍ତ ହେବ ନାହିଁ । ୧୬ ।

କଚ ବୋଇଲେ, ଆମ୍ଭେ ତୁମ୍ଭଙ୍କୁ ଗୁରୁ-ପୁତ୍ରୀ ବୋଲି ପ୍ରତ୍ୟାଖ୍ୟାନ କଲୁଁ । ଅନ୍ୟ କିଛି ଦୋଷ ଭାବି ପ୍ରତ୍ୟାଖ୍ୟାନ କରିନାହୁଁ । ବିଶେଷତଃ ଗୁରୁ ଆମ୍ଭଙ୍କୁ ଏ ବିଷୟରେ ଅନୁଜ୍ଞା ଦେଇ ନାହାନ୍ତି । ଅତଏବ ତୁମ୍ଭର ଯାହା ଇଚ୍ଛା ଶାପ ପ୍ରଦାନ କର । ୧୭ । ହେ ଦେବଯାନି ! ଆମ୍ଭେ ଆର୍ଷ ଧର୍ମକୁ ଧାରଣ କରିବାରୁ ତୁମ୍ଭେ କାମବଶବର୍ତ୍ତିନୀ ହୋଇ ଆମ୍ଭଙ୍କୁ ଅଭିଶାପ ଦେଉଅଛ; ଧର୍ମପ୍ରମାଣେ ଶାପ ଦେଉନାହଁ । ଅତଏବ ତୁମ୍ଭର ଯେଉଁ କାମନା ତାହା ପୂର୍ଣ୍ଣ ହେବ ନାହିଁ । କୌଣସି ଋଷି ପୁତ୍ର ତୁମ୍ଭର ପାଣିଗ୍ରହଣ କରିବେ ନାହିଁ । ଆଉ ତୁମ୍ଭେ ଯେ ଆମ୍ଭଙ୍କୁ ବୋଇଲ 'ଆମ୍ଭର ବିଦ୍ୟା ସଫଳ ହେବ ନାହିଁ' ତାହା ତଦ୍ରୂପ ହେବ; କିନ୍ତୁ ଆମ୍ଭେ ଯାହାଙ୍କୁ ସେ ବିଦ୍ୟା ଅଧ୍ୟାପନ କରିବୁଁ, ତାହାଙ୍କର ସେହି ସଞ୍ଜୀବନୀ ବିଦ୍ୟା ସଫଳ ହେବ । ୨୦ ।

ବୈଶମ୍ପାୟନ କହିଲେ, ଦ୍ୱିଜଶ୍ରେଷ୍ଠ କଚ ଦେବଯାନୀଙ୍କୁ ଏପରି କହି ତ୍ରିଦଶାଳୟକୁ ଶୀଘ୍ର ପ୍ରତିଗମନ କଲେ । ଇନ୍ଦ୍ର ପ୍ରଭୃତି ଦେବତାମାନେ ତାହାଙ୍କୁ ଆସିବାର ଦେଖି ବୃହସ୍ପତିଙ୍କ ପ୍ରତି ପ୍ରୀତିପୂର୍ବକ ଦୃଷ୍ଟିପାତ କରି କଚଙ୍କୁ କହିଲେ—ଯେଣୁ ତୁମ୍ଭେ ଆମ୍ଭମାନଙ୍କର ପରମାଦ୍ଭୁତ ହିତ କର୍ମ କରିଅଛ, ଅତଏବ ତୁମ୍ଭର ଏ ଯଶ ପ୍ରଣଷ୍ଟ ହେବ ନାହିଁ ଓ ତୁମ୍ଭେ ଆମ୍ଭ-ମାନଙ୍କ ସହିତ ଯଜ୍ଞର ଅଂଶଭାଗୀ ହେବ । ୨୩ ।

---

## ଅଧ୍ୟାୟ—୭୮

ବୈଶମ୍ପାୟନ ବୋଇଲେ, ହେ ଭରତର୍ଷଭ ! ଦେବତାମାନେ କୃତବିଦ୍ୟ କଚଙ୍କୁ ପ୍ରାପ୍ତ ହୋଇ ହୃଷ୍ଟ ହେଲେ ଓ ତାହାଙ୍କଠାରୁ ସେହି ବିଦ୍ୟାକୁ ଅଧ୍ୟୟନ କରି କୃତାର୍ଥ ହେଲେ । ତଦନନ୍ତର ସମସ୍ତ ଦେବତା-ମାନେ ଶତକ୍ରତୁଙ୍କ ନିକଟକୁ ଆସି ତାହାଙ୍କୁ ବୋଇଲେ, ହେ ପୁରନ୍ଦର ! ଆପଣଙ୍କର ବିକ୍ରମ ପ୍ରକାଶ କରିବାର ଏହି ସମୟ, ଏବେ ଶତ୍ରୁମାନଙ୍କୁ ବିନାଶ କର । ୨ । ସେହି ତ୍ରିଦଶମାନେ ମିଳିତ ହୋଇ ଇନ୍ଦ୍ରଙ୍କୁ କହିବାରୁ ମଘବାନ୍ 'ତଥାସ୍ତୁ' ବୋଲି କହି ପ୍ରସ୍ଥାନ କଲେ । ୩ । ଚୈତ୍ରରଥ ସଦୃଶ ଗୋଟିଏ ବନ ମଧ୍ୟରେ କେତେକ ସ୍ତ୍ରୀଲୋକମାନଙ୍କୁ କ୍ରୀଡ଼ା କରୁଥିବାର

ଦେଖି, ଇନ୍ଦ୍ର ବାୟୁରୂପକୁ ଧାରଣ କରି ସେମାନଙ୍କର ସମସ୍ତଙ୍କର ବସ୍ତ୍ର-ମାନଙ୍କୁ ମିଶ୍ରିତ କରିଦେଲେ । ତହିଁରେ ସବୁ କନ୍ୟାମାନେ ଏକାବେଳକେ ଜଳରୁ ନିର୍ଗତ ହୋଇ ଯେ ଯେଉଁ ବସ୍ତ୍ରକୁ ନିକଟରେ ପ୍ରାପ୍ତ ହେଲେ ସେ ସେ ବସ୍ତ୍ରକୁ ଗ୍ରହଣ କଲେ । ୫ । ସେହି କାଳରେ ଦେବଯାନୀଙ୍କ ବସ୍ତ୍ରକୁ ଶର୍ମିଷ୍ଠା ଗ୍ରହଣ କଲେ । ବୃଷପର୍ବାଙ୍କର ଦୁହିତା ବସ୍ତ୍ରମିଶ୍ରଣ ହୋଇଥିବାର ଜାଣି ନ ପାରିଲେ । ହେ ରାଜେନ୍ଦ୍ର ! ତନ୍ନିମିତ୍ତ ସେହିକାଳରେ ଦେବଯାନୀ ଓ ଶର୍ମିଷ୍ଠାଙ୍କ ମଧ୍ୟରେ ବିରୋଧ ଜାତ ହେଲା । ଦେବଯାନୀ ବୋଇଲେ, ରେ ଆସୁରି ! ତୁ ଶିଷ୍ୟା ହୋଇ ମୋର ବସ୍ତ୍ର କି ହେତୁରୁ ଗ୍ରହଣ କରୁଅଛୁ ? ତୁ ଶିଷ୍ଟାଚାର-ବହିନା ହୋଇଥିବାରୁ ତୋର ମଙ୍ଗଳ ହେବ ନାହିଁ । ଶର୍ମିଷ୍ଠା କହିଲେ, ଆମ୍ଭର ପିତା ଯେତେବେଳେ ଶୟନ କରିଥାନ୍ତି କି ଆସୀନ ଥାନ୍ତି, ସେତେବେଳେ ତୁମ୍ଭ ପିତା ନୀଚ ପ୍ରଦେଶରେ ଦଣ୍ଡାୟମାନ ହୋଇ ବନ୍ଦୀ ପ୍ରାୟ ବିନୀତ ଭାବରେ ସର୍ବଦା ତାହାଙ୍କର ସ୍ତବ କରୁଥାନ୍ତି । ତୁମ୍ଭେ ଯାଚକ, ସ୍ତାବକ ଓ ପ୍ରତିଗ୍ରହକାରୀର ଦୁହିତା । ଆମ୍ଭେ ଦାତା ଓ ସ୍ତୂୟମାନ ଓ ଅପ୍ରତିଗ୍ରହକାରୀର ସୁତା । ୧୦ । ରେ ଯାଚକି ! ତୁ ଆକ୍ରୋଶ କର ବା ଦୁଃଖିତ ହୋ, ଦ୍ରୋହ କର୍ ବା କୋପ କର୍; ରେ ଭିକ୍ଷୁକି ! ତୁ ଅନାୟୁଧା ହୋଇ ସାୟୁଧା ସହିତ ପ୍ରତିଦ୍ୱନ୍ଦୀ ହେବାକୁ ଇଚ୍ଛା କରୁ; ତୋର କ୍ଷୋଭ ବୃଥା, ମୁଁ ତତେ ଗଣନା କରେ ନାହିଁ । ୧୧ ।

ବୈଶମ୍ପାୟନ ବୋଇଲେ—ଦେବଯାନୀଙ୍କୁ ବସନ ନିମିତ୍ତ ଅତିଶୟ ଆସକ୍ତ ଓ ଆପଣାର ବଡାଇ କରୁଥିବାର ଦେଖି ଶର୍ମିଷ୍ଠା ତାହାଙ୍କୁ କୂପରେ ନିକ୍ଷିପ୍ତ କରି ନିଜପୁରକୁ ଆଗତ ହେଲେ । ପାପକାରିଣୀ ଶର୍ମିଷ୍ଠା କ୍ରୋଧ-ପରାୟଣା ହୋଇ ଦେବଯାନୀଙ୍କୁ ମରି ଯାଇଥିବାର ଭାବି ତାହାଙ୍କୁ ଆବେକ୍ଷଣ ନ କରି ନିଜ ବେଶ୍ମକୁ ଗଲେ । ଏଥି ଉତ୍ତାରୁ ନହୁଷ ରାଜାଙ୍କର ଆତ୍ମଜ ଯଯାତି ମୃଗଲିପ୍ସୁ ଓ ପିପାସିତ ହୋଇ ସେହି ସ୍ଥାନରେ ଉପସ୍ଥିତ ହେଲେ । ତାହାଙ୍କ ରଥର ଅଶ୍ୱମାନେ ମଧ୍ୟ ଅତି ଶ୍ରାନ୍ତ ହୋଇଥିଲେ । ୧୪ । ସେହି ନହୁଷ କୂପରେ ଦେଖିଲେ ଯେ ଜଳ ନାହିଁ କିନ୍ତୁ କୂପ ମଧ୍ୟରେ ଅଗ୍ନିଶିଖା ପ୍ରାୟ ଗୋଟିଏ କନ୍ୟା ଦର୍ଶନ କଲେ । ୧୫ । ରାଜା ସେହି ଦେବଯୋଗ୍ୟ କନ୍ୟାଙ୍କୁ ଦେଖି ମଧୁର ବଚନଦ୍ୱାରା ସାନ୍ତ୍ୱନା ପୂର୍ବକ ପ୍ରଶ୍ନ କଲେ, ତୁମ୍ଭେ କିଏ ? ତୁମ୍ଭର ନଖମାନେ ତାମ୍ରବର୍ଣ୍ଣ ଦିଶୁଅଛନ୍ତି, ତୁମ୍ଭର ମଣି ଓ କୁଣ୍ଡଳ ଏତେ ଉଜ୍ଜ୍ୱଳ ଦିଶୁଅଛି । ଅଥଚ ତୁମ୍ଭେ ଶ୍ୟାମା *

* ଅତଗୌରୀ, ଷୋଡ଼ଶବର୍ଷା, ଅପ୍ରସୂତା ଅଙ୍ଗନାକୁ 'ଶ୍ୟାମା' ବୋଲଯାଏ ।

ହୋଇ କି କାରଣ ଏତେ ଆତୁର, ଚିନ୍ତା ଓ ଶୋକାନ୍ୱିତା ହୋଇଅଛ ? ଅୟି ସୁମଧ୍ୟମେ ! ତୁମ୍ଭେ କିପରି ତୃଣଲତାବୃତ ଏହି କୂପରେ ପତିତ ହେଲ ? ତୁମ୍ଭେ କାହାଙ୍କ ଦୁହିତା ସତ୍ୟ କରି କହ । ୧୮ ।

ଦେବଯାନୀ ବୋଇଲେ—ଦେବତାଙ୍କ ଦ୍ୱାରା ହତ ହେଲେ, ଦୈତ୍ୟମାନଙ୍କୁ ଯେ ସଞ୍ଜୀବନୀ ବିଦ୍ୟାଦ୍ୱାରା ଜୀବିତ କରନ୍ତି ଆମ୍ଭେ ସେହି ଶୁକ୍ରଙ୍କର ଦୁହିତା । ଏ ବିଷୟମାନ ତାହାଙ୍କୁ ଜଣାନାହିଁ । ଆମ୍ଭର ଏହି ତାମ୍ରନଖାଙ୍ଗୁଳି ଦକ୍ଷିଣ ପାଣିକୁ ଗ୍ରହଣ କରି ଆମ୍ଭଙ୍କୁ ଉଦ୍ଧାର କର । ଆମ୍ଭେ ଜାଣିବାରେ ତୁମ୍ଭେ କୁଳୀନ ଅଟ । ୨୦ । ତୁମ୍ଭଙ୍କୁ ଶାନ୍ତ, ବୀର୍ଯ୍ୟଶାଳୀ ଓ ଯଶସ୍ୱୀ ବୋଲି ଆମ୍ଭେ ଦେଖୁଅଛୁଁ । ଆମ୍ଭେ କୂପରେ ପତିତ; ଅତଏବ ଆମ୍ଭଙ୍କୁ ଏଥିରୁ ଉଦ୍ଧାର କର । ୨୧ ।

ବୈଶମ୍ପାୟନ ବୋଇଲେ—ନହୁଷାତ୍ମଜ ରାଜା ଯଯାତି ତାହାଙ୍କୁ ବ୍ରାହ୍ମଣୀ ଜାଣି ତାହାଙ୍କର ଦକ୍ଷିଣ କର ଗ୍ରହଣ କରି ସେହି ଗର୍ତ୍ତରୁ ଉତ୍ଥିତ କଲେ । ନରାଧିପ ଯଯାତି ସେହି ସୁଶ୍ରୋଣୀଙ୍କୁ ଶୀଘ୍ର କୂପରୁ ଉଠାଇ ତାହାଙ୍କୁ ସମୁଚିତ ସମ୍ଭାଷଣ କରି ନିଜର ନଗରକୁ ଗମନ କଲେ । ୨୩ । ନହୁଷ-ତନୟ ନିଜର ରାଜଧାନୀକୁ ପ୍ରସ୍ଥାନ କଲାରୁ ଘୂର୍ଣ୍ଣିକା ନାମ୍ନୀ ଗୋଟିଏ ଦାସୀ ସହସା ଦେବଯାନୀଙ୍କ ସମୀପରେ ଉପସ୍ଥିତ ହେଲା । ଦେବଯାନୀ ବାଷ୍ପାକୁଳିତ ଲୋଚନରେ ତାହାଙ୍କୁ ବୋଇଲେ, ଘୂର୍ଣ୍ଣିକେ ! ତୁମ୍ଭେ ସତ୍ୱର ଆମ୍ଭ ପିତାଙ୍କ ନିକଟକୁ ଯାଇ ଜଣାଅ ଯେ ଶର୍ମିଷ୍ଠା ଆମ୍ଭର ଏହି ଦୁର୍ଦ୍ଦଶା ଉପସ୍ଥିତ କରି-ଅଛି, ଆମ୍ଭେ ଆଉ ବୃଷପର୍ବା ରାଜାଙ୍କ ନଗରକୁ ପ୍ରବେଶ କରିବୁ ନାହିଁ । ୨୫ ।

ବୈଶମ୍ପାୟନ ବୋଇଲେ—ଦେବଯାନୀଙ୍କ ଆଦେଶ ପ୍ରାପ୍ତ ମାତ୍ର ଘୂର୍ଣ୍ଣିକା ଦ୍ରୁତ ପଦରେ ଅସୁର ମନ୍ଦିର ମଧ୍ୟରେ ପ୍ରବେଶ କରି ସମ୍ଭ୍ରମାବିଷ୍ଟ ଚିତ୍ତରେ ଶୁକ୍ରଙ୍କ ସନ୍ନିଧାନରେ ଉପସ୍ଥିତ ହୋଇ ଦେବଯାନୀଙ୍କ ବୃତ୍ତାନ୍ତ ଆଦ୍ୟୋପାନ୍ତ ସମସ୍ତ ନିବେଦନ କଲେ । ମହର୍ଷି ଶୁକ୍ର ଶୁଣିବା ମାତ୍ର ଉତ୍ଥିତ ହୋଇ ବନମଧ୍ୟକୁ କନ୍ୟାଙ୍କ ଅନ୍ୱେଷଣରେ ଗମନ କଲେ ଓ ଅବିଳମ୍ବରେ ତାହାଙ୍କ ସନ୍ନିକଟରେ ଉପସ୍ଥିତ ହୋଇ ଦେବଯାନୀଙ୍କୁ ବିଲୋକନ କରି ବାତ୍ସଲ୍ୟ ଭାବରେ ଆଲିଙ୍ଗନ କରି ଗଦ୍‌ଗଦ ବଚନରେ କହିଲେ, ଦେବଯାନି ! ଆପଣାର ସୁକୃତ ଓ ଦୁଷ୍କୃତ ଅନୁସାରେ ସମସ୍ତେ ସୁଖ ଦୁଃଖ ଭୋଗ କରନ୍ତି । ବୋଧହୁଏ ତୁମ୍ଭେ କୌଣସି ପାପକର୍ମ କରି-ଥିଲ, ତାହାରି ଫଳ ଭୋଗ କରୁଅଛ । ୩୦ ।

ଦେବଯାନୀ ବୋଇଲେ—ମୋହର ଦୁଷ୍କୃତ ହେଉ ବା ନ ହେଉ, ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠା ମୋତେ ଯାହା କହିଅଛି ତାହା ଆପଣ ଅବହିତ ହୋଇ ଶୁଣ । ଆପଣ ଯେ ଦୈତ୍ୟମାନଙ୍କର ସ୍ତୁତିକାରୀ ଏହା କି ସେ ସତ୍ୟ କହିଅଛି ? ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠା କ୍ରୋଧରେ ରକ୍ତନୟନା ହୋଇ ଏହିପରି ନିଷ୍ଠୁର ଓ ତୀକ୍ଷ୍ଣବଚନ ବାରମ୍ବାର କହିଅଛି—"ତୁ ସର୍ବଦା ସ୍ତୁତିକାରୀ, ଯାଚଞ୍ଜାକାରୀ ଓ ପ୍ରତିଗ୍ରହୀତାର ଦୁହିତା ଓ ମୁଁ ସ୍ତୂୟ-ମାନର ଦୁହିତା; ମୋର ପିତା ଦାତା, ଅପ୍ରତିଗ୍ରହୀତା ଅଟନ୍ତି ।" ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠା କ୍ରୋଧରେ ଅତିଶୟ ରକ୍ତନୟନା ହୋଇ ସଦର୍ପରେ ଉକ୍ତ ରୂପ ମତେ ପୁନଃ ପୁନଃ କହିଲା, ତାତ ! ଯେଣୁ ମୁଁ ସ୍ତୁତିକାରୀ ଓ ପ୍ରତିଗ୍ରହୀତାର ଦୁହିତା, ତେଣୁ ମୁଁ ଶର୍ମିଷ୍ଠାକୁ ବୋଇଲି ଯେ ମୁଁ ତାହାକୁ ପ୍ରସନ୍ନ କରିବି । ୩୫ ।

ଶୁକ୍ର ବୋଇଲେ—ଦେବଯାନି ! ତୁମ୍ଭେ ସ୍ତୁତିକାରୀ ପ୍ରତିଗ୍ରହକାରୀ ଓ ଯାଚକର ଦୁହିତା ନୁହ । ତୁମ୍ଭେ ଅସ୍ତୋତା ଓ ସ୍ତୂୟମାନର ଦୁହିତା ଅଟ । ୩୬ । ଇନ୍ଦ୍ର, ବୃଷପର୍ବା ଓ ନହୁଷପୁତ୍ର ଯଯାତି ଜାଣନ୍ତି ଯେ ଆମ୍ଭର ଅଚିନ୍ତ୍ୟମୟ, ନିର୍ଦ୍ଦ୍ୱନ୍ଦ, ଐଶ୍ୱରିକ ବ୍ରହ୍ମବଳ ଅଛି । ସ୍ୱୟମ୍ଭୁ ବ୍ରହ୍ମା ତୁଷ୍ଟ ହୋଇ ମତେ କହିଅଛନ୍ତି ଯେ ଭୂତଳରେ କିମ୍ବା ସ୍ୱର୍ଗରେ ଯାହା ଯାହା ଅଛି, ସେ ସବୁର ଆମ୍ଭେ ଈଶ୍ୱର । ୩୮ । ପ୍ରଜାଙ୍କ ହିତକାମନାରେ ଆମ୍ଭେ ଜଳ ବର୍ଷଣ କରୁଁ ଏ କଥା ତୁମ୍ଭଙ୍କୁ ଆମ୍ଭେ ସତ୍ୟ କହୁଅଛୁଁ । ୩୯ ।

ବୈଶମ୍ପାୟନ ବୋଇଲେ—ଉକ୍ତ ପ୍ରକାରେ ଶୁକ୍ର ମଧୁର ଓ କୋମଳ ବଚନଦ୍ୱାରା ବିଷାଦଗ୍ରସ୍ତା ଓ କ୍ରୋଧପୀଡ଼ିତା କନ୍ୟାକୁ ସାନ୍ତ୍ୱନା କଲେ । ୪୦ ।

---

## ଅଧ୍ୟାୟ—୭୯

ଶୁକ୍ର ବୋଇଲେ, ଦେବଯାନି ! ଯେ ଅପର ବ୍ୟକ୍ତିଦ୍ୱାରା ନିନ୍ଦିତ ହୋଇ ନିନ୍ଦା ବାକ୍ୟ ସହ୍ୟ କରନ୍ତି ସେ ଏହି ଜଗତକୁ ଜୟ କଲେ ବୋଲି ଜାଣିବ । ଅଶ୍ୱକୁ ନିଗ୍ରହ କଲା ପ୍ରାୟ ଯେ ଉପସ୍ଥିତ କ୍ରୋଧକୁ ନିଗ୍ରହ କରନ୍ତି ତାହାକୁ ସଜ୍ଜନମାନେ ଯନ୍ତା ବୋଲନ୍ତି; ଯେ ଅଶ୍ୱର ରଶ୍ମି ଧରିଥାଏ

ତାହାକୁ ସନ୍ତ ବୋଲନ୍ତି ନାହିଁ । ହେ ଦେବଯାନି ! ଯେ ସମୁତ୍ପନ୍ନ କ୍ରୋଧକୁ ଅକ୍ରୋଧଦ୍ୱାରା ନିରସ୍ତ କରନ୍ତି ସେ ଏହି ସମସ୍ତ ବିଶ୍ୱକୁ ଜିଣିଲେ ବୋଲି ଜାଣ । ୩ । ସର୍ପ ଆପଣାର ଜୀର୍ଣ୍ଣଚର୍ମକୁ ତ୍ୟାଗ କଲା ପ୍ରାୟ ଯେ କ୍ରୋଧକୁ କ୍ଷମାଦ୍ୱାରା ନିରସ୍ତ କରନ୍ତି ତାହାଙ୍କୁ ପୁରୁଷ ବୋଲି; ଯେ କ୍ରୋଧକୁ ସମ୍ୟକ୍‌ରୂପେ ଧାରଣ କରନ୍ତି, ଯେ ଅତିଗୁଡ଼ାଏ ନିନ୍ଦାବାଦ-ତ୍ୟାଗ କରନ୍ତି, ଯେ ସ୍ୱୟଂ ସନ୍ତପ୍ତ ହୋଇ ପରକୁ ତପ୍ତ ନ କରନ୍ତି ନିଶ୍ଚୟ ସେ ପୁରୁଷାର୍ଥ ଚତୁଷ୍ଟୟର ଭାଜନ ବୋଲି ଜାଣିବ । ୫ । ଯେଉଁ ବ୍ୟକ୍ତି ଅପରିଶ୍ରାନ୍ତ ହୋଇ ପ୍ରତି ମାସରେ ଯଜ୍ଞ କରି ଶତ ବର୍ଷ ପର୍ଯ୍ୟନ୍ତ ତଦ୍ରୂପ ଯଜ୍ଞ କରନ୍ତି ତାହାଙ୍କଠାରୁ ଯେ କଦାପି କ୍ରୁଦ୍ଧ ନ ହୁଅନ୍ତି ସେ ଅଧିକ । ୬ । ଅଜ୍ଞାନ କୁମାର ଓ କୁମାରୀମାନେ ଯେଉଁ ବୈରିତା କରନ୍ତି ପ୍ରାଜ୍ଞ ବ୍ୟକ୍ତି ତାହାର ଅନୁକରଣ କରନ୍ତି ନାହିଁ, କାହିଁକି ବାଳକବାଳିକାମାନେ ବଳାବଳ ବିଷୟ ଜ୍ଞାତ ଥାନ୍ତି ନାହିଁ । ୭ । ଦେବଯାନୀ ଉତ୍ତର କଲେ, ପିତଃ, ଆମ୍ଭେ ବାଳିକା ହୋଇ ସୁଦ୍ଧା ଧର୍ମାଧର୍ମ ଜାଣୁଁ, ଅକ୍ରୋଧ ଓ କ୍ରୋଧର ବଳାବଳ ମଧ୍ୟ ଜାଣୁଁ, ପରନ୍ତୁ ଯେଉଁ ବ୍ୟକ୍ତି ଶିଷ୍ୟ ହୋଇ ଶିଷ୍ୟର ବ୍ୟବହାର ନ କରେ ତାହାକୁ ମଙ୍ଗଳାର୍ଥୀ ବ୍ୟକ୍ତିର କ୍ଷମା କରିବା ବିଧେୟ ନୁହଇ, ଅତଏବ ସେହି ନିକୃଷ୍ଟ ବ୍ୟକ୍ତିଙ୍କ ଦେଶରେ ବାସ କରିବାକୁ ଆମ୍ଭର ଅଭିରୁଚି ହେଉନାହିଁ । ୯ । ଯେଉଁ ସଜ୍ଜନ ଲୋକେ ଆମ୍ଭର ବ୍ୟବହାର ଓ କୌଳିନ୍ୟ ଘେନି ସର୍ବଦା ପରନିନ୍ଦା କରନ୍ତି ସେହି ପାପିଷ୍ଠଙ୍କ ନିକଟରେ ବାସ କରିବା ଉଚିତ ନୁହଇ । ୧୦ । ଯେଉଁମାନେ କୁଳଶୀଳ ଜ୍ଞାତ ଅଛନ୍ତି ତାହାଙ୍କ ମଧ୍ୟରେ ବାସ କରିବା ବିଧେୟ ଓ ସେହି ବାସ ଶ୍ରେଷ୍ଠ ଅଟଇ । ୧୧ । ଯେଉଁ ପ୍ରକାରେ ଅଗ୍ନି-କାମ-ବ୍ୟକ୍ତି ଅରଣି କାଷ୍ଠକୁ ନିର୍ମଥିତ କରଇ ତଦ୍ରୂପ ବୃଷପର୍ବା ଦୁହିତାର ଘୋର ଦୁର୍ବାକ୍ୟ ମୋହର ମଥନ କରୁଅଛି । ୧୨ । ମୁଁ ବୋଧ କରେ ଯେ ସ୍ୱୟଂ ଦରିଦ୍ର ହୋଇ ଐଶ୍ୱର୍ଯ୍ୟଶାଳୀ ଶତ୍ରୁଙ୍କର ଉପାସନା କରିବା ଅପେକ୍ଷା ତ୍ରିଲୋକରେ ଦୁଷ୍କରତର କାର୍ଯ୍ୟ ଆଉ କିଛି ନାହିଁ । ବିଦ୍‌ବଜ୍ଜନମାନେ ବୋଲନ୍ତି ଯେ ସେପରି ଲୋକର ମରଣ ଶୋଭନ ଅଟଇ । ୧୪ ।

---

# ଅଧ୍ୟାୟ—୮୦

ବୈଶମ୍ପାୟନ ବୋଇଲେ—ତଦନନ୍ତର ଭୃଗୁକୁଳଶ୍ରେଷ୍ଠ ଶୁକ୍ର କ୍ରୋଧରେ ବୃଷପର୍ବାଙ୍କ ନିକଟକୁ ଯାଇ କିଞ୍ଚିନ୍ମାତ୍ର ବିଚାର ନ କରି କହିଲେ, ରାଜନ୍! ଅଧର୍ମାଚରଣ କଲେ ସଦ୍ୟ ତାହାର ଫଳ ହୁଅଇ ନାହିଁ ସତ୍ୟ; କିନ୍ତୁ ଭୂମି ଯେପରି କର୍ଷଣାଦିଦ୍ୱାରା ଯଥାକାଳରେ ଫଳବତୀ ହୁଅଇ ସେହିପ୍ରାୟ ଅଧର୍ମ ମଧ୍ୟ କ୍ରମଶଃ ଆବର୍ତ୍ତିମାନ ହୋଇ ଅଧର୍ମାଚାରୀର ମୂଳ-ଚ୍ଛେଦ କରଇ । ଯେପରି ଗୁରୁତର ଭୋଜନଦ୍ୱାରା ତତ୍‌କ୍ଷଣାତ୍ ଅପକାର ନ ହେଲେହେଁ ପରିଣାମରେ ଅବଶ୍ୟ ଅପକାର ଦର୍ଶେ, ତଦ୍‌ବତ୍ ଯଦ୍ୟପି କି ପାପକର୍ମର ଫଳ ଆପଣଙ୍କଠାରେ ଦେଖା ନ ଯାଏ ତଥାପି ପୁତ୍ର କିମ୍ବା ପୌତ୍ରଙ୍କଠାରେ ତାହା ଅବଶ୍ୟ ଫଳିବ ।୩। ଅପାପଶୀଳ, ଧର୍ମଜ୍ଞ, ଗୁରୁ-ଶୁଶ୍ରୂଷୁ ଓ ଆମ୍ଭ ଗୃହସ୍ଥିତ ଅଙ୍ଗିରାଙ୍କ ପୌତ୍ର ଅବଧ୍ୟ; କଚଙ୍କୁ ଯେଣୁ ତୁମ୍ଭେମାନେ ବଧ କଲ ଓ ଯେଣୁ ତୁମ୍ଭ ଦୁହିତା ଶର୍ମିଷ୍ଠା ଆମ୍ଭ କନ୍ୟାକୁ ପ୍ରାୟ ବଧ କରିଥିଲା, ଏଣୁ ହେ ବୃଷପର୍ବନ୍ ! ତୁମ୍ଭେ ନିଶ୍ଚୟ ଜାଣିବ ଯେ ତୁମ୍ଭଙ୍କୁ ଓ ତୁମ୍ଭର ବାନ୍ଧବମାନଙ୍କୁ ଆମ୍ଭେ ପରିତ୍ୟାଗ କରିବୁଁ । ହେ ରାଜନ୍ ! ଆମ୍ଭେ ତୁମ୍ଭ ରାଜ୍ୟରେ ରହିପାରିବୁ ନାହିଁ । ହେ ଦୈତ୍ୟ ! ତୁମ୍ଭେ ଆମ୍ଭଙ୍କୁ ମିଥ୍ୟାପ୍ରଲାପୀ ବୋଲି ଜାଣୁଅଛ । ଆପଣାର ଦୋଷକୁ ନିଗ୍ରହ ନ କରି ଉପେକ୍ଷା କରୁଅଛ ।୬। ବୃଷପର୍ବା କହିଲେ, ହେ ଭାର୍ଗବ ! ଆମ୍ଭେ ଆପଣଙ୍କୁ ମିଥ୍ୟାବାଦୀ ଅଥବା ଅଧାର୍ମିକ ବୋଲି ଜାଣୁନା; ଅତଏବ ଆପଣ ଆମ୍ଭପ୍ରତି ପ୍ରସନ୍ନ ହୁଅନ୍ତୁ ।୭। ହେ ଭାର୍ଗବ ! ଯଦି ଆପଣ ଆମ୍ଭମାନଙ୍କୁ ପରିତ୍ୟାଗ କରି ଏଠାରୁ ଗମନ କରନ୍ତି, ତେବେ ଆମ୍ଭେମାନେ ନିଶ୍ଚୟ ସମୁଦ୍ରରେ ପ୍ରବେଶ କରିବୁଁ । କାରଣ ଆପଣଙ୍କ ବ୍ୟତିରେକେ ଆମ୍ଭ-ମାନଙ୍କର ଆଉ ଗତି ନାହିଁ ।୮।

ଶୁକ୍ର ବୋଇଲେ, ହେ ଅସୁରମାନେ ! ତୁମ୍ଭେ ସମୁଦ୍ରରେ ପ୍ରବେଶ କର, ଅଥବା ଦିଗନ୍ତରେ ଧାବମାନ ହୁଅ, ଆମ୍ଭର ସ୍ନେହାସ୍ପଦ ଦୁହିତାର ଅପ୍ରିୟ କରିପାରିବୁ ନାହିଁ ।୯। ବୃହସ୍ପତି ଯେପରି ଇନ୍ଦ୍ରଙ୍କର କ୍ଷେମକାରୀ, ଆମ୍ଭେ ମଧ୍ୟ ତଦ୍ରୂପ, କିନ୍ତୁ ଆମ୍ଭ ଜୀବନ ଦେବଯାନୀଙ୍କର ଅଧୀନ; ଅତଏବ ଦେବଯାନୀଙ୍କୁ ପ୍ରସନ୍ନ କର ।୧୦। ବୃଷପର୍ବା କହିଲେ, ହେ ଭାର୍ଗବ ! ଏହି ଭୂମଣ୍ଡଳରେ ଅସୁରମାନଙ୍କର ଯେଉଁ ହସ୍ତୀ, ଗୋ, ଅଶ୍ୱ ଓ

ଧନ ସମ୍ପତ୍ତି ଅଛି, ଆପଣ ସେହି ସମୁଦାୟର ଓ ଆମ୍ଭର ମଧ୍ୟ ଅଧିପତି । ୧୧ । ଶୁକ୍ର ବୋଇଲେ, ହେ ମହାସୁର ! ଅସୁରମାନଙ୍କର ସମସ୍ତ ସମ୍ପତ୍ତିର ଆମ୍ଭେ ଅଧିକାରୀ ହେଲେହେଁ ତୁମ୍ଭେ ଦେବଯାନୀଙ୍କୁ ପ୍ରସନ୍ନ କର । ୧୨ ।

ବୈଶମ୍ପାୟନ କହିଲେ, ଭାର୍ଗବଙ୍କର ତଦ୍ରୂପ ବାକ୍ୟ ଶ୍ରବଣରେ ମହାକବି ବୃଷପର୍ବା ସମ୍ମତ ହେଲେ । ଭାର୍ଗବ ଦେବଯାନୀଙ୍କ ନିକଟକୁ ଗମନ କରି ସେହି ସମସ୍ତ ବୃତ୍ତାନ୍ତ ଜଣାଇଲେ । ୧୩। ଦେବଯାନୀ ବୋଇଲେ, ତାତ ଭାର୍ଗବ ! ଆପଣ ଯେ ରାଜାଙ୍କର ସମସ୍ତ ବିତ୍ତର ଅଧୀଶ୍ୱର, ତାହା ଆମ୍ଭେ ଜାଣୁନାହୁଁ ; ରାଜା ତାହା ସ୍ୱୟଂ ବୋଲନ୍ତୁ । ବୃଷପର୍ବା ବୋଇଲେ, ଶୁଚିସ୍ମିତେ ଦେବଯାନି ! ତୁମ୍ଭର ଯେଉଁ କାମନା ଅଛି, ତାହା ବୋଲ । ଦୁର୍ଲ୍ଲଭ ହେଲେ ମଧ୍ୟ ଆମ୍ଭେ ତାହା ସମ୍ପନ୍ନ କରିବୁଁ । ଦେବଯାନୀ ବୋଇଲେ, ସହସ୍ର କନ୍ୟା ସହିତ ଶର୍ମ୍ମିଷ୍ଠା ଆମ୍ଭର ଦାସୀ ହେଉନ୍ତୁ । ଆମ୍ଭର ପିତା ଆମ୍ଭଙ୍କୁ ଯେଉଁଠାରେ ଦେବେ, ସେହିଠାକୁ ଆମ୍ଭର ଅନୁ-ଗାମିନୀ ହେବେ । ୮ ।

ବୃଷପର୍ବା ସମୀପସ୍ଥା ଧାତ୍ରୀକୁ କହିଲେ, ଧାତ୍ରି ! ଉଠ ତୁମ୍ଭେ ଶୀଘ୍ର ଶର୍ମ୍ମିଷ୍ଠାଙ୍କୁ ଆଣ; ଦେବଯାନୀ ଯାହା ତାହାଙ୍କୁ କହିବେ, ତାହା ସେ କରନ୍ତୁ । ୧୭ ।

ବୈଶମ୍ପାୟନ ବୋଇଲେ, ଧାତ୍ରୀ ଅନ୍ତଃପୁରକୁ ଗମନ କରି ଜଣାଇଲେ, ଭଦ୍ରେ ଶର୍ମ୍ମିଷ୍ଠେ ! ଉତ୍ଥାନ କର, ଜ୍ଞାତିମାନଙ୍କର ସୁଖ ବିଧାନ କର । ୧୮ । ଦେବଯାନୀଙ୍କ ବାକ୍ୟରେ ପ୍ରଚୋଦିତ ହୋଇ ଶୁକ୍ର ଆପଣାର ଶିଷ୍ୟମାନଙ୍କୁ ପରିତ୍ୟାଗ କରୁଅଛନ୍ତି । ଅନଘେ ! ଦେବଯାନୀ ଯାହା କାମନା କରିବେ, ତାହା ତୁମ୍ଭଙ୍କୁ କରିବାକୁ ହେବ । ଶର୍ମ୍ମିଷ୍ଠା ଉତ୍ତର ଦେଲେ, ଦେବଯାନୀଙ୍କ ନିମିତ୍ତ ଯେବେ ଶୁକ୍ର ଆମ୍ଭଙ୍କୁ ଆହ୍ୱାନ କରିବେ, ତେବେ ଅଦ୍ୟ ଦେବଯାନୀ ଯାହା କାମନା କରିବେ, ତାହା ଆମ୍ଭେ କରିବୁଁ । ଆମ୍ଭ ଦୋଷରୁ ଯେପରି ଦେବଯାନୀ ଓ ଶୁକ୍ର ଦେଶତ୍ୟାଗ ନ କରନ୍ତି । ୨୦ ।

ବୈଶମ୍ପାୟନ କହିଲେ, ତଦନନ୍ତର ଶର୍ମ୍ମିଷ୍ଠା ପିତାଙ୍କ ନିକଟରେ ଶିବିକାରୋହଣ ପୂର୍ବକ କନ୍ୟା-ସହସ୍ର-ପରିବୃତା ହୋଇ ପୁରୋତ୍ତମରୁ ଶୀଘ୍ର ନିର୍ଗତ ହେଲେ । ଶର୍ମ୍ମିଷ୍ଠା ଦେବଯାନୀଙ୍କ ସମୀପରେ ଉପସ୍ଥିତ ହୋଇ

ବୋଇଲେ, ଆମ୍ଭେ ସହସ୍ର ଦାସୀ ସହିତ ତୁମ୍ଭର ପରିଚାରିକା ଦାସୀ ହେଲୁଁ । ତୁମ୍ଭର ପିତା ତୁମ୍ଭଙ୍କୁ ଯେଉଁଠାରେ ଦାନ କରିବେ, ଆମ୍ଭେ ସେଠାକୁ ତୁମ୍ଭର ଅନୁଗାମିନୀ ହେବୁ । ୨୨ । ଦେବଯାନୀ ବୋଇଲେ, ଆମ୍ଭେ ତୁମ୍ଭ ପିତାଙ୍କର ସ୍ତୁତିପାଠକ ଓ ପ୍ରତିଗ୍ରହକାରୀର ଦୁହିତା, ତୁମ୍ଭେ ଶତ୍ରୁମାନଙ୍କର ଦୁହିତା ଓ ତୁମ୍ଭର ପିତା ଅପ୍ରତିଗ୍ରହକାରୀ; ତୁମ୍ଭେ କିପରି ଆମ୍ଭର ପରିଚାରିକା ହେବ ? ଶର୍ମିଷ୍ଠା ଉତ୍ତର କଲେ, ଦୁଃଖିତ ଜ୍ଞାତିବର୍ଗର ଯେଉଁ ଉପାୟରେ ସୁଖ ହେବ, ତାହା ସମ୍ପାଦନ କରିବା ପାଇଁ ତୁମ୍ଭର ପିତା ତୁମ୍ଭଙ୍କୁ ଯେଉଁଠାରେ ଦାନ କରିବେ, ଆମ୍ଭେ ସେହିଠାକୁ ଗମନ କରିବୁଁ ।

ବୈଶମ୍ପାୟନ ବୋଇଲେ, ହେ ନୃପଶ୍ରେଷ୍ଠ ! ବୃଷପର୍ବାଙ୍କ ଦୁହିତା ଦାସୀତ୍ୱ ସ୍ୱୀକାର କରିବାରୁ ଦେବଯାନୀ ପିତାଙ୍କୁ ବୋଇଲେ, ତାତ ! ଦ୍ୱିଜସତ୍ତମ ! ଆମ୍ଭେ ପରିତୁଷ୍ଟ ହେଲୁଁ । ଏବେ ପୁର ମଧ୍ୟରେ ପ୍ରବେଶ କରୁଅଛୁଁ । ଆମ୍ଭେ ଜାଣିଲୁଁ ଯେ ଆପଣଙ୍କ ବିଜ୍ଞାନ ଓ ବିଦ୍ୟାବଳ ଅବ୍ୟର୍ଥ । ୨୬ ।

ବୈଶମ୍ପାୟନ ବୋଇଲେ, ମହାଯଶା ଦ୍ୱିଜଶ୍ରେଷ୍ଠ ଶୁକ୍ର ଦୁହିତାଙ୍କର ଏହି କଥା ଶ୍ରବଣ କରି ସମସ୍ତ ଦାନବଙ୍କଦ୍ୱାରା ପ୍ରପୂଜିତ ହୋଇ ହୃଷ୍ଟଚିତ୍ତରେ ଦାନବପୁରକୁ ପ୍ରବେଶ କଲେ । ୨୭ ।

---

## ଅଧ୍ୟାୟ—୮୧

ବୈଶମ୍ପାୟନ ବୋଇଲେ—ହେ ନୃପୋତ୍ତମ ! ବହୁକାଳ ପରେ ବରବର୍ଣ୍ଣିନୀ ଦେବଯାନୀ କ୍ରୀଡ଼ା କରିବା ଉଦ୍ଦେଶ୍ୟରେ ପୂର୍ବୋକ୍ତ ବନରେ ଭ୍ରମଣ କରିବାକୁ ଯାତ୍ରା କଲେ; ତାହାଙ୍କ ସହିତ ସହସ୍ର ଦାସୀସମନ୍ୱିତା ଶର୍ମିଷ୍ଠା ମଧ୍ୟ ଉପସ୍ଥିତ ଥିଲେ । ଦେବଯାନୀ ଆପଣାର ଅଭିଳାଷାନୁରୂପ ବିଚରଣ କଲେ । ୨ । ସେମାନେ ସମସ୍ତେ ମଧୁବୃକ୍ଷରୁ ମଧୁପାନ ଓ ବିବିଧ ଭକ୍ଷ୍ୟ ଦ୍ରବ୍ୟମାନ ଭୋଜନ ଓ ନାନାବିଧ ଫଳମାନଙ୍କୁ ଚର୍ବଣ ପ୍ରେଷଣାଦି କ୍ରୀଡ଼ାରେ ନିମଗ୍ନ ହେଲେ । ଏମନ୍ତ ସମୟରେ ନହୁଷନନ୍ଦନ ଯଯାତି ମଧ୍ୟ ପୁନର୍ବାର ମୃଗୟା ନିମିତ୍ତ ଆଗମନ କରି ଶ୍ରାନ୍ତ ହେତୁରୁ ଜଳାର୍ଥୀ ହୋଇ

ଯଦୃଚ୍ଛାକ୍ରମେ ସେହି ସ୍ଥାନରେ ଉପସ୍ଥିତ ହେଲେ । ୪ । ସେଠାରେ ସେ ଦେବଯାନୀ ଓ ଶର୍ମିଷ୍ଠାଙ୍କୁ ଓ ନିରୁପମ ରୂପବତୀ ଦିବ୍ୟାଭରଣଭୂଷିତା, ପାନାସକ୍ତା ଓ କ୍ରୀଡ଼ାରତା ଅନ୍ୟାନ୍ୟ ବହୁସଂଖ୍ୟକ ନାରୀମାନଙ୍କୁ ଅବଲୋକନ କଲେ । ୫ । ରାଜା ଦେଖିଲେ ଯେ ମଧୁରହାସିନୀ, ଅପ୍ରତିମ ରୂପବତୀ ଦେବଯାନୀ ସେହି ଲଲନାମାନଙ୍କ ମଧ୍ୟରେ ଉପବିଷ୍ଟା ହୋଇଅଛନ୍ତି ଓ ଶର୍ମିଷ୍ଠା ତାହାଙ୍କର ପାଦସମ୍ବାହନ ଓ ସେବା କରୁଅଛନ୍ତି । ତାହା ଦେଖି ଯଯାତି ସେମାନଙ୍କର ସମୀପବର୍ତ୍ତୀ ହୋଇ ପ୍ରଶ୍ନ କଲେ, ତୁମ୍ଭେ ଦୁଇଗୋଟି କନ୍ୟା ସହସ୍ର କନ୍ୟାଙ୍କଦ୍ୱାରା ପରିବାରିତ ହୋଇଅଛ । ହେ ଶୁଭେ ! ତୁମ୍ଭ ଦୁଇଜଣଙ୍କର ନାମ ଓ ଗୋତ୍ର ବୋଲନ୍ତୁ । ଦେବଯାନୀ ଉତ୍ତର ଦେଲେ, ହେ ନରାଧିପ ! ଆମ୍ଭେ କହୁଅଛୁଁ, ଆପଣ ଆମ୍ଭର ବଚନ ଶ୍ରବଣ କରନ୍ତୁ । ଶୁକ୍ର ନାମକ ଅସୁରମାନଙ୍କର ଗୁରୁ ବିଖ୍ୟାତ ଅଟନ୍ତି । ଆମ୍ଭଙ୍କୁ ତାହାଙ୍କର କନ୍ୟା ଜାଣିବା ହେବେ । ଏ ଆମ୍ଭର ସଖୀ ଓ ଦାସୀ; ଆମ୍ଭେ ଯେଉଁଠାକୁ ଯାଉ, ସେ ଆମ୍ଭ ସମଭିବ୍ୟାହାରରେ ଗମନ କରନ୍ତି । ତାହାଙ୍କ ନାମ ଶର୍ମିଷ୍ଠା ଓ ସେ ବୃଷପର୍ବା ନାମକ ଅସୁର ରାଜାଙ୍କର ଦୁହିତା ଅଟନ୍ତି ।

ଯଯାତି ବୋଇଲେ, ଏହି ସୁଭ୍ରୂ ଓ ବରବର୍ଣ୍ଣିନୀ ଦୈତ୍ୟରାଜାଙ୍କର ଦୁହିତା ହୋଇ କି ପ୍ରକାରେ ତୁମ୍ଭର ଦାସୀ ହେଲେ ଏହା ଜାଣିବା ନିମିତ୍ତ ଆମ୍ଭର ପରମ କୌତୁହଳ ଜାତ ହେଲା । ୧୦ । ଦେବଯାନୀ ବୋଇଲେ, ହେ ନରଶ୍ରେଷ୍ଠ ! ସମସ୍ତେ ଦୈବଙ୍କର ଅନୁବର୍ତ୍ତୀ; ଦୈବାଧୀନ ବିଷୟରେ ଆଶ୍ଚର୍ଯ୍ୟ ଜ୍ଞାନ କରିବା ହେବେ ନାହିଁ । ଆପଣଙ୍କର ରୂପ ଓ ବେଶ ରାଜାଙ୍କ ପ୍ରାପ୍ୟ ହୋଇଅଛି ଓ ଆପଣଙ୍କ ବଚନ ପଣ୍ଡିତଙ୍କ ବଚନ ସଦୃଶ । ଆପଣ କିଏ ? କାହାର ପୁତ୍ର ? କେଉଁଠାରୁ ଆଗମନ କରିଅଛନ୍ତି ? ଆମ୍ଭଙ୍କୁ ବୋଲିବା ହେଉନ୍ତୁ । ୧୨ ।

ଯଯାତି ବୋଇଲେ, ଆମ୍ଭେ ବ୍ରହ୍ମଚର୍ଯ୍ୟ ହୋଇ ସମସ୍ତ ବେଦମାନଙ୍କୁ ଅଧ୍ୟୟନ କରିଅଛୁଁ; ଆମ୍ଭେ ରାଜାଙ୍କର ପୁତ୍ର ଓ ସ୍ୱୟଂ ରାଜା; ଯଯାତି ବୋଲି ଆମ୍ଭର ନାମ ବିଶ୍ରୁତ ଅଛି । ୧୩ ।

ଦେବଯାନୀ ବୋଇଲେ, ହେ ନୃପତେ ! ଆପଣ କି ନିମିତ୍ତ ଏଠାକୁ ଆଗମନ କରିଅଛନ୍ତି ? ବାରିଜ * ଗ୍ରହଣ କରିବାକୁ ଆସିଅଛନ୍ତି କି ମୃଗୟା ନିମିତ୍ତ ଆସିଅଛନ୍ତି ? ବୋଲିବା ହେଉନ୍ତୁ । ୧୪ ।

* ବାରିଜର ଅର୍ଥ ମାଛ ଓ ପଦ୍ମ ।

ଯଯାତି ବୋଇଲେ, ହେ ଭଦ୍ରେ ! ଆମ୍ଭେ ମୃଗୟାଭିଳାଷୀ ହୋଇ ଆସି ପାନୀୟ ନିମିତ୍ତ ଏ ସ୍ଥାନକୁ ଆଗମନ କରିଅଛୁ; କିନ୍ତୁ ଏବେ ଆମ୍ଭର ପିପାସା ନିବୃତ୍ତ ଓ ଶ୍ରାନ୍ତି ଦୂର ହୋଇଛି, କଥାପ୍ରସଙ୍ଗରେ ମଧ୍ୟ ଅତିନ୍ହାନ୍ତ ହୋଇଅଛି; ଅତଏବ ଅନୁମତି କରନ୍ତୁ ଆମ୍ଭେ ପ୍ରସ୍ଥାନ କରୁଁ । ୧୫ ।

ଦେବଯାନୀ ବୋଇଲେ, ସହସ୍ର କନ୍ୟା ସହ ଦାସୀ ଶର୍ମିଷ୍ଠା ଓ ଆମ୍ଭେ ତୁମ୍ଭର ଅଧୀନ ହେଲୁଁ; ତୁମ୍ଭେ ଆମ୍ଭର ସଖା ଓ ଭର୍ତ୍ତା ହୁଅ । ୧୬ ।

ଯଯାତି ବୋଇଲେ, ହେ ଶୁକ୍ରନନ୍ଦନୀ ଭାବିନୀ ଦେବଯାନୀ ! ତୁମ୍ଭର ମଙ୍ଗଳ ହେଉ; ଆମ୍ଭେ ତୁମ୍ଭର ଯୋଗ୍ୟ ପାତ୍ର ନୋହୁଁ । ତୁମ୍ଭର ପିତା ଯେ ରୂପ, ତହିଁରେ ରାଜାମାନେ ତୁମ୍ଭର ଯୋଗ୍ୟପାତ୍ର ନୁହନ୍ତି । ୧୭ ।

ଦେବଯାନୀ ବୋଇଲେ, ବ୍ରାହ୍ମଣଙ୍କ ସହିତ କ୍ଷତ୍ରିୟ ଓ କ୍ଷତ୍ରିୟଙ୍କ ସହିତ ବ୍ରାହ୍ମଣମାନେ ସଂସୃଷ୍ଟ ହୋଇଅଛନ୍ତି; ହେ ନହୁଷାଙ୍ଗଜ ! ଆପଣ ମଧ୍ୟ ତଦନୁସାରେ ଋଷି ଓ ଋଷିପୁତ୍ର ହୋଇଅଛନ୍ତି । ଆପଣ ଆମ୍ଭଙ୍କୁ ବିବାହ କରନ୍ତୁ । ୧୮ ।

ଯଯାତି ବୋଇଲେ, ହେ ବରାଙ୍ଗନେ ! ବ୍ରହ୍ମାଙ୍କର ଗୋଟିଏ ଦେହରୁ ଚାରିବର୍ଣ୍ଣ ଜାତ ହୋଇଅଛନ୍ତି ସତ୍ୟ, କିନ୍ତୁ ସେମାନଙ୍କର ଧର୍ମ ଓ ଶୌଚବିଧି ପୃଥକ୍ ପୃଥକ୍ ଅଟଇ । ସେମାନଙ୍କ ମଧ୍ୟରେ ବ୍ରାହ୍ମଣ ବରିଷ୍ଠ । ୧୯ । ଦେବଯାନୀ ବୋଇଲେ, ଅନ୍ୟ କେହି ପୁରୁଷ ପୂର୍ବେ ଆମ୍ଭର ପାଣି ସ୍ପର୍ଶ କରି ନାହାନ୍ତି । ଆପଣ ପ୍ରଥମେ ଆମ୍ଭର ପାଣିଗ୍ରହଣ କରିଥିଲେ । ସେହି ନିମିତ୍ତ ଆପଣଙ୍କୁ ପତିତ୍ୱରେ ବରଣ କରୁଅଛୁଁ । ଆପଣ ଋଷି ଓ ଋଷିପୁତ୍ର ହୋଇ ସ୍ୱୟଂ ଆମ୍ଭର ପାଣି ଗ୍ରହଣ କରିଅଛନ୍ତି । ଆମ୍ଭେ ମଧ୍ୟ ମନସ୍ୱିନୀ, ସୁତରାଂ ଅନ୍ୟ ପୁରୁଷ କିପରି ଆମ୍ଭର ପାଣି ସ୍ପର୍ଶ କରିବେ ? ୨୧ । ଯଯାତି ବୋଇଲେ, ବିଜ୍ଞ ବ୍ୟକ୍ତିମାନେ ବ୍ରାହ୍ମଣଙ୍କୁ କ୍ରୁଦ୍ଧ ସର୍ପ ଅପେକ୍ଷା ଅଧିକ ଦୁରାଧର୍ଷ ବୋଲି ଜାଣନ୍ତି । ୨୨ ।

ଦେବଯାନୀ ପ୍ରଶ୍ନ କଲେ, ହେ ପୁରୁଷର୍ଷଭ ! କି ରୂପେ ଆପଣ ବୋଇଲେ ଯେ କ୍ରୁଦ୍ଧ ଓ ତୀକ୍ଷ୍ଣବିଷ ସର୍ପ ଅପେକ୍ଷା ଓ ପ୍ରଖରତର ଶସ୍ତ୍ର ଅପେକ୍ଷା ବ୍ରାହ୍ମଣ ଅଧିକ ଦୁର୍ଦ୍ଧର୍ଷ ? ୨୩ । ଯଯାତି ବୋଇଲେ, ଭୁଜଙ୍ଗମ ଦର୍ଶନରେ ଜଣେ ନଷ୍ଟ ହୁଅଇ ଓ ଶସ୍ତ୍ରଦ୍ୱାରା ମଧ୍ୟ ଏକ ବ୍ୟକ୍ତି ନିହତ ହୁଅଇ; କିନ୍ତୁ ବ୍ରାହ୍ମଣ କୁପିତ ହେଲେ ରାଜ୍ୟ ଓ ପୁର ସମସ୍ତ ବିନଷ୍ଟ ହୁଅଇ । ହେ ଭଦ୍ରେ ! ଏହି କାରଣରୁ ଆମ୍ଭେ ବ୍ରାହ୍ମଣଙ୍କୁ ଅଧିକ ଦୁରାଧର୍ଷ

ଜ୍ଞାନ କରୁଁ । ଅତଏବ ବିବାହ କରିପାରିବୁ ନାହିଁ । ୨୫ । ଦେବଯାନୀ ବୋଇଲେ, ହେ ରାଜନ୍ ! ଆମ୍ଭେ ଆପଣଙ୍କୁ ବରଣ କରିଅଛୁଁ । ଏବେ ପିତା ଆମ୍ଭଙ୍କୁ ପ୍ରଦାନ କଲେ । ଆପଣ ବିବାହ କରନ୍ତୁ । ଆପଣ ଯାଚଞ୍ଚା କରିନାହାନ୍ତି; ପିତା ସମ୍ପ୍ରଦାନ କଲେ ଆପଣ ଆମ୍ଭଙ୍କୁ ଗ୍ରହଣ କରିବା ହେବେ; ଏଥିରେ ଭୟର କି ବିଷୟ ଅଛି ? ୨୬ ।

ବୈଶମ୍ପାୟନ ବୋଇଲେ, ଅନନ୍ତର ଦେବଯାନୀ ଧାତ୍ରୀକୁ ଆଦେଶ କଲେ ଯେ ତୁମ୍ଭେ ଶୀଘ୍ର ଯାଇ ଏ ସମସ୍ତ ବିଷୟ ପିତାଙ୍କ ନିକଟରେ ଗୋଚର କର । ଧାତ୍ରୀ ଶୁକ୍ରଙ୍କ ନିକଟକୁ ଯାଇ ଆନୁପୂର୍ବିକ ସମୁଦାୟ ନିବେଦନ କଲେ । ୨୮ । ପୃଥିବୀପତି ଯଯାତି ଶୁକ୍ରଙ୍କୁ ସମାଗତ ଦେଖି ଅବନତ ହୋଇ ପ୍ରଣାମ ପୂର୍ବକ କୃତାଞ୍ଜଳିପୁଟରେ ଦଣ୍ଡାୟମାନ ହେଲେ । ଦେବଯାନୀ ବୋଇଲେ, ତାତ ! ଏହି ନହୁଷତନୟ ଯଯାତି ରାଜା ବିପତ୍କାଳରେ ଆମ୍ଭର ପାଣିଗ୍ରହଣ କରିଥିଲେ; ଅତଏବ ଆମ୍ଭେ ପ୍ରଣତ ଭାବରେ ପ୍ରାର୍ଥନା କରୁଅଛୁଁ ଆପଣ ଏହି ପାତ୍ରରେ ଆମ୍ଭଙ୍କୁ ସମ୍ପ୍ରଦାନ କରନ୍ତୁ; ଆମ୍ଭେ ଅନ୍ୟ ବ୍ୟକ୍ତିକୁ ବରଣ କରିବୁ ନାହିଁ । ଶୁକ୍ର ବୋଇଲେ, ହେ ବୀର, ନହୁଷାତ୍ମଜ ! ଆମ୍ଭର ଏହି ପ୍ରିୟତମା କନ୍ୟା ତୁମ୍ଭଙ୍କୁ ପତିଭାବରେ ବରଣ କରିଅଛନ୍ତି; ଏବେ ଆମ୍ଭେ ସମ୍ପ୍ରଦାନ କରୁଅଛୁଁ, ତୁମ୍ଭେ ଏହାଙ୍କୁ ମହିଷୀରୂପେ ଗ୍ରହଣ କର । ୩୧ ।

ଯଯାତି ବୋଇଲେ, ହେ ବ୍ରହ୍ମନ୍ ଭାର୍ଗବ ! ଏ ବିଷୟରେ ବର୍ଣ୍ଣ-ସଙ୍କରଜନ୍ୟ ମହାନ୍ ଅଧର୍ମ ଯେପରି ଆମ୍ଭଙ୍କୁ ସ୍ପର୍ଶ ନ କରେ, ଆମ୍ଭେ ଆପଣଙ୍କ ନିକଟରେ ଏହି ବର ପ୍ରାର୍ଥନା କରୁଅଛୁଁ । ୩୨ । ଶୁକ୍ର ବୋଇଲେ, ଆମ୍ଭେ ତୁମ୍ଭଙ୍କୁ ଅଧର୍ମରୁ ବିନିର୍ମୁକ୍ତ କରୁଅଛୁଁ । ତୁମ୍ଭେ ଅଭିଲଷିତ ବର ପ୍ରାର୍ଥନା କର । ଏ ବିବାହରେ ତୁମ୍ଭେ ମାନ ହୁଅନା; ତୁମ୍ଭର ସମୁଦାୟ ପାପ ଅପନୋଦନ କରୁଅଛୁଁ । ତୁମ୍ଭେ ଧର୍ମାନୁସାରେ ଏହି ସୁମଧ୍ୟମା ଦେବଯାନୀଙ୍କୁ ବିବାହ କର । ଏହାଙ୍କ ସହିତ ଅତୁଳ ସଂପ୍ରୀତି ଲାଭ କର । ବୃଷପର୍ବାଙ୍କ ଦୁହିତା ଏହି କୁମାରୀ ଶର୍ମିଷ୍ଠାଙ୍କୁ ସତତ ସମାଦର କରିବ, କିନ୍ତୁ ଏହାଙ୍କୁ ଶୟନକୁ ଆହ୍ୱାନ କରିବ ନାହିଁ । ୩୫ । ବୈଶମ୍ପାୟନ ବୋଇଲେ, ଏ ପ୍ରକାର ଅଭିହିତ ହେବାରୁ ଯଯାତି ଶୁକ୍ରଙ୍କୁ ପ୍ରଦକ୍ଷିଣ କରି ଶାସ୍ତ୍ରୋକ୍ତ ବିଧିରେ ଶୁଭବିବାହ ସମ୍ପାଦନ କଲେ । ଶୁକ୍ରଙ୍କଠାରୁ ସହସ୍ର କନ୍ୟା ଓ ଶର୍ମିଷ୍ଠା ସହିତ ଦେବଯାନୀଙ୍କୁ ପ୍ରାପ୍ତ ହୋଇ

ଅଥଚ ଶୁକ୍ର ଓ ଦୈତ୍ୟଗଣଙ୍କଦ୍ୱାରା ପୂଜିତ ହୋଇ ଓ ମହାତ୍ମା ଶୁକ୍ରଙ୍କଦ୍ୱାରା ଅନୁଜ୍ଞାତ ହୋଇ ନୃପସତ୍ତମ ଯଯାତି ହୃଷ୍ଟଚିତ୍ତରେ ସ୍ୱକୀୟ ରାଜଧାନୀକୁ ପ୍ରସ୍ଥାନ କଲେ । ୩୮ ।

---

## ଅଧ୍ୟାୟ—୮୨

ବୈଶମ୍ପାୟନ ବୋଇଲେ—ମହେନ୍ଦ୍ରପୁର ତୁଲ୍ୟ ନିଜପୁରକୁ ଯଯାତି ପ୍ରବେଶ କରି ଅନ୍ତଃପୁରରେ ଦେବଯାନୀଙ୍କୁ ସଂସ୍ଥାପନ କଲେ ଓ ଦେବଯାନୀଙ୍କ ଅନୁମତି କ୍ରମେ ବୃଷପର୍ବାଙ୍କର ସୁତାଙ୍କୁ ଅଶୋକ ବନିକା ନିକଟରେ ଗୋଟିଏ ଗୃହ ନିର୍ମାଣ କରାଇ ସେଠାରେ ରଖାଇଲେ ଓ ସହସ୍ର ଦାସୀଙ୍କ ସହ ସେହି ଶର୍ମିଷ୍ଠାଙ୍କୁ ବସନ ଭୂଷଣ ଓ ଅନ୍ନପାନାଦିର ଯଥାବିଧି ବିଭାଗଦ୍ୱାରା ସମୁଚିତ ସତ୍କାର କଲେ । ୩ । ନହୁଷାତ୍ମଜ ସେହି ନୃପ, ଦେବଯାନୀଙ୍କ ସହିତ ଦେବତାଙ୍କ ପ୍ରାୟ ପ୍ରମୁଦିତ ହୋଇ ବହୁ ସମ୍ବତ୍ସର ବିହାର କଲେ । ୪ । ଋତୁକାଳ ପ୍ରାପ୍ତ ହେବାରୁ ବରାଙ୍ଗନା ଦେବଯାନୀ ଗର୍ଭଧାରଣ କରି ପ୍ରଥମତଃ ଗୋଟିଏ କୁମାର ଜନ୍ମ କଲେ । ସହସ୍ର ବର୍ଷ ଗତ ହେବା ପରେ ଯୌବନପ୍ରାପ୍ତା ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠା ଦିନେ ସ୍ୱୀୟ ଋତୁ ଦର୍ଶନ କରି ଚିନ୍ତା କଲେ ଯେ ମୋର ଋତୁକାଳ ପ୍ରାପ୍ତ ହେଲା, କିନ୍ତୁ ମୁଁ ଅଦ୍ୟାବଧି ପତି ବରଣ କରିନାହିଁ; କି ହେବ ? କଣ କଲେ ମୁଁ କୃତକାର୍ଯ୍ୟ ହେବି ? ଦେବଯାନୀ ସନ୍ତାନ ପ୍ରସବ କଲେ, ଆମ୍ଭର ଏହି ଯୌବନ କାଳ ବୃଥା ହେଲା; ଅତଏବ ଦେବଯାନୀ ଯେପରି ରାଜାଙ୍କୁ ପତିତ୍ୱରେ ବରଣ କରିଅଛି, ମୁଁ ମଧ୍ୟ ତଦ୍ରୂପ କରେଁ । ମୋହର ନିଶ୍ଚୟ ବିବେଚନା ହେଉଅଛି ଯେ ରାଜାଙ୍କଠାରୁ ପୁତ୍ର ରୂପ ଫଳ ଲାଭ କରିବି, କିନ୍ତୁ କିପରି ତାହାଙ୍କ ସହିତ ଏକାନ୍ତରେ ସାକ୍ଷାତ ହେବ ? ୯ ।

ବୈଶମ୍ପାୟନ ବୋଇଲେ, ତତ୍କାଳରେ ଯଦୃଚ୍ଛାକ୍ରମେ ରାଜା ଯଯାତି ସ୍ୱପୁରରୁ ନିର୍ଗତ ହୋଇ ଅଶୋକବନିକା ସମୀପରେ ଶର୍ମିଷ୍ଠାଙ୍କୁ ବସିଥିବାର ଦେଖିଲେ । ସ୍ୱରୁହାସିନୀ ଶର୍ମିଷ୍ଠା ରାଜାଙ୍କୁ ନିର୍ଜ୍ଜନରେ ଦେଖି ତାହାଙ୍କ ନିକଟକୁ ଗମନ କରି କୃତାଞ୍ଜଳି ପୂର୍ବରେ ନିବେଦନ କଲେ । ୧୧ । ଶର୍ମିଷ୍ଠା ବୋଇଲେ, ହେ ନହୁଷନନ୍ଦନ ! ଚନ୍ଦ୍ର, ଇନ୍ଦ୍ର, ବିଷ୍ଣୁ, ଯମ ଓ ବରୁଣଙ୍କ ଗୃହ ପରି ଆପଣଙ୍କ ଗୃହରେ କିଏ ସ୍ତ୍ରୀମାନଙ୍କୁ

ଦେଖିବାକୁ ସମର୍ଥ ଅଟେ ? ୧୨ । ହେ ରାଜନ୍ ! ଆପଣ ଆମ୍ଭର ରୂପ, କୁଳ ଓ ଶୀଳ ସର୍ବଥା ଜ୍ଞାତ ଅଛନ୍ତି; ଅତଏବ ଆମ୍ଭେ ଆପଣଙ୍କୁ ପ୍ରସନ୍ନ କରି ପ୍ରାର୍ଥନା କରୁଅଛୁଁ, ଆପଣ ଆମ୍ଭର ଋତୁ ରକ୍ଷା କରନ୍ତୁ । ୧୩ ।

ଯଯାତି ବୋଇଲେ, ଆମ୍ଭେ ତୁମ୍ଭଙ୍କୁ ଶୀଳସମ୍ପନ୍ନା, ଅନିନ୍ଦିତା ଓ ଦୈତ୍ୟକନ୍ୟା ବୋଲି ଜାଣୁଁ । ତୁମ୍ଭର ରୂପରେ ସୂଚୀର ଅଗ୍ର ପରିମାଣ ନିନ୍ଦିତ ନାହିଁ । କିନ୍ତୁ ଆମ୍ଭେ ଦେବଯାନୀଙ୍କୁ ବିବାହ କରିବାବେଳେ କବିପୁତ୍ର ଉଶନା ଆମ୍ଭଙ୍କୁ କହିଅଛନ୍ତି ଯେ ତୁମ୍ଭେ ଏହି ବୃଷପର୍ବାଙ୍କ ଦୁହିତାଙ୍କୁ ଶୟନକୁ ଆହ୍ୱାନ କରିବ ନାହିଁ । ୧୫ । ଶର୍ମିଷ୍ଠା ବୋଇଲେ, ହେ ରାଜନ୍ ! ପରିହାସ ପ୍ରସଙ୍ଗରେ ସ୍ତ୍ରୀଙ୍କର ମନୋରଞ୍ଜନ ନିମିତ୍ତ, ବିବାହ କାଳରେ, ପ୍ରାଣ ସଙ୍କଟରେ ଓ ସର୍ବସ୍ୱାପହରଣରେ ଏହି ପଞ୍ଚସ୍ଥଳରେ ଅନୃତ କହିଲେ ପାପ ସଞ୍ଚାର ହୁଅଇ ନାହିଁ । ହେ ନରେନ୍ଦ୍ର ! ପୃଷ୍ଟ ହୋଇ ଯେଉଁମାନେ ମିଥ୍ୟା ସାକ୍ଷ୍ୟ ପ୍ରଦାନ କରନ୍ତି, ଅଥବା ଇତର ସ୍ଥଳରେ ମିଥ୍ୟା କହନ୍ତି, ସେମାନେ ପତିତ ହୁଅନ୍ତି * । ୧୭ ।

ଯଯାତି ବୋଇଲେ, ପ୍ରଜାଙ୍କର ପ୍ରମାଣ ରାଜା, ସେ ଯେବେ ମିଥ୍ୟା ବୋଲନ୍ତି ନଷ୍ଟ ହୁଅନ୍ତି । ଅତଏବ କୌଣସି ବିଷୟରେ କଷ୍ଟ ଭୋଗ କଲେହେଁ ମିଥ୍ୟା କହିବାକୁ ଆମ୍ଭେ ସାହସୀ ହେଉନାହୁଁ । ୧୮ । ଶର୍ମିଷ୍ଠା ବୋଇଲେ, ହେ ରାଜନ୍ ! ସଖୀଙ୍କର ପତି ଯେ ନିଜର ପତି ଅଟନ୍ତି, ଏହା ଲୋକସମ୍ମତ ଅଟେ । ଆମ୍ଭ ସଖୀଙ୍କ ବିବାହ ସମୟରେ ଆମ୍ଭେ ମଧ୍ୟ ଆପଣଙ୍କୁ ପତି ବୋଲି ମନ ମଧ୍ୟରେ ବରଣ କରିଅଛୁଁ । ୧୯ । ଯଯାତି ବୋଇଲେ, ସେ ସବୁ କଥା କୌଣସି କାର୍ଯ୍ୟକର ନୁହଇ । କିନ୍ତୁ ଆମ୍ଭର ବ୍ରତ ଅଛି ଯେ ଯଦି କୌଣସି ବ୍ୟକ୍ତି ଆମ୍ଭଙ୍କୁ ଯାଚଞ୍ଚା କରଇ, ତେବେ ଆମ୍ଭେ ତାହାଙ୍କର ସେହି କାମନା ପୂରଣ କରୁଁ । ତୁମ୍ଭେ ମଧ୍ୟ ଆମ୍ଭଠାରେ ଯାଚଞ୍ଚା କରୁଅଛ; ଅତଏବ ଆମ୍ଭେ ତୁମ୍ଭର କି କାର୍ଯ୍ୟ କରିବୁ ବୋଲ । ୨୦ ।

ଶର୍ମିଷ୍ଠା ବୋଇଲେ, ହେ ରାଜନ୍ ! ଅଧର୍ମରୁ ଆମ୍ଭଙ୍କୁ ରକ୍ଷା କରି ଧର୍ମ ପ୍ରତିପାଳନ କର । ତୁମ୍ଭଠାରୁ ଆମ୍ଭେ ଅପତ୍ୟବତୀ ହୋଇ ଲୋକରେ ଉତ୍ତମ ଧର୍ମାଚରଣ କରିବୁଁ । ୨୧ । ହେ ରାଜନ୍ ! ଭାର୍ଯ୍ୟା, ଦାସ ଓ ସୁତ ଏମାନେ ତିନିହେଁ ମଧ୍ୟ ଧନ ମଧ୍ୟରେ ପରିଗଣିତ ହୁଅନ୍ତି । ଏମାନେ ଧନ-

---

* ହିଂସାର ହେତୁ ସତ୍ୟ ଅନୃତ ଅଟେ ଓ ଅହିଂସାର ହେତୁ ଅନୃତ ସତ୍ୟର ଫଳ ପ୍ରଦାନ ।

ସ୍ୱାମୀ ହୁଅନ୍ତି ନାହିଁ; ଏମାନେ ଯାହା ଉପାର୍ଜ୍ଜନ କରନ୍ତି ସେ ସବୁ ଧନ ସେମାନଙ୍କର ଅଧିକାରୀଙ୍କର ଅଟଇ ❋ । ହେ ରାଜନ୍ ! ଆମ୍ଭେ ଦେବଯାନୀଙ୍କର ପରିଚାରିକା ଓ ସେ ଆପଣଙ୍କର ବଶବର୍ତ୍ତିନୀ, ଅତଏବ ଦେବଯାନୀ ଓ ଆମ୍ଭେ, ଦୁହେଁ ଆପଣଙ୍କର ଭଜନୀୟା; ଅତଏବ ଆପଣ ଆମ୍ଭଙ୍କୁ ଭୋଗ କରନ୍ତୁ । ୨୩ ।

ବୈଶମ୍ପାୟନ ବୋଇଲେ ରାଜା ଏହି ପ୍ରକାର ଅଭିହିତ ହୋଇ ଶର୍ମିଷ୍ଠାଙ୍କର ଉକ୍ତିକୁ ତଥ୍ୟ ଜ୍ଞାନ ଓ ତାହାଙ୍କର ମନୋଭିଳାଷ ପୂର୍ଣ୍ଣ କରି ଧର୍ମ ରକ୍ଷା କଲେ । ୨୪ । ରାଜା ଶର୍ମିଷ୍ଠାଙ୍କ ସହିତ ସମାଗମ କଲେ ଓ ସେମାନେ ଆପଣାର କାର୍ଯ୍ୟ ସମ୍ପାଦନ ପୂର୍ବକ ପରସ୍ପର ଯଥାବିଧି ମଧୁର ସମ୍ଭାଷଣ କରି ଅଭିଲଷିତ ପ୍ରଦେଶକୁ ଗମନ କଲେ । ୨୫ । ହେ ରାଜନ୍ ! ସୁ ଭ୍ରୂ ଓ ଚାରୁହାସିନୀ ଶର୍ମିଷ୍ଠା ସେହି ସମାଗମରେ ପ୍ରଥମବାର ନୃପସତ୍ତମ ଯଯାତିଙ୍କଠାରୁ ଗର୍ଭ ଲାଭ କଲେ ଓ ଯଥାକାଳରେ ସେ ରାଜୀବଲୋଚନା ଗୋଟିଏ ସୁନ୍ଦର ରାଜୀବଲୋଚନ ଓ ଦେବତୁଲ୍ୟ କୁମାରକୁ ପ୍ରସବ କଲେ । ୨୬ ।

---

## ଅଧ୍ୟାୟ—୮୩

ବୈଶମ୍ପାୟନ ବୋଇଲେ—ହେ ଭାରତ ! ଶର୍ମିଷ୍ଠାଙ୍କର ପୁତ୍ର ଜାତ ହେବାର ଶୁଣି ଦେବଯାନୀ ଦୁଃଖାର୍ତ୍ତ ଚିତ୍ତରେ ଚିନ୍ତା କରି ଶର୍ମିଷ୍ଠାଙ୍କ ନିକଟରେ ଉପସ୍ଥିତ ହୋଇ ବୋଇଲେ, ହେ ସୁ ଭ୍ରୂ ! ତୁମେ କାମ-ଲୋଭରେ ଏ କି କୁକର୍ମ କଲ ? ଶର୍ମିଷ୍ଠା ବୋଇଲେ, ବେଦପାରଗ ଓ ଧର୍ମାତ୍ମା କୌଣସି ଋଷିଙ୍କୁ ଅଭ୍ୟାଗତ ଦେଖି ଆମ୍ଭେ ତାହାଙ୍କୁ ଋତୁରକ୍ଷା ଓ ଧର୍ମ ପ୍ରତିପାଳନ କରିବାକୁ ଯାଚଞ୍ଚା କଲୁ; ହେ ଶୁଚିସ୍ମିତେ ! ଆମ୍ଭେ କଦାପି କାମବଶବର୍ତ୍ତିନୀ ହୋଇ ଗର୍ହିତ କର୍ମ କରିନାହୁଁ; ଆମ୍ଭେ ସତ୍ୟ କହୁଅଛୁ ଯେ ସେହି ଋଷିଙ୍କଠାରୁ ଆମ୍ଭର ଏହି ଅପତ୍ୟ ଜନ୍ମିଅଛି । ୪ ।

ଦେବଯାନୀ କହିଲେ, ହେ ଭୀରୁ ! ଯଦି ଏପରି ହୋଇଥାଏ, ତେବେ ଉତ୍ତମ ହୋଇଅଛି; କିନ୍ତୁ ସେ ଦ୍ୱିଜ କିପରି ତାହା କି ତୁମ୍ଭେ

---

❋ ଅର୍ଥାତ୍ ସେମାନେ ଯାହାର ଅଧୀନ ତାହାଙ୍କର ସେହି ଧନ ହୁଅଇ ।

ଜାଣ ? ସେହି ଦ୍ୱିଜଙ୍କର ଗୋତ୍ର, ନାମ ଓ କୁଳ ଜାଣିବାକୁ ଇଚ୍ଛା କରୁ । ୫ । ଶର୍ମିଷ୍ଠା ବୋଇଲେ, ହେ ଶୁଚିସ୍ମିତେ ! ସେ ଋଷଙ୍କୁ ତପସ୍ୟା ଓ ତେଜୋରାଶିରେ ରବିଙ୍କପ୍ରାୟ ଦୀପ୍ୟମାନ ଦେଖି ତାହାଙ୍କୁ କୌଣସି ପ୍ରଶ୍ନ କରିବାର ଆମ୍ଭର ସାମର୍ଥ୍ୟ ହେଲା ନାହିଁ । ୬ । ଦେବଯାନୀ ବୋଇଲେ, ହେ ଶର୍ମିଷ୍ଠେ ! ଯଦି ଏପରି ହୋଇଥାଏ ଓ ଯେବେ ତୁମ୍ଭେ ଅତି ଶ୍ରେଷ୍ଠ ଦ୍ୱିଜଙ୍କଠାରୁ ଅପତ୍ୟ ଲାଭ କରିଥାଅ, ତେବେ ଆମ୍ଭର ମନ୍ୟୁର କୌଣସି କାରଣ ନାହିଁ । ୭ ।

ବୈଶମ୍ପାୟନ ବୋଇଲେ, ଦେବଯାନୀ ଓ ଶର୍ମିଷ୍ଠା ଦୁହେଁ ପୂର୍ବୋକ୍ତ ପ୍ରକାରେ ନିର୍ଜ୍ଜନରେ କଥୋପକଥନ କରି ହାସ୍ୟ ପରିହାସ କଲେ । ତହୁଁ ଦେବଯାନୀ ଶର୍ମିଷ୍ଠାଙ୍କ ବଚନକୁ ତଥ୍ୟ ଜ୍ଞାନ କରି ନିଜ ବେଶ୍ମକୁ ଗମନ କଲେ । ୮ । ନୃପତି ଯଯାତି ଦେବଯାନୀଙ୍କଠାରେ ଯଦୁ ଓ ତୁର୍ବସୁ ନାମକ ଇନ୍ଦ୍ର ଓ ବିଷ୍ଣୁଙ୍କ ପ୍ରାୟ ଦୁଇ କୁମାର ଜାତ କଲେ । ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠାଙ୍କଠାରେ ସେହି ରାଜର୍ଷିଙ୍କ ଔରସରୁ ଦ୍ରୁହ୍ୟୁ, ଅନୁ ଓ ପୁରୁ ନାମକ ତିନି କୁମାର ଜାତ ହେଲେ । ୧୦ ।

ତଦନନ୍ତର ହେ ରାଜନ୍ ! କୌଣସି ଏକ ସମୟରେ ଶୁଚିସ୍ମିତା ଦେବଯାନୀ, ଯଯାତିଙ୍କ ସହିତ ସେହି ନିର୍ଜ୍ଜନ ବନକୁ ଗମନ କଲେ ଓ ସେଠାରେ ଦେବରୂପୀ କୁମାରମାନଙ୍କୁ କ୍ରୀଡ଼ା କରୁଥିବାର ଦେଖି ବିସ୍ମିତ ହୋଇ ରାଜାଙ୍କୁ ପଚାରିଲେ, ହେ ରାଜନ୍ ! ଏମାନେ କାହାର ପୁତ୍ର ଏଡ଼େ ସୁନ୍ଦର ଓ ଦେବପୁତ୍ରୋପମ ହୋଇଅଛନ୍ତି ? ମୋ ମତରେ ଏମାନେ ତେଜରେ ଓ ରୂପରେ ତୁମ୍ଭ ସଦୃଶ ହୋଇଅଛନ୍ତି । ୧୩ ।

ବୈଶମ୍ପାୟନ ବୋଇଲେ, ରାଜାଙ୍କୁ ପଚାରି ସାରି ଦେବଯାନୀ କୁମାରମାନଙ୍କୁ ପଚାରିଲେ, ହେ ପୁତ୍ରକମାନେ ! ତୁମ୍ଭମାନଙ୍କର ନାମ କଣ ? କାହା ବଂଶରେ ଜାତ ? ତୁମ୍ଭ ପିତା କିଏ ? ଆମ୍ଭଙ୍କୁ ସତ୍ୟ କରି କହ, ଆମ୍ଭେ ଯଥାତଥ୍ୟ ଶୁଣିବାକୁ ଇଚ୍ଛା କରୁଅଛୁଁ । ସେହି ବାଳକମାନେ ଅଙ୍ଗୁଳିଦ୍ୱାରା ସେହି ନୃପସତ୍ତମଙ୍କୁ ଦେଖାଇ ଦେଲେ ଓ ଶର୍ମିଷ୍ଠାଙ୍କୁ ମଧ୍ୟ ତର୍ଜ୍ଜନୀ ଦ୍ୱାରା ଦେଖାଇ ଦେଇ ବୋଇଲେ ଯେ ସେ ସେମାନଙ୍କର ମାତା । ୧୬ ।

ବୈଶମ୍ପାୟନ ବୋଇଲେ, ବାଳକମାନେ ଏହା କହି ସମବେତ ହୋଇ ରାଜାଙ୍କ ସମୀପରେ ଉପସ୍ଥିତ ହେଲେ; କିନ୍ତୁ ଦେବଯାନୀ ନିକଟରେ ଥିବାରୁ ରାଜା ସେମାନଙ୍କୁ ଆଦର କଲେ ନାହିଁ । ତହିଁରେ ସେ ବାଳକ-

ମାନେ ରୋଦନ କରି ଶର୍ମିଷ୍ଠାଙ୍କ ନିକଟରେ ଉପଗତ ହେଲେ । ରାଜା ସେହି ବାଳକମାନଙ୍କର ବଚନ ଶୁଣି ଲଜ୍ଜାନ୍ୱିତ ହେଲେ ଓ ଦେବଯାନୀ ସେହି ବାଳକମାନଙ୍କର ପାର୍ଥିବଙ୍କ ପ୍ରତି ତାଦୃଶ ପ୍ରଣୟ ଦେଖି ତତ୍ତ୍ୱ ବିଷୟମାନ ବୁଝିପାରି ଶର୍ମିଷ୍ଠାଙ୍କୁ କହିଲେ ।

ଦେବଯାନୀ ବୋଇଲେ, ଶର୍ମିଷ୍ଠେ ! ତୁମ୍ଭେ ଆମ୍ଭର ଅଧୀନା ହୋଇ କି ହେତୁରୁ ଆମ୍ଭର ବିପ୍ରିୟ କର୍ମ ଆଚରିଲ ? ତୁମ୍ଭେ ସେହି ଆସୁରି ଧର୍ମକୁ ଆଚରିଲ ଓ ଆମ୍ଭଙ୍କୁ ଭୟ କଲ ନାହିଁ । ୨୦ । ଶର୍ମିଷ୍ଠା ବୋଇଲେ, ହେ ଚାରୁହାସିନି ! ଋଷି ବୋଲି ଆମ୍ଭେ ଯାହା କହିଥିଲୁଁ ତାହା ସତ୍ୟ ଅଟେ । ନ୍ୟାୟ ଓ ଧର୍ମ ମାର୍ଗରେ ଚାଲୁଥିବାରୁ ପ୍ରକୃତରେ ଆମ୍ଭେ ତୁମ୍ଭଙ୍କୁ ଭୟ କରୁନାହୁଁ । ତୁମ୍ଭେ ଯେତେବେଳେ ତୁମ୍ଭ ସ୍ୱାମୀଙ୍କୁ ବରଣ କଲ ଆମ୍ଭେ ମଧ୍ୟ ସେହି କାଳରେ ତାହାଙ୍କୁ ସ୍ୱାମୀ ବୋଲି ବରଣ କଲୁଁ । ହେ ଶୋଭନେ ! ସଖୀଙ୍କର ଭର୍ତ୍ତା ନିଜର ଭର୍ତ୍ତା ଅଟନ୍ତି । ହେ ଭାବିନି ! ତୁମ୍ଭେ ଆମ୍ଭର ପୂଜନୀୟ, ମାନ୍ୟ, ଶ୍ରେଷ୍ଠ ଓ ଜ୍ୟେଷ୍ଠ ଅଟ । ତୁମ୍ଭେ କି ଏହା ଜାଣି ନାହିଁ ଯେ ଏହି ରାଜର୍ଷି ତୁମ୍ଭ ଅପେକ୍ଷା ଆମ୍ଭର ଅଧିକ ପୂଜ୍ୟ ଅଟନ୍ତି । ୨୩ ।

ବୈଶମ୍ପାୟନ ବୋଇଲେ, ଶର୍ମିଷ୍ଠାଙ୍କ ବଚନ ଶୁଣି ଦେବଯାନୀ ବୋଇଲେ, ହେ ରାଜନ୍ ! ତୁମ୍ଭେ ଆମ୍ଭର ବିପ୍ରିୟ କଲ, ଅଦ୍ୟାବଧି ଆମ୍ଭେ ଆଉ ତୁମ୍ଭ ନିକଟରେ ରହିବୁ ନାହିଁ । ୨୪ । ଏହା କହି ଦେବଯାନୀ ଅଶ୍ରୁଲୋଚନା ହୋଇ କାବ୍ୟଙ୍କ ନିକଟକୁ ସହସା ପ୍ରସ୍ଥାନ କରିବାର ଦେଖି ରାଜା ବ୍ୟଥିତ ହୋଇ ତାହାଙ୍କୁ ସାନ୍ତ୍ୱନା ପ୍ରଦାନ କରି ସସମ୍ଭ୍ରମରେ ତାହାଙ୍କର ଅନୁଗାମୀ ହେଲେ । କିନ୍ତୁ ଦେବଯାନୀ ବିରକ୍ତ ହୋଇ ନିବୃତ୍ତ ହେଲେ ନାହିଁ ଓ ଅଶ୍ରୁଲୋଚନା ହୋଇ ଅଚିର କାଳ ମଧ୍ୟରେ କବିପୁତ୍ର ଉଶନାଙ୍କ ସମୀପରେ ଉପସ୍ଥିତ ହେଲେ । ଦେବଯାନୀ ପିତାଙ୍କୁ ଅଭିବାଦନ କରି ତାହାଙ୍କ ସମୀପରେ ସ୍ଥିତ ହେଲେ । ତତ୍ପରେ ଯଯାତି ମଧ୍ୟ ସେଠାରେ ଉପସ୍ଥିତ ହୋଇ ଭାର୍ଗବଙ୍କୁ ଯଥାଯୋଗ୍ୟ ପୂଜା କଲେ । ୨୮ ।

ଦେବଯାନୀ ବୋଇଲେ, ହେ ପିତଃ ! ଅଧର୍ମଦ୍ୱାରା ଧର୍ମ ପରାଜିତ ହୋଇଅଛନ୍ତି; ନୀଚର ବୃଦ୍ଧି ହୋଇଅଛି । ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠା ଆମ୍ଭଙ୍କୁ ଅତିକ୍ରମ କରିଅଛି । ତାତ ! ଏହି ଯଯାତିଙ୍କ ଔରସରେ ତାହାର ଗର୍ଭରେ ତିନିପୁତ୍ର ଜନ୍ମିଅଛନ୍ତି । ଆମ୍ଭେ ଦୁର୍ଭାଗା, ଆମ୍ଭର ଦୁଇଗୋଟି ମାତ୍ର ପୁତ୍ର । ଆପଣଙ୍କୁ କହୁଅଛି, ହେ ଭୃଗୁଦ୍ୱହ କାବ୍ୟ ! ଏହି ରାଜା ଧର୍ମଜ୍ଞ

ବୋଲି ବିଖ୍ୟାତ । କିନ୍ତୁ ଏ ମର୍ଯ୍ୟାଦା ଅତିକ୍ରମ କରିଅଛନ୍ତି । ଏହା ମଧ୍ୟ ଆପଣଙ୍କୁ ଜଣାଉଅଛୁ । ୩୧ । ଶୁକ୍ର ବୋଇଲେ, ହେ ମହାରାଜା ! ତୁମ୍ଭେ ଧର୍ମଜ୍ଞ ହୋଇ ଯେଣୁ ଅଧର୍ମକୁ ପ୍ରିୟ କଲ, ତେଣୁ ଅଚିର କାଳ ମଧ୍ୟରେ ତୁମ୍ଭଙ୍କୁ ଦୁର୍ଜ୍ଜୟ ଜରାବସ୍ଥା ଗ୍ରାସ କରିବ । ୩୨ ।

ଯଯାତି ବୋଇଲେ, ହେ ଭଗବନ୍ ! ଦାନବେନ୍ଦ୍ର ସୁତା ଆମ୍ଭଠାରେ ଋତୁରକ୍ଷା କରିବାର ଯାଚଞ୍ଚା କରିଥିଲେ; ଆମ୍ଭେ ଏହାକୁ ଧର୍ମ୍ୟ କର୍ମ ବୋଲି କରିଅଛୁଁ ; କାମର ବଶବର୍ତ୍ତୀ ହୋଇ କରିନାହୁଁ । ହେ ବ୍ରହ୍ମନ୍ ! କୌଣସି କାମିନୀ ଋତୁରକ୍ଷାର ପ୍ରାର୍ଥନା କଲେ, ଯେଉଁ ପୁରୁଷ ଋତୁରକ୍ଷା ନ କରେ, ବ୍ରହ୍ମବାଦୀ ବ୍ରାହ୍ମଣମାନେ ସେ ପୁରୁଷକୁ ଭ୍ରୂଣହା ବୋଲନ୍ତି । ୩୦ । ଗମ୍ୟା କାମିନୀ ସକାମା ହୋଇ ନିର୍ଜ୍ଜନରେ ଉପଯାଚିକା ହେଲେ ଯେଉଁ ପୁରୁଷ ତାହାଠାରେ ଗମନ ନ କରେ, ପଣ୍ଡିତମାନେ ଧର୍ମଶାସ୍ତ୍ରରେ ତାହାକୁ ଭ୍ରୂଣହା ବୋଲନ୍ତି । ୩୫ । ହେ ଭାର୍ଗବ ! ଆମ୍ଭେ ଅଧର୍ମ ଭୟରେ ଭୀତ ହୋଇ ଏହି ସମସ୍ତ ବିଷୟ ପର୍ଯ୍ୟାଲୋଚନା ପୂର୍ବକ ଶର୍ମିଷ୍ଠାଙ୍କଠାକୁ ଗମନ କରିଅଛୁଁ ।

ଶୁକ୍ର ବୋଇଲେ, ହେ ପାର୍ଥିବ ନାହୁଷ ! ତୁମ୍ଭେ ଆମ୍ଭର ଅଧୀନ, ଅତଏବ ଆମ୍ଭର ଅନୁମତି ଅପେକ୍ଷା କରିବା ଉଚିତ ଥିଲା । ତାହା କରି-ନାହିଁ । ଧର୍ମ ବିଷୟରେ ଏପରି ମିଥ୍ୟାଚାର କଲେ ଚୌର୍ଯ୍ୟ ଦୋଷରେ ଦୋଷୀ ହେବାକୁ ହୁଅଇ । ୩୭ ।

ବୈଶମ୍ପାୟନ ବୋଇଲେ, ନହୁଷନନ୍ଦନ ଯଯାତି ରୋଷପରବଶ ଶୁକ୍ରଙ୍କ କର୍ତ୍ତୃକ ଅଭିଶପ୍ତ ହୋଇ ତତ୍କ୍ଷଣାତ୍ ଯୌବନ ପରିତ୍ୟାଗ ପୂର୍ବକ ବାର୍ଦ୍ଧକ୍ୟ ପ୍ରାପ୍ତ ହେଲେ । ୩୮ । ଯଯାତି ବୋଇଲେ, ହେ ଭୃଗୁନନ୍ଦନ ! ଆମ୍ଭେ ଯୌବନାବସ୍ଥାରେ ଦେବଯାନୀଙ୍କଠାରେ ପରିତୃପ୍ତ ହୋଇନାହୁଁ । ହେ ବ୍ରହ୍ମନ୍ ! ଆପଣ ପ୍ରସନ୍ନ ହୁଅନ୍ତୁ; ଯେପରି ଏହି ଜରା ଆମ୍ଭଠାରେ ପ୍ରବେଶ କରି ନ ପାରେ । ୩୯ ।

ଶୁକ୍ର ବୋଇଲେ, ହେ ଭୂମିପାଳ ! ଆମ୍ଭେ ମିଥ୍ୟା କହୁନା, ତୁମ୍ଭେ ଜରାଗ୍ରସ୍ତ ହୋଇଅଛ । ଯଦି ଇଚ୍ଛା କର, ତେବେ ଏହି ଜରାକୁ ଅନ୍ୟ ବ୍ୟକ୍ତିଠାରେ ସଂକ୍ରମଣ କରିପାର । ୪୦ । ଯଯାତି ବୋଇଲେ, ହେ ବ୍ରହ୍ମନ୍ ! ଆମ୍ଭର ଯେଉଁ ପୁତ୍ର ତାହାର ସ୍ୱୀୟ ଯୌବନ ଆମ୍ଭକୁ ପ୍ରଦାନ କରିବେ, ସେହି ପୁତ୍ର ରାଜ୍ୟଭାଗୀ, ପୁଣ୍ୟଭାଗୀ ଓ କୀର୍ତ୍ତିଭାଗୀ ହେବେ, ଏହା ଆପଣ ଅନୁମତି କରନ୍ତୁ । ୪୧ ।

ଶୁକ୍ର ବୋଇଲେ, ହେ ନହୁଷାତ୍ମଜ ! ତୁମ୍ଭେ ଏକଭାବରେ ଆମ୍ଭଙ୍କୁ ଧ୍ୟାନ କରି ଇଚ୍ଛାନୁସାରେ ଜରାକୁ ସଂକ୍ରମିତ କରିପାରିବ, ତହିଁରେ ତୁମ୍ଭେ ପାପଭାଗୀ ହେବ ନାହିଁ । ଯେଉଁ ପୁତ୍ର ତୁମ୍ଭଙ୍କୁ ବୟସ ଦାନ କରିବ, ସେ ଆୟୁଷ୍ମାନ୍, କୀର୍ତ୍ତିମାନ୍, ରାଜ୍ୟାଧିକାରୀ ଓ ସନ୍ତାନସମ୍ପନ୍ନ ହେବ । ୪୩ ।

---

## ଅଧ୍ୟାୟ—୮୪

ବୈଶମ୍ପାୟନ ବୋଇଲେ—ଅନନ୍ତର ରାଜା ଯଯାତି ଜରାଗ୍ରସ୍ତ ହୋଇ ସ୍ୱପୁରକୁ ଗମନ କରି ଜ୍ୟେଷ୍ଠ ଓ ଶ୍ରେଷ୍ଠ ପୁତ୍ର ଯଦୁଙ୍କୁ ବୋଇଲେ, ତାତ ! ଶୁକ୍ରଙ୍କ ଶାପରେ ବାର୍ଦ୍ଧକ୍ୟ ଆମ୍ଭଙ୍କୁ ବଳିପଳିତ ଓ ଦୌର୍ବଲ୍ୟଦ୍ୱାରା ଆଚ୍ଛନ୍ନ କରିଅଛି; କିନ୍ତୁ ଆମ୍ଭେ ଯୌବନୋଚିତ ଉପଭୋଗରେ ପରିତୃପ୍ତ ହୋଇନାହୁଁ, ହେ ଯଦୋ ! ତୁମ୍ଭେ ଏହି ବୃଦ୍ଧାବସ୍ଥା ସହିତ ଆମ୍ଭର ପାପକୁ ଗ୍ରହଣ କର ଓ ତୁମ୍ଭର ଯୌବନଦ୍ୱାରା ଆମ୍ଭେ ବିଷୟ ଭୋଗ କରିବୁଁ । ସହସ୍ର ବର୍ଷ ପୂର୍ଣ୍ଣ ହେଲେ ଆମ୍ଭେ ତୁମ୍ଭର ଯୌବନ ତୁମ୍ଭଙ୍କୁ ପ୍ରଦାନ କରି ସ୍ୱୀୟ ଜରାସହିତ ପାପକୁ ପୁନର୍ଗ୍ରହଣ କରିବୁ । ୪ ।

ଯଦୁ ବୋଇଲେ, ହେ ରାଜନ୍ ! ବାର୍ଦ୍ଧକ୍ୟରେ ପାନଭୋଜନାଦି ବିଷୟରେ ବହୁ ଦୋଷ ଅଛି, ଏହି ହେତୁରୁ ଆମ୍ଭେ ବିବେଚନା କରୁଅଛୁଁ ଯେ ଆମ୍ଭେ ଜରାଗ୍ରହଣ କରିବୁ ନାହିଁ । ଜରାବସ୍ଥାରେ ଶ୍ମଶ୍ରୁ ଶୁକ୍ଳବର୍ଣ୍ଣ ହୁଅଇ, ଶିରାମାନେ ପରିଦୃଶ୍ୟ ହୁଅନ୍ତି, ଚର୍ମ ଶିଥିଳ ହୁଅଇ; ଗାତ୍ର ସଙ୍କୁଚିତ ହୋଇ ତହିଁରେ ବଳିମାନ ଜାତ ହୁଅଇ, ଦେହ ଦେଖିବାକୁ ଅସୁନ୍ଦର, ଦୁର୍ବଳ ଓ କୃଶ ହୁଅଇ, କାର୍ଯ୍ୟ କରିବାକୁ ମନୁଷ୍ୟ ଅଶକ୍ତ ହୁଅଇ ଓ ଯୁବା ଲୋକଙ୍କ-ଦ୍ୱାରା ପରିଭୂତ ହୁଅଇ । ଅତଏବ ଆମ୍ଭେ ଏତାଦୃଶ ଦୋଷସମନ୍ୱିତ ଜରାବସ୍ଥାକୁ ଗ୍ରହଣ କରିବାକୁ ଇଚ୍ଛା କରୁନାହୁଁ । ହେ ନୃପ ! ଆମ୍ଭଠାରୁ ଅଧିକ ପ୍ରିୟ ଆପଣଙ୍କର ଅନେକ ପୁତ୍ର ଅଛନ୍ତି । ଅତଏବ ହେ ଧର୍ମଜ୍ଞ ! ଆପଣଙ୍କର ଜରା ଗ୍ରହଣ କରିବାକୁ ଅନ୍ୟ କାହାକୁ ବରଣ କରିବା ହେଉନ୍ତୁ । ୮ ।

ଯଯାତି ବୋଇଲେ, ହେ ତାତ ! ତୁମ୍ଭେ ଆମ୍ଭ ହୃଦୟରୁ ଜାତ ହୋଇ ଆମ୍ଭଙ୍କୁ ତୁମ୍ଭର ଯୁବାବସ୍ଥା ଦେଲ ନାହିଁ । ଅତଏବ ତୁମ୍ଭ ବଂଶରୁ

ଯେଉଁମାନେ ଜାତ ହେବେ, ସେ ରାଜ୍ୟର ଅଧିକାରୀ ହେବେ ନାହିଁ । ହେ ପୁତ୍ରକ ତୁର୍ବସୋ ! ତୁମ୍ଭେ ଆମ୍ଭର ଜରାବସ୍ଥାସହ ପାପକୁ ଗ୍ରହଣ କର ଓ ତୁମ୍ଭର ଯୁବାବସ୍ଥା ପ୍ରଦାନ କର, ଆମ୍ଭେ ବିଷୟ ଭୋଗ କରିବୁଁ । ସହସ୍ର ବର୍ଷ ପରେ ପୁନର୍ବାର ତୁମ୍ଭର ଯୌବନକୁ ଫେରାଇ ଦେଇ ଆମ୍ଭର ଜରା ସହ ପାପକୁ ଗ୍ରହଣ କରିବୁଁ । ତୁର୍ବସୁ ବୋଇଲେ, ହେ ତାତ ! କାମଭୋଗ-ପ୍ରଣାଶିନୀ, ବଳ ଓ ରୂପର ଅନ୍ତକାରୀ ଅଥଚ ବୁଦ୍ଧି ଓ ପ୍ରାଣର ବିନାଶକାରୀ ଜରାକୁ ଆମ୍ଭେ ନେବାକୁ ଇଚ୍ଛା କରୁନାହୁଁ । ୧୨ ।

ଯଯାତି ବୋଇଲେ, ହେ ତୁର୍ବସୋ ! ତୁମ୍ଭେ ଆମ୍ଭର ହୃଦୟରୁ ଜାତ ହୋଇ ସୁଦ୍ଧା ଆମ୍ଭଙ୍କୁ ତୁମ୍ଭର ବୟସ ପ୍ରଦାନ କଲ ନାହିଁ; ଅତଏବ ତୁମ୍ଭର ବଂଶୋଚ୍ଛେଦ ହେବ ଓ ଯେଉଁମାନଙ୍କର ଆଚାର ଓ ଧର୍ମ ଅତି ସଙ୍କୀର୍ଣ୍ଣ, ଯେଉଁମାନେ ପ୍ରତିଲୋମାଚାରୀ ମାଂସାଶୀ, ଅନ୍ତ୍ୟଜ, ଗୁରୁପତ୍ନୀଙ୍କଠାରେ ଆସକ୍ତ, ଯାହାଙ୍କର ପଶ୍ୱାଦିକ ଯୋନି ପ୍ରାୟ ଆଚରଣ ଓ ଯେଉଁମାନେ ପାପିଷ୍ଠ, ପଶୁଧର୍ମୀ, ମ୍ଳେଚ୍ଛ, ରେ ମୂଢ ! ତୁମ୍ଭେ ସେମାନଙ୍କର ରାଜା ହେବ । ୧୪ ।

ବୈଶମ୍ପାୟନ ବୋଇଲେ, ରାଜା ଯଯାତି ଆପଣାର ସୁତ ତୁର୍ବସୁଙ୍କୁ ଶାପ ଦେଇ ଶର୍ମିଷ୍ଠାଙ୍କ ସୁତ ଦ୍ରୁହ୍ୟୁଙ୍କୁ ଏହି ବଚନ ବୋଇଲେ—ହେ ଦ୍ରୁହ୍ୟୋ ! ବର୍ଣ୍ଣ ଓ ରୂପର ବିନାଶକାରୀ ଜରାବସ୍ଥାକୁ ଆମ୍ଭଠାରୁ ସହସ୍ର ବର୍ଷ ନେଇ ତୁମ୍ଭର ଯୌବନକୁ ଦିଅ;, ସହସ୍ର ବର୍ଷ ପୂର୍ଣ୍ଣ ହେଲେ ତୁମ୍ଭର ଯୌବନକୁ ଆମ୍ଭେ ଫେରାଇ ଦେଇ ଆମ୍ଭର ଜରାବସ୍ଥା ସହ ପାପକୁ ପୁନର୍ଗ୍ରହଣ କରିବୁଁ । ଦ୍ରୁହ୍ୟୁ ବୋଇଲେ, ଜରାଗ୍ରସ୍ତ ବ୍ୟକ୍ତି ଜୀର୍ଣ୍ଣକଳେବର ହୋଇ ଗଜ, ରଥ, ଅଶ୍ୱ ଓ ସ୍ତ୍ରୀମାନଙ୍କୁ ଭୋଗ କରିପାରେ ନାହିଁ ଓ ସ୍ପଷ୍ଟରୂପେ କଥା ମଧ୍ୟ କହିପାରେ ନାହିଁ; ଅତଏବ ଏତାଦୃଶୀ ଜରାବସ୍ଥାକୁ ଆମ୍ଭେ ଗ୍ରହଣ କରିବାକୁ କାମନା କରୁନାହୁଁ । ୧୯ ।

ଯଯାତି ବୋଇଲେ, ହେ ଦ୍ରୁହ୍ୟୋ ! ତୁମ୍ଭେ ଆମ୍ଭର ହୃଦୟରୁ ଜାତ ହୋଇ ଆମ୍ଭଙ୍କୁ ତୁମ୍ଭର ଯୌବନ ଦେଲ ନାହିଁ, ଅତଏବ ତୁମ୍ଭର ପ୍ରିୟ କାମନାମାନ କଦାପି ସିଦ୍ଧ ହେବ ନାହିଁ ଓ ଯେଉଁଠାରେ ଅଶ୍ୱ, ରଥ, ହସ୍ତୀ, ଗର୍ଦ୍ଦଭ, ଛାଗ, ଶିବିକା ଓ ରାଜଯୋଗ୍ୟ ଯାନମାନ ନ ଥିବ ଓ ଯେଉଁ-ଠାରେ ସର୍ବଦା ଭେଳା ଓ ପ୍ଳୁତ ଗତି ଦ୍ୱାରା ଗମନାଗମନ ହେଉଥିବ, ଯେଉଁଠାରେ ରାଜଶବ୍ଦ ପ୍ରସିଦ୍ଧ ନ ଥିବ, ତୁମ୍ଭେ ସବଂଶରେ ସେହିଠାରେ

ଅବସ୍ଥିତ କରିବ । ୨୨ । ଯଯାତି ବୋଇଲେ, ହେ ଅନୋ ! ତୁମ୍ଭେ ଆମ୍ଭର ଜରାବସ୍ଥାସହ ପାପକୁ ଗ୍ରହଣ କର, ଆମ୍ଭେ ସହସ୍ରେ ବର୍ଷ ତୁମ୍ଭର ଯୌବନାବସ୍ଥା ନେଇ ବିଷୟ ଭୋଗ କରିବୁ । ଅନୁ ବୋଇଲେ, ଜରାଗ୍ରସ୍ତ ବ୍ୟକ୍ତି ଜୀର୍ଣ୍ଣକଳେବର ହୋଇ ଶିଶୁପ୍ରାୟ ଅସମୟରେ ଅଶୁଚି ଶରୀରରେ ଅନ୍ନ ଗ୍ରହଣ କରେ, ନିୟମିତ ବେଳେ ଅଗ୍ନିରେ ଆହୁତି ପ୍ରଦାନ କରି ନ ପାରେ; ଏହି କାରଣରୁ ଆମ୍ଭେ ଜରାବସ୍ଥାକୁ ନେବାକୁ ଇଚ୍ଛା କରୁନାହୁଁ ।୨୪।

ଯଯାତି ବୋଇଲେ, ତୁମ୍ଭେ ଆମ୍ଭ ହୃଦୟରୁ ଜାତ ହୋଇ ଆମ୍ଭଙ୍କୁ ଯୌବନ ପ୍ରଦାନ କଲ ନାହିଁ ଓ ଜରାବସ୍ଥାର ଦୋଷ ବ୍ୟାଖ୍ୟା କଲ; ଅତଏବ ତୁମ୍ଭେ ଅଚିର କାଳରେ ସେହି ସମସ୍ତ ଜରାଦୋଷ ପ୍ରାପ୍ତ ହେବ ଓ ତୁମ୍ଭର ସନ୍ତତିମାନେ ଯୌବନପ୍ରାପ୍ତି ମାତ୍ର ବିନାଶପ୍ରାପ୍ତ ହେବେ; ତୁମ୍ଭେ ସ୍ୱୟଂ ମଧ୍ୟ ଅଗ୍ନି କାର୍ଯ୍ୟରୁ ବିଚ୍ୟୁତ ହେବ । ତଦନନ୍ତର ଯଯାତି ପୁରୁଙ୍କୁ ବୋଇଲେ, ପୁତ୍ରେ ! ତୁମ୍ଭେ ଆମ୍ଭର ପ୍ରିୟ ପୁତ୍ର; ତୁମ୍ଭର ମଙ୍ଗଳ ହେବ; କବିପୁତ୍ର ଉଶନାଙ୍କ ଅଭିଶାପରୁ ଆମ୍ଭେ ଜରାଗ୍ରସ୍ତ ହୋଇଅଛୁ; ଯୌବନୋ-ଚିତ ଭୋଗରେ ଆମ୍ଭେ ପରିତୃପ୍ତ ହୋଇନାହୁଁ । ଅତଏବ ତୁମ୍ଭେ ଜରାସହ ଆମ୍ଭର ପାପକୁ ଗ୍ରହଣ କରି ନିଜର ଯୌବନ ପ୍ରଦାନ କର; କିୟତ୍କାଳ ଆମ୍ଭେ ବିଷୟ ଭୋଗ କରିବୁ । ସହସ୍ର ବର୍ଷ ପୂର୍ଣ୍ଣ ହେଲେ ଆମ୍ଭର ପାପକୁ ପ୍ରତିପାଦନ କରିବୁ । ୨୯ ।

ବୈଶମ୍ପାୟନ ବୋଇଲେ, ପିତାଙ୍କର ତଦ୍ରୂପ ବଚନ ଶ୍ରବଣ କରି ପୁରୁ ଉତ୍ତର କଲେ, ହେ ମହାରାଜ ! ଆପଣ ଆମ୍ଭଙ୍କୁ ଯାହା ବୋଲିବା ହେବେ, ତାହା ଆମ୍ଭେ କରିବୁ । ଜରାସହ ତୁମ୍ଭର ପାପକୁ ଆମ୍ଭେ ଗ୍ରହଣ କରିବୁ । ଆମ୍ଭଠାରୁ ଯୌବନ ଗ୍ରହଣ କରି ଆପଣ ଯଥାଭିଲଷିତ ଭୋଗ କରିବା ହେଉନ୍ତୁ; ଆପଣଙ୍କର ବୟସ ଓ ରୂପ ଧାରଣ କରି ଜରାଦ୍ୱାରା ପ୍ରତିଚ୍ଛନ୍ନ ହୋଇ ଆପଣ ଯେପରି ବୋଲିବା ହେବେ, ଆମ୍ଭେ ସେହିପରି କରିବୁ । ୩୨ ।

ଯଯାତି ବୋଇଲେ, ହେ ବତ୍ସ ପୁତ୍ରେ ! ଆମ୍ଭେ ତୁମ୍ଭଠାରେ ପ୍ରୀତ ହୋଇଅଛୁଁ । ତୁମ୍ଭଙ୍କୁ ପ୍ରୀତ ହୋଇ ଏହି ବର ଦେଉଅଛୁଁ ଯେ ତୁମ୍ଭ ରାଜ୍ୟରେ ପ୍ରଜାମାନେ ସର୍ବକାମନା ଲାଭ କରି ସମୃଦ୍ଧିଶାଳୀ ହେବେ । ୩୩ ।

ଏହା କହି ମହାତପା ଶୁକ୍ରଙ୍କୁ ଯଯାତି ସ୍ମରଣ କରି ମହାତ୍ମା ପୁରୁଙ୍କ ଠାରେ ନିଜର ଜରାକୁ ସଙ୍କ୍ରମିତ କଲେ । ୩୪ ।

# ଅଧ୍ୟାୟ—୮୫

ବୈଶମ୍ପାୟନ ବୋଇଲେ—ନହୁଷାତ୍ମଜ ନୃପସୁତ ଯଯାତି ପ୍ରୀତିଯୁକ୍ତ ହୋଇ ପୁରୁଙ୍କ ଯୌବନଦ୍ୱାରା ଅଭିଳଷିତ ବିଷୟମାନଙ୍କୁ, ହେ ରାଜେନ୍ଦ୍ର ! ଧର୍ମବିରୋଧରେ ଓ ସ୍ୱଚ୍ଛନ୍ଦରେ ଆପଣାର ଉତ୍ସାହ ଅନୁରୂପ ଭୋଗ କଲେ । ୨ । ଦେବତାମାନଙ୍କୁ ଯଜ୍ଞଦ୍ୱାରା, ପିତୃଗଣଙ୍କୁ ଶ୍ରାଦ୍ଧଦ୍ୱାରା, ଦୀନମାନଙ୍କୁ ଅନୁଗ୍ରହଦ୍ୱାର୍ ଦ୍ୱିଜଶ୍ରେଷ୍ଠମାନଙ୍କୁ ତାହାଙ୍କର ଅଭିଳଷିତ ଦାନଦ୍ୱାରା ପରିତୃପ୍ତ କଲେ । ଅତିଥିମାନଙ୍କୁ ଅନ୍ନପାନଦ୍ୱାରା, ବୈଶ୍ୟଙ୍କୁ ରକ୍ଷଣଦ୍ୱାରା, ଶୂଦ୍ରଙ୍କୁ ଦୟାଦ୍ୱାରା, ଦସ୍ୟୁମାନଙ୍କୁ ସମ୍ୟକ୍ ନିଗ୍ରହଦ୍ୱାରା ଓ ଧର୍ମରେ ସମସ୍ତ ପ୍ରଜାଙ୍କୁ ରଞ୍ଜିତ କରି ଦ୍ୱିତୀୟ ଇନ୍ଦ୍ରପ୍ରାୟ ପ୍ରତିପାଳନ କଲେ । ମୃଗେନ୍ଦ୍ର ସମାନ ବିକ୍ରମଶାଳୀ ସେହି ଯୁବା ନରପତି ଧର୍ମର ଅବିରୋଧରେ ସୁଖସମ୍ଭୋଗ କଲେ । ସେହି ମନୁଜାଧିପ, ସମସ୍ତ ଅଭିଳଷିତ କାମମାନଙ୍କୁ ଭୋଗ କରୁଥାନ୍ତି ଓ କେବେ ସହସ୍ର ବର୍ଷ ପରିସମାପ୍ତ ହେବ, ତାହା ମଧ୍ୟ ସ୍ମରଣ କରୁଥାନ୍ତି । ଏହିରୂପେ ସେ କାଳଜ୍ଞ ରାଜା ଯଯାତି ଦେଖିଲେ ଯେ ତାହାଙ୍କର ସହସ୍ର ବର୍ଷ ପରିପୂର୍ଣ୍ଣ ହେଲା ।

ତହୁଁ ସେ ତାହାଙ୍କର ପୁତ୍ର ପୁରୁଙ୍କୁ ଆହ୍ୱାନ କରି ବୋଇଲେ, ହେ ପୁତ୍ର ଅରିନ୍ଦମ ! ତୁମ୍ଭ ଯୌବନଦ୍ୱାରା ଆମ୍ଭେ ଆପଣାର ଉତ୍ସାହ ଓ କାମନାରୂପ ସୁଖ ସମ୍ଭୋଗ କଲୁଁ । କିନ୍ତୁ ଦେଖିଲୁଁ ଯେ କାମ୍ୟବସ୍ତୁର ଉପଭୋଗଦ୍ୱାରା କାମର ଉପଶମ ନ ହୋଇ ଅଗ୍ନିରେ ଘୃତ ପ୍ରଦାନ କଲା ପ୍ରାୟ କ୍ରମଶଃ ପରିବର୍ଦ୍ଧିତ ହୁଅଇ । ଏହି ପୃଥିବୀରେ ଯେତେ ଧନ ଧାନ୍ୟ, ହିରଣ୍ୟ, ପଶୁ ଓ ରମଣୀ ପ୍ରଭୃତି ଅଛନ୍ତି, ତତ୍ସମୂହ ଯେବେ ଜଣେ ବ୍ୟକ୍ତି ପ୍ରାପ୍ତ ହୁଏ, ତେବେ ତାହାର ତୃପ୍ତି ହେବ ନାହିଁ । ସେହି ହେତୁ ତୃଷ୍ଣାକୁ ପରିତ୍ୟାଗ କରିବା ବିଧେୟ । ୧୩ । ଦୁର୍ମତି ବ୍ୟକ୍ତିମାନେ ଯେଉଁ ତୃଷ୍ଣାକୁ ପରିତ୍ୟାଗ କରିପାରନ୍ତି ନାହିଁ, ଶରୀର ଜୀର୍ଣ୍ଣ ହେଲେହେଁ ଯେଉଁ ତୃଷ୍ଣା ଜୀର୍ଣ୍ଣ ହୁଅଇ ନାହିଁ, ସେହି ପ୍ରାଣାନ୍ତକାରୀ ରୋଗ ସ୍ୱରୂପ ତୃଷ୍ଣାକୁ ପରିତ୍ୟାଗ କଲେ ସୁଖ ଭୋଗ ହୁଅଇ । ବିଷୟରେ ମୁଗ୍ଧ ହୋଇ ଆମ୍ଭେ ସହସ୍ର ବର୍ଷ ବିଷୟସୁଖ ଭୋଗ କଲୁଁ । ତଥାପି ଦିନକୁ ଦିନ ସେହି ବିଷୟମାନଙ୍କରେ ଆମ୍ଭର ତୃଷ୍ଣା ଜାତ ହେଉଅଛି । ଅତଏବ ଏହି ବିଷୟତୃଷ୍ଣାକୁ ପରିତ୍ୟାଗ ପୂର୍ବକ ବ୍ରହ୍ମଙ୍କଠାରେ ମନୋନିବେଶ କରି ନିର୍ମମ ଓ ନିର୍ଦ୍ୱନ୍ଦ୍ୱ ହୋଇ ମୃଗଙ୍କ ସହିତ

ବିଚରଣ କରିବୁଁ । ୨୬ । ହେ ପୁତ୍ରେ ! ଆମ୍ଭେ ତୁମ୍ଭଠାରେ ପ୍ରୀତ ହୋଇଅଛୁଁ; ତୁମ୍ଭର ମଙ୍ଗଳ ହେଉ; ତୁମ୍ଭେ ଆମ୍ଭର ପ୍ରିୟକାରୀ ପୁତ୍ର; ଏହି ତୁମ୍ଭର ଯୌବନ ଓ ରାଜ୍ୟ, ଏମାନଙ୍କୁ ପୁନର୍ଗ୍ରହଣ କର । ୧୭ ।

ବୈଶମ୍ପାୟନ ବୋଇଲେ, ନହୁଷାତ୍ମଜ ଯଯାତି ଆପଣାର ଜରାବସ୍ଥାକୁ ଗ୍ରହଣ କଲେ ଓ ପୁରୁ ପୁନର୍ବାର ନିଜର ଯୌବନକୁ ପ୍ରାପ୍ତ ହେଲେ । ୧୮ । କନିଷ୍ଠ ପୁତ୍ର ପୁରୁଙ୍କୁ ରାଜ୍ୟରେ ଅଭିଷିକ୍ତ କରିବାର ଦେଖି ବ୍ରାହ୍ମଣାଦି ବର୍ଣ୍ଣମାନେ ରାଜାଙ୍କୁ ବୋଇଲେ, ହେ ପ୍ରଭୋ ! ଶୁକ୍ରଙ୍କର ନପ୍ତା ଓ ଦେବଯାନୀଙ୍କର ଜ୍ୟେଷ୍ଠ ସୁତ ଯଦୁଙ୍କୁ ଅତିକ୍ରମ କରି ପୁରୁଙ୍କୁ ରାଜ୍ୟ ଦେବାକୁ ଇଚ୍ଛା କରୁଅଛ; ଯଦୁ ଆପଣଙ୍କର ଜ୍ୟେଷ୍ଠ ପୁତ୍ର, ତତ୍ପରେ ତୁର୍ବସୁ, ତତ୍ପରେ ଶର୍ମିଷ୍ଠାଙ୍କର ପୁତ୍ର ଦ୍ରୁହ୍ୟୁ, ତଦନନ୍ତର ଅନୁ ଓ ସର୍ବକନିଷ୍ଠ ପୁରୁ । ଜ୍ୟେଷ୍ଠଙ୍କୁ ଅତିକ୍ରମ କରି କନିଷ୍ଠ କିପରି ରାଜ୍ୟାର୍ହ ହେବେ ? ଏହା ଆମ୍ଭେମାନେ ଆପଣଙ୍କୁ ଜଣାଇଲୁଁ, ଆପଣ ଧର୍ମ ପ୍ରତିପାଳନ କର । ୨୨ ।

ଯଯାତି ବୋଇଲେ, ହେ ବ୍ରାହ୍ମଣାଦି ସମସ୍ତ ବର୍ଣ୍ଣ ! ଆପଣମାନେ ସମସ୍ତେ ଶୁଣନ୍ତୁ, କି ହେତୁରୁ ଆମ୍ଭେ ଜ୍ୟେଷ୍ଠ ପୁତ୍ରଙ୍କୁ ରାଜ୍ୟ ନ ଦେବୁଁ । ଆମ୍ଭେ ଯଦୁଙ୍କୁ ବୋଇଲୁଁ, ସେ ନିୟୋଗ ଯଦୁ ପ୍ରତିପାଳନ କଲେ ନାହିଁ । ଯେ ପିତାଙ୍କର ପ୍ରତିକୂଳ, ସେ ସଜ୍ଜନଙ୍କ ମତରେ ପୁତ୍ର ନୁହଇ । ଯେ ପିତାମାତାଙ୍କର ବଚନ ପ୍ରତିପାଳନ କରଇ ଓ ସେମାନଙ୍କର ହିତ ଓ ଉପକାର କରଇ, ସେହି ସୁପୁତ୍ର ଅଟଇ । ଯେ ପିତାମାତାଙ୍କଠାରେ ପୁତ୍ରବତ୍ ବ୍ୟବହାର କରଇ, ସେହି ସୁପୁତ୍ର ହୁଅଇ । ୨୫ । ଯଦୁ, ତୁର୍ବସୁ, ଦ୍ରୁହ୍ୟୁ ଓ ଅନୁ ଏମାନେ ଆମ୍ଭଙ୍କୁ ଅନେକ ଅବଜ୍ଞା କରିଅଛନ୍ତି । ପୁରୁ ଆମ୍ଭର ବଚନ ପ୍ରତିପାଳନ କରିଅଛନ୍ତି ଓ ଆମ୍ଭଙ୍କୁ ବିଶେଷ ମାନ୍ୟ କରି-ଅଛନ୍ତି । ଆମ୍ଭର କନିଷ୍ଠ ପୁତ୍ର ଜରାବସ୍ଥାକୁ ଧାରଣ କରିଥିଲେ, ସେହି ମିତ୍ରରୂପୀ ପୁରୁ ଆମ୍ଭର ନିୟୋଗ ପ୍ରତିପାଳନ କରିଅଛନ୍ତି । କବିପୁତ୍ର ଉଶନା ଶୁକ୍ର ମଧ୍ୟ ବର ପ୍ରଦାନ କରିଅଛନ୍ତି ଯେ, ଯେଉଁ ପୁତ୍ର ତୁମ୍ଭର ଅନୁବର୍ତ୍ତୀ ହେବେ, ସେହି ରାଜ୍ୟ ଲଭ କରିବେ । ଅତଏବ ଆପଣମାନେ ପୁରୁଙ୍କୁ ରାଜ୍ୟରେ ଅଭିଷିକ୍ତ କରନ୍ତୁ । ୨୯ ।

ପ୍ରଜାମାନେ ଉତ୍ତର କଲେ, ହେ ପ୍ରଭୋ ! ଯେଉଁ ପୁତ୍ର ପିତାମାତାଙ୍କର ସର୍ବଦା ହିତକାରୀ ଓ ଗୁଣସମ୍ପନ୍ନ, ସେ କନିଷ୍ଠ ହେଲେ ହେଁ ସମସ୍ତ ଭଜନ ହୁଅଇ । ତୁମ୍ଭର ପ୍ରିୟକାରୀ ପୁତ୍ର ପୁରୁ ଏହି ରାଜ୍ୟ ପାଇବାର

ଯୋଗ୍ୟ ଅଟନ୍ତି । ଯେଉଁ ସ୍ଥଳେ ଶୁକ୍ର ବର ଦେଇଅଛନ୍ତି, ସେ ସ୍ଥଳେ ଆଉ କହିବାର କିଛି ନାହିଁ । ୩୧ ।

ବୈଶମ୍ପାୟନ ବୋଇଲେ, ପୁରବାସୀମାନେ ଓ ଜନପଦ ସମସ୍ତେ ଯଯାତିଙ୍କ କର୍ତ୍ତୃକ ଉକ୍ତରୂପ ଅଭିହିତ ହେଲେ । ତଦନନ୍ତର ସେ ରାଜା ପୁରୁଙ୍କୁ ରାଜ୍ୟରେ ଅଭିଷିକ୍ତ କରି ବନବାସାର୍ଥ ଦୀକ୍ଷିତ ହୋଇ ବ୍ରାହ୍ମଣ ଓ ତପସ୍ୱୀଙ୍କ ସହିତ ପୁରରୁ ବହିର୍ଗତ ହେଲେ । ୩୩ । ଯଦୁଙ୍କଠାରୁ ଯାଦବ-ମାନେ ଜାତ ହେଲେ, ତୁର୍ବସୁଙ୍କଠାରୁ ଯବନମାନେ ଜାତ ହେଲେ; ଭୋଜମାନେ ଦ୍ରୁହ୍ୟୁଙ୍କର ପୁତ୍ର ଓ ମ୍ଳେଚ୍ଛ ଜାତିମାନେ ଅନୁଙ୍କର ଉତ୍ତର ପୁରୁଷ ଅଟନ୍ତି । ପୁରୁଙ୍କଠାରୁ ପୌରବ ବଂଶ ହେଲା । ସେହି ବଂଶରେ ଜିତେନ୍ଦ୍ରିୟ ହୋଇ ସହସ୍ର ବର୍ଷ ରାଜ୍ୟ କରିବାକୁ ଆପଣ ଜାତ ହୋଇ-ଅଛନ୍ତି ।

---

## ଅଧ୍ୟାୟ—୮୬

ବୈଶମ୍ପାୟନ ବୋଇଲେ—ନହୁଷଙ୍କ ତନୟ ରାଜା ଯଯାତି ଏହି ପ୍ରକାରେ ପ୍ରିୟ ପୁତ୍ରଙ୍କୁ ରାଜ୍ୟାଭିଷିକ୍ତ କରି ହୃଷ୍ଟ ଚିତ୍ତରେ ବାନପ୍ରସ୍ଥ ଆଶ୍ରମ ଅବଲମ୍ବନ କଲେ ଓ ମୁନିବ୍ରତ ଧାରଣ କରି ବ୍ରାହ୍ମଣମାନଙ୍କ ସହିତ ବନରେ ବାସ କରି ଫଳମୂଳାହାରୀ ହୋଇ ଯଥା ସମୟରେ ସ୍ୱର୍ଗ ଲାଭ କଲେ । ୨ । ସେ ସ୍ୱର୍ଗକୁ ଗମନ କରି କିଛିକାଳ ପରମ ସୁଖରେ ଅବସ୍ଥିତି କରି ଇନ୍ଦ୍ରଙ୍କ ଦ୍ୱାରା ପୁନଶ୍ଚ ନିପାତିତ ହେଲେ । ୩ । ଏ ରୂପ ଶୁଣାଅଛି ଯେ ସ୍ୱର୍ଗରୁ ପ୍ରଚ୍ୟୁତ ହୋଇ ଅବନୀରେ ନ ପଡ଼ି ଅନ୍ତରୀକ୍ଷରେ ଅବସ୍ଥାନ କଲେ; ତଦନନ୍ତର ବୀର୍ଯ୍ୟବାନ୍ ରାଜା ବସୁମାନ୍, ଅଷ୍ଟକ, ପ୍ରତର୍ଦ୍ଦନ ଓ ଶିବିଙ୍କ ସହିତ ଏକତ୍ର ହୋଇ ସ୍ୱର୍ଗାରୋହଣ କଲେ । ୫ ।

ଜନମେଜୟ ପ୍ରଶ୍ନ କରିଥିଲେ —ହେ ବିପ୍ର ! ମହୀପତି ଯଯାତି କି କାରଣରୁ ପୁନର୍ବାର ଦେବଲୋକ ପ୍ରାପ୍ତ ହେଲେ, ତାହା ପ୍ରକୃତ ରୂପେ ଆଦ୍ୟୋପାନ୍ତ ଶ୍ରବଣ କରିବାକୁ ଇଚ୍ଛା କରୁ । ଆପଣ ଏହି ବ୍ରାହ୍ମଣ ଓ ଋଷିଗଣଙ୍କ ସମକ୍ଷରେ ସେହି କୁରୁବଂଶ ବର୍ଦ୍ଧନ, ସତ୍ୟକୀର୍ତ୍ତି, ସୂର୍ଯ୍ୟତୁଲ୍ୟ ତେଜସ୍ୱୀ, ବିସ୍ତୀର୍ଣ୍ଣଯଶା, ଇନ୍ଦ୍ରସମ, ପୃଥିବୀପତି ଯଯାତିଙ୍କ ଚରିତ ବର୍ଣ୍ଣନ କରନ୍ତୁ । ଆମ୍ଭେ ଶୁଣିବାକୁ ଇଚ୍ଛା କରୁ ।

ବୈଶମ୍ପାୟନ ବୋଇଲେ, ହେ ରାଜନ୍ ! ସ୍ୱର୍ଗରେ ଓ ମର୍ତ୍ତ୍ୟରେ ପୁଣ୍ୟକାରିଣୀ ଓ ସର୍ବପାପବିନାଶିନୀ ଯଯାତିଙ୍କର ଉତ୍ତମ କଥାକୁ ଆମ୍ଭେ ବର୍ଣ୍ଣନ କରିବୁ । ୯ । ନହୁଷପୁତ୍ର ରାଜା ଯଯାତି କନିଷ୍ଠ ପୁତ୍ର ପୁରୁଙ୍କୁ ରାଜ୍ୟରେ ଅଭିଷିକ୍ତ କରି ଓ ଯଦୁ ପ୍ରଭୃତି ପୁତ୍ରଙ୍କୁ ମ୍ଲେଚ୍ଛଦେଶରେ ପରିତ୍ୟକ୍ତ କରି ସୁଖରେ ବନକୁ ଗମନ କଲେ ଓ ସେଠାରେ ଫଳମୂଳାହାରୀ ହୋଇ ବହୁକାଳ ବାସ କଲେ । ୧୧ । ସେ ରାଜା ବ୍ରତଧାରୀ ଓ ଜିତକ୍ରୋଧ ହୋଇ ପିତୃଗଣଙ୍କୁ ତର୍ପଣ କଲେ ଓ ଅଗ୍ନିରେ ବିଧିପୂର୍ବକ ଆହୁତିଦାନ କଲେ । ପୁନର୍ବାର ସେ ଶିଳୋଞ୍ଛ-ବୃତ୍ତି ଅବଲମ୍ବନ କରି ବନ୍ୟ ଫଳାହ-ହାର ଅତିଥିଙ୍କୁ ପୂଜା କରି ଶେଷାନ୍ନରେ ନିଜର ଜୀବନ ରକ୍ଷା କଲେ । ଏହି ପ୍ରକାର ବୃତ୍ତି ଅବଲମ୍ବନ କରି ରାଜା ଯଯାତି ସହସ୍ରେ ବର୍ଷ ଅତିବାହିତ କଲେ ଓ ତଦନନ୍ତର ତ୍ରିଂଶତ୍ ବର୍ଷ ଜଳପାନ କରି ବାକ୍ୟ ଓ ମନକୁ ନିୟତ କରି ରହିଲେ । ୧୪ । ତତ୍ପରେ ବର୍ଷେ କାଳ ବାୟୁ ଭକ୍ଷଣ ଓ ଜନିଦ୍ର ହୋଇ କ୍ଷେପଣ କଲେ । ତତ୍ପରେ ଏକବର୍ଷ ପଞ୍ଚାଗ୍ନି ମଧ୍ୟରେ ତପସ୍ୟା କଲେ । ୧୫ । ତାହା ଉତ୍ତାରେ ବାୟୁ ଆହାର କରି ଛଅମାସ ଏକପାଦରେ ଦଣ୍ଡାୟମାନ ହୋଇ ଦ୍ୟୁଲୋକ ଓ ଭୂଲୋକକୁ ଉଜ୍ଜ୍ୱଳ କରି ସ୍ୱର୍ଗାରୋହଣ କଲେ । ୧୬ ।

---

## ଅଧ୍ୟାୟ—୮୬

ବୈଶମ୍ପାୟନ ବୋଇଲେ—ସେହି ରାଜେନ୍ଦ୍ର ଯଯାତି ସ୍ୱର୍ଗକୁ ଗମନ କରି ଦେବଗୃହରେ ବାସ କଲେ । ସେଠାରେ ଦେବତା, ସାଧ୍ୟ, ମରୁତ୍ ଓ ବସୁଗଣ ତାହାଙ୍କର ପୂଜା କଲେ । ସେହି ପୁଣ୍ୟକାରୀ ପୃଥ୍ୱୀପାଳ ଦେବ-ଲୋକରୁ ବ୍ରହ୍ମଲୋକକୁ ଗମନାଗମନ କରୁଥିଲେ ବୋଲି ଜନଶ୍ରୁତି ଅଛି । କୌଣସି ସମୟରେ ସେହି ନୃପଶ୍ରେଷ୍ଠ ଧରଣୀନାଥ ଯଯାତି ଇନ୍ଦ୍ରଙ୍କ ନିକଟକୁ ଗମନ କରି ନିଜ କଥା ଅବସାନରେ ଇନ୍ଦ୍ରଙ୍କ କର୍ତ୍ତୃକ ପରିପୃଷ୍ଟ ହେଲେ । ହେ ରାଜନ୍ ! ଯେତେବେଳେ ପୁରୁ ତୁମ୍ଭର ଜରାଗ୍ରହଣ କରି ତୁମ୍ଭରି ସ୍ୱରୂପରେ ଭୂମଣ୍ଡଳରେ ବିଚରଣ କଲେ, ତେତେବେଳେ ତୁମ୍ଭେ ତାଙ୍କୁ ରାଜ୍ୟ ପ୍ରଦାନ କରି କି ବୋଇଲ ? ସତ୍ୟ କରି କହ । ଯଯାତି ଉତ୍ତର

ହେଲେ, ତେତେବେଳେ ଆମ୍ଭେ ପୁରୁଙ୍କୁ କହିଥିଲୁଁ ଯେ ସେ ଗଙ୍ଗାଯମୁନାର ମଧ୍ୟସ୍ଥିତ ଦେଶମାନଙ୍କର ରାଜା ହେବେ ଓ ତାହାଙ୍କର ଭ୍ରାତାମାନେ ମ୍ଳେଚ୍ଛଜାତିର ଅଧିପତି ହେବେ ।୫।

କ୍ରୁଦ୍ଧ ବ୍ୟକ୍ତି ଅପେକ୍ଷା ଅକ୍ରୁଦ୍ଧ ବ୍ୟକ୍ତି ଶ୍ରେଷ୍ଠ, ଅସହିଷ୍ଣୁ ଅପେକ୍ଷା ସହିଷ୍ଣୁ ଶ୍ରେଷ୍ଠ, ଇତର ପ୍ରାଣୀଙ୍କ ଅପେକ୍ଷା ମାନବଜାତି ଶ୍ରେଷ୍ଠ ଓ ଅବିଦ୍ୱାନ ବ୍ୟକ୍ତି ଅପେକ୍ଷା ବିଦ୍ୱାନ ବ୍ୟକ୍ତି ଶ୍ରେଷ୍ଠ ବୋଲି ଗଣ୍ୟ ହୁଅନ୍ତି ।୬। କୌଣସି ବ୍ୟକ୍ତି ଅହିତ କଲେ ତା ପ୍ରତି ଅହିତ କରିବ ନାହିଁ । ଯେ ହେତୁରୁ ସହିଷ୍ଣୁ ବ୍ୟକ୍ତିର କ୍ରୋଧ ଆକ୍ରୋଶକାରୀକୁ ଦଗ୍ଧ କରେ ଓ ସେହି କ୍ଷମାଶୀଳ ବ୍ୟକ୍ତିର ପୁଣ୍ୟଲାଭ ମଧ୍ୟ ହୁଅଇ । ପରପୀଡ଼କ କ୍ରୂରବାଦୀ ହେବନାହିଁ, ଅଭଦ୍ରର ପ୍ରଭୃତି ନୀଚ ଉପାୟଦ୍ୱାରା ଶତ୍ରୁଙ୍କୁ ବଶୀଭୂତ କରିବ ନାହିଁ ଓ ଯେଉଁ ବାକ୍ୟରେ ପରର ମନଃପୀଡ଼ା ହେବ ସେପରି ଦଗ୍ଧକାରୀ ପାପସୂଚକ ବାକ୍ୟ ମଧ୍ୟ କହିବ ନାହିଁ । ଯେଉଁ ବ୍ୟକ୍ତି କଣ୍ଟକରୂପ ବଚନଦ୍ୱାରା ମାନବଗଣଙ୍କୁ ବିଦ୍ଧକରେ, ଯାହା ମୁଖରେ ପରପୀଡ଼ନ ବାକ୍ୟରୂପ ରାକ୍ଷସ ନିବଦ୍ଧ ଅଛି, ଏମନ୍ତ ତୀକ୍ଷ୍ଣବାଦୀ ନିଷ୍ଠୁର ବ୍ୟକ୍ତିକୁ ଦେଖିଲେ ସୁଦ୍ଧା ଲକ୍ଷ୍ମୀ ତ୍ୟାଗ କରନ୍ତି ।୯। ସଚ୍ଚରିତ୍ର ବ୍ୟକ୍ତିଙ୍କୁ ଅସାଧୁ ଲୋକେ ତିରସ୍କାର କଲେହେଁ ସାଧୁ ଲୋକେ ତାହାଙ୍କୁ ପୂଜା କରନ୍ତି ଓ ରକ୍ଷା କରନ୍ତି । ସେ ସାଧୁଙ୍କ ଚରିତ୍ର ଅବଲମ୍ବନ କରି ଅସାଧୁମାନଙ୍କର ନିନ୍ଦାବାକ୍ୟରେ କ୍ଷମା ପ୍ରଦର୍ଶନ କରନ୍ତି ।୧୦। ମୁଖରୁ ବାକ୍ୟରୂପ ତୀକ୍ଷ୍ଣବାଣ ନିର୍ଗତ ହୋଇ ପରର ମର୍ମସ୍ଥାନରେ ପତିତ ହୁଅଇ । ତାହା-ଦ୍ୱାରା ଯେଉଁ ବ୍ୟକ୍ତି ଆହତ ହୁଅଇ, ସେ ଦିବାରାତ୍ର ମନୋଦୁଃଖରେ ଦୁଃଖିତ ହୁଏ; ଅତଏବ ପଣ୍ଡିତମାନେ କୌଣସି ବ୍ୟକ୍ତି ପ୍ରତି ସେହି ବଚନ-ବାଣ ପରିତ୍ୟାଗ କରନ୍ତି ନାହିଁ ।୧୧। ସର୍ବପ୍ରାଣୀପ୍ରତି ଦୟା, ମୈତ୍ରୀ, ଦାନ ଓ ମଧୁର ବାକ୍ୟ, ଏହି ଚାରିଗୋଟି ତୁଲ୍ୟ ସମ୍ବଳ ତ୍ରିଭୁବନରେ ଆଉ ନାହିଁ ।୧୨। ଅତଏବ ସର୍ବଦା ଶାନ୍ତବାକ୍ୟ ପ୍ରୟୋଗ କରିବ, ନିଷ୍ଠୁର ବାକ୍ୟ କଦାପି କହିବ ନାହିଁ; ପୂଜ୍ୟ ବ୍ୟକ୍ତିଙ୍କୁ ପୂଜା କରିବ, ଦାନଶୀଳ ହେବ; କଦାପି ଯାଚ୍ଞା କରିବ ନାହିଁ ।୧୩।

# ଅଧ୍ୟାୟ—୮୮

ଇନ୍ଦ୍ର ବୋଇଲେ—ହେ ରାଜନ୍ ! ନହୁଷପୁତ୍ର ଯଯାତେ ! ଯେତେ-ବେଳେ ତୁମ୍ଭେ ସମସ୍ତ ଗୃହ କର୍ମ ସମାପନ କରି ଗୃହାଶ୍ରମ ପରିତ୍ୟାଗପୂର୍ବକ ବନକୁ ଗମନ କଲ, ସେତେବେଳେ ତୁମ୍ଭେ ତପସ୍ୟାରେ କାହା ସଦୃଶ ହୋଇଥିଲ ବୋଲ ।

ଯଯାତି ବୋଇଲେ, ହେ ବାସବ ! ଦେବ, ମାନବ, ଗନ୍ଧର୍ବ ଓ ମହର୍ଷିମାନଙ୍କ ମଧ୍ୟରେ ଆମ୍ଭ ସଦୃଶ ତପସ୍ୱୀ କାହାରିକି ଦେଖୁନାହୁଁ ।

ଇନ୍ଦ୍ର ବୋଇଲେ, ହେ ରାଜନ୍ ! ତୁମ୍ଭେ ଅନ୍ୟ ବ୍ୟକ୍ତିଙ୍କର ପ୍ରଭାବ ଅବଗତ ନ ହୋଇ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ବ୍ୟକ୍ତିମାନଙ୍କୁ, ତୁମ୍ଭର ସଦୃଶ ବ୍ୟକ୍ତିମାନଙ୍କୁ, ଓ ଯେଉଁମାନେ ତୁମ୍ଭଠାରୁ ପ୍ରଭାବରେ ନ୍ୟୂନ, ସେମାନଙ୍କୁ ସମସ୍ତଙ୍କୁ, ଅବମାନନା କଲ; ଅତଏବ ତୁମ୍ଭର ପୁଣ୍ୟ କ୍ଷୟ ହେଲା, ସୁତରାଂ ଏହି ସୁଖ ଭୋଗ ମଧ୍ୟ ସମାପ୍ତ ହେଲା । ଏଣୁ ତୁମ୍ଭେ ଅଦ୍ୟ ଦେବଲୋକରୁ ପତିତ ହେଲ । ୩ ।

ଯଯାତି ବୋଇଲେ, ହେ ଦେବରାଜ ! ଦେବ, ଋଷି ଓ ଗନ୍ଧର୍ବ-ମାନଙ୍କ ପ୍ରତି ଅବମାନନା ହେତୁରୁ ଯଦି ଆମ୍ଭର ସ୍ୱର୍ଗଭୋଗ ଶେଷ ହେଲା, ତାହା ହେଲେ ଆମ୍ଭେ ଦେବଲୋକରୁ ପରିଭ୍ରଷ୍ଟ ହୋଇ ସଜ୍ଜନମାନଙ୍କ ମଧ୍ୟରେ ପତିତ ହେବାକୁ ଇଚ୍ଛା କରୁଅଛୁ । ୪ ।

ଇନ୍ଦ୍ର ବୋଇଲେ, ହେ ରାଜନ୍ ! ତୁମ୍ଭେ ସ୍ୱର୍ଗରୁ ପତିତ ହୋଇ ସଜ୍ଜନଙ୍କ ସମୀପରେ ରହିବ; ସେଠାରେ ତୁମ୍ଭେ ପୁନର୍ବାର ପ୍ରତିଷ୍ଠା ଲାଭ କରିପାରିବ । ହେ ଯଯାତେ ! ଏବେ ଧର୍ମର ମର୍ମ ବିଦିତ ହେଲ, ପୁନର୍ବାର ଆପଣାର ସଦୃଶ ଓ ଶ୍ରେଷ୍ଠବ୍ୟକ୍ତିଙ୍କୁ ଅବମାନନା କରିବ ନାହିଁ ।

ବୈଶମ୍ପାୟନ ବୋଇଲେ, ତଦନନ୍ତର ଅମର-ରାଜସେବିତ ପୁଣ୍ୟଲୋକମାନଙ୍କୁ ପରିତ୍ୟାଗ କରି ଯଯାତି ପତିତ ହେଉଅଛନ୍ତି, ଏମନ୍ତ ସମୟରେ ତାହାଙ୍କୁ ସଦ୍ଧର୍ମ ପ୍ରତିପାଳକ ରାଜର୍ଷିଶ୍ରେଷ୍ଠ ଅଷ୍ଟକ ଦେଖି ବୋଇଲେ, ବାସବ ସଦୃଶ ରୂପସମ୍ପନ୍ନ, ଯୁବା ଓ ଅଗ୍ନିତୁଲ୍ୟ ସ୍ୱତେଜ ଦ୍ୱାରା ଦୀପ୍ୟମାନ ତୁମ୍ଭେ କିଏ ? ଆକାଶ ବିହାରୀଙ୍କ ଶ୍ରେଷ୍ଠ ସୂର୍ଯ୍ୟ ଯେପରି ଅମ୍ବୁଧରର ଅନ୍ଧକାର ଭେଦ କରି ପ୍ରକାଶିତ ହୁଅନ୍ତି, ତଦ୍‌ବତ୍ ତୁମ୍ଭେ ଦୃଶ୍ୟ ହେଉଅଛ, ତୁମ୍ଭେ କିଏ ? ବୈଶ୍ୱାନର ଓ ସୂର୍ଯ୍ୟଙ୍କ ସମାନ ଅପ୍ରମେୟ

ଦ୍ୟୁତିସମ୍ପନ୍ନ ହୋଇ ଆକାଶରୁ ପତିତ ହେବାର ଦେଖି ସମସ୍ତେ ବିସ୍ମୟାବିଷ୍ଟ ଚିତ୍ତରେ ତୁମ୍ଭେ କିଏ ବୋଲି ବିତର୍କ କରୁଅଛନ୍ତି । ୮ । ଆମ୍ଭେମାନେ ସମସ୍ତେ ତୁମ୍ଭଙ୍କୁ ଆକାଶ ମାର୍ଗରେ ଇନ୍ଦ୍ର, ଅର୍କ ଓ ବିଷ୍ଣୁଙ୍କ ପରି ପ୍ରଭାବଶାଳୀ ଓ ପତିତ ହେବାର ଦେଖି ପତନର ହେତୁ ଜାଣିବା ନିମିତ୍ତ ତୁମ୍ଭ ସମୀପକୁ ଆଗମନ କରିଅଛୁଁ । ହେ ସ୍ପୃହଣୀୟ ରୂପ ! ତୁମ୍ଭେ କିଏ ଓ କି ନିମିତ୍ତ ପତିତ ହେଉଅଛ ଏହା ପଚାରିବା ନିମିତ୍ତ ଆମ୍ଭେମାନେ ଅଗ୍ରେ ଧୃଷ୍ଟତା ପ୍ରକାଶ କରୁନ୍ତୁ ନାହିଁ, କିନ୍ତୁ ଯହୁଁ ତୁମ୍ଭେ ଆମ୍ଭଙ୍କୁ କିଏ ବୋଲି ନ ପଚାରିଲ, ତହୁଁ ଆମ୍ଭେମାନେ ଅଗ୍ରସର ହୋଇ ତୁମ୍ଭଙ୍କୁ ପ୍ରଶ୍ନ କରୁଅଛୁ । ୧୦ । ହେ ଇନ୍ଦ୍ରସମ ପ୍ରଭାବ ! ତୁମ୍ଭର ଭୟ ଦୂର ହେଉ; ବିଷାଦ ଓ ମୋହକୁ ପରିତ୍ୟାଗ କର; ସଜ୍ଜନଙ୍କ ସମୀପରେ ତୁମ୍ଭେ ଅବସ୍ଥାନ କଲେ ବଳନିସୂଦନ ଶକ୍ର ମଧ୍ୟ ତୁମ୍ଭର କିଛି କ୍ଷତି କରିପାରିବେ ନାହିଁ । ହେ ଅମରରାଜକଳ୍ପ ! ସାଧୁଜନମାନେ ସୁଖଭ୍ରଷ୍ଟ ହେଲେ ସାଧୁ-ଜନମାନେ ସର୍ବଦା ତାହାଙ୍କର ରକ୍ଷାବିଧାନ କରନ୍ତି । ସ୍ଥାବର ଓ ଜଙ୍ଗମର ପ୍ରଭୁ ସଜ୍ଜନମାନେ ଅନେକ ଏଠାରେ ବିଦ୍ୟମାନ କରିଅଛନ୍ତି, ଅତଏବ ତୁମ୍ଭେ ସଦୃଶ ସଜ୍ଜନ ସମୀପରେ ସମାଗତ ହୋଇଅଛ । ଯେପରି ତାପ ପ୍ରଦାନରେ ଅଗ୍ନି ପ୍ରଭୁ, ବୀଜଧାରଣରେ ଭୂମି ପ୍ରଭୁ ଓ ପ୍ରକାଶ କରିବାରେ ସୂର୍ଯ୍ୟ ପ୍ରଭୁ; ତଦ୍‌ବତ୍ ସଜ୍ଜନମାନଙ୍କର ଅଭ୍ୟାଗତ ପ୍ରଭୁ ଅଟନ୍ତି । ୧୩ ।

## ଅଧ୍ୟାୟ—୮୯

ଯଯାତି ବୋଇଲେ—ଆମ୍ଭେ ନହୁଷଙ୍କର ପୁତ୍ର ଓ ପୁରୁଙ୍କର ପିତା । ଆମ୍ଭେ ସର୍ବଭୂତଙ୍କୁ ଅବମାନନା କରିବାରୁ ସୁର, ସିଦ୍ଧ ଓ ଋଷିଗଣଙ୍କର ଲୋକରୁ ପ୍ରଭ୍ରଂଶିତ ହେଲୁ ଓ ପୁଣ୍ୟ କ୍ଷୀଣ ହେବାରୁ ସେଠାରୁ ପରିଚ୍ୟୁତ ହେଲୁ । ୧ । ଦ୍ୱିଜମାନଙ୍କ ମଧ୍ୟରେ ଯେ ବିଦ୍ୟାରେ, ତପସ୍ୟାରେ ଅଥବା ଜନ୍ମରେ ବୃଦ୍ଧ ହୁଏ, ସେ ପୂଜ୍ୟ ହୁଅଇ । ଏହି ନିୟମାନୁସାରେ ଆମ୍ଭେ ବୟସରେ ଆପଣଙ୍କଠାରୁ ବଡ଼ ହୋଇଥିବାରୁ ଆପଣମାନଙ୍କୁ ଅଭିବାଦନ କଲୁ ନାହିଁ । ୨ ।

ଅଷ୍ଟକ ବୋଇଲେ, ହେ ରାଜନ୍ ! ଆପଣ ଯାହା ବୋଇଲେ ଯେ ଯେଉଁ ବ୍ୟକ୍ତି ବୟସରେ ବଡ଼ ସେ ପୂଜ୍ୟ, ଏ କଥା ଅଧିକ ନୁହଇ; କିନ୍ତୁ

ଦ୍ୱିଜମାନଙ୍କ ମଧ୍ୟରେ ଯେ ବିଦ୍ୟାରେ ବା ତପସ୍ୟାରେ ବୃଦ୍ଧ, ସେ ପୂଜ୍ୟ ହୁଅନ୍ତି । ୩ । ଯଯାତି ବୋଇଲେ, ପଣ୍ଡିତମାନେ ବୋଲିଅଛନ୍ତି ଯେ ସତ୍କର୍ମର ପ୍ରତିକୂଳତା କରିବା ପାପ । ବିଦ୍ୟା ଓ ତପସ୍ୟାଦି କର୍ମରେ ଦର୍ପ କଲେ ପାପଲୋକକୁ ଲୋକେ ଗମନ କରନ୍ତି । ଅତଏବ ସାଧୁ ପୁରୁଷମାନେ ପାପାଚରଣ ବା ପାପର ଆନୁକୂଲ୍ୟ କରନ୍ତି ନାହିଁ । ଆମ୍ଭର ବିପୁଳ ଧନ ଥିଲା, ଏବେ ସେସବୁ ନଷ୍ଟ ହୋଇଅଛି । ବର୍ତ୍ତମାନ ଆମ୍ଭେ ଅନ୍ୱେଷଣ କଲେ ମଧ୍ୟ ତାହା ପ୍ରାପ୍ତ ହେବା ନାହିଁ । ଏହିପରି ଅବଧାରଣ କରି ଯେଉଁ ବ୍ୟକ୍ତି ଆପଣାର ହିତସାଧନରେ ରତ ହୁଅନ୍ତି, ସେହି ଯଥାର୍ଥ ସାଧୁ । ଯେ ବହୁବିଧ ଯଜ୍ଞର ଅନୁଷ୍ଠାନ କରନ୍ତି, ଯେ ସର୍ବବିଦ୍ୟାରେ ପାରଦର୍ଶୀ, ଯେ ବେଦ-ମାନଙ୍କୁ ଅଧ୍ୟୟନ କରି ଦେହକୁ ତପସ୍ୟାରେ ନିଯୁକ୍ତ ରଖି ବିଗତମୋହ ହୋଇ ସ୍ୱର୍ଗଲୋକକୁ ଗମନ କରନ୍ତି, ସେହି ବ୍ୟକ୍ତି ମହାଧନ । ୬ । ବହୁ ଧନର ଅଧିପତି ହୋଇ ଅତିଶୟ ହୃଷ୍ଟ ହେବା ବିଧେୟ ନୁହଇ; ନିରହଙ୍କାର ହୋଇ ସର୍ବଦା ବେଦ ଅଧ୍ୟୟନ କରିବା କର୍ତ୍ତବ୍ୟ । କାରଣ ଜୀବଲୋକରେ ଏ ପ୍ରକାର ବହୁବିଧ ପଦାର୍ଥ ଅଛି, ଯାହାକି ମନୁଷ୍ୟଙ୍କ ଚେଷ୍ଟାରେ ପ୍ରାପ୍ତ ନ ହୋଇ ଦୈବାଧୀନ ଘଟଇ । ଅତଏବ ଧୀର ବ୍ୟକ୍ତି ଦୈବଙ୍କୁ ବଳବାନ୍ ଜାଣି ସୁଖ ବା ଦୁଃଖ ପ୍ରାପ୍ତ ହେଲେ ତହିଁରେ ହୃଷ୍ଟ ବା କ୍ଳିଷ୍ଟ ହୋଇ ଆପଣାର ବିଘ୍ନ ସମ୍ପାଦନ କରନ୍ତି ନାହିଁ । ୭ ।

ଦୈବବଶରୁ ଯଦି କୌଣସି ବ୍ୟକ୍ତି ସୁଖ ବା ଦୁଃଖ ପ୍ରାପ୍ତ ହୁଅଇ, ତେବେ ତାହାଙ୍କର କର୍ତ୍ତବ୍ୟ ଯେ ସେ ଦୈବକୁ ବଳବାନ୍ ଜ୍ଞାନ କରି ସୁଖ ଓ ଦୁଃଖ, ହୃଷ୍ଟ ବା ସଞ୍ଜ୍ୱରିତ ନ ହୋଇ ରହିବେ । ୮ । ଧୀର ବ୍ୟକ୍ତି ଦୁଃଖରେ ତପ୍ତ ଓ ସୁଖରେ ପ୍ରହୃଷ୍ଟ ନ ହୋଇ ସମଭାବରେ ରହନ୍ତି । ଅଦୃଷ୍ଟକୁ ବଳୀୟାନ ମନେ କରି କଦାପି ହୃଷ୍ଟ ବା ସଞ୍ଜ୍ୱରିତ ହୁଅନ୍ତି ନାହିଁ । ୯ । ବିଧାତା ଏ ସଂସାରରେ ଆମ୍ଭଙ୍କୁ ଯେପରି ରକ୍ଷା କରିବେ ଆମ୍ଭେ ସେହିପରି ରହିବୁ ବୋଲି ଆମ୍ଭର ଦୃଢ଼ ବିଶ୍ୱାସ ଅଛି । ଅତଏବ ହେ ଅଷ୍ଟକ ! ଭୟରେ ଆମ୍ଭେ କଦାପି ମୁଗ୍ଧ ହେଉନା, କି ଆମ୍ଭ ମାନସରେ କୌଣସି ସନ୍ତାପ ହୁଅଇ ନାହିଁ । ୧୦ । ସ୍ୱେଦଜ, ଅଣ୍ଡଜ, ଉଦ୍ଭିଦ, ସରୀସୃପ, କୃମି, ଜଳର ମତ୍ସ୍ୟ, ପ୍ରସ୍ତର, ତୃଣ, କାଷ୍ଠ ପ୍ରଭୃତି ସମସ୍ତ ପ୍ରାଣୀ ଓ ପଦାର୍ଥଙ୍କର ପ୍ରାରବ୍ଧ କ୍ଷୟ ହେଲେ ବିନାଶପ୍ରାପ୍ତ ହୁଅନ୍ତି । ୧୧ । ହେ ଅଷ୍ଟକ ! ସୁଖ ଓ ଦୁଃଖର ଅନିତ୍ୟତା ବୋଧ କରି କି କାରଣରୁ ଆମ୍ଭେ ସନ୍ତାପ କରିବୁ ? କିସ କରିବୁ ଓ କଅଣ କଲେ ସନ୍ତପ୍ତ

ନ ହେବୁ ଏହା ସ୍ଥିର ଚିତ୍ତରେ ବିଗ୍ଭର କରି ଆମ୍ଭେ ସନ୍ତାପକୁ ବିସର୍ଜ୍ଜନ କରିଅଛୁ । ୧୨ ।

ବୈଶମ୍ପାୟନ ବୋଇଲେ, ନୃପତି ଯଯାତିଙ୍କର ଏହିରୂପ ବଚନ ଶ୍ରବଣ କରି ଅଷ୍ଟକ ପୁନର୍ବାର ସେହି ସର୍ବଗୁଣୋପପନ୍ନ ମାତାମହଙ୍କୁ ସ୍ୱର୍ଗଲୋକର ବୃତ୍ତାନ୍ତମାନ ପ୍ରଶ୍ନ କଲେ । ୧୩ । ଅଷ୍ଟକ କହିଲେ, ହେ ରାଜନ୍ ! ପାର୍ଥିବେନ୍ଦ୍ର ! ଯେଉଁ ଯେଉଁ ପ୍ରଧାନ ଲୋକମାନଙ୍କୁ ଆପଣ ଯଥାବିଧି ଯେତେକାଳ ଭୋଗ କରିଅଛନ୍ତି ସେହି ସମସ୍ତ ଲୋକଙ୍କର ବୃତ୍ତାନ୍ତମାନ ଆପଣ ଯଥାତଥ୍ୟ ରୂପେ ବର୍ଣ୍ଣନ କରନ୍ତୁ । ଆପଣ ଆତ୍ମଜ୍ଞାନୀ ପୁରୁଷ ପ୍ରାୟ ଧର୍ମସମ୍ବନ୍ଧୀୟ ବିଷୟମାନ ଭାଷଣ କରୁଅଛନ୍ତି । ୧୪ ।

ଯଯାତି ବୋଇଲେ, ଆମ୍ଭେ ଇହଲୋକରେ ସାର୍ବଭୌମ ରାଜା ଥିଲୁଁ । ତଦନନ୍ତର ଆମ୍ଭେ ମହତ୍ ଲୋକକୁ ଜୟକରି ସେଠାରେ ସହସ୍ରେ ବର୍ଷ ମାତ୍ର ବାସ କଲୁଁ । ତତ୍ପରେ ପରଲୋକ ପ୍ରାପ୍ତ ହେଲୁଁ । ୧୫ । ତହିଁ ଉତ୍ତାରୁ ସହସ୍ର-ଦ୍ୱାରଯୁକ୍ତ, ରମଣୀୟ ଓ ଶତ ଯୋଜନ ବିସ୍ତୀର୍ଣ୍ଣ ପୁରୁହୂତଙ୍କ ପୁରୀରେ ସହସ୍ର ବର୍ଷ ମାତ୍ର ଅଧିବାସ କଲୁଁ । ୧୬ । ତଦନନ୍ତର ଇନ୍ଦ୍ରପୁରୀ ଅପେକ୍ଷା ଉତ୍କୃଷ୍ଟତର, ଦୁଷ୍ପ୍ରାପ୍ୟ, ଦିବ୍ୟ, ଅଜର ବ୍ରହ୍ମଲୋକ ପ୍ରାପ୍ତ ହୋଇ ସେଠାରେ ସହସ୍ରେ ବର୍ଷ ମାତ୍ର ବସତି କଲୁଁ । ୧୭ । ତତ୍ପରେ ତହିଁରୁ ଉତ୍କୃଷ୍ଟ ଲୋକ ପ୍ରାପ୍ତ ହେଲୁଁ । ୧୭ । ସେହି ଦେବଦେବଙ୍କ ନିବେଶନରେ ଯଥେଷ୍ଟ ବିହାର କଲୁଁ । ସେଠାରେ ସମସ୍ତ ତ୍ରିଦଶଙ୍କଦ୍ୱାରା ସମ୍ପୂଜିତ ହୋଇ ସେମାନଙ୍କ ପ୍ରାୟ ପ୍ରଭାବଶାଳୀ ଓ ଦ୍ୟୁତିମାନ ହୋଇ ଯଥାଭିଲଷିତ ଲୋକସମୂହରେ ବାସ କଲୁଁ । ୧୮ । ପରିଶେଷରେ କାମରୂପୀ ହୋଇ ଦଶଲକ୍ଷ ବର୍ଷ ନନ୍ଦନ ବନରେ ବାସ କରି ସୁଗନ୍ଧ, ପୁଷ୍ପିତ ମନୋହର ବୃକ୍ଷଶ୍ରେଣୀ ସନ୍ଦର୍ଶନ ପୂର୍ବକ ଅପ୍ସରାଗଣଙ୍କ ସହିତ ବିହାର କଲୁଁ ।

ଏହିରୂପେ ସ୍ୱର୍ଗୀୟ ସୁଖରେ ଆସକ୍ତ ହେବାରୁ ବହୁକାଳ ଅତୀତ ହେଲା । ୧୯ । ଅନନ୍ତର ଉଗ୍ରରୂପଧାରୀ ଦେବଦୂତ ଆମ୍ଭ ନିକଟକୁ ଆସି "ଧ୍ୱସ୍ତ ହୁଅ" ବୋଲି ବାକ୍ୟକୁ ତିନିଥର ଉଚ୍ଚ ପ୍ଳୁତ ସ୍ୱରରେ ଉଚ୍ଚାରଣ କରି କହିଲେ (୨୦), ହେ ରାଜସିଂହ ! ଆମ୍ଭେ ଏତିକି ମାତ୍ର ଜ୍ଞାତ ଅଛୁଁ । ତତ୍ପରେ ଆମ୍ଭେ କ୍ଷୀଣପୁଣ୍ୟ ହୋଇ ନନ୍ଦନ ବନରୁ ପରିଭ୍ରଷ୍ଟ ହେଲୁଁ । ହେ ନରେନ୍ଦ୍ର ! ଶୋକକାରୀ ସୁରଗଣଙ୍କର ଅନୁକ୍ରୋଶଯୁକ୍ତ ବଚନକୁ ଅନ୍ତରୀକ୍ଷରେ ଶ୍ରବଣ କଲୁ । ହାୟ ! କି କଷ୍ଟ ! ପୁଣ୍ୟକାରୀ ଓ ପୁଣ୍ୟକୀର୍ତ୍ତି

ଯଯାତି କ୍ଷୀଣପୁଣ୍ୟ ହୋଇ ସ୍ୱର୍ଗରୁ ପତିତ ହେଉଅଛନ୍ତି । ତଦନନ୍ତର ପତନ କାଳରେ ଆମ୍ଭେ ସେମାନଙ୍କୁ ବୋଇଲୁଁ ଯେ ଆମ୍ଭେ କପରି ସଜ୍ଜନମାନଙ୍କ ମଧ୍ୟରେ ପତିତ ହେବୁଁ । ୨୨ । ସେମାନେ ଆପଣମାନଙ୍କର ଯଜ୍ଞଭୂମିକୁ ଆସିବାକୁ କହିଦେଲେ । ଆମ୍ଭେ ଏହି ଯଜ୍ଞଭୂମିର ହବିର୍ଗନ୍ଧକୁ ଅନୁସରଣ କରି ଏଠାକୁ ସତ୍ୱର ଆଗମନ କରୁଅଛୁଁ ।

---

## ଅଧ୍ୟାୟ—୯୦

ଅଷ୍ଟକ ବୋଇଲେ—ହେ ସତ୍ୟପରାକ୍ରମଣ ବସୋ ! ତୁମ୍ଭେ କାମରୂପୀ ହୋଇ ଦଶଲକ୍ଷ ବର୍ଷ ନନ୍ଦନ ବନରେ ବିହାର କରି କି କାରଣରୁ ସେଠାରୁ ବସୁଧାକୁ ଆଗମନ କଲ ?

ଯଯାତି ବୋଇଲେ, ଇହଲୋକରେ ଯେପରି କୌଣସି ବ୍ୟକ୍ତି କ୍ଷୀଣ-ବିତ୍ତ ହେଲେ ତାହାକୁ ତାହାର ଜ୍ଞାତି, ସୁହୃତ୍ ଓ ସ୍ୱଜନମାନେ ପରିତ୍ୟାଗ କରନ୍ତି, ସେହିପରି ସେଠାରେ କ୍ଷୀଣପୁଣ୍ୟ ମନୁଷ୍ୟଙ୍କୁ ଦେବରାଜ ଓ ଦେବତାମାନେ ତତ୍କ୍ଷଣାତ୍ ତ୍ୟାଗ କରନ୍ତି । ୨ । ଅଷ୍ଟକ ବୋଇଲେ, ସେହି ଦେବଲୋକରେ ପ୍ରାଣୀମାନେ କପରି କ୍ଷୀଣପୁଣ୍ୟ ହୁଅନ୍ତି ? ଏ ବିଷୟରେ ଆମ୍ଭର ମନ ଅତିମାତ୍ର ମଗ୍ଧ ଦଗ୍ଧ ହେଉଅଛି; ଆମ୍ଭ ମତରେ ଆପଣ ଆତ୍ମଜ୍ଞାନୀ; ଅତଏବ ଆପଣ ବୋଲନ୍ତୁ କି ପୁଣ୍ୟ କଲେ କାହା ଧାମକୁ ଗମନ କରନ୍ତି । ୩ ।

ଯଯାତି ଉତ୍ତର କଲେ, ହେ ନରଦେବ ! ପୁଣ୍ୟ କ୍ଷୟ ହେଲେ ସମସ୍ତେ ବିଳାପ ଓ ପରିତାପ କରି ଦେବଲୋକରୁ ମର୍ତ୍ତ୍ୟଲୋକ ରୂପ ଘୋର ନରକରେ ପତିତ ହୁଅନ୍ତି ଓ ଭୌମ କଳେବର ଧାରଣ କରି ବିବିଧ ଉପଭୋଗରେ ଆସକ୍ତ ହୋଇ ଗୃଧ୍ର, ଶୃଗାଳ ଓ କୁକ୍‌କୁରଙ୍କ ତୃପ୍ତି ସାଧନାର୍ଥ ପୁତ୍ର ପୌତ୍ରାଦିକ୍ରମେ ବଂଶ ପରିବର୍ଦ୍ଧିତ କରୁଥାନ୍ତି । ୪ । ଅତଏବ ହେ ନରେନ୍ଦ୍ର ! ଯେଉଁ କର୍ମ ଗର୍ହଣୀୟ ଓ ଦୁଷ୍ୟ, ତାହା ସର୍ବତୋଭାବରେ ବର୍ଜନୀୟ ଅଟଇ । ହେ ପାର୍ଥିବ ! ଆପଣଙ୍କୁ ସବୁ ବିଷୟ ବୋଇଲୁ । ଆଉ ଏବେ କଣ କହିବୁ କହ । ୫ ।

ଅଷ୍ଟକ ବୋଇଲେ, ଯେତେବେଳେ ଗୃଧ୍ର, ଶିତିକଣ୍ଠ ପ୍ରଭୃତି ପକ୍ଷିଗଣ ସ୍ୱର୍ଗଚ୍ୟୁତ ମନୁଷ୍ୟମାନଙ୍କୁ ପଥ ମଧ୍ୟରେ ଭକ୍ଷଣ କରନ୍ତି, ତେତେ-ବେଳେ ସେମାନେ କପର ଜୀବିତ ରହନ୍ତି ଓ ଏହି ପୃଥିବୀରେ ସେମାନେ କପର ଆବିର୍ଭୂତ ହୁଅନ୍ତି ? ରୌରବ ବୈତରଣୀ ପ୍ରଭୃତି ନରକମାନଙ୍କର ନାମମାନ ଶୁଣାଅଛୁ, କନ୍ତୁ ତଦ୍ଭିନ୍ନ 'ଭୌମ ନରକ' ବୋଲି ନରକର ନାମ ଆମ୍ଭେ ଶୁଣିନାହୁଁ । ୬ ।

ଯଯାତି ବୋଇଲେ, ଜୀବମାନେ ଦେହତ୍ୟାଗ ପୂର୍ବକ ଆପଣାର କର୍ମାନୁସାରେ ଜନମୀର କୁକ୍ଷିରେ ଜନ୍ମଗ୍ରହଣ କରି କାଳକ୍ରମରେ ପ୍ରସୂତ ହୋଇ ପ୍ରକାଶ୍ୟ ରୂପେ ପୃଥିବୀରେ ସଞ୍ଚରଣ କରୁଥାନ୍ତି । ଏହି ଭୌମ ନରକରେ ସେମାନେ ପତିତ ହୋଇଥାନ୍ତି ଓ ବହୁସଂଖ୍ୟକ ବର୍ଷ ଗତ ହେଲେ ହେଁ ସେମାନେ ଜାଣି ପାରନ୍ତି ନାହିଁ । ୭ । ସ୍ୱର୍ଗରୁ ପତିତ ହେଉଁ ହେଉଁ ଷଷ୍ଟିସହସ୍ର ବା ଅଶୀତି ସହସ୍ର ବର୍ଷ ଅନ୍ତରୀକ୍ଷରେ ଯାତନା ସହ୍ୟ କରନ୍ତି ଓ ସେମାନଙ୍କୁ ତୀକ୍ଷ୍ଣଦଂଷ୍ଟ୍ର ଭୟାନକ ଭୌମ ରାକ୍ଷସମାନେ ବେଦନା ପ୍ରଦାନ କରନ୍ତି । ୮ ।

ଅଷ୍ଟକ ବୋଇଲେ, ଯେଉଁମାନେ ପାପବଶରୁ ସ୍ୱର୍ଗଚ୍ୟୁତ ହୁଅନ୍ତି, ସେମାନଙ୍କୁ ତୀକ୍ଷ୍ଣଦଂଷ୍ଟ୍ର ଭୟାନକ ଭୌମ ରାକ୍ଷସମାନେ ହିଂସା କଲେ ସେମାନେ କପର ଥାନ୍ତି ? କପର ଇନ୍ଦ୍ରିୟାଦିବିଶିଷ୍ଟ ହୁଅନ୍ତି ? କପର ଅବା ଗର୍ଭସ୍ଥ ହୋଇ ଜନ୍ମଗ୍ରହଣ କରନ୍ତି ? ୯ ।

ଯଯାତି ବୋଇଲେ, ସୂକ୍ଷ୍ମ ଭୂତାବୃତ ଜୀବ ସ୍ୱର୍ଗ-ଚ୍ୟୁତି ଦୁଃଖବଶତଃ ଜଳମୟ ଶରୀର ଧାରଣ କରି ପୁରୁଷର ରେତୋରୂପରେ ପରିଣତ ହୁଅଇ; ତତ୍ପରେ ପୁରୁଷ କର୍ତ୍ତୃକ ସେହି ରେତଃ ବିସୃଷ୍ଟ ହୋଇ ସ୍ତ୍ରୀର ଶୋଣିତରେ ମିଶ୍ରିତ ହେବାରୁ ତାହା ପୁଷ୍ପ ଫଳର ଅନୁରୂପ ହୋଇ 'ରଜ' ସଂଜ୍ଞା ପ୍ରାପ୍ତ ହୁଅଇ; ସେହି ରଜଃ ସ୍ତ୍ରୀର ଉଦରରେ ଗର୍ଭରୂପରେ ଉତ୍ପନ୍ନ ହୁଅଇ । ୧୦ । ଜୀବମାନେ ପ୍ରଥମେ ଜଳ, ବାୟୁ, ପୃଥିବୀ, ଆକାଶ ଓ ତେଜଃ ଏହି ପଞ୍ଚମହାଭୂତରେ ଅନୁପ୍ରବେଶ କରନ୍ତି; ତତ୍ପରେ ବନସ୍ପତି ଓ ଔଷଧିରେ ଆବିଷ୍ଟ ହୁଅନ୍ତି । ସେହି ଫଳାଦି ଭକ୍ଷଣ କଲେ ଶୁକ୍ର ଉତ୍ପନ୍ନ ହୁଅଇ । ଶୁକ୍ର ସ୍ତ୍ରୀଠାରେ ସିକ୍ତ ହେଲେ ଗର୍ଭର ସଞ୍ଚାର ହୁଅଇ; ତହିଁରେ ଚତୁଷ୍ପଦ ଓ ଦ୍ୱିପଦ ପ୍ରଭୃତି ଜନ୍ତୁମାନେ ଜନ୍ମ ହୁଅନ୍ତି । ୧୧ ।

ଅଷ୍ଟକ ପ୍ରଶ୍ନ କଲେ, ଯେତେବେଳେ ଜୀବ ନର-ଯୋନି ପ୍ରାପ୍ତ ହୁଅଇ, ତେତେବେଳେ ସେ ସ୍ୱୀୟ ସୂକ୍ଷ୍ମରୂପରେ ମାତୃଗର୍ଭରେ ପ୍ରବିଷ୍ଟ

ହୁଅଇ କି ଭୌତିକ ଶରୀରାନ୍ତର ଧାରଣ କରି ପ୍ରବିଷ୍ଟ ହୁଅଇ ? ଆମ୍ଭେ ସଂଶୟାରୂଢ଼ ହୋଇଅଛୁଁ । ଆମ୍ଭଙ୍କୁ ଏ ସଂଶୟ ଫେଡ଼ି ବୋଲନ୍ତୁ । ୧୨ । ଜୀବମାନଙ୍କର ଶରୀର ଉତ୍ପନ୍ନ କିପରି ହୁଅଇ ? କିପରି ସେମାନଙ୍କର ଚକ୍ଷୁଃ ଶ୍ରୋତ୍ରାଦି ଇନ୍ଦ୍ରିୟବର୍ଗ ଜ୍ଞାନ ଲାଭ କରନ୍ତି ? ହେ ତାତ ! ଆମ୍ଭେମାନେ ଆପଣଙ୍କୁ କ୍ଷେତ୍ରଜ୍ଞ ବୋଲି ଜାଣୁ । ଆପଣ ଏ ସବୁ ବିଷୟରେ ତତ୍ତ୍ୱ ବୋଲିବା ହେଉନ୍ତୁ । ୧୩ ।

ଯଯାତି ବୋଇଲେ, ସୂକ୍ଷ୍ମ ଶରୀରକୁ * ଜୀବ ଆଶ୍ରୟ କରି ପୁରୁଷର ରେତରେ ପ୍ରବିଷ୍ଟ ହୋଇଥାଏ । ସ୍ତ୍ରୀର ଋତୁକାଳରେ ସେ ରେତ, ପୁଷ୍ପରସରେ ସଂପୃକ୍ତ ହୋଇ ତନ୍ମାତ୍ରରେ † କୃତାଧିକାର କୌଣସି ବାୟୁ ବିଶେଷଦ୍ୱାରା ଉତ୍କୃଷ୍ଟତା ପ୍ରାପ୍ତ ଓ କ୍ରମଶଃ ବର୍ଦ୍ଧିତ ହେଉଥାଏ । ୧୪ । ତତ୍ପରେ ଯେତେବେଳେ ସଂପୂର୍ଣ୍ଣ ଅବୟବ ପ୍ରାପ୍ତ ହୋଇ ସଂଜ୍ଞା ଲାଭ ପୂର୍ବକ ମନୁଷ୍ୟାକାରରେ ଭୂମିଷ୍ଠ ହୁଅଇ, ତେତେବେଳେ ଶ୍ରୋତ୍ରଦ୍ୱାରା ଶବ୍ଦ ଜାଣି-ପାରେ, ଚକ୍ଷୁଦ୍ୱାରା ରୂପ ଦେଖଇ, ଘ୍ରାଣଦ୍ୱାରା ଗନ୍ଧ ଆଘ୍ରାଣ କରଇ, ଜିହ୍ୱା-ଦ୍ୱାରା ରସର ଆସ୍ୱାଦନ କରଇ, ଚର୍ମଦ୍ୱାରା ସ୍ପର୍ଶକୁ ଅନୁଭବ କରଇ ଓ ମନଦ୍ୱାରା ପଦାର୍ଥମାନ ଜାଣି ପାରଇ । ହେ ଅଷ୍ଟକ ! ଜୀବାତ୍ମାର ସୂକ୍ଷ୍ମରୂପ ସେହି ଲିଙ୍ଗ ଶରୀର ଏହି ରୂପ ସ୍ଥୂଳ ଶରୀରରେ ଉପନୀତ ହୁଅଇ । ୧୬ ।

ଅଷ୍ଟକ ବୋଇଲେ, ମୃତ ପୁରୁଷ ଦଗ୍ଧ, ନିଖାତ ଅଥବା ପ୍ରକାରାନ୍ତରେ ଧ୍ୱସ୍ତ ହେଲେ ବିନାଶପ୍ରାପ୍ତ ଅଶରୀରଭୂତ ସେହି ପୁରୁଷ କି ରୂପେ ପୁନଶ୍ଚ ଚେତନା ପାଏ ? ୧୭ ।

ଯଯାତି ଉତ୍ତର କଲେ, ହେ ରାଜସିଂହ ! ଜୀବାତ୍ମା ମୃତ୍ୟୁକାଳରେ ପବନାଗ୍ରାନୁସାରୀ ଆପଣାର ପୁଣ୍ୟ ଓ ପାପକୁ ଅଗ୍ରେ କରି ନିଦ୍ରିତପ୍ରାୟ ସ୍ଥୂଳ ଦେହରୁ ଶବ୍ଦ ବିଶେଷ କରି ବହିର୍ଗତ ହୁଅଇ ଓ ଅଚିର କାଳ ମଧ୍ୟରେ ଅନ୍ୟ ଯୋନିକୁ ଆଶ୍ରୟ କରଇ । ୧୮ । ପୁଣ୍ୟବାନ୍ ବ୍ୟକ୍ତିମାନେ ପୁଣ୍ୟ ଯୋନି ଓ ପାପକାରୀ ବ୍ୟକ୍ତିମାନେ ପାପଯୋନି ପ୍ରାପ୍ତ ହୁଅନ୍ତି । କୀଟ ଓ ପତଙ୍ଗାଦି ପାପକାରୀ ଜନ୍ତୁ । ଏହି ନିମିତ୍ତ ସେମାନେ ପାପଯୋନିର

---

* ପଞ୍ଚ ପ୍ରାଣ, ମନ, ବୁଦ୍ଧି ଓ ଦଶ ଇନ୍ଦ୍ରିୟ, ଏହି ଅବୟବରେ ସୂକ୍ଷ୍ମ ଶରୀର ଗଠିତ; ରେତ ମଧ୍ୟରେ ଜୀବନ ନ ଥିଲେ ସେ ରେତ ପଚି, ଅଥବା ପ୍ରକାରାନ୍ତରରେ ନଷ୍ଟ ହୋଇଯାନ୍ତି ।

† ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ, ଏହି ପାଞ୍ଚଗୋଟି ତନ୍ମାତ୍ର ଅର୍ଥାତ୍ ସୂକ୍ଷ୍ମଭୂତ ବୋଲିଯାଏ ।

ଅନ୍ତର୍ଗତ; ଚତୁଷ୍ପଦ, ଦ୍ୱିପଦ ଓ ଷଟ୍‌ପଦ, ଏମାନେ ମଧ୍ୟ ପାପସ୍ୱଭାବ । ଏହି ନିମିତ୍ତ ସେମାନେ ମଧ୍ୟ ପାପଯୋନିର ଅନ୍ତର୍ଭୁକ୍ତ । ହେ ରାଜସିଂହ ! ଯାହା କହିବାର ସବୁ କହିଲୁଁ, ଆପଣଙ୍କର କି ପ୍ରଷ୍ଟବ୍ୟ ଅଛି ? ୨୦ ।

ଅଷ୍ଟକ ବୋଇଲେ, ହେ ତାତ ! ତପସ୍ୟା ଓ ବିଦ୍ୟା ଦୁହିଁଙ୍କ ମଧ୍ୟରୁ କିଣ ଲାଭ କଲେ ଶ୍ରେଷ୍ଠ ଲୋକ ପ୍ରାପ୍ତି ହୁଅଇ ? ଯଦ୍ଦ୍ୱାରା କ୍ରମଶଃ ଶୁଭ-ଲୋକମାନଙ୍କୁ ଯିବାକୁ ଲୋକେ ସମର୍ଥ ହୁଅନ୍ତି, ସେ ସମସ୍ତ ଯଥାବତ୍ ବୋଲିବା ହେଉନ୍ତୁ । ୨୧ ।

ଯଯାତି ବୋଇଲେ, ସନ୍ଥମାନେ ବୋଲନ୍ତି ଯେ ତପସ୍ୟା, ଦାନ, ଶମ, ଦମ, ଲଜ୍ଜା, ଋଜୁତା ଓ ସର୍ବଭୂତଠାରେ ଦୟା—ଏହିମାନେ ସପ୍ତ-ସ୍ୱର୍ଗର ପ୍ରଧାନ ଦ୍ୱାର ଅଟନ୍ତି । ୨୨ । ପରନ୍ତୁ ଯେଉଁ ବ୍ୟକ୍ତିମାନେ ତମୋଽଭିଭୂତ ହୋଇ ଅହଙ୍କାର ପ୍ରକାଶ କରନ୍ତି, ସେମାନେ ନାଶପ୍ରାପ୍ତ ହୁଅନ୍ତି ବୋଲି ସନ୍ଥମାନେ ସର୍ବଦା ବୋଲନ୍ତି । ଯେଉଁ ବ୍ୟକ୍ତି ଅଧ୍ୟୟନ କରି, 'ଆମ୍ଭେ ପଣ୍ଡିତ' ବୋଲି ଅଭିମାନ କରନ୍ତି ଓ ବିଦ୍ୟାଦ୍ୱାରା ଅନ୍ୟର ଯଶ ଲୁପ୍ତ କରନ୍ତି, ତାହାଙ୍କର ସ୍ୱର୍ଗପ୍ରାପ୍ତି ହୁଅଇ ନାହିଁ । ସେମାନଙ୍କ ଅଧ୍ୟୟନର କିଞ୍ଚିନ୍ମାତ୍ର ସୁଫଳ ପ୍ରାପ୍ତି ହୁଅଇ ନାହିଁ । ୨୪ । ଅଗ୍ନିହୋତ୍ର, ମୌନବ୍ରତ ଅଧ୍ୟୟନ ଓ ଯଜ୍ଞ—ଏହି ଚତୁର୍ବିଧ କର୍ମ ଶୁଭଙ୍କର ଅଟଇ କିନ୍ତୁ ଅହଙ୍କାର ସହ ଏହି କର୍ମମାନ କଲେ ସେ ସବୁ ନିଷ୍ଫଳ ଓ ଭୟଙ୍କର ହୁଅଇ । ୨୪ । ମନୁଷ୍ୟ ସମ୍ମାନଭାଜନ ହେଲେ ହେଁ ଅତିଶୟ ହର୍ଷଯୁକ୍ତ ହେବାର ନୁହଇ; ଅବମାନିତ ହେଲେ ଅତିଶୟ ସନ୍ତାପିତ ହେବାର ନୁହେଁ । କାରଣ ଇହ-ଲୋକରେ ସନ୍ଥମାନେ ସନ୍ଥମାନଙ୍କୁ ପୂଜା କରନ୍ତି ଓ ଅସାଧୁମାନେ କଦାପି ସାଧୁବୁଦ୍ଧି ଲାଭ କରନ୍ତି ନାହିଁ । ୨୬ । ଏହି ଆମ୍ଭେ ଦାନ କରୁଅଛୁ, ଯଜ୍ଞ କରୁଅଛୁ, ଅଧ୍ୟୟନ କରୁଅଛୁ, ବ୍ରତ କରୁଅଛୁ, ଏହିପରି କହିବା ଭୟର କାରଣ ବୋଲି ପଣ୍ଡିତମାନେ କହନ୍ତି । ଅତଏବ ଏମାନଙ୍କୁ ସର୍ବତୋଭାବେ ପରିତ୍ୟାଗ କରିବା ବିଧେୟ । ୨୭ । ଯେଉଁ ସବୁ ମନୀଷୀମାନେ ମାନସ-ପଥର ଅଗୋଚର, ଆମ୍ଭମାନଙ୍କର କଲ୍ୟାଣକର, ସନାତନ ବ୍ରହ୍ମଙ୍କୁ ଆଶ୍ରୟ ବୋଲି ଜାଣନ୍ତି, ସେମାନେ ସମାଧି ବଳରେ ସେହି ବ୍ରହ୍ମଙ୍କ ସହିତ ସଂଯୋଗ ଭାବପ୍ରାପ୍ତ ହୋଇ ଇହଲୋକରେ ଓ ପରଲୋକରେ ଉତ୍ତମ ଶାନ୍ତି ପ୍ରାପ୍ତ ହୁଅନ୍ତି । ୨୮ ।

# ଅଧ୍ୟାୟ—୯୧

ଅଷ୍ଟକ ବୋଇଲେ—ଗୃହସ୍ଥ, ଭିକ୍ଷୁ, ବ୍ରହ୍ମଚାରୀ ଓ ବାନପ୍ରସ୍ଥ ଏମାନେ ସତ୍‌ପଥରେ ଥାଇ କି ରୂପ ଆଚରଣ କଲେ ଧର୍ମୋପାର୍ଜନ କରିବାକୁ ସମର୍ଥ ହୁଅନ୍ତି ? ଏ ବିଷୟରେ ନାନା ପ୍ରକାର ମତ ଅଛି; ଆପଣଙ୍କର ମତ କଣ ? ୧ ।

ଯଯାତି ବୋଇଲେ, ବ୍ରହ୍ମଚାରୀଙ୍କର ଧର୍ମ ଏହି ଯେ ଅଧ୍ୟାପନାଦି ଗୁରୁଙ୍କ କାର୍ଯ୍ୟ ନିମିତ୍ତ କଦାପି ଗୁରୁଙ୍କୁ ପ୍ରେରଣା କରିବେ ନାହିଁ । ଗୁରୁ ଯେତେବେଳେ ତାହାଙ୍କୁ ଆହ୍ୱାନ କରିବେ, ତେତେବେଳେ ଅଧ୍ୟୟନ କରିବେ । ଗୁରୁଙ୍କର ଶୟନ କରିବା ପରେ ଶୟନ କରିବେ ଓ ତାହାଙ୍କର ଗାତ୍ରୋତ୍‌ଥାନ କରିବା ପୂର୍ବରୁ ଉତ୍‌ଥାନ କରିବେ । ମୃଦୁ, ଦାନ୍ତ, ସନ୍ତୁଷ୍ଟ-ସ୍ୱଭାବ, ଅପ୍ରମତ୍ତ ଓ ବେଦାଧ୍ୟୟନରେ ନିରତ ରହିବେ । ୨ । ପୁରାତନ ଉପନିଷଦରେ କଥିତ ଅଛି ଯେ ଗୃହସ୍ଥ ବ୍ୟକ୍ତି ଧର୍ମପଥରେ ଅର୍ଥୋପାର୍ଜନ କରି ନିତ୍ୟ ନୈମିତ୍ତିକାଦି ଯଜନ କ୍ରିୟା କରିବେ, ଦାନ କରିବେ, ସର୍ବଦା ଅତିଥିମାନଙ୍କୁ ଭୋଜନ କରାଇବେ ଓ ଅନ୍ୟ ବ୍ୟକ୍ତି ଦାନ ନ କଲେ ତାହା ଗ୍ରହଣ କରିବେ ନାହିଁ । ୩ । ଯେଉଁ ବ୍ୟକ୍ତି ସ୍ୱୀୟ କ୍ଷମତାଦ୍ୱାରା ଲବ୍‌ଧ ଫଳ-ମୂଳକୁ ଆହାର କରି ଜୀବନ ମାତ୍ର ଧାରଣ କରନ୍ତି ଓ ପାପ କର୍ମରୁ ନିବୃତ୍ତ ଥାଇ ଦାନଶୀଳ ଓ ନିୟତାହାର, ନିୟତଚେଷ୍ଟ ଓ ପରହିଂସାରୁ ବିରତ ହୁଅନ୍ତି, ସେହି ବ୍ୟକ୍ତି ମୁନି; ସେ ଅରଣ୍ୟରେ ବାସ କରି ଉତ୍କୃଷ୍ଟ ସିଦ୍ଧିଲାଭ କରନ୍ତି । ୪ । ଯେ ଶିଳ୍ପ କର୍ମଦ୍ୱାରା ଜୀବିକା ନିର୍ବାହ କରନ୍ତି ନାହିଁ, ଗୁଣବାନ୍ ଓ ଜିତେନ୍ଦ୍ରିୟ ହୁଅନ୍ତି, ବିଷୟ ବାସନାରୁ ବିରକ୍ତ ହୋଇ ବୃକ୍ଷମୂଳରେ ଅଥବା ଦେବାଳୟ ଓ କୁମ୍ଭକାରଶାଳା ପ୍ରଭୃତି ଶୂନ୍ୟ ମନ୍ଦିରରେ ଶୟନ କରନ୍ତି, ଅଳ୍ପ ପରିଚ୍ଛଦ ଧାରଣ କରିଥାନ୍ତି, ପରିଗ୍ରହ କରି ନ ଥାନ୍ତି, ଏକାକୀ ଦେଶମାନଙ୍କୁ ବିଚରଣ କରନ୍ତି, ସେ ଭିକ୍ଷୁ ଅଟନ୍ତି । ୫ । ଲୋକେ ନିଦ୍ରାରେ ଅଭିଭୂତ ଓ କାମପରିତନ୍ତ୍ର ହୋଇ ଯେଉଁ ରଜନୀକୁ ସୁଖରେ ଅତିବାହିତ କରନ୍ତି ସେହି ରଜନୀରେ ଯେଉଁ ଜ୍ଞାନୀ ବ୍ୟକ୍ତି ସଂଯତ-ଚିତ୍ତ ହୋଇ ଅରଣ୍ୟରେ ବାସ କରି ସମୟ ଅତିବାହିତ କରନ୍ତି, ସେ ବ୍ୟକ୍ତି ପୂର୍ବ ଦଶପୁରୁଷ ଆପଣାକୁ ଓ ପର ଦଶପୁରୁଷ, ଏପରି ଏକବିଂଶତି ପୁରୁଷକୁ ଉଦ୍ଧାର କରନ୍ତି । ୬ ।

ଅଷ୍ଟକ ବୋଇଲେ, ମୁନି କେତେ ପ୍ରକାର ହୁଅନ୍ତି ? ମୌନବ୍ରତ କେତେ ପ୍ରକାର ହୁଅନ୍ତି ? ଆମ୍ଭେ ଶୁଣିବାକୁ ଇଚ୍ଛା କରୁଅଛୁ । ୮ ।

ଯଯାତି ବୋଇଲେ, ହେ ଜନାଧିପ ! ଅରଣ୍ୟରେ ବାସ କଲେ ଗ୍ରାମମାନେ ଯାହାଙ୍କର ପଶ୍ଚାତ୍ ଭାଗରେ ଥାନ୍ତି ଓ ଗ୍ରାମରେ ବାସ କଲେ, ସମସ୍ତ ଅରଣ୍ୟ ଯାହାଙ୍କ ପଶ୍ଚାତ୍ ଭାଗରେ ଥାଏ, ତାହାଙ୍କୁ ମୁନି ବୋଲି । ୯ ।

ଅଷ୍ଟକ ବୋଇଲେ, ଅରଣ୍ୟରେ ବାସ କଲେ ଗ୍ରାମ କିପରି ପୃଷ୍ଠଦେଶରେ ରହେ ଓ ଗ୍ରାମରେ ବାସ କଲେ ଅରଣ୍ୟ କିପରି ପୃଷ୍ଠଦେଶରେ ରହେ ? ୧୦ ।

ଯଯାତି ବୋଇଲେ, ଯେ ଅରଣ୍ୟବାସୀ ମୁନି ହୁଅନ୍ତି, ସେ ଗ୍ରାମୋଦ୍ଭବ କୌଣସି ବସ୍ତୁ ବ୍ୟବହାର କରନ୍ତି ନାହିଁ । ଏଥିରେ ଅରଣ୍ୟବାସୀଙ୍କର ପୃଷ୍ଠରେ ଗ୍ରାମମାନେ ରହିଲେ । ୧୧ । ଅଗ୍ନିହୋତ୍ରବର୍ଜିତ,ଗୃହାଦିବର୍ଜିତ, ବଂଶ ଓ ବିଦ୍ୟାତ୍ୟାଗୀ ହୋଇ ଯେ ଅତି ପ୍ରୟୋଜନମାତ୍ର ଆଚ୍ଛାଦନୋପଯୁକ୍ତ କୌପୀନ ବସ୍ତ୍ର ମାତ୍ର ଗ୍ରହଣ କରନ୍ତି ଓ ଯାବନ୍ମାତ୍ର ଆହାରରେ ଯାହାଙ୍କ ପ୍ରାଣରକ୍ଷା ହୁଅଇ, ତାବନ୍ମାତ୍ର ଆହାରକୁ ଯେ ଇଚ୍ଛା କରନ୍ତି, ସେହି ଗ୍ରାମବାସୀଙ୍କର ପୃଷ୍ଠଭାଗରେ ଅରଣ୍ୟ ଥିବାର ବୋଲାଯାଏ, ଅର୍ଥାତ୍ ସେ ଅରଣ୍ୟକୁ ଅପେକ୍ଷା କରନ୍ତି ନାହିଁ । ୧୩ । ଯେଉଁ ମୁନି ସମସ୍ତ କାମନା ଓ କର୍ମ ପରିତ୍ୟାଗ ପୂର୍ବକ ଜିତେନ୍ଦ୍ରିୟ ହୋଇ ମୌନବ୍ରତ ଅବଲମ୍ବନ କରିଥାନ୍ତି, ସେ ଇହଲୋକରେ ସିଦ୍ଧିପ୍ରାପ୍ତ ହୁଅନ୍ତି । ୧୪ ।

ଧୌତଦନ୍ତ, ନଖଶୂନ୍ୟ, ଉଦରମ୍ଭରି, ହିଂସାଯୁକ୍ତ ଏ ରୂପ ମୁନିଙ୍କି କିଏ ଅର୍ଚ୍ଚନା କରନ୍ତି ? ୧୫ । ଯେ କ୍ଷମାଶୀଳ ଓ ତପସ୍ୟା କରି କୃଶ ଓ କ୍ଷୀଣ ହୋଇଥାନ୍ତି ଓ ଯାହାଙ୍କର ମାଂସ, ଅସ୍ଥି, ଶୋଣିତ କ୍ଷୀଣତର ହୋଇଥାଏ, ସେ ଇହଲୋକରେ ଓ ପରଲୋକରେ ଜୟୀ ହୁଅନ୍ତି । ୧୬ । ଯେତେବେଳେ ମୌନସମାଶ୍ରିତ ମୁନି ନିର୍ଦ୍ଦ୍ୱନ୍ଦ୍ୱ ଭାବକୁ ଅବଲମ୍ବନ କରନ୍ତି, ତେତେବେଳେ ସେ ଇହଲୋକକୁ ଜୟ କରି ପରେ ପରଲୋକକୁ ସୁଦ୍ଧା ଜୟ କରନ୍ତି । ୧୭ । ଯେପରି ଗବାଦି ପଶୁ ହସ୍ତପଦାଦି ଦ୍ୱାରା ଆହାର ଗ୍ରହଣ ନ କରି କେବଳ ମୁଖଦ୍ୱାରା ଗ୍ରହଣ କରନ୍ତି, ସେହିପରି ମୁନି ଯେତେବେଳେ ପରମାତ୍ମାଙ୍କଠାରେ ନିଷ୍ଠାଲାଭ କରି ଅଯାଚିତ ଆହାରୀୟ ଦ୍ରବ୍ୟକୁ ମୁଖଦ୍ୱାରା କେବଳ ଗ୍ରହଣ କରନ୍ତି, ତେତେବେଳେ ତାହାଙ୍କଠାରେ ଇହଲୋକ ଓ ପରଲୋକ ଦୁହେଁ ମୁକ୍ତିର ହେତୁ ହୁଅନ୍ତି । ୧୮ ।

---

# ଅଧ୍ୟାୟ—୯୧

ଅଷ୍ଟକ ବୋଇଲେ—ହେ ରାଜନ୍ ! ଯୋଗୀ ଓ ଜ୍ଞାନୀ ଦୁହେଁ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପ୍ରାପ୍ତ ନିତ୍ୟ ଧାବମାନ ଓ ଉଦ୍ୟୋଗୀ ହୋଇଥାନ୍ତି; ତାହାଙ୍କ ମଧ୍ୟରୁ କିଏ ଅଗ୍ରେ ସିଦ୍ଧି ଲଭ କରି କୃତକୃତ୍ୟ ହୁଅନ୍ତି ? ୧ ।

ଯଯାତି ବୋଇଲେ, ସେ ଦୁହିଁଙ୍କ ମଧ୍ୟରେ ଯେଉଁ ଭିକ୍ଷୁ କାମଗ୍ରସ୍ତ ଗୃହସ୍ଥଙ୍କ ମେଳରେ ସୁଦ୍ଧା ବାସ କରି ସଂଯତଚିତ୍ତ ଓ ଗୃହଶୂନ୍ୟ ହୋଇ ଗ୍ରାମରେ ବାସ କରିଥାନ୍ତି, ସେ ଅଗ୍ରେ ଦେବତାମାନଙ୍କ ସହିତ ଆତ୍ମତାକୁ ଲଭ କରନ୍ତି ଅର୍ଥାତ୍ ସିଦ୍ଧିପ୍ରାପ୍ତ ହୁଅନ୍ତି ।୨। ଯତି ଯେବେ ତପସ୍ୟାର ବିଘ୍ନକାରକ କୌଣସି କର୍ମ କରନ୍ତି, ତେବେ ପଶ୍ଚାତ୍ତାପ କଲେ ସେ ଅନ୍ୟ ତପସ୍ୟା କରିବାକୁ ଯୋଗ୍ୟ ହୁଅନ୍ତି ।୩। ଯେଉଁ ବ୍ୟକ୍ତି ନିତ୍ୟ ଅବିନାଶୀ ବ୍ରହ୍ମଙ୍କୁ ଧାରଣ ଅର୍ଥାତ୍ ସାକ୍ଷାତକାର କରୁଅଛନ୍ତି, ସେ ଅବିରତ ଇଚ୍ଛାଧୀନ ପାପାଚରଣ କଲେ ମଧ୍ୟ କର୍ମରେ ଲିପ୍ତ ନ ହୋଇ ଆତ୍ୟନ୍ତିକ ସୁଖଲଭରେ ସମର୍ଥ ହୁଅନ୍ତି ।୪। ହେ ରାଜନ୍ ! ଯେ ଅନର୍ଥ-ବୁଦ୍ଧି ହୋଇ ଅର୍ଥାତ୍ ମୋକ୍ଷଲଭରେ ଇଚ୍ଛା ନ କରି କେବଳ ସ୍ୱର୍ଗସୁଖ ଲଭ ନିମିତ୍ତ ଧର୍ମାଚରଣ କରନ୍ତି, ସେହି ଧର୍ମକୁ ପଣ୍ଡିତମାନେ ଅଜିତେନ୍ଦ୍ରିୟ ବ୍ୟକ୍ତିଙ୍କର ଧନ ପ୍ରାପ୍ତି କଷ୍ଟଦାୟକ ଓ ଅସତ୍ୟ ବୋଲି ବୋଲନ୍ତି । ଯେଉଁ କାର୍ଯ୍ୟ ଓ ସମାଧି ମୋକ୍ଷ ନିମିତ୍ତ କରାଯାଏ, ସେହି କାର୍ଯ୍ୟ ବିହିତ ଓ ସେହି ସମାଧି ମଧ୍ୟ କରଣୀୟ ଅଟଇ । ଯୋଗ ଓ ଜ୍ଞାନ ଦୁହିଁଙ୍କର ମୂଳ ନିଷ୍କାମ ଧର୍ମ ।୫।

ଅଷ୍ଟକ ବୋଇଲେ, ହେ ରାଜନ୍ ! ଆପଣ ଯୁବା, ମାଲ୍ୟଧାରୀ, ସୁନ୍ଦର ଓ ତେଜସ୍ୱୀ; ଆପଣଙ୍କୁ କିଏ ଦୂତ କରି ପ୍ରେରଣ କରିଅଛନ୍ତି ? ଆପଣ କେଉଁଠାରୁ ଆଗମନ କରିବା ହେଲେ ? କେଉଁ ଦିଗକୁ ଗମନ କରିବେ ? ଓ ପୃଥିବୀରେ ଆପଣଙ୍କର କି ଗମନୀୟ ସ୍ଥାନ ଅଛି ? ୬ । ଯଯାତି ବୋଇଲେ, ଆମ୍ଭେ କ୍ଷୀଣପୁଣ୍ୟ ହେବାରୁ ସ୍ୱର୍ଗରୁ ପରିଭ୍ରଷ୍ଟ ହୋଇ ଏହି ଭୌମ ନରକକୁ ଗମନ କରୁଅଛୁଁ । ଆପଣମାନଙ୍କ ସହିତ କଥୋପ-କଥନ ସମାପ୍ତ ହେଲେ ସେଠାରେ ପତିତ ହେବୁଁ । ଲୋକପାଳକମାନେ ଆମ୍ଭଙ୍କୁ ତ୍ୱରାନ୍ୱିତ କରୁଅଛନ୍ତି ।୭। ହେ ନରେନ୍ଦ୍ର ! ଭୂମିତଳରେ ପତିତ

ହେବା ପୂର୍ବରୁ ଆମ୍ଭେ ଶଙ୍କରଙ୍କଠାରେ ପ୍ରାର୍ଥନା କରି ବରଲାଭ କରିଅଛୁ ଯେ ଗୁଣବନ୍ତ ଓ ସଜ୍ଜନମାନଙ୍କ ମଧ୍ୟରେ ପତିତ ହେବୁ । ୮ ।

ଅଷ୍ଟକ ବୋଇଲେ, ହେ ପାର୍ଥିବ ! ତୁମ୍ଭେ ପତିତ ହୁଅନା; ଆମ୍ଭେ ତୁମ୍ଭଙ୍କୁ କ୍ଷେତ୍ରଜ୍ଞ ପୁରୁଷ ବୋଲି ଜ୍ଞାନ କରୁଅଛୁଁ । ଏଠାରେ ସ୍ୱର୍ଗରେ ବା ଅନ୍ତରୀକ୍ଷରେ କି ଆମ୍ଭର ଧର୍ମୋପାର୍ଜିତ ଲୋକ ଅଛି ? ୯ ।

ଯଯାତି ବୋଇଲେ, ହେ ନରେନ୍ଦ୍ରସିଂହ ! ପୃଥିବୀରେ ଯେତେ ଗୋ, ଅଶ୍ୱ ଓ ବନ୍ୟ ଓ ପର୍ବତୋଦ୍ଭବ ପଶୁ ଅଛନ୍ତି, ତେତେ ଲୋକ ତୁମ୍ଭର ସ୍ୱର୍ଗରେ ଅଛନ୍ତି, ଜାଣ ? ୧୦ ।

ଅଷ୍ଟକ ବୋଇଲେ, ହେ ରାଜେନ୍ଦ୍ର ! ସ୍ୱର୍ଗରେ ଯେତେ ଲୋକ ଆମ୍ଭର ଅଛନ୍ତି, ସେ ସବୁ ତୁମ୍ଭଙ୍କୁ ଅମ୍ଭେ ଦାନ କରୁଅଛୁଁ, ତୁମ୍ଭେ ପତିତ ହୁଅନା । ଅନ୍ତରୀକ୍ଷରେ ବା ସ୍ୱର୍ଗରେ ଯେତେ ଲୋକ ଅଛନ୍ତି, ତୁମ୍ଭେ ନିଃସନ୍ଦେହରେ ଶୀଘ୍ର ତହିଁର ଅଧିକାରୀ ହୁଅ । ୧୧ ।

ଯଯାତି ବୋଇଲେ, ହେ ରାଜମୁଖ୍ୟ ! ଆମ୍ଭ ପ୍ରାୟ ବେଦବିତ୍ ଓ ବେଦୋକ୍ତ କର୍ମଗୃହୀ ବ୍ୟକ୍ତି ପ୍ରତିଗ୍ରହ କରନ୍ତି ନାହିଁ । ହେ ନରେନ୍ଦ୍ର ! ବ୍ରାହ୍ମଣଙ୍କୁ ସର୍ବଦା ଯେପରି ଦାନ କରିବାକୁ ହୁଏ, ଆମ୍ଭେ ପୂର୍ବରୁ ତଦ୍ରୂପ ଦାନ କରିଅଛୁଁ । କ୍ଷତ୍ରିୟାଦି ପୁରୁଷ ଓ ବିଗ୍ରହଜୟୀ ବୀରଙ୍କର ପତ୍ନୀ ଏମାନେ ଯେପରି ଯାଚ୍ଞା ରୂପ ଦୈନ୍ୟ ସ୍ୱୀକାର କରି ଜୀବନ ଧାରଣ ନ କରନ୍ତି; ଆମ୍ଭେ ସତ୍‌କର୍ମ କରଣେଚ୍ଛୁ ହୋଇ ଯାହା ପୂର୍ବେ କେବେ କରିନାହୁଁ, ତାହା କି ଏବେ କରିବୁଁ ? ୧୩ ।

ପ୍ରତର୍ଦ୍ଦନ ବୋଇଲେ, ହେ ସ୍ପୃହଣୀୟରୂପ ! ଆମ୍ଭେ ତୁମ୍ଭଙ୍କୁ ପଚାରୁଅଛୁଁ । ଆମ୍ଭ ନାମ ପ୍ରତର୍ଦ୍ଦନ, ନକ୍ଷତ୍ରଲୋକରେ ବା ଦେବଲୋକରେ ଆମ୍ଭର ପୁଣ୍ୟୋପାର୍ଜିତ ସ୍ଥାନ କି ଅଛି ବୋଲି । ଆମ୍ଭେ ତୁମ୍ଭଙ୍କୁ ଧର୍ମର ଫଳ ସ୍ୱରୂପ ସମସ୍ତ ସିଦ୍ଧିସ୍ଥାନର ଜ୍ଞାତା ବୋଲି ଜାଣୁ । ୧୪ ।

ଯଯାତି ବୋଇଲେ, ହେ ନରେନ୍ଦ୍ର ! ତେଜୋବିଶିଷ୍ଟ, ଶୋକ-ବିନାଶକ, ମଧୁସ୍ରାବୀ ଓ ଘୃତପୂର୍ଣ୍ଣ ଏତେସଂଖ୍ୟକ ଉତ୍କୃଷ୍ଟ ସ୍ଥାନ ତୁମ୍ଭ ପ୍ରତୀକ୍ଷାରେ ଅଛି ଯେ ପ୍ରତ୍ୟେକ ସ୍ଥାନରେ ତୁମ୍ଭେ ସପ୍ତାହ ବାସ କଲେ ସୁଦ୍ଧା ଶେଷ ହେବ ନାହିଁ । ୧୫ ।

ପ୍ରତର୍ଦ୍ଦନ ବୋଇଲେ, ସେ ସମସ୍ତ ସ୍ଥାନ ଆମ୍ଭେ ତୁମ୍ଭଙ୍କୁ ଦାନ କଲୁଁ । ତୁମ୍ଭେ ପତିତ ହୁଅନା, ଆମ୍ଭ ଜିତ ଲୋକମାନେ ତୁମ୍ଭର ହେଉନ୍ତୁ ।

ନକ୍ଷତ୍ରଲୋକରେ ଅଥବା ଅନ୍ତରୀକ୍ଷରେ ଯେଉଁଠାରେ ଥାଉ, ତୁମ୍ଭେ ସେ ସ୍ଥାନମାନଙ୍କୁ ମୋହ-ରହିତ ହୋଇ ଶୀଘ୍ର ଆକ୍ରମଣ କର । ୧୬ ।

ଯଯାତି ବୋଇଲେ, ହେ ପାର୍ଥିବ ! ସମାନ ତେଜୋବିଶିଷ୍ଟ ପାର୍ଥିବ ହୋଇ କେହି ଅପର ପାର୍ଥିବଙ୍କଠାରେ ଯୋଗକ୍ଷେମକର ସୁକୃତକୁ ଯାଚଞ୍ଚା କରନ୍ତି ନାହିଁ । ଦୈବଙ୍କ ଆଦେଶରୁ ଆପଦ୍‌ପ୍ରାପ୍ତ ହୋଇ କୌଣସି ଜ୍ଞାନୀ ରାଜା ନୃଶଂସ ବ୍ୟବହାର କରନ୍ତି ନାହିଁ । ଅତଏବ ଆମ୍ଭେ କି ରୂପ ଆପଣଙ୍କଠାରୁ ଏହା ସ୍ୱୀକାର କରିବୁଁ ? ରାଜାଙ୍କର କର୍ତ୍ତବ୍ୟ ଯେ, ସେ ଧର୍ମଙ୍କ ପ୍ରତି ଦୃଷ୍ଟି ରଖି ଯତ୍ନ ପୂର୍ବକ ଧର୍ମ୍ୟ ଓ ଯଶସ୍ୟ କର୍ମ କରିବେ । ମାଦୃଶ ଧର୍ମଜ୍ଞ ବ୍ୟକ୍ତି, ଜାଣିଶୁଣି ତୁମ୍ଭେ ଯେ ରୂପ ବୋଲୁଅଛ, ତାଦୃଶ ହୀନତା କପରି ସ୍ୱୀକାର କରିବେ ? ୧୮ । ଅନ୍ୟ ରାଜାଗଣ ଯାହା କଦାପି କରିନାହାନ୍ତି, ଆମ୍ଭେ ସତ୍କର୍ମ କରଣେଚ୍ଛୁ ହୋଇ ତାହା କି ପ୍ରକାରେ କରିବୁ ? ୧୯ ।

---

## ଅଧ୍ୟାୟ—୯୩

ବସୁମାନ୍ ବୋଇଲେ—ହେ ନରେନ୍ଦ୍ର ! ଆମ୍ଭେ ଉଷଦଶ୍ୱଙ୍କର ପୁତ୍ର, ଆମ୍ଭ ନାମ ବସୁମାନ୍ । ତୁମ୍ଭଙ୍କୁ ପଚାରୁଅଛୁଁ, ଯଦି ନକ୍ଷତ୍ରଲୋକରେ ବା ତ୍ରିଦଶାଳୟରେ ଆମ୍ଭର ପୁଣ୍ୟାର୍ଜିତ ବିଖ୍ୟାତ ସ୍ଥାନ ଥାଏ, ତେବେ ବୋଲ; ହେ ମହାତ୍ମନ୍ ! ଆମ୍ଭେ ମନେକରୁଁ ଯେ ତୁମ୍ଭେ ଧର୍ମଲଭ୍ୟ ସମସ୍ତ ପୁଣ୍ୟଲୋକର ଜ୍ଞାତା ଅଟ । ୧ ।

ଯଯାତି ବୋଇଲେ, ଆକାଶମଣ୍ଡଳରେ ଓ ପୃଥିବୀରେ ଓ ଦିଗ୍-ଦିଗନ୍ତରେ ସୂର୍ଯ୍ୟ ଯାବତ୍ ପରିମିତ ସ୍ଥାନକୁ ନିଜ ତେଜଦ୍ୱାରା ତାପିତ କରନ୍ତି, ଦେବଲୋକରେ ତାବତ୍ ପରିମିତ ଅନନ୍ତ ସ୍ଥାନ ତୁମ୍ଭ ପ୍ରତୀକ୍ଷାରେ ଅଛି । ୨ ।

ବସୁମାନ୍ ବୋଇଲେ, ହେ ରାଜନ୍ ! ସେହି ସମସ୍ତ ପୁଣ୍ୟଲୋକକୁ ଆମ୍ଭେ ତୁମ୍ଭଙ୍କୁ ଦାନ କରୁଅଛୁଁ । ସେ ଲୋକସବୁ ତୁମ୍ଭର ହେଉନ୍ତୁ; ତୁମ୍ଭେ ପତିତ ହୁଅନା । ହେ ଧୀମାନ୍ ! ଯଦି ତୁମ୍ଭର ପତିତ ସ୍ଥାନ ଦୃଷ୍ୟ ବୋଧହୁଏ, ତେବେ ତୁମ୍ଭେ ସେହି ସମସ୍ତ ଲୋକକୁ କେତେଗୁଡ଼ିଏ ତୃଣ ଦେଇ ଆମ୍ଭଠାରୁ କ୍ରୟ କରି ନିଅ । ୩ ।

ଯଯାତି ବୋଇଲେ, ଆମ୍ଭର ସ୍ମରଣ ହେଉଅଛି ଯେ କାଳଚକ୍ରରୁ ଖ୍ୟାତ ହୋଇ ଆମ୍ଭେ ମିଥ୍ୟା କ୍ଷୟ ବକ୍ଷ୍ୟ କରିନାହୁଁ । ଅତଏବ ଆମ୍ଭେ ସତ୍କର୍ମ ବିଧାନ କରିବାକୁ ଇଚ୍ଛୁକ ଥାଇ କପରି ଅନ୍ୟ ସଜ୍ଜନଙ୍କ ଅକରଣୀୟ କର୍ମ ଆଚରଣ କରିବୁଁ ? ୪ ।

ବସୁମାନ୍ ବୋଇଲେ, ହେ ରାଜନ୍ ! ଯଦ୍ୟପି ତୁମ୍ଭର କ୍ଷୟ କରିବା ଅଭିପ୍ରେତ ନ ହୁଏ, ତେବେ ଆମ୍ଭର ଦତ୍ତ ସେହି ସମସ୍ତ ଲୋକ ଗ୍ରହଣ କର । ହେ ନରେନ୍ଦ୍ର ! ଆମ୍ଭେ ସେ ସବୁ ଲୋକକୁ ଗମନ କରିବୁ ନାହିଁ । ସେ ସବୁ ତୁମ୍ଭର ହେଉନ୍ତୁ । ୫ ।

ଶିବ ବୋଇଲେ, ଆମ୍ଭେ ଉଶିନରଙ୍କ ପୁତ୍ର ଶିବ । ତୁମ୍ଭଙ୍କୁ ପଚାରୁଅଛୁଁ । ନକ୍ଷତ୍ରଲୋକରେ ବା ଦେବଲୋକରେ ଯଦ୍ୟପି ଆମ୍ଭର ସ୍ଥାନ ଥାଏ, ତେବେ ବୋଲ । ହେ ତାତ ! ଆମ୍ଭର ବୋଧହୁଏ ତୁମ୍ଭେ ସେହି ଧର୍ମାର୍ଜିତ ଲୋକମାନଙ୍କୁ ଜାଣ । ୬ । ଯଯାତି ବୋଇଲେ, ହେ ନରେନ୍ଦ୍ର ! ତୁମ୍ଭେ କଦାପି ବାକ୍ୟଦ୍ୱାରା କି ମନଦ୍ୱାରା ସାଧୁ ଯାଚକ ବ୍ୟକ୍ତିଙ୍କୁ ଅବଜ୍ଞା କରିନାହିଁ, ସେହି କାରଣରୁ ଦେବଲୋକରେ ବିଦ୍ୟୁତ୍‌ସ୍ୱରୂପ ଓ ବିଖ୍ୟାତ ଅନନ୍ତ ମହତ୍ ସ୍ଥାନ ତୁମ୍ଭ ନିମିତ୍ତ ରହିଅଛି । ୭ ।

ଶିବ ବୋଇଲେ, ହେ ରାଜନ୍ ! ଯଦି ତୁମ୍ଭର କ୍ଷୟ କରିବା ଅଭୀଷ୍ଟ ନ ହୁଏ, ତେବେ ଯେଉଁ ସ୍ଥାନକୁ ଗମନ କଲେ ପଣ୍ଡିତମାନେ ଶୋକପ୍ରାପ୍ତ ନ ହୁଅନ୍ତି, ସେହି ସମସ୍ତ ସ୍ଥାନକୁ ଆମ୍ଭେ ଦେଉଅଛୁ; ତୁମ୍ଭେ ସେ ସମସ୍ତ ପ୍ରତିପନ୍ନ ହୁଅ । ଆମ୍ଭେ ସେହି ଲୋକକୁ ଦାନ କରି ପୁନର୍ଗ୍ରହଣ କରିବୁ ନାହିଁ । ୮ । ଯଯାତି ବୋଇଲେ, ହେ ନରଦେବ ! ତୁମ୍ଭେ ଯେପରି ଇନ୍ଦ୍ରସଦୃଶ ପ୍ରଭାବଶାଳୀ, ତୁମ୍ଭର ପୁଣ୍ୟଲୋକ ସବୁ ମଧ୍ୟ ସେହିପରି ଅନନ୍ତ; ଅନ୍ୟର ଦତ୍ତ ପୁଣ୍ୟଲୋକରେ ଆମ୍ଭେ କ୍ରୀଡ଼ା କରିବୁ ନାହିଁ; ଅତଏବ ହେ ଶିବ ! ତୁମ୍ଭର ଦେୟ ଦ୍ରବ୍ୟରେ ଆମ୍ଭେ ଅଭିନନ୍ଦନ କରିବୁ ନାହିଁ । ୯ ।

ଅଷ୍ଟକ ବୋଇଲେ, ହେ ରାଜନ୍ ! ଆମ୍ଭମାନଙ୍କର ଜଣ ଜଣଙ୍କର ଲୋକମାନଙ୍କୁ ଯେବେ ତୁମ୍ଭେ ପ୍ରତିନନ୍ଦନ ନ କଲ, ତେବେ ଆମ୍ଭେମାନେ ସମସ୍ତେ ଏକତ୍ର ହୋଇ ଆମ୍ଭର ଲୋକମାନଙ୍କୁ ତୁମ୍ଭଙ୍କୁ ଦାନ କରି ଭୌମ-ନରକକୁ ଗମନ କରୁଅଛୁଁ । ୧୦ ।

ଯଯାତି ବୋଇଲେ, ସନ୍ତମାନେ ସତ୍ୟପ୍ରିୟ ଅଟନ୍ତି; ଆମ୍ଭେ ଯହିଁକି ଯୋଗ୍ୟ, ତାହା ତୁମ୍ଭେମାନେ ଯତ୍ନ କର । କିନ୍ତୁ ଆମ୍ଭେ ଯାହା ପୂର୍ବେ କରିନାହୁଁ, ତାହାର ଫଳଭାଗୀ ହେବାକୁ ଇଚ୍ଛା କରୁନାହୁଁ । ୧୧ ।

ଅଷ୍ଟକ ବୋଇଲେ, କାହାର ଏହି ପାଞ୍ଚଗୋଟି ହିରଣ୍ମୟ ରଥ ଦୃଶ୍ୟ ହେଉଅଛି ? ଯହିଁରେ ଆରୋହଣ କରି ନରମାନେ ଚିରସ୍ଥାୟୀ ଲୋକମାନଙ୍କୁ ବାଞ୍ଛା କରନ୍ତି ନାହିଁ । ୧୨ । ଯଯାତି ବୋଇଲେ, ଏହି ପାଞ୍ଚଗୋଟି ହିରଣ୍ମୟ ରଥ ଜ୍ୱଳନ୍ତ ଅଗ୍ନିଶିଖାସଦୃଶ ଦୃଶ୍ୟ ହେଉଅଛି । ତହିଁରେ ତୁମ୍ଭେମାନେ ଆରୋହଣ କରି ଗମନ କରିବ । ୧୩ । ଅଷ୍ଟକ ବୋଇଲେ, ହେ ରାଜନ୍ ! ଏହି ରଥରେ ଆରୋହଣ କରି ବିହାୟସରେ ଗମନ କର । ଯେତେବେଳେ ସମୟ ହେବ, ଆମ୍ଭେମାନେ ମଧ୍ୟ ଗମନ କରିବୁଁ । ୧୪ । ଯଯାତି ବୋଇଲେ, ଆମ୍ଭେମାନେ ସମସ୍ତେ ସ୍ୱର୍ଗଜୟୀ ହୋଇଅଛୁଁ । ସମସ୍ତେ ବର୍ତ୍ତମାନ ଗମନ କରିବୁଁ ; ଦେବସଦନକୁ ପଥ ନିର୍ମଳ ହୋଇ ଦୃଶ୍ୟ ହେଉଅଛି । ୧୫ ।

ବୈଶମ୍ପାୟନ ବୋଇଲେ, ସେହି ନରପତିମାନେ ରଥାରୋହଣ ପୂର୍ବକ ଧର୍ମର ପ୍ରଭାବରେ ଆକାଶମଣ୍ଡଳକୁ ଆବୃତ କରି ଗମନ କଲେ * । ୧୬ ।

ଅଷ୍ଟକ ବୋଇଲେ, ଆମ୍ଭେ ଭାବିଥିଲୁଁ ଯେ ମହାତ୍ମା ଇନ୍ଦ୍ର ଆମ୍ଭର ଏକାନ୍ତ ସଖା ; ଅତଏବ ଆମ୍ଭେ ଏକାକୀ ଅଗ୍ରେ ଗମନ କରିବୁଁ । କିନ୍ତୁ ଏହି ଉଶୀନରଙ୍କ ପୁତ୍ର ଶିବି କିପରି ଆମ୍ଭ ସମସ୍ତଙ୍କୁ ଅତିକ୍ରମ କରି ସର୍ବାଗ୍ରେ ଗମନ କଲେ ? ୧୭ । ଯଯାତି ବୋଇଲେ, ଉଶୀନରଙ୍କ ପୁତ୍ର ଶିବି ବ୍ରହ୍ମଲୋକ ଲାଭ ନିମିତ୍ତ ସର୍ବସ୍ୱ ଦାନ କରିଥିଲେ ; ଏ ନିମିତ୍ତ ସେ ସମସ୍ତଙ୍କ ଅପେକ୍ଷା ଶ୍ରେଷ୍ଠତର ହୋଇଅଛନ୍ତି । ୧୮ । ହେ ରାଜନ୍ ! ଦାନ, ତପସ୍ୟା, ସତ୍ୟ ଧର୍ମ, ହ୍ରୀ, ଶ୍ରୀ, କ୍ଷମା, ଅକ୍ରୂରତା ଓ ପାଳନେଚ୍ଛା, ଏହି ସମସ୍ତ ଅନୁପମ ଗୁଣ ଶିବି ରାଜାଙ୍କର ଏତେ ଅଧିକ ଅଛି ଯେ ବୁଦ୍ଧି ଦ୍ୱାରା ତାହା ପରିମାଣ କରି ହେବ ନାହିଁ । ଶିବି ଏତାଦୃଶ ଗୁଣ-ସମ୍ପନ୍ନ ଓ ସୁଶୀଳ ହୋଇଥିବାରୁ ତାହାଙ୍କ ରଥ ଆମ୍ଭଙ୍କୁ ଅତିକ୍ରମ କରି ଗମନ କଲା । ୧୯ ।

ବୈଶମ୍ପାୟନ ବୋଇଲେ, ଅନନ୍ତର ଅଷ୍ଟକ କୌତୁକାବିଷ୍ଟ ହୋଇ ଇନ୍ଦ୍ରକଳ୍ପ ମାତାମହଙ୍କୁ ପୁନର୍ବାର ପ୍ରଶ୍ନ କଲେ, ହେ ନୃପତେ ! ଆମ୍ଭେ ପଚାରୁଅଛୁଁ, ପ୍ରକୃତ ବୋଲ । ତୁମ୍ଭେ କେଉଁଠାରୁ ଆସିଅଛ ? କାହାର ସନ୍ତାନ ଓ ତୁମ୍ଭେ କିଏ ? ତୁମ୍ଭେ ଯେଉଁ କର୍ମ କରିଅଛ, ତାହା ଜଗତରେ ବ୍ରାହ୍ମଣ କି କ୍ଷତ୍ରିୟ କେହି ସମ୍ପାଦନ କରିପାରନ୍ତି କି ନାହିଁ ? ୨୧ ।

---

* ଯଯାତି, ଅଷ୍ଟକ, ବସୁମାନ୍, ଶିବି ଓ ପ୍ରତର୍ଦ୍ଦନ ଏହି ପାଞ୍ଚଜଣ ରଥରେ ସ୍ୱର୍ଗକୁ ଗଲେ ।

ଯଯାତି ବୋଇଲେ, ଆମ୍ଭ ନାମ ଯଯାତି; ନହୁଷଙ୍କର ପୁତ୍ର ଓ ପୁରୁଙ୍କର ପିତା; ଆମ୍ଭେ ଏହି ଅବନୀରେ ସାର୍ବଭୌମ ରାଜା ଥିଲୁଁ; ତୁମ୍ଭେ ଆମ୍ଭର ପରମ ଆତ୍ମୀୟ । ତୁମ୍ଭ ନିକଟରେ ସ୍ପଷ୍ଟରୂପେ କହୁଅଛୁଁ ଯେ ଆମ୍ଭେ ତୁମ୍ଭମାନଙ୍କର ମାତାମହ । ୨୨ । ଆମ୍ଭେ ସମୁଦାୟ ଭୂମଣ୍ଡଳ ଜୟ କରି ବ୍ରାହ୍ମଣମାନଙ୍କୁ ବସ୍ତ୍ର ଦାନ ପୂର୍ବକ ପବିତ୍ର ଓ ସୁରୂପ ଏକଶତ ଅଶ୍ୱଙ୍କୁ ଦେବତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲୁଁ । ଏହା ଯେ କରନ୍ତି, ଦେବତାମାନେ ତାହାଙ୍କ ପ୍ରତି ସନ୍ତୁଷ୍ଟ ହୁଅନ୍ତି । ୨୩ । ବାହନ, ଗୋ, ସୁବର୍ଣ୍ଣ ଓ ଅନ୍ୟାନ୍ୟ ଉତ୍କୃଷ୍ଟତର ଧନରେ ପରିପୂର୍ଣ୍ଣ ଏହି ପୃଥିବୀ ଓ ଶତ ଅର୍ବୁଦ ଗୋରୁ ବ୍ରାହ୍ମଣମାନଙ୍କୁ ଦାନ କରିଥିଲୁ । ୨୪ । ଆମ୍ଭ ସତ୍ୟାନୁଷ୍ଠାନ-ଦ୍ୱାରା ସ୍ୱର୍ଗ ଓ ମର୍ତ୍ତ୍ୟ ବିଦ୍ୟମାନ ରହିଅଛି ଓ ମନୁଷ୍ୟଲୋକରେ ଅଗ୍ନି ଜ୍ୱଳିତ ହେଉଅଛି । ଆମ୍ଭର କଥା ବୃଥା ହୁଅଇ ନାହିଁ । ସତ୍ୟବାକ୍ୟକୁ ସଜ୍ଜନ-ମାନେ ପ୍ରତିପୂଜିତ କରନ୍ତି । ୨୫ ।

ହେ ଅଷ୍ଟକ ! ତୁମ୍ଭଙ୍କୁ, ପ୍ରତର୍ଦ୍ଦନଙ୍କୁ ଓ ଔଷଦଶ୍ୱିଙ୍କୁ ଯାହା ଆମ୍ଭେ କହୁଅଛୁଁ ତାହା ସତ୍ୟ । ସମସ୍ତ ଲୋକ, ମୁନି ଓ ଦେବତାମାନେ ସତ୍ୟନିଷ୍ଠା ହେତୁରୁ ପୂଜ୍ୟ ହେଉଅଛନ୍ତି, ଏ ଆମ୍ଭ ମନୋଗତ କଥା ଅଟେ । ୨୬ । ଯେଉଁ ବ୍ୟକ୍ତି ଅସୂୟାଶୂନ୍ୟ ହୋଇ ଆମ୍ଭମାନଙ୍କର ଏହି ସ୍ୱର୍ଗପ୍ରାପ୍ତିର ବୃତ୍ତାନ୍ତ ଆଦ୍ୟୋପାନ୍ତ ସମସ୍ତ ପ୍ରକୃତରୂପେ ବ୍ରାହ୍ମଣମାନଙ୍କୁ ଶ୍ରବଣ କରାଇବେ, ସେ ଆମ୍ଭ ପ୍ରାପ୍ୟ ପୁଣ୍ୟାର୍ଜିତ-ଲୋକ ଲାଭ କରିବେ । ୨୭ ।

ବୈଶମ୍ପାୟନ ବୋଇଲେ, ମହାତ୍ମା ଓ ପରମ ଉଦାରକର୍ମୀ ସେହି ଯଯାତି ରାଜା, ଏହିରୂପେ ଦୌହିତ୍ରମାନଙ୍କ କର୍ତ୍ତୃକ ତାରିତ * ହୋଇ ମହୀକୁ ତ୍ୟାଗ କରି, ନିଜ କୀର୍ତ୍ତିଦ୍ୱାରା ଲୋକମାନଙ୍କୁ ବ୍ୟାପ୍ତ କରି ମିତ୍ରମାନଙ୍କ ସହ ସ୍ୱର୍ଗକୁ ଗମନ କଲେ । ୨୮ ।

---

## ଅଧ୍ୟାୟ – ୯୪

ଜନମେଜୟ ବୋଇଲେ – ହେ ଭଗବନ୍ ! ପୁରୁବଂଶୀୟ ରାଜା-ମାନେ ଯେରୂପ ବୀର୍ଯ୍ୟଶାଳୀ ଓ ଯାହାଙ୍କର ଯେରୂପ ପରାକ୍ରମ ଓ ଯେ ଯାଦୃଶ, ତାହା ଶ୍ରବଣ କରିବାକୁ ବାସନା କରୁଁ । ୧ । ଏହି ବଂଶରେ

* ତାରିତ—ନିସ୍ତାରିତ, ସ୍ୱର୍ଗକୁ ନୀତ

ଯେ କୌଣସି ରାଜା କସ୍ମିନ୍ କାଳରେ କୌଣସି ପ୍ରକାରେ ଦୁଷ୍ଟରିତ୍ର ହୀନବୀର୍ଯ୍ୟ ବା ପ୍ରଜାରହିତ ହୋଇଥିଲେ ତାହା ଶୁଣାଯାଇ ନାହିଁ । ହେ ତପୋଧନ ! ବିଖ୍ୟାତ ଚରିତ୍ର ଓ ବିଜ୍ଞାନଶାଳୀ ସେହି ରାଜାମାନଙ୍କର ବୃତ୍ତାନ୍ତ ବିସ୍ତାରରୂପେ ଶୁଣିବାକୁ ଇଚ୍ଛା କରୁଅଛୁଁ । ୩ ।

ବୈଶମ୍ପାୟନ ବୋଇଲେ, ତୁମ୍ଭେ ଯେ ଆମ୍ଭଙ୍କୁ ଦେବରାଜସଦୃଶ, ତେଜସମ୍ପନ୍ନ, ଅସଂଖ୍ୟ ବିତ୍ତଶାଳୀ, ବିକ୍ରାନ୍ତ ଓ ସର୍ବଲକ୍ଷଣପୂଜିତ, ପୁରୁବଂଶଧର ବୀର-ରାଜାଗଣଙ୍କର ବୃତ୍ତାନ୍ତ ପ୍ରଶ୍ନ କରୁଅଛ, ଆଚ୍ଛା, ଆମ୍ଭେ ତାହାସବୁ ତୁମ୍ଭଙ୍କୁ କହିବା । ୪ । ପୁରୁଙ୍କର ପୌଷ୍ଟି ନାମଧାରିଣୀ ମହିଷୀଙ୍କଠାରେ ପ୍ରବୀର, ଈଶ୍ୱର ଓ ରୌଦ୍ରାଶ୍ୱ ଏହି ତିନି ମହାରଥ ପୁତ୍ର ଉତ୍ପନ୍ନ ହୋଇଥିଲେ । ତନ୍ମଧ୍ୟରେ ପ୍ରବୀର ବଂଶଧର ହେଲେ । ୫ । ସେହି ପ୍ରବୀରଙ୍କଠାରୁ ଶୂରସେନୀଙ୍କ ଗର୍ଭରେ ମନସ୍ୟୁ ଚତୁଃସମୁଦ୍ର-ବ୍ୟାପିନୀ ମହୀକୁ ଶାସନ କଲେ । ୬ । ମନସ୍ୟୁଙ୍କ ଔରସରେ ସୌବୀରୀଙ୍କ ଗର୍ଭରେ ଶକ୍ତ, ସଂହନନ ଓ ବାଗ୍ମୀ ଏହି ତିନିପୁତ୍ର ଉତ୍ପନ୍ନ ହେଲେ । ସେମାନେ ସମସ୍ତେ ଶୂର ଓ ମହାରଥ ଥିଲେ । ୭ । ମନସ୍ୱୀ ରୌଦ୍ରାଶ୍ୱଙ୍କ ଔରସରେ ମିଶ୍ରକେଶୀ ନାମ୍ନୀ ଅପ୍ସରାଙ୍କ ଗର୍ଭରେ ଅନ୍ୱଗ୍‌ଭାନୁ ପ୍ରଭୃତି ଦଶଗୋଟି ପୁତ୍ର ଜନ୍ମିଥିଲେ । ୮ । ସେମାନେ ସମସ୍ତେ ସର୍ବାସ୍ତ୍ରବିଶାରଦ ଓ ସମସ୍ତେ ଧର୍ମପରାୟଣ, ମହାଧନୁର୍ଦ୍ଧାରୀ, ଯାଗଶୀଳ, ଶୂର, ପ୍ରଜାବିଶିଷ୍ଟ ଓ ସର୍ବଶାସ୍ତ୍ରଜ୍ଞ ଥିଲେ । ୯ ।

ଅନନ୍ତର ସେମାନଙ୍କଠାରୁ ଋଚେୟୁ, କକ୍ଷେୟୁ, ବୀର୍ଯ୍ୟବାନ୍ କୃକଣେୟୁ, ସ୍ଥଣ୍ଡିଳେୟୁ, ବନେୟୁ, ମହାଯଶା ଜଳେୟୁ, ବଳବାନ୍ ତେଜେୟୁ, ଧୀମାନ୍ ସତ୍ୟେୟୁ, ଇନ୍ଦ୍ରଙ୍କ ସଦୃଶ ବିକ୍ରମଶାଳୀ ଧର୍ମେୟୁ ଓ ଦଶମ, ଦେବବିକ୍ରମ ସନ୍ନତେୟୁ ଉତ୍ପନ୍ନ ହେଲେ । ୧୧ । ଦେବଗଣଙ୍କ ମଧ୍ୟରେ ବାସବଙ୍କ ପ୍ରାୟ ବିକ୍ରାନ୍ତ ବିଦ୍ୱାନ ଋଚେୟୁ ଭୂମଣ୍ଡଳରେ ଏକରାଟ ହୋଇ ଅନାଧୃଷ୍ଟି ନାମରେ ବିଖ୍ୟାତ ହେଲେ । ୧୨ । ଅନାଧୃଷ୍ଟିଙ୍କ ପୁତ୍ର ରାଜସୂୟ ଓ ଅଶ୍ୱମେଧଯଜ୍ଞ କରି ପରମ ଧାର୍ମିକ ମତିନାର ନାମକ ବିଖ୍ୟାତ ରାଜା ହେଲେ । ୧୩ । ହେ ରାଜନ୍ ! ତଂସୁ, ମହାନ୍, ଅତିରଥ ଓ ମହାଦ୍ୟୁତି ଦ୍ରୁହ୍ୟ ନାମରେ ଅପରିମିତ ବିକ୍ରମଶାଳୀ ଏହି ଚାରିଜଣ ରାଜା ମତିନାରଙ୍କର ପୁତ୍ର ଥିଲେ । ୧୪ । ସେମାନଙ୍କ ମଧ୍ୟରେ ମହାବୀର୍ଯ୍ୟ ତଂସୁ ପୌରବ ବଂଶଧର ହୋଇ ଭୂମଣ୍ଡଳକୁ ଜୟ କରି ପ୍ରଦୀପ୍ତ ଯଶ ଉପାର୍ଜ୍ଜନ କରିଥିଲେ । ୧୫ । ବୀର୍ଯ୍ୟବାନ୍ ତଂସୁ ଇଳିନ ନାମକ ସୁତଙ୍କୁ ଉତ୍ପନ୍ନ

କରିଥିଲେ । ଜୟଶୀଳ ସେହି ତଂସୁ-ତନୟ ଇଳନ ମଧ୍ୟ ସମଗ୍ର ଭୂମଣ୍ଡଳକୁ ଜୟ କରିଥିଲେ । ୧୬ ।

ତଦନନ୍ତର ଇଳନ ନରପତି ରଥନ୍ତରୀଙ୍କ ଗର୍ଭରେ ଦୁଷ୍ମନ୍ତ ପ୍ରଭୃତି ପଞ୍ଚଭୂତ ସଦୃଶ ପଞ୍ଚପୁତ୍ରଙ୍କୁ ଜନ୍ମ ଦେଲେ । ୧୭ । ସେମାନଙ୍କର ନାମ ଦୁଷ୍ମନ୍ତ, ଶୂର, ଭୀମ, ପ୍ରବସୁ ଓ ବସୁ । ହେ ଜନମେଜୟ ! ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଦୁଷ୍ମନ୍ତ ରାଜା ହେଲେ । ୧୮ । ଦୁଷ୍ମନ୍ତଙ୍କଠାରୁ ଶକୁନ୍ତଳାଙ୍କ ଗର୍ଭରେ ଭରତ ଜନ୍ମ ହେଲେ । ତାହାଙ୍କଠାରୁ ଭରତ ବଂଶର ମହଦ୍‌ଯଶ ବିସ୍ତୀର୍ଣ୍ଣ ହେଲା । ୧୯ । ଭରତ ତିନିଗୋଟି ପତ୍ନୀଙ୍କଠାରୁ ନବଗୋଟି ପୁତ୍ରଙ୍କୁ ଉତ୍ପନ୍ନ କଲେ । କିନ୍ତୁ ରାଜା ବିଚାରିଲେ ଯେ ସେ ପୁତ୍ରମାନେ ତାହାଙ୍କର ଅନୁରୂପ ହେଲେ ନାହିଁ । ତେଣୁ ସେମାନଙ୍କୁ ସେ ଆଦର କଲେ ନାହିଁ । ୨୦ । ମାତାମାନେ କ୍ରୁଦ୍ଧ ହୋଇ ନିଜର ସନ୍ତାନମାନଙ୍କୁ ଯମାଳୟକୁ ପ୍ରେରଣ କଲେ । ତେଣୁ ସେ ନରେନ୍ଦ୍ରଙ୍କର ପୁତ୍ର ଜନ୍ମ ବୃଥା ହେଲା । ୨୧ ।

ହେ ଭାରତ ! ଅନନ୍ତର ରାଜା ଭରତ, ମହାଯଜ୍ଞ ଅନୁଷ୍ଠାନ କରି ଭରଦ୍ୱାଜଙ୍କଠାରୁ 'ଭୂମନ୍ୟୁ' ନାମକ ପୁତ୍ର କଲେ । ୨୨ । ହେ ଭରତଶ୍ରେଷ୍ଠ ! ପରେ ପୌରବ-ନନ୍ଦନ ଭରତ ଆପଣାକୁ ପୁତ୍ରବାନ୍ ବୋଧ କରି ସେହି ଭୂମନ୍ୟୁଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କଲେ । ୨୩ । ଅନନ୍ତର ଭୂମନ୍ୟୁଙ୍କର ଦିବିରଥ ନାମକ ଗୋଟିଏ ପୁତ୍ର ହୋଇଥିଲେ; ଅନନ୍ତର ସେହି ଦିବିରଥ ପୁଷ୍କରିଣୀଙ୍କ ଗର୍ଭରେ ସୁହୋତ୍ର, ସୁହୋତା, ସୁହବି, ସୁଯଜୁ ଓ ରୁଚିକ ନାମରେ ଆହୁରି ପଞ୍ଚପୁତ୍ର ହେଲେ । ସେହି ମହୀପତିଙ୍କ ମଧ୍ୟରେ ସୁହୋତ୍ର ଜ୍ୟେଷ୍ଠ; ସୁତରାଂ ରାଜ୍ୟାଧିକାରୀ ହେଲେ । ସେ ରାଜସୂୟ ଓ ଅଶ୍ୱମେଧ ପ୍ରଭୃତି ବହୁବିଧ ଯାଗ କରିଥିଲେ । ୨୫ । ସୁହୋତ୍ର ରାଜା ହସ୍ତୀ, ଗୋ ଓ ଅଶ୍ୱ ପରିପୂର୍ଣ୍ଣା, ବହୁରତ୍ନସମନ୍ୱିତା, ସାଗରମେଖଳା ସମସ୍ତ ପୃଥିବୀକୁ ଭୋଗ କରିଥିଲେ । ହସ୍ତ୍ୟଶ୍ୱ-ରଥ-ସମ୍ପୂର୍ଣ୍ଣା ମହୀ, ଅସଂଖ୍ୟ ସୈନିକ-ପୁରୁଷଙ୍କଦ୍ୱାରା ଆକୁଳିତ ଓ ଭାରରେ ପୀଡ଼ିତା ହୋଇ ମଗ୍ନ ପ୍ରାପ୍ତ ହେଲେ । ୨୬ । ସୁହୋତ୍ରଙ୍କ ରାଜ୍ୟ ସମୟରେ ପ୍ରଜାମାନେ ଧର୍ମପ୍ରମାଣେ ଶାସିତ ହୋଇଥିଲେ ଓ ପୃଥିବୀ ଶତ ଶତ ଓ ସହସ୍ର ଚୈତ୍ୟ * ଓ ଯଜ୍ଞୀୟ ଯୂପରେ ଚିହ୍ନିତ ହୋଇଥିଲା । ଜଳ ଓ ଶସ୍ୟ ସର୍ବଦା ବର୍ଦ୍ଧିତ ହେଲା । ୨୮ ।

---

* ପୂଜ୍ୟ ବୃକ୍ଷ ଓ ଦେବାୟତନକୁ ଚୈତ୍ୟ ବୋଲି ।

ହେ ଭାରତ ! ପୃଥିବୀପତି ସୁଦୋହଙ୍କଠାରୁ ମହିଳା ଐକ୍ଷ୍ବାକୀଙ୍କ ଗର୍ଭରେ ଅଜମୀଢ, ସୁମୀଢ଼ ଓ ପୁରୁମୀଢ଼ ଉତ୍ପନ୍ନ ହେଲେ । ୨୯ । ସେମାନଙ୍କ ମଧ୍ୟରେ ଅଜମୀଢ଼ ଜ୍ୟେଷ୍ଠ; ତାହାଙ୍କଠାରେ ବଂଶ ପ୍ରତିଷ୍ଠିତ ହେଲା । ଅଜମୀଢ଼ ତିନିଗୋଟି ପତ୍ନୀଙ୍କଠାରେ ଛଅଗୋଟି ପୁତ୍ର ଜନ୍ମ କଲେ । ୩୦ । ଧୂମ୍ରନୀ ଋକ୍ଷଙ୍କୁ; ନୀଳୀ ଦୁଷ୍ମନ୍ତ ଓ ପରମେଷ୍ଠୀଙ୍କୁ ଓ କେଶିନୀ ଜହ୍ନୁ, ବ୍ରଜନ ଓ ରୂପିଣଙ୍କୁ ପ୍ରସବ କଲେ । ୩୧ ।

ହେ ରାଜନ୍ ! ଦୁଷ୍ମନ୍ତ ଓ ପରମେଷ୍ଠୀଙ୍କ ବଂଶରେ ପାଞ୍ଚାଳ ରାଜା-ମାନେ ଉତ୍ପନ୍ନ ହେଲେ । ଅମିତତେଜା ଜହ୍ନୁଙ୍କ ବଂଶରୁ କୁଶିକଗଣ ଜାତ ହେଲେ । ଋକ୍ଷ ନରପତି, ବ୍ରଜନ ଓ ରୂପିଣଙ୍କ ଅପେକ୍ଷା ଜ୍ୟେଷ୍ଠ ଥିଲେ । ଋକ୍ଷଙ୍କଠାରୁ ବଂଶଧର ପୁତ୍ର ସମ୍ବରଣ ଉତ୍ପନ୍ନ ହେଲେ । ୩୩ । ହେ ରାଜନ୍ ! ଆମ୍ଭେମାନେ ଶୁଣିଅଛୁଁ ଋକ୍ଷତନୟ ସମ୍ବରଣଙ୍କ ରାଜ୍ୟ ସମୟରେ ଅତିଶୟ ପ୍ରଜାକ୍ଷୟ ଉପସ୍ଥିତ ହୋଇଥିଲା । ୩୪ । କ୍ଷୁଧା, ମୃତ୍ୟୁ, ଅନାବୃଷ୍ଟି ଓ ବ୍ୟାଧି ପ୍ରଭୃତି ବିବିଧ କାରଣରୁ ପ୍ରଜାଲୋପ ହେବାରୁ ରାଜ୍ୟ ଏକାବେଳେକେ ଛିନ୍ନ ଭିନ୍ନ ହେଲା । ୩୫ । ଶତ୍ରୁପକ୍ଷୀୟ ସେନାମାନେ ଭାରତ ପକ୍ଷୀୟ ଯୋଦ୍ଧୃଗଣଙ୍କୁ ହତ ଓ ଆହତ କରିଥିଲେ । ପାଞ୍ଚାଳ ଭୂପତି ବିକ୍ରମଦ୍ୱାରା ଭୂମଣ୍ଡଳକୁ ଜୟକରି ଚତୁରଙ୍ଗିଣୀ ସେନାଦ୍ୱାରା ଧରଣୀକୁ କମ୍ପମାନା କଲେ । ସେହି ନୃପତି ଦଶ ଅକ୍ଷୌହିଣୀ ସେନା ଘେନି ସମ୍ବରଣ ଭୂପତିଙ୍କୁ ସମରରେ ପରାଜିତ କଲେ । ୩୭ । ତହିଁରେ ସମ୍ବରଣ ରାଜା ମହାଭୟ ପ୍ରାପ୍ତ ହୋଇ ଦାରା, ଅମାତ୍ୟ, ପୁତ୍ର ଓ ସୁହୃଜ୍ଜନ ସହିତ ପଳାୟନ କରି ସିନ୍ଧୁନଦର ତୀରବର୍ତ୍ତୀ ପର୍ବତର ସମୀପସ୍ଥିତ ଗୋଟିଏ ବୃହତ୍ ନିକୁଞ୍ଜ ବନରେ ବାସ କଲେ । ୩୯ । ସେହି ଦୁର୍ଗମ ଅରଣ୍ୟ ଆଶ୍ରୟରେ ଭାରତ-ମାନେ ବହୁକାଳ ବାସ କଲେ । ୪୦ ।

ସହସ୍ର ବର୍ଷ ବାସ କରିବା ପରେ ଭଗବାନ୍ ବଶିଷ୍ଠ ଋଷି ସେହି ଭାରତଗଣଙ୍କ ନିକଟରେ ଉପସ୍ଥିତ ହେଲେ । ୪୧ । ସେହିକାଳରେ ଭାରତମାନେ ପ୍ରତ୍ୟୁତ୍ଥାନ ଓ ଅଭିବାଦନାଦି କରି ପାଦ୍ୟ ଅର୍ଘ୍ୟ ଦାନଦ୍ୱାରା ଅଭ୍ୟାଗତ ଋଷିଙ୍କର ସମ୍ୟକ୍ ପୂଜା ସମ୍ପାଦନ କଲେ । ୪୨ । ଆସନୋପ-ବିଷ୍ଟ ଋଷିଙ୍କୁ ରାଜା ସତ୍କାର ପୂର୍ବକ ସମସ୍ତ ବୃତ୍ତାନ୍ତ ନିବେଦନ କରି କହିଲେ, ଆପଣ ଆମ୍ଭମାନଙ୍କର ପୁରୋହିତ ହୁଅନ୍ତୁ, ତାହାହେଲେ ଆମ୍ଭେ ରାଜ୍ୟର ପୁନର୍ଲାଭ ପାଇଁ ଯତ୍ନ କରିବୁଁ । ୪୩ । ଭାରତଙ୍କ ପ୍ରାର୍ଥନାରେ ବଶିଷ୍ଠ ସ୍ୱୀକାର କଲେ । ଆମ୍ଭେମାନେ ଶୁଣିଅଛୁଁ ଯେ ବଶିଷ୍ଠ ଭାରତମାନଙ୍କୁ ସମସ୍ତ

କ୍ଷତ୍ରିୟକୁଳରେ ଅଧିପତି କରି ଅଭିଷିକ୍ତ କଲେ । ୪୪ । ସେ ଭରତଙ୍କ ପୂର୍ବ ନିବାସିତ ରମଣୀୟ ନଗରରେ ପୁନର୍ବାର ଅଧିଷ୍ଠାନ କରି ସମଗ୍ର ଭୂପାଳମାନଙ୍କୁ କରପ୍ରଦ କଲେ । ୪୫ ।

ଅଜମୀଢ଼ଙ୍କ ପୌତ୍ର 'ମହାବଳ' ପୁନର୍ବାର ପୃଥିବୀ ପ୍ରାପ୍ତ ହୋଇ ଭୂରି ଦକ୍ଷିଣ ବହୁସଂଖ୍ୟକ ଯଜ୍ଞ କଲେ । ୪୬ । ତଦନନ୍ତର ସୂର୍ଯ୍ୟଙ୍କ ତନୟ ତପତୀ ସମ୍ବରଣଙ୍କ ଔରସରୁ କୁରୁଙ୍କୁ ଜନ୍ମ କଲେ । ହେ ରାଜନ ! ସେହି କୁରୁଙ୍କୁ ଧର୍ମଜ୍ଞ ଦେଖି ସମସ୍ତ ପ୍ରଜା ତାହାଙ୍କୁ ରାଜତ୍ୱରେ ବରଣ କଲେ । ୪୭ । ତାହାଙ୍କ ନାମରେ କୁରୁଜାଙ୍ଗଳ ନାମକ ସ୍ଥାନ ପୃଥିବୀରେ ବିଖ୍ୟାତ ହେଲା; ସେହି ମହାତପା ତପୋବଳରେ କୁରୁକ୍ଷେତ୍ର ନାମକ ସ୍ଥାନକୁ ପ୍ରତିଷ୍ଠିତ କଲେ । ୪୮ ।

ଆମ୍ଭେମାନେ ଶୁଣିଅଛୁ ଯେ ଅବିକ୍ଷିତ୍, ଅଭିଷ୍ୟନ୍ତ୍, ଚୈତ୍ରରଥ, ମୁନି ଓ ଜନମେଜୟ ନାମକ ପାଞ୍ଚଗୋଟି ପୁତ୍ରଙ୍କୁ କୁରୁଙ୍କର ବାହିନୀ ନାମ୍ନୀ ମନସ୍ୱିନୀ ମହିଷୀ ପ୍ରସବ କଲେ । ୪୯ । ଅବିକ୍ଷିତ୍ଙ୍କ ଠାରୁ ପରୀକ୍ଷିତ୍, ଶବଲାଶ୍ୱ, ବୀର୍ଯ୍ୟବାନ୍ ଆଦିରାଜ, ବିରାଜ, ମହାବଳ ଶାଲ୍ମଳ, ଉଚ୍ଚୈଃଶ୍ରବା, ଭଙ୍ଗକାର ଓ ଅଷ୍ଟମ ଜିତାରି ଉତ୍ପନ୍ନ ହେଲେ । ୫୦ । ଏମାନଙ୍କ ବଂଶରେ କର୍ମଜ ଗୁଣଦ୍ୱାରା ଜନମେଜୟାଦି ସପ୍ତ ଓ ଅନ୍ୟାନ୍ୟ ଅନେକ ମହାରଥ ଜନ୍ମଗ୍ରହଣ କରିଥିଲେ । ୫୧ । କକ୍ଷସେନ, ଉଗ୍ରସେନ, ଚିତ୍ରସେନ, ଇନ୍ଦ୍ରସେନ, ସୁଷେଣ ଓ ଭୀମସେନ ନାମରେ ପୁତ୍ରମାନେ ପରୀକ୍ଷିତଙ୍କଠାରୁ ଉତ୍ପନ୍ନ ହୋଇଥିଲେ । ଏମାନେ ସମସ୍ତେ ଧର୍ମାର୍ଥତତ୍ତ୍ୱଜ୍ଞ ।୫୩। ଜନମେଜୟଙ୍କ ଠାରୁ ମହାବଳ ପରାକ୍ରାନ୍ତ ପୃଥିବୀ ବିଖ୍ୟାତ ଧର୍ମାର୍ଥକୁଶଳ ଓ ସର୍ବଭୂତ-ହିତକାରୀ ଅଷ୍ଟପୁତ୍ର ଜନ୍ମଗ୍ରହଣ କଲେ । ସେମାନଙ୍କର ପ୍ରଥମ ଧୃତରାଷ୍ଟ୍ର, ପରେ ପାଣ୍ଡୁ, ତୃତୀୟ ବାହ୍ଲିକ, ଚତୁର୍ଥ ମହାତେଜା ନିଷଧ, ବଳବାନ୍ ଜାମ୍ବୁନଦ ପଞ୍ଚମ, କୁଣ୍ଡୋଦର ଷଷ୍ଠ, ପଦାତି ସପ୍ତମ ଓ ଅଷ୍ଟମ ବସାତି ବୋଲି କଥିତ ଅଛନ୍ତି । ୫୫ । ତନ୍ମଧ୍ୟରୁ ଧୃତରାଷ୍ଟ୍ର ରାଜା ହୋଇଥିଲେ ।

ଧୃତରାଷ୍ଟ୍ରଙ୍କର ପୁତ୍ର କୁଣ୍ଡିକ, ହସ୍ତୀ, ବିତର୍କ, କ୍ରାଥ, ପଞ୍ଚମ କୁଣ୍ଡିନ, ହବିଃଶ୍ରବା, ଇନ୍ଦ୍ରାଭ ଓ ଅଷ୍ଟମ ଅପରାଜିତ ଭୂମନ୍ୟୁ ବୋଲି କଥିତ ଅଛନ୍ତି । ହେ ଭାରତ ! ପ୍ରତୀପ, ଧର୍ମନେତ୍ର ଓ ସୁନେତ୍ର ଏହି ତିନିଜଣ ଧୃତରାଷ୍ଟ୍ରଙ୍କର ପୃଥିବୀବିଖ୍ୟାତ ପୌତ୍ର ! ପୁନଶ୍ଚ ଏହି ତିନିଜଣଙ୍କ ମଧ୍ୟରେ 'ପ୍ରତୀପ' ଭୂମଣ୍ଡଳରେ ଅନୁପମ ପ୍ରଥିତ ହୋଇଥିଲେ । ୫୮ । ହେ ଭରତର୍ଷଭ ! ପ୍ରତୀପଙ୍କର ମହାରଥ ତିନିଗୋଟି ପୁତ୍ର ହେଲେ—ଦେବାପି, ଶାନ୍ତନୁ ଓ

ବାହ୍ଲୀକ । ୫୯ । ତନ୍ମଧ୍ୟରେ ଦେବାପି ଧର୍ମଲାଭ ନିମିତ୍ତ ପ୍ରବ୍ରଜ୍ୟାଶ୍ରମ ଅବଲମ୍ବନ କଲେ ଓ ମହାରଥ, ଶାନ୍ତନୁ ଓ ତାହାଙ୍କ ପରେ ବାହ୍ଲୀକ ଭୂମଣ୍ଡଳରେ ଅଧିପତି ହେଲେ । ୬୦ । ହେ ନୃପତେ ! ଦେବର୍ଷିତୁଲ୍ୟ ସତ୍ତ୍ୱସମ୍ପନ୍ନ, ଅନେକ ରାଜସତ୍ତମ ଭରତବଂଶରେ ଜନ୍ମିଥିଲେ । ୬୧ । ଏହିରୂପ ଦେବସଦୃଶ ଆଉ ଆଉ ଅସଂଖ୍ୟ ମହାରଥ, ଐଳବଂଶବିବର୍ଦ୍ଧନ ନରପତି ମନୁବଂଶରେ ଜନ୍ମଗ୍ରହଣ କରିଥିଲେ । ୬୨ ।

---

## ଅଧ୍ୟାୟ—୯୫

ଜନମେଜୟ ବୋଇଲେ—ହେ ବ୍ରହ୍ମନ୍ ! ଆପଣଙ୍କଠାରୁ ପୂର୍ବ ପୁରୁଷମାନଙ୍କର ମହତ୍ତ୍ୱ ଉତ୍ପତ୍ତି-ବିବରଣ ଶ୍ରବଣ କଲୁ । ଏହି ବଂଶର ଉଦାରଚରିତ ରାଜାମାନଙ୍କର ବୃତ୍ତାନ୍ତ ମଧ୍ୟ ଜ୍ଞାତ ହେଲୁ । ୧ । ପରନ୍ତୁ ଏହି ପ୍ରିୟତମ ଉପାଖ୍ୟାନ ସଂକ୍ଷେପରେ ଉକ୍ତ ହୋଇଅଛି ବୋଲି ତହିଁରେ ପରିତୃପ୍ତ ହୋଇନାହୁଁ । ଆପଣ ପୁନର୍ବାର ବିସ୍ତାର ରୂପେ କୀର୍ତ୍ତନ କରନ୍ତୁ । ୨ । ପ୍ରଜାପତି ମନୁଙ୍କ ଅବଧି ସମସ୍ତ ରାଜଗଣଙ୍କର ପବିତ୍ର ଜନ୍ମ ବିବରଣ ସ୍ୱରୂପ ଏହି ଦିବ୍ୟ କଥାକୁ ଶ୍ରବଣ କଲେ କିଏ ପ୍ରୀତ ନ ହେବ ? ୩ । ସେମାନଙ୍କର ସଦ୍ଧର୍ମ, ଗୁଣ ଓ ମାହାତ୍ମ୍ୟ ଦ୍ୱାରା ଅଭିବର୍ଦ୍ଧିତ ଓ ଉତ୍କୃଷ୍ଟ ଯଶ ତ୍ରିଲୋକରେ ବ୍ୟାପ୍ତ ଓ ସ୍ଥିତ ହୋଇ ଅଦ୍ୟାପି ଅବସ୍ଥିତ କରୁଅଛି । ୪ । ଏମାନେ ଦାକ୍ଷିଣ୍ୟାଦିଗୁଣ, ଅସାଧାରଣ ଶକ୍ତି, ଶାରୀରିକ ବଳ ଓ ମାନସିକ ସାମର୍ଥ୍ୟ, ଅଧିନତା ଓ ଉତ୍ସାହ ପ୍ରଭୃତି ଗୁଣାବଳୀର ଆଧାର ଥିଲେ । ସେମାନଙ୍କର ଅମୃତପ୍ରାୟ ସୁସ୍ୱାଦୁ କଥା ସଂକ୍ଷେପରେ ଶ୍ରବଣ କରି ସମ୍ପୂର୍ଣ୍ଣ ରୂପେ ତୃପ୍ତ ହୋଇ ପାରୁନାହୁଁ । ୫ ।

ବୈଶମ୍ପାୟନ ବୋଇଲେ, ହେ ରାଜନ୍ ! ଆମ୍ଭେ ପୂର୍ବେ ଦ୍ୱୈପାୟନଙ୍କଠାରୁ ଆପଣଙ୍କର ଶୁଭ୍ର ବଂଶର ବିବରଣ ଯାହା ଶ୍ରବଣ କରି-ଅଛୁ, ତାହା ସମୁଦାୟ କୀର୍ତ୍ତନ କରିବୁ ଶ୍ରବଣ କରନ୍ତୁ । ୬ । ଦକ୍ଷଙ୍କଠାରୁ ଅଦିତି, ଅଦିତିଙ୍କଠାରୁ ବିବସ୍ୱାନ୍, ବିବସ୍ୱାନଙ୍କଠାରୁ ମନୁ, ମନୁଙ୍କଠାରୁ ଇଳା, ଇଳାଙ୍କଠାରୁ ପୁରୁରବା, ପୁରୁରବାଙ୍କଠାରୁ ଆୟୁଃ, ଆୟୁଃଙ୍କଠାରୁ ନହୁଷ, ନହୁଷଙ୍କଠାରୁ ଯଯାତି ଉତ୍ପନ୍ନ ହୋଇଥିଲେ । ଯଯାତିଙ୍କର ଦୁଇ

ଭାର୍ଯ୍ୟା; ଶୁକ୍ରଦୁହିତା ଦେବଯାନୀ ଓ ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠା । ୮ । ଏ ସ୍ଥଳରେ ବଂଶକୀର୍ତ୍ତନବିଷୟକ ଗୋଟିଏ ଶ୍ଳୋକ ଅଛି ।

ଯଦୁ ଓ ତୁର୍ବସୁଙ୍କୁ ଦେବଯାନୀ ଜନ୍ମ କଲେ ।
ଦ୍ରୁହ୍ୟୁ, ଅନୁ ଓ ପୁରୁଙ୍କୁ ଶର୍ମିଷ୍ଠା ଜନ୍ମ କଲେ ।

ପରେ ଯଦୁଙ୍କଠାରୁ ଯାଦବ ବଂଶ ଓ ପୁରୁଙ୍କଠାରୁ ପୌରବ ବଂଶ ଉତ୍ପନ୍ନ ହେଲେ । ପୁରୁଙ୍କ ଭାର୍ଯ୍ୟା କୌଶଲ୍ୟା । ତାହାଙ୍କ ଗର୍ଭରୁ ପୁରୁଙ୍କର ଜନମେଜୟ ନାମକ ପୁତ୍ର ହେଲେ । ସେ ତିନିଥର ଅଶ୍ୱମେଧ ଯଜ୍ଞ କରିଥିଲେ ଓ ଥରେ ବିଶ୍ୱଜିତ୍ ଯଜ୍ଞ କରି ବନ ପ୍ରବେଶ କଲେ । ୧୧ । ସେ ଅନନ୍ତା ନାମ୍ନୀ ମାଧବଙ୍କ ଦୁହିତାଙ୍କୁ ବିବାହ କରିଥିଲେ । ସେଥିରେ ଜନମେଜୟଙ୍କର ପ୍ରାଚିନ୍ୱାନ୍ ନାମକ ପୁତ୍ର ଜାତ ହେଲେ । ସେ ସୂର୍ଯ୍ୟୋଦୟ ସ୍ଥାନ ପର୍ଯ୍ୟନ୍ତ ପ୍ରାଚୀ ଦିଗକୁ ଜୟ କରିଥିଲେ; ତହୁଁ ତାହାଙ୍କର ନାମ ପ୍ରାଚୀନ୍ୱାନ୍ ହେଲା । ୧୨ ।

ପ୍ରାଚୀନ୍ୱାନ୍, ଅଶ୍ମକୀ ନାମ୍ନୀ ଯାଦବ ଦୁହିତାଙ୍କୁ ବିବାହ କଲେ; ତଦ୍ଦ୍ୱାରା ତାହାଙ୍କର ସଂଯାତି ନାମକ ପୁତ୍ର ଜାତ ହେଲେ । ୧୩ । ସଂଯାତି ଦୃଶଦ୍ୱାନଙ୍କର କନ୍ୟା ବରାଙ୍ଗୀକୁ ବିବାହ କଲେ; ତହିଁରୁ ତାହାଙ୍କର ଅହଂଯାତି ନାମକ ପୁତ୍ର ଜାତ ହେଲେ । ୧୪ । ଅହଂଯାତି କୃତବୀର୍ଯ୍ୟଙ୍କ କନ୍ୟା ଭାନୁମତୀଙ୍କୁ ବିବାହ କଲେ, ତାହାଙ୍କଠାରେ ଅହଂଯାତିଙ୍କର ସାର୍ବଭୌମ ନାମକ ପୁତ୍ର ଜାତ ହେଲେ । ୧୫ । ସାର୍ବଭୌମ କୈକେୟ ରାଜାଙ୍କୁ ଜୟ କରି ତାହାଙ୍କର ନନ୍ଦିନୀ ସୁନନ୍ଦାଙ୍କୁ ହରଣ କରି ଆଣି ତାହାଙ୍କର ପାଣି ଗ୍ରହଣ କଲେ । ସେହି ସୁନନ୍ଦାଙ୍କଠାରେ ତାହାଙ୍କର ଜୟତ୍ସେନ ନାମକ ପୁତ୍ର ଉତ୍ପନ୍ନ ହେଲେ । ୧୬ । ଜୟତ୍ସେନ ବିଦର୍ଭ ରାଜକୁମାରୀ ସୁଶ୍ରବାଙ୍କୁ ବିବାହ କଲେ; ତଦ୍ଦ୍ୱାରା ତାହାଙ୍କର ଅର୍ବାଚୀନ * ନାମକ ପୁତ୍ର ଜନ୍ମଗ୍ରହଣ କଲେ । ୧୭ । ଅର୍ବାଚୀନ ସେହି ବିଦର୍ଭ କୁଳସମ୍ଭୂତା ଅନ୍ୟ ଗୋଟିଏ କନ୍ୟାକୁ ବିବାହ କଲେ; ତହିଁରେ ତାହାଙ୍କର ଅରିହ ନାମକ ପୁତ୍ର ଉତ୍ପନ୍ନ ହେଲେ । ୧୮ । ଅଙ୍ଗୀ ନାମ୍ନୀ କନ୍ୟାଙ୍କୁ ଅରିହ ବିବାହ କଲେ; ତହିଁରେ ତାହାଙ୍କର ମହାଭୌମ ନାମକ ପୁତ୍ର ହେଲେ । ପ୍ରସେନ୍‌ଜିତ୍‌ଙ୍କ କନ୍ୟା ସୁଯଜ୍ଞାକୁ ମହାଭୌମ ବିବାହ କଲେ; ତହିଁରେ ତାହାଙ୍କର ଅୟୁତନାୟୀ ନାମକ ପୁତ୍ର ଜନ୍ମିଲେ; ସେ ଅୟୁତସଂଖ୍ୟକ ନରଯଜ୍ଞ କରିଥିଲେ ବୋଲି ତାହାଙ୍କର ନାମ ଅୟୁତନାୟୀ

* ଅର୍ବାଚୀନ ଓ ଅବାଚୀନ ଦୁଇ ପୃଥକ୍ ନାମ ଦୁଇ ଗ୍ରନ୍ଥରେ ଲେଖାଅଛି ।

ହୋଇଅଛି । ୨୦ । ଅଯୁତନାୟୀ ପୃଥୁଶ୍ରବାଙ୍କ କନ୍ୟା କାମାଙ୍କୁ ବିବାହ କଲେ; ତାହାଙ୍କଠାରେ ଏହି ରାଜାଙ୍କର ଅକ୍ରୋଧନ ନାମକ ପୁତ୍ର ଜାତ ହେଲେ । ୨୧ ।

ଅକ୍ରୋଧନ କଳିଙ୍ଗ ରାଜକନ୍ୟା କରମ୍ଭୀଙ୍କୁ ବିବାହ କଲେ । ତଦ୍ୱାରା ଦେବାତିଥି ନାମକ ପୁତ୍ର ଜାତ ହେଲେ । ୨୨ । ବିଦେହ ରାଜ-ଦୁହିତା ମର୍ଯ୍ୟାଦାଙ୍କୁ ଦେବାତିଥି ବିବାହ କଲେ । ତଦ୍ୱାରା ତାହାଙ୍କର ଅରିହ ନାମକ ପୁତ୍ର ଜାତ ହେଲେ । ୨୩ । ଅଙ୍ଗଦେଶ ରାଜାଙ୍କ ଦୁହିତା ସୁଦେବାଙ୍କୁ ଅରିହ ବିବାହ କଲେ । ସୁଦେବାଙ୍କଠାରୁ ତାହାଙ୍କର ଋକ୍ଷ ନାମକ ପୁତ୍ର ଜନ୍ମିଲେ । ୨୪ । ତକ୍ଷକଙ୍କ ଦୁହିତା ଜ୍ୱାଳାଙ୍କୁ ଋକ୍ଷ ବିବାହ କଲେ; ତହିଁରେ ତାହାଙ୍କର ମତିନାର ନାମକ ପୁତ୍ର ଜନ୍ମିଲେ । ୨୫ । ମତିନାର ସରସ୍ୱତୀ ନଦୀ ତୀରରେ ଅଶେଷ ଗୁଣସମନ୍ୱିତ ଦ୍ୱାଦଶ ବର୍ଷ ଅନୁଷ୍ଟୁପ୍ ସତ୍ର ଅନୁଷ୍ଠାନ କରିଥିଲେ । ସେହି ମହାଯଜ୍ଞ ସମାପ୍ତ ହୁଅନ୍ତେ ସରସ୍ୱତୀ ଆସି ତାହାଙ୍କୁ ଭର୍ତ୍ତା ବୋଲି ବରଣ କଲେ । ତହିଁରେ ତାହାଙ୍କର ତଂସୁ ନାମକ ପୁତ୍ର ଜନ୍ମ ହେଲେ । ୨୬ । ଏ ସ୍ଥଳରେ ବଂଶାନୁକୀର୍ତ୍ତନ ଗୋଟିଏ ଶ୍ଳୋକ ଅଛି, ଯଥା:—

'ସରସ୍ୱତୀ ମତିନାରଙ୍କଠାରୁ ତଂସୁ ନାମକ ପୁତ୍ର ଜାତ-କଲେ । ଓ ତଂସୁ କାଳିଙ୍ଗୀଙ୍କଠାରେ ଈଳିନ ନାମକ ଆତ୍ମଜଙ୍କୁ ଜାତ କଲେ' । ୨୭ । ଈଳିନ ନୃପତି ରଥନ୍ତରୀଙ୍କ ଗର୍ଭରେ ଦୁଷ୍ମନ୍ତ ପ୍ରଭୃତି ପଞ୍ଚପୁତ୍ରଙ୍କୁ ଜନ୍ମ ଦେଲେ । ଦୁଷ୍ମନ୍ତ ବିଶ୍ୱାମିତ୍ରଙ୍କର ଦୁହିତା ଶକୁନ୍ତଳାଙ୍କୁ ବିବାହ କଲେ । ତହିଁରେ ସେମାନଙ୍କର ଭରତ ନାମକ ପୁତ୍ର ଜାତ ହେଲେ । ୨୯ । ଏ ସ୍ଥଳରେ ବଂଶାନୁକୀର୍ତ୍ତନ ବିଷୟକ ଦୁଇଗୋଟି ଶ୍ଳୋକ ଉକ୍ତ ଅଛି, ଯଥା:—
"ହେ ଦୁଷ୍ମନ୍ତ ! ମାତା ଚର୍ମକୋଷ ସ୍ୱରୂପା, ତହିଁରେ ପିତା ସ୍ୱୟଂ ପୁତ୍ର-ରୂପରେ ଜନ୍ମ ପରିଗ୍ରହ କରନ୍ତି; ଅତଏବ ପୁତ୍ରଙ୍କୁ ଭରଣ ପୋଷଣ କର, ଶକୁନ୍ତଳାଙ୍କୁ ଅବଜ୍ଞା କର ନାହିଁ । ୩୦ । ହେ ନରଦେବ ! ସ୍ୱବୀର୍ଯ୍ୟସମ୍ଭୂତ ସନ୍ତାନ ଯମାଳୟରୁ ଉଦ୍ଧାର କରେ; ତୁମ୍ଭେ ଏହି ଗର୍ଭାଧାନ କରିଅଛ; ଶକୁନ୍ତଳା ଯାହା କହୁଅଛନ୍ତି, ତାହା ସତ୍ୟ ।" ୩୧ ।

ଏହି ଦେବବାଣୀର ଅନୁରୋଧରେ ଦୁଷ୍ମନ୍ତ ଭରଣ କଲେ ବୋଲି ତାହାଙ୍କର ଭରତ ନାମ ହେଲା । ଭରତ କାଶୀରାଜ ସର୍ବସେନଙ୍କ ଦୁହିତା ସୁନନ୍ଦାଙ୍କୁ ବିବାହ କଲେ । ତହିଁରେ ତାହାଙ୍କର ଭୁମନ୍ୟୁ ନାମକ ପୁତ୍ର

ଜନ୍ମିଲେ ।୩୨। ଭୁମନ୍ୟୁ ଦଶାର୍ହ ଦେଶର ରାଜାଙ୍କ ଦୁହିତା ବିଜୟାଙ୍କୁ ବିବାହ କଲେ । ତହିଁରେ ତାହାଙ୍କର ସୁହୋତ୍ର ନାମକ ପୁତ୍ର ଉତ୍ପନ୍ନ ହେଲେ ।୩୩। ସୁହୋତ୍ର ଇକ୍ଷ୍ୱାକୁ କନ୍ୟା ସୁବର୍ଣ୍ଣାଙ୍କୁ ବିବାହ କଲେ । ତହିଁରେ ତାହାଙ୍କର ହସ୍ତୀ ନାମକ ପୁତ୍ର ଜାତ ହେଲେ; ଯେ କି ହାସ୍ତିନ-ପୁରକୁ ସ୍ଥାପନ କଲେ । ଏହି କାରଣରୁ ତାହାଙ୍କର ନାମ ହାସ୍ତିନପୁର ହୋଇଥିଲା ।୩୪। ହସ୍ତୀ ତ୍ରିଗର୍ତ୍ତ ରାଜାଙ୍କର ତନୟା ଯଶୋଧରାଙ୍କର ପାଣିଗ୍ରହଣ କଲେ । ତାହାଙ୍କର ବିକୁଣ୍ଠନ ନାମକ ପୁତ୍ର ଜନ୍ମିଲେ ।୩୫। ବିକୁଣ୍ଠନ ଦଶାର୍ହ ରାଜାଙ୍କ ଦୁହିତା ସୁଦେବାଙ୍କୁ ପରିଣୟ କଲେ; ତହିଁରୁ ଅଜମୀଢ଼ ନାମକ ପୁତ୍ର ଜନ୍ମଗ୍ରହଣ କଲେ ।୩୬। ଅଜମୀଢ଼ଙ୍କର ଗୃହପତ୍ନୀ କୈକେୟୀ, ଗାନ୍ଧାରୀ, ବିଶାଳା ଓ ଋକ୍ଷା, ସେମାନଙ୍କଠାରୁ ଚତୁର୍ବିଂଶତିଶତ (୨,୪୦୦) ପୁତ୍ର ଜନ୍ମିଲେ । ସେହି ଭୂପାଳମାନେ ପୃଥକ୍ ପୃଥକ୍ ବଂଶ ସ୍ଥାପନ କଲେ । ତନ୍ମଧ୍ୟରେ ସମ୍ବରଣ ନାମକ ପୁତ୍ରଙ୍କଦ୍ୱାରା ଅଜମୀଢ଼ଙ୍କର ବଂଶ ପ୍ରତିଷ୍ଠା ହେଲା ।୩୭।

ସମ୍ବରଣ, ତପନତନୟା ତପତୀଙ୍କୁ ବିବାହ କରିଥିଲେ । ତହିଁରେ ତାହାଙ୍କର କୁରୁ ନାମକ ସୁତ ଉତ୍ପନ୍ନ ହେଲେ ।୩୮। କୁରୁ ଦାଶାର୍ହ-କୁମାରୀ ଶୁଭାଙ୍ଗୀଙ୍କର ପାଣିଗ୍ରହଣ କଲେ । ତହିଁରେ ତାହାଙ୍କର ବିଦୁର * ନାମକ ପୁତ୍ର ଜାତ ହେଲେ ।୩୯। ମାଧବତନୟା ସମ୍ପ୍ରିୟାଙ୍କୁ ବିଦୁରଥ ପରିଣୀତ ହେଲେ । ତହିଁରେ ତାହାଙ୍କର ଅନଶ୍ୱା ନାମକ ସୁତ ଜାତ ହେଲେ ।୪୦। ଅନଶ୍ୱା ମଗଧରାଜ-ଦୁହିତାଙ୍କର ପାଣିଗ୍ରହଣ କଲେ । ତହିଁରେ ତାହାଙ୍କର ପରୀକ୍ଷିତ ନାମକ ପୁତ୍ର ଜାତ ହେଲେ ।୪୧। ବାହୁଦ ରାଜ-କନ୍ୟା ସୁଯଶାଙ୍କୁ ପରୀକ୍ଷିତ ପରିଗ୍ରହ କଲେ; ତହିଁରେ ତାହାଙ୍କର ଭୀମସେନ ନାମକ ପୁତ୍ର ଜାତ ହେଲେ ।୪୨। ଭୀମସେନ କୈକେୟ ରାଜ-ଦୁହିତା କୁମାରୀଙ୍କର କର ଗ୍ରହଣ କଲେ । ତହିଁରେ ତାହାଙ୍କର ପ୍ରତିଶ୍ରବାଃ ନାମକ କୁମାର ଉତ୍ପନ୍ନ ହେଲେ ।୪୩। ପ୍ରତିଶ୍ରବସଙ୍କ ପୁତ୍ର ପ୍ରତୀପ; ପ୍ରତୀପ ଶୈବରାଜ-ନନ୍ଦିନୀ ସୁନନ୍ଦାଙ୍କର ପାଣିଗ୍ରହଣ କରି-ଥିଲେ; ସୁନନ୍ଦାଙ୍କ ଗର୍ଭରୁ ଦେବାପି, ଶାନ୍ତନୁ ଓ ବାହ୍ଲିକ ନାମଧେୟ ତିନି ପୁତ୍ର ଜାତ ହେଲେ ।୪୪। ଦେବାପି ବାଲ୍ୟକାଳରୁ ବନ ଗମନ କଲେ । ଶାନ୍ତନୁ ରାଜା ହେଲେ ।୪୫। ଏ ସ୍ଥାନରେ ଗୋଟିଏ ବଂଶାନୁ-କୀର୍ତ୍ତନ ଶ୍ଳୋକ ଅଛି ।

---

* ବିଦୂରଥ ଓ ବିଦୂର ବୋଲି ପୃଥକ୍ ପୃଥକ୍ ଗ୍ରନ୍ଥରେ ଉଲ୍ଲେଖ ଅଛି ।

"ଏହି ରାଜା ଯାହାଙ୍କୁ କରଦ୍ୱାରା ସ୍ପର୍ଶ କରୁଥିଲେ ସେ ସୁଖ ଭୋଗ କରୁଥିଲେ ଓ ବୃଦ୍ଧ ହୋଇଥିଲେ ପୁନର୍ବାର ଯୁବା ହେଉଥିଲେ । ଏହି କାରଣରୁ ସେ ରାଜାଙ୍କର ନାମ 'ଶାନ୍ତନୁ' ହୋଇଥିଲା" । ୪୬ ।

ଶାନ୍ତନୁ ଭାଗୀରଥୀ ଗଙ୍ଗାଙ୍କୁ ବିବାହ କଲେ । ତହିଁରେ ତାହାଙ୍କର ଦେବବ୍ରତ ନାମକ ତନୟ ଉତ୍ପନ୍ନ ହେଲେ; ଯାହାଙ୍କୁ ସମସ୍ତେ ଭୀଷ୍ମ ବୋଲି ବୋଲନ୍ତି । ୪୭ । ଭୀଷ୍ମ ନିଜ ପିତାଙ୍କର ପ୍ରିୟ କରିବା ନିମିତ୍ତ ତାହାଙ୍କୁ ସତ୍ୟବତୀଙ୍କ ସହ ଉଦ୍‌ବାହ କରାଇଲେ । ସତ୍ୟବତୀଙ୍କୁ ଗନ୍ଧକାଳୀ ବୋଲି କହନ୍ତି । ୪୮ । ସତ୍ୟବତୀଙ୍କଠାରେ ବିବାହ ପୂର୍ବରୁ ପରାଶରଙ୍କ ଔରସରୁ ଗୋଟିଏ କାନୀନପୁତ୍ର 'ଦ୍ୱୈପାୟନ' ଜାତ ହୋଇଥିଲେ । ତତ୍ପରେ ସେହି ସତ୍ୟବତୀଙ୍କ ଗର୍ଭରୁ ଶାନ୍ତନୁଙ୍କ ଔରସରେ ଅନ୍ୟ ଦୁଇଗୋଟି ପୁତ୍ର ଉତ୍ପନ୍ନ ହେଲେ । ୪୯ । ସେ ଦୁହିଁଙ୍କର ନାମ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ । ଦୁହିଁଙ୍କ ମଧ୍ୟରୁ ଚିତ୍ରାଙ୍ଗଦ ଯୌବନାବସ୍ଥା ପ୍ରାପ୍ତ ନୋହୁଣୁ ଗନ୍ଧର୍ବଦ୍ୱାରା ହତ ହେଲେ । ବିଚିତ୍ରବୀର୍ଯ୍ୟ ରାଜା ହେଲେ । ୫୦ । ବିଚିତ୍ରବୀର୍ଯ୍ୟ, କୌଶଲ୍ୟାଙ୍କର ଗର୍ଭ-ସମ୍ଭୂତା କାଶୀରାଜଦୁହିତା ଅମ୍ବା ଓ ଅମ୍ବାଳିକା ନାମ୍ନୀ ଦୁଇ ଭଗିନୀଙ୍କର ପାଣିଗ୍ରହଣ କଲେ । କିନ୍ତୁ ବିଚିତ୍ରବୀର୍ଯ୍ୟଙ୍କର ସନ୍ତାନ ନୋହୁଣୁ ସେ ପରଲୋକ ପ୍ରାପ୍ତ ହେଲେ । ସତ୍ୟବତୀ ଚିନ୍ତା କଲେ ଯେ ଦୁଷ୍ମନ୍ତ ରାଜାଙ୍କ ବଂଶ ଉଚ୍ଛେଦପ୍ରାପ୍ତ ନୋହୁ । ତହୁଁ ସେ ମନୋମଧ୍ୟରେ ଦ୍ୱୈପାୟନ ଋଷିଙ୍କୁ ଚିନ୍ତା କଲେ । ୫୩ ।

ସତ୍ୟବତୀ ତାହାଙ୍କୁ ବୋଇଲେ, ତୁମ୍ଭର ଭ୍ରାତା ବିଚିତ୍ରବୀର୍ଯ୍ୟ ନିଃସନ୍ତାନ ହୋଇ ସ୍ୱର୍ଗକୁ ଗମନ କରିଅଛନ୍ତି; ତାହାଙ୍କର ଅପତ୍ୟ ଉତ୍ପାଦନ କର । ୫୪ । ଦ୍ୱୈପାୟନ ତାହା ସ୍ୱୀକାର କରି ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଏହି ତିନିପୁତ୍ର ଉତ୍ପାଦନ କଲେ । ୫୫ । ଅନନ୍ତର ଦ୍ୱୈପାୟନଙ୍କ ବର-ଦାନରୁ ଧୃତରାଷ୍ଟ୍ରଙ୍କର ଏକଶତ ପୁତ୍ର ଗାନ୍ଧାରୀଙ୍କ ଗର୍ଭରୁ ଜାତ ହେଲେ । ୫୬ । ଧୃତରାଷ୍ଟ୍ରଙ୍କର ସେହି ପୁତ୍ରମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ, ଦୁଃଶାସନ ବିକର୍ଣ୍ଣ ଓ ଚିତ୍ରସେନ ଚାରିଜଣ ପ୍ରଧାନ ହୋଇଥିଲେ । ୫୭ । ପାଣ୍ଡୁଙ୍କର ଦୁଇ ଭାର୍ଯ୍ୟା ହୋଇଥିଲେ——କୁନ୍ତୀ ଯାହାଙ୍କର ଅପର ନାମ ପୃଥା ଓ ମାଦ୍ରୀ —ଏହି ଦୁଇ ସ୍ତ୍ରୀରତ୍ନ ପାଣ୍ଡୁଙ୍କର ଭାର୍ଯ୍ୟା । ୫୮ ।

ଅନନ୍ତର ଏକଦା ପାଣ୍ଡୁ ମୃଗୟାର୍ଥ ଅରଣ୍ୟକୁ ଗମନ କରି ଦେଖିଲେ ଯେ ଗୋଟିଏ ଋଷି ମୃଗୀଠାରେ ମୈଥୁନାସକ୍ତ ହୋଇଅଛନ୍ତି ।

ସେହି ଅଦ୍ଭୁତ ମୃଗ-ରୂପୀ ଋଷିଙ୍କର କାମ ତୃପ୍ତି ହୋଇ ନ ଥିଲା । ଏହି ଅବସରରେ ରାଜା ତାହାଙ୍କୁ ବାଣରେ ନିହତ କଲେ । ୫୯ । ବାଣ-ବିଦ୍ଧ ସେହି ଋଷି ପାଣ୍ଡୁଙ୍କୁ କହିଲେ, ତୁମ୍ଭେ ଧର୍ମପରାୟଣ ଓ କାମରସରେ ଅଭିଜ୍ଞ ହୋଇ ଆମ୍ଭଙ୍କୁ କାମରସରେ ଅପ୍ରାପ୍ତମନୋରଥ ହୋଇଥିବାର ଜାଣି ନିହତ କଲ; ଅତଏବ ତୁମ୍ଭେ ଏହିପରି କାମରସରେ ଅସମାପ୍ତ-ମନୋରଥ ହୋଇ ଶୀଘ୍ର ପଞ୍ଚତ୍ୱପ୍ରାପ୍ତ ହେବ । ପାଣ୍ଡୁ ବିଷଣ୍ଣରୂପ ହୋଇ ଶାପରୁ ତ୍ରାହି ଲଭିବା ଅଭିଳାଷରେ ଆପଣାର ଭାର୍ଯ୍ୟାଙ୍କ ଠାକୁ ଅଭିଗମନ କଲେ ନାହିଁ ଓ ଏହି ବାକ୍ୟ ବୋଇଲେ (୬୦), ଆମ୍ଭେ ନିଜର ଚପଳତା ଦୋଷରୁ ଏହି ଅଭିଶାପ ପ୍ରାପ୍ତ ହେଲୁଁ; ଆମ୍ଭେ ଶୁଣିଅଛୁ ଯେ ଅପତ୍ୟହୀନ ବ୍ୟକ୍ତିଙ୍କର ସ୍ୱର୍ଗଲାଭ ହୁଅଇ ନାହିଁ, ଅତଏବ ତୁମ୍ଭେ ପୁତ୍ରୋତ୍ପାଦନ କର ବୋଲି କୁନ୍ତୀଙ୍କୁ କହିଲେ । କୁନ୍ତୀ ତଦନୁସାରେ ଧର୍ମଙ୍କଠାରୁ ଯୁଧିଷ୍ଠିର, ମାରୁତଙ୍କଠାରୁ ଭୀମସେନ ଓ ଇନ୍ଦ୍ରଙ୍କଠାରୁ ଅର୍ଜ୍ଜୁନ ତିନିପୁତ୍ର ଜନ୍ମ କଲେ । ୬୧ । ପାଣ୍ଡୁ ହୃଷ୍ଟରୂପ ହୋଇ କୁନ୍ତୀଙ୍କୁ ବୋଇଲେ, ଏହି ତୁମ୍ଭର ସପତ୍ନୀ ଅନପତ୍ୟା, ଭଲ ଏହାଙ୍କଠାରେ ଅପତ୍ୟ ଉତ୍ପନ୍ନ କରାଅ । ୬୨ । କୁନ୍ତୀ ହେଉ ବୋଲି ମାଦ୍ରୀଙ୍କୁ ସେହି ବିଦ୍ୟା ପ୍ରଦାନ କଲେ । ଅଶ୍ୱିନୀକୁମାରଯୁଗଳ ମାଦ୍ରୀଙ୍କ ଠାରେ ନକୁଳ ଓ ସହଦେବ ନାମରେ ଦୁଇପୁତ୍ର ଜନ୍ମ କଲେ । ୬୩ ।

ଏକଦା ମାଦ୍ରୀଙ୍କୁ ଅଳଂକୃତା ଦେଖି ପାଣ୍ଡୁ ତାହାଙ୍କ ସହିତ ଅଭି-ଗମନ କରିବା ଇଚ୍ଛାରେ ସ୍ପର୍ଶ କରିବା ମାତ୍ର ବିଦେହତ୍ୱକୁ ପ୍ରାପ୍ତ ହେଲେ । ୬୪ । ମାଦ୍ରୀ ପାଣ୍ଡୁଙ୍କ ସହିତ ଚିତାପ୍ରବିଷ୍ଟ ହୋଇ ଅନୁଗମନ କଲେ ଓ କୁନ୍ତୀଙ୍କୁ କହିଲେ ଯେ ଏହି ଯମଜ ସନ୍ତାନଙ୍କୁ ନିଜ ପୁତ୍ରସମାନ ପ୍ରତିପାଳନ କରିବ । ୬୫ । ତଦନ୍ତେ ସେହି ପଞ୍ଚପୁତ୍ରଙ୍କୁ କୁନ୍ତୀଙ୍କ ସହିତ ତାପସମାନେ ହାସ୍ତିନପୁରକୁ ଘେନି ଆସି ଭୀଷ୍ମ ଓ ବିଦୁରଙ୍କଠାରେ ସମର୍ପଣ କରି ସର୍ବ ବର୍ଣ୍ଣମାନଙ୍କ ସାକ୍ଷାତରେ ସେହି କୁମାରମାନଙ୍କର ଜନ୍ମବୃତ୍ତାନ୍ତ ବୋଇଲେ । ସେମାନେ ତୁଣ୍ଡ ହୋଇ ବାଳକମାନଙ୍କୁ ଦେଖୁ ଦେଖୁ ତପସ୍ୱୀମାନେ ଅନ୍ତର୍ହିତ ହୋଇଗଲେ । ୬୬ । ସେହି ବାକ୍ୟ ଶ୍ରବଣ କରି ଭଗବାନ ଅନ୍ତରୀକ୍ଷରୁ ପୁଷ୍ପ ବୃଷ୍ଟି କଲେ ଓ ଦେବତାମାନେ ଦୁନ୍ଦୁଭି ବଜାଇଲେ । ୬୭ ।

ପାଣ୍ଡବମାନେ ଭୀଷ୍ମାଦିଙ୍କ ଦ୍ୱାରା ପ୍ରତିଗୃହୀତ ହୋଇ ପିତାଙ୍କର ନିଧନ ବୃତ୍ତାନ୍ତ ଜଣାଇଲେ ଓ ତାଙ୍କର ଊର୍ଦ୍ଧ୍ୱଦୈହିକ କ୍ରିୟା ସମ୍ପାଦନ କଲେ । ପରେ ସେମାନେ ସେହି ସ୍ଥାନରେ ବାସ କଲେ ।, କିନ୍ତୁ

ଦୁର୍ଯ୍ୟୋଧନ ସେମାନଙ୍କୁ ବାଲ୍ୟକାଳରୁ ସହି ପାରିଲେ ନାହିଁ । ସେହି ପାପାତ୍ମର ରାକ୍ଷସୀ ବୁଦ୍ଧିକୁ ଆଶ୍ରୟ କରି ଅନେକ ଉପାୟଦ୍ୱାରା ସେମାନଙ୍କୁ ସେଠାରୁ ନିଷ୍କ୍ରାନ୍ତ କରିବାକୁ ବସିଲେ । କିନ୍ତୁ କାର୍ଯ୍ୟର ଅବଶ୍ୟମ୍ଭାବିତା ହେତୁରୁ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ୬୯ । ଅନନ୍ତର ଧୃତରାଷ୍ଟ୍ର ଛଳକରି ସେହି ବାଳକମାନଙ୍କୁ ବାରଣାବତ ନାମକ ଗ୍ରାମକୁ ପ୍ରେରଣ କଲେ । ପାଣ୍ଡବମାନେ ସମ୍ମତ ହୋଇ ସେଠାକୁ ପ୍ରସ୍ଥାନ କଲେ । ୭୦ । ସେଠାରେ ମଧ୍ୟ ଦୁର୍ଯ୍ୟୋଧନ ଜତୁଗୃହରେ ସେମାନଙ୍କୁ ଦଗ୍ଧ କରିବାକୁ ଉପକ୍ରମ କଲେ; କିନ୍ତୁ ବିଦୁରଙ୍କ ମନ୍ତ୍ରଣା ବଳରେ କୃତକାର୍ଯ୍ୟ ହୋଇ-ପାରିଲେ ନାହିଁ । ୭୧ । ସେଠାରୁ ଯାତ୍ରାକରି ପଥ ମଧ୍ୟରେ ହିଡ଼ିମ୍ବକୁ ବଧ କରି ଏକଚକ୍ରା ନଗରୀକୁ ଗମନ କଲେ । ସେହି ଏକଚକ୍ରା ନଗରୀରେ ବକ ନାମକ ଗୋଟିଏ ରାକ୍ଷସକୁ ବଧ କରି ପାଞ୍ଚାଳ ନଗରକୁ ଗମନ କଲେ । ୭୩ । ସେଠାରେ ଦ୍ରୌପଦୀ ନାମ୍ନୀ ଭାର୍ଯ୍ୟା ଲାଭ କରି ସ୍ୱରାଜ୍ୟକୁ କୁଶଳରେ ପ୍ରତ୍ୟାବୃତ୍ତ ହୋଇ ପୁତ୍ରମାନଙ୍କୁ ଉତ୍ପାଦନ କଲେ । ୭୪ ।

ପ୍ରତିବିନ୍ଧ୍ୟଙ୍କୁ ଯୁଧିଷ୍ଠିର, ସୁତସୋମଙ୍କୁ ବୃକୋଦର, ଶ୍ରୁତକୀର୍ତ୍ତିଙ୍କୁ ଅର୍ଜ୍ଜୁନ, ଶତାନୀକଙ୍କୁ ନକୁଳ ଓ ଶ୍ରୁତକର୍ମାଙ୍କୁ ସହଦେବ ଉତ୍ପାଦନ କଲେ । ୭୫ । ଯୁଧିଷ୍ଠିର ଗୋବାସନ ନାମକ ଶୈବ୍ୟ ଦେଶାଧିପତିଙ୍କ ଦୁହିତା ଦେବିକାଙ୍କୁ ସ୍ୱୟଂମ୍ବରରେ ଲଭିଲେ ଓ ତାହାଙ୍କଠାରେ ଯୌଧେୟ ବୋଲି ପୁତ୍ର ଜନ୍ମ କଲେ ।୭୬। ଭୀମସେନ ବୀର୍ଯ୍ୟରୂପ ଶୁଳ୍କଦ୍ୱାରା କାଶୀରାଜ-ଦୁହିତା ବଳନ୍ଧରାଙ୍କୁ ବିବାହ କରି ତାହାଙ୍କଠାରେ ସର୍ବଗ ନାମକ ପୁତ୍ର ଉତ୍ପାଦନ କଲେ । ୭୭ । ଅର୍ଜ୍ଜୁନ ଦ୍ୱାରକାକୁ ଗମନ କରି ବାସୁଦେବଙ୍କ ଭଗିନୀ ଭଦ୍ରଭାଷିଣୀ ସୁଭଦ୍ରାଙ୍କୁ ଉଦ୍‌ବାହ କଲେ ଓ ନିଜ ରାଜ୍ୟକୁ କୁଶଳରେ ପ୍ରତ୍ୟାବୃତ୍ତ ହୋଇ ତାହାଙ୍କଠାରେ ଅତୀବ ଗୁଣସମ୍ପନ୍ନ ଓ ବାସୁଦେବଙ୍କର ପ୍ରିୟ ଅଭିମନ୍ୟୁ ନାମକ ସୁତକୁ ଜନ୍ମ କଲେ । ୭୮ । ନକୁଳ ଚେଦିରାଜ-ଦୁହିତା କରେଣୁମତି ନାମ୍ନୀ ଭାର୍ଯ୍ୟାଙ୍କୁ ବିବାହ କରି ତାହାଙ୍କଠାରେ ନିରମିତ୍ର ନାମକ ପୁତ୍ରଙ୍କୁ ଜନ୍ମ କଲେ । ୭୯ । ସହଦେବ ମଧ୍ୟ ମଦ୍ରଦେଶାଧିପତି ଦ୍ୟୁତିମାନଙ୍କ ସୁତା ବିଜୟାଙ୍କୁ ସ୍ୱୟଂମ୍ବରରେ ବିବାହ କଲେ ଓ ତାହାଙ୍କ-ଠାରେ ସୁହୋତ୍ର ନାମକ ପୁତ୍ରଙ୍କୁ ଉତ୍ପାଦନ କଲେ ।୮୦। ଭୀମସେନ ପୂର୍ବରୁ ହିଡ଼ିମ୍ବାଙ୍କଠାରେ ଘଟୋତ୍କଚ ନାମକ ରାକ୍ଷସ ପୁତ୍ର ଜନ୍ମ କରିଥିଲେ । ୮୧ ।

ଏହିପରି ପଞ୍ଚପାଣ୍ଡବଙ୍କର ଏକାଦଶ ପୁତ୍ର ହୋଇଥିଲେ; ତନ୍ମଧ୍ୟରୁ ଅଭିମନ୍ୟୁ ବଂଶଧର ହେଲେ । ୮୨ । ସେ ବିରାଟ ରାଜାଙ୍କର ଉତ୍ତରା

ନାମ୍ନୀ କନ୍ୟାଙ୍କୁ ବିବାହ କରିଥିଲେ । ତାହାଙ୍କ ଔରସରେ ଉତ୍ତରାଙ୍କର ଗୋଟିଏ ମୃତ ସନ୍ତାନ ଜାତ ହୋଇଥିଲା । ପୃଥା ସେହି ଷାଣ୍ମାସିକ ଗର୍ଭକୁ କୋଡ଼ରେ ନେଇ ପୁରୁଷୋତ୍ତମ ବାସୁଦେବଙ୍କ ସମୀପକୁ ଗମନ କଲେ । ବାସୁଦେବ ବୋଇଲେ ଆମ୍ଭେ ଏହାଙ୍କୁ ଜୀବିତ କରିବୁଁ । ୮୩ । ଅକାଳଜାତ, ଅସ୍ତ୍ରାଗ୍ନି ଦଗଧ, ଓ ଅସଞ୍ଜାତ-ବଳବୀର୍ଯ୍ୟପରାକ୍ରମ ସେହି ବାଳକକୁ ଭଗବାନ୍ ବାସୁଦେବ ସ୍ୱୀୟ ତେଜଦ୍ୱାରା ସଞ୍ଜୀବିତ କରି ବୋଇଲେ, କୁଳ-ପରିକ୍ଷୀଣ ହେବାରୁ ଏହି ବାଳକ ଜନ୍ମଗ୍ରହଣ କରିଅଛି; ଏହି ନିମିତ୍ତ ତାହାର ନାମ 'ପରୀକ୍ଷିତ୍' ହେଉ । ୮୪ । ପରୀକ୍ଷିତ୍ ଆପଣଙ୍କ ମାତା ମାଦ୍ରବତୀଙ୍କୁ ବିବାହ କଲେ । ତାହାଙ୍କଠାରୁ ଆପଣ ଜନମେଜୟ ଜାତ ହେଲେ । ୮୫ । ଆପଣଙ୍କର ବପୁଷ୍ଟମା ନାମ୍ନୀ ମହିଷୀଙ୍କଠାରୁ ଶତାନୀକ ଓ ଶଙ୍କୁକର୍ଣ୍ଣ ଏହି ଦୁଇ ପୁତ୍ର ଉତ୍ପନ୍ନ ହୋଇଅଛନ୍ତି । ୮୬ ।

ହେ ନୃପତେ ! ଧନ୍ୟ, ପୁଣ୍ୟ ଓ ପରମ ପବିତ୍ର ପୁରୁଙ୍କର ଓ ପାଣ୍ଡବଗଣଙ୍କର ଏହି ବଂଶ କୀର୍ତ୍ତିତ ହେଲା । ଏହାକୁ ନିୟମଯୁକ୍ତ ବ୍ରାହ୍ମଣ-ମାନେ, ସ୍ୱଧର୍ମ-ନିରତ ଓ ପ୍ରଜାପାଳନତତ୍ପର କ୍ଷତ୍ରିୟମାନେ, ବୈଶ୍ୟମାନେ ଓ ଶ୍ରଦ୍ଧାନ୍ୱିତ ଶୂଦ୍ରମାନେ ଅଥତ ତ୍ରିବର୍ଣ୍ଣର ଶୁଶ୍ରୂଷୁ ବ୍ୟକ୍ତିମାନେ ଅବଶ୍ୟ ଶ୍ରବଣ କରିବେ ଓ ଏହାର ଅଭିପ୍ରାୟ ଅବଗତ ହେବେ । ୮୭ । ଯେଉଁ ସବୁ ଦେବପରାୟଣ ମାନବମାନେ ବିମତ୍ସର ନିୟତାତ୍ମା ହୋଇ ଶ୍ରଦ୍ଧା ସହ ଏହି ପୁଣ୍ୟକର ଇତିହାସକୁ ସ୍ୱୟଂ ଶ୍ରବଣ କରନ୍ତି, ଅଥବା ଅନ୍ୟକୁ ଶୁଣାନ୍ତି, ସେମାନେ ସ୍ୱର୍ଗଜିତ୍ ହୋଇ ପୁଣ୍ୟଲୋକମାନଙ୍କୁ ଲାଭ କରନ୍ତି ଓ ସେମାନେ ସତତ ଦେବ, ବ୍ରାହ୍ମଣ ଓ ମନୁଷ୍ୟଙ୍କର ସମ୍ୟକ୍ ମାନନୀୟ ଓ ପୂଜନୀୟ ହୁଅନ୍ତି । ୮୮ । ଏହି ପରମ ପବିତ୍ର ଭାରତକୁ ଭଗବାନ୍ ବ୍ୟାସ କହିଅଛନ୍ତି । ଯେଉଁ ବ୍ରାହ୍ମଣାଦି ବର୍ଣ୍ଣମାନେ ଶ୍ରଦ୍ଧାନ୍ୱିତ, ଅମତ୍ସର, ଦେବବ୍ରତସମ୍ପନ୍ନ ହୋଇ ଏହାକୁ ଶ୍ରବଣ କରନ୍ତି, ସେମାନେ ମଧ୍ୟ ସ୍ୱର୍ଗଜୟୀ ଓ ସୁକୃତୀ ହୋଇ ପାପାଚରଣ କଲେ ସୁଦ୍ଧା ତହିଁରେ ଲିପ୍ତ ଓ ଶୋଚନୀୟ ହୁଅନ୍ତି ନାହିଁ ।୮୯। ଏ ବିଷୟରେ ଏହି ଶ୍ଳୋକ ଅଛି ଯେ:—

ଯେ ହେତୁ ଏହି ଭାରତ ବେଦଙ୍କ ସମାନ ପବିତ୍ର, ଉତ୍ତମ, ଧନ୍ୟ, ଯଶୋବର୍ଦ୍ଧନ ଓ ଆୟୁର୍ବୃଦ୍ଧିକାରୀ ଅତଏବ ନିୟତାତ୍ମ ବ୍ୟକ୍ତିମାନଙ୍କର ଶ୍ରୋତବ୍ୟ ଅଟଇ । ୯୦ ।

# ଅଧ୍ୟାୟ—୯୭

ବୈଶମ୍ପାୟନ ବୋଇଲେ—ଇକ୍ଷ୍ୱାକୁଙ୍କ ବଂଶରେ ସମୁତ୍ପନ୍ନ ସତ୍ୟବାଦୀ ଓ ସତ୍ୟବିକ୍ରମ ମହାଭିଷ ନାମରେ ବିଖ୍ୟାତ ଗୋଟିଏ ଭୂପତି ଥିଲେ । ସେ ସହସ୍ର ଅଶ୍ୱମେଧ ଓ ଶତସଂଖ୍ୟକ ରାଜସୂୟ ଯଜ୍ଞଦ୍ୱାରା ଦେବାଧିପତି ବ୍ରହ୍ମାଙ୍କୁ ପରିତୁଷ୍ଟ କରି ତଦନନ୍ତର ସ୍ୱର୍ଗଲାଭ କଲେ । ୨ । ତଦନନ୍ତର ଏକ ସମୟରେ ସୁରବୃନ୍ଦ ବ୍ରହ୍ମାଙ୍କର ଉପାସନା କଲେ । ସେହି କାଳରେ ବହୁସଂଖ୍ୟକ ରାଜର୍ଷି ଓ ସେହି ମହାଭିଷ ନାମକ ରାଜା ଉପସ୍ଥିତ ଥିଲେ । ୩ । ତଦନନ୍ତର ନଦୀ-ପ୍ରଧାନା ଗଙ୍ଗା ସେହି ଅବସରରେ ପିତାମହଙ୍କ ସମୀପରେ ଉପସ୍ଥିତ ହେଲେ । ତାହାଙ୍କର ସୁଧାଂଶୁ ପ୍ରଭାସଦୃଶ ବସନ, ପବନଦ୍ୱାରା ସମୁଦ୍ଧୃତ ହେଲା । ୪ । ତହିଁରେ ଦେବତାମାନେ ସହସା ଅଧୋମୁଖ ହେଲେ । ରାଜର୍ଷି ମହାଭିଷ ଆଶଙ୍କିତ ଚିତ୍ତରେ ନଦୀଙ୍କ ପ୍ରତି ଦୃଷ୍ଟିପାତ କରି ରହିଲେ । ୫ । ଏହି ଅପରାଧରେ ସେହି ମହାଭିଷ ବ୍ରହ୍ମାଙ୍କ କର୍ତ୍ତୃକ ତିରସ୍କୃତ ହେଲେ । ବ୍ରହ୍ମା ତାହାଙ୍କୁ ବୋଇଲେ ଯେ ତୁମ୍ଭେ ଅଦ୍ୟାପି ସୁରଲୋକର ଯୋଗ୍ୟ ହୋଇନାହିଁ । ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରି କିଛିକାଳ ପରେ ପୁନର୍ବାର ଏହି ସୁରଲୋକକୁ ଆସିପାରିବ * । ୬ ।

ତହୁଁ ସେ ରାଜା ମହାଭିଷ ଓ ଅନ୍ୟାନ୍ୟ ଭୂପତି ଓ ତପସ୍ୱୀମାନଙ୍କୁ ବିଲୋକନ କରି କିଛିକାଳ ଚିନ୍ତାଦ୍ୱାରା ଭୂରିତେଜା-ଭୂପତି 'ପ୍ରତୀପ'ଙ୍କୁ ପିତା କରିବାକୁ ଅଭିଳାଷୀ ହେଲେ । ୯ । ସରିଦ୍‌ବରା ଗଙ୍ଗା ନୃପତି ମହାଭିଷଙ୍କୁ ତାଦୃଶ ଧୈର୍ଯ୍ୟଚ୍ୟୁତ ଦେଖି ତାହାଙ୍କୁ ମନୋମଧ୍ୟରେ ଧ୍ୟାନ କରି ପ୍ରତ୍ୟାଗତ ହେଲେ । ୧୦ । ହେ ନୃପ ! ସେ ଗମନ କାଳରେ ପଥ-ମଧ୍ୟରେ ତ୍ରିଦଶାଳୟ-ବାସୀ ବସୁଗଣ ନାମକ ଦେବତାମାନଙ୍କୁ ମନୋ-ଦୁଃଖରେ ଦୁଃଖିତ ଓ ସ୍ୱର୍ଗଚ୍ୟୁତ ହେବାର ଦେଖିଲେ । ୧୧ । ସରିଦ୍‌ବରା ଗଙ୍ଗା ସେହି ଦେବତାମାନଙ୍କୁ ତଥାବିଧ ଦେଖି ପ୍ରଶ୍ନ କଲେ—ଏ କଣ ! ତୁମ୍ଭେମାନେ ନଷ୍ଟରୂପ ! ଦେବତାମାନଙ୍କର ସବୁ କ୍ଷେମ ଅଛି ତ ? ୧୨ ।

---

* କୌଣସି ପୁସ୍ତକରେ ଏପରି ଅଛି ଯେ ବ୍ରହ୍ମା କହିଲେ—ହେ ଦୁର୍ମତେ ! ଯେଉଁ ଗଙ୍ଗାଙ୍କଦ୍ୱାରା ତୁମ୍ଭର ମନ ହୃତ ହେଲା ମର୍ତ୍ତ୍ୟଲୋକରେ ସେହି ଗଙ୍ଗା ତୁମ୍ଭର ବିପ୍ରିୟାଚରଣ କରିବେ । ତୁମ୍ଭର ମନ୍ୟୁ ଜାତ ହେଲେ ତୁମ୍ଭେ ଶାପରୁ ମୁକ୍ତ ହେବ । ୭—୯

ବସୁ ନାମକ ଦେବଗଣ ତାହାଙ୍କୁ ବୋଇଲେ, ହେ ମହାନଦି ! ମହାତ୍ମା ବଶିଷ୍ଠ ଅଳ୍ପ ଅପରାଧରେ କ୍ରୁଦ୍ଧ ହୋଇ ଆମ୍ଭମାନଙ୍କ ପ୍ରତି ଅଭିଶାପ ଦେଲେ । ୧୩ । ଋଷି-ସତ୍ତମ ପ୍ରଚ୍ଛନ୍ନ ହୋଇ ସାନ୍ଧ୍ୟୋପାସନା କରୁଥିଲେ । ଆମ୍ଭେମାନେ ବିମୂଢ଼ ଚିତ୍ତରେ ତାହାଙ୍କୁ ଅତିକ୍ରମ କରି ଗମନ କଲୁଁ । ତହିଁରେ ସେ ରୋଷପରବଶ ହୋଇ ଆମ୍ଭମାନଙ୍କୁ ଶାପ ଦେଲେ ଯେ ତୁମ୍ଭେମାନେ ନରଯୋନିରେ ଜନ୍ମଗ୍ରହଣ କର । ୧୪ । ବ୍ରହ୍ମବାଦୀ ଋଷି ଯାହା ବୋଇଲେ ତାହା ଅତିକ୍ରମ କରି ହେବାର ନୁହଇ । ତୁମ୍ଭେ ଭୂମଣ୍ଡଳେ ମାନୁଷୀ ହୋଇ ଆମ୍ଭମାନଙ୍କୁ ପୁତ୍ରରୂପେ ପ୍ରସବ କର । ୧୫ । ହେ ଶୁଭେ ! ଆମ୍ଭେ ମାନୁଷୀଙ୍କ ଜଠରରେ ପ୍ରବେଶ କରିବାକୁ ଇଚ୍ଛା କରୁନାହୁଁ । ତହୁଁ ଗଙ୍ଗା (ତଥା) ତାହା ହେଉ ବୋଲି ବୋଇଲେ । ୧୬ । ଗଙ୍ଗା ବୋଇଲେ, ମନୁଷ୍ୟଲୋକରେ କେଉଁ ପୁରୁଷଶ୍ରେଷ୍ଠ ତୁମ୍ଭର ଜନ୍ମଦାତା ହେବେ ? ଗଙ୍ଗା ବୋଇଲେ, ହେ ଅନଘ ! ତୁମ୍ଭେ ଯେପରି ବୋଇଲ, ଆମ୍ଭେ ତାହାଙ୍କର ଓ ତୁମ୍ଭର ଅଭିଲଷିତ ପ୍ରିୟ ଅନୁଷ୍ଠାନ କରିବୁଁ । ୧୯ ।

ବସୁଗଣ ବୋଇଲେ *, ଆମ୍ଭର ବୀର୍ଯ୍ୟର ଅଷ୍ଟମାଂଶକୁ ଆମ୍ଭେ-ମାନେ ପ୍ରଦାନ କରିବୁଁ ; ସେହି ବୀର୍ଯ୍ୟଦ୍ୱାରା ତାହାଙ୍କର ଇପ୍‌ସିତ, ତୁମ୍ଭର ପୁତ୍ର ଜାତ ହେବ । ମର୍ତ୍ତ୍ୟଲୋକରେ ତାହାଙ୍କର ସନ୍ତତି ରହିବେ ନାହିଁ । ଅତଏବ ତୁମ୍ଭର ପୁତ୍ର ଅପୁତ୍ରିକ ହେବେ । ଏହିପରି ସେ ବସୁଗଣ ଗଙ୍ଗାଙ୍କ ସହିତ ନିରୂପଣ କରି ପ୍ରହୃଷ୍ଟମନା ହୋଇ ଅଭିଲଷିତ ସ୍ଥାନକୁ ଗମନ କଲେ । ୨୪ ।

---

* ବସୁଗଣ ବୋଇଲେ— ତୁମ୍ଭର ଜାତ ସନ୍ତାନମାନଙ୍କୁ ତୁମ୍ଭେ ଜଳରେ ନିକ୍ଷେପ କରିବ । ହେ ତ୍ରିଲୋକଗାମିନି ! ଯେପରି ଆମ୍ଭେମାନେ ଅଚିରକାଳରେ ଉଦ୍ଧାର ପାଉଁ । ଗଙ୍ଗା ଉତ୍ତର କଲେ, ହେଉ ତଦ୍ରୂପ କରିବୁଁ, କିନ୍ତୁ ପୁତ୍ରାର୍ଥୀ ଶାନ୍ତନୁଙ୍କର ଆତ୍ମ ସହିତ ସଙ୍ଗମ ବୃଥା ନ ହୁଏ, ଏ ନିମିତ୍ତ ତାହାଙ୍କର ଗୋଟିଏ ପୁତ୍ର ଯେପରି ଜୀବିତ ରହେ ତାହାର ଉପାୟ ବିଧାନ କର । ବସୁଗଣ ବୋଇଲେ, ଆମ୍ଭେମାନେ ପ୍ରତ୍ୟେକରେ ଆମ୍ଭ ବୀର୍ଯ୍ୟର ଏକ ଅଷ୍ଟମାଂଶ ପ୍ରଦାନ କରିବୁଁ: ସେହି ତେଜରେ ତୁମ୍ଭର ଓ ତାଙ୍କର ଅଭିଳାଷାନୁରୂପ ଗୋଟିଏ ମାତ୍ର ପୁତ୍ର ଜୀବିତ ରହିବେ । ମାତ୍ର ମର୍ତ୍ତ୍ୟଲୋକରେ ତାହାଙ୍କର ବଂଶ ରହିବ ନାହିଁ । ସେହି ବୀର୍ଯ୍ୟବାନ୍ ସନ୍ତାନ ନିଃସନ୍ତାନ ହେବେ ।—ଏପରି କୌଣସି ପୁସ୍ତକରେ ଅଛି ।

# ଅଧ୍ୟାୟ – ୯୭

ବୈଶମ୍ପାୟନ ବୋଇଲେ—ପ୍ରତୀପ ଭୂପତି ସର୍ବପ୍ରାଣୀଙ୍କର ହିତରେ ରତ ଥିଲେ । ସେ ବହୁକାଳ ଗଙ୍ଗାଦ୍ୱାରରେ ବସି ଜପ କଲେ । ଦିନେ ଗଙ୍ଗା ରୂପଗୁଣସମ୍ପନ୍ନା ସ୍ତ୍ରୀ ରୂପରେ ଲୋଭନୀୟତମାକୃତି ଧରି ସଳିଳରୁ ଉଠିଲେ । ଦିବ୍ୟରୂପା ମନସ୍ୱିନୀ ସେହି ସୁମୁଖୀ ପ୍ରତୀପଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ରାଜା ଅଧ୍ୟୟନ କରୁଥିଲେ, ତାହାଙ୍କର ଶାଳସ୍ତମ୍ଭ ସଦୃଶ ଦକ୍ଷିଣ ଉରୁରେ ଯାଇ ବସିଲେ । ମହୀପାଳ ପ୍ରତୀପ ସେହି ଯଶସ୍ୱିନୀଙ୍କୁ କହିଲେ, ହେ କଲ୍ୟାଣି ! ତୁମ୍ଭର କି ଅଭିଳାଷ ? ଆମ୍ଭେ ତୁମ୍ଭର କି ପ୍ରିୟକାର୍ଯ୍ୟ କରିବୁଁ ? ୪ । ସ୍ତ୍ରୀ ବୋଇଲେ, ହେ ରାଜନ୍ ! କୁରୁଶ୍ରେଷ୍ଠ ! ଆମ୍ଭେ ତୁମ୍ଭଙ୍କୁ କାମନା କରୁଅଛୁଁ । କାମବତୀ ସ୍ତ୍ରୀକୁ ପରିତ୍ୟାଗ କରିବା ସଜ୍ଜନମାନଙ୍କ ମତରେ ବିଶେଷ ଗର୍ହିତ କାର୍ଯ୍ୟ ଅଟଇ । ୫ । ପ୍ରତୀପ ବୋଇଲେ, ହେ ବରବର୍ଣ୍ଣିନି ! ଆମ୍ଭେ କାମର ବଶବର୍ତ୍ତୀ ହୋଇ ପର ସ୍ତ୍ରୀଠାରେ ଗମନ କରୁନାହିଁ । ହେ କଲ୍ୟାଣି ! ଆମ୍ଭେ ଅସବର୍ଣ୍ଣା କାମିନୀଠାକୁ ଗମନ କରୁ-ନାହିଁ । ଏ ଆମ୍ଭର ଧର୍ମାନୁମୋଦିତ ବ୍ରତ ଅଟଇ । ୬ । ପୁନର୍ବାର ସ୍ତ୍ରୀ ବୋଇଲେ, ଆମ୍ଭେ ଅଶ୍ରେୟସୀ, ଅଗମ୍ୟା କି ନିନ୍ଦିତା ସ୍ତ୍ରୀ ନୋହୁଁ । ହେ ରାଜନ୍ ! ଆମ୍ଭେ କନ୍ୟା ଓ ଦିବ୍ୟ ସ୍ତ୍ରୀ ଅଟୁଁ । ଆମ୍ଭେ ତୁମ୍ଭଙ୍କୁ ଭଜନା କରୁଅଛୁଁ, ତୁମ୍ଭେ ଆମ୍ଭଙ୍କୁ ଭଜନ କର । ୭ ।

ପ୍ରତୀପ ବୋଇଲେ, ତୁମ୍ଭେ ଯେଉଁ ପ୍ରିୟ କର୍ମ ନିମିତ୍ତ ଆମ୍ଭଙ୍କୁ ପ୍ରବୃତ୍ତ କରୁଅଛ, ଆମ୍ଭେ ତହିଁରୁ ନିବୃତ୍ତ ଅଛୁଁ । ତହିଁର ଅନ୍ୟଥାଚରଣ କଲେ ଯେଉଁ ଧର୍ମବିପ୍ଳବ ଘଟିବ, ସେ ଆମ୍ଭଙ୍କୁ ନାଶ କରିବ । ୮ । ହେ ବରାଙ୍ଗନେ ! ତୁମ୍ଭେ ଆମ୍ଭର ଦକ୍ଷିଣ ଉରୁରେ ଉପବେଶନ କରିଅଛ । ହେ ଭୀରୁ ! ଅପତ୍ୟ ଓ ସ୍ନୁଷା (ବୋହୂ) ମାନଙ୍କର ଏ ବସିବାର ସ୍ଥାନ, ଜାଣ । ୯ । ବାମ ଉରୁ କାମିନୀମାନଙ୍କର ଭୋଗ୍ୟ ଅଟେ । ତୁମ୍ଭେ ତାହାକୁ ବିସର୍ଜିତ କରିଅଛ । ଅତଏବ ହେ ବରାଙ୍ଗନେ ! ଆମ୍ଭେ ତୁମ୍ଭ ସହିତ କାମାଚରଣ କରିବୁଁ ନାହିଁ । ୧୦ । ହେ ବରବର୍ଣ୍ଣିନି ! ତୁମ୍ଭେ ଆମ୍ଭର ସ୍ନୁଷା ହୁଅ; ଆମ୍ଭେ ତୁମ୍ଭଙ୍କୁ ପୁତ୍ର ନିମିତ୍ତ ବରଣ କରୁଅଛୁଁ । ହେ ବାମୋରୁ ! ତୁମ୍ଭେ ସ୍ନୁଷାର ପକ୍ଷକୁ ଆସି ଆଶ୍ରୟ କର । ୧୧ ।

ସ୍ତ୍ରୀ ବୋଇଲେ, ହେ ଧର୍ମଜ୍ଞ ! ତାହିଁ ହେଉ; ତୁମ୍ଭ ସହିତ ଆମ୍ଭଙ୍କୁ ସଂଯୁକ୍ତ କର । ତୁମ୍ଭ ଭକ୍ତିରେ ତୁଷ୍ଟ ହୋଇ ଭରତର ପ୍ରଖ୍ୟାତ କୁଳକୁ ଆମ୍ଭେ ଭଜନ କରିବୁଁ । ୧୨ । ପୃଥିବୀରେ ଯେତେ ରାଜା ଅଛନ୍ତି, ତୁମ୍ଭେ ସେମାନଙ୍କର ସମସ୍ତଙ୍କର ଆଶ୍ରୟ । ତୁମ୍ଭର ଯେଉଁ କୁଳ, ତାହାର ଯେତେ ବିଖ୍ୟାତ ରାଜା, ସେମାନଙ୍କର ଯେଉଁ ଉତ୍ତମ ସାଧୁତା, ତାହାକୁ ଆମ୍ଭେ ଶତବର୍ଷରେ ସୁଦ୍ଧା ବର୍ଣ୍ଣନ କରିପାରିବୁଁ ନାହିଁ । ୧୩ । ହେ ଧର୍ମଜ୍ଞ ବିଭୋ ! ଆମ୍ଭ ସହିତ ଏହି ଗୋଟିଏ ପ୍ରତିଜ୍ଞା କରିବାକୁ ହେବ ଯେ ଆମ୍ଭେ ଯାହା କରିବୁଁ, ତୁମ୍ଭର ପୁତ୍ର କଦାପି ତାହାର ମୀମାଂସା କରିବେ ନାହିଁ । ଆମ୍ଭେ ଏହି ପ୍ରକାରେ ରହି ତୁମ୍ଭ ପୁତ୍ରଙ୍କ ପ୍ରତି ସ୍ନେହ ବୃଦ୍ଧି କରିବୁଁ ଓ ତୁମ୍ଭର ସୁତ, ପୁତ୍ର-ଲାଭ କରି ପୁଣ୍ୟ କର୍ମ ଓ ପ୍ରିୟକାର୍ଯ୍ୟ ବଳରେ ସ୍ୱର୍ଗ ଲାଭ କରିବେ । ୧୪ ।

ବୈଶମ୍ପାୟନ ବୋଇଲେ, ହେ ରାଜନ୍ ! ଗଙ୍ଗା ଏହିପରି କହି ସେହି ସ୍ଥାନରେ ଅନ୍ତର୍ହିତ ହେଲେ । ରାଜା ପୁତ୍ରଙ୍କର ଜନ୍ମ ପ୍ରତୀକ୍ଷାରେ ରହି ତାହା କରିବେ ବୋଲି ଅବଧାରଣ କଲେ । ୧୬ ! ସେହି ସମୟରୁ କ୍ଷତ୍ରିୟ କୁରୁନନ୍ଦନ ପ୍ରତୀପ ସଭାର୍ଯ୍ୟ ହୋଇ ପୁତ୍ରାର୍ଥ ତପସ୍ୟାରେ ପ୍ରବୃତ୍ତ ହେଲେ । ୧୭ । ତଦନନ୍ତର ସେହି ଦମ୍ପତିଙ୍କର ବୃଦ୍ଧାବସ୍ଥାରେ ମହାଭିଷ ନାମକ ପୁତ୍ର ଜାତ ହେଲେ । ବୃଦ୍ଧ ପ୍ରତୀପଙ୍କ ଚିତ୍ତ ଶାନ୍ତ ହେବାରୁ ତାହାଙ୍କର ପୁତ୍ରଙ୍କର ନାମ 'ଶାନ୍ତନୁ' ହେଲା । ୧୮ । ସ୍ୱୀୟ କର୍ମଦ୍ୱାରା ଅକ୍ଷୟ ପୁଣ୍ୟଲୋକ ଲାଭ ହୁଏ ବୋଲି ଜାଣି କୁରୁ-ସତ୍ତମ ଶାନ୍ତନୁ ପୁଣ୍ୟ-କର୍ମମାନଙ୍କୁ ଅନୁଷ୍ଠାନ କରିବାରେ ପ୍ରବୃତ୍ତ ହେଲେ । ୧୯ ।

ତଦନନ୍ତର ରାଜା ପ୍ରତୀପ ସ୍ୱୀୟ ପୁତ୍ର ଶାନ୍ତନୁଙ୍କୁ ଯୌବନସ୍ଥ ଦେଖି ବୋଇଲେ, ହେ ଶାନ୍ତନୋ ! ତୁମ୍ଭର ମଙ୍ଗଳ ନିମିତ୍ତ ପୂର୍ବ କାଳରେ ଗୋଟିଏ ଦିବ୍ୟ ରମଣୀ ଆମ୍ଭ ନିକଟକୁ ଆସିଥିଲେ । ହେ ପୁତ୍ର ! ସେହି ନିରୁପମ ରୂପବତୀ ଯୁବତୀ ବରବର୍ଣ୍ଣିନୀ, କାମଗାମିନୀ ଦିବ୍ୟକାମିନୀ ଯଦି ପୁତ୍ର କାମନାରେ ତୁମ୍ଭଠାରେ ନିର୍ଜନରେ ଉପଗତ ହୁଏ, ତେବେ ତୁମ୍ଭେ ତାହାକୁ ପଚାରିବ ନାହିଁ ଯେ ସେ କିଏ ଓ କାହାର ଅଙ୍ଗନା । ପୁନଶ୍ଚ ସେହି କାମିନୀ ଯେଉଁ କର୍ମ କରିବେ, ତାହାର କାରଣ ପ୍ରଭୃତି ତାହାଙ୍କୁ ପଚାରିବ ନାହିଁ । ହେ ଅନଘ ! ଆମ୍ଭେ ତୁମ୍ଭଙ୍କୁ ଏହି ଆଦେଶ କରୁଅଛୁଁ । ଏହି ଆଦେଶାନୁସାରେ ସେହି ଯୁବତୀ ତୁମକୁ ଭଜନା କଲେ ତୁମ୍ଭେ ତାହାଙ୍କୁ ଭଜିବ । ୨୨ ।

ବୈଶମ୍ପାୟନ ବୋଇଲେ, ପ୍ରତୀପ ରାଜା ତାହାଙ୍କର ପୁତ୍ର ଶାନ୍ତନୁଙ୍କୁ ଏହି ରୂପ ଆଦେଶ କରି ଓ ତାହାଙ୍କୁ ରାଜ୍ୟରେ ଅଭିଷିକ୍ତ କରି ବନ ପ୍ରବେଶ କଲେ । ୨୩ । ଦେବରାଜ ସମ ଦ୍ୟୁତି, ଧୀମାନ୍, ଧରଣୀପତି ଶାନ୍ତନୁ ସତତ ବନଗାମୀ ହୋଇ ମୃଗୟା କରନ୍ତି । ୨୪ । ମହାରାଜ ! ଦିନେ ସେହି ରାଜା ଶାନ୍ତନୁ ମୃଗ ଓ ମହିଷମାନଙ୍କୁ ବଧ କରି ସିଦ୍ଧଚାରଣ-ସେବିତ ଗଙ୍ଗାନଦୀ ସମୀପରେ ଏକାକୀ ବିଚରଣ କରୁଥିଲେ । ଏମନ୍ତ ସମୟରେ ସାକ୍ଷାତ୍ ଲକ୍ଷ୍ମୀଙ୍କ ପ୍ରାୟ କାନ୍ତିମତୀ, ଅନବଦ୍ୟାଙ୍ଗୀ, ସୁଦତୀ, ଦିବ୍ୟାଭରଣଭୂଷିତା, ପଦ୍ମୋଦର ସଦୃଶ ପ୍ରଭାଶାଳିନୀ ଓ ସୂକ୍ଷ୍ମାମ୍ବରଧାରିଣୀ ଗୋଟିଏ କାମିନୀଙ୍କୁ ଦେଖିଲେ । ସେହି ରୂପସମ୍ପଦ ଦେଖି ନରାଧିପ ବିସ୍ମିତ ଓ ପୁଲକିତ ହେଲେ; ନେତ୍ର ଦ୍ୱାରା ସେ ରୂପକୁ ପାନ କଲାପ୍ରାୟ ହୋଇ ତୃପ୍ତ ହେଲେ ନାହିଁ । ୨୮ । ସେହି ବିଳାସିନୀ ରମଣୀ ମଧ୍ୟ ମହାଦ୍ୟୁତି ରାଜାଙ୍କୁ ବିଚରଣ କରୁଥିବାର ଦେଖି ସ୍ନେହ ଓ ସୌହାର୍ଦ୍ଦ୍ୟରେ ପରିପୂରିତ ହୋଇ ତାହାଙ୍କ ଦର୍ଶନରେ ତୃପ୍ତି ଲାଭ କଲେ ନାହିଁ । ୨୯ । ରାଜା ତାହାଙ୍କୁ ମଧୁର ବାକ୍ୟଦ୍ୱାରା ସାନ୍ତ୍ୱନା ଦେଇ ବୋଇଲେ, ହେ ଶୋଭନେ ! ସୁମଧ୍ୟମେ ! ସୁରସଦୃଶ କାନ୍ତିମତି ! ତୁମ୍ଭେ ଦେବସ୍ତ୍ରୀ ହୁଅ ଅଥବା ଦାନବୀ କି ଗନ୍ଧର୍ବୀ ବା ଅପ୍ସରୀ କି ଯକ୍ଷୀ କି ନାଗନାରୀ ବା ମାନବୀ ଯେ ହୁଅ, ଆମ୍ଭେ ତୁମ୍ଭଙ୍କୁ ଏହି ପ୍ରାର୍ଥନା କରୁଅଛୁ ଯେ ତୁମ୍ଭେ ଆମ୍ଭର ଭାର୍ଯ୍ୟା ହୁଅ । ୩୧ ।

---

## ଅଧ୍ୟାୟ—୯୮

ବୈଶମ୍ପାୟନ ବୋଇଲେ—ସେହି ରୂପବତୀ କାମିନୀ ରାଜାଙ୍କର ସସ୍ମିତ ମୃଦୁ ଓ ମଧୁର ବାକ୍ୟ ସ୍ମରଣ କରି ଓ ବସୁ ନାମକ ଗଣଦେବତାଙ୍କ ସହିତ ନିରୂପଣ ସ୍ମରଣ କରିବା ପୂର୍ବକ ବଚନଦ୍ୱାରା ରାଜାଙ୍କର ମନ ଆହ୍ଲାଦିତ କରି ବୋଇଲେ, ହେ ମହୀପାଳ ! ଆମ୍ଭେ ତୁମ୍ଭର ବଶବର୍ତ୍ତିନୀ ମହିଷୀ ହେବୁ । ଆମ୍ଭେ ଶୁଭ ବା ଅଶୁଭ ଯାହା କରିବୁ, ତୁମ୍ଭେ ଆମ୍ଭଙ୍କୁ ବାରଣ କରିବ ନାହିଁ କି ଆମ୍ଭର ଅପ୍ରିୟ କଥା କହିବ ନାହିଁ । ହେ ପାର୍ଥିବ ! ଯଦି ଏପରି ହେବ, ତେବେ ଆମ୍ଭେ ତୁମ୍ଭ ନିକଟରେ ରହିବୁ । ଯଦି ତୁମ୍ଭେ ଆମ୍ଭଙ୍କୁ ବାରଣ କରିବ କି ବିପ୍ରିୟ କଥା କହିବ, ତେବେ ଆମ୍ଭେ ତୁମ୍ଭଙ୍କୁ

ନିଶ୍ଚୟ ପରିତ୍ୟାଗ କରିବୁ । ୪ । ହେ ଭରତସତ୍ତମ ! ରାଜା ତାହାଙ୍କୁ 'ତଥା' ବୋଲି କହିଲେ । ତହୁଁ ସେ ନାରୀ ପାର୍ଥିବୋତ୍ତମଙ୍କୁ ଲାଭ କରି ଅତୁଳ ପ୍ରହର୍ଷ ଲାଭ କଲେ । ୫ ।

ଭୂପତି ଶାନ୍ତନୁ ମଧ୍ୟ ତାହାଙ୍କୁ ଲାଭ କରି ତାହାଙ୍କର ବଶବର୍ତ୍ତୀ ହୋଇ ଅଭିଳାଷାନୁସାରେ ସମ୍ଭୋଗ କଲେ ଓ ତାହାଙ୍କୁ କୌଣସି ବିଷୟ ଅନୁଚିତ ଜାଣି କିଛିମାତ୍ର ପଚାରିଲେ ନାହିଁ । ୬ । ସେହି ଜଗତୀ-ପତି ମହୀକ୍ଷିତଙ୍କର ଶୀଳତା, ସଦ୍‌ବ୍ୟବହାର, ସୌନ୍ଦର୍ଯ୍ୟ ଓ ଔଦାର୍ଯ୍ୟ ଗୁଣରେ ଓ ନିର୍ଜନରେ ଉପଚାର ଦ୍ୱାରା ପରିତୁଷ୍ଟ ହେଲେ । ୭ । ଦିବ୍ୟରୂପା, ବର-ବର୍ଣ୍ଣିନୀ, ତ୍ରିପଥଗାମିନୀ ଗଙ୍ଗାଦେବୀ ମନୁଷ୍ୟବିଗ୍ରହକୁ ଧାରଣ କରି, ଦେବରାଜଙ୍କ ତୁଲ୍ୟ ଦ୍ୟୁତିସମ୍ପନ୍ନ, ରାଜସିଂହ ଶାନ୍ତନୁଙ୍କର ସୌଭାଗ୍ୟ କ୍ରମେ ତାହାଙ୍କର ମନୋରଥ ସିଦ୍ଧି କରି, ତାହାଙ୍କର ପ୍ରଣୟିନୀ ଭାର୍ଯ୍ୟା ହେଲେ । ୯ । ସମ୍ଭୋଗ, ସ୍ନେହ, ଚାତୁର୍ଯ୍ୟ, ସୁକୁମାର ନୃତ୍ୟ ଓ ମନୋହର ହାବ ଭାବ ଦ୍ୱାରା ରାଜ୍ଞୀ ରାଜାଙ୍କର ମନୋରଞ୍ଜନ କଲେ । ୧୦ । ସେହି ରାଜା ଉତ୍ତମ ସ୍ତ୍ରୀ ଗୁଣରେ ବଶୀଭୂତ ଓ କ୍ରୀଡ଼ାରେ ଆସକ୍ତ ହୋଇ ବହୁ ସଂଖ୍ୟା ମାସ, ଋତୁ ଓ ବତ୍ସର ଗତ ହେବାର ବୋଧ କରି ପାରିଲେ ନାହିଁ । ୧୧ ।

ନରେଶ୍ୱର ତାହାଙ୍କ ସହିତ କ୍ରୀଡ଼ା କରୁ କରୁ ଅମରସନ୍ନିଭ ଅଷ୍ଟପୁତ୍ରଙ୍କୁ ତାହାଙ୍କ ଠାରେ ଜାତ କଲେ । ୧୨ । ହେ ଭାରତ ! ଗୋଟିଏ ପୁତ୍ର ଜନ୍ମ ହେଲାକ୍ଷଣି ସେଟିକୁ ଜଳରେ ନିକ୍ଷେପ କରନ୍ତି ଓ ତୁମ୍ଭଙ୍କୁ ପ୍ରୀତ କରୁଅଛି ବୋଲି କହି ସ୍ରୋତରେ ନିମଗ୍ନ କରି ଦିଅନ୍ତି । ୧୩ । ଏହି କାର୍ଯ୍ୟ ଶାନ୍ତନୁଙ୍କର ଅପ୍ରିୟ ହେଲେ ହେଁ ତ୍ୟାଗଭୟରେ ମହୀପତି ଶାନ୍ତନୁ ତାହାଙ୍କୁ କିଛି ମାତ୍ର କହିଲେ ନାହିଁ । ୧୪ । ଅନନ୍ତର ଅଷ୍ଟମ ପୁତ୍ର ଜନ୍ମ ଗ୍ରହଣ କଲାରୁ ଗଙ୍ଗା ହାସ୍ୟ କରୁଅଛନ୍ତି, ଏମନ୍ତ ସମୟରେ ରାଜା ଦୁଃଖାର୍ତ୍ତ ହୋଇ ସ୍ୱୀୟ ପୁତ୍ରଟିକୁ ରକ୍ଷା କରିବାର ଇଚ୍ଛାରେ ବୋଇଲେ (୧୫), ହତ୍ୟା କରନା ତୁମ୍ଭେ କିଏ ? କାହାର କନ୍ୟା ? କି ନିମିତ୍ତ ସୁତମାନଙ୍କୁ ହତ କରୁଅଛ ? ରେ ପୁତ୍ରଘାତିନୀ ! ତୁମ୍ଭେ ଏହି ସୁମହତ୍ ଓ ଗର୍ହିତ ପାପ କରୁଅଛ ।୧୬।

ସ୍ତ୍ରୀ ବୋଇଲେ, ହେ ପୁତ୍ରକାମ ! ପୁତ୍ରବାନଙ୍କ ଶ୍ରେଷ୍ଠ ! ତୁମ୍ଭର ପୁତ୍ରକୁ ଆମ୍ଭେ ବଧ କରିବୁ ନାହିଁ । ଯେପରି ପ୍ରତିଜ୍ଞା ଥିଲା, ତଦନୁସାରେ ତୁମ୍ଭ ନିକଟରେ ଆମ୍ଭର ବାସକାଳ ସମାପ୍ତ ହେଲା । ୧୭ । ଆମ୍ଭେ ମହର୍ଷି-ଗଣସେବିତା ଜହ୍ନୁ ଋଷିଙ୍କ କନ୍ୟା ଗଙ୍ଗା, ଦେବତାଙ୍କ କାର୍ଯ୍ୟ ସିଦ୍ଧି କରିବା

ନିମିତ୍ତ ଆମ୍ଭେ ତୁମ୍ଭ ସହିତ ବାସ କରିଥିଲୁ । ୧୮ । ଏହି ଆଠଜଣ ଅଷ୍ଟବସୁ; ଏମାନେ ମହାତେଜା ଓ ମହା ଐଶ୍ୱର୍ଯ୍ୟଶାଳୀ; ବଶିଷ୍ଠଙ୍କ ଅଭିଶାପରୁ ଏମାନେ ମନୁଷ୍ୟ ହୋଇ ଜନ୍ମ ହୋଇଥିଲେ । ତୁମ୍ଭ ବ୍ୟତିରେକେ ପୃଥିବୀରେ ସେମାନଙ୍କର ଜନୟିତାର ଯୋଗ୍ୟ କେହି ନାହାଁନ୍ତି ଓ ଆମ୍ଭ ବ୍ୟତୀତ ମନୁଷ୍ୟ ଲୋକରେ ସେମାନଙ୍କର କେହି ଯୋଗ୍ୟା ଗର୍ଭଧାରିଣୀ ନାହାଁନ୍ତି ।୨୦। ସେହିମାନଙ୍କର ଜନନୀ ହେବା ନିମିତ୍ତ ଆମ୍ଭେ ମନୁଷ୍ୟ କଳେବର ଧରିଅଛୁ । ତୁମ୍ଭେ ଅଷ୍ଟବସୁଙ୍କୁ ଜନ୍ମ ଦେଇ ଅକ୍ଷୟ ଲୋକମାନଙ୍କୁ ଅର୍ଜ୍ଜନ କଲ । ୨୧ ।

ଆମ୍ଭେ ବସୁଦେବଗଣଙ୍କ ସହିତ ଏହି ପ୍ରତିଜ୍ଞା କରିଥିଲୁ ଯେ ସେମାନେ ଜାତ ହେବା ମାତ୍ର ମନୁଷ୍ୟ ଜନ୍ମରୁ ସେମାନଙ୍କୁ ଉଦ୍ଧାର କରିବୁ । ୨୨ । ତନ୍ନିମିତ୍ତ ଆମ୍ଭେ ସେମାନଙ୍କୁ ଆପବ ଋଷିଙ୍କ ଅଭିଶାପରୁ ମୁକ୍ତ କଲୁ । ଏବେ ତୁମ୍ଭେ ଏହି ମହାବ୍ରତ ପୁତ୍ରଙ୍କୁ ପାଳନ କର । ତୁମ୍ଭର ମଙ୍ଗଳ ହେଉ, ଆମ୍ଭେ ଗଲୁ । ୨୩ । ଆମ୍ଭେ ବସୁଗଣଙ୍କଠାରେ ତୁମ୍ଭ ନିମିତ୍ତ ଏହି ସୁତଙ୍କୁ ପ୍ରାର୍ଥନା କରି ସେମାନଙ୍କର ପ୍ରତ୍ୟେକଙ୍କର ଅଷ୍ଟମାଂଶରେ ଏହି ପୁତ୍ରକୁ ଜନ୍ମ କରିଅଛୁ । ଏହି ପୁତ୍ରକୁ ଗଙ୍ଗା-ଦତ୍ତ ବୋଲି ଜାଣ ।୨୪।

---

## ଅଧ୍ୟାୟ—୯୯

ଶାନ୍ତନୁ ବୋଇଲେ—ଯାହାଙ୍କ ଅଭିଶାପରୁ ସମସ୍ତେ ମାନବଯୋନି ପ୍ରାପ୍ତ ହୋଇଥିଲେ, ସେହି ଆପବ କିଏ ? ବସୁଗଣଙ୍କର କି ଅପରାଧ ? ଓ ଏହି ଗଙ୍ଗା-ଦତ୍ତ କୁମାର କି କର୍ମ କରିଅଛନ୍ତି, ଯେଉଁ କର୍ମଫଳରେ କି ସେ ମନୁଷ୍ୟଲୋକରେ ବାସ କରିବେ ? ହେ ଜାହ୍ନବି ! ସର୍ବଲୋକରେ ଈଶ୍ୱର । ସେମାନେ କି ନିମିତ୍ତ ମର୍ତ୍ତ୍ୟଲୋକରେ ଉତ୍ପନ୍ନ ହେଲେ, ତାହା ଆମ୍ଭଙ୍କୁ କହ । ୩ ।

ବୈଶମ୍ପାୟନ ବୋଇଲେ, ଜାହ୍ନବୀ ଦେବୀ ଗଙ୍ଗା ତାହା ଶ୍ରବଣ କରି ପୁରୁଷଶ୍ରେଷ୍ଠ ଓ ଭର୍ତ୍ତା, ରାଜ ଶାନ୍ତନୁଙ୍କୁ ବୋଇଲେ, ହେ ଭରତସତ୍ତମ ! ପୂର୍ବକାଳରେ ବରୁଣଦେବ ଯାହାଙ୍କୁ ପୁତ୍ରଲାଭ କରିଥିଲେ, ସେହି

ବଶିଷ୍ଠନାମା ମୁନି ଆପବ ନାମରେ ବିଖ୍ୟାତ ହେଲେ । ୫ । ପର୍ବତଶ୍ରେଷ୍ଠ ସୁମେରୁ ପାର୍ଶ୍ୱରେ ତାହାଙ୍କର ଆଶ୍ରମ ଥିଲା, ଯେଉଁ ଆଶ୍ରମ ନାନାବିଧ ମୃଗ ଓ ପକ୍ଷିମାନଙ୍କଦ୍ୱାରା ଆକୁଳିତ ଓ ସର୍ବର୍ତ୍ତୁ କୁସୁମ ସମୂହରେ ସମାବୃତ ହୋଇଥାଏ । ୬ । ହେ ଭାରତସତ୍ତମ ! ପୁଣ୍ୟବାନଙ୍କ ଶ୍ରେଷ୍ଠ ସେହି ବରୁଣତନୟ ସୁସ୍ୱାଦୁ ଫଳ ମୂଳ ଓ ଜଳଯୁକ୍ତ ସେହି ଆଶ୍ରମାରଣ୍ୟରେ ତପସ୍ୟା କରୁଥିଲେ । ୭ । ହେ ଭରତର୍ଷଭ ! ଦକ୍ଷଙ୍କର ସୁରଭି ନାମ୍ନୀ ଯେଉଁ ଦୁହିତା ଥିଲେ, ସେହି ଦେବୀ କାଶ୍ୟପଙ୍କ ଔରସରୁ ଗୋଟିଏ ଧେନୁ ପ୍ରସବ କଲେ । ୮ । ଜଗତର ମଙ୍ଗଳ ନିମିତ୍ତ, ସର୍ବକାମପ୍ରଦାୟିନୀ ସେହି ଉତ୍କୃଷ୍ଟ ହୋମଧେନୁକୁ ଧର୍ମାତ୍ମା ବରୁଣଙ୍କ ପୁତ୍ର ଗ୍ରହଣ କଲେ । ୯ । ମୁନି-ସେବିତ ସେହି ପବିତ୍ର ଓ ରମଣୀୟ ତପସ୍ୟାରଣ୍ୟରେ ସେ ଗାଭୀ ନିର୍ଭୟ ଚିତ୍ତରେ ଭ୍ରମଣ କରୁଥାନ୍ତି । ୧୦ ।

ଅନନ୍ତର ହେ ଭରତର୍ଷଭ ! ଏକଦା ପୃଥୁ ଆଦି ବସୁଦେବଗଣ ଦେବ ଓ ଦେବର୍ଷିସେବିତ ସେହି ବନକୁ ଆଗମନ କଲେ । ସେମାନେ ସଦାର ହୋଇ ସେହି ରମଣୀୟ ବନରେ ଓ ପର୍ବତର ଚତୁର୍ଦ୍ଦିଗରେ ଭ୍ରମଣ କରି ବିହାର କଲେ । ୧୨ । ହେ ବାସବ-ବିକ୍ରମ * ! ସେଠାରେ ଗୋଟିଏ ବସୁଙ୍କର ଭାର୍ଯ୍ୟା ସଞ୍ଚରଣ କରୁଁ କରୁଁ ସେହି ଗାଭୀକୁ ଦେଖିଲେ । ହେ ରାଜେନ୍ଦ୍ର ! ସର୍ବ-କାମ-ପ୍ରଦା, ଅତି ଉତ୍ତମା, ନନ୍ଦିନୀ ନାମ୍ନୀ ଧେନୁକୁ ସେହି ସୁଶୀଳା ଓ ସୁମଧ୍ୟମା ଅବଲୋକନ କରି ବିସ୍ମୟାବିଷ୍ଟ ହୋଇ ନିଜ ପତି ଦ୍ୟୁନାମକ ବସୁଙ୍କୁ ଦେଖାଇଦେଲେ । ସେ ନନ୍ଦିନୀ ଧେନୁ ଈଷତ୍ ପୀନା †, ଉତ୍ତମ ଦୁଗ୍ଧବତୀ, ସୁଲକ୍ଷଣା, ତାହାଙ୍କ ପୁଚ୍ଛ ଓ ଖୁରମାନ ସୁନ୍ଦର ଓ ତାହାଙ୍କର ନୟନ ଗବୟର ନୟନ ତୁଲ୍ୟ ମନୋହର । ୧୭ । ହେ ଗଜେନ୍ଦ୍ର ବିକ୍ରମ ରାଜନ୍ ! ଦ୍ୟୁନାମକ ବସୁ ସେହି ଗାଭୀଙ୍କୁ ଦେଖି ଆପଣାର ପ୍ରଣୟିନୀ ଦେବୀଙ୍କଠାରେ ତାହାର ରୂପ ଓ ଗୁଣ ବର୍ଣ୍ଣନା କରି ବୋଇଲେ, ହେ ବରାରୋହେ ! ଯେଉଁ ବରୁଣପୁତ୍ର ଋଷିଙ୍କର ଏହି ଉତ୍ତମ ତପୋବନ, ଅସିତେକ୍ଷଣା, ଦେବରୂପିଣୀ ଏହି ଧେନୁ ମଧ୍ୟ ତାହାଙ୍କର । ୧୮ । ହେ ସୁମଧ୍ୟମେ ! ଯେଉଁ ମନୁଷ୍ୟ ଏହାର କ୍ଷୀର ପାନ କରିବ, ସେ ସ୍ଥିର-ଯୌବନ ହୋଇ ଦଶସହସ୍ର ବର୍ଷ ଜୀବିତ ରହିବ । ୧୯ ।

---

* ଇନ୍ଦ୍ରଙ୍କ ତୁଲ୍ୟ ଯାହାଙ୍କ ପରାକ୍ରମ, ସେ ବାସବବିକ୍ରମ ।

† ପୀନା—ସ୍ଥୂଳା ।

ହେ ନୃପୋତ୍ତମ ! ସୁମଧ୍ୟମା ଓ ସୁନ୍ଦରୀ ସେହି ଦେବୀ ଏହା ଶ୍ରବଣ କରି ଦୀପ୍ତତେଜା ଭର୍ତ୍ତାଙ୍କୁ କହିଲେ, ମର୍ତ୍ତ୍ୟଲୋକରେ ରୂପଯୌବନସମ୍ପନ୍ନା ନରଦେବଙ୍କ ଔରସରୁ ଜାତା ଜିତବତୀ ନାମ୍ନୀ ଆମ୍ଭର ସଖୀ ଅଛନ୍ତି । ୨୧ । ସେହି ରୂପ ସମ୍ପତ୍ତିଶାଳିନୀ ସଖୀ, ଧୀମାନ୍ ସତ୍ୟସନ୍ଧ ରାଜର୍ଷି ଉଶୀନରଙ୍କର ଦୁହିତା ବୋଲି ମନୁଷ୍ୟଲୋକରେ ବିଖ୍ୟାତ ଅଛନ୍ତି ।୨୨। ହେ ମହାଭାଗ ! ତାହାଙ୍କ ନିମିତ୍ତ ସବତ୍ସା ଏହି ଧେନୁକୁ ନେବା କାରଣ ଆମ୍ଭର ଅଭିଳାଷ ହେଉଅଛି । ହେ ପୁଣ୍ୟବର୍ଦ୍ଧନ, ଅମରଶ୍ରେଷ୍ଠ ! ଶୀଘ୍ର ସେହି ଧେନୁକୁ ଆହରଣ କର । ୨୩ । ହେ ମାନବ ! ଆମ୍ଭର ସେହି ସଖୀ କେବଳ ଏହି ଧେନୁର ଦୁଗ୍ଧପାନ କରି, ମର୍ତ୍ତ୍ୟଲୋକରେ ଜରା-ରହିତ ଓ ରୋଗବିହୀନ ହେବେ । ୨୪ । ହେ ଅନିନ୍ଦିତ ମହାଭାଗ ! ଆମ୍ଭର ଏହି ପ୍ରିୟକର୍ମ ତୁମ୍ଭର କର୍ତ୍ତବ୍ୟ ହୋଇଅଛି; ଏହା ଅପେକ୍ଷା ଆମ୍ଭର ପ୍ରିୟତର ଆଉ କିଛି ନାହିଁ । ୨୫ । ଦ୍ୟୁନାମକ ବସୁ ଏହି କଥା ଶ୍ରବଣ କରି ପ୍ରଣୟିନୀ ଦେବୀଙ୍କର ପ୍ରିୟାନୁଷ୍ଠାନ କରିବା ନିମିତ୍ତ ପୃଥୁ ପ୍ରଭୃତି ଭ୍ରାତୃଗଣଙ୍କ ସହିତ ସେହି କାମ-ଧେନୁକୁ ହରଣ କଲେ । ୨୬ । ହେ ନୃପ ! ଦ୍ୟୁ କମଳପତ୍ରାକ୍ଷୀ ଭାର୍ଯ୍ୟାଙ୍କ କର୍ତ୍ତୃକ ନିୟୋଜିତ ହୋଇ ବଶିଷ୍ଠ ଋଷିଙ୍କର ତୀବ୍ର ତପସ୍ୟା ନିରୀକ୍ଷଣ କରି ପାରିଲେ ନାହିଁ; ଧେନୁକୁ ହରଣ କଲେ, କିନ୍ତୁ ନିଜର ପତନ ହେବା ତର୍କି ପାରିଲେ ନାହିଁ । ୨୮ ।

ଏଥି ଉତ୍ତାରୁ ସେହି ବାରୁଣୀ ଋଷି ଫଳମାନଙ୍କୁ ନେଇ ଆଶ୍ରମ-ପଦରେ ଉପସ୍ଥିତ ହେଲେ; କିନ୍ତୁ ସେହି ଉତ୍ତମ କାନନରେ ବତ୍ସ କିମ୍ବା ଧେନୁ କାହାରିକୁ ଦେଖିଲେ ନାହିଁ । ୨୯ । ତଦନନ୍ତର ସେହି ତପୋଧନ ବନରେ ଅନ୍ୱେଷଣ କଲେ; କିନ୍ତୁ ସେହି ଉଦାରବୁଦ୍ଧି ମୁନି ଅନ୍ୱେଷଣ କରି ଧେନୁକୁ ପ୍ରାପ୍ତ ହେଲେ ନାହିଁ । ୩୦ । ଦିବ୍ୟ-ଦର୍ଶନ ଋଷି ଧ୍ୟାନରେ ଜାଣିଲେ ଯେ ବସୁମାନଙ୍କ ଦ୍ୱାରା ସେହି ଧେନୁ ଅପହୃତା ହୋଇଅଛି । ତତ୍କ୍ଷଣାତ୍ ସେ କ୍ରୋଧବଶ ହୋଇ ବସୁଗଣଙ୍କୁ ଶାପ ଦେଲେ । ୩୧ । "ଯେ ହେତୁରୁ ବସୁଗଣ ଆମ୍ଭର ସୁନ୍ଦରପୁଚ୍ଛ, ଦୋଗ୍ଧ୍ରୀ * ଗାଭୀକୁ ହରଣ କଲେ, ସେହି ହେତୁରୁ ସେମାନେ ମନୁଷ୍ୟଲୋକରେ ଜନ୍ମିବେ, ଏଥିରେ ସଂଶୟ ନାହିଁ" । ୩୨ । ହେ ଭରତର୍ଷଭ । ଏହି ପ୍ରକାରେ ମୁନିସତ୍ତମ ଭଗବାନ ଆପବ କ୍ରୋଧର ବଶକୁ ସମ୍ପ୍ରାପ୍ତ ହୋଇ ସେହି ବସୁ-ଗଣଙ୍କୁ ଶାପ ପ୍ରଦାନ କଲେ । ୩୩ ।

* ଦୋଗ୍ଧ୍ରୀ—ଦୁହାଁଳି ।

ଅନନ୍ତର ହେ ରାଜନ୍ ! ସେହି ମହାଭାଗ, ମହାପ୍ରଭାବ ବ୍ରହ୍ମର୍ଷି କ୍ରୋଧସମନ୍ୱିତ ହୋଇ ଅଷ୍ଟବସୁଙ୍କୁ ଅଭିଶାପ ପ୍ରଦାନ କଲେ । ଏଥି ଉତ୍ତାରୁ ହେ ପାର୍ଥିବଶ୍ରେଷ୍ଠ ! ବସୁଗଣ ଜାଣି ପାରିଲେ ଯେ ସେମାନେ ଋଷିଙ୍କଦ୍ୱାରା ଅଭିଶପ୍ତ ହୋଇଅଛନ୍ତି; ତହୁଁ ସେମାନେ ଋଷିଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ସେହି ଆଶ୍ରମ-ପଦକୁ ପୁନଃ ପ୍ରାପ୍ତ ହେଲେ । ୩୬ । ହେ ପୁରୁଷବ୍ୟାଘ୍ର ! ସର୍ବଧର୍ମବିଶାରଦ ସେହି ଋଷିସତ୍ତମ ଆପବଙ୍କଠାରୁ ସେମାନେ ପ୍ରସାଦ ଲାଭ କଲେ ନାହିଁ । ୩୭ । ସେହି ଧର୍ମାତ୍ମା ବୋଇଲେ, ତୁମ୍ଭେମାନେ ଶପ୍ତ ହୋଇଅଛ; ଏକ ସମ୍ବତ୍ସର ମଧ୍ୟରେ ତୁମ୍ଭେ ସମସ୍ତେ ଶାପମୁକ୍ତ ଲାଭ କରିବ । ଯେଉଁ ଦ୍ୟୁ ନିମିତ୍ତ ତୁମ୍ଭେମାନେ ସମସ୍ତେ ଶପ୍ତ ହେଲ, ସେହି କେବଳ ନିଜ କର୍ମଦୋଷରୁ ଦୀର୍ଘକାଳ ମର୍ତ୍ତ୍ୟଲୋକରେ ବାସ କରିବେ ।୩୯। ଆମ୍ଭେ କ୍ରୁଦ୍ଧ ହୋଇ ଯାହା ବୋଲିଅଛୁ ତାହା ମିଥ୍ୟା କରିବାକୁ ଇଚ୍ଛା କରୁ-ନାହୁଁ । ଏହି ମହାମନା ମନୁଷ୍ୟଲୋକରେ ସନ୍ତତି ଉତ୍ପନ୍ନ କରିବେ ନାହିଁ । ୪୦ । ସେହି ଧର୍ମାତ୍ମା ସର୍ବଶାସ୍ତ୍ରବିଶାରଦ ହେବେ; ପିତାଙ୍କର ପ୍ରିୟ ଓ ହିତରେ ନିଯୁକ୍ତ ହୋଇ ସ୍ତ୍ରୀସମ୍ଭୋଗକୁ ବର୍ଜିତ କରିବେ । ୪୧ । ଏହି ପ୍ରକାରେ ସେ ମହାନ୍ ଋଷି ସମସ୍ତ ବସୁଙ୍କୁ କହି ପ୍ରସ୍ଥାନ କଲେ ।

ତଦନନ୍ତର ବସୁଗଣ ଏକତ୍ର ହୋଇ ଆମ୍ଭ ସମୀପକୁ ଆଗମନ କଲେ । ୪୨ । ହେ ରାଜନ୍ ! ସେମାନେ ଆସି ଆମ୍ଭଙ୍କୁ ପ୍ରାର୍ଥନା କଲେ, ହେ ଗଙ୍ଗେ ! ଆମ୍ଭେମାନେ ଜନ୍ମଗ୍ରହଣ କରିବା ମାତ୍ର ତୁମ୍ଭେ ସ୍ୱୟଂ ଆମ୍ଭଙ୍କୁ ଜଳରେ ନିକ୍ଷେପ କରିବ । ଆମ୍ଭେ ମଧ୍ୟ ତାହାଙ୍କୁ ସେହି ବର ଦେଲୁ ।୪୩। ହେ ରାଜସତ୍ତମ ! ଶାପଗ୍ରସ୍ତ ବସୁଗଣଙ୍କୁ ମର୍ତ୍ତ୍ୟଲୋକରୁ ଉଦ୍ଧାର କରିବା ନିମିତ୍ତ ଆମ୍ଭେ ତଦ୍ରୂପ କରିଅଛୁ । ହେ ନୃପସତ୍ତମ ଭାରତ ! ଏହି ଦ୍ୟୁ ଏକାକୀ ସେହି ଋଷିଙ୍କ ଅଭିଶାପରୁ ମନୁଷ୍ୟଲୋକରେ ବହୁକାଳ ବାସ କରିବେ । ୪୫ ।

ବୈଶମ୍ପାୟନ ବୋଇଲେ, ଗଙ୍ଗାଦେବୀ ଏହା କହି ସେହି ସ୍ଥାନରେ ଅନ୍ତର୍ହିତା ହେଲେ ଓ ସେହି କୁମାରଙ୍କୁ ମଧ୍ୟ ସାଙ୍ଗରେ ନେଇଗଲେ । ୪୬ । ସେହି ଦ୍ୟୁ ନାମକ ବସୁ ଶାନ୍ତନୁଙ୍କ ଅପେକ୍ଷା ଗୁଣରେ ଅଧିକ । ଶାନ୍ତନୁଙ୍କର ସେହି ପୁତ୍ରଙ୍କର ଦୁଇଗୋଟି ନାମ ଖ୍ୟାତ ହେଲା, ଦେବବ୍ରତ ଗୋଟିଏ, ଆଉ ଗୋଟିଏ ନାମ ଗାଙ୍ଗେୟ । ୪୭ । ତଦନନ୍ତର ଶାନ୍ତନୁ ମଧ୍ୟ ଶୋକାର୍ତ୍ତ ହୋଇ ସ୍ୱପୁରକୁ ଗମନ କଲେ । ଆମ୍ଭେ ସେହି ଶାନ୍ତନୁଙ୍କର ମହତ୍ ଗୁଣ-ମାନଙ୍କୁ କୀର୍ତ୍ତନ କରିବୁ । ମହାତ୍ମା ନୃପତି ଭରତଙ୍କର ମହାଭାଗ୍ୟ ମଧ୍ୟ

ବର୍ଣ୍ଣନ କରିବୁ, ଯେଉଁ ଭରତଙ୍କର ଦ୍ୟୁତିସମ୍ପନ୍ନ ଇତିହାସକୁ ମହାଭାରତ ବୋଲିଯାଏ । ୪୯ ।

---

## ଅଧ୍ୟାୟ—୧୦୦

ବୈଶମ୍ପାୟନ ବୋଇଲେ—ସେହି ବୁଦ୍ଧିମାନ୍ ରାଜା ଶାନ୍ତନୁ ଦେବର୍ଷି ଓ ରାଜର୍ଷିଙ୍କର ମାନନୀୟ ଥିଲେ ଓ ସେହି ଧର୍ମାତ୍ମା ସର୍ବଲୋକରେ ସତ୍ୟବାଦୀ ବୋଲି ବିଖ୍ୟାତ ଥିଲେ । ମହାବଳ ପୁରୁଷର୍ଷଭ ଶାନ୍ତନୁଙ୍କଠାରେ ଦମ, ଦାନ, କ୍ଷମା, ବୁଦ୍ଧି, ଲଜ୍ଜା, ଧୃତି ଓ ଉତ୍ତମ ତେଜ ସର୍ବଦା ବିଦ୍ୟମାନ ଥାଏ । ୨ । ଏ ପ୍ରକାର ଗୁଣ-ସମ୍ପନ୍ନ ଓ ଧର୍ମାର୍ଥ କୁଶଳ ନୃପ ଭରତବଂଶର ଓ ସର୍ବଜନମାନଙ୍କର ରକ୍ଷାକର୍ତ୍ତା ଥିଲେ । ୩ । ତାହାଙ୍କର ଗ୍ରୀବା କମ୍ବୁ-ପ୍ରାୟ, ସ୍କନ୍ଧ ପୃଥୁଳ, ବିକ୍ରମ ମତ୍ତ-ମାତଙ୍ଗ ସଦୃଶ ଓ ସେ ସର୍ବପ୍ରକାର ନୃପତିଲକ୍ଷଣସମୂହରେ ସମନ୍ୱିତ ଥିଲେ । ୪ । ସେହି କୀର୍ତ୍ତିମାନ ବ୍ୟକ୍ତିଙ୍କ ଚରିତ୍ର ଦେଖି ନରମାନେ ସତତ ସ୍ଥିର କଲେ ଯେ କାମ ଓ ଅର୍ଥ ଅପେକ୍ଷା ଧର୍ମ ଶ୍ରେଷ୍ଠ । ୫ । ପୁରୁଷଶ୍ରେଷ୍ଠ ମହାସତ୍ତ୍ୱ ଶାନ୍ତନୁଙ୍କଠାରେ ଏହିସବୁ ଗୁଣ ଥିଲା; ସର୍ବ ଧାର୍ମିକଙ୍କ ଶ୍ରେଷ୍ଠ ସେହି ମହୀପାଳଙ୍କୁ ଧର୍ମପଥରେ ଗମନ କରୁ-ଥିବାର ଦେଖି ଅନ୍ୟ ମହୀପମାନେ ତାହାଙ୍କୁ ରାଜାମାନଙ୍କ ରାଜତ୍ୱରେ ଅଭିଷିକ୍ତ ହେଲେ । ୭ ।

ସେ ଭୂମିପମାନେ ଶାନ୍ତନୁଙ୍କୁ ଭାରତର ରକ୍ଷାକର୍ତ୍ତା ଓ ଅଧିପତି ଜ୍ଞାନ କରି ଶୋକ ଭୟ ଓ ବାଧା ଶୂନ୍ୟ ହୋଇ ସୁଖରେ ଶୟନ କରି ଉତ୍ଥାନ କରୁଥିଲେ । ୮ । ତ୍ରିଦଶନାଥଙ୍କ ସଦୃଶ ସେହି ତେଜସ୍ୱୀ ଓ କୀର୍ତ୍ତିଶାଳୀ ସମ୍ରାଟଙ୍କ ଶାସନାନୁସାରେ ଭୂପତିମାନେ ଯାଗଶୀଳ, ଦାନଶୀଳ ଓ ସତ୍କ୍ରିୟାନ୍ୱିତ ହୋଇଥିଲେ । ୯ । ଶାନ୍ତନୁ ପ୍ରଭୃତି ଭୂପତିମାନେ ପ୍ରଜାଙ୍କୁ ସୁନିୟମରେ ରକ୍ଷା କରିବାରୁ ସବୁ ବର୍ଣ୍ଣମାନଙ୍କର ଧର୍ମବୃଦ୍ଧି ହେଲା । ୧୦ । କ୍ଷତ୍ରିୟମାନେ ବ୍ରାହ୍ମଣସେବାରେ, ବୈଶ୍ୟମାନେ କ୍ଷତ୍ରିୟଙ୍କର ଅନୁରକ୍ତ ଥାଇ ବ୍ରାହ୍ମଣଙ୍କ ପରିଚର୍ଯ୍ୟାରେ ଓ ଶୂଦ୍ରମାନେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ଅନୁରକ୍ତ ଥାଇ ବୈଶ୍ୟଙ୍କ ଶୁଶ୍ରୂଷାରେ ତତ୍ପର ହେଲେ । ୧୧ । ଭୂପାଳ ଶାନ୍ତନୁ କୁରୁବଂଶୀୟ ନୃପତିମାନଙ୍କର ରମଣୀୟ

ରାଜଧାନୀ ହସ୍ତିନପୁରରେ ବାସ କରି ସସାଗରା ବସୁନ୍ଧରା ଶାସନ କଲେ । ୧୨ । ସେହି ଧର୍ମପରାୟଣ, ସତ୍ୟବାଦୀ ଓ ସରଳସ୍ୱଭାବ ନରପତି, ଦାନ, ଧର୍ମ ଓ ତପସ୍ୟାବଳରେ ଦେବରାଜଙ୍କ ସଦୃଶ ପରମ ଲକ୍ଷ୍ମୀସମ୍ପନ୍ନ ହୋଇଥିଲେ । ୧୩ । ସେ ରାଗଦ୍ୱେଷଶୂନ୍ୟ, ଚନ୍ଦ୍ରଙ୍କ ତୁଲ୍ୟ ପ୍ରିୟଦର୍ଶନ, ସୂର୍ଯ୍ୟଙ୍କ ସମାନ ତେଜସ୍ୱୀ, ସମୀରଣ ପ୍ରାୟ ବେଗବାନ୍, ଯମଙ୍କ ସମ କ୍ରୋଧୀ ଓ ପୃଥିବୀଙ୍କ ପ୍ରାୟ କ୍ଷମାଶୀଳ ଥିଲେ । ୧୪ ।

ହେ ରାଜନ୍ ! ଯେତେବେଳେ ଶାନ୍ତନୁ ପୃଥିବୀପାଳକ ଥିଲେ, ସେତେବେଳେ ପଶୁ ବରାହାଦିଙ୍କର ବା ମୃଗ, ପକ୍ଷୀମାନଙ୍କର ବୃଥା ବଧ ହେଉ ନ ଥିଲା । ୧୫ । ବିନୟୀ ଓ ଆତ୍ମାବାନ୍ ରାଜା ଶାନ୍ତନୁ ବେଦୋକ୍ତ ଧର୍ମରେ ରାଜ୍ୟକୁ ଅଳଂକୃତ କରି ସବୁ ପ୍ରାଣିମାନଙ୍କୁ ସମଭାବରେ ଶାସନ କଲେ । ୧୬ । ସେ ସମୟରେ ଦେବଯଜ୍ଞ, ଋଷିଯଜ୍ଞ ଓ ପିତୃଯଜ୍ଞ ନିମିତ୍ତ କ୍ରିୟାମାନ ଅନୁଷ୍ଠିତ ହେଉଥିଲା । ଅଧର୍ମ କରି କୌଣସି ପ୍ରାଣୀର ବଧ ହେଉ ନ ଥିଲା । ସେହି ରାଜା ଦୀନ, ଦୁଃଖୀ, ଅନାଥ ଓ ତିର୍ଯ୍ୟକ୍‌ଯୋନିଗତ ସକଳ ପ୍ରାଣୀଙ୍କର ପିତା ସ୍ୱରୂପ ହୋଇଥିଲେ । ୧୮ । ସେହି କୁରୁକୁଳଶ୍ରେଷ୍ଠ ରାଜରାଜେଶ୍ୱର ହେବାରୁ ତାହାଙ୍କର ବାକ୍ୟ ସତ୍ୟକୁ ଓ ମନ ଧର୍ମକୁ ଆଶ୍ରୟ କଲେ । ୧୯ । ସେ ଷଟ୍‌ତ୍ରିଂଶତ୍ ସମ୍ବତ୍ସର ସ୍ତ୍ରୀସମ୍ଭୋଗାଦି ବିଷୟଭୋଗ କରି ପରିଶେଷରେ ବନଗମନ କଲେ । ୨୦ । ତାହାଙ୍କ ପୁତ୍ର, ଗଙ୍ଗାଙ୍କର ବଂଶସମ୍ଭୂତ ବସୁ, ସୌନ୍ଦର୍ଯ୍ୟ, ଆଚାର, ଚରିତ୍ର ଓ ବିଦ୍ୟା ସକଳ ବିଷୟରେ ତାହାଙ୍କର ସଦୃଶ ହୋଇଥିଲେ । ସେ ପୁତ୍ରଙ୍କର ନାମ ଦେବବ୍ରତ । ୨୧ ।

ସର୍ବାସ୍ତ୍ର-କୁଶଳ ଓ ଭୂପତି ମଧ୍ୟରେ ମହାବଳ, ମହାସତ୍ତ୍ୱ ଓ ମହାବୀର୍ଯ୍ୟ ଓ ମହାରଥ ଶାନ୍ତନୁ ଏକଦା ଗୋଟିଏ ମୃଗକୁ ବିଦ୍ଧ କରି ତାହାର ପଶ୍ଚାତ୍ ଗମନ କରୁ କରୁ ସମୀପବର୍ତ୍ତିନୀ ଭାଗୀରଥୀ ନଦୀକୁ ଅଳ୍ପ-ଜଳା ଦେଖିଲେ । ୨୩ । ସେହି ନଦୀକୁ ପୁରୁଷଶ୍ରେଷ୍ଠ ଶାନ୍ତନୁ ଦେଖି ମନରେ ଭାବିଲେ ଯେ ଏ ନଦୀ କି ନିମିତ୍ତ ପୂର୍ବପରି ଅଦ୍ୟ ପ୍ରବାହିତ ହେଉନାହିଁ । ତଦନନ୍ତର ସେ ମହାମନା କାରଣ ଅନ୍ୱେଷଣ କରି ଦେଖିଲେ ଯେ ଗୋଟିଏ ସୁନ୍ଦର, ବୃହତ୍‌କାୟ ଓ ଇନ୍ଦ୍ରଙ୍କ ସଦୃଶ କୁମାର ତୀକ୍ଷ୍ଣଶରସମୂହ ଦ୍ୱାରା ସମୁଦାୟ ଗଙ୍ଗା ନଦୀକୁ ଆବରଣ କରି ଦିବ୍ୟାସ୍ତ୍ରମାନ ପ୍ରୟୋଗ କରୁଅଛନ୍ତି । ୨୬ । ଗଙ୍ଗାନଦୀକୁ ରାଜା ଶରାବୃତ ଦେଖିଲେ ଓ ଅତିମାନୁଷିକ କାର୍ଯ୍ୟ ହେଉଛୁ ବିସ୍ମୟାପନ୍ନ ହେଲେ । ୨୭ । ଧୀମାନ୍ ଶାନ୍ତନୁ ପୂର୍ବେ ଜାତହେବା ମାତ୍ର ପୁତ୍ରଙ୍କୁ ଦେଖିଥିଲେ, ତେଣୁ ସେ କୁମାର ଯେ ତାହାଙ୍କର

ପୁତ୍ର, ଏହା କୌଣସି ଲକ୍ଷଣ ସ୍ମରଣ ଦ୍ୱାରା ଜାଣି ପାରିଲେ ନାହିଁ । ୨୮ । କୁମାରଟି ପିତାଙ୍କୁ ଦର୍ଶନ କରିବା ମାତ୍ର ମାୟାଦ୍ୱାରା ତାହାଙ୍କୁ ମୋହିତ କଲେ ଓ ତାହାଙ୍କୁ ସମ୍ମୋହିତ କରି ସେହିଠାରେ ଅନ୍ତର୍ହିତ ହେଲେ । ୨୯ । ଅନନ୍ତର ରାଜା ଶାନ୍ତନୁ ସେହି ଅଦ୍ଭୁତକର୍ମ ଦର୍ଶନ କରି ଶଙ୍କାନ୍ୱିତ ହୋଇ ଗଙ୍ଗାଙ୍କୁ ବୋଇଲେ, ତୁମ୍ଭେ ସୁତଙ୍କୁ ଦେଖାଅ । ୩୦ ।

ଗଙ୍ଗା ଉତ୍ତମ ରୂପ ଧାରଣ ପୂର୍ବକ ଦକ୍ଷିଣ ହସ୍ତରେ ସେହି ଅଳଂକୃତ କୁମାରଙ୍କୁ ଗ୍ରହଣ କରି ରାଜାଙ୍କୁ ଦେଖାଇଲେ । ୩୧ । ନିର୍ମଳ ବସନରେ ସମାବୃତା ଓ ନାନା ଭୂଷଣରେ ଅଳଂକୃତା ଗଙ୍ଗାଙ୍କୁ ପୂର୍ବେ ଦେଖିଥିଲେ ହେଁ ସେ ରାଜା ଶାନ୍ତନୁ ତାହାଙ୍କୁ ଚିହ୍ନିବାକୁ ପାରିଲେ ନାହିଁ । ୩୨ ।

ଗଙ୍ଗା ବୋଇଲେ, ହେ ପୁରୁଷବ୍ୟାଘ୍ର ନୃପତେ ! ପୂର୍ବେ ତୁମ୍ଭେ ଆମ୍ଭ ଗର୍ଭରେ ଯେଉଁ ଅଷ୍ଟମ ପୁତ୍ରକୁ ଜାତ କରିଥିଲ ଏହି ସେହି ପୁତ୍ର । ଏ ସର୍ବପ୍ରକାର ଅସ୍ତ୍ରବିଦ୍ୟାରେ ବିଶାରଦ ଓ ଅତି ଉତ୍ତମ ହୋଇଅଛନ୍ତି । ୩୩ । ହେ ବିଭୋ ମହାରାଜ ! ଏହି ପୁତ୍ରକୁ ଆମ୍ଭେ ସମ୍ବର୍ଦ୍ଧିତ କରିଅଛୁ । ଏହାଙ୍କୁ ଗ୍ରହଣ କର ଓ ଏହାଙ୍କୁ ଘେନି ଗୃହକୁ ଗମନ କର । ୩୪ । ଏହି କୁମାର ଯୁଦ୍ଧରେ ଦେବରାଜ ସଦୃଶ ମହା ଧନୁର୍ଦ୍ଧାରୀ, ଅସ୍ତ୍ରବିଦ୍ୟାରେ ଦକ୍ଷ ଓ ବୀର୍ଯ୍ୟ-ବାନ୍ । ତୁମ୍ଭର ଏହି ପୁତ୍ର ବଶିଷ୍ଠ ଋଷିଙ୍କଠାରୁ ଷଡ଼ଙ୍ଗ ସହିତ ବେଦ ଅଧ୍ୟୟନ କରିଅଛନ୍ତି । ୩୫ । ହେ ଭାରତ ! ଏହି ପୁତ୍ର ସୁର ଓ ଅସୁର ଦୁହିଁଙ୍କର ପ୍ରିୟ । ଅସୁରଙ୍କ ଗୁରୁ ଉଶନା ଯେଉଁ ଯେଉଁ ଶାସ୍ତ୍ର ଜାଣନ୍ତି ତତ୍‌ସମୁଦାୟ ଏ ଜାଣନ୍ତି । ଅଙ୍ଗିରାଙ୍କ ପୁତ୍ର ସୁରାସୁରବନ୍ଦ୍ୟ ବୃହସ୍ପତି ଯେଉଁ ଶାସ୍ତ୍ରକୁ ଜାଣନ୍ତି, ସେ ସମୁଦାୟ ଶାସ୍ତ୍ର ଏହାଙ୍କଠାରେ ପ୍ରତିଷ୍ଠିତ ଅଛି । ୩୬ । ପ୍ରତାପଶାଳୀ ଦୁର୍ଦ୍ଧର୍ଷ ଋଷି ଜାମଦଗ୍ନ୍ୟ ରାମ ଯେଉଁ ସବୁ ଅସ୍ତ୍ରବିଦ୍ୟା ଅବଗତ ଅଛନ୍ତି, ସେ ସମୁଦାୟ ବିଦ୍ୟା ତୁମ୍ଭର ଏହି ମହାବାହୁ ଓ ମହାତ୍ମା ପୁତ୍ରଙ୍କଠାରେ ପ୍ରତିଷ୍ଠିତ ଅଛି । ୩୭ । ହେ ରାଜନ୍ ! ହେ ବୀର ! ଧର୍ମାର୍ଥ କୋବିଦ ଓ ମହା ଧନୁର୍ଦ୍ଧାରୀ ତୁମ୍ଭର ଏହି ବୀର ପୁତ୍ରଙ୍କୁ ଆମ୍ଭେ ଦାନ କରୁଅଛୁ; ଗୃହକୁ ନିଅ । ୩୮ ।

ବୈଶମ୍ପାୟନ ବୋଇଲେ, ଆଦିତ୍ୟଙ୍କ ପ୍ରାୟ ଦେଦୀପ୍ୟମାନ ସେହି ପୁତ୍ରଙ୍କୁ ଶାନ୍ତନୁ ଗଙ୍ଗାଙ୍କଠାରୁ ଗ୍ରହଣ କରି ସ୍ୱକୀୟ ପୁରକୁ ଗମନ କଲେ । ଇନ୍ଦ୍ରଙ୍କ ପୁରି ତୁଲ୍ୟ ନିଜ ପୁରୀକୁ ପୌରବ ପ୍ରବେଶ କରି ଆପଣାକୁ ଅତିଶୟ ସମୃଦ୍ଧ ଓ ସିଦ୍ଧକାମ ବୋଧ କଲେ । ୩୯ । ଅନନ୍ତର ପୌରବ ବଂଶର

ରାଜ୍ୟ ପ୍ରତିରକ୍ଷା ନିମିତ୍ତ ଅଭୟପ୍ରଦ ଓ ଗୁଣ-ସମ୍ପନ୍ନ ସେ ମହାତ୍ମା ପୁତ୍ରଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କଲେ । ୪୨ । ହେ ଭରତର୍ଷଭ ! ମହାଯଶସ୍ୱୀ ଶାନ୍ତନୁଙ୍କ ପୁତ୍ର, ପୌରଜନମାନଙ୍କୁ, ପିତାଙ୍କୁ ଓ ରାଜ୍ୟର ସମସ୍ତଙ୍କୁ ନିଜ ଆଚରିତ ଦ୍ୱାରା ରଞ୍ଜିତ କଲେ । ୪୩ । ଅମିତବିକ୍ରମ ମହୀପତି ଶାନ୍ତନୁ ସ୍ୱୀୟ ପୁତ୍ରଙ୍କ ସହିତ ଆମୋଦ ପ୍ରମୋଦରେ ଚୁରିବର୍ଷ କ୍ଷେପଣ କଲେ । ୪୪ ।

ସେହି ମହୀପାଳ ଏକ ସମୟରେ ଯମୁନା ନଦୀର ତୀରବର୍ତ୍ତୀ ବନକୁ ଗମନ କରିଥିଲେ । ସେଠାରେ ସେ ମହୀପତି ଏକପ୍ରକାର ଉତ୍ତମ ଗନ୍ଧ ଆଘ୍ରାଣ କଲେ । କିନ୍ତୁ ସେ କାହାର ଗନ୍ଧ ନିର୍ଦ୍ଦେଶ କରି ପାରିଲେ ନାହିଁ । ୪୫ । ସେହି ଗନ୍ଧ କେଉଁଠାରୁ ଆଗମନ କରିଅଛି, ତାହା ଜ୍ଞାତ ହେବା ନିମିତ୍ତ ଚତୁର୍ଦ୍ଦିଗରେ ବିଚରଣ କଲେ । ତଦନନ୍ତର ସେ ଦାଶ-ମାନଙ୍କର ଦେବରୂପିଣୀ ଗୋଟିଏ କନ୍ୟାକୁ ଦର୍ଶନ କଲେ । ୪୬ । ଅସିତଲୋଚନା ସେହି କନ୍ୟାଙ୍କୁ ଦର୍ଶନ କରି ରାଜା ତାହାଙ୍କୁ ପ୍ରଶ୍ନ କଲେ, ହେ ଭୀରୁ ! ତୁମ୍ଭେ କିଏ ? କାହାର କନ୍ୟା ଓ କି କରିବାକୁ ଇଚ୍ଛା କରୁ-ଅଛ ? ୪୭ ।

କନ୍ୟା ବୋଇଲେ, ତୁମ୍ଭର ଭଦ୍ର ହେଉ । ଆମ୍ଭେ ଦାଶକନ୍ୟା; ମହାତ୍ମା ଦାଶ ରାଜା ଆମ୍ଭର ପିତା; ତାହାଙ୍କ ନିଯୋଗାନୁସାରେ ଧର୍ମାର୍ଥ-ତରୀ ବାହନ କରୁଅଛୁ । ୪୮ । ରାଜା ଶାନ୍ତନୁ ସେହି ଦାଶକନ୍ୟାଙ୍କୁ ରୂପ-ମାଧୁର୍ଯ୍ୟ ଓ ସୁଗନ୍ଧଯୁକ୍ତ ଦେଖି ତାହାଙ୍କୁ ଲାଭ କରିବାର ଇଚ୍ଛା କଲେ ।୪୯। ଶାନ୍ତନୁ ସେ କନ୍ୟାର ପିତାଙ୍କ ନିକଟକୁ ଗମନ କରି ତାହାଙ୍କୁ ଯାଚଞା କଲେ ।

ଦାଶରାଜା ନରପତିଙ୍କୁ ବୋଇଲେ, ହେ ନରେଶ୍ୱର ! ଏହି ବର-ବର୍ଣ୍ଣିନୀ ଯେଉଁ କାଳରେ ଜାତ ହୋଇଅଛନ୍ତି, ସେହି କାଳରେ ତାହାଙ୍କୁ ଅବଶ୍ୟ କାହାରିକୁ ଦେବାକୁ ହେବ; କିନ୍ତୁ ମୋ ହୃଦୟରେ ଗୋଟିଏ କାମନା ଅଛି, ଶୁଣନ୍ତୁ । ହେ ଅନଘ ! ଯଦି ତୁମ୍ଭେ ଏହି ଧର୍ମପତ୍ନୀକୁ ଆମ୍ଭ ଠାରୁ ପ୍ରାର୍ଥନା କରୁଅଛ, ତେବେ ସତ୍ୟ କର; ତୁମ୍ଭେ ସତ୍ୟବାଦୀ, ତୁମ୍ଭେ ପ୍ରତିଜ୍ଞା କଲେ, ଆମ୍ଭେ ତୁମ୍ଭଙ୍କୁ ଏହି କନ୍ୟାକୁ ପ୍ରଦାନ କରିବୁ । ତୁମ୍ଭଠାରୁ ଅଧିକ ଗୋଟିଏ ବର ଆମ୍ଭେ ପ୍ରାପ୍ତ ହେବୁ ନାହିଁ । ୫୪ ।

ଶାନ୍ତନୁ ବୋଇଲେ, ହେ ଦାଶ ! ତୁମ୍ଭେ କି ବର ମାଗୁଅଛ ବୋଲ, ଆମ୍ଭେ ଶୁଣି ତାହାର ବ୍ୟବସ୍ଥା କରିବୁ । ଯେବେ ଦେବାର ଯୋଗ୍ୟ ହେବ ତେବେ ପ୍ରଦାନ କରିବୁ, ଅଦେୟ ହେଲେ ଦେଇ ପାରିବୁ ନାହିଁ । ୫୫ ।

ଦାଶ କୋଇଲେ, ହେ ପୃଥ୍ୱୀପତେ ! ଏହି କନ୍ୟାଙ୍କର ଯେଉଁ ପୁତ୍ର ହେବ, ସେହି ପୁତ୍ର ଆପଣଙ୍କ ଉତ୍ତାରୁ ରାଜା ହେବେ । ତାହାଙ୍କୁ ଅଭିଷିକ୍ତ କରିବା ହେବେ, ଅନ୍ୟ ପୁତ୍ରଙ୍କୁ ରାଜ୍ୟାଭିଷିକ୍ତ କରି ପାରିବେ ନାହିଁ । ୫୬ ।

ବୈଶମ୍ପାୟନ ବୋଇଲେ, ହେ ଭାରତ ! ରାଜା ଶାନ୍ତନୁ ତୀବ୍ର କାମ-ବେଦନାରେ ଦହ୍ୟମାନ ହେଲେହେଁ ଦାଶରାଜାଙ୍କୁ ତାହାଙ୍କର ପ୍ରାର୍ଥିତ ବର ଦେବାକୁ ଇଚ୍ଛା କଲେ ନାହିଁ । ୫୭ । ତତ୍‌କାଳରେ ସେ ମହୀପତି କାମୋପହତଚେତନ ହୋଇ ସେହି ଦାଶକନ୍ୟାଙ୍କୁ ନିରନ୍ତର ଚିନ୍ତା କରି ହାସ୍ତିନପୁରକୁ ପ୍ରତିଗମନ କଲେ । ୫୮ । ଅନନ୍ତର ଏକଦା ଶାନ୍ତନୁ ଶୋକ କରୁଥିବାର ଦେଖି ତାହାଙ୍କର ପୁତ୍ର ଦେବବ୍ରତ ଆସି ପିତାଙ୍କୁ ଏହି ବାକ୍ୟ ବୋଇଲେ, ଆପଣଙ୍କର ସବୁ ବିଷୟରେ କୁଶଳ ଦେଖୁଅଛୁଁ; ସମସ୍ତ ପାର୍ଥିବମାନେ ଆପଣଙ୍କର ଆଜ୍ଞାବର୍ତ୍ତୀ ଅଛନ୍ତି, ତଥାପି ଆପଣ କି ନିମିତ୍ତ ଦୁଃଖିତ ହୋଇ ଅତିଶୟ ଶୋକ କରୁଅଛ ? ୬୦ । ହେ ରାଜନ୍ ! ଆମ୍ଭଙ୍କୁ ଯେପରି ଧ୍ୟାନ କରି କିଛି କହୁନାହଁ । ଆପଣ ପାଣ୍ଡୁବର୍ଣ୍ଣ ଓ କୃଶ ହୋଇଅଛ; ଆଉ ଅଶ୍ୱାରୋହଣ କରି ବହିର୍ଗତ ହେଉ ନାହଁ; ଆପଣଙ୍କର କି ବ୍ୟାଧି ହୋଇଅଛି ବୋଲ; ଆମ୍ଭେ ତହିଁର ପ୍ରତିକାର କରିବୁଁ । ୬୧ ।

ପୁତ୍ରଙ୍କଦ୍ୱାରା ଏପରି ଅଭିହିତ ହୋଇ ଶାନ୍ତନୁ ପ୍ରତିଭାଷଣ କଲେ, ହେ ଭାରତ ! ତୁମ୍ଭେ ଯେ ଆମ୍ଭଙ୍କୁ ଚିନ୍ତାନ୍ୱିତ ବୋଲିଅଛ, ତାହା ନିଃସଂଶୟରେ ସତ୍ୟ ଅଟେ । ତହିଁର କାରଣ ଶୁଣ । ଆମ୍ଭର ଏହି ମହତ୍ କୁଳରେ ତୁମ୍ଭେ ଗୋଟିଏ ମାତ୍ର ଅପତ୍ୟ । ସତତ ତୁମ୍ଭେ ଶସ୍ତ୍ର ଚାଳନା କରି ଓ ପୌରୁଷ ଅର୍ଜ୍ଜନରେ ବ୍ୟବସ୍ଥିତ ଅଛ । ୬୩ । ଅତଏବ ହେ ପୁତ୍ରକ ! ମନୁଷ୍ୟ ଜୀବନର ଅନିତ୍ୟତା ଚିନ୍ତା କରି ଆମ୍ଭେ ଶୋକ କରୁଅଛୁଁ । ହେ ଗାଙ୍ଗେୟ ! ତୁମ୍ଭର ଯଦି ବିପତ୍ତି ଘଟେ, ତେବେ ଆମ୍ଭର କୁଳ ରହିବ ନାହିଁ । ୬୪ । ତୁମ୍ଭେ ଶତପୁତ୍ର ଅପେକ୍ଷା ଶ୍ରେଷ୍ଠ, ଏଥିରେ ଆମ୍ଭର ସନ୍ଦେହ ନାହିଁ । ଆମ୍ଭେ ମଧ୍ୟ ପୁନର୍ବାର ବୃଥା ଦାର ପରିଗ୍ରହ କରିବାକୁ ଉତ୍ସାହିତ ହେଉନାହୁଁ । ବଂଶରକ୍ଷା ନିମିତ୍ତ ଆମ୍ଭେ କାମନା କରୁଅଛୁଁ ଯେ ତୁମ୍ଭର କୁଶଳ ହେଉ । ଧର୍ମବାଦୀମାନେ କହନ୍ତି ଯେ ଯାହାର ଗୋଟିଏ ମାତ୍ର ପୁତ୍ର ସେ ଅନପତ୍ୟ । ଅଗ୍ନିହୋତ୍ର, ବେଦାଧ୍ୟୟନ ଓ ଶିଷ୍ୟ ପ୍ରଶିଷ୍ୟଦ୍ୱାରା ବିଦ୍ୟାପ୍ରଚାର ଏହି ସମସ୍ତ କାର୍ଯ୍ୟ ଅକ୍ଷୟ ଫଳପ୍ରଦ ହେଲେହେଁ ପୁତ୍ରର ଷୋଡ଼ଶାଂଶର ଏକାଂଶ ସମାନ ହୁଅଇ ନାହିଁ । ଏହିପରି ସନ୍ତାନର

ଶ୍ରେୟ ସାଧନ କରିବା ମନୁଷ୍ୟଙ୍କ ପକ୍ଷରେ ଯେପରି, ପଶୁପକ୍ଷୀମାନଙ୍କ ମଧ୍ୟରେ ସୁଦ୍ଧା ତଦ୍‌ବତ୍ ଅଟେ । ହେ ମହାପ୍ରାଜ୍ଞ ! ଅପତ୍ୟ ହେତୁରୁ ଯେ ସ୍ୱର୍ଗଲାଭ ହୁଏ, ତହିଁରେ ସଂଶୟ ନାହିଁ । ୬୮ । ଏ ବିଷୟ ବେଦପୁରାଣ ଓ ଦେବତାମାନଙ୍କର ଚିରପ୍ରସିଦ୍ଧ ଅଭିମତ ଅଟେ । ୬୯ । ତୁମ୍ଭେ ଶୂର, ସଦାଅମର୍ଷାନ୍ୱିତ ଓ ଶସ୍ତ୍ରସଞ୍ଚାଳନରେ ନିଯୁକ୍ତ ଥାଅ; ଅତଏବ ହେ ଭାରତ ! ତୁମ୍ଭର ନିଧନ ଯୁଦ୍ଧ ବ୍ୟତିରେକେ ଅନ୍ୟଥା ହେବାର ନୁହଇ । ଆମ୍ଭେ ସଂଶୟାନ୍ୱିତ ହୋଇଅଛୁଁ ଯେ ତୁମ୍ଭେ ଶାନ୍ତ ହେଲେ ଏ ବଂଶର ଦଶା କଅଣ ହେବ ! ହେ ତାତ ! ଏହି ପ୍ରକାରେ ଆମ୍ଭେ ଦୁଃଖର କାରଣମାନ ସମ୍ପୂର୍ଣ୍ଣ ରୂପେ କହିଲୁଁ । ୭୧ ।

ବୈଶମ୍ପାୟନ ବୋଇଲେ, ମହାବୁଦ୍ଧି ଦେବବ୍ରତ ରାଜାଙ୍କର ଶୋକର କାରଣ ଅଶେଷରୂପେ ଅବଗତ ହୋଇ ଆପଣାର ପ୍ରଜ୍ଞାଦ୍ୱାରା ଚିନ୍ତାନ୍ୱିତ ହେଲେ । ୭୨ । ସେହି ସମୟରେ ଅବିଳମ୍ବରେ ପିତାଙ୍କର ହିତକାରୀ ବୃଦ୍ଧ ଅମାତ୍ୟଙ୍କ ନିକଟକୁ ଗମନ କଲେ ଓ ପିତାଙ୍କର ସେହି ଶୋକର କାରଣ ପ୍ରଶ୍ନ କଲେ । ୭୩ । ହେ ଭରତର୍ଷଭ ! କୁରୁବଂଶ ମୁଖ୍ୟଙ୍କଙ୍କ ପ୍ରଶ୍ନାନୁସାରେ ଦାଶରାଜା ଆପଣାର କନ୍ୟାପ୍ରଦାନ ସମ୍ବନ୍ଧରେ ଯେଉଁ ବର ପ୍ରାର୍ଥନା କରିଥିଲେ, ତତ୍‌ସମୁଦାୟ ସେ ମନ୍ତ୍ରୀ ଯଥାବିଧି ଶଂସିତ କଲେ । ୭୪ । ତଦନନ୍ତର ଦେବବ୍ରତ କ୍ଷତ୍ରିୟମାନଙ୍କ ସହିତ ଦାଶରାଜଙ୍କ ସମୀପକୁ ଗମନ କରି ପିତାଙ୍କ ନିମିତ୍ତ ସେହି କନ୍ୟାକୁ ପ୍ରାର୍ଥନା କଲେ । ୭୫ ।

ହେ ଭରତର୍ଷଭ ! ଦାଶରାଜ ତାହାଙ୍କର ବିଧିବତ୍ ପୂଜା କରି ରାଜସଭାସୀନ ଦେବବ୍ରତଙ୍କୁ ବୋଇଲେ, ହେ ଭରତର୍ଷଭ ! ତୁମ୍ଭେ ଶସ୍ତ୍ରଧାରୀଙ୍କ ଶ୍ରେଷ୍ଠ ଓ ଶାନ୍ତନୁଙ୍କର ଏକମାତ୍ର ପୁତ୍ର ଓ ସର୍ବସ୍ୱ ଅଟ । କିନ୍ତୁ ତୁମ୍ଭଙ୍କୁ କହୁଅଛୁଁ କନ୍ୟାଙ୍କ ପିତା ସ୍ୱୟଂ ଶତକ୍ରତୁ ହେଲେହେଁ ଈଦୃଶ ଶ୍ଳାଘ୍ୟ ଓ ଅଭୀପ୍‌ସିତ ଯୌନ ସମ୍ବନ୍ଧକୁ ପରିତ୍ୟାଗ କରି ଅବଶ୍ୟ ଅନୁତାପିତ ହେବେ । ୭୮ । ଯେଉଁ ଆର୍ଯ୍ୟ ତୁମ୍ଭମାନଙ୍କ ସଦୃଶ ଗୁଣବାନ୍, ତାହାଙ୍କର ଶୁକ୍ରରୁ ଏହି ଯଶସ୍ୱିନୀ ସତ୍ୟବତୀ ପ୍ରାଦୁର୍ଭୂତ ହୋଇଅଛନ୍ତି; ଅଥଚ ହେ ତାତ ! ସେ ଆମ୍ଭ ନିକଟରେ ଅନେକଥର ତୁମ୍ଭର ପିତାଙ୍କର ନାମ କୀର୍ତ୍ତନ କରି କହିଅଛନ୍ତି ଯେ ସେ ଧର୍ମଜ୍ଞ ନରାଧିପ ସତ୍ୟବତୀଙ୍କୁ ବିବାହ କରିବାର ଯୋଗ୍ୟ ପାତ୍ର । ୮୦ । ଋଷିସତ୍ତମ ଦେବର୍ଷି ଅସିତ ପୂର୍ବେ ଏହି ସତ୍ୟବତୀଙ୍କୁ ଭୂୟୋଭୂୟଃ ପ୍ରାର୍ଥନା କରିଥିଲେ । କିନ୍ତୁ ଆମ୍ଭେ ତାହାଙ୍କ ପ୍ରତ୍ୟାଖ୍ୟାନ କଲୁଁ । ୮୧ ।

ହେ ନରାଧିପ ! ଆମ୍ଭେ କନ୍ୟା ପକ୍ଷରୁ ତୁମ୍ଭଙ୍କୁ କିଛି କହିବୁଁ; ଏଠାରେ କେବଳ ଆମ୍ଭେ ବଳବାନ୍ ସପତ୍ନତା ଦୋଷ ଦେଖୁଅଛୁଁ । ୮୨ । ହେ ପରନ୍ତପ ! ଗନ୍ଧର୍ବ ହେଉ ଅଥବା ଅସୁର ହେଉ, ଯେ ତୁମ୍ଭର ଶତ୍ରୁ ହେବ, ତୁମ୍ଭେ ତାହାଠାରେ କ୍ରୁଦ୍ଧ ହେଲେ ତାହାର ବହୁକାଳ ଜୀବିତ ରହିବାର ନୁହଇ । ହେ ପାର୍ଥିବ ! ଏଠାରେ ଏହିମାତ୍ର ଦୋଷ, ଆଉ କିଛି ନୁହେଁ । ହେ ପରନ୍ତପ ! କନ୍ୟା ଦାନ କରିବା କି ନ କରିବା ବିଷୟରେ ଯାହା ତହିଁରୁ ଜାଣ । ତୁମ୍ଭର ମଙ୍ଗଳ ହେଉ । ୮୪ ।

ବୈଶମ୍ପାୟନ କହିଲେ, ହେ ଭାରତ ! ଗାଙ୍ଗେୟ ଏହି ପ୍ରକାରେ ଅଭିହିତ ହେବାରୁ ସମସ୍ତ କ୍ଷତ୍ରିୟମାନଙ୍କ ସମକ୍ଷରେ ପ୍ରତ୍ୟୁତ୍ତର ଦେଲେ । ହେ ସତ୍ୟବାଦୀଙ୍କ ଶ୍ରେଷ୍ଠ ! ଆମ୍ଭର ଏହି ସତ୍ୟବ୍ରତ ଜାଣ; ଆମ୍ଭେ ସତ୍ୟ କହୁଅଛୁ, ଏପରି ପ୍ରତିଜ୍ଞା କରିବା ବ୍ୟକ୍ତି ଜାତ ହୋଇନାହିଁ କି ହେବ ନାହିଁ । ତୁମ୍ଭେ ଯେପରି କହୁଅଛ, ଆମ୍ଭେ ତଦ୍ରୂପ କରିବୁ । ଏହି କନ୍ୟାଙ୍କ ଠାରେ ଯେଉଁ ପୁତ୍ର ଜାତ ହେବେ, ସେ ଆମ୍ଭମାନଙ୍କର ରାଜା ହେବେ । ୮୭ । ହେ ଭରତର୍ଷଭ ! ଦେବବ୍ରତଙ୍କର ଏହି କଥା ଶୁଣି ଦାଶ ରାଜା ରାଜ୍ୟ ନିମିତ୍ତ ଦୁଷ୍କର କର୍ମ କରିବା ଇଚ୍ଛାରେ ପୁନର୍ବାର ଉତ୍ତର କଲେ ।୮୮। ହେ ଧର୍ମାତ୍ମନ୍ ! ଆପଣ ଅମିତ-ଦ୍ୟୁତି ଶାନ୍ତନୁଙ୍କ ପକ୍ଷରୁ କର୍ତ୍ତା ହୋଇ ଆସିଅଛନ୍ତି । ଏବେ କନ୍ୟା ପକ୍ଷରୁ ମଧ୍ୟ ଦାନ ନିମିତ୍ତ କର୍ତ୍ତା ହେଉନ୍ତୁ । ହେ ସୌମ୍ୟ ! ଆମ୍ଭର ଏହି କଥାଟି କରିବାକୁ ହେବ, ଜାଣ । ହେ ଅରିନ୍ଦମ ! କୁମାରୀମାନଙ୍କ ପକ୍ଷରୁ ଆମ୍ଭର ଏହା କହିବାର କର୍ତ୍ତବ୍ୟ । ହେ ସତ୍ୟଧର୍ମପରାୟଣ ! ତୁମ୍ଭେ ଏହି ରାଜାମାନଙ୍କ ମଧ୍ୟରେ ସତ୍ୟବତୀଙ୍କ ନିମିତ୍ତ ଯାହା ପ୍ରତିଜ୍ଞା କଲ, ତାହା ତୁମ୍ଭର ଅନୁରୂପ ଅଟଇ । ହେ ମହାବାହୋ ! ତାହାର ଅନ୍ୟଥା ହେବାର ନୁହଇ କି ତହିଁରେ ଆମ୍ଭର ସଂଶୟ ନାହିଁ । କିନ୍ତୁ ତୁମ୍ଭର ଯେଉଁ ଅପତ୍ୟ ହେବେ, ତଦ୍‌ବିଷୟରେ ଆମ୍ଭର ସଂଶୟ ହେଉଅଛି । ୯୨ ।

ବୈଶମ୍ପାୟନ ବୋଇଲେ, ହେ ରାଜନ୍ ! ସତ୍ୟଧର୍ମପରାୟଣ ଦେବବ୍ରତ ଦାଶରାଜଙ୍କର ଅଭିପ୍ରାୟ ଅବଗତ ହୋଇ ପିତାଙ୍କର ପ୍ରୀତି ଇଚ୍ଛାରେ ପୁନର୍ବାର ପ୍ରତିଜ୍ଞା କଲେ । ୯୩ । ଗାଙ୍ଗେୟ ବୋଇଲେ, ହେ ଦାଶରାଜ ! ନରୋତ୍ତମ ! ଆମ୍ଭର ଏହି ବଚନ ଶ୍ରବଣ କର । ପିତାଙ୍କନିମିତ୍ତ ଏହି ଭୂମିପାଳମାନଙ୍କ ସାକ୍ଷାତରେ ଆମ୍ଭେ ଯାହା କହୁଅଛୁ, ତାହା ଶ୍ରବଣ କର । ହେ ନରାଧିପମାନେ ! ଆମ୍ଭେ ପୂର୍ବରୁ ରାଜ୍ୟ ତ୍ୟାଗ କରିଅଛୁ । ଅପତ୍ୟ

ନିମିତ୍ତ ଆମ୍ଭେ ଅଦ୍ୟ ଏହି ନିଶ୍ଚୟ କରୁଅଛୁ, ହେ ଦାଶ ! ଅଦ୍ୟ ପ୍ରଭୃତି ଆମ୍ଭର ବ୍ରହ୍ମଚର୍ଯ୍ୟ ହେବ । ଆମ୍ଭେ ଅପୁତ୍ରିକ ହେଲେ ହେଁ ସ୍ୱର୍ଗରେ ଆମ୍ଭର ଅକ୍ଷୟ ଲୋକମାନେ ଅର୍ଜ୍ଜିତ ହେବେ । ୯୬ ।

ବୈଶମ୍ପାୟନ ବୋଇଲେ, ତାହାଙ୍କର ସେହି ବାକ୍ୟ ଶ୍ରବଣ କରି ଦାଶରାଜ ପୁଲକିତ ହୋଇ ଗଙ୍ଗାପୁତ୍ରଙ୍କୁ କହିଲେ, ଆମ୍ଭେ କନ୍ୟା ଦାନ କଲୁ । ୯୭ । ତଦନନ୍ତର ଆକାଶରେ ଅପ୍ସରଗଣ, ଦେବତାମାନେ ଓ ଋଷିମାନେ ଦେବବ୍ରତଙ୍କ ଉପରେ କୁସୁମ ବୃଷ୍ଟି କଲେ ଓ ବୋଇଲେ ଯେ "ଏହାଙ୍କ ନାମ 'ଭୀଷ୍ମ' ହେଉ" । ୯୮ । ତତ୍ପରେ ସେ ପିତାଙ୍କ ନିମିତ୍ତ ସେହି ଯଶସ୍ୱିନୀଙ୍କୁ ବୋଇଲେ, ମାତଃ ! ରଥାରୋହଣ କର, ଆପଣା ଗୃହକୁ ଗମନ କରିବା । ୯୯ ।

ବୈଶମ୍ପାୟନ ବୋଇଲେ, ଏହା କହି ଭୀଷ୍ମ ସେ ଭାମିନୀଙ୍କୁ ରଥରେ ବସାଇ ହସ୍ତିନପୁରକୁ ଆସି ଶାନ୍ତନୁଙ୍କୁ ଜଣାଇଲେ । ୧୦୦ । ନରାଧିପ-ମାନେ ତାହାଙ୍କର ସେହି ଦୁଷ୍କର କର୍ମର ଭୂୟସୀ ପ୍ରଶଂସା କଲେ । ରାଜା-ମାନେ ସମସ୍ତେ ମିଳିତ ହୋଇ ଓ ପୃଥକ୍ ପୃଥକ୍ ତାହାଙ୍କର ସେହି ଦୁଷ୍କର କର୍ମର ପ୍ରଶଂସା କଲେ ଓ ବୋଇଲେ, ଏ ପ୍ରକୃତ ଭୀଷ୍ମ । ୧୦୧ । ଭୀଷ୍ମ ଏପରି ଦୁଷ୍କର କର୍ମ କରିଥିବାର ଶୁଣି ଶାନ୍ତନୁ ସେ ମହାତ୍ମାଙ୍କଠାରେ ତୁଷ୍ଟ ହୋଇ ସ୍ୱଚ୍ଛନ୍ଦ ମରଣ (ଇଚ୍ଛା ମୃତ୍ୟୁ) ବର ଦେଲେ ।୧୦୨। ସେ ବୋଇଲେ ଯେ ଯାବତ୍ କାଳ ତୁମ୍ଭେ ଜୀବିତ ଥିବାକୁ ଅଭିଳାଷ କରିବ, ତାବତ୍‌କାଳ ମୃତ୍ୟୁ ତୁମ୍ଭଠାରେ ପ୍ରଭୁତ୍ୱ କରିପାରିବ ନାହିଁ । ହେ ଅନଘ ! ତୁମ୍ଭଠାରୁ ଅନୁଜ୍ଞା ପାଇ ମୃତ୍ୟୁ ତାହାର ପ୍ରଭାବ କରିବ । ୧୦୩ ।

## ଅଧ୍ୟାୟ ୧୦୧

ବୈଶମ୍ପାୟନ ବୋଇଲେ—ହେ ନୃପ ! ତଦନନ୍ତର ବିବାହ ଶେଷ ହେଲାରୁ ରାଜା ଶାନ୍ତନୁ ସେ ରୂପବତୀ କନ୍ୟାକୁ ନିଜ ଗୃହରେ ସନ୍ନିବିଷ୍ଟ କଲେ । ୧ । ତଦନନ୍ତର ତାହାଙ୍କ ଔରସରେ ସତ୍ୟବତୀଙ୍କ ଗର୍ଭରେ ଚିତ୍ରାଙ୍ଗଦ ନାମରେ ଧୀମାନ୍ ବୀର୍ଯ୍ୟବାନ୍ ଓ ପୁରୁଷଶ୍ରେଷ୍ଠ ଗୋଟିଏ ବୀରପୁତ୍ର ଜନ୍ମ ଗ୍ରହଣ କଲେ । ୨ । ଏଥିଉତ୍ତାରୁ ବୀର୍ଯ୍ୟବାନ୍ ଶାନ୍ତନୁ ତାହାଙ୍କଠାରୁ ବିଚିତ୍ରବୀର୍ଯ୍ୟ ନାମକ ଅପର ଗୋଟିଏ ମହାଧନୁର୍ଦ୍ଧାରୀ ପୁତ୍ର ଜନ୍ମ କଲେ । ୩ । ପୁରୁଷଶ୍ରେଷ୍ଠ ବିଚିତ୍ରବୀର୍ଯ୍ୟ ଯୌବନ ପ୍ରାପ୍ତ ନୋହୁଁଣୁ ଧୀମାନ୍ ଶାନ୍ତନୁ କାଳ ଧର୍ମ୍ମକୁ ଲାଭ କଲେ । ଶାନ୍ତନୁ ସ୍ୱର୍ଗଗାମୀ ହେବା ପରେ ଭୀଷ୍ମ ସତ୍ୟବତୀଙ୍କ ମତାନୁସାରେ ଅରିନ୍ଦମ ଚିତ୍ରାଙ୍ଗଦଙ୍କୁ ରାଜ୍ୟରେ ଅଭିଷେକ କଲେ । ୪ ।

ସେହି ଚିତ୍ରାଙ୍ଗଦ ଶୂରପଣରେ ସମସ୍ତ ପାର୍ଥିବମାନଙ୍କୁ ନିକ୍ଷେପ କଲେ । କୌଣସି ମନୁଷ୍ୟକୁ ସେ ଆପଣା ସଦୃଶ ଜ୍ଞାନ କଲେ ନାହିଁ । ମନୁଷ୍ୟ ସୁର ଅସୁର ସମସ୍ତଙ୍କୁ ତୁଚ୍ଛ କରିବାର ଦେଖି ଚିତ୍ରାଙ୍ଗଦ ନାମକ ବଳବାନ୍ ଗନ୍ଧର୍ବରାଜ ଆସି ତାହାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ସେହି ଗନ୍ଧର୍ବ ଓ କୁରୁମୁଖ୍ୟ ଦୁହିଙ୍କର ଅତି ମହତ୍ ଯୁଦ୍ଧ କୁରୁକ୍ଷେତ୍ରରେ ହିରଣ୍ୱତୀ ନଦୀ ତୀରରେ ତିନିବର୍ଷ ପର୍ଯ୍ୟନ୍ତ ଲାଗିଲା । ସେ ତୁମୂଳ ବିମର୍ଦ୍ଦରେ ଶସ୍ତ୍ରାସ୍ତ୍ରମାନ ବୃଷ୍ଟି ହେଲା ଓ ମାୟାଧିକ୍ୟ ବଶରୁ ଗନ୍ଧର୍ବରାଜ, କୁରୁବୀରଙ୍କୁ ବଧ କଲେ । ୯ ।

ନରଶ୍ରେଷ୍ଠ ଅରିନ୍ଦମ, ଚିତ୍ରାଙ୍ଗଦଙ୍କୁ ବିନାଶ କରି ଗନ୍ଧର୍ବରାଜ ସ୍ୱର୍ଗମଧ୍ୟ ଅନ୍ତପ୍ରାପ୍ତ ହେଲେ । ହେ ରାଜନ୍ ! ଏହି ଭୂରିତେଜା, ପୁରୁଷଶାର୍ଦ୍ଦୂଳ ହତ

ହୁଅନ୍ତେ ଶାନ୍ତନୁ-ନନ୍ଦନ ଭୀଷ୍ମ ତାହାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ମାନ ସମାପନ କରାଇଲେ । ତଦନନ୍ତର ସେ ମହାବାହୁ ଅପ୍ରାପ୍ତ ଯୌବନ ବାଳକ ବିଚିତ୍ରବୀର୍ଯ୍ୟଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ହେ ମହାରାଜ । ସେ ଭୀଷ୍ମଙ୍କ ବଚନାନୁବର୍ତ୍ତୀ ହୋଇ ପିତୃ ପିତାମହ ରାଜ୍ୟକୁ ଶାସନ କଲେ । ସେହି ନୃପ, ଧର୍ମଶାସ୍ତ୍ର କୁଶଳ ଶାନ୍ତନୁ ପୁତ୍ର ଭୀଷ୍ମଙ୍କୁ ଧର୍ମାନୁସାରେ ପୂଜା କଲେ ଓ ଭୀଷ୍ମ ମଧ୍ୟ ତାହାଙ୍କୁ ପ୍ରତିପାଳନ କଲେ । ୧୫ ।

---

## ଅଧ୍ୟାୟ ୧୦୨

ବୈଶମ୍ପାୟନ ବୋଇଲେ—ହେ କୌରବ । ଭ୍ରାତା ଚିତ୍ରାଙ୍ଗଦ ହତ ହୁଅନ୍ତେ ଭୀଷ୍ମ ସତ୍ୟବତୀଙ୍କ ମତରେ ରହି ସେ ରାଜ୍ୟକୁ ପାଳନ କଲେ ଓ ଧୀମାନ ଶ୍ରେଷ୍ଠ ଭ୍ରାତା ଯୌବନପ୍ରାପ୍ତ ହେବାର ଦେଖି ତାହାଙ୍କୁ ପରିଣୀତ କରିବାର ମାନସ କଲେ । ୨ । ଅନନ୍ତର ହେ ରାଜନ । ଭୀଷ୍ମ ଶୁଣିଲେ ଯେ କାଶୀପତିଙ୍କର ଅପ୍ସରା ପ୍ରାୟ ସୁନ୍ଦରୀ ତିନିଗୋଟି କନ୍ୟା ସ୍ୱୟଂମ୍ବରା ହେବେ; ତଦନନ୍ତର ରଥୀଶ୍ରେଷ୍ଠ ଶତ୍ରୁଜିତ୍ ଭୀଷ୍ମ, ଗୋଟିଏ ରଥରେ ଆରୋହଣ କରି ମାତାଙ୍କର ମତରେ ବାରାଣସୀ ପୁରକୁ ଗମନ କଲେ । ୪ । ତତ୍ପରେ ଶାନ୍ତନୁ ନନ୍ଦନ ଭୀଷ୍ମ ସର୍ବସ୍ଥାନରୁ ସମାଗତ ରାଜାମାନଙ୍କୁ ଓ କନ୍ୟାଙ୍କୁ ଦର୍ଶନ କଲେ । ୫ ।

ହେ ଭରତର୍ଷଭ । ରାଜାମାନଙ୍କର ନାମମାନ କୀର୍ତ୍ତିତ ହୁଅନ୍ତେ ଶାନ୍ତନୁ ନନ୍ଦନ ବୃଦ୍ଧ ଭୀଷ୍ମଙ୍କୁ ଏକାକୀ ଦେଖି ପରମ ଶୋଭନା କନ୍ୟାମାନେ ଉଦ୍‌ବେଗ ସହିତ ପଶ୍ଚାତ୍‌ଗମନ କଲେ ଓ ସମାଗତ ନୃପାଧମମାନେ ବୋଇଲେ ଯେ ଭୀଷ୍ମ ବୃଦ୍ଧ, ପରମଧାର୍ମିକ, ବଳୀ ଓ ଏହାଙ୍କର କେଶ ପଳିତ ହୋଇଅଛି; ଏ ନିର୍ଲ୍ଲଜ କି କାରଣ ଏଠାକୁ ଆଗମନ କରିଅଛନ୍ତି ? ଲୋକଙ୍କଠାରେ ଏ ମିଥ୍ୟାରେ ପ୍ରତିଜ୍ଞା କରିଥିଲେ । ଭୀଷ୍ମ ଯେ ବ୍ରହ୍ମଚାରୀ ଏହା ପୃଥିବୀରେ ବୃଥା ପ୍ରଥିତ ହୋଇଅଛି; ଏହା କହି ସେମାନେ ହାସ୍ୟ କଲେ ।

ବୈଶମ୍ପାୟନ ବୋଇଲେ—ହେ ଭାରତ । ସେହି କ୍ଷତ୍ରିୟମାନଙ୍କର ବଚନ ଶୁଣି ଯୋଦ୍ଧୃବର ଭୀଷ୍ମ କ୍ରୋଧାବିଷ୍ଟ ହୋଇ ସେ କନ୍ୟାମାନଙ୍କୁ

ସ୍ୱୟଂ ବରଣ କଲେ ଓ ସେମାନଙ୍କୁ ରଥରେ ଆରୋପଣ କରି ଜଳଦ ଗମ୍ଭୀର ସ୍ୱରରେ ମହୀପାଳମାନଙ୍କୁ କହିଲେ । ୧୧ । ବୁଧମାନେ କହିଅଛନ୍ତି ଯେ ଗୁଣବାନ୍ ବ୍ୟକ୍ତିଙ୍କୁ ଆହ୍ୱାନ କରି କନ୍ୟାମାନଙ୍କୁ ଯଥାଶକ୍ତି ଅଳଙ୍କୃତ କରି ଧନ ସହିତ ସେମାନଙ୍କୁ ପ୍ରଦାନ କରିବ ( ୧ ) ଅପର ଲୋକେ ଦୁଇଟି ଗୋରୁ ସହିତ କନ୍ୟାକୁ ପ୍ରଦାନ କରନ୍ତି ( ୨ ) କେହି କେହି, ନିରୂପିତ ପଣ ଗ୍ରହଣ ପୂର୍ବକ କନ୍ୟାକୁ ଦିଅନ୍ତି ( ୩ ) କେହି କେହି ବଳପୂର୍ବକ ବିବାହ କରନ୍ତି ( ୪ ) କେହି ଅବା ପ୍ରଣୟ ସମ୍ଭାଷଣରେ ରମଣୀର ମନୋରଞ୍ଜନ କରି ପାଣିଗ୍ରହଣ କରନ୍ତି । ୫ ।

କେହି କେହି ପ୍ରମତା ନାରୀଙ୍କର ପାଣୀ ପୀଡ଼ନ କରନ୍ତି (୬) ଅପର ବ୍ୟକ୍ତିମାନେ କନ୍ୟାଦାତାଙ୍କଠାରେ ସ୍ୱୟଂ ଉପସ୍ଥିତ ହୋଇ କନ୍ୟା ଗ୍ରହଣ କରନ୍ତି ( ୭ ) ଅପର ଲୋକେ ଆର୍ଷ ବିଧି ଅନୁସାରେ ଦାରା ଗ୍ରହଣ କରନ୍ତି । ଅର୍ଥାତ୍ ଯଜ୍ଞକ୍ରିୟା ବିଧାନ କରି ତାହାର ଦକ୍ଷିଣା ସ୍ୱରୂପ କନ୍ୟାକୁ ଲାଭ କରନ୍ତି ( ୮ ) ଉକ୍ତ ଅଷ୍ଟ ପ୍ରକାର ବିବାହ ମଧ୍ୟରେ ପଣ୍ଡିତମାନେ ଶେଷୋକ୍ତ ପ୍ରକାର ବିବାହ ବରଣ କରନ୍ତି । କିନ୍ତୁ ରାଜାମାନେ ସ୍ୱୟଂମ୍ବରକୁ ପ୍ରଶଂସା କରନ୍ତି ଓ ସ୍ୱୟଂମ୍ବରା କନ୍ୟାକୁ ବିବାହ କରନ୍ତି । ଧର୍ମବାଦୀମାନେ ବୋଲନ୍ତି ସ୍ୱୟଂମ୍ବର ସ୍ଥଳରେ ବିପକ୍ଷ ପକ୍ଷକୁ ମର୍ଦ୍ଦନକରି ବଳପୂର୍ବକ ଯେଉଁ କନ୍ୟା ହୃତହୁଅଇ ସେ ଶ୍ରେଷ୍ଠା ।୧୬। ଅତଏବ ହେ ପୃଥିବୀପାଳମାନେ ! ଅମ୍ଭେ ଏମାନଙ୍କୁ ବଳପୂର୍ବ ହରଣ କରିବାକୁ ଇଚ୍ଛା କରିଅଛୁଁ । ଯାହାଙ୍କର ଯେତେ ଶକ୍ତିଅଛି ସେମାନେ ବିଜୟ ଅଥବା ପରାଜୟ ନିମିତ୍ତ ଯତ୍ନ କରନ୍ତୁ । ୧୭ ।

ହେ ପୃଥିବୀପାଳମାନେ ! ଅମ୍ଭେ ଯୁଦ୍ଧ ନିଶ୍ଚୟ କରି ଅବସ୍ଥାନ କରିଅଛୁଁ । ସମାଗତ ମହୀପାଳମାନଙ୍କୁ ଓ କାଶୀ ରାଜାଙ୍କୁ ଏହିପରି କହି ସେ କୌରବ୍ୟ ମାନଙ୍କୁ ସ୍ୱକୀୟ ରଥରେ ବସାଇ ଶୀଘ୍ର ପ୍ରୟାଣକଲେ । ୧୯ । ତଦନନ୍ତର ସେହି ପାର୍ଥିବମାନେ ଅମର୍ଷାନ୍ୱିତ ହୋଇ ସ୍ୱ ସ୍ୱ ବାହୁରେ ବାହୁ ଘର୍ଷଣକରି ଦଶନରେ ଓଷ୍ଠକୁ ଦଂଶନ କଲେ । ଆଭରଣ ମାନଙ୍କୁ ତ୍ୱରିତ ବିମୋଚନ ପୂର୍ବକ ବର୍ମ୍ମ ପରିଧାନରେ ମହାନ୍ ସମ୍ଭ୍ରମ ଉପସ୍ଥିତ

---

(୧) ବ୍ରାହ୍ମ, (୨) ଆର୍ଷ, (୩) ଅସୁର, (୪) ରାକ୍ଷସ, (୫) ଗାନ୍ଧର୍ବ (୬) ପୈଶାଚ, (୭) ପ୍ରାଜାପତ୍ୟ, (୮) ଦୈବ ।

ହେଲା । ହେ ଜନ୍ମେଜୟ ! ଭୂଷଣ ଓ କବଚ ମାନଙ୍କର ଚତୁର୍ଦ୍ଦିଗରେ ଯେଉଁ ପତନ ହେଲା ସେଥିରେ ବୋଧ ହେଲା ଯେ ତାରାମାନେ ନିପତିତ ହେଉଅଛନ୍ତି । ୨୨ । ସେହି ବୀର ରାଜାମାନେ ତ୍ୱରାନ୍ୱିତ ହୋଇଥିବାରୁ କବଚ ଓ ଭୂଷଣାଦି ଇତସ୍ତତଃ ସ୍ଖଳିତ ହେଲା । କ୍ରୋଧ ଓ ଅମର୍ଷରେ ଭ୍ରୂକୁଟି, ବକ୍ର ଓ ନେତ୍ର ରକ୍ତବର୍ଣ୍ଣ କରି ପ୍ରହରଣ ଗ୍ରହଣ ପୂର୍ବକ ମନୋହର ରଥୋପରି ଆରୋହଣ କଲେ ଓ ଉଦାୟୁଧ ହୋଇ ଗମନକାରୀ କୌରବଙ୍କର ଅନୁସରଣ କଲେ । ତଦନନ୍ତର ହେ ଭାରତ ! ସେହି ରାଜା ମାନଙ୍କର ଓ ଭୀଷ୍ମଙ୍କର ଯୁଦ୍ଧ ଉପସ୍ଥିତ ହେଲା । ୨୫ । ଭୀଷ୍ମ ଏକାକୀ ଓ ରାଜାମାନେ ବହୁସଂଖ୍ୟ; ସେମାନଙ୍କ ଯୁଦ୍ଧ ଅତିଶୟ ଲୋମହର୍ଷଣ ବ୍ୟାପାର ହେଲା । ସେମାନେ ସମସ୍ତେ ଦଶ ସହସ୍ର ଶର ତାହାଙ୍କ ପ୍ରତି ନିକ୍ଷେପ କଲେ । ୨୬ ।

ସେ ଶରମାନେ ଉପସ୍ଥିତ ନୋହୁଁ ମଧ୍ୟରେ ସେମାନଙ୍କୁ ଭୀଷ୍ମ ଅତି ଶୀଘ୍ର ଲୋମବାହୀ ଶରବର୍ଷ ଦ୍ୱାରା ଛେଦନ କଲେ । ୨୭ । ତତ୍ପରେ ସେହି ପାର୍ଥିବମାନେ ତାହାଙ୍କୁ ଚତୁଃପାର୍ଶ୍ୱରୁ ବେଷ୍ଟନ କରି ପର୍ବତ ଉପରେ ଅମ୍ବୁଦ ଦ୍ୱାରା ବୃଷ୍ଟିପ୍ରାୟ ତାହାଙ୍କ ଉପରେ ଶର ବର୍ଷଣ କଲେ । ୨୮ । ଭୀଷ୍ମ ସେ ବାଣମୟ ବର୍ଷାକୁ ଶରଦ୍ୱାରା ନିବାରଣ କରି ସବୁ ମହୀପାଳ ମାନଙ୍କ ପ୍ରତି ତିନ ତିନ ଗୋଟି ଶର ପ୍ରହାରକଲେ । ତଦନନ୍ତର ସେମାନେ ଜଣ ଜଣକେ ଭୀଷ୍ମଙ୍କ ପ୍ରତି ୫ ଗୋଟି ବାଣ ନିକ୍ଷେପ କଲେ । ୨୯ । ସେହି ପରାକ୍ରମଶାଳୀ ଭୀଷ୍ମ ସେମାନଙ୍କୁ ପୁନର୍ବାର ପ୍ରତ୍ୟେକ ବ୍ୟକ୍ତିଙ୍କୁ ଦୁଇ ଦୁଇ ଶର ପ୍ରହାରକଲେ । ଦେବ ଓ ଅସୁରଙ୍କ ଯୁଦ୍ଧ ପ୍ରାୟ ସେ ଯୁଦ୍ଧ ଅତି ତୁମୂଳ ହେଲା । ୩୦ । ଲୋକବୀରଙ୍କ ସାକ୍ଷାତରେ ସମର ସ୍ଥଳରେ ଭୀଷ୍ମ ଶତ ଶତ ଓ ସହସ୍ର ସହସ୍ର ଧନୁ, ଧ୍ୱଜାଗ୍ର ବର୍ମ୍ମ ଓ ମସ୍ତକ ମାନଙ୍କୁ ଛେଦନକଲେ । ସେହି ରଥ ଗୁରୁଙ୍କର ଅତିମାନୁଷ ହସ୍ତର ଲଘୁତା ଓ ଯୁଦ୍ଧରେ ଆପଣାର ରକ୍ଷଣ ଦେଖି ଶତ୍ରୁମାନେ ଅତିଶୟ ପ୍ରଶଂସା କଲେ । ସର୍ବ ଶସ୍ତ୍ରଧାରୀଙ୍କ ଶ୍ରେଷ୍ଠ ଭୀଷ୍ମ ରଣରେ ସେହି ରାଜାମାନଙ୍କୁ ଜୟ କରି କନ୍ୟାମାନଙ୍କ ସହିତ ସ୍ୱକୀୟ ରାଜଧାନୀକୁ ଗମନକଲେ । ତତ୍ପରେ ମହାରଥ ଶାଲ୍ୱରାଜ ସ୍ୱୟଂ ଦେଖିଲୁଁ ଆସି ରଣସ୍ଥଳରେ ଶାନ୍ତନୁଙ୍କ ପୁତ୍ର ଭୀଷ୍ମଙ୍କ ସମୀପରେ ଅଟକିତ ହେଲେ । ବାସିତା କରଣୀ ନିମିତ୍ତ ବଳୀ-ଶ୍ରେଷ୍ଠ ଯୂଥପତି ବାରଣ ଯେପରି ଦନ୍ତ ଦ୍ୱାରା ଅପର ବାରଣର ଜଘନରେ ଭେଦକରେ ତଦ୍ରୂପ ସେ

ପାର୍ଥିବ ବୋଇଲେ, ରେ ସ୍ତ୍ରୀ ଲୋଭୀ ! ରହ, ରହ, ମହାବାହୁ ଶାଲ୍ୱରାଜ କ୍ରୋଧରେ ପ୍ରଣୋଦିତ ବାକ୍ୟରେ ଆକୁଳିତ ହୋଇ କ୍ରୋଧରେ ଧୂମଶୂନ୍ୟ ଅଗ୍ନି ଭଳି ପ୍ରଜ୍ୱଳିତ ହେଲେ ଓ କ୍ଷତ୍ରିୟ ଧର୍ମର ନିୟମାନୁସାରେ ନିର୍ଭୟ ଚିତ୍ତରେ ସେହି ମହାରଥୀ ଆକୁଞ୍ଚିତ ଭ୍ରୂ ହୋଇ ଶର ଓ ଧନୁ ବିସ୍ତାର କରି ରଥ ନିବୃତ୍ତ କଲେ । ୩୯ ।

ଭୀଷ୍ମ ଓ ଶାଲ୍ୱଙ୍କର ସମାଗମ ହେବାରୁ ସମସ୍ତ ରାଜାମାନେ ପ୍ରେକ୍ଷଣକାରୀ ହେଲେ । ୪୦ । ଋତୁମତୀ ଗାଭୀ ନିମିତ୍ତ ବଳବାନ ବୃଷଭ ଦ୍ୱୟ ଯେପରି ଗର୍ଜନ କରନ୍ତି ତଦ୍‌ବତ୍ ବଳ ବିକ୍ରମଶାଳୀ ଭୂପତି ଦ୍ୱୟ ପରସ୍ପର ବିକ୍ରମ ପ୍ରକାଶକଲେ । ୪୧ । ତତ୍ପରେ ଶାଲ୍ୱରାଜ ନରଶ୍ରେଷ୍ଠ ଶାନ୍ତନୁ ପୁତ୍ର ଭୀଷ୍ମଙ୍କୁ ଶତ ସହସ୍ର ଆଶୁଗ ବାଣରେ ଆଚ୍ଛନ୍ନ କଲେ । ୪୨ । ପ୍ରଥମବାର ଶାଲ୍ୱରାଜାଙ୍କ ଦ୍ୱାରା ଭୀଷ୍ମ ବିମର୍ଦ୍ଦିତ ହେବାର ଦେଖି ରାଜାମାନେ ବିସ୍ମୟାବିଷ୍ଟ ହେଲେ ଓ ଶାଲ୍ୱଙ୍କ ପ୍ରତି ପୁନଃ ପୁନଃ ସାଧୁବାଦ ପ୍ରଦାନ କଲେ । ୪୩ । ସବୁ ପାର୍ଥିବମାନେ ଶାଲ୍ୱଙ୍କର ଲଘୁହସ୍ତତା ବିଲୋକନ କରି ମନରେ ହୃଷ୍ଟ ହେଲେ ଓ ବଚନ ଦ୍ୱାରା ନରାଧିପ ଶାଲ୍ୱଙ୍କୁ ପ୍ରଶଂସା କଲେ । ୪୪ । ଶତ୍ରୁପୁର ଜୟୀ ଶାନ୍ତନୁଙ୍କ ପୁତ୍ର ଭୀଷ୍ମ କ୍ଷତ୍ରିୟଙ୍କ ବଚନ ଶୁଣି କ୍ରୁଦ୍ଧହୋଇ ବୋଇଲେ ରହ ! ରହ ! ଅଧିକ କ୍ରୁଦ୍ଧ ହୋଇ ସାରଥିକୁ କହିଲେ, ଯେଉଁଠାରେ ସେ ପାର୍ଥିବ ଅଛନ୍ତି ସେଠାକୁ ରଥ ନିଅ । ପକ୍ଷୀରାଜ ଗରୁଡ଼ ଯେପରି ଭୁଜଙ୍ଗମକୁ ବଧକରେ ଆମ୍ଭେ ଅଦ୍ୟ ତାହାଙ୍କୁ ବଧ କରିବୁଁ । ୪୬ ।

ତତ୍ପରେ କୌରବ ବାରୁଣାସ୍ତ୍ର ସମ୍ୟକ୍‌ରୂପେ ଯୋଜନା କଲେ ଓ ତଦ୍ୱାରା ଭୂପତି ଶାଲ୍ୱଙ୍କର ଚାରି ଅଶ୍ୱମାନଙ୍କୁ ମର୍ଦ୍ଦନ କଲେ । ୪୭ । ହେ ନୃପତି ଶାର୍ଦ୍ଦୂଳ ! କୁରୁନନ୍ଦନ ଭୀଷ୍ମ ଅସ୍ତ୍ରଦ୍ୱାରା ଶାଲ୍ୱରାଜାଙ୍କର ସମସ୍ତ ଅସ୍ତ୍ର ନିରାକୃତ କରି ତାହାଙ୍କର ସାରଥିକୁ ବଧ କଲେ । ୪୮ । ଐନ୍ଦ୍ର ଅସ୍ତ୍ର ଦ୍ୱାରା ତୁରଗମାନଙ୍କୁ ନିହତ କଲେ । ୪୯ । ଶାନ୍ତନୁ ତନୟ ଭୀଷ୍ମ କନ୍ୟା ନିମିତ୍ତ ଶାଲ୍ୱଙ୍କୁ ଏହିରୂପେ ପରାଜୟ କରି ତାହାଙ୍କୁ ଜୀବିତାବଶେଷ କରି ପରିତ୍ୟାଗ କଲେ । ୫୦ । ହେ ଭରତର୍ଷଭ ! ତଦନନ୍ତର ଶାଲ୍ୱରାଜ ସ୍ୱନଗରକୁ ଯାଇ ଧର୍ମାନୁସାରେ ସ୍ୱକୀୟ ରାଜ୍ୟକୁ ଅନୁଶାସନ କଲେ । ୫୧ । ସ୍ୱୟଂମ୍ବର ଦେଖିବା ଇଚ୍ଛାରେ ଯେଉଁ

ରାଜାମାନେ ସମାଗତ ହୋଇଥିଲେ, ପରପୁର ଜୟିନ୍ । ସେମାନେ ମଧ୍ୟ ନିଜ ନିଜ ରାଜ୍ୟକୁ ଗମନକଲେ । ୫୨ ।

ଯୋଦ୍ଧୃଶ୍ରେଷ୍ଠ ଭୀଷ୍ମ ଏହି ପ୍ରକାରେ ସେ କନ୍ୟାମାନଙ୍କୁ ଜୟ କରି ନେଇ ଯେଉଁଠାରେ କୌରବ ରାଜା ଧର୍ମାତ୍ମା ବିଚିତ୍ରବୀର୍ଯ୍ୟ ଏହି ବସୁଧାକୁ ତାହାଙ୍କର ପିତା ନୃପସତ୍ତମ ଶାନ୍ତନୁଙ୍କ ପ୍ରାୟ ଶାସନ କରୁଥିଲେ ସେହି ହସ୍ତିନ ପୁରକୁ ଗମନ କଲେ ଓ ଅଚିରକାଳ ମଧ୍ୟରେ ବନ, ନଦୀ, ଶୈଳ ଓ ବିବିଧ ଦ୍ରୁମମାନଙ୍କୁ ଅତିକ୍ରମ କରି ସେଠାରେ ଉପସ୍ଥିତ ହେଲେ । ଏହି ପ୍ରକାର ଅମିତ ବିକ୍ରମ ଧର୍ମାତ୍ମା ଗଙ୍ଗାସୁତ ଯୁଦ୍ଧରେ ସ୍ୱୟଂ ଅକ୍ଷତ ରହି ଓ ଅରିମାନଙ୍କୁ ପରାଜିତ କରି କାଶୀପତିଙ୍କ ସୁତାମାନଙ୍କୁ ନିଜର ବଧୂପ୍ରାୟ ଓ ଅନୁଜା ଭଗିନୀଙ୍କ ପ୍ରାୟ ଓ ଦୁହିତାଙ୍କ ପ୍ରାୟ ଗ୍ରହଣ କରି ଭ୍ରାତାଙ୍କର ପ୍ରିୟ କରିବା ଇଚ୍ଛାରେ ଆନୟନ କଲେ । ୫୭ । ଭ୍ରାତା ଭୀଷ୍ମ ଆପଣାର ବିକ୍ରମରେ ସେହି ସର୍ବଗୁଣ ସମ୍ପନ୍ନ କନ୍ୟାମାନଙ୍କୁ ଗ୍ରହଣ କରି ଆଣି କନିଷ୍ଠ ଭ୍ରାତା ବିଚିତ୍ରବୀର୍ଯ୍ୟଙ୍କୁ ପ୍ରଦାନ କଲେ । ୫୮ ।

ଏହି ପ୍ରକାର ସେହି ଧର୍ମଜ୍ଞ ଧର୍ମରେ ଅତିମାନୁଷ କର୍ମ କରି ଭ୍ରାତା ବିଚିତ୍ରବୀର୍ଯ୍ୟଙ୍କ ବିବାହ ନିମିତ୍ତ ଉଦ୍ୟମ କଲେ । ୫୯ । ସତ୍ୟବତୀଙ୍କ ସହିତ ପରାମର୍ଶ କରି ଆତ୍ମବାନ୍ ଭୀଷ୍ମ ବିବାହ କରାଇବା ବେଳେ କାଶୀ-ପତିଙ୍କର ଜ୍ୟେଷ୍ଠା ସୁତା ହାସ୍ୟ କରି ଏହି ବାକ୍ୟ ବୋଇଲେ । ଆମ୍ଭେ ସୌଭପତିଙ୍କୁ ପୂର୍ବରୁ ପତି ବୋଲି ମନରେ ବରଣ କରିଥିଲୁଁ ଓ ସେ ମଧ୍ୟ ଆମ୍ଭଙ୍କୁ ବରଣ କରିଥିଲେ; ଆମ୍ଭ ପିତାଙ୍କର ମଧ୍ୟ ତଦ୍ରୂପ ଇଚ୍ଛା । ସ୍ୱୟଂମ୍ବରରେ ଆମ୍ଭେ ମଧ୍ୟ ସେହି ଶାଲ୍ୱଙ୍କୁ ବରଣ କରିଥାନ୍ତୁ । ୬୨ । ଏହା ଜାଣି ହେ ଧର୍ମଜ୍ଞ । ତୁମ୍ଭେ ଧର୍ମାଚରଣ କର । ବିପ୍ରମାନଙ୍କ ସଭାରେ ଭୀଷ୍ମଙ୍କୁ ସେ କନ୍ୟା ଏପ୍ରକାର କହନ୍ତେ, ସେ ବୀର ଓ ଧର୍ମଜ୍ଞ ପୁରୁଷ କର୍ତ୍ତବ୍ୟ ସ୍ଥିର କରିବାକୁ ଚିନ୍ତା କଲେ ଓ ବେଦପାରଗ ବିପ୍ରମାନଙ୍କ ସହିତ ପରାମର୍ଶ କରି କାଶୀପତିଙ୍କର ଜ୍ୟେଷ୍ଠା ସୁତା ଅମ୍ବାଙ୍କୁ ଅନୁଜ୍ଞା ଦେଲେ ଯେ ସେ ଶାଲ୍ୱଙ୍କୁ ବିବାହ କରିବେ । ଅମ୍ବିକା ଓ ଅମ୍ବାଳିକା ଦୁହିଁଙ୍କୁ କନିଷ୍ଠ ଭ୍ରାତାଙ୍କ ଭାର୍ଯ୍ୟା କରିଦେଲେ । ୬୫ ।

ରୂପ ଯୌବନ ସମ୍ପନ୍ନ ଧର୍ମାତ୍ମା ବିଚିତ୍ରବୀର୍ଯ୍ୟ ଅମ୍ବିକା ଓ ଅମ୍ବା-ଳିକାଙ୍କର ପାଣିଗ୍ରହଣ କରି କାମାନୁବର୍ତ୍ତୀ ହେଲେ । ୬୬ । ନୀଳ କୁଞ୍ଚିତ

କେଶୀ, ଶ୍ୟାମା ରକ୍ତବର୍ଣ୍ଣା ଓ ଉନ୍ନତନଖଯୁକ୍ତା, ପୀନ ନିତମ୍ବିନୀ, ପୀନ-ପଯୋଧରା କଲ୍ୟାଣୀ ଓ ସୁଲକ୍ଷଣୀ କନ୍ୟାମାନେ ମଧ୍ୟ ବିଚିତ୍ରବୀର୍ଯ୍ୟଙ୍କୁ ଅପରୂପ ସଦ୍‌ଗୁଣ ସମ୍ପନ୍ନ ଜାଣି ତାହାଙ୍କର ମନୋରଞ୍ଜନ କଲେ । ୬୮ । ଅଶ୍ୱିନୀକୁମାରଙ୍କ ସଦୃଶ ରୂପବାନ୍ ଓ ଦେବସମ ପରାକ୍ରମଶାଳୀ ବିଚିତ୍ରବୀର୍ଯ୍ୟ ମଧ୍ୟ ନିର୍ଜନରେ ଉତ୍ତମସୁନ୍ଦରୀଙ୍କର ମନମୋହନକାରୀ ହେଲେ । ୬୯ ।

ପୃଥିବୀପତି ବିଚିତ୍ରବୀର୍ଯ୍ୟ ସେମାନଙ୍କ ସହ ସାତବର୍ଷ ବିହରଣ କରି ଯକ୍ଷ୍ମାରୋଗରେ ଆକ୍ରାନ୍ତ ହେଲେ । ୭୦ । ସୁହୃଦବର୍ଗ ବିଶ୍ୱାସୀ ଚିକିତ୍ସକଙ୍କ ଦ୍ୱାରା ଅନେକ ଯତ୍ନ କଲେ ହେଁ, ସେ କୌରବ୍ୟ ଅସ୍ତଗାମୀ ସୂର୍ଯ୍ୟ ପରି ଯମାଳୟକୁ ଗମନ କଲେ । ଧର୍ମାତ୍ମା ଗାଙ୍ଗେୟ ଚିନ୍ତା ଓ ଶୋକ ପରାୟଣ ହୋଇ ସତ୍ୟବତୀଙ୍କ ମତରେ ରହି ସମସ୍ତ କୁରୁବଂଶୀୟ ପ୍ରଧାନ ବ୍ୟକ୍ତି ଓ ଋତ୍ୱିକମାନଙ୍କ ସହ ବିଚିତ୍ରବୀର୍ଯ୍ୟଙ୍କର ସମସ୍ତ ପ୍ରେତକର୍ମ ସମ୍ୟକ୍‌ରୂପେ ସମ୍ପାଦନ କରାଇଲେ । ୭୩ ।

---

## ଅଧ୍ୟାୟ ୧୦୩

ବୈଶମ୍ପାୟନ ବୋଇଲେ—ହେ ଭାରତ ! ତଦନନ୍ତର ଦୀନା ଓ ଯୋଗ୍ୟା, ପୁତ୍ରାର୍ଥିନୀ ସତ୍ୟବତୀ ଦୁଇ ବଧୂଙ୍କୁ ନେଇ ପୁତ୍ରଙ୍କର ଅନ୍ତ୍ୟେଷ୍ଟି-କାର୍ଯ୍ୟ କରି ସେହି ସ୍ନୁଷା ଦ୍ୱୟଙ୍କୁ, ଶସ୍ତ୍ରଧାରୀବର ଭୀଷ୍ମଙ୍କୁ ସାନ୍ତ୍ୱନା କଲେ ଓ ମାତୃବଂଶର ଏବଂ ପିତୃବଂଶଙ୍କର ଅବସ୍ଥା ଚିନ୍ତାକରି ଧର୍ମ ପ୍ରତି ଦୃଷ୍ଟି ରଖି ମହାତ୍ମା ଗାଙ୍ଗେୟଙ୍କୁ ବୋଇଲେ । ୨ । ଧର୍ମନିଷ୍ଠ, ଯଶସ୍ୱୀ କୁରୁବଂଶୀୟ ରାଜା ଶାନ୍ତନୁଙ୍କର କୀର୍ତ୍ତି ଓ ପିଣ୍ଡ ଏକାକେ ତୁମ୍ଭଠାରେ ପ୍ରତିଷ୍ଠିତ ଅଛି ।୩। ଯେପରି ଶୁଭକର୍ମ କଲେ ନିଶ୍ଚୟ ସ୍ୱର୍ଗ ଲାଭ ହୁଅଇ; ସତ୍ୟନିଷ୍ଠାରେ ନିଶ୍ଚୟ ତଦ୍ରୂପ ତୁମ୍ଭଠାରେ ଧର୍ମ ପ୍ରତିଷ୍ଠିତ ହୋଇଅଛି । ୪ । ହେ ଧର୍ମଜ୍ଞ ! ତୁମ୍ଭେ ସବୁଧର୍ମ ଅବଗତ ଅଛ । ନାନାବିଧ ଶ୍ରୁତି ଓ ସମସ୍ତ ବେଦାଙ୍ଗ ସଂକ୍ଷେପରେ ଓ ବିସ୍ତାର ରୂପେ ଜାଣ ୫ । ଶୁକ୍ର ଓ ଅଙ୍ଗିରାଙ୍କ ପ୍ରାୟ ତୁମ୍ଭର ଧର୍ମନିଷ୍ଠତା କୁଳାଚାରର ଅଭିଜ୍ଞତା ଓ ବିପଦ୍ କାଳରେ କର୍ତ୍ତବ୍ୟ ସ୍ଥିର କରିବାର ଅଭିଜ୍ଞତା ସାମର୍ଥ୍ୟ ଅଛି । ୬ । ଅତଏବ ହେ ଧାର୍ମିକ ପ୍ରବର ! ଫଳସିଦ୍ଧି

ଆଶାରେ ତୁମ୍ଭଙ୍କୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବାକୁ ଇଚ୍ଛା କରୁଅଛୁଁ ତାହା ଶ୍ରବଣ କରି ସମ୍ପାଦନ କରିବାର ଯତ୍ନବାନ ହୁଅ । ୭ ।

ପୁନି ବିଚିତ୍ରବୀର୍ଯ୍ୟ ତୁମ୍ଭର ପ୍ରିୟ ଭ୍ରାତା ଥିଲେ; ହେ ପୁରୁଷର୍ଷଭ ! ସେ ବାଳକ ବୟସରେ ଅପୁତ୍ର ହୋଇ ସ୍ୱର୍ଗ ଗମନ କଲେ । ୮ । ହେ ଭାରତ ! ତୁମ୍ଭ ଭ୍ରାତାଙ୍କର ମହିଷୀ ରୂପ ଯୌବନ ସମ୍ପନ୍ନା, ଶୁଭ ଲକ୍ଷଣା, କାଶୀରାଜଙ୍କର ଏହି ଦୁଇଗୋଟି ସୁତା ପୁତ୍ରାର୍ଥିନୀ ହୋଇଅଛନ୍ତି । ୯ । ହେ ମହାବାହୋ ! ତୁମ୍ଭେ ଆମ୍ଭ ନିଯୋଗକ୍ରମେ କୁଳରକ୍ଷା ନିମିତ୍ତ ସେମାନଙ୍କ ଠାରେ ଅପତ୍ୟ ଉତ୍ପାଦନ କରି ଧର୍ମ୍ମାଚରଣ କର । ୧୦ । ରାଜ୍ୟରେ ଅଭିଷିକ୍ତ ହୁଅ, ଭାରତବର୍ଷକୁ ଅନୁଶାସନ କର । ଧର୍ମ୍ମାନୁସାରେ ଦାର ପରିଗ୍ରହ କର ଓ ପିତାମହମାନଙ୍କୁ ଉଦ୍ଧାର କର । ୧୧ ।

ବୈଶମ୍ପାୟନ ବୋଇଲେ—ମାତା ଓ ସୁହୃଦ୍‌ବର୍ଗଙ୍କର ତଦ୍ରୂପ ବଚନ ଶ୍ରବଣ କରି ପରମ ତପସ୍ୱୀ ଓ ଧର୍ମ୍ମାତ୍ମା ଭୀଷ୍ମ, ଧର୍ମ୍ମୋଚିତ ବଚନକୁ ଉତ୍ତର କଲେ । ୧୨ । ହେ ମାତଃ ! ତୁମ୍ଭେ ଉଚିତ ଉତ୍କୃଷ୍ଟ ଧର୍ମ କଥା କହିଲ—ଏଥିରେ ସଂଶୟ ନାହିଁ; କିନ୍ତୁ ଅପତ୍ୟ ଉତ୍ପାଦନ ବିଷୟରେ ତୁମ୍ଭେ ଆମ୍ଭର ମହତୀ ପ୍ରତିଜ୍ଞା ବିଦିତ ଅଛ । ୧୩ । ତୁମ୍ଭର ବିବାହ ସମୟରେ ଶୁଳ୍କ ସ୍ୱରୂପ ଯାହା ପଣ ହୋଇଥିଲା ତାହା ମଧ୍ୟ ତୁମ୍ଭେ ଅବଗତ ଅଛ; ହେ ସତ୍ୟବତୀ ! ପୁନର୍ବାର ଆମ୍ଭେ ତୁମ୍ଭ ନିକଟରେ ସେହି ପ୍ରତିଜ୍ଞା କରୁଅଛୁଁ । ୧୪ । ଆମ୍ଭେ ତ୍ରୈଲୋକ୍ୟ ପରିତ୍ୟାଗ କରିପାରୁଁ; ଦେବଲୋକର ରାଜ୍ୟ ପରିତ୍ୟାଗ କରିପାରୁଁ; ଅଥବା ଏମାନଙ୍କଠାରୁ ଯାହା ଅଧିକ ତାହା ମଧ୍ୟ ପରିତ୍ୟାଗ କରିପାରୁଁ; କିନ୍ତୁ ସତ୍ୟକୁ ଆମ୍ଭେ କଦାପି ତ୍ୟାଗ କରିବୁ ନାହିଁ । ୧୫ । ପୃଥିବୀ ଗନ୍ଧଗୁଣକୁ ତ୍ୟାଗ କରିପାରେ, ଜଳ ଆପଣାର ରସକୁ ଓ ଜ୍ୟୋତି ରୂପକୁ ତ୍ୟାଗ କରିପାରେ, ବାୟୁ ସ୍ପର୍ଶକୁ ତ୍ୟାଗ କରିପାରେ, ସୂର୍ଯ୍ୟ ନିଜର ପ୍ରଭାକୁ ତ୍ୟାଗ କରି ପାରନ୍ତି, ଧୂମକେତୁ ଉଷ୍ଣତାକୁ ତ୍ୟାଗ କରିପାରେ, ଆକାଶକୁ ଶବ୍ଦଗୁଣ ତ୍ୟାଗ କରିପାରେ, ସୋମଶୀତତ୍ୱ ବିସର୍ଜ୍ଜନ କରିପାରେ, ବୃତ୍ରବଧକର୍ତ୍ତା ବିକ୍ରମକୁ ଛାଡ଼ି ପାରନ୍ତି, ଧର୍ମ୍ମରାଜ ଧର୍ମ୍ମକୁ ପରିତ୍ୟାଗ କରି ପାରନ୍ତି; କିନ୍ତୁ ଅମ୍ଭେ କୌଣସି ପ୍ରକାରେ ସତ୍ୟକୁ ଉତ୍ସର୍ଗ କରି ପାରିବୁଁ ନାହିଁ, ଏ ଆମ୍ଭର ନିଶ୍ଚୟ ଜାଣ । ୧୮ ।

ପୁତ୍ରଙ୍କର ଏତାଦୃଶ ତେଜଃସମନ୍ୱିତ ପ୍ରତିଜ୍ଞା ଶ୍ରବଣ କରି ମାତା ସତ୍ୟବତୀ ପୁନଶ୍ଚ ଭୀଷ୍ମଙ୍କୁ କହିଲେ, ହେ ସତ୍ୟ ପରାକ୍ରମ ! ସତ୍ୟରେ

ତୁମ୍ଭର ଅବସ୍ଥିତିକୁ ଆମ୍ଭେ ଜ୍ଞାତ ଅଛୁଁ, ତୁମ୍ଭେ ଇଚ୍ଛା କଲେ ସ୍ୱୀୟ ତେଜୋ ଦ୍ୱାରା ଅନ୍ୟ ତ୍ରିଲୋକ ସର୍ଜ୍ଜନା କରିପାର; ଆମ୍ଭ ନିମିତ୍ତ ତୁମ୍ଭେ ଯେଉଁ ସତ୍ୟ କରିଥିଲ ତାହା ମଧ୍ୟ ଆମ୍ଭେ ଜାଣୁ, ଆପଦ୍ଧର୍ମ୍ମକୁ ବିଲୋକନ କରି ବଂଶରକ୍ଷାର ଭାର ବହନ କର । ୨୧ । ହେ ପରନ୍ତପ ! ଯେପରି ତୁମ୍ଭର ବଂଶର ସନ୍ତତି ଓ ଧର୍ମ୍ମ ପରାଭୂତ ନ ହୁଏ ଓ ସୁହୃଦବର୍ଗ ହୃଷ୍ଟ ହୁଅନ୍ତି ତାହା କର । ୨୨ । ସତ୍ୟବତୀ ପୁତ୍ରଶୋକରେ ଅତ୍ୟନ୍ତ କାତରା ହୋଇ ଏହି ପ୍ରକାର ବିଳାପ କରି ଧର୍ମ୍ମବିଗର୍ହିତ କଥାକୁ କହିବାର ଶୁଣି ଭୀଷ୍ମ ପୁନର୍ବାର ବୋଇଲେ । ୨୩ । ହେ ରାଜ୍ଞି ! ତୁମ୍ଭେ ଧର୍ମ୍ମାଲୋଚନା କର; ଆମ୍ଭମାନଙ୍କ ସମସ୍ତଙ୍କ ବିନଷ୍ଟ କରନା; ସତ୍ୟରୁ ଚ୍ୟୁତ ହେବା କ୍ଷତ୍ରିୟ ପକ୍ଷରେ ଅଧର୍ମ୍ମ ଅଟେ । ୨୪ । ଶାନ୍ତନୁଙ୍କ ସନ୍ତାନ ଯେପରି ପୃଥିବୀରେ ଅକ୍ଷୟ ହେବେ, ସେହି ସନାତନ କ୍ଷତ୍ରିୟ ଧର୍ମ୍ମକୁ ଆମ୍ଭେ ତୁମ୍ଭଙ୍କ କହୁଅଛୁଁ । ୨୫ । ତାହା ଶ୍ରବଣ କରି ଓ ଲୋକାଗ୍ରର ଦେଖି ଆପଦ୍ଧର୍ମ୍ମାର୍ଥବେତ୍ତା ପ୍ରାଜ୍ଞ ପୁରୋହିତଙ୍କ ସହ ବିବେଚନା କର । ୨୬ ।

---

## ଅଧ୍ୟାୟ ୧୦୪

ଭୀଷ୍ମବୋଇଲେ—ପୂର୍ବକାଳରେ ଜମଦଗ୍ନିଙ୍କର ପୁତ୍ର ରାମ ପିତୃବଧ ସନ୍ତାପକୁ ସହ୍ୟ କରି ନ ପାରି ହୈହୟ ଦେଶର ଅଧିପତିଙ୍କ ବଧ କଲେ, ଅର୍ଜ୍ଜୁନଙ୍କର ଦଶଶତ ବାହୁ ଛେଦନ କଲେ । ସେ ଏହି ଲୋକରେ ଅତି ଦୁଷ୍କର ଧର୍ମକୁ ଆଚରଣ କଲେ । ତଦନନ୍ତର ଧନୁ ଗ୍ରହଣ କରି ମହାସ୍ତ୍ରମାନଙ୍କ ତ୍ୟାଗ କରି ଓ ରଥାରୋହଣ ପୂର୍ବକ ମହୀକୁ ଜୟକରି କ୍ଷତ୍ରିୟ କୁଳକୁ ଦହନ କଲେ । ଏହି ପ୍ରକାରେ ମହାତ୍ମା ଭାର୍ଗବ ଅସ୍ତ୍ର ପ୍ରହାର ଦ୍ୱାରା ପୂର୍ବକାଳରେ ପୃଥିବୀକୁ ଏକବିଂଶତ ବାର ନିଃକ୍ଷତ୍ରିୟ କଲେ । ୪ ।

ସେ ମହର୍ଷି ଏହିପ୍ରକାର ଲୋକକୁ ନିଃକ୍ଷତ୍ରିୟ କରିବାରୁ କ୍ଷତ୍ରିୟ-ମାନେ ବେଦ ପାରଗ ବ୍ରାହ୍ମଣ ଦ୍ୱାରା ଅପତ୍ୟ ଉତ୍ପାଦନ କଲେ । ବେଦରେ ନିଶ୍ଚିତ ଅଛି ଯେ, ଯେ ପାଣିଗ୍ରହଣ କରିଥାଏ, ତନୟ ତାହାର ହୁଅଇ । ୬ । ବଂଶ ରକ୍ଷା କରିବା ଅଭିଳାଷରେ ସେହି ସ୍ତ୍ରୀମାନେ ବ୍ରାହ୍ମଣଙ୍କ ସହିତ ସଙ୍ଗମ କଲେ । ଏହି ପ୍ରକାରେ ଲୋକରେ କ୍ଷତ୍ରିୟ କୁଳର ପୁନରୁତ୍ପତ୍ତି

ଦେଖାଯାଏ । ତଦନନ୍ତର କ୍ଷତ୍ରିୟ ବଂଶ ପୁନର୍ବାର ସମୁଦିତ ହେଲା । ଏ ବିଷୟରେ ଅମ୍ଭେ ପୁରାତନ ଇତିହାସ କହୁଅଛୁଁ । ୮ ।

ପୂର୍ବକାଳରେ ଉତଥ୍ୟ ନାମରେ ଗୋଟିଏ ମହାନ୍ ଋଷି ଥିଲେ । ତାହାଙ୍କର ଅତିପ୍ରିୟା ମମତା ନାମ୍ନୀ ଭାର୍ଯ୍ୟା ଥିଲେ । ୯ । ଉତଥ୍ୟଙ୍କର କନିଷ୍ଠ ଭ୍ରାତା ଦେବତାଙ୍କ ପୁରୋହିତ ବୃହତ୍ତେଜା ବୃହସ୍ପତି କାମାତୁର ହୋଇ ମମତାଙ୍କ ଠାରେ ଉପସ୍ଥିତ ହେଲେ । ମମତା ଦେବରଙ୍କୁ ବୋଇଲେ,—ଅମ୍ଭେ ତୁମ୍ଭର ଜ୍ୟେଷ୍ଠଭ୍ରାତାଙ୍କ ଦ୍ୱାରା ଅନ୍ତଃସତ୍ତ୍ୱା ହୋଇଅଛୁଁ; ଅତଏବ ରମଣର ଇଚ୍ଛା ସମ୍ବରଣ କର । ହେ ମହାଭାଗ ବୃହସ୍ପତେ । ଅମ୍ଭ କୁକ୍ଷିରେ ଏହି ଉତଥ୍ୟଙ୍କ ପୁତ୍ର ବେଦ ଓ ତାହାର ଷଡ଼ଙ୍ଗ ଅଧ୍ୟୟନ କରୁଅଛନ୍ତି । ୧୨ । ତୁମ୍ଭେ ମଧ୍ୟ ଅମୋଘବୀର୍ଯ୍ୟ । ଦୁଇଗୋଟି ଶିଶୁର ଏଠାରେ ସ୍ଥାନ ନାହିଁ । ଅତଏବ ତୁମ୍ଭେ ଉପରତ ହୁଅ । ୧୩ । ଏହା ଶୁଣି ସୁଦ୍ଧା ଉଦାର ବୁଦ୍ଧି ବୃହସ୍ପତି, ଆପଣାର କାମାଭିଭୂତ ମନକୁ ନିଗ୍ରହ କରି ପାରିଲେ ନାହିଁ । ସେହି ଅକାମାଙ୍କ ସହ ବୃହସ୍ପତି କାମୀ ହେଲେ ଓ ତାହାଙ୍କୁ ରେତସ୍ତ୍ୟାଗ କରିବାର ଦେଖି ଗର୍ଭସ୍ଥ ଶିଶୁ ଭାଷିଲା ହେ ତାତ । ତୁମ୍ଭେ କାମର ବଶବର୍ତ୍ତୀ ହୁଅନା, ଏଠାରେ ଦୁଇଜଣଙ୍କର ରହିବାର ସ୍ଥାନ ନାହିଁ । ହେ ଭଗବାନ୍ । ଏଠାରେ ସ୍ଥାନ ଅଳ୍ପ, ଅମ୍ଭେ ଅଗ୍ରେ ଏଠାକୁ ଆସିଅଛୁଁ । ୧୬ ।

ଆପଣ ଅମୋଘରେତା ପୀଡ଼ା ପ୍ରଦାନ କର ନା; ଗର୍ଭସ୍ଥ ଶିଶୁର ସେ ବାକ୍ୟକୁ ବୃହସ୍ପତି ନ ଶୁଣି ଚାରୁଲୋଚନା ମମତାଙ୍କ ଠାକୁ ଅଭିଗମନ କଲେ । ତଦନନ୍ତର ସେହି ଗର୍ଭଗତ-ମୁନି ଶୁକ୍ରତ୍ୟାଗର ସମୟ ଜାଣି ଶୁକ୍ରପତନର ମାର୍ଗକୁ ପଦଦ୍ୱାରା ଅବରୋଧ କଲେ । ବୃହସ୍ପତିଙ୍କର ଶୁକ୍ର ସ୍ଥାନ ପ୍ରାପ୍ତ ନ ହୋଇ ଓ ପ୍ରତିହତ ହୋଇ ସହସା ଭୂମିରେ ପତିତ ହେଲା । ତହିଁରେ ବୃହସ୍ପତି ଅତିଶୟ କ୍ରୁଦ୍ଧ ହେଲେ ଓ ଶୁକ୍ରକୁ ପତିତ ହେବାର ଦେଖି ଅଭିଶାପ ଦେଲେ । ୨୦ ।

ଉତଥ୍ୟଙ୍କର ଗର୍ଭସ୍ଥ ପୁତ୍ରଙ୍କୁ ଭଗବାନ୍ ଋଷି ଭର୍ତ୍ସନା କରି ବୋଇଲେ—ଯେ ହେତୁରୁ ସର୍ବ ପ୍ରାଣୀଙ୍କର ଅଭିଳଷିତ ଈଦୃଶ ସମୟରେ ଅମ୍ଭଙ୍କୁ ଏପରି କହିଲେ, ଅତଏବ ଏହି ଅପରାଧରେ ତୁମ୍ଭେ ଯାବଜ୍ଜୀବନ ଅନ୍ଧ ହେବ । ତେଜରେ ବୃହତକୀର୍ତ୍ତି ବୃହସ୍ପତିଙ୍କ ସଦୃଶ ହୋଇ ସେହି

ବାଳକ ଅନ୍ଧ ହୋଇ ଜନ୍ମ ହେଲେ । ତାହାଙ୍କର ନାମ ଦୀର୍ଘତମା । ସେହି ବେଦବତ୍ତ ପ୍ରାଜ୍ଞ ଜନ୍ମାନ୍ଧ ହେଲେ ମଧ୍ୟ ବିଦ୍ୟାବଳରେ ସେ ପ୍ରଦ୍ୱେଷୀ ନାମ୍ନୀ ରୂପବତୀ ବ୍ରାହ୍ମଣୀଙ୍କୁ ପ୍ରାପ୍ତ ହେଲେ; ସେହି ମହାଯଶା ଉତଥ୍ୟଋଷିଙ୍କ କୁଳ-ବୃଦ୍ଧି ନିମିତ୍ତ ଗୌତମାଦି ପୁତ୍ରମାନଙ୍କୁ ଜାତ କଲେ । ସେ ପୁତ୍ରମାନେ ଲୋଭ ଓ ମୋହରେ ଅଭିଭୂତ ହେଲେ । ୨୫ । ଅନନ୍ତର ବେଦବେଦାଙ୍ଗ ପାରଗ ଧର୍ମାତ୍ମା ଓ ମହାତ୍ମା ଦୀର୍ଘତମା ସୁରଭିଙ୍କ ସନ୍ତତଠାରୁ ନିଖିଳ ଗୋ-ଧର୍ମ୍ମ ଅଧ୍ୟୟନ କରି ନିଃଶଙ୍କ ଚିତ୍ତରେ ଗୋ-ମୈଥୁନ କରିବାରେ ପ୍ରବୃତ୍ତ ହେଲେ । ତଦନନ୍ତର ଯେ ଆଶ୍ରମବାସୀ ମୁନିସତ୍ତମମାନେ ତାହାଙ୍କୁ ଧର୍ମଭ୍ରଷ୍ଟ ହେବାର ଦେଖି କ୍ରୋଧ ଓ ମୋହରେ ଅଭିଭୂତ ହୋଇ ବିଚାରିଲେ ଯେ ଏ ବ୍ୟକ୍ତି ମର୍ଯ୍ୟାଦା ଅତିକ୍ରମ କରିଅଛି, ଆଶ୍ରମରେ ବାସ କରିବାର ଉପଯୁକ୍ତ ନୁହଇ । ୨୮ । ଅତଏବ ଏହି ପାପାତ୍ମାକୁ ଆମ୍ଭମାନଙ୍କର ପରିତ୍ୟାଗ କରିବା କର୍ତ୍ତବ୍ୟ । ଏହିପରି ସେମାନେ ପରସ୍ପର କଥୋପକଥନ କରି ଦୀର୍ଘତମା ମୁନିଙ୍କୁ ପୂର୍ବପରି ଆଦର କଲେ ନାହିଁ । ତାହାଙ୍କର ସ୍ତ୍ରୀମଧ୍ୟ ପୁତ୍ରଲାଭ କରି ଆଗପରି ପତି ଶୁଶ୍ରୂଷା ନ କରିବାରୁ ଦୀର୍ଘତମା ପତ୍ନୀଙ୍କୁ ବୋଇଲେ କି କାରଣ ତୁମ୍ଭେ ଆମ୍ଭଠାରେ ଦ୍ୱେଷ କରୁଅଛ ? । ୩୦ ।

ପ୍ରଦ୍ୱେଷୀ ବୋଇଲେ— ଭାର୍ଯ୍ୟାର ଭରଣ କରିବାରୁ ଭର୍ତ୍ତା ନାମ, ଓ ପାଳନ କରିବାରୁ ପତି ନାମ ହୋଇଅଛି । କିନ୍ତୁ ତୁମ୍ଭେ ଜାତାନ୍ଧ ଥିବାରୁ ତୁମ୍ଭଙ୍କୁ ଓ ତୁମ୍ଭର ସୁତଙ୍କୁ ନିତ୍ୟକାଳ ଭରଣ କରି ଶ୍ରମରେ କାତର ହୋଇଅଛୁଁ । ହେ ମହାତପାଃ । ଆଉ ଭରଣ କରିପାରିବୁ ନାହିଁ ।

ଭୀଷ୍ମ ବୋଇଲେ—ସେ ନାରୀର ତଦ୍ରୂପ ବଚନ ଶ୍ରବଣକରି କୋପ ସମନ୍ୱିତ ହୋଇ ସସୁତ । ପ୍ରଦ୍ୱେଷୀଙ୍କୁ ପ୍ରତ୍ୟୁତ୍ତର କଲେ, "ଆମ୍ଭଙ୍କୁ କ୍ଷତ୍ରିୟ କୁଳକୁ ଘେନିଯାଅ । ସେଠାରୁ ତୁମ୍ଭେ ଧନମତୀ ହେବ । ୩୩ ।"

ପ୍ରଦ୍ୱେଷୀ ବୋଇଲେ—ହେ ବିପ୍ର । ତୁମ୍ଭ ପ୍ରଦତ୍ତ ଧନକୁ ଆମ୍ଭେ ଇଚ୍ଛା କରୁନାହୁଁ ! ସେ ଧନ ଆମ୍ଭର ଦୁଃଖର କାରଣ । ହେ ବିପ୍ରେନ୍ଦ୍ର ! ପୂର୍ବପ୍ରାୟ ଆମ୍ଭେ ତୁମ୍ଭଙ୍କୁ ଭରଣ ନକଲେ ଯଥେଷ୍ଟ ହେଲା । ୩୪ ।

ଦୀର୍ଘତମା ବୋଇଲେ—ଆମ୍ଭେ ଲୋକରେ ଏହି ମର୍ଯ୍ୟାଦା ସ୍ଥାପନ କଲୁଁ, ଯେ ନାରୀଙ୍କର ଏକମାତ୍ର ପତି, ଯେତେକାଳ ସେ ଜୀବିତ ଥିବେ ସେକାଳ ପର୍ଯ୍ୟନ୍ତ ଆଶ୍ରୟ ହୋଇଥିବେ । ପତି ଜୀବିତ ଥାଉନ୍ତୁ ବା ମୃତ

ହେତୁରୁ ନାରୀ କାହାରକୁ ପ୍ରାପ୍ତ ହୋଇପାରବେ ନାହିଁ । ନାରୀ ଯେବେ ଅପର ବ୍ୟକ୍ତିସହ ଅଭିଗମନ କରେ ତେବେ ସେ ପତିତା ହେବ; ଏଥିରେ ସଂଶୟ ନାହିଁ । ଅପତି ନାରୀମାନଙ୍କର ଅଦ୍ୟ ପ୍ରଭୃତି ପାତକ ହେବ । ପତି ବିହୀନା ନାରୀମାନଙ୍କର ଯେତେ ଧନ ଥାଉ ତାହା ସେମାନେ ଭୋଗକର ପାରବେନାହିଁ । ସେ ସବୁଧନ ବୃଥା ହେବ ଓ ତାହାଙ୍କର ଅକୀର୍ତ୍ତି ଓ ପରୀବାଦ ସର୍ବଦା ଘଟିବ । ୩୭ । ବ୍ରାହ୍ମଣୀ ତାହାଙ୍କର ଏତାଦୃଶ ବଚନ ଶ୍ରବଣକର କୁପିତା ହୋଇ ବୋଇଲେ—ହେ ପୁତ୍ରମାନେ ! ଏହାଙ୍କୁ ଗଙ୍ଗାରେ ନିକ୍ଷେପକର । ୩୮ । ଗୌତମାଦି ପୁତ୍ରମାନେ ଲୋଭ ଓ ମୋହରେ ଅଭିଭୂତ ହୋଇ ଗୋଟିଏ ଭେଳା ପରେ ସେ ଋଷିଙ୍କୁ ବାନ୍ଧିକର ଗଙ୍ଗା ମଧ୍ୟରେ ବିସର୍ଜନ କଲେ । ସେମାନେ ବିଚାରିଲେ ଯେ ଏହି ବୃଦ୍ଧ ଓ ଅନ୍ଧଟାକୁ କି କାରଣ ଭରଣ ପୋଷଣ କରିବା; ଏହା ଭାଳି ସେ କ୍ରୁର ପୁତ୍ରମାନେ ଗୃହକୁ ପ୍ରତିଗମନ କଲେ ।୪୦।

ସେହି ଅନ୍ଧ ଭେଳାରେ ରହି ଗଙ୍ଗା ସ୍ରୋତରେ ଭାସି ଭାସି ବହୁସଂଖ୍ୟ ଦେଶମାନଙ୍କୁ ଅତିକ୍ରମ କଲେ । ୪୧ । ତଦନନ୍ତର ବଲୀ ନାମକ ରାଜା ସ୍ନାନାର୍ଥଆଗମନ କରିଥିଲେ । ସର୍ବଧର୍ମବିଶାରଦ ସେହି ରାଜା, ସେହି ଋଷିଙ୍କୁ ଭେଳାରେ ଭାସି ଯାଉଥିବାର ଦେଖିଲେ । ୪୨ । ଧର୍ମାତ୍ମା ଓ ସତ୍ୟପରାକ୍ରମବଲୀ ଏହାଙ୍କୁ ଗ୍ରହଣ କଲେ ଓ ହେ ଭରତର୍ଷଭ ! ସେହି ଋଷିଙ୍କୁ ଶରଣି ପାଇ ବୋଇଲେ—ହେ ମହାଭାଗ ! ତୁମ୍ଭେ ଆମ୍ଭ ମହିଷୀଙ୍କ ଠାରେ ଧର୍ମାର୍ଥ କୁଶଳ ପୁତ୍ରମାନଙ୍କୁ ଉତ୍ପାଦନ କର । ଏହା ଶୁଣି ସେ ଋଷି 'ହେଉ' ବୋଲି କହିଲେ । ୪୪ । ସେହି କାଳରେ ରାଜା ଆପଣାର ଭାର୍ଯ୍ୟା ସୁଦେଷ୍ଣାଙ୍କୁ ସେ ଋଷିଙ୍କ ନିକଟକୁ ପ୍ରେରଣ କଲେ । କିନ୍ତୁ ସେ ରାଣୀ ଋଷିଙ୍କୁ ବୃଦ୍ଧ ଓ ଅନ୍ଧ ଦେଖି ତାହାଙ୍କ ନିକଟକୁ ଗମନ କଲେ ନାହିଁ । ୪୫ ।

ଆପଣାର ଧାତ୍ରେୟିକାକୁ ବୃଦ୍ଧଙ୍କ ନିକଟକୁ ପଠାଇଲେ । ଧର୍ମାତ୍ମା ଓ ଜିତେନ୍ଦ୍ରିୟ ଋଷି ସେହି ଶୂଦ୍ର ଯୋନିରେ କାକ୍ଷିବାନ୍ ପ୍ରଭୃତି ଏକାଦଶ ପୁତ୍ରକୁ ଜନ୍ମ କଲେ । ୪୭ । ତଦନନ୍ତର ସେହି ଶୁଦ୍ଧତମ ପୁତ୍ରମାନଙ୍କୁ ଅଧ୍ୟୟନ କରୁଥିବାର ଦେଖି ରାଜା ବୋଇଲେ, ଏ ପୁତ୍ର ଗୁଡ଼ିକ କି ଆମ୍ଭର ? ମହର୍ଷି ଉତ୍ତର କଲେ, 'ନା' ଏମାନେ ଆମ୍ଭର ପୁତ୍ର, ଏହି କାକ୍ଷୀବତ୍ ପ୍ରଭୃତି ପୁତ୍ରମାନଙ୍କୁ ଅମ୍ଭେ ଶୁଦ୍ର ଯୋନିରେ ଜାତ କରିଅଛୁଁ ।

ତୁମ୍ଭର ମହର୍ଷୀ ସୁଦେଷ୍ଣା ଆମ୍ଭଙ୍କୁ ବୃଦ୍ଧ ଓ ଅନ୍ଧ ଦେଖି, ଆମ୍ଭଙ୍କୁ ଅବମାନନା କରି ଅଜ୍ଞାନ ହେତୁରୁ ଶୁଦ୍ରା ଧାତ୍ରେୟିକାକୁ ଆମ୍ଭଠାକୁ ପ୍ରେରଣକଲେ ।୫୦।

ତଦନନ୍ତର ବଳୀ ପୁନର୍ବାର ସେ ଋଷି ସତ୍ତମଙ୍କୁ ପ୍ରସନ୍ନ କଲେ ଓ ପୁନର୍ବାର ସ୍ୱକୀୟ ଭାର୍ଯ୍ୟା ସୁଦେଷ୍ଣାଙ୍କୁ ତାହାଙ୍କ ସମୀପକୁ ପ୍ରେରଣକଲେ ।୫୧। ଅନନ୍ତର ଦୀର୍ଘତମା ସେହି ମହର୍ଷୀଙ୍କର ଅଙ୍ଗ ସ୍ପର୍ଶକରି ବୋଇଲେ, ତୁମ୍ଭର ଆଦିତ୍ୟସମ ତେଜସ୍ୱୀ ପଞ୍ଚପୁତ୍ର ହେବେ । ସେମାନଙ୍କର ନାମ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ହେବ ଓ ସେମାନେ ଆପଣା ଆପଣା ନାମରେ ଦେଶମାନଙ୍କୁ ଏହି ପୃଥିବୀରେ ସ୍ଥାପନ କରିବେ । ୫୩ । ଅଙ୍ଗଙ୍କର ଅଙ୍ଗ ନାମକ ଦେଶ ହେବ । ବଙ୍ଗଙ୍କର ବଙ୍ଗଦେଶ, କଳିଙ୍ଗଙ୍କର କଳିଙ୍ଗ ଦେଶ ବୋଲି ବିଖ୍ୟାତ; ପୁଣ୍ଡ୍ରଙ୍କର ପୁଣ୍ଡ୍ର, ଓ ସୁହ୍ମଙ୍କର ସୁହ୍ମଦେଶ । ଏହି ପ୍ରକାରେ ପୂର୍ବେ ମହର୍ଷିଙ୍କଠାରୁ ବଳୀଙ୍କର ବଂଶ ପ୍ରଖ୍ୟାତହେଲା । ୫୫ । ଏହି ପ୍ରକାରେ ଅନ୍ୟାନ୍ୟ ଧନୁର୍ଦ୍ଧାରୀ କ୍ଷତ୍ରିୟମାନେ ବ୍ରାହ୍ମଣଙ୍କଠାରୁ ପୃଥିବୀରେ ଜାତ ଓ ପରମ ଧର୍ମଜ୍ଞ, ବୀର୍ଯ୍ୟବନ୍ତ ଓ ମହାରଥ ବୋଲି ବିଖ୍ୟାତ ହେଲେ । ଏହା ଶୁଣି ହେ ମାତଃ ତୁମ୍ଭେ ମଧ୍ୟ ଯାହା ଇଚ୍ଛା ତାହା ସମ୍ପାଦନକର । ୫୬ ।

---

## ଅଧ୍ୟାୟ ୧୦୫

ଭୀଷ୍ମ ବୋଇଲେ—ହେ ମାତଃ । ଭରତ ବଂଶର ସନ୍ତାନ ବୃଦ୍ଧି ନିମିତ୍ତ ଅମ୍ଭେ ପୁନର୍ବାର ଯାହା କହୁଅଛୁଁ ଶ୍ରବଣକର । ୧ । ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀଠାରେ ସନ୍ତାନୋତ୍ପାଦନ କରିପାରିବେ ଏପରି କୌଣସି ଗୁଣବାନ୍ ବ୍ରାହ୍ମଣଙ୍କୁ ଧନ ଦାନଦ୍ୱାରା ଆମନ୍ତ୍ରଣ କର । ୨ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ସତ୍ୟବତୀ କୃତ୍ରିମ ବାକ୍ୟରେ ଉପହାସ କଲାପ୍ରାୟ ସଲ୍ଲଜହୋଇ ଭୀଷ୍ମଙ୍କୁ ବୋଇଲେ—ହେ ମହାବାହୋ ! ଭରତ ଯାହା କହୁଅଛ, ତାହା ସତ୍ୟ, ଅତଏବ ଅମ୍ଭମାନଙ୍କ କୁଳର ପରିବର୍ଦ୍ଧନ ନିମିତ୍ତ ତୁମ୍ଭେ ଯେଉଁ ଆପଦ୍ଧର୍ମ ବୋଇଲ ତାହା ଅନ୍ୟଥା କରିବାକୁ ଅମ୍ଭେ ପାରିବୁନାହିଁ । ତୁମ୍ଭେ

ଅମ୍ଭକୁଳର ଧର୍ମ୍ମ, ସତ୍ୟ ଓ ଗତ । ୫ । ଅତଏବ ଆମ୍ଭର ବକ୍ତବ୍ୟ ସତ୍ୟବୃତ୍ତାନ୍ତ ଅବଗତ ହୁଅ ଓ ତଦନନ୍ତର ଯାହା କରିବ୍ୟ ତାହା କର । ୬ ।

ଆମ୍ଭର ପିତା ଧାର୍ମ୍ମିକଥିଲେ, ତାହାଙ୍କର ଖଣ୍ଡିଏ ନୌକା ଥିଲା, ଅମ୍ଭେ ପ୍ରଥମ ଯୌବନ କାଳରେ ଦିନେ ସେହି ତରୀ ବାହନ କରିବାକୁ ଯାଇଥିଲୁଁ । ଅନନ୍ତର ଧର୍ମଜ୍ଞ ଶ୍ରେଷ୍ଠ ପରମର୍ଷି ଧୀମାନ୍ ପରାଶର ଯମୁନାନଦୀ ପାରହେବେ ବୋଲି ସେହି ତରୀରେ ଆରୋହଣ କଲେ । ତାହାଙ୍କୁ ପାର କରୁଁ କରୁଁ ସେ ମୁନିଶ୍ରେଷ୍ଠ କାମାର୍ତ୍ତ ହୋଇ ଆମ୍ଭନିକଟକୁ ଆସି ମଧୁର ବଚନରେ ସାନ୍ତ୍ୱନା ପୂର୍ବକ ଅନେକ କଥା କହିଲେ । ୯ । ହେ ଭାରତ ! ସେପରି ବର ମିଳିବା ସୁଲଭ ନୁହଇ, କିନ୍ତୁ ପିତାଙ୍କ ଭୟରେ ଭୀତ, ହୋଇ ସୁଦ୍ଧା ଅଭିଶାପ ଭୟରେ ସେ ଋଷିଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ ଉତ୍ସାହିତ ହେଲୁନାହିଁ । ୧୦ । ହେ ଭାରତ ! ଅମ୍ଭେ ବାଳିକା ଥିଲୁଁ; ସେ ଚତୁର୍ଦ୍ଦିଗକୁ ଅନ୍ଧକାରରେ ଆଚ୍ଛନ୍ନକରି ଆମ୍ଭଙ୍କୁ ନୌକାରେ ତେଜୋଦ୍ୱାରା ଅଭିଭୂତ କରି ବଶୀଭୂତ କଲେ । ୧୧ । ପୂର୍ବେ ମୋ ଶରୀରରେ ଅତିଶୟ ମତ୍ସ୍ୟଗନ୍ଧ ଥିଲା, ସେ ଗନ୍ଧକୁ ମୁନି ଅପାସ୍ତକରି ଏହି ଶୁଭ ଗନ୍ଧକୁ ପ୍ରଦାନକଲେ । ୧୨ । ତଦନନ୍ତର ସେ ମୁନି ଆମ୍ଭଙ୍କୁ କହିଲେ, ଏହି ନଦୀର ଦ୍ୱୀପରେ ତୁମ୍ଭେ ମଦୀୟ ଗର୍ଭ ପ୍ରସବକରି ପୁନର୍ବାର ତୁମ୍ଭେ କନ୍ୟାହୋଇ ରହିବ । ୧୩ । ପରାଶରଙ୍କ ଔରସରୁ ଆମ୍ଭର କନ୍ୟାବସ୍ଥାରେ ଦ୍ୱୈପାୟନ ନାମକ ସେହି ମହାଯୋଗୀ ମହର୍ଷି ସମ୍ଭୂତ ହେଲେ । ୧୪ । ଯେଉଁ ଭଗବାନ ଋଷି ତପସ୍ୟା ବଳରେ ଗୁରୁବେଦର ବିଭାଗ କରି ଲୋକରେ ବ୍ୟାସ ନାମକୁ ପ୍ରାପ୍ତହେଲେ ଓ କୃଷ୍ଣ ଅର୍ଥାତ୍ ଭଗବାନଙ୍କ ସଦୃଶ ଗୁଣବାନ୍ ଥିବାରୁ କୃଷ୍ଣ ନାମରେ ବିଖ୍ୟାତ ହେଲେ * । ୧୫ । ସତ୍ୟବାଦୀ, ଶମପର, ତପସ୍ୱୀ, ଦଗ୍ଧ କିଲ୍‌ବିଷ ସେହି ମହାପୁରୁଷ ଜାତ ହୋଇ ତତ୍‌କ୍ଷଣାତ୍ ପିତାଙ୍କ ସହିତ ତପସ୍ୟା କରିବାକୁ ଗମନକଲେ ।୧୬। ଅମ୍ଭେ ତାହାଙ୍କୁ ନିଯୁକ୍ତ କଲେ ସେହି ଅପ୍ରତିମ ତେଜସ୍ୱୀ ତୁମ୍ଭ ଭ୍ରାତାଙ୍କ ଭାର୍ଯ୍ୟାଠାରେ କଲ୍ୟାଣକର ଅପତ୍ୟକୁ ନିଶ୍ଚୟ ଜନ୍ମ କରାଇବେ । ୧୭ । ଗମନ କାଳରେ ସେ ଅମ୍ଭଙ୍କୁ କହିଗଲେ ଯେ କିଛି ପ୍ରାପ୍ତ ହେଲେ ନିଶ୍ଚୟ ଅମ୍ଭଙ୍କୁ ସ୍ମରଣ କରିବ । ହେ ମହାବାହୋ ! ଭୀଷ୍ମ ତୁମ୍ଭେ ଯେବେ

---

*** ଏହି ଟୀକାକାରଙ୍କର ଅର୍ଥ । ଅନୁବାଦକମାନେ କୃଷ୍ଣଶବ୍ଦର କାଳିଆ ଅର୍ଥ ଲେଖିଛନ୍ତି ।**

ଇଚ୍ଛା କରିବ ତେବେ ଆମ୍ଭେ ତାହାଙ୍କୁ ସ୍ମରଣ କରିବୁଁ । ୧୮। ହେ ଭୀଷ୍ମ ! ତୁମ୍ଭ ଅନୁମତିକ୍ରମେ ସେ ମହାତପସ୍ୱୀ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ ପୁତ୍ରମାନଙ୍କୁ ଉତ୍ପାଦନ କରିବେ । ୧୯ ।

ବୈଶମ୍ପାୟନ ବୋଇଲେ— ମହର୍ଷିଙ୍କ ନାମ କୀର୍ତ୍ତିତ ହୁଅନ୍ତେ ଭୀଷ୍ମ ପ୍ରାଞ୍ଜଳି ହୋଇ କହିଲେ । ୨୦ । ଯେଉଁ ବ୍ୟକ୍ତି ଧର୍ମ୍ମ, ଅର୍ଥ ଓ କାମ ଅଥଚ ସେମାନଙ୍କର ଅନୁବନ୍ଧ ଅର୍ଥାତ୍ ଫଳକୁ ବିବେଚନା କରି କାର୍ଯ୍ୟ କରେ, ପୁନଶ୍ଚ ଅତ୍ୟଳ୍ପ ଦୋଷର ଅନୁସନ୍ଧାନ ଦ୍ୱାରା ଯେପରି ମହତ୍ ଫଳର ବିନାଶ ନ ହୁଏ, ତଦ୍‌ବିଷୟରେ ଯେ ଦୃଷ୍ଟି ରଖଇ ସେ ପ୍ରକୃତ ବୁଦ୍ଧିମାନ୍ । ୨୨ । ଅତଏବ ଆମ୍ଭମାନଙ୍କର କୁଳର ହିତ ନିମିତ୍ତ ଧର୍ମ୍ମ ସଂଯୁକ୍ତ ଯେଉଁ ବଚନକୁ ବୋଲିବା ହେଲେ ତାହା ଶ୍ରେୟସ୍କର ଓ ଆମ୍ଭର ରୁଚିପ୍ରଦ ହୋଇଅଛି । ୨୩ ।

ହେ କୁରୁନନ୍ଦନ ! ତଦନନ୍ତର ଭୀଷ୍ମ ତଦ୍ରୂପ ସ୍ୱୀକୃତ ହେବାରୁ କାଳୀ, କୃଷ୍ଣ ଦ୍ୱୈପାୟନଙ୍କୁ ସ୍ମରଣ କଲେ । ୨୪ । ସେ ଧୀମାନ୍ ବେଦମାନଙ୍କୁ ପଢ଼ାଉଥିଲେ, ମାତାଙ୍କ ଚିନ୍ତାକୁ ବିଜ୍ଞାତ ହୋଇ କ୍ଷଣକାଳ ମଧ୍ୟରେ ପ୍ରାଦୁର୍ଭୂତ ହେଲେ । ୨୫ । ତଦନନ୍ତର ସେହି ଦାଶରାଜ-କନ୍ୟା ସୁତଙ୍କର ବିଧିପୂର୍ବକ ପୂଜାକରି ବହୁକାଳ ପରେ ଦେଖିବାରୁ ଆନନ୍ଦାଶ୍ରୁ ବିମୋଚନ କଲେ ଓ ବାହୁଦ୍ୱୟରେ ତାହାଙ୍କୁ ପରିଷ୍ୱକ୍ତ କରି ସ୍ନେହ ନିଃସୃତ ସ୍ତନ୍ୟ ଦ୍ୱାରା ଅଭିଷିକ୍ତ କଲେ । ୨୬ ।

ପୂର୍ବଜ ପୁତ୍ର, ବ୍ୟାସମହର୍ଷି, ମାତାଙ୍କୁ କାତର ଦେଖି, ଜଳ ଦ୍ୱାରା ତାହାଙ୍କୁ ପରିଷିକ୍ତ କରି ଏହି ବଚନ ବୋଇଲେ । ୨୭। ଆପଣଙ୍କର ଯେଉଁ ଅଭିପ୍ରେତ ତାହା କରିବାକୁ ଆମ୍ଭେ ଆଗତ ହୋଇଅଛୁ । ହେ ଧର୍ମ୍ମତତ୍ତ୍ୱଜ୍ଞେ ! ଆମ୍ଭଙ୍କୁ ତୁମ୍ଭର କି ପ୍ରିୟ କାର୍ଯ୍ୟ କରିବାକୁ ହେବ ଆଦେଶ କର । ୨୮ । ତତ୍ପରେ ପୁରୋଧା ଆସି ସେ ପୂଜା କଲେ ଓ ସେ ବିଧିପୂର୍ବକ ମନ୍ତ୍ରୋଚ୍ଚାରଣ କରି ପୂଜାକୁ ଗ୍ରହଣ କଲେ । ବିଧିପୂର୍ବକ ପୂଜିତ ହେବାରୁ ଋଷି ପ୍ରୀତ ହେଲେ ।

ଅନନ୍ତର ମାତା ସତ୍ୟବତୀ ତାହାଙ୍କୁ ଆସନୋପବିଷ୍ଟ ଦେଖି କୁଶଳ ପ୍ରଶ୍ନ କରି ବୋଇଲେ, ହେ କବେ ! ମାତା ଓ ପିତାଙ୍କଠାରୁ

ସାଧାରଣତଃ ପୁତ୍ରମାନେ ଜାତ ହୁଅନ୍ତି । ସେମାନଙ୍କର ପିତା ଯେପରି ଅଧିକାରୀ ମାତା ମଧ୍ୟ ତଦ୍ରୂପ ଅଧିକାରୀ, ଏଥିରେ ସଂଶୟ ନାହିଁ । ୩୧ । ହେ ବ୍ରହ୍ମର୍ଷେ । ଘଟନା କ୍ରମେ ତୁମ୍ଭେ ଆମ୍ଭର ପ୍ରଥମ ପୁତ୍ର ଓ ବିଚିତ୍ରବୀର୍ଯ୍ୟ ଆମ୍ଭର କନିଷ୍ଠ ସନ୍ତାନ । ଭୀଷ୍ମ ଯେପରି ପିତୃ ସମ୍ବନ୍ଧରେ ଭ୍ରାତା, ହେ ପୁତ୍ର । ଆମ୍ଭେ ବୋଧକରୁ, ମାତୃ ସମ୍ବନ୍ଧରେ ତୁମ୍ଭେ ମଧ୍ୟ ତଦ୍ରୂପ ଅଟ । ୩୩ ।

ଏହି ସତ୍ୟ ବିକ୍ରମ ଶାନ୍ତନୁ-ନନ୍ଦନ ଭୀଷ୍ମ ଆପଣାର ପ୍ରତିଜ୍ଞା ପାଳନ କରି ଅପତ୍ୟୋତ୍ପାଦନରେ ଅଥବା ରାଜ୍ୟଶାସନରେ ମନ ଦେଉ ନାହାନ୍ତି ।୩୪। ହେ ଅନଘ ! ତୁମ୍ଭେ ଭ୍ରାତାଙ୍କର ସ୍ନେହାନୁବନ୍ଧନରେ ଭୀଷ୍ମଙ୍କ ବଚନରୁ ଓ ଆମ୍ଭ ନିୟୋଗରୁ ଅଥଚ ସର୍ବ ପ୍ରାଣୀଙ୍କ ରକ୍ଷା ନିମିତ୍ତ ସେମାନଙ୍କ ପ୍ରତି ଅନୁକମ୍ପା ପ୍ରକାଶ ପୂର୍ବକ ଆମ୍ଭର କୁଳର ସନ୍ତତି ବିଷୟରେ ଆମ୍ଭେ ଯାହା କହିବୁ, ତାହା କରିବାକୁ ଉପଯୁକ୍ତ ହେବେ । ତୁମ୍ଭର କନିଷ୍ଠ ଭ୍ରାତାଙ୍କର ଦୁଇଭାର୍ଯ୍ୟା ଦେବକନ୍ୟା ସମାନ ଓ ରୂପଯୌବନ-ସମ୍ପନ୍ନା; ସେମାନେ ଧର୍ମତଃ ପୁତ୍ରାର୍ଥିନୀ ହୋଇ ଅଛନ୍ତି । ହେ ପୁତ୍ରକ ! ତୁମ୍ଭେ ସମର୍ଥ ଅଟ, ତାହାଙ୍କଠାରେ ଏହି ବଂଶର ଅନୁରୂପ ଓ ପ୍ରସବର ଅନୁରୂପ ଅପତ୍ୟ ଉତ୍ପାଦନ କର । ୩୮ ।

ବ୍ୟାସ ବୋଇଲେ—ହେ ସତ୍ୟବତି । ତୁମ୍ଭେ ଐହିକ ଓ ପାରତ୍ରିକ ଉଭୟ ପ୍ରକାର ଧର୍ମ୍ମ ବିଦିତ ଅଛ । ତୁମ୍ଭର ମତି ଧର୍ମ୍ମରେ ନିହିତ ଅଛି । ଅତଏବ ତୁମ୍ଭର ନିଯୋଗ ଅନୁସାରେ ଧର୍ମ୍ମକୁ ଲକ୍ଷ୍ୟ କରି ତୁମର ଅଭିଳାଷ ସମ୍ପନ୍ନ କରିବୁ, ଏ ପ୍ରଥା ପୂର୍ବରୁ ଅଛି । ୪୦ । ମିତ୍ରାବରୁଣ ଦେବତାଙ୍କ ସମାନ ପୁତ୍ରଙ୍କୁ ଅମ୍ଭେ ଭ୍ରାତାଙ୍କୁ ଦେବୁଁ । ଆମ୍ଭେ ଯେପରି ନିର୍ଦ୍ଦେଶ କରୁଅଛୁଁ ସେହି ଦେବୀ ଦୁହେଁ ତଦ୍ରୂପ ବ୍ରତ ଆଚରଣ କରନ୍ତୁ । ଏକ ସମ୍ବତ୍ସର ବ୍ରତ କଲେ ସେମାନେ ଶୁଦ୍ଧ ହେବେ । ବ୍ରତ ନ କଲେ କୌଣସି ଅଙ୍ଗନା ଆମ୍ଭଠାକୁ ଉପଗତ ହୋଇ ପାରିବେ ନାହିଁ । ୪୨ ।

ସତ୍ୟବତୀ ବୋଇଲେ—ଦେବୀ ଦୁହେଁ ଯେପରି ସଦ୍ୟ ଗର୍ଭବତୀ ହୁଅନ୍ତି ତଦ୍ରୂପ କର । ରାଜ୍ୟ ଅରାଜକ ଥିବାରୁ ପ୍ରଜାମାନେ ଅନାଥ ହୋଇ ନଷ୍ଟ ହେଉଅଛନ୍ତି ଓ ବେଦୋକ୍ତ କ୍ରିୟାମାନ ନଷ୍ଟ ହେଉଅଛି, ବୃଷ୍ଟି ହେଉନାହିଁ । ୪୩ । ହେ ପ୍ରଭୋ । ଏହି ଅରାଜକ ରାଜ୍ୟକୁ କିପରି ଧାରଣ

କରାଯିବ; ଅତଏବ ତୁମ୍ଭେ ଗର୍ଭଧାନ କର, ଭୀଷ୍ମ ସେମାନଙ୍କୁ ସମ୍ବର୍ଦ୍ଧିତ କରିବେ । ୪୪ ।

ବ୍ୟାସ ବୋଇଲେ ଯେବେ ଅସମୟରେ ଆମ୍ଭ ଭ୍ରାତାଙ୍କ ନିମିତ୍ତ ପୁତ୍ରୋତ୍ପାଦନ କରିବାକୁ ହେବ, ତେବେ ରାଣୀ ମୁହିଁ ଅମ୍ଭର ବିରୂପତାକୁ ସହ୍ୟ କରନ୍ତୁ; ସେହି ସହିବା ତାହାଙ୍କର ବ୍ରତ ହେବ । ଅମ୍ଭର ଗନ୍ଧ, ରୂପ, ବେଶ ଓ ବପୁ ଯେବେ କୌଶଲ୍ୟା ସହ୍ୟ କରିପାରିବେ, ତେବେ ଆଜ ସେ ଉତ୍କୃଷ୍ଟ ଗର୍ଭଲାଭ କରିବାକୁ ସମର୍ଥ ହେବେ । ୪୬ ।

ବୈଶମ୍ପାୟନ ବୋଇଲେ—ତତ୍କାଳରେ ମହାତେଜା ବ୍ୟାସ ସତ୍ୟବତୀଙ୍କୁ କହିଲେ ଯେ କୌଶଲ୍ୟା ଶୁଚି ବସ୍ତ୍ର ପରିଧାନ କରି ଓ ଅଳଙ୍କୃତା ହୋଇ ସୟନରେ ଅମ୍ଭର ସମାଗମକୁ ଆକାଙ୍କ୍ଷା କରନ୍ତୁ । ଏହା କହି ସେ ମୁନି ଅନ୍ତର୍ହିତ ହେଲେ ! ୪୭ । ତଦନନ୍ତର ସେହି ଦେବୀ ସତ୍ୟବତୀ ନିର୍ଜନରେ ଉପସ୍ଥିତା ସ୍ନୁଷାଙ୍କୁ ଧର୍ମ ଓ ଅର୍ଥଯୁକ୍ତ ଅଟେ ହିତ ବଚନ କହିଲେ । ୪୮ । ହେ କୌଶଲ୍ୟେ ତୁମ୍ଭଙ୍କୁ ଧର୍ମ ସମ୍ମତ ଯେଉଁ କଥା କହୁଅଛୁଁ, ତାହା ଶ୍ରବଣ କର । ଅମ୍ଭର ଭାଗ୍ୟ କ୍ଷୟ ହେବାରୁ ଭରତ ବଂଶର ସମୁଚ୍ଛେଦ ସୃଷ୍ଟି ହେଲା । ୪୯ । ଭୀଷ୍ମ ଅମ୍ଭଙ୍କୁ ବ୍ୟଥିତା ଓ ପିତୃ ବଂଶକୁ ପୀଡ଼ିତା ହେବାର ଦେଖି ଏହି କୁଳର ବୃଦ୍ଧି ନିମିତ୍ତ ସେ ଅମ୍ଭଙ୍କୁ ବୁଦ୍ଧି ଦେଲେ । ୫୦ । ହେ ପୁତ୍ରି ! ସେ ବୁଦ୍ଧି ତୁମ୍ଭ ଅଧୀନା; ତଦନୁସାରେ ତୁମ୍ଭେ ଅମ୍ଭର ଇଷ୍ଟ ସାଧନ କର ଓ ନଷ୍ଟ ଭରତ ବଂଶକୁ ପୁନର୍ବାର ଉଦ୍ଧାର କର । ୫୧ । ହେ ସୁଶ୍ରୋଣୀ ! ଦେବରାଜଙ୍କ ପ୍ରାୟ ପ୍ରଭାଶାଳୀ ପୁତ୍ରଙ୍କୁ ଜନ୍ମକର, ସେ ପୁତ୍ର ଅମ୍ଭ କୁଳର ଗୁରୁତର ରାଜ୍ୟଭାର ବହନ କରିବେ । ୫୨ । କୌଣସି ପ୍ରକାରେ ସତ୍ୟବତୀ ସେହି ଧର୍ମଚାରିଣୀଙ୍କୁ ଅନୁନୟ ଦ୍ୱାରା ସମ୍ମତ କରାଇ ବିପ୍ର, ଦେବର୍ଷି ଓ ଅତିଥିମାନଙ୍କୁ ଭୋଜନ କରାଇଲେ । ୫୩ ।

## ୧୦୬ ଅଧ୍ୟାୟ

ବୈଶମ୍ପାୟନ ବୋଇଲେ—ତଦନନ୍ତର ସତ୍ୟବତୀ, ଯଥାକାଳରେ ଋତୁସ୍ନାତା ବଧୂଙ୍କ ଶୟନ ଗୃହରେ ପ୍ରବେଶ କରାଇ ମନ୍ଦ ମନ୍ଦ ସ୍ୱରରେ କହିଲେ, ହେ କୌଶଲ୍ୟେ ! ତୁମ୍ଭର ଗୋଟିଏ ଦେବର ଅଛନ୍ତି, ସେ ତୁମ୍ଭଙ୍କୁ ଅଦ୍ୟ ଦେଖିବେ, ତୁମ୍ଭେ ଅପ୍ରମତ୍ତ ହୋଇ ତାହାଙ୍କର ପ୍ରତୀକ୍ଷା କର; ସେ ନିଶୀଥ ସମୟରେ ଆଗମନ କରିବେ । ୨ । ଶ୍ୱଶ୍ରୂଙ୍କର ସେହି ବାକ୍ୟ ଶ୍ରବଣକରି ସେ ଶୁଭଶଯ୍ୟାରେ ଶୟନ ପୂର୍ବକ ଭୀଷ୍ମ ଓ ଅପରାପର କୁରୁଶ୍ରେଷ୍ଠମାନଙ୍କୁ ଚିନ୍ତାକଲେ । ୩ । ତଦନନ୍ତର ସତ୍ୟବାକ୍ ଋଷି ପ୍ରଦୀପ ଜ୍ୱଳୁଥିବା ବେଳେ ଗୃହ ମଧ୍ୟରେ ପ୍ରବେଶ କଲେ ଓ ପ୍ରଥମେ ଅମ୍ବିକାଙ୍କ-ଠାରେ ନିଯୁକ୍ତ ହେଲେ । ୪ । ଦେବୀ ସେ କୃଷ୍ଣବର୍ଣ୍ଣ ପୁରୁଷଙ୍କର ପିଙ୍ଗଳ ବର୍ଣ୍ଣ ଜଟା, ବିଶାଳ ଶ୍ମଶ୍ରୁ ଓ ଭ୍ରୂଯୁଗଳ ଓ ଦୀପ୍ତ ଲୋଚନ ଦ୍ୱୟ ନିରୀକ୍ଷଣ କରି ନେତ୍ର ନିମୀଳନ କଲେ । ୫ । ମାତାଙ୍କର ପ୍ରିୟ କରିବା ଇଚ୍ଛାରେ ଋଷି ତାହାଙ୍କ ସହିତ ସଙ୍ଗତ ହେଲେ । କିନ୍ତୁ କାଶୀ ରାଜାଙ୍କର ସୁତା ଭୟ ହେତୁରୁ ତାହାଙ୍କୁ ବୀକ୍ଷଣ କରି ପାରିଲେ ନାହିଁ । ୬ ।

ଅନନ୍ତର ପୁତ୍ରଙ୍କୁ ନିଷ୍କ୍ରାନ୍ତ ହେବାର ଦେଖି ମାତା ପଚାରିଲେ ହେ ପୁତ୍ର ! ଏହାଙ୍କଠାରେ କି ଗୁଣବାନ୍ ରାଜପୁତ୍ର ଜାତ ହେବେ ? ମାତାଙ୍କର ସେହି ବଚନ ଶ୍ରବଣ କରି ଅତୀନ୍ଦ୍ରିୟ ଜ୍ଞାନ ସମ୍ପନ୍ନ ସତ୍ୟବତୀ-ସୁତ ବ୍ୟାସ ବିଧାତାଙ୍କ ଦ୍ୱାରା ପ୍ରବୋଧିତ ହୋଇ ବୋଇଲେ । ଏହାଙ୍କଠାରୁ ଯେଉଁ ପୁତ୍ର ଜାତହେବ ତାହାଙ୍କର ଦଶ ସହସ୍ର ହସ୍ତୀର ପରାକ୍ରମ ହେବ, ସେ ବିଦ୍ୱାନ୍ ଓ ରାଜର୍ଷିଙ୍କ ମଧ୍ୟରେ ଶ୍ରେଷ୍ଠ ହେବେ । ତାହାଙ୍କର ଭାଗ୍ୟ, ବୀର୍ଯ୍ୟ ଓ ବୁଦ୍ଧି ଅତି ଉତ୍କୃଷ୍ଟ ହେବ, ସେ ମହାତ୍ମାଙ୍କର ଶତ ପୁତ୍ର ହେବେ; କିନ୍ତୁ ତାହାଙ୍କର ମାତାଙ୍କର ବୈଗୁଣ୍ୟ ହେତୁରୁ, ସେ ଅନ୍ଧ ହେବେ । ୧୦ ।

ତାହାଙ୍କର ସେହି ବଚନ ଶୁଣି ମାତା ପୁତ୍ରଙ୍କୁ କହିଲେ, ହେ ତପୋଧନ ! ଅନ୍ଧହେଲେ କୁରୁବଂଶୀୟ ନରପତିଙ୍କର ଯୋଗ୍ୟ ହେବେନାହିଁ ଅତଏବ ଜ୍ଞାତି ଓ ବଂଶର ରକ୍ଷାକାରୀ ଓ ପିତୃଗଣଙ୍କର ବଂଶ ବର୍ଦ୍ଧନ କାରୀ କୁରୁବଂଶରେ ଦ୍ୱିତୀୟ ରାଜା ହେଉନ୍ତୁ । ୧୨ ।

ସେ ମହାଯଶା ହେଉ ବୋଲି କହି ନିଷ୍କ୍ରାନ୍ତ ହେଲେ । ଯଥା ସମୟରେ କୌଶଲ୍ୟା ସେ ଅନ୍ଧ ପୁତ୍ରକୁ ଜନ୍ମକଲେ । ୧୩ । ହେ

ଅବିନ୍ଦମ । ପୁନର୍ବାର ସେହି ଦେବୀ ସତ୍ୟବତୀ ସ୍ନୁଷାଙ୍କୁ କହି ପୂର୍ବପ୍ରାପ୍ତ ଋଷିଙ୍କୁ ଆବାହନ କଲେ । ୧୪ । ତଦନନ୍ତର ସେହିପର ବିଧି ଅନୁସାରେ ମହର୍ଷି ଅମ୍ବାଳିକାଙ୍କଠାକୁ ଗମନ କଲେ । ଋଷିଙ୍କି ଦେଖି ଅମ୍ବାଳିକା ମଧ୍ୟ ତାହାଙ୍କ ନିକଟକୁ ଆସିଲେ, କିନ୍ତୁ ହେ ଭାରତ । ଋଷିଙ୍କି ଦେଖି ସେ ବିଷର୍ଣ୍ଣା ଓ ପାଣ୍ଡୁର ବର୍ଣ୍ଣ ହେଲେ । ୧୫ ।

ହେ ଭାରତ ! ସତ୍ୟବତୀଙ୍କ ପୁତ୍ର ବ୍ୟାସ, ତାହାଙ୍କୁ ପାଣ୍ଡୁରବର୍ଣ୍ଣ, ବିଷର୍ଣ୍ଣ ଓ ଭୀତ ହୋଇଥିବାର ଦେଖି ବୋଇଲେ—ଆମ୍ଭଙ୍କୁ ବିରୂପ ଦେଖି ତୁମ୍ଭେ ପାଣ୍ଡୁତ୍ୱ ପ୍ରାପ୍ତ ହେବାରୁ ତୁମ୍ଭର ଏହି ସୁତ ପାଣ୍ଡୁର ବର୍ଣ୍ଣ ହେବ । ୧୭ । ହେ ଶୁଭାନନେ ! ତାହାଙ୍କର ନାମ ମଧ୍ୟ ପାଣ୍ଡୁ ହେବ । ଏହା କହି ସେ ଋଷି ସତ୍ତମ ନିର୍ଗତ ହେଲେ । ୧୮ । ପୁତ୍ରଙ୍କୁ ନିଷ୍କ୍ରାନ୍ତ ହେବା ଦେଖି ସତ୍ୟବତୀ ତାହାଙ୍କୁ ପଚାରିଲେ, ଋଷି ବୋଇଲେ ଯେ ସେ ପାଣ୍ଡୁର ବର୍ଣ୍ଣ ହେବ । ୧୯ । ମାତା ପୁନର୍ବାର ଆଉ ଗୋଟିଏ ପୁତ୍ର ଯାଚ୍ଞା କଲେ, ମହର୍ଷି ହେଉ ବୋଲି ମାତାଙ୍କୁ ଉତ୍ତର ଦେଲେ । ୨୦ । ତତ୍ପରେ ସେ ଦେବୀ ଯଥା ସମୟରେ ଗୋଟିଏ କୁମାର ପ୍ରସବ କଲେ, ପାଣ୍ଡୁ ସୁଲକ୍ଷଣ ସମ୍ପନ୍ନ ଓ ଶୋଭାରେ ଦେଦୀପ୍ୟମାନ ହୋଇଥିଲେ । ସେହି ପାଣ୍ଡୁଙ୍କର ମହାଧନୁର୍ଦ୍ଧାରୀ ପଞ୍ଚ ପୁତ୍ର ଜନ୍ମଗ୍ରହଣ କଲେ । ପୁନର୍ବାର ଜ୍ୟେଷ୍ଠ ବଧୂଙ୍କୁ ଋତୁକାଳରେ ତାହାଙ୍କୁ ସତ୍ୟବତୀ ନିଯୁକ୍ତ କଲେ କିନ୍ତୁ ଦେବକନ୍ୟା ତୁଲ୍ୟ ସେହି ବଧୂ ମହର୍ଷିଙ୍କର ରୂପ ଓ ଗନ୍ଧକୁ ଚିନ୍ତା କରି ଭୟହେତୁରୁ ଶ୍ୱଶ୍ରୂଙ୍କର ବଚନ ପ୍ରତିପାଳନ କଲେ ନାହିଁ । ୨୩ । ତତ୍ପରେ କାଶୀ-ପତିଙ୍କର ସୁତା ଆପଣାର ଭୂଷଣରେ ଅପ୍ସରୋପମା ନିଜର ଦାସୀକୁ ଭୂଷିତ କରି କୃଷ୍ଣଙ୍କ ସମୀପକୁ ପ୍ରେରଣ କଲେ । ସେ ଦାସୀ ଋଷିଙ୍କୁ ଆଗତ ଦେଖି ଗାତ୍ରୋତ୍ଥାନ ଓ ଅଭିବାଦନ କରି ଆଜ୍ଞା ପ୍ରମାଣ ଉପବିଷ୍ଟା ହୋଇ ଋଷିଙ୍କର ସତ୍କାର ଓ ସେବା କଲେ । ୨୫ । ହେ ରାଜନ୍ ! ଶଂସିତ ବ୍ରତ ମହର୍ଷି ନିର୍ଜନରେ ତାହାଙ୍କ ସହିତ କାମୋପଭୋଗ କରି ତୁଷ୍ଟି ପ୍ରାପ୍ତ ହେଲେ । ୨୬ ।

ଉଠିବା ବେଳେ ବୋଇଲେ, ହେ ଶୁଭେ ! ତୁମ୍ଭର ଏହି ଶ୍ରେୟସ୍କର ଗର୍ଭ ହେଲା, ତୁମ୍ଭେ ଆଉ ଦାସୀ ହେବ ନାହିଁ । ତୁମ୍ଭର ଯେଉଁ ପୁତ୍ର ଉତ୍ପନ୍ନ ହେବ ସେ ଲୋକରେ ଧର୍ମାତ୍ମା ଓ ସର୍ବବୁଦ୍ଧିମାନଙ୍କର ଶ୍ରେଷ୍ଠ ହେବ । କୃଷ୍ଣ ଦ୍ୱୈପାୟନଙ୍କଠାରୁ ବିଦୁର ନାମରେ ସେ ପୁତ୍ର ଜାତ

ହେଲେ । ୨୮ । ଧୃତରାଷ୍ଟ୍ରଙ୍କର ଓ ମହାତ୍ମା ପାଣ୍ଡୁଙ୍କର ସେ ଭ୍ରାତା; ମାଣ୍ଡବ୍ୟ ଋଷିଙ୍କର ଅଭିଶାପରୁ ଧର୍ମ୍ମ ବିଦୁର ରୂପରେ ଜନ୍ମିଲେ । ୨୯ । ଅର୍ଥଶାସ୍ତ୍ର ନିପୁଣ, କାମକ୍ରୋଧ ବିବର୍ଜିତ କୃଷ୍ଣ ଦ୍ୱୈପାୟନ ଏ ସମସ୍ତ ବିଷୟ ମଧ୍ୟ ସତ୍ୟବତୀଙ୍କୁ ନିବେଦନ କଲେ । ୩୦ । ତାହାଙ୍କର ସ୍ନୁଷା ଯେପରି ସ୍ୱୟଂ ନ ଆସି ଦାସୀଙ୍କୁ ପ୍ରେରଣ କଲେ, ଶୂଦ୍ରାଙ୍କଠାରେ ଯେପରି ଧର୍ମ୍ମ ଜନ୍ମିଲେ, ଏ ସମସ୍ତ ବିଷୟ ମଧ୍ୟ ମାତାଙ୍କୁ କହି ଧର୍ମ୍ମପ୍ରମାଣେ ଋଣମୁକ୍ତ ହୋଇ ସେହିଠାରେ ଅନ୍ତର୍ହିତ ହେଲେ । ହେ ନୃପ ! ଦ୍ୱୈପାୟନଙ୍କ ଔରସରେ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ କୁରୁକୁଳ ବର୍ଦ୍ଧନ ଦେବ କୁମାର ସଦୃଶ କୁମାରମାନେ ଏହି ରୂପରେ ଜନ୍ମ ଗ୍ରହଣ କଲେ । ୩୧ ।

---

## ଅଧ୍ୟାୟ ୧୦୭

ଜନମେଜୟ ବୋଇଲେ--ଧର୍ମ୍ମ କି ଦୋଷ କରିଥିଲେ ଯେ ସେ ଅଭିଶାପ ପାଇଲେ ? କେଉଁ ବ୍ରହ୍ମର୍ଷିଙ୍କ ଅଭିଶାପରୁ ସେ ଶୂଦ୍ର ଯୋନିରେ ଜନ୍ମିଲେ । ୧ ।

ବୈଶମ୍ପାୟନ ବୋଇଲେ—ମାଣ୍ଡବ୍ୟ ନାମରେ ଗୋଟିଏ ବିଖ୍ୟାତ ବ୍ରାହ୍ମଣ ଥିଲେ । ସେ ଧୃତିଶାଳୀ, ସର୍ବ ଧର୍ମ୍ମଜ୍ଞ, ସତ୍ୟପରାୟଣ ଓ ତପସ୍ୟାରେ ରତ ଥାନ୍ତି । ସେ ମହାଯୋଗୀ ଓ ମହାତପସ୍ୱୀ ଆଶ୍ରମ-ଦ୍ୱାରରେ ବୃକ୍ଷମୂଳରେ ଊର୍ଦ୍ଧ୍ୱବାହୁହୋଇ ମୌନ-ବ୍ରତାବଲମ୍ବନ କରି ରହିଥିଲେ ।୩। ଅନେକ କାଳ ତପସ୍ୟା କଲାପରେ ଏକଦା ଦସ୍ୟୁମାନେ ଅପହୃତ ଦ୍ରବ୍ୟ ସବୁ ଘେନି ସେହି ଆଶ୍ରମ ପାଦରେ ଆସି ଉପସ୍ଥିତ ହେଲେ । ହେ ଭରତର୍ଷଭ ! ବହୁ ସଂଖ୍ୟକ ରକ୍ଷୀମାନେ ସେ ଦସ୍ୟୁଙ୍କର ଅନୁସରଣ କରିଥିଲେ । ହେ କୁରୁସତ୍ତମ ! ଚୌରମାନେ ତାହାଙ୍କର ଅନୁସନ୍ଧାନ ପାଇ ସେମାନେ ନ ଆସୁଁ, ଲୋପ୍ତ୍ର ଦ୍ରବ୍ୟସବୁ ଋଷିଙ୍କ ଅବସରରେ ରଖିଦେଇ ଭୟରେ ସେମାନେ ଲୀନ ହେଲେ । ସେମାନେ ଲୀନ ହୁଅନ୍ତେ ରକ୍ଷୀବଳ ଶୀଘ୍ର ସେଠାରେ ଆସି ଉପସ୍ଥିତ ହେଲେ । ୬ ।

ତସ୍କରଙ୍କ ଅନୁଗାମୀ-ଲୋକେ ଆସି ସେ ଋଷିଙ୍କୁ ଦେଖିଲେ । ହେ ରାଜନ୍ ! ତପୋଧନଙ୍କ ତଦ୍ରୂପ ଅବସ୍ଥିତ ଦେଖି ରକ୍ଷିଦଳ ପଚାରିଲେ, ହେ

ଦ୍ଵିଜସତ୍ତମ । କେଉଁ ପଥରେ ଦସ୍ୟୁମାନେ ଗଲେ ? ହେ ବ୍ରହ୍ମନ୍ । ଅମ୍ଭେମାନେ ଅତିଶୀଘ୍ର ଗମନ କରିବୁଁ । ୮ । ରକ୍ଷୀମାନେ ଏପରି କହିଲେ, ହେ ରାଜନ୍ । ସେ ତପୋଧନ ଭଲ କି ମନ୍ଦ କୌଣସି ବଚନ କହିଲେ ନାହିଁ । ୯ । ତଦନନ୍ତର ସେ ରାଜପୁରୁଷ ମାନେ ଆଶ୍ରମକୁ ଅନ୍ଵେଷଣ କରି ଲୁକ୍କାୟିତ ଚୌରମାନଙ୍କୁ ଓ ଅପହୃତ ଦ୍ରବ୍ୟ ସବୁ ଦେଖିଲେ । ୧୦ । ତଦନନ୍ତର ସେ ରକ୍ଷୀମାନଙ୍କର ମୁନିଙ୍କ ପ୍ରତି ଶଙ୍କା ଜାତ ହେଲା । ତହୁଁ ସେମାନେ ଋଷି ଓ ଦସ୍ୟୁ ସମସ୍ତଙ୍କୁ ବନ୍ଧନ କରି ରାଜାଙ୍କ ସମୀପରେ ଉପସ୍ଥିତ ହେଲେ । ୧୧ ।ଚୌରଙ୍କ ସହିତ ମୁନିଙ୍କୁ ମଧ୍ୟ ରାଜା ପ୍ରାଣଦଣ୍ଡର ଆଜ୍ଞା ଦେଲେ । ରକ୍ଷିମାନେ ସେ ମହାଯଶାଙ୍କୁ ଜାଣି ନ ପାରି ଶୂଳରେ ବସାଇଲେ । ୧୨ ।

ତତ୍ପରେ ରକ୍ଷୀମାନେ ସେହି ମୁନିଙ୍କୁ ଶୂଳରେ ଆରୋପଣକରି ଧନ ସବୁ ଘେନି ମହୀପାଳଙ୍କ ନିକଟକୁ ପ୍ରତିଗମନ କଲେ । ସେ ଧର୍ମାତ୍ମା ମହର୍ଷି ମହତ୍‌କାଳ ପର୍ଯ୍ୟନ୍ତ ଶୂଳସ୍ଥ ଓ ନିରାହାରରେ ରହି ସୁଦ୍ଧା ପ୍ରାଣ ବିସର୍ଜ୍ଜନ କଲେ ନାହିଁ । ୧୩ । ସେ ମହାତ୍ମା ଶୂଳାଗ୍ରରେ ଥାଇ ସୁଦ୍ଧା ତପସ୍ୟା ପ୍ରଭାବରେ ପ୍ରାଣ ମାନଙ୍କୁ ଧାରଣ କରି ରହିଲେ ଓ ଅନ୍ୟାନ୍ୟ ମୁନିମାନଙ୍କୁ ଆନୟନ କଲେ । ତପୋବଳ ସମନ୍ଵିତ ମୁନି ସେ ଋଷିଙ୍କୁ ଦେଖି ପରମ ସନ୍ତାପ ପ୍ରାପ୍ତ ହେଲେ । ୧୫ । ହେ ଭାରତ ! ରାତ୍ରିରେ ସେମାନେ ପକ୍ଷୀବେଶ ଧରି ଶୂଳାଗ୍ରସ୍ଥ ଋଷିଙ୍କ ନିକଟକୁ ଉଡ଼ିଯାଇ ଯଥାଶକ୍ତି ଆପଣାର ପରିଚୟ ଦେଇ ସେ ଦ୍ଵିଜୋତ୍ତମଙ୍କୁ ପଚାରିଲେ । ହେ ବ୍ରହ୍ମନ୍ ! ଅମ୍ଭେମାନେ ଶୁଣିବାକୁ ଇଚ୍ଛା କରୁଅଛୁଁ ଆପଣ କି ପାପ କରିଅଛନ୍ତି ଯେ ତାହା ହେତୁରୁ ଶୂଳରେ ଏତାଦୃଶ ମହତ୍ ଦୁଃଖ ଓ ଭୟ ପ୍ରାପ୍ତ ହେଉଅଛ ? । ୧୬ ।

———

## ଅଧ୍ୟାୟ ୧୦୮

ବୈଶମ୍ପାୟନ ବୋଇଲେ— ତଦନନ୍ତର ସେହି ମୁନିବର ସମସ୍ତ ତପୋଧନମାନଙ୍କୁ କହିଲେ—ଆମ୍ଭେ କାହାର ଦୋଷ ଦେଉଁ; ଅନ୍ୟ କେହି ଆମ୍ଭଠାରେ ଅପରାଧୀ ନୁହେଁ । ହେ ନରାଧିପ ! ଅନେକ ଦିନ ପରେ ରକ୍ଷିମାନେ ସେହି ମୁନିଙ୍କି ଶୂଳପରେ ଦେଖି ରାଜାଙ୍କଠାରେ ଯଥା ଘଟିତ ବୃତ୍ତାନ୍ତ ନିବେଦନ କଲେ । ସେମାନଙ୍କର ବଚନ ଶ୍ରବଣ କରି ରାଜା ବନ୍ଧୁମାନଙ୍କର ମନ୍ତ୍ରଣା ପୂର୍ବକ ଶୂଳରୁ ସେ ଋଷିଙ୍କୁ ପ୍ରସନ୍ନ କଲେ । ୩ ।

ରାଜା ବୋଇଲେ—ହେ ଋଷିସତ୍ତମ ! ମୋହ ଓ ଅଜ୍ଞାନ ବଶରୁ ଅମ୍ଭେ ଆପଣଙ୍କର ଅପକାର କରିଅଛୁଁ, ଏ ନିମିତ୍ତ ଅମ୍ଭେ ଆପଣଙ୍କୁ ପ୍ରସନ୍ନ କରୁଅଛୁଁ, ଅମ୍ଭଠାରେ କ୍ରୋଧ କରନ୍ତୁ ନାହିଁ । ୪ । ଏପରି ବଚନ ଶୁଣି ଋଷି ପ୍ରସନ୍ନ ହେଲେ, ରାଜା ତାହାଙ୍କୁ ଶୂଳରୁ ଅବତାରିତ କଲେ । ଶୂଳାଗ୍ରରୁ ଅବତାରଣ କରି ସେ ଶୂଳକୁ ଆକର୍ଷଣ କଲେ; କିନ୍ତୁ ଶୂଳକୁ ଋଷିଙ୍କ ଦେହରୁ ବାହାର କରି ନ ପାରି ତାହାକୁ ମୂଳରୁ * ଛେଦନ କଲେ । ୬ । ସେ ମୁନି ଶୂଳକୁ ଅନ୍ତର୍ଗତରେ ଧରି ବିଚରଣ କଲେ । ଅତିଶୟ ତପସ୍ୟା ଦ୍ୱାରା ସେ ଋଷି ଅପର ଦୁର୍ଲ୍ଲଭ ଲୋକମାନଙ୍କୁ ଜୟ କରିଥିଲେ । ଅଣୀ ଅର୍ଥାତ୍ ଶୂଳର ଅଗ୍ରଭାଗକୁ ଶରୀରରେ ଧାରଣ କରିଥିବାରୁ ତାହାଙ୍କର ନାମ ଅଣୀ ମାଣ୍ଡବ୍ୟ ବୋଲି ବିଖ୍ୟାତ ହେଲା । ପରମାର୍ଥ-ବେତ୍ତା ସେହି ବିପ୍ର ଧର୍ମ୍ମଙ୍କ ସଦନକୁ ଯାଇ ତାହାଙ୍କୁ ଆସନସ୍ଥ ଦେଖି ତିରସ୍କାର କଲେ । ଆମ୍ଭେ ଅଜ୍ଞାନ ବଶତଃ କି ଦୁଷ୍କୃତ କରିଥିଲୁଁ ଯେ ଯାହାର ପ୍ରତିଫଳ ସ୍ୱରୂପ ଆମ୍ଭର ଇଦୃଶୀ ଦଶା ହେଲା ? ଆମ୍ଭକୁ ଶୀଘ୍ର କହ, ଆମ୍ଭର ତପସ୍ୟାର ବଳ ଦେଖ । ୧୦ ।

ଧର୍ମ୍ମ ବୋଇଲେ—ହେ ତପୋଧନ ! ତୁମ୍ଭେ ପତଙ୍ଗିକାମାନଙ୍କ ପୁଚ୍ଛ ଦେଶରେ ଈଷିକା ପ୍ରବେଶ କରିଥିଲ । ସେହି କର୍ମ୍ମର ଫଳ ସ୍ୱରୂପ ଏ ଦଣ୍ଡ ଭୋଗ କଲ । ହେ ବିପ୍ରର୍ଷେ ! ଅଳ୍ପଦାନ କଲେ ଯେପରି ତାହାର ବହୁଗୁଣ ଫଳ ଲବ୍ଧ ହୁଅଇ ସେହି ରୂପ ଅଧର୍ମ୍ମ କଲେ ମଧ୍ୟ ବହୁ ଦୁଃଖ ଫଳକୁ ଦିଅଇ । ୧୨ ।

---

*** ମୂଳରୁ—ଅର୍ଥ ଅନ୍ତକରୁ; ଯେତେକ ଦେହ ମଧ୍ୟରେ ନ ଥିଲା ତେତେକ ଛେଦନ କଲେ ।**

ଅଣୀମାଣ୍ଡବ୍ୟ ବୋଇଲେ—ଆମ୍ଭେ କେଉଁ କାଳରେ ସେ କାର୍ଯ୍ୟ କରିଥିଲୁଁ ଯଥାର୍ଥ କରି କହ ?

ଧର୍ମରାଜ ବୋଇଲେ—ତୁମ୍ଭେ ବାଲ୍ୟକାଳରେ କରିଥିଲ । ୧୩ ।

ଅଣୀମାଣ୍ଡବ୍ୟ ବୋଇଲେ—ଜନ୍ମ ଅବଧି ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ବାଳକାବସ୍ଥାରେ ଯେଉଁ କାର୍ଯ୍ୟ କରିବେ ତହିଁରେ ଅଧର୍ମ ହୁଅଇ ନାହିଁ; ଧର୍ମଶାସ୍ତ୍ରମାନେ ସେ ଅବସ୍ଥାରେ କାର୍ଯ୍ୟକୁ ଅଧର୍ମ ବୋଲିବେ ନାହିଁ । ୧୪ । ଅଳ୍ପ ଅପରାଧରେ ତୁମ୍ଭେ ମହାନ୍ ଦଣ୍ଡ ବିଧାନ କଲ, ସର୍ବପ୍ରାଣି ବଧ ଅପେକ୍ଷା ବ୍ରାହ୍ମଣ ବଧ ଗୁରୁତର । ୧୫ । ଅତଏବ ହେ ଧର୍ମ ! ତୁମ୍ଭେ ଶୂଦ୍ର ଯୋନିରେ ମନୁଷ୍ୟ ହୋଇ ଜନ୍ମ ହେବ । କର୍ମଫଳ ପ୍ରାପ୍ତି ସମ୍ବନ୍ଧରେ ଆମ୍ଭେ ଲୋକରେ ଏହି ମର୍ଯ୍ୟାଦା ସ୍ଥାପନ କଲୁଁ ଯେ ଚତୁର୍ଦ୍ଦଶ ବର୍ଷ ପର୍ଯ୍ୟନ୍ତ ପାତକ ହେବ ନାହିଁ । ତଦୂର୍ଦ୍ଧ୍ୱରେ ଯେବେ ଦୋଷ କରେ, ତେବେ ପାପ ହେବ । ୧୭ ।

ବୈଶମ୍ପାୟନ ବୋଇଲେ—ସେହି ମହର୍ଷିଙ୍କଠାରେ ଏହି ଅପରାଧ କରି ଧର୍ମ ବିଦୁର ରୂପେ ଶୂଦ୍ରଯୋନିରେ ଜନ୍ମ ହେଲେ । ସେ ବିଦୁର ଧର୍ମ ଓ ଅର୍ଥରେ କୁଶଳ, କ୍ରୋଧ ଓ ଲୋଭ ବିବର୍ଜ୍ଜିତ, ଦୀର୍ଘଦର୍ଶୀ, ଶମପରାୟଣ ଓ କୁରୁବଂଶର ହିତରେ ରତ ଥିଲେ । ୧୯ ।

---

## ଅଧ୍ୟାୟ ୧୦୯

ବୈଶମ୍ପାୟନ ବୋଇଲେ—ଅନନ୍ତର ସେହି ତିନିପୁତ୍ର ଜାତ ହେବାରୁ କୁରୁଜାଙ୍ଗଳ କୁରବ ଓ କୁରୁକ୍ଷେତ୍ର ଏହି ତିନି ଦେଶରେ ସମୃଦ୍ଧି ଉନ୍ନତ ହେଲା । ୧ । ଭୂମି ପ୍ରଚୁର ଶସ୍ୟଶାଳିନୀ ହେଲା । ଶସ୍ୟ ସବୁ ରସବାନ୍ ହେଲେ, ମେଘମାନେ ଯଥା ସମୟରେ ବର୍ଷଣ କରିବାରୁ ବୃକ୍ଷସବୁ ବହୁପୁଷ୍ପ ଓ ବହୁ ଫଳବାନ୍ ହେଲେ । ବାହନମାନେ ପ୍ରହୃଷ୍ଟ ହେଲେ; ମୃଗ, ପକ୍ଷୀମାନେ ପ୍ରମୋଦାନ୍ୱିତ ହେଲେ । ମାଲ୍ୟମାନେ ଗନ୍ଧଯୁକ୍ତ ଓ ଫଳମାନେ ରସବନ୍ତ ହେଲେ । ବାଣିଜ୍ୟୋପଜୀବି ଓ ଶିଳ୍ପୋପଜୀବୀ ଜନ ସମୂହରେ ନଗର ପୂରିତ ହେଲା । ଶୂର, କୃତବିଦ୍ୟ ଓ ସାଧୁମାନେ ସୁଖୀ

ହେଲେ । ୪ । ଦସ୍ୟୁ ଓ ଅଧାର୍ମିକ ଲୋକେ ରହିତ ହେଲେ ଓ ରାଷ୍ଟ୍ରର ସର୍ବ ପ୍ରଦେଶରେ ସତ୍ୟଯୁଗ ଉପସ୍ଥିତ ହେଲା । ୫ । ପ୍ରଜାବୃନ୍ଦ ଧର୍ମପରାୟଣ ଯାଗଶୀଳ, ସତ୍ୟନିଷ୍ଠ ଓ ପରସ୍ପର ପ୍ରୀତିଯୁକ୍ତ ହେଲେ । ୬ ।

ମହୋଦଧି ପ୍ରାୟ ସେ ନଗର ପରିପୂର୍ଣ୍ଣ ଦୃଶ୍ୟ ହେଲା । ଦ୍ୱାର, ତୋରଣ ଓ ଅଭ୍ର ସମୂହ ପ୍ରାୟ ବହୁସଂଖ୍ୟ ପ୍ରାସାଦ ଶ୍ରେଣୀର ଶିଖର ଦେଶର ଶୋଭା ଦ୍ୱାରା ସେ ନଗର ମହେନ୍ଦ୍ରଙ୍କ ଭବନ ସଦୃଶ ଶୋଭାନ୍ୱିତ ଦିଶିଲା । ୮ । ଜନମାନେ ନଦୀମାନଙ୍କ ତଟରେ, ବନ ସମୂହରେ, ବାପୀ ପଲ୍ୱଲ ଓ ସାନୁ ଜଳାଶୟର ପାର୍ଶ୍ୱଦେଶରେ ଓ ରମଣୀୟ କାନନମାନଙ୍କରେ ମୁଦାନ୍ୱିତ ହୋଇ ବିହାର କଲେ । ୯ । ଦକ୍ଷିଣ କୁରୁବର ଲୋକମାନେ ଉତ୍ତର କୁରୁବର ଲୋକମାନଙ୍କ ସହିତ ସ୍ପର୍ଦ୍ଧମାନ ହୋଇ ସିଦ୍ଧ ଓ ଚାରଣଗଣଙ୍କ ସହିତ ବିଚରଣ କଲେ । ୧୦ । କୁରୁଗଣଙ୍କ ପ୍ରତିପାଳିତ ଏହି ଜନପଦରେ ଲୋକେ କେହି କୃପଣ ହେଲେ ନାହିଁ କି ସ୍ତ୍ରୀମାନେ ବିଧବା ହେଲେ ନାହିଁ । ୧୧ । ସେ ରାଜ୍ୟରେ କୂପ, ଉପବନ, ବାପୀ, ସଭା ଓ ସର୍ବ-ସମ୍ପତ୍ତି-ସମ୍ପନ୍ନ ବ୍ରାହ୍ମଣ ଶାସନ ଅନେକ ହେଲା । ଉତ୍ସବମାନ ସର୍ବଦା ସ୍ଥାନେ ସ୍ଥାନେ ଲାଗିଲା । ୧୨ । ହେ ରାଜନ୍ । ସେ ରାଜ୍ୟକୁ ଭୀଷ୍ମ ଧର୍ମାନୁସାରେ ରକ୍ଷା କରିବାରୁ ଶତ ଶତ ଚୈତ୍ୟ ଓ ଯୂପରେ ମହୀ ରମଣୀୟ ଦୃଶ୍ୟ ହେଲା । ୧୩ । ଭୀଷ୍ମଙ୍କ ବିଧାନାନୁସାରେ ସେ ରାଜ୍ୟରେ ଧର୍ମଚକ୍ର ଏପରି ଭାବରେ ପ୍ରବର୍ତ୍ତିତ ହେଲା ଯେ, ଅପର ରାଜ୍ୟରୁ ଲୋକେ ଆସି ଏ ରାଜ୍ୟରେ ବସତି କଲେ । ୧୪ । ମହାତ୍ମା କୁରୁ କୁମାରମାନଙ୍କ କାର୍ଯ୍ୟାବଳୀ ବିଲୋକନ କରି ପୌରଜନମାନେ ଓ ଦେଶର ପ୍ରଜାମାନେ ସମସ୍ତେ ପରମ ଉତ୍ସୁକ ହେଲେ । ୧୫ ।

ହେ ନରାଧିପ । କୁରୁବଂଶର ପ୍ରଧାନ ବ୍ୟକ୍ତିଙ୍କ ଗୃହରେ ଓ ପୌରଜନମାନଙ୍କ ଗୃହରେ 'ଦିଅ', 'ଖାଅ' ବୋଲି ଶବ୍ଦ ମାନ ସର୍ବଦା ଅବିରତ ଶ୍ରୁତ ହେଲା । ୧୬ । ଧୃତରାଷ୍ଟ୍ର, ପାଣ୍ଡୁ ଓ ମହାମତି ବିଦୁର ଜନ୍ମାବଧି ଭୀଷ୍ମଙ୍କ ଦ୍ୱାରା ପୁତ୍ରବତ୍ ପ୍ରତିପାଳିତ ହେଲେ । ୧୭ । ସଂସ୍କାର ମାନଙ୍କରେ ସଂସ୍କୃତ ହୋଇ, ବ୍ରତ ଓ ଅଧ୍ୟୟନ ସଂଯୁକ୍ତ କୁମାରମାନେ ଶ୍ରମସାଧ୍ୟ ବ୍ୟାୟାମରେ କୁଶଳୀ ହୋଇ ଯୌବନ ପ୍ରାପ୍ତ ହେଲେ । ୧୮ । ଧନୁର୍ବେଦରେ, ଅଶ୍ୱାରୋହଣରେ, ଗଦାଯୁଦ୍ଧରେ ଓ ଅସିଚର୍ମ ସଞ୍ଚାଳନରେ ଅଥଚ ଗଜଶିକ୍ଷା ଓ ନୀତି ଶାସ୍ତ୍ରରେ ସେମାନେ ପାରଗାମୀ

ହେଲେ । ଇତିହାସ, ପୁରାଣ ଓ ବିବିଧ ଶିକ୍ଷାରେ ବୋଧିତ ହୋଇ, ବେଦ ବେଦାଙ୍ଗ-ତତ୍ତ୍ୱଜ୍ଞ ସେହି କୁରୁପୁତ୍ରମାନେ ସବୁବିଷୟରେ ସିଦ୍ଧାନ୍ତ କରିବାକୁ ସମର୍ଥ ହେଲେ । ୨୦ । ଧନୁର୍ବିଦ୍ୟାରେ ପାଣ୍ଡୁ ଅନ୍ୟ ନରମାନଙ୍କ ଅପେକ୍ଷା ଅଧିକ ବିକ୍ରମଶାଳୀ ହେଲେ ଓ ମହୀପତି ଧୃତରାଷ୍ଟ୍ର ଅନ୍ୟଙ୍କ ଅପେକ୍ଷା ଅଧିକ ବଳବାନ୍ ହେଲେ । ୨୧ । ହେ ରାଜନ୍ । ବିଦୁର ଧର୍ମ୍ମ ସମ୍ବନ୍ଧରେ ପରମାତ୍ମ-ଦର୍ଶୀ ଓ ଧର୍ମ୍ମପଥବର୍ତ୍ତୀ ଥିଲେ । ତିନି ଲୋକରେ ସେ ସମ୍ବନ୍ଧରେ ତାହାଙ୍କର ସମାନ କେହି ନ ଥିଲେ । ୨୨ ।

ପ୍ରନଷ୍ଟ ଶାନ୍ତନୁଙ୍କର ବଂଶକୁ ପୁନରୁଦ୍ଧୃତ ହେବାର ରାଜାମାନେ ଦେଖି ସର୍ବରାଜ୍ୟର ଲୋକେ ଏହି ନିର୍ବଚନ କଲେ ଯେ ବୀର ପ୍ରସବିନୀଙ୍କ ମଧ୍ୟରେ କାଶୀରାଜାଙ୍କର ଦୁଇ ଦୁହିତା ଜ୍ୟେଷ୍ଠା ଓ ଶ୍ରେଷ୍ଠା, ଦେଶମାନଙ୍କ ମଧ୍ୟରେ କୁରୁଜାଙ୍ଗଳ, ଧର୍ମବେତ୍ତାଙ୍କ ମଧ୍ୟରେ ଭୀଷ୍ମ ଓ ନଗରମାନଙ୍କର ହସ୍ତିନାପୁର ଶ୍ରେଷ୍ଠ ଅଟଇ । ୨୪ । ଚକ୍ଷୁ ରହିତ ହୋଇଥିବାରୁ ଧୃତରାଷ୍ଟ୍ର ଓ ଶୂଦ୍ରାଗର୍ଭ ସମ୍ଭୂତ ହେବାରୁ ବିଦୁର ରାଜ୍ୟ ପ୍ରାପ୍ତ ହେଲେ ନାହିଁ; ପାଣ୍ଡୁ ରାଜା ହେଲେ । ୨୫ । ସର୍ବ-ନୀତିବେତ୍ତାଙ୍କ ବରଗାଙ୍ଗେୟ ଏକଦା ଧର୍ମ-ତତ୍ତ୍ୱଜ୍ଞ ବିଦୁରଙ୍କୁ ବୋଇଲେ । ୨୬ ।

---

## ଅଧ୍ୟାୟ ୧୧୦

ଭୀଷ୍ମ ବୋଇଲେ—ଆମ୍ଭମାନଙ୍କର ସର୍ବଗୁଣ ସମ୍ପନ୍ନ ଓ ସର୍ବତ୍ର ବିଖ୍ୟାତ ଏହି କୁରୁକୁଳ ପୃଥିବୀରେ ଅନ୍ୟ ସମସ୍ତ ପୃଥିବୀପାଳଙ୍କ ଉପରେ ଆଧିପତ୍ୟ କରି ଆସିଅଛି । ଧର୍ମ୍ମପରାୟଣ ମହାତ୍ମା ରାଜଗଣଙ୍କ କର୍ତ୍ତୃକ ଏହି ରାଜକୁଳ ପୂର୍ବରୁ ପରି ରକ୍ଷିତ ହୋଇ କଦାପି ଉଚ୍ଛେଦ ପ୍ରାପ୍ତ ହୋଇ ନାହିଁ । ୨ । ଏଥର ଆମ୍ଭେ, ସତ୍ୟବତୀ ଓ ମହାତ୍ମା କୃଷ୍ଣ-ଦ୍ୱୈପାୟନ ତୁମ୍ଭମାନଙ୍କ ଦ୍ୱାରା ଏହି କୁଳର ସନ୍ତତିକୁ ପୁନର୍ବାର ଅବସ୍ଥାପିତ କଲୁଁ । ୩ । ଏବେ ଏହି କୁଳ ଯେପରି ସାଗର ପ୍ରାୟ ପରିବର୍ଦ୍ଧିତ ହେବ, ତଦ୍‌ବିଷୟରେ ଆମ୍ଭେ ଯତ୍ନ କରିବୁଁ ଓ ତୁମ୍ଭେ ମଧ୍ୟ ଯତ୍ନ କରିବ, ଏଥିରେ ସଂଶୟ ନାହିଁ । ୪ । ଶୁଣା ଯାଉଅଛି ଯେ ଯଦୁବଂଶୀୟା କନ୍ୟା, ଶୂରସେନ ଦେଶର ସୁବଳଙ୍କର ଦୁହିତା ଓ ମଦ୍ରେଶ୍ୱରଙ୍କର ଆତ୍ମଜା ଅଛନ୍ତି । ଏ ତିନିହେଁ ଆମ୍ଭ

କୁଳର ଅନୁରୂପା ଅଟନ୍ତି । ହେ ପୁତ୍ର ! ଏମାନେ ରୂପବତୀ ଓ କୁଳୀନା; ଉତ୍ତମ କ୍ଷତ୍ରିୟ ବଂଶରେ ତାହାଙ୍କର ଜନ୍ମ ଓ ସର୍ବ ବିଷୟରେ ସେମାନେ ଆମ୍ଭ ସହିତ ସମ୍ବନ୍ଧର ଯୋଗ୍ୟ ଅଟନ୍ତି । ୬ । ହେ ଧୀମାନ୍-ଶ୍ରେଷ୍ଠ ବିଦୁର ! ଏହି କୁଳର ସନ୍ତାନାର୍ଥ ତାହାଙ୍କୁ ବରଣ କରିବାକୁ ଆମ୍ଭେ ଇଚ୍ଛା କରୁଅଛୁଁ; ତୁମ୍ଭର କି ବିଚାର ? । ୭ ।

ବିଦୁର ବୋଇଲେ—ଆପଣ ଆମ୍ଭମାନଙ୍କର ପିତା, ଆପଣ ଆମ୍ଭମାନଙ୍କର ମାତା, ଆପଣ ଆମ୍ଭମାନଙ୍କର ପରମ ଗୁରୁ, ଅତଏବ ଏ କୁଳର ଯହିଁରେ ହିତ ହୁଏ ତାହା ସ୍ୱୟଂ ବିଚାର କରି କରିବା ହେଉନ୍ତୁ । ୮ ।

ବୈଶମ୍ପାୟନ ବୋଇଲେ—ବିପ୍ରମାନଙ୍କ ଠାରୁ ଭୀଷ୍ମ ଶୁଣିଲେ ଯେ ଭଗନେତ୍ରହର * ବରଦ ମହାଦେବଙ୍କୁ ଆରାଧନା କରି ସୁବଳ ଦୁହିତା ଗାନ୍ଧାରୀ ଶତପୁତ୍ର ଲାଭର ବରପ୍ରାପ୍ତ ହୋଇଥିଲେ । କୁରୁକୁଳ ପିତାମହ ଭୀଷ୍ମ ସେ ବିଷୟ ନିଷ୍ଟୟ ଥିବାର ଶୁଣି ହେ ଭାରତ ! ଗାନ୍ଧାର ରାଜାଙ୍କ ନିକଟକୁ ଦୂତ ପ୍ରେରଣ କଲେ । ୧୦ । ଧୃତରାଷ୍ଟ୍ର ଅନ୍ଧ ଥିବାର ଶୁଣି ଗାନ୍ଧାରରାଜା ଅନେକ ବିଚାରଣା କଲେ; କିନ୍ତୁ କୁଳ ଖ୍ୟାତି ଓ ଚରିତ୍ର ବିଷୟ ବୁଦ୍ଧିଦ୍ୱାରା ସମ୍ୟକ ଅବେଚନା କରି ଧର୍ମଚାରିଣୀ ଗାନ୍ଧାରୀଙ୍କି ଧୃତରାଷ୍ଟ୍ରଙ୍କୁ ପ୍ରଦାନ କଲେ । ୧୨ । ହେ ଭାରତ ! ଗାନ୍ଧାରୀ ଶୁଣିଲେ ଯେ ଧୃତରାଷ୍ଟ୍ରଙ୍କର ଚକ୍ଷୁ ନାହିଁ ଓ ମାତା ପିତା ତାହାଙ୍କୁ ପ୍ରଦାନ କରିବାକୁ ଇଚ୍ଛା କରିଅଛନ୍ତି । ୧୩ । ତଦନନ୍ତର ହେ ରାଜନ୍ ! ସେ ପତିବ୍ରତା ପରାୟଣା ବିଚାରିଲେ ଯେ, "ଆମ୍ଭେ ପତିଙ୍କୁ ଅସୂୟା † କରିବୁଁ ନାହିଁ ।" ଏହା ବିଚାରି ସେ ଖଣ୍ଡେ ପଟ୍ଟ ଆଣି ତାହାକୁ ଚଉପୁଟ କରି ଆପଣା ନେତ୍ରରେ ବନ୍ଧନ କଲେ । ତତ୍ପରେ ଗାନ୍ଧାର ରାଜାଙ୍କ ପୁତ୍ର ଶକୁନି ରୂପ-ଯୌବନସମ୍ପନ୍ନା ଓ ଲକ୍ଷ୍ମୀମତୀ ଭଗିନୀଙ୍କୁ ଘେନି ଆସି କୌରବଗଣଙ୍କ ନିକଟରେ ଉପସ୍ଥିତ ହେଲେ ଓ ସେ ପରମ ସତ୍କୃତା କନ୍ୟାଙ୍କୁ ଧୃତରାଷ୍ଟ୍ରଙ୍କୁ ପ୍ରଦାନ କଲେ । ଅଥଚ ଭୀଷ୍ମଙ୍କ ଅନୁମତି ଅନୁସାରେ ବିବାହ କରାଇଲେ । ୧୬ । ଯଥାଯୋଗ୍ୟ ପରିଚ୍ଛଦ ସହିତ ଭଗିନୀଙ୍କି ସମ୍ପ୍ରଦାନ

---

* ଭଗ ନାମ ଦେବତାଙ୍କ ନେତ୍ର ହରଣକାରୀ
† ଅସୂୟା—ନିନ୍ଦା

କର, ଭୀଷ୍ମଙ୍କ ଠାରୁ ସମୁଚିତ ମର୍ଯ୍ୟାଦା ପ୍ରାପ୍ତହୋଇ ସେ ବୀର ପୁନର୍ବାର ନିଜ ନଗରକୁ ଆଗମନ କଲେ । ୧୭ । ହେ ଭାରତ ! ବରାରୋହା ଗାନ୍ଧାରୀ ଶୀଳତା, ଆଚାର ଓ କ୍ରିୟା ଦ୍ୱାରା ସମସ୍ତ କରୁମାନଙ୍କର ତୁଷ୍ଟି ଜାତ କଲେ । ୧୮ । ସୁବ୍ରତା ଗାନ୍ଧାରୀ ସଦ୍‌ବ୍ୟବହାର ଦ୍ୱାରା ଗୁରୁମାନଙ୍କୁ ଆରାଧନା କରୁଥିଲେ । ବାକ୍ୟ ଦ୍ୱାରା ସୁଦ୍ଧା ସେ ଅପର ପୁରୁଷର ଉଲ୍ଲେଖ କରୁ ନ ଥିଲେ ।

---

## ଅଧ୍ୟାୟ ୧୧୧

ବୈଶମ୍ପାୟନ ବୋଇଲେ—ଶୂର ନାମଧେୟ ଯଦୁକୁଳଶ୍ରେଷ୍ଠ ଗୋଟିଏ ମହାତ୍ମା ବସୁଦେବଙ୍କର ପିତା ଥିଲେ, ପୃଥିବୀ ମଧ୍ୟରେ ଅନୁପମ ରୂପବତୀ ପୃଥା ନାମରେ ତାହାଙ୍କର ଗୋଟିଏ ଦୁହିତା ହେଲେ । ହେ ଭାରତ ! ସତ୍ୟବାଦୀ ଶୂରଙ୍କର ପିତୃଷ୍ୱସ୍ରୀୟ* ପୁତ୍ରହୀନ ମହାତ୍ମା କୁନ୍ତୀ ଭୋଜରାଜା ପ୍ରିୟ ସୁହୃତ ଥିଲେ । ତାହାଙ୍କ ପ୍ରାର୍ଥନାନୁସାରେ ଶୂର ପ୍ରତିଜ୍ଞା କରିଥିଲେ ଯେ ତାହାଙ୍କର ପ୍ରଥମ ସନ୍ତାନକୁ କୁନ୍ତୀ ଭୋଜରାଜାଙ୍କୁ ପ୍ରଦାନ କରିବେ । ସେହି ଅଙ୍ଗୀକାର ଶୂରଙ୍କର ପ୍ରଥମ ଗର୍ଭରେ ଜାତ ସେହି କନ୍ୟାଙ୍କୁ ତାହାଙ୍କୁ ପ୍ରଦାନ କଲେ । ପୃଥା ପିତୃଗୃହରେ ବ୍ରାହ୍ମଣ ସେବାରେ ଓ ଅତିଥି ସତ୍କାରରେ ନିଯୁକ୍ତା ଥିଲେ । ଏକଦା ସେ କନ୍ୟା, ଜିତେନ୍ଦ୍ରିୟ, ବ୍ରତପରାୟଣ ଉଗ୍ରସ୍ୱଭାବ, ଓ ଧର୍ମର ନିଗୂଢ଼ ତତ୍ତ୍ୱଜ୍ଞ ବ୍ରାହ୍ମଣ ଦୁର୍ବାସାଙ୍କୁ ସର୍ବପ୍ରଯତ୍ନରେ ପରିଚର୍ଯ୍ୟା କରି ସନ୍ତୁଷ୍ଟ କଲେ । ସେ ମୁନି ଭବିଷ୍ୟତରେ ସନ୍ତାନର ପ୍ରତିବନ୍ଧକତା ଦେଖି ଆପଦ୍ଧର୍ମକୁ ବିଚାର କରି ତାହାଙ୍କୁ ଅଭିଚାରଯୁକ୍ତ ମନ୍ତ୍ର ପ୍ରଦାନ କଲେ ଓ ବୋଇଲେ । ତୁମ୍ଭେ ଏହି ମନ୍ତ୍ର ଦ୍ୱାରା ଯେଉଁ ଯେଉଁ ଦେବତାଙ୍କୁ ଆବାହନ କରିବ ସେହି ସେହି ଦେବତାଙ୍କ ପ୍ରସାଦରେ ତୁମ୍ଭର ପୁତ୍ର ଜାତ ହେବ । ୭ ।

ଯଶସ୍ୱିନୀ କନ୍ୟା † କୁନ୍ତୀ ସେ ବାକ୍ୟ ଶ୍ରବଣ କରି କୌତୂହଳାନ୍ୱିତା ହୋଇ ଦେବ ଅର୍କଙ୍କୁ ଆହ୍ୱାନ କଲେ । ୮ । ଲୋକ ରକ୍ଷା-

---

* ପିଉସୀ ପୁଅ ଭାଇ

† ଅପ୍ରାପ୍ତ ଯୌବନ

କାରୀ ଭାସ୍କରଙ୍କ ଆବାହନ କରିବାର ମହଦ୍‌ଭୁତ ବ୍ୟାପାର ବିଲୋକନ କରି ସେହି ଅନବଦ୍ୟାଙ୍ଗୀ ବିସ୍ମୟାବିଷ୍ଟ ହେଲେ । ଦେବ ବିବସ୍ୱାନ୍ ତାହାଙ୍କ ସମୀପରେ ଉପସ୍ଥିତ ହୋଇ ପଚାରିଲେ, ହେ ଅସିତାପାଙ୍ଗି । ଏହି ଆମ୍ଭେ ଆସିଲୁଁ, ତୁମ୍ଭର କି କାର୍ଯ୍ୟ କରିବୁ କହ । ୧୦ ।

କୁନ୍ତୀ ବୋଇଲେ—ହେ ଶତ୍ରୁହନ୍ । ଜଣେ ବ୍ରାହ୍ମଣ ଆସି ଆମ୍ଭଙ୍କୁ ଏହି ବର ଓ ବିଦ୍ୟା ପ୍ରଦାନ କଲେ; ହେ ବିଭୋ । ସେ ବର ସିଦ୍ଧ ହେବ କି ନା ଜାଣିବା ନିମିତ୍ତ ତୁମ୍ଭଙ୍କୁ ଆହ୍ୱାନ କଲି । ୧୧ । ଏହି ଅପରାଧ ହେତୁରୁ ତୁମ୍ଭଙ୍କୁ ଜୁହାର ହୋଇ ପ୍ରସନ୍ନ କରୁଅଛି । ନାରୀମାନେ ଅପରାଧ କଲେହେଁ ସେମାନେ ରକ୍ଷଣୀୟା ହୁଅନ୍ତି । ୧୨ ।

ସୂର୍ଯ୍ୟ ବୋଇଲେ, ଦୁର୍ବାସା ଯେ ବର ଦାନ କରିଥିଲେ ତାହା ଆମ୍ଭେ ସବୁ ଜାଣୁଁ । ତୁମ୍ଭେ ଭୟତ୍ୟାଗ କରି ଆମ୍ଭ ସହିତ ସଙ୍ଗମ କର । ୧୩ । ହେ ଶୁଭେ ! ଆମ୍ଭ ଆହୂତ ହୋଇଅଛୁଁ, ଆମ୍ଭ ଦର୍ଶନ ନିଷ୍ଫଳ ଯିବ ନାହିଁ । ହେ ଭୀରୁ ! ତୁମ୍ଭେ ବୃଥା ଆହ୍ୱାନ କଲେହେଁ ତୁମ୍ଭର ଏଥିରେ ଦୋଷ ହୋଇଅଛି ସଂଶୟ ନାହିଁ । ୧୪ ।

ବୈଶମ୍ପାୟନ ବୋଇଲେ, ହେ ଭାରତ । ସୂର୍ଯ୍ୟ ଏହିରୂପେ ନାନା ସାନ୍ତ୍ୱନା ବାକ୍ୟ କହିଲେ; କିନ୍ତୁ ସେ ବରାରୋହା କନ୍ୟାଥିବାର ଜାଣି ସଙ୍ଗମ ଇଚ୍ଛା କଲେ ନାହିଁ । ସେ ଯଶସ୍ୱିନୀ ବନ୍ଧୁପକ୍ଷୀୟ ବ୍ୟକ୍ତିଙ୍କ ଠାରୁ ଭୀତା ହେଲେ । ୧୫ । ହେ ଭରତର୍ଷଭ । ଅର୍କ ତାହାଙ୍କୁ ପୁନର୍ବାର ବୋଇଲେ ହେ ରାଜ୍ଞି । ଆମ୍ଭ ପ୍ରସାଦରୁ ତୁମ୍ଭେ କୌଣସି ଦୋଷରେ ଦୂଷିତା ହେବ ନାହିଁ । କୁନ୍ତୀ-ରାଜ-ସୁତାକୁ ସେ ଭଗବାନ୍ ତପନ ଏହା କହି ତାହାଙ୍କ ସହିତ ସଙ୍ଗତ ହେଲେ । ୧୭ । ତହିଁରେ ସର୍ବ-ଶସ୍ତ୍ର-ଧାରୀଙ୍କ ଶ୍ରେଷ୍ଠ, ଦେବ ସଦୃଶ ଶ୍ରୀଯୁକ୍ତ, ସହଜ କବଚ ଧାରୀ, କୁଣ୍ଡଳ ଶୋଭିତାନନ ଓ ସର୍ବ ଲୋକ ବିଶ୍ରୁତ କର୍ଣ୍ଣ ନାମକ ସୁତ ଜାତ ହେଲେ । ୧୯ । ପରମ ଦ୍ୟୁତି ସୂର୍ଯ୍ୟ ପୁନର୍ବାର ତାହାଙ୍କୁ କନ୍ୟାତ୍ୱ ଦାନ କରି ସ୍ୱୟଂ ଦ୍ୟୁଲୋକକୁ ଆରୋହଣ କଲେ । ୨୦ ।

ବୃଷ୍ଣିକୁଳ-ନନ୍ଦିନୀ ସେ କୁମାରକୁ ଦେଖି ଅତି ଦୁଃଖିତ ମନରେ ଚିନ୍ତା କଲେ ଯେ, କି କଲେ ଉତ୍ତମ ହେବ । ୨୧ । ବନ୍ଧୁପକ୍ଷୀୟ ବ୍ୟକ୍ତିଙ୍କ ଠାରୁ ଭୀତ ହୋଇ ଏହି ଅପକର୍ମକୁ ଗୋପନ କରିବା

ଅଭିପ୍ରାୟରେ ସେ ଏହି ମହାବଳ କୁମାରକୁ ଜଳରେ ଉତ୍ସର୍ଗ କଲେ ।୨୨। ସୂତଙ୍କ ନନ୍ଦନ ମହାଯଶା ରାଧା-ଭର୍ତ୍ତା ସଭାର୍ଯ୍ୟ ହୋଇ ସେହି ଉତ୍ସୃଷ୍ଟ କୁମାରକୁ ପୁତ୍ର କଲେ । ୨୩ । ବାଳକଟି କବଚ କୁଣ୍ଡଳ ପ୍ରଭୃତି ବସୁ ବସୁ * ଘେନି ଜାତ ହୋଇଥିବାରୁ ରାଧା-ଭର୍ତ୍ତା ଓ ତାହାଙ୍କ ଭାର୍ଯ୍ୟା ଦୁହେଁ ତାହାର ନାମ ବସୁଷେଣ ଦେଲେ । ୨୪ । ସେହି ବଳବାନ୍ ବାଳକ ବୃଦ୍ଧି ଲାଭ ସଙ୍ଗେ ସଙ୍ଗେ ସର୍ବ ପ୍ରକାର ଅସ୍ତ୍ର ବିଦ୍ୟାମାନ ଲାଭ କଲେ ଓ ସେ ଏପରି ବୀର୍ଯ୍ୟଶାଳୀ ଥିଲେ ଯେ ତାହାଙ୍କର ପୃଷ୍ଠଦେଶ ତାପିତ ହେବା ପର୍ଯ୍ୟନ୍ତ ସୂର୍ଯ୍ୟଙ୍କର ଉପାସନା କରୁଥିଲେ । ୨୫ ।

ସେ ଧୀମାନ୍ ବୀର ବର୍ମ୍ମ ଜପ କରିବା ବେଳେ ଯେଉଁ ବ୍ରାହ୍ମଣ ଏହି ପୃଥିବୀରେ ଯାହା ଯାଚଞ୍ଜା କରୁଥିଲେ ତାହା ସେ ତାଙ୍କୁ ଦାନ କରୁଥିଲେ । ୨୬ ।

ଏକଦା ଇନ୍ଦ୍ର ଅର୍ଜ୍ଜୁନଙ୍କ ହିତ କାମନାରେ ବ୍ରାହ୍ମଣ ରୂପ ଧାରଣ କରି ଭିକ୍ଷାର୍ଥୀ ହୋଇ ତାହାଙ୍କୁ କବଚ ପ୍ରାର୍ଥନା କଲେ । କର୍ଣ୍ଣ ଆପଣାର ସହଜ କବଚକୁ ଶରୀରରୁ ଉତ୍ପାଟନ କରି ବିପ୍ରରୂପ ଶକ୍ରଙ୍କୁ କୃତାଞ୍ଜଳି ହୋଇ ଦାନ କଲେ । ୨୯ । ସୁରପତି ଦେବରାଜ କବଚକୁ ପ୍ରତିଗ୍ରହ କରି ତାହାଙ୍କର ସେ କାର୍ଯ୍ୟରେ ତୁଷ୍ଟ ହୋଇ ତାହାଙ୍କୁ ଶକ୍ତି ଅସ୍ତ୍ରକୁ ଦାନ କଲେ ଓ କହିଲେ । ଦେବ, ଅସୁର, ମନୁଷ୍ୟ, ଗନ୍ଧର୍ବ, ନାଗ ଓ ରାକ୍ଷସଙ୍କ ମଧ୍ୟରେ ଯାହାକୁ ତୁମ୍ଭେ ଜୟ କରିବାକୁ ଇଚ୍ଛା କରିବ, ତାହା ପ୍ରତି ଏ ଶକ୍ତି ପ୍ରୟୋଗ କଲେ ସେ ଜୀବିତ ରହିବ ନାହିଁ । ୩୦ । ପୂର୍ବେ ତାହାଙ୍କର ନାମ ବସୁଷେଣ ହେବାର କାରଣ କଥିତ ହୋଇଅଛି । ତତ୍ପରେ ତାହାଙ୍କର କର୍ମ୍ମଦ୍ୱାରା କର୍ଣ୍ଣ ଓ ବୈକର୍ତ୍ତନ ନାମ ହେଲା । ୩୧ ।

---

* ବସୁ—ଦେବତା ବିଶେଷ । ଭବ, ଧ୍ରୁବ, ସୋମ, ବିଷ୍ଣୁ, ଅନଳ, ଅନିଳ, ପ୍ରତ୍ୟୂଷ, ପ୍ରଭବ ଏହି ଅଷ୍ଟବସୁ । ବସୁ—ଧନ ।

## ଅଧ୍ୟାୟ ୧୧୨

ବୈଶମ୍ପାୟନ ବୋଇଲେ—କୁନ୍ତି-ଭୋଜ-ଦୁହିତା ପ୍ରଶସ୍ତ ନୟନା ପୃଥା ରୂପ ଓ ସତ୍ୟଗୁଣ ସମ୍ପନ୍ନା, ଅଥଚ ବ୍ରତ ଓ ଧର୍ମ୍ମପରାୟଣା ଥିଲେ । ରୂପ ଯୌବନ ଶାଳିନୀ ସେହି ତେଜସ୍ୱିନୀ କନ୍ୟାଙ୍କୁ ଅତଏବ ସ୍ତ୍ରୀ ଗୁଣ ସଂଯୁକ୍ତା ଦେଖି କେହି ପାର୍ଥିବ ତାହାଙ୍କୁ ବରଣ କଲେ ନାହିଁ । ୨ । ତଦନନ୍ତର ହେ ରାଜସତ୍ତମ ! ତାହାଙ୍କର ପିତା ରାଜା କୁନ୍ତୀଭୋଜ ନରାଧିପ ମାନଙ୍କୁ ଆହ୍ୱାନ କରି ସ୍ୱୟଂବରରେ କନ୍ୟାକୁ ଦାନ କଲେ । ଉପରେ ସେ ମନସ୍ୱିନୀ, ରାଜାଙ୍କର ସଭା ମଧ୍ୟସ୍ଥିତ ରାଜଶାର୍ଦ୍ଦୂଳ ଭରତକୁଳ ଶ୍ରେଷ୍ଠ ପାଣ୍ଡୁଙ୍କୁ ଦେଖିଲେ । ୪ । ତାହାଙ୍କର ସିଂହ ପ୍ରାୟ ପରାକ୍ରମ; ବକ୍ଷସ୍ଥଳ ପ୍ରଶସ୍ତ, ବୃଷଭ ପ୍ରାୟ ନେତ୍ର, ମହାବଳ ଆଦିତ୍ୟଙ୍କ ପ୍ରାୟ ସେ ନିଜ ପ୍ରଭା ଦ୍ୱାରା ସମସ୍ତ ରାଜାଙ୍କର ପ୍ରଭାକୁ ଆଚ୍ଛାଦିତ କରୁଥିଲେ, ଓ ଦ୍ୱିତୀୟ ପୁରନ୍ଦର ପ୍ରାୟ ରାଜ ସମିତିରେ ସ୍ଥିତ ହୋଇଥିଲେ । ୫ । ସେହି ଅନବଦ୍ୟାଙ୍ଗୀ ଶୁଭଲକ୍ଷଣା କୁନ୍ତିଭୋଜ ସୁତା ରଙ୍ଗ ମଧ୍ୟରେ ପାଣ୍ଡୁଙ୍କୁ ବିଲୋକନ କରି ହୃଦୟ ମଧ୍ୟରେ ଆକୁଳିତ ହେଲେ । ୬ । ଉପରେ କାମ ବଶବର୍ତ୍ତିନୀ ଚପଳମାନସୀ ଓ ଲଜ୍ଜିତା ହୋଇ କୁନ୍ତୀ ରାଜାଙ୍କ ସ୍କନ୍ଧରେ ମାଳାକୁ ପ୍ରଲମ୍ବିତ କଲେ । ୭ । ସମସ୍ତ ନରାଧିପମାନେ ଶୁଣିଲେ ଯେ କୁନ୍ତୀ ପାଣ୍ଡୁଙ୍କୁ ବରଣ କଲେ, ତହୁଁ ସେମାନେ ଆପଣାର ଗଜ, ଅଶ୍ୱ ଓ ରଥାରୋହଣ କରି ଅଭିପ୍ସିତ ପ୍ରଦେଶକୁ ଗମନ କଲେ । ୮ ।

ହେ ରାଜନ୍ ! ତଦନନ୍ତର ତାହାଙ୍କର ପିତା କୁନ୍ତିଭୋଜ ନରପତି କୁରୁନନ୍ଦନଙ୍କ ସହିତ ବିବାହ କରାଇଲେ । ୯ । ଦେବରାଜ ଯେପରି ଶଚୀଙ୍କ ସହିତ ମିଳିତ ହୋଇଅଛନ୍ତି, ସେହି ପ୍ରାୟ ହେ ରାଜେନ୍ଦ୍ର ! କୁନ୍ତୀ-ଭୋଜ ମହୀପତି କୁନ୍ତୀ ଓ ପାଣ୍ଡୁଙ୍କର ବିବାହ କରାଇଲେ । ୧୦ । ହେ କୁରୁ-ସତ୍ତମ ! ସେ ରାଜା ବିବାହ କରାଇ ଜାମାତାଙ୍କୁ ବହୁଳ ଧନରେ ଅର୍ଚ୍ଚିତ କରି ସ୍ୱପୁରକୁ ପ୍ରେରଣ କଲେ ।୧୧। ଉପରେ କୌରବ ନନ୍ଦନ ରାଜା ପାଣ୍ଡୁ, ନାନାବିଧ ଧ୍ୱଜ ଓ ପତାକାଧାରୀ ମହତ୍ ବଳ ସମଭିବ୍ୟାହାରରେ ଯେଉଁ ବ୍ରାହ୍ମଣ ଓ ମହର୍ଷିମାନଙ୍କର ଆଶୀର୍ବଚନରେ ସ୍ତୂୟମାନ ହୋଇ ନିଜ ନଗରକୁ ପ୍ରାପ୍ତ ହେଲେ ଓ ସ୍ୱକୀୟ ଭବନରେ ସେହି ଭାର୍ଯ୍ୟା କୁନ୍ତୀଙ୍କି ନିବେଶ କଲେ । ୧୩ ।

## ଅଧ୍ୟାୟ ୧୧୩

ବୈଶମ୍ପାୟନ ବୋଇଲେ—ଅନନ୍ତର ଶାନ୍ତନୁତନୟ ମତିମାନ୍ ଭୀଷ୍ମ ବିଚାର କଲେ ଯେ ସେ ପାଣ୍ଡୁଙ୍କୁ ଆଉ ଗୋଟିଏ ବିବାହ କରାଇବେ । ସ୍ଥବିର ଅମାତ୍ୟଙ୍କ ସହିତ ବ୍ରାହ୍ମଣ ମହର୍ଷି ଓ ମହତ୍ ଚତୁରଙ୍ଗ ବଳ ଘେନି ମଦ୍ରପତିଙ୍କ ନଗରକୁ ଗମନ କଲେ । ୨ । ବାହ୍ଲିକ ପୁଙ୍ଗବ ଶୁଣିଲେ ଯେ ଭୀଷ୍ମ ଆଗମନ କରୁଅଛନ୍ତି, ତହୁଁ ସେ ପ୍ରତ୍ୟୁଦ୍‌ଗମନ କରି ଯାଇଁ ତାହାଙ୍କୁ ନିଜ ପୁରକୁ ପ୍ରବେଶ କରାଇଲେ । ୩ । ତାହାଙ୍କୁ ଶୁଭ୍ରଆସନ, ପାଦ୍ୟ, ଅର୍ଘ୍ୟ ଓ ମଧୁପର୍କ ଦେଇ ମଦ୍ରେଶ ଆଗମନର କାରଣ ପଚାରିଲେ । ୪ । କୁରୁକୁଳ ପ୍ରଧାନ ଭୀଷ୍ମ, ମଦ୍ରରାଜଙ୍କୁ ବୋଇଲେ ଯେ ହେ ଅରିନ୍ଦମ । ଅମ୍ଭେ କନ୍ୟାନିମିତ୍ତ ଆସିଅଛୁ ଜାଣ । ୫ । ଶୁଣୁଅଛୁ ଯେ ଆପଣଙ୍କର ସାଧ୍ୱୀ ଓ ଯଶସ୍ୱିନୀ ଭଗିନୀ ମାଦ୍ରୀ ଅଛନ୍ତି । ସେହି ଯଶସ୍ୱିନୀଙ୍କୁ ଆମ୍ଭେ ପାଣ୍ଡୁଙ୍କ ନିମିତ୍ତ ବରଣ କରିବୁଁ । ୬ । ହେ ରାଜନ୍ ! ବିବାହ ସମ୍ବନ୍ଧରେ ତୁମ୍ଭେ ଆମ୍ଭ ସହିତ ସମାନ ଓ ଆମ୍ଭେ ତୁମ୍ଭ ସହିତ ସମାନ; ଏହା ଚିନ୍ତା କରି ହେ ମଦ୍ରେଶ ! ଅମ୍ଭମାନଙ୍କୁ ବିଧିପୂର୍ବକ ଗ୍ରହଣ କଲେ ଅମ୍ଭ ବୁଦ୍ଧିରେ ତୁମ୍ଭଠାରୁ ଅଧିକତର ଶ୍ରେୟସ୍କର ବର ଅମ୍ଭର ଆଉ ନାହିଁ । ୮ । କିନ୍ତୁ ଏହି କୁଳରେ ପୂର୍ବତନ ନୃପସତ୍ତମମାନେ ଯାହା ପ୍ରବର୍ତ୍ତିତ କରି ଅଛନ୍ତି ତାହା ସାଧୁହେଉ ଅଥବା ଅସାଧୁହେଉ ତାହାକୁ ଅତିକ୍ରମ କରିବାକୁ ଅମ୍ଭର ଇଚ୍ଛାନାହିଁ । ତାହା ଯେ ଆପଣଙ୍କୁ ବିଦିତ ଅଛି ଏଥିରେ କି ସଂଶୟ ନାହିଁ । ହେ ସତ୍ତମ । 'ଆପଣ ଦାନ କର' ବୋଲି ବୋଲିବାର ଆପଣଙ୍କର ଉପଯୁକ୍ତ ନୁହଇ । ୧୦ ।

ହେ ବୀର । ସେ ଅମ୍ଭର କୁଳ-ଧର୍ମ, ସେ ବିଷୟଟି ଅମ୍ଭର ପ୍ରମାଣ; ଅତଏବ ହେ ଶତ୍ରୁହନ୍ । ତୁମ୍ଭଙ୍କୁ ଅସନ୍ଦିଗ୍ଧ ହୋଇ ସେ ବଚନ କହୁନାହୁଁ । ୧୧ । ଜନାଧିପ ଭୀଷ୍ମ ମଦ୍ରରାଜଙ୍କୁ ଏହି ପ୍ରତିବଚନ ଦେଲେ, ହେ ରାଜନ୍ । ବ୍ରହ୍ମା ସ୍ୱୟଂ କହି ଅଛନ୍ତି ଯେ ସେ ଉତ୍କୃଷ୍ଟ ଧର୍ମ ଅଟଇ । ୧୨ । ଏଥିରେ କୌଣସି ଦୋଷ ନାହିଁ; ପୂର୍ବରୁ ଏହି ବିଧାନ ହୋଇଅଛି, ହେ ଶଲ୍ୟ । ସାଧୁଜନଙ୍କ ସମ୍ମତ ଏହି ମର୍ଯ୍ୟାଦା ତୁମ୍ଭଙ୍କୁ ବିଦିତ ଅଛି । । ୧୩ । ଏହା ବୋଲି ସେହି ମହାତେଜା ନିର୍ମିତ ଓ ଅନିର୍ମିତ ଶାତକୁମ୍ଭ *

---

*ଶାତକୁମ୍ଭର ଅର୍ଥ—ସୁବର୍ଣ୍ଣ । ନିର୍ମିତ ସୁବର୍ଣ୍ଣ ମୋହର ଓ ଅଳଂକାର ଗଣ, ଅନିର୍ମିତ କେବଳ ସୁବର୍ଣ୍ଣ ।

ଓ ବିବିଧ ରତ୍ନମାନ ଶଲ୍ୟଙ୍କୁ ପ୍ରଦାନ କଲେ । ସେହି ଶୁଭକର୍ମ ସିଦ୍ଧି ନିମିତ୍ତ ଗାଙ୍ଗେୟ, ଗଜ, ଅଶ୍ୱ, ରଥ ଓ ବସ୍ତ୍ର ଆଭରଣମାନଙ୍କ ଅଥବା ମଣି ମୁକ୍ତା ପ୍ରବାଳ ଯଥେଷ୍ଟ ପରିମାଣରେ ଶୁଳ୍କରୂପେ ପ୍ରଦାନ କଲେ । ଶଲ୍ୟ ସେ ସମସ୍ତ ପ୍ରୀତ ମାନସ ହୋଇ ଗ୍ରହଣ କରି, କନ୍ୟାକୁ ସମ୍ୟକ୍-ରୂପେ ଅଲଙ୍କୃତା କରି କୁରୁଶ୍ରେଷ୍ଠଙ୍କୁ ପ୍ରଦାନ କଲେ । ୧୭ । ନଦୀସୁତ ଭୀଷ୍ମ ସେହି ମାଦ୍ରୀଙ୍କୁ ଆଦାନ କରି ପ୍ରହୃଷ୍ଟ ମନରେ ହସ୍ତିନାପୁରକୁ ଆଗମନ କଲେ । ତଦନନ୍ତର ନରାଧିପ ପାଣ୍ଡୁ ସାଧୁସମ୍ମତ ମଙ୍ଗଳ ମୁହୂର୍ତ୍ତିରେ ବିଧିପୂର୍ବକ ମାଦ୍ରୀଙ୍କର ପାଣି ଗ୍ରହଣ କଲେ । ୧୮ ।

ତତ୍ପରେ ବିବାହ ଶେଷ ହେବାରୁ କୁରୁନନ୍ଦନ ରାଜା ପାଣ୍ଡୁ ଭାର୍ଯ୍ୟାଙ୍କୁ ଅତି ସୁନ୍ଦର ବେଶରେ ସ୍ଥାପନ କଲେ । ୧୯ । ସେ ରାଜସତ୍ତମ କୁନ୍ତୀ ଓ ମାଦ୍ରୀ ଦୁଇ ଭାର୍ଯ୍ୟାଙ୍କ ସହିତ ଆପଣାର କାମନାନୁରୂପ ଯଥା ସୁଖରେ ବିହାର କଲେ । ୨୦ । ହେ ପ୍ରଭୋ ! କୌରବ ପାଣ୍ଡୁ ରାଜା ତିଂଶତ୍‌ରାତ୍ରି ମାତ୍ର ତଦ୍ରୂପ ବିହାର କରି ମହୀକୁ ଜୟ କରିବା ଇଚ୍ଛାରେ ଗୃହରୁ ନିର୍ଗତ ହେଲେ ! ଭୀଷ୍ମଙ୍କୁ ଆଦିକରି ସମସ୍ତ ଗୁରୁଜନଙ୍କୁ ଧୃତରାଷ୍ଟ୍ରଙ୍କୁ ଓ ଅନ୍ୟାନ୍ୟ କୁରୁଶ୍ରେଷ୍ଠ ମାନଙ୍କୁ ଅଭିବାଦନ ଓ ପ୍ରଣାମ କରି ଓ ସେମାନଙ୍କୁ ପଚାରି ତାହାଙ୍କର ଅନୁମତି କ୍ରମେ ମଙ୍ଗଳାଚାର ଯୁକ୍ତ ଓ ଆଶୀର୍ବାଦରେ ଅଭିନନ୍ଦିତ ହୋଇ ପ୍ରସ୍ଥାନ କଲେ । ୨୩ । ଦେବରାଜ ତୁଲ୍ୟ ପ୍ରଭାଶାଳୀ ସେହି ରାଜା, ଗଜ, ବାଜି ଓ ରଥ ସମୂହ ସଙ୍କୁଳ ମହତୀ ସେନା ସମଭିବ୍ୟାହାରରେ ବସୁନ୍ଧରାକୁ ଜୟ କରିବା ନିମିତ୍ତ ପ୍ରୟାଣ କଲେ । ୨୪ ।

ହୃଷ୍ଟ ପୁଷ୍ଟ ସୈନ୍ୟଙ୍କ ସହିତ ଗମନ କରି କୌରବ କୀର୍ତ୍ତିଧାରୀ ନରସିଂହ ପାଣ୍ଡୁ ପ୍ରଥମତଃ ଦଶାର୍ଣ୍ଣ ଦେଶକୁ ସମରରେ ଜୟ କଲେ ।୨୫। ତତ୍ପରେ ନାନାବିଧ ପାଣ୍ଡୁ ଧ୍ୱଜାଙ୍କିତ ପ୍ରଭୃତି ହସ୍ତୀ ଓ ଅଶ୍ୱସଂଯୁକ୍ତ ପଦାତି ଓ ରଥ ସଙ୍କୁଳ ସେନା ସଙ୍ଗରେ ଘେନିଯାଇ ମଗଧ ରାଜ୍ୟର ପାଳକ ଦୀର୍ଘ ନାମକ ରାଜାଙ୍କୁ ତାହାଙ୍କ ଗୃହରେ ବଧକଲେ । ସେ ମଗଧରାଜ ବଳଦର୍ପିତ ହୋଇ ଅନେକାନେକ ମହୀପତିଙ୍କୁ ପ୍ରପୀଡ଼ିତ କରୁଥିଲେ । ୨୭ । ତଦନନ୍ତର ପ୍ରଭୂତ ଧନ ଓ ବାହନାଦି ଘେନି ପାଣ୍ଡୁ ମିଥିଳାକୁ ଗମନ କଲେ ଓ ସେଠାରେ ସମରରେ ବିଦେହ ବାସୀଙ୍କୁ ଜୟ କଲେ । ୨୮ ।

ହେ ନରର୍ଷଭ ! ସେ କାଶୀ, ସୁହ୍ମ ଓ ପୁଣ୍ଡ୍ର ଦେଶରେ ସ୍ଵକୀୟ ଭୁଜବଳ ଓ ବୀର୍ଯ୍ୟରେ କୁରୁମାନଙ୍କର ଯଶ ବିସ୍ତାର କଲେ । ୨୯ । ନରାଧିପମାନେ ପାଣ୍ଡୁ ରୂପ ପାବକର ଓ ଶରସମୂହ ରୂପ ଜ୍ଵାଳାରେ ଓ ଶସ୍ତ୍ରରୂପ ଶିଖାରେ ପତିତ ହେଲେ ଓ ଦଗ୍ଧ ହେଲେ । ୩୦ । ସସୈନ୍ୟ ପାଣ୍ଡୁଙ୍କ ସହିତ ସସୈନ୍ୟ ନୃପତିମାନେ ବିଧ୍ଵଂସିତ ବଳ ବଶୀଭୂତ ହୋଇ କୁରୁଙ୍କର କାର୍ଯ୍ୟରେ ନିଯୋଜିତ ହେଲେ । ଦେବତା ଯେପରି ପୁରନ୍ଦରଙ୍କୁ ଜ୍ଞାନ କରନ୍ତି ତଦ୍‌ବତ୍ ପୃଥିବୀର ସର୍ବ ପାର୍ଥିବମାନେ ନିର୍ଜିତ ହୋଇ ଏକାକୀ ପାଣ୍ଡୁଙ୍କୁ ଶୂର ବୋଲି ଗଣନା କଲେ । ୩୨ । ସମସ୍ତ ବସୁଧାଧିପମାନେ କୃତାଞ୍ଜଳି ଓ ପ୍ରଣତ ହୋଇ ଧନ ଓ ବିବିଧ ରତ୍ନମାନଙ୍କୁ ଘେନି ତାହାଙ୍କ ସମୀପରେ ଉପସ୍ଥିତ ହେଲେ । ୩୩ ।

ମଣି, ମୁକ୍ତା, ପ୍ରବାଳ, ସୁବର୍ଣ୍ଣ ବହୁପରିମିତ ରଜତ, ଗୋରତ୍ନ, ଅଶ୍ଵରତ୍ନ ଓ ରଥରତ୍ନ, କୁଞ୍ଜର, ଖରଉଷ୍ଟ୍ର, ମହିଷମାନଙ୍କୁ ଛାଗ ଓ ମେଷମାନଙ୍କୁ କମ୍ବଳ ଓ ଉତ୍କୃଷ୍ଟ ଅଜିନ ମାନଙ୍କୁ ଓ ରଙ୍କୁ, ମୃଗର ଲୋମ ନିର୍ମିତ ଶଯ୍ୟାମାନଙ୍କୁ ଉପାୟନ ଦେଲେ ଓ ହସ୍ତିନାପୁରର ଅଧିପତି ସେ ସବୁ ପ୍ରତିଗ୍ରହ କଲେ । ୩୫ । ପାଣ୍ଡୁ ସେ ସମସ୍ତ ଦ୍ରବ୍ୟ ଗ୍ରହଣ କରି ହର୍ଷାନ୍ଵିତ ସେନାଗଣଙ୍କ ସହ ହସ୍ତିନାପୁରକୁ ଗମନ କଲେ ଓ ସ୍ଵକୀୟ ରାଜ୍ୟର ଲୋକମାନଙ୍କୁ ହୃଷ୍ଟ କଲେ । ୩୬ । ରାଜସିଂହ ଶାନ୍ତନୁଙ୍କର ଓ ଧୀମାନ୍ ଭରତଙ୍କର କୀର୍ତ୍ତିଜାତ ଶବ୍ଦ ପାଣ୍ଡୁଙ୍କ ଦ୍ଵାରା ପୁନର୍ବାର ଅହ୍ଵୃତ ହେଲା । ୩୭ । ଯେଉଁମାନେ ପୂର୍ବେ କୁରୁଙ୍କର ରାଜ୍ୟ ବା ଧନ ହରଣ କରିଥିଲେ ନରସିଂହ ପାଣ୍ଡୁ ସେମାନଙ୍କୁ କରଦୀକୃତ କଲେ ବୋଲି ରାଜାମାନେ ଓ ରାଜାଙ୍କର ଅମାତ୍ୟମାନେ ଘୋଷଣା କଲେ । ୩୮ ।

ପାଣ୍ଡୁ ନିକଟବର୍ତ୍ତୀ ହୁଅନ୍ତେ ଭୀଷ୍ମ ପ୍ରଭୃତି କୌରବଗଣ ପୁରବାସୀ ଓ ଜନପଦ ବାସୀମାନଙ୍କ ସହିତ ହୃଷ୍ଟ ଚିତ୍ତରେ ତାହାଙ୍କୁ ପ୍ରତ୍ୟାନୟନ କରିବାକୁ ଗମନ କଲେ । ୩୯ । ସେମାନେ ନାଗପୁରରୁ କିଛିଦୂର ଗମନକରି ରାଜାଙ୍କର ଅନୁଚର ଜନମାନଙ୍କୁ ବହୁତ ଧନରେ ଆବୃତ ହୋଇ ଆସିବାର ଦେଖି ପ୍ରହୃଷ୍ଟ ଅନ୍ତଃକରଣ ହେଲେ । ୪୦ । ନାନାବିଧ ଯାନରେ ଏତେ ପରିମାଣରେ ଧନ ଆସୁଥିଲା ଓ ଏତେ ଉତ୍ତମୋତ୍ତମ ହସ୍ତୀ ଅଶ୍ଵ ଓ ରଥ, ଗୋ ଉଷ୍ଟ୍ର ମେଷାଦି ଆସୁଥିଲେ ଯେ ଭୀଷ୍ମ ଓ ତାହାଙ୍କ ସହ

କୌରବମାନେ ତାହାର ଅନ୍ତ ପାଇଲେ ନାହିଁ । ୪୧ । କୌଶଲ୍ୟାଙ୍କର ଆନନ୍ଦବର୍ଦ୍ଧନ ପାଣ୍ଡୁ, ଭୀଷ୍ମଙ୍କର ପାଦବନ୍ଦନା କରି ପୌର ଓ ଜାନପଦ ଲୋକଙ୍କୁ ଯଥାବିହିତ ସମ୍ମାନନା କଲେ । ୪୨ । ଶତ୍ରୁରାଜ୍ୟଙ୍କୁ ପ୍ରମର୍ଦ୍ଦିତ କରି କୃତାର୍ଥ ହୋଇ ପୁନରାଗତ ପୁତ୍ରଙ୍କୁ ଆଶ୍ଳେଷ କରି ଭୀଷ୍ମ ହର୍ଷବଶରୁ ଅଶ୍ରୁ ବିସର୍ଜ୍ଜନ କଲେ । ୪୩ । ବହୁ ସଂଖ୍ୟକ ତୂର୍ଯ୍ୟ, ଶଙ୍ଖ ଓ ଭେରୀ-ମାନଙ୍କର ମହାସ୍ୱନରେ ସମସ୍ତ ପୁରଜନମାନଙ୍କୁ ପ୍ରହୃଷ୍ଟ କରି ସେ ହସ୍ତିନା-ପୁରରେ ପ୍ରବିଷ୍ଟ ହେଲେ । ୪୩ ।

---

## ଅଧ୍ୟାୟ ୧୧୪

ବୈଶମ୍ପାୟନ ବୋଇଲେ—ସ୍ୱୀୟ ବାହୁବଳଦ୍ୱାରା ବିଜିତ ଧନକୁ ଧୃତରାଷ୍ଟ୍ରଙ୍କ ଅନୁଜ୍ଞା ଅନୁସାରେ ସେ ଭୀଷ୍ମ, ସତ୍ୟବତୀ ଓ ମାତାଙ୍କୁ ଉପହାର ଦେଲେ । ୧ । ଧର୍ମାତ୍ମା ପାଣ୍ଡୁ ସେହି ଧନର କିୟଦଂଶ ବିଦୁରଙ୍କଠାକୁ ପ୍ରେଷଣ କଲେ ଓ ସୁହୃଦ୍‌ବର୍ଗଙ୍କୁ ମଧ୍ୟ ସେ ଧନ ଦ୍ୱାରା ପରିତୃପ୍ତ କଲେ । । ୨ । ହେ ଭାରତ ! ତଦନନ୍ତର ପାଣ୍ଡୁ ଜିତ ନ୍ୟାୟୋ-ପାର୍ଜ୍ଜିତ ଅର୍ଥଦ୍ୱାରା ଭୀଷ୍ମ ସତ୍ୟବତୀଙ୍କୁ ଓ ଯଶସ୍ୱିନୀ କୌଶଲ୍ୟାଙ୍କୁ ସନ୍ତୁଷ୍ଟ କଲେ । ୩ । ଶଚୀ ଯେପରି ଜୟନ୍ତଙ୍କୁ ପାଇ ଆନନ୍ଦିତ ହୁଅନ୍ତି ତଦ୍ରୂପ କୌଶଲ୍ୟା ଅଦ୍ୱିତୀୟ ତେଜସ୍ୱୀ ସେହି ନରବରଙ୍କୁ ଆଲିଙ୍ଗନ କରି ଆନନ୍ଦଯୁକ୍ତା ହେଲେ । ୪ । ସେହି ବୀରଙ୍କର ବିକ୍ରମୋପାର୍ଜ୍ଜିତ ଅର୍ଥଦ୍ୱାରା ଧୃତରାଷ୍ଟ୍ର ବହୁସଂଖ୍ୟକ ଶତ ଶତ ଅଶ୍ୱମେଧ ମହାଯଜ୍ଞମାନ ଆହରଣ କଲେ । ୫ ।

ହେ ଭରତର୍ଷଭ ! କୁନ୍ତୀ ଓ ମାଦ୍ରୀଙ୍କ ସହ ସଂଯୁକ୍ତ ହୋଇ ନିରାଳସ ପାଣ୍ଡୁ ବନକୁ ଗମନ କଲେ । ୬ । ପ୍ରାସାଦବାସ, ସୁକୋମଳ ଶଯ୍ୟା ପରିତ୍ୟାଗ କରି ଅରଣ୍ୟବାସୀ ଓ ମୃଗୟାପର ହେଲେ । ୭ । ହିମାଳୟ ପର୍ବତର ରମଣୀୟ ଦକ୍ଷିଣ ପାର୍ଶ୍ୱରେ ବିଚରଣ କରି ମହାଶାଳବନ ବେଷ୍ଟିତ ଗିରିପୃଷ୍ଠରେ ବାସ କଲେ । ୮ । କୁନ୍ତୀ ଓ ମାଦ୍ରୀଙ୍କ ମଧ୍ୟରେ ଥାଇ ବିଚରଣ କରି ଶ୍ରୀମାନ୍ ପାଣ୍ଡୁ ହସ୍ତିନୀ ଦ୍ୱୟ ମଧ୍ୟଗତ ଐରାବତ ପରିମାନ ଶୋଭା ପ୍ରାପ୍ତ ହେଲେ । ୯ । ଭାର୍ଯ୍ୟା ଦୁହିଙ୍କ ସହିତ ଖଡ୍‌ଗ-ବାଣ ଧନୁର୍ଦ୍ଧର ଓ ବିଚିତ୍ର କବଚଧାରୀ, ପରମାସ୍ତ୍ର ବିଶାରଦ ନୃପଙ୍କୁ ବିଚରଣ

କରିବାର ଦେଖି ବନବାସିମାନେ ତାହାଙ୍କୁ ଦେବତା ବୋଲି ମଣିଲେ । ୧୦ । ଧୃତରାଷ୍ଟ୍ରଙ୍କର ଆଜ୍ଞାନୁସାରେ ମନୁଷ୍ୟମାନେ ଅତନ୍ଦ୍ରିତ ହୋଇ ସେହି ବନ ମଧ୍ୟରେ ସୁଦ୍ଧା ପାଣ୍ଡୁଙ୍କର ଉପଭୋଗ୍ୟ ଓ ସୁଖପ୍ରଦ ଦ୍ରବ୍ୟମାନ ଉପାହରଣ କଲେ ।୧୧।

ଅନନ୍ତର ଆପଗାସୁତ ଭୀଷ୍ମ ଶୁଣିଲେ ଯେ ଦେବଙ୍କ ନାମ ମହୀପତିଙ୍କର ଶୂଦ୍ରାଣୀର ଗର୍ଭସମ୍ଭୂତା ରୂପଯୌବନସମ୍ପନ୍ନା ଗୋଟିଏ କନ୍ୟା ଅଛି । ହେ ଭରତର୍ଷଭ ! ତଦନନ୍ତର ତାହାଙ୍କୁ ବରଣକରି ଅଣି ମହାମତି ବିଦୁରଙ୍କ ସହିତ ବିବାହ କରାଇଲେ । କୁରୁନନ୍ଦନ ବିଦୁର ତାହାଙ୍କଠାରେ ଆପଣା ସଦୃଶ ସଦ୍‌ଗୁଣାନ୍ୱିତ ଓ ବିନୟ ସମ୍ପନ୍ନ ପୁତ୍ରମାନଙ୍କୁ ଉତ୍ପାଦନ କଲେ । ୧୪ ।

---

## ଅଧ୍ୟାୟ ୧୧୪

ବୈଶମ୍ପାୟନ ବୋଇଲେ—ହେ ଜନମେଜୟ ! ଅନନ୍ତର ଧୃତରାଷ୍ଟ୍ରଙ୍କର ମଧ୍ୟ ଗାନ୍ଧାରୀଙ୍କ ଗର୍ଭରେ ଏକ ଶତ ପୁତ୍ର ଓ ବୈଶ୍ୟା ଗର୍ଭରେ ଗୋଟିଏ ପୁତ୍ର ଉତ୍ପନ୍ନ ହେଲେ । ୧ । ପାଣ୍ଡୁଙ୍କ ବଂଶ ରକ୍ଷା ନିମିତ୍ତ ଦେବତାମାନେ କୁନ୍ତୀ ଓ ମାଦ୍ରୀଙ୍କ ଠାରେ ମହାରଥ ପଞ୍ଚ ପୁତ୍ର ଉତ୍ପାଦନ କଲେ । ୨ ।

ଜନମେଜୟ ପଚାରିଲେ—ହେ ଦ୍ୱିଜସତ୍ତମ ! ଗାନ୍ଧାରୀଙ୍କଠାରେ କି ରୂପ ଏକ ଶତ ପୁତ୍ର ଉତ୍ପନ୍ନ ହେଲେ ? କେତେକାଳରେ ସେମାନେ ହେଲେ ଓ ସେମାନଙ୍କର ପରମାୟୁ ଅବା କେତେ ? । ୩ । ଧୃତରାଷ୍ଟ୍ରଙ୍କ ଠାରୁ ବୈଶ୍ୟାଗର୍ଭରେ କି ପ୍ରକାରେ ଗୋଟିଏ ପୁତ୍ର ହେଲା ? ଅନୁକୂଳା ଧର୍ମଚାରିଣୀ ଓ ସଦ୍‌ଗୁଣୀ ଭାର୍ଯ୍ୟା ଗାନ୍ଧାରୀଙ୍କ ପ୍ରତି ଧୃତରାଷ୍ଟ୍ର କିପରି ବ୍ୟବହାର କରୁଥିଲେ ? ମହାତ୍ମା ମୃଗ ରୂପୀ ମୁନି ଶାପ ପ୍ରଦାନ କରିବା ପରେ କିପରି ପାଣ୍ଡୁଙ୍କର ମହାରଥ ପଞ୍ଚପୁତ୍ର ଜାତ ହେଲେ ? । ୫ । ହେ ବିଦ୍ୟା ବିଶାରଦ ତପୋଧନ ! ଏ ସବୁ ବିସ୍ତାରରୂପେ ଯାଥାତଥ୍ୟ ବର୍ଣ୍ଣନା କରନ୍ତୁ । ବନ୍ଧୁଙ୍କ ଚରିତ ଶୁଣି ଆମ୍ଭର ତୃପ୍ତି ହେଉ ନାହିଁ । ୬ ।

ବୈଶମ୍ପାୟନ ବୋଇଲେ—ଏକଦା ଭଗବାନ ଦ୍ୱୈପାୟନ କ୍ଷୁଧା-ତୃଷାରେ ଗ୍ଲାନିଯୁକ୍ତ ହୋଇ ଉପସ୍ଥିତ ହୁଅନ୍ତେ ଗାନ୍ଧାରୀ ତାହାଙ୍କୁ ତୁଷ୍ଟ କଲେ, ବ୍ୟାସ ତାହାଙ୍କୁ ବର ଯାଚିଲେ । ଗାନ୍ଧାରୀ ପ୍ରାର୍ଥନା କଲେ ଯେ ତାହାଙ୍କର ଭର୍ତ୍ତାଙ୍କ ସଦୃଶ ଶତ ପୁତ୍ର ଜାତ ହେଉନ୍ତୁ । ବ୍ୟାସ ତଥାସ୍ତୁ ବୋଇଲେ । ଏଥିଉତ୍ତାରୁ ସେ କାଳକ୍ରମେ ସେ ଧୃତରାଷ୍ଟ୍ରଙ୍କ ଠାରୁ ଗର୍ଭଧାରଣ କଲେ । ଅନନ୍ତର ଗାନ୍ଧାରୀ ସେହି ଗର୍ଭକୁ ଦୁଇ ସମ୍ବତ୍ସର ଧାରଣ କଲେ । ତତ୍ପରେ ତାହାଙ୍କର ବେଦନା ଜାତ ହେଲା । ୯ । ସେ ଶୁଣିଲେ ଯେ କୁନ୍ତୀଙ୍କର ବାଳାର୍କ ପ୍ରାୟ ତେଜସ୍ୱୀ ପୁତ୍ର ଜନ୍ମିଲେ; ଆପଣାର ଉଦରର ସ୍ଥିରତା ଦେଖି ଗାନ୍ଧାରୀ ଆପଣାକୁ ତିରସ୍କାର କରି ଚିନ୍ତାନ୍ୱିତା ହେଲେ । ୧୦ । ତଦନନ୍ତରେ ଗାନ୍ଧାରୀ ଧୃତରାଷ୍ଟ୍ରଙ୍କର ଅଜ୍ଞାତସାରରେ ଅତି ଯତ୍ନରେ ଆପଣା ଉଦରରେ ଆଘାତ କଲେ । ଗାନ୍ଧାରୀ ଦୁଃଖରେ ମଜ୍ଜିତା ହୋଇ ଦୁଇ ବର୍ଷର ସେହି ଗର୍ଭକୁ ଜାତ କଲେ । ଲୌହପିଣ୍ଡ ପ୍ରାୟ କଠିନ ସେହି ମାଂସପେଶୀକୁ ନିକ୍ଷେପ କରିବାକୁ ଉଦ୍ୟତ ଥିଲେ ଏମନ୍ତ ସମୟରେ ଦ୍ୱୈପାୟନ ସେ ସବୁ ତପସ୍ୟା ପ୍ରଭାବରେ ଜାଣିପାରି ତ୍ୱରିତ ସେଠାରେ ଉପସ୍ଥିତ ହୋଇ ସେହି ମାଂସପେଶୀକୁ ଦେଖିଲେ ଓ ସୁବଳ ସୁତାଙ୍କୁ ପଚାରିଲେ ତୁମ୍ଭର କି କରିବାର ଇଚ୍ଛା ଅଛି ? ସେ ଆପଣାର ସମୁଦାୟ ମତ ପରମର୍ଷିଙ୍କୁ ସତ୍ୟ କରି କହିଲେ । ୧୪ ।

ଗାନ୍ଧାରୀ ବୋଇଲେ—ଶୁଣିଲି ଯେ ରବିଙ୍କ ସମ ତେଜସ୍ୱୀ କୁନ୍ତୀଙ୍କର ଜ୍ୟେଷ୍ଠ ସୁତ ଜାତ ହୋଇଅଛି, ଏହି ହେତୁରୁ ପରମ ଦୁଃଖରେ ଅମ୍ଭେ ଆପଣାର ଉଦରକୁ ଆଘାତ କଲୁଁ; ତୁମ୍ଭେ ପୂର୍ବେ ଆମ୍ଭଙ୍କୁ ଶତପୁତ୍ର ଦାନ କରିଥିଲ; ପୁତ୍ର ଶତ ପରିବର୍ତ୍ତେ ଆମ୍ଭର ଏହି ମାଂସପେଶୀ ଜାତ ହେଲା । ୧୬ ।

ବ୍ୟାସ ବୋଇଲେ—ହେ ସୁବଳ ନନ୍ଦିନୀ ! ଅମ୍ଭେ ଯାହା କହିଥିଲୁଁ ତାହା ତଦ୍ରୂପ ହେବ । ଅମ୍ଭେ ପରିହାସରେ ସୁଦ୍ଧା କଦାପି ମିଥ୍ୟା କହୁନାହୁଁ, ଅମ୍ଭ ବାକ୍ୟ ଅନ୍ୟଥା ହେବାର ନୁହଇ । ୧୭ । ଶୀଘ୍ର ଶଏ ଘୃତ-କୁମ୍ଭ ପୂର୍ଣ୍ଣ କରି ଅଣାଅ ଓ ସେ ସବୁ ଅତି ଗୁପ୍ତ ସ୍ଥାନରେ ରଖ ଓ ଏହି ମାଂସପେଶୀକୁ ଶୀତଳ ଜଳରେ ପରିଷିକ୍ତ କରାଅ । ୧୯ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ମାଂସପେଶୀକୁ ଧୌତ କରୁଁ କରୁଁ ସେ ବହୁଖଣ୍ଡ ହୋଇଗଲା । ଗର୍ଭମାନ-ଅଙ୍ଗୁଷ୍ଠ-ପର୍ବ ପ୍ରମାଣ

ହୋଇଥିବାର ପୃଥକ୍ ପୃଥକ୍ ଦୃଶ୍ୟ ହେଲା । ହେ ନରପତେ ! ଏହାପର ଏକଶତ ଏକ ଗୋଟି ମାଂସ ପେଶୀକୁ ନେଇ ଗୋଟିଏ ଲେଖାଏ ଘୃତ ପୂର୍ଣ୍ଣ କୁମ୍ଭରେ ଦେଇ ସୁଗୁପ୍ତ ସ୍ଥାନରେ ସ୍ଥାପନ କଲେ । ତହୁଁ ଭଗବାନ୍ ବ୍ୟାସ ସୁବଳ ଦୁହିତାଙ୍କୁ ବୋଇଲେ ଯେ ଏ କୁମ୍ଭମାନଙ୍କୁ ଆଉ ଦୁଇ ବର୍ଷରେ ଉଦ୍‌ଘାଟନ କରିବ । ଏହା କହି ସେ ଋଷି ହିମବାନ୍ ପର୍ବତକୁ ତପସ୍ୟା କରିବାକୁ ଗଲେ । ଅନନ୍ତର ଯଥା କାଳରେ ସେହି ମାଂସପେଶୀ ଖଣ୍ଡ ମଧ୍ୟରୁ ପ୍ରଥମରେ ଦୁର୍ଯ୍ୟୋଧନ ନୃପଙ୍କର ଜନ୍ମହେଲା, ପରନ୍ତୁ ରାଜା ଯୁଧିଷ୍ଠିରଙ୍କ ଜନ୍ମ ଆଗରୁ ହୋଇଥିବାରୁ ସେ ଜ୍ୟେଷ୍ଠ ହେଲେ । ଏହି ବୃତ୍ତାନ୍ତ ଧୀମାନ୍ ବିଦୁର ଓ ଭୀଷ୍ମଙ୍କର କର୍ଣ୍ଣଗୋଚର ହେଲା । ଯେଉଁ ଦିନ ମହା ଦୁର୍ଦ୍ଧର୍ଷ ଦୁର୍ଯ୍ୟୋଧନଙ୍କର ଜନ୍ମ ହେଲା ସେହିଦିନ ମହାବାହୁ ବୀର୍ଯ୍ୟ-ବାନ୍ ଭୀମ ଜନ୍ମ ହେଲେ । ୨୭ ।

ହେ ନୃପ । ଧୃତରାଷ୍ଟ୍ରଙ୍କର ସେ ସୁତ ଜାତ ହେବା ମାତ୍ରେ ଗର୍ଦ୍ଦଭ ପ୍ରାୟ ରବ ଓ ଚିତ୍କାର କଲେ । ତାହା ଶୁଣି ଗର୍ଦ୍ଦଭ, ଗୃଧ୍ର, ଶୃଗାଳ ଓ ବାୟସ ମାନେ ପ୍ରତି ଶବ୍ଦ କଲେ । ପ୍ରଚଣ୍ଡ ବାୟୁ ପ୍ରବାହିତ ହେଲା ଓ ଦିଗମାନ ପ୍ରଜ୍ୱଳିତ ହେବା ପ୍ରାୟ ଦେଖାଗଲା । ୨୮ । ହେ ରାଜନ୍ ! ରାଜା ଧୃତରାଷ୍ଟ୍ର ଏହା ଦେଖି ଭୀତ ହୋଇ ବହୁସଂଖ୍ୟକ ବିପ୍ରଙ୍କୁ ଭୀଷ୍ମ ଓ ବିଦୁରଙ୍କୁ, ଅନ୍ୟାନ୍ୟ ସୁହୃଦ୍‌ବର୍ଗ ଓ ସମସ୍ତ କୌରବ ମାନଙ୍କୁ ଡକାଇ ଆଣିଲେ ଓ ବୋଇଲେ, ଅମ୍ଭର କୁଳବର୍ଦ୍ଧନ ରାଜପୁତ୍ର ଯୁଧିଷ୍ଠିର ଜ୍ୟେଷ୍ଠ; ସେ ଆପଣା ଗୁଣରୁ ରାଜ୍ୟପ୍ରାପ୍ତ ହୋଇଅଛନ୍ତି । ଏଥିରେ ଆମ୍ଭର କହିବାର ଇଚ୍ଛାନାହିଁ । ପରନ୍ତୁ ଆମ୍ଭର ଏ ପୁତ୍ର ଯୁଧିଷ୍ଠିରଙ୍କ ପରେ ଜନ୍ମ ହୋଇ ଅଛନ୍ତି; ଏକି ରାଜା ହୋଇ ପାରିବେ ? ଏ ବିଷୟରେ ଯାହା ତଥ୍ୟ ହେବ ତାହା ଆମ୍ଭଙ୍କୁ କହନ୍ତୁ । ୩୧ ।

ହେ ଭାରତ ! ଏହି ବାକ୍ୟ ସମାପ୍ତ ହେବା ମାତ୍ରେ ଅମଙ୍ଗଳ ସୂଚନାକାରୀ ଶୃଗାଳମାନେ ଓ ଅନ୍ୟାନ୍ୟ ଭୟଙ୍କର ମାଂସାଶୀ ଜୀବମାନେ ଅତିଶୟ ଶବ୍ଦ କଲେ । ହେ ରାଜନ୍ ! ଚତୁର୍ଦ୍ଦିଗରେ ସେହି ସବୁ ଅଶୁଭ ନିମିତ୍ତ ନିରୀକ୍ଷଣ କରି ସମାହୂତ ବ୍ରାହ୍ମଣମାନେ ଓ ମହାମତି ବିଦୁର ଧୃତରାଷ୍ଟ୍ରଙ୍କୁ ବୋଇଲେ ହେ ଭରତର୍ଷଭ ! ମନୁଜାଧିପ ! ଆପଣଙ୍କର ଜ୍ୟେଷ୍ଠପୁତ୍ର ଉତ୍ପନ୍ନ ହୁଅନ୍ତେ ଯେପରି ଏହି ଘୋର ନିମିତ୍ତ ମାନ ଉଠୁଥିବ

ହେଉଅଛି । ତହିଁରୁ ବ୍ୟକ୍ତରୂପେ ବୋଧ ହେଉଅଛି ଯେ ଆପଣଙ୍କର ଏହି ପୁତ୍ର କୁଳ କ୍ଷୟକାରୀ ହେବେ ; ଏହାଙ୍କୁ ପରିତ୍ୟାଗ କଲେ କୁଳର ଶାନ୍ତି ହୋଇପାରେ ନଚେତ୍ ମହାନ୍ ଅନର୍ଥ ହେବ । ୩୫ । ହେ ମହୀପତି ଭରତ ! ଯେବେ ସ୍ୱକୁଳର ଶାନ୍ତି ଇଚ୍ଛା କରନ୍ତି, ତେବେ ଆପଣଙ୍କର ଊନଶତ ପୁତ୍ର ହେଉନ୍ତୁ, ଗୋଟିକୁ ଆପଣ ପରିତ୍ୟାଗ କରି ଏହି ବଂଶର ଓ ଜଗତର ମଙ୍ଗଳ ବିଧାନ କରନ୍ତୁ । ୩୬ । ହେ ରାଜନ୍ । କୁଳରକ୍ଷା ନିମିତ୍ତ ଜଣେ ତ୍ୟକ୍ତ ହୋଇପାରେ, ଗ୍ରାମର ଅନୁରୋଧରେ କୁଳ ପରିତ୍ୟକ୍ତ ହୋଇପାରେ, ଜନପଦ ନିମିତ୍ତ ଗ୍ରାମ ତ୍ୟାଗ ହୋଇପାରେ ଓ ଆପଣା ନିମିତ୍ତ ପୃଥିବୀ ତ୍ୟକ୍ତ ହୁଅଇ । ୩୭ । ବିଦୁର ଓ ସମସ୍ତ ଦ୍ୱିଜୋତ୍ତମ ମାନେ ଉକ୍ତରୂପ କହିଲେ । କିନ୍ତୁ ପୁତ୍ର ସ୍ନେହରୁ ରାଜା ତାହାଙ୍କ ବଚନାନୁସାରେ କାର୍ଯ୍ୟକଲେ ନାହିଁ । ହେ ପାର୍ଥିବ ! ତଦନନ୍ତର ଧୃତରାଷ୍ଟ୍ରଙ୍କର ଏକଶତ ପୁତ୍ର ଓ ଅଧିକା ଗୋଟିଏ କନ୍ୟା ଏକମାସ ମଧ୍ୟରେ ଜାତ ହେଲେ । ୩୯ ।

ଗାନ୍ଧାରୀ ଯେତେବେଳେ ଗର୍ଭକ୍ଲେଶ ଭୋଗ କରୁଥିଲେ, ସେତେବେଳେ ଗୋଟିଏ ବୈଶ୍ୟ ସ୍ତ୍ରୀ ଧୃତରାଷ୍ଟ୍ରଙ୍କର ପରିଚର୍ଯ୍ୟା କରୁଥିଲେ । ୪୦ । ହେ ରାଜନ୍ । ତହିଁରେ ସେହି ବର୍ଷ ସେ ବୈଶ୍ୟା ଗର୍ଭରେ ଧୃତରାଷ୍ଟ୍ରଙ୍କ ଠାରୁ ମହାଯଶାଃ ଧିମାନ୍ କରଣ ଯୁଯୁତ୍ସୁ ନାମରେ ଗୋଟିଏ ପୁତ୍ର ଜନ୍ମଗ୍ରହଣ କଲେ । ୪୧ । ଏହିପରି ଧୃତରାଷ୍ଟ୍ରଙ୍କ ଠାରୁ ମହାରଥ ଏକଶତ ବୀରପୁତ୍ର ଗୋଟିଏ କନ୍ୟା ଓ ମହାତେଜା ପ୍ରତାପଶାଳୀ ଗୋଟିଏ ବୈଶ୍ୟା ଗର୍ଭ ସମ୍ଭୁତ ଜନ୍ମ ପରିଗ୍ରହ କଲେ । ୪୨ ।

---

## ଅଧ୍ୟାୟ ୧୧୭

ଜନମେଜୟ ବୋଇଲେ ହେ ଅନଘ । ଆପଣ ପ୍ରଥମେ ଧୃତରାଷ୍ଟ୍ରଙ୍କର ଋଷିପ୍ରସାଦ ଲବ୍ଧ ଶତ ପୁତ୍ରଙ୍କର ଉତ୍ପତ୍ତି ହେବାର କହିଥିଲେ । କିନ୍ତୁ କନ୍ୟା ବିଷୟ କିଛି କହି ନ ଥିଲେ । ଆପଣ ବୋଇଲେ ଯେ ସେହି ଶତ ପୁତ୍ରଙ୍କୁ ଛାଡ଼ି ବୈଶ୍ୟା ଗର୍ଭରେ ଧୃତରାଷ୍ଟ୍ରଙ୍କର ଅଧିକ ଗୋଟିଏ ପୁତ୍ର ଯୁଯୁତ୍ସୁ ନାମରେ ଜାତ ହେଲେ ଓ ଗୋଟିଏ କନ୍ୟା ଅଧିକ ଗାନ୍ଧାରୀଙ୍କ ଠାରୁ ଜାତହେଲେ । କିନ୍ତୁ ଋଷି ଗାନ୍ଧାରୀଙ୍କୁ ଶତ ପୁତ୍ର-ବତୀ ହୁଅବୋଲି କହିଥିଲେ । ୨ । ହେ ଭଗବନ୍ । ଏବେ

ଆପଣ କି ପ୍ରକାରେ ଗାନ୍ଧାରୀଙ୍କ ଗର୍ଭରେ ଶତ ପୁତ୍ରାତିରିକ୍ତ ଏକ କନ୍ୟାର ଉତ୍ପତ୍ତି ବୋଇଲେ ? ମହର୍ଷି ଯଦ୍ୟପି ସେହି ମାଂସ ପେଶୀ ଶତଭାଗ କରିଥିଲେ ଓ ସୁବଲାତ୍ମଜା ମଧ୍ୟ କଦାପି ପୁନର୍ବାର ପ୍ରସବ କରିନାହାନ୍ତି; ଏ ଅବସ୍ଥାରେ ଦୁଃଶଳାଙ୍କ ଉତ୍ପତ୍ତି କି ପ୍ରକାରେ ହେଲା ? ହେ ବିପ୍ରର୍ଷେ ! ଏ ବିଷୟ ଶୁଣିବାକୁ ଆମ୍ଭର ପରମ କୁତୂହଳ ଜନ୍ମିଅଛି, ଆପଣ ଯଥାବତ୍ ବର୍ଣ୍ଣନ କରନ୍ତୁ । ୪ ।

ବୈଶମ୍ପାୟନ ବୋଇଲେ—ହେ ପାଣ୍ଡବେୟ ! ଆପଣ ସାଧୁ ପ୍ରଶ୍ନ କଲେ, ଆମ୍ଭେ କହିବୁଁ । ଭଗବାନ୍ ମହାତପା ବ୍ୟାସ ସ୍ୱୟଂ ହିଁ ମାଂସପେଶୀକି ଶୀତଳ ଜଳରେ ଧୌତକରି ଭାଗ ଭାଗ କଲେ । ହେ ନୃପ ! ଯେଉଁ ଭାଗ ଯେପରି ହେଲା ସେହି ଭାଗକୁ ସେହିପରି ଧାତ୍ରୀଦ୍ୱାରା ଗୋଟିକି ଗୋଟି ଘୃତ କୁମ୍ଭରେ ପ୍ରକ୍ଷିପ୍ତ କଲେ । ଏହି ମଧ୍ୟରେ ସୁଦୃଢ଼ବ୍ରତା, ବରାଙ୍ଗନା, ସାଧ୍ୱୀ ଗାନ୍ଧାରୀ ଦୁହିତାର ସ୍ନେହାନୁବନ୍ଧକୁ ବିବେଚନା କରି ମନରେ ଚିନ୍ତା କଲେ ଯେ ଏ ମୋର ଶହେ ପୁତ୍ର ହେବେ, ଏଥିରେ ସନ୍ଦେହ ନାହିଁ; ମୁନିଙ୍କ କଥା କଦାପି ଅନ୍ୟଥା ହେବାର ନୁହଇ । ଯଦି ଆମ୍ଭର ଗୋଟିଏ ଦୁହିତା ହୁଅନ୍ତା ତେବେ ଆମ୍ଭର ପରମ ସନ୍ତୋଷ ହୁଅନ୍ତା ।୧୦। ଏକ ଶତରୁ ଅଧିକ ଯେବେ ଗୋଟିଏ ବାଳିକା ସମସ୍ତଙ୍କର କନିଷ୍ଠା ହୋଇ ଜାତ ହୁଅନ୍ତା ତେବେ ଆମ୍ଭର ଏ ପତି ଦୌହିତ୍ରକାଙ୍କ୍ଷିତ ଲୋକରୁ ବଞ୍ଚିତ ହୁଅନ୍ତେ ନାହିଁ । ୧୧ । ନାରୀମାନଙ୍କର ଜାମାତାଠାରେ ଅଧିକ ପ୍ରୀତି ହୁଅଇ, ଏକ ଶତରୁ ଅଧିକ ଯେବେ ଗୋଟିଏ ଦୁହିତା ଆମ୍ଭର ହୁଅନ୍ତା, ତେବେ ଆମ୍ଭେ ପୁତ୍ର ଓ ଦୌହିତ୍ର ସମନ୍ୱିତା ହୋଇ କୃତକୃତ୍ୟା ହୁଅନ୍ତୁ । ଯଦି ଆମ୍ଭେ ସତ୍ୟରେ ତପସ୍ୟା କରିଅଛୁଁ; ସତ୍ୟ ଯଦି ଆମ୍ଭେ ଦାନ କରିଅଛୁଁ, ସତ୍ୟ ଯଦି ଆମ୍ଭେ ଦେବତାଙ୍କୁ ହୋମ ଦ୍ୱାରା ତୁଷ୍ଟ କରିଅଛୁଁ ଓ ସତ୍ୟ ଯଦି ଆମ୍ଭେ ଗୁରୁମାନଙ୍କୁ ତୁଷ୍ଟ କରିଅଛୁଁ, ତେବେ ଆମ୍ଭର ଗୋଟିଏ ଦୁହିତା ହେଉ । ଏହି ଅବସରରେ ଭଗବାନ ଋଷିସତ୍ତମ କୃଷ୍ଣ ଦ୍ୱୈପାୟନ ସ୍ୱୟଂ ପେଶୀକୁ ବିଭକ୍ତକଲେ ଓ ପୂର୍ଣ୍ଣ ଏକଶତ ଗଣନା କରି ସୁବଲ ସୁତାଙ୍କୁ ବୋଇଲେ । ୧୫ ।

ବ୍ୟାସ ବୋଇଲେ—ଏହି ତୁମ୍ଭର ପୂର୍ଣ୍ଣ ଶତ ପୁତ୍ର; ଆମ୍ଭେ ମିଥ୍ୟାବଚନ ଉଦାହୃତ କରିନାହୁଁ । ଦୌହିତ୍ର ନିମିତ୍ତ ଏକଶତରୁ ଅଧିକ ଗୋଟିଏ ଭାଗ ବଳିଲା, ଏହି ଗୋଟିକ ତୁମ୍ଭର ଅଭିପ୍ସିତା ସୁଭଗା କନ୍ୟା

ହେଉ । ୧୬ । ମହାତପା ତପୋଧନ ତଦନନ୍ତର ଆଉ ଗୋଟିଏ ଘୃତକୁମ୍ଭ ଅଣାଇ ତହିଁରେ ସେ କନ୍ୟା ଭାଗକୁ ପ୍ରକ୍ଷିପ୍ତ କଲେ । ହେ ରାଜନ୍ । ଭାରତ । ତୁମ୍ଭଙ୍କୁ ଏହି ସବୁ କଥା କହିଲୁ, ହେ ଅନଘ ରାଜେନ୍ଦ୍ର । ପୁନର୍ବାର ବା କହିବୁ କହ । ୧୮ ।

---

## ଅଧ୍ୟାୟ ୧୧୬

ଜନମେଜୟ ବୋଇଲେ—ଧୃତରାଷ୍ଟ୍ରଙ୍କର ପୁତ୍ରମାନଙ୍କର ଜ୍ୟେଷ୍ଠ ଓ ଅନୁଜ୍ୟେଷ୍ଠ କ୍ରମେ ସେମାନଙ୍କର ନାମ କୀର୍ତ୍ତନ କରନ୍ତୁ ।

ବୈଶମ୍ପାୟନ ବୋଇଲେ—ହେ ରାଜନ୍ । ଦୁର୍ଯୋଧନ-୧, ଯୁଯୁତ୍ସୁ ୨, ଦୁଃଶାସନ ୩, ଦୁଃସହ ୪, ଦୁଃଶଳ ୫, ଜଳସନ୍ଧ ୬, ସମ ୭, ସହ ୮, ସବନ୍ଦ ୯, ଅନୁବନ୍ଦ ୧୦, ଦୁର୍ଦ୍ଧର୍ଷ ୧୧, ସୁବାହୁ ୧୨, ଦୁଷ୍ପ୍ରଧର୍ଷଣ ୧୩, ଦୁର୍ମର୍ଷଣ ୧୪, ଦୁର୍ମୁଖ ୧୫, ଦୁଷ୍କର୍ଣ୍ଣ ୧୬, କର୍ଣ୍ଣ ୧୭, ବିବିଂଶତି ୧୮, ବିକର୍ଣ୍ଣ ୧୯, ଶଳ ୨୦, ସତ୍ତ୍ୱ ୨୧, ସୁଲୋଚନ ୨୨, ଚିତ୍ର ୨୩, ଉପଚିତ୍ର ୨୪, ଚିତ୍ରାକ୍ଷ ୨୫, ଚାରୁଚିତ୍ର ୨୬, ଶରାସନ ୨୭, ଦୁର୍ମଦ ୨୮, ଦୁର୍ବିଗାହ ୨୯, ବିବିତ୍ସୁ ୩୦, ବିକଟାନନ ୩୧, ଊର୍ଣ୍ଣନାଭ ୩୨, ସୁନାଭ ୩୩, ନନ୍ଦ ୩୪, ଉପନନ୍ଦ ୩୫, ଚିତ୍ରବାଣ ୩୬, ଚିତ୍ରବର୍ମ୍ମା ୩୭, ସୁବର୍ମ୍ମା ୩୮, ଦୁର୍ବିମୋଚନ ୩୯, ଅୟୋବାହୁ ୪୦, ମହାବାହୁ ୪୧, ଚିତ୍ରାଙ୍ଗ ୪୨, ଚିତ୍ରକୁଣ୍ଡଳ ୪୩, ଭୀମବେଗ ୪୪, ଭୀମବଳ ୪୫, ବଳାକୀ ୪୬, ବଳବର୍ଦ୍ଧନ ୪୭, ଉଗ୍ରାୟୁଧ ୪୮, ଭୀମକର୍ମ୍ମା ୪୯, କନକାୟୁ ୫୦, ଦୃଢ଼ାୟୁଧ ୫୧, ଦୃଢ଼ବର୍ମ୍ମା ୫୨, ଦୃଢ଼କ୍ଷେତ୍ର ୫୩, ସୋମକୀର୍ତ୍ତି ୫୪, ଅନୁଦର ୫୫, ଦୃଢ଼ସନ୍ଧ ୫୬, ଜରାସନ୍ଧ ୫୭, ସତ୍ୟସନ୍ଧ ୫୮, ସଦଃସୁବାକ୍ ୫୯, ଉଗ୍ରଶ୍ରବା ୬୦, ଉଗ୍ରସେନ ୬୧, ସେନାନୀ ୬୨, ଦୁଷ୍ପରାଜୟ ୬୩, ଅପରାଜିତ ୬୪, କୁଣ୍ଡଶାୟୀ ୬୫, ବିଶାଳାକ୍ଷ ୬୬, ଦୁରାଧର ୬୭, ଦୃଢ଼ହସ୍ତ ୬୮, ସୁହସ୍ତ ୬୯, ବାତବେଗ ୭୦, ସୁବର୍ଚ୍ଚାଃ ୭୧, ଆଦିତ୍ୟ-କେତୁ ୭୨, ବହ୍ୱାଶୀ ୭୩, ନାଗଦତ୍ତ ୭୪, ଅଗ୍ରସାୟୀ ୭୫, କବଚୀ ୭୬, ନିଃସଙ୍ଗୀ ୭୭, କୁଣ୍ଡୀ ୭୮, କୁଣ୍ଡଧାର ୭୯, ଧନୁର୍ଦ୍ଧର ୮୦, ଉଗ୍ର ୮୧, ଭୀମରଥ ୮୨, ବୀରବାହୁ ୮୩, ଅଲୋଲୁପ ୮୪, ଅଭୟ ୮୫, ରୌଦ୍ରକର୍ମ୍ମା ୮୬, ଦୃଢ଼ରଥ ୮୭, ଅନାଧୃଷ୍ୟ ୮୮, କୁଣ୍ଡଭେଦୀ ୮୯, ବିରାବୀ ୯୦,

ଦୀର୍ଘଲୋଚନ ୯୧, ପ୍ରମଥ ୯୨, ପ୍ରମାଥୀ ୯୩, ଦୀର୍ଘରୋମ ୯୪, ଦୀର୍ଘବାହୁ ୯୫, ମହାବାହୁ ୯୬, ବ୍ୟୁଢ଼ୋରୁ ୯୭, କନକଧ୍ୱଜ ୯୮, କୁଣ୍ଡାଶୀ ୯୯, ବିରଜା ୧୦୦ । ଏହି ଏକଶତ ପୁତ୍ର ଓ କନ୍ୟା ଦୁଃଶଳା ( ୧ ) । ହେ ରାଜନ୍ । ଧୃତରାଷ୍ଟ୍ରଙ୍କର ଶତପୁତ୍ର ଓ ଶତାତିରିକ୍ତ ଗୋଟିଏ କନ୍ୟାର ନାମ କୀର୍ତ୍ତିନ କଲି । ହେ ନୃପ । ଏହି ସବୁ ନାମର କ୍ରମ ଅନୁସାରେ ଏମାନଙ୍କର ଜନ୍ମର କ୍ରମ ଜାଣିବ । ୧୦ । ଏମାନେ ସମସ୍ତେ ଅତିରଥ, ଅତିଶୂର, ସମସ୍ତେ ଯୁଦ୍ଧ ବିଶାରଦ ଓ ସମସ୍ତେ ସର୍ବପ୍ରକାର ଅସ୍ତ୍ର ସଞ୍ଚାଳନରେ ନିପୁଣ ଥିଲେ । ୧୫ । ହେ ମହୀପତେ । ଧୃତରାଷ୍ଟ୍ର ପରୀକ୍ଷା ପୁରଃସର ଅନୁରୂପ କନ୍ୟାମାନଙ୍କୁ ଆହରଣ କରି ସେମାନଙ୍କର ସମସ୍ତଙ୍କର ଯଥାବିଧାନରେ ବିବାହ ଦେଲେ । ହେ ଭରତର୍ଷଭ । ନରାଧିପ ଧୃତରାଷ୍ଟ୍ର ଦୁଃଶଳାଙ୍କୁ ମଧ୍ୟ ଯଥା ସମୟରେ ଜୟଦ୍ରଥଙ୍କୁ ବିଧିପୂର୍ବକ ପ୍ରଦାନ କଲେ । ୧୭ ।

---

## ଅଧ୍ୟାୟ ୧୧୮

ଜନମେଜୟ ବୋଇଲେ—ହେ ବ୍ରହ୍ମବାଦିନ୍ । ଧୃତରାଷ୍ଟ୍ର ପୁତ୍ରଙ୍କର ଅଲୌକିକ ଆର୍ଷ ଜନ୍ମ ଆପଣ କୀର୍ତ୍ତିନ କରିବା ହେଲେ; ସେମାନଙ୍କର ପୃଥକ୍ ପୃଥକ୍ ନାମମାନ ମଧ୍ୟ ଆମ୍ଭେ ଆପଣଙ୍କଠାରୁ ଶ୍ରବଣ କଲୁଁ । ହେ ବ୍ରହ୍ମନ୍ । ଏବେ ପାଣ୍ଡବମାନଙ୍କର ବୃତ୍ତାନ୍ତ ଆପଣ କୀର୍ତ୍ତିନ କରନ୍ତୁ । ୨ । ସେମାନେ ସମସ୍ତେ ମହାଭାଗ ଓ ଦେବରାଜଙ୍କ ସଦୃଶ ପରାକ୍ରମଶାଳୀ; ଅଂଶାବତାର ପର୍ବରେ ଆପଣ କୀର୍ତ୍ତିନ କରିଅଛନ୍ତି ଯେ ସେମାନେ ଦେବତାଙ୍କ ଅଂଶରୁ ଜାତ ହୋଇଅଛନ୍ତି । ୩ । ସେହି କାରଣରୁ ହେ ବୈଶମ୍ପାୟନ । ଆମ୍ଭେ ମୁଁ ଅତିମାନୁଷିକ କର୍ମକାରୀଙ୍କର ଜନ୍ମାବଧି ଚରିତ ଶୁଣିବାକୁ ଇଚ୍ଛା କରୁଅଛୁଁ, ଆପଣ କୀର୍ତ୍ତିନ କରନ୍ତୁ । ୪ ।

ବୈଶମ୍ପାୟନ ବୋଇଲେ—ପାଣ୍ଡୁ ରାଜା ମୃଗବ୍ୟାଳ ନିଷେବିତ ମହାରଣ୍ୟରେ ବିଚରଣ କରୁଁ କରୁଁ ମୈଥୁନ ଧର୍ମାଶକ୍ତ ଗୋଟିଏ ମୃଗର ଯୂଥପତିକୁ ଦେଖିଲେ । ତତ୍ପରେ ସେ ରୁକ୍ମ ପୁଙ୍ଖଯୁକ୍ତ ପାଞ୍ଚଗୋଟି ତୀକ୍ଷ୍ଣ ଶରଦ୍ୱାରା ସେ ମୃଗ ଓ ମୃଗୀକୁ ବିଦ୍ଧ କଲେ । ୬ । ହେ ରାଜନ୍ । ଗୋଟିଏ ଋଷିପୁତ୍ର, ମହାତେଜା ତପସ୍ୱୀ ମୃଗ ରୂପଧର ଭାର୍ଯ୍ୟା ସହିତ ସଙ୍ଗମ କରୁଥିଲେ । ମୃଗୀଠାରେ ସଂସକ୍ତ ଥିବାବେଳେ ତାହାଙ୍କଠାରେ ବାଣ

ତାଙ୍କୁ ସେ ମନୁଷ୍ୟପ୍ରାୟ ବଚନ କହି ସମାକୁଳିତ ହୃଦୟରେ କ୍ଷଣକାଳରେ ଭୂମିରେ ପତିତ ହେଲେ । ୮ ।

ମୃଗ ବୋଇଲେ—କାମ ଓ କ୍ରୋଧଯୁକ୍ତ, ବୁଦ୍ଧି ବିରହିତ ଓ ପାପରତ ନରମାନେ ମଧ୍ୟ ଈଦୃଶ ନୃଶଂସ କର୍ମ କରନ୍ତିନାହିଁ । ମାନବ ମାନଙ୍କର ବୁଦ୍ଧି ଦୈବକୁ ଅତିକ୍ରମ କରି ପାରଇନାହିଁ, ମାନବ ବୁଦ୍ଧିକି ଅତିକ୍ରମ କରିବାର ଶକ୍ତି ବିଧାତାଙ୍କର ଅଛି । ବିଧାତାଙ୍କ କୃତ କାର୍ଯ୍ୟକୁ ପ୍ରାଜ୍ଞ ଲୋକ ମଧ୍ୟ ଜାଣି ନପାରେ । ହେ ଭାରତ ! ତୁମ୍ଭେ ଚିର ପ୍ରସିଦ୍ଧ ଧର୍ମାତ୍ମାଙ୍କ କୁଳରେ ଜାତ ହୋଇ କିପରି ତୁମ୍ଭର ମତି କାମ ଓ ଲୋଭରେ ଅଭିଭୂତ ହୋଇ ଏତାଦୃଶ ବିଚଳିତ ହେଲା ? । ୧୧ ।

ପାଣ୍ଡୁ ବୋଇଲେ—ହେ ମୃଗ ! ରାଜାମାନଙ୍କ ଶତ୍ରୁ ବଧରେ ଯେପରି ମୃଗ ବଧରେ ମଧ୍ୟ ସେହିପରି ବ୍ୟବହାର ଶାସ୍ତ୍ରୋକ୍ତ ଅଛି । ଅତଏବ ହେ ମୃଗ ! ତୁମ୍ଭେ ଆମ୍ଭଙ୍କୁ ନିନ୍ଦା କରନା । ୧୨ । ପ୍ରକାଶ୍ୟରେ ଓ ପ୍ରଚ୍ଛନ୍ନରେ ଏହି ଉଭୟ ପ୍ରକାରରେ ମୃଗମାନଙ୍କର ବଧ କରିବାର ବିଧାନ ଅଛି; ରାଜାଙ୍କର ସେ ଧର୍ମ । ଅତଏବ କି ନିମିତ୍ତ ତୁମ୍ଭେ ନିନ୍ଦା କରୁଅଛ ? ଅଗସ୍ତ୍ୟ ମୁନି ଯଜ୍ଞାନୁଷ୍ଠାନରେ ପ୍ରବୃତ୍ତ ହୋଇ ମହାବନସ୍ଥିତ ସମୁଦାୟ ମୃଗଙ୍କୁ ସର୍ବ ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରୋକ୍ଷଣ କରି ମୃଗୟା କରିବାକୁ ଗଲେ । ୧୪ । ଅଗସ୍ତ୍ୟ ମୁନିଙ୍କ ଅଭିଚାର କର୍ମରେ ସୁଦ୍ଧା ତୁମ୍ଭମାନଙ୍କର ବପାହୁତ ହୋଇଥିଲା; ବେଦୋକ୍ତ ବିଧିରେ ଆମ୍ଭେ, ଧର୍ମାନୁରୂପ କାର୍ଯ୍ୟ କରିଅଛୁଁ, କିପାଇଁ ତୁମ୍ଭେ ଆମ୍ଭଙ୍କୁ ନିନ୍ଦା କରୁଅଛ ?।୧୫।

ମୃଗ ବୋଇଲେ—ନରମାନେ ଶତ୍ରୁଙ୍କ ଉଦ୍ଦେଶ୍ୟକରି ସର୍ବ ସମୟରେ ଶର ମୋଚନ କରନ୍ତିନାହିଁ । ବଧ କରିବାର ପ୍ରଶସ୍ତ କାଳ ଅଛି । ସେ ସମୟରେ ବଧ ନ କରି ଶତ୍ରୁ ଯେତେବେଳେ ସଂଗ୍ରାମକୁ ନ ଆସିଥାଏ ଅଥବା ଅସାବଧାନ ଥାଏ କି ନିରସ୍ତ୍ରଥାଏ ତେତେବେଳେ ତାହାକୁ ବଧକଲେ ସେ କାର୍ଯ୍ୟ ଗର୍ହିତ ଅଟଇ ।

ପାଣ୍ଡୁ ବୋଇଲେ—ହେ ମୃଗ ! ମୃଗମାନେ ପ୍ରମତ୍ତ ବା ଅପ୍ରମତ୍ତ ଥାଉନ୍ତୁ ଲୋକେ ବିବିଧ ଉପାୟଦ୍ୱାରା ସେମାନଙ୍କୁ ବଳପୂର୍ବକ ପ୍ରକାଶ୍ୟ ରୂପେ ବଧ କରନ୍ତି । ଅତଏବ ତୁମ୍ଭେ କି କାରଣ ନିନ୍ଦା କରୁଅଛ ?

ମୃଗ ବୋଇଲେ—ହେ ରାଜନ୍ ! ତୁମ୍ଭେ ମୃଗବଧ କଲ ବୋଲି ଯେ ଅମ୍ଭେ ଆପଣା ହେତୁରୁ ତୁମ୍ଭଙ୍କୁ ନିନ୍ଦା କଲୁଁ ଏହା ନୁହଇ । ପରନ୍ତୁ ତୁମ୍ଭେ ଏହି ସମୟରେ ନିଷ୍ଠୁରତାଚରଣ ନ କରି ଆମ୍ଭର ମୈଥୁନ କାଳ ପ୍ରତୀକ୍ଷା କରିବା ତୁମ୍ଭର ଉଚିତ ଥିଲା । ୧୮ । ସର୍ବଭୂତର ଅଭିବାଞ୍ଛିତ ଓ ସର୍ବଭୂତର ହିତଜନକ ଈଦୃଶ ସମୟରେ କେଉଁ ଜ୍ଞାନବାନ୍ ବ୍ୟକ୍ତି ବନ ମଧ୍ୟରେ ମୈଥୁନାସକ୍ତ ମୃଗକୁ ବଧ କରନ୍ତି ? । ୧୯ । ହେ ରାଜେନ୍ଦ୍ର ! ପୁରୁଷାର୍ଥ ଫଳ ସମ୍ପାଦନାର୍ଥ ଅମ୍ଭେ ହର୍ଷ ବଶରୁ ଏହି ମୃଗୀଠାରେ ମୈଥୁନରେ ରତ ଥିଲୁଁ; ତୁମ୍ଭେ ତାହା ବିଫଳ କଲ । ୨୦ । ହେ ମହାରାଜ ! ପୁଣ୍ୟକର୍ମ ପୌରବ ନରପତିଙ୍କ ବଂଶରେ ଜାତ ହୋଇ, ହେ କୌରବ୍ୟ ! ଏ କାର୍ଯ୍ୟ ତୁମ୍ଭର ଅନୁରୂପ ହୋଇନାହିଁ । ୨୧ । ହେ ଭାରତ ! ଏ କର୍ମଟି ସୁମହତ୍ ନୃଶଂସ, ସର୍ବଲୋକ ବିଗର୍ହିତ, ଅସ୍ୱର୍ଗ୍ୟ, ଅଯଶସ୍ୟ ଓ ଅଧର୍ମକର ଅଟଇ । ୨୨ ।

ତୁମ୍ଭେ ଶାସ୍ତ୍ରୋକ୍ତ ଧର୍ମ ଓ ଅର୍ଥର ତତ୍ତ୍ୱକୁ ଜାଣ, ସ୍ତ୍ରୀ ସମ୍ଭୋଗରେ ବିଶେଷଜ୍ଞ ଅଟ; ତୁମ୍ଭେ ସୁର ତୁଲ୍ୟ ହୋଇ ଈଦୃଶ ଜୁଗୁପ୍ସିତ କର୍ମକରିବା ଅନୁଚିତ । ୨୩ । ହେ ପାର୍ଥିବ ଶ୍ରେଷ୍ଠ ! ଯେଉଁ ମାନବ ମାନେ ପାପଗ୍ରସ୍ତ ହୁଅନ୍ତି ଓ ଧର୍ମାର୍ଥ କାମ ବିବର୍ଜିତ ହୁଅନ୍ତି, ସେମାନେ ତୁମ୍ଭର ଦଣ୍ଡ୍ୟ ଅଟନ୍ତି । ହେ ନରଶ୍ରେଷ୍ଠ ! ଅମ୍ଭେ ନିରପରାଧୀ, ହେ ନୃପ ! ଅମ୍ଭେ ମୂଳ ଫଳାହାରୀ ମୁନି, ମୃଗ ବେଶ ଧରିଅଛୁଁ; ଅମ୍ଭଙ୍କୁ ହତ କରି ତୁମ୍ଭର କି ଲାଭ ହେଲା ? । ୨୪ ।

ଅମ୍ଭେ ଶମପରାୟଣ ହୋଇ ନିତ୍ୟ ଅରଣ୍ୟରେ ବାସ କରିଥାଉଁ, ଅମ୍ଭଙ୍କୁ ତୁମ୍ଭେ ହିଂସା କଲ, ଅତଏବ ଅମ୍ଭେ ତୁମ୍ଭଙ୍କୁ ଶାପ ଦେଉଅଛୁଁ ।୨୬। ସ୍ତ୍ରୀ ପୁରୁଷଙ୍କର ସଙ୍ଗମ କାଳରେ ତୁମ୍ଭେ ନୃଶଂସ ବ୍ୟବହାର କଲ ଅତଏବ ତୁମ୍ଭର ମଧ୍ୟ ଏହିପରି କାମ ମୋହିତ ଅବସ୍ଥାରେ ଜୀବନାନ୍ତକାରୀ ଭାବ ଉପସ୍ଥିତ ହେବ । ୨୭ । ଅମ୍ଭେ କିନ୍ଦମ ନାମକ ତପଃସମ୍ପନ୍ନ ମୁନି, ମନୁଷ୍ୟଙ୍କ ସମକ୍ଷରେ ନିର୍ଲଜ୍ଜ ହୋଇ ମୃଗୀଠାରେ ମୈଥୁନାଚରଣ କରୁଥିଲୁଁ, ଅମ୍ଭେ ମୃଗ ବେଶ ଧାରଣ କରି ଗହନବନରେ ମୃଗମାନଙ୍କ ସହିତ ବିଚରଣ କରୁଁ; ଏହା ତୁମ୍ଭଙ୍କୁ ଜଣାନାହିଁ, ଅତଏବ ତୁମ୍ଭର ଏଥିରେ ବ୍ରହ୍ମହତ୍ୟା ପାପ ହେବନାହିଁ । ୨୯ । ରେ ମୂଢ଼ ! ଅମ୍ଭେ ମୃଗ ରୂପ ଧରି କାମ ମୋହିତ ହୋଇଥିଲୁଁ; ଅମ୍ଭଙ୍କୁ ହତ କରି ତୁମ୍ଭେ ଏ କାର୍ଯ୍ୟର ଏହିପରି

ଫଳ ପ୍ରାପ୍ତ ହେବ । ୩୦ । କାମ ମୋହିତ ହୋଇ ପ୍ରିୟା ସହିତ ସମ୍ଭୋଗ ପ୍ରାପ୍ତ ହେଲା କ୍ଷଣି ପ୍ରେତ ଲୋକକୁ ଗମନ କରିବ । ୩୧ । ହେ ମତିମାନଙ୍କ ଶ୍ରେଷ୍ଠ । ତୁମ୍ଭେ ଅନ୍ତକାଳରେ ଯେଉଁ କାନ୍ତାଙ୍କ ସହିତ ସହବାସ କରୁଥିବ ସେ ମଧ୍ୟ ଭକ୍ତିପୂର୍ବକ ଅପରିହାର୍ଯ୍ୟ ପ୍ରେତରାଜଙ୍କ ଭବନକୁ ତୁମ୍ଭର ଅନୁଗାମିନୀ ହେବେ । ୩୨ । ଆମ୍ଭେ ଯେପରି ସୁଖରେ ଥିବାବେଳେ ତୁମ୍ଭ ଯୋଗୁଁ ଦୁଃଖ ପ୍ରାପ୍ତ ହେଲୁଁ, ତଦ୍ରୂପ ତୁମ୍ଭର ମଧ୍ୟ ସୁଖ ପ୍ରାପ୍ତି ହେବା ସମୟରେ ଦୁଃଖ ଆସି ପ୍ରାପ୍ତ ହେବ । ୩୩ ।

ବୈଶମ୍ପାୟନ ବୋଇଲେ—ମୃଗ ଏହି ବାକ୍ୟ କହି ଅତିଶୟ ଦୁଃଖିତ ହୋଇ ଜୀବନ ତ୍ୟାଗ କଲେ; ପାଣ୍ଡୁ ମଧ୍ୟ କ୍ଷଣକାଳରେ ଦୁଃଖିତ ହେଲେ । ୩୪ ।

---

## ଅଧ୍ୟାୟ ୧୧୯

ବୈଶମ୍ପାୟନ ବୋଇଲେ—ରାଜା ସେ ଋଷିଙ୍କୁ ଅତିକ୍ରମ କରି ନିଜ ବାନ୍ଧବ ପ୍ରାୟ ତାହାଙ୍କ ନିମିତ୍ତ ଭାର୍ଯ୍ୟାସହ ଦୁଃଖିତ ହୋଇ ଅନେକ ବିଳାପ କଲେ । ୧ ।

ପାଣ୍ଡୁ ବୋଇଲେ—ହାୟ ! ଅକୃତାତ୍ମା ବ୍ୟକ୍ତିମାନେ ସଦ୍‌ବଂଶରେ ଜନ୍ମ ପରିଗ୍ରହ କରି ସୁଦ୍ଧା କାମଜାଲରେ ବିମୋହିତ ହୋଇ ଦୁର୍ଗତି ପ୍ରାପ୍ତ ହୁଅନ୍ତି । ୨ । ଆମ୍ଭେ ଶୁଣିଅଛୁଁ ଆମ୍ଭର ପିତା ବିଚିତ୍ରବୀର୍ଯ୍ୟ ଧର୍ମାତ୍ମା ଶାନ୍ତନୁଙ୍କ ଠାରୁଁ ଉତ୍ପନ୍ନ ହୋଇ ସୁଦ୍ଧା କେବଳ କାମାତ୍ମା ହେବାରୁ ଅଳ୍ପ ବୟସରେ ଜୀବିତାନ୍ତକୁ ପ୍ରାପ୍ତ ହେଲେ । ୩ । ସେହି କାମାତ୍ମା ରାଜାଙ୍କର କ୍ଷେତ୍ରରେ ସଂଯତବଚନ ଋଷି କୃଷ୍ଣ ଦ୍ୱୈପାୟନ ସାକ୍ଷାତ୍ ଆମ୍ଭଙ୍କୁ ଜନ୍ମକଲେ । ୪ । ଆମ୍ଭେ ଏଡ଼େ ଅଧମ ଯେ ଆମ୍ଭର ବ୍ୟସନରେ ବୁଦ୍ଧି ଜାତ ହେଲା, ଆମ୍ଭେ ମୃଗୟାର୍ଥ ଏକ ବନରୁ ବନାନ୍ତକୁ ପରିଭ୍ରମଣ କରୁଅଛୁଁ । ସୁତରାଂ ଦେବତାମାନେ ଆମ୍ଭଙ୍କୁ ପରିତ୍ୟାଗ କରିଅଛନ୍ତି । ୫ । ହେ ବନ୍ଧୋ ! ଆମ୍ଭେ ମୋକ୍ଷ ବ୍ୟବସାୟ କରିବୁଁ । ଆମ୍ଭେ ପିତାଙ୍କର ସେହି ଅକ୍ଷୟ ବୃତ୍ତିକୁ ଅନୁବର୍ତ୍ତନ କରିବୁଁ । ନିଶ୍ଚୟ ଆମ୍ଭେ ସେହି ତପସ୍ୟାରେ ମନକୁ ଯୁକ୍ତ କରିବୁଁ । ଅତଏବ ଆମ୍ଭେ ଏକାକୀ ହୋଇ ଗୋଟିଏ ଗୋଟିଏ ବନସ୍ପତିଠାରେ ଭୈକ୍ଷ୍ୟ ଆଚରଣ କରି ମୁକ୍ତ ପ୍ରାୟ ହୋଇ ଏହି

ମହୀକୁ ବିଚରଣ କରିବୁଁ । ପାଂଶୁରେ ଶରୀରକୁ ଅଚ୍ଛନ୍ନ କରିବୁଁ ଓ ଶୂନ୍ୟ ଗୃହରେ ଅଥବା ବୃକ୍ଷମୂଳରେ ବାସ କରିବୁଁ । ପ୍ରିୟ ଓ ଅପ୍ରିୟ ସମସ୍ତଙ୍କୁ ତ୍ୟାଗ କରି ଶୋକ ନ କରି, କି ହୃଷ୍ଟ ନ ହୋଇ, ନିନ୍ଦା ଓ ସ୍ତୁତି ଦୁହିଁଙ୍କୁ ସମାନ ଜ୍ଞାନ କରିବୁ । ୯ । ଆଶୀର୍ବାଦ ଅଥବା ନମସ୍କାରର ଅଭିଳାଷୀ ହେବୁ ନାହିଁ; ନିର୍ଦ୍ଦ୍ୱନ୍ଦ୍ୱ ଓ ନିଷ୍ପରିଗ୍ରହ ହୋଇ କାହାରିକୁ ଉପହାସ ନ କରି କି କାହାରି ପ୍ରତି ଭ୍ରୂକୁଟୀ କ୍ଷେପ ନ କରି କାଳ ହରଣ କରିବୁଁ । ୧୦ ।

ଆମ୍ଭେ ସର୍ବ ପ୍ରାଣୀଙ୍କ ହିତରେ ରତ ହୋଇ ନିତ୍ୟ ପ୍ରସନ୍ନ ବଦନ ହେବୁଁ । ସ୍ଥାବର ଓ ଚତୁର୍ବିଧ ଜଙ୍ଗମ କାହାରିକୁ ହିଂସା କରିବୁ ନାହିଁ । ୧୨ । ପ୍ରାଣୀମାନଙ୍କୁ ନିଜ ସନ୍ତାନ ପ୍ରାୟ ଜ୍ଞାନ କରି ସେମାନଙ୍କ ପ୍ରତି ସମ ବ୍ୟବହାର କରିବୁଁ । ପ୍ରତ୍ୟେହ ଦଶଘର ଅଥବା ପାଞ୍ଚଘର ମାତ୍ର ବାରେ ଭିକ୍ଷା କରିବୁଁ । ଭିକ୍ଷାଲାଭ ଅସମ୍ଭବ ହେଲେ ଅନାହାରୀ ହୋଇ ବୁଲିବୁଁ । ଅଳ୍ପ ଅଳ୍ପ ଭୋଜନ କରିବୁଁ; ବୃକ୍ଷମାନଙ୍କ ଠାରେ ଭିକ୍ଷାକରି କିଛି ପ୍ରାପ୍ତ ନ ହେଲେ, ଗୃହକୁ ଭିକ୍ଷା କରିବାକୁ କଦାପି ଅସିବୁଁ ନାହିଁ । ସପ୍ତ ବା ଦଶ ଗୃହରେ ଭ୍ରମଣ ପୂର୍ଣ୍ଣ କରି ଯଦି ଭିକ୍ଷା ଲଭ ନ ହୁଏ, ତେବେ ଲୋଭପ୍ରଯୁକ୍ତ ଅନ୍ୟଗୃହରେ ଭିକ୍ଷା କରିବୁ ନାହିଁ । ଲଭ ହେଉ ଅଥବା ଅଲଭ ହେଉ ଆମ୍ଭେ ସମଦର୍ଶୀ ଓ ମହାତପାଃ ହେବୁଁ । ୧୪ । ଯଦି କେହି ବାସୀରେ ଗୋଟିଏ ବାହୁକୁ ଛେଦନ କରେ ଓ ଅନ୍ୟ ଜଣେ ଅପର ବାହୁକୁ ଚନ୍ଦନଲେପନ କରେ ତେବେ ପୂର୍ବ ବ୍ୟକ୍ତିର ଅକଲ୍ୟାଣ ଅଥବା ପର ବ୍ୟକ୍ତିକୁ କଲ୍ୟାଣ ଚିନ୍ତା କରିବୁ ନାହିଁ । ୧୫ ।

ଆମ୍ଭେ ଜୀବିତ ହେବାକୁ ହୃଷ୍ଟ ହେବୁ ନାହିଁ କି ମୃତ ହେବାକୁ ଦ୍ୱେଷ କରିବୁ ନାହିଁ । ଜିଜୀବିଷୁବ୍ୟକ୍ତି ପ୍ରାୟ କୌଣସି କାର୍ଯ୍ୟ କରିବୁଁ ନାହିଁ । ୧୬ । ଜୀବିତ ବ୍ୟକ୍ତିମାନେ ଆପଣାର ଅଭ୍ୟୁଦୟ ନିମିତ୍ତ ଯେଉଁ ସମୟରେ ଯେଉଁ ସବୁ ମଙ୍ଗଳ କାର୍ଯ୍ୟ କରନ୍ତି ସେ ସମସ୍ତ ପରିତ୍ୟାଗ କରିବୁଁ ଓ ଅନିତ୍ୟ ଫଳପ୍ରଦ ସମସ୍ତ ଇନ୍ଦ୍ରିୟ କ୍ରିୟା ଅଥଚ ଧର୍ମ୍ମାର୍ଥ ଏମାନଙ୍କ ମଧ୍ୟ ପରିତ୍ୟକ୍ତ କରିବୁଁ । ୧୮ । ସର୍ବ ପ୍ରକାର ପାପରୁ ନିର୍ମ୍ମୁକ୍ତ ଓ ସର୍ବ-ପ୍ରକାର ବନ୍ଧନରୁ ବ୍ୟତୀତ ହେବୁଁ ଓ କାହାରି ବଶବର୍ତ୍ତୀ ନୋହି ବାୟୁ ସହିତ ସମାନ ଧର୍ମ୍ମା ହେବୁଁ । ୧୯ । ସତେ ଏହିପରି ବୃତ୍ତିରେ ଓ ଏହି

ପ୍ରକାରରେ ବିଚରଣ କରି ନିର୍ଭୟ ମାର୍ଗରେ ଥାଇ ଦେହକୁ ବିନାଶ କରିବୁଁ । ୨୦ । ଯେଉଁ ମାର୍ଗରେ ଆପଣାର ବୀର୍ଯ୍ୟ ହାନି ହୁଏ, ସେହି ମାର୍ଗରେ ବୀର୍ଯ୍ୟହୀନ ହୋଇ ଓ ଅମୃତତ୍ତ୍ୱ ରୂପ ଧର୍ମରୁ ବିଚଳିତ ହୋଇ ବିଚରଣ କରିବୁଁ ନାହିଁ । ସ୍ୱକୀୟ ଅଭିଳାଷ ପୂର୍ଣ୍ଣ କରିବା ନିମିତ୍ତ ତେଜୋହୀନ ବ୍ୟକ୍ତି ପ୍ରାୟ କାହାର ସେବା କରିବୁ ନାହିଁ । କିମ୍ବା କୁ ଉପାସନା ଦ୍ୱାରା ବଶୀକୃତ ଲୋକଠାରୁ ଅତି ସମ୍ମାନନା ପୁରଃସର ଅଭିଳଷିତ ଦ୍ରବ୍ୟ ଲବ୍ଧ ହେଲେହେଁ ସେପରି କର୍ମକୁ ଶ୍ୱ-ବୃତ୍ତି ବୋଲିଯାଏ । ୨୨ । ପ୍ରକୃତରେ ଆମ୍ଭେ ଏବେ ଅକଣ୍ଟକର ଓ ଅଚିରସ୍ଥାୟୀ ବିଷୟଭୋଗକୁ ବିସର୍ଜନ ଦେଇ ମୁକ୍ତି ପଥକୁ ଅବଲମ୍ବନ କରିବୁଁ ।

ବୈଶମ୍ପାୟନ ବୋଇଲେ—ଏହାପରେ ନୃପତି ଅତି ଦୁଃଖାର୍ତ୍ତ ହୋଇ ଓ ଦୀର୍ଘ ନିଶ୍ୱାସ ପରିତ୍ୟାଗ କରି କୁନ୍ତୀ ଓ ମାଦ୍ରୀଙ୍କୁ ଗୃହି ବୋଇଲେ, କୌଶଲ୍ୟା, ବିଦୁର, ବନ୍ଧୁମାନଙ୍କ ସହ ରାଜା ଧୃତରାଷ୍ଟ୍ର, ଆର୍ଯ୍ୟା ସତ୍ୟବତୀ, ଭୀଷ୍ମ ଓ ରାଜପୁରୋହିତ ମାନେ, ଶଂସିତ ବ୍ରତ ମହାତ୍ମା ବ୍ରାହ୍ମଣମାନେ ପୌରବୃଦ୍ଧ ଓ ଆମ୍ଭର ଆଶ୍ରିତ ଯେତେ ବ୍ୟକ୍ତି ସେଠାରେ ନିବାସ କରନ୍ତି ସେମାନଙ୍କୁ ବିନୟ ପୂର୍ବକ କହିବ ଯେ ପାଣ୍ଡୁ ପ୍ରବ୍ରଜ୍ୟାଶ୍ରମ ଅବଲମ୍ବନ କଲେ । ଭର୍ତ୍ତାଙ୍କର ବଚନ ଶ୍ରବଣ କରି ଓ ବନବାସରେ ତାହାଙ୍କର ମନ ନିଶ୍ଚୟ ହେବାର ଜାଣି କୁନ୍ତୀ ଓ ମାଦ୍ରୀ ତଦୁପଯୁକ୍ତ ଉତ୍ତର ବଚନ କହିଲେ । ହେ ଭରତର୍ଷଭ ! ଅନ୍ୟ ଅନେକ ଆଶ୍ରମ ଅଛୁ, ଯାହା ଅବଲମ୍ବନ କଲେ ଆପଣ ଏହି ଧର୍ମପତ୍ନୀଦ୍ୱୟଙ୍କ ସହିତ ମହତୀ ତପସ୍ୟା କରି ପାରନ୍ତି, ଯଦ୍ୱାରା ସ୍ୱର୍ଗପ୍ରଦ ମହାଫଳ ଲଭ ଓ ପରିଣାମରେ ମୋକ୍ଷ ପ୍ରାପ୍ତି ହେବ ।୨୮। ତୁମ୍ଭେ ମଧ୍ୟ ନିଃସଂଶୟ ସ୍ୱର୍ଗର ସ୍ୱାମୀ ହେବ ଓ ଆମ୍ଭେ ଦୁହେଁ ଭର୍ତ୍ତୃ ଲୋକ ପରାୟଣା ହୋଇ ଇନ୍ଦ୍ରିୟମାନଙ୍କୁ ଦମନ ଓ କାମ ସୁଖକୁ ତ୍ୟାଗ କରି ବିପୁଳ ତପସ୍ୟା କରିବୁଁ । ହେ ପ୍ରାଜ୍ଞ ନରପତେ ! ଯଦି ତୁମ୍ଭେ ଆମ୍ଭଙ୍କୁ ତ୍ୟାଗ କରିବ ତେବେ ଅଦ୍ୟ ଆମ୍ଭେମାନେ ଜୀବନ ତ୍ୟାଗ କରିବୁଁ ; ଏଥିରେ ସଂଶୟ ନାହିଁ । ୩୦ ।

ପାଣ୍ଡୁ ବୋଇଲେ—ଯଦି ତୁମ୍ଭ ଦୁହିଙ୍କର ଏହିକାର୍ଯ୍ୟ ଧର୍ମାନୁସାରୀ ହେବ, ତେବେ ଆମ୍ଭ ପିତାଙ୍କର ଯେଉଁ ଅକ୍ଷୟ ବୃତ୍ତି ସେହି ବୃତ୍ତିର ଅନୁକାରୀ ହେବୁ । ୩୧ । ଗ୍ରାମ୍ୟ ସୁଖ ଓ ଗ୍ରାମ୍ୟ ଆହାର ତ୍ୟାଗକରି ମହତ ତପସ୍ୟା କରିବୁଁ ; ବଲ୍‌କଲଧାରୀ ଓ ଫଳମୂଳାହାରୀ ହୋଇ

ମହାବନରେ ବିଚରଣ କରିବୁଁ ; ଉଭୟେ ସ୍ନାନ କରି ଅଗ୍ନିରେ ଆହୁତି ପ୍ରଦାନ କରିବୁଁ । ପରିମିତ ଆହାର ଚୀର, ଚର୍ମ୍ମ ଓ ଜଟାଧାରୀ ହୋଇ ଶରୀରକୁ କୃଶ କରିବୁଁ । ୩୩ । ଶୀତ, ବାତ ଓ ଆତପ ସହ୍ୟକରି, କ୍ଷୁଧା ପିପାସା ନିବୃତ୍ତିରେ ମନୋଯୋଗୀ ନହୋଇ ଦୁଷ୍କର ତପସ୍ୟାଦ୍ୱାରା ଶରୀରକୁ ଶୋଷଣକରି ଏକାନ୍ତବାସୀ, ହିଂସାରହିତ ଓ ଫଳମୂଳାହାରୀ ହେବୁଁ ; ଅଥଚ ବନଜାତ ଦ୍ରବ୍ୟ ଦ୍ୱାରା ବଚନ ଓ ଜଳଦ୍ୱାରା ପିତୃ ଓ ଦେବଗଣଙ୍କର ତର୍ପଣ କରିବୁଁ । ୩୫ । ଭ୍ରାତାଦି କୁଳଜନଙ୍କର ଦର୍ଶନ କରିବୁଁନାହିଁ; ଗ୍ରାମବାସୀଙ୍କ କଥା ଦୂରେଥାଉ ବାନପ୍ରସ୍ଥାଶ୍ରମୀଙ୍କର ସୁଦ୍ଧା ଅପ୍ରିୟ କରିବୁନାହିଁ । ୩୬ । ଏହିପ୍ରକାରେ ଏହି ଦେହର ସମାପନ ଅବଧି ଅରଣ୍ୟ ଶାସ୍ତ୍ରମାନଙ୍କର ନିର୍ଦ୍ଦିଷ୍ଟ ଉଗ୍ର ଓ ଉଗ୍ରତର ବିଧିମାନଙ୍କର ଅନୁଷ୍ଠାନ କରି ଅବସ୍ଥିତ କରିବୁ । ୩୭ ।

ବୈଶମ୍ପାୟନ ବୋଇଲେ—କୌରବ ନନ୍ଦନ ରାଜା ପାଣ୍ଡୁ ଭାର୍ଯ୍ୟା ଦୁହିଙ୍କ ଏହିପରି କହି ମସ୍ତକର ମଣି, କରର ସୁବର୍ଣ୍ଣ ଅଙ୍ଗଦ, କୁଣ୍ଡଳ ଦ୍ୱୟ, ମହାମୂଲ୍ୟ ବସ୍ତ୍ର ଓ ସ୍ତ୍ରୀ ମାନଙ୍କର ଆଭରଣ ସବୁ ବିପ୍ରଙ୍କୁ ଦାନ କରି, ପୁନର୍ବାର ଅନୁଚରମାନଙ୍କୁ କହିଲେ, ତୁମ୍ଭେମାନେ ହସ୍ତିନା ପୁରକୁ ଗମନକରି କହିବ, କୁରୁ ନନ୍ଦନ ପାଣ୍ଡୁ, ଅର୍ଥ, କାମ, ସୁଖ ଓ ପରମ ପ୍ରିୟତମ ରତିସୁଖ ଉତ୍ସର୍ଜ୍ଜନ କରି ଭାର୍ଯ୍ୟାଙ୍କ ସହିତ ବନକୁ ପ୍ରସ୍ଥାନ କଲେ । ତଦନନ୍ତର ତାହାଙ୍କର ଅନୁଯାୟୀ ପରିଚାରକାମାନେ ଭରତ ସିଂହଙ୍କର ବିବିଧ ପ୍ରକାର କରୁଣାସୂଚକ ବାକ୍ୟ ଶ୍ରବଣକରି ଭୟାନକ ଆର୍ତ୍ତସ୍ୱରରେ ହା ହା ବୋଲି ରୋଦନ କଲେ । ୪୨ । ଉଷ୍ଣ ଅଶ୍ରୁମୋଚନ ପୂର୍ବକ ମହୀପତିଙ୍କୁ ପରିତ୍ୟାଗ କରି ସର୍ବ ଧନ ଘେନି ନାଗପୁରକୁ ଶୀଘ୍ର ଗମନ କଲେ । ୪୩ ।

ସେମାନେ ନଗରକୁ ଗମନକରି ମହାତ୍ମା ପାଣ୍ଡୁ ପ୍ରବ୍ରଜ୍ୟାଶ୍ରମ ଅବଲମ୍ବନ ବିଷୟ ଧୃତରାଷ୍ଟ୍ରଙ୍କୁ ଜଣାଇଲେ ଓ ତାହାଙ୍କୁ ସେ ବିବିଧ ଧନ ସବୁ ଦେଲେ । ୪୪ । ମହାବନରେ ଯେଉଁସବୁ ଘଟନା ହୋଇଥିଲା ତାହା ସେମାନଙ୍କଠାରୁ ଶ୍ରବଣକରି ନରଶ୍ରେଷ୍ଠ ରାଜା ଧୃତରାଷ୍ଟ୍ର ପାଣ୍ଡୁଙ୍କ ନିମିତ୍ତ ଅନୁଶୋଚନା କଲେ । ୪୫ । ଭ୍ରାତାଙ୍କ ଶୋକରେ ସମାବିଷ୍ଟ ହୋଇ କେବଳ ସେହି ବିଷୟ ଚିନ୍ତାକରି ଧୃତରାଷ୍ଟ୍ର ଶଯ୍ୟା ଆସନ ଅଥବା ଭୋଗ କାହିଁରେ ସୁଦ୍ଧା ସୁଖଭୋଗ

କଲେନାହିଁ । ୪୬ । କୁରୁବଂଶୋଦ୍ଭବ ରାଜସୁତ ପାଣ୍ଡୁ ମୂଳ ଫଳାହାରୀ ହୋଇ ପତ୍ନୀଗଣ ସମଭିବ୍ୟାହାରରେ ନାଗଶତ ଗିରିକୁ ଗମନକଲେ ।୪୭। ସେ ଚୈତ୍ରରଥରେ ପ୍ରବିଷ୍ଟ ହୋଇ କାଳକୂଟ ପର୍ବତକୁ ଓ ତତ୍ପରେ ହିମବନ୍ତ ପର୍ବତକୁ ମଧ୍ୟ ଅତିକ୍ରମ କଲେ ଓ ଗନ୍ଧମାଦନକୁ ଗମନ କଲେ । ୪୮ । ହେ ମହାରାଜ । ସେ ମହାଭୂତ, ସିଦ୍ଧ ଓ ପରମର୍ଷିମାନଙ୍କ ଦ୍ୱାରା ରକ୍ଷିତ ହୋଇ ସମ ଓ ବିଷମ ସ୍ଥାନ ମାନଙ୍କରେ ନିବାସକଲେ । ହେ ମହାରାଜ । ପରଶେଷରେ ସେ ହଂସକୂଟକୁ ଅତିକ୍ରମ କରି ଶତଶୃଙ୍ଗ ନାମକ ପର୍ବତରେ ଇନ୍ଦ୍ରଦ୍ୟୁମ୍ନ ନାମକ ସରୋବରକୁ ପ୍ରାପ୍ତ ହୋଇ ସେଠାରେ ତାପସ ହୋଇ ତପସ୍ୟା କଲେ । ୫୦ ।

---

## ଅଧ୍ୟାୟ ୧୨୦

ବୈଶମ୍ପାୟନ ବୋଇଲେ—ସେ ବୀର୍ଯ୍ୟଶାଳୀ ପାଣ୍ଡୁ ପରମୋତ୍କୃଷ୍ଟ ତପସ୍ୟାରେ ନିଯୁକ୍ତ ଥାଇ ସେ ସ୍ଥାନରେ ମଧ୍ୟ ସିଦ୍ଧଚାରଣାଦି ଗଣଙ୍କର ପ୍ରିୟଦର୍ଶନ ହେଲେ । ୧ । ହେ ଭାରତ । ଗୁରୁ ଶୁଶ୍ରୂଷୁ, ଅହଂକାର ଶୂନ୍ୟ, ସଂଯତାତ୍ମା ଓ ଜିତେନ୍ଦ୍ରିୟ ପାଣ୍ଡୁ ସ୍ୱକୀୟ ବୀର୍ଯ୍ୟ ପ୍ରଭାବରୁ ସ୍ୱର୍ଗ ଗମନରେ ପରାକ୍ରମୀ ହେଲେ । ୨ । କାହାଙ୍କର ଭ୍ରାତା ହେଲେ ଓ କାହାଙ୍କର ସଖା ହେଲେ; ଅପର ଋଷିମାନେ ଏହାଙ୍କୁ ପୁତ୍ର ନିର୍ବିଶେଷରେ ପ୍ରତିପାଳନ କଲେ । ୩ । ହେ ଭରତର୍ଷଭ । ମହତ୍ କାଳପରେ ପାଣ୍ଡୁ ନିର୍ମଳ ତପଃପ୍ରାପ୍ତ ହୋଇ ବ୍ରହ୍ମର୍ଷିସଦୃଶ ହେଲେ । ୪ । ଶଂସିତବ୍ରତ ମହର୍ଷିମାନେ ଅମାବାସ୍ୟାରେ ସମବେତ ହୋଇ ବ୍ରହ୍ମାଙ୍କୁ ଦର୍ଶନ କରିବା ଅଭିଳାଷରେ ପ୍ରସ୍ଥାନ କଲେ । ଋଷିମାନଙ୍କୁ ଗମନ କରିବାର ଦେଖି ପାଣ୍ଡୁ ପଚାରିଲେ, ହେ ବାଗ୍ମିଶ୍ରେଷ୍ଠ ନିକର । ଆପଣମାନେ କେଉଁଠାକୁ ଗମନ କରୁଅଛନ୍ତି, ଆମ୍ଭଙ୍କୁ ବୋଲନ୍ତୁ । ୬ ।

ଋଷିମାନେ ବୋଇଲେ ଅଦ୍ୟ ବ୍ରହ୍ମଲୋକରେ ମହାତ୍ମା ମାନଙ୍କର ମହାନ୍ ସମବାୟ ହେବ, ଦେବତାମାନେ, ଋଷିମାନେ, ପିତୃଗଣ ଓ ମହାତ୍ମାମାନେ ଏକତ୍ରିତ ହେବେ । ଅମ୍ଭେମାନେ ସେଠାକୁ ବ୍ରହ୍ମାଙ୍କ ଦର୍ଶନ ଇଚ୍ଛାରେ ଗମନ କରୁଅଛୁଁ । ୭ ।

ବୈଶମ୍ପାୟନ ବୋଇଲେ—ମହର୍ଷିମାନଙ୍କ ସହିତ ଗମନ କରିବାକୁ କାମନା କରି ସ୍ୱର୍ଗର ଅପର ପାରକୁ ପାରହେବା ଇଚ୍ଛାରେ ଶତଶୃଙ୍ଗ ପର୍ବତଠାରୁ ଉତ୍ତର ମୁଖ ହୋଇ ପତ୍ନୀ ଦୁହିଙ୍କ ସହିତ ପ୍ରସ୍ଥାନୋନ୍ମୁଖ ହେଲେ । ତହୁଁ ତାପସମାନେ ତାହାଙ୍କୁ ବୋଇଲେ—ଆମ୍ଭେମାନେ ଉତ୍ତର ମୁଖ ହୋଇ ଶୈଳରାଜ ଉପରେ କ୍ରମଶଃ ଊର୍ଦ୍ଧ୍ୱକୁ ଗତ କରି ଏହି ରମଣୀୟ ଗିରିରେ ବହୁସଂଖ୍ୟକ ରମଣୀୟ ଦେଶମାନଙ୍କୁ ଦର୍ଶନ କରିଅଛୁଁ । ୯ । ଅଥଚ ଶତ ଶତ ବିମାନ-ସଙ୍କୁଳ, ଗୀତ ସ୍ୱର ନିନାଦିତ, ଦେବ, ଗନ୍ଧର୍ବ ଓ ଅପ୍ସରାଗଣଙ୍କର କ୍ରୀଡ଼ାଭୂମି ଦେଖିଅଛୁଁ । କୁବେରଙ୍କର ସମ ଓ ବିଷମ ଉଦ୍ୟାନ ମାନଙ୍କୁ, ମହାନଦୀ ମାନଙ୍କର ନିତମ୍ବ ଭୂମିକୁ ଓ ଦୁର୍ଗମ ଗିରି ଗହ୍ୱରମାନଙ୍କୁ ଅବଲୋକନ କରିଅଛୁଁ ।୧୧। ତନ୍ମଧ୍ୟରେ ନିତ୍ୟ-ହିମାବୃତ ଦେଶମାନେ, ବୃକ୍ଷ, ପଶୁ, ପକ୍ଷୀବିହୀନ ଦେଶମାନେ ଅଛନ୍ତି; କୌଣସି କୌଣସି ସ୍ଥାନ ମହା ବର୍ଷାହେତୁ ଦୁର୍ଗମ ହୁଅଇ; କୌଣସି ସ୍ଥାନ ସ୍ୱଭାବତଃ ଦୁରାସଦ ହୋଇଅଛି । ୧୨ । ଅନ୍ୟ ଜୀବଗଣଙ୍କ କଥା ଦୂରେ ଥାଉ, ପକ୍ଷୀସୁଦ୍ଧା ସେ ଦେଶକୁ ଅତିକ୍ରମ କରିପାରେ ନାହିଁ । ଏକାକୀ ବାୟୁ ସେଠାରେ ଗତି କରଇ; ସିଦ୍ଧମାନେ ଓ ପରମ ଋଷିମାନେ ମଧ୍ୟ ଯାନ୍ତି । ୧୩ । ଏହି ରାଜପୁତ୍ରୀ ଦୁହେଁ କଦାପି ଦୁଃଖ ଅନୁଭବ କରି ନାହାନ୍ତି; ଏହି ଶୈଳରାଜରେ ଗମନ କଲେ ସେମାନେ କିପରି ଅବସନ୍ନ ନ ହେବେ ? ହେ ଭରତର୍ଷଭ । ତୁମ୍ଭେ ଗମନ କରନା । ୧୪ ।

ପାଣ୍ଡୁ ବୋଇଲେ—ହେ ମହାଭାଗମାନେ । କଥିତ ଅଛି ନିଃସନ୍ତାନ ବ୍ୟକ୍ତିଙ୍କର ସ୍ୱର୍ଗାରୋହଣର ଦ୍ୱାର ନାହିଁ; ଅମ୍ଭେ ନିଃସନ୍ତାନ, ଅତଏବ ଅଭିତପ୍ତହୋଇ ଆପଣମାନଙ୍କୁ କହୁଅଛୁଁ । ହେ ତପୋଧନ ବୃନ୍ଦ । ଅମ୍ଭେ ପିତୃଋଣରୁ ମୁକ୍ତ ନ ହେବାରୁ ସନ୍ତପ୍ତ ଅଛୁଁ । ଅମ୍ଭର ଦେହନାଶ ହେଲେ ପିତୃଗଣଙ୍କର ନିଶ୍ଚୟ ନାଶ ହେବ । ୧୬ । ପୃଥିବୀରେ ମାନବ ମାନେ ଚତୁର୍ବିଧ ଋଣରେ ସଂଯୁକ୍ତ ହୋଇ ଜାତ ହୁଅନ୍ତି; ପିତୃଋଣ, ଦେବଋଣ, ଋଷିଋଣ ଓ ମନୁଜଋଣ ଏମାନଙ୍କୁ ଧର୍ମ୍ମପ୍ରମାଣେ ପରି-ଶୋଧ କରିବା କର୍ତ୍ତବ୍ୟ ।୧୭। ଯେଉଁ ମାନବ ଏହିମାନଙ୍କୁ ଯଥା ସମୟରେ ପରିଶୋଧ କରିବାରେ ମନଯୋଗୀ ନ ହୁଅନ୍ତି, ତାହାଙ୍କର ସଦ୍‌ଗତି ହୁଅଇ ନାହିଁ ବୋଲି ଧର୍ମ୍ମ-ବେତ୍ତାମାନେ ସ୍ଥିର କରି ଅଛନ୍ତି । ୧୮ ।

ଯଜ୍ଞ ଦ୍ୱାରା ଦେବତା ମାନଙ୍କୁ ପ୍ରୀତ କରିବାକୁ ହୁଏ, ସ୍ୱାଧ୍ୟାୟ ଓ ତପସ୍ୟାଦ୍ୱାରା ଋଷିଙ୍କୁ ପରିତୃପ୍ତ କରିବାର ହୁଅଇ, ପୁତ୍ର ଜନ୍ମଦ୍ୱାରା ଓ ଶ୍ରାଦ୍ଧ କର୍ମଦ୍ୱାରା ପିତୃଗଣଙ୍କୁ ଓ ଅହିଂସାଦ୍ୱାରା ସମସ୍ତ ମାନବ-ମାନଙ୍କୁ ପରିତୃପ୍ତ କରିବାକୁ ହୁଅଇ । ୧୯ । ଆମ୍ଭେ ଦେବ, ଋଷି ଓ ମନୁଷ୍ୟମାନଙ୍କ ଋଣରୁ ଧର୍ମପ୍ରମାଣେ ମୁକ୍ତ ହୋଇଅଛୁଁ; ଆମ୍ଭର ଶରୀର ନଷ୍ଟହେଲେ ପିତୃଗଣଙ୍କର ମଧ୍ୟ ନାଶ ହେବ । ୨୦ । ହେ ତାପସଚୟ ! ନରଶ୍ରେଷ୍ଠମାନେ ପ୍ରଜା ବୃଦ୍ଧି ନିମିତ୍ତ ସ୍ୱୟଂ ପ୍ରଜା ରୂପରେ ଏହି ପୃଥିବୀରେ ଜନ୍ମନ୍ତି, କିନ୍ତୁ ଆମ୍ଭେ ଏ ପର୍ଯ୍ୟନ୍ତ ପିତୃଋଣରୁ ନିର୍ମୁକ୍ତ ହୋଇନାହୁଁ । ଆମ୍ଭେ ଯେପରି ପିତାଙ୍କ କ୍ଷେତ୍ରରେ ମହର୍ଷିଙ୍କ ଦ୍ୱାରା ଉତ୍ପନ୍ନ ହୋଇଅଛୁଁ; ସେହିପରି ଆମ୍ଭର ଏହି କ୍ଷେତ୍ରରେ କିରୂପେ ସନ୍ତାନଙ୍କର ସମ୍ଭବ ହେବ । ୨୨ ।

ଋଷିମାନେ ବୋଇଲେ—ହେ ଧର୍ମାତ୍ମନ୍ ! ତୁମ୍ଭର ଦେବୋପମ ଉତ୍ତମ ଓ ନିଷ୍ପାପ ସନ୍ତାନ ହେବେ ଆମ୍ଭେ ଦିବ୍ୟ ଚକ୍ଷୁଦ୍ୱାରା ଦେଖୁ-ଅଛୁଁ । ୨୩ । ହେ ନରବ୍ୟାଘ୍ର । ତୁମ୍ଭେ କାର୍ଯ୍ୟ ଦ୍ୱାରା ଦେବତାମାନଙ୍କୁ ସନ୍ତୁଷ୍ଟ କର; ବୁଦ୍ଧିମାନ୍ ବ୍ୟକ୍ତି ଅବ୍ୟଗ୍ର ହେଲେ ଉତ୍କୃଷ୍ଟ ଫଳଲାଭ କରନ୍ତି । ୨୪ । ହେ ରାଜନ୍ ! ତୁମ୍ଭର ଫଳ ଦୃଷ୍ଟ ହେଉଅଛି, ତୁମ୍ଭର ପ୍ରଯତ୍ନ କରିବା ବିଧେୟ; ତୁମ୍ଭେ ଗୁଣ-ସମ୍ପନ୍ନ ଓ ପ୍ରୀତିକର ପୁତ୍ରଲାଭ କରିପାରିବ । ୨୫ ।

ବୈଶମ୍ପାୟନ ବୋଇଲେ—ତପସ୍ୱୀଙ୍କର ବଚନ ଶୁଣି ଓ ମୃଗର ଶାପହେତୁରୁ ଆପଣାର ସନ୍ତାନୋତ୍ପତ୍ତିର ବାଧା ଥିବାର ଭାବି ପାଣ୍ଡୁ ଚିନ୍ତାନ୍ୱିତ ହେଲେ ଓ ବିଜନରେ ଧର୍ମପତ୍ନୀ ଯଶସ୍ୱିନୀ କୁନ୍ତୀଙ୍କୁ ବୋଇଲେ, ଆପଦ୍ଧର୍ମାନୁସାରେ ତୁମ୍ଭେ ଅପତ୍ୟ-ଉତ୍ପାଦନର ଯତ୍ନ କର; ହେ କୁନ୍ତି ! ଧର୍ମବାଦୀମାନଙ୍କର ଚିରକାଳ ଏହି ମତ ଯେ ତ୍ରିଲୋକରେ ଅପତ୍ୟ ଧର୍ମମୟୀ ପ୍ରତିଷ୍ଠିତ ଅଟେ । ଯାଗାନୁଷ୍ଠାନ, ଦାନ ତପସ୍ୟା ଓ ଯତ୍ନରେ ଅନୁଷ୍ଠିତ ବ୍ରତ, ଏ ସମୁଦାୟ ଅପତ୍ୟହୀନ ବ୍ୟକ୍ତିଙ୍କର ଅପବିତ୍ର ହୁଅଇ ୨୯ । ହେ ଶୁଚିସ୍ମିତେ ! ଆମ୍ଭେ ଏହା ବିଦିତ ହୋଇ ଦେଖୁଅଛୁ ଯେ ଆମ୍ଭେ ଅନପତ୍ୟ ହୋଇ ଶୁଭଲୋକମାନଙ୍କୁ ଲାଭ କରିପାରିବୁ ନାହିଁ ।୩୦। ହେ ଭୀରୁ ! ଆମ୍ଭେ ପୂର୍ବେ ଯେପରି ଅବିବେକୀ ଓ ନୃଶଂସ ଥିଲୁଁ, ସେହିପରି ମୃଗର ଅଭିଶାପରୁ ଆମ୍ଭର ପୁତ୍ରୋତ୍ପାଦନ ସାମର୍ଥ୍ୟ ରହିତ

ହେଲ । ୩୧ । ଧର୍ମ୍ମଶାସ୍ତ୍ରରେ କଥିତ ଅଛି ଛଅପ୍ରକାର ପୁତ୍ର ବନ୍ଧୁ ଧନରେ ଅଧିକାରୀ ହୁଅନ୍ତି ଓ ଛଅ ପ୍ରକାର ତହିଁରେ ଅଧିକାରୀ ହୁଅନ୍ତି ନାହିଁ । ହେ ପୃଥେ । ଆମ୍ଭେ ଏହି ଦ୍ୱାଦଶ ପ୍ରକାର ପୁତ୍ରର ବିବରଣ କହୁଅଛୁଁ, ଶ୍ରବଣ କର । ୩୨ ।

( ପ୍ରଥମ ) ଔରସ ଅର୍ଥାତ୍ ପରିଣୀତା ଭାର୍ଯ୍ୟାଠାରେ ଯେ ଜାତ ହୁଅଇ, ( ଦ୍ୱିତୀୟ ) ପ୍ରଣୀତ ଅର୍ଥାତ୍ ଉତ୍ତମ ବ୍ୟକ୍ତିଙ୍କ ଅନୁଗ୍ରହରୁ ନିଜ କ୍ଷେତ୍ରରେ ଜନ୍ମ ହୁଅଇ; ( ତୃତୀୟ ) ପରିକ୍ରୀତ ଅର୍ଥାତ୍ କ୍ରୀତ ଶୁକ୍ର ଦ୍ୱାରା ସ୍ୱୀୟ କ୍ଷେତ୍ରରେ ଯେଉଁ ସୁତ ଉତ୍ପନ୍ନ ହୁଅଇ, ( ଚତୁର୍ଥ ) ପୌନର୍ଭବ— ଅର୍ଥାତ୍ ବିଧବା ଗର୍ଭରେ ଅନ୍ୟ କର୍ତ୍ତୃକ ଯେଉଁ ସୁତ ଉତ୍ପାଦିତ ହୁଅଇ, ( ପଞ୍ଚମ ) କାନୀନ ଅର୍ଥାତ୍ ଯେ କନ୍ୟା କାଳରେ ଉତ୍ପନ୍ନ ହୁଅଇ ( ଷଷ୍ଠ ) ସ୍ୱୈରିଣୀ ଗର୍ଭ ସମ୍ଭୂତ, ଅର୍ଥାତ୍ ଏହାକୁ ଗୂଢ଼ ଅବା କୁଣ୍ଡ ବୋଲି କହି ( ସପ୍ତମ ) ଦତ୍ତ ଅର୍ଥାତ୍ ପୂର୍ବ ପିତା ମାତାଙ୍କ କର୍ତ୍ତୃକ ସମର୍ପିତ, ( ଅଷ୍ଟମ ) କ୍ରୀତ ଅର୍ଥାତ୍ ଧନଦାନ ଦ୍ୱାରା ଯାହାକୁ ଯାହାକୁ କ୍ରୟ କରାହୋଇଥାଏ, ( ନବମ ) ଉପକ୍ରୀତ ଅର୍ଥାତ୍ କୃତ୍ରିମ ( ଦଶମ ) ସ୍ୱୟଂ ଉପାଗତ-ଅର୍ଥାତ୍ ଯେ ସ୍ୱୟଂ ଆସି ପୁତ୍ର ବୋଲି କହି ପୁତ୍ରତ୍ୱ ସ୍ୱୀକାର କରଇ, ( ଏକାଦଶ ) ଜ୍ଞାତରେତା ସହୋଢ ଅର୍ଥାତ୍ ଭ୍ରାତାଦି କର୍ତ୍ତୃକ ଯେଉଁ ସ୍ତ୍ରୀ ଗର୍ଭିଣୀ ହୋଇଥାଏ, ତାହାକୁ ବିବାହ କଲେ ତାହାଠାରୁ ଯେଉଁ ପୁତ୍ର ଉତ୍ପନ୍ନ ହୁଏ । ( ଦ୍ୱାଦଶ ) ହୀନ ଯୋନି-ଧୃତ ଅର୍ଥାତ୍ ହୀନ ଜାତ ସ୍ତ୍ରୀ ଠାରେ ଯେଉଁ ପୁତ୍ର ଜାତ ହୁଏ । ୩୪ । ଏହି ଦ୍ୱାଦଶ ପ୍ରକାର ପୁତ୍ର ମଧ୍ୟରେ ପୂର୍ବ ପୂର୍ବ ପୁତ୍ରାଭାବରେ ମାତା ପରପର ସୁତ ଲାଭ ନିମିତ୍ତ ଇଚ୍ଛା କରିବ, ମନୁଷ୍ୟମାନେ ଆପତ୍‌କାଳରେ ଉତ୍ତମ କନିଷ୍ଠ ସୋଦର ଠାରୁ ପୁତ୍ର କାମନା କରନ୍ତି । ୩୫ ।

ସ୍ୱାୟମ୍ଭୁବ ମନୁ କହିଅଛନ୍ତି । ମନୁଷ୍ୟମାନେ ଆପଣା ଶୁକ୍ର ଭିନ୍ନଠାରୁ ଅନ୍ୟଠାରୁ ଧର୍ମ୍ମ ଫଳ-ପ୍ରଦ ଶ୍ରେଷ୍ଠ ଅପତ୍ୟକୁ ପ୍ରାପ୍ତ ହୋଇପାରନ୍ତି । ୩୬ । ଅତଏବ ହେ ପୃଥେ । ଯଶସ୍ୱିନୀ ଆମ୍ଭେ ସ୍ୱୟଂ ଜନନ ସାମର୍ଥ୍ୟ ହୀନ ହେବାରୁ ଅଦ୍ୟତୁମ୍ଭଙ୍କୁ ନିଯୁକ୍ତ କରୁଅଛୁଁ, ତୁମ୍ଭେ ସଦୃଶ ଅଥବା ଶ୍ରେଷ୍ଠ ବ୍ୟକ୍ତିଠାରୁ ଅପତ୍ୟ ଉତ୍ପନ୍ନ କର । ୩୭ ।

ହେ କୁନ୍ତି । ଶୁଣ, ଶରଦଣ୍ଡାୟନଙ୍କ କନ୍ୟା-କଥା କହୁଅଛୁଁ ; ଯେଉଁ ବୀର ପତ୍ନୀ ( ଶାରଦଣ୍ଡାୟନୀ ) ସ୍ୱାମୀଙ୍କ ଦ୍ୱାରା ପୁତ୍ରୋତ୍ପାଦନରେ ନିଯୁକ୍ତ

ହୋଇଥିଲେ । ୩୮ । ସେ ଋତୁସ୍ନାତା ହୋଇ ଚତୁଷ୍ପଥ ମଧ୍ୟରେ ନିଶା କାଳରେ ଜଣେ ସିଦ୍ଧ ଦ୍ୱିଜଙ୍କୁ ବରଣ କରି ଅଗ୍ନି ପୁଂସ ବନ ଯଜ୍ଞରେ ଅନଳରେ ଅହୁତି ପ୍ରଦାନ କଲେ ଓ କର୍ମ୍ମସମାପ୍ତ ହୁଅନ୍ତେ ତାହାଙ୍କ ସହିତ ବାସ କଲେ । ତହିଁରେ ଦୁର୍ଜ୍ଜୟ ପ୍ରଭୃତି ତିନିଗୋଟି ମହାରଥ ପୁତ୍ରଙ୍କୁ ଜନ୍ମ କଲେ । ୪୦ । ଭଦ୍ରେ ହେ କଲ୍ୟାଣି । ତୁମ୍ଭେ ମଧ୍ୟ ଆମ୍ଭର ନିଯୋଗାନୁସାରେ ତପସ୍ୟାରେ ଆମ୍ଭଠାରୁ ଶ୍ରେଷ୍ଠ କୌଣସି ବ୍ରାହ୍ମଣଠାରୁ ଅପତ୍ୟ ଉତ୍ପାଦନ କ୍ଷେତ୍ରରେ ଶୀଘ୍ର ଯତ୍ନ କର । ୪୧ ।

---

## ଅଧ୍ୟାୟ ୧୨୧

ବୈଶମ୍ପାୟନ ବୋଇଲେ—ହେ ମହାରାଜ । କୁନ୍ତୀ ଏହିରୂପେ ଆଦିଷ୍ଟା ହୋଇ କୁରୁବଂଶ ଶ୍ରେଷ୍ଠ, ବୀର, ଭୂମିପତି, ପତି, ପାଣ୍ଡୁଙ୍କୁ ବୋଇଲେ —ହେ ଧର୍ମ୍ମଜ୍ଞ । ରାଜୀବଲୋଚନ ଆମ୍ଭେ ତୁମ୍ଭଠାରେ ଅନୁରକ୍ତା, ଆମ୍ଭଙ୍କୁ ଏପରି କହିବା ତୁମ୍ଭର ଉଚିତ ନୁହଇ । ୨ । ହେ ବୀର । ମହାବାହୋ । ଭାରତ । ଧର୍ମ୍ମାନୁସାରେ ତୁମ୍ଭେ ସ୍ୱୟଂ ବୀର ବୀର୍ଯ୍ୟୋତ୍ପନ୍ନ ଅପତ୍ୟମାନଙ୍କୁ ଆମ୍ଭଠାରେ ଜନ୍ମ କରିବ; ହେ ମନୁଜ ଶାର୍ଦ୍ଦୂଳ । ତାହା ହେଲେ ତୁମ୍ଭ ସହିତ ଆମ୍ଭେ ସ୍ୱର୍ଗକୁ ଗମନ କରିପାରିବୁ । ହେ କୁରୁନନ୍ଦନ । ଅପତ୍ୟ ନିମିତ୍ତ ତୁମ୍ଭେ ଆମ୍ଭଠାରେ ଗମନ କର । ତୁମ୍ଭ ବ୍ୟତିରେକେ ଆମ୍ଭେ ଅନ୍ୟବ୍ୟକ୍ତିଠାକୁ ମନୋଦ୍ୱାରା ସୁଦ୍ଧା ଗମନ କରିବାକୁ ଇଚ୍ଛା କରୁନାହୁଁ; ତୁମ୍ଭଠାରୁ ବିଶିଷ୍ଟ ହୋଇ କେଉଁ ମାନବ ଏହି ପୃଥିବୀରେ ଅଛି ? । ୫ । ହେ ଧର୍ମାତ୍ମନ । ଏହି ପୁରାଣର କଥା ଶ୍ରବଣ କର, ହେ ବିଶାଳାକ୍ଷ । ଆମ୍ଭେ ସେ କଥା ଶୁଣିଥିଲୁଁ, ତୁମ୍ଭଠାରେ କୀର୍ତ୍ତନ କରିବୁଁ । ୬ ।

ପୂର୍ବକାଳରେ ବ୍ୟୁଷିତାଶ୍ୱ ନାମରେ ବିଖ୍ୟାତ ପାର୍ଥିବ ଥିଲେ, ପୁରୁ ବଂଶରେ ତାହାଙ୍କର ଜନ୍ମ ଥିଲା ଓ ସେ ପରମ ଧର୍ମ୍ମିଷ୍ଠ ଥିଲେ । ସେ ଧର୍ମାତ୍ମା ମହାଭୁଜ ଯଜ୍ଞରେ ପ୍ରବୃତ୍ତ ହୁଅନ୍ତେ ଇନ୍ଦ୍ରଙ୍କ ସହ ଦେବତାମାନେ ଓ ବ୍ରହ୍ମର୍ଷିମାନେ ମଧ୍ୟ ସେଠାରେ ଉପସ୍ଥିତ ହେଲେ । ୮ । ତହିଁରେ ମହାତ୍ମା ରାଜର୍ଷି ବ୍ୟୁଷିତାଶ୍ୱଙ୍କ ଯଜ୍ଞରେ ଇନ୍ଦ୍ର ସୋମରସ ପାନ

କର ଓ ଦ୍ୱିଜାତିମାନେ ଦକ୍ଷିଣା ଲାଭ କରି ମତ୍ତ ହେଲେ । ସେ କାଳରେ ଦେବତାମାନେ ଓ ବ୍ରହ୍ମର୍ଷିମାନେ ସ୍ୱୟଂ ଯଜ୍ଞ କର୍ମ କଲେ । ୯ ।

ତପନ ଯେପରି ଶିଶିର କାଳ ଅନ୍ତ ହୁଅନ୍ତେ ଦୀପ୍ତିମାନ୍ ହୁଅନ୍ତି ତଦ୍‌ବତ୍ ରାଜା ବ୍ୟୁଷିତାଶ୍ୱ ସର୍ବଭୂତଙ୍କ ଅପେକ୍ଷା ଓ ମନୁଷ୍ୟମାନଙ୍କ ଅପେକ୍ଷା ଅଧିକ ଶୋଭା ଧାରଣ କଲେ । ୧୦ । ସେ ରାଜସତ୍ତମ ପ୍ରାଚୀ ଓ ଉଦୀଚୀ ଦେଶୀୟ ଅପର ପାଶ୍ଚାତ୍ୟ ସମସ୍ତ ନୃପତିମାନଙ୍କୁ ବିଜୟ ଓ ବଶୀଭୂତ କଲେ । ୧୧ । ଦଶ ହସ୍ତୀସମ ବଳଶାଳୀ ରାଜେନ୍ଦ୍ର ବ୍ୟୁଷିତାଶ୍ୱ, ଅଶ୍ୱମେଧ ମହାଯଜ୍ଞକୁ ନିର୍ବିଘ୍ନରେ ସମାପନ କରି ଅତି ପ୍ରତାପଶାଳୀ ହେଲେ । ୧୨ ।

ହେ କୁରୁତ୍ତମ ! ମନୁଷ୍ୟେନ୍ଦ୍ର ଯଶୋବୃଦ୍ଧି ବ୍ୟୁଷିତାଶ୍ୱ ଅବନୀପତି ହେବାରୁ ପୁରାଣବିତ୍ ଜନମାନେ ଏହି ଗାଥା କୀର୍ତ୍ତନ କଲେ ଯେ ବ୍ୟୁଷିତାଶ୍ୱ ସମୁଦ୍ର ପର୍ଯ୍ୟନ୍ତ ଏହି ବସୁନ୍ଧରାକୁ ବିଜୟ କରି ପିତା ଯେପରି ଔରସ ପୁତ୍ରଙ୍କୁ ପ୍ରତିପାଳନ କରନ୍ତି ତଦ୍‌ବତ ସେ ସର୍ବଜନମାନଙ୍କୁ ପ୍ରତିପାଳନ କଲେ । ସେ ଅଶେଷ ରତ୍ନମାନଙ୍କୁ ସଂଗ୍ରହ କରି ବୃହତ୍ କ୍ରତୁମାନଙ୍କ ସମ୍ପାଦନ କଲେ; ବ୍ରାହ୍ମଣମାନଙ୍କୁ ଅନେକ ଅର୍ଥ ଦାନ କଲେ; ସୋମସଂସ୍ଥା ନାମକ ମହାଯଜ୍ଞ ବିସ୍ତାର କଲେ ଓ ତଦୁପଲକ୍ଷରେ ଅସଂଖ୍ୟ ସୋମଲତା ନିଷ୍ପୀଡ଼ନ କଲେ । ୧୫ ।

କକ୍ଷୀମାନଙ୍କର ଦୁହିତା ଭଦ୍ରା ତାହାଙ୍କର ପ୍ରେୟସୀ ଭାର୍ଯ୍ୟା ଥିଲେ, ହେ ମନୁଷ୍ୟେନ୍ଦ୍ର । ପୃଥିବୀରେ ତାହାଙ୍କ ସଦୃଶୀ ରୂପବତୀ କେହି ନ ଥିଲେ । ୧୬ । ଏପରି ଶୁଣାଅଛି ଯେ ସେ ନରନାରୀ ଦୁହେଁ ପରସ୍ପର କାମାନ୍ୱିତ ହୋଇଥିଲେ । ସେହି ସ୍ତ୍ରୀଙ୍କଠାରେ ଅତିଶୟ କାମାସକ୍ତ ହୋଇ ବ୍ୟୁଷିତାଶ୍ୱ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲେ । ୧୭ । ସେହି ରୋଗରେ ସେ ଅଚିର କାଳ ମଧ୍ୟରେ ସୂର୍ଯ୍ୟ ଅସ୍ତ ହେଲା ପ୍ରାୟ ନିଧନ ପ୍ରାପ୍ତ ହେଲେ । ସେହି ମନୁଷ୍ୟେନ୍ଦ୍ରଙ୍କର ମୃତ୍ୟୁ ହୁଅନ୍ତେ ତାହାଙ୍କ ଭାର୍ଯ୍ୟା ଅତିଶୟ ଦୁଃଖିତା ହେଲେ । ୧୮ । ହେ ପୁରୁଷବ୍ୟାଘ୍ର । ସେ ଅପୁତ୍ରା ଥିଲେ ଓ ଅନେକ ବିଳାପ କଲେ ବୋଲି ଶୁଣା ଅଛି, ହେ ଜନାଧିପ ! ଭଦ୍ରା ପରମ ଦୁଃଖାର୍ତ୍ତା ହୋଇ ବୋଇଲେ—

"ହେ ପରମ ଧର୍ମଜ୍ଞ ! ସବୁନାରୀ ସ୍ୱାମୀଙ୍କ ବିନା ନିଷ୍ଫଳା ହୁଅନ୍ତି; ଯେ ପତିଙ୍କ ବ୍ୟତିରେକେ ଜୀବିତା ଥାଏ, ସେ ନୋହିଲା ପ୍ରାୟ, ତାହାର ଜୀବନ ଦୁଃଖରେ ଅତିବାହିତ ହୁଅଇ । ହେ କ୍ଷତ୍ରିୟ ଶ୍ରେଷ୍ଠ ! ପତି ବ୍ୟତିରେକେ ନାରୀଙ୍କର ମୃତ୍ୟୁ ଶ୍ରେୟସ୍କର । ତୁମ୍ଭ ସହିତ ଗମନ କରିବାକୁ ଇଚ୍ଛା କରୁଅଛୁଁ, ଅମ୍ଭଠାରେ ପ୍ରସନ୍ନ ହୁଅ, ଅମ୍ଭଙ୍କୁ ସଙ୍ଗରେ ନିଅ; ତୁମ୍ଭ ବ୍ୟତିରେକେ କ୍ଷଣକାଳ ସୁଦ୍ଧା ଜୀବିତ ରହିବାକୁ ଅମ୍ଭେ ଇଚ୍ଛା କରୁନାହୁଁ, ହେ ରାଜନ୍ । ତୁମ୍ଭେ ଅମ୍ଭ ପ୍ରତି ପ୍ରସାଦ କର, ଏଠାରୁ ଅମ୍ଭଙ୍କୁ ଶୀଘ୍ର ନେଇ ଯାଅ; ହେ ନର-ଶାର୍ଦ୍ଦୂଳ । କି ସମ କି ବିସମ-ସର୍ବତ୍ର ଅମ୍ଭେ ତୁମ୍ଭର ଅନୁଗାମିନୀ ହେବୁଁ । ହେ ନର-ଶାର୍ଦ୍ଦୂଳ । ତୁମ୍ଭେ ଗଲ, ଆଜି ପ୍ରତି ନିବୃତ୍ତ ହେବ ନାହିଁ, ହେ ରାଜନ୍ ! ତୁମ୍ଭର ଛାୟା ପ୍ରାୟ ଅମ୍ଭେ ଅନୁଗାମିନୀ, ହେ ନରବ୍ୟାଘ୍ର ! ଅମ୍ଭେ ସତତ ତୁମ୍ଭର ବଶବର୍ତ୍ତିନୀ ହେବୁଁ ଓ ନିତ୍ୟ ତୁମ୍ଭର ପ୍ରିୟକାର୍ଯ୍ୟ ଓ ହିତାଚରଣ କରିବୁଁ । ହେ ରାଜନ୍ । ପୁଷ୍କରନେତ୍ର ! ଅଦ୍ୟ ପ୍ରଭୃତି ତୁମ୍ଭ ବ୍ୟତିରେକେ ଅମ୍ଭଙ୍କୁ ଅତି କଷ୍ଟପ୍ରଦ, ହୃଦୟ ଶୋଷଣକାରୀ ମନୋବେଦନା ଅଭିଭୂତ କରିବ । ୨୫ ।

ଅମ୍ଭେ ଅଭାଗିନୀ ସହଚରୀ ପ୍ରାଣୀଙ୍କୁ ବିଯୁକ୍ତ କରିଥିଲୁଁ; ସେହି ପାପରୁ ତୁମ୍ଭ ସହିତ ଏହି ବିପ୍ରୟୋଗ ଉପସ୍ଥିତ ହେଲା । ୨୬ । ହେ ପାର୍ଥିବ ! ଯେଉଁ ନାରୀ ପତି ବିନା ମୁହୂର୍ତ୍ତେ ଜୀବିତ ରହେ ସେ ପାପିନୀ ଦୁଃଖରେ ନରକାବସ୍ଥା ହେଲା ପ୍ରାୟ ଜୀବିତ ରହଇ । ୨୭ । ପୂର୍ବ ଜନ୍ମରେ ଅମ୍ଭେ ସଂଯୁକ୍ତା ପ୍ରାଣୀଙ୍କୁ ବିଯୁକ୍ତ କରିଥିଲୁଁ; ପୂର୍ବ ଦେହରେ ଅମ୍ଭେ ଏହି ପାପ ସଞ୍ଚୟ କରିଥିଲୁଁ । ୨୮ । ହେ ରାଜନ୍ ! ସେହି ହେତୁରୁ ଅମ୍ଭଙ୍କୁ ତୁମ୍ଭ ସହିତ ବିପ୍ରଯୋଗ ଉପସ୍ଥିତ ହେଲା । ହେ ରାଜନ୍ । ଅଜଠାରୁ ଅମ୍ଭେ କୁଶଶଯ୍ୟାରେ ଶୟନ କରିବୁଁ, ତୁମ୍ଭ ଦର୍ଶନ ନ ପାଇ ଦୁଃଖରେ ଅବସ୍ଥା ହେବୁଁ । ହେ ନରବ୍ୟାଘ୍ର ! ଦର୍ଶନ ଦିଅ; ଅମ୍ଭେ ଅସୁଖା-ନ୍ୱିତ ହୋଇଅଛୁଁ, ଅମ୍ଭଙ୍କୁ ଶାସନ କର; ହେ ନାଥ ! ଅମ୍ଭେ ଅତି ଦୀନା; ହେ ନରେଶ୍ୱର ! ଅମ୍ଭେ କରୁଣ ସ୍ୱରରେ ବିଳାପ କରୁଅଛୁଁ" । ୩୦ ।

କୁନ୍ତୀ ବୋଇଲେ ସେ ବହୁବିଧ ପୁନଃ ପୁନଃ ବିଳାପ କରି ସେ ଶବକୁ ଆଲିଙ୍ଗନ ପୂର୍ବକ ବିଳାପ କରନ୍ତେ ଆକାଶବାଣୀ ହେଲା । ୩୧ । ହେ ଭଦ୍ରେ ! ଉଠ, ଅମ୍ଭେ ତୁମ୍ଭଙ୍କୁ ଏହି ବର ଦେଉଅଛୁଁ, ତୁମ୍ଭେ ଯାଅ;

ହେ ଗୃହବାସିନୀ ! ତୁମ୍ଭଠାରେ ଆମ୍ଭେ ଅପତ୍ୟମାନଙ୍କୁ ଜନ୍ମ କରିବୁ । ହେ ବରାରୋହେ ! ଅଷ୍ଟମୀ ବା ଚତୁର୍ଦ୍ଦଶୀରେ ତୁମ୍ଭେ ଋତୁସ୍ନାତା ହୋଇ ଆମ୍ଭ ସହିତ ସଙ୍ଗମ ଶଯ୍ୟାରେ ଶୟନ କରିବ ।

ଏହିରୂପେ ଆକାଶବାଣୀ ହେବାରୁ ପୁତ୍ରାର୍ଥିନୀ ଓ ପତିବ୍ରତା ଭଦ୍ରାଦେବୀ ସେହି ବାକ୍ୟ ଅନୁକ୍ରମେ କାର୍ଯ୍ୟ ସମ୍ପାଦନ କଲେ । ୩୪ । ହେ ଭରତ ସତ୍ତମ ! ପୁତ୍ରାର୍ଥିନୀ ଭଦ୍ରାଦେବୀ ଶବଙ୍କ ଦ୍ୱାରା ତିନିଗୋଟି ସାଲ୍ଵ ଓ ଚାରିଗୋଟି ମଦ୍ର, ଏହିପରି ସମୁଦାୟରେ ସପ୍ତଗୋଟି ସନ୍ତାନ ପ୍ରସବ କଲେ । ୩୫ । ତଦ୍‌ବତ୍ ହେ ଭରତର୍ଷଭ ! ତୁମ୍ଭେ ମଧ୍ୟ ତପସ୍ୟା ଓ ଯୋଗ ବଳରେ ମନୋଦ୍ୱାରା ଆମ୍ଭଠାରେ ପୁତ୍ର ଜନ୍ମ କରି ପାରିବ । ୩୬ ।

---

## ଅଧ୍ୟାୟ ୧୨୨

ବୈଶମ୍ପାୟନ ବୋଇଲେ—କୁନ୍ତୀ ଦେବୀଙ୍କର ଉକ୍ତି ଶୁଣି ତାହାଙ୍କୁ ଧର୍ମ୍ମବିତ୍ ରାଜା ପୁନର୍ବାର ଧର୍ମ୍ମ ସଂଯୁକ୍ତ ଉତ୍ତର ପ୍ରଦାନ କଲେ । ୧ ।

ପାଣ୍ଡୁ ବୋଇଲେ—ହେ କୁନ୍ତୀ ! ପୂର୍ବକାଳରେ ବ୍ୟୁଷିତାଶ୍ୱ ଯାହା କରିଥିବାର କହିଲ, ତାହା ପ୍ରକୃତ ଅଟେ; କିନ୍ତୁ ହେ କଲ୍ୟାଣି ! ସେ ଅମର ସଦୃଶ ତେଜସ୍ୱୀ ଥିଲେ । ପରନ୍ତୁ ଧର୍ମ୍ମଜ୍ଞ ଓ ମହାତ୍ମା ମହର୍ଷିମାନେ ଯେଉଁ ଶରନ୍ତନ ଧର୍ମତତ୍ତ୍ୱକୁ ନିର୍ଣ୍ଣୟ କରିଅଛନ୍ତି ତାହା ତୁମ୍ଭଙ୍କୁ କହୁଅଛୁଁ, ବୋଧ କର । ୩ । ହେ ବରାନନେ ! ଗୃହବାସିନି ! ପୂର୍ବକାଳରେ ସ୍ତ୍ରୀମାନେ ଅନାବୃତା ହୋଇ ସ୍ୱତନ୍ତ୍ର ଭାବରେ ଯଥେଚ୍ଛା ବିହରଣ କରୁଥିଲେ । ହେ ସୁଭଗେ ! ସେମାନେ କୌମାର ଅବସ୍ଥାରୁ ଅନେକ ପତିଙ୍କୁ ଆଶ୍ରୟ କରୁଥିଲେ; ହେ ବରାରୋହେ ! ତହିଁରେ ସେମାନଙ୍କର ପୂର୍ବକାଳରେ ଅଧର୍ମ୍ମ ହେଉ ନ ଥିଲା । ୫ । ତିର୍ଯ୍ୟକ ଯୋନିଗତ ପ୍ରଜାମାନେ ଅଦ୍ୟାବଧି କାମ-ଦ୍ୱେଷ-ବିବର୍ଜ୍ଜିତ ହୋଇ ସେହି ପୁରାତନ ଧର୍ମକୁ ଅନୁସରଣ କରୁଅଛନ୍ତି । ୬ । ପ୍ରମାଣ ସିଦ୍ଧ ଏହି ଧର୍ମ୍ମକୁ ମହର୍ଷିମାନେ ସୁଦ୍ଧା ମାନ୍ୟ କରନ୍ତି, ଉତ୍ତର କୁରୁ ଦେଶରେ ହେ ରମ୍ଭୋରୁ ! ସେ ଧର୍ମ୍ମ ଅଦ୍ୟାପି ପ୍ରଚଳିତ ହେଉଅଛି । ସେହି ସନାତନ ଧର୍ମ ସ୍ତ୍ରୀ ମାନଙ୍କ ପକ୍ଷରେ ଅନୁଗ୍ରହ-କର ଅଟଇ । ୭ । ହେ ଶୁଚି ସ୍ମିତେ ! ଏହି ଲୋକରେ ବର୍ତ୍ତମାନ ମର୍ଯ୍ୟାଦା

ବହୁକାଳରୁ ପ୍ରଚଳିତ ହୋଇନାହିଁ । ଏହାକୁ ଯେଉଁ ବ୍ୟକ୍ତି ଯେଉଁ କାରଣରୁ ସ୍ଥାପନ କରିଅଛନ୍ତି, ତାହା ଆମ୍ଭଠାରୁ ବିସ୍ତାରପୂର୍ବକ ଶ୍ରବଣ କର । ୮ ।

ଆମ୍ଭେ ଶୁଣିଅଛୁଁ ଯେ ଉଦ୍ଦାଳକ ନାମରେ ଗୋଟିଏ ମହର୍ଷି ଥିଲେ । ତାହାଙ୍କର ଶ୍ୱେତକେତୁ ନାମରେ ଏକ ବିଖ୍ୟାତ ପୁତ୍ର ଥିଲେ । ହେ କମଳ ପତ୍ରାକ୍ଷି । ସେହି ଶ୍ୱେତକେତୁ କୋପ କରି ଏହି ମର୍ଯ୍ୟାଦାକୁ ଧର୍ମାନୁମୋଦିତ କଲେ; ତାହାର କାରଣ ଆମ୍ଭଠାରୁ ଶୁଣ । ୧୦ । ଏକଦା ଗୋଟିଏ ବ୍ରାହ୍ମଣ ଶ୍ୱେତକେତୁଙ୍କ ପିତାଙ୍କ ସମକ୍ଷରେ ତାହାଙ୍କ ଜନନୀଙ୍କର ହସ୍ତ ଧାରଣ କରି କହିଲେ, "ଆସ ଆମ୍ଭେ ଦୁହେଁ ଯିବା" । ୧୧ । ଅନନ୍ତର ଋଷିପୁତ୍ର ଶ୍ୱେତକେତୁ, ମାତାଙ୍କୁ ତଦ୍ରୂପ ବଳପୂର୍ବକ ନୀତ ହେବାର ଦେଖି ଅମର୍ଷାନ୍ୱିତ ହୋଇ କ୍ରୋଧ ପ୍ରକାଶ କଲେ । ୧୨ । ଶ୍ୱେତକେତୁଙ୍କୁ କ୍ରୁଦ୍ଧ ହେବାର ଦେଖି ତାହାଙ୍କର ପିତା ବୋଇଲେ, ହେ ତାତ ! ତୁମ୍ଭେ କୋପ କରନା, ଏ ସନାତନ ଧର୍ମ ଅଟେ । ୧୩ । ସବୁ ବର୍ଣ୍ଣମାନଙ୍କର ଅଙ୍ଗନାମାନେ ପୃଥିବୀରେ ଅନାବୃତା ଅଛନ୍ତି; ହେ ତାତ ! ଯେପରି ଗୌମାନେ ବ୍ୟବହାର କରନ୍ତି ସେହିପରି ନିଜ ନିଜ ବର୍ଣ୍ଣରେ ପ୍ରଜାମାନେ ଆଚରଣ କରନ୍ତି । ୧୪ । ଋଷିପୁତ୍ର ଶ୍ୱେତକେତୁ ସେ ଧର୍ମକୁ ସହ୍ୟ କରି ନ ପାରି ପୃଥିବୀରେ ସ୍ତ୍ରୀ ପୁରୁଷମାନଙ୍କର ଏହି ମର୍ଯ୍ୟାଦା ସ୍ଥାପନ କଲେ । ୧୫ । ହେ ମହାଭାଗ । ତଦବଧି କେବଳ ମନୁଷ୍ୟଙ୍କ ମଧ୍ୟରେ ସେହି ମର୍ଯ୍ୟାଦା ପ୍ରଚଳିତ ହେଲା; ଅନ୍ୟ ମାନଙ୍କର ପୂର୍ବ ପ୍ରକାର ନିୟମ ରହିଲା ଏହା ଆମ୍ଭମାନେ ଶ୍ରୁତ ହୋଇଅଛୁଁ । ଶ୍ୱେତକେତୁ ଏହି ନିୟମ କଲେ ଯେ ଅଦ୍ୟ ପ୍ରଭୃତି ଯେଉଁ ନାରୀ ଭର୍ତ୍ତାଙ୍କୁ ଅତିକ୍ରମ କରି ପର ପୁରୁଷ ସମ୍ଭୋଗ କରିବେ, ତାହାଙ୍କର ଘୋର ଦୁଃଖଦାୟକ ଭ୍ରୂଣ ହତ୍ୟା ସଦୃଶ ପାତକ ହେବ । ୧୭ । ତଦ୍ରୂପ ଏହି ଭୂମଣ୍ଡଳରେ ଯେଉଁ ପୁରୁଷ କୌମାର ବ୍ରହ୍ମଚାରିଣୀ, ପତିବ୍ରତା ପ୍ରିୟଙ୍କରୀ ଭାର୍ଯ୍ୟାକୁ ଅତିକ୍ରମ କରି ପରନାରୀ ସମ୍ଭୋଗ କରିବ, ତାହାର ମଧ୍ୟ ତଦ୍ରୂପ ପାତକ ହେବ । ୧୮ । ଅଥଚ ପତିଙ୍କ ଦ୍ୱାରା ପୁତ୍ରାର୍ଥ ନିଯୁକ୍ତ ହୋଇ ଯେଉଁ ପତ୍ନୀ ତାହା ନ କରିବେ ତାହାଙ୍କର ମଧ୍ୟ ତଦ୍ରୂପ ପାପ ହେବ । ୧୯ । ହେ ଭୀରୁ ! ପୂର୍ବକାଳରେ ଉଦ୍ଦାଳକଙ୍କ ପୁତ୍ର ଶ୍ୱେତକେତୁ ଏହିପରି ମର୍ଯ୍ୟାଦାକୁ ବଳପୂର୍ବକ ସ୍ଥାପନ କଲେ । ୨୦ ।

ହେ ରମ୍ଭୋରୁ ! ଅମ୍ଭେମାନେ ଶୁଣିଅଛୁଁ ସୌଦାସ ବନିତା 'ମଦୟନ୍ତୀ' ସ୍ୱାମୀଙ୍କ କର୍ତ୍ତୃକ ପୁତ୍ର ଜନନରେ ନିଯୁକ୍ତା ହୋଇ ମହର୍ଷି ବଶିଷ୍ଠଙ୍କ ନିକଟକୁ ଗମନ କଲେ ଓ ତାହାଙ୍କଠାରୁ 'ଅଶ୍ମକ' ନାମକ ପୁତ୍ର ଲାଭ କଲେ । ସେହି ଭାବିନୀ, ଭର୍ତ୍ତାଙ୍କର ପ୍ରିୟାନୁଷ୍ଠାନ ନିମିତ୍ତ ତଦ୍ରୂପ ଆଚରଣ କଲେ । ୨୨ । ହେ କମଲେକ୍ଷଣେ ! କୁରୁବଂଶର ବୃଦ୍ଧି ନିମିତ୍ତ କୃଷ୍ଣଦ୍ୱୈପାୟନଙ୍କ ଠାରୁ ଆମ୍ଭମାନଙ୍କର ଯେ ଜନ୍ମ ହୋଇଅଛି ତାହା ତୁମ୍ଭଙ୍କୁ ବିଦିତ ଅଛି । ୨୩ । ଅତଏବ ହେ ଅନିନ୍ଦିତେ ! ଏହିସବୁ କାରଣ ବିବେଚନା କରି ଆମ୍ଭର ଏ ଧର୍ମ୍ମାନୁମୋଦିତ ବଚନ କରିବା ତୁମ୍ଭର ବିଧେୟ ଅଟେ । ୨୪ । ହେ ପତିବ୍ରତେ ! ରାଜନନ୍ଦିନୀ ! ଧର୍ମ୍ମଜ୍ଞ ମାନେ ଏହି ପୁରାତନ ଧର୍ମ୍ମବ୍ୟାଖ୍ୟା କରନ୍ତି ଯେ ଭାର୍ଯ୍ୟା ପ୍ରତ୍ୟେକ ଋତୁରେ ଭର୍ତ୍ତାଙ୍କୁ ଅତିକ୍ରମ କରିବେ ନାହିଁ; କିନ୍ତୁ ଅବଶିଷ୍ଟ ସମୟରେ ସ୍ତ୍ରୀମାନେ ସ୍ୱାଧୀନତା ଅବଲମ୍ବନ କରି ପାରନ୍ତି । ଆହୁରି ହେ ରାଜପୁତ୍ରି ! ବେଦବେତ୍ତାମାନେ ବୋଲନ୍ତି ଯେ ଭର୍ତ୍ତା ଭାର୍ଯ୍ୟାଙ୍କୁ ଯାହା କରିବାକୁ କହିବେ, ଧର୍ମ୍ମ୍ୟ ହେଉ ଅଥବା ଅଧର୍ମ୍ମ୍ୟ ହେଉ, ଭାର୍ଯ୍ୟାଙ୍କର ତାହା କରିବା ଉଚିତ । ୨୬ । ହେ ଅନବଦ୍ୟାଙ୍ଗୀ ! ବିଶେଷତଃ ଅମ୍ଭେ ପୁତ୍ରଲୋଭୀ, ସ୍ୱୟଂ ଉତ୍ପାଦନ ଶକ୍ତି ବିହୀନ ହୋଇ ସୁଦ୍ଧା ପୁତ୍ରଦର୍ଶନ ଲାଳସୀ ହୋଇଅଛୁଁ । ୨୮ । ଅତଏବ ହେ ଶୁଭେ ! ଅମ୍ଭେ ତୁମ୍ଭଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ପଦ୍ମପତ୍ରସଦୃଶ, ରକ୍ତବର୍ଣ୍ଣ-ଅଙ୍ଗୁଳି ବିଶିଷ୍ଟ ଅଞ୍ଜଳିକୁ ମସ୍ତକରେ ଅଭ୍ୟୁଦିତ କରିଅଛୁଁ । ୨୯ । ହେ ସୁକେଶି ! ତୁମ୍ଭେ ଅମ୍ଭ ନିଯୋଗାନୁସାରେ ସମଧିକ ତପଃସମ୍ପନ୍ନ ବ୍ରାହ୍ମଣଠାରୁ ଗୁଣ-ସମାଯୁକ୍ତ ପୁତ୍ରମାନଙ୍କୁ ଉତ୍ପାଦନ କର । ହେ ପୃଥୁଶ୍ରୋଣି ! ତୁମ୍ଭ ହେତୁରୁ ଆମ୍ଭେ ପୁତ୍ରିକ ବ୍ୟକ୍ତିଙ୍କ ଗତିଲାଭ କରୁଁ । ୩୦ ।

ବୈଶମ୍ପାୟନ ବୋଇଲେ—ଭର୍ତ୍ତାଙ୍କ ପ୍ରିୟକାର୍ଯ୍ୟରେ ଓ ହିତାନୁଷ୍ଠାନରେ ଅନୁରକ୍ତା ବରାରୋହା କୁନ୍ତୀ, ପରପୁରଞ୍ଜୟ ଭର୍ତ୍ତା ପାଣ୍ଡୁଙ୍କର ଏହି ବଚନ ଶ୍ରବଣ କରି କହିଲେ—ଅମ୍ଭେ ବାଲ୍ୟାବସ୍ଥାରେ ପିତ୍ରାଳୟରେ ଅତିଥି ସେବାରେ ନିଯୁକ୍ତ ଥିଲୁଁ, ଶଂସିତ ବ୍ରାହ୍ମଣଙ୍କୁ ଅମ୍ଭେ ଅତିଶୟ ପରିଚର୍ଯ୍ୟା କଲୁଁ । ଧର୍ମ୍ମର ନିଗୂଢ଼ ତତ୍ତ୍ୱଜ୍ଞ ଜିତେନ୍ଦ୍ରିୟ ଦୁର୍ବାସା ନାମକ ବିଖ୍ୟାତ ଋଷିଙ୍କୁ ଅମ୍ଭେ ସର୍ବ ଯତ୍ନରେ ପରିତୁଷ୍ଟ କଲୁଁ । ୩୩ । ସେହି ଭଗବାନ୍ ଆମ୍ଭଙ୍କୁ ଅଭିଚାର ସଂଯୁକ୍ତ ବର ପ୍ରଦାନ କଲେ ଓ କହିଲେ । ଏହି ମନ୍ତ୍ରଟି ପ୍ରଦାନ କରି ଅମ୍ଭଙ୍କୁ ବୋଇଲେ, "ତୁମ୍ଭେ ଏହି ମନ୍ତ୍ରଦ୍ୱାରା ଯେଉଁ ଯେଉଁ

ଦେବତାଙ୍କୁ ଆହ୍ୱାନ କରିବ, ସେମାନେ ସକାମ ବା ଅକାମ ଯାହା ହୁଅନ୍ତୁ ତତ୍‌କ୍ଷଣାତ୍ ତୁମ୍ଭର ବଶବର୍ତ୍ତୀ ହେବେ । ୩୫ । ହେ ରାଜ୍ଞି ! ତାହାଙ୍କ ପ୍ରସାଦରୁ ତୁମ୍ଭର ପୁତ୍ର ଜାତ ହେବେ ।” ହେ ଭାରତ । ପିତୃ ବେଶ୍ମରେ ସେ ଆମ୍ଭଙ୍କୁ ଏହିପରି କହିଥିଲେ । ୩୬ । ସେ ବ୍ରାହ୍ମଣ ତଥ୍ୟ କହିଥିଲେ, ତହିଁର ସମୟ ଆଗତ ହେଲା । ହେ ନୃପ ! ତୁମ୍ଭ ଅନୁଜ୍ଞା ଅନୁସାରେ ଆମ୍ଭେ ଦେବତାଙ୍କୁ ଆବାହନ କରିବୁଁ । ୩୭ । ହେ ରାଜର୍ଷେ ! ଆମ୍ଭର ଯେପରି ସନ୍ତାନ ଉତ୍ପନ୍ନ ହୁଏ, ତହିଁ ନିମିତ୍ତ ଦେବତାଙ୍କୁ ଆହ୍ୱାନ କରିବୁଁ, ହେ ସତ୍ୟବାଦୀ ବର ! ଆମ୍ଭେ ଏ କାର୍ଯ୍ୟରେ ସ୍ଥିତହେଲୁଁ; ଅଧୁନା ତୁମ୍ଭର ଆଜ୍ଞା ପ୍ରତୀକ୍ଷା କରୁଅଛୁଁ, କେଉଁ ଦେବତାଙ୍କୁ ଆହ୍ୱାନ କରିବୁଁ କହ । ୩୮ ।

ପାଣ୍ଡୁ ବୋଇଲେ—ହେ ବରାରୋହେ ! ଅଦ୍ୟ ତୁମ୍ଭେ ଯଥାବିଧାନରେ ଏ ବିଷୟରେ ଯତ୍ନ କର, ହେ ଶୁଭେ । ଦେବତାଙ୍କ ମଧ୍ୟରେ ଧର୍ମ୍ମ ପୁଣ୍ୟବନ୍ତ, ତୁମ୍ଭେ ତାହାଙ୍କୁ ଆବାହନ କର । ୩୯ । ହେ ବରାରୋହେ ! ଧର୍ମ୍ମ ଆମ୍ଭଙ୍କୁ କଦାପି ଅଧର୍ମ୍ମୀ କରିପାରିବେ ନାହିଁ ଓ ଲୋକେ ମଧ୍ୟ ଏହି କାର୍ଯ୍ୟକୁ ଧର୍ମ-ସମ୍ମତ ବୋଲି ଜ୍ଞାନ କରିବେ । ୪୦ । ସେହି ପୁତ୍ର କୁରୁମାନଙ୍କ ମଧ୍ୟରେ ଧାର୍ମ୍ମିକ ହେବେ, ଏଥିରେ ସନ୍ଦେହ ନାହିଁ; ଧର୍ମ୍ମଙ୍କ ପ୍ରଦତ୍ତ ସେହି ପୁତ୍ରଙ୍କର ମନ କଦାପି ଅଧର୍ମରେ ରତ ହେବ ନାହିଁ । ୪୧ । ହେ ଶୁଚିସ୍ମିତେ ! ତୁମ୍ଭେ ଆଗକରି ସଂଯତ ହୋଇ ଅଭିଚାର ଓ ଉପଚାର ଦ୍ୱାରା ଧର୍ମ୍ମଙ୍କୁ ଆବାହନ କର । ୪୨ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ଭର୍ତ୍ତାଙ୍କ ଆଦେଶକୁ ସେ ବରାଙ୍ଗନା ଗ୍ରହଣ କରି ତାହାଙ୍କୁ ଅଭିବାଦନ ଓ ପ୍ରଦକ୍ଷିଣ କଲେ । ୪୩ ।

---

## ଅଧ୍ୟାୟ ୧୨୩

ବୈଶମ୍ପାୟନ ବୋଇଲେ—ହେ ଜନମେଜୟ ! ଗାନ୍ଧାରୀ ଏକବର୍ଷ ଗର୍ଭଧାରଣ କରିଲାପରେ କୁନ୍ତୀ ଗର୍ଭ ନିମିତ୍ତ ଧର୍ମଙ୍କୁ ଆହ୍ୱାନ କଲେ । ୧ । ସେ ଦେବୀ ତ୍ୱରିତ ଧର୍ମଙ୍କୁ ପୂଜା ଅର୍ପଣ କଲେ ଓ ଦୁର୍ବାସାଙ୍କ ପୂର୍ବ ପ୍ରଦତ୍ତ ମନ୍ତ୍ରକୁ ବିଧିପୂର୍ବକ ଜପ କଲେ । ୨ । ତଦନନ୍ତର ମନ୍ତ୍ରପ୍ରଭାବରୁ ଧର୍ମଦେବ ସୂର୍ଯ୍ୟ-ସଙ୍କାଶ ବିମାନରେ ଆରୋହଣ କରି କୁନ୍ତୀଙ୍କ ସମୀପରେ ଉପସ୍ଥିତ ହେଲେ ଓ ହାସ୍ୟକରି ବୋଇଲେ, କୁନ୍ତୀ ! ଆମ୍ଭେ ତୁମ୍ଭଙ୍କୁ କି ବର ପ୍ରଦାନ କରିବୁଁ ? କୁନ୍ତୀ ମଧ୍ୟ ହାସ୍ୟକରି ବୋଇଲେ, 'ପୁତ୍ର ଦିଅ' । ୪ । ଯୋଗ-ମୂର୍ତ୍ତିଧାରୀ ଧର୍ମଙ୍କ ଦ୍ୱାରା ସଂଯୁକ୍ତା ହୋଇ ସେ ବରାରୋହା ସର୍ବପ୍ରାଣୀ-ହିତକାରୀ ପୁତ୍ରଙ୍କୁ ଲାଭ କଲେ । ୫ । ତଦନନ୍ତର ତୁଳା ଅୟନରେ, ମାର୍ଗଶିର ମାସର ଅତି ପ୍ରଶଂସିତ ଶୁକ୍ଳ ପଞ୍ଚମୀ ପୂର୍ଣ୍ଣ ତିଥିରେ, ଜ୍ୟେଷ୍ଠାନକ୍ଷତ୍ରରେ ଚନ୍ଦ୍ର ଥିବାବେଳେ, ଅଭିଜିତ୍ ନାମକ ଅଷ୍ଟମ ମୁହୂର୍ତ୍ତରେ ଓ ଦିବସରେ କୁନ୍ତୀ ସମୃଦ୍ଧିଯଶା ସୁତପ୍ରବରଙ୍କୁ ପ୍ରସବ କଲେ । ୬ । ସେ ସୁତ ଜନ୍ମ ହେବାମାତ୍ରେ ଆକାଶ-ବାଣୀ ହେଲା ।

"ଏହି ନରୋତ୍ତମ ଧାର୍ମିକଙ୍କ ଶ୍ରେଷ୍ଠ ହେବେ, ପୃଥିବୀରେ ବିକ୍ରମଶାଳୀ ଓ ସତ୍ୟବାଦୀ ନରପତି ହେବେ, ପାଣ୍ଡୁଙ୍କର ପ୍ରଥମ ଜାତ ପୁତ୍ର ଯୁଧିଷ୍ଠିର ନାମରେ ଖ୍ୟାତ ହୋଇ ଜଣେ ପ୍ରଥିତ ରାଜା ହେବେ ଓ ତିନିଲୋକରେ ତାହାଙ୍କର ସୁଖ୍ୟାତି ହେବ । ସେ ଯଶସ୍ୱୀ ତେଜସ୍ୱୀ ଓ ଶୀଳସମନ୍ୱିତ ହେବେ ।" । ୮ ।

ସେ ଧାର୍ମିକ ସୁତଙ୍କୁ ଲାଭକରି ପାଣ୍ଡୁ ପୁନର୍ବାର କୁନ୍ତୀଙ୍କୁ ବୋଇଲେ—ଯେ ବଳରେ ବଡ଼ହୁଏ, କ୍ଷତ୍ରିୟଙ୍କ ମଧ୍ୟରେ ସେ ଜ୍ୟେଷ୍ଠ ହେବେ । ଅତଏବ ତୁମ୍ଭେ ବଳବାନ୍ ସୁତଙ୍କୁ ବରଣ କର । ୧୦ । ଏପରି କଥିତ ହେବାରୁ କୁନ୍ତୀ ବାୟୁଙ୍କୁ ଆହ୍ୱାନ କଲେ । ତତ୍ପରେ ମହାବଳ ବାୟୁ ମୃଗ ଉପରେ ଆରୂଢ଼ହୋଇ କୁନ୍ତୀଙ୍କଠାକୁ ଆଗତ ହେଲେ ଓ ବୋଇଲେ, ହେ କୁନ୍ତୀ ! ଅଦ୍ୟ ତୁମ୍ଭଙ୍କୁ ଆମ୍ଭେ କି ଦେବୁଁ ତୁମ୍ଭ ହୃଦୟରେ ଯାହା ଅଛି କହ । କୁନ୍ତୀ ସଲଜ୍ଜା ହୋଇ କହିଲେ—ହେ ସୁରୋତ୍ତମ । "ପୁତ୍ର ଦାନ କର, ସେ ପୁତ୍ର ବଳବାନ, ମହାକାୟ ଓ ସମସ୍ତଙ୍କର ଦର୍ପ ଭଞ୍ଜନ କରିବ" । ୧୨ । ବାୟୁଙ୍କଠାରୁ ପରାକ୍ରମ

ମହାବାହୁ ଭୀମ ଜନ୍ମିଲେ; ହେ ଭାରତ ! ସେହି ବଳବାନ୍ ସୁତଙ୍କ ସମ୍ବନ୍ଧରେ ଆକାଶ ବାଣୀ ହେଲା—

"ସମସ୍ତ ବଳବାନ୍‌ଙ୍କ ମଧ୍ୟରେ ଏ ଶ୍ରେଷ୍ଠହୋଇ ଜାତହେଲେ" ।୧୩।

ବୃକୋଦରଙ୍କ ଜାତ ହେବା ମାତ୍ରେ ଏହି ଅଦ୍ଭୁତ ବ୍ୟାପାର ଦେଖାଗଲା ଯେ ସେ ମାତାଙ୍କ ଅଙ୍କରୁ ପତିତ ହେବାବେଳେ ତାହାଙ୍କ ଗାତ୍ର ସ୍ପର୍ଶରେ ଶିଳାମାନ ଚୂର୍ଣ୍ଣୀକୃତ ହେଲା ।୧୪। କୁନ୍ତୀ ବ୍ୟାଘ୍ର ଭୟରେ ଉଦ୍‌ବିଗ୍ନା ହୋଇ ସହସା ଉତ୍‌ଥିତା ହେବାରୁ; ବୃକୋଦର ଯେ ତାହାଙ୍କ ଅଙ୍କରେ ଶୁଇଥିଲେ ତାହା ସେ ବୋଧକଲେ ନାହିଁ ।୧୫। ସେହି କାରଣରୁ ଏହି ବଜ୍ରକାୟ କୁମାର ଗିରି ଉପରେ ନିପତିତ ହେଲେ ଓ ଆପଣା ଗାତ୍ରଦ୍ୱାରା ଶିଳାକୁ ଶତ ଶତ ଖଣ୍ଡ କଲେ । ଶିଳାକୁ ଚୂର୍ଣ୍ଣ ହେବାର ଦେଖି ପାଣ୍ଡୁ ବିସ୍ମୟ ପ୍ରାପ୍ତ ହେଲେ ।୧୬। ହେ ଭରତସତ୍ତମ । ଭୀମ ଯେଉଁଦିନ ଜନ୍ମ ହେଲେ, ବସୁଧାଧିପ ଦୁର୍ଯ୍ୟୋଧନ ମଧ୍ୟ ସେହିଦିନ ଜାତ ହେଲେ । ବୃକୋଦର ଜନ୍ମିବାପରେ ପାଣ୍ଡୁ ପୁନର୍ବାର ଏହି ଚିନ୍ତା କଲେ—ଆମ୍ଭର କିପରି ଗୋଟିଏ ଲୋକଶ୍ରେଷ୍ଠ ଉତ୍କୃଷ୍ଟ ପୁତ୍ର ହୁଅନ୍ତା ? ।୧୮। ଏହି ସଂସାର ଦୈବ ଓ ପୁରୁଷକାର ଦ୍ୱାରା ସମ୍ୟକ୍‌ରୂପେ ପ୍ରତିଷ୍ଠିତ ହୋଇଅଛି । ତନ୍ମଧ୍ୟରୁ ଦୈବ ତାହାର ସମୟ ଅନୁସାରେ ବିଧାତାଙ୍କ ଇଚ୍ଛାକ୍ରମେ ଉପସ୍ଥିତ ହୁଅଇ ।୧୯।

ଆମ୍ଭେ ଶୁଣିଅଛୁଁ ଇନ୍ଦ୍ର ଦେବତାଙ୍କର ରାଜା ଓ ପ୍ରଧାନ. ତାହାଙ୍କର ବଳ ଓ ଉତ୍ସାହ ଅପ୍ରମେୟ; ସେ ବୀର୍ଯ୍ୟଶାଳୀ ଓ ଅମିତଦ୍ୟୁତିସମ୍ପନ୍ନ ।୨୦। ତାହାଙ୍କୁ ତପସ୍ୟା ଦ୍ୱାରା ସନ୍ତୁଷ୍ଟକରି ମହାବଳ ପୁତ୍ରଲାଭ କରିବୁଁ । ସେ ଯେଉଁ ପୁତ୍ରଙ୍କୁ ଆମ୍ଭଙ୍କୁ ଦେବେ ସେ ପୁତ୍ର ବରିଷ୍ଠ ହେବେ ।୨୧। ମନୁଷ୍ୟ ହେଉ ଅଥବା ଅତି ମନୁଷ୍ୟ ହେଉ, ସଂଗ୍ରାମରେ ତାହାଙ୍କୁ ସେ ପରାସ୍ତ କରିବେ । ସେହି ହେତୁରୁ ଆମ୍ଭେ କାୟମନୋବାକ୍ୟରେ ମହତ୍ ତପସ୍ୟା କରିବୁଁ ।୨୨। ତତ୍ପରେ ମହାବଳ ପାଣ୍ଡୁ ମହର୍ଷି ଗଣଙ୍କ ସହ ମନ୍ତ୍ରଣାକରି କୁନ୍ତୀଙ୍କୁ ସମ୍ବତ୍ସର ପର୍ଯ୍ୟନ୍ତ ଗୋଟିଏ ଶୁଭ ବ୍ରତ କରିବାକୁ ଆଦେଶ ଦେଲେ ।୨୩। ସେ ମହାବାହୁ ସ୍ୱୟଂ ଏକପାଦରେ ସ୍ଥିତ ହୋଇ ଉଗ୍ର ତପସ୍ୟାରେ ରହି ପରମ ସମାଧି ଦ୍ୱାରା ତ୍ରିଦଶଗଣଙ୍କର ସେହି ଈଶ୍ୱରଙ୍କୁ ଆରାଧନା କରିବା ଇଚ୍ଛାରେ ପ୍ରଭାତରୁ ସାୟଂକାଳ ପର୍ଯ୍ୟନ୍ତ

ସୂର୍ଯ୍ୟଙ୍କ ଉପରେ ପରିତୃପ୍ତ ହେଲେ । ହେ ଭାରତ । ଅନେକ କାଳ ପରେ ବାସବ ତାହାଙ୍କ ପ୍ରତିପନ୍ନ ହେଲେ । ୨୫ ।

ଶକ୍ର ବୋଇଲେ—ଆମ୍ଭେ ତୁମ୍ଭଙ୍କୁ ପୁତ୍ର ପ୍ରଦାନ କରିବୁଁ, ସେହି ପୁତ୍ର ତିନି ଲୋକରେ ବିଖ୍ୟାତ ହେବେ; ବ୍ରାହ୍ମଣ, ଗୌ ଓ ସୁହୃଦବର୍ଗର ହିତ ସାଧକ, ଶତ୍ରୁମାନଙ୍କର ଶୋକ ଜନକ ଓ ବାନ୍ଧବମାନଙ୍କର ଆନନ୍ଦ ଦାୟକ ହେବେ । ଆମ୍ଭେ ଏପରି ଉତ୍କୃଷ୍ଟ ପୁତ୍ର ଦେବୁ ଯେ ସେ ସବୁ ଶତ୍ରୁମାନଙ୍କୁ ବିନାଶ କରିବେ । ୨୭ । ମହାତ୍ମା ବାସବ କୁରୁରାଜଙ୍କୁ ଏହିପରି କହିଥିଲେ । ସେହି ବଚନ ସ୍ମରଣକରି ଧର୍ମାତ୍ମା ପାଣ୍ଡୁ କୁନ୍ତୀଙ୍କୁ କହିଲେ, ହେ କଲ୍ୟାଣି । ତୁମ୍ଭର କର୍ମ ସଫଳ ହୋଇଅଛି; ଦେବଗଣଙ୍କର ଈଶ୍ୱର ପରିତୁଷ୍ଟ ହୋଇ ତୁମ୍ଭର ସଂକଳ୍ପିତ ପୁତ୍ର ପ୍ରଦାନ କରିବାକୁ ଅଭିଳାଷୀ ହୋଇଅଛନ୍ତି । ୨୯ । ହେ ସୁଶ୍ରୋଣି । ଏବେ ଗୋଟିଏ ଅତିମାନୁଷ କର୍ମୀ, ଯଶସ୍ୱୀ, ଅରିନ୍ଦମ, ନୀତିବିଶାରଦ, ମହାତ୍ମା, ଆଦିତ୍ୟ ପ୍ରାୟ ତେଜସ୍ୱୀ, ଦୁର୍ଦ୍ଧର୍ଷ, କ୍ରିୟାବନ୍ତ, ଅଦ୍ଭୁତ ଦର୍ଶନ ଓ କ୍ଷତ୍ରିୟମାନଙ୍କର ତେଜୋରାଶିର ଧାମ ସ୍ୱରୂପ ପୁତ୍ରକୁ ଜନ୍ମ କର । ଦେବେନ୍ଦ୍ରଙ୍କଠାରୁ ଆମ୍ଭେ ପ୍ରସାଦ ଲାଭ କରିଅଛୁଁ, ହେ ଶୁଚିସ୍ମିତେ । ତୁମ୍ଭେ ତାହାଙ୍କୁ ଆହ୍ୱାନ କର । ୩୧ ।

ବୈଶମ୍ପାୟନ ବୋଇଲେ—ଯଶସ୍ୱିନୀ କୁନ୍ତୀ ଏହା ଶୁଣି ଇନ୍ଦ୍ରଙ୍କୁ ଆବାହନ କଲେ; ଏଥିଉତ୍ତାରୁ ଦେବେନ୍ଦ୍ର ଆସି ଅର୍ଜ୍ଜୁନ ନାମକ ପୁତ୍ରକୁ ଜନ୍ମ ଦେଲେ । ୩୨ । ସେ କୁମାର ଜାତ ହେବାମାତ୍ରେ ମହା ଗମ୍ଭୀର ଶବ୍ଦରେ ନଭୋମଣ୍ଡଳକୁ ନିନାଦିତ କରି ଆକାଶବାଣୀ ହେଲା, ଆଶ୍ରମବାସୀ ସମସ୍ତ ପ୍ରାଣୀମାନେ ଶୁଣିଲେ, ଶୁଚିସ୍ମିତା କୁନ୍ତୀଙ୍କୁ ସମ୍ବୋଧନ କରି ସ୍ପଷ୍ଟରୂପେ ଏହା କଥିତ ହେଲା—"ହେ କୁନ୍ତୀ । କାର୍ତ୍ତବୀର୍ଯ୍ୟ ସଦୃଶ ଓ ଶିବତୁଲ୍ୟ ପରାକ୍ରମଶାଳୀ, ପୁରନ୍ଦର ସଦୃଶ ଅପରାଜେୟ, ଏହି କୁମାର ସର୍ବସ୍ଥାନରେ ତୁମ୍ଭର ଯଶୋରାଶି ବିସ୍ତୀର୍ଣ୍ଣ କରିବେ । ୩୫ । ବିଷ୍ଣୁଙ୍କ ଦ୍ୱାରା ଯେପରି ଅଦିତିଙ୍କର ପ୍ରୀତି ବିବର୍ଦ୍ଧିତ ହେଲା, ସେହିପରି ବିଷ୍ଣୁଙ୍କ ସଦୃଶ ତୁମ୍ଭର ଏହି ପୁତ୍ର ତୁମ୍ଭର ପ୍ରୀତି ବର୍ଦ୍ଧନ କରିବେ । ୩୬ । ଏହି କୁମାର ମଦ୍ର, କୁରୁ ସୋମକ, ଚେଦି, କାଶି, କରୂଷ ପ୍ରଭୃତି ଦେଶମାନଙ୍କୁ ବଶୀଭୂତ କରି କୌରବ ବଂଶର ରାଜଲକ୍ଷ୍ମୀ ବହନ କରିବେ । ଏହି

ପୁତ୍ରଙ୍କର ଭୁଜବୀର୍ଯ୍ୟରେ ହବ୍ୟବାହନ ଖାଣ୍ଡବ ପ୍ରସ୍ଥରେ ସର୍ବଭୂତଙ୍କ ମେଦୋଦ୍ୱାରା ପରମ ପରିତୋଷ ପ୍ରାପ୍ତହେବେ । ୩୮ ।

ଏହି ମହାବଳ ବୀରପୁରୁଷ ଭ୍ରାତୃଗଣଙ୍କ ସହିତ ସମସ୍ତ ମହୀପାଳ-ଗଣଙ୍କୁ ପରାଜୟ ପୂର୍ବକ ତିନଥର ଅଶ୍ୱମେଧ ଯଜ୍ଞ ଆହରଣ କରିବେ ।୩୯। ହେ କୁନ୍ତୀ ! ଏହି ମହାଯଶା ପୁତ୍ର ଜାମଦଗ୍ନ୍ୟ ସଦୃଶ ଓ ବିଷ୍ଣୁଙ୍କ ସମାନ ପରାକ୍ରମଶାଳୀ ଓ ବୀର୍ଯ୍ୟବାନ୍ ବ୍ୟକ୍ତିଙ୍କ ମଧ୍ୟରେ ଶ୍ରେଷ୍ଠତମ ହେବେ । ୪୦ । ଯୁଦ୍ଧରେ ଏ ମହାଦେବଙ୍କୁ ତୁଷ୍ଟକରି ତାହାଙ୍କଠାରୁ ପାଶୁପତ ଅସ୍ତ୍ରଲାଭ କରିବେ । ୪୧ । ନିବାତ କବଚ ନାମକ କେତେଗୁଡ଼ିଏ ଦେବଦ୍ୱେଷୀ ଦୈତ୍ୟ ଅଛନ୍ତି. ତୁମ୍ଭର ଏହି ମହାବାହୁ ପୁତ୍ର ଦେବରାଜଙ୍କ ଆଜ୍ଞାନୁସାରେ ସେମାନଙ୍କୁ ବଧ କରିବେ । ୪୨ । ଏହି ପୁରୁଷର୍ଷଭ ସମସ୍ତ ଦିବ୍ୟାସ୍ତ୍ର ଶିକ୍ଷାକରି ପ୍ରଣଷ୍ଟ ରାଜଲକ୍ଷ୍ମୀଙ୍କୁ ପୁନର୍ବାର ଆହରଣ କରିବେ । ୪୩ ।

ସୂତିକାଗାରରେ କୁନ୍ତୀ ଏହି ଅଦ୍ଭୁତ ବାକ୍ୟ ଶ୍ରବଣ କଲେ । ଉଚ୍ଚୈଃସ୍ୱରରେ ଉଚ୍ଚାରିତ ସେହି ବଚନ ଶ୍ରବଣ କରି ଶତଶୃଙ୍ଗ ନିବାସୀ ତପସ୍ୱୀ ମାନଙ୍କର ମହାନ୍ ହର୍ଷ ଜାତ ହେଲା, ଇନ୍ଦ୍ରଙ୍କ ସହିତ ଦେବତା-ମାନେ ମଧ୍ୟ ହୃଷ୍ଟ ହେଲେ । ୪୫ । ଆକାଶରେ ଦୁନ୍ଦୁଭିମାନଙ୍କର ତୁମୁଳ ଶବ୍ଦ ହେଲା । ପୁଷ୍ପ ବୃଷ୍ଟିରେ ଆବୃତ ହୋଇ ଲୋକେ ମହାକୋଳାହଳ ଧ୍ୱନି କଲେ । ୪୬ । କାଦ୍ରବେୟ, ବୈନତେୟ, ଗନ୍ଧର୍ବ ଅପ୍‌ସରା ପ୍ରଭୃତି ଗଣ ଦେବତାମାନେ, ପ୍ରଜାପତିମାନେ ଓ ମରୀଚି, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ, ଅଙ୍ଗିରା ମହର୍ଷିମାନେ ଭରଦ୍ୱାଜ, କଶ୍ୟପ, ଗୌତମ, ବିଶ୍ୱାମିତ୍ର ଓ ଜମଦଗ୍ନି ସମସ୍ତେ ସେଠାକୁ ଆଗତ ହେଲେ; ଭାସ୍କର ପ୍ରଣଷ୍ଟ ହୁଅନ୍ତେ, ଯେ ଉଦିତ ହୁଅନ୍ତି ସେ ଭଗବାନ୍ ଅତ୍ରି ମଧ୍ୟ ଆଗମନ କଲେ । ୪୮ । ମରୀଚି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଦକ୍ଷପ୍ରଜାପତି, ଗନ୍ଧର୍ବ ଓ ଅପ୍‌ସରାଗଣ, ଦିବ୍ୟମାଲ୍ୟ ଓ ବସନ ଧାରଣ କରି ସର୍ବାଲଙ୍କାରରେ ବିଭୂଷିତ ହୋଇ ବୀଭତ୍ସୁଙ୍କର ଯଶୋଗାନ କଲେ ଓ ଅପ୍‌ସରାଗଣ ନୃତ୍ୟ କଲେ । ୫୦ ।

ଚତୁର୍ଦ୍ଦିଗରେ ମହର୍ଷିମାନେ ଜପ କଲେ, ଶ୍ରୀମାନ୍ ତୁମ୍ବୁରୁ ଗନ୍ଧର୍ବ-ଗଣଙ୍କ ସହ ପ୍ରକୃଷ୍ଟରୂପେ ଗାନ କଲେ । ୫୧ । ହେ ନରାଧିପ ! ଭୀମସେନ ଉଗ୍ରସେନ, ଊର୍ଣ୍ଣାୟୁଃ, ଅନଘ, ଗୋପତି, ଧୃତରାଷ୍ଟ୍ର, ସୂର୍ଯ୍ୟବର୍ଚ୍ଚା ଓ ଅଷ୍ଟମ ଯୁଗପ, ତୃଣପ. କାର୍ଷ୍ଣି କାର୍ଷ୍ଣି, ନନ୍ଦୀ, ଚିତ୍ରରଥ ଓ ତ୍ରୟୋଦଶରେ

ଶାଳିଶିର ୍‌ ଓ ଚତୁର୍ଦ୍ଦଶରେ ପର୍ଜ୍ଜନ୍ୟ କଳି ପଞ୍ଚଦଶ ଓ ନାରଦ ଷୋଡ଼ଶ, ସଦ୍ଧା, ବୃହଦ୍ଧା, ବୃହକ ଓ ମହାମନା କରାଳ, ବ୍ରହ୍ମଚାରୀ ଓ ବହୁ ଗୁଣବାନ୍ ବୋଲି ବିଖ୍ୟାତ ସୁବର୍ଣ୍ଣ, ବିଶ୍ୱାବସୁ ଭୂମନ୍ୟୁ, ସୁଚନ୍ଦ୍ର, ଶରୁ, ଗୀତମାଧୁର୍ଯ୍ୟ ସମ୍ପନ୍ନ ବିଖ୍ୟାତ ହାହା, ହୁହୁ ଏହି ସବୁ ଦେବ ଗନ୍ଧର୍ବ ମାନେ ସେଠାରେ ଗାୟନ କଲେ । ୫୬ । ଆୟତ ଲୋଚନା ଓ ମହାଭାଗା ଅପ୍‌ସରାମାନେ ହୃଷ୍ଟ ଓ ସର୍ବାଲଙ୍କାର ଭୂଷିତ ହୋଇ ନୃତ୍ୟ ଓ ଗାୟନ କଲେ । ୫୭ । ଅନୁଚାନା, ଅନବଦ୍ୟା ଗୁଣମୁଖ୍ୟା, ଗୁଣାବରା, ଅଦ୍ରିକା, ସୋମା, ମିଶ୍ରକେଶୀ, ଅଲମ୍ବୁଷା, ମରୀଚି, ଶୁଚିକା, ବିଦ୍ୟୁତ୍‌ପର୍ଣ୍ଣା, ତିଲୋତ୍ତମା, ଅମ୍ବିକା, ଲକ୍ଷଣା, କ୍ଷେମା, ଦେବୀରମ୍ଭା, ମନୋରମା, ଅସିତା, ସୁବାହୁ, ସୁପ୍ରିୟା, ସୁବପୁଃ, ପୁଣ୍ଡରିକା, ସୁଗନ୍ଧା, ସୁରସା ପ୍ରମାଥିନୀ, କାମ୍ୟା ଓ ଶାରଦ୍‌ବତୀ—ଏହି ସବୁ ଅପ୍‌ସରା ଗଣ ଦଳବଦ୍ଧ ହୋଇ ତହିଁରେ ନୃତ୍ୟ କଲେ । ୬୦ ।

ଅପରନ୍ତୁ ମେନକା, ସହଜନ୍ୟା, କର୍ଣ୍ଣିକା, ପୁଞ୍ଜିକାସ୍ଥଳା ଋତୁସ୍ଥଳା, ଘୃତାଚୀ, ବିଶ୍ୱାଚୀ, ପୂର୍ବାଚିତ୍ତୀ ଉମ୍ଲୋଚା, ଓ ଦଶମ ପ୍ରମ୍ଲୋଚା ଓ ଏକାଦଶରେ ଉର୍ବଶୀ ଏହି ଆୟତଲୋଚନା ସ୍ୱର୍ବେଶାମାନେ ମଧ୍ୟ ଗାୟନ କଲେ । ୬୨ । ଧାତା, ଅର୍ଯ୍ୟମା, ମିତ୍ର, ବରୁଣ, ଅଂଶ, ଭଗ, ଇନ୍ଦ୍ର, ବିବସ୍ୱାନ୍ ପୂଷା, ତ୍ୱଷ୍ଟା, ସବିତା ଓ ବିଷ୍ଣୁ—ଏହି ଦ୍ୱାଦଶ ଆଦିତ୍ୟ ଓ ପର୍ଜ୍ଜନ୍ୟ ଓ ପାବକଗଣ ଆକାଶରେ ଅବସ୍ଥିତ ହୋଇ ପାଣ୍ଡୁପୁତ୍ରଙ୍କର ମହିମା ବର୍ଣ୍ଣନ କଲେ । ୬୪ । ହେ ପରନ୍ତପ । ବୈଶ୍ୟପତେ । ମୃଗ, ବ୍ୟାଧ, ସର୍ପ, ମହାଯଶା ନିର୍ଋତି, ଅଜୈକପାତ୍, ଅହିବ୍ରଧ୍ନ, ପିନାକୀ, ଦହନ, ଈଶ୍ୱର, କପାଳୀ, ସ୍ଥାଣୁ ଓ ଭଗବାନ୍ ଭଗ—ଏହି ଏକାଦଶ ରୁଦ୍ରଗଣ ସେଠାରେ ଉପସ୍ଥିତ ହେଲେ । ୬୬ । ଅଶ୍ୱିନୀ କୁମାର ଦ୍ୱୟ, ଅଷ୍ଟବସୁ, ମହାବଳ, ମରୁଦ୍‌ଗଣ, ବିଶ୍ୱଦେବଗଣ ଓ ସାଧ୍ୟଗଣ ଆସି ସେ ସ୍ଥାନରେ ଅଧିଷ୍ଠାନ କଲେ । ୬୭ । କର୍କୋଟକ, ବାସୁକି, କଚ୍ଛପ, କୁଣ୍ଡ ଓ ମହୋରଗ, ତକ୍ଷକ ଏହି ସବୁ ତପୋଯୁକ୍ତ ମହାକ୍ରୋଧ ମହାବଳ ଭୁଜଙ୍ଗମ ଓ ଅନ୍ୟାନ୍ୟ ବହୁସଂଖ୍ୟକ ନାଗ ମାନେ ମଧ୍ୟ ଆଗମନ କରି ସେ ସ୍ଥାନରେ ବ୍ୟବସ୍ଥିତ ହେଲେ । ୬୯ । ତାର୍ଯ୍ୟ, ଅରିଷ୍ଟନେମି, ଗରୁଡ଼, ଅସିତ ଧ୍ୱଜ ଅରୁଣ ଓ ଆରୁଣି—ଏହି ସମସ୍ତ ବୈନତେୟଗଣ ସେଠାରେ ଆସି ବ୍ୟବସ୍ଥିତ ହେଲେ । ୭୦ ।

ବିମାନାରୂଢ଼ ଓ ଗିରିଶିଖରସ୍ଥିତ ସେହି ଦେବଗଣଙ୍କୁ ତପଃସିଦ୍ଧ ମହର୍ଷିମାନେ ଦେଖିଲେ, ଅନ୍ୟ କେହି ଦେଖି ପାରିଲେ ନାହିଁ ।୭୧। ସେହି ମହତ୍ ଆଶ୍ଚର୍ଯ୍ୟ ଦର୍ଶନ କରି ମୁନି ସତ୍ତମମାନେ ବିସ୍ମିତ ହେଲେ ଓ ତଦବଧି ପାଣ୍ଡବଗଣଙ୍କ ପ୍ରତି ସମଧିକ ଶ୍ରଦ୍ଧାନ୍ୱିତ ହେଲେ ।୭୨। ମହାଯଶା ପାଣ୍ଡୁ ପୁତ୍ର ଲୋଭରେ ପୁନର୍ବାର ଧର୍ମପତ୍ନୀ କୁନ୍ତୀଙ୍କୁ ନିଯୋଗ କରିବାକୁ ଇଚ୍ଛା କଲେ; ତହିଁରେ, ତାହାଙ୍କୁ କୁନ୍ତୀ କହିଲେ । ଧର୍ମ-ବେତ୍ତାମାନେ ଆପଦ୍‌କାଳରେ ସୁଦ୍ଧା ଚତୁର୍ଥ ପ୍ରସବକୁ ପସନ୍ଦ କରନ୍ତି ନାହିଁ; କାରଣ ଚତୁର୍ଥ ପୁରୁଷ ସଂସର୍ଗରେ ନାରୀ ସ୍ୱୈରିଣୀ ହୁଅଇ ଓ ପଞ୍ଚମ ସହ ସଂସର୍ଗ କଲେ ବେଶ୍ୟା ହୁଅଇ ।୭୪। ହେ ବିଦ୍-ବନ! ଏହି ଧର୍ମ ଅବଗତ ହୋଇ କି ନିମିତ୍ତ ପ୍ରମାଦ ଗ୍ରସ୍ତ ପ୍ରାୟ ସେ ଧର୍ମକୁ ଅତିକ୍ରମ କରି ଆମ୍ଭଙ୍କୁ ଅପତ୍ୟ ନିମିତ୍ତ ଅନୁରୋଧ କରୁଅଛ ? ।୭୫।

---

## ଅଧ୍ୟାୟ୧୨୪

ବୈଶମ୍ପାୟନ ବୋଇଲେ—ଏହି ରୂପେ କୁନ୍ତୀଙ୍କର ଓ ଗାନ୍ଧାରୀଙ୍କର ପୁତ୍ର ଉତ୍ପନ୍ନ ହେବାର ଦେଖି ଦିନେ ମାଦ୍ରୀ ନିର୍ଜ୍ଜନରେ ପାଣ୍ଡୁଙ୍କୁ ବୋଇଲେ, ହେ ପରନ୍ତପ ! ଆପଣ ଆମ୍ଭପ୍ରତି ପ୍ରତିକୂଳ ହେଲେ ସୁଦ୍ଧା ଆମ୍ଭର ସନ୍ତାପ ନାହିଁ । ହେ ଅନଘ ! କୁନ୍ତୀଙ୍କ ଅପେକ୍ଷା ଆମ୍ଭେ ଶ୍ରେଷ୍ଠ ହୋଇ ସୁଦ୍ଧା ସର୍ବଦା ଅଶ୍ରେଷ୍ଠ ରୂପେ ରହିବାରୁ ଆମ୍ଭର ଦୁଃଖ ହେଉନାହିଁ; ହେ ନୃପତେ ! କୁରୁନନ୍ଦନ ! ଗାନ୍ଧାରୀଙ୍କର ଶତପୁତ୍ର ଜନ୍ମହେବାର ଶୁଣିଲେ ହେଁ ସୁଦ୍ଧା ଆମ୍ଭର ତାଦୃଶ ଦୁଃଖ ହୋଇନାହିଁ; କିନ୍ତୁ କୁନ୍ତୀଙ୍କ ସହିତ ଆମ୍ଭେ ସମାନ ହୋଇ ତାହାଙ୍କ ଠାରୁ ଭାଗ୍ୟକ୍ରମେ ଆପଣଙ୍କର ପୁତ୍ର ଜାତ ହେଲା, ଆମ୍ଭର ହେଲାନାହିଁ; ଏହା ଆମ୍ଭଙ୍କୁ ଅତିଶୟ ବାଧୁଅଛି ।୪। କୁନ୍ତୀରାଜ ସୁତା ଯଦି ଆମ୍ଭ ପ୍ରତି ଅନୁଗ୍ରହ କରି ସନ୍ତାନ ହେବାର ଉପାୟ କରନ୍ତେ, ତେବେ ଆପଣଙ୍କର ମଧ୍ୟ ହିତ ହୁଅନ୍ତା ।୫। କୁନ୍ତି-ସୁତା ଆମ୍ଭର ସପତ୍ନୀ ଥିବାରୁ ତାଙ୍କୁ ଏ ବିଷୟରେ ସ୍ୱୟଂ କହିବାକୁ ପ୍ରବୃତ୍ତି ହେଉନାହିଁ, ଯଦି ଆପଣ ଆମ୍ଭପ୍ରତି ପ୍ରସନ୍ନ ହୁଅନ୍ତି, ତେବେ ଆପଣ ସ୍ୱୟଂ ତାହାଙ୍କୁ କହନ୍ତୁ ।୬।

ପାଣ୍ଡୁ ବୋଇଲେ ମାଦ୍ରି । ଆମ୍ଭେ ଏହି ହୃଦୟରେ ମଧ ଏହି ବିଷୟ ଆନ୍ଦୋଳନ କରୁଅଛୁଁ; କିନ୍ତୁ ଏଟି ତୁମ୍ଭର ଇଷ୍ଟ କି ଅନଭିପ୍ରେତ ତାହା ସ୍ଥିର କରି ନ ପାରି ତୁମ୍ଭଙ୍କୁ କହିବାକୁ ସାହସୀ ହୋଇନାହୁଁ । ୭ । ତୁମ୍ଭର ମତ ଅବଗତ ହେଲୁଁ, ଏବେ ପ୍ରଯତ୍ନ କରିବୁଁ । ଆମ୍ଭେ ବୋଧ କରୁଅଛୁଁ ଯେ ଆମ୍ଭେ କହିଲେ ସେ ନିଶ୍ଚୟ ଆମ୍ଭର ବଚନ ପ୍ରତିପାଳନ କରିବେ । ୮ ।

ବୈଶମ୍ପାୟନ ବୋଇଲେ—ତତ୍ପରେ କୁନ୍ତୀଙ୍କୁ ପୁନର୍ବାର ପାଣ୍ଡୁ ବିଜନରେ କହିଲେ, ହେ କଲ୍ୟାଣି ! ଯହିଁରେ ଅମ୍ଭର ପୂର୍ବପୁରୁଷଙ୍କର ପିଣ୍ଡ ନାଶ ନହୁଏ ଅଥଚ ଅମ୍ଭର ମଙ୍ଗଳ ହୁଏ; ଯଶୋଲାଭ ଓ ଅର୍ଥ ସିଦ୍ଧି ହୁଏ, ତନିମିତ୍ତ ଗୋଟିଏ ଦୁଷ୍କର କର୍ମ କର । ଦେଖ, ଇନ୍ଦ୍ର ସ୍ୱର୍ଗରେ ଆଧିପତ୍ୟ ଲାଭ କରି ସୁଦ୍ଧା ଯଶ ନିମିତ୍ତ ଯଜ୍ଞ କରୁଅଛନ୍ତି । ୧୧ । ହେ ଭାବିନି ! ବେଦବିତ୍ ମନ୍ତ୍ରବିତ୍ ବିପ୍ରମାନେ ସୁଦ୍ଧା ଦୁଷ୍କର ତପସ୍ୟା ଆଚରଣ କରନ୍ତି ଓ ଯଶୋଲାଭ ନିମିତ୍ତ ଗୁରୁଙ୍କ ଠାରେ ଉପସ୍ଥିତ ହୁଅନ୍ତି । ୧୨ । ତଦ୍‌ବତ୍ ସମସ୍ତ ରାଜର୍ଷି ଓ ବ୍ରାହ୍ମଣମାନେ ଓ ତପୋଧନମାନେ ଯଶୋଲାଭ ଜନ୍ୟ ଦୁଷ୍କର କର୍ମ କରନ୍ତି । ୧୩ । ହେ ଅନିନ୍ଦିତେ । ତୁମ୍ଭେ ମାଦ୍ରୀଙ୍କୁ ଭେଳାରେ ଉଦ୍ଧାର କଲା ପ୍ରାୟ ଉଦ୍ଧାର କର; ତାହାଙ୍କୁ ମଧ ଅପତ୍ୟ ଦାନ କରି ଉତ୍କୃଷ୍ଟ କୀର୍ତ୍ତି ଲାଭ କର । ୧୪ । ଏହା ଶୁଣି କୁନ୍ତୀ ମାଦ୍ରୀଙ୍କୁ ବୋଇଲେ—ତୁମ୍ଭେ ବାରେ ଦେବତାଙ୍କୁ ଚିନ୍ତା କର, ସେହି ଦେବତାଙ୍କ ଠାରୁ ତୁମ୍ଭର ତଦନୁରୂପ ପୁତ୍ର ହେବ । ତଦନନ୍ତର ମାଦ୍ରୀ ବିଚାର କରି ଅଶ୍ୱିନୀକୁମାର ଯୁଗଳଙ୍କୁ ଚିନ୍ତା କଲେ; ଅଶ୍ୱିନୀ ସୁତ ଦୁହେଁ ଆସି ତାହାଙ୍କ ଠାରେ ଯମଜ ଦୁଇଗୋଟି ପୁତ୍ର ଉତ୍ପାଦନ କଲେ; ସେ ପୁତ୍ରଙ୍କର ନାମ ନକୁଳ ଓ ସହଦେବ; ତାହାଙ୍କର ସୌନ୍ଦର୍ଯ୍ୟ ପୃଥିବୀରେ ଦେଖିବାକୁ ମିଳଇ ନାହିଁ । ୧୭ । ସେମାନଙ୍କ ସମ୍ବନ୍ଧରେ ମଧ ଆକାଶ ବାଣୀ ହେଲା ଯେ "ସତ୍ତ୍ୱସମ୍ପନ୍ନ ଗୁଣୋପେତ ଓ ରୂପବନ୍ତ ଏହି କୁମାରଦ୍ୱୟ ଅଶ୍ୱିନୀ କୁମାରଙ୍କୁ ବଳି ରୂପ, ଦ୍ରବ୍ୟ, ସମ୍ପଦ ଓ ତେଜରେ ଅଧିକ ଦୀପ୍ତିଶାଳୀ ହେବେ ।"

ହେ ବୈଶ୍ୟପତେ । ଶତଶୃଙ୍ଗ ନିବାସୀ ବ୍ରାହ୍ମଣ ଓ ଋଷିମାନେ ସେହି ପୁତ୍ରମାନଙ୍କର ଅଦ୍ଭୁତ କର୍ମ ଓ ଭକ୍ତି ଦେଖି ପ୍ରୀତମନରେ ନାମକରଣ କଲେ । ଜ୍ୟେଷ୍ଠଙ୍କର ନାମ ଯୁଧିଷ୍ଠିର, ମଧ ନାମ ଭୀମସେନ ତୃତୀୟର ନାମ ଅର୍ଜ୍ଜୁନ, ଏହି ରୂପେ କୁନ୍ତୀଙ୍କର ସୁତମାନଙ୍କର ନାମ କଲେ । ମାଦ୍ରୀ

ପୁତ୍ର ମାନଙ୍କର ପୂର୍ବଜର ନାମ ନକୁଳ ଓ ତାହାଙ୍କର ଅନୁଜଙ୍କର ନାମ ସହଦେବ ହେଲେ । ୨୦ । ଏକ ବର୍ଷ ବୟସ୍କ ହେବା ବେଳେ ସେମାନଙ୍କୁ ପଞ୍ଚବର୍ଷ ବୟସ୍କ ପ୍ରାୟ ବୋଧ ହେଲା; ସେମାନେ ମହାସତ୍ତ୍ୱ, ମହାବୀର୍ଯ୍ୟ ଓ ମହାବଳ ପରାକ୍ରମ ହେଲେ । ସେହି ସୁତମାନଙ୍କୁ ଦେବରୂପୀ ଓ ମହାତେଜସ୍ୱୀ ଦେଖି ନରାଧିପ ପାଣ୍ଡୁ ପରମହର୍ଷ ଲାଭ କଲେ ଓ ଆନନ୍ଦିତ ହେଲେ । ୨୨ । ଶତଶୃଙ୍ଗ ନିବାସୀ ସମସ୍ତ ଋଷିମାନଙ୍କର ଓ ଋଷିପତ୍ନୀଙ୍କର ସେହି କୁମାରମାନେ ପ୍ରିୟ ଭାଜନ ହେଲେ । ୧୩ । ମାଦ୍ରୀଙ୍କ ନିମିତ୍ତ ପାଣ୍ଡୁ ପୁନର୍ବାର କୁନ୍ତୀଙ୍କୁ ଅନୁରୋଧ କଲେ । ହେ ରାଜନ୍ । ପୃଥା ସତୀ ପାଣ୍ଡୁଙ୍କୁ ନିର୍ଜନରେ କହିଲେ, ଅମ୍ଭେ ଏହାଙ୍କୁ ବାରେ କୌଣସି ଦେବତାଙ୍କୁ ସ୍ମରଣ କରିବାକୁ କହିଲୁଁ; ତହିଁରେ ସେ ଥରକେ ଦୁଇଗୋଟି ଅପତ୍ୟ ଲାଭ କରି ଅମ୍ଭଙ୍କୁ ବଞ୍ଚିତ କଲେ । ଅମ୍ଭେ ଏହାଙ୍କ ଠାରୁ ପରିଭବ ପାଇବୁ ବୋଲି ଭୀତ ହେଉଅଛୁ; କୋପ୍ସ୍ତ୍ରୀ ମାନଙ୍କର ଏହିପରି ଗତି ଅଟଇ । ୨୫ ।

ଅମ୍ଭେ ମୂଢ଼ା, ଜାଣି ନ ଥିଲୁଁ ଯେ ଦ୍ୱନ୍ଦ୍ୱ ଦେବତାଙ୍କୁ ଆହ୍ୱାନ କଲେ ଦୁଇଗୋଟି ଫଳ ଲାଭ ହୁଅଇ; ଅତଏବ ଅମ୍ଭଙ୍କୁ ଏହି ବର ଦେଉନ୍ତୁ ଯେ ଏ ବିଷୟରେ ଆଉ କିଛୁ କହିବେ ନାହିଁ । ଏହି ପ୍ରକାରେ ଦେବଦତ୍ତ ମହାବଳ ପଞ୍ଚପୁତ୍ର ପାଣ୍ଡୁଙ୍କର ସମ୍ଭୂତ ହୋଇ କୁରୁବଂଶଙ୍କର କୀର୍ତ୍ତି ବର୍ଦ୍ଧନ କଲେ । ୨୭ । ସେହି କୁମାରମାନେ ଶୁଭଲକ୍ଷଣ ସମ୍ପନ୍ନ, ଚନ୍ଦ୍ରଙ୍କ ପ୍ରାୟ ପ୍ରିୟ ଦର୍ଶନ, ସିଂହପ୍ରାୟ ସେମାନଙ୍କର ଦର୍ପ, ମହାଧନୁର୍ଦ୍ଧର, ସିଂହ ସଦୃଶ ତାହାଙ୍କର ଗମନ, ସେମାନେ ସିଂହୋରସ୍କ, ସିଂହ ସତ୍ତ୍ୱ, ସିଂହାକ୍ଷ, ସିଂହବିକ୍ରମ ଓ ସିଂହ ଗ୍ରୀବ । ଦେବସଦୃଶ ତେଜସ୍ୱୀ ହୋଇ ସେହି ମନୁଷ୍ୟେନ୍ଦ୍ରମାନେ ପରିବର୍ଦ୍ଧିତ ହେଲେ । ୨୯ । ପୁଣ୍ୟସ୍ଥାନ ହିମଗିରିରେ ବିବର୍ଦ୍ଧମାନ ବାଳକମାନେ ସମାଗତ ମହର୍ଷିଙ୍କର ବିସ୍ମୟ ଜାତ କଲେ । ୩୦ । ପଞ୍ଚପାଣ୍ଡବ ଓ ଶତ ସଂଖ୍ୟକ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ଅଳ୍ପକାଳ ମଧ୍ୟରେ ଜଳରେ ପଦ୍ମପ୍ରାୟ ବିବର୍ଦ୍ଧିତ ହେଲେ ।୩୧ ।

## ଅଧ୍ୟାୟ ୧୨୪

ବୈଶମ୍ପାୟନ ବୋଇଲେ—ତଦନନ୍ତର ପାଣ୍ଡୁ ମହାବନ ମଧ୍ୟରେ ରମଣୀୟ ପର୍ବତରେ ସେହି ସୁନ୍ଦର ପଞ୍ଚପୁତ୍ରଙ୍କର ମୁଖାବଲୋକନ କରି ଆପଣା ବାହୁବଳକୁ ଆଶ୍ରୟ କରି ରହିଲେ । ଏକଦା ପ୍ରାଣୀକୁଳର ସମ୍ମୋହନ କାରୀ ବସନ୍ତକାଳ ଉପସ୍ଥିତ ହୁଅନ୍ତେ, ବିବିଧ କୁସୁମ ସମୂହରେ ସୁଶୋଭିତ ବନରେ ଚୈତ୍ର ଓ ବୈଶାଖ ମାସର ସନ୍ଧିକାଳରେ ଭାର୍ଯ୍ୟାଙ୍କ ସହିତ ବିଚରଣ କରୁଥିଲେ । ଚତୁର୍ଦ୍ଦିଗରେ ପଳାଶ, ତିଳକ, ଚୂତ, ଚମ୍ପକ, ପାରିଭଦ୍ର, କର୍ଣ୍ଣିକାର, ଅଶୋକ, ନାଗେଶ୍ୱର କୁରୁବକ ଓ ଅନ୍ୟାନ୍ୟ ପାଦପମାନେ ଫଳ ଓ ପୁଷ୍ପରେ ସୁରଞ୍ଜିତ ହୋଇଥିଲେ । ମତ୍ତଭ୍ରମର-ମାନେ ମଧୁର ଭାବରେ ଗୁଞ୍ଜରୁ ଥିଲେ, ପରଭୃତଙ୍କ ମୁହୁର୍ମୁହୁ ଶବ୍ଦ କରୁ-ଥିଲେ । ୫ । ବିବିଧ ଜଳାଶୟମାନଙ୍କରେ ଶୋଭିତ ହୋଇଥିଲେ । ସେହି ବନକୁ ପ୍ରେକ୍ଷଣ କରି ପାଣ୍ଡୁଙ୍କ ହୃଦୟରେ ମନ୍ମଥ ଜାତ ହେଲେ । ଅମର ପ୍ରାୟ ହୋଇ ପ୍ରହୃଷ୍ଟ ମନରେ ପାଣ୍ଡୁ ସେଠାରେ ବିଚରଣ କରିବା-ବେଳେ ଶୁଭ୍ର ବସନକୁ ପରିଧାନ କରି ମାଦ୍ରୀ ଏକାକିନୀ ତାହାଙ୍କର ପଶ୍ଚାତ୍ ଗମନ କଲେ । ୭ । ତନୁବସନା ଓ ଯୁବତୀ ମାଦ୍ରୀଙ୍କୁ ଦେଖି ଗହନରେ ଅଗ୍ନି ବର୍ଦ୍ଧିତ ହେବା ପ୍ରାୟ ତାହାଙ୍କର କାମ ପରିବର୍ଦ୍ଧିତ ହେଲା । ୮ । ନିର୍ଜନରେ ଏକାକିନୀ ସେହି ରାଜୀବ ଲୋଚନାଙ୍କୁ ବିଲୋକନ କରି ରାଜା କାମର ବଶୀଭୂତ ହୋଇ ସେ କାମକୁ ଦମନ କରିବାକୁ ସମର୍ଥ ହେଲେ ନାହିଁ । ୯ ।

ତତ୍ପରେ ଏହାଙ୍କୁ ରାଜା ସେ ନିର୍ଜନରେ ବଳପୂର୍ବକ ଗ୍ରହଣ କଲେ ଓ ସେ ଦେବୀ ବାରଣ କଲେ ହେଁ ତାହାଙ୍କ ବାରଣ ଘେନିଲେ ନାହିଁ କି ସେ ଯଥାଶକ୍ତି ଆପଣାକୁ ମୁକ୍ତ ହେବାକୁ ଚେଷ୍ଟା କଲେହେଁ ସେ ଚେଷ୍ଟା ତାହାଙ୍କର ନିଷ୍ଫଳ ହେଲା । ୧୦ । କାମରେ ବିହ୍ୱଳ ହୋଇ ସେ ମଧ୍ୟ ଶାପ ବିଷୟ ବିସ୍ମୃତ ହେଲେ ଓ ବଳପୂର୍ବକ ମୈଥୁନ ଧର୍ମରେ ଅଭିଗମନ କଲେ । ୧୧ । ହେ କୌରବ୍ୟ ! ତତ୍କାଳରେ ପାଣ୍ଡୁ ବିଧି ପ୍ରେରିତ ହୋଇ ଜୀବନାବଧିର ଶେଷ ନିମିତ୍ତ ଶାପଜନିତ ଭୟକୁ ପରିତ୍ୟାଗ କରି ମନ୍ମଥର ବଶୀଭୂତ ହେଲେ । ୧୨ । ସେହି କାମାତ୍ମଙ୍କର ବୁଦ୍ଧି ସାକ୍ଷାତ୍ କାଳ କର୍ତ୍ତୃକ ବିମୋହିତ ହେଲା ଓ ଇନ୍ଦ୍ରିୟମାନେ ମଥିତ ହେବାରୁ ଚେତନା ପ୍ରଣଷ୍ଟ ହେଲା । ୧୩ । ପରମ ଧର୍ମାତ୍ମା କୁରୁନନ୍ଦନ

ପାଣ୍ଡୁ ଭାର୍ଯ୍ୟାଙ୍କ ସହିତ ସଙ୍ଗତହୋଇ କାଳ ଧର୍ମରେ ନିୟୋଜିତ ହେଲେ । ।୧୪। ତତ୍ପରେ ହତଚେତନ ରାଜାଙ୍କୁ ମାଦ୍ରୀ ଆଲିଙ୍ଗନ କରି ପୁନଃ ପୁନଃ ଅତି ଦୁଃଖରେ ବିଳାପ କଲେ । ୧୫ ।

ତତ୍ପରେ ଯେଉଁଠାରେ ରାଜା ତଦ୍ରୂପ ଅବସ୍ଥାରେ ଥିଲେ ସେଠାକୁ ପୁତ୍ରଙ୍କ ସହିତ କୁନ୍ତୀ ଓ ମାଦ୍ରୀଙ୍କର ଦୁଇପୁତ୍ର ସମାଗମନ କଲେ । ୧୬ । ତଦନନ୍ତର ହେ ରାଜନ୍ ! ମାଦ୍ରୀ ଆର୍ତ୍ତ ସ୍ୱରରେ କୁନ୍ତୀଙ୍କୁ ବୋଇଲେ, ତୁମ୍ଭେ ଏକାକୀ ଆମ୍ଭ ସଙ୍ଗରେ ଆସ, ପୁତ୍ରମାନେ ଏହିଠାରେ ଥାଉନ୍ତୁ । ।୧୭। ତାହା ଶୁଣି କୁନ୍ତୀ ପୁତ୍ରମାନଙ୍କୁ ସେଠାରେ ରଖି 'ମଲି' ବୋଲି ଡାକି ସହସା ସେଠାକୁ ଆଗମନ କଲେ । ପାଣ୍ଡୁ ଓ ମାଦ୍ରୀଙ୍କୁ ଧରାତଳରେ ଶୟାନ ଦେଖି କୁନ୍ତୀ ଶୋକ-ପରିତାପୀ ହୋଇ ଅତିଶୟ ବିଳାପ କଲେ ।୧୯। ଏହି ଜିତେନ୍ଦ୍ରିୟ ବୀରଙ୍କୁ ଆମ୍ଭେ ସତତ ରକ୍ଷା କରିଥାଉଁ; ଏ ଋଷିଙ୍କ ଶାପକୁ ଜାଣି ଶୁଣି କିପରି ତୁମ୍ଭର ମନା ନ ମାନି ଆକ୍ରମଣ କଲେ । ୨୦ । ହେ ମାଦ୍ରୀ ! ଏହି ନରାଧିପଙ୍କୁ ତୁମ୍ଭର ରକ୍ଷା କରିବାର ଉଚିତ ଥିଲା । ତୁମ୍ଭେ କିପରି ନିର୍ଜନ ସ୍ଥାନରେ ତାହାଙ୍କୁ ଲୋଭାସକ୍ତ କଲ ? । ୨୧ । ସେ ଶାପକୁ ଚିନ୍ତା କରି ରାଜା ସର୍ବଦା ଦୀନ ଭାବରେ ଥାନ୍ତି, ନିର୍ଜ୍ଜନରେ ତୁମ୍ଭଙ୍କୁ ଦେଖି ତାହାଙ୍କର କିପରି ହର୍ଷୋଦୟ ହେଲା । ୨୨ । ହେ ବାହ୍ଲୀକି । ତୁମ୍ଭେ ଧନ୍ୟା, ଯେ ହେତୁ ତୁମ୍ଭେ ମହୀପତିଙ୍କର ପ୍ରହୃଷ୍ଟ ବଦନ ଦର୍ଶନ କଲ । ୨୩ ।

ମାଦ୍ରୀ ବୋଇଲେ—ହେ ଦେବି । ଆମ୍ଭେ ବିଳାପ କରି ପୁନଃ ପୁନଃ ପ୍ରତିଷେଧ କଲୁଁ, ତଥାପି ରାଜା ଶାପଜନିତ ଦୁରଦୃଷ୍ଟକୁ ସଫଳ କରିବା ନିମିତ୍ତ ଆପଣାକୁ ନିବାରଣ କରି ପାରିଲେ ନାହିଁ । ୨୪ ।

କୁନ୍ତୀ ବୋଇଲେ—ଆମ୍ଭେ ଜ୍ୟେଷ୍ଠା ଧର୍ମପତ୍ନୀ; ଆମ୍ଭର ଧର୍ମ୍ମଫଳ ଜ୍ୟେଷ୍ଠ ହେବା ଉଚିତ, ଅବଶ୍ୟ କାର୍ଯ୍ୟରୁ; ହେ ମାଦ୍ରୀ । ଆମ୍ଭଙ୍କୁ ନିବୃତ୍ତ କର ନା ।୨୫। ଆମ୍ଭେ ପରଲୋକଗତ ଭର୍ତ୍ତାଙ୍କର ଅନୁଗାମିନୀ ହେବୁଁ, ତୁମ୍ଭେ ଏହାଙ୍କୁ ପରିତ୍ୟାଗ କରି ଉତ୍‌ଥାନ କର ଓ ଏହି ପୁତ୍ରମାନଙ୍କୁ ପ୍ରତିପାଳନ କର । ୨୬ ।

ମାଦ୍ରୀ ବୋଇଲେ—ଆମ୍ଭେ ଭର୍ତ୍ତାଙ୍କୁ ତ୍ୟାଗ ନ କରି ତାହାଙ୍କ ସଙ୍ଗରେ ଥିଲୁଁ । କାମ ଭୋଗରେ ଆମ୍ଭେ ପରିତୃପ୍ତ ହୋଇନାହୁଁ । ତୁମ୍ଭେ

ଜ୍ୟେଷ୍ଠା, ଅତଏବ ଆମ୍ଭଙ୍କୁ ଅନୁମତି ପ୍ରଦାନ କର । ଏହି ଭରତ ସତ୍ତମ ! ଆମ୍ଭଙ୍କ ଅଭିଗମନ କରି ଯମ ପ୍ରାପ୍ତ ହେଲେ, ଅତଏବ ଯମ ସଦନରେ ସୁଦ୍ଧା ଅମ୍ଭଙ୍କୁ ଇଚ୍ଛନ୍ତି, ଏହାଙ୍କର କପରି କାମ ତୃପ୍ତି ହେବ । ୨୮ । ଅର୍ଯ୍ୟେ ! ଆମ୍ଭେ ଜୀବିତ ଥିଲେ ତୁମ୍ଭ ସୁତମାନଙ୍କୁ ଯେ ପୂର୍ବବତ୍ ବିଶେଷରେ ପ୍ରତିପାଳନ କରିବୁଁ ଏପରି ବୋଧ ହେଉନାହିଁ; ତଜ୍ଜନ୍ୟ ଆମ୍ଭଙ୍କୁ ପାପ ସ୍ପର୍ଶ କରି ପାରେ, ହେ କୁନ୍ତି ! ତୁମ୍ଭେ ଆମ୍ଭର ଏହି ପୁତ୍ର ଦୁହିଙ୍କୁ ସ୍ୱପୁତ୍ରବୋଧରେ ବ୍ୟବହାର କରିବ; ଏହି ରାଜା ଆମ୍ଭଙ୍କୁ କାମନା କରି ପରେତ ହୋଇ ଅଛନ୍ତି । ଅତଏବ ଏହାଙ୍କର ଶରୀର ସହିତ ଆମ୍ଭର ଏହି ଶରୀରକୁ ଆବୃତ କରି ଦଗ୍ଧ କରିବ । ଆର୍ଯ୍ୟେ ଆମ୍ଭର ଏହି ପ୍ରିୟ କାର୍ଯ୍ୟ କର । ୩୧ । ଏହି ବାଳକଙ୍କ ପ୍ରତି ଅବହିତ ହେଲେ ତୁମ୍ଭେ ଆମ୍ଭର ହିତକାରିଣୀ ହେବ ! ଏତଦ୍‌ବ୍ୟତିରେକେ ଆମ୍ଭର ବକ୍ତବ୍ୟ ଆଉ କିଛି ନାହିଁ । ୩୨ ।

ବୈଶମ୍ପାୟନ ବୋଇଲେ—ଧର୍ମ୍ମପତ୍ନୀ ଯଶସ୍ୱିନୀ ମଦ୍ର-ରାଜ ଦୁହିତା ଏହା କହି ଅନନ୍ତର ବିଳମ୍ବରେ ଚିତାଗ୍ନିସ୍ଥିତ ନରଶ୍ରେଷ୍ଠ ପାଣ୍ଡୁଙ୍କର ଅନୁଗାମିନୀ ହେଲେ । ୩୩ ।

---

## ଅଧ୍ୟାୟ ୧୨୬

ବୈଶମ୍ପାୟନ ବୋଇଲେ—ତଦନନ୍ତର ବେଦ ବିଶାରଦ ବେଦକଳ୍ପ ମହର୍ଷିମାନେ ପାଣ୍ଡୁଙ୍କ ମୃତ୍ୟୁ ଦେଖି ପରସ୍ପର ମନ୍ତ୍ରଣା କଲେ ।

ତାପସବୃନ୍ଦ ବୋଇଲେ ଯେ ମହା ଯଶସ୍ୱୀ ମହାତ୍ମା ପାଣ୍ଡୁ ରାଜ୍ୟ ପରିତ୍ୟାଗ କରି ଏହି ସ୍ଥାନରେ ତପୋନୁଷ୍ଠାନ ପୂର୍ବକ ତପସ୍ୱୀମାନଙ୍କର ଶରଣାପନ୍ନ ହୋଇଥିଲେ । ୨ । ସେ ଦାରାମାନଙ୍କୁ ଓ ଜାତମାତ୍ର ପୁତ୍ରଗଣଙ୍କୁ ଏହି ସ୍ଥାନରେ ଆପଣମାନଙ୍କ ନିକଟରେ ଉପନିଧି ସ୍ୱରୂପ ପ୍ରଦାନ କରି ଏହି ସ୍ଥାନରୁ ସ୍ୱର୍ଗ ଗମନ କଲେ । ୩ । ଆମ୍ଭେମାନେ ସେହି ମହାତ୍ମାଙ୍କର ସ୍ତ୍ରୀ, ପୁତ୍ର ଓ ଦେହକୁ ଗ୍ରହଣ କରି ତାହାଙ୍କର ରାଜଧାନୀକୁ ଗମନ କରିବୁଁ; ଏ ଆମ୍ଭର ଧର୍ମ୍ମ ଅଟେ । ୪ ।

ବୈଶମ୍ପାୟନ ବୋଇଲେ ଉଦାରଚିତ୍ତ ସିଦ୍ଧ ଓ ଦେବ ସଦୃଶ ମହର୍ଷିମାନେ ପରସ୍ପର ଡକାଡକି ହୋଇ ପାଣ୍ଡୁଙ୍କ ପୁତ୍ରକୁ ଅଗ୍ରରେ କରି

ହସ୍ତିନାପୁରକୁ ଗମନ କରିବାକୁ ଓ ସେଠାରେ ପାଣ୍ଡବମାନଙ୍କୁ ଭୀଷ୍ମ ଓ ଧୃତରାଷ୍ଟ୍ରଙ୍କୁ ସମର୍ପଣ କରିବା ନିମିତ୍ତ ବାଞ୍ଛା କଲେ । ୬ । ସେହିକ୍ଷଣି ତପସ୍ୱୀମାନେ ପାଣ୍ଡୁଙ୍କର ଦାରା, ପୁତ୍ର ଓ ଦୁଇ ମୃତ ଶରୀରକୁ ଘେନି ପ୍ରସ୍ଥାନ କଲେ । ୭ । ପୁତ୍ରବତ୍ସଳା କୁନ୍ତୀ ପୂର୍ବେ ଚିରକାଳ ସୁଖିନୀ ହୋଇଲେ ହେଁ, ବର୍ତ୍ତମାନ ସମଭିବ୍ୟାହାରରେ ଦୀର୍ଘ ପଥକୁ ସଂକ୍ଷିପ୍ତ ଜ୍ଞାନ କଲେ । ୮ । ସେହି ଯଶସ୍ୱିନୀ ଅଦୀର୍ଘ କାଳରେ କୁରୁଜାଙ୍ଗଲରେ ଉପସ୍ଥିତ ହୋଇ ନଗରର ପ୍ରଧାନ ଦ୍ୱାରକୁ ପ୍ରାପ୍ତ ହେଲେ । ୯ । ତପସ୍ୱୀମାନେ ଦ୍ୱାରୀଙ୍କୁ ବୋଇଲେ ଯେ ରାଜାଙ୍କଠାରେ ପ୍ରକାଶ କର; ସେମାନେ ଗମନ କରି କ୍ଷଣିକ ମଧ୍ୟରେ ସଭାରେ ନିବେଦନ କଲେ । ୧୦ । ତତ୍କାଳରେ ହାସ୍ତିନ ପୁରରେ ସହସ୍ର ସହସ୍ର ଚାରଣଗଣ ଓ ମୁନିମାନଙ୍କର ସମାଗମ ଶ୍ରବଣ କରି ନାଗପୁର ବାସୀ ପ୍ରଜା ନିକର ବିସ୍ମୟାବିଷ୍ଟ ହେଲେ । ୧୧ ।

ଅନନ୍ତର ଆଦିତ୍ୟଙ୍କର ଉଦୟ ହେବାର ମୁହୂର୍ତ୍ତିକାଳ ପରେ ପୁରବାସିମାନେ ଦାରପୁତ୍ର ସମଭିବ୍ୟାହାରରେ ତପସ୍ୱୀମାନଙ୍କୁ ଦେଖିବାକୁ ଆଗମନ କଲେ । ୧୨ । ସ୍ତ୍ରୀ ସଂଘ, କ୍ଷତ୍ରସଂଘ ଯାନମାନଙ୍କରେ ଆରୋହଣ କରି ଓ ବ୍ରାହ୍ମଣ ସ୍ତ୍ରୀମାନଙ୍କ ସମଭିବ୍ୟାହାରରେ ବ୍ରାହ୍ମଣମାନେ ଅଥଚ ବୈଶ୍ୟ ଓ ଶୂଦ୍ରମାନେ ସମସ୍ତ ସମାଗତ ହେଲେ । ସେ ସମୟରେ କେହି କାହାକୁ ଈର୍ଷା କଲେ ନାହିଁ । ସମସ୍ତଙ୍କର ବୁଦ୍ଧି ଧର୍ମାନୁସାରିଣୀ ହୋଇଥାଏ । ୧୪ । ଶାନ୍ତନୁପୁତ୍ର ଭୀଷ୍ମ, ବାହ୍ଲିକ, ସୋମଦତ୍ତ, ପ୍ରଜ୍ଞାଚକ୍ଷୁ ରାଜର୍ଷି ଧୃତରାଷ୍ଟ୍ର ବିଦୁର, ଦେବୀ ସତ୍ୟବତୀ, ଯଶସ୍ୱିନୀ କୌଶଲ୍ୟା ଓ ରାଜପତ୍ନୀ ଗଣଙ୍କର ସହ ଗାନ୍ଧାରୀ ମଧ୍ୟ ନିର୍ଗତା ହେଲେ । ଦୁର୍ଯ୍ୟୋଧନ ପ୍ରଭୃତି ଧୃତରାଷ୍ଟ୍ରଙ୍କର ଶତ ସଂଖ୍ୟ ପୁତ୍ରମାନେ ମଧ୍ୟ ବିବିଧ ବସନ ଭୂଷଣ ପରିଧାନ କରି ବିନିର୍ଗତ ହେଲେ । ୧୭ ।

ପୁରୋହିତଙ୍କ ସହ କୌରବ ଗଣ ସେହି ସବୁ ମହର୍ଷିଙ୍କୁ ଦେଖି ମସ୍ତକ ଦ୍ୱାରା ଅଭିବାଦନ କରି ସମ୍ମୁଖରେ ଉପବିଷ୍ଟ ହେଲେ । ୧୮ । ସେହିପରି ନଗରବାସୀ ଓ ଜନପଦ ବାସୀ ସମସ୍ତେ ଭୂମି ମସ୍ତକ ଦ୍ୱାରା ଅଭିବାଦନ କରି ସେମାନଙ୍କୁ ବେଷ୍ଟନ କରି ଉପବିଷ୍ଟ ହେଲେ । ୧୯ । ହେ ବିପ୍ରେ ! ତଦନନ୍ତର ଭୀଷ୍ମ ସେ ଜନ ସମୂହଙ୍କୁ ନିଃଶବ୍ଦ ହେବାର ଜାଣି ଯଥାବିଧି ପାଦ୍ୟ ଓ ଅର୍ଘ୍ୟ ଦ୍ୱାରା ମହର୍ଷିମାନଙ୍କୁ ପୂଜା କରି ରାଜ୍ୟ ଓ

ରାଷ୍ଟ୍ର * ସମୁଦାୟ ସେମାନଙ୍କୁ ସମର୍ପଣ କଲେ । ୨୦ । ତତ୍ପରେ ଜଣେ ଜରଠ ଓ ଅଜ୍ଞାନଧାରୀ ବୃଦ୍ଧତମ ଋଷି ଅନ୍ୟ ସମସ୍ତ ଋଷିଙ୍କର ମତ ଘେନି ଉତ୍ଥାନ କରି ବୋଇଲେ—କୁରୁବଂଶର ଯେଉଁ ଦାୟାଦ ପାଣ୍ଡୁ ନାମରେ ନରାଧିପ ହୋଇ କାମ ଭୋଗକୁ ପରିତ୍ୟାଗ କରି ଏଠାରୁ ଶତଶୃଙ୍ଗରେ ବ୍ରହ୍ମଚର୍ଯ୍ୟ ବ୍ରତାବଲମ୍ବୀ ହୋଇ ବାସ କରୁଥିଲେ, ତାହାଙ୍କର ଦୈବୀ-କାରଣ ବଶରୁ ସାକ୍ଷାଦ୍ଧର୍ମଙ୍କଠାରୁ ଏହି ପୁତ୍ର ଯୁଧିଷ୍ଠିର ଜନ୍ମଗ୍ରହଣ କରିଅଛନ୍ତି । ୨୩ । ସେହିପରି ସେ ମହାତ୍ମା ନରପତିଙ୍କର ବଳଶ୍ରେଷ୍ଠ ଭୀମ ନାମକ ମହାବଳ ପୁତ୍ର ପବନଙ୍କ ଦ୍ୱାରା ପ୍ରଦତ୍ତ ହୋଇ ଅଛନ୍ତି । ଏହି ଧନଞ୍ଜୟ କୁନ୍ତୀଙ୍କ ଗର୍ଭରେ ପୁରୁହୂତଙ୍କଠାରୁ ଜାତ ହୋଇ ଅଛନ୍ତି । ଯାହାଙ୍କର କୀର୍ତ୍ତି ସମସ୍ତ ମହାଧନୁର୍ଦ୍ଧରଙ୍କର କୀର୍ତ୍ତିକୁ ପରାଭୂତ କରିବ । ୨୫ ।

ମାଦ୍ରୀଙ୍କଠାରୁ ଯେଉଁ ମହାଧାନୁଷ୍କ ନରୋତ୍ତମ ସୁତଦ୍ୱୟ ଅଶ୍ୱିନୀ କୁମାରଙ୍କ ଅଂଶରେ ଜନ୍ମିଅଛନ୍ତି ସେ ଦୁହିଁଙ୍କୁ ଆପଣମାନେ ଦେଖିବା ହେଉନ୍ତୁ । ୨୬ । ନିତ୍ୟ ଧର୍ମକର୍ମରେ ଓ ବନବାସରେ ରତ ଥାଇ ଯଶସ୍ୱୀ ପାଣ୍ଡୁ ନଷ୍ଟପ୍ରାୟ ପୈତାମହ ବଂଶକୁ ପୁନରୁଦ୍ଧାର କଲେ । ୨୭ । ତୁମ୍ଭେମାନେ ପାଣ୍ଡୁଙ୍କର ପୁତ୍ର ମାନଙ୍କର ଜନ୍ମ ବୃଦ୍ଧି ଓ ବେଦାଧ୍ୟୟନ ପର୍ଯ୍ୟାଲୋଚନା କରି ସତତ ପରମ ପ୍ରୀତି ପ୍ରାପ୍ତ ହେବ । ୨୮ । ସାଧୁଜନଙ୍କ ପଥରେ ଥାଇ ପୁତ୍ରଲାଭ କରି ଆଜକୁ ସପ୍ତଦଶ ଦିବସ ପୂର୍ବେ ପିତୃଲୋକକୁ ଗମନ କଲେ । ୨୯ । ତାହାଙ୍କୁ ଚିତାସ୍ଥିତ ଓ ବୈଶ୍ୱାନର ମୁଖରେ ହୁତ ହେବାର ଦେଖି ମାଦ୍ରୀ ମଧ୍ୟ ଜୀବନ ତ୍ୟାଗ କରି ସେହି ପାବକରେ ପ୍ରବିଷ୍ଟ ହେଲେ । ୩୦ । ସେହି ପତିବ୍ରତା ପତିଙ୍କ ସହିତ ପରଲୋକକୁ ଗମନ କରିଅଛନ୍ତି; ଏବେ ସେମାନଙ୍କର ପାରଲୌକିକ କ୍ରିୟା ଯାହା କରିବାର ହୁଏ ତାହା କର । ୩୧ । ଏହି ତାହାଙ୍କର ମୃତ ଶରୀର ଓ ଏହିମାନେ ତାହାଙ୍କର ପୁତ୍ର; ଏହାଙ୍କୁ ଘେନ ହେ ପରନ୍ତପ । ତୁମ୍ଭେମାନେ ପ୍ରେତ କାର୍ଯ୍ୟ ସମ୍ପାଦନ କର । ଅନ୍ତ୍ୟେଷ୍ଟି-କ୍ରିୟା ଶେଷ ହେଲେ ମହାଯଶା ସର୍ବ ଧର୍ମଜ୍ଞ, କୁରୁକୁଳୋଦ୍‌ବହ ପାଣ୍ଡୁ ପିତୃ-ଯଜ୍ଞ-ଭାଗୀ ହେଉନ୍ତୁ । ୩୩ ।

* ରାଜ୍ୟର ଅର୍ଥ ଦେଶ ଓ ରାଷ୍ଟ୍ରର ଅର୍ଥ ବଳ ଓ ବାହନ ସହିତ ରାଜାଙ୍କର ସମସ୍ତ ଉପକରଣ ଓ ଅଧିକାର ।

ବୈଶମ୍ପାୟନ ବୋଇଲେ—କୁରୁବଂଶୀଙ୍କ ଏହିପରି କହି ଦେଖୁଁ-ଦେଖୁଁ କ୍ଷଣ କାଳ ମଧ୍ୟରେ ତପସ୍ୱୀମାନେ ଗୁହ୍ୟକ ଗଣଙ୍କ ସହିତ ଅନ୍ତର୍ହିତ ହେଲେ । ଗନ୍ଧର୍ବ * ନଗର ସଦୃଶ ସେମାନଙ୍କ ଅନ୍ତର୍ହିତ ହେବାର ଦେଖି ସମସ୍ତେ ଅତିଶୟ ବିସ୍ମୟାବିଷ୍ଟ ହେଲେ ।

---

## ଅଧ୍ୟାୟ ୧୨୭

ଧୃତରାଷ୍ଟ୍ର ବୋଇଲେ—ହେ ବିଦୁର ! ରାଜବିଧି ଅନୁସାରେ ରାଜସିଂହ ପାଣ୍ଡୁଙ୍କର ଓ ମାଦ୍ରୀଙ୍କର ସମସ୍ତ ପ୍ରେତକାର୍ଯ୍ୟ ସମ୍ପାଦନ କରାଅ । ୧ । ପାଣ୍ଡୁ ଓ ମାଦ୍ରୀଙ୍କ ଉଦ୍ଦେଶ୍ୟରେ ପଶୁ, ବସ୍ତ୍ର, ରତ୍ନ ଓ ବିବିଧ ଧନ ଯାହାଙ୍କର ଯେପରି ବାଞ୍ଛିତ ତାହାଙ୍କୁ ତଦ୍ରୂପ ପ୍ରଦାନ କର । କୁନ୍ତୀ ଯହିଁରେ ମାଦ୍ରୀଙ୍କର ସତ୍କାର କରନ୍ତି ତାହା କର ଓ ମାଦ୍ରୀଙ୍କୁ ଏପରି ସୁସମ୍ବୃତ କର ଯେ ଅନ୍ୟ କଥା ଦୂରେ ଥାଉ ବାୟୁ କି ଆଦିତ୍ୟ ସୁଦ୍ଧା ତାହାଙ୍କର ଦର୍ଶନ ନ ପାଆନ୍ତି । ପ୍ରଶଂସନୀୟ ନରାଧିପ ପାଣ୍ଡୁଙ୍କର ସୁର ସୁତୋପମ ବୀର ପଞ୍ଚପୁତ୍ର ଜାତ ହୋଇ ଅଛନ୍ତି; ଅତଏବ ସେ ଅନଘଙ୍କ ନିମିତ୍ତ ଶୋକ କରିବା କର୍ତ୍ତବ୍ୟ ନୁହେଁ । ୪ ।

ବୈଶମ୍ପାୟନ ବୋଇଲେ—ହେ ଭାରତ ! ବିଦୁର ତାହାଙ୍କୁ ତଥା ବୋଲି କହି ଭୀଷ୍ମଙ୍କ ସହିତ ପରମ ପବିତ୍ର ସ୍ଥାନରେ ପାଣ୍ଡୁଙ୍କର ସଂସ୍କାର କରିବାରେ ପ୍ରବୃତ୍ତ ହେଲେ । ୫ । ତଦନନ୍ତର ରାଜ ପୁରୋହିତମାନେ ସତ୍ୱର ନଗରରୁ ପାଣ୍ଡୁ ରାଜାଙ୍କ ଦାହାର୍ଥ ଘୃତର ସୁଗନ୍ଧରେ ଜାତାଗ୍ନି ଘେନି ବହିର୍ଗତ ହେଲେ । ୬ । ଅନନ୍ତର ଅମାତ୍ୟ, ଜ୍ଞାତି ଓ ବାନ୍ଧବମାନେ ସେହି ସମୟ-ଜାତ ବିବିଧ ପୁଷ୍ପରେ, ଉତ୍କୃଷ୍ଟ ଗନ୍ଧ ଦ୍ରବ୍ୟରେ, ମହାମୂଲ୍ୟ ବସ୍ତ୍ରରେ ଓ ମାଲ୍ୟ ପ୍ରଭୃତିରେ ପାଣ୍ଡୁଙ୍କୁ ଓ ମାଦ୍ରୀଙ୍କୁ ଅଳଂକୃତ କରି ଅଥଚ

---

* ଆକାଶରେ ଯେଉଁ ସବୁ ମେଘ ଖଣ୍ଡ ବାୟୁଦ୍ୱାରା ସଞ୍ଚାଳିତ ହୋଇ ଇତସ୍ତତଃ ସଞ୍ଚରଣ କରନ୍ତି, ତହିଁରେ ଅନେକ ଲୋକେ ଗୃହ, ଦ୍ୱାର, ତୋରଣ, ମନ୍ଦିର, ଗଜବାଜି ପ୍ରଭୃତି କଳ୍ପନା କରନ୍ତି; ତାହାକୁ ଗନ୍ଧର୍ବ ନଗର ବୋଲାଯାଏ । ଗନ୍ଧର୍ବ ଶବ୍ଦର ଅର୍ଥ ଆକାଶ; ଗନ୍ଧର୍ବ ନଗରର ଅର୍ଥ ଆକାଶରେ କଳ୍ପିତ ଯେଉଁ ନଗର ଦୃଶ୍ୟ ହୋଇ କ୍ଷଣବିଧ୍ୱଂସୀ ହୁଅଇ ।

ଶିବିକାକୁ ମଧ୍ୟ ତଦ୍ରୂପ ଅଳଙ୍କୃତ ଓ ମହାଧନ ବସନ ଦ୍ୱାରା ଆଚ୍ଛାଦିତ କରି ସେହି ସୁଶୋଭିତ ଯାନର ଚତୁଃପାର୍ଶ୍ୱରେ ସନ୍ନିହିତ ହେଲେ । ପରମାଲଙ୍କୃତା ନରମାନେ ମାଦ୍ରୀଙ୍କ ସହିତ ସୁସମ୍ବୃତ ସେହି ନରସିଂହଙ୍କୁ ପ୍ରଧାନ ଯାନରେ ବହନ କଲେ । ୯ । ତତ୍ପରେ ଶ୍ୱେତ-ଅତପତ୍ର, ଚାମର, ବ୍ୟଜନ ଓ ସର୍ବପ୍ରକାର ବାଦିତ୍ର ନାଦରେ ଅଳଙ୍କୃତ କଲେ । ୧୦ । ପାଣ୍ଡୁଙ୍କର ସେହି ଔର୍ଦ୍ଧ୍ୱଦୈହିକ କ୍ରିୟାରେ ଶତ ଶତ ନରମାନେ ବହୁରତ୍ନ ଧେନୁ ଯାଚକମାନଙ୍କୁ ବିତରଣ କଲେ । ୧୧ । ଅନନ୍ତର ପାଣ୍ଡୁଙ୍କ ନିମିତ୍ତ ଶ୍ୱେତ ଛତ୍ର, ବୃହତ୍ ଚାମର ଓ ରୁଚିର ବସନମାନଙ୍କୁ ଆହରଣ କଲେ । ୧୨ ।

ଶୁକ୍ଳବାସ ପରିଧାୟୀ ଯାଜକମାନଙ୍କ ଦ୍ୱାରା ହୂୟମାନ ହୁତାଶନ, ଦୀପ୍ୟମାନ୍ ଓ ଅଳଙ୍କୃତ ହୋଇ ତାହାଙ୍କ ଅଗ୍ରେ ଗମନ କଲେ । ୧୩ । ସହସ୍ର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନେ ଶୋକ ସନ୍ତପ୍ତ ହୋଇ ରୋଦନ କରି ସେହି ନରାଧିପଙ୍କର ପଶ୍ଚାତ୍ ଗମନ କଲେ ଓ ବୋଇଲେ—ହେ ନରାଧିପ ! ତୁମ୍ଭେ ଅମ୍ଭଙ୍କୁ ପରିତ୍ୟାଗ କରି ଓ ଶାଶ୍ୱତ ଦୁଃଖରେ ନିକ୍ଷିପ୍ତ କରି ଓ ଅନାଥ କରି କେଉଁଠାକୁ ଗମନ କରୁଅଛ ? ଅନନ୍ତର ପାଣ୍ଡବଗଣ, ଭୀଷ୍ମ ଓ ବିଦୁର ରୋଦନ କରି କରି ଗଙ୍ଗାତୀରରେ ସମ ଓ ପବିତ୍ର ସ୍ଥାନରେ ରମଣୀୟ ବନ ପ୍ରଦେଶରେ ଅକ୍ଲିଷ୍ଟ କର୍ମା, ସତ୍ୟବାଦୀ ଓ ସିଂହର୍ଷି ନୃସିଂହ ପାଣ୍ଡୁଙ୍କର ଶିବିକାକୁ ଅବତାରଣ କଲେ । ୧୭ । ତଦନନ୍ତର ସେମାନେ ସମସ୍ତ ତାହାଙ୍କର ଶରୀରକୁ କୃଷ୍ଣାଗୁରୁ ଦ୍ୱାରା ଲିପ୍ତକରି, ଦିବ୍ୟଚନ୍ଦନରେ ଚର୍ଚ୍ଚିତ ଓ ସର୍ବଗନ୍ଧରେ ଅଧିବାସିତ କରି ସୁବର୍ଣ୍ଣ ଘଟରେ ପୂରିତ ଜଳ ଦ୍ୱାରା ସେଚନ କଲେ । ତତ୍ପରେ ଶୁକ୍ଳଚନ୍ଦନରେ ସର୍ବାଙ୍ଗକୁ ଲିପ୍ତ କରି ପୁନର୍ବାର କୃଷ୍ଣାଗୁରୁ ମିଶ୍ରିତ ତୁଙ୍ଗ ରସରେ ସଂଯୁକ୍ତ କଲେ; ପରେ ଦେଶ-ଜାତ ଶୁକ୍ଳ ବସନରେ ସଂଯୋଜିତ କଲେ । ୧୯ । ସେହି ନରବ୍ୟାଘ୍ର ବସନ ଦ୍ୱାରା ଆଚ୍ଛନ୍ନ ହୋଇ ମହାମୂଲ୍ୟ ଶରୀରରେ ରହି ସେ ନରଶ୍ରେଷ୍ଠ ସଜୀବ ପ୍ରାୟ ଦୃଶ୍ୟ ହେଲେ । ୨୦ । ଅନନ୍ତର ଯାଜକମାନଙ୍କ ଦ୍ୱାରା ଅନୁଜ୍ଞାତ ପ୍ରେତକର୍ମ୍ମ ଅନୁଷ୍ଠିତ ହୁଅନ୍ତେ ସେମାନେ ଘୃତାବସିକ୍ତ ରାଜାଙ୍କୁ ସ୍ୱଳଙ୍କୃତ ମାଦ୍ରୀଙ୍କ ସହ ତୁଙ୍ଗ ଓ ପଦ୍ମନାମକ ଗନ୍ଧଦ୍ରବ୍ୟ ମିଶ୍ରିତ ସୁଗନ୍ଧି ଚନ୍ଦନ କାଷ୍ଠ ଓ ଅନ୍ୟାନ୍ୟ ବିବିଧ ଗନ୍ଧ ଦ୍ରବ୍ୟ ଦ୍ୱାରା ଯଥା ବିଧାନରେ ଦାହ କଲେ । ୨୨ ।

ସେ ସମୟରେ କୌଶଲ୍ୟା ଦୁହିଙ୍କର ଶରୀର ଦର୍ଶନ କରି ହା ପୁତ୍ର ! ହା ପୁତ୍ର ! କହି ଧରଣୀରେ ପତିତ ହେଲେ । ୨୩ । ପୌର ଓ ଜନପଦବାସୀ ନରମାନେ କୌଶଲ୍ୟାଙ୍କୁ ତାଦୃଶ ଆର୍ତ୍ତ ପତିତ ହେବାର ଦେଖି ରାଜଭକ୍ତିରେ ସଦୟ ଓ ଦୁଃଖ ସନ୍ତପ୍ତହୋଇ ରୋଦନ କଲେ ।୨୪। ସେମାନଙ୍କର ଓ କୁନ୍ତୀଙ୍କର ଆର୍ତ୍ତନାଦରେ ଉତ୍ପତ୍ୟ ତିର୍ଯ୍ୟକ ଯୋନିଗତ ସମୁଦାୟ ପ୍ରାଣିମାନେ ମଧ୍ୟ କାତର ହୋଇ ମନୁଷ୍ୟଙ୍କ ସହିତ ସମଭାବରେ କ୍ରନ୍ଦନ କଲା ପ୍ରାୟ ବୋଧ ହେଲା । ୨୫ ।

ଶାନ୍ତନୁ ପୁତ୍ର ଭୀଷ୍ମ, ମହାମତି ବିଦୁର ଓ ସମସ୍ତ କୌରବ ମାନେ ଅତିଶୟ ଦୁଃଖିତ ହୋଇ ବିଳାପ କଲେ । ୨୬ । ତତ୍ପରେ ଭୀଷ୍ମ, ବିଦୁର ଓ ଧୃତରାଷ୍ଟ୍ରଙ୍କ ସହ ପାଣ୍ଡବମାନେ ଓ କୁରୁନାରୀମାନେ ତାହାଙ୍କର ଉଦକ କ୍ରିୟା କଲେ । ୨୭ । ଶାନ୍ତନୁତନୟ ଭୀଷ୍ମ ସମସ୍ତ ପାଣ୍ଡବ ମାନେ ବିଦୁର ଓ ଜ୍ଞାତିବର୍ଗ ରୋଦନ ପୂର୍ବକ ତାହାଙ୍କର ଉଦକ କ୍ରିୟା କଲେ । ୨୮ । ହେ ରାଜନ୍ । ଉଦକ କ୍ରିୟା ସମାପ୍ତି ପରେ ଶୋକ ସନ୍ତପ୍ତ ପାଣ୍ଡବମାନଙ୍କୁ ସଚିବ ପ୍ରଭୃତି ପ୍ରଜାବର୍ଗ ଶୋକ କରନା ବୋଲି ବାରଣ କଲେ । ପାଣ୍ଡବମାନେ ଯେପରି ସବାନ୍ଧବରେ ଭୂମି ଶୟନ କଲେ, ତଦ୍ରୂପ ବ୍ରାହ୍ମଣ-ମାନେ ଓ ନଗରବାସୀ ଜନମାନେ ଭୂମିଶଯ୍ୟା କଲେ । ୩୦ । ନଗରସ୍ଥ ବାଳକ ପର୍ଯ୍ୟନ୍ତ ପ୍ରଜାବର୍ଗ ଦ୍ୱାଦଶ ରାତ୍ରି ପାଣ୍ଡବଙ୍କ ସହ ନିରାନନ୍ଦ ଓ ଅହୃଷ୍ଟ ଭାବରେ ରହିଲେ ୩୧ ।

———

## ଅଧ୍ୟାୟ ୧୨୮

ବୈଶମ୍ପାୟନ ବୋଇଲେ—ତଦନନ୍ତର କୁନ୍ତୀ, ଧୃତରାଷ୍ଟ୍ର, ଭୀଷ୍ମ ବନ୍ଧୁଙ୍କ ସହିତ ସମସ୍ତ କୁରୁବର୍ଗଙ୍କୁ ଓ ସହସ୍ର ସହସ୍ର ବିପ୍ରଶ୍ରେଷ୍ଠଙ୍କୁ ଭୋଜନ କରାଇ ଓ ବିପ୍ରଶ୍ରେଷ୍ଠମାନଙ୍କୁ ରତ୍ନ ସମୂହ ଓ ଉତ୍ତମୋତ୍ତମ ଗ୍ରାମମାନଙ୍କୁ ପ୍ରଦାନ କରି ପାଣ୍ଡୁଙ୍କର ସ୍ୱଧା ଓ ଅମୃତମୟ ଶ୍ରାଦ୍ଧ ପ୍ରଦାନ କଲେ । ୨ । ତତ୍ପରେ ପୁର ଓ ଜନପଦବାସୀମାନେ, କୃତଶୌଚ ଭରତର୍ଷଭ, ପାଣ୍ଡବ-ମାନଙ୍କୁ ଘେନି ପୁର ମଧ୍ୟରେ ପ୍ରବେଶ କଲେ ଓ ଆପଣାର ବାନ୍ଧବ ମୃତ ହୋଇଥିଲେ ଯେପରି ଶୋକ ହୁଏ, ସେହିପରି ପାଣ୍ଡୁଙ୍କ ନିମିତ୍ତ ଶୋକ କଲେ । ୪ ।

ଶ୍ରାଦ୍ଧର ଅବସାନରେ ସମସ୍ତ ଜନଙ୍କୁ ଦୁଃଖିତ ଦେଖି ଓ ମାତାଙ୍କୁ ଦୁଃଖ ଓ ଶୋକରେ ସମ୍ମୋହିତ ହେବାର ଦେଖି ବ୍ୟାସ ବୋଇଲେ—ହେ ମାତଃ ! ସୁଖର ସମୟ ଅତୀତ ହୋଇଅଛି, ଦାରୁଣ କାଳ ଉପସ୍ଥିତ ହେଲା; ଦିନକୁଦିନ ପାପ ବୃଦ୍ଧି ହେଉଅଛି, ପୃଥିବୀର ଯୌବନ କାଳ ଗତ ହେଲା । ଏଥି ଉତ୍ତାରୁ ବହୁମାୟା ସମାକୀର୍ଣ୍ଣ, ନାନା ଦୋଷ ସଂକୁଳ ଓ ଧର୍ମ, କ୍ରିୟା ଏବଂ ଆଚାରର ଲୋପକାରୀ ଘୋର କାଳ ଉପସ୍ଥିତ ହେବ । ତୁମ୍ଭେ ତପୋବନକୁ ଗମନ କରି ସେଠାରେ ଯୋଗକୁ ଆଶ୍ରୟ କରି ବାସ କର; କୁରୁଗଣଙ୍କର ଦୁର୍ନୀତି ହେତୁରୁ ପୃଥିବୀ ରହି ପାରିବ ନାହିଁ । ୮ ।

ତୁମ୍ଭର ଏହି କୁଳର ଭୟଙ୍କର ବିନାଶ ଦେଖିବ ନାହିଁ । ସତ୍ୟବତୀ ତଥା ବୋଲି କହି ଅନ୍ତଃପୁରକୁ ଯାଇ ବହୁଙ୍କୁ କହିଲେ—ଅମ୍ବିକେ ! ତୁମ୍ଭ ପୌତ୍ରମାନଙ୍କ ଦୁର୍ନୟ ବଶରୁ ସ୍ୱଜନଙ୍କ ସହିତ ସମସ୍ତ ଭାରତଗଣ ଓ ପୁରବାସୀ ବର୍ଗ ବିନଷ୍ଟ ହେବେ ବୋଲି ଆମ୍ଭେ ଶ୍ରୁତ ହୋଇଅଛୁଁ । ୧୦ । ସେହିହେତୁରୁ ତୁମ୍ଭର ଯେବେ ଇଚ୍ଛା ଅଛି ତେବେ ଆସ, ତୁମ୍ଭର ମଙ୍ଗଳ ହେଉ; ଆମ୍ଭେମାନେ ପୁତ୍ର ଶୋକାର୍ତ୍ତା ଅମ୍ବାଲିକାଙ୍କୁ ଘେନି ବନକୁ ଗମନ କରିବା । ୧୧ । ହେ ଭାରତ ! ସୁବ୍ରତା ସତ୍ୟବତୀ ଅମ୍ବିକାଙ୍କ ସହିତ ଏହିପରି ପରାମର୍ଶ କରି ଭୀଷ୍ମଙ୍କୁ ଡାକି ଦୁଇପୁତ୍ରବଧୂଙ୍କ ସମଭିବ୍ୟାହାରରେ ବନକୁ ଗମନ କଲେ । ୧୨ । ହେ ଭରତ ସତ୍ତମ, ମହାରାଜ ! ସେ ଦେବୀମାନେ ସେଠାରେ ଘୋର ତପସ୍ୟାଚରଣ କରି ଦେହତ୍ୟାଗ ଓ ଅଭିଳଷିତ ସଦ୍‌ଗତି ଲାଭ କଲେ । ୧୩ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ପାଣ୍ଡବମାନେ ବେଦ ବିହିତ ସଂସ୍କାର ସମସ୍ତ ପ୍ରାପ୍ତ ହୋଇ ପିତୃବେଶ୍ମରେ ବିବିଧ ଭୋଗ୍ୟ ବସ୍ତୁ ଭୋଗ କରି ଦିନକୁ ଦିନ ବୃଦ୍ଧି ଲାଭ କଲେ । ୧୪ । ସେମାନେ ଧୃତରାଷ୍ଟ୍ରଙ୍କ ପୁତ୍ରଙ୍କ ସହିତ ପରମ ସୁଖରେ କ୍ରୀଡ଼ା କରି ସର୍ବପ୍ରକାର ବାଲ୍ୟ କ୍ରୀଡ଼ାରେ ତେଜୋଦ୍ୱାରା ସେମାନଙ୍କ ଅପେକ୍ଷା ବିଶିଷ୍ଟ ହେଲେ । ୧୫ । ବେଗରେ, ଲକ୍ଷ୍ୟ ଦ୍ରବ୍ୟ ହରଣରେ, ଭୋଜନରେ ଓ ଧୂଳି ବିକର୍ଷଣରେ ଭୀମସେନ ସମସ୍ତଙ୍କୁ ସମ୍ପରମର୍ଦ୍ଦନ କଲେ । ୧୬ । ହେ ରାଜନ ! ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ଯେତେବେଳେ ହର୍ଷପୂର୍ବକ କ୍ରୀଡ଼ା କରୁଥାନ୍ତି ତେତେବେଳେ ଭୀମସେନ ସେମାନଙ୍କୁ ଘେନି ପଳାନ୍ତି ଓ ସେମାନଙ୍କୁ

ଧରି ତାହାଙ୍କର ମସ୍ତକକୁ ମସ୍ତକ ଲଢ଼ାନ୍ତି । ୧୭ । ଏକୋତ୍ତରଶତ ଧୃତରାଷ୍ଟ୍ରଙ୍କ କୁମାରଙ୍କୁ ଏକାକୀ ବୃକୋଦର ଅବଲୀଳାକ୍ରମେ ନିଗୃହୀତ କରନ୍ତି । ୧୮ । ବଳଶାଳୀ ବୃକୋଦର ବଳପୂର୍ବକ ସେମାନଙ୍କର କେଶା-କର୍ଷଣ କରନ୍ତି । ସେମାନେ ରୋଦନ କରୁଥାନ୍ତି; ସେମାନଙ୍କୁ ସେହି ଅବସ୍ଥାରେ ଭୂମିରେ ଏପରି ଘୋସାରନ୍ତି ଯେ ତାହାଙ୍କର ଅଣ୍ଟୁ, ମଥା ଓ ଛାଦ୍ଧ ଛିଣ୍ଡିଯାଏ । ୧୯ ।

ଜଳକ୍ରୀଡ଼ା କଲାବେଳେ ସେ ଏକାକୀ ଦଶଜଣଙ୍କୁ ବାହୁରେ କୁଣ୍ଢାଇ ଜଳମଗ୍ନ ହୋଇ ରହନ୍ତି; ସେମାନେ ମୃତପ୍ରାୟ ହେଲେ ତାହାଙ୍କୁ ଛାଡ଼ି ଦିଅନ୍ତି । ବୃକ୍ଷାରୋହଣ କରି ସେ ବାଳକମାନେ ଫଳ ତୋଳିବା ବେଳେ ଭୀମସେନ ଗୋଇଠା ମାରି ପାଦପ୍ରହାରର ଅଭିଘାତରେ ବୃକ୍ଷକୁ କମ୍ପିତ ଓ ଘୂର୍ଣ୍ଣିତ କରନ୍ତି; ତହିଁରେ ବହୁଫଳ ସହିତ କୁମାରମାନେ ତ୍ରସ୍ତ ହୋଇ ଦ୍ରୁତ ବେଗରେ ନିପତିତ ହୁଅନ୍ତି । ୨୨ । କୁମାରମାନେ ବାହୁ-ଯୁଦ୍ଧରେ, କି ବେଗରେ, କି ଶିକ୍ଷାଭ୍ୟାସରେ, ଭୀମସେନଙ୍କ ଅପେକ୍ଷା ଉତ୍କର୍ଷ ଲାଭ କରି ପାରିଲେ ନାହିଁ । ଏହିରୂପେ ପ୍ରଯୁକ୍ତ ଭୀମସେନ ଧୃତରାଷ୍ଟ୍ର ପୁତ୍ରମାନଙ୍କର ଅତ୍ୟନ୍ତ ଅପ୍ରିୟ କରନ୍ତି । କିନ୍ତୁ ଦ୍ରୋହଚିତ୍ତରେ ସେ କଦାପି ତଦ୍ରୂପ କରନ୍ତି ନାହିଁ । ୨୯ ।

ତଦନନ୍ତର ଦୁର୍ଯ୍ୟୋଧନ ଭୀମସେନଙ୍କର ଅତିଖ୍ୟାତ ବଳ ଜାଣିପାରି ଦୁଷ୍ଟଭାବ ପ୍ରକାଶ କଲେ । ୨୫ । ଧର୍ମହୀନ, ପାପଦର୍ଶୀ ଦୁର୍ଯ୍ୟୋଧନଙ୍କର ଅଜ୍ଞାନ ବଶରୁ ଓ ଐଶ୍ୱର୍ଯ୍ୟ ଲୋଭରୁ ତାହାଙ୍କର ପାପମତି ଜାତ ହେଲା । ୨୬ । ବଳବାନ୍‌ଙ୍କ ଶ୍ରେଷ୍ଠ କୁନ୍ତୀଙ୍କର ମଧ୍ୟମ ପୁତ୍ର ବୃକୋଦର କିପରି କପଟତାରେ ନିଗୃହୀତ ହେବେ ଏହି ବିଚାର କଲେ ବଳବାନ୍, ବିକ୍ରମୀ ଓ ମହାଶୌର୍ଯ୍ୟ ସମନ୍ୱିତ ବୃକୋଦର ଏକାକୀ ଆମ୍ଭ ସମସ୍ତଙ୍କ ସହିତ ସ୍ପର୍ଦ୍ଧା କରୁଅଛି । ୨୮ । ପୁରୋଦ୍ୟାନରେ ଶୟନ କରିଥିବାବେଳେ ଆମ୍ଭେମାନେ ତାହାଙ୍କୁ ଗଙ୍ଗାରେ ପ୍ରକ୍ଷିପ୍ତ କରିବା, ତତ୍ପରେ ତାହାର କନିଷ୍ଠ ଭ୍ରାତାକୁ ଓ ଜ୍ୟେଷ୍ଠ ଯୁଧିଷ୍ଠିରକୁ ବଳପୂର୍ବକ ବନ୍ଧନ କରି ରାଜ୍ୟ ବସୁନ୍ଧରାକୁ ଶାସନ କରିବା । ଏହିପ୍ରକାରେ ପାପାତ୍ମା ଦୁର୍ଯ୍ୟୋଧନ ନିଶ୍ଚୟକରି ମହାତ୍ମା ଭୀମସେନଙ୍କର ନିଭୃତ ଛିଦ୍ରାନ୍ୱେଷଣ କରିବାରେ ତତ୍ପର ହେଲା । ୩୦ । ହେ ଭାରତ ! ତଦନନ୍ତର ଜଳ ବିହାର ନିମିତ୍ତ ବସ୍ତ୍ର ଓ କମ୍ବଳ ଦ୍ୱାରା ବିଚିତ୍ର ଓ ମହତ୍ ବେଶ୍ମମାନଙ୍କୁ

ନିର୍ମାଣ କରାଇଲେ । ତହିଁରେ ସର୍ବପ୍ରକାର କାମ୍ୟବସ୍ତୁ ପୂର୍ଣ୍ଣକର ରଖିଲେ ଓ ନାନାବିଧ ଗୃହ ନିର୍ମାଣ କରି ମଥାରେ ଅତି ଉଚ୍ଚ ପତାକାମାନ ଖଞ୍ଜିଲେ । ୩୨ ।

ହେ ଭାରତ ! ଗଙ୍ଗାତୀରରେ ପ୍ରମାଣକୋଟି ନାମକ ସ୍ଥାନରେ ସେହି କ୍ରୀଡ଼ାଗାର ଅଧେ ଜଳରେ ଅଧେ ସ୍ଥଳରେ ବିନିର୍ମିତ ହେଲା । ପାକକ୍ରିୟା କୁଶଳ ସୂପକାରମାନେ ତହିଁରେ ଭକ୍ଷ୍ୟ, ଭୋଜ୍ୟ, ଚୋଷ୍ୟ, ଲେହ୍ୟ, ପେୟ ନାନାବିଧ ଭୋଜ୍ୟଦ୍ରବ୍ୟ ପ୍ରସ୍ତୁତକରି ରଖିଲେ । ସବୁ ଦ୍ରବ୍ୟ ସମ୍ପନ୍ନ ହୁଅନ୍ତେ ସେହି କର୍ମରେ ନିଯୁକ୍ତ ପୁରୁଷମାନେ ଦୁର୍ଯ୍ୟୋଧନଙ୍କୁ ଜଣାଇଲେ । ଅନନ୍ତର ଦୁର୍ମ୍ମତି ଦୁର୍ଯ୍ୟୋଧନ ପାଣ୍ଡବଗଣଙ୍କୁ କହିଲେ—ଆସ, ଆମ୍ଭେମାନେ ସବୁଭ୍ରାତା ଏକତ୍ର ହୋଇ ଉଦ୍ୟାନ ବନ ଶୋଭିତ ଗଙ୍ଗାକୂଳକୁ ଗମନପୂର୍ବକ ଜଳକ୍ରୀଡ଼ା କରିବା, ଯୁଧିଷ୍ଠିର ମଧ୍ୟ ତାହାଙ୍କୁ ହେଉ ବୋଲି କହିଲେ । ୩୬ । ଶୌର୍ଯ୍ୟଶାଳୀ କୌରବମାନେ ପାଣ୍ଡବଗଣଙ୍କ ସହିତ ନଗରାକାର ରଥରେ ଓ ବୃହତ୍‌କାୟ ଦେଶୀୟ ଗଜସମୂହ ଦ୍ୱାରା ନଗରରୁ ନିର୍ଗତ ହେଲେ । ୩୭ ।

ବୀରମାନେ ଉଦ୍ୟାନ ଭବନରେ ଉପସ୍ଥିତ ହୋଇ ଅନୁଗାମୀ ଜନମାନଙ୍କୁ ବିସର୍ଜନ କରି ସିଂହ ଗୁହାରେ ପ୍ରବେଶ କଲାପ୍ରାୟ ତନ୍ମଧ୍ୟରେ ସମସ୍ତେ ପ୍ରବେଶ କଲେ । ୩୮ । ସବୁ ଭ୍ରାତାମାନେ ଦେଖିଲେ ଯେ ଉଦ୍ୟାନଟି ଉପସ୍ଥାନ ଗୃହ * ଓ ଶୁଭ୍ର ବଳଭୀ ଦ୍ୱାରା ସୁଶୋଭିତ ହୋଇଅଛି, ସୌଧକାରଙ୍କ କର୍ତ୍ତୃକ ସମ୍ମାର୍ଜିତ ଓ ଚିତ୍ରକରଙ୍କ ସଦ୍‌ଗୁଣ ଚିତ୍ରିତ ହୋଇଅଛି; ଗବାକ୍ଷ ସମୂହ ଦ୍ୱାରା ଓ ସଞ୍ଚାରକ † ଜଳ ଯନ୍ତ୍ରଦ୍ୱାରା ରମଣୀୟ ହୋଇଅଛି । ଦୀର୍ଘିକାମାନ ଓ ପୁଷ୍କରିଣୀମାନେ ଜଳପୂର୍ଣ୍ଣ ହୋଇ ଅଛନ୍ତି; ପ୍ରଫୁଲ୍ଲ ଜଳରୁହ ଦ୍ୱାରା ଜଳ ସୁଶୋଭିତ ହୋଇଅଛି, ସେହି ଋତୁଜାତ କୁସୁମ ସମୂହରେ ବସୁମତୀ ଉପଚ୍ଛନ୍ନା ହୋଇଅଛି, କୌରବ-ମାନେ ଓ ପାଣ୍ଡବମାନେ ସମସ୍ତେ ସେଠାରେ ଉପବିଷ୍ଟ ହେଲେ । ୪୨ ।

ଏଥିଉତ୍ତାରୁ ସେହି ଉଦ୍ୟାନ ନଗରକୁ ଯେତେ ବ୍ୟକ୍ତି କ୍ରୀଡ଼ା ନିମିତ୍ତ ସମବେତ ହୋଇଥିଲେ ସେମାନେ ସମସ୍ତେ ସମାନୀତ କାମ୍ୟ

---

* ବିଶ୍ରାମ କରିବା ଗୃହକୁ ଉପସ୍ଥାନ ଗୃହ କହନ୍ତି ।

† ସଞ୍ଚାରକ। ଜଳ ଯନ୍ତ୍ରର ଅର୍ଥ ଫୁଆରା ।

ଦ୍ରବ୍ୟମାନଙ୍କୁ ଉପଭୋଗ କଲେ । ୪୩ । ତତ୍ପରେ ସେମାନେ ପରସ୍ପରର ମୁଖରେ ଭକ୍ଷ୍ୟ ଦ୍ରବ୍ୟମାନଙ୍କୁ ଖୁଆଇଲେ । ତଦନନ୍ତର ଭୀମସେନଙ୍କୁ ମାରିବା ନିମିତ୍ତ ଦୁର୍ଯୋଧନ ସେହି ଭକ୍ଷ୍ୟଦ୍ରବ୍ୟରେ କାଳକୂଟ ମିଶ୍ରିତ କଲେ । ତତ୍ପରେ ହୃଦୟରେ କ୍ଷୁର ଓ ବାକ୍ୟରେ ଅମୃତପ୍ରାୟ ସେହି ପାପାତ୍ମା ସ୍ୱୟଂ ଉତ୍ଥିତ ହୋଇ ଭ୍ରାତା ଓ ସୁହୃତ ପ୍ରାୟ ଭୀମସେନଙ୍କ ମୁଖରେ ବହୁପରିମାଣରେ ସେହି ବିଷ ମିଶ୍ରିତ ଦ୍ରବ୍ୟ ଖୁଆଇ ଦେଲେ । ଭୀମସେନ ମଧ୍ୟ କୌଣସି ଦୋଷ ନଜାଣି ତାହା ଭକ୍ଷଣ କଲେ । ପୁରୁଷାଧମ ଦୁର୍ଯୋଧନ ଆପଣାକୁ କୃତକୃତ୍ୟ ଜ୍ଞାନକରି ହୃଦୟରେ ହସିଲେ । ତଦନନ୍ତର ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ଓ ପାଣ୍ଡବମାନେ ସମସ୍ତେ ମୁଦିତ ମାନସରେ ଏକତ୍ର ହୋଇ ଜଳକ୍ରୀଡ଼ା ଆରମ୍ଭ କଲେ । ୪୮ ।

ଜଳକ୍ରୀଡ଼ାର ଅବସାନରେ କୁରୁବଂଶାବତଂସ ସେହି ବୀରମାନେ ଶୁଚିବସ୍ତ୍ର ପରିଧାନ କରି ଓ ସୁନ୍ଦରରୂପେ ଅଳଙ୍କୃତ ହୋଇ ଅଥଚ କ୍ରୀଡ଼ା ପରିଶ୍ରମରେ କ୍ଳାନ୍ତ ହେତୁରୁ ଦିବସର ଶେଷରେ ବିହାର ଗୃହରେ ବାସ କରିବାକୁ ଅଭିଳାଷ କଲେ । ୫୦ । ବଳବାନ୍ ଭୀମ ଜଳକ୍ରୀଡ଼ା ଗତ କୁମାରମାନଙ୍କୁ ଅଧିକ ବ୍ୟାୟାମ କରାଇ ଖିନ୍ନ ହେଲେ ଓ ସେହି ପ୍ରମାଣ କୁଟୀରେ ବିଶ୍ରାମ ଅଭିଳାଷରେ ସ୍ଥଳଭାଗ ପ୍ରାପ୍ତ ହୋଇକ୍ଷଣି ଶୟନ କଲେ । ଏଣେ ଶ୍ରାନ୍ତ ତତ୍ପରେ ଶୀତଳ ବାୟୁ ପ୍ରାପ୍ତି ହେତୁରୁ ଏକାବେଳେ ଅଚୈତନ୍ୟ ପ୍ରାୟହୋଇ ପଡ଼ିଗଲେ । ୫୨ । ମଦ ବିମୋହିତ ପାଣ୍ଡୁ ନନ୍ଦନ ଭୀମ, ଶରୀରରେ ବିଷ ଘୋଟିଯିବାରୁ ନିଶ୍ଚେଷ୍ଟ ପ୍ରାୟ ହେଲେ । ତହୁଁ ମୃତକଳ୍ପ ସେହି ବୀରଙ୍କୁ ଦୁର୍ଯୋଧନ ସ୍ୱୟଂ ଲତା ପାଶରେ ବନ୍ଧିକରି ସ୍ଥଳରୁ ନେଇ ଜଳରେ ନିକ୍ଷିପ୍ତ କଲେ । ଭୀମସେନ ନିଃସଜ୍ଞ ହୋଇ ଜଳ ମଧ୍ୟରେ ପତିତ ହେଲେ । ୫୪ ।

ନାଗ ଭବନକୁ ଯାଇ ସେ ନାଗ କୁମାରମାନଙ୍କ ଉପରେ ପତିତ ହେଲେ । ତଦନନ୍ତର ବହୁ ସଂଖ୍ୟକ ମହାଦଂଷ୍ଟ୍ର ବିଷୋଲ୍ବଣ ମହାବିଷ ନାଗମାନେ ମିଳିତ ହୋଇ ଭୀମଙ୍କୁ ଅତିଶୟ ଦଂଶନ କଲେ । ୫୫ । ତାହାଦ୍ୱାରା ଭୀମଙ୍କର ଶରୀରସ୍ଥ ସ୍ଥାବର ବିଷ ଜଙ୍ଗମ ସର୍ପବିଷ ଦ୍ୱାରା ଅପନୀତ ହେଲା । ୫୬ । ସେହି ସର୍ପମାନଙ୍କ ଦଂଷ୍ଟ୍ରାସବୁ ମର୍ମସ୍ଥଳରେ ନିପାତିତ ହେଲେହେଁ ବିଶାଳ ବକ୍ଷସ୍ଥଳର କଠିନତା ପ୍ରଯୁକ୍ତ ଚର୍ମକୁ ସୁଦ୍ଧା ଭେଦ କରିପାରିଲା ନାହିଁ । ତଦନନ୍ତର କୁନ୍ତୀନନ୍ଦନ ଚେତନା

ଚେତା ପ୍ରାପ୍ତହୋଇ ବନ୍ଧନ ମାନଙ୍କ ଛେଦନକରି ସର୍ପଙ୍କ ପୋଡିବାକୁ ଆରମ୍ଭ କରିବାରୁ ସେମାନେ ଭୀତ ହୋଇ ଦ୍ରୁତବେଗରେ ପଳାୟନ କଲେ । ହତାବଶିଷ୍ଟ ସର୍ପମାନେ ବାସୁକିଙ୍କ ନିକଟରେ ଉପଗତ ହେଲେ ।୫୯। ବାସବୋପମ ସର୍ପରାଜ ବାସୁକିଙ୍କୁ ବୋଇଲେ—ହେ ନାଗେନ୍ଦ୍ର । ଏହି ନର ବନ୍ଧ ହୋଇ ଜଳରେ ପ୍ରକ୍ଷିପ୍ତ ହୋଇଥିଲା ।୬୦। ଆମ୍ଭେମାନେ ବୋଧ କରୁଅଛୁଁ ଯେ ଏ ବ୍ୟକ୍ତି ବିଷପାନ କରିଥିଲା ଓ ନିଶ୍ଚେଷ୍ଟ ହୋଇ ଆମ୍ଭଲୋକରେ ଉପସ୍ଥିତ ହୋଇଥିଲା । ଆମ୍ଭେମାନେ ଦଂଶନ କଲାକ୍ଷଣି ସେ ଜ୍ଞାନପ୍ରାପ୍ତ ହେଲା ।୬୧ ।

ସଂଜ୍ଞା ପ୍ରାପ୍ତହୋଇ ଆପଣାର ବନ୍ଧନମାନଙ୍କ ଅଶୁ-ଛେଦନ କରି ସେ ମହାବାହୁ ଆମ୍ଭମାନଙ୍କ ପ୍ରୋଥିତ କରିବାକୁ ଆରମ୍ଭକଲା । ଏ କଥା ଆପଣଙ୍କ ଜଣାଇଲୁଁ ।୬୨। ତଦନନ୍ତରେ ନାଗମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ବାସୁକି ଆସି ଭୀମ ପରାକ୍ରମ ମହାବାହୁ ଭୀମଙ୍କ ଦର୍ଶନ କଲେ ।୬୩। ସେହି କାଳରେ କୁନ୍ତୀଙ୍କର ପିତାଙ୍କ ମାତାମହ, ଆର୍ଯ୍ୟକ ନାମକ ନାଗରାଜ, ଦୌହିତ୍ର ଭୀମଙ୍କୁ ଦେଖି ତାହାଙ୍କୁ ଆଲିଙ୍ଗନ କଲେ ।୬୪। ଏଥିରେ ମହାଯଶା ନାଗେନ୍ଦ୍ର ବାସୁକି ତାହାଙ୍କ ପ୍ରତି ପ୍ରୀତ ହେଲେ ଓ ବୋଇଲେ ଏହାଙ୍କର କି ପ୍ରିୟାନୁଷ୍ଠାନ କରିବା ? ଏହାଙ୍କୁ ବହୁତର ଧନ ଓ ରତ୍ନ ପ୍ରଦାନ କରିବା କର୍ତ୍ତବ୍ୟ । ବାସୁକିଙ୍କର ଏହି ବଚନ ଶ୍ରବଣ କରି ଆର୍ଯ୍ୟକ ବୋଇଲେ ।୬୫। ହେ ନାଗେନ୍ଦ୍ର । ଯଦି ଆପଣ ତୁଷ୍ଟ ହୋଇଅଛନ୍ତି; ତେବେ ଏହାଙ୍କର ଧନ ସଞ୍ଚୟର କି ପ୍ରୟୋଜନ ଅଛି ? ଆପଣ ଯେଉଁ ସ୍ଥଳେ ପ୍ରୀତ ହୋଇଅଛନ୍ତି ସେ ସ୍ଥଳେ ଏହି କୁମାର, ରସ ପାନ କରି ମହାବଳ ହେଉ ।୬୬। ଯେଉଁ କୁଣ୍ଡରେ ସହସ୍ର ହସ୍ତୀର ବଳ ପ୍ରତିଷ୍ଠିତ ଅଛି ଏହି ବାଳକ ତହିଁରୁ ଯେତେ ପାନ କରିପାରେ ତାହାକୁ ଦିଆଯାଉ ।୬୭। ବାସୁକି ହେଉ ବୋଲି ସେହି ନାଗଙ୍କୁ ପ୍ରତ୍ୟୁତ୍ତର ଦେଲେ । ତଦନନ୍ତର ଭୀମସେନ ଶୁଚି ହୋଇ ଓ ନାଗମାନେ ତାହାଙ୍କର ସ୍ୱସ୍ତିବାଚନ କରି ପୂର୍ବାଭିମୁଖରେ ତାହାଙ୍କୁ ଉପବେଶନ କରାଇ ରସପାନ ଆରମ୍ଭ କରାଇଲେ ।୬୯। ମହାବଳ ପାଣ୍ଡୁନନ୍ଦନ ଏକ ନିଶ୍ୱାସରେ ଏକକୁଣ୍ଡ ରସ ପାନ କଲେ । ଏହିରୂପେ ସେ ଅଷ୍ଟକୁଣ୍ଡ ରସ ପାନ କଲେ ।୭୦। ତଦନନ୍ତର ଅରିନ୍ଦମ ମହାବଳ ଭୀମସେନ ନାଗଙ୍କ ପ୍ରଦତ୍ତ ନାଗଦତ୍ତ ଶଯ୍ୟାରେ ପରମ ସୁଖରେ ଶୟନ କଲେ ।୭୧ ।

## ଅଧ୍ୟାୟ ୧୨୯

ବୈଶମ୍ପାୟନ ବୋଇଲେ—ଅନନ୍ତର କୌରବମାନେ ସମସ୍ତେ ଓ ଭୀମଙ୍କ ବ୍ୟତିରେକେ ପାଣ୍ଡବମାନେ ନାନାବିଧ କ୍ରୀଡ଼ା ଓ ବିହାର କରି ହସ୍ତିନପୁରକୁ ରଥ, ଗଜ, ଅଶ୍ୱ ଓ ଅନ୍ୟାନ୍ୟ ଯାନ ମାନଙ୍କରେ ଆରୋହଣ କରି ପ୍ରତ୍ୟାଗମନ କଲେ ଓ ପରସ୍ପର କୋଲାକୋଲି ହେଲେ ଯେ ଭୀମସେନ ଆମ୍ଭ ଆଗରୁ ଗମନ କରିଅଛନ୍ତି । ୨ । ତଦନନ୍ତର ପାପମତି ଦୁର୍ଯ୍ୟୋଧନ ତନ୍ମଧ୍ୟରେ ଭୀମଙ୍କୁ ନ ଦେଖି ହୃଷ୍ଟଚିତ୍ତରେ ଭ୍ରାତୃଗଣଙ୍କ ସହିତ ନଗରକୁ ପ୍ରବେଶ କଲେ । ୩ । ଧର୍ମାତ୍ମା ଯୁଧିଷ୍ଠିର ଆପଣାଠାରେ କୌଣସି ପାପାଚରଣ ଜାଣନ୍ତି ନାହିଁ; ସୁତରାଂ ସ୍ୱୀୟ ଦୃଷ୍ଟାନ୍ତ ଅନୁସାରେ ଶତ୍ରୁମାନଙ୍କୁ ସୁଦ୍ଧା ସାଧୁ ବୋଲି ଜ୍ଞାନ କରନ୍ତି । ୪ । ତତ୍କାଳରେ ଭ୍ରାତୃବତ୍ସଳ ପାର୍ଥ କୁନ୍ତୀଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରଣତିପୂର୍ବକ ବୋଇଲେ, ମାତ ! ଭୀମ କି ଏଠାକୁ ଆସିଅଛନ୍ତି ? ଏଠାରେ ତ ଆମ୍ଭେ ତାହାଙ୍କୁ ଦେଖୁନାହୁଁ, ହେ ଶୁଭେ ! ସେ କେଉଁଠାକୁ ଗମନ କଲେ ? ଉଦ୍ୟାନ ଓ ବନର ଚତୁର୍ଦ୍ଦିଗେ ଆମ୍ଭେ ତାହାଙ୍କୁ ଅନ୍ୱେଷଣ କରିଲୁଁ । ୬ ।

କିନ୍ତୁ ତାହାଙ୍କୁ ଦେଖିଲୁ ନାହିଁ । ତହୁଁ ସମସ୍ତେ ବିଚାରିଲୁଁ ଯେ, ସେ ଅମ୍ଭମାନଙ୍କ ଆଗେ ଗମନ କରିଅଛନ୍ତି । ୭ । ହେ ମହାଭାଗେ ! ଆମ୍ଭେମାନେ ବ୍ୟାକୁଳ ଅନ୍ତଃକରଣରେ ଆଗମନ କରୁଅଛୁଁ; ସେ ଏଠାକୁ ଆସି ଅନ୍ୟତ୍ର ଗମନ କରିଅଛନ୍ତି କି, ଆପଣ ତାହାଙ୍କୁ କେଉଁଠାକୁ ପ୍ରେରଣ କରିଅଛନ୍ତି ? ହେ ଯଶସ୍ୱିନୀ ! ସେ ମହାବାହୁ ଭୀମସେନ କାହାନ୍ତି ? ବୋଲ । ହେ ଶୋଭନେ ! ସେ ବୀରଙ୍କ ବିଷୟରେ ଆମ୍ଭ ଚିତ୍ତ ସ୍ଥିର ହେଉ ନାହିଁ; ସେ ଶୟନ କରିଥିଲେ, ଏଠାକୁ ଆସି ନାହାନ୍ତି, ଅତଏବ ସେ ହତ ହୋଇଥିବେ । ୯ । ତତ୍ପରେ ଶ୍ରୀମାନ୍ ଧର୍ମରାଜଙ୍କ ଠାରୁ କୁନ୍ତୀ ଏହି କଥା ଶ୍ରବଣ କରି ହା ହା କରି ସନ୍ତାପରେ ଯୁଧିଷ୍ଠିରଙ୍କୁ ବୋଇଲେ—ପୁତ୍ର ! ଆମ୍ଭେ ଭୀମଙ୍କୁ ଦେଖିନାହୁଁ କି ସେ ଆମ୍ଭ ନିକଟକୁ ଆସି ନାହାନ୍ତି । ତାହାଙ୍କର ଅନୁଜଙ୍କୁ ଘେନି ଶୀଘ୍ର ତାହାଙ୍କୁ ଅନୁସରଣରେ ଯତ୍ନ କର । ୧୧ । ଜ୍ୟେଷ୍ଠ ସୁତଙ୍କୁ ଏହା କହି ବ୍ୟାକୁଳ ହୃଦୟରେ ବିଦୁରଙ୍କୁ ଅଣାଇ, କୁନ୍ତୀ ବୋଇଲେ—ଭଗବାନ୍ କ୍ଷତ୍ତଃ ! ଭୀମସେନ କାହିଁ ଗଲେ ? ତାହାଙ୍କର ଦେଖା ମିଳୁନାହିଁ; ସବୁ ଭ୍ରାତାମାନେ

ସଙ୍ଗ ହୋଇ ଉଦ୍ୟାନରୁ ନିର୍ଗତ ହେଲେ, ମହାବାହୁ ଭୀମ ଏକାକୀ ହେତୁରୁ ଅମ୍ଭ ନିକଟକୁ ଆସିଲେ ନାହିଁ । ପୁରୋଦ୍ୟାନକୁ ଶୀଘ୍ର ଯାଇ ଲୋକେ ପାଣ୍ଡବଙ୍କ ସଙ୍ଗେ ନେଇ ଅନ୍ୱେଷଣ କରନ୍ତୁ । ୧୪ । ସେମାନେ ତ୍ୱରାନ୍ୱିତ ହୋଇ ସେଠାକୁ ଯାଇ 'ଭୀମ' ବୋଲି ଉଚ୍ଚୈସ୍ୱରରେ ଉଦୀରିତ କଲେ; ସର୍ବ ବନକୁ ଅନ୍ୱେଷଣ କଲେ; କିନ୍ତୁ ସେ ଜନମାନେ ତାହାଙ୍କୁ ଦେଖିଲେ ନାହିଁ । ୧୫ । ସେମାନେ ପୁନର୍ବାର ନଗରକୁ ଆଗମନ କରି ପୃଥାଙ୍କୁ ବୋଇଲେ ଯେ ମହାବାହୁ ଓ ମହାବଳ ଭୀମଙ୍କର ଅମ୍ଭେମାନେ ଅଦ୍ୟ ଦର୍ଶନ ପାଇଲୁଁ ନାହିଁ । ୧୬ ।

କୁନ୍ତୀ ବୋଇଲେ—ଦୁର୍ଯ୍ୟୋଧନ ସର୍ବଦା ତାହାଙ୍କୁ ଦେଖି ପାରନ୍ତି ନାହିଁ । ସେ କ୍ରୂର, କ୍ଷୁଦ୍ରାଶୟ, ଦୁର୍ମ୍ମତି ଓ ନିର୍ଲଜ୍ଜ ରାଜ୍ୟଲୋଭରେ ଓ କ୍ରୁଦ୍ଧ ହୋଇ ସେ ବୀରକୁ ହତ କରିଅଛି, ସେହି କାରଣରୁ ଅମ୍ଭ ଚିତ୍ତ ବ୍ୟାକୁଳିତ ହେଉଅଛି ଓ ହୃଦୟ ଅତିଶୟ ଦଗ୍ଧ ହେଉଅଛି । ୧୮ ।

ବିଦୁର ବୋଇଲେ, ହେ କଲ୍ୟାଣି ! ଏପରି କହନା; ଯେତିକ ଅବଶିଷ୍ଟ ଅଛନ୍ତି ତାହାଙ୍କର ରକ୍ଷା କର । ସେ ଦୁଷ୍ଟାତ୍ମା ଏହା ଶୁଣିଲେ ତୁମ୍ଭର ଅପର ପୁତ୍ରମାନଙ୍କୁ ପ୍ରହାର କରିବ । ୧୯ । ମହାମୁନି ଯେପରି କହିଅଛନ୍ତି; ତୁମ୍ଭର ସୁତମାନେ ଦୀର୍ଘାୟୁ ହେବେ । ତୁମ୍ଭର ପୁତ୍ର ଆଗମନ କରିବେ ଓ ତୁମ୍ଭର ପ୍ରୀତିକୁ ଉତ୍ପାଦନ କରିବେ । ୨୦ ।

ବୈଶମ୍ପାୟନ ବୋଇଲେ—ବିଦ୍ୱାନ୍ ବିଦୁର ଏହା କହି ନିଜର ନିବେଶନକୁ ଗମନ କଲେ, କୁନ୍ତୀ ଚିନ୍ତାନ୍ୱିତା ହୋଇ ସୁତମାନଙ୍କୁ ଘେନି ଗୃହରେ ବସିଲେ । ୨୧ । ତତ୍ପରେ ଅଷ୍ଟମ ଦିବସରେ ପାଣ୍ଡବ ନାଗଲୋକରେ ଚୈତନ୍ୟ ପ୍ରାପ୍ତ ହେଲେ, ତାଙ୍କର ପୀତ-ରସ ଜୀର୍ଣ୍ଣ ହୁଅନ୍ତେ ସେ ବଳବାନ୍ ଅପ୍ରମେୟ ବଳଶାଳୀ ହେଲେ । ୨୨ । ସେ ପାଣ୍ଡବଙ୍କୁ ସଂଜ୍ଞା ପ୍ରାପ୍ତ ହେବାର ଦେଖି ଭୁଜଙ୍ଗମାନେ ଅବ୍ୟଗ୍ର ହୋଇ ସାନ୍ତ୍ୱନା ପୂର୍ବକ ତାହାଙ୍କୁ ବୋଇଲେ, ହେ ମହାବାହୋ । ତୁମ୍ଭେ ଏପରି ବୀର୍ଯ୍ୟସମ୍ଭୃତ ରସପାନ କରିବାରୁ ତୁମ୍ଭର ଦଶସହସ୍ର ହସ୍ତୀର ପରାକ୍ରମ ହେବ ଓ ତୁମ୍ଭେ ରଣରେ ଅଧୃଷ୍ୟ ହେବ । ୨୪ । ଏହି ଦିବ୍ୟଜଳରେ ତୁମ୍ଭେ ସ୍ନାନ ସାରି ନିଜ ଗୃହକୁ ଗମନ କର; ହେ

କୁରୁପୁଙ୍ଗବ ! ତୁମ୍ଭଙ୍କୁ ନ ଦେଖି ତୁମ୍ଭର ଭ୍ରାତାମାନେ ଅତିଶୟ ଅନୁତାପ କରୁଅଛନ୍ତି । ୨୫ । ଅତଏବ ସେ ମହାବାହୁ ସ୍ନାତ ଓ ଶୁଚି ହୋଇ ଶୁକ୍ଳାମ୍ବର ଓ ମାଳା ଧାରଣ କଲେ ।

ତଦନ୍ତରେ ନାଗଭବନରେ ମଙ୍ଗଳାଚରଣ ସମ୍ପନ୍ନ ହୁଅନ୍ତେ, ସେହି ମହାବଳ, ସୁଗନ୍ଧ ଓ ବିଷଘ୍ନୀ ଔଷଧି ମିଶ୍ରିତ ନାଗଦତ୍ତ ପରମାନ୍ନ ଭୋଜନ କଲେ । ୨୭ । ଭୁଜଗମାନଙ୍କ ଦ୍ୱାରା ସେହି ବୀର ପୂଜିତ ହୋଇ ଓ ଆଶୀର୍ବଚନ ଦ୍ୱାରା ଅଭିନନ୍ଦିତ ହୋଇ ଅଥଚ ଦିବ୍ୟାଭରଣରେ ସମାଚ୍ଛନ୍ନ ହୋଇ ନାଗମାନଙ୍କ ଠାରୁ ବିଦାୟ ହୋଇ ପ୍ରହୃଷ୍ଟ ଅନ୍ତଃକରଣରେ ନାଗଲୋକରୁ ଉତ୍ଥିତ ହେଲେ । ଅରିନ୍ଦମ ଜଳରୁ ହେ ଜଣି କୁରୁନନ୍ଦନ ନାଗଙ୍କ ଦ୍ୱାରା ଜଳରୁ ଉତ୍କ୍ଷିପ୍ତ ହୋଇ ସେହି ବନ ପ୍ରଦେଶରେ ସ୍ଥାପିତ ହେଲେ । ପାଣ୍ଡବ ସେ ନାଗମାନଙ୍କୁ ଗୃହଁ ଗୃହଁ ସେମାନେ ଅନ୍ତର୍ହିତ ହେଲେ । ୩୦ । ତଦନ୍ତରେ ମହାବଳ ମହାବାହୁ କୁରୁନନ୍ଦନ ଭୀମସେନ ସେଠାରୁ ଦ୍ରୁତଗତିରେ ମାତାଙ୍କ ସମୀପକୁ ଆଗମନ କଲେ । ଜନନୀଙ୍କୁ ଓ ଜ୍ୟେଷ୍ଠଭ୍ରାତାଙ୍କୁ ମଧ୍ୟ ଅଭିବାଦନ କରି ସେହି ଅରିମର୍ଦ୍ଦନ କନିଷ୍ଠ ଭ୍ରାତାମାନଙ୍କ ମସ୍ତକ ଆଘ୍ରାଣ କଲେ, ମାତା ଓ ସେହି ନରବର ମାନେ ତାହାଙ୍କୁ ଆଲିଙ୍ଗନ କଲେ; ସମସ୍ତେ ପରସ୍ପର ସୌହାର୍ଦ୍ଦ୍ୟରେ 'କି ଭାଗ୍ୟ ! କି ଭାଗ୍ୟ !' ବୋଲି ଉଚ୍ଚାରଣ କଲେ । ୩୩ । ତଦନନ୍ତର ମହାବଳ ମହାପରାକ୍ରାନ୍ତ ଭୀମସେନ ଭ୍ରାତାମାନଙ୍କ ସାକ୍ଷାତରେ ଦୁର୍ଯ୍ୟୋଧନଙ୍କର ଆଚରଣ ଭାଷଣ କଲେ । ୩୪ । ନାଗଲୋକରେ ଉତ୍ତମ ମଧ୍ୟମ ଯାହା ଘଟିଥିଲା ତାହା ମଧ୍ୟ ସେହି ପାଣ୍ଡବ ଅଶେଷରୂପେ କହିଲେ । ତଦନନ୍ତର ରାଜା ଯୁଧିଷ୍ଠିର ଭୀମଙ୍କୁ ଏହି ସୁପରାମର୍ଶ ଦେଲେ ଯେ ଏ କଥା କୌଣସି ଠାରେ ନ କହି ତୁନି ହୁଅ । ୩୬ । ଆଜି ଅବଧି କୌନ୍ତେୟମାନେ ଅନ୍ୟୋନ୍ୟଙ୍କର ଆଦରପୂର୍ବକ ରକ୍ଷା କରିବା; ଧର୍ମ୍ମରାଜ ମହାବାହୁ ଯୁଧିଷ୍ଠିର ଏହା କହି ସର୍ବଭ୍ରାତାଙ୍କ ସହ ସେହି ଦିନରୁ ସାବଧାନ ହେଲେ । ଯହିଁରେ ପାଣ୍ଡବମାନଙ୍କର ଔଦାସ୍ୟ ନ ହୁଏ ବିଦୁର ସେମାନଙ୍କୁ ତଦ୍ରୂପ ବୁଦ୍ଧି ପ୍ରଦାନ କଲେ । ୩୮ ।

ତଦନ୍ତରେ ଦୁର୍ଯ୍ୟୋଧନ ଭୀମସେନଙ୍କର ଭୋଜନଦ୍ରବ୍ୟରେ ପୁନର୍ବାର ଭୟାନକ ଲୋମହର୍ଷଣ ଅଭିନବ ତୀକ୍ଷ୍ଣ କାଳକୂଟ ବିଷ ପ୍ରଦାନ କଲେ । ବୈଶ୍ୟାପୁତ୍ର ଯୁଯୁତ୍ସୁ ପାଣ୍ଡବଙ୍କ ହିତ କାମନାରେ ସେମାନଙ୍କୁ ତାହା

କହିଦେଲେ । ବୃକୋଦର ସେହି ବିଷକୁ ବିକାରଶୂନ୍ୟ ହୋଇ ଭୋଜନ କରି ଜୀର୍ଣ୍ଣ କଲେ; ସେ ବିଷ ସୁତୀକ୍ଷ୍ଣ ହେଲେହେଁ ଭୀମଙ୍କର କୌଣସି ବିକାର ଉତ୍ପାଦନ କରି ପାରିଲା ନାହିଁ । ୪୧ । ଦୁର୍ଯ୍ୟୋଧନ କର୍ଣ୍ଣ ଓ ସୁବଲାତ୍ମଜ ଶକୁନି ପାଣ୍ଡବ ମାନଙ୍କୁ ଏହିରୂପ ନାନାବିଧ ଉପାୟରେ ବିନାଶ କରିବାକୁ ଚେଷ୍ଟା କରିଥିଲେ । ୪୨ । ପାଣ୍ଡବମାନେ ତାହା ଜାଣି ପାରି କ୍ରୁଦ୍ଧ ହୋଇ ବିଦୁରଙ୍କ ମତରେ ରହି ସେ କ୍ରୋଧ ପ୍ରକାଶ କଲେ ନାହିଁ । ୪୩ । କ୍ରୀଡ଼ମାନ କୁମାର ମାନଙ୍କୁ ଦୁର୍ମଦ ଦେଖି ସେମାନଙ୍କ ଶିକ୍ଷାର୍ଥ ରାଜା ଧୃତରାଷ୍ଟ୍ର ଗୋଟିଏ ଗୁରୁଙ୍କର ଅନ୍ୱେଷଣ କଲେ; ଓ ଶରସ୍ତମ୍ବରୁ ସମୁତ୍ପନ୍ନ ବେଦ ଶାସ୍ତ୍ରାର୍ଥ ପାରଗ, ଗୌତମକୁଳ ପ୍ରଦୀପ କୃପଙ୍କୁ ପାଇ ତାହାଙ୍କ ଠାରେ ସେ ବାଳକମାନଙ୍କୁ ଅର୍ପଣ କଲେ । କୁରୁଗଣ କୃପଙ୍କ ଠାରୁ ଧନୁର୍ବେଦକୁ ଅଧିଗତ ହୋଇଥିଲେ । ୪୬ ।

---

## ଅଧ୍ୟାୟ ୧୩୦

ଜନମେଜୟ ବୋଇଲେ—ହେ ବ୍ରହ୍ମନ୍ । ଆପଣ କୃପଙ୍କର ଉତ୍ପନ୍ନ ବିବରଣ ବୋଲିବା ହେଉନ୍ତୁ; ଶରସ୍ତମ୍ବରୁ ସେ କିପରି ଜାତ ହେଲେ ଓ କିପରି ଅବା ଅସ୍ତ୍ରଶିକ୍ଷା ଲାଭ କଲେ । ୧ ।

ବୈଶମ୍ପାୟନ ବୋଇଲେ—ହେ ମହାରାଜ । ମହର୍ଷି ଗୌତମଙ୍କର ଶରଦ୍ୱାନ୍ ନାମରେ ପୁତ୍ର ଥିଲେ । ହେ ବିଭୋ । ସେ ଗୌତମ ଶର ସହିତ ଜାତ ହୋଇଥିଲେ । ହେ ପରନ୍ତପ । ଧନୁର୍ବେଦରେ ତାହାଙ୍କର ଯେପରି ବୁଦ୍ଧି ପ୍ରବର୍ତ୍ତିଲା ତଦ୍ରୂପ ବେଦାଧ୍ୟୟନରେ ପ୍ରବୃତ୍ତ ହେଲା ନାହିଁ । ୩ । ଗୌତମ ଧନୁର୍ବେଦ ଶିକ୍ଷାରେ ଓ ତପସ୍ୟା ପ୍ରଭାବରେ ଦେବରାଜଙ୍କୁ ସୁଦ୍ଧା ଅତିଶୟ ସନ୍ତାପିତ କରିଥିଲେ । ୫ । ହେ କୌରବ । ତଦନନ୍ତର ସୁରେଶ୍ୱର ଜାନପଦୀ ନାମ୍ନୀ କନ୍ୟାଙ୍କୁ ପ୍ରେରଣ କରି ବୋଇଲେ ଯେ ତୁମ୍ଭେ ଯାଇ କୃପଙ୍କର ତପସ୍ୟାରେ ବିଘ୍ନ କର । ୬ । ସେ ବାଳା ଗୌତମଙ୍କ ଆଶ୍ରମକୁ ଗମନ କରି ଧନୁର୍ବାଣ ଧାରି ଶରଦ୍ୱାନଙ୍କୁ ପ୍ରଲୋଭିତ କଲେ । ଗୌତମ ବନ ମଧ୍ୟରେ ସେହି ଅପ୍ସରାକୁ ଖଣ୍ଡିଏ ମାତ୍ର ବସନ ପରିଧାନ କରିଥିବାର ଦେଖିଲେ; ଅପିଚ ତାହାଙ୍କର

ଅଲୌକ ସାମାନ୍ୟ ଅଙ୍ଗସୌଷ୍ଠବ ଦର୍ଶନ କରି ପ୍ରୋତ୍‌ଫୁଲ୍ଲ ନୟନ ହେଲେ । ୮ ।

ସେ ବାଳାକୁ ଦେଖି ଧନୁ ଓ ଶର ତାହାଙ୍କ ହସ୍ତ ଦ୍ୱୟରୁ ଭୂମିରେ ନିପତିତ ହେଲା ଓ ତଦାୟ ଶରୀରରେ ବେପଥୁ ସଞ୍ଜାତ ହେଲା । ୯ । ସେ ମହାପ୍ରାଜ୍ଞ ଜ୍ଞାନ ଓ ତପସ୍ୟାର ବଳରେ ପରମ ଧୈର୍ଯ୍ୟ ଅବଲମ୍ବନ କରି ରହିଲେ । ୧୦ । ହେ ରାଜନ୍ ! ସହସା ତାହାଙ୍କଠାରେ ଯେଉଁ ବିକାର ଜାତ ହେଲା ତହିଁରେ ତାହାଙ୍କର ରେତସ୍ଖଳନ ହୋଇଥିଲା; କିନ୍ତୁ ସେ ଜାଣି ପାରିଲେ ନାହିଁ । ୧୧ । ଅନନ୍ତର ସେହି ମୁନି ଧନୁର୍ବାଣ, କୃଷ୍ଣସାର ମୃଗର ଚର୍ମ୍ମ, ଆଶ୍ରମ ଓ ସେହି ଅପ୍ସରାକୁ ପରିତ୍ୟାଗ କରି ସ୍ଥାନାନ୍ତର ଗମନ କଲେ ।୧୨। ତାହାଙ୍କର ରେତ ସେହି ଶରସ୍ତମ୍ବରେ ପତିତ ହେଲା । ଶରସ୍ତମ୍ବରେ ପତିତ ହୋଇ ହେ ନୃପ ! ସେହି ରେତ ଦୁଇଭାଗ ହୋଇ-ଗଲା । ୧୩ । ତହିଁରୁ ସେହି ଶରଦ୍‌ବାନ ଗୌତମଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜାତ ହେଲେ । ଦିନେ ଶାନ୍ତନୁ ଯଦୃଚ୍ଛାକ୍ରମେ ମୃଗୟା କରିବାକୁ ଯାଇଥିଲେ, ତାହାଙ୍କର ଜଣେ ସୈନିକ ପୁରୁଷ ସେହି ପୁତ୍ର ଓ କନ୍ୟାଙ୍କୁ ଦେଖିଲେ; ଶର ସହିତ ଧନୁ ଓ କୃଷ୍ଣାଜିନକୁ ମଧ୍ୟ ଦେଖିଲେ । ୧୫ । ସେ ବ୍ୟକ୍ତି ବିଚାରିଲେ, ଯେ ଧନୁର୍ବେଦ ପାରଦର୍ଶୀ କୌଣସି ଦ୍ୱିଜର ଅପତ୍ୟ ଦୁଇଟି ହେବେ; ଏହା ଭାବି ରାଜାଙ୍କୁ ସେହି ମିଥୁନ ଓ ଶରସହ ଧନୁ ଦେଖାଇଲେ । ୧୬ । ତହୁଁ ସେ ରାଜା କୃପାନ୍ୱିତ ହୋଇ ପୁତ୍ରକନ୍ୟା ଦୁହିଁଙ୍କୁ ଘେନି ଗୃହକୁ ଆସିଲେ ଓ ବୋଇଲେ ଯେ ଏ ଦୁହେଁ ଆମ୍ଭର ଅପତ୍ୟ । ୧୭ ।

ତଦନନ୍ତର ପ୍ରତୀପଙ୍କର ପୁତ୍ର ନରଶ୍ରେଷ୍ଠ ଶାନ୍ତନୁ ଗୌତମଙ୍କର ସେହି ପୁତ୍ର ଓ କନ୍ୟାଙ୍କୁ ସମ୍ବର୍ଦ୍ଧିତ କଲେ ଓ ତାହାଙ୍କର ସମସ୍ତ ସଂସ୍କାର କରାଇଲେ । ୧୮ । ଗୌତମ ମଧ୍ୟ ସେହି ଆଶ୍ରମରୁ ଆସି ଧନୁର୍ବେଦ ପରାୟଣ ହେଲେ । ମହୀପତି ଶାନ୍ତନୁ ବୋଇଲେ ଅମ୍ଭେ କୃପା କରି ଏହି ବାଳକ ବାଳିକା ଦ୍ୱୟଙ୍କୁ ସମ୍ବର୍ଦ୍ଧିତ କରୁଅଛୁଁ, ଅତଏବ ଏ ଦୁହିଙ୍କରନାମ କୃପ ଓ କୃପୀ ହେଉ । ୧୯ । ଗୌତମ ତପସ୍ୟା ବଳରୁ ଜାଣିଲେ ଯେ ତାହାଙ୍କର ବାଳକଦ୍ୱୟ ସେଠାରେ ଥିଲେ; ତହୁଁ ସେ ଗୋପନରେ ଆସି କୃପଙ୍କୁ ତାହାଙ୍କର ଗୋତ୍ର ପ୍ରଭୃତି ସମସ୍ତ କହି ଦେଇ ଗଲେ । ୨୦ । ଚତୁର୍ବିଧ ଧନୁର୍ବେଦ ଓ ବିବିଧ ଶାସ୍ତ୍ରମାନଙ୍କୁ ଅଥଚ ଅନ୍ୟ ସବୁ

ଗୁପ୍ତବିଦ୍ୟା ସମ୍ପୂର୍ଣ୍ଣରୂପେ ସେ କୃପଙ୍କୁ ପ୍ରଦାନ କରିଗଲେ । ୨୧ । ଅଚିର କାଳ ମଧ୍ୟରେ କୃପ ଗୋଟିଏ ପରମ ଆଚାର୍ଯ୍ୟ ବୋଲି ବିଦିତ ହେଲେ । ତତ୍ପରେ ଧୃତରାଷ୍ଟ୍ରଙ୍କ ଆତ୍ମଜମାନେ, ପାଣ୍ଡବ ଓ ଯାଦବମାନେ ବୃଷ୍ଣିକୁଳ ପ୍ରଭୃତି ଓ ଅପରାପର ନୃପମାନେ ନାନାଦେଶରୁ ସମାଗତ ହୋଇ କୃପଙ୍କ ଠାରୁ ଧନୁର୍ବିଦ୍ୟା ଶିକ୍ଷା କଲେ । ୨୩ ।

ବୈଶମ୍ପାୟନ ବୋଇଲେ ଅନନ୍ତର ଭୀଷ୍ମ ତଦୀୟ ପୌତ୍ରମାନଙ୍କର ବିଶିଷ୍ଟ ରୂପେ ବିଦ୍ୟା ଓ ବିନୟ ଶିକ୍ଷା କରିବା ନିମିତ୍ତ, ବାଣ ପ୍ରୟୋଗ ନିପୁଣ, ଅସ୍ତ୍ରବିଦ୍ୟା-ବିଶାରଦ, ବୀର୍ଯ୍ୟଶାଳୀ ଆଚାର୍ଯ୍ୟ ଅନ୍ୱେଷଣ କଲେ । ୨୪ । ଯେ ଉତ୍ତମ ବୁଦ୍ଧିମାନ୍, ମହାଭାଗ, ନାନା ଅସ୍ତ୍ର ପ୍ରୟୋଗରେ ପଣ୍ଡିତ ଓ ମହାତ୍ମା ନ ହେବେ ସେ ଯେପରି ମହାବଳ କୌରବ ଗଣଙ୍କ ଅସ୍ତ୍ରଶିକ୍ଷା ନ କରାଇବେ । ୨୫ । ହେ ଭରତ ସତ୍ତମ ! ଗାଙ୍ଗେୟ ଏହା ଚିନ୍ତା କରି ଭରଦ୍ୱାଜ ଗୋତ୍ର ପ୍ରସୂତ, ଧୀମାନ୍ ଓ ବେଦବିତ୍ ଦ୍ରୋଣଙ୍କ ଠାରେ କୌରବ ଓ ପାଣ୍ଡବମାନଙ୍କୁ ଶିଷ୍ୟ ସ୍ୱରୂପ ସମର୍ପଣ କଲେ । ଶାସ୍ତ୍ରାନୁସାରେ ମହାତ୍ମା ଭୀଷ୍ମଙ୍କ ଦ୍ୱାରା ସେହି ବିଦ୍‌ବାନ୍ ଶ୍ରେଷ୍ଠ ମହାଭାଗ ଓ ମହାଯଶା ଦ୍ରୋଣ ପୂଜିତ ହୋଇ ସନ୍ତୋଷପୂର୍ବକ ଶିଷ୍ୟ ସ୍ୱରୂପ ପ୍ରତିଗ୍ରହ କଲେ ଓ ସେମାନଙ୍କୁ ଅଶେଷରୂପେ ଧନୁର୍ବେଦ ଶିକ୍ଷା ଦେଲେ । ୨୮ । ଅଚିର କାଳ ମଧ୍ୟରେ ହେ ରାଜନ୍ ! କୌରବମାନେ ଓ ଅମିତ ତେଜା ପାଣ୍ଡବମାନେ ସର୍ବପ୍ରକାର ଶସ୍ତ୍ର ବିଦ୍ୟାରେ ବିଶାରଦ ହେଲେ । ୨୯ ।

ଜନମେଜୟ ବୋଇଲେ—ଦ୍ରୋଣ କିପରି ସମ୍ଭୂତ ହେଲେ; କିପରି ସେ ଅସ୍ତ୍ରବିଦ୍ୟା ଶିକ୍ଷା କଲେ, କିପରି ସେ କୁରୁଙ୍କ ସହିତ ସାକ୍ଷାତ୍ କଲେ? ହେ ବ୍ରହ୍ମନ୍ ! ସେ ବୀର୍ଯ୍ୟଶାଳୀ କାହାଙ୍କର ପୁତ୍ର ? କିପରି ଏହାଙ୍କର ଅସ୍ତ୍ରବିତ୍ତମ ସୁତ ଅଶ୍ୱତ୍ଥାମା ଜାତ ହେଲେ ? ଏହା ସବୁ ଶୁଣିବାକୁ ଇଚ୍ଛା କରୁଅଛୁଁ ; ଆପଣ ବିସ୍ତରରୂପେ କୀର୍ତ୍ତନ କରନ୍ତୁ । ୩୧ ।

ବୈଶମ୍ପାୟନ ବୋଇଲେ—ସତେ ଶଂସିତ ବ୍ରତ, ଭରଦ୍ୱାଜ ନାମକ ମହର୍ଷି ଗଙ୍ଗାଦ୍ୱାରରେ ବାସ କରୁଥିଲେ । ୩୨ । ଏକଦା ସେ ଭରଦ୍ୱାଜ ଅଗ୍ନିହୋତ୍ର ଅନୁଷ୍ଠାନ କରିବା ନିମିତ୍ତ ମହର୍ଷିଗଣଙ୍କ ସହିତ ଗଙ୍ଗାନଦୀକୁ ଅଭିଷେକାର୍ଥ ଗମନ କଲେ; ସେଠାରେ ଘୃତାଚୀ ନାମ୍ନୀ

ଅପ୍‌ସରାଙ୍କୁ ସ୍ନାନ କରି ଜଳରୁ ବାହାରି ବସନ-ପରିବର୍ତ୍ତନ ନିମିତ୍ତ ବିଗଳିତ ବସନା ହେବାର ଦେଖିଲେ ଓ ତାହାଙ୍କର ଅନୁପମ ରୂପ, ଯୌବନ, ଓ ମଦଗର୍ବ ଓ ଆଳସ୍ୟ ବିଲୋକନ କରି ତାହାଠାରେ କାମାସକ୍ତ ହେଲେ । ୩୫ । ତାହାଙ୍କର ମନ ଘୃତାଚୀଙ୍କ ଠାରେ ଅତିଶୟ ଆସକ୍ତ ହେବାରୁ ରେତସ୍ଖଳନ ହେଲା, ଋଷି ସେ ରେତକୁ ଦ୍ରୋଣ ନାମକ ଯଜ୍ଞୀୟ ପାତ୍ରରେ ଧାରଣ କଲେ । ୩୬ । ତଦନନ୍ତର ସେହି ଧୀମାନ୍‌ଙ୍କର ଔରସରେ କଳଶରୁ ଦ୍ରୋଣଙ୍କର ସମ୍ଭବ ହେଲା । ସେ ବେଦ ଓ ବେଦର ଅଙ୍ଗମାନଙ୍କୁ ନିଖିଳରୂପେ ଅଧ୍ୟୟନ କଲେ । ୩୭ । ଅସ୍ତ୍ରଜ୍ଞ ପ୍ରଧାନ ପ୍ରତାପଶାଳୀ ଭରଦ୍ୱାଜ ପୂର୍ବେ ଅଗ୍ନିବେଶ ନାମକ ମହର୍ଷିଙ୍କୁ ଆଗ୍ନେୟାସ୍ତ୍ର ପ୍ରଦାନ କରିଥିଲେ; ହେ ଭରତ ସତ୍ତମ ! ଅଗ୍ନିଙ୍କଠାରୁ ଉତ୍ପନ୍ନ ସେହି ଅଗ୍ନିବେଶ ଋଷି, ଆଗ୍ନେୟ ମହାସ୍ତ୍ରକୁ ଆପଣାର ଗୁରୁପୁତ୍ର ଦ୍ରୋଣଙ୍କୁ ପ୍ରଦାନ କଲେ । ୩୮ ।

ପୃଷତ ନାମକ ଜଣେ ରାଜା, ଭରଦ୍ୱାଜ ଋଷିଙ୍କର ସଖା ଥିଲେ । ଭରଦ୍ୱାଜଙ୍କର ପୁତ୍ର ହେବା ସମୟରେ ତାହାଙ୍କର ମଧ୍ୟ ଦ୍ରୁପଦ ନାମରେ ଗୋଟିଏ ପୁତ୍ର ଜାତ ହୋଇଥିଲା । ୪୦ । କ୍ଷତ୍ରିୟବର ପୃଷତ-ପୁତ୍ର ପ୍ରତିଦିନ ଭରଦ୍ୱାଜଙ୍କ ଆଶ୍ରମକୁ ଗମନ କରି ଦ୍ରୋଣଙ୍କ ସହିତ କ୍ରୀଡ଼ା ଓ ଅଧ୍ୟୟନ କରନ୍ତି । ୪୧ । ହେ ନରେଶ୍ୱର । ଅନନ୍ତର ପୃଷତ ରାଜାଙ୍କର ପରଲୋକ ପ୍ରାପ୍ତିହୁଅନ୍ତେ ମହାବାହୁ ଦ୍ରୁପଦ, ଉତ୍ତର ପଞ୍ଚାଳ ଦେଶର ରାଜା ହେଲେ । ୪୨ । ସେହି ସମୟରେ ଭଗବାନ୍ ଭରଦ୍ୱାଜ ମଧ୍ୟ ସ୍ୱର୍ଗାରୋହଣ କଲେ; ମହାତପା ଦ୍ରୋଣ ସେହି ସ୍ଥାନରେ ଥାଇ ତପସ୍ୟା କରିବାରେ ପ୍ରବୃତ୍ତ ହେଲେ । ୪୩ । ଅନନ୍ତର ବେଦ ବେଦାଙ୍ଗରେ କୃତବିଦ୍ୟ ଓ ତପୋବଳରେ ନିଷ୍ପାପ ହୋଇ ମହାଯଶା ଦ୍ରୋଣ-ପୁତ୍ର ଲୋଭରେ ଆପଣା ପିତାଙ୍କର ପୂର୍ବ ପ୍ରଦତ୍ତ ଆଦେଶାନୁସାରେ ଅଗ୍ନିହୋତ୍ରରେ ଦମରେ ଓ ଧର୍ମ୍ମରେ ସତତ ଅନୁରକ୍ତା ଶରଦ୍‌ବତ୍ କନ୍ୟା କୃପୀଙ୍କୁ ଭାର୍ଯ୍ୟାପଣରେ ବରଣ କଲେ । ୪୫ ।

ସେହି ଗୌତମ କନ୍ୟା ଅଶ୍ୱତ୍‌ଥାମା ନାମକ ପୁତ୍ରଲାଭ କଲେ । ଜାତ ହେବାମାତ୍ରେ ସେହି ପୁତ୍ର ଉଚ୍ଚୈଃଶ୍ରବା ଅଶ୍ୱ ପ୍ରାୟ ଶବ୍ଦ କଲେ । ତାହା ଶ୍ରବଣ କରି ତତ୍କାଳରେ ଅନ୍ତରୀକ୍ଷସ୍ଥ କୌଣସି ଅଦୃଶ୍ୟ

ପ୍ରାଣୀ ବୋଇଲେ—"ଅଶ୍ୱ ପ୍ରାୟ ଶବ୍ଦକାରୀ ଏହି ବାଳକର ସ୍ଥାମ * ଦିଗ୍‌ଦିଗନ୍ତକୁ ଗମନ କରିବାରୁ ଏହାର ନାମ ଅଶ୍ୱତ୍ଥାମା ହେବ ।" ଭରଦ୍ୱାଜ ତନୟ ଦ୍ରୋଣ ପୁତ୍ର ଲାଭ କରି ଅତିଶୟ ସୁପ୍ରୀତ ହେଲେ । ସେହି ପୁତ୍ର ପିତୃଭବନରେ ବାସ କରି ଧନୁର୍ବେଦ ପାରଦର୍ଶୀ ହେଲେ । ହେ ରାଜନ୍ ! ସେହି ସମୟରେ ସେ ଶୁଣିଲେ, ସର୍ବ ଶସ୍ତ୍ରଧାରୀ ଶ୍ରେଷ୍ଠ, ସର୍ବଜ୍ଞାନ ସମ୍ପନ୍ନ, ପରନ୍ତପ, ବ୍ରାହ୍ମଣ ମହାତ୍ମା ଜାମଦଗ୍ନ୍ୟ ରାମ, ବ୍ରାହ୍ମଣ ଗଣଙ୍କୁ ସମସ୍ତ ଧନ ଦାନ କରିବାକୁ ଇଚ୍ଛା କରିଅଛନ୍ତି । ୫୦ । ସେ ରାମଙ୍କର ଧନୁର୍ବେଦରେ ଓ ନୀତିଶାସ୍ତ୍ର ସମ୍ବନ୍ଧରେ ଅଭିଜ୍ଞତା ଶ୍ରବଣ କରି ତତ୍ ସମୁଦାୟ ତାହାଙ୍କଠାରୁ ଲାଭ କରିବାକୁ ଅଭିଳାଷ କଲେ । ୫୧ । ତଦନନ୍ତର ସେହି ମହାତପା, ମହାବାହୁ ଦ୍ରୋଣ, ତପୋଯୁକ୍ତ ବ୍ରତପରାୟଣ ଶିଷ୍ୟ ବର୍ଗରେ ପରିବୃତ ହୋଇ ମହେନ୍ଦ୍ର ପର୍ବତକୁ ଯାତ୍ରା କଲେ । ୫୨ । ତତ୍ପରେ ସେଠାରେ ମହାତପା ଭରଦ୍ୱାଜ ମହେନ୍ଦ୍ର ପର୍ବତରେ ଉପସ୍ଥିତ ହୋଇ ଶତ୍ରୁ କୁଳ ସଂହାରକାରୀ, କ୍ଷାନ୍ତ ଓ ଦାନ୍ତ ଭୃଗୁନନ୍ଦନଙ୍କର ଦର୍ଶନ ପ୍ରାପ୍ତହେଲେ । ୫୩ ।

ଶିଷ୍ୟ ସମଭିବ୍ୟାହାରରେ ସେ ତାହାଙ୍କର ସନ୍ନିହିତ ହୋଇ ଆପଣାର ନାମ ଓ ଅଙ୍ଗିରାଙ୍କ କୁଳରେ ଜନ୍ମ ପ୍ରଭୃତି ନିବେଦନ କଲେ; ଅଥଚ ଭୂମିରେ ମସ୍ତକ ସଂଲଗ୍ନ କରି ତାହାଙ୍କର ଚରଣ ଯୁଗଳରେ ପ୍ରଣାମ କଲେ । ୫୪ । ତତ୍ପରେ ଦ୍ରୋଣ ଦେଖିଲେ ଯେ ମହାତ୍ମା ଜାମଦଗ୍ନ୍ୟ ସମସ୍ତ ପରିତ୍ୟାଗ ପୂର୍ବକ ବନ-ଗମନାଭିଳାଷୀ ହୋଇଛନ୍ତି, ତହୁଁ ତାହାଙ୍କୁ ଦ୍ରୋଣ ବୋଇଲେ ଯେ ଆମ୍ଭେ ଅଯୋନି ଜାତ, ଭରଦ୍ୱାଜଙ୍କ ଠାରୁ ଦ୍ରୋଣୀରୁ ସମ୍ଭୂତ ହୋଇଅଛୁଁ; ସମ୍ପ୍ରତି ବିତ୍ତ କାମନାରେ ଏଠାକୁ ଆଗମନ କରିଅଛୁଁ ।୫୫। କ୍ଷତ୍ରିୟ-କୁଳ-ମର୍ଦ୍ଦନ ମହାତ୍ମା ପରଶୁରାମ ତାହାଙ୍କୁ ବୋଇଲେ, "ହେ ଦ୍ୱିଜ ଶ୍ରେଷ୍ଠ ! ତୁମ୍ଭର ଆଗମନ ମଙ୍ଗଳ-ଜନକ ହୋଇଅଛି, ତୁମ୍ଭର ଯାହା ଇଚ୍ଛା ତାହା ଆମ୍ଭଙ୍କୁ କହ ।" ରାମଙ୍କର ସେହି ବଚନ ଶୁଣି ଭରଦ୍ୱାଜ ବୋଇଲେ, ହେ ବିପୁଳ ବ୍ରତ ! ଆପଣ ଯୋଧପ୍ରଧାନ, ବିବିଧ ଧନ ଦାନ କରିବାକୁ ପ୍ରାର୍ଥନା କରୁଅଛୁଁ । ୫୯ ।

ରାମ ବୋଇଲେ—ହେ ତପୋଧନ ! ଆମ୍ଭର ହିରଣ୍ୟ ଓ ଅନ୍ୟାନ୍ୟ ଯେଉଁ ଧନ ଥିଲା ତାହା ଆମ୍ଭେ ସବୁ ବ୍ରାହ୍ମଣମାନଙ୍କୁ ଦାନ କରିଅଛୁଁ ।୬୦ ।

---

* ସ୍ଥାମର ଅର୍ଥ ଶବ୍ଦ ।

ସପତ୍ତନା ଓ ଏହି ନଗରମାଳମୀ ସାଗରାନ୍ତ ନିଖିଳ ଧରଣୀକୁ ସୁଦ୍ଧା କାଶ୍ୟପଙ୍କୁ ଅବଶ୍ୟ ଦାନ କରିଅଛୁଁ । ଅଦ୍ୟ ଆମ୍ଭର ଶରୀର ମହାମୂଲ୍ୟ ଅସ୍ତ୍ରନିଚୟ ଓ ବିବିଧ ଶସ୍ତ୍ରମାନ କେବଳ ଅବଶେଷିତ ଅଛି । ୬୨ । ଆମ୍ଭେ ପ୍ରଦାନ କରିବାକୁ ଉଦ୍ୟତ ଅଛୁଁ, ହେ ଦ୍ରୋଣ ! ତୁମ୍ଭେ ବରଣ କର, ଆମ୍ଭେ ତୁମ୍ଭଙ୍କୁ ଅସ୍ତ୍ରମାନଙ୍କୁ ଦେବୁଁ କି ଶରୀରକୁ ଦେବୁଁ, ଶୀଘ୍ର ବୋଲ । ୬୩ ।

ଦ୍ରୋଣ ବୋଇଲେ—ହେ ଭାର୍ଗବ ! ପ୍ରୟୋଗ, ଉପସଂହାର ଓ ରହସ୍ୟ ସହିତ ସମସ୍ତ ଅସ୍ତ୍ରମାନଙ୍କୁ ଅଶେଷରୂପେ ଦାନ କରିବା ହେଉନ୍ତୁ । ଭାର୍ଗବ ତଥାବୋଲି କହି ତାହାଙ୍କୁ ସମଗ୍ର ଅସ୍ତ୍ର ଓ ରହସ୍ୟ ନିୟମ ସହ ଧନୁର୍ବେଦକୁ ଅଶେଷରୂପେ ଦାନ କଲେ । ୬୫ । ଦ୍ୱିଜସତ୍ତମ ଦ୍ରୋଣ ତତ୍ସମସ୍ତ ପ୍ରତିଗ୍ରହ କରି କୃତାସ୍ତ୍ର ଓ ସୁପ୍ରୀତ ହୋଇ ଆପଣାର ପ୍ରିୟ ସଖା ଦ୍ରୁପଦଙ୍କ ନିକଟକୁ ଗମନ କଲେ । ୬୬ ।

---

## ୧୩୧ ଅଧ୍ୟାୟ

ବୈଶମ୍ପାୟନ ବୋଇଲେ—ତଦନନ୍ତର ପ୍ରତାପଶାଳୀ ଭରଦ୍ୱାଜ ପୁତ୍ର ଦ୍ରୁପଦ ରାଜାଙ୍କ ନିକଟକୁ ଗମନ କରି ବୋଇଲେ—"ହେ ରାଜନ୍ ! ଆମ୍ଭେ ତୁମ୍ଭର ସଖା ।" ସଖା ଭରଦ୍ୱାଜ ଏହିପରି କହିବାରୁ ପାଞ୍ଚାଳ ନରପତି ତାହାଙ୍କର ସେ ବାକ୍ୟ ସହ୍ୟ କରି ପାରିଲେ ନାହିଁ । ୨ । ସେ ରାଜା ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇ କ୍ରୋଧରେ ଓ ଅମର୍ଷରେ ଭ୍ରୂଦ୍ୱୟକୁ ବକ୍ର କରି ଓ ଲୋଚନକୁ ଆରକ୍ତ ବର୍ଣ୍ଣ କରି ଦ୍ରୋଣଙ୍କୁ ବୋଇଲେ ।

ଦ୍ରୁପଦ ବୋଇଲେ—ହେ ବ୍ରହ୍ମନ୍ ! ତୁମ୍ଭର ବୁଦ୍ଧି ସଂସ୍କୃତ ହୋଇ ନାହିଁ, ହେ ଦ୍ୱିଜ ! ତୁମ୍ଭେ ଯାହା ହଠାତ୍ ଆସି ଆମ୍ଭଙ୍କୁ କହିଅଛ—"ଆମ୍ଭେ ତୁମ୍ଭର ସଖା" । ୪ । ହେ ମନ୍ଦବୁଦ୍ଧେ ! ଏପରି ଶ୍ରୀହୀନ ଓ ଧନଚ୍ୟୁତ ନରଙ୍କ ସହିତ ସମୃଦ୍ଧିଶାଳୀ ରାଜାମାନଙ୍କର ସଖ୍ୟ କୌଣସି କାଳରେ ହୁଅଇ ନାହିଁ । ୫ । କାଳ ଯେପରି ସବୁ ପଦାର୍ଥକୁ ଜୀର୍ଣ୍ଣ କରେ ତଦ୍ରୂପ ସୌହାର୍ଦ୍ଦ୍ୟକୁ ମଧ୍ୟ ଜୀର୍ଣ୍ଣ କରେ । ପୂର୍ବେ ଘଟନାକ୍ରମେ ତୁମ୍ଭସହ ଆମ୍ଭର ସୌହାର୍ଦ୍ଦ୍ୟ ହୋଇଥିଲା; କିନ୍ତୁ ଏହି ଭୂମଣ୍ଡଳରେ ସୌହାର୍ଦ୍ଦ୍ୟ କାହାର

ହୃଦୟରେ ଅଜର ହୋଇ ରହେ ନାହିଁ, କାଳ ତାହାକୁ ହରଣ କରେ ଅଥବା କ୍ରୋଧ ହରଣ କରେ । ୭ । ଅତଏବ ତୁମ୍ଭେ ସେହି ଜୀର୍ଣ୍ଣସଖ୍ୟର ଉପାସନା କରନା; ସେ ସଖ୍ୟ ବର୍ତ୍ତମାନ ଅଛି ବୋଲି ସ୍ୱୀକାର କରନା, ହେ ଦ୍ୱିଜ ଶ୍ରେଷ୍ଠ । ତୁମ୍ଭ ସହିତ ଆମ୍ଭର ଯେଉଁ ସଖ୍ୟ ଥିଲା, ସେ ପ୍ରୟୋଜନ ବଶରୁ ହୋଇଥିଲା । ୮ ।

ଦେଖ, ଦରିଦ୍ର ବ୍ୟକ୍ତି କଦାପି ଧନୀର ସଖା ହୁଅଇ ନାହିଁ, ମୂର୍ଖ କଦାପି ପଣ୍ଡିତର ସଖା ହୁଅଇ ନାହିଁ; ଶୂରର ସଖା କ୍ଲୀବ ହୁଅଇ ନାହିଁ, ତୁମ୍ଭେ କି ନିମିତ୍ତ ପୂର୍ବସଖ୍ୟ ଇଚ୍ଛା କରୁଅଛ ? । ୯ । ଯାହାଙ୍କର ବିତ୍ତ ସମାନ, ଯାହାଙ୍କର ବଳ ସମାନ, ତାହାଙ୍କର ସଖ୍ୟ ହୁଅଇ; ପୁଷ୍ଟ ଅଥବା ଅପୁଷ୍ଟ ବ୍ୟକ୍ତିଙ୍କର ସଖ୍ୟ ଅଥବା ବିବାଦ ହୁଅଇ ନାହିଁ । ୧୦ । ଯେଉଁ ବ୍ୟକ୍ତି ଶ୍ରୋତ୍ରିୟ ନୁହେଁ ସେ କଦାପି ଶ୍ରୋତ୍ରିୟଙ୍କର ସଖା ହୋଇ ପାରଇ ନାହିଁ । ରଥୀଙ୍କ ସହିତ ଅରଥି କଦାପି ସୌହାର୍ଦ୍ଦ୍ୟ ସ୍ଥାପନ କରଇ ନାହିଁ । ଯେ ରାଜା ନୁହେଁ ସେ ରାଜାଙ୍କର ସଖା ହୋଇପାରେ ନାହିଁ, ଅତଏବ ପୂର୍ବ ସଖ୍ୟ କି ନିମିତ୍ତ କରୁଅଛ ? । ୧୧ ।

ବୈଶମ୍ପାୟନ ବୋଇଲେ—ଏହିରୂପ ବଚନ ଶ୍ରବଣ କରି, ପ୍ରତାପବାନ୍ ଭରଦ୍ୱାଜ ମୁହୂର୍ତ୍ତମାନ ଚିନ୍ତା କରି ମନ୍ୟୁରେ ପରିପ୍ଲୁତ ହେଲେ । ୧୨ । ପରେ ସେହି ବୁଦ୍ଧିମାନ୍ ମନେ ମନେ ପାଞ୍ଚାଳ ରାଜାଙ୍କର ପରାଭବର ଉପାୟ ବିନିଶ୍ଚିତ କରି କୁରୁଶ୍ରେଷ୍ଠମାନଙ୍କର ହାସ୍ତିନ ପୁରକୁ ଗମନ କଲେ । ୧୩ । ସେ ଦ୍ୱିଜସତ୍ତମ ଭରଦ୍ୱାଜ ନାଗପୁରକୁ ଗମନ କରି ଗୌତମଙ୍କ ନିବେଶନରେ ପ୍ରଚ୍ଛନ୍ନ ଭାବରେ ରହିଲେ । ତତ୍ପରେ କୃପାଚାର୍ଯ୍ୟ କୁନ୍ତୀଙ୍କ ପୁତ୍ରମାନଙ୍କୁ ଅଧ୍ୟାପନା କରିସାରିଲା ପରେ ଦ୍ରୋଣଙ୍କ ପୁତ୍ର ଅଶ୍ୱତ୍ଥାମା ସେମାନଙ୍କୁ ପ୍ରତ୍ୟେକ ଅସ୍ତ୍ର ଶିକ୍ଷା କରାନ୍ତି; ଏହା କେହି ଜାଣନ୍ତି ନାହିଁ । ୧୫ । ଏହି ଭାବରେ ସେ ମହାତ୍ମା ଗୋପନ ଭାବରେ କିୟତ୍କାଳ ରହିଲେ; ସବୁ କୁମାର ମାନେ ଏକଦା କ୍ରୀଡ଼ା କରିବା ନିମିତ୍ତ ହାସ୍ତିନ-ପୁରକୁ ବହିର୍ଗତ ହେଲେ; ସେହି ବୀରମାନେ ବୀଟା * ଦ୍ୱାରା କ୍ରୀଡ଼ା କରି

---

* ଯବାକାର ପ୍ରାଦେଶ ମାତ୍ର କାଷ୍ଠ ଖଣ୍ଡକୁ ବୀଟା କହନ୍ତି; ତାହାକୁ ଅନ୍ୟ ଖଣ୍ଡେ ହସ୍ତମିତ କାଷ୍ଠରେ ଉପର୍ଯ୍ୟୁପରି ପ୍ରକ୍ଷିପ୍ତ କରି କ୍ରୀଡ଼ା କରନ୍ତି । ଭାଷାରେ ଗୋଟି—ଡାବିଲ ଖେଳ କହି ।

ପ୍ରମୋଦରେ ବିଚରଣ କଲେ । କ୍ରୀଡ଼ା କରୁଁ କରୁଁ ସେ ବୀଟା କୂପରେ ପତିତ ହେଲା । ତତ୍ପରେ ସେମାନେ ବୀଟାକୁ ଉଦ୍ଧାର କରିବା ନିମିତ୍ତ ଅଗ୍ରହପୂର୍ବକ ଯତ୍ନ କଲେ । ୧୭ । କିନ୍ତୁ ସେମାନେ ସେ କର୍ମରେ କୃତ-କାର୍ଯ୍ୟ ହୋଇ ପାରିଲେ ନାହିଁ । ତତ୍ପରେ ସେମାନେ ଲଜ୍ଜାରେ ଅବନତ ମୁଖ ହୋଇ ପରସ୍ପର ପରସ୍ପରର ମୁଖକୁ ଅବଲୋକନ କଲେ । ୧୮ ।

କିପରି ତାହାକୁ ପ୍ରାପ୍ତ ହେବେ କୌଣସି ଉପାୟ ନ ଦେଖି ଅତ୍ୟନ୍ତ ଉତ୍କଣ୍ଠିତ ହେଲେ । ଏମନ୍ତ ସମୟରେ ସେମାନେ ଗୋଟିଏ ଶ୍ୟାମବର୍ଣ୍ଣ, କୃଶ ଓ ପଳିତ ବ୍ରାହ୍ମଣଙ୍କୁ ଦେଖିଲେ । ୧୯ । ସେ ବ୍ରାହ୍ମଣଟି ଅଗ୍ନିହୋତ୍ର ଓ ନିତ୍ୟକର୍ମ ସମାପ୍ତ କରି ଦଣ୍ଡାୟମାନ ହୋଇଥାନ୍ତି । କୁମାରମାନେ ସେ ମହାତ୍ମାଙ୍କୁ ଦେଖି ତାହାଙ୍କ ସମୀପରେ ଉପସ୍ଥିତ ହୋଇ ଭଗ୍ନୋତ୍ସାହ, କ୍ରୀଡ଼ା ରହିତ ଓ ଦୁଃଖିତ ଅନ୍ତରରେ ତାହାଙ୍କୁ ଘେରିଗଲେ । ଏଥି ଉତ୍ତାରୁ ବୀର୍ଯ୍ୟବାନ୍ ଦ୍ରୋଣ କୁମାରମାନଙ୍କୁ ଅକୃତକାର୍ଯ୍ୟ ଦେଖି ନିପୁଣତା ହେତୁରୁ ମନ୍ଦ ମନ୍ଦ ହାସ୍ୟ କରି ଅଭିଭାଷଣ କଲେ । ଅହୋ ! ତୁମ୍ଭମାନଙ୍କର କ୍ଷତ୍ରିୟ ବଳକୁ ଧିକ୍ ଓ ତୁମ୍ଭମାନଙ୍କର ଅସ୍ତ୍ର-ଶିକ୍ଷାକୁ ମଧ୍ୟ ଧିକ୍ । । ୨୧ । ତୁମ୍ଭେମାନେ ଭରତକୁଳରେ ଜନ୍ମ ଗ୍ରହଣ କରି ସୁଦ୍ଧା ଏହି ବୀଟାଟିକୁ ଉତ୍ତୋଳନ କରିପାରିଲ ନାହିଁ । ବର୍ତ୍ତମାନ୍ ଆମ୍ଭଙ୍କୁ ଯେବେ କିଛି ଭୋଜନ ସାମଗ୍ରୀ ଦେବ, ତେବେ ଆମ୍ଭେ ଏହି ବୀଟାକୁ ଓ ଏହି ମୁଦ୍ରିକାକୁ ଈଷିକା ଦ୍ୱାରା ଉଦ୍ଧାର କରି ଦେବୁଁ । କୁମାରମାନଙ୍କୁ ଅରିନ୍ଦମ ଦ୍ରୋଣ ଏହା କହି ଆପଣାର ମୁଦ୍ରିକାକୁ ଅଙ୍ଗୁଳିରୁ ବାହାର କରି ସେହି ନିର୍ଜ୍ଜଳ କୂପରେ ନିକ୍ଷିପ୍ତ କଲେ । ତଦନନ୍ତର କୁନ୍ତୀ ପୁତ୍ର ଯୁଧିଷ୍ଠିର ଦ୍ରୋଣଙ୍କୁ ବୋଇଲେ । ୨୫ ।

ଯୁଧିଷ୍ଠିର ବୋଇଲେ—ହେ ବ୍ରହ୍ମନ୍ । ଆପଣ ନୃପଙ୍କ ଅନୁମତି-କ୍ରମେ ଆମ୍ଭମାନଙ୍କଠାରେ ଚିରସ୍ଥାୟିନୀ ଭିକ୍ଷା ଲାଭ କରନ୍ତୁ । ଏହା ଶୁଣି ଦ୍ରୋଣ ହାସ୍ୟ କରି ଭରତବଂଶୀୟ ବୀରଙ୍କୁ ବୋଇଲେ । ୨୬ ।

ଦ୍ରୋଣ ବୋଇଲେ—ଏହି ଦେଖ, ଏକ ମୁଷ୍ଟି ଈଷିକାକୁ ଆମ୍ଭେ ଅସ୍ତ୍ର ମନ୍ତ୍ର ଦ୍ୱାରା ଅଭିମନ୍ତ୍ରିତ କଲୁଁ । ଏହାର ବଳ ଦେଖ; ଅନ୍ୟ ଅସ୍ତ୍ରରେ ସୁଦ୍ଧା ଏପରି ବଳ ହେବ ନାହିଁ । ଈଷୀକା ଦ୍ୱାରା ଆମ୍ଭେ ବୀଟାକୁ ବିଦ୍ଧ କରିବୁଁ ଓ ସେ ଈଷୀକାକୁ ଅନ୍ୟ ଗୋଟିଏ ଈଷୀକା ଦ୍ୱାରା ବିଦ୍ଧ କରିବୁଁ;

ଏହି କ୍ରମେ ତାହାକୁ ଅପର ଈଷୀକା ଦ୍ୱାରା ଭିନ୍ନ କରି ଯାହାକୁ ଗ୍ରହଣ କରିବୁଁ । ୨୮ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ଦ୍ରୋଣ ଯେରୂପ କହିଲେ, ଅବିକଳ ତଦ୍ରୂପ ଶୀଘ୍ର କଲେ । କୁମାରମାନେ ତାହା ଦେଖି ବିସ୍ମୟରେ ଉତ୍ଫୁଲ୍ଲଲୋଚନ ହୋଇ ସେ କାର୍ଯ୍ୟକୁ ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ମଣିଲେ ।

କୁମାରମାନେ ବୋଇଲେ—ହେ ବିପ୍ରର୍ଷେ ! ଏହି ମୁଦ୍ରିକାକୁ ମଧ୍ୟ ଶୀଘ୍ର ଉଦ୍ଧାର କରନ୍ତୁ । ୩୦ ।

ବୈଶମ୍ପାୟନ ବୋଇଲେ—ତତ୍ପରେ ସେ ମହାଯଶା, ପ୍ରଭୁ ଦ୍ରୋଣ ଶର ସହିତ ଶରାସନ ଗ୍ରହଣ କରି ଶରଦ୍ୱାରା ସେ ଅଙ୍ଗୁରୀୟକୁ ବିଦ୍ଧ କରି ଊର୍ଦ୍ଧ୍ୱକୁ ଉଠାଇ ଆଣିଲେ । ୩୧ । ପରେ ଶର ସହିତ ସେହି ଅଙ୍ଗୁଳୀୟକକୁ ନେଇ ଅବିସ୍ମିତଭାବରେ ବିସ୍ମୟାପନ୍ନ କୁମାରମାନଙ୍କୁ ଅର୍ପଣ କଲେ । ୩୨ । କୁମାରମାନେ ଶରଦ୍ୱାରା ସେହି ମୁଦ୍ରିକାକୁ ଉଦ୍ଧାର କରିବାର ଦେଖି ବୋଇଲେ—ବ୍ରହ୍ମନ୍ ! ଏହି ବିଦ୍ୟା ଅନ୍ୟ ବ୍ୟକ୍ତିଠାରେ ଦୃଶ୍ୟ ହୁଅଇ ନାହିଁ; ଅତଏବ ଆପଣଙ୍କୁ ଅଭିବାଦନ କରୁଅଛୁଁ; ଆପଣ କିଏ ? କାହାର ପୁତ୍ର ? ଓ ଆମ୍ଭେମାନେ ଆପଣଙ୍କର କି ଉପକାର କରିବୁଁ ? ବୋଲନ୍ତୁ । ୩୩ ।

ବୈଶମ୍ପାୟନ ବୋଇଲେ—ଏହା ଶୁଣି ଦ୍ରୋଣ ଉତ୍ତର କଲେ ।୩୪। ଦ୍ରୋଣ ବୋଇଲେ—ତୁମ୍ଭେମାନେ ଭୀଷ୍ମଙ୍କ ନିକଟକୁ ଗମନ କରି ଆମ୍ଭର ଆକୃତି ଓ ଗୁଣ ବିଷୟ ଅବିକଳ ବର୍ଣ୍ଣନ କର; ତହିଁକ୍ଷଣି ସେ ମହାତେଜା, ଆମ୍ଭଙ୍କୁ ଜାଣି ପାରିବେ ।

ବୈଶମ୍ପାୟନ ବୋଇଲେ—କୁମାରମାନେ ତାହା ସ୍ୱୀକାର କରି ଭୀଷ୍ମଙ୍କ ସମୀପକୁ ଗମନ ପୂର୍ବକ ସେହି ବ୍ରାହ୍ମଣଙ୍କର ତଥ୍ୟ ବୃତ୍ତାନ୍ତ ଓ ତାହାଙ୍କର ସେହି ଅଦ୍ଭୁତ କର୍ମର ବିଷୟ ନିବେଦନ କଲେ । ୩୬ । ଭୀଷ୍ମ ବାଳକମାନଙ୍କର ମୁଖରୁ ସମସ୍ତ ବିଷୟ ଶ୍ରବଣ କରି ସେହି ବ୍ରାହ୍ମଣଙ୍କୁ ଦ୍ରୋଣ ବୋଲି ଜାଣିପାରିଲେ ଓ ବିବେଚନା କଲେ ଯେ ସେ ଆଚାର୍ଯ୍ୟ କାର୍ଯ୍ୟର ଉପଯୁକ୍ତ । ୩୭ । ଅନନ୍ତର ଶସ୍ତ୍ରଧାରୀଙ୍କ ଶ୍ରେଷ୍ଠ ଭୀଷ୍ମ

ତତ୍କ୍ଷଣାତ୍ ସ୍ୱୟଂ ସେ ସ୍ଥାନକୁ ଗମନ କରି ସମାଦର ସହ ତାହାଙ୍କୁ ଅଣାଇ ନିପୁଣ ଭାବରେ ଆଗମନର ହେତୁ ପ୍ରଶ୍ନ କଲେ । ୩୮ । ଦ୍ରୋଣ ମଧ୍ୟ ଆଗମନର କାରଣ ମାନଙ୍କୁ ନିବେଦନ କଲେ । ୩୯ ।

ଦ୍ରୋଣ କହିଲେ—ଆୟୁଷ୍ମନ୍ ! ଆମ୍ଭେ ପୂର୍ବେ ଧନୁର୍ବେଦ ଓ ଅସ୍ତ୍ରଶିକ୍ଷା ନିମିତ୍ତ ମହର୍ଷି ଅଗ୍ନିବେଶଙ୍କ ନିକଟକୁ ଗମନ କରିଥିଲୁଁ । ସେଠାରେ ବ୍ରହ୍ମଚର୍ଯ୍ୟ ବ୍ରତୀ, ଜଟାଧାରୀ ଓ ଗୁରୁ ଶୁଶ୍ରୂଷାରେ ତତ୍ପର ହୋଇ ବହୁବର୍ଷ ବାସ କଲୁଁ । ୪୧ । ପାଞ୍ଚାଳଦେଶୀୟ ରାଜକୁମାର ମହାବଳ ଯଜ୍ଞସେନ ମଧ୍ୟ ସେହି ଗୁରୁଙ୍କ ନିକଟରେ ଅସ୍ତ୍ରବିଦ୍ୟା ଓ ଧନୁର୍ବିଦ୍ୟା ଶିଖିବା ନିମିତ୍ତ ବାସ କଲେ । ୪୨ । ହେ ପ୍ରଭୋ ! ସେଠାରେ ଆମ୍ଭର ଉପକାରୀ, ପ୍ରିୟ ଓ ସଖା ଥିଲେ; ତାହାଙ୍କ ସହିତ ଏକତ୍ର ବାସକରି ଆମ୍ଭେ ବହୁକାଳ କ୍ଷେପଣ କଲୁଁ । ୪୩ । ହେ କୌରବ୍ୟ ! ବାଲ୍ୟାବସ୍ଥାବଧି ତାହାଙ୍କ ସହିତ ଆମ୍ଭର ଏକତ୍ର ଅଧ୍ୟୟନ ହୋଇଥିଲା; ସେଠାରେ ସେ ଆମ୍ଭର ସଖା ପ୍ରିୟବାଦୀ ଓ ପ୍ରିୟକାରୀ ଥିଲେ ।୪୪।

ହେ ଭୀଷ୍ମ ! ସେ ଆମ୍ଭର ପ୍ରୀତି ନିମିତ୍ତ ଆମ୍ଭଙ୍କୁ କହନ୍ତି, "ହେ ଦ୍ରୋଣ ! ଆମ୍ଭେ ମହାତ୍ମା ପିତାଙ୍କର ପ୍ରିୟତମ ପୁତ୍ର, ଯେଉଁ କାଳରେ ସେ ଆମ୍ଭଙ୍କୁ ରାଜ୍ୟରେ ଅଭିଷିକ୍ତ କରିବେ ସେହି କାଳରେ, ହେ ସଖେ ! ରାଜ୍ୟ ତୁମ୍ଭର ଭୋଗ୍ୟ ହେବ, ଆମ୍ଭେ ସତ୍ୟ-ପ୍ରତିଜ୍ଞା କରୁଅଛୁଁ । ଆମ୍ଭର 'ଭୋଗ, ବିତ୍ତ ଓ ସୁଖ ତୁମ୍ଭର ଅଧୀନ ହେବ' "।୪୬। ଏହା କହି ସେ କୃତାସ୍ତ୍ର ହୋଇ ଓ ଆମ୍ଭଦ୍ୱାରା ସମ୍ମାନିତ ହୋଇ ଗମନ କଲେ । ୪୭ । ସେହି କାଳରୁ ଆମ୍ଭେ ତାହାଙ୍କର ସେହି ବଚନକୁ ସର୍ବଦା ମନରେ ଧାରଣ କରିଥାଉଁ । ଅନନ୍ତର ଆମ୍ଭେ ପିତାଙ୍କ ନିଯୋଗାନୁସାରେ ପୁତ୍ରଲୋଭରେ ଅନତିକେଶୀ, ମହାବୁଦ୍ଧିମତୀ, ବ୍ରତପରାୟଣା ଅଥଚ ଅଗ୍ନିହୋତ୍ରରେ, ଯାଗରେ ଓ ଇନ୍ଦ୍ରିୟ ଦମନରେ ନିୟତ ନିରତା କୃପୀଙ୍କୁ ବିବାହ କଲୁଁ । ୪୯ । ଆମ୍ଭର ଔରସରୁ ଗୌତମୀ ଅଶ୍ୱତ୍ଥାମା ନାମକ ପୁତ୍ରକୁ ଜାତ କଲେ । ତାହାଙ୍କର କର୍ମ ଓ ବିକ୍ରମ ଉଭୟଙ୍କର ଓ ତତଜ ଅଦିତ୍ୟଙ୍କ ତେଜ ସମାନ । ୫୦ ।

ଭରଦ୍ୱାଜ ଯେପରି ଆମ୍ଭଙ୍କୁ ପ୍ରାପ୍ତ ହୋଇ ପ୍ରୀତ ହୋଇଥିଲେ ଆମ୍ଭେ ମଧ୍ୟ ସେ ପୁତ୍ର ପ୍ରାପ୍ତହୋଇ ତଦ୍ରୂପ ପ୍ରୀତ ହେଲୁଁ । ସେଠାରେ ଧନୀମାନଙ୍କର ପୁତ୍ରମାନେ ଗୋ-କ୍ଷୀର ପାନ କରିବାର ଦେଖି ବାଳକ

ଅଶ୍ୱତ୍‌ଥାମା ଦୁଗ୍‌ଧପାନ କରିବାକୁ ରୋଦନ କଲେ; ତାହାଦେଖି ଆମ୍ଭର ଦରିଦ୍ରମ ଜାତ ହେଲା । ଅଳ୍ପ ଗୋଧନ ସ୍ୱାମୀକଙ୍କଠାରୁ ଭିକ୍ଷା କଲେ, ତାହାଙ୍କର ସ୍ୱକର୍ମ ଅବସନ୍ନ ହେବ, ଏହି କଥା ମନରେ ଚିନ୍ତାକରି ବହୁ ଧନବାନ୍ ବ୍ରାହ୍ମଣଙ୍କଠାରୁ ବିଶୁଦ୍ଧ ଭାବରେ ଗୋଟିଏ ପୟସ୍ୱିନୀ ଧେନୁ ଭିକ୍ଷା କରିବା ନିମିତ୍ତ ସେ ଦେଶର ଏକ ସୀମାରୁ ସୀମାନ୍ତର ପର୍ଯ୍ୟନ୍ତ ଭ୍ରମଣ କଲୁଁ; କିନ୍ତୁ ହେ ଗାଙ୍ଗେୟ ! ତାହା ପ୍ରାପ୍ତ ହେଲା ନାହିଁ । ୫୩ । ଅନନ୍ତର ଅନ୍ୟ ବାଳକମାନେ ସେ ବାଳକକୁ ପିଷ୍ଟୋଦକ ଦ୍ୱାରା ପ୍ରଲୋଭିତ କଲେ; ହେ କୌରବ୍ୟ ! ବାଳକଟି ପିଷ୍ଟୋଦକ ପାନକରି ଦୁଗ୍‌ଧପାନ କରିଥିବାର ମନରେ କରି ହୃଷ୍ଟ ଓ ବିମୋହିତ ହୋଇ ଉଠି ନୃତ୍ୟ କଲା । ସେହି ବାଳକକୁ ନୃତ୍ୟ କରିବାର ଓ ଅପର ବାଳକମାନେ ତାହାକୁ ବେଷ୍ଟନ କରି ପରିହାସ କରିବାର ବିଲୋକନ କରି ଆମ୍ଭ ମନରେ ଅତ୍ୟନ୍ତ କଷ୍ଟ ଜାତ ହେଲା । ଦରିଦ୍ର ଦ୍ରୋଣଙ୍କୁ ଧିକ୍, ଯାହାଙ୍କର ଧନ ନାହିଁ ଓ ଯାହାଙ୍କର ସୁତ ପିଷ୍ଟୋଦକ ପାନକରି ଆମ୍ଭେ ମଧ୍ୟ କ୍ଷୀର ପାନ କରିଅଛୁଁ ବୋଲି କହି ପ୍ରମୋଦରେ ନୃତ୍ୟ କରୁଅଛି । ଏହାପରେ ଜଳ୍ପନାକାରଙ୍କର ବଚନ ଶ୍ରବଣ କରି ଆମ୍ଭର ବୁଦ୍ଧିଭ୍ରଂଶ ହେଲା । ତତ୍ପରେ ଆମ୍ଭେ ଆପଣାକୁ ନିନ୍ଦାକରି ମନୋମଧ୍ୟରେ ଚିନ୍ତା କଲୁଁ । ୫୮ । "ଏ ପୂର୍ବେ ଦରିଦ୍ର ଥିଲା" ବୋଲି କହି ବିପ୍ରମାନେ ଆମ୍ଭଙ୍କୁ ନିନ୍ଦା କରି ବର୍ଜିତ କରନ୍ତୁ; ତଥାପି ଆମ୍ଭେ ସେମାନଙ୍କ ଗୃହରେ ଉପବାସ କରି ରହିବୁଁ; କିନ୍ତୁ ଧନଲୋଭ ଇଚ୍ଛାରେ ପାପିଷ୍ଠ ପରସେବା କରିବୁଁ ନାହିଁ । ଏହା ଭାବି ହେ ଭୀଷ୍ମ ! ତତ୍ପରେ ଆମ୍ଭେ ପୂର୍ବ ସ୍ନେହ ଓ ଅନୁରାଗକୁ ସ୍ମରଣ କରି ପ୍ରିୟପୁତ୍ରକୁ ସଙ୍ଗରେ ଘେନି ଦାରା ସହ ଦ୍ରୁପଦଙ୍କ ନିକଟକୁ ଗମନ କଲୁଁ । ୬୦ ।

ଆମ୍ଭର ପ୍ରିୟ ସଖା ରାଜ୍ୟାଭିଷିକ୍ତ ହୋଇଅଛନ୍ତି ଶୁଣି ଆପଣାକୁ କୃତକୃତ୍ୟ ମନେ କରି ସୁପ୍ରୀତ ମନରେ ତାହାଙ୍କ ନିକଟକୁ ଗମନ କରିଥିଲୁଁ । ୬୧ । ହେ ପ୍ରଭୋ ! ତାହାଙ୍କ ସହିତ ପୂର୍ବରେ ଏକତ୍ର ବାସ ଓ ତାହାଙ୍କର ପ୍ରତିଜ୍ଞାତ ବାକ୍ୟ ସ୍ମରଣ କରି ଆମ୍ଭେ ତାହାଙ୍କ ନିକଟରେ ଉପସ୍ଥିତ ହୋଇ ସଖା ବୋଲି ସମ୍ବୋଧନ କଲୁଁ; ହେ ପୁରୁଷ-ବ୍ୟାଘ୍ର ! ଆମ୍ଭେ ତାହାଙ୍କୁ କହିଲୁଁ ଯେ ଆମ୍ଭଙ୍କୁ ସଖା ବୋଲି ଜାଣ; ଏହି ପ୍ରକାରେ ସଖା ପ୍ରାପ୍ତ ସନ୍ନିହିତ ହୋଇ ତାହାଙ୍କ ସହିତ ସଙ୍ଗତ ହେଲୁଁ । ୬୩ । ତହିଁରେ ସେ ଆମ୍ଭଙ୍କୁ ହୀନ ଜୀବ ପ୍ରାୟ ଜ୍ଞାନ କରି ହାସ୍ୟପୂର୍ବକ

ବୋଇଲେ—ବ୍ରହ୍ମନ୍ ! ତୁମ୍ଭର ବୁଦ୍ଧି ସମୀଚୀନା ହୋଇ ନାହିଁ । ୬୪ । ହେ ଦ୍ୱିଜ ! ତୁମ୍ଭେ ଆମ୍ଭଙ୍କୁ ହଠାତ୍ ବୋଇଲେ "ଆମ୍ଭେ ତୁମ୍ଭର ସଖା", ସର୍ବଗ୍ରାସୀ କାଳ ସବୁ ଜୀର୍ଣ୍ଣ କରେ । ୬୫ । ପ୍ରୟୋଜନ ବଶରୁ ତୁମ୍ଭର ଓ ଆମ୍ଭର ପୂର୍ବେ ସୌହାର୍ଦ୍ଦ୍ୟ ଜାତ ହୋଇଥିଲା; ଶ୍ରୋତ୍ରିୟର ସଖା, ଅଶ୍ରୋତ୍ରିୟ ହୁଅଇ ନାହିଁ କି ଅରଥିର ସଖା ରଥୀ ନୁହଇ । ୬୬ । ସାମ୍ୟ ହେତୁରୁ ସଖ୍ୟ ହୁଅଇ; ବୈଷମ୍ୟ ହେଲେ ସୌହାର୍ଦ୍ଦ୍ୟ ହୁଅଇ ନାହିଁ । ଲୋକରେ କାହାର ସହିତ କାହାର ସଖ୍ୟ ଅଜର ହୁଅଇ ନାହିଁ । ୬୭ । କାଳ ଅଥବା କ୍ରୋଧ ସଖ୍ୟକୁ ହରଣ କରଇ; ତୁମ୍ଭେ ସେ ଜୀର୍ଣ୍ଣ ସଖ୍ୟକୁ ଉପାସନା କରନା । ୬୮ । ହେ ଦ୍ୱିଜଶ୍ରେଷ୍ଠ ! ତୁମ୍ଭ ସହିତ ଆମ୍ଭର ପ୍ରୟୋଜନବଶତଃ ସଖ୍ୟ ସ୍ଥାପନ ହୋଇଥିଲା; ଆଢ୍ୟର ସଖା ଅନାଢ୍ୟ ଅନାଢ୍ୟ ବ୍ୟକ୍ତି, ଅଥବା ବିଦ୍ୱାନ ବ୍ୟକ୍ତିର ସଖା ଅବିଦ୍ୱାନ୍ ହୁଅଇ ନାହିଁ । ୬୯ । ଶୂର ବ୍ୟକ୍ତିର ସଖା ଦୁର୍ବଳ କଦାପି ହୁଅଇ ନାହିଁ; ତୁମ୍ଭେ କିପରି ଆମ୍ଭର ସଖା ହେବାକୁ ଇଚ୍ଛା କରୁଅଛ ? ହେ ମହାତ୍ମନ ! ସମୃଦ୍ଧିଶାଳୀ ମାନଙ୍କର ଦରିଦ୍ର ଶ୍ରୀହୀନ, ଧନଚ୍ୟୁତ, ନର ସହିତ ସଖ୍ୟ କୌଣସି କାଳରେ ହୁଅଇ ନାହିଁ । ୭୦ ।

ଶୂର ବ୍ୟକ୍ତିର ସଖା ଦୁର୍ବଳ କଦାପି ହୁଅଇ ନାହିଁ; ଶ୍ରୋତ୍ରୀୟର ଅଶ୍ରୋତ୍ରୀୟ, କି ରଥୀର ଅରଥୀ ସଖା ହୁଅଇ ନାହିଁ । ୭୧ । ଯେ ରାଜା ନୁହେଁ, ସେ ପାର୍ଥିବର ସଖା ହୋଇ ନ ପାରେ; ତୁମ୍ଭେ କିପରି ଆମ୍ଭର ସଖା ହେବାକୁ ଇଚ୍ଛା କରୁଅଛ ? ଆମ୍ଭେ ଯେ ତୁମ୍ଭ ସହିତ ରାଜ୍ୟନିମିତ୍ତ ପ୍ରତିଜ୍ଞା କରିଥିଲୁଁ, ତାହା ଆମ୍ଭର ସ୍ମରଣ ହେଉନାହିଁ । ୭୨ । ହେ ବ୍ରହ୍ମନ୍ ! ହେଉ ଆମ୍ଭେ ତୁମ୍ଭଙ୍କୁ ଏକରାତ୍ର ଭୋଜନ ଦାନ କରିବୁଁ । ତାହାଙ୍କର ଏତଦ୍ରୂପ ବଚନ ଶ୍ରବଣ କରି ଆମ୍ଭେ ତତ୍କାଳରେ ଭାର୍ଯ୍ୟା ସହ ପ୍ରସ୍ଥାନ କଲୁଁ । ୭୩ । ହେ ଭୀଷ୍ମ ! ଆମ୍ଭେ ଦ୍ରୁପଦ ରାଜାଙ୍କ ଦ୍ୱାରା ଏହିପରି ତିରସ୍କୃତ ହୋଇ ରୋଷବଶରୁ ଯାହା ଅଳ୍ପକାଳ ମଧ୍ୟରେ ସମ୍ପନ୍ନ କରିପାରିବୁଁ, ଏ ରୂପ ପ୍ରତିଜ୍ଞା କରି ଗୁଣାନ୍ୱିତ ଶିଷ୍ୟ ଲାଭ କରିବା ନିମିତ୍ତ କୁରୁରାଜ୍ୟରେ ଉପସ୍ଥିତ ହୋଇଅଛୁଁ । ତତ୍ପରେ ଆପଣଙ୍କ ଅଭିଳାଷାନୁସାରେ କାର୍ଯ୍ୟ କରିବା ନିମିତ୍ତ ଏହି ରମଣୀୟ ନାଗପୁର ରାଜ୍ୟରେ ଉପନୀତ ହେଲୁଁ; ସମ୍ପ୍ରତି କି କାର୍ଯ୍ୟ ସମ୍ପାଦନ କରିବାକୁ ହେବ ବୋଲନ୍ତୁ ? । ୭୪ ।

ବୈଶମ୍ପାୟନ ବୋଇଲେ—ଏହା ଶୁଣି ଭରଦ୍ୱାଜଙ୍କୁ ଭୀଷ୍ମ କହିଲେ—

ଭୀଷ୍ମ ବୋଇଲେ—ଗୃପକୁ ଗୁଣ ମୁକ୍ତ କର; କୁମାରମାନଙ୍କୁ ଉତ୍ତମ ଅସ୍ତ୍ରଶିକ୍ଷା ପ୍ରତିପାଦନ କର; କୁରୁ ଗୃହରେ ପୂଜ୍ୟମାନ ହୋଇ ସୁପ୍ରୀତ ମନରେ ଭୋଗ୍ୟ ଦ୍ରବ୍ୟମାନଙ୍କୁ ଯଥେଷ୍ଟ ଭୋଗ କର । ୭୮ । କୁରୁମାନଙ୍କର ଯେଉଁ ବିତ୍ତ ଅଛି, ସେ ଓ ରାଷ୍ଟ୍ର ସହିତ ଏହି ରାଜ୍ୟ ଅଥଚ ସ୍ୱୟଂ କୁରୁମାନେ ଆପଣଙ୍କର, ଆପଣ ପରମ ରାଜା । ୭୯ । ହେ ବ୍ରହ୍ମନ୍ । ଆପଣଙ୍କର ଯାହା ଯାହା ପ୍ରାର୍ଥିତ, ତାହା ଅଟମ୍ଭ ସମ୍ପନ୍ନ କଲୁଁ, ଜାଣ । ହେ ବିପ୍ରର୍ଷେ ! ଆପଣ ଅମ୍ଭ ଭାଗ୍ୟବଳରୁ ପ୍ରାପ୍ତ ହୋଇ-ଅଛନ୍ତି; ଅମ୍ଭଠାରେ ମହାନ୍ ଅନୁଗ୍ରହ କରିବା ହେଲେ । ୮୦ ।

---

## ଅଧ୍ୟାୟ ୧୩୨

ବୈଶମ୍ପାୟନ ବୋଇଲେ—ତଦନନ୍ତର ମହାତେଜା ଦ୍ୱିପଦ-ଶ୍ରେଷ୍ଠ ଦ୍ରୋଣ ଭୀଷ୍ମଙ୍କ କର୍ତ୍ତୃକ ପୂଜିତ ହୋଇ କୁରୁବେଶ୍ମରେ ସମାଦର ସହ ବିଶ୍ରାମ କଲେ । ୧ । ପରେ ଅଗ୍ନ୍ୟର୍ଥୀଙ୍କ ଶ୍ରାନ୍ତି ଦୂର ହୁଅନ୍ତେ, ଭୀଷ୍ମ ପୌତ୍ରମାନଙ୍କୁ ଆଣି ତାହାଙ୍କଠାରେ ଶିଷ୍ୟ ସ୍ୱରୂପ ସମର୍ପଣ କରି ବିବିଧ ବସ୍ତୁ ପ୍ରଦାନ କଲେ, ଅଥଚ ଧନ ଧାନ୍ୟ ସମାକୁଳ ସୁପରିଚ୍ଛନ୍ନ ଗୃହକୁ ସୁପ୍ରୀତ ହୋଇ ଭରଦ୍ୱାଜଙ୍କୁ ତହିଁରେ ବାସ କରାଇଲେ । ୩ । ମହା ଧନୁର୍ଦ୍ଧାରୀ ଦ୍ରୋଣ ଗୁରୁ ମୁଦିତ ମାନସରେ କୁରୁ କୁମାର ପାଣ୍ଡବଙ୍କୁ ଓ ଧୃତରାଷ୍ଟ୍ର ସନ୍ତାନମାନଙ୍କୁ ଶିଷ୍ୟ କରି ଗ୍ରହଣ କଲେ । ୪ । ସେମାନେ ଗୁରୁଙ୍କର ପାଦ ଗ୍ରହଣ କରନ୍ତେ ଦ୍ରୋଣ ସେମାନଙ୍କୁ ନିର୍ଜନରେ ବୋଇଲେ । ୫ ।

ଦ୍ରୋଣ ବୋଇଲେ—ହେ ଅନଘ ! ଅମ୍ଭ ହୃଦୟରେ ଗୋଟିଏ ବାଞ୍ଛିତ କାର୍ଯ୍ୟ ଅଛି, ତୁମ୍ଭେମାନେ କୃତାସ୍ତ୍ର ହେଲେ ଆମ୍ଭଙ୍କୁ ତାହା ପ୍ରଦାନ କରିବ କି ନା ବର୍ତ୍ତମାନ ଆମ୍ଭଙ୍କୁ ତାହା ସତ୍ୟ କରି କହ । ୬ ।

ବୈଶମ୍ପାୟନ ବୋଇଲେ—ହେ ରାଜନ୍ । ତାହା ଶୁଣି ସେହି କୁମାରମାନେ ତୁନି ହୋଇ ରହିଲେ; କିନ୍ତୁ ହେ ପରନ୍ତପ ! ଅର୍ଜୁନ ପ୍ରତିଜ୍ଞା

କଲେ ଯେ ସେ ସବୁ କର୍ମ ସମ୍ପାଦନ କରିବେ । ୭ । ତଦନନ୍ତର ଦ୍ରୋଣ ଅର୍ଜ୍ଜୁନଙ୍କର ମସ୍ତକକୁ ତତ୍କାଳରେ ବାରମ୍ବାର ଆଘ୍ରାଣ କରି ଓ ପ୍ରୀତିପୂର୍ବକ ଆଲିଙ୍ଗନ କରି ହର୍ଷରେ ରୋଦନ କଲେ । ୮ । ତଦନନ୍ତର ବୀର୍ଯ୍ୟଶାଳୀ ଦ୍ରୋଣ ପାଣ୍ଡୁପୁତ୍ରଙ୍କୁ ଦିବ୍ୟ ଓ ମାନୁଷ ବିବିଧ ପ୍ରକାର ଅସ୍ତ୍ରମାନଙ୍କୁ ଗ୍ରହଣ କରାଇଲେ । ହେ ଭରତର୍ଷଭ ! ସେତେବେଳେ ଅନ୍ୟାନ୍ୟ ବହୁ-ସଂଖ୍ୟକ ରାଜକୁମାରମାନେ ସମାଗତ ହୋଇ ଅସ୍ତ୍ରଶିକ୍ଷା ନିମିତ୍ତ ଦ୍ୱିଜ-ସତ୍ତମ ଦ୍ରୋଣାଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । ୧୦। ବୃଷ୍ଣି ବଂଶୀୟ, ଅନ୍ଧକ ବଂଶୀୟ ଓ ନାନାଦେଶୀୟ ଭୂପାଳମାନେ ଓ ରାଧାନନ୍ଦନ ସୂତପୁତ୍ର କର୍ଣ୍ଣ ମଧ୍ୟ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଆସି ଶିଷ୍ୟତ୍ୱ ସ୍ୱୀକାର କଲେ । ୧୧। ସୂତ-ପୁତ୍ର ଅତିଶୟ ଈର୍ଷାନ୍ୱିତ ହୋଇ ଅର୍ଜ୍ଜୁନଙ୍କ ସହିତ ସ୍ପର୍ଦ୍ଧା କରି ଦୁର୍ଯ୍ୟୋଧନଙ୍କ ଆଶ୍ରୟରେ ପାଣ୍ଡବମାନଙ୍କୁ ଅବମାନନା କଲେ । ୧୨ । ଧନୁର୍ବେଦ ଜାଣିବା ଅଭିଳାଷରେ, ଶିକ୍ଷା, ଭୁଜ, ବଳ ଓ ଉଦ୍ୟୋଗରେ ଅର୍ଜ୍ଜୁନ ସମସ୍ତଙ୍କ ମଧ୍ୟରେ ଦ୍ରୋଣଙ୍କ ତୁଲ୍ୟ ହେଲେ ।୧୩। ଅସ୍ତ୍ର ପ୍ରୟୋଗରେ ସମସ୍ତେ ସମାନ ହେଲେହେଁ ଲଘବ ଓ ସୌଷ୍ଠବ ବିଷୟରେ ଅର୍ଜ୍ଜୁନ ସମସ୍ତଙ୍କ ଅପେକ୍ଷା ବିଶିଷ୍ଟ ହେଲେ, ଯେହେତୁ ତାହାଙ୍କର ଅସ୍ତ୍ରବିଦ୍ୟାରେ ବିଶେଷ ଅନୁରାଗ ଥିଲା । ୧୪ ।

ସବୁ ଶିଷ୍ୟମାନଙ୍କ ମଧ୍ୟରେ ଅର୍ଜ୍ଜୁନ ଅଧିକ ହେଲେ, ଦ୍ରୋଣ ବିଚାରିଲେ ଉପଦେଶ ଗ୍ରହଣରେ ଇନ୍ଦ୍ର-ପୁତ୍ର ଅର୍ଜ୍ଜୁନ ଅପ୍ରତିମ ହେଲେ ।୧୫। ଏହି ପ୍ରକାରେ ଆଚାର୍ଯ୍ୟ ସର୍ବକୁମାରଙ୍କୁ ଇଷ୍ୱ ଓ ଅସ୍ତ୍ରଶିକ୍ଷା ପ୍ରଦାନ କଲେ, ସମସ୍ତଙ୍କୁ ସେ ଜଳ ଆଣିବା ନିମିତ୍ତ ଗୋଟିଏ ଗୋଟିଏ କମଣ୍ଡଳୁ ଦିଅନ୍ତି; କିନ୍ତୁ ଆପଣାର ପୁତ୍ର ଅଶ୍ୱତ୍ଥାମାଙ୍କୁ ଗୋଟିଏ କଳଶ ଦିଅନ୍ତି, ତାହାର କାରଣ ଏହି ଯେ କମଣ୍ଡଳୁରେ ଜଳ ପୂରଣ କରୁଁ କରୁଁ ବିଳମ୍ବ ହୁଏ, କଳଶ ପୂରଣ ଶୀଘ୍ର ହୁଅଇ । ଅତଏବ ଅଶ୍ୱତ୍ଥାମା ଅଗ୍ରେ ଜଳଘେନି ପ୍ରତ୍ୟାବର୍ତ୍ତନ କରନ୍ତି; ଅନ୍ୟମାନେ ନ ଆସୁଁ ଦ୍ରୋଣ ଆପଣାର ସୁତଙ୍କୁ ଉତ୍କୃଷ୍ଟ କ୍ରିୟାମାନ କହି ଦିଅନ୍ତି । ଏ କଥା ଜିଷ୍ଣୁ ଜାଣିପାରି ବାରୁଣାସ୍ତ୍ର ଦ୍ୱାରା କମଣ୍ଡଳୁ ପୂରଣକରି ଗୁରୁ ପୁତ୍ରଙ୍କ ସହିତ ଏକ କାଳରେ ଆଚାର୍ଯ୍ୟଙ୍କ ସମୀପକୁ ଆଗମନ କରନ୍ତି । ୧୮ । ତହିଁରେ ଅସ୍ତ୍ରବେତ୍ତା ମାନଙ୍କର ଶ୍ରେଷ୍ଠ ଅର୍ଜ୍ଜୁନ କୌଣସି ବିଶେଷ ଗୁଣ ବିଷୟରେ ସୁଦ୍ଧା ଆଚାର୍ଯ୍ୟ ପୁତ୍ରଙ୍କଠାରୁ ପୃଥକ୍ ଓ ହୀନ ହେଲେ ନାହିଁ । ଗୁରୁଙ୍କ ସେବାରେ ଅର୍ଜ୍ଜୁନ ପରମ ଯତ୍ନବାନ ଥିଲେ । ୨୦ ।

ଅସ୍ତ୍ରରେ ଅତ୍ୟନ୍ତ ମନୋଯୋଗୀ ହୋଇଥାନ୍ତି । ଏଣୁ ସେ ଦ୍ରୋଣଙ୍କ ପ୍ରିୟ ହେଲେ; ଇଷୁ ଓ ଅସ୍ତ୍ରଶିକ୍ଷାରେ ଫାଲ୍‌ଗୁନଙ୍କୁ ସର୍ବଦା ଉଦ୍‌ଯୁକ୍ତ ଦେଖି ଦ୍ରୋଣ ସୂପକାରଙ୍କୁ ଆହ୍ୱାନ କରି ଗୋପନରେ କହିଲେ, କଦାପି ତୁମ୍ଭେ ଅନ୍ଧକାରରେ ଅର୍ଜ୍ଜୁନଙ୍କୁ ଅନ୍ନ ଦେବ ନାହିଁ କି ଆମ୍ଭେ ଏ କଥା ତୁମ୍ଭଙ୍କୁ କହିଲୁଁ ବୋଲି କହିବ ନାହିଁ । ୨୨ । ଉପୃରେ କଦାଚିତ୍ ଅର୍ଜ୍ଜୁନ ଭୋଜନ କରିବାବେଳେ ବାୟୁ ବହି ସେଠାରେ ଜଳୁଥିବା ପ୍ରଦୀପ ନିର୍ବାପିତ ହେଲା । କୌନ୍ତେୟ ସେ ଅନ୍ଧକାରରେ ସୁଦ୍ଧା ଭୋଜନ କଲେ, ଅଭ୍ୟାସ ବଶରୁ ସେହି ତେଜସ୍ୱୀଙ୍କ ହସ୍ତମୁଖ ବ୍ୟତିରେକେ ଅନ୍ୟସ୍ଥାନରେ ପ୍ରବର୍ତ୍ତିତ ହୁଅଇ ନାହିଁ । ଅର୍ଜ୍ଜୁନ ଭାବିଲେ ଯେ ଅଭ୍ୟାସ କଲେ ଅନ୍ଧକାରରେ ସୁଦ୍ଧା ଅସ୍ତ୍ରପ୍ରୟୋଗ କରି ଯାଇପାରେ, ତହୁଁ ସେ ମହାବାହୁ ପାଣ୍ଡୁନନ୍ଦନ ରାତିରେ ଶରାସନ ଦ୍ୱାରା ଅଦୃଶ୍ୟ ଲକ୍ଷ୍ୟପ୍ରତି ଶର ନିକ୍ଷେପ କରିବାର ଅଭ୍ୟାସ କଲେ । ୨୫ । ହେ ଭରତ । ତାହାଙ୍କର ଧନୁଷ୍ଟଙ୍କାର ଶବ୍ଦ ଦ୍ରୋଣ ଶ୍ରବଣ କରି ତାହାଙ୍କ ସମୀପକୁ ଆସି ଆଲିଙ୍ଗନ କରି, ଦ୍ରୋଣ ବୋଇଲେ, "ଅନ୍ୟ ଧନୁର୍ଦ୍ଧର ଯେପରି କେହି ତୁମ୍ଭ ସମାନ ନ ହୁଏ, ତଦ୍‌ବିଷୟରେ ଆମ୍ଭେ ଯତ୍ନ କରିବୁଁ, ଏକଥା ଆମ୍ଭେ ତୁମ୍ଭଙ୍କୁ ସତ୍ୟ କହୁଅଛୁଁ" । ୨୭ ।

ବୈଶମ୍ପାୟନ ବୋଇଲେ—ଉପୃରେ ଦ୍ରୋଣ ଅର୍ଜ୍ଜୁନଙ୍କୁ ପୁନର୍ବାର ଅଶ୍ୱୋପରେ, ଗଜ ଉପରେ ଓ ରଥଉପରେ ଆରୋହଣ କରି କିପରି ରଣ କରିବାକୁ ହୁଅଇ ତାହା ଶିକ୍ଷା ଦେଲେ । ୨୮ । କିପରି ଗଦାଯୁଦ୍ଧ କରିବାକୁ ହୁଅଇ, ଅସି, ତୋମର ଶକ୍ତି ପ୍ରାସ—ଏମାନଙ୍କୁ କିପରି ବ୍ୟବହାର କରିବାକୁ ହୁଅଇ, କିପରି ସଙ୍କୀର୍ଣ୍ଣ * ଯୁଦ୍ଧ କରିବାକୁ ହୁଅଇ, ଏହା ସମସ୍ତ ବୀର୍ଯ୍ୟବାନ ଦ୍ରୋଣ ଶିଖାଇଲେ । ୨୯ । ତାହାଙ୍କର ସେହି ଯୁଦ୍ଧକୌଶଳ ଶ୍ରବଣକରି ସହସ୍ର ରାଜା ଓ ରାଜପୁତ୍ରମାନେ ଧନୁର୍ବେଦ ଶିକ୍ଷାର ଅଭିଳାଷୀ ହୋଇ ସମାଗତ ହେଲେ । ୩୦ । ହେ ମହାରାଜ । ଅନନ୍ତର ହିରଣ୍ୟଧନୁ ନାମକ ନିଷାଦରାଜାଙ୍କର ପୁତ୍ର 'ଏକଲବ୍ୟ' ଦ୍ରୋଣଙ୍କ ନିକଟରେ ଉପସ୍ଥିତ ହେଲେ । ଧର୍ମ୍ମଜ୍ଞ ଦ୍ରୋଣ, ତାହାଙ୍କୁ ନିଷାଦ ତନୟ ବିବେଚନା କରି

---

* ଏକାବେଳେକେ କିପରି ଅନେକ ଆୟୁଧ ପ୍ରୟୋଗ କରିବାକୁ ହୁଅଇ ଓ ଏକାବେଳେକେ କିପରି ଅନେକଙ୍କ ସଙ୍ଗେ ଯୁଦ୍ଧ କରିବାକୁ ହୁଅଇ, ତାହାକୁ ସଂକୀର୍ଣ୍ଣ ଯୁଦ୍ଧ ବୋଲି ।

ରାଜପୁତ୍ରମାନଙ୍କ ସହିତ ତାହାଙ୍କୁ ଶିଷ୍ୟ ବୋଲି ଗ୍ରହଣ କଲେ ନାହିଁ । ୩୨ ।
ହେ ପରନ୍ତପ ! ସେ ଦ୍ରୋଣଙ୍କ ପାଦଦ୍ୱୟକୁ ଶିରେଦ୍ୱାରା ଗ୍ରହଣ କରି ଅରଣ୍ୟକୁ ଗମନ କରି ଗୋଟିଏ ମହୀମୟ ଦ୍ରୋଣମୂର୍ତ୍ତି ନିର୍ମିତ କଲେ । ୩୩ । ସେହି ମୂର୍ତ୍ତିଠାରେ ଆଚାର୍ଯ୍ୟଙ୍କ ପୂଜାକରି ବ୍ରତପରାୟଣ ହୋଇ ଈଷ ଓ ଅସ୍ତ୍ରଯୋଗ ଆରମ୍ଭ କଲେ । ୩୪ । ଉତ୍କୃଷ୍ଟ ଶ୍ରଦ୍ଧାରେ ଓ ପରମ ଯୋଗରେ ସଂଯୁକ୍ତ ହୋଇ ଇଷୁର ବିମୋକ୍ଷ, ଆଦାନ ଓ ସନ୍ଧାନରେ ଅତିଶୟ ଲଘୁହସ୍ତ ହେଲେ । ୩୫ ।

ହେ ଅରିମର୍ଦ୍ଦନ ! ଦ୍ରୋଣଙ୍କ ଅନୁମତି ଅନୁସାରେ ଏକଦା କୁରୁ ଓ ପାଣ୍ଡବମାନେ ରଥାରୋହଣ କରି ମୃଗୟାକୁ ଗମନ କଲେ । ୩୬ । ହେ ରାଜନ୍ ! ତତ୍କାଳରେ କୌଣସି ବ୍ୟକ୍ତି ମୃଗୟାର ଉପକରଣ ନେଇ କୁକ୍କୁର ସଙ୍ଗରେ ଘେନି ଯଦୃଚ୍ଛାକ୍ରମେ ପାଣ୍ଡବମାନଙ୍କର ପଶ୍ଚାତ୍ ଗମନ କଲା । ୩୭ । ପରେ ସେହି ଅରଣ୍ୟ ମଧ୍ୟରେ ସେମାନେ ସମସ୍ତେ ଯେତେବେଳେ ସ୍ୱ ସ୍ୱ କାର୍ଯ୍ୟ ସମ୍ପାଦନାର୍ଥ ଇତଃସ୍ତତଃ ବିଚରଣ କରୁଥିଲେ ତେତେବେଳେ ସେମାନଙ୍କର ସମଭିବ୍ୟାହାରୀ ସେହି କୁକ୍କୁର ନିଷାଦ ପ୍ରତି ଗମନ କଲା ଓ କୃଷ୍ଣବର୍ଣ୍ଣ, ମଳଲିପ୍ତାଙ୍ଗ, କୃଷ୍ଣବର୍ଣ୍ଣ ଚର୍ମ ପରିଧାୟୀ ଓ ଜଟାଧାରୀ ଦେଖି ଚିତ୍କାର କରି ଦଣ୍ଡାୟମାନ ହେଲା । ୩୯ । ନିଷାଦ ତନୟ ଅସ୍ତ୍ରପ୍ରୟୋଗ ବିଷୟରେ ଲଘୁହସ୍ତତା ପ୍ରଦର୍ଶନ କରି, ଚିତ୍କାରକାରୀ ସେହି କୁକ୍କୁର ଆସ୍ୟ ମଧ୍ୟକୁ ଏକକାଳରେ ସପ୍ତଗୋଟି ଶର ପ୍ରକ୍ଷେପ କଲା । ୪୦ ।

ସେହି ଶର-ପୂର୍ଣ୍ଣ-ବଦନ ଶ୍ୱାନ ପାଣ୍ଡବଙ୍କ ନିକଟରେ ଉପସ୍ଥିତ ହେଲା; ତାହାକୁ ଦେଖି ପାଣ୍ଡବମାନେ ଅତିଶୟ ବିସ୍ମୟାପନ୍ନ ହେଲେ । ୪୧ । ତେତେବେଳେ ସେମାନେ ଲଘୁହସ୍ତତା * ଓ ଶରଭେଦିତା ପର୍ଯ୍ୟାଲୋଚନା କରି ଅତ୍ୟନ୍ତ ଲଜ୍ଜିତ ହେଲେ ଓ ସର୍ବତୋଭାବେ ତାହାଙ୍କର ପ୍ରଶଂସା କଲେ । ୪୨ । ହେ ରାଜନ୍ ! ପାଣ୍ଡବମାନେ ବନ ମଧ୍ୟରେ ଅନ୍ୱେଷଣ କରି ଦେଖିଲେ ଯେ ଜଣେ ବନବାସୀ ଅନିଶ ଶର ନିକ୍ଷେପ କରୁଅଛି । ୪୩ । ତାହାକୁ ମଳିନ ଓ ବିକୃତ ଦର୍ଶନ ଦେଖି ପ୍ରଥମେ ଚିହ୍ନି ପାରିଲେ ନାହିଁ । ତାହାଙ୍କୁ ପଚାରିଲେ, ଆପଣ କିଏ ? କାହାର ପୁତ୍ର ?

---

***ଲଘୁହସ୍ତତାର କୌଶଳ ଏପରି ଯେ ଶରମାନ ଶ୍ୱାନମୁଖକୁ ପ୍ରବେଶ କରି ରହିଲା କିନ୍ତୁ ଭେଦ କଲା ନାହିଁ ।**

ଏକଲବ୍ୟ ବୋଇଲେ—ହେ ବୀରମାନେ ! ଆମ୍ଭେ ନିଷାଦାଧିପତି ହିରଣ୍ୟଧନୁଙ୍କ ପୁତ୍ର; ଦ୍ରୋଣଙ୍କ ଶିଷ୍ୟ ବୋଲି ଆମ୍ଭଙ୍କୁ ଜାଣିବା ହେଉନ୍ତୁ ! ଆମ୍ଭେ ଧନୁର୍ବେଦରେ ପରିଶ୍ରମ କରୁଅଛୁଁ । ୪୫ ।

ବୈଶମ୍ପାୟନ ବୋଇଲେ—ପାଣ୍ଡବମାନେ ତାହାଙ୍କର ପରିଚୟ ନେଇ ଦ୍ରୋଣଙ୍କୁ ଆସି ସମୁଦାୟ ଅଦ୍ଭୁତ କାର୍ଯ୍ୟ ଯାଥାତଥ୍ୟ ରୂପେ କହିଲେ । ୪୬ । ହେ ରାଜନ୍ ! କୁନ୍ତୀ ପୁତ୍ର ଅର୍ଜ୍ଜୁନ ଏକଲବ୍ୟଙ୍କ ବିଷୟ ସ୍ମରଣ କରି ଦ୍ରୋଣଙ୍କ ନିକଟକୁ ଆସି ଗୋପନରେ ପ୍ରଣୟ ବଶରୁ ତାହାଙ୍କୁ କହିଲେ । ୪୭ ।

ଅର୍ଜ୍ଜୁନ ବୋଇଲେ—ଆପଣ ଦିନେ ପ୍ରୀତିପୂର୍ବକ ଆମ୍ଭଙ୍କୁ ପରିରମ୍ଭଣ କରି ଏହି କଥା କହିଥିଲେ ଯେ ଆମ୍ଭ ଶିଷ୍ୟ ମଧ୍ୟରେ ତୁମ୍ଭଠାରୁ କେହି ବିଶିଷ୍ଟ ହେବେ ନାହିଁ । ୪୮ । କିନ୍ତୁ ବୀର୍ଯ୍ୟବାନ୍ ନିଷାଦାଧିପତିଙ୍କ ପୁତ୍ର ଭବଦୀୟ ଶିଷ୍ୟ ହୋଇ କିପରି ଆମ୍ଭ ଅପେକ୍ଷା ଅଧିକ ସର୍ବଲୋକ ଅପେକ୍ଷା ବିଶିଷ୍ଟ ହେଲେ ? । ୪୯ ।

ବୈଶମ୍ପାୟନ ବୋଇଲେ—ଦ୍ରୋଣ, ମୁହୂର୍ତ୍ତେ ମାତ୍ର ଚିନ୍ତାକରି ନିଶ୍ଚୟ କଲେ ଓ ସବ୍ୟସାଚୀଙ୍କୁ ସଙ୍ଗରେ ଘେନି ନିଷାଦ ସୁତଙ୍କ ନିକଟକୁ ଗମନ କଲେ । ୫୦ । ଦେଖିଲେ ଯେ ଏକଲବ୍ୟ ମଳିନାଙ୍ଗ, ଜଟିଳ କୌପିନଧାରୀ ଓ ଧନୁଷ୍ପାଣୀ ହୋଇ ଅନିଶ ଶରକ୍ଷେପ କରୁଅଛି । ୫୧ । ଏକଲବ୍ୟ ଦ୍ରୋଣଙ୍କୁ ସମୀପକୁ ଆସିବାର ଦେଖି ତାହାଙ୍କ ସମୀପକୁ ଗମନ କରି ତାହାଙ୍କର ପାଦଦ୍ୱୟକୁ ଧାରଣ କରି ମହୀରେ ମସ୍ତକ ଲଗାଇ ପ୍ରଣାମ କଲା । ୫୨ । ତଦନନ୍ତର ସେହି ନିଷାଦପୁତ୍ର ଦ୍ରୋଣଙ୍କୁ ଯଥା ବିଧାନରେ ପୂଜା କରି ଆପଣାକୁ ଶିଷ୍ୟ ବୋଲି ନିବେଦନ କରି କୃତାଞ୍ଜଳି ପୂର୍ବରେ ସମ୍ମୁଖରେ ଦଣ୍ଡାୟମାନ ହେଲା । ୫୩ । ହେ ରାଜନ୍ ! ଅନନ୍ତର ଦ୍ରୋଣ ଏକଲବ୍ୟଙ୍କୁ ଏହି କଥା କହିଲେ, ହେ ବୀର ! ଯଦି ତୁମ୍ଭେ ଆମ୍ଭର ଶିଷ୍ୟ ଅଛ, ତେବେ ଆମ୍ଭର ବେତନ ଦିଅ; ଏକଲବ୍ୟ ତାହା ଶୁଣି ପ୍ରୀତିପୂର୍ବକ ତାହାଙ୍କୁ ବୋଇଲେ । ୫୪ ।

ଏକଲବ୍ୟ ବୋଇଲେ—ଆପଣ ଗୁରୁ, କଣ ଦାନ କରିବୁଁ ? ହେ ଭଗବନ୍ ! ଆପଣ ଆମ୍ଭଙ୍କୁ ଆଜ୍ଞା କରନ୍ତୁ; ହେ ବ୍ରହ୍ମବିତ୍ତମ ! ଗୁରୁଙ୍କୁ ଆମ୍ଭର ଅଦେୟ କିଛି ନାହିଁ । ୫୬ ।

ଦ୍ରୋଣ ବୋଇଲେ—ଏକଲବ୍ୟ ଯଦି ତୁମ୍ଭର ଦବାର ଅବଶ୍ୟ ଇଚ୍ଛା ଥାଇ, ତେବେ ତୁମ୍ଭର ଦକ୍ଷିଣ ହସ୍ତର ଅଙ୍ଗୁଷ୍ଠଟିକୁ ଆମ୍ଭଙ୍କୁ ଦାନ କର । ୫୭ ।

ବୈଶମ୍ପାୟନ ବୋଇଲେ—ଏକଲବ୍ୟ ସତତ ସତ୍ୟରେ ରତ ଥିଲେ; ସୁତରାଂ ଦ୍ରୋଣଙ୍କର ସେହି ଦାରୁଣ ବଚନ ଶ୍ରବଣ କରି ସୁଦ୍ଧା ଅଦୀନ ଚିତ୍ତ ଓ ପ୍ରଫୁଲ୍ଲ ବଦନ ହୋଇ ସ୍ୱୀୟ ପ୍ରତିଜ୍ଞା ରକ୍ଷା ନିମିତ୍ତ ଆପଣାର ଅଙ୍ଗୁଷ୍ଠକୁ ଛେଦନ କରି ଦ୍ରୋଣଙ୍କୁ ପ୍ରଦାନ କଲେ । ତତ୍ପରେ ନିଷାଦସୁତ ଇତର ଅଙ୍ଗୁଳି ଦ୍ୱାରା ଶରକୁ ଆକର୍ଷଣ କଲେ । ୬୦ । କିନ୍ତୁ ହେ ନରାଧୀପ ! ପୂର୍ବ ପ୍ରାୟ ଶୀଘ୍ର ନିକ୍ଷେପ କରି ପାରିଲେ ନାହିଁ । ତହିଁରେ ଅର୍ଜୁନ ପ୍ରୀତମନା ଓ ବିଗତ କ୍ଳେଶ ହେଲେ । ୬୧ । ଅର୍ଜୁନଙ୍କୁ ଆଉ କେହି ଅଭିଭବ କରିବାକୁ ନ ପାରିବାରୁ ଦ୍ରୋଣଙ୍କ ବଚନ ସତ୍ୟ ହେଲା । ସେହି ସମୟରେ ଦ୍ରୋଣଙ୍କର ଦୁଇଗୋଟି ଶିଷ୍ୟ ଗଦାଯୋଗ୍ୟ ହେଲେ । ୬୨ । ଦୁର୍ଯ୍ୟୋଧନ ଓ ଭୀମ ଦୁହେଁ ପରସ୍ପର ପ୍ରତି ପରସ୍ପର ନିୟତ କ୍ରୁଦ୍ଧ ହୋଇଥାନ୍ତି । ଅଶ୍ୱତ୍ଥାମା ଅସ୍ତ୍ର ପ୍ରୟୋଗ ସମ୍ବନ୍ଧ ସମସ୍ତ ରହସ୍ୟ ଜ୍ଞାନରେ ସର୍ବାପେକ୍ଷା ଅଧିକ ହେଲେ । ୬୩ । ନକୁଳ ଓ ସହଦେବ ଅସିମୁଷ୍ଟି ଧାରଣରେ ଅନ୍ୟ ସମସ୍ତଙ୍କ ଅପେକ୍ଷା ବିଶିଷ୍ଟ ହେଲେ; ଯୁଧିଷ୍ଠିର ରଥିଗଣଙ୍କ ମଧ୍ୟରେ ଓ ଧନଞ୍ଜୟ ସର୍ବ ନିପୁଣ ହେଲେ । ୬୪ । ବୁଦ୍ଧି, ଉପାୟ, ବଳ ଓ ଉତ୍ସାହ ଦ୍ୱାରା ସର୍ବପ୍ରକାର ଅସ୍ତ୍ରପ୍ରୟୋଗରେ ନିପୁଣ ଓ ରଥ ଯୂଥ-ପତିମାନଙ୍କର ଯୂଥପତି ହୋଇ ସାଗରାନ୍ତ ଧରା ମଧ୍ୟରେ ଅର୍ଜୁନ ବିଖ୍ୟାତ ହେଲେ । ୬୫ ।

ଅସ୍ତ୍ରରେ ଓ ଗୁରୁଙ୍କ ଠାରେ ଅନୁରାଗ ବିଷୟରେ ଅର୍ଜୁନ ବିଶିଷ୍ଟ ହେଲେ; ସମସ୍ତଙ୍କ ପ୍ରତି ସମାନ ଭାବରେ ଅସ୍ତ୍ରୋପଦେଶ ହେଲେହେଁ ଅର୍ଜୁନ ସୌଷ୍ଠବରେ ବୀର୍ଯ୍ୟଶାଳୀ ବୋଲି ଗଣ୍ୟ ହେଲେ । ୬୬ । ସବୁ କୁମାରମାନଙ୍କ ମଧ୍ୟରେ ଏକାକୀ ଅର୍ଜୁନ ଅତିରଥ ହେଲେ; ହେ ପରନ୍ତପ ! ଦୁରାତ୍ମା ଧୃତରାଷ୍ଟ୍ର ପୁତ୍ରମାନେ ଅଧିକ ବଳଶାଳୀ ଭୀମସେନଙ୍କୁ ଓ କୃତବିଦ୍ୟ ଧନଞ୍ଜୟଙ୍କୁ ସହି ପାରିଲେ ନାହିଁ । ୬୭ । ହେ ପୁରୁଷର୍ଷଭ ! ସର୍ବ-ବିଦ୍ୟାସ୍ତ୍ର-ଶିକ୍ଷିତ କୁମାରମାନଙ୍କୁ ଦ୍ରୋଣ ଏକଦା ଅଣାଇ କିଏ କିପରି ପ୍ରହରଣ କରିବାର ଶିଖି ଅଛନ୍ତି, ତାହା ଜାଣିବାର ଇଚ୍ଛା କଲେ । ସେମାନଙ୍କ ଅଜ୍ଞାତରେ ଶିଳ୍ପୀମାନଙ୍କ ଦ୍ୱାରା ଗୋଟିଏ କୃତ୍ରିମ ନୀଳପକ୍ଷ

କୃତ୍ରିମ ପକ୍ଷୀ ଗଢ଼ାଇ ବୃକ୍ଷାଗ୍ର ଉପରେ ଲକ୍ଷ୍ୟ ସ୍ୱରୂପ ସ୍ଥାପନ କରାଇଲେ । ୭୦ ।

ଦ୍ରୋଣ ବୋଇଲେ—ଆପଣମାନେ ସମସ୍ତେ ଶୀଘ୍ର ଧନୁଷ୍ପାଣୀ ହୋଇ ଏହି ଭାସକୁ ଉଦ୍ଦେଶ୍ୟକରି ଶରାସନରେ ଶର ସନ୍ଧାନ ପୂର୍ବକ ଦଣ୍ଡାୟମାନ ହୁଅ । ଆମ୍ଭ ବାକ୍ୟରେ ସମକାଳରେ ଏହି ପକ୍ଷୀର ମସ୍ତକ ଛେଦନ କରିବ । ହେ ପୁତ୍ରଗଣ ! ଆମ୍ଭେ ତୁମ୍ଭମାନଙ୍କୁ ଗୋଟି ଗୋଟି କରି ଯେପରି ନିଯୁକ୍ତ କରିବୁଁ, ତୁମ୍ଭେମାନେ ତତ୍‌କ୍ଷଣାତ୍ ସେହିପରି କରିବ । ୭୨ ।

ବୈଶମ୍ପାୟନ ବୋଇଲେ—ତଦନନ୍ତରେ ଅଙ୍ଗିରା ବଂଶର ବରିଷ୍ଠ ଦ୍ରୋଣ ଯୁଧିଷ୍ଠିରଙ୍କୁ ପ୍ରଥମରେ ବୋଇଲେ—ହେ ଦୁର୍ଦ୍ଧର୍ଷ ! ଶର ସନ୍ଧାନ କର, ଆମ୍ଭେ କହିଲେ ତ୍ୟାଗ କରିବ । ଶତ୍ରୁ ସନ୍ତାପକାରୀ ଯୁଧିଷ୍ଠିର ଗୁରୁଙ୍କ ବାକ୍ୟାନୁସାରେ ଅଗ୍ରେ ଧନୁର୍ଗ୍ରହଣ କରି ଲକ୍ଷ୍ୟକୁ ଉଦ୍ଦେଶ୍ୟ କରି ସ୍ଥିତ ହେଲେ । ୭୪ । ହେ ଭରତ ଶ୍ରେଷ୍ଠ । ଧନୁକୁ ବିସ୍ତାର କରି କୁରୁନନ୍ଦନ ମୁହୂର୍ତ୍ତେ ରହିବା ପରେ ଦ୍ରୋଣ ତାହାଙ୍କୁ ବୋଇଲେ—ହେ ନରବରାତ୍ମଜ । ସେହି ଦ୍ରୁମର ଅଗ୍ରସ୍ଥିତ ଭାସକୁ ତୁମ୍ଭେ କି ଦେଖୁଅଛ ? ଯୁଧିଷ୍ଠିର ଆଚାର୍ଯ୍ୟଙ୍କୁ ପ୍ରତ୍ୟୁତ୍ତର ଦେଲେ "ଆମ୍ଭେ ଦେଖୁଅଛୁଁ ।" ପୁନରପି ମୁହୂର୍ତ୍ତିକ ପରେ ଦ୍ରୋଣ ପ୍ରତିଭାଷଣ କଲେ—"ତୁମ୍ଭେ କି ଏହି ବୃକ୍ଷକୁ, ଆମ୍ଭଙ୍କୁ ଓ ଭ୍ରାତୃଗଣଙ୍କୁ ସୁଦ୍ଧା ଦେଖୁଅଛ ?" କୁନ୍ତୀ ପୁତ୍ର ବୋଇଲେ, "ଆମ୍ଭେ ଏହି ବନସ୍ପତିକୁ, ଆପଣଙ୍କୁ, ଭ୍ରାତୃବର୍ଗଙ୍କୁ ଅଥଚ ଭାସକୁ ପୁନଃ ପୁନଃ ଦେଖୁଅଛୁଁ ।" ଦ୍ରୋଣ ଅପ୍ରୀତମନା ହୋଇ ତାହାଙ୍କୁ ବୋଇଲେ, 'ଅପସର୍ପଣ କର' ଓ ନିନ୍ଦା କରି ତାହାଙ୍କୁ କହିଲେ ଯେ ଏ ଲକ୍ଷକୁ ତୁମ୍ଭେ ବିଦ୍ଧ କରି ପାରିବ ନାହିଁ । ତତ୍ପରେ ଦୁର୍ଯ୍ୟୋଧନାଦି ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ମହାଯଶା ଦ୍ରୋଣ ସେହି କ୍ରମରେ ପ୍ରଶ୍ନ କଲେ; ଭୀମାଦି ଅନ୍ୟାନ୍ୟ ଶିଷ୍ୟମାନଙ୍କୁ ଓ ଦେଶାନ୍ତରାଗତ ଅନ୍ୟାନ୍ୟ ରାଜାମାନଙ୍କୁ ମଧ୍ୟ ସେହିପରି ପ୍ରଶ୍ନ କଲେ, ସେମାନେ ସମସ୍ତେ କହିଲେ ଯେ ଆମ୍ଭେ ସମସ୍ତଙ୍କୁ ଦେଖୁଅଛୁଁ । ତହିଁରେ ଦ୍ରୋଣ ସେମାନଙ୍କୁ ନିନ୍ଦା କଲେ ।

---

## ଅଧ୍ୟାୟ ୧୩୩

ବୈଶମ୍ପାୟନ ବୋଇଲେ—ତଦନନ୍ତର ଦ୍ରୋଣ ସସ୍ମିତ ହୋଇ ଧନଞ୍ଜୟଙ୍କୁ ବୋଇଲେ ଏବେ ତୁମ୍ଭ ଦ୍ୱାରା ଏହି ଲକ୍ଷ୍ୟ ପ୍ରହର୍ତ୍ତବ୍ୟ ହେବ, ଅବଲୋକନ କର । ଅମ୍ଭେ କହିବାକ୍ଷଣି ତୁମ୍ଭେ ଶର ମୋଚନ କରିବ । ହେ ପୁତ୍ର । କାର୍ମୁକକୁ ବିସ୍ତାର କରି ଏକ ମୁହୂର୍ତ୍ତ ରହ । ୨ । ଏହି ପ୍ରକାର ଗୁରୁଙ୍କ ବଚନ ଶ୍ରବଣ କରି ସବ୍ୟସାଚୀ କାର୍ମୁକକୁ ମଣ୍ଡଳୀକୃତ କରି ଭାସକୁ ଲକ୍ଷ୍ୟ କରି ସ୍ଥିତ ହେଲେ । ମୁହୂର୍ତ୍ତିକ ପରେ ଦ୍ରୋଣ ତାହାଙ୍କୁ ସେହିପରି ଭାଷିଲେ । ହେ ଅର୍ଜୁନ । ତୁମ୍ଭେ ଏହି ଭାସକୁ, ଦ୍ରୁମକୁ କି ଅମ୍ଭଙ୍କୁ ସୁଦ୍ଧା ଦେଖୁଅଛ ? ଦ୍ରୋଣଙ୍କୁ ପାର୍ଥ ବୋଇଲେ, ଅମ୍ଭେ ଏକମାତ୍ର ଭାସକୁ ଦେଖୁଅଛୁଁ, ବୃକ୍ଷକୁ ବା ଆପଣଙ୍କୁ ଦେଖୁନାହୁଁ, ତତ୍ପରେ ଦୁର୍ଦ୍ଧର୍ଷ ଦ୍ରୋଣ ପ୍ରୀତମନା ହୋଇ ମୁହୂର୍ତ୍ତିକ ପରେ ପାଣ୍ଡବଙ୍କର ମହାରଥୀ ଅର୍ଜୁନଙ୍କୁ ପଚାରିଲେ, ଯଦି ଭାସକୁ ଦେଖୁଅଛ, ତେବେ ପୁନର୍ବାର କହ; କିପରି ଦେଖୁଅଛ ? ସେ ଉତ୍ତର କଲେ, ଅମ୍ଭେ ଶିରକୁ ଦେଖୁଅଛୁଁ, ଭାସର ଗାତ୍ରକୁ ଦେଖୁନାହୁଁ । ଅର୍ଜୁନ ଏପରି କହନ୍ତେ, ଦ୍ରୋଣ ପୁଲକିତ ହୋଇ ବୋଇଲେ—'ମୋଚନ କର' । ତହୁଁ ଅର୍ଜୁନ କିଛି ମାତ୍ର ବିଚାର ନ କରି ଶର ମୋଚନ କଲେ । ୮ । ତତ୍ପରେ ନିଶିତ-କ୍ଷୁର ଦ୍ୱାରା ଅର୍ଜୁନ ସେହି ଭାସକୁ ଛେଦନ କରି ଶୀଘ୍ର ପାତିତ କଲେ । ୯ । ସେ କାର୍ଯ୍ୟ ସିଦ୍ଧ ହୁଅନ୍ତେ, ଫାଲ୍‌ଗୁନଙ୍କୁ ଦ୍ରୋଣ ପରିଷ୍ୱକ୍ତ କଲେ ଓ ବିଚାରିଲେ ଯେ ସସହାୟ ଦ୍ରୁପଦ ପରାଜିତ ହେଲେ । ୧୦ ।

ଥରେ ଅଙ୍ଗିରା କୁଳର ବରପୁତ୍ର ଦ୍ରୋଣ, ଶିଷ୍ୟମାନଙ୍କ ସହ ଗଙ୍ଗାକୁ ମଜ୍ଜନାର୍ଥ ଗମନ କରିଥିଲେ; ସେ ଯେଉଁ କ୍ଷଣରେ ଜଳରେ ଅବଗାହନ କଲେ, ସେହି କ୍ଷଣରେ ଗୋଟିଏ ବଳବାନ ସଲିଳେଚର କୁମ୍ଭୀର କାଳ ପ୍ରେରିତ ହେଲା ପ୍ରାୟ ଆସି ତାହାଙ୍କର ଜଙ୍ଘାନ୍ତକୁ ଗ୍ରହଣ କଲା । ୧୨ । ସେ ସ୍ୱୟଂ ଆପଣାକୁ ମୁକ୍ତ କରିବାକୁ ସମର୍ଥ ଥିଲେହେଁ ସବୁ ଶିଷ୍ୟଙ୍କୁ ଡାକି ବୋଇଲେ, ତୁମ୍ଭେମାନେ ଏହି ଗ୍ରାହକୁ ବଧ କରି ସତ୍ୱର ଅମ୍ଭଙ୍କୁ ମୁକ୍ତ କର । ୧୩ । ସେ କହିବା ମାତ୍ରକେ ବିଭତ୍ସୁ ଅନିବାର୍ଯ୍ୟ ଓ ନିଶିତ ପଞ୍ଚଗୋଟି ଶରଦ୍ୱାରା ଜଳମଗ୍ନ ଗ୍ରାହକୁ ପ୍ରହାର କଲେ । ୧୪ । ଅନ୍ୟ ଶିଷ୍ୟମାନେ କର୍ତ୍ତବ୍ୟ ସମ୍ମୂଢ ହୋଇ ଯେ ଯେଉଁ ସ୍ଥାନରେ ଥିଲେ ସେ ସେହି ସ୍ଥାନରେ ରହିଲେ । ଦ୍ରୋଣାଚାର୍ଯ୍ୟ

ଅର୍ଜୁନଙ୍କ କ୍ରିୟାତତ୍ପର ଦେଖି ପ୍ରୀତ ହେଲେ ଓ ସବୁ ଶିଷ୍ୟଙ୍କ ଅପେକ୍ଷା ତାହାଙ୍କୁ ଶ୍ରେଷ୍ଠ ବୋଲି ବୋଧ କଲେ । ୧୭ ।

ମହାତ୍ମା ଦ୍ରୋଣଙ୍କର ଜଙ୍ଘାକୁ ତ୍ୟାଗ କରି ଗ୍ରାହ ପଞ୍ଚତ୍ୱ ପ୍ରାପ୍ତ ହେଲା । ଅନନ୍ତର ଭରଦ୍ୱାଜ-ପୁତ୍ର ଦ୍ରୋଣ ମହାତ୍ମା ମହାରଥ ବିଜୟକୁ ବୋଇଲେ—ହେ ମହାବାହୋ ! ପ୍ରୟୋଗ ଓ ସଂହାର ସହିତ ବ୍ରହ୍ମଶିର ନାମକ ଏହି ଉତ୍କୃଷ୍ଟ ଓ ଦୁର୍ଦ୍ଧର୍ଷ ଅସ୍ତ୍ରକୁ ଗ୍ରହଣ କର । ୧୮ । ଏ ଅସ୍ତ୍ରକୁ ତୁମ୍ଭେ କଦାପି ମନୁଷ୍ୟଠାରେ ପ୍ରୟୋଗ କରିବ ନାହିଁ । ଅଳ୍ପ ତେଜସ୍ୱୀଠାରେ ଏ ଅସ୍ତ୍ର ପାତିତ ହେଲେ, ସମୁଦାୟ ଜଗତକୁ ଦଗ୍ଧ କରିବ । ୧୯ । ହେ ତାତ ! ଲୋକତ୍ରୟରେ ଏ ସମାନ ଅସ୍ତ୍ର ଆଉ ନାହିଁ; ଅତଏବ ତୁମ୍ଭେ ପ୍ରଯତ ହୋଇ ଏହାକୁ ଧାରଣ କର ଓ ଆମ୍ଭର ଏହି ବଚନ ଶ୍ରବଣ କର । ୨୦ । ହେ ବୀର ! ଯୁଦ୍ଧରେ ଯେବେ କୌଣସି ଦେବତା ଅଥବା ରାକ୍ଷସ ପ୍ରଭୃତି କେହି ଅତିମାନୁଷ ବ୍ୟକ୍ତି ତୁମ୍ଭଙ୍କୁ ବାଧିତ କରିବେ, ତେବେ ତୁମ୍ଭେ ଏ ଅସ୍ତ୍ରକୁ ତାହାଙ୍କ ବଧ ନିମିତ୍ତ ପ୍ରୟୋଗ କରିବ । ୨୧ । ବିଭତ୍ସୁ 'ତଥା' ବୋଲି କୃତାଞ୍ଜଳି ପୂର୍ବକ ସେହି ପରମାସ୍ତ୍ରକୁ ତତ୍କାଳରେ ଗ୍ରହଣ କଲେ । ତହୁଁ ଗୁରୁ ତାହାଙ୍କୁ ପୁନର୍ବାର ବୋଇଲେ—ଏହି ପୃଥିବୀରେ ତୁମ୍ଭସମାନ ଧନୁର୍ଦ୍ଧର କୌଣସି ପୁରୁଷ ହେବେ ନାହିଁ; ତୁମ୍ଭେ ସର୍ବ ଶତ୍ରୁମାନଙ୍କର ଅଜେୟ ହେବ ଓ କୀର୍ତ୍ତିମାନ୍ ହୋଇ ବିଚରଣ କରିବ । ୨୩ ।

---

## ଅଧ୍ୟାୟ ୧୩୪

ବୈଶମ୍ପାୟନ ବୋଇଲେ—ଧୃତରାଷ୍ଟ୍ର ଓ ପାଣ୍ଡବମାନଙ୍କ କୃତା[illegible] ହୋଇ ଥିବାର ଦେଖି ଦ୍ରୋଣ ଯାଇ ଜନେଶ୍ୱର ଧୃତରାଷ୍ଟ୍ରଙ୍କ କୃପ, ସୋମଦତ୍ତ, ଧୀମାନ୍ ବାହ୍ଲିକ, ଗାଙ୍ଗେୟ, ବ୍ୟାସ ଓ ବିଦୁରଙ୍କ ସାନ୍ନିଧ୍ୟରେ ବୋଇଲେ—ହେ ରାଜନ ! କୁରୁ ସତ୍ତମ ! ତୁମ୍ଭର କୁମାର ମାନେ ପ୍ରାପ୍ତ ବିଦ୍ୟା ହୋଇଅଛନ୍ତି; ଯଦି ତୁମ୍ଭେ ଅନୁମତି କରିବ ତେବେ ସେମାନେ ଆପଣା ଆପଣାର ଶିକ୍ଷାକୁ ତୁମ୍ଭଙ୍କୁ ଦର୍ଶନ କରାଇବେ । ତଦନନ୍ତର ମହାରାଜ ! ପ୍ରହୃଷ୍ଟାନ୍ତକରଣରେ ବୋଇଲେ । ୩ । ଧୃତରାଷ୍ଟ୍ର ବୋଇଲେ ହେ ଦ୍ୱିଜସତ୍ତମ ! ଭାରଦ୍ୱାଜ ତୁମ୍ଭେ ମହତ୍ କର୍ମ୍ମ କଲ; ଯେଉଁ ସମୟରେ ଓ ଯେଉଁ ସ୍ଥାନରେ ଯେପରି କାର୍ଯ୍ୟ କରିବାକୁ ହେବ, ତାହା ତୁମ୍ଭେ ସ୍ୱୟଂ

ଆମ୍ଭଙ୍କୁ ଅଜ୍ଞା କର । ଅମ୍ଭେ ଚକ୍ଷୁଷ୍ମାନ; ଯେଉଁ ଚକ୍ଷୁଷ୍ମାନ୍ ପୁରୁଷମାନେ ଅମ୍ଭର ପରାକ୍ରାନ୍ତ ପୁତ୍ରମାନଙ୍କର ଅସ୍ତ୍ର ପ୍ରୟୋଗ ଦର୍ଶନ କରିବେ ଅମ୍ଭେ ସେମାନଙ୍କ ଅଦ୍ୟ ସ୍ପୃହା କରୁଅଛୁଁ । ହେ ବିଦୁର । ଗୁରୁ ଆଚାର୍ଯ୍ୟ ଯାହା କହୁଅଛନ୍ତି ତାହା ତଦ୍ରୂପ କର । ୬ ।

ହେ ଧର୍ମ୍ମବତ୍ସଳ । ଏପରି ପ୍ରିୟ କାର୍ଯ୍ୟ ଆଉ ହେବ ନାହିଁ, ଅମ୍ଭେ ମନରେ କରୁଅଛୁଁ; ତତ୍ପରେ ରାଜାଙ୍କ ଠାରୁ ବିଦାୟ ନେଇ ବିଦୁର ବହିର୍ନିର୍ଗତ ହେଲେ । ୭ । ମହାପ୍ରାଜ୍ଞ ଭରଦ୍ୱାଜ, ସମ, ନିର୍ବୃକ୍ଷ, ଅଗୁଳ୍ମ, ଜଳପ୍ରସବଣାନ୍ୱିତ ଭୂମି ସ୍ଥିର କରି ତାହାକୁ ମାପ କରାଇଲେ । ୮ । ଶୁଭତିଥି ଓ ନକ୍ଷତ୍ର ଯୋଗରୁ କଥକପ୍ରବର ଦ୍ରୋଣ ଘୋଷଣା ଦ୍ୱାରା ସମାଜସ୍ଥ ବ୍ୟକ୍ତିମାନଙ୍କୁ ଆହ୍ୱାନ କରି ସେ ଭୂମିରେ ବଳି ପ୍ରଦାନ କଲେ । ୯ । ଶିଳ୍ପୀମାନେ ସେହି ସୁବିସ୍ତୃତ ରଙ୍ଗଭୂମି ମଧ୍ୟରେ ଶାସ୍ତ୍ରାନୁସାରେ ରାଜାମାନଙ୍କର ଓ ମହିଳାମାନଙ୍କର ଉପବେଶନୋପଯୁକ୍ତ ସର୍ବପ୍ରକାର ଆୟୁଧଶୋଭିତ ପ୍ରେକ୍ଷାଗାର ନିର୍ମାଣ କଲେ । ହେ ନରର୍ଷଭ । ଜନପଦ-ବାସୀ ଧନଶାଳୀ ଲୋକମାନେ ବସି ଦେଖିବା ନିମିତ୍ତ ମଞ୍ଚମାନଙ୍କୁ ଓ ଅନନ୍ତଉଚ୍ଚ ମହାମୂଲ୍ୟ ଶିବିକା ମାନଙ୍କ ନିର୍ମ୍ମାଣ କରାଇଲେ । ସେହିଦିନ ପ୍ରାପ୍ତ ହୁଅନ୍ତେ ସଚିବମାନଙ୍କ ସହିତ ରାଜା ଧୃତରାଷ୍ଟ୍ର, ଭୀଷ୍ମଙ୍କ ଓ ଆଚାର୍ଯ୍ୟ-ସତ୍ତମ କୃପଙ୍କ ଅଗ୍ରେ କରି ମୁକ୍ତାମାଳାରେ ପରିଶୋଭିତ, ବୈଦୁର୍ଯ୍ୟ ମଣି ମଣ୍ଡିତ ସୁବର୍ଣ୍ଣମୟ ଦିବ୍ୟ ଦର୍ଶନାଗାରକୁ ଗମନ କଲେ । ହେ ବିଜୟୀବର ମହାଭାଗା ଗାନ୍ଧାରୀ ଓ କୁନ୍ତୀ ରାଜାଙ୍କର ସମସ୍ତ ସ୍ତ୍ରୀମାନେ ପରିଚାରିକାଙ୍କ ସହ ଉତ୍ତମ ପରିଚ୍ଛଦ ଧାରଣ କରି ହର୍ଷାନ୍ୱିତ ହୋଇ ମେରୁ ପର୍ବତକୁ ଯେପରି ଦେବସ୍ତ୍ରୀମାନେ ଆରୋହଣ କରନ୍ତି, ସେହିପରି ପ୍ରେକ୍ଷାଗାରକୁ ଆରୋହଣ କଲେ । ୧୫ ।

ବ୍ରାହ୍ମଣ କ୍ଷତ୍ରିୟାଦି ଚତୁର୍ବର୍ଣ୍ଣର ଲୋକେ ମଧ୍ୟ ରାଜକୁମାରମାନ-ଙ୍କର ଅସ୍ତ୍ରକୌଶଳ ଦର୍ଶନାଭିଳାଷରେ ରଙ୍ଗ ଭୂମିକୁ ସମାଗତ ହେଲେ । ୧୬ । ବାଦ୍ୟମାନଙ୍କର ନିନାଦରେ ଓ ଜନମାନଙ୍କର କୌତୂହଳ ଶବ୍ଦରେ ସେହି ସମାଜ ତତ୍କାଳରେ ମହାସାଗର ପ୍ରାୟ କ୍ଷୁବ୍ଧ ହେଲା । ୧୭ । ତଦନନ୍ତର ଶୁକ୍ଲାମ୍ବରଧର, ଶୁଭ୍ରଯଜ୍ଞୋପବୀତଧାରୀ ଓ ଶୁଭ୍ର କେଶ, ଶୁକ୍ଲଶ୍ମଶ୍ରୁ ଓ ଶୁକ୍ଳ ଚନ୍ଦନ ଲିପ୍ତାଙ୍ଗ ଦ୍ରୋଣାଚାର୍ଯ୍ୟ ସପୁତ୍ର ହୋଇ ରଙ୍ଗମଧ୍ୟକୁ ପ୍ରବେଶ କଲେ । ୧୯ । ତତ୍କାଳରେ ବୋଧ ହେଲା ଯେପରି

ମଙ୍ଗଳ ଗ୍ରହଙ୍କ ସହିତ ଅଂଶୁମାଳୀ ତପନ ଜଳଧର ହୀନ ନିର୍ମଳ ନଭୋ-ମଣ୍ଡଳରେ ଉଦିତ ହେଲେ । ୨୦ । ବଳବନ୍ତଶ୍ରେଷ୍ଠ ଅଗ୍ରଜ୍ୟୈ ସେହି ସ୍ଥାନରେ ଯଥାସମୟରେ ବଳି ପ୍ରଦାନ କଲେ ଓ ମନ୍ତ୍ରଜ୍ଞ ବ୍ରାହ୍ମଣଙ୍କ ଦ୍ୱାରା ମଙ୍ଗଳାଚରଣ କରାଇଲେ । ପବିତ୍ର ପୁଣ୍ୟାହ କୀର୍ତ୍ତନ ପରେ ନିଯୋଜିତ ନରମାନେ ବିବିଧ ଶସ୍ତ୍ରୋପକରଣକୁ ଗ୍ରହଣ କରି ରଙ୍ଗ ମଧ୍ୟରେ ଉପସ୍ଥିତ ହେଲେ । ତତ୍ପରେ ଭରତ ବଂଶୀୟ ମହାରଥମାନେ, ବଦ୍ଧାଙ୍ଗୁଳିତ୍ରାଣ, ବଦ୍ଧ କକ୍ଷ, ବଦ୍ଧ ତୂଣ ଓ ଧନୁଃସହିତ ଯୁଧିଷ୍ଠିରଙ୍କୁ ଅଗ୍ରେକରି ଅନୁଜ୍ୟେଷ୍ଠ-କ୍ରମରେ ସେଠାରେ ଉପଗତ ହେଲେ । ୨୩ ।

ମହାବଳଶାଳୀ କୁମାରମାନେ ପରମାଶ୍ଚର୍ଯ୍ୟ ଅସ୍ତ୍ର ପ୍ରଦର୍ଶନ କରାଇଲେ । ଶର ପତନ ଭୟରୁ କେହି ଦର୍ଶନକାରୀମାନେ ଆପଣାର ଶିରମାନଙ୍କୁ ଅବନତ କଲେ, ଅପର ଧୃଷ୍ଟ ଲୋକେ ନିର୍ଭୟ ହୋଇ ବିସ୍ମୟ ଚିତ୍ତରେ ଦର୍ଶନ କଲେ । କୁମାରମାନେ ସ୍ୱନାମାଙ୍କିତ ଶର ସମୂହ ଦ୍ୱାରା ସ୍ୱଲକ୍ଷ୍ୟ ଭେଦ କଲେ । ୨୫ । ସେହି କୁମାରମାନେ ଶର ଓ କାର୍ମୁକ ଘେନି ଅଶ୍ୱାରୋହଣପୂର୍ବକ ଦ୍ରୁତ ଗତିରେ ଧାବମାନ ହୋଇ ବିବିଧ ପ୍ରକାର ଲଘୁତା ପ୍ରଦର୍ଶନ କରି ଶରମାନଙ୍କୁ ନିକ୍ଷିପ୍ତ କଲେ । ୨୬ । ହେ ଭାରତ ! ଅନ୍ୟ ନରମାନେ ଶତ ଶତ ଓ ସହସ୍ର ସହସ୍ର ହୋଇ ସେହି ରଙ୍ଗଭୂମିକୁ ଗନ୍ଧର୍ବନଗର ପ୍ରାୟ ହେବାର ଦେଖି ବିସ୍ମୟୋତ୍ଫୁଲ୍ଲ ଲୋଚନରେ ସହସା ଉଚ୍ଚୈଃସ୍ୱରରେ ସାଧୁ ସାଧୁ ବୋଲି ଉଚ୍ଚାରଣ କଲେ । ୨୮ । ମହାବଳ କୁମାରମାନେ ଶରାସନରେ, ରଥ ଚାଳନରେ, ଗଜ ପୃଷ୍ଠରେ, ଅଶ୍ୱପୃଷ୍ଠରେ ଓ ବାହୁଯୁଦ୍ଧରେ ନାନାପ୍ରକାର ପଟୁତା ପ୍ରଦର୍ଶନ କରାଇ ପରିଶେଷରେ ଖଡ୍‌ଗ ଚର୍ମ ଗ୍ରହଣ ଦ୍ୱାରା ଉଦ୍ଦେଶାନୁରୂପ ବିବିଧ ପ୍ରକାର ଅସି ସଞ୍ଚାଳନ କଲେ ଓ ସମଗ୍ର ରଙ୍ଗ ଭୂମିରେ ବିଚରଣ କଲେ, ଦର୍ଶକମାନେ ସେହି ରାଜପୁତ୍ରଙ୍କର ଅସି ଚର୍ମ ବ୍ୟବହାରର ହସ୍ତ ଲାଘବ, ସୌଷ୍ଠବ, ଶୋଭା, ସ୍ଥିରତ୍ୱ ଓ ଦୃଢ଼ମୁଷ୍ଟିତା ଦର୍ଶନ କଲେ ।

ଏଥିଉତ୍ତାରୁ ମହାବାହୁ ସୁଯୋଧନ ଓ ବୃକୋଦର ଦୁହେଁ ନିତ୍ୟ-ସଂହୃଷ୍ଟ, ସତତ ସ୍ପର୍ଦ୍ଧାଯୁକ୍ତ ଓ ପରସ୍ପର ପୌରୁଷୋକାଙ୍‌କ୍ଷୀ ହୋଇଥାନ୍ତି । ସେ ଦୁହେଁ ବଦ୍ଧକକ୍ଷ ଓ ଗଦାହସ୍ତ ହୋଇ ଏକଶୃଙ୍ଗୀ ଅଚଳ ପ୍ରାୟ ରଙ୍ଗଦେଶରେ ଅବତୀର୍ଣ୍ଣ ହେଲେ । ୩୨ । ଋତୁମତୀ କରିଣୀ ଲୋଭରେ ଯେ ରୂପ ଦୁଇଟଗୋଟା ମଦମତ୍ତ କୁଞ୍ଜର ବୃଂହଣ କରନ୍ତି, ତଦ୍ରୂପ ସେହି-

ମହାବଳ ବୀର ଦ୍ୱୟ ଗର୍ଜ୍ଜନ କରି ଦକ୍ଷିଣାବର୍ତ୍ତି ଓ ବାମାବର୍ତ୍ତି କ୍ରମେ ମଣ୍ଡଳାକାରରେ ରଙ୍ଗଭୂମିରେ ବିଚରଣ କଲେ । ୩୩ । କୁମାରମାନଙ୍କ ବିଚେଷ୍ଟିତକୁ ବିଦୁର ଧୃତରାଷ୍ଟ୍ରଙ୍କୁ ଓ କୁନ୍ତୀ ଗାନ୍ଧାରୀଙ୍କୁ ନିବେଦନ କଲେ । ୩୪ ।

---

## ଅଧ୍ୟାୟ ୧୩୫

ବୈଶମ୍ପାୟନ ବୋଇଲେ—କୁରୁରାଜ ଦୁର୍ଯ୍ୟୋଧନ ଓ ବଳବର ଭୀମ ରଙ୍ଗଗତ ହୁଅନ୍ତେ ଜନମାନେ ସ୍ନେହରେ ପକ୍ଷପାତୀ ହୋଇ ଦୁଇଭାଗ ହୋଇଗଲେ । ୧ । କେ ବୋଇଲେ ବାହବା ବୀର କୁରୁରାଜ ! କେ ବୋଇଲେ ବାହବା ଭୀମ ! ଏହିପ୍ରକାର ପୁରୁଷ ମାନଙ୍କର ସୁବିପୁଳ ପ୍ରଣାଦ ସହସା ଉତ୍‌ଥିତ ହେଲା । ୨ । ତଦନନ୍ତର ବୁଦ୍ଧିମାନ୍ ଭରଦ୍ୱାଜ ରଙ୍ଗସ୍ଥଳକୁ ଅର୍ଣ୍ଣବ ସଦୃଶ କ୍ଷୁବ୍‌ଧ ହେବାର ଦେଖି ଅଶ୍ୱତ୍‌ଥାମାଙ୍କୁ ବୋଇଲେ ।

ଦ୍ରୋଣ ବୋଇଲେ—ଏହି ଭୀମ ଓ ଦୁର୍ଯ୍ୟୋଧନ ଦୁହେଁ ମହାବୀର୍ଯ୍ୟଶାଳୀ ଓ ଦୁହେଁ ଯୁଦ୍ଧ ବିଶାରଦ; ଅତଏବ ଏ ଦୁହିଁଙ୍କି ବାରଣ କର, ରଙ୍ଗ ସ୍ଥଳରେ ତାଙ୍କର ଯେପରି କୋପ ଉତ୍‌ଥିତ ନ ହୁଏ । ୪ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ପ୍ରଳୟକାଳୀନ ବାୟୁଦ୍ୱାରା ସଂକ୍ଷୁବ୍‌ଧ ଅର୍ଣ୍ଣବ ସଦୃଶ ଉନ୍ନତ, ମହାବଳ ଓ ଉଦ୍ୟତ ଗଦାଧାରୀ ଭୀମ ଓ ସୁଯୋଧନ ଦୁହେଁ ଗୁରୁପୁତ୍ରଙ୍କ ଦ୍ୱାରା ବାରିତ ହେଲେ । ୫ । ତତ୍ପରେ ରଙ୍ଗାଙ୍ଗଣବର୍ତ୍ତୀ ଦ୍ରୋଣ ମହାମେଘ ସ୍ୱନ ସମାନ ବାଦ୍ୟଧ୍ୱନିକୁ ନିବାରିତ କରି ଏହି ବଚନ ବୋଇଲେ—ଯେ ଆମ୍ଭର ପୁତ୍ର ଅପେକ୍ଷା ପ୍ରିୟତର; ସର୍ବଶାସ୍ତ୍ର ବିଶାରଦ, ଇନ୍ଦ୍ରାନୁଜ ଉପେନ୍ଦ୍ର ସଦୃଶ, ଇନ୍ଦ୍ରଙ୍କର ସୁତ, ପାର୍ଥ, ତାହାଙ୍କୁ ସମସ୍ତେ ନିରୀକ୍ଷଣ କର । ୭ ।

ଅନନ୍ତର ଆଚାର୍ଯ୍ୟଙ୍କ ବଚନାନୁସାରେ ତରୁଣ ବୟସ୍କ ଫାଲ୍‌ଗୁନ ମଙ୍ଗଳାଚରଣାନ୍ତେ ଜ୍ୟା-ଘାତ ନିବାରକ ଚର୍ମ୍ମ-ପଟ୍ଟିକା ଓ ଅଙ୍ଗୁଳି-ତ୍ରାଣ ବଦ୍ଧପୂର୍ବକ ବାଣପୂର୍ଣ୍ଣ ତୂଣ, ଧନୁ ଓ ହିରଣ୍ମୟ କବଚ ଧାରଣକରି, ସୂର୍ଯ୍ୟ ପ୍ରଭାବରେ ପ୍ରଦୀପ୍ତ, ଅଥବା ଇନ୍ଦ୍ରଧନୁ ଓ ତଡ଼ିଲ୍ଲତା ସୁଶୋଭିତ,

ସାଙ୍ଖ୍ୟକାଳୀନ ତୋୟଦ ପ୍ରାୟ ରଙ୍ଗଭୂମିରେ ପ୍ରତିଦୃଶ୍ୟ ହେଲେ । ୯ । ତହିଁରେ ରଙ୍ଗର ସର୍ବତ୍ର ପ୍ରଫୁଲ୍ଲତା ଜାତ ହେଲା; ଚତୁର୍ଦ୍ଦିଗରେ ଶଙ୍ଖ ସହ ବାଦ୍ୟମାନ ପ୍ରବାଦିତ ହେଲା । ୧୦ । ପ୍ରେକ୍ଷଣାକାଙ୍କ୍ଷୀମାନେ କହିଲେ—ଏହି କୁନ୍ତୀ ସୁତ; ଏହି ଶ୍ରୀମାନ୍ ପାଣ୍ଡୁଙ୍କର ମଧ୍ୟମ-ସୁତ, ଏ ମହେନ୍ଦ୍ରଙ୍କର ପୁତ୍ର ଓ କୁରୁବଂଶର ରକ୍ଷାକର୍ତ୍ତା; ଅସ୍ତ୍ରବିଦ୍ୟା ବିଶାରଦଙ୍କ ମଧ୍ୟରେ ଏ ଶ୍ରେଷ୍ଠ; ଧାର୍ମ୍ମିକଙ୍କ ମଧ୍ୟରେ ଏ ଶ୍ରେଷ୍ଠ, ଶୀଲ ସମ୍ପନ୍ନ ବ୍ୟକ୍ତିଙ୍କ ମଧ୍ୟରେ ସୁଦ୍ଧା ଏ ପ୍ରଧାନ, ସୌଜନ୍ୟ ଓ ଜ୍ଞାନର ଉତ୍କୃଷ୍ଟ ନିଧାନ । ଉକ୍ତରୂପ ତୁମୁଳ ବାକ୍ୟ ଚତୁର୍ଦ୍ଦିଗରେ ଶ୍ରୁତ ହେଲା । ତାହା ଶୁଣି କୁନ୍ତୀଙ୍କର ନୟନରୁ ପ୍ରେମାଶ୍ରୁ ବିଗଳିତ ହୋଇ ବକ୍ଷସ୍ଥଳକୁ କ୍ଳିନ୍ନ କଲା । ୧୩ । ସେହି ଶବ୍ଦ ସମୂହରେ ଧୃତରାଷ୍ଟ୍ରଙ୍କର କର୍ଣ୍ଣ ପୂର୍ଣ୍ଣ ହୁଅନ୍ତେ ସେ ହୃଷ୍ଟମାନସ ହୋଇ ବିଦୁରଙ୍କୁ ବୋଇଲେ—ହେ କ୍ଷତ୍ତଃ । ମହାର୍ଣ୍ଣବ କ୍ଷୋଭ ଶବ୍ଦ ସଦୃଶ ଏ କି ସୁମହାସ୍ୱନ ରଙ୍ଗସ୍ଥଳରେ ସହସା ଉତ୍‌ଥିତ ହୋଇ ଆକାଶ ତଳକୁ ବିଦୀର୍ଣ୍ଣ କରୁଅଛି ? । ୧୫ ।

ବିଦୁର ବୋଇଲେ—ହେ ମହାରାଜ । ଏହି ପାର୍ଥ, ପାଣ୍ଡୁ-ନନ୍ଦନ ଫାଲ୍‌ଗୁନ କବଚ ଧାରଣ କରି ଅବତୀର୍ଣ୍ଣ ହୋଇଅଛନ୍ତି, ତନିମିତ୍ତ ଏହି ସୁମହତ୍ ସ୍ୱନ ଜାତ ହେଉଅଛି । ୧୬ ।

ଧୃତରାଷ୍ଟ୍ର ବୋଇଲେ—ହେ ମହାମତେ । ପୃଥା ରୂପ ଅରଣୀଠାରୁ ସମୁତ୍ପନ୍ନ ଅଗ୍ନି ତ୍ରୟ ତିନି ପାଣ୍ଡବଙ୍କ ଦ୍ୱାରା ଆମ୍ଭେ ଧନ୍ୟ ହେଲୁଁ । ଅନୁଗୃହୀତ ହେଲୁ ଓ ରକ୍ଷିତ ହେଲୁଁ । ୧୭ ।

ବୈଶମ୍ପାୟନ ବୋଇଲେ—ସେହି ପ୍ରମୁଦିତ ଜନମାନଙ୍କର ହର୍ଷଜାତ ଶବ୍ଦ କଥଞ୍ଚିତ ନିବୃତ୍ତ ହୁଅନ୍ତେ ବୀଭତ୍ସୁ, ଅସ୍ତ୍ର ଲାଘବକୁ ଆଚାର୍ଯ୍ୟଙ୍କୁ ଦେଖାଇଲେ । ୧୮ । ଆଗ୍ନେୟାସ୍ତ୍ର ଦ୍ୱାରା ବହ୍ନି ସର୍ଜ୍ଜନା କରି ବାରୁଣାସ୍ତ୍ର ଦ୍ୱାରା ଜଳ ସୃଷ୍ଟି କଲେ । ବାୟବ୍ୟାସ୍ତ୍ର ଦ୍ୱାରା ବାୟୁ ସର୍ଜ୍ଜନା କରି ପାର୍ଜନ୍ୟାସ୍ତ୍ର ଦ୍ୱାରା ମେଘମାନଙ୍କୁ ସର୍ଜ୍ଜନ କଲେ । ଭୌମାସ୍ତ୍ର ଦ୍ୱାରା ଭୂମି ମଧ୍ୟରେ ପ୍ରବିଷ୍ଟ ହେଲେ ଓ ପାର୍ବତ୍ୟାସ୍ତ୍ର ମାରନ୍ତେ ପର୍ବତ ସୃଷ୍ଟି ହେଲେ । ପୁନରପି ଅନ୍ତର୍ଦ୍ଧାନ ଅସ୍ତ୍ରଦ୍ୱାରା ଅନ୍ତର୍ହିତ ହୋଇଗଲେ । ୨୦ । ସେ କ୍ଷଣକ ମଧ୍ୟରେ ଦୀର୍ଘ, କ୍ଷଣକ ମଧ୍ୟରେ ହ୍ରସ୍ୱ, କ୍ଷଣକେ ରଥ ସମ୍ମୁଖସ୍ଥ, କ୍ଷଣକେ ରଥ ମଧ୍ୟସ୍ଥ ଓ ପରକ୍ଷଣରେ ପୁଣି ମହୀତଳରେ ଅବତୀର୍ଣ୍ଣ ହେଲେ ।

ସେହି ଗୁରୁପ୍ରିୟ ଅର୍ଜ୍ଜୁନ, ବିବିଧ ପ୍ରକାର ଶରଦ୍ୱାରା, କେତେବେଳେ ସୁକୁମାର, କେତେବେଳେ ସୂକ୍ଷ୍ମ, କେତେବେଳେ ଅବା ଗୁରୁ ଲକ୍ଷ୍ୟକୁ ବିଦ୍ଧ କଲେ । ୨୨ । ଭ୍ରମଣଶୀଳ ଲୌହ ନିର୍ମିତ ବରାହର ମୁଖକୁ ଲକ୍ଷ୍ୟ କରି ସେ ପାଞ୍ଚଗୋଟି ପୃଥକ୍ ବାଣକୁ ଗୋଟିଏ ବାଣ ପ୍ରହାର କଲପ୍ରାୟ ନିକ୍ଷେପ କଲେ । ସେହି ମହାବୀର ରଜ୍ଜୁରେ ଅବଲମ୍ବିତ ଓ ଚଳ ଗୋ-ବିଷାଣରେ ଏକବିଂଶତି ଗୋଟା ଶରକୁ ବିଦ୍ଧ କଲେ । ୨୪ ।

ହେ ଅନଘ ! ଏହି ପ୍ରକାରେ ସୁମହତ୍ ଖଡ଼୍ଗ, ଧନୁ ଓ ଗଦାରେ ଅସ୍ତ୍ର ବିଦ୍ୟାରେ କୁଶଳୀ ଅର୍ଜ୍ଜୁନ ମଣ୍ଡଳ ମାନଙ୍କ ପ୍ରଦର୍ଶନ କଲେ । ୨୫ । ହେ ଭାରତ ! ସେହି ସବୁ ଯୁଦ୍ଧାନୁକରଣ କାର୍ଯ୍ୟ ସମାପ୍ତ ହୁଅନ୍ତେ, ସମାଜ କ୍ରମଶଃ କ୍ଷୀଣ ହୁଅନ୍ତେ ଓ ବାଦ୍ୟମାନଙ୍କର ନିଃସ୍ୱନ ମନ୍ଦୀଭୂତ ହୁଅନ୍ତେ, ଦ୍ୱାର ଦେଶରେ ମାହାତ୍ମ୍ୟ ଓ ବଳ ସୂଚନାକାରୀ, ବଜ୍ର-ନିଷ୍ପେଷ ସଦୃଶ ବାହୁସ୍ଫୋଟ ଧ୍ୱନି ଶ୍ରୁତିଗୋଚର ହେଲା । ୨୭ । ବୋଧ ହେଲା— ଗିରିମାନେ କି ଖଣ୍ଡ ଖଣ୍ଡ ହେଲେ ! ଭୂମି କି ବିଦୀର୍ଣ୍ଣ ହେଲା । ଅଥବା ଜଳଧାରା ଧର ଘନ ମଣ୍ଡଳୀରେ ବ୍ୟୋମ ପରିପୂରିତ ହେଲା । ଦର୍ଶକମାନେ ସମସ୍ତେ ଏହି ରୂପ ସଂଶୟ ଚିତ୍ତରେ ତତ୍କ୍ଷଣାତ୍ ଦ୍ୱାର ଦେଶ ପ୍ରତି ସମ୍ମୁଖୀନ ହୋଇ ଅବଲୋକନ କରିବାକୁ ଆରମ୍ଭ କଲେ । ୨୮ ।

ହେ ବସୁଧାଧୀପ ! କ୍ଷଣକ ମଧ୍ୟରେ ରଙ୍ଗଭୂମିସ୍ଥିତ ସମାଜର ଏତାଦୃଶ ମତ୍ତକାତ ହେଲା ଓ ସବୁ ପ୍ରେକ୍ଷକମାନେ ଦ୍ୱାରାଭିମୁଖୀ ହେଲେ । ୨୯ । ପୃଥାଙ୍କର ପଞ୍ଚପୁତ୍ରଙ୍କ ଦ୍ୱାରା ଦ୍ରୋଣ ପରିବୃତ ହେଲେ; ବୋଧ ହେଲା, ଯେପରି କି ଚନ୍ଦ୍ରମା, ପଞ୍ଚ ହସ୍ତା ନକ୍ଷତ୍ର ଦ୍ୱାରା ସଂଯୁକ୍ତ ହୋଇ ଅଛନ୍ତି । ୩୦ । ଏଣେ ଅମିତଘ୍ନ ଦୁର୍ଯ୍ୟୋଧନଙ୍କୁ ତାହାଙ୍କର ଶତଭ୍ରାତା ଓ ଅଶ୍ୱତ୍ଥାମା ବେଷ୍ଟନ କରି ଦଣ୍ଡାୟମାନ ହେଲେ । ୩୧ । ପୂର୍ବକାଳରେ ଦାନବ କୁଳ ସଂହାର ସମୟରେ ଦେବରାଜ ଯେପରି ଦେବଗଣରେ ସମାବୃତ ହୋଇଥିଲେ, ସେହି ପରି ଗଦାଧାରୀ ଦୁର୍ଯ୍ୟୋଧନଙ୍କ ଚତୁଃ-ପାର୍ଶ୍ୱରେ ଉଦ୍ୟତାୟୁଧ ତଦୀୟ ଭ୍ରାତାମାନେ ପରିବେଷ୍ଟନ କରି ସ୍ଥିତ ହୋଇଥିଲେ । ୩୨ ।

———

# ଅଧ୍ୟାୟ ୧୩୭

ବୈଶମ୍ପାୟନ ବୋଇଲେ—ବିସ୍ମୟୋତ୍‌ଫୁଲ୍ଲ ଲୋଚନରେ ଦର୍ଶନ-ଲାଳସୀ ପୁରୁଷମାନେ ଶତ୍ରୁପୁର ଜୟୀ କର୍ଣ୍ଣଙ୍କୁ ଅବକାଶ ପ୍ରଦାନ କରନ୍ତେ ସେ ବିସ୍ତୀର୍ଣ୍ଣ ରଙ୍ଗଭୂମିରେ ପ୍ରବେଶ କଲେ । କର୍ଣ୍ଣ ତଦୀୟ ସହଜ କବଚରେ ଭୂଷିତ ଓ କୁଣ୍ଡଳ ପ୍ରଭାରେ ଜ୍ୟୋତିତାନନ ହୋଇ କାର୍ମ୍ମୁକ ଓ ଖଡ୍‌ଗ ଧାରଣ କରି ପର୍ବତ ପାଦଗୃହ ହେଲାପ୍ରାୟ ରଙ୍ଗଭୂମିରେ ଉପଗତ ହେଲେ । ୨ । ସେ କର୍ଣ୍ଣ ତୀକ୍ଷ୍ଣାଂଶୁ ଭାସ୍କରଙ୍କ ଅଂଶରେ ପୃଥାଙ୍କର କନ୍ୟା-ବସ୍ଥାରେ ତଦୀୟ ଗର୍ଭରେ ଜାତ ହୋଇଥିଲେ; ତାହାଙ୍କର ନେତ୍ର ବିଶାଳ, ବୀର୍ଯ୍ୟ ଓ ବିକ୍ରମ ସିଂହ ଓ ଗଜେନ୍ଦ୍ରଙ୍କର ବୀର୍ଯ୍ୟ ସମାନ, ତାହାଙ୍କର ଦୀପ୍ତି ଦିବାକରଙ୍କ ପ୍ରଭା ସଦୃଶ, କାନ୍ତି ଇନ୍ଦୁଙ୍କ କାନ୍ତି ସଦୃଶ ଓ ତେଜ, ଜ୍ୱଳନର ତେଜ ସମାନ, କନକମୟ ତାଳତରୁ ସମାନ ଦୀର୍ଘକାୟ, ଯୁବା ଓ ତାହାଙ୍କର ଶରୀର ସିଂହ ଦେହ ସମ କଠିନ; ଭାସ୍କରଙ୍କର ସେ ପୁତ୍ର ଅସଂଖ୍ୟ ଗୁଣ ସମ୍ପନ୍ନ ଓ ଶ୍ରୀମାନ୍, ସେ ମହାବାହୁ ରଙ୍ଗମଣ୍ଡଳର ସର୍ବ ପ୍ରଦେଶକୁ ଅବଲୋକନ କରି ଦ୍ରୋଣ ଓ କୃପ ଦୁହିଙ୍କୁ ଅନତି ଆଦର ସହିତ ପ୍ରଣାମ କଲେ । ୬ ।

ସମାଜସ୍ଥ ଜନମାନେ ସମସ୍ତେ ନିଶ୍ଚଳ ଓ ସ୍ଥିରଲୋଚନ ହୋଇ ଏ କିଏ ବୋଲି କ୍ଷୁବ୍ଧ ଓ କୌତୂହଳପର ହେଲେ । ୭ । ବକ୍ତୃବର ସବିତାଙ୍କର ପୁତ୍ର; ଅଜ୍ଞାତ ଭ୍ରାତା, ପାକଶାସନ ପୁତ୍ର ଅର୍ଜ୍ଜୁନଙ୍କୁ ମେଘସଦୃଶ ଗମ୍ଭୀର ସ୍ୱରରେ କହିଲେ, ହେ ପାର୍ଥ ! ତୁମ୍ଭେ ଯେଉଁ ସବୁ କର୍ମ୍ମ ବର୍ତ୍ତମାନ କଲ, ଏହି ନରମାନଙ୍କ ସମକ୍ଷରେ ତହିଁରୁ ବିଶେଷ ରୂପେ ଆମ୍ଭେ ସେ କାର୍ଯ୍ୟମାନ ସମ୍ପନ୍ନ କରିବୁଁ । ତାହା ଦେଖି ତୁମ୍ଭେ ସ୍ୱୟଂ ବିସ୍ମିତ ହେବ । ୯ । ହେ ବକ୍ତୃବର । ତାହାଙ୍କର ବଚନ ସମାପ୍ତ ନୋହୁଁ ସର୍ବଜନମାନେ ଯନ୍ତ୍ରୋତ୍‌କ୍ଷିପ୍ତ ହେଲା ପ୍ରାୟ ଶୀଘ୍ର ଏକ କାଳରେ ଦଣ୍ଡାୟ-ମାନ ହେଲେ । ୧୦ । ହେ ମନୁଜ ବ୍ୟାଘ୍ର । ତହିଁରେ ଦୁର୍ଯ୍ୟୋଧନଙ୍କ ହୃଦୟରେ ପ୍ରୀତି ଉପବିଷ୍ଟ ହେଲା ଓ କ୍ଷଣକାଳ ନିମିତ୍ତ ବୀଭତ୍ସୁଙ୍କର ଲଜ୍ଜା ଓ କ୍ରୋଧ ସଞ୍ଚାରିତ ହେଲା । ୧୧ । ତତ୍ପରେ ଦ୍ରୋଣଙ୍କ ଅନୁଜ୍ଞାନୁସାରେ ସଦା ରଣପ୍ରିୟ ଓ ମହାବଳ କର୍ଣ୍ଣ ପାର୍ଥଙ୍କ ଆଚରିତ ଶସ୍ତ୍ରାସ୍ତ୍ର ପ୍ରୟୋଗ ମାନଙ୍କୁ ସ୍ୱୟଂ ତଦ୍‌ବତ୍ ସମ୍ପାଦନ କଲେ । ୧୨ । ହେ ଭାରତ ।

ଅନନ୍ତର ଦୁର୍ଯ୍ୟୋଧନ ଭ୍ରାତାଙ୍କ ସହିତ ସେଠାରେ ହର୍ଷପୂର୍ବକ କର୍ଣ୍ଣଙ୍କୁ ପରିଷ୍ୱକ୍ତ କରି ବୋଇଲେ ।

ଦୁର୍ଯ୍ୟୋଧନ ବୋଇଲେ—ହେ ମହାବାହୋ ! ଆପଣଙ୍କର ଆଗମନ ଶୁଭ ନିମିତ୍ତ ହେଉ; ହେ ମାନଦ ! ତୁମ୍ଭେ ଭାଗ୍ୟ କ୍ରମେ ପ୍ରାପ୍ତ ହେଲ, ଆମ୍ଭେ ଏବଂ ଏହି କୁରୁରାଜ୍ୟ ତୁମ୍ଭର, ତୁମ୍ଭେ ଇଚ୍ଛାନୁରୂପ ଭୋଗ କର । ୧୪ ।

କର୍ଣ୍ଣ ବୋଇଲେ—ଅମ୍ଭର ଆଉ କାହିଁରେ ପ୍ରୟୋଜନ ନାହିଁ ।। କେବଳ ତୁମ୍ଭ ସହିତ ସଖ୍ୟ ସ୍ଥାପନ; ହେ ପ୍ରଭୋ ! ଅର୍ଜ୍ଜୁନଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବାକୁ ଆମ୍ଭେ ଇଚ୍ଛା କରୁଅଛୁଁ । ୧୫ ।

ଦୁର୍ଯ୍ୟୋଧନ ବୋଇଲେ, ହେ ଅରିନ୍ଦମ ! ଆମ୍ଭ ସହିତ ତୁମ୍ଭେ ସର୍ବ ପ୍ରକାର ଭୋଗମାନଙ୍କୁ ଭୋଗ କର, ବନ୍ଧୁମାନଙ୍କର ପ୍ରିୟକାରୀ ହୁଅ ଓ ସର୍ବ ଶତ୍ରୁମାନଙ୍କର ମୂର୍ଦ୍ଧାରେ ପାଦାର୍ପଣ କର । ୧୬ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ପାର୍ଥ ଆପଣାକୁ ଅକ୍ଷିପ୍ତ ହେବାର ବୁଝିପାରି ଅଚଳପ୍ରାୟ ସର୍ବଭ୍ରାତା ମାନଙ୍କ ମଧ୍ୟରେ ସ୍ଥିତ ହୋଇ କର୍ଣ୍ଣଙ୍କୁ ବୋଇଲେ ।

ଅର୍ଜ୍ଜୁନ ବୋଇଲେ—କର୍ଣ୍ଣ ! ଯେଉଁମାନେ ଅନାହୂତ ହୋଇ ସମୀପସ୍ଥ ହୁଅନ୍ତି ଓ ଯେଉଁମାନେ ଅନାହୂତ ହୋଇ ଜଳ୍ପନା କରନ୍ତି ତାହାଙ୍କର ଯେଉଁ ଲୋକକୁ ଗତି ହୁଅଇ, ଅମ୍ଭ ଦ୍ୱାରା ହତ ହୋଇ ତୁମ୍ଭେ ସେହି ଲୋକକୁ ଗମନ କରିବ । ୧୮ ।

କର୍ଣ୍ଣ ବୋଇଲେ—ଫାଲ୍‌ଗୁନ । ଏହି ରଙ୍ଗଭୂମି ସର୍ବ ସାମାନ୍ୟର; ତୁମ୍ଭର ଏଥିରେ କି ବିଶେଷ ଅଧିକାର ଅଛି ? କ୍ଷତ୍ରିୟମାନେ ବୀର୍ଯ୍ୟଦ୍ୱାରା ଶ୍ରେଷ୍ଠ ହୁଅନ୍ତି, ଅତଏବ କ୍ଷତ୍ରିୟ ଧର୍ମ୍ମ ବଳର ଅନୁବର୍ତ୍ତୀ ହୁଅଇ । ହେ ଭାରତ ! ଦୁର୍ବଳ ବ୍ୟକ୍ତିମାନେ ଅଭ୍ୟାସ ପୂର୍ବକ ବଚନ ବ୍ୟୟ କରନ୍ତି; ଗୁରୁଙ୍କ ସମ୍ମୁଖରେ ତୁମ୍ଭର ଶିରଚ୍ଛେଦନ ନ କରୁଣୁଁ ଯାହା କହିବାର କହ । ୨୦ ।

ବୈଶମ୍ପାୟନ ବୋଇଲେ—ଶତ୍ରୁପୁର ଜୟୀ ଅର୍ଜ୍ଜୁନ ଦ୍ରୋଣଙ୍କ ଦ୍ୱାରା ଅଭ୍ୟନୁଜ୍ଞାତ ହୋଇ ଓ ଭ୍ରାତୃମାନଙ୍କ ଦ୍ୱାରା ଆଶ୍ଳିଷ୍ଟ ହୋଇ ରଣ

ନିମିତ୍ତ ପ୍ରସ୍ତୁତ ହେଲେ । ୨୧ । ତତ୍ପରେ କର୍ଣ୍ଣ ମଧ୍ୟ ଦୁର୍ଯୋଧନ ଓ ତାହାଙ୍କ ଭ୍ରାତୃବର୍ଗଙ୍କ ଦ୍ୱାରା ଅଲଙ୍କୃତ ହୋଇ ଶର ସହିତ ଧନୁର୍ଗ୍ରହଣ କରି ସମରରେ ଉଦ୍ୟତ ହୋଇ ଦଣ୍ଡାୟମାନ ହେଲେ । ଏଥି ମଧ୍ୟରେ ବିଦ୍ୟୁତ୍ ଓ ସ୍ତନିତ ସହିତ ଓ ଇନ୍ଦ୍ରଧନୁ ସହିତ ମେଘ ଦ୍ୱାରା ଗଗନମଣ୍ଡଳ ଆବୃତ ହେଲା । ବଳାକା ପଙ୍କ୍ତି ମେଘର ହାସ୍ୟ ପ୍ରାୟ ବୋଧ ହେଲା । ତଦନନ୍ତର ସ୍ନେହ ବଶରୁ ଇନ୍ଦ୍ରଙ୍କୁ ରଙ୍ଗ ବିଲୋକନ କରିବାକୁ ଆସିବାର ଦେଖି ଭାସ୍କର ସ୍ୱୀୟ ତନୟ କର୍ଣ୍ଣଙ୍କ ସମୀପବର୍ତ୍ତୀ ଜଳଧର ପଟଳକୁ ବିନଷ୍ଟ କଲେ । ୨୪ । ଅର୍ଜ୍ଜୁନ ମେଘର ଛାୟାରେ ଆଚ୍ଛନ୍ନ ହେବାର ଦୃଷ୍ଟ ହେଲେ ଓ କର୍ଣ୍ଣ ସୂର୍ଯ୍ୟଙ୍କ କିରଣରେ ପରିବୃତ ହୋଇ ଦୃଷ୍ଟି ଗୋଚର ହେଲେ । ୨୫ । ଯେଉଁ ଦିଗରେ କର୍ଣ୍ଣ ଥିଲେ, ସେହି ଦିଗରେ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ବ୍ୟବସ୍ଥିତ ହେଲେ । ଯେଉଁଠାରେ ପାର୍ଥ ଥିଲେ, ସେଠାରେ ଦ୍ରୋଣ, ଭୀଷ୍ମ ଓ କୃପ ରହିଲେ । ୨୬ ।

ରଙ୍ଗସ୍ଥଳ ଦୁଇଭାଗରେ ବିଭକ୍ତ ହେଲା, ସ୍ତ୍ରୀ ମାନଙ୍କ ମଧ୍ୟରେ ସୁଦ୍ଧା ଦ୍ୱିଧା ଜାତ ହେଲା; କୁନ୍ତୀ ଜାଣିଲେ ଯେ କର୍ଣ୍ଣ ଓ ଅର୍ଜ୍ଜୁନ ଦୁହେଁ ତାହାଙ୍କର ସୁତ; ଅତଏବ ସେ ମୋହ ପ୍ରାପ୍ତ ହେଲେ । ୨୭ । ସର୍ବ ଧର୍ମବିତ୍ ବିଦୁର ସେହି ମୋହାଭିଭୂତା କୁନ୍ତୀଙ୍କୁ ପରିଚାରିକା ମାନଙ୍କ ଦ୍ୱାରା ଚନ୍ଦନୋଦକ ସିକ୍ତା କରି ଆଶ୍ୱାସିତ କଲେ । ୨୮ । ତତ୍ପରେ କୁନ୍ତୀ ଚୈତନ୍ୟ ଲାଭ କରି ପୁତ୍ରଦ୍ୱୟଙ୍କୁ ପରିଦଂଶିତ * ହେବାର ଦେଖି ଅତିଶୟ ଭୀତା ହୋଇ କିଛିମାତ୍ର କରି ପାରିଲେ ନାହିଁ । ୨୯ ।

ଅନନ୍ତର ସର୍ବ ଧର୍ମଜ୍ଞ; ବିଶେଷରେ ଦ୍ୱନ୍ଦ୍ୱ ଯୁଦ୍ଧରେ, ଆସ୍ତ୍ରର ଜ୍ଞାନରେ ପାରଦର୍ଶୀ ଶାରଦ୍ୱତ କୃପ ସମୁଦ୍ୟତ ମହାରୂପ ବୀରଦ୍ୱୟଙ୍କୁ ଲକ୍ଷ୍ୟ କରି କହିଲେ—ଏହି ପାଣ୍ଡୁନନ୍ଦନ ଅର୍ଜ୍ଜୁନ କୁରୁବଂଶରୁ ଉଦ୍‌ଭୂତ ଓ କୁନ୍ତୀଙ୍କର କନିଷ୍ଠ ପୁତ୍ର; ଏ ତୁମ୍ଭ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବେ, ହେ ମହାବାହୋ ! ତୁମ୍ଭେ ମଧ୍ୟ ସେହିରୂପେ ମାତା ପିତାଙ୍କର ନାମ କୀର୍ତ୍ତନ କର । ନରେନ୍ଦ୍ର ମାନଙ୍କ ମଧ୍ୟରେ ତୁମ୍ଭେ ଯେଉଁ କୁଳର ଭୂଷଣ, ତାହା କହ । ୩୨ । ତାହା ବିଦିତ ହେଲେ ପାର୍ଥ ତୁମ୍ଭ ସହିତ ଯୁଦ୍ଧ କରିବେ କି ନା ସ୍ଥିର ହେବ; କାରଣ ନୃପାତ୍ମଜ ମାନେ ସାମାନ୍ୟ

---

* କବଚାଦି ଧାରଣ କରି ଯୁଦ୍ଧାର୍ଥ ସଜ୍ଜିତ ।

କୂଳ ସମ୍ଭୂତ ଓ ସଦାଚାର ବିହୀନ ଲୋକଙ୍କ ସହିତ ଯୁଦ୍ଧ କରନ୍ତି ନାହିଁ । ୩୩ ।

ବୈଶମ୍ପାୟନ ବୋଇଲେ—ଆଚାର୍ଯ୍ୟ କୃପ ଏହିରୂପ କହନ୍ତେ, କର୍ଣ୍ଣଙ୍କର ଆନନ ଲଜ୍ଜାରେ ଅବନତ ହୋଇ ବର୍ଷାମ୍ବୁ ପତନରେ କ୍ଲିନ୍ନପଦ୍ମ ପ୍ରାୟ ମ୍ଳାନ ହେଲା । ୩୪ ।

ଦୁର୍ଯ୍ୟୋଧନ ବୋଇଲେ—ହେ ଆଚାର୍ଯ୍ୟ । ଶାସ୍ତ୍ରରେ ବିନିର୍ଦ୍ଦିଷ୍ଟ ଅଛି ଯେ ରାଜାମାନଙ୍କର ତିନିପ୍ରକାର ଉତ୍ପତ୍ତି ହୁଅଇ; ରାଜାଙ୍କର ପୁତ୍ର ରାଜା; ଅଥବା ଯେ ଶୂର ହୁଅଇ ଅଥବା ସେମାନଙ୍କୁ ପରିଚାଳିତ କରଇ, ସେ ରାଜା ହୁଅଇ; ଯଦ୍ୟପି କି ଫାଲ୍‌ଗୁନ ଅରାଜାଙ୍କ ସହିତ ଯୁଦ୍ଧ ନ କରିବେ ତେବେ ଏହି କ୍ଷଣରେ ଆମ୍ଭେ କର୍ଣ୍ଣଙ୍କୁ ଅଙ୍ଗରାଜ୍ୟରେ ଅଭିଷିକ୍ତ କରୁଅଛୁଁ । ୩୫ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ସେହି କ୍ଷଣରେ ମହାରଥ, ମହାବଳ, ଶ୍ରୀମାନ୍ କର୍ଣ୍ଣ କାଞ୍ଚନ ପୀଠରେ ବସିଲେ; ମନ୍ତ୍ରଜ୍ଞ ବ୍ରାହ୍ମଣମାନେ ଲଜା, କୁସୁମ ଓ କାଞ୍ଚନମୟ ଘଟଦ୍ୱାରା ତାହାଙ୍କୁ ଅଙ୍ଗ ରାଜ୍ୟରେ ଅଭିଷିକ୍ତ କଲେ । ୩୭ । ମହାରାଜ । ଅନନ୍ତର କର୍ଣ୍ଣ ଜୟ ଶବ୍ଦ ସହ ଉତ୍ତମ ଛତ୍ର ଓ ଚାମର ଯୁକ୍ତ ହୋଇ କୁରୁନନ୍ଦନ ଦୁର୍ଯ୍ୟୋଧନଙ୍କୁ କହିଲେ, "ହେ ରାଜଶାର୍ଦ୍ଦୂଳ । ନୃପ । ଆପଣ ଯେ ଆମ୍ଭଙ୍କୁ ଏହି ରାଜ୍ୟ ପ୍ରଦାନ କଲେ, ଏହାର ବିନିମୟରେ ଆମ୍ଭେ ଆପଣଙ୍କୁ କଣ ପ୍ରଦାନ କରିବୁଁ, କହନ୍ତୁ ?, ଦୁର୍ଯ୍ୟୋଧନ ଉତ୍ତର କଲେ, "ଆମ୍ଭେ ଅତ୍ୟନ୍ତ ସଖ୍ୟ ଇଚ୍ଛା କରୁଅଛୁଁ ।" ଏହା ଶୁଣି କର୍ଣ୍ଣ 'ତଥା' ବୋଲି ପ୍ରତ୍ୟୁତ୍ତର ଦେଲେ; ତହୁଁ ଦୁଇଜଣ ପରସ୍ପର ସମାଶ୍ଳେଷ କଲେ । ୪୧ ।

## ଅଧ୍ୟାୟ ୧୩୭

ବୈଶମ୍ପାୟନ ବୋଇଲେ—ତଦନନ୍ତର କମ୍ପିତ ଓ ଘର୍ମାକ୍ତ କଳେବରରେ ଯଷ୍ଟିଗତ ପ୍ରାଣ ଜଣେ ରଥାରୂଢ଼ ବୃଦ୍ଧ ସ୍ଖଳଦ୍ଉତ୍ତରୀୟବସ୍ତ୍ର ହୋଇ କର୍ଣ୍ଣଙ୍କୁ ଆହ୍ୱାନ କରି ରଙ୍ଗମଧ୍ୟରେ ପ୍ରବେଶ କଲେ । କର୍ଣ୍ଣ ତାହାଙ୍କୁ ଦେଖିବା ମାତ୍ର ପିତୃଗୌରବରେ ବଶୀଭୂତ ହୋଇ ଅଭିଷେକ ଜଳରେ ଆର୍ଦ୍ର ମସ୍ତକ ଦ୍ୱାରା ପ୍ରଣାମ କଲେ । ୨ । ଅନନ୍ତର ସେହି ରଥାରୂଢ଼ ରଥ-ସାରଥି ସସମ୍ଭ୍ରମରେ ଉତ୍ତରୀୟ ବସ୍ତ୍ର ଦ୍ୱାରା ଚରଣ ଯୁଗଳକୁ ଆଚ୍ଛାଦନ କରି ପରିପୂର୍ଣ୍ଣାର୍ଥ * ହେଲା ପ୍ରାୟ କର୍ଣ୍ଣଙ୍କୁ 'ପୁତ୍ର' ବୋଲି ସମ୍ଭାଷଣ କଲେ । ୩ । ଅନନ୍ତର ସ୍ନେହରେ ବିକ୍ଳବଚିତ୍ତ ହୋଇ ଆଲିଙ୍ଗନ ପୂର୍ବକ ଅଙ୍ଗରାଜ୍ୟରେ ଅଭିଷିକ୍ତ ତଦୀୟ ଆର୍ଦ୍ର ମସ୍ତକକୁ ଆନନ୍ଦାଶ୍ରୁ ବର୍ଷଣ ଦ୍ୱାରା ପୁନର୍ବାର ଅଭିଷିକ୍ତ କଲେ । ୪ ।

ପାଣ୍ଡୁପୁତ୍ର ଭୀମସେନ ତାହାଙ୍କୁ ଅବଲୋକନ କରି କର୍ଣ୍ଣଙ୍କୁ ସୂତ-ପୁତ୍ର ବିବେଚନା କରି ଉପହାସ ସ୍ୱରୂପ ବୋଇଲେ, ସୂତ-ପୁତ୍ର ! ତୁମ୍ଭେ ଅର୍ଜ୍ଜୁନଙ୍କ କର୍ତ୍ତୃକ ରଣରେ ବଧର ଯୋଗ୍ୟ ନୁହଁ, ତୁମ୍ଭେ ଅବିଳମ୍ବରେ ପ୍ରତୋଦ † ଗ୍ରହଣ କର । ସେ ତୁମ୍ଭର କୁଳର ସଦୃଶ କାର୍ଯ୍ୟ ଅଟଇ । ୬ । ହେ ନରାଧମ ! ତୁମ୍ଭେ ଅଙ୍ଗରାଜ୍ୟ ଭୋଗ କରିବାର ଉପଯୁକ୍ତ ପାତ୍ର ନୁହଁ; ଅଧ୍ୱରରେ ହୁତାଶନ ସନ୍ନିଧ ଘୃତକୁ ଶ୍ୱାନ ଭୋଗ କରିବାର ଯୋଗ୍ୟ ନୁହଇ । ୭ । ଏହା ଶୁଣି କର୍ଣ୍ଣଙ୍କ ଅଧର ପ୍ରସ୍ଫୁରିତ ହେଲା । ସେ ଦୀର୍ଘ ନିଃଶ୍ୱାସ ପରିତ୍ୟାଗ କରି ଗଗନସ୍ଥ ଦିବାକରଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲେ । ୮ । ଅନନ୍ତର ମହାବଳ ଦୁର୍ଯ୍ୟୋଧନ କୋପାକୁଳିତ ହୋଇ ପଦ୍ମବନରୁ ମଦୋତ୍କଟ ଦ୍ୱୀପ ନିର୍ଗତ ହେଲା ପ୍ରାୟ ଆପଣାର ଭ୍ରାତୃମଣ୍ଡଳୀରୁ ଉତ୍ପତିତ ହେଲେ । ୯ । ସମୀପରେ ଦଣ୍ଡାୟମାନ ଭୀମକର୍ମା ଭୀମସେନଙ୍କୁ ସେ ସମ୍ବୋଧନ କରି ବୋଇଲେ—ବୃକୋଦର ! ତୁମ୍ଭର ଏପରି ବଚନ କହିବା ବିହିତ ନୁହଇ । ୧୦ ।

କ୍ଷତ୍ରିୟମାନଙ୍କର ବଳ, ଶ୍ରେଷ୍ଠ; ନିନ୍ଦିତ କ୍ଷତ୍ରିୟ ହେଲେ ସୁଦ୍ଧା ତାହାଙ୍କ ସହିତ ଯୁଦ୍ଧ କରିବାକୁ ହୁଅଇ; ଶୂରମାନଙ୍କର ଓ ନଦୀମାନଙ୍କର

---

* କର୍ଣ୍ଣଙ୍କୁ ରଜା ହେବାର ଦେଖି ପରିପୂର୍ଣ୍ଣାର୍ଥ ଅର୍ଥାତ୍ ସନ୍ତୁଷ୍ଟ ।
† ପ୍ରତୋଦ—ପାଞ୍ଚଣ ।

ପ୍ରଭବ ଦୁର୍ଜ୍ଞେୟ ଅଟଇ । ୧୧ । ବହ୍ନି ସଲିଳରୁ ଉତ୍ଥିତ ହୋଇ ଚରାଚରକୁ ବ୍ୟାପ୍ତ କରିଅଛି । ଦଧିଚ ମୁନିଙ୍କର ଅସ୍ଥିରୁ ବଜ୍ର ଉତ୍ପନ୍ନ ହୋଇ ଦେବରାଜ ଇନ୍ଦ୍ରଙ୍କର ଅସ୍ତ୍ର ହୋଇ ଦାନବମାନଙ୍କୁ ବିନାଶ କରୁଅଛି । ୧୨ । ସର୍ବ ଦେବମୟ କାର୍ତ୍ତିକଙ୍କୁ ଅଗ୍ନିଙ୍କର ପୁତ୍ର, ରୁଦ୍ରଙ୍କର ପୁତ୍ର, କୃତ୍ତିକାର ପୁତ୍ର ଓ ଗଙ୍ଗାଙ୍କର ପୁତ୍ର ବୋଲି ବୋଲାଯାଏ । ୧୩ । କ୍ଷତ୍ରିୟମାନଙ୍କ ଠାରୁ ଜାତ ହୋଇ ବ୍ରାହ୍ମଣ ହୋଇଅଛନ୍ତି ଏପରି ଶୁଣାଅଛୁ; ବିଶ୍ୱାମିତ୍ର ପ୍ରଭୃତି ଅବ୍ୟୟ ବ୍ରହ୍ମତ୍ୱକୁ ପ୍ରାପ୍ତ ହେଲେ । ୧୪ । ଶସ୍ତ୍ରଧାରୀଙ୍କ ଶ୍ରେଷ୍ଠ କଳଶରୁ ଜାତ ହୋଇଅଛନ୍ତି; ଗୌତମଙ୍କ ବଂଶରେ ଶରସ୍ତମ୍ବରୁ ଗୌତମ କୃପାଚାର୍ଯ୍ୟ ଜାତ ହୋଇ ଅଛନ୍ତି । ଆପଣ ମାନଙ୍କର ଯେପରି ଜନ୍ମ ତାହା ମଧ୍ୟ ଅମ୍ଭେ ଅବଗତ ଅଛୁଁ । ୧୫ ।

କୁଣ୍ଡଳ ଓ କବଚ ସହଜାତ, ସର୍ବଲକ୍ଷଣ-ସମ୍ପନ୍ନ, ଆଦିତ୍ୟ-ସଦୃଶ, ଏହି ବ୍ୟାଘ୍ରସମ ପୁରୁଷଙ୍କୁ କି ମୃଗୀ ଜନ୍ମ କରିପାରେ ? ଏହାଙ୍କର ବାହୁ-ବୀର୍ଯ୍ୟ-ପ୍ରଭାବରୁ ଓ ଅମ୍ଭେ ଏହାଙ୍କର ଆଜ୍ଞାନୁବର୍ତ୍ତୀ ହୋଇଥିବାରୁ ଏହି ନରେଶ୍ୱର କେବଳ ଯେ ଅଙ୍ଗରାଜ୍ୟ ଭୋଗର, ଯୋଗ୍ୟପାତ୍ର ଏହା ନୁହେ ସେ ସମସ୍ତ ପୃଥିବୀର ରାଜା ହେବାର ଯୋଗ୍ୟ । ୧୭ । ଆମ୍ଭର ଏହି ବଚନ ଯେବେ କାହାର ଅସହ୍ୟ ହୁଏ, ତେବେ ସେ ରଥାରୋହଣ ପୂର୍ବକ ପଦ ଦ୍ୱୟର ସାହାଯ୍ୟରେ ଶରାସନକୁ ଅବନମିତ କରୁ । ୧୮ । ତତ୍ପରେ ରଙ୍ଗସ୍ଥଳର ସର୍ବତ୍ର ସାଧୁବାଦର ସହ ମହାନ୍ ହାହାକାର ଉପସ୍ଥିତ ହେଲା ଓ ତହିଁ ସଙ୍ଗେ ସଙ୍ଗେ ସୂର୍ଯ୍ୟ ଅସ୍ତପ୍ରାପ୍ତ ହେଲେ । ୧୯ ।

ତଦନନ୍ତର ନୃପତି ଦୁର୍ଯ୍ୟୋଧନ କର୍ଣ୍ଣଙ୍କର କରାଗ୍ର ଧାରଣ କରି ଦୀପିକାଗ୍ନି ଦ୍ୱାରା ଆଲୋକପ୍ରାପ୍ତ ହୋଇ ରଙ୍ଗସ୍ଥଳରୁ ବିନିର୍ଗତ ହେଲେ । ୨୦ । ହେ ବିଶାମ୍ପତେ ! ପାଣ୍ଡବମାନେ ଦ୍ରୋଣ ଭୀଷ୍ମ ଓ କୃପଙ୍କ ସହିତ ସ୍ୱ ସ୍ୱ ନିବେଶନକୁ ଗମନ କଲେ । ୨୧ । ହେ ଭାରତ ! ଦର୍ଶକ-ମାନଙ୍କ ମଧ୍ୟରୁ କେହି ଅର୍ଜ୍ଜୁନଙ୍କର, କେହି କର୍ଣ୍ଣଙ୍କର ଓ କେହି ଅବା ଦୁର୍ଯ୍ୟୋଧନଙ୍କର କଥା କହୁଁ କହୁଁ ପ୍ରସ୍ଥାନ କଲେ । ୨୨ । ଦିବ୍ୟ-ଲକ୍ଷଣ-ସୂଚିତ କର୍ଣ୍ଣଙ୍କୁ କୁନ୍ତୀ ଆପଣାର ପୁତ୍ର ବୋଲି ଜାଣିଥିଲେ; ଅଧୁନା ତାହାଙ୍କୁ ଅଙ୍ଗଦେଶର ନରପତି ହେବାର ଦେଖି ସ୍ନେହାଚ୍ଛନ୍ନା ଓ ପ୍ରୀତିଯୁକ୍ତା ହେଲେ । ୨୩ । ତତ୍କାଳରେ ଦୁର୍ଯ୍ୟୋଧନ ମଧ୍ୟ କର୍ଣ୍ଣଙ୍କୁ ପ୍ରାପ୍ତ ହେବାରୁ

ତାହାଙ୍କର ଅର୍ଜୁନଙ୍କଠାରୁ ସଞ୍ଜାତ ଭୟ, କ୍ଷିପ୍ର ଅନ୍ତର୍ହିତ ହେଲା । ୨୪ । ଶସ୍ତ୍ରବିଦ୍ୟାରେ ଶ୍ରମଶୀଳ ବୀର କର୍ଣ୍ଣ ମଧ୍ୟ ପ୍ରିୟ ବାକ୍ୟ ଦ୍ୱାରା ଦୁର୍ଯ୍ୟୋଧନଙ୍କୁ ପ୍ରୀତ କଲେ; ଅଥଚ ଯୁଧିଷ୍ଠିରଙ୍କର ଏପରି ମତ ହେଲା ଯେ କର୍ଣ୍ଣଙ୍କ ତୁଲ୍ୟ ଧନୁର୍ଦ୍ଧର ପୃଥିବୀରେ ଆଉ କେହି ନାହାନ୍ତି । ୨୫ ।

## ଅଧ୍ୟାୟ ୧୩୮

ବୈଶମ୍ପାୟନ ବୋଇଲେ—ହେ ମହୀପତେ ! ଗୁରୁ ଦ୍ରୋଣ ପାଣ୍ଡବମାନଙ୍କୁ ଓ ଧୃତରାଷ୍ଟ୍ରମାନଙ୍କୁ କୃତାସ୍ତ୍ର ହେବାର ଦେଖି, ଗୁରୁଦକ୍ଷିଣା ପ୍ରାପ୍ତିର ସମୟ ଉପସ୍ଥିତ ଜାଣି ସମସ୍ତ ଶିଷ୍ୟମାନଙ୍କୁ ଅଣାଇ ଦକ୍ଷିଣା ନିମନ୍ତେ ଆଦେଶ କଲେ । ୨ । ତୁମ୍ଭେମାନେ ପାଞ୍ଚାଳରାଜା ଦ୍ରୁପଦଙ୍କୁ ରଣରେ ପରାଜିତ କରି ଆମ୍ଭ ନିକଟକୁ ଧରି ଘେନି ଆସ; ଏହି ଆମ୍ଭର ପରମ ଦକ୍ଷିଣା; ତୁମ୍ଭର ମଙ୍ଗଳ ହେଉ । ୩ । ଶିଷ୍ୟମାନେ ସମସ୍ତେ ତଥା ବୋଲି କହି ଶସ୍ତ୍ରାସ୍ତ୍ର ଘେନି ରଥାରୋହଣ ପୂର୍ବକ ଗୁରୁଙ୍କ ଦକ୍ଷିଣା ଦେବା ନିମିତ୍ତ ତାହାଙ୍କ ସହିତ ଶୀଘ୍ର ପ୍ରସ୍ଥାନ କଲେ । ୪ । ତଦନନ୍ତର ସେହି ନରଶ୍ରେଷ୍ଠମାନେ ପାଞ୍ଚାଳ ଦେଶୀୟ ସେନା ପ୍ରଭୃତିଙ୍କୁ ହନନ କରି କରି ମହାବଳ ଦ୍ରୁପଦଙ୍କ ନଗରକୁ ବିମର୍ଦ୍ଦନ କଲେ । ୫ । ଦୁର୍ଯ୍ୟୋଧନ, କର୍ଣ୍ଣ- ମହାବଳ ଯୁଯୁତ୍ସୁ, ଦୁଃଶାସନ, ବିକର୍ଣ୍ଣ, ଜଳସନ୍ଧ ଓ ସୁଲୋଚନ— ଏମାନେ ଓ ଅନ୍ୟାନ୍ୟ ବହୁ ବିକ୍ରମଶାଳୀ କ୍ଷତ୍ରିୟକୁମାରମାନେ ବୋଇଲେ—"ଆମ୍ଭେ ଆଗେ ଯିବୁଁ, ଆମ୍ଭେ ପ୍ରଥମେ ଯିବୁଁ ।" ଏହିପରି କହି ସେମାନେ ଉତ୍ତମୋତ୍ତମ ରଥରେ ଆରୋହଣ ପୂର୍ବକ ଅଶ୍ୱାରୂଢ଼ ସେନାଙ୍କ ଦ୍ୱାରା ପରିବୃତ ହୋଇ ନଗର ପ୍ରବେଶ ପୂର୍ବକ ସମସ୍ତେ ରାଜ- ମାର୍ଗରେ ଗମନ କଲେ । ୮ ।

ତତ୍କାଳରେ ପାଞ୍ଚାଳ ଦେଶର ନରପତି ମହଦ୍ବଳ ପ୍ରବେଶ କରିବାର ଶୁଣି ଓ ଦର୍ଶନ କରି ସତ୍ୱର ଭ୍ରାତୃମାନଙ୍କ ସହିତ ଯୁଦ୍ଧାର୍ଥେ ସଜ୍ଜିତ ହୋଇ ଗୃହରୁ ବହିର୍ଗତ ହେଲେ । ୯ । ତତ୍ପରେ ମହୀପତି ଯଜ୍ଞସେନ ଓ କୌରବମାନେ ମହାଶବ୍ଦରେ ଶରବର୍ଷଣ କଲେ । ୧୦ । ଯୁଦ୍ଧରେ ଦୁର୍ଜ୍ଜେୟ ଯଜ୍ଞସେନ ଶୁଭ୍ରରଥରେ ଆରୋହଣ କରି କୌରବ-

ମାନଙ୍କ ନିକଟରେ ଉପସ୍ଥିତ ହୋଇ ଘୋରତର ଶରମାନଙ୍କୁ ବର୍ଷଣ କଲେ । ୧୧ ।

ବୈଶମ୍ପାୟନ ବୋଇଲେ—କୁମାରମାନଙ୍କର ଦର୍ପୋଦ୍ରେକ ଦେଖି ଦ୍ୱିଜସତ୍ତମ ଦ୍ରୋଣାଚାର୍ଯ୍ୟଙ୍କ ସଙ୍ଗେ ପୂର୍ବରୁ ପାର୍ଥ ମନ୍ତ୍ରଣା କରି ସ୍ଥିର କରିଥିଲେ ଯେ କୁମାରମାନଙ୍କର ପରାକ୍ରମ ପ୍ରକାଶ କରିବାର ଅବସାନରେ ତାହାଙ୍କୁ ସାହାଯ୍ୟ କରିବାକୁ ପଡ଼ିବ; କଦାପି କି ରଣଭୂମିରେ ସେମାନେ ପାଞ୍ଚାଳ ଭୂପତିଙ୍କ ଗ୍ରହଣ କରିବାକୁ ସମର୍ଥ ହେବେ ନାହିଁ । ୧୩। ଅନଘ ! କୌନ୍ତେୟ ଏପରି ମନ୍ତ୍ରଣା କରି ଭ୍ରାତୃଗଣଙ୍କ ସହିତ ନଗରର ବାହାରେ ଅର୍ଦ୍ଧକୋଶ ଦୂରରେ ଅବସ୍ଥାନ କଲେ । ୧୪ । ଏଣେ ଦ୍ରୁପଦ ରାଜା କୌରବଗଣଙ୍କୁ ଦେଖି ଅସଂଖ୍ୟ ଶରଜାଳରେ ସମସ୍ତ କୁରୁ-ସେନାମାନଙ୍କୁ ମୋହିତ କରି ଚତୁର୍ଦ୍ଦିଗରେ ଧାବମାନ ହେଲେ । ୧୫ । ଦ୍ରୁପଦ ଏକାକୀ ରଥରେ ଆରୋହଣ କରି ଏତେ ଶୀଘ୍ର ଶର ପ୍ରହାର କଲେ ଯେ କୌରବମାନେ ଭୀତ ହୋଇ ତାହାଙ୍କୁ ଅନେକ ବୋଲି ଅନୁମାନ କଲେ; ଦ୍ରୁପଦଙ୍କର ଭୟଙ୍କର ଶରମାନେ ସବୁ ଦିଗରେ ବିଚରଣ କଲେ । ୧୬ ।

ତଦୃପରେ ହେ ମହାରାଜ ! ପାଞ୍ଚାଳଙ୍କର ନିବେଶନରେ ସହସ୍ର ସହସ୍ର ଶଙ୍ଖ, ଭେରୀ ଓ ମୃଦଙ୍ଗମାନେ ପ୍ରବାଦିତ ହେଲେ । ମହାତ୍ମା ପାଞ୍ଚାଳମାନେ ସିଂହ ସଦୃଶ ନାଦ କଲେ; ସେମାନଙ୍କ ଧନୁର ମହାନ୍ ଜ୍ୟା-ନିର୍ଘୋଷ ଗଗନ ତଳକୁ ସ୍ପର୍ଶ କଲା । ୧୮ । ଦୁର୍ଯ୍ୟୋଧନ, ବିକର୍ଣ୍ଣ, ସୁବାହୁ, ଦୀର୍ଘଲୋଚନ ଓ ଦୁଃଶାସନ ପ୍ରଭୃତି ମଧ୍ୟ କ୍ରୁଦ୍ଧ ହୋଇ ଶର ବୃଷ୍ଟି କଲେ । ୧୯ । ହେ ଭାରତ ! ସମରରେ ଦୁର୍ଦ୍ଧର୍ଷ ମହାଧନୁର୍ଧାରୀ ପୃଷତ୍-ପୁତ୍ର ଦ୍ରୁପଦ, ବାଣ ସମୂହଦ୍ୱାରା ଅତିଶୟ ବିଦ୍ଧ ହୋଇ ବିପକ୍ଷସେନା-ମାନଙ୍କୁ ତତ୍‌କ୍ଷଣାତ୍ ଦାରୁଣ ପୀଡ଼ା ପ୍ରଦାନ କଲେ । ୨୦ । ଦ୍ରୁପଦ ଏକାକୀ ଅଲାତଚକ୍ର ପ୍ରାୟ ଭ୍ରମଣ କରି ଦୁର୍ଯ୍ୟୋଧନ, ବିକର୍ଣ୍ଣ, ମହାବଳ କର୍ଣ୍ଣ, ଓ ନାନା ଦେଶୀୟ ବୀର ରାଜକୁମାରମାନଙ୍କୁ ଓ ବିବିଧ ସୈନ୍ୟ-ମାନଙ୍କୁ ବାଣସମୂହଦ୍ୱାରା ତର୍ପଣ କଲେ । ୨୧ । ତଦୃପରେ ନଗରବାସୀ-ମାନେ ସମସ୍ତେ ମୂଷଳ ଓ ଯଷ୍ଟିମାନ ଘେନି କୌରବମାନଙ୍କ ପ୍ରତି ମେଘ ବର୍ଷଣ କଲାପ୍ରାୟ ବର୍ଷଣ କଲେ । ୨୨ । ହେ ଭାରତ ! ଆବାଲ ବୃଦ୍ଧ ପୌରଗଣ ତୁମୂଳ ଯୁଦ୍ଧ ଶ୍ରବଣ କରି କୌରବମାନଙ୍କ ପ୍ରତି ଧାବମାନ

ହୋଇଥିଲେ; କୌରବମାନେ କନ୍ଦନ କରି ଆରି ପୂର୍ବଙ୍କ ପାଣ୍ଡବମାନଙ୍କ ନିକଟକୁ ଗମନ କଲେ । ପାଣ୍ଡବମାନେ ଲୋମହର୍ଷଣ ଆର୍ତ୍ତସ୍ୱନ ଶ୍ରବଣ କରି ଦ୍ରୋଣଙ୍କୁ ଅଭିବାଦନ କରି ତତ୍କାଳରେ ରଥମାନଙ୍କୁ ଆରୋହଣ କଲେ । ୨୪ । ଅର୍ଜୁନ ସତ୍ୱର ହୋଇ ଯୁଧିଷ୍ଠିରଙ୍କୁ ଯୁଦ୍ଧ କରିବାକୁ ବାରଣ କରି ନକୁଳ ଓ ସହଦେବଙ୍କୁ ଆପଣାର ଚକ୍ର-ରକ୍ଷକ କଲେ ଓ ନିୟତ ସେନାଗ୍ରଗାମୀ ଭୀମସେନ ଗଦାହସ୍ତ ହୋଇ ଅଗ୍ରେ ଅଗ୍ରେ ଗମନ କଲେ । ୨୫ ।

କୁନ୍ତୀପୁତ୍ର ଅନଘ ! ଅର୍ଜୁନ ଶତ୍ରୁମାନଙ୍କର ଶବ୍ଦ ଶ୍ରବଣ କରି ରଥ ଶବ୍ଦରେ ଦିଗମାନଙ୍କୁ ନିନାଦିତ କରି ଭ୍ରାତୃମାନଙ୍କ ସହ ମହାବେଗରେ ରଣସ୍ଥଳକୁ ଆଗମନ କଲେ । ୨୬ । ମକର ଯେପରି ସାଗର ମଧ୍ୟକୁ ପ୍ରବେଶ କରେ, ତଦ୍ରୂପ ଦଣ୍ଡପାଣି ଯମଙ୍କ ସଦୃଶ ମହାବାହୁ ଭୀମସେନ ମଧ୍ୟ ଉଦ୍‌ଗତ ସମୁଦ୍ରସ୍ୱନ ପ୍ରାୟ ଶବ୍ଦ ମାନ ପାଞ୍ଚାଳ ସେନାଙ୍କ ମଧ୍ୟରେ ପ୍ରବେଶ କଲେ । ୨୮ । ଅତୁଳ ବାହୁବୀର୍ଯ୍ୟ ସମ୍ପନ୍ନ ରଣ ପଣ୍ଡିତ ପୃଥା-ନନ୍ଦନ ଭୀମ ସ୍ୱୟଂ ଗଜାରୂଢ଼ ସୈନ୍ୟଙ୍କ ପ୍ରତି ଧାବମାନ ହେଲେ ଓ କାଳରୂପୀ ହୋଇ ଗଦା ପ୍ରହାର ଦ୍ୱାରା ସେମାନଙ୍କୁ ନିହତ କଲେ । ୨୯ । ଗିରି ସଙ୍କାଶ ସେହି କୁଞ୍ଜର ମାନେ ଭୀମସେନଙ୍କ ଗଦାଘାତରେ ଭଗ୍ନ ମସ୍ତକ ହୋଇ ବଜ୍ରାହତ ଅଚଳ ପ୍ରାୟ ଭୂମିରେ ପତିତ ହେଲେ । ୩୦ । ଏହି ପ୍ରକାରେ ଅର୍ଜୁନଙ୍କ ଅଗ୍ରଜ ବହୁସଂଖ୍ୟ ଗଜ, ଅଶ୍ୱ, ରଥ ଓ ପଦାତି ମାନଙ୍କୁ ପାତିତ ଓ ବଧ କଲେ । ୩୧ । ଗୋପାଳ ଯେପରି ଦଣ୍ଡ ଗ୍ରହଣ କରି ବନରେ ପଶୁମାନଙ୍କୁ ଚାଳିତ କରେ, ତଦ୍‌ବତ୍ ବୃକୋଦର ଗଦାଧର ରଥ ଓ ନାଗମାନଙ୍କୁ ଚାଳିତ କଲେ । ୩୨ ।

ବୈଶମ୍ପାୟନ ବୋଇଲେ—ତତ୍କାଳରେ ଭରଦ୍ୱାଜଙ୍କର ପ୍ରିୟକାର୍ଯ୍ୟ କରିବାକୁ ଅର୍ଜୁନ ଉଦ୍ୟତ ହୋଇ ଶରଜାଳ ଦ୍ୱାରା ପୃଷତ୍-ପୁତ୍ର ଦ୍ରୁପଦଙ୍କୁ ଆଚ୍ଛନ୍ନ କରି ପୃଷ୍ଠରୁ ବିକ୍ଷିପ୍ତ କଲେ । ୩୩ । ହେ ରାଜନ୍ ! ସେ ପ୍ରଳୟାନଳ ପ୍ରାୟ ପ୍ରଜ୍ୱଳିତ ହୋଇ ଅଶ୍ୱ, ଗଜ ଓ ରଥମାନଙ୍କୁ ସମରାଙ୍ଗଣରେ ପାତିତ କଲେ । ୩୪ । ତଦନନ୍ତର ପାଞ୍ଚାଳ ଓ ସୃଞ୍ଜୟମାନେ ଅର୍ଜୁନଙ୍କ ଦ୍ୱାରା ହନ୍ୟମାନ ହୋଇ ନାନାବିଧ ଶର ସମୂହରେ ପାର୍ଥଙ୍କୁ ସବୁଦିଗରୁ ସଞ୍ଛାଦିତ କଲେ ଓ ମୁଖରେ ସିଂହ ପ୍ରାୟ ନାଦ କରି ପାଣ୍ଡବଙ୍କ ସହିତ ଯୁଦ୍ଧ କଲେ । ସେ ଯୁଦ୍ଧ ଘୋର ଓ ଅଦ୍‌ଭୁତ ହେଲା । ୩୬ । ପାଞ୍ଚାଳସଙ୍ଘ

କର୍ଣ୍ଣୀ ସେ ସିଂହନାଦକୁ ଶ୍ରବଣ କରି ଅସହିଷ୍ଣୁ ହୋଇ ତତ୍‌କ୍ଷଣାତ୍ ମହତ୍ ଶରଜାଳରେ ରଣଭୂମିର ଚତୁର୍ଦ୍ଦିଗକୁ ଆଚ୍ଛାଦନପୂର୍ବକ, ପାଞ୍ଚାଳ-ମାନଙ୍କୁ ମୋହିତ କରି ଧାବମାନ ହେଲେ । ୩୭ ।

କୁନ୍ତୀ ସୁତ ଯଶସ୍ୱୀ ଅର୍ଜ୍ଜୁନ କେତେବେଳେ ଶରସନ୍ଧାନ କରନ୍ତି ଓ କେତେବେଳେ ପ୍ରହାର କରନ୍ତି ତାହାର ଅନ୍ତର ଜଣା ନ ପଡ଼ିବାରୁ ଚତୁର୍ଦ୍ଦିଗରୁ ସାଧୁ ସାଧୁ ଶବ୍ଦ ସହ ସିଂହ ନାଦ ସମୁତ୍ଥିତ ହେଲା । ୩୮ । ମହେନ୍ଦ୍ରଙ୍କ ପ୍ରତି ସମ୍ବରାସୁର ଧାବିତ ହେଲା ପ୍ରାୟ ପାଞ୍ଚାଳ ରାଜ କ୍ରୋଧାନ୍ୱିତ ହୋଇ ସତ୍ୟଜିତଙ୍କ ସହ ଅର୍ଜ୍ଜୁନଙ୍କ ପ୍ରତି ଧାବମାନ ହେଲେ ।୩୯। ପାଞ୍ଚାଳଙ୍କ ମହତ୍ ଶର ବର୍ଷଣ ଦ୍ୱାରା ପାର୍ଥ ଆବରଣ କଲେ; ତହିଁରେ ପାଞ୍ଚାଳଙ୍କ ବଳରେ ଶୋକ-ସରକ ହଳହଳା ଶବ୍ଦ ସମୁତ୍ଥିତ ହେଲା । ୪୦ । ଗଜ-ଯୂଥପତିଙ୍କୁ ମହାସିଂହ ଗ୍ରହଣ କରିବାକୁ ଇଚ୍ଛୁକ ହେଲା ପ୍ରାୟ ପାର୍ଥଙ୍କୁ ଆସିବାର ଦେଖି ସତ୍ୟ ବିକ୍ରମ ସତ୍ୟଜିତ୍ ପାଞ୍ଚାଳଙ୍କୁ ରକ୍ଷା କରିବା ନିମିତ୍ତ ଅର୍ଜ୍ଜୁନଙ୍କ ପ୍ରତି ଧାବିତ ହେଲେ । ୪୧ ।

ତପରେ ଅର୍ଜ୍ଜୁନ ଓ ପାଞ୍ଚାଳ ଦୁହେଁ ଯୁଦ୍ଧ ନିମିତ୍ତ ସମ୍ମୁଖୀନ ହୁଅନ୍ତେ, ଇନ୍ଦ୍ର ଓ ବୈରୋଚନି ବଳୀଙ୍କ ପ୍ରାୟ ପରସ୍ପରଙ୍କ ସେନାଙ୍କୁ ପରସ୍ପର ବିକ୍ଷୋଭିତ କଲେ । ୪୨ । ତଦନନ୍ତର ସତ୍ୟଜିତଙ୍କୁ ପାର୍ଥ ଦଶଗୋଟି ମର୍ମ୍ମଭେଦ ବାଣଦ୍ୱାରା ଗାଢ଼ ରୂପେ ବିଦ୍ଧ କଲେ; ତାହା ଦେଖି ସମସ୍ତେ ସେ କାର୍ଯ୍ୟକୁ ଅଦ୍ଭୁତ ଜ୍ଞାନ କଲେ । ୪୩ । ତପରେ ପାଞ୍ଚାଳରାଜା ଶତ ଶରଦ୍ୱାରା ପାର୍ଥଙ୍କୁ ଶୀଘ୍ର ଚୂର୍ଦ୍ଦିତ କଲେ । ମହାରଥ ପାର୍ଥ ଶର ବୃଷ୍ଟିରେ ଛାଦ୍ୟମାନ ହୁଅନ୍ତେ ଅଧିକତର ବେଗବାନ୍ ହୋଇ ଧନୁର୍ଗୁଣକୁ ମାର୍ଜ୍ଜିତ କଲେ ଓ ଦେଖୁଁ ଦେଖୁଁ ସତ୍ୟଜିତଙ୍କ ଚାପକୁ ଛେଦନ କରି ଦ୍ରୁପଦଙ୍କ ସମୀପକୁ ଗମନ କଲେ । ଅନନ୍ତର ସତ୍ୟଜିତ୍ ଆଉ ଗୋଟାଏ ଧନୁକୁ ସତ୍ୱର ଗ୍ରହଣ କରି ଅଶ୍ୱ, ରଥ ଓ ସୂତଙ୍କ ସହିତ ପାର୍ଥଙ୍କୁ ବିଦ୍ଧ କଲେ । ୪୫ । ପାଞ୍ଚାଳଙ୍କ ଦ୍ୱାରା ଯୁଦ୍ଧରେ ଅର୍ଦ୍ଦିତ ହୋଇ ପାର୍ଥ ଆଉ ସହି ନ ପାରି ତାହାଙ୍କ ବିନାଶାର୍ଥ ଅଶ୍ୱ, ରଥଧ୍ୱଜ, ଧନୁର୍ମ୍ମୁଷ୍ଟି ଓ ପୃଷ୍ଠରକ୍ଷକ ଓ ସାରଥିଙ୍କ ପ୍ରତି ସତ୍ୱର ଶରମାନଙ୍କୁ ବିସର୍ଜ୍ଜନ କଲେ । ୪୬ ।

ସତ୍ୟଜିତଙ୍କର କାର୍ମ୍ମୁକ ପୁନଃ ପୁନଃ ଭଗ୍ନ ହୁଅନ୍ତେ ଓ ଅଶ୍ୱ-ମାନେ ବିନଷ୍ଟ ହୁଅନ୍ତେ ସେ ରଣରୁ ବିମୁଖ ହେଲେ । ସତ୍ୟଜିତଙ୍କୁ ବିମୁଖ ହେବାର ଦେଖି ଅର୍ଜ୍ଜୁନଙ୍କ ପ୍ରତି ପାଞ୍ଚାଳରାଜ ମହାବେଗରେ

ବାଣବର୍ଷଣ କରିବାକୁ ପ୍ରବୃତ୍ତ ହେଲେ । ୪୮ । ଜୟଶୀଳ ଅର୍ଜୁନ ମଧ୍ୟ ତତ୍‌କାଳରେ ଘୋରତର ଯୁଦ୍ଧ କଲେ । ଦ୍ରୁପଦଙ୍କର ଧନୁକୁ ଛେଦନ କରି ତାହାଙ୍କର ଧ୍ୱଜକୁ ପାର୍ଥ ଭୂମିରେ ପାତିତ କଲେ ଓ ପଞ୍ଚବାଣ ଦ୍ୱାରା ତଦୀୟ ଅଶ୍ୱ ଓ ସାରଥିଙ୍କୁ ବିଦ୍ଧ କଲେ । ତତ୍ପରେ ସେ ଛିନ୍ନ ଚାପକୁ ପରିତ୍ୟାଗ କରି ଅପର ଚାପ ଓ ତୂଣକୁ ଗ୍ରହଣ କରିବାର ଦେଖି କୁନ୍ତୀ ତନୟ ଅର୍ଜୁନ ଖଡ଼୍‌ଗୋତ୍ତୋଳନ କରି ସିଂହନାଦ କଲେ ଓ ଲମ୍ଫପ୍ରଦାନ ପୂର୍ବକ ସହସା ପାଞ୍ଚାଳଙ୍କ ରଥୋପରେ ପତିତ ହେଲେ । ନିର୍ଭୀକ ଅର୍ଜୁନ ପାଞ୍ଚାଳଙ୍କ ରଥୋପରିସ୍ଥିତ ହୋଇ, ଐରାବତ ନାଗ ସମୁଦ୍ରକୁ ବିକ୍ଷୋଭିତ କଲା ପ୍ରାୟ; ତାହାଙ୍କୁ ବୋଇଲେ, ତଦନନ୍ତର ସବୁ ପାଞ୍ଚାଳମାନେ ଭିନ୍ନ ଭିନ୍ନ ଦିଗକୁ ପଳାୟନପର ହେଲେ । ୫୨ । ସର୍ବସୈନ୍ୟଙ୍କ ସମକ୍ଷରେ ଆପଣାର ବାହୁବଳ ପ୍ରଦର୍ଶନ ପୁରଃସର ସିଂହନାଦ କରି ଧନଞ୍ଜୟ ନିର୍ଗମନ କଲେ । ୫୩ । ଅର୍ଜୁନଙ୍କୁ ପ୍ରତ୍ୟାଗତ ହେବାର ଦେଖି କୁମାରମାନେ ଏକତ୍ରିତ ହୋଇ ମହାରାଜ ଦ୍ରୁପଦଙ୍କ ନଗରକୁ ବିମର୍ଦ୍ଦନ କଲେ । ୫୪ ।

ଅର୍ଜୁନ ବୋଇଲେ—ହେ ଭୀମ ! ରାଜସତ୍ତମ ଦ୍ରୁପଦ କୁରୁବୀରମାନଙ୍କର ସମ୍ବନ୍ଧୀ ଅଟନ୍ତି । ଅତଏବ ତାହାଙ୍କର ବଳକୁ ବିନାଶ ନ କରି ଗୁରୁଙ୍କର ଦକ୍ଷିଣା ପ୍ରଦାନ କର । ୫୫ ।

ବୈଶମ୍ପାୟନ ବୋଇଲେ—ହେ ରାଜନ୍ ! ତତ୍କାଳରେ ଅର୍ଜୁନଙ୍କ ଦ୍ୱାରା ଭୀମ ନିବାରିତ ହେବାରୁ ସେ ମହାବଳ ଯୁଦ୍ଧରେ ଅତୃପ୍ତ ହେଲେହେଁ ତହିଁରୁ ନିବୃତ୍ତ ହେଲେ । ୫୬ । ହେ ଭରତର୍ଷଭ ! ସେମାନେ ଯଜ୍ଞସେନ ଦ୍ରୁପଦଙ୍କୁ ରଣସ୍ଥଳରେ ଗ୍ରହଣ କରି ଅମାତ୍ୟ ସହ ତାହାଙ୍କୁ ନେଇ ଦ୍ରୋଣଙ୍କ ଉପହାର ଦେଲେ । ୫୭ । ଭଗ୍ନଦର୍ପ, ହୃତଧନ, ଓ ବଶତାପନ୍ନ ଦ୍ରୁପଦଙ୍କୁ ପୂର୍ବ-ବୈର ସ୍ମରଣ ପୂର୍ବକ ଦ୍ରୋଣ ବୋଇଲେ—ଅମ୍ଭେ ବଳପୂର୍ବକ ତୁମ୍ଭର ରାଷ୍ଟ୍ର ଓ ପୁରକୁ ବିମର୍ଦ୍ଦନ କଲୁଁ; ଅମ୍ଭର ଅନୁଗ୍ରହରୁ ତୁମ୍ଭର ଜୀବନ ରହିଅଛି; ଏବେ କି ତୁମ୍ଭେ ପୂର୍ବ ସଖ୍ୟକୁ ଇଚ୍ଛା କରୁଅଛ ? । ୫୯ । ଏହା କହି ପୁନର୍ବାର କିଞ୍ଚିତ୍ ହାସ୍ୟ କରି କହିଲେ, ହେ ବୀର ! ତୁମ୍ଭେ ପ୍ରାଣ ଭୟ କରନା, ଅମ୍ଭେମାନେ ବ୍ରାହ୍ମଣ କ୍ଷମାଶୀଳ ଅଟୁଁ । ୬୦ । ହେ କ୍ଷତ୍ରିୟ ଶ୍ରେଷ୍ଠ ! ତୁମ୍ଭେ ଯେ ଅମ୍ଭ ସହିତ ବାଲ୍ୟା-

ବସ୍ଥାରେ କ୍ରୀଡ଼ା କରଥିଲ, ତହିଁରେ ତୁମ୍ଭପ୍ରତ ଅମ୍ଭର ପ୍ରୀତ ଓ ସ୍ନେହ ସମ୍ବର୍ଦ୍ଧିତ ହୋଇ ରହିଅଛି । ୬୧ ।

ହେ ଜନାଧିପ । ତୁମ୍ଭ ସହିତ ଅମ୍ଭେ ପୁନର୍ବାର ସଖ୍ୟ ଇଚ୍ଛା କରୁଅଛୁଁ । ହେ ରାଜନ୍ । ଅମ୍ଭେ ତୁମ୍ଭଙ୍କୁ ବର ପ୍ରଦାନ କରୁଅଛୁଁ ଯେ ତୁମ୍ଭେ ଏହି ରାଜ୍ୟର ଅର୍ଦ୍ଧାଂଶ ପ୍ରାପ୍ତ ହେବ; ହେ ଯଜ୍ଞସେନ । ଅ-ରଜା ହେଲେ ଅମ୍ଭର ସଖା ହୋଇ ପାରିବ ନାହିଁ; ଅତଏବ ଅମ୍ଭେ ତୁମ୍ଭଙ୍କୁ ରାଜ୍ୟର ଅର୍ଦ୍ଧଭାଗ ଦାନ କଲୁଁ । ୬୩ । ହେ ପାଞ୍ଚାଳ । ତୁମ୍ଭେ ଭାଗୀରଥୀର ଦକ୍ଷିଣ କୂଳରେ ରାଜା ହୁଅ; ଅମ୍ଭେ ଉତ୍ତର କୂଳର ରାଜାହେଉଁ ଏବେ ତୁମ୍ଭର ଅଭିମତ ଯଦି ହୁଏ, ତେବେ ଅମ୍ଭଙ୍କୁ ସଖା ବୋଲି ଜାଣ । ୬୪ ।

ଦ୍ରୁପଦ ବୋଇଲେ—ହେ ବ୍ରହ୍ମନ୍ । ବିକ୍ରମଶାଳୀ ମହାତ୍ମା ପୁରୁଷମାନଙ୍କ ପକ୍ଷରେ ଏ କଥା ଆଶ୍ଚର୍ଯ୍ୟଜନକ ନୁହଇ; ଅମ୍ଭେ ଆପଣଙ୍କ ସୌଜନ୍ୟରେ ପ୍ରୀତ ହେଉଅଛୁଁ ଓ ଆପଣଙ୍କଠାରୁ ଚିରସ୍ଥାୟିନୀ ପ୍ରୀତକୁ ଇଚ୍ଛା କରୁଅଛୁଁ । ୬୫ ।

ବୈଶମ୍ପାୟନ ବୋଇଲେ—ହେ ଭାରତ । ଦ୍ରୁପଦଙ୍କର ବଚନ ଶୁଣି ତାହାଙ୍କୁ ଦ୍ରୋଣ ମୁକ୍ତକର ଓ ପ୍ରୀତପୂର୍ବକ ସତ୍କାର କରି ରାଜ୍ୟର ଅର୍ଦ୍ଧଭାଗ ତାହାଙ୍କୁ ପ୍ରଦାନ କଲେ । ୬୬ । ଦ୍ରୁପଦରାଜା ଚର୍ମଣ୍ୱତୀ ନଦୀ ପର୍ଯ୍ୟନ୍ତ ଦକ୍ଷିଣ ପାଞ୍ଚାଳରେ ଅଧିକାର ପ୍ରାପ୍ତ ହୋଇ ପୁରଶ୍ରେଷ୍ଠ କାମ୍ପିଲ୍ୟ ନଗରରେ ଦୀନଚିତ୍ତରେ ଅଧିବାସ କଲେ । ଦ୍ରୋଣଙ୍କ କର୍ତ୍ତୃକ ଦ୍ରୁପଦ ଏହିରୂପେ ପରଭୂତ ଓ ପାଳିତ ହେଲେ । ୬୭ । ଅନନ୍ତର ସେ କ୍ଷତ୍ରିୟ ବଳ ଦ୍ୱାରା ଦ୍ରୋଣଙ୍କର ପରାଜୟ ଜ୍ଞାନ କରି ଓ ଆପଣାକୁ ହୀନ ବିବେଚନା କରି ବ୍ରହ୍ମବଳରେ ପୁତ୍ର ଜନ୍ମ କରିବା ଅଭିଳାଷରେ ପୃଥିବୀ ପରିଭ୍ରମଣ କଲେ । ଦ୍ରୋଣ 'ଅହିଛତ୍ର' ନାମକ ରାଜ୍ୟକୁ ପ୍ରାପ୍ତ ହେଲେ । ୭୦ । ହେ ରାଜନ୍ । ଏହିରୂପେ ଧନଞ୍ଜୟ ଜନପଦ ସହିତ 'ଅହିଛତ୍ର' ପୁରୀକୁ ଯୁଦ୍ଧରେ ଜୟକରି ଦ୍ରୋଣଙ୍କୁ ସମ୍ପ୍ରଦାନ କଲେ । ୭୧ ।

———

## ଅଧ୍ୟାୟ ୧୩୯

ବୈଶମ୍ପାୟନ ବୋଇଲେ—ହେ ପାର୍ଥିବ ! ତଦନନ୍ତର ଯୁଧିଷ୍ଠିରଙ୍କର ସ୍ଥୈର୍ଯ୍ୟ, ସହିଷ୍ଣୁତା, ସହୃଦୟତା, ସରଳତା, ସ୍ଥିର ସୌହୃଦ୍ୟ, ଭୂତାନୁକମ୍ପାଦି ଗୁଣ ଅବଲୋକନ କରି ଅବସରାନ୍ତେ ତାହାଙ୍କୁ ଧୃତରାଷ୍ଟ୍ର ଯୌବରାଜ୍ୟରେ ସ୍ଥାପିତ କଲେ । ୨ । ତତ୍ପରେ ଅଳ୍ପକାଳ ମଧ୍ୟରେ କୁନ୍ତୀପୁତ୍ର ଯୁଧିଷ୍ଠିର ଅନସୂୟାଦି ସଦାଚାର, ତେଜ, ଶୌର୍ଯ୍ୟ, ତେଜ ଓ ପ୍ରଜାମାନଙ୍କୁ ସମାଧାନ କରିବା ଗୁଣରେ ପିତାଙ୍କର କୀର୍ତ୍ତିକୁ ଅତିକ୍ରମ କଲେ । ୩ । ପାଣ୍ଡୁନନ୍ଦନ ବୃକୋଦର, ବଳଦେବଙ୍କ ନିକଟରୁ ଅସିଯୁଦ୍ଧ, ଗଦାଯୁଦ୍ଧ ଓ ରଥଯୁଦ୍ଧମାନ ନିରନ୍ତର ଶିକ୍ଷା କଲେ ।୪। ଦ୍ୟୁମତ୍ସେନଙ୍କ ସଦୃଶ ବଳଶାଳୀ ଭୀମ ଶିକ୍ଷା ସମାପ୍ତ କରି ପରାକ୍ରମ ସମ୍ପନ୍ନ ହୋଇ ଭ୍ରାତୃମାନଙ୍କର ବଶବର୍ତ୍ତୀ ହୋଇ ରହିଲେ । ୫ । କ୍ଷୁର, ନାରାଚ, ଭଲ୍ଲ, ବିପାଣ ପ୍ରଭୃତି ଋଜୁ, ବକ୍ର ଓ ବିଶାଳ ଅସ୍ତ୍ରମାନଙ୍କ ପ୍ରୟୋଗରେ ଅଥଚ ପ୍ରଗାଢ଼ ଦୃଢ଼-ମୁଷ୍ଟିତା ଓ ଲଘୁତା ପୂର୍ବକ ଲକ୍ଷ୍ୟ ବେଧରେ ଫାଲ୍‌ଗୁନ ପାରଦର୍ଶୀ ହେଲେ । ୬ ।

ଦ୍ରୋଣାଚାର୍ଯ୍ୟ ସ୍ଥିର ଜାଣିଥିଲେ ଯେ ଲାଘବ ଓ ସୌଷ୍ଠବ ବିଷୟରେ ବିଭତ୍ସୁଙ୍କ ସଦୃଶ ଅନ୍ୟ କେହି ଏ ଜଗତରେ ନ ଥିଲେ । ୭ । ଏହା ବିବେଚନା କରି ଦ୍ରୋଣ କୌରବ ଗଣଙ୍କ ସଭା ମଧ୍ୟରେ ଗୁଡ଼ାକେଶ ଅର୍ଜ୍ଜୁନଙ୍କୁ ବୋଇଲେ—ହେ ଭାରତ ! ପୂର୍ବକାଳରେ ଅଗସ୍ତ୍ୟ ମୁନିଙ୍କର ଶିଷ୍ୟ, ଧନୁର୍ବେଦରେ ବିଖ୍ୟାତ, ଅଗ୍ନିବେଶ ଋଷି ଆମ୍ଭର ଗୁରୁ ଥିଲେ । ୮ । ଆମ୍ଭେ ସେହି ଅଗ୍ନିବେଶଙ୍କ ଶିଷ୍ୟ ହୋଇ ଧନୁର୍ବେଦ ଶିକ୍ଷା କରିଅଛୁଁ । ସେହି ବିଦ୍ୟାକୁ ଆମ୍ଭେ ଏକ ପାତ୍ରରୁ ପାତ୍ରାନ୍ତର ଠାରେ ସମର୍ପଣ କରିବାକୁ ସମୁଦ୍ୟତ ହୋଇଅଛୁଁ । ୯ । ଆମ୍ଭେ ତପୋବଳରେ ସେହି ଗୁରୁଙ୍କ ନିକଟରୁ 'ବ୍ରହ୍ମଶିର' ନାମକ ବଜ୍ରସଦୃଶ ଯେଉଁ ଅମୋଘ ଅସ୍ତ୍ରକୁ ପ୍ରାପ୍ତ ହୋଇଅଛୁଁ ଓ ଯେଉଁ ଅସ୍ତ୍ର ସମସ୍ତ ପୃଥିବୀ ଦହନ କରିପାରେ, ସେ ଅସ୍ତ୍ର ପ୍ରଦାନ କାଳରେ ଗୁରୁ କହିଥିଲେ, "ହେ ଭରଦ୍ୱାଜ ! ତୁମ୍ଭେ ଅଳ୍ପ ବୀର୍ଯ୍ୟଶାଳୀ ମନୁଷ୍ୟ ପ୍ରତି ଏହି ଅସ୍ତ୍ର ପ୍ରୟୋଗ କରିବ ନାହିଁ" । ୧୧ ।

ହେ ବୀର ! ଆମ୍ଭ ନିକଟରୁ ତୁମ୍ଭେ ସେହି ଦିବ୍ୟ ଅସ୍ତ୍ର ପ୍ରାପ୍ତ ହୋଇଅଛ; ଅନ୍ୟ କୌଣସି ବ୍ୟକ୍ତି ଏହାକୁ ପ୍ରାପ୍ତ ହେବାର ଯୋଗ୍ୟ ନୁହନ୍ତି;

କରନ୍ତୁ ହେ ବଣାମତେ । ମୁନ ଯେଉଁ ନୟମ କରଦେଇଛନ୍ତି, ତାହାକୁ ଲଙ୍ଘନ କରବ ନାହିଁ । ୧୨ । ସମ୍ପ୍ରତି ତୁମ୍ଭର ଜ୍ଞାତବର୍ଗଙ୍କ ସମକ୍ଷରେ ଆମ୍ଭଙ୍କୁ ଗୁରୁଦକ୍ଷିଣା ପ୍ରଦାନ କର । ଅନନ୍ତର ଅର୍ଜୁନ ଗୁରୁଙ୍କ ଅଭିଳଷିତ ଦାନ ଦେବାକୁ ସମ୍ମତ ହୁଅନ୍ତେ ସେ କହିଲେ ହେ ଅନଘ ! ରଣ ସ୍ଥଳରେ ଆମ୍ଭେ ତୁମ୍ଭ ସହିତ ସଂଗ୍ରାମ କରବାକୁ ପ୍ରବୃତ୍ତ ହେଲେଁ ତୁମ୍ଭେ ଆମ୍ଭ ସହିତ ପ୍ରତିଯୁଦ୍ଧ କରବ । କୁରୁ-ପୁଙ୍ଗବ ଅର୍ଜୁନ 'ତଥାସ୍ତୁ' ବୋଲି ତାହା ସ୍ୱୀକାର ପୂର୍ବକ ତାହାଙ୍କ ଚରଣ ଦ୍ୱୟରେ ପ୍ରଣାମ କର ଉତ୍ତର ଦଗକୁ ଗମନ କଲେ । ୧୪ । ସାଗର ପର୍ଯ୍ୟନ୍ତ ସମସ୍ତ ପୃଥିବୀରେ ଏହି ଶବ୍ଦ ହେଲା ଯେ ଅର୍ଜୁନଙ୍କ ସଦୃଶ ଧନୁର୍ଦ୍ଧର ଏହି ପୃଥିବୀରେ କେହି ନାହିଁ; ଅଥଚ ଗଦାଯୁଦ୍ଧ, ଅସିଯୁଦ୍ଧ, ରଥଯୁଦ୍ଧ ଓ ଧନୁର୍ଯୁଦ୍ଧରେ ପାଣ୍ଡୁନନ୍ଦନ ଧନଞ୍ଜୟ ପାରଗ ହୋଇଅଛନ୍ତି । ୧୭ ।

ବହ୍ଲୁଧ ଗୁରୁଙ୍କ ସଦୃଶ ଦ୍ରୋଣାଚାର୍ଯ୍ୟଙ୍କଠାରୁ ସହଦେବ ନଖିଳ ନୀତଶାସ୍ତ୍ର ଅଧ୍ୟୟନ କର ନୀତପରାୟଣ ହୋଇ ଭ୍ରାତାମାନଙ୍କର ବଶବର୍ତ୍ତୀ ହୋଇ ରହିଲେ । ୧୭ । ଦ୍ରୋଣଙ୍କ ଦ୍ୱାରା ନକୁଳ ବନୀତ ଭାବରେ ସୁଶିକ୍ଷିତ ହୋଇ ଚିତ୍ରଯୋଧୀ ଓ ଅତିରଥ ବୋଲି ବିଖ୍ୟାତ ହୋଇ ଭ୍ରାତୃବର୍ଗଙ୍କର ପ୍ରିୟ ହେଲେ । ୧୮ । ( ପାଣ୍ଡବମାନେ ଏପର ପରାକ୍ରମ ଶାଳୀ ହେଲେ ଯେ ) ଯେତେବେଳେ ଗନ୍ଧର୍ବମାନଙ୍କ ସହିତ ଉପପ୍ଳବ ଉପସ୍ଥିତ ହେଲା ତେତେବେଳେ ତ୍ରିବର୍ଷ ବ୍ୟାପୀ ଯଜ୍ଞକାରୀ ସୌବୀର ଅର୍ଜୁନ ପ୍ରଭୃତ ପୃଥା ପୁତ୍ରଙ୍କ ଦ୍ୱାରା ସମରରେ ହତ ହେଲେ । ୧୯ । ବୀର୍ଯ୍ୟବାନ ପାଣ୍ଡୁ ଯେଉଁ ଯବନାଧିପଙ୍କୁ ବଶବର୍ତ୍ତୀ କର ପାର ନ ଥିଲେ, ଅର୍ଜୁନ ତାହାଙ୍କୁ ସୁଦ୍ଧା ଆପଣା ବଶକୁ ଆଣିଲେ । ୨୦ । ଅତୀବ ବଳସମ୍ପନ୍ନ ଓ ଗୁରୁଙ୍କ ପ୍ରତି ସଦାମାନୀ 'ବିପୁଳ' ନାମକ ସୌବୀର ଦେଶାଧିପତିଙ୍କୁ ସୁଦ୍ଧା ଅର୍ଜୁନ ନିଜ ବୁଦ୍ଧି ଦ୍ୱାରା ଶାସିତ କଲେ । ୨୧ ।

ଦତ୍ତାମିତ୍ର ବୋଲି ବିଖ୍ୟାତ, ସୌବୀର ଦେଶର ସୁମିତ୍ର ନାମକ ବୀରଙ୍କୁ ସୁଦ୍ଧା ଅର୍ଜୁନ ଶରବଳରେ ଦମନ କଲେ । ୨୨ । ଭୀମସେନଙ୍କ ସହାୟ କର ଅର୍ଜୁନ ଏକରଥୀ ହୋଇ ଅୟୁତରଥୀଙ୍କ ସହିତ ଯୁଦ୍ଧ କର ସମରରେ ପ୍ରାଚୀଦଗର ସମସ୍ତ ରାଜାମାନଙ୍କୁ ପରାଜିତ କଲେ । ୨୩ । ସେହି ପ୍ରକାରେ ଧନଞ୍ଜୟ ଏକ ରଥ ହୋଇ ଦକ୍ଷିଣ ଦଗକୁ ଜୟ କର ସେଠାରୁ ଧନମାନଙ୍କୁ କୁରୁରାଜ୍ୟକୁ ପ୍ରେରଣ କଲେ । ୨୪ । ଏହି ପ୍ରକାରେ

ପୂର୍ବକାଳରେ ମନୁଜୋତ୍ତମ ମହାତ୍ମା ପାଣ୍ଡବମାନେ, ପରରାଜ୍ୟକୁ ବର୍ଦ୍ଧିତ କରିଥିଲେ । ୨୫ । ଅନନ୍ତର ଦୃଢ଼ଧନ୍ୱା ପାଣ୍ଡବମାନଙ୍କର ବଳ ଅତିଶୟ ଖ୍ୟାତ ହେବାର ଜାଣି ସେମାନଙ୍କ ପ୍ରତି ଧୃତରାଷ୍ଟ୍ରଙ୍କର ଭାବ ସହସା ଦୂଷିତ ହେଲା; ସେ ଚିନ୍ତାବଶ ହୋଇ ରାତିରେ ନିଦ୍ରା ଲାଭ କଲେ ନାହିଁ । ୨୬ ।

---

## ଅଧ୍ୟାୟ ୧୪୦

ବୈଶମ୍ପାୟନ ବୋଇଲେ—ପାଣ୍ଡୁପୁତ୍ରମାନେ ବୀର, ବଳୋଦ୍ରିକ୍ତ ଓ ମହାତେଜସ୍ୱୀ ହେବାର ଶୁଣି ମହୀପାଳ ଧୃତରାଷ୍ଟ୍ର ଆତୁର ଓ ଚିନ୍ତାନ୍ୱିତ ହେଲେ । ୧ । ତତ୍ପରେ ରାଜଶାସ୍ତ୍ରାର୍ଥ ଜ୍ଞାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ମନ୍ତ୍ରଜ୍ଞ ଓ ମନ୍ତ୍ରୀବର କଣିକଙ୍କୁ ଆହ୍ୱାନ କରି ଧୃତରାଷ୍ଟ୍ର ଏହି ବଚନ ବୋଇଲେ ।

ଧୃତରାଷ୍ଟ୍ର କହିଲେ—ହେ ଦ୍ୱିଜୋତ୍ତମ ! ପାଣ୍ଡବମାନେ ଦିନକୁ ଦିନ ବୃଦ୍ଧିପ୍ରାପ୍ତ ହେଉଅଛନ୍ତି । ସେମାନଙ୍କ ପ୍ରତି ଆମ୍ଭର ଅସୂୟା ଜାତ ହେଉଅଛି; ଅତଏବ ହେ କଣିକ ! ତାହାଙ୍କ ସହିତ ସନ୍ଧି କରିବା କି ବିଗ୍ରହ କରିବା ତୁମ୍ଭେ ଯେପରି କହିବ, ଆମ୍ଭେ ତୁମ୍ଭର ବଚନ କରିବୁଁ । ୩ ।

ବୈଶମ୍ପାୟନ ବୋଇଲେ—ସେହି ଦ୍ୱିଜୋତ୍ତମ କଣିକ ପରିପୃଷ୍ଟ ହୁଅନ୍ତେ ପ୍ରସନ୍ନମନା ହୋଇ, ରାଜଶାସ୍ତ୍ରାର୍ଥାନୁସାରି ତୀକ୍ଷ୍ଣ ବଚନମାନଙ୍କୁ କହିଲେ । ୪ ।

କଣିକ କହିଲେ—ହେ ରାଜନ୍ ! ହେ ଅନଘ ! ଆମ୍ଭେ ଯାହା କହିବୁଁ, ଶୁଣ । ହେ କୁରୁ ସତ୍ତମ ! ଆମ୍ଭ ବଚନ ଶୁଣି ତୁମ୍ଭେ ଆମ୍ଭଠାରେ ଅସୂୟା * କରିବ ନାହିଁ । ୫ । ରାଜାମାନେ ନିତ୍ୟ ଉଦ୍ୟତ-ଦଣ୍ଡ ହୋଇ ସ୍ୱୀୟ ପୌରୁଷ ବିସ୍ତାର କରିବେ; ସ୍ୱୟଂ ଅଛିଦ୍ର ଥାଇ ପରର ଛିଦ୍ରାନ୍ୱେଷଣ ପୂର୍ବକ ସେ ଛିଦ୍ରର ଅନୁଗାମୀ ହେବେ । ୬ । ଯେଉଁ ରାଜା ନିତ୍ୟ ଉଦ୍ୟତ-ଦଣ୍ଡ ହୁଅନ୍ତି ତାହାଙ୍କୁ ଲୋକେ ଭୟ କରନ୍ତି; ଅତଏବ ସକଳ କର୍ମ ଦଣ୍ଡ ଦ୍ୱାରା ସମ୍ପନ୍ନ କରିବ । ରାଜା ଶତ୍ରୁଙ୍କର ଛିଦ୍ରାନୁଗାମୀ ହେବେ, କିନ୍ତୁ ଶତ୍ରୁଗଣ ଯେପରି ତଦୀୟ ଛିଦ୍ର ଦେଖି ନ ପାରନ୍ତି ତନ୍ନିମିତ୍ତ କୂର୍ମ

---

* ଗୁଣରେ ଦୋଷାରୋପକୁ ଅସୂୟା ବୋଲନ୍ତି ।

ସଦ୍ଗୁଣ ସ୍ୱୀୟ ଅଙ୍ଗକୁ ଗୋପନ କରି ରଖିବେ । ୮ । କୌଣସି କର୍ମ ଆରମ୍ଭ କରି ତାହାକୁ ସମ୍ୟକ୍ ରୂପେ ନିଷ୍ପନ୍ନ ନ କରି ନିବୃତ୍ତ ହେବ ନାହିଁ, ଗୋଟିଏ କଣ୍ଟକକୁ ସୁଦ୍ଧା ଯେବେ ସମ୍ପୂର୍ଣ୍ଣ ରୂପେ ଛେଦନ ନ କରିବ ତେବେ ତାହା ଦ୍ୱାରା ମଧ୍ୟ ଏପରି ବ୍ରଣ ହୋଇପାରେ ଯାହାର କି ଚିର-କାଳରେ ଉପଶମ ହେବ ନାହିଁ । ୯ ।

ଅପକାରୀ ଶତ୍ରୁମାନଙ୍କର ବଧ ପ୍ରଶଂସନୀୟ ଅଟେ । ସେହି ଶତ୍ରୁ ଯେବେ ସମ୍ୟକ୍ ବିକ୍ରମଶାଳୀ ଓ ଯୁଦ୍ଧଶୀଳ ହୁଏ, ତେବେ ଆପତ୍କାଳରେ ତାହାର ବିନାଶ କରିବ ଅଥବା ଯହିଁରେ ସେ ପଳାଇଯାଏ ତାହାର ଉପାୟ କରିବ ଏ ବିଷୟରେ ବିଚାର କରିବ ନାହିଁ । ୧୦ । ହେ ତାତ ! ରିପୁ ଦୁର୍ବଳ ହେଲେହେଁ ତାହାକୁ ଅବଜ୍ଞା କରିବ ନାହିଁ; କିଞ୍ଚିନ୍ମାତ୍ର ଅଗ୍ନି କ୍ରମଶଃ ପ୍ରଶ୍ରୟ ପ୍ରାପ୍ତହୋଇ ସମସ୍ତ ବନକୁ ଦହନ କରଇ । ୧୧ । ସମୟ ବିଶେଷରେ ରାଜା ଅନ୍ଧ ଓ ବଧିର ପ୍ରାୟ ଆଚରଣ କରିବେ; ଅର୍ଥାତ୍ ଶତ୍ରୁମାନଙ୍କର ଦୋଷଦେଖି ସୁଦ୍ଧା ନ ଦେଖିଲା ପ୍ରାୟ ହେବେ ଓ ଶୁଣି ସୁଦ୍ଧା ନ ଶୁଣିଲା ପ୍ରାୟ ହେବେ । ସ୍ୱୀୟ କୋଦଣ୍ଡକୁ ତୃଣପ୍ରାୟ ନିଷ୍ପ୍ରୟୋଜନ ଜ୍ଞାନ କରିବେ; କିନ୍ତୁ ଅରଣ୍ୟ-ଶାୟୀ-ମୃଗ-ଯୂଥ ଯେପରି ସତର୍କ ହୋଇ ସମସ୍ତେ ବହିର୍ଭାଗକୁ ମୁଖକରି ଓ ଏକଦିଗକୁ ପଶ୍ଚାଦ୍ଭାଗ କରି ଚକ୍ରାକାର ହୋଇ ଶୟନ କରିଥାନ୍ତି ତଦ୍ବତ୍ ସର୍ବଦା ସତର୍କ ହୋଇ ରହିବେ । ୧୨ । ଯେତେବେଳେ ଶତ୍ରୁକୁ ଆପଣାର ଆୟତ୍ତ ଜ୍ଞାନ କରିବେ ତେତେବେଳେ ସାମଦାନ ପ୍ରଭୃତି ଯେ କୌଣସି ଉପାୟ ଦ୍ୱାରା ହେଉ ବଧ କରିବେ; ଶରଣାଗତ ବୋଲି ତାହାଙ୍କ ପ୍ରତି ଦୟାକରିବା ବିଧେୟ ନୁହଇ । ୧୩ ।

ଯେଉଁ ବ୍ୟକ୍ତି ପୂର୍ବେ ଅପକାର କରିଅଛି ତାହାକୁ ଦାନରେ ବଶୀଭୂତ କରି ସୁଦ୍ଧା ନଷ୍ଟକରିବ । ଶତ୍ରୁ ହତ ହେଲେ ରାଜା ନିରୁଦ୍ବିଗ୍ନ ଓ ଭୟଶୂନ୍ୟ ହୁଅନ୍ତି । ୧୪ । ଶତ୍ରୁ ପକ୍ଷର ତ୍ରିବିଧ, ପଞ୍ଚବିଧ ଓ ସପ୍ତବିଧ ସମସ୍ତ *ସମ୍ପତ୍ତିକୁ ନଷ୍ଟ କରିବ । ପରପକ୍ଷର ମୂଳକୁ ସୁଦ୍ଧା ସର୍ବ ସମୟରେ

* ଐଶ୍ୱର୍ଯ୍ୟ, ମନ୍ତ୍ର ଓ ଉତ୍ସାହ—ଏ ତ୍ରିବିଧ, ସହାୟ, ସାଧନ, ଉପାୟ, ଦେଶ ଓ କାଳ ବିଭାଗ, ଏ ବିପତ୍ତିର ପ୍ରତିକାର—ଏହି ପଞ୍ଚବିଧ, ନୟ, ଭେଦ, ଦମସାମ, ଦାନ, ମାୟା, ଐନ୍ଦ୍ରଜାଲିକ କାର୍ଯ୍ୟ ଓ ବିପକ୍ଷର ଅନୁଷ୍ଠିତ ଏହି ସବୁ ବିଷୟର ଉପେକ୍ଷା—ଏହି ସପ୍ତବିଧ ସମ୍ପତ୍ତି ।

ଓ ସର୍ବପ୍ରକାରେ ଛେଦନ କରିବ; ତଦୀୟ ସହାୟ ଓ ପକ୍ଷମାନଙ୍କୁ ବିନାଶ କରିବ; ମୂଳ ଅଧିଷ୍ଠାନ ଛିନ୍ନ ହେଲେ, ତଦୁପଜୀବୀ ସମସ୍ତେ ସୁତରାଂ ହତ ହେବେ; ବନସ୍ପତିର ମୂଳ ଛିନ୍ନ ହେଲେ ଶାଖାସବୁ କିପରି ରହିବ ? । ୧୬ । ହେ ରାଜନ୍ । ଶତ୍ରୁଙ୍କଠାରେ ନିଶ୍ଚିନ୍ତ ନ ରହି ଗୋପନ ଭାବରେ ସର୍ବଦା ତାହାଙ୍କର ଛିଦ୍ରାନୁସନ୍ଧାନରେ ଏକାଗ୍ର ହୋଇ ରାଜ୍ୟ କରିବ । ୧୭ । ଅଗ୍ନ୍ୟାଧାନ, ଯଜ୍ଞର ଅନୁଷ୍ଠାନ ଓ କାଷାୟ ବସନ ଜଟା ଓ ଅଜିନ ଧାରଣକରି ସୁଦ୍ଧା ଅଗ୍ରେ ବିଶ୍ୱାସ ଜନ୍ମାଇ ପରେ ଅବସର ପାଇଲେ ବୃକ ପ୍ରାୟ ଆକ୍ରମଣ କରିବ । ୧୮ । କଥିତ ଅଛି ଯେ ଅର୍ଥ ସଞ୍ଚୟ ବିଷୟରେ ବିଶୁଦ୍ଧତା ଗୋଟିଏ ପ୍ରତିବନ୍ଧକ; ଯେପରି ଫଳିତ ଶାଖାକୁ ନତ କରି ତହିଁରୁ ପକ୍ୱ ଫଳମାନ ବାଛି ବାଛି ଗ୍ରହଣ କରିବାକୁ ହୁଅଇ ସେହିପରି ବାଛି ବାଛି ଶତ୍ରୁ ବିନାଶ କରିବ । ପଣ୍ଡିତମାନେ ଶତ୍ରୁ ବିନାଶ ନିମିତ୍ତ ଏହିପରି ସମାରମ୍ଭ କରନ୍ତି । ୧୯ । ଯାବତ୍ କାଳ ଉପସ୍ଥିତ ହୋଇନଥିବ, ତାବତ୍ ଶତ୍ରୁଙ୍କୁ ସ୍କନ୍ଧରେ ବହନ କରିଥିବ, ତତ୍ପରେ କାଳ ସମାଗତ ହେଲେ ପ୍ରସ୍ତରରେ ମୃଦ୍‌ଘଟକୁ କଚାଡ଼ିଦେଲା ପ୍ରାୟ ଶତ୍ରୁକୁ ଏକାବେଳେକେ ବିନାଶ କରିବ । ୨୦ । ଅପକାରୀ ଅମିତ୍ରର କାତରୋକ୍ତି ଶ୍ରବଣ କରି ତାହାକୁ ବିମୋଚନ କରିବନାହିଁ କି ତାହାପ୍ରତି କୃପା କରିବ ନାହିଁ । ୨୧ । ଅମିତ୍ରଙ୍କୁ ସାମଦାନ ଦଣ୍ଡ, ଭେଦ ଦ୍ୱାରା ଅଥବା ସର୍ବପ୍ରକାର ଉପାୟ ଦ୍ୱାରା ବିନଷ୍ଟ କରିବ । ୨୨ ।

ଧୃତରାଷ୍ଟ୍ର ପଚାରିଲେ—ସାମ, ଦାନ, ଦଣ୍ଡ ଓ ଭେଦ ଦ୍ୱାରା କି ପ୍ରକାର ଶତ୍ରୁଙ୍କୁ ବିନାଶ କରିବାକୁ ହେବ ? ତାହା ଆମ୍ଭଙ୍କୁ ବିସ୍ତାର କରି କହ । ୨୩ ।

କଣିକ କହିଲେ—ହେ ରାଜନ୍ । ପୂର୍ବକାଳରେ ନୀତିଶାସ୍ତ୍ରାର୍ଥଦର୍ଶୀ ଜମ୍ବୁକ ବନରେ ବାସ କରୁଥିଲା; ହେ ମହାରାଜ । ସେ ଶୃଗାଳର ବୃତ୍ତାନ୍ତ ବର୍ଣ୍ଣନ କରୁଅଛୁଁ, ଶୁଣ । ୨୪ । ବ୍ୟାଘ୍ର, ମୂଷିକ, ବୃକ ଓ ନକୁଳ ଏହି ଚାରି ସଖାଙ୍କୁ ଘେନି ସେହି କୃତପ୍ରଜ୍ଞ ଓ ସ୍ୱାର୍ଥ ପଣ୍ଡିତ ଶୃଗାଳ ବନରେ ବାସ କରୁଥିଲା । ୨୫ । ସେମାନେ ସେହି ବନ ମଧ୍ୟରେ ଗୋଟିଏ ବଳବାନ୍-ମୃଗ-ଯୂଥ-ପତିଙ୍କୁ ଦେଖି ଓ ତାହାଙ୍କୁ ଗ୍ରହଣ କରି ନପାରି ପରସ୍ପର ମନ୍ତ୍ରଣା କଲେ । ୨୬ ।

ଜମ୍ବୁକ କହିଲା—ହେ ବ୍ୟାଘ୍ର ! ତୁମ୍ଭେ ଏହି ମୃଗକୁ ବଧ କରିବା ନିମିତ୍ତ ଅନେକ ଯତ୍ନ କଲ; କିନ୍ତୁ ସେ ମୃଗପତି ଯୁବା, ଅତିଶୟ ବେଗସମ୍ପନ୍ନ ଓ ବୁଦ୍ଧିଶାଳୀ ଥିବାରୁ ତୁମ୍ଭେ କୃତକାର୍ଯ୍ୟ ହୋଇ ପାରିଲନାହିଁ; ଅତଏବ ଆମ୍ଭେ ବିବେଚନା କରୁଁ ଯେ ଏହି ମୃଗ ଯେତେବେଳେ ଶୟନ କରିଥିବ ତେତେବେଳେ ମୂଷିକ ଯାଇ ତାହାର ଚରଣ ଦ୍ୱୟକୁ ଦଂଶନ କରୁ, ତଦନନ୍ତର ଆମ୍ଭେମାନେ ସମସ୍ତେ ମୁଦିତ ମାନସରେ ତାହାକୁ ଭକ୍ଷଣ କରିବା । ୨୮ ।

ଜମ୍ବୁକର ସେହି ପରାମର୍ଶାନୁସାରେ ସମସ୍ତେ ସମାହିତ ହୋଇ କାର୍ଯ୍ୟକଲେ, ମୂଷିକ ସେ ମୃଗର ପାଦକୁ ଭକ୍ଷଣ କରନ୍ତେ ବ୍ୟାଘ୍ର ତାହାକୁ ବଧ କଲା । ୨୯ । ଜମ୍ବୁକ ଦେଖିଲା ଯେ ସେହି ମୃଗର କଲେବର ଭୂମିରେ ଲୁଣ୍ଠିତ ହେଉଅଛି, ତହୁଁ ସେ କହିଲା—ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେମାନେ ସ୍ନାନକରି ଆସ, ଆମ୍ଭେ ମୃଗ ଶରୀରକୁ ଜଗି ବସିଅଛୁଁ । ବ୍ୟାଘ୍ର ପ୍ରଭୃତି ସମସ୍ତେ ଶୃଗାଳର ବାକ୍ୟାନୁସାରେ ନଦୀକୁ ସ୍ନାନ କରିବାକୁ ଗମନ କଲେ; ଶୃଗାଳ ଅତିଶୟ ଚିନ୍ତାନ୍ୱିତ ହୋଇ ସେ ସ୍ଥାନରେ ଅବସ୍ଥିତ କଲା । ୩୧ । ମହାବଳ ବ୍ୟାଘ୍ର ସ୍ନାନସାରି ଅଗ୍ରେ ସେ ସ୍ଥାନକୁ ଆଗମନ କରି ଜମ୍ବୁକକୁ ଚିନ୍ତାକୁଳିତ ମାନସ ଥିବାର ଦେଖିଲା । ୩୨ ।

ବ୍ୟାଘ୍ର କହିଲା—ହେ ମହାପ୍ରାଜ୍ଞ ! ତୁମ୍ଭେ କି ନିମିତ୍ତ ଶୋଚନା କରୁଅଛ ? ତୁମ୍ଭେ ଆମ୍ଭମାନଙ୍କ ମଧ୍ୟରେ ବୁଦ୍ଧିଶାଳୀଙ୍କ ଶ୍ରେଷ୍ଠ ଅଟ । ଅଦ୍ୟ ଆମ୍ଭେମାନେ ମାଂସ ଭକ୍ଷଣ କରି ସୁଖରେ ପର୍ଯ୍ୟଟନ କରିବା । ୩୩ ।

ଜମ୍ବୁକ କହିଲା—ହେ ମହାବାହୋ ! ମୂଷିକ ଯାହା କହିଲା ସେ ବାକ୍ୟ ମୋ ଠାରୁ ଶୁଣ । "ବ୍ୟାଘ୍ରରାଜର ବଳକୁ ଧିକ୍, ଆମ୍ଭ ଦ୍ୱାରା ଅଦ୍ୟ ମୃଗ ହତ ହୋଇଅଛି, ଆମ୍ଭର ବାହୁବଳକୁ ଆଶ୍ରୟ କରି ସେ ଅଦ୍ୟ ତୃପ୍ତିଲାଭ କରିବେ ।" ମୂଷିକର ଏପରି ଅହଂକାର ବାକ୍ୟ ଶ୍ରବଣ କରି ଆମ୍ଭର ଏହାକୁ ଭକ୍ଷଣ କରିବାକୁ ଇଚ୍ଛା ହେଉନାହିଁ । ୩୪ ।

ବ୍ୟାଘ୍ର କହିଲା—ହେଉ, ଅଦ୍ୟ ଆମ୍ଭେ ଚେତନା ପାଇଲୁଁ । ମୂଷିକ ଯଦି ଆକ୍ଷେପ କରି ଆମ୍ଭଙ୍କୁ ଏପରି କହିଲା, ତେବେ ଅଦ୍ୟାବଧି ଆମ୍ଭେ ନିଜ ବାହୁବଳ ଦ୍ୱାରା ବନଚର ମାନଙ୍କୁ ବଧକରି ସେମାନଙ୍କର ମାଂସ ଭକ୍ଷଣ କରିବୁଁ ।

ଏହାକହି ବ୍ୟାଘ୍ର ବନକୁ ପ୍ରସ୍ଥାନ କଲା । ୩୭ । ଏହି ଅବସରରେ ମୂଷିକ ସେଠାକୁ ଆସିବାର ଦେଖି ଶୃଗାଳ ଏହି ବଚନ ମୂଷିକକୁ କହିଲା ।

ଜମ୍ବୁକ କହିଲା, ହେ ମୂଷିକ ! ତୁମ୍ଭର ମଙ୍ଗଳ ହେଉ; ଶୁଣ, ନକୁଳ ଯାହା କହିଲା—"ଆମ୍ଭେ ମୃଗ ମାଂସ ଭକ୍ଷଣ କରିବୁଁ ନାହିଁ, ଏହାକୁ ବ୍ୟାଘ୍ର ମାରିଥିବାରୁ ଏ ମାଂସ ବିଷାକ୍ତ ହୋଇଅଛି, ଆମ୍ଭଙ୍କୁ ରୁଚିବ ନାହିଁ । ୩୮ । ଆମ୍ଭେ ମୂଷିକକୁ ଭକ୍ଷଣ କରିବୁଁ, ଅତଏବ ଆପଣ ଆମ୍ଭଙ୍କୁ ଅନୁମତି ଦିଅ ।"

ଏହି ବଚନ ଶ୍ରବଣ କରି ମୂଷିକ ସନ୍ତ୍ରସ୍ତ ହୋଇ ବିଳରେ ପ୍ରବିଷ୍ଟ ହେଲା । ୩୯ । ତତ୍ପରେ ହେ ନୃପ ! ବୃକ ସ୍ନାନ କରି ଆସନ୍ତେ, ତାହାକୁ ଜମ୍ବୁକ କହିଲା, "ବ୍ୟାଘ୍ର ତୁମ୍ଭ ପ୍ରତି କ୍ରୁଦ୍ଧ ହୋଇଅଛନ୍ତି, ତୁମ୍ଭର ମଙ୍ଗଳ ହେବନାହିଁ । ସେ କଳତ୍ର ସହିତ ଏଠାକୁ ଆସୁଅଛନ୍ତି, ଏବେ ଯାହା କର୍ତ୍ତବ୍ୟ ତାହା କର" । ୪୧ । ପିଶିତାସନ ବୃକ ଜମ୍ବୁକର ସେହି ବଚନ ଶ୍ରବଣ କରି ଗାତ୍ରସଙ୍କୋଚ କରି ଲୁଚି ପଳାଇଲା । ୪୨ । ହେ ମହାରାଜ ! ନକୁଳ ମଧ୍ୟ ସେହି ସମୟରେ ସେଠାକୁ ଆସନ୍ତେ ଜମ୍ବୁକ ତାହାକୁ ବୋଇଲେ, "ଆମ୍ଭେ ସ୍ୱୀୟ ବଳକୁ ଆଶ୍ରୟ କରି ବ୍ୟାଘ୍ର ବୃକ ପ୍ରଭୃତିଙ୍କୁ ପରାଜିତ କଲୁଁ, ସେମାନେ ସ୍ଥାନାନ୍ତର ପଳାୟନ କଲେ, ଏବେ ତୁମ୍ଭେ ଆମ୍ଭ ସହିତ ଯୁଦ୍ଧ କରି ଅଭିଳଷିତ ମାଂସ ଭକ୍ଷଣ କର । ୪୪ ।

ନକୁଳ କହିଲା—"ମୃଗରାଜ, ବୃକ ଓ ବୁଦ୍ଧିମାନ୍ ମୂଷିକ ସମସ୍ତେ ବୀର, ସେମାନେ ତୁମ୍ଭଠାରୁ ସମସ୍ତେ ପରାସ୍ତ ହୋଇଅଛନ୍ତି, ସୁତରାଂ ତୁମ୍ଭେ ମହାବୀର, ତୁମ୍ଭ ସହ ଯୁଦ୍ଧ କରିବାକୁ ଆମ୍ଭର ସାହସ ହେଉ-ନାହିଁ" । ୪୫ ।

କଣିକ ବୋଇଲେ—ଏହି ପ୍ରକାରେ ସେମାନେ ସମସ୍ତେ ଗମନ କରନ୍ତେ ଜମ୍ବୁକ ସ୍ୱୀୟ ମନ୍ତ୍ରଣା ସଫଳ ହେବାରୁ ହୃଷ୍ଟମାନସ ହୋଇ ଏକାକୀ ସେ ମୃଗ ମାଂସକୁ ଭକ୍ଷଣ କଲା । ୪୬ । ଭୟାର୍ତ୍ତ ବ୍ୟକ୍ତିକୁ ଭୟ ପ୍ରଦର୍ଶନ କରି, ଶୂରକୁ କୃତାଞ୍ଜଳି ହୋଇ, ଲୁବ୍ଧକୁ ଅର୍ଥ

ପ୍ରଦାନ ଦ୍ୱାରା ଓ ସମାନ ଏବଂ ନ୍ୟୁନକୁ ତେଜଃ ଦ୍ୱାରା ବଶୀଭୂତ କରିବ । ୪୭ । ହେ ରାଜନ୍ ! ଆପଣଙ୍କ ନିକଟରେ ଏହି ସମସ୍ତ ନିବେଦନ କଲି । ଆହୁରି କିଛି କହୁଛି, ଶ୍ରବଣ କରନ୍ତୁ । ପୁତ୍ର, ସଖା, ଭ୍ରାତା, ପିତା ଅଥବା ଗୁରୁ, ଯଦ୍ୟପି ଶତ୍ରୁତା କରନ୍ତି ତେବେ ସେମାନଙ୍କୁ ମଧ୍ୟ ବଧ କରିବା ଐଶ୍ୱର୍ଯ୍ୟାର୍ଥୀ ବ୍ୟକ୍ତିର କର୍ତ୍ତବ୍ୟ ଅଟଇ । । ୪୮ । ଶପଥ କରି, ଅଥବା ଅର୍ଥଦାନ ଦ୍ୱାରା କିମ୍ବା ବିଷ ପ୍ରୟୋଗ କି କପଟତାଚରଣ କରି ଶତ୍ରୁଙ୍କୁ ବିନାଶ କରିବ, କଦାପି ଉପେକ୍ଷା କରିବାର ନୁହଇ । ଉଭୟ ପକ୍ଷ ଯେବେ ତୁଲ୍ୟ ଉପାୟ ଅବଲମ୍ବନ କରନ୍ତି, ତେବେ ଆତ୍ମ ଉନ୍ନତିରେ ଯାହାଙ୍କର ଆଦର ସେ ବର୍ଦ୍ଧିତ ହେବେ । ୪୯ । ଗୁରୁ ଯଦି କାର୍ଯ୍ୟାକାର୍ଯ୍ୟ ବିବେକରେ ଅଜ୍ଞ, ଅହଂକୃତ ଓ କୁପଥଗାମୀ ହୁଅନ୍ତି ତେବେ ତାହାଙ୍କୁ ସୁଦ୍ଧା ଶାସନ କରିବା ନ୍ୟାୟସଙ୍ଗତ । ୫୦ । କ୍ରୁଦ୍ଧ ହେଲେହେଁ ଅକ୍ରୁଦ୍ଧ ସଦୃଶ ଆକାର ପ୍ରକାଶ କରି ଈଷତ୍ ହାସ୍ୟ ପ୍ରକାଶ ପୂର୍ବକ ବାକ୍ୟ ବିନ୍ୟାସ କରିବ ଓ କୋପ ସଂଯୁକ୍ତ ହେଲେହେଁ କାହାରିକୁ ଅପଧ୍ୱଂସ କରିବ ନାହିଁ । ୫୧ ।

ପ୍ରହାର କରିବା ପୂର୍ବରୁ ଓ ପ୍ରହାର କରିବା ମଧ୍ୟରେ ମଧ୍ୟ ପ୍ରିୟ ବାକ୍ୟ କହିବ; ପ୍ରହାର କରିସାରି ଶେଷରେ କୃପା ବାକ୍ୟ କହିବ, ଶୋକ କରିବ ଓ ରୋଦନ ମଧ୍ୟ କରିବ । ୫୨ । ଶତ୍ରୁଙ୍କୁ ବହୁକାଳ ସାନ୍ତ୍ୱନା ବାକ୍ୟ, ଦାନ ଓ ସରଳ ବୃତ୍ତି ଦ୍ୱାରା ଆଶ୍ୱାସିତ କରିବ, ଯେତେବେଳେ ସେ ନିଜ ମତରୁ ବିଚଳିତ ହେବେ, ତେତେବେଳେ ତାହାଙ୍କୁ ପ୍ରହାର କରିବ । ୫୩ । ଘୋରତର ଅପରାଧକାରୀ ବ୍ୟକ୍ତି ମଧ୍ୟ ଧର୍ମକୁ ଆଶ୍ରୟ କଲେହେଁ କୃଷ୍ଣବର୍ଣ୍ଣ ମେଘ ଦ୍ୱାରା ଶୈଳ ଯେପରି ଆଚ୍ଛାଦିତ ହୁଅଇ ତଦ୍‌ବତ୍ ତାହାର ଦୋଷ ପ୍ରଚ୍ଛାଦିତ ହୁଅଇ । ୫୪ । ଯେଉଁ ବ୍ୟକ୍ତି ବଧ ଦଣ୍ଡ ପ୍ରାପ୍ତ ହେବ, ତାହାର ଗୃହକୁ ମଧ୍ୟ ଅଗ୍ନି ଦ୍ୱାରା ପ୍ରଦୀପିତ କରିବ । ଯେଉଁମାନେ ଅଧନ, ନାସ୍ତିକ, ଚୌର ଓ ମନ୍ଦବୃତ୍ତି ଦ୍ୱାରା ଧନୋପାର୍ଜ୍ଜନ କରନ୍ତି ସେମାନଙ୍କୁ ନିଜ ରାଜ୍ୟରେ କଦାପି ସ୍ଥାନ ଦେବ ନାହିଁ । ୫୫ । ଶତ୍ରୁଙ୍କୁ ଦେଖି ପ୍ରତ୍ୟୁତ୍‌ଥାନ ଓ ଅଭିବାଦନ ଦାନ ଦ୍ୱାରା ଯେ କୌଣସି ପ୍ରକାରେ ହେଉ ତାହାକୁ ବିଶ୍ୱାସ ଜନ୍ମାଇ ଅତି ନିର୍ମ୍ମମ ଭାବରେ ନିଷ୍ଠୁରତାର ଚରମ କୌଶଳ ପ୍ରୟୋଗ କରି ତାହାକୁ ଏପରି ବଧ କରିବ, ଯେପରି ସେ ଆଉ ମଥା ଟେକି ନ ପାରିବ। ଐଶ୍ୱର୍ଯ୍ୟକାମୀର ଏହା ଅବଶ୍ୟ କରିବାର ବିହିତ ଅଟଇ । ୫୬ ।

ଯାହାଙ୍କର ଠାରେ ଶଙ୍କା ଅଛି, ତାହାଙ୍କ ଠାରୁ ସର୍ବପ୍ରକାରେ ଶଙ୍କାକୁ ଯେପ୍ରକାରେ ହେଉ ସାବଧାନ ହେବେ । ଯାହାଙ୍କ ଠାରୁ ଶଙ୍କାର କୌଣସି କାରଣ ନ ଥିବ ତାହାଙ୍କୁ ମଧ୍ୟ ଶଙ୍କା କରିବ, କାରଣ ଏପରି ଦେଖାଯାଇଅଛି ଯେ ଯେଉଁଠାରେ ଶଙ୍କାର କାରଣ ନାହିଁ ସେହିଠାରୁ ଭୟ ଉତ୍ପନ୍ନ ହୋଇ ସମୂଳରେ ବିନାଶ ହୋଇଅଛି । ୫୭ ।

ଅବିଶ୍ୱାସୀକୁ କଦାପି ବିଶ୍ୱାସ କରିବ ନାହିଁ, ବିଶ୍ୱାସୀକୁ ମଧ୍ୟ ଅତିଶୟ ବିଶ୍ୱାସ କରିବ ନାହିଁ; ଯେ ହେତୁରୁ ବିଶ୍ୱାସୀଠାରୁ ଭୟ ଉତ୍ପନ୍ନ ହୋଇ ମୂଳରୁ ବିନାଶ କରିବାର ଦେଖାଅଛି । ୫୮ । ଗୁରଗଣଙ୍କୁ ମଧ୍ୟ ଉତ୍ତମ ରୂପେ ପରୀକ୍ଷା କରି ସ୍ୱରାଷ୍ଟ୍ରରେ ଓ ପରରାଷ୍ଟ୍ରରେ ମଧ୍ୟ ନିଯୁକ୍ତ ରଖିବ । ପର ରାଷ୍ଟ୍ରରେ ପାଷଣ୍ଡ ଓ ତାପସ ପ୍ରଭୃତିଙ୍କୁ ଗୁର ନିଯୁକ୍ତ କରିବ । ୫୯ । ଉଦ୍ୟାନରେ, ବିହାର ସ୍ଥାନରେ, ଦେବାୟତନରେ, ପାନାଳୟରେ, ପଥ ବିଶେଷରେ ଓ ସମସ୍ତ ତୀର୍ଥରେ * ଯାଗସ୍ଥାନରେ, କୂପରେ, ପର୍ବତରେ, ବନରେ, ନଦୀରେ ଓ ସର୍ବପ୍ରକାର ଜନତାସ୍ଥଳରେ ନିଯୋଜିତ କରି କାର୍ଯ୍ୟାକାର୍ଯ୍ୟ ଦର୍ଶନ କରିବ । ୬୦ । ସର୍ବଦା ବାକ୍ୟରେ ବିନୟୀ ଅଥଚ ହୃଦୟରେ କ୍ଷୁର ସଦୃଶ ହେବ; ରୌଦ୍ରକର୍ମ କରିବାକୁ ପ୍ରବୃତ୍ତ ହୋଇ ମନ୍ଦହାସ ପୂର୍ବକ ସମ୍ଭାଷଣ କରିବ । ୬୧ । ଯେଉଁ ବ୍ୟକ୍ତିଙ୍କର ଐଶ୍ୱର୍ଯ୍ୟ ଆକାଂକ୍ଷା ଥିବ ତାହାଙ୍କର ଅଞ୍ଜଳି, ଶପଥ, ସାନ୍ତ୍ୱନା, ମସ୍ତକ ଦ୍ୱାରା ପାଦ ବନ୍ଦନ ଓ ଆଶାଦାନ ପ୍ରଭୃତି କର୍ମ କରିବା କର୍ତ୍ତବ୍ୟ । ୬୨ ।

ନୀତିପରାୟଣ ବ୍ୟକ୍ତି ଆଶାଦାନାଦି ରୂପ ସୁନ୍ଦର ପୁଷ୍ପଯୁକ୍ତ ହେବେ ଅଥଚ ନିଷ୍ଫଳ ହେବେ; ଫଳବାନ୍ ସ୍ୱରୂପ ପ୍ରତୀୟମାନ ହେଲେ ସୁଦ୍ଧା ଦୁରାରୋହଣୀୟ ହେବେ । ପକ୍ୱ ହୋଇ ଆମ୍ର ( କଞ୍ଚା ) ବତ୍ ବ୍ୟବହାର କରିବେ । ପକ୍ୱପ୍ରାୟ ହୋଇ ଦୁଷ୍ପଚ ହେବେ; କଦାପି ଜୀର୍ଣ୍ଣ † ହେବେ ନାହିଁ । ୬୩ ।

---

* ତୀର୍ଥ ଶବ୍ଦରେ ସାଧାରଣ ଯେଉଁ ଅର୍ଥ ବୁଝାଏ ତାହା ମଧ୍ୟ ଏଠାରେ ସମ୍ଭବପର, ପରନ୍ତୁ ଟୀକାକାର—ମନ୍ତ୍ରୀ, ପୁରୋହିତ, ଯୁବରାଜ ଭୂପାଳ, ଦ୍ୱାରପାଳ, ଶିକ୍ଷକ, କାରାଗାର ରକ୍ଷକ, ଦ୍ରବ୍ୟ ସଞ୍ଚୟକାରୀ, କାର୍ଯ୍ୟାକାର୍ଯ୍ୟର ନିଯୋକ୍ତା ନଗରାଧ୍ୟକ୍ଷ, କାର୍ଯ୍ୟନିର୍ମାତା, ଧର୍ମାଧ୍ୟକ୍ଷ, ସଭାଧ୍ୟକ୍ଷ, ଦଣ୍ଡପାଳ, ଦୁର୍ଗପାଳ, ଅର୍ଥପାଳ, ରାଷ୍ଟ୍ରର ସୀମାପାଳକ ଓ ଅଷ୍ଟାଦଶ ତୀର୍ଥ ବୋଲି ସ୍ୱୀକାର କରନ୍ତି ।

† କାହାର ବଶୀଭୂତ ହେବେ ନାହିଁ ।

ତ୍ରିବର୍ଗରେ † ତ୍ରିବିଧ ପୀଡ଼ା ଓ ତ୍ରିବିଧ ଫଳ ଅଛି । ତନ୍ମଧ୍ୟରୁ ଫଳମାନଙ୍କୁ ହିତକର ଜାଣିବ ଓ ପୀଡ଼ାକୁ ପରିବର୍ଜିତ କରିବ । ୬୪ । ଧର୍ମ୍ମାନୁଷ୍ଠାନରେ ଅତ୍ୟନ୍ତ ନିରତ ବ୍ୟକ୍ତିଙ୍କୁ ଅର୍ଥ ପୀଡ଼ାରେ ଓ କାମ ପୀଡ଼ାରେ ନିଗୃହୀତ କରିବ; ଅର୍ଥରେ ଅତ୍ୟନ୍ତ ଅସକ୍ତ ବ୍ୟକ୍ତି ଧର୍ମ୍ମପୀଡ଼ାରେ ଓ କାମପୀଡ଼ାରେ ପୀଡ଼ିତ ହୁଅଇ ଓ କାମାଚରଣରେ ଅତିଶୟ ରତ ବ୍ୟକ୍ତିଙ୍କୁ ଧର୍ମ୍ମପୀଡ଼ା ଓ କାମପୀଡ଼ା ନିଗୃହୀତ କରଇ । ଅତଏବ ଯହିଁରେ ପୀଡ଼ାଜନକ ନ ହୁଏ ଏ ରୂପ ଧର୍ମ୍ମାର୍ଥ କାମର ଅନୁଷ୍ଠାନ କରିବ । ୬୫ । ଅହଙ୍କାର-ଶୂନ୍ୟ, ବିନୟୋପପେତ, ସାନ୍ତ୍ୱନାଯୁକ୍ତ, ଅସୂୟା ରହିତ, କାର୍ଯ୍ୟଦର୍ଶୀ ଓ ଶୁଦ୍ଧାତ୍ମା ହୋଇ ବ୍ରାହ୍ମଣମାନଙ୍କ ସହ ମନ୍ତ୍ରଣା କରିବ । ୬୬ । ମୃଦୁଭାବରେ ବା ଦାରୁଣ ଭାବରେ ଯେ କୌଣସି ପ୍ରକାରେ ହେଉ ଆପଣାକୁ ଦୀନାବସ୍ଥାରୁ ଉଦ୍ଧାର କରିବ; ସମର୍ଥ ହେଲେ ଧର୍ମ୍ମାଚରଣ କରିବ । ୬୭ । କିନ୍ତୁ ସଂଶୟାପନ୍ନ ହୋଇ ଯେବେ ଜୀବିତ ଥାଏ ତେବେ ଉତ୍ତମ ସୌଭାଗ୍ୟଶାଳୀ ହୋଇ ପାରେ । ୬୮ ।

ଯାହାଙ୍କର ବୁଦ୍ଧି ଶୋକାଦି ଦ୍ୱାରା ପରିଭୂତ ହୋଇଥାଏ ତାହାଙ୍କୁ ନଳୋପାଖ୍ୟାନ ପ୍ରଭୃତି ଅତୀତ ବୃତ୍ତାନ୍ତ ଶ୍ରବଣ କରାଇ ସାନ୍ତ୍ୱନା ପ୍ରଦାନ କରିବ; ଦୁର୍ବୁଦ୍ଧି ବ୍ୟକ୍ତିକୁ କାଳାନ୍ତରରେ ତାହାର ମଙ୍ଗଳ ହେବ ଇତ୍ୟାଦି ସାନ୍ତ୍ୱନା ପ୍ରଦାନ କରି ଆଶା ଦର୍ଶନ ଦ୍ୱାରା ପ୍ରବୋଧ ଦେବ ଓ ପଣ୍ଡିତ ମାନଙ୍କୁ ପ୍ରତ୍ୟୁତ୍ପନ୍ନ କାର୍ଯ୍ୟ ଦ୍ୱାରା ଅର୍ଥାତ୍ ଧନାଦି ଦାନ ଦ୍ୱାରା ସାନ୍ତ୍ୱନା ଦାନ କରିବ । ୬୯ । ଯେଉଁ ବ୍ୟକ୍ତି ଶତ୍ରୁ ସହିତ ସନ୍ଧି କରି କୃତକୃତ୍ୟ ହେଲି ପ୍ରାୟ ନିଶ୍ଚିନ୍ତ ହୋଇରହେ ସେ ବୃକ୍ଷାଗ୍ରରେ ଶୟନ କରି ପତିତ ହେବା ପରେ ପ୍ରତିବୁଦ୍ଧ ହୁଅଇ । ୭୦ । ରାଜା ଅସୂୟା-ଶୂନ୍ୟ ହୋଇ ନିରନ୍ତର ମନ୍ତ୍ର ସଂଗୋପନରେ ଯତ୍ନବାନ୍ ହେବେ ଓ ସ୍ୱୟଂ ଚାରଚକ୍ଷୁ ହୋଇ ବିପକ୍ଷ ପ୍ରେରିତ ଚାରଙ୍କର ଆଶଙ୍କାରେ ସର୍ବଦା ଭୟ କୋଧାଦିର ଆକାର ସମ୍ବରଣ କରିବେ । ୭୧ । ମତ୍ସ୍ୟଘାତୀ ଯେପରି ହିଂସା ନ କରି ଶ୍ରୀ ସମ୍ପନ୍ନ ହୋଇ ନ ପାରେ ତଦ୍‌ବତ୍ ରାଜା ସୁଦାରୁଣ କର୍ମ୍ମ ଓ ଶତ୍ରୁଙ୍କର ମର୍ମ୍ମ ଛେଦ ନ କରି ସୌଭାଗ୍ୟଶାଳୀ ହୋଇ ପାରନ୍ତି ନାହିଁ । ୭୨ । ଶତ୍ରୁଙ୍କର ବଳକୁ କର୍ଷିତ, ବ୍ୟାଧିତ, କ୍ଲିନ୍ନ ଓ ଅନ୍ନପାନାଦି ବର୍ଜିତ କରି ନିଃସନ୍ଦେହ ରୂପେ ବିନଷ୍ଟ

---

† ଧର୍ମ୍ମ, ଅର୍ଥ ଓ କାମ—ଏହି ତ୍ରିବର୍ଗ ।

କରିବ ।୭୩। ଅର୍ଥବାନ୍ ବ୍ୟକ୍ତି ଅର୍ଥାର୍ଥୀଙ୍କ ନିକଟକୁ ଗମନ କରନ୍ତି ନାହିଁ; କୃତାର୍ଥ ହେଲେ ସଙ୍ଗରେ କି ପ୍ରୟୋଜନ ? ଏହି ହେତୁରୁ ସବୁ କାର୍ଯ୍ୟ ଏକାବେଳେକେ ଶେଷ ନ କରି କିଛି ଅବଶେଷ ରଖିବ ଯେ ସେ ସମ୍ପର୍କୀୟ ବ୍ୟକ୍ତି ଆପଣାର ବଶରେ ରହିବ ।୭୪।

ଐଶ୍ୱର୍ଯ୍ୟାଭିଳାଷୀ ମହୀପତି ଅସୂୟା ଶୂନ୍ୟ ହୋଇ ସହାୟ ସାଧନୋପାୟ ପ୍ରଭୃତି ସଂଗ୍ରହ ପୂର୍ବକ ବିଗ୍ରହରେ ଯତ୍ନ କରିବେ ଓ ଯତ୍ନ ସହକାରେ ତଦ୍‌ବିଷୟରେ ଉତ୍ସାହୀ ହେବେ ।୭୫।

ନୀତିଜ୍ଞ ବ୍ୟକ୍ତିଙ୍କର କୌଣସି କାର୍ଯ୍ୟକୁ କି ମିତ୍ର କି ଅମିତ୍ର କେହି ବୁଝିପାରିବେ ନାହିଁ, ଯେତେବେଳେ କାର୍ଯ୍ୟ ଆରବ୍ଧ ବା ପର୍ଯ୍ୟବସିତ ହେବ, ତେତେବେଳେ ସେମାନେ ଦେଖିବାକୁ ପାଇବେ ।୭୬। ଯାବତ୍‌କାଳ ଭୟ ଉପସ୍ଥିତ ନ ହୋଇଅଛି, ତାବତ୍ ଭୀତ ପ୍ରାୟ ଉପାୟ ଚିନ୍ତା କରିବ; କିନ୍ତୁ ଭୟ ଉପସ୍ଥିତ ହେଲେ ଅଭୀତ ପ୍ରାୟ ହୋଇ ପ୍ରହାର କରିବ ।୭୭। ଦଣ୍ଡରେ ଯେଉଁ ଶତ୍ରୁ ବଶୀଭୂତ ହେବାର ତାହାପ୍ରତି ଯେ ଅନୁଗ୍ରହ କରେ, ସେ ଅଶ୍ୱତରୀର ଗର୍ଭଧାରଣ ପ୍ରାୟ ମୃତ୍ୟୁକୁ ଧରି ବସିଥାଏ ।୭୮।

ଅନାଗତ କାର୍ଯ୍ୟ ଯାହା ସମ୍ମୁଖରେ ଉପସ୍ଥିତ ଥିବ, ତାହାକୁ ବୁଝି ଆଗେ କରିବ ନତୁବା କାର୍ଯ୍ୟାନ୍ତରମାନ ଉପସ୍ଥିତ ହେଲେ ଅନବଧାରଣ ବଶରୁ ସେ କାର୍ଯ୍ୟ ଅତିକ୍ରାନ୍ତ ହୋଇପାରେ ।୭୯। ଯେଉଁ ବ୍ୟକ୍ତିଙ୍କର ବିଭୂତି ଲଭିବାର ଇଚ୍ଛା ଅଛି, ତାହାଙ୍କର ଦେଶ କାଳ ବିବେଚନା ପୂର୍ବକ ଦୈବ କର୍ମ † ଓ ଧର୍ମ୍ମ, ଅର୍ଥ ଓ କାମ ତିନିଙ୍କୁ ଉତ୍ସାହ ଓ ଯତ୍ନସହ ସାଧନ କରିବା କର୍ତ୍ତବ୍ୟ ।୮୦।

ଶତ୍ରୁ ଉପେକ୍ଷିତ ହେଲେ, ତାଳବୃକ୍ଷ ପ୍ରାୟ କ୍ରମଶଃ ସେ ମୂଳକୁ ବିସ୍ତୀର୍ଣ୍ଣ କରଇ ଓ ଅରଣ୍ୟ ମଧ୍ୟରେ ନିଃକ୍ଷିପ୍ତ ଅଗ୍ନି ସଦୃଶ, ଶୀଘ୍ର ମହାନ ହୁଅଇ ।୮୧। ଯେପରି ଅଳ୍ପ ଅଗ୍ନିକୁ ବର୍ଦ୍ଧିତ କଲେଁ ସେହି ଅଗ୍ନି ବୃହତ୍ ଦ୍ରବ୍ୟମାନଙ୍କୁ ଆକ୍ରମଣ କରିବାକୁ ସମର୍ଥ ହୁଅଇ, ତଦ୍ରୂପ ଯେଉଁ ବ୍ୟକ୍ତି ଆପଣାକୁ ସହାୟାଦି ଦ୍ୱାରା ବର୍ଦ୍ଧିତ କରଇ ସେ ବର୍ଦ୍ଧମାନ ହୋଇ ବିପକ୍ଷ ନିଚୟ ଅତି ବୃହତ୍ ହେଲେହେଁ ସେମାନଙ୍କୁ ଗ୍ରାସ କରିବାକୁ ପାରଇ ।୮୨।

---

† ଦୈବ କର୍ମ୍ମ—ପ୍ରାକ୍ତ କର୍ମ୍ମ ।

ଶତ୍ରୁଙ୍କୁ ଏହିପରି ଆଶା ଦେବ ଯେ ସେ ଆଶା ଦୀର୍ଘକାଳକୁ ଅପେକ୍ଷା କରିବ, ପୁଣି ସେ କାଳ ଉପସ୍ଥିତ ହେଲେ କୌଣସି ଗୋଟିଏ ବିଘ୍ନ ଯୋଜନା କରିବ, ସେ ବିଘ୍ନର ଗୋଟିଏ ନିମିତ୍ତ ପ୍ରଦର୍ଶନ କରିବ ଓ ସେ ନିମିତ୍ତର ଅପର ହେତୁ ଦେଖାଇ ଶତ୍ରୁକୁ ନିରସ୍ତ୍ର କରିବ । ୮୩ । ମୀତଜ୍ଞ ବ୍ୟକ୍ତି ନିଶିତ କୋଷାବୃତ, ଲୋମହାରୀ ଓ ଯଥାକାଳରେ କାର୍ଯ୍ୟନିର୍ବାହକାରୀ କ୍ଷୁର ସଦୃଶ ହୋଇ ଶତ୍ରୁମାନଙ୍କର ପ୍ରାଣ ସଂହାର କରିବ* । ୮୪ । ଅତଏବ ହେ କୁରୁଦ୍‌ବହ ! ପାଣ୍ଡବଗଣଙ୍କର କି ଅବା ଅନ୍ୟାନ୍ୟ ବ୍ୟକ୍ତିଙ୍କ ପ୍ରତି ନ୍ୟାୟାନୁଯାୟୀ ବ୍ୟବହାର କରି ଏ ରୂପ କାର୍ଯ୍ୟ କରନ୍ତୁ ଯହିଁରେ ପଛକୁ ଅନୁତାପରେ ମଗ୍ନ ହେବାକୁ ନ ହୁଏ । ୮୫ । ହେ ନରାଧିପ ! ଆମ୍ଭର ନିଶ୍ଚୟ ବୋଧ ଅଛି—ଆପଣ ଧନ ପୁତ୍ରାଦି ସର୍ବକଲ୍ୟାଣ ସମ୍ପନ୍ନ ଓ ବିଶେଷଜ୍ଞ; ଅତଏବ ପାଣ୍ଡବମାନଙ୍କ ଠାରୁ ଆପଣାକୁ ରକ୍ଷା କରନ୍ତୁ । ୮୬ । ହେ ନରାଧୀପ ! ପାଣ୍ଡୁ ପୁତ୍ରମାନେ ଭ୍ରାତାମାନଙ୍କ ଅପେକ୍ଷା ଅଧିକ ବଳବାନ୍, ଅତଏବ ହେ ଅରିନ୍ଦମ ! ଯାହା କର୍ତ୍ତବ୍ୟ ତାହା ଆମ୍ଭେ ସ୍ପଷ୍ଟରୂପେ କହୁଅଛୁଁ । ୮୭ । ହେ ନରାଧିପ ! ଆପଣ ସପୁତ୍ର ତାହା ଶ୍ରବଣ କରନ୍ତୁ ଓ କର୍ତ୍ତବ୍ୟ ବିଷୟରେ ଏପରି ଯତ୍ନଶୀଳ ହୁଅନ୍ତୁ ଯହିଁରେ ପାଣ୍ଡବମାନଙ୍କ ଠାରୁ ଭବିଷ୍ୟତରେ ଯେପରି ଭୟ ନ ହୁଏ; ଅଥଚ ଏପରି ନୀତି ବିଧାନ କରନ୍ତୁ, ଯହିଁରେ କି ପଶ୍ଚାତ୍ତାପ ନ ହୁଏ । ୮୮ ।

( ବୈଶମ୍ପାୟନ ବୋଇଲେ— ) କଣିକ ଏହିପରି କହି ସ୍ୱଗୃହକୁ ଗମନ କଲେ, ତଦନନ୍ତର କୁରୁନନ୍ଦନ ଧୃତରାଷ୍ଟ୍ର ମଧ୍ୟ ତଦିବଷୟେ ଶୋକାର୍ତ୍ତ ହେଲେ । ୮୯ ।

---

* କ୍ଷୁର ଯେପରି ତୀକ୍ଷ୍ଣ, ସେହିପରି ନିର୍ଦ୍ଦୟ ହେବ ।
କ୍ଷୁର ଯେପରି କୋଷାବୃତ୍ତ ସେହିପରି ଗୂଢ଼ାଶୟ ହେବ ।
କ୍ଷୁର ଯେପରି ଲୋମହାରୀ ସେହିପରି ଅନଲୋମ ସହାୟହେବ ।
କ୍ଷୁର ଯେପରି ଶାଣୋଲ୍ଲୀଢ଼ ହୁଏ, ତଦ୍‌ବତ କାଳାପେକ୍ଷ ହେବ ।

# ୧୪୧ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଅନନ୍ତର ସୁବଳ-ପୁତ୍ର ଶକୁନି, ରାଜା ଦୁର୍ଯ୍ୟୋଧନ ଓ ଦୁଃଶାସନ କର୍ଣ୍ଣ ଏକତ୍ର ହୋଇ କୁମନ୍ତ୍ରଣା କରିବାରେ ପ୍ରବୃତ୍ତ ହେଲେ । ୧ । ସେମାନେ କୌରବରାଜ ଧୃତରାଷ୍ଟ୍ରଙ୍କ ଅନୁଜ୍ଞାନୁସାରେ ସପୁତ୍ରା କୁନ୍ତୀଙ୍କୁ ଦଗ୍ଧ କରିବାକୁ ନିଶ୍ଚୟ କଲେ । ୨ । ତତ୍ତ୍ୱଦର୍ଶୀ, ଇଙ୍ଗିତ ଓ ଭାବଜ୍ଞ ବିଦୁର ସେହି ଦୁଷ୍ଟାତ୍ମାମାନଙ୍କର ଆକାର ଦ୍ୱାରା ତାହାଙ୍କର ମନ୍ତ୍ରଣା ବୁଝି ପାରିଲେ । ୩ । ପାଣ୍ଡବମାନଙ୍କର ଓ କ୍ଷେମ୍ୟ ବିଷୟ ମାନଙ୍କର ବିଜ୍ଞାତା, ଅନଘ ବିଦୁର କୁନ୍ତୀଙ୍କ ପୁତ୍ରଙ୍କୁ ଘେନି ପଳାୟନ କରିବାକୁ ମନସ୍ଥ କଲେ । ୪ । ତତ୍ପରେ ବାତବେଗ ସହନ କ୍ଷମା, ଉର୍ମ୍ମିଦ୍ୱାରା ଦୁରଧୃଷ୍ୟ, ଯନ୍ତ୍ରଯୁକ୍ତା ଦୃଢ଼ା ଓ ପତାକାନ୍ୱିତା ଗୋଟିଏ ନୌକା ସ୍ଥିର କରି କୁନ୍ତୀଙ୍କୁ କହିଲେ ।

ବିଦୁର କହିଲେ—ଧୃତରାଷ୍ଟ୍ର ଏହି କୁଳର କୀର୍ତ୍ତି ଓ ସନ୍ତତି ନାଶ କରିବା ନିମିତ୍ତ ଜନ୍ମିଅଛନ୍ତି, ବିପରୀତ ବୁଦ୍ଧି ହେତୁରୁ ଏ ଚିରସ୍ଥାୟୀ ଧର୍ମ୍ମକୁ ତ୍ୟାଗ କରୁଅଛନ୍ତି; ହେ ଶୁଭେ ! ତରଙ୍ଗ ଓ ପବନର ବେଗ ସହିବାକୁ ସକ୍ଷମ ଗୋଟିଏ ନୌକାକୁ ଆମ୍ଭେ ବାରି-ପଥରେ ପ୍ରସ୍ତୁତ ରଖିଅଛୁଁ; ତଦ୍ୱାରା ତୁମ୍ଭେ ପୁତ୍ର ସହିତ ମୃତ୍ୟୁପଥରୁ ରକ୍ଷା ପାଇବ । ୭ ।

ବୈଶମ୍ପାୟନ କହିଲେ—ହେ ଭରତର୍ଷଭ ! ତାହା ଶୁଣି ଯଶସ୍ୱିନୀ କୁନ୍ତୀ ବ୍ୟଥିତା ହୋଇ ପୁତ୍ରଙ୍କ ସହିତ ନାବରେ ଆରୋହଣ କରି ଗଙ୍ଗାରେ ଯାତ୍ରା କଲେ । ୮ । ତତ୍ପରେ ବିଦୁରଙ୍କ ବାକ୍ୟରେ ପାଣ୍ଡବମାନେ ସ୍ୱ ସ୍ୱ ଧନ ଗ୍ରହଣ ପୂର୍ବକ ନୌକାରୁ ଉତ୍ତୀର୍ଣ୍ଣ ହୋଇ ଦୁର୍ଯ୍ୟୋଧନାଦିଙ୍କ ପ୍ରଦତ୍ତ ଅରିଷ୍ଟ-ରୂପ-ଗହନ କାନନରେ ପ୍ରବିଷ୍ଟ ହେଲେ । ୯ । ନିରପରାଧିନୀ ଗୋଟିଏ ନିଷାଦୀ ପଞ୍ଚ ପୁତ୍ରଙ୍କ ସହିତ କୌଣସି କାରଣରୁ ସେଠାକୁ ଆସିଥିଲା; ପାଣ୍ଡବଙ୍କ ଦାହାର୍ଥ ନିର୍ମିତ ସେହି ଜାତୁଷ - ଗୃହରେ ସେମାନେ ଦଗ୍ଧ ହେଲେ । ୧୦ । ମ୍ଲେଚ୍ଛାଧମ, ପାପିଷ୍ଠ ପୁରୋଚନ ମଧ୍ୟ ସେଠାରେ ଦଗ୍ଧ ହେଲା; ସୁତରାଂ ଧୃତରାଷ୍ଟ୍ରଙ୍କର ଦୁରାତ୍ମା ପୁତ୍ରମାନେ ଅନୁଚରଙ୍କ ସହିତ ବଞ୍ଚିତ ହେଲେ । ୧୧ । ବିଦୁରଙ୍କ ପରାମର୍ଶାନୁସାରେ ମହାତ୍ମା ପାଣ୍ଡବମାନେ ଅକ୍ଷତ ଶରୀରରେ ଜନନୀଙ୍କ ସହିତ ଯେ ମୁକ୍ତ ହୋଇଥିଲେ, ତାହା ତତ୍ରତ୍ୟ ଅଧିବାସୀମାନେ ଜାଣି ନ ଥିଲେ । ୧୨ । ସେହି ହେତୁରୁ

ସେମାନେ ବାରଣାବତ ନଗରରେ ଜତୁଗୃହ ଦଗ୍ଧ ହେବାର ଦେଖି ଅତ୍ୟନ୍ତ ଦୁଃଖିତ ଅନ୍ତଃକରଣରେ ଅନୁଶୋଚନା କଲେ ଓ ଧୃତରାଷ୍ଟ୍ରଙ୍କ ନିକଟକୁ ଏହି ବୃତ୍ତାନ୍ତ ଜଣାଇ ପଠାଇଲେ--ହେ କୌରବ୍ୟ ! ତୁମ୍ଭର ମହତୀ କାମନା ସିଦ୍ଧ ହୋଇଅଛି; ତୁମ୍ଭେ ପାଣ୍ଡବମାନଙ୍କୁ ଦଗ୍ଧ କରିଅଛ, ଏବେ ସ୍ୱୀୟ ମନୋବାଞ୍ଛା ପୂର୍ଣ୍ଣ କର । ପୁତ୍ରଙ୍କ ସହ ରାଜ୍ୟ ଭୋଗ କର । ୧୪ । ତାହା ଶ୍ରବଣ କରି ଧୃତରାଷ୍ଟ୍ର, କୁରୁସତ୍ତମ ଭୀଷ୍ମ, କ୍ଷତ୍ତା † ଓ ଦୁର୍ଯ୍ୟୋଧନ ପ୍ରଭୃତି ରାଜକୁମାରମାନେ ବାନ୍ଧବଗଣଙ୍କ ସହିତ ଶୋକ ପ୍ରକାଶ ପୂର୍ବକ ପାଣ୍ଡବଗଣଙ୍କର ପ୍ରେତ କୃତ୍ୟ ସମ୍ପାଦନ କଲେ । ୧୫ ।

ଜନମେଜୟ ବୋଇଲେ—ହେ ଦ୍ୱିଜସତ୍ତମ ! ଜତୁଗୃହ ଦାହ ଓ ପାଣ୍ଡବମାନଙ୍କର ମୋଚନ ବୃତ୍ତାନ୍ତକୁ ବିସ୍ତାର ରୂପେ ଆମ୍ଭେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୧୬ । କ୍ରୂର କଣିକଙ୍କ ଉପଦେଶାନୁସାରେ ଏହି ନୃଶଂସ କର୍ମ ଯେପରି ଅନୁଷ୍ଠିତ ହୋଇଥିଲା, ତାହା ଶ୍ରବଣ କରିବାକୁ ଆମ୍ଭର ଅତିଶୟ କୌତୂହଳ ଜନ୍ମିଅଛି । ୧୭ ।

ବୈଶମ୍ପାୟନ ବୋଇଲେ—ହେ ରାଜନ୍ ! ପରନ୍ତପ ! ଏହି ଜତୁଗୃହର ଦାହ ଓ ପାଣ୍ଡବମାନଙ୍କର ମୋକ୍ଷଣ ଯେପରି ହୋଇଥିଲା ତାହା ଆମ୍ଭେ ବିସ୍ତାରପୂର୍ବକ କହୁଅଛୁ, ଶୁଣ । ୧୮ । ଭୀମସେନଙ୍କୁ ଅତିଶୟ ବଳବାନ୍ ଓ ଧନଞ୍ଜୟ କୃତବିଦ୍ୟ ହେବାର ଲକ୍ଷିତ କରି ଦୁର୍ଯ୍ୟୋଧନ ଦୁର୍ମ୍ମନା ହୋଇ ପରିତାପ କଲେ । ୧୯ । ତହିଁରେ ବିକର୍ତ୍ତନଙ୍କ ପୁତ୍ର କର୍ଣ୍ଣ ଓ ସୁବଳ ପୁତ୍ର ଶକୁନି ଅନେକ ଅଭ୍ୟୁପାୟ ଦ୍ୱାରା ପାଣ୍ଡବମାନଙ୍କୁ ହିଂସା କରିବାକୁ ପ୍ରବୃତ୍ତ ହେଲେ । ୨୦ ।

ପାଣ୍ଡବମାନେ ମଧ୍ୟ ଆପଦ ଉପସ୍ଥିତ ହେଲେଁ ତାହାର ପ୍ରତିକାର କରନ୍ତି; କିନ୍ତୁ ସେମାନେ ବିଦୁରଙ୍କ ମତରେ ରହି ପୁନର୍ବାର ସେ ବିଷୟମାନ ପ୍ରକାଶ କରନ୍ତି ନାହିଁ । ୨୧ । ହେ ଭାରତ ! ପୌରଜନମାନେ ପାଣ୍ଡୁସୁତମାନଙ୍କୁ ଗୁଣ ନିକରରେ ସମୁଦିତ ହେବାର ଦେଖି ସଭାମାନଙ୍କରେ ସେମାନଙ୍କର ଗୁଣାବଳୀକୁ ବର୍ଣ୍ଣନ କଲେ ଓ ସମସ୍ତେ ସଭା ମଧ୍ୟରେ ଓ ଚତ୍ୱରରେ ମିଳିତ ହୋଇ ପାଣ୍ଡୁଙ୍କର ଜ୍ୟେଷ୍ଠ-

---

† ଏଠାରେ କ୍ଷତ୍ତା ଅର୍ଥ କଣ୍ଠି । ବିଦୁର ସମସ୍ତ ବୃତ୍ତାନ୍ତ ଜାଣି ଶୁଣି ପାଣ୍ଡବଙ୍କ ପ୍ରେତକୃତ୍ୟ କରନ୍ତେ ତାହା ସମ୍ଭବପର ନୁହଇ ।

ପୁତ୍ର ରାଜ୍ୟ ପ୍ରାପ୍ତିର ଯୋଗ୍ୟ ବୋଲି କହୁଥିଲେ । ପ୍ରଜ୍ଞାଚକ୍ଷୁ ଜ୍ୟେଷ୍ଠ ଧୃତରାଷ୍ଟ୍ର ଚକ୍ଷୁ ବିହୀନ ହେବାରୁ ପୂର୍ବେ ରାଜ୍ୟପ୍ରାପ୍ତ ହୋଇ ନଥିଲେ; ସେ କିପରି ନୃପତି ହେବେ । ୨୪ ।

ଶାନ୍ତନୁଙ୍କ ପୁତ୍ର ସତ୍ୟସନ୍ଧ ମହାବ୍ରତ ଭୀଷ୍ମ ପୂର୍ବେ ରାଜ୍ୟକୁ ପ୍ରତ୍ୟାଖ୍ୟାନ କରିଅଛନ୍ତି, ସେ ତାହା କଦାପି ଗ୍ରହଣ କରିବେ ନାହିଁ ।୨୫। ଅତଏବ ସମ୍ପ୍ରତି ଆମ୍ଭେମାନେ ତରୁଣ, ଯୁଦ୍ଧଶୀଳ, ସାଧୁ, କରୁଣାଯୁକ୍ତ ଓ ବେଦଜ୍ଞ ପାଣ୍ଡୁପୁତ୍ର ଯୁଧିଷ୍ଠିରଙ୍କୁ ରାଜ୍ୟରେ ଅଭିଷିକ୍ତ କରିବୁଁ । ୨୬ । ସେ ଧର୍ମଜ୍ଞ ଅଟନ୍ତି, ଅତଏବ ସେ ଶାନ୍ତନୁପୁତ୍ର ଭୀଷ୍ମଙ୍କୁ ଓ ସପୁତ୍ର ଧୃତରାଷ୍ଟ୍ରଙ୍କୁ ସମ୍ମାନନା କରି ବିବିଧ ଭୋଗରେ ସଂଯୁକ୍ତ କରିବେ । ୨୭ । ଲୋକମାନେ ଯୁଧିଷ୍ଠିରଙ୍କ ପ୍ରତି ଅନୁରକ୍ତ ହୋଇ ଏପରି ବାକ୍ୟ କହିବାର ଶୁଣି ଦୁର୍ମତି ଦୁର୍ଯୋଧନ ପରିତାପ କଲେ । ୨୮ । ସେ ଦୁଷ୍ଟାତ୍ମା ସେମାନଙ୍କର ବଚନ ଶୁଣି ତପ୍ୟମାନ ହୋଇ ସହି ନ ପାରି ଈର୍ଷ୍ୟାରେ ଅଧିକ ସନ୍ତପ୍ତ ହୋଇ ଧୃତରାଷ୍ଟ୍ରଙ୍କ ନିକଟକୁ ଗମନ କଲେ । ୨୯ । ଅନନ୍ତର ପିତାଙ୍କ ନିର୍ଜନରେ ପାଇ ତାହାଙ୍କୁ ନମସ୍କାର କରି ପୁରଜନ ମାନଙ୍କର ଯୁଧିଷ୍ଠିରଙ୍କ ପ୍ରତି ଅନୁରକ୍ତ ହେତୁ ସନ୍ତପ୍ତ ହୋଇ କହିଲେ ।

ହେ ତାତ ! ଆମ୍ଭେ ପୁରଜନ ମାନଙ୍କର କଥିତ ଅମଙ୍ଗଳ ବଚନ ସବୁ ଶୁଣିଲୁଁ; ସେମାନେ ଭୀଷ୍ମଙ୍କୁ ଓ ତୁମ୍ଭଙ୍କୁ ଅନାଦର କରି ପାଣ୍ଡବଙ୍କୁ ପତି କରିବାର ଇଚ୍ଛା କରୁଅଛନ୍ତି । ୩୧ । ତହିଁରେ ଭୀଷ୍ମଙ୍କର ମଧ୍ୟ ସମ୍ମତି ହେବ, ଯେଣୁ ସେ ସ୍ୱୟଂ ରାଜ୍ୟ ଭୋଗ କରିବେ ନାହିଁ, ପୁରଜନମାନେ ଆମ୍ଭମାନଙ୍କୁ ଅତ୍ୟନ୍ତ ପୀଡ଼ା ଦେବାକୁ ଇଚ୍ଛା କରୁଅଛନ୍ତି । ୩୨ । ପୂର୍ବେ ପାଣ୍ଡୁ ରାଜା ଆତ୍ମଗୁଣାନୁସାରେ ପୈତୃକ ରାଜ୍ୟ ପ୍ରାପ୍ତ ହୋଇଥିଲେ; ଆପଣ ଅନ୍ଧହେବାରୁ ପ୍ରାପ୍ୟ ରାଜ୍ୟକୁ ପ୍ରାପ୍ତ ହେଲେ ନାହିଁ । ୩୩ । ଏବେ ଯଦି ପାଣ୍ଡୁଙ୍କର ଉତ୍ତରାଧିକାରୀ ଭାବେ ଯୁଧିଷ୍ଠିର ରାଜ୍ୟ ପ୍ରାପ୍ତି ହୁଅନ୍ତି ତେବେ ତାହାଙ୍କର ପୁତ୍ର ଓ ପୌତ୍ରାଦି କ୍ରମେ ସେମାନେ ରାଜ୍ୟ ଭୋଗ କରିବେ । ୩୪ । ହେ ଜଗତୀପତେ ! ଏପରି ହେଲେଁ ଆମ୍ଭେମାନେ ପୁତ୍ର ପୌତ୍ରାଦି କ୍ରମେ ରାଜବଂଶରୁ ବିଚ୍ୟୁତ ହୋଇ ଲୋକରେ ଅବଜ୍ଞାତ ହେବୁଁ । ୩୫ । ଅତଏବ ହେ ରାଜନ୍ ! ଆମ୍ଭେମାନେ ଯହିଁରେ ସତତଃ ପର ପିଣ୍ଡୋପଜୀବୀ ହୋଇ ଅସହ୍ୟ ଦୁଃଖ ଭୋଗ ନ କରୁ ତଦ୍ରୂପ ମିତ

ବିଧାନ କର । ୩୬ । ହେ ରାଜନ୍ । ଯଦି ତୁମ୍ଭେ ପୂର୍ବେ ରାଜ୍ୟ ପ୍ରାପ୍ତ ହୋଇଥାନ୍ତ ତେବେ ଲୋକେ ଅମ୍ଭର ବଶୀଭୂତ ନ ହେଲେହେଁ ଅମ୍ଭେ ନିଶ୍ଚୟ ରାଜ୍ୟ ଭୋଗ କରିଥାନ୍ତୁ । ୩୭ ।

---

## ଅଧ୍ୟାୟ ୧୪୨

ବୈଶମ୍ପାୟନ ବୋଇଲେ—ପ୍ରଜ୍ଞାଚକ୍ଷୁ ନରାଧିପ ଧୃତରାଷ୍ଟ୍ରଙ୍କ ପୁତ୍ରଙ୍କର ତଦ୍ରୂପ ବାକ୍ୟ ଶ୍ରବଣ କରି ଓ କଣିକଙ୍କର ପୂର୍ବୋକ୍ତ ବାକ୍ୟମାନ ସ୍ମରଣ କରି ଦ୍ୱିଧାଗ୍ରସ୍ତ ଓ ଶୋକାର୍ତ୍ତ ହେଲେ । ୧ । କର୍ଣ୍ଣ, ଶକୁନି, ସୌବଲ ଓ ଦୁଃଶାସନ ଏହି ଚାରିଜଣଙ୍କ ସଙ୍ଗେ ଦୁର୍ଯ୍ୟୋଧନ ମନ୍ତ୍ରଣା କଲେ । ୨ । ତଦନନ୍ତର ରାଜା ଦୁର୍ଯ୍ୟୋଧନ ଧୃତରାଷ୍ଟ୍ରଙ୍କୁ ବୋଇଲେ, ଆପଣ ପାଣ୍ଡବମାନଙ୍କୁ ନିପୁଣ ଉପାୟ ଦ୍ୱାରା ବାରଣାବତ ନଗରକୁ ନିର୍ବାସିତ କଲେ, ସେମାନଙ୍କଠାରୁ ଆଉ ଭୟ ରହିବ ନାହିଁ । ୩ । ପୁତ୍ରଙ୍କ କଥିତ ବଚନକୁ ଧୃତରାଷ୍ଟ୍ର ଶ୍ରବଣ କରି ମୁହୂର୍ତ୍ତେ ଚିନ୍ତାକରି ଦୁର୍ଯ୍ୟୋଧନଙ୍କୁ ବୋଇଲେ—ପାଣ୍ଡୁଙ୍କର ସର୍ବଦା ଧର୍ମରେ ମତି ଥିଲା ଓ ସେ ସର୍ବଦା ଧର୍ମାଚରଣ କରୁଥିଲେ । ଜ୍ଞାତିବର୍ଗ ପ୍ରତି ଓ ବିଶେଷରେ ଅମ୍ଭ ପ୍ରତି ତାହାଙ୍କର ଧର୍ମସମ୍ମତ ବ୍ୟବହାର ଥିଲା; ଧୃତବ୍ରତ ପାଣ୍ଡୁ ଭୋଜନାଦି ଭୋଗ କିଛି ଜାଣି ନଥିଲେ ଓ ସେ ସର୍ବଦା ଅମ୍ଭଙ୍କୁ ରାଜ୍ୟ ସମର୍ପଣ କରୁଥାନ୍ତି । ୬। ତାହାଙ୍କର ପୁତ୍ର ମଧ୍ୟ ପାଣ୍ଡୁଙ୍କ ପ୍ରାୟ ଧର୍ମପରାୟଣ, ଗୁଣବାନ୍, ବିଖ୍ୟାତ ଓ ପୁରଜନମାନଙ୍କର ସୁସମ୍ମତ ଅଟନ୍ତି । ୭ । କିପରି ଅମ୍ଭେମାନେ ସମହାୟ ପାଣ୍ଡବଙ୍କୁ ଏହି ପିତୃ ପୈତାମହ ରାଜ୍ୟରୁ ବଳପୂର୍ବକ ବହିଷ୍କୃତ କରିବା ? । ୮ ।

ବିଶେଷରେ ପାଣ୍ଡୁ ଅମାତ୍ୟମାନଙ୍କୁ ଭରଣ କରିଥିଲେ, ସୈନ୍ୟମାନଙ୍କୁ ଭରଣ କରିଥିଲେ । ସେମାନଙ୍କର ପୁତ୍ର ଓ ପୌତ୍ରମାନଙ୍କୁ ମଧ୍ୟ ଭରଣ ପୋଷଣ କରିଥିଲେ । ୯ । ହେ ତାତ । ସମସ୍ତେ ପାଣ୍ଡୁଙ୍କ ଦ୍ୱାରା ପୂର୍ବେ ସୁସତ୍କୃତ ହୋଇଥିଲେ, ଯୁଧିଷ୍ଠିରଙ୍କୁ ନିର୍ବାସିତ କଲେ; ସେମାନେ ସବାନ୍ଧବରେ ଅମ୍ଭଙ୍କୁ କିପରି ବଧ ନ କରିବେ । ୧୦ । ଦୁର୍ଯ୍ୟୋଧନ ବୋଇଲେ—ତାତ । ଆପଣ ଯାହା ଆଜ୍ଞାକଲେ ତାହା ଯଥାର୍ଥ ଅଟେ ।

ଆପଣାରେ ଅମ୍ଭର ଦୋଷ ଭାବିତ ହେବାର ଦେଖି ଅର୍ଥ ଓ ମାନଦ୍ୱାରା ସମସ୍ତ ପ୍ରକୃତି ବର୍ଗଙ୍କୁ ଅମ୍ଭେ ସତ୍କାର କରିଅଛୁଁ । ହେ ମହୀପତେ ! ସମ୍ପ୍ରତି ଅର୍ଥ ବର୍ଗ ସହିତ ଅମାତ୍ୟମାନେ ଅମ୍ଭ ଅଧୀନରେ ଅଛନ୍ତି; ସେମାନେ ନିଶ୍ଚୟ ଅମର ସହାୟ ହେବେ; ଅତଏବ ଆପଣ ମୃଦୁଉପାୟ ଦ୍ୱାରା ବାରଣାବତ ନଗରକୁ ପାଣ୍ଡବମାନଙ୍କୁ ଶୀଘ୍ର ବିବାସିତ କରନ୍ତୁ ।୧୩। ହେ ଭାରତ ରାଜନ୍ ! ଅମ୍ଭଠାରେ ରାଜ୍ୟ ପ୍ରତିଷ୍ଠିତ ହେବା ପରେ ଅପତ୍ୟଙ୍କ ସହ କୁନ୍ତୀ ପୁନର୍ବାର ଏଠାକୁ ଆସନ୍ତୁ । ୧୪ ।

ଧୃତରାଷ୍ଟ୍ର ବୋଇଲେ—ହେ ଦୁର୍ଯ୍ୟୋଧନ ! ଅମ୍ଭ ହୃଦୟରେ ମଧ୍ୟ ଏହିପରି ଅଛି; କିନ୍ତୁ ଏ ପାପ ଅଭିପ୍ରାୟକୁ ଅମ୍ଭେ ପ୍ରକାଶ କରୁ ନ ଥିଲୁଁ । ୧୫ । ଭୀଷ୍ମ କି ଦ୍ରୋଣ, କି ବିଦୁର କି ଗୌତମ କୃପ କେହି ପାଣ୍ଡବମାନଙ୍କୁ ବିବାସିତ ହେବାର ଦେଖିବାକୁ ଇଚ୍ଛା କରିବେ ନାହିଁ । ୧୬ । ହେ ପୁତ୍ର ! କୁରୁବଂଶିଙ୍କ ମଧ୍ୟରେ ଅମ୍ଭେମାନେ ଓ ପାଣ୍ଡବମାନେ ସମାନ; ସେହି ଧର୍ମଯୁକ୍ତ ମନୀଷୀମାନେ କଦାପି ବିଷମ ଇଚ୍ଛା କରନ୍ତି ନାହିଁ । ସୁତରାଂ ପାଣ୍ଡବମାନଙ୍କୁ ବିବାସିତ କଲେ ଅମ୍ଭେମାନେ କିପରି କୌରବଙ୍କର ସେମାନଙ୍କର ଓ ସମସ୍ତ ଜଗତର ବଧ୍ୟ ନ ହେବୁଁ ? ।୧୮।

ଦୁର୍ଯ୍ୟୋଧନ ବୋଇଲେ—ଭୀଷ୍ମ ସର୍ବଦା ମଧ୍ୟସ୍ଥ; ଦ୍ରୋଣଙ୍କ ପୁତ୍ର ଅମ୍ଭ ପକ୍ଷରେ; ପୁତ୍ର ଯେଉଁଠାରେ, ଦ୍ରୋଣ ସେହିଠାରେ ଏଥିରେ ସଂଶୟ ନାହିଁ । ଏ ଦୁହେଁ ଯେଉଁଠାରେ ଶାରଦ୍ୱତ କୃପ ସେହିଠାରେ ରହିବେ, ସେ କଦାପି ଭାଗିନେୟଙ୍କୁ ଓ ଦ୍ରୋଣଙ୍କୁ ପରିତ୍ୟାଗ କରି ପାରିବେ ନାହିଁ । ୨୦ । ବିଦୁର ଅମ୍ଭର ଅର୍ଥ ଦ୍ୱାରା ବଦ୍ଧ ଅଛନ୍ତି; ଯଦି ସେ ପ୍ରଚ୍ଛନ୍ନ ଭାବରେ ପର ପକ୍ଷ ଆଶ୍ରୟ କରନ୍ତି ତେବେ ସେ ଏକାକୀ ପାଣ୍ଡବଙ୍କ ଅଡ଼େ ରହି ଅମ୍ଭର ବାଧା କରିବାକୁ ସମର୍ଥ ହେବେ ନାହିଁ । ୨୧ । ଅତଏବ ଆପଣ ନିଃଶଙ୍କ ଚିତ୍ତରେ ପାଣ୍ଡୁ ପୁତ୍ରମାନଙ୍କୁ ମାତାଙ୍କ ସହ ବିବାସିତ କରନ୍ତୁ । ୨୨ । ବିନିଦ୍ର କରଣ ଶୋକାଗ୍ନି ଅମ୍ଭ ହୃଦୟରେ ଅର୍ପିତ ହେଲା ପ୍ରାୟ ରହିଅଛି; ତାହାକୁ ଆପଣ ଏହି କର୍ମ ଦ୍ୱାରା ନାଶ କରନ୍ତୁ । ୨୩ ।

## ଅଧ୍ୟାୟ ୧୪୩

ବୈଶମ୍ପାୟନ ବୋଇଲେ—ଅନନ୍ତର ରାଜା ଦୁର୍ଯ୍ୟୋଧନ ଅନୁଜଙ୍କ ସହ ମିଳିତ ହୋଇ ମାନ ଓ ଅର୍ଥ ପ୍ରଦାନ ଦ୍ୱାରା ସମସ୍ତ ପ୍ରକୃତି ବର୍ଗଙ୍କୁ ବଶୀଭୂତ କଲେ । ୧। ଧୃତରାଷ୍ଟ୍ରଙ୍କ ଦ୍ୱାରା ପ୍ରଯୁକ୍ତ ହୋଇ କେତେ-ଗୁଡ଼ିଏ କୁଶଳୀ ମନ୍ତ୍ରୀ ବାରଣାବତ ନଗରର ପ୍ରଶଂସା କରିବାକୁ ପ୍ରବୃତ୍ତ ହେଲେ । ୨ । ସର୍ବ-ରତ୍ନ-ସମାକୀର୍ଣ୍ଣ ଓ ମନୁଷ୍ୟଙ୍କ ପକ୍ଷରେ ରମଣୀୟ ବାରଣାବତ ନଗରରେ, ପଶୁପତିଙ୍କର ଉତ୍ସବ ଉପସ୍ଥିତ ହୋଇଅଛି; ସେହି ସମାଜ ଅତି ବୃହତ୍ ଓ ପୃଥିବୀ ମଧ୍ୟରେ ସବୁଠାରୁ ରମଣୀୟ ଅଟେ । ଧୃତରାଷ୍ଟ୍ରଙ୍କ ଆଦେଶ କ୍ରମେ ଏହିପରି କଥାମାନ କହିଲେ । ୪ । ହେ ନୃପ ! ବାରଣାବତ ନଗରର ଏହିସବୁ ପ୍ରଶଂସା କଥିତ ହେବାରୁ ପାଣ୍ଡବମାନେ ସେଠାକୁ ଗମନାଭିଳାଷୀ ହେଲେ; ଅମ୍ବିକା ପୁତ୍ର ଧୃତରାଷ୍ଟ୍ର ଯେତେବେଳେ ଦେଖିଲେ ଯେ ପାଣ୍ଡବମାନଙ୍କର ସେ ନଗର ସନ୍ଦର୍ଶନାର୍ଥ କୌତୂହଳ ଜାତ ହୋଇଅଛି, ତେତେବେଳେ ତାହାଙ୍କୁ ବୋଇଲେ— ତାତ ! ଏହି ପୁରୁଷମାନେ ଆମ୍ଭ ନିକଟରେ ପୁନଃ ପୁନଃ ନିତ୍ୟ କହନ୍ତି ଯେ ବାରଣାବତ ନଗର ଲୋକରେ ଅତି ମନୋରମ ଅଟେ, ଯେବେ ତୁମ୍ଭମାନଙ୍କର ଇଚ୍ଛା ହୁଏ, ତେବେ ପରିବାର ଓ ଅନୁଚରବର୍ଗଙ୍କ ସହିତ ସେଠାକୁ ଗମନ କରି ଅମରମାନଙ୍କ ପ୍ରାୟ ବିହାର କର ଓ ଦେବତାଙ୍କ ସଦୃଶ ତେଜସ୍ୱୀ ହୋଇ ବ୍ରାହ୍ମଣ ଓ ଗାୟକମାନଙ୍କୁ ଇଚ୍ଛାନୁରୂପ ଅର୍ଥ ପ୍ରଦାନ କର । ୯ ।

କିଛିକାଳ ଏହିରୂପେ ବିହାର କରି ଓ ପରମ ପ୍ରମୋଦ ଅନୁଭବ କରି ସୁଖୀ ହୋଇ ଏହି ହାସ୍ତିନପୁରକୁ ପୁନର୍ବାର ଆଗମନ କରିବ । ୧୦ ।

ବୈଶମ୍ପାୟନ ବୋଇଲେ—ଧୃତରାଷ୍ଟ୍ରଙ୍କର ସେହି ଇଚ୍ଛାକୁ ବୁଝି-ପାରି ଓ ଆପଣାର କେହି ସହାୟ ନ ଥିବାର ଜାଣି ଯୁଧିଷ୍ଠିର 'ହେଉ' ବୋଲି କହିଲେ । ୧୧ । ତଦନନ୍ତର ଶାନ୍ତନୁ ପୁତ୍ର ଭୀଷ୍ମଙ୍କୁ, ମହାମତି ବିଦୁରଙ୍କୁ, ଦ୍ରୋଣଙ୍କୁ, ବାହ୍ଲିକଙ୍କୁ, କୁରୁବଂଶୀୟ ସୋମଦତ୍ତଙ୍କୁ, କୃପଙ୍କୁ, ଅଚାର୍ଯ୍ୟ ପୁତ୍ର ଅଶ୍ୱତ୍ଥାମାଙ୍କୁ, ଭୂରିଶ୍ରବାଙ୍କୁ, ଅନ୍ୟାନ୍ୟ ଅମାତ୍ୟ ବ୍ରାହ୍ମଣ ଓ ତପୋଧନମାନଙ୍କୁ ଅଥଚ ପୁରୋହିତମାନଙ୍କୁ ପୁରଜନ ମାନଙ୍କୁ ଓ ଯଶସ୍ୱିନୀ

ଗାନ୍ଧାରଙ୍କୁ ଯୁଧିଷ୍ଠିର ଦୀନଭାବରେ ଓ ମୃଦୁବଚନରେ ବୋଇଲେ ଯେ ଧୃତରାଷ୍ଟ୍ରଙ୍କ ଶାସନାନୁସାରେ ଆମ୍ଭେମାନେ ସବାନ୍ଧବରେ ଜନାକୀର୍ଣ୍ଣ ଓ ରମଣୀୟ ବାରଣାବତ ନଗରକୁ ଗମନ କରିବୁଁ, ଆପଣମାନେ ପ୍ରସନ୍ନ-ମନରେ ପୁଣ୍ୟ ବଚନ ମାନଙ୍କୁ ବିମୁକ୍ତ କରନ୍ତୁ, ଆପଣମାନଙ୍କ ଆଶୀର୍ବାଦରେ ରକ୍ଷିତ ହେଲେ, ଆମ୍ଭମାନଙ୍କୁ ପାପ ସ୍ପର୍ଶ କରି ପାରିବ ନାହିଁ । ୧୬ ।

ପାଣ୍ଡୁ ପୁତ୍ରଙ୍କର ଏପରି ବଚନ ଶ୍ରବଣ କରି କୌରବ ମାନେ ପ୍ରସନ୍ନ ବଦନ ହୋଇ ପାଣ୍ଡବମାନଙ୍କୁ ଆଶୀର୍ବାଦ କଲେ । ୧୭ । ପଥରେ ସର୍ବପ୍ରାଣିଙ୍କ ଠାରୁ ସର୍ବଦା ତୁମ୍ଭମାନଙ୍କର ମଙ୍ଗଳ ହେଉ, ହେ ପାଣ୍ଡୁନନ୍ଦନ-ମାନେ ! ତୁମ୍ଭମାନଙ୍କର କୌଣସି ଠାରୁ କିଛି ଅମଙ୍ଗଳ ନୋହୁ । ୧୮ । ଅନନ୍ତର ପାଣ୍ଡବମାନେ କୃତସ୍ୱସ୍ତ୍ୟୟନ ହୋଇ ରାଜ୍ୟଲାଭ ନିମିତ୍ତ ସମସ୍ତ କର୍ତ୍ତବ୍ୟ କର୍ମ୍ମ ସମ୍ପାଦନ କରି ବାରଣାବତକୁ ପ୍ରସ୍ଥାନ କଲେ । ୧୯ ।

---

## ଅଧ୍ୟାୟ ୧୪୪

ବୈଶମ୍ପାୟନ ବୋଇଲେ—ହେ ଭାରତ ! ରାଜା ଧୃତରାଷ୍ଟ୍ର ପାଣ୍ଡୁପୁତ୍ରଙ୍କୁ ଏପରି କହନ୍ତେ ଦୁରାତ୍ମା ଦୁର୍ଯ୍ୟୋଧନ ପରମ ହର୍ଷପ୍ରାପ୍ତ ହେଲେ । ହେ ଭରତର୍ଷଭ ! ସେ ପୁରୋଚନ ସଚିବଙ୍କୁ ଏକାନ୍ତରେ ଆଣି ତାହାଙ୍କର ଦକ୍ଷିଣ-ହସ୍ତକୁ ଗ୍ରହଣ କରି ବୋଇଲେ—ହେ ପୁରୋଚନ ! ବସୁସମ୍ପୂର୍ଣ୍ଣା ଏହି ବସୁନ୍ଧରା ଏବେ ଆମ୍ଭର ହେଲା । ଆମ୍ଭର ଯେପରି, ସେହିପରି ଏ ତୁମ୍ଭର ମଧ୍ୟ ଅଟଇ; ଅତଏବ ତୁମ୍ଭେ ଏହାକୁ ରକ୍ଷାକର । ତୁମ୍ଭ ଅପେକ୍ଷା ଅଧିକ ବିଶ୍ୱାସର ପାତ୍ର ଆମ୍ଭର କେହି ନାହିଁ, କି ସହାୟ କେହି ନାହିଁ, ଯାହା ସହିତ ସଙ୍ଗତ ହୋଇ, ତୁମ୍ଭ ସଙ୍ଗେ ମନ୍ତ୍ରଣା କଲା-ପ୍ରାୟ, ମନ୍ତ୍ରଣା କରିବୁଁ । ୪ । ତାତ ! ତୁମ୍ଭେ ଏହିମନ୍ତ୍ରଣା ରୂପ କାର୍ଯ୍ୟ କର, ନିପୁଣ ଉପାୟ ଦ୍ୱାରା ଆମ୍ଭର ସପତ୍ନୀମାନଙ୍କୁ ଉଦ୍ଧାର କର, ଆମ୍ଭେ ଯାହା କହୁଅଛୁଁ ତାହା କର । ୫ ।

ଧୃତରାଷ୍ଟ୍ରଙ୍କ ଦ୍ୱାରା ପ୍ରେରିତ ହୋଇ ପାଣ୍ଡବମାନେ ବାରଣାବତ ନଗରକୁ ଗମନ କଲେ ଓ ତାହାଙ୍କ ଆଜ୍ଞାନୁସାରେ ସେଠାରେ ବିହାର

କରିବେ । ୭ । ଅଶ୍ୱତରଯୁକ୍ତ ଆଶୁଗାମୀ ରଥରେ ଆରୋହଣ କରି ଅଦ୍ୟ ଯେପରି ବାରଣାବତରେ ପ୍ରବିଷ୍ଟ ହେବେ ତାହାର ଯତ୍ନ କର । ୭ । ସେଠାକୁ ଯାଇ ନଗରୋପାନ୍ତରେ ବହୁଧନ ବ୍ୟୟକରି ଉତ୍ତମ ଓ ସୁସମ୍ବୃତ ଗୋଟିଏ ଚତୁଃଶାଳ ଗୃହ ନିର୍ମାଣ କରି ରଖିବ । ଶଣ ଓ ସର୍ଜରସ ପ୍ରଭୃତି ଯେତେ ଅଗ୍ନିସନ୍ଦୀପକ ଦ୍ରବ୍ୟ ଅଛି, ତାହା ଦ୍ୱାରା ସେହି ଗୃହ ପ୍ରସ୍ତୁତ କରିବ; ଉପରେ ଘୃତ, ତୈଳ, ବସା ଓ ସମଧିକ ଲାଖ ସହ କର୍ଦ୍ଦମ ମୃତ୍ତିକା ମିଶ୍ରିତ କରି କୁଡ୍ୟରେ ଲେପନ କରାଇବ । ୧୦ । ଶଣ, ତୈଳ, ଘୃତ, ଜତୁ ଓ କାଷ୍ଠ ପ୍ରଭୃତି ଦ୍ରବ୍ୟମାନଙ୍କ ସେ ଗୃହର ଚତୁର୍ଦ୍ଦିଗରେ ନିକ୍ଷିପ୍ତ କରିବ । ୧୧ । ପରନ୍ତୁ ପାଣ୍ଡବମାନେ କି ଅବା ଅନ୍ୟ କେହି ଲୋକେ ପରୀକ୍ଷା କରି ଦେଖିଲେ ସୁଦ୍ଧା ସେ ଗୃହକୁ ଆଗ୍ନେୟ ବୋଲି ଜାଣି ନ ପାରିବେ । ୧୨ ।

ଏହି ରୂପେ ଗୃହ ପ୍ରସ୍ତୁତ ହେଲେ ତହିଁରେ ପାଣ୍ଡବମାନଙ୍କୁ ଓ ସୁହୃଦବର୍ଗଙ୍କ ସହିତ କୁନ୍ତୀଙ୍କୁ ଅତି ଯତ୍ନରେ ବାସ କରାଇବ । ପାଣ୍ଡବମାନଙ୍କ ନିମିତ୍ତ ଦିବ୍ୟ ଆସନ, ଯାନ ଓ ଶଯ୍ୟନମାନ ପ୍ରସ୍ତୁତ କରି ରଖିବ, ଯେପରିକି ଆମ୍ଭ ପିତା ତୁମ୍ଭ ପ୍ରତି ସନ୍ତୁଷ୍ଟ ହେବେ । ୧୪ । ଏ କର୍ମ୍ମ ଯେପରି ବାରଣାବତ ନଗରରେ କେହି ନ ଜାଣନ୍ତି ତଦ୍ରୂପ କରିବ । ଉପଯୁକ୍ତ ସମୟ ଉପସ୍ଥିତ ହେଲେ ପାଣ୍ଡବମାନେ ଯେତେବେଳେ ବିଶ୍ୱସ୍ତ ହୋଇ ଶୟନ କରିବେ ସେତେବେଳେ ତୁମ୍ଭେ ସେ ଗୃହର ଦ୍ୱାରରେ ଅଗ୍ନି-ସନ୍ନିବେଶ କରିବ । ୧୬ । ପାଣ୍ଡବମାନେ ଏହିପରି ଦଗ୍ଧ ହେଲେ ଲୋକେ ଜାଣିବେ ଯେ ଗୃହଦଗ୍ଧ ହେବାରୁ, ପାଣ୍ଡବମାନେ ବିନଷ୍ଟ ହେଲେ । ଆମ୍ଭଙ୍କୁ ସେମାନେ ନିନ୍ଦା କରିବେ ନାହିଁ । ୧୭ । ପୁରୋଚନ 'ହେଉ' ବୋଲି କୌରବଙ୍କ କହି ରାସଭ ଯୁକ୍ତ ଆଶୁଗାମୀ ରଥରେ ଆରୋହଣ କରି ଗମନ କଲେ । ୧୮ । ହେ ରାଜନ୍ ! ରାଜପୁତ୍ର ଦୁର୍ଯ୍ୟୋଧନଙ୍କ କଥାନୁସାରେ ପୁରୋଚନ ତ୍ୱରିତ ଗମନ କରି ସେ ଯେପରି କହିଥିଲେ, ତଦ୍ରୂପ ସବୁ ସମ୍ପନ୍ନ କଲେ । ୧୯ ।

———

## ଅଧ୍ୟାୟ ୧୪୫

ବୈଶମ୍ପାୟନ ବୋଇଲେ—ଅନଳସମ ବେଗବାନ୍ ଉତ୍ତମ ଅଶ୍ବମାନଙ୍କୁ ରଥରେ ଯୋଜନା କରି ତହିଁରେ ଆରୋହଣ କରିବା ସମୟରେ ଅତିପ୍ରାୟ ହୋଇ ଭୀଷ୍ମଙ୍କର ଓ ରାଜା ଧୃତରାଷ୍ଟ୍ର, ମହାତ୍ମା ଦ୍ରୋଣ, ବିଦୁର, କୃପ ଓ ଅନ୍ୟାନ୍ୟ ବୃଦ୍ଧମାନଙ୍କର ପାଦ ଗ୍ରହଣ କଲେ । ୨ । ଏହି ପ୍ରକାରେ ଧୃତ ବ୍ରତ ପାଣ୍ଡବମାନେ ସମସ୍ତ କୁରୁ ବୃଦ୍ଧଙ୍କୁ ଅଭିବାଦନ କରି ଓ ସମବୟସ୍କଙ୍କୁ ଆଲିଙ୍ଗନ କରି ବାଳକମାନଙ୍କ ଦ୍ୱାରା ଅଭିବାଦିତ ହେଲେ । ୩ । ସବୁ ମାତୃଗଣଙ୍କୁ ପ୍ରଦକ୍ଷିଣ କରି ବିଦାୟ ଗ୍ରହଣକଲେ, ସମସ୍ତ ପ୍ରକୃତିବର୍ଗଙ୍କୁ ମଧ୍ୟ ଯଥାବିହିତ ସମ୍ଭାଷଣା କରି ବାରଣାବତ ନଗରକୁ ଗମନକଲେ । ୪ ।

ମହାପ୍ରାଜ୍ଞ ବିଦୁର ଓ ଅନ୍ୟାନ୍ୟ କୁରୁ ଶ୍ରେଷ୍ଠମାନେ ଅଥଚ ପୁରଜନମାନେ ଶୋକ କର୍ଷିତ ହୋଇ ପୁରୁଷ ବ୍ୟାଘ୍ରମାନଙ୍କର ଅନୁଗାମୀ ହେଲେ । ୫ । ତନ୍ମଧ୍ୟରେ କେହି କେହି ପୁରବାସୀ ଓ ଜନପଦବାସୀ ଲୋକମାନେ ପାଣ୍ଡୁ ସୁତମାନଙ୍କୁ ଦେଖି ଅତିଶୟ ଦୁଃଖିତ ହୋଇ ବୋଇଲେ—ଅତି ମନ୍ଦବୁଦ୍ଧି କୌରବ୍ୟ ରାଜା ଧୃତରାଷ୍ଟ୍ର ପାଣ୍ଡୁପୁତ୍ର ମାନଙ୍କୁ ଦେଖି ନପାରି ଅଧର୍ମାଚରଣ କଲେ । ୭ । ଅପାପାତ୍ମା ପାଣ୍ଡୁ ତନୟ ଯୁଧିଷ୍ଠିର ପାପ କି ? ତାହା ଜାଣନ୍ତି ନାହିଁ; କୁନ୍ତୀପୁତ୍ର ବଳଶ୍ରେଷ୍ଠ ଭୀମ ଓ ଧନଞ୍ଜୟ ବୁଦ୍ଧେ ମଧ୍ୟ ତଦ୍ରୂପ; ମାଦ୍ରୀଙ୍କର ପୁତ୍ର, ଦୁଇ ମହାତ୍ମା ସୁତରାଂ କି କରିପାରିବେ ? । ୮ । ପାଣ୍ଡୁଙ୍କର ତନୟମାନେ ପୈତୃକ ରାଜ୍ୟପ୍ରାପ୍ତ ହେବାର ଧୃତରାଷ୍ଟ୍ର ସହ୍ୟକରି ପାରିଲେନାହିଁ, ଏ କାର୍ଯ୍ୟ ଅତି ଅଧର୍ମ୍ୟ; ଭୀଷ୍ମ କିପରି ଏ କଥାରେ ସମ୍ମତ ହେଲେ ? ପାଣ୍ଡବମାନଙ୍କୁ ଦୂରକୁ ବିବାସିତ କରିବା ଅଯୁକ୍ତ ଅଟେ । ୯ । ପୂର୍ବେ ଶାନ୍ତନୁ ପୁତ୍ର ରାଜର୍ଷି ବିଚିତ୍ରବୀର୍ଯ୍ୟ ଓ କୁରୁନନ୍ଦନ ପାଣ୍ଡୁ ଆମ୍ଭମାନଙ୍କୁ ପିତାପ୍ରାୟ ହୋଇ ପାଳନ କରୁଥିଲେ । ୧୦ ।

ସେହି ପୁରୁଷଶ୍ରେଷ୍ଠ ସ୍ୱର୍ଗାରୋହଣ କରନ୍ତେ ଏହି ଅଳ୍ପବୟସ୍କ ରାଜକୁମାର ମାନଙ୍କୁ ଧୃତରାଷ୍ଟ୍ର ସହ୍ୟ କରିପାରୁ ନାହାନ୍ତି । ୧୧ । ଆମ୍ଭେମାନେ ସମସ୍ତେ ଏହି କାର୍ଯ୍ୟରେ ଅନିଚ୍ଛୁକ ଅଛୁଁ; ଆମ୍ଭେମାନେ ଗୃହ ତ୍ୟାଗକରି ଯେଉଁଠାରେ ଯୁଧିଷ୍ଠିର ରହିବେ, ସେହିଠାକୁ ଗମନ

କରନ୍ତୁ । ୧୨ । ପୌରଜନମାନଙ୍କ ତଦ୍ରୂପ ଦୁଃଖିତ ହେବାର ଶୁଣି ଧର୍ମ୍ମରାଜ ଯୁଧିଷ୍ଠିର ମନରେ ବିଚାରକରି ସେମାନଙ୍କ କହିଲେ—ଧୃତରାଷ୍ଟ୍ର ଅମ୍ଭମାନଙ୍କର ଗୁରୁ, ପୂଜ୍ୟ, ମାନ୍ୟ ଓ ପିତା ଅଟନ୍ତି । ସେ ଯାହା କହିବେ, ତାହା ଅମ୍ଭେମାନେ ଅଶଙ୍କଚିତ୍ତ ହୋଇ କରିବା; ଏ ଅମ୍ଭମାନଙ୍କର ବ୍ରତ ଅଟେ । ୧୪ । ଆପଣମାନେ ଅମ୍ଭର ସୁହୃତ୍, ଅମ୍ଭମାନଙ୍କ ପ୍ରଦକ୍ଷିଣ କରି ଓ ଆଶୀର୍ବାଦ ଦ୍ୱାରା ପ୍ରତିନନ୍ଦିତ କରି ଆପଣା ଗୃହକୁ ପ୍ରତିନିବୃତ୍ତ ହୁଅ । ୧୫ । ଯେତେବେଳେ ଆପଣମାନଙ୍କ ଦ୍ୱାରା ଅମ୍ଭର କୌଣସି କାର୍ଯ୍ୟ ଉପସ୍ଥିତ ହେବ ସେତେବେଳେ ଆପଣମାନେ ଅମ୍ଭମାନଙ୍କର ପ୍ରିୟ ଓ ହିତାନୁଷ୍ଠାନ କରିବ । ୧୬ ।

ଏପରି ଉକ୍ତ ହେବାରୁ ପୁରଜନ ମାନେ ପାଣ୍ଡବଙ୍କ ପ୍ରଦକ୍ଷିଣ ପୂର୍ବକ ଆଶୀର୍ବାଦ ଦ୍ୱାରା ଅଭିନନ୍ଦନ କରି ହାସ୍ତିନ୍‌ପୁରକୁ ପ୍ରତ୍ୟାଗମନ କଲେ । ୧୭ । ପୁରବାସୀମାନେ ନିବୃତ୍ତ ହୁଅନ୍ତେ ସର୍ବ ଧର୍ମ୍ମବିତ, ସର୍ବଭାଷାଭିଜ୍ଞ, ବୁଦ୍ଧିମାନ ବିଦୁର, ଦୁର୍ଯ୍ୟୋଧନଙ୍କ କୃତ ନିଗୂଢ଼ କାପଟ୍ୟ ଅବଗତ କରାଇବା ଅଭିପ୍ରାୟରେ, ତତ୍କାଳରେ ଅବଶ୍ୟ ବକ୍ତବ୍ୟ ଓ ଅନ୍ୟର ଅବୋଧ ହେବା ନିମିତ୍ତ ମ୍ଳେଚ୍ଛ ଭାଷାରେ ଅଶେଷ ଭାଷାବିତ୍ ଯୁଧିଷ୍ଠିରଙ୍କ କହିଲେ—ଯେଉଁ ବ୍ୟକ୍ତି ନୀତିଶାସ୍ତ୍ରାନୁସାରିଣୀ ଶତ୍ରୁଙ୍କ ଚେଷ୍ଟାକୁ ଅବଗତ ହୋଇ ପାରନ୍ତି ସେହି ସେ ବିବେଚନା କରି ଯହିଁରେ ସେ ବିପଦରୁ ଉତ୍ତୀର୍ଣ୍ଣ ହେବେ ତାହାର ଉପାୟ ଅବଲମ୍ବନ କରିବେ । ୨୦ । ଯେଉଁ ବ୍ୟକ୍ତି ଅଲୌହ (୧) ନିଶିତ (୨) ଶରୀର ସଂହାରକ ଶସ୍ତ୍ର (୩) ଓ ତାହାର ପ୍ରତିକାର ଅବଗତ ହୋଇଥାନ୍ତି ସେହି ପ୍ରତିକାରପରାୟଣ ବ୍ୟକ୍ତିଙ୍କ ଶତ୍ରୁମାନେ କଦାପି

---

୧ । ଅଲୌହ—ଲୌହ ନିର୍ମିତ ନୁହଇ; ପକ୍ଷାନ୍ତରରେ ଅଲ ଶବ୍ଦର ଅର୍ଥ ଅନଲ; ଏଠାରେ ଅନଲର ସାହାଯ୍ୟକାରୀ ଜତୁ, ଶଣ, ସର୍ଜରସ ପ୍ରଭୃତି ଆଗ୍ନେୟ ଦ୍ରବ୍ୟମାନ ଯେଉଁ ଗୃହରେ ଅଛି ସେ ଗୃହ ଅଲୌହ ।

୨ । ନିଶିତ—ତୀକ୍ଷ୍ଣ, ପକ୍ଷାନ୍ତରରେ ନିଶି, ରାତ୍ରିକାଳରେ, ତତ୍ ଅର୍ଥାତ୍ ବିସ୍ତୃତ ପ୍ରଜ୍ୱଳିତ ରୂପେ ।

୩ । ଶସ୍ତ୍ର—ପକ୍ଷାନ୍ତରରେ ଶୟନ ଗୃହ ।

ନଷ୍ଟ କରି ପାରନ୍ତି ନାହିଁ । ୨୧ । କକ୍ଷଘ୍ନ (୪) ଓ ଶିଶିରଘ୍ନ, ସବୁ ତୃଣ ସମୂହରେ ଥାଏ; କିନ୍ତୁ ସାବଧାନ ଶତ୍ରୁଙ୍କୁ ସେ ନଷ୍ଟ କରି ପାରେ ନାହିଁ; ଏହିସବୁ ବୁଝି ସୁଝି ଯେ ଆପଣାକୁ ରକ୍ଷା କରି ପାରନ୍ତି ସେ ଜୀବିତ ଥାନ୍ତି । ୨୨ ।

ଯାହାଙ୍କର ଚକ୍ଷୁଃ ନାହିଁ ସେ ପଥ ଅଥବା ଦିକ୍‌ମାନଙ୍କୁ ଜ୍ଞାତ ହୋଇ ପାରନ୍ତି ନାହିଁ; ଯାହାଙ୍କର ଧୈର୍ଯ୍ୟ ନାହିଁ ସେ ଐଶ୍ବର୍ଯ୍ୟଶାଳୀ ହୋଇପାରନ୍ତି ନାହିଁ । ଆମ୍ଭର ଏହି ଉପଦେଶ ଉତ୍ତମ ରୂପେ ହୃଦୟଙ୍ଗମ କରି ଯେଉଁ ବ୍ୟକ୍ତି ଶତ୍ରୁମାନଙ୍କ ନିର୍ମିତ ଅଲୌହ ଜାତ ଶସ୍ତ୍ରର ବିପର୍ଯ୍ୟୀଭୂତ ହୁଅନ୍ତି ସେ ଶଲ୍ଲକୀ ଗୃହରେ ଯେପରି ଉଭୟ ଦିଗର ନିର୍ଗମନର ବିବର ଥାଏ, ସେହିପରି ପଥ ଦ୍ୱାରା ହୁତାଶନରୁ ବିମୁକ୍ତ ହୋଇ ପାରନ୍ତି । ୨୪ ! ବିଚରଣ କଲେ ମାର୍ଗ କେଉଁଠାରେ ତାହା ଜଣା ପଡ଼ଇ, ନକ୍ଷତ୍ର ଦ୍ୱାରା ଦିଗ୍‌ନିରୂପଣ ହୁଅଇ; ଯେଉଁ ବ୍ୟକ୍ତି ଆପଣାର ପଞ୍ଚଇନ୍ଦ୍ରିୟକୁ ଆପେ ପୀଡ଼ିତ କରଇ, ସେ ଶତ୍ରୁଦ୍ୱାରା ପୀଡ଼ିତ ହୁଅଇ ନାହିଁ । ୨୫ । ପାଣ୍ଡୁନନ୍ଦନ ଧର୍ମ୍ମରାଜ ଯୁଧିଷ୍ଠିର ବିଜ୍ଞତମ ବିଦୁରଙ୍କର ଏହି କଥା ଶ୍ରବଣ କରି 'ଜ୍ଞାତ ହେଲୁଁ' ବୋଲି ବୋଇଲେ । ୨୬ ।

ବିଦୁର ପାଣ୍ଡବମାନଙ୍କୁ ଉକ୍ତ ଉପଦେଶ ପ୍ରଦାନାନ୍ତର କିୟଦ୍ଦୂର ଅନୁଗମନ ପୂର୍ବକ ପ୍ରଦକ୍ଷିଣ ଓ ସମ୍ଭାଷଣ କରି ଗୃହକୁ ପ୍ରତ୍ୟାଗମନ କଲେ । ଭୀଷ୍ମ, ପୌରଜନ ଓ ବିଦୁର ସମସ୍ତେ ପ୍ରତିନିବୃତ୍ତ ହୁଅନ୍ତେ କୁନ୍ତୀ ଅଜାତଶତ୍ରୁଙ୍କୁ କହିଲେ ଜନମାନଙ୍କ ମଧ୍ୟରେ କ୍ଷତ୍ତା ତୁମ୍ଭଙ୍କୁ ଯେଉଁ ବଚନ ନ କହିଲା ପରି କହିଲେ ଏବଂ ଯାହା ଶୁଣି ତୁମ୍ଭେ ଜାଣିଲୁଁ ବୋଲି ବୋଇଲ ସେ କି କହିଲେ ତାହା ଅମ୍ଭେମାନେ ବୁଝି ପାରିଲୁ ନାହିଁ; ଯଦି ସେ କଥା ଅମ୍ଭମାନଙ୍କର ଜାଣିବାର ଯୋଗ୍ୟ ହୁଏ ଓ ଓ ଦୂଷଣାବହ ନୁହେ, ତେବେ ତୁମ୍ଭ ଦୁହିଁଙ୍କର ସମ୍ବାଦ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୩୦ ।

---

୪ । କକ୍ଷଘ୍ନ ଓ ଶିଶିରଘ୍ନ—ବାଣ ବିଶେଷର ନାମ, ପକ୍ଷାନ୍ତରରେ ମ୍ଲେଚ୍ଛ ଭାଷାରେ କୁକ୍ଷିକୁ କକ୍ଷ ବୋଲି; କୁକ୍ଷୀ ଅର୍ଥାତ୍ ପାର୍ଶ୍ୱବର୍ତ୍ତୀ ସୁଦୋଚନ ଭୂମିର ହନ୍ତା; ଯେହି ମହା କକ୍ଷରେ ଅର୍ଥାତ୍ ବୃହତ୍ ଗୃହରେ ଶିଶିରଘ୍ନ ଅର୍ଥାତ୍ ଶତ୍ରୁଦିନାବସ୍ଥାରେ ନାଶ କରିବାକୁ ଉଦ୍ୟତ, ଅତଏବ ତୁମ୍ଭେମାନେ ସେଠାରେ ବିଲୌକସ ହେବ ଅର୍ଥାତ୍ ବିଲ ମଧ୍ୟରେ ପ୍ରବେଶ କରିବ ।

ଯୁଧିଷ୍ଠିର ବୋଇଲେ—ଧର୍ମବୁଦ୍ଧି ବିଦୁର ଆମ୍ଭଙ୍କୁ କହିଲେ ଯେ ଗୃହରୁ ଅଗ୍ନି ଜ୍ୱଳିତ ହେବ, କୌଣସି ପଥ ତ ତୁମ୍ଭଙ୍କ ଅବିଦିତ ନୁହେଁ, ଅଧିକର ସେ ଆମ୍ଭଙ୍କୁ କହିଲେ, ଯେ ଜିତେନ୍ଦ୍ରିୟ ହେବେ, ସେ ବସୁଧାକୁ ପ୍ରାପ୍ତ ହେବେ । ଅମ୍ଭେ ତାହାଙ୍କୁ ପ୍ରତ୍ୟୁତ୍ତର ଦେଲୁଁ ଯେ, ତୁମ୍ଭେ ଯାହା କହିଲ ତାହା ସବୁ ଆମ୍ଭେ ଜାଣିଲୁଁ । ୩୨ ।

ବୈଶମ୍ପାୟନ ବୋଇଲେ—ଫାଲ୍‌ଗୁନ ମାସର ଅଷ୍ଟମୀ ଦିବସରେ ରୋହିଣୀ ନକ୍ଷତ୍ରରେ ପାଣ୍ଡବମାନେ ବାରଣାବତରେ ଉପସ୍ଥିତ ହୋଇ ନଗରବାସୀ ଜନମାନଙ୍କ ସହିତ ସାକ୍ଷାତ କଲେ । ୩୩ ।

---

## ଅଧ୍ୟାୟ ୧୪୭

ତହିଁରେ ସବୁ ପ୍ରଜାମାନେ ନରଶ୍ରେଷ୍ଠ ପାଣ୍ଡବମାନଙ୍କ ଆସିବାର ଶୁଣି ପରମପ୍ରମୋଦରେ ବାରଣାବତ ନଗରରୁ ନାନାବିଧ ଯାନରେ ସହସ୍ର ସହସ୍ର ହୋଇ ଅଭିଗମନ କଲେ । ୨ । ବାରଣାବତ ନଗରର ଜନମାନେ କୁନ୍ତୀ-ପୁତ୍ରଙ୍କ ନିକଟକୁ ଆସି ସେମାନଙ୍କ 'ଜୟହେଉ' ବୋଲି ଆଶୀର୍ବାଦ କରି ତାହାଙ୍କର ଚତୁଃପାର୍ଶ୍ୱରେ ଅବସ୍ଥିତ ହେଲେ । ୩ । ପୁରୁଷବ୍ୟାଘ୍ର ଧର୍ମରାଜ ଯୁଧିଷ୍ଠିର ସେମାନଙ୍କଦ୍ୱାରା ପରିବୃତ ହୋଇ, ଦେବତା ପ୍ରାୟ ଦୃଶ୍ୟ ହେଲେ; ଯେପରିକି ବଜ୍ରପାଣି ଅମରଗଣରେ ବେଷ୍ଟିତ ହୋଇଅଛନ୍ତି । ପୁରଜନମାନଙ୍କ ଦ୍ୱାରା ସତ୍କୃତ ହୋଇ ସେମାନଙ୍କୁ ସତ୍କାର କରି ଅନଘ ପାଣ୍ଡବମାନେ ଜନାକୀର୍ଣ୍ଣ ଓ ସମଲଙ୍କୃତ ବାରଣାବତ ନଗରକୁ ପ୍ରବେଶ କଲେ । ୫ । ହେ ମହୀପାଳ ! ସେହି ବୀରମାନେ ପୁରୀ ମଧ୍ୟରେ ପ୍ରବିଷ୍ଟ ହୋଇ ଶୀଘ୍ର ବେଦାଧ୍ୟୟନାଦି ସ୍ୱକର୍ମରତ ବ୍ରାହ୍ମଣମାନଙ୍କ ଗୃହକୁ ଗମନ କଲେ । ତହିଁରେ କ୍ରମଶଃ ନଗରାଧିକାରୀ, ରଥୀ, ବୈଶ୍ୟ ଓ ଶୂଦ୍ରମାନଙ୍କ ଗୃହରେ ଉପସ୍ଥିତ ହେଲେ । ୭ ।

ହେ ଭରତର୍ଷଭ ! ପାଣ୍ଡୁପୁତ୍ରମାନେ ପୌରଜନମାନଙ୍କ ଦ୍ୱାରା ଅର୍ଚ୍ଚିତ ହୋଇ ଅଗ୍ରଗାମୀ ପୁରୋଚନଙ୍କ ସହିତ ଆବସଥକୁ ଗମନ କଲେ ।୮। ପୁରୋଚନ ସେମାନଙ୍କୁ ଉତ୍ତମ ଭକ୍ଷ, ପାନ ଓ ଶୟନ ପ୍ରଧାନ ଆସନମାନଙ୍କ ପ୍ରଦାନ କଲେ । ୯ । ସେଠାରେ ସେମାନେ ପୁରୋଚନଙ୍କ ଦ୍ୱାରା ପୂଜିତ ହୋଇ ସୁମହାମୂଲ୍ୟ ପରିଚ୍ଛଦ ଧାରଣ କରି ଅନୁଚର ବର୍ଗଙ୍କ ଦ୍ୱାରା

ସେବିତ ହୋଇ ପୁରବାସୀଙ୍କ ସହିତ ବାସକଲେ । ୧୦ । ଦଶରାତ୍ର ସେମାନେ ସେଠାରେ ବାସ କଲେ । ପରେ ପୁରୋଚନ ସେମାନଙ୍କୁ 'ଶିବ' ନାମକ ବାସ୍ତବରେ ସେହି ଅଶିବ ଗୃହର କଥା ଜଣାଇଲେ । ୧୧ । ଗୁହ୍ୟକଗଣ ଯେପରି କୈଳାସ ଭବନକୁ ପ୍ରବେଶ କରନ୍ତି ସେହିପରି ପୁରୋଚନଙ୍କ ବଚନାନୁସାରେ ପୁରୁଷଶ୍ରେଷ୍ଠ ପାଣ୍ଡୁପୁତ୍ରମାନେ ପରିଚ୍ଛଦ ଧାରଣ କରି ନିର୍ଦ୍ଦିଷ୍ଟ ବେଶ୍ମରେ ପ୍ରବେଶ କଲେ । ୧୨ । ସର୍ବଧାର୍ମିକ ଶ୍ରେଷ୍ଠ ଯୁଧିଷ୍ଠିର ସେହି ଅଗାରକୁ ଅବଲୋକନ କରି ତଦୁତ୍ଥିତ ଘୃତ ମିଶ୍ରିତ ଜତୁର ଓ ବସାର ଗନ୍ଧ ପ୍ରାପ୍ତ ହୋଇ ଭୀମସେନଙ୍କୁ ବୋଇଲେ, ଏ ଗୃହ ଆଗ୍ନେୟ ଅଟେ । ୧୩ ।

ହେ ପରନ୍ତପ ! ଶଣ ଓ ସର୍ଜରସ, ଅଣି ମଞ୍ଜ, ବଲ୍ୱଳ ଓ ବଂଶାଦି ଦ୍ରବ୍ୟରେ ଘୃତ ମିଶ୍ରିତ କରି ବିଶ୍ୱାସୀ ଓ ନିପୁଣ ଶିଳ୍ପୀମାନଙ୍କ ଦ୍ୱାରା ପାପମତି ପୁରୋଚନ ଅମ୍ଭମାନଙ୍କୁ ଦଗ୍ଧ କରିବା ମାନସରେ ଏହି ଗୃହ ନିର୍ମାଣ କରାଇ ଅମ୍ଭଠାରେ ବିଶ୍ୱାସ ଉତ୍ପନ୍ନ କରାଇ ଅଛି ଓ ସ୍ୱୟଂ ଦୁର୍ଯ୍ୟୋଧନଙ୍କ ବଶରେ ଅଛି । ୧୬ । ସେହି ହେତୁରୁ ହେ ପାର୍ଥ ! ମହାମତି ବିଦୁର ଏହି ଆପଦ ଜାଣି ପାରି ପୂର୍ବରୁ ଅମ୍ଭଙ୍କୁ ଜଣାଇ ଦେଲେ । ୧୭ । ସେହି କନିଷ୍ଠ ପିତୃବ୍ୟ ମହାଶୟ ସ୍ନେହବଶରୁ ଅମ୍ଭ-ମାନଙ୍କର ହିତାକାଙ୍‌କ୍ଷୀ ହୋଇ ଜଣାଇ ଦେଲେ ଯେ ଦୁର୍ଯ୍ୟୋଧନଙ୍କର ବଶବର୍ତ୍ତୀ ନିର୍ଦ୍ଦୟ ଲୋକେ ଗୂଢ଼ଭାବରେ ଏହି ଅମଙ୍ଗଳକର ଗୃହକୁ ସୁନ୍ଦରରୂପେ ନିର୍ମାଣ କରାଇ ଅଛନ୍ତି । ୧୮ ।

ଭୀମସେନ ବୋଇଲେ—ଏ ଗୃହକୁ ଆପଣ ଯେବେ ଆଗ୍ନେୟ ବୋଲି ମଣନ୍ତି ଅମ୍ଭେ ପୂର୍ବେ ଯେଉଁଠାରେ ଥିଲୁଁ, ଚାଲ ସେହି ସ୍ଥାନକୁ ଗମନ କରିବା । ୧୯ ।

ଯୁଧିଷ୍ଠିର ବୋଇଲେ—ଅମ୍ଭର ଅଭିପ୍ରାୟ ଏହି ଯେ ଅମ୍ଭେମାନେ ଯତ୍ନପୂର୍ବକ ସତର୍କ ହୋଇ ଏହି ସ୍ଥାନରେ ଅବସ୍ଥିତ କରିବା ଯେପରିକି ଅମ୍ଭ ଆକାରରୁ କୌଣସି ଚେଷ୍ଟା ପ୍ରକାଶ ନ ପାଏ; ତପରେ ବହିର୍ଗମନରେ ପଥ ଅନ୍ୱେଷଣ କରିବା । ଯଦି ପୁରୋଚନ ଅମ୍ଭମାନଙ୍କର ଆକାର କି ଇଙ୍ଗିତରୁ ଜାଣି ପାରିବ ଯେ ଅମ୍ଭେ ସତର୍କ ଅଛୁଁ, ତେବେ ସେ ଅମ୍ଭଙ୍କୁ ତତ୍‌କ୍ଷଣାତ୍ ଦଗ୍ଧ କରିବ । ୨୧ । ପୁରୋଚନ ଲୋକ ନିନ୍ଦା କି ଅଧର୍ମରୁ ଭୀତ ହୁଅଇ ନାହିଁ । ସେହି ମନ୍ଦବୁଦ୍ଧି ଦୁର୍ଯ୍ୟୋଧନର ଆଜ୍ଞାନୁବର୍ତ୍ତୀ ହୋଇ

ଏହି ଅହିତାଚରଣ କରିବାରେ ପ୍ରବୃତ୍ତ ହୋଇଅଛି । ୨୨ । ଆମ୍ଭେମାନେ ଦଗ୍ଧ ହେଲେ ପିତାମହ ଭୀଷ୍ମ ମଧ୍ୟ କି ନିମିତ୍ତ କୁପିତ ହେବେ ? ସେ କୁପିତ ହୋଇ ଦୁର୍ଯ୍ୟୋଧନାଦି କୌରବଙ୍କୁ କିପାଇଁ କୁପିତ କରାଇବେ ? ତେବେ ଅନ୍ୟ ଯେଉଁ କୌରବ ଶ୍ରେଷ୍ଠମାନେ ଅଛନ୍ତି ସେମାନେ କୋପ ପ୍ରକାଶ କରି ପାରନ୍ତି । ୨୪ । ଆମ୍ଭେମାନେ ଯେବେ ଦାହ ଭୟରେ ପଳାୟନ କରିବା ତେବେ ରାଜ୍ୟଲୁବ୍ଧ ସୁଯୋଧନ ଦୂତ ଦ୍ୱାରା ଆମ୍ଭମାନଙ୍କ ସମସ୍ତଙ୍କୁ ବିନଷ୍ଟ କରି ପାରିବ । ୨୫ । ସେହି ଦୁରାତ୍ମା ଅଧୁନା ପଦସ୍ଥ, ସହାୟ ସମ୍ପନ୍ନ ଓ ମହାଐଶ୍ୱର୍ଯ୍ୟର ଅଧିକାରୀ, ଅଧୀଶ୍ୱର; ଆମ୍ଭେମାନେ ଅପଦସ୍ଥ, ସହାୟହୀନ, ଓ ନିରୈଶ୍ୱର୍ଯ୍ୟ, ସୁତରାଂ ସେ ବିବିଧ ଉପାୟ ଦ୍ୱାରା ଆମ୍ଭମାନଙ୍କୁ ସଂହାର କରି ପାରିବ, ଏଥିରେ ସନ୍ଦେହ ନାହିଁ । ୨୬ ।

ଅତଏବ ଆମ୍ଭେମାନେ ପାପାତ୍ମା ପୁରୋଚନ ଓ ସୁଯୋଧନଙ୍କୁ ବଞ୍ଚିତ କରି ସ୍ଥାନେ ସ୍ଥାନେ ପ୍ରଚ୍ଛନ୍ନ ଭାବେ ବାସ କରିବା । ୨୭ । ଆମ୍ଭେମାନେ ମୃଗୟାଶୀଳ ହୋଇ ଏହି ବସୁଧାରେ ଭ୍ରମଣ କରିବା; ଆମ୍ଭେମାନେ ପଳାୟନ କଲୁଁ ବୋଲି ସେ ଜାଣି ପାରିବେ ନାହିଁ । ୨୮ । ଅଦ୍ୟ ଆମ୍ଭେମାନେ ଅତି ସଂଗୋପନରେ ଭୂମିମଧ୍ୟରେ ଗୋଟିଏ ବିଲ ନିର୍ମାଣ କରିବା; ଗୋପନରେ ଏ ରୂପ କାର୍ଯ୍ୟ କଲେ ଆମ୍ଭମାନଙ୍କୁ ହୁତାଶନ ଦଗ୍ଧ କରି ପାରିବ ନାହିଁ । ୨୯ । ପୁରୋଚନ ଅଥବା କେହି ପୌରଜନ ଆମ୍ଭର ଏହି ଅଭିପ୍ରାୟ ଜାଣି ନ ପାରନ୍ତି, ସେହିପରି ଅତନ୍ଦ୍ରିତ ହୋଇ କାର୍ଯ୍ୟ କରିବା । ୩୦ ।

---

## ୧୪୭ ଅଧ୍ୟାୟ

ବୈଶମ୍ପାୟନ ବୋଇଲେ—ହେ ରାଜନ୍ ! ବିଦୁରଙ୍କର ସୁହୃଦ୍ ଓ ଭୂମିଖନନ କାର୍ଯ୍ୟରେ ଦକ୍ଷ ଜଣେ ବ୍ୟକ୍ତି ଆସି ନିର୍ଜ୍ଜନରେ ପାଣ୍ଡବମାନଙ୍କୁ କହିଲା,—ଆମ୍ଭେ ଖନକ, ଭୂମି ଖନନରେ ନିପୁଣ; ବିଦୁର ଆମ୍ଭଙ୍କୁ ପ୍ରେରଣ କରି ଅଛନ୍ତି ଓ କହି ଅଛନ୍ତି ଯେ ତୁମ୍ଭେ ପାଣ୍ଡବମାନଙ୍କର ପ୍ରିୟ କାର୍ଯ୍ୟ କରିବ; ଆପଣମାନଙ୍କର କି କାର୍ଯ୍ୟ କରିବୁଁ । ୨ । ବିଦୁର ଆମ୍ଭଙ୍କୁ ପ୍ରଚ୍ଛନ୍ନ ଭାବରେ କହି ଅଛନ୍ତି ତୁମ୍ଭେ ପାଣ୍ଡବମାନଙ୍କର ଶ୍ରେୟସ୍କର; ଆପଣଙ୍କର କି କାର୍ଯ୍ୟ କରିବ ? କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ରାତିରେ ପୁରୋଚନ ଏହି ଭବନର

ଦ୍ୱାରଦେଶରେ ହୁତାଶନ ପ୍ରଦାନ କରିବ । ୪ । ମାତାଙ୍କ ସହିତ ପୁରୁଷ ଶ୍ରେଷ୍ଠ ପାଣ୍ଡବମାନେ ଦଗ୍‌ଧ ହେବେ ବୋଲି ଦୁର୍ମତି ଦୁର୍ଯୋଧନ ସ୍ଥିର କରିଅଛି । ୫ । ହେ ପାଣ୍ଡବ ! ବିଦୁର ତୁମ୍ଭଙ୍କୁ କିଛି ମ୍ଳେଚ୍ଛ ଭାଷାରେ କହିଥିଲେ ତୁମ୍ଭେ 'ହେଉ' ବୋଲି ଉତ୍ତର କଲ । ତୁମ୍ଭେ ଆମ୍ଭଙ୍କୁ ବିଶ୍ୱାସ କରିବ ବୋଲି ଅମ୍ଭଙ୍କୁ ସେ କହି ଦେଇ ଅଛନ୍ତି । ୬ ।

ସତ୍ୟବ୍ରତ କୁନ୍ତୀପୁତ୍ର ଯୁଧିଷ୍ଠିର କହିଲେ—ହେ ସୌମ୍ୟ ! ଅମ୍ଭେ ଜାଣିଲୁଁ ତୁମ୍ଭେ ବିଦୁରଙ୍କର ସୁହୃତ୍, ବିଶୁଦ୍ଧ ଚରିତ, ଅପଶାର, ପ୍ରିୟ ଓ ସର୍ବଦା ତାହାଙ୍କର ଦୃଢ଼ ଭକ୍ତ ଅଟ । ବିଦୁର ସର୍ବଜ୍ଞ, ତାହାଙ୍କର ଅବିଦିତ କୌଣସି ବିଷୟ ନାହିଁ । ୮ । ଅମ୍ଭେମାନେ ତାହାଙ୍କର ଯେପରି, ତୁମ୍ଭର ମଧ୍ୟ ସେପରି ଅଟୁ । ଅମ୍ଭେମାନେ ତାହାଙ୍କୁ ଯଦ୍ରୂପ ସ୍ନେହ କରୁଁ ତୁମ୍ଭଙ୍କୁ ମଧ୍ୟ ତଦ୍ରୂପ କରୁଁ । ସର୍ବଜ୍ଞ ବିଦୁରଙ୍କ ପ୍ରାୟ ତୁମ୍ଭେ ଅମ୍ଭମାନଙ୍କୁ ପାଳନ କର, ତାହାଙ୍କର ଅମ୍ଭେମାନେ ଯେପରି ଅପଣଙ୍କର ମଧ୍ୟ ସେହିପରି ଅଟୁଁ । ୯ । ଅମ୍ଭର ଏହି ଧାରଣା ହୋଇଅଛି ଯେ ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯୋଧନଙ୍କ ଆଦେଶ ନୁସାରେ ପୁରୋଚନ ଏହି ଅଗ୍ନେୟ ଗୃହକୁ ଆମ୍ଭ ନିମିତ୍ତ ନିର୍ମାଣ କରିଅଛି । ୧୦ । ସେହି ପାପାତ୍ମା ଦୁର୍ମତି ଦୁର୍ଯ୍ୟୋଧନ କୋଷ ଓ ସହାୟସମ୍ପନ୍ନ ହୋଇ ନିତ୍ୟକାଳ ଆମ୍ଭମାନଙ୍କୁ ବାଧାଯୁକ୍ତ କରୁଅଛି । ୧୧ । ସେହି ଦୁରାତ୍ମାଙ୍କର ଏହି ସମୃଦ୍ଧ ଆୟୁଧାଗାର ଦେଖ; ତାହାକୁ ଆଶ୍ରୟ କରି ପ୍ରାଚୀରର ମୂଳ ଅବଧି ଶେଷ ପର୍ଯ୍ୟନ୍ତ ବହିର୍ଗମନର ପଥ-ଶୂନ୍ୟ ହୋଇ ଏହି ବୃହତ୍ ଗୃହ ନିର୍ମାଣକରିଅଛି ।୧୩। ଦୁର୍ଯ୍ୟୋଧନର ସଙ୍କଳ୍ପିତ ଏହି ଅଶୁଭ କର୍ମକୁ ବିଦୁର ପୂର୍ବରୁ ନିଶ୍ଚୟ ରୂପେ ଜାଣି ପାରି ଅମ୍ଭମାନଙ୍କୁ ସତର୍କ କରିଦେଲେ । ୧୪ । ବିଦୁର ଯେଉଁ ଆପଦକୁ ପୂର୍ବରୁ ଜାଣି ପାରିଥିଲେ ସେହି ଆପଦ ଆସି ଉପସ୍ଥିତ ହେଲା, ଅତଏବ ତୁମ୍ଭେ ପୁରୋଚନର ଅବିଦିତରେ ଅମ୍ଭମାନଙ୍କୁ ପ୍ରତିମୁକ୍ତ କର । ୧୫ ।

ଖନକ 'ତଥାସ୍ତୁ' ବୋଲି ପ୍ରତିଶ୍ରୁତ ହୋଇ ଯତ୍ନପୂର୍ବକ ଗୋଟିଏ ଅତି ମହାନ୍ ବିଲ ନିର୍ମାଣ କଲେ । । ୧୬ । ହେ ଭାରତ ! ଖନକ ସେହି ଗୃହର ଅଭ୍ୟନ୍ତରରେ ଅନ୍ୟର ଅବିଦିତ ଗୋଟିଏ ଅନତି ବୃହତ୍ ବିଲ ପ୍ରସ୍ତୁତ କରି ଓ ତାହାକୁ ଭୂମିର ସମାନ କରି, ତାହା ମୁଖରେ ଅଜ୍ଞାତରୂପେ କବାଟ ଯୁକ୍ତ କଲେ ଓ ପରିଖା ପରିଷ୍କାର କରିବା ବ୍ୟପଦେଶରେ ବିଲର ମୃତ୍ତିକାକୁ ଉତ୍କ୍ଷିପ୍ତ କଲେ ମଧ୍ୟ ପୁରୋଚନ ଭୟରୁ ତାହାର ମୁଖକୁ

ସମ୍ବୃତ କରି ରଖିଲେ । ୧୭ । ହେ ନୃପ ! ଅଶୁଭ ବୁଦ୍ଧି, ପୁରୋଚନ ସେ ଗୃହର ଦ୍ୱାରଦେଶରେ ସର୍ବଦା ବସିଥାଏ ଓ ପାଣ୍ଡବମାନେ ମଧ୍ୟ ଆୟୁଧ ଧରି ରାତ୍ରିରେ ଜାଗ୍ରତ ହୋଇ ବସିଥାନ୍ତି । ୧୮ । ଦିବସରେ ପାଣ୍ଡବମାନେ ଏକ ବନରୁ ବନାନ୍ତରକୁ ମୃଗୟା କରି ଭ୍ରମଣ କରନ୍ତି, ସେମାନେ ପୁରୋଚନକୁ ଅବିଶ୍ୱାସ କରି ବିଶ୍ୱାସ କଲା ପ୍ରାୟ ପ୍ରତୀତ ଜନ୍ମାଇ ତାହାକୁ ବଞ୍ଚିତ କଲେ । ହେ ରାଜନ୍ ! ସେମାନେ ଅତୁଷ୍ଟ ଥାଇ ମଧ୍ୟ ତୁଷ୍ଟ ହେଲା ପ୍ରାୟ ଆପଣାକୁ ଦେଖାଇ ପରମ ବିସ୍ମିତ ଭାବରେ ସେଠାରେ ବାସ କଲେ । ୧୯ । ବିଦୁରଙ୍କର ଅମାତ୍ୟ ସେହି ଖନକଙ୍କ ବ୍ୟତିରେକେ ନଗରବାସିମାନେ କେହି ତାହାଙ୍କର ଅଭିପ୍ରାୟ ବୋଧ କରି ପାରିଲେ ନାହିଁ । ୨୦ ।

---

## ଅଧ୍ୟାୟ ୧୪୮

ବୈଶମ୍ପାୟନ ବୋଇଲେ—ଅନନ୍ତର ସେମାନେ ଏକ ସମ୍ବତ୍ସର ସମୟ ସେଠାରେ ବିଶ୍ୱସ୍ତ ହୋଇ ବାସ କରିବାର ଦେଖି ପୁରୋଚନ ହର୍ଷାନ୍ୱିତ ହେଲା । ୧ । ପୁରୋଚନକୁ ହୃଷ୍ଟ ଦେଖି କୁନ୍ତୀସୁତ ଧର୍ମବିତ୍ ଯୁଧିଷ୍ଠିର ଭୀମସେନଙ୍କୁ, ଅର୍ଜୁନଙ୍କୁ ଓ ଦୁଇ ଯମଜଭ୍ରାତାଙ୍କୁ କହିଲେ—ପାପମତି ପୁରୋଚନ ଅସ୍ମମାନଙ୍କୁ ବିଶ୍ୱସ୍ତ ବୋଲି ବିଦିତ ହୋଇଅଛି । ଏହି ନୃଶଂସାତ୍ମା ବଞ୍ଚିତ ହୋଇଅଛି, ଏବେ ପଳାୟନର କାଳ ଉପସ୍ଥିତ ହେଲା ବୋଲି ଅମ୍ଭେ ଅନୁମାନ କରୁଅଛୁଁ । ଅମ୍ଭେମାନେ ଆୟୁଧାଗାରରେ ଅଗ୍ନି ସଂଯୋଗ ପୁରଃସର ପୁରୋଚନକୁ ଦଗ୍ଧ ପୂର୍ବକ ଛଅଜଣ ମନୁଷ୍ୟଙ୍କୁ ଏଠାରେ ରଖି ଲୋକଙ୍କର ଅଲକ୍ଷିତ ରୂପେ ପଳାୟନ କରିବା । ୪ । ଅନନ୍ତର ଦାନ କରିବା ଛଳନାରେ ହେ ମହାରାଜା କୁନ୍ତୀ ରାତ୍ରିରେ ବ୍ରାହ୍ମଣ ଭୋଜନ କରାଇଲେ । ସେଠାକୁ ସ୍ତ୍ରୀ ଲୋକମାନେ ମଧ୍ୟ ଆଗମନ କଲେ । ହେ ଭାରତ ! ସେ ସ୍ତ୍ରୀମାନେ ଇଚ୍ଛାନୁରୂପ ପାନ ଭୋଜନ ଓ ବିହାର କରି କୁନ୍ତୀଙ୍କଠାରୁ ବିଦାୟ ହୋଇ ସ୍ୱ ସ୍ୱ ଗୃହକୁ ସେହି ରାତ୍ରିରେ ପ୍ରସ୍ଥାଣ କଲେ । ୬ ।

ଦୈବ ଗତି କ୍ରମେ ଗୋଟିଏ ନିଷାଦୀ କାଳ ପ୍ରଣୋଦିତ ହୋଇ ପଞ୍ଚପୁତ୍ର ସହିତ ଭୋଜନ ନିମିତ୍ତ ସେଠାକୁ ଆଗମନ କରିଥିଲେ ? ହେ

ନିର୍ବାପ । ରାତିରେ ସେ ମଦିରା ପାନ କରି, ମତ୍ତ ହୋଇ ସେହି ନିବେଶନରେ ଜ୍ଞାନ ଶୂନ୍ୟ ଓ ମୃତକଳ୍ପ ହୋଇ ପୁତ୍ରମାନଙ୍କ ସହିତ ସେଠାରେ ଶୟନ କଲା । ୮ । ଏଥି ଉତ୍ତାରୁ ରାତିରେ ତୁମୂଳ ପବନ ପ୍ରବାହିତ ହୁଅନ୍ତେ ଓ ସମସ୍ତେ ନିଦ୍ରାରେ ସୁପ୍ତ ହୁଅନ୍ତେ, ଯେଉଁ ଗୃହରେ ପୁରୋଚନ ଶୟନ କରିଥିଲା, ସେହିଠାରେ ଭୀମ ଅଗ୍ନି ପ୍ରଦାନ କଲେ । ତତ୍ପରେ ଜତୁ ଗୃହର ଦ୍ୱାରରେ ଓ ସେହି ଗୃହର ଚତୁଃପାର୍ଶ୍ୱରେ ଅଗ୍ନି ପ୍ରଦାନ କଲେ । ୧୦ । ଅରିନ୍ଦମ ପାଣ୍ଡୁନନ୍ଦନ ମାନେ ସେ ଗୃହକୁ ଚତୁଃପାର୍ଶ୍ୱରୁ ସନ୍ଦୀପିତ ହେବାର ଦେଖି ମାତାଙ୍କ ସହ ସୁରଙ୍ଗ ମଧ୍ୟରେ ପ୍ରବେଶ କଲେ । ୧୧ । ତଦନନ୍ତର ବହ୍ନିବସ୍ଥଙ୍କର ସୁମହାନ୍ ପ୍ରତାପ ଓ ଶବ୍ଦ ଶ୍ରବଣ କରି ଜନମାନେ ଜାଗରିତ ହେଲେ ଓ ସେ ଗୃହକୁ ଦୀପ୍ତ ହେବାର ଦେଖି ବୋଇଲେ ।

ପୌରଜନ ମାନେ କହିଲେ—ଦୁର୍ଯ୍ୟୋଧନଙ୍କ ନିଯୁକ୍ତ, ଦୁର୍ବୁଦ୍ଧି ପାପାତ୍ମା ପୁରୋଚନ ସ୍ୱଜନମାନଙ୍କ ବିନାଶ ନିମିତ୍ତ ଏହି ଗୃହ ନିର୍ମାଣ କରାଇଥିଲେ, ଏବେ ତାହାକୁ ଦଗ୍ଧ କଲେ । ୧୩ । ହାୟ ! ଧୃତରାଷ୍ଟ୍ରଙ୍କର କି ଅସମୀଚୀନ ବୁଦ୍ଧି, ତାହାଙ୍କର କଦୁଷ ବୁଦ୍ଧିକୁ ଧିକ୍ । ସେ ଯାହା ନିଷ୍ପାପ ପାଣ୍ଡୁପୁତ୍ରମାନଙ୍କୁ ଶତ୍ରୁପ୍ରାୟ ଦଗ୍ଧ କଲେ । ୧୪ । ପରନ୍ତୁ ଯେଉଁ ପାପିଷ୍ଠ ପୁରୋଚନ ବିଶ୍ୱସ୍ତ ଓ ନିରପରାଧ ନରଶ୍ରେଷ୍ଠ ପାଣ୍ଡବମାନଙ୍କୁ ଦଗ୍ଧ କଲା ଏବେ ସେହି ଦୁରାତ୍ମା ଆପଣା କର୍ମଫଳରେ ସ୍ୱୟଂ ଦଗ୍ଧ ହେଲା । ୧୫ ।

ବୈଶମ୍ପାୟନ ବୋଇଲେ—ବାରଣାବତସ୍ଥିତ ଜନମାନେ ଏହିରୂପ ବିଳାପ କରି ରାତିରେ ସେହି ଗୃହର ଚତୁର୍ଦ୍ଦିଗରେ ବେଷ୍ଟନ କରି ରହିଲେ । ୧୬ । ଏଣେ ପରନ୍ତପ ପାଣ୍ଡବମାନେ ମାତାଙ୍କ ସହିତ ଅତିଶୟ ଦୁଃଖିତ ଚିତ୍ତରେ ଲୋକଙ୍କର ଅଲକ୍ଷିତ ହୋଇ ସୁରଙ୍ଗ ଦ୍ୱାରା ନିର୍ଗତ ହୋଇ ସତ୍ୱର ଗମନରେ ଉଦ୍ୟତ ହେଲେ । ୧୭ । କିନ୍ତୁ ସେମାନେ ସମସ୍ତେ ନିଦ୍ରାକଷ୍ଟ ହେବାରୁ ଓ ଶଙ୍କାନ୍ୱିତ ହୋଇଥିବାରୁ ମାତାଙ୍କ ସହିତ ଶୀଘ୍ର ଗମନ କରି ପାରିଲେ ନାହିଁ । ୧୮ । ହେ ରାଜେନ୍ଦ୍ର । ତତ୍କାଳରେ ଭ୍ରାତୃଗଣଙ୍କର ଓ ମାତାଙ୍କର ତଦ୍ରୂପ ଅବସ୍ଥା ଦେଖି ଭୀମସେନ ସେମାନଙ୍କୁ ସମସ୍ତଙ୍କୁ ଏକାବେଳେକେ ବହନ କରି ଗମନ କଲେ । ୧୯ । ଅତିଶୟ ବଳ ବୀର୍ଯ୍ୟଶାଳୀ ଓ ବାୟୁସଦୃଶ ବେଗବାନ୍ ଏବଂ ତେଜସ୍ୱୀ ବୃକୋଦର

ଜନନୀଙ୍କୁ ସ୍କନ୍ଧ ଦେଶରେ, ନକୁଳ ଓ ସହଦେବଙ୍କୁ କୋଡ଼ରେ ଓ ଯୁଧିଷ୍ଠିର ଓ ଅର୍ଜୁନଙ୍କୁ ବାହୁଦ୍ୱାରା ଧାରଣ କରି ବକ୍ଷଃସ୍ଥଳ ଦ୍ୱାରା ବୃକ୍ଷମାନଙ୍କୁ ଭଗ୍ନକରି ଓ ପଦଦ୍ୱୟରେ ମହୀତଳକୁ ବିଦାରଣ କରି ଦ୍ରୁତବେଗରେ ଗମନ କଲେ । ୨୯ ।

---

## ଅଧ୍ୟାୟ ୧୪୯

ବୈଶମ୍ପାୟନ ବୋଇଲେ—ଅନନ୍ତର ଏହି ସମୟରେ କବି ବିଦୁର ଏହି ଶୁଦ୍ଧଶୀଳ ଲୋକକୁ ପାଣ୍ଡବମାନଙ୍କର ବିଶ୍ୱାସ ଜନ୍ମିବା କାରଣ ସଙ୍କେତ ସହ ପ୍ରେରଣ କରିଥିଲେ, ସେହି ବ୍ୟକ୍ତି, ହେ କୌରବ ! ପାଣ୍ଡବମାନଙ୍କୁ ବନ ମଧ୍ୟରେ ଦେଖିଲେ ଯେ, ସେମାନେ ନଦୀର ଜଳ ମାପୁଅଛନ୍ତି । ଅତଏବ ବୁଦ୍ଧିମାନ୍ ବିଦୁର, ଚରଦ୍ୱାରା ପାପିଷ୍ଠ ଦୁର୍ଯୋଧନର ପାପବୁଦ୍ଧି ଓ ଚେଷ୍ଟା ଜ୍ଞାତ ହୋଇଥିଲେ, ସେହିହେତୁରୁ ଏହି ଜ୍ଞାତସାର ବ୍ୟକ୍ତିକୁ ପ୍ରେରଣ କରିଥିଲେ । ୩ । ସେହି ବ୍ୟକ୍ତି ପୁଣ୍ୟଯୁକ୍ତ ଭାଗୀରଥୀ ତୀରରେ ବିଶ୍ୱସ୍ତ ଜନମାନଙ୍କଦ୍ୱାରା ଗୋପନରେ ନିର୍ମିତ, ପବନ ବେଗ ସହିବାକୁ ସକ୍ଷମ, ଯନ୍ତ୍ରଯୁକ୍ତ, ପତାକା ଶୋଭିତ ଓ ମନ କିମ୍ବା ମାରୁତର ବେଗତୁଲ୍ୟ ବେଗଗାମିନୀ ଖଣ୍ଡିଏ ନୌକାକୁ ପାଣ୍ଡବମାନଙ୍କୁ ଦେଖାଇଦେଲେ ଓ ତାହାଙ୍କର ଜ୍ଞାପନାର୍ଥ କହିଲେ—ହେ ଯୁଧିଷ୍ଠିର ! ସର୍ବଜ୍ଞ ବିଦୁର ଆପଣଙ୍କର ସଜ୍ଞା ନିମିତ୍ତ ଯାହା କହିଅଛନ୍ତି ତାହା ଶ୍ରବଣ କରନ୍ତୁ । କକ୍ଷ ନାଶକ ଓ ଶିଶିରନାଶକ ଯେଉଁ ଦ୍ରବ୍ୟ ମହାକକ୍ଷ ମଧ୍ୟରେ ବିଳସ୍ଥିତ ବ୍ୟକ୍ତିମାନଙ୍କୁ ବିନଷ୍ଟ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଏହା ଜାଣି ଯେଉଁ ବ୍ୟକ୍ତି ଆପଣାକୁ ରକ୍ଷା କରିପାରେ ସେ ଜୀବିତ ଥାଏ । ୭ ।

ହେ ପାଣ୍ଡବ ! ଆମ୍ଭେ ବିଦୁରଙ୍କର ବିଶ୍ୱସ୍ତ ବ୍ୟକ୍ତି; ସେ ଆମ୍ଭଙ୍କୁ ଏହି ସଙ୍କେତ ଦେଇ ଏଠାକୁ ପ୍ରେରଣ କରିଅଛନ୍ତି, ଏଥିରେ ସନ୍ଦେହ କରିବ ନାହିଁ । ସେହି ବହୁଦର୍ଶୀ ମହାତ୍ମା ବିଦୁର ଏହା ମଧ୍ୟ କହିଅଛନ୍ତି, ହେ କୌନ୍ତେୟ ! ତୁମ୍ଭେ ରଣସ୍ଥଳରେ କର୍ଣ୍ଣଙ୍କୁ, ଭ୍ରାତୃଗଣ ସହ ଦୁର୍ଯୋଧନଙ୍କୁ ଓ ଶକୁନିଙ୍କୁ ପରାଜିତ କରିବ, ଏଥିରେ ସନ୍ଦେହ ନାହିଁ ।୯ । ଏବେ ଆପଣମାନେ ସମସ୍ତେ ଜଳ ପଥରେ ଏହି ସୁଖଗାମିନୀ ନୌକାଦ୍ୱାରା ଏ ସ୍ଥାନରୁ ମୁକ୍ତ ହେବେ ଏଥିରେ ସଂଶୟ ନାହିଁ । ୧୦ । ଅନନ୍ତର ସେହି

ନଟରାଜନଗଣମାନଙ୍କୁ ବ୍ୟଥିତ ହେବାର ଦେଖି ନାବରେ ସେମାନଙ୍କୁ ବସାଇ ଗଙ୍ଗାରେ ଗମନ କରିବା ବେଳେ ପୁନର୍ବାର ସେହି ବ୍ୟକ୍ତି ସେମାନଙ୍କୁ କହିଲେ – ବିଦୁର ଆପଣମାନଙ୍କର ମସ୍ତକ ଆଘ୍ରାଣ ପୂର୍ବକ ଆଲିଙ୍ଗନ କରି ପୁନଃପୁନଃ କହିଅଛନ୍ତି ଯେ ତୁମ୍ଭେମାନେ ପଥରେ ଅବ୍ୟଗ୍ର ହୋଇ ନିରାପଦରେ ଗମନ କରିବ । ୧୨ । ହେ ରାଜେନ୍ଦ୍ର ! ବିଦୁରଙ୍କ ପ୍ରେରିତ ସେହି ପୁରୁଷ ନରଶ୍ରେଷ୍ଠ ପାଣ୍ଡବମାନଙ୍କୁ ଏହି କଥାମାନ କହି ନାବଦ୍ୱାରା ଗଙ୍ଗାନଦୀକୁ ପାର କରି ଦେଲେ । ୧୩ । ତା'ପରେ ସମସ୍ତଙ୍କୁ ଗଙ୍ଗାନଦୀକୁ ପାର କରି ଜୟଯୁକ୍ତ ଆଶୀର୍ବାଦ କରି ସେ ବ୍ୟକ୍ତି ଯେଉଁ ଦିଗରୁ ଆସିଥିଲେ ସେହି ଦିଗକୁ ଗମନ କଲେ । ୧୪ । ମହାତ୍ମା ପାଣ୍ଡବ-ମାନେ ଗଙ୍ଗାନଦୀକୁ ଉତ୍ତୀର୍ଣ୍ଣ ହୋଇ ବିଦୁରଙ୍କଠାକୁ ପ୍ରତିସନ୍ଦେଶ ଦେଇ ଗୂଢ଼ଭାବରେ ଲୋକମାନଙ୍କର ଅଲକ୍ଷିତ ହୋଇ ଗମନ କଲେ । ୧୫ ।

---

## ଅଧ୍ୟାୟ ୧୫୦

ବୈଶମ୍ପାୟନ ବୋଇଲେ—ଅନନ୍ତର ରାତ୍ରି ବ୍ୟତୀତ ହେବାରୁ ଅଶେଷ ନଗରବାସୀ ଜନମାନେ ପାଣ୍ଡୁନନ୍ଦନମାନଙ୍କୁ ଦେଖିବା ଇଚ୍ଛାରେ ତ୍ୱରିତ ହୋଇ ସେଠାକୁ ଆଗମନ କଲେ । ଜ୍ୱଳନକୁ ନିର୍ବାପିତ କରି ସେହି ବ୍ୟକ୍ତିମାନେ ଦେଖିଲେ ଯେ ଜାତୁଷ ଗୃହ ଓ ତନ୍ମଧ୍ୟବର୍ତ୍ତୀ ସେହି ପୁରୋଚନ ଦଗ୍ଧ ହୋଇଅଛି । ୨ । ସେହି ଜନମାନେ ଉଚ୍ଚୈଃସ୍ୱରରେ କହିଲେ ଯେ ପାପକର୍ମୀ ଦୁର୍ଯ୍ୟୋଧନ ପାଣ୍ଡବଙ୍କ ବିନାଶ ନିମିତ୍ତ ଏହି କାର୍ଯ୍ୟ କରିଥିଲେ । ୩ । ପାପବୁଦ୍ଧି ଦୁର୍ଯ୍ୟୋଧନ ଯେ ପାଣ୍ଡବମାନଙ୍କୁ ଦଗ୍ଧ କଲେ ଏଥିରେ ଧୃତରାଷ୍ଟ୍ରଙ୍କର ସମ୍ମତି ଥିଲା, ତାହା ନୋହିଥିଲେ ସେ ଅବଶ୍ୟ ନିଷେଧ କରିଥାନ୍ତେ । ୪ । ଶାନ୍ତନୁତନୟ ଭୀଷ୍ମ, ଦ୍ରୋଣ, କୃପ ଓ ବିଦୁର ବା ଅନ୍ୟ କୌରବମାନେ ମଧ୍ୟ ଏ ବିଷୟରେ ଧର୍ମପ୍ରତି ଦୃଷ୍ଟି କଲେ ନାହିଁ । ୫ । ଅଧୁନା ଅମ୍ଭେମାନେ ଦୁରାତ୍ମା ଧୃତରାଷ୍ଟ୍ରଙ୍କ ନିକଟକୁ ଏହି ସମ୍ବାଦ ପଠାଇବା ଯେ ତୁମ୍ଭେ ପାଣ୍ଡବମାନଙ୍କୁ ଦଗ୍ଧ କରିଅଛ ଓ ତୁମ୍ଭର ମହା ମନୋରଥ ପୂର୍ଣ୍ଣ ହୋଇଅଛି । ୬ ।

ତତ୍ପରେ ସେମାନେ ଅଗ୍ନି ଉଦ୍‌ଘାଟନପୂର୍ବକ ନିର୍ବାପନ କରୁଁ କରୁଁ ପଞ୍ଚପୁତ୍ରଙ୍କ ସହିତ ଦଗ୍ଧ ନିରପରାଧିନୀ ନିଷାଦୀକୁ ଦେଖିଲେ । ୭ ।

ଏହି ଅବସରରେ ସେହି ବିଦୁରଙ୍କ ପ୍ରେରିତ ସେହି ଖନକ ଗୃହ ପରିଷ୍କାର କରି ବିଲଦ୍ୱାରକୁ ଅନ୍ୟର ଅଲକ୍ଷିତ ରୂପେ ଶୀଘ୍ର ପାଂଶୁଦ୍ୱାରା ଆଚ୍ଛାଦନ କଲେ । ୮ । ତତ୍ପରେ ନଗରବାସୀ ଜନମାନେ ଧୃତରାଷ୍ଟ୍ରଙ୍କ ପାଖକୁ ସମ୍ବାଦ ପଠାଇଲେ ଯେ ପାଣ୍ଡବମାନେ ଓ ଅମାତ୍ୟ ପୁରୋଚନ ଦଗ୍ଧ ହୋଇଗଲେ । ୯ । ରାଜା ଧୃତରାଷ୍ଟ୍ର ପାଣ୍ଡବମାନଙ୍କର ବିନାଶରୂପ ଅତି ଅପ୍ରିୟ ବାର୍ତ୍ତା ଶ୍ରବଣ କରି ସୁଦୁଃଖିତ ହୋଇ ବିଳାପ କଲେ । ୧୦ । ସେହି ବୀରମାନେ ମାତାଙ୍କ ସହ ଦଗ୍ଧ ହୁଅନ୍ତେ ଆମ୍ଭେ ଜାଣିଲୁଁ ଯେ ଅଦ୍ୟ ଆମ୍ଭର ଭ୍ରାତା ମହାଯଶା ପାଣ୍ଡୁ ଅବା ମୃତ ହେଲେ । ୧୧ । ଲୋକେ ଶୀଘ୍ର ବାରଣାବତ ନଗରକୁ ଗମନ କରନ୍ତୁ ଓ ସେଠାରେ ବୀର ପାଣ୍ଡବ-ମାନଙ୍କର ଓ କୁନ୍ତୀ ରାଜ ସୁତାଙ୍କର ସତ୍କାର କରନ୍ତୁ । ୧୨ । ଆମ୍ଭ କୁଳପ୍ରଥା ଅନୁସାରେ ଯେଉଁ ଶୁଭ ଓ ବୃହତ୍ କର୍ମମାନ କରିବାର ତାହା ମଧ୍ୟ ସମ୍ପାଦନ କରନ୍ତୁ । ଅନ୍ୟ ଯେଉଁ ବ୍ୟକ୍ତିମାନେ ସେଠାରେ କଳେବର ତ୍ୟାଗ କରିଅଛନ୍ତି, ତାହାଙ୍କର ବନ୍ଧୁମାନେ ମଧ୍ୟ ସେ ସ୍ଥାନକୁ ଗମନ କରନ୍ତୁ । ୧୩ । ପାଣ୍ଡବ କୁନ୍ତୀଙ୍କ ଉଦ୍ଦେଶ୍ୟରେ ଆମ୍ଭର ସାଧ୍ୟାନୁସାରେ ଧନ ବ୍ୟୟ କରି ଯେଉଁ ଯେଉଁ ସତ୍କାର୍ଯ୍ୟମାନ କରାଯାଇ ପାରେ ତାହା ସେମାନେ ସମ୍ପନ୍ନ କରନ୍ତୁ । ୧୪ । ଏହା କହି ଅମ୍ବିକାସୁତ ଧୃତରାଷ୍ଟ୍ର ଜ୍ଞାତିବର୍ଗରେ ପରିବାରିତ ହୋଇ ପାଣ୍ଡୁପୁତ୍ରମାନଙ୍କ ଉଦକ କ୍ରିୟା ସମ୍ପନ୍ନ କଲେ । ୧୫ ।

ସମସ୍ତେ ଶୋକପରାୟଣ ଓ ଏକତ୍ର ହୋଇ, ଅତିଶୟ ରୋଦନ କଲେ ହା ଯୁଧିଷ୍ଠିର ! କୌରବ ! ବୋଲି କହିଲେ । ଅପରଲୋକେ ହା ଭୀମ ! ବୋଲି ରୋଦନ କଲେ; ଅନ୍ୟମାନେ ହା ଫାଲଗୁନ ! ଅପର କେହି ହା ନକୁଳ ! ହା ସହଦେବ ! ଏହିପରି କହି ରୋଦନ କଲେ । କେହି କେହି ଆର୍ତ୍ତସ୍ୱରରେ କୁନ୍ତୀଙ୍କ ନିମିତ୍ତ ଶୋକକରି ରୋଦନକଲେ ।୧୭। ଅନ୍ୟ ପୌରଜନମାନେ ପାଣ୍ଡବଙ୍କ ନିମିତ୍ତ ଶୋକ କଲେ । ହେ ଦେବ ! ବିଦୁର ସମସ୍ତଙ୍କ ସଙ୍ଗରେ ଅଳ୍ପ ଶୋକ କଲେ । ୧୮ । ବାରଣାବତ ନଗରରୁ ମହାବଳ ପାଣ୍ଡବମାନେ ମାତାଙ୍କସହ ଛଅଜଣ ନିର୍ଗତ ହୋଇ ଗଙ୍ଗାତୀରରେ ଉପସ୍ଥିତ ହେଲେ ଓ କୈବର୍ତ୍ତମାନଙ୍କର ଭୁଜବଳର ବେଗରେ, ନଦୀର ସ୍ରୋତ ବେଗରେ ଓ ଅନୁକୂଳ ବାୟୁ ଜବରେ ଶୀଘ୍ର ପରପାରରେ ଉତ୍ତୀର୍ଣ୍ଣ ହେଲେ । ୨୦ । ତତ୍ପରେ ନାବକୁ ପରିତ୍ୟାଗ

ଙ୍କର ଦକ୍ଷିଣ ଦିଗକୁ ଗମନ କଲେ । ରାତିରେ ନକ୍ଷତ୍ରଗଣଙ୍କ ସୂଚିତ ପନ୍ଥାକୁ ଅବଗତ ହୋଇ ହେ ରାଜନ ! ଗହନ ବନରେ ଉପସ୍ଥିତ ହେଲେ । ୨୧ ।

ଅନନ୍ତର ପାଣ୍ଡୁନନ୍ଦନ ମାନେ ଶ୍ରାନ୍ତ, ପିପାସାର୍ତ୍ତି ଓ ନିଦ୍ରାରେ ଅନ୍ଧ ହୋଇ ମହାବୀର୍ଯ୍ୟ ଭୀମସେନଙ୍କୁ ପୁନର୍ବାର ବୋଇଲେ, ଏଥିରେ ଆଉ କି ଅଧିକ କଷ୍ଟ ଅଛି ? ଆମ୍ଭେମାନେ ଗହନ ବନରେ ଦିଗ ଜାଣି ପାରୁ ନାହୁଁ କି ଯିବାକୁ ଆଉ ଆମ୍ଭର ସାମର୍ଥ୍ୟ ନାହିଁ । ୨୩ । ସେହି ପାପୀ ପୁରୋଚନ ଦଗ୍ଧ ହେଲା କି ନାହିଁ ଆମ୍ଭେ ଜାଣି ପାରିଲୁ ନାହିଁ । ଏହି ଭୟରୁ ଆମ୍ଭେମାନେ ଅଲକ୍ଷିତ ହୋଇ କି ରୂପେ ମୁକ୍ତ ହେବୁ ? । ୨୪ । ହେ ଭାରତ ! ତୁମ୍ଭେ ପୂର୍ବପରି ପୁନର୍ବାର ଆମ୍ଭଙ୍କୁ ବହନ କରି ଚାଲ । ତୁମ୍ଭେ ଏକା ଆମ୍ଭ ମଧ୍ୟରେ ବଳବାନ୍ ଓ ବାୟୁପ୍ରାୟ ବେଗଗାମୀ । ୨୫ । ଧର୍ମ୍ମରାଜଙ୍କ ଠାରୁ ଏହା ଶୁଣି ମହାବଳ ଭୀମସେନ କୁନ୍ତୀଙ୍କୁ ଓ ଭ୍ରାତୃମାନଙ୍କୁ ଘେନି ଶୀଘ୍ର ଗମନ କଲେ । ୨୬ ।

---

## ଅଧ୍ୟାୟ ୧୬୧

ବୈଶମ୍ପାୟନ ବୋଇଲେ—ମହାବଳ ଭୀମସେନଙ୍କ ଗମନ କାଳରେ ଶାଖା ପଲ୍ଲବ ଯୁକ୍ତ, ବୃକ୍ଷ ପରିପୂର୍ଣ୍ଣ ସେହି ଅରଣ୍ୟାନି ତାହାଙ୍କ ପ୍ରବଳ ବେଗ ଭରରେ ସଞ୍ଚାଳିତ ହୋଇ ଘୂର୍ଣ୍ଣିତ ହେଲା ପ୍ରାୟ ଦୃଶ୍ୟ ହେଲା । ୧ । ଜ୍ୟେଷ୍ଠ ଓ ଆଷାଢ଼ ମାସରେ ଯେପରି ପ୍ରବଳ ବାୟୁ ପ୍ରବାହିତ ହୁଅଇ ସେହି ମହାବଳ ଭୀମସେନଙ୍କର ଜଙ୍ଘାବେଗରେ ସମୀରଣ ଉତ୍ଥିତ ହେଲା । ସେ ମହାବଳ ଯେଉଁ ସ୍ଥାନ ଦେଇ ଗମନ କଲେ ସେ ସ୍ଥାନରେ ଲତା ଓ ବୃକ୍ଷମାନେ ପାତିତ ହୋଇ ଗୋଟିଏ ମାର୍ଗ ହୋଇଗଲା । ୨ । ତାହାଙ୍କ ପଥର ସମୀପଜାତ ବୃହତ୍ ବୃହତ୍ ପୁଷ୍ପିତ ଓ ଫଳିତ ବୃହତ୍‌ବନସ୍ପତିମାନଙ୍କୁ ସେ ଭଗ୍ନ କରି ଗମନ କଲେ । ୩ । ଯେଉଁ ତେଜସ୍ୱୀ ମତ୍ତଗଜରାଜଙ୍କର ବୟସ ଷଷ୍ଟି ବର୍ଷ ହୋଇ ତାହାର ଅଙ୍ଗର ତିନିସ୍ଥାନରୁ ମଦଜଳ ପ୍ରସୃତ ହେଉଥାଏ, କ୍ରୁଦ୍ଧ ହୋଇ ବନରେ ଗମନ କଲାବେଳେ ସେ ଯେପରି ବନରେ ମହାଦ୍ରୁମମାନଙ୍କୁ ଭଗ୍ନ କରେ ତଦ୍ରୂପ ଭୀମସେନଙ୍କ ଗତିରେ ବୃହତ୍ ବୃହତ୍ ବୃକ୍ଷମାନ ଭଗ୍ନ ହେଲା । ୪ ।

ଗରୁଡ଼ ଓ ମାରୁତଙ୍କର ଗତି ସଦୃଶ ବେଗଗତି ଭୀମଙ୍କ ଗତି ବେଗରେ ପାଣ୍ଡୁ ପୁତ୍ରମାନଙ୍କର ମୂର୍ଚ୍ଛା ପ୍ରାପ୍ତ ହେଲା । ୫ । ତତ୍କାଳରେ ସେ ଭୁଜ ଦ୍ୱୟ ସଦୃଶ ପ୍ଳବ ଦ୍ୱାରା ଗଙ୍ଗା ପ୍ରବାହକୁ ଅନେକ ବାର ପାରହୋଇ ସୁଦ୍ଧା ଦୁର୍ଯ୍ୟୋଧନଙ୍କ ଭୟରୁ ପଥରେ ପ୍ରଚ୍ଛନ୍ନ ଭାବରେ ରହିଲେ । ୬ । ନଦୀ ତୀରରେ ଦୁର୍ଗମ ସ୍ଥାନ ସମୂହରେ ଯଶସ୍ୱିନୀ ସୁକୁମାରୀମାତାଙ୍କୁ ସେ ପୃଷ୍ଠରେ ବହନ କରି ଅତି କଷ୍ଟରେ ଗମନ କଲେ । ୭ ।

ହେ ଭରତର୍ଷଭ ! ଅନନ୍ତର ଯେଉଁ ସ୍ଥାନରେ ଫଳ ମୂଳ ଓ ଜଳ ଅତିଶୟ ଦୁଷ୍ପ୍ରାପ୍ୟ ଓ ହିଂସ୍ର ପଶୁ ପକ୍ଷୀମାନେ ଅବସ୍ଥିତ କରନ୍ତି, ଏପରି ଗୋଟିଏ ଭୟଙ୍କର ବନରେ ସାୟଂକାଳରେ ସେମାନେ ଉପସ୍ଥିତ ହେଲେ । ୮ । ସେହି ସ୍ଥଳରେ ଘୋର ଅନ୍ଧକାରମୟ ସନ୍ଧ୍ୟାସମୟ ଉପସ୍ଥିତ ହେଲା । ଦାରୁଣ ପଶୁ ପକ୍ଷୀମାନଙ୍କର ଘୋର ରବ ଶ୍ରୁତି ଗୋଚର ହେଲା, କ୍ରମଶଃ ଦିଗମାନ ଅପ୍ରକାଶ ହେଲେ, ଅକାଳ ବାୟୁ ମଧ୍ୟ ପ୍ରଚଣ୍ଡ ବେଗରେ ପ୍ରବାହିତ ହେଲା । ତହିଁରେ ତନସ୍ଥ ଶୀର୍ଣ୍ଣ ପତ୍ର ଓ ଶୁଷ୍କଫଳ ଯୁକ୍ତ କ୍ଷୁଦ୍ର ଓ ବୃହତ୍ ବୃକ୍ଷ ଓ ଲତା କେତେକ ଭଗ୍ନ ଓ କେତେକ ଅଭଗ୍ନ ହୋଇ ଅବନତ ହେଲେ । । ୧୦ । ସେହି କୌରବ୍ୟମାନେ ଶ୍ରମରେ ଓ ତୃଷ୍ଣାରେ ପ୍ରପୀଡ଼ିତ ଅଥଚ ବହୁଦିବସର ଅଭିଭୂତ ହୋଇ ତତ୍କାଳରେ ଗମନ କରିବାକୁ ଅଶକ୍ତ ହେଲେ । ୧୧ । ଭକ୍ଷ୍ୟ ଓ ପେୟ ବିହୀନ ସେହି ମହାବନରେ ସେମାନେ ଅବସ୍ଥାନ କଲେ, ପରେ କୁନ୍ତୀ ପିପାସାରେ ପରିକ୍ଳାନ୍ତା ହୋଇ ପୁତ୍ରମାନଙ୍କୁ ବୋଇଲେ—"ଅମ୍ଭେ ପଞ୍ଚ ପାଣ୍ଡବମାନଙ୍କର ମାତା ହୋଇ ଓ ସେମାନଙ୍କ ମଧ୍ୟରେ ଥାଇ ସୁଦ୍ଧା ତୃଷ୍ଣାରେ ପତିତ ହେଲୁଁ ।" ଏହା ପୁନଃ ପୁନଃ ସେମାନଙ୍କୁ କହିଲେ । ୧୩।

ଭୀମସେନ ମାତାଙ୍କର ତାଦୃଶ କାତର ବଚନ ଶ୍ରବଣ କରି ମାତୃସ୍ନେହ ବଶରୁ ତାହାଙ୍କର ଅନ୍ତଃକରଣ କରୁଣ ଭାବରେ ଉତ୍ତେଜିତ ହେଲା ଓ ସେ ପୁନର୍ବାର ଗମନ କରିବାକୁ ଉଦ୍ୟତ ହେଲେ । ୧୪ । ତଦନନ୍ତର ଭୀମ ସେହି ନିର୍ଜ୍ଜନ ଓ ଭୟାନକ ମହତ୍ ବନ ମଧ୍ୟରେ ପ୍ରବେଶ କରି ଗୋଟିଏ ରମଣୀୟ ବିପୁଳ ଛାୟା ଯୁକ୍ତ ବଟ ବୃକ୍ଷ ଦର୍ଶନ କଲେ । ୧୫ । ସେଠାରେ ସେମାନଙ୍କୁ ସମସ୍ତଙ୍କୁ ନିକ୍ଷେପ କରି ସେ ଭରତର୍ଷଭ କହିଲେ—ହେ ପ୍ରଭୋ ! ଆପଣମାନେ ଏଠାରେ ବିଶ୍ରାମ କରନ୍ତୁ, ଅମ୍ଭେ ପାନୀୟ ଅନ୍ୱେଷଣ କରିବୁଁ । ଜଳଚର ସାରସମାନେ

ମଧୁର ସ୍ୱରରେ ରବ ଦେଉଅଛନ୍ତି; ଆମ୍ଭେ ବୋଧ କରୁଅଛୁଁ ଏଠାରେ ନିଶ୍ଚୟ ମହତ ଜଳାଶୟ ଅଛି । ୧୭ । ସେ ଜ୍ୟେଷ୍ଠଭ୍ରାତାଙ୍କ ଦ୍ୱାରା ଗମନ କରିବାକୁ ଅନୁଜ୍ଞାତ ହେଲେ ଓ ଯେଉଁଠାରେ ଜଳଚାରୀ ସାରସମାନଙ୍କର ସ୍ୱନ ଶୁଭୁଥିଲା, ସେହି ସ୍ଥାନକୁ ଗମନ କଲେ । ୧୮ ।

ଭ୍ରାତୃବତ୍ସଳ ସେ ଭରତର୍ଷଭ ସେଠାରେ ସ୍ନାନାନ୍ତେ ଜଳପାନ କରି ଭ୍ରାତାମାନଙ୍କ ନିମିତ୍ତ ଜଳ ଗ୍ରହଣ କଲେ । ୧୯ । ହେ ଭାରତ ! ସେ ଆପଣା ଉତ୍ତରୀୟରେ ଜଳ ଆନୟନ କଲେ, ଦୁଇ କୋଶ ପଥରୁ ତ୍ୱରିତ ହୋଇ ମାତାଙ୍କ ସମୀପକୁ ଆସି ଦୁଃଖ ଓ ଶୋକରେ ପୀଡ଼ିତ ହୋଇ ଉରଗ ପ୍ରାୟ ନିଃଶ୍ୱାସ ତ୍ୟାଗ କଲେ । ୨୦ । ବୃକୋଦର ମାତାଙ୍କୁ ଓ ଭ୍ରାତାମାନଙ୍କୁ ସମସ୍ତଙ୍କୁ ସୁପ୍ତ ଦେଖି ଅତିଶୟ ବିଳାପ କଲେ । ୨୧ । ଅତଃପର ଆଉ କି ଅଧିକ କଷ୍ଟ ଆମ୍ଭେ ଦେଖିବୁ, ଆମ୍ଭର ଏଡ଼େ ମନ୍ଦଭାଗ୍ୟ ଯେ ଆମ୍ଭେ ଭ୍ରାତାମାନଙ୍କୁ ଅଦ୍ୟ ଭୂମିରେ ଶୟାନ ଦେଖିଲୁଁ । ୨୨ । ମହାମୂଲ୍ୟ ଶୟନରେ ପୂର୍ବେ ଯେ ବାରଣାବତରେ ଶୋଇ ନିଦ୍ରାପ୍ରାପ୍ତ ନୋହିଲେ ସେ ଅଦ୍ୟ ମହୀତଳରେ ସୁପ୍ତ ହୋଇଅଛନ୍ତି । ୨୩ । ଶତ୍ରୁସମୂହ ମର୍ଦ୍ଦନକାରୀ ବସୁଦେବଙ୍କର ଭଗିନୀ, କୁନ୍ତିରାଜାଙ୍କର ଦୁହିତା, ସର୍ବଲକ୍ଷଣ ସମ୍ପନ୍ନା କୁନ୍ତୀ, ବିଚିତ୍ରବୀର୍ଯ୍ୟଙ୍କର ବଧୂ ହୋଇ, ମହାତ୍ମା ପାଣ୍ଡୁଙ୍କର ଭାର୍ଯ୍ୟା ହୋଇ, ଅଥଚ ଆମ୍ଭର ଜନନୀ ଓ ପୁଣ୍ଡରୀକୋଦରସମ ପ୍ରଭାନ୍ୱିତା ସୁକୁମାରୀ ତଥା ଓ ମହାମୂଲ୍ୟ ଶୟନୋଚିତା ହୋଇ ଅଦ୍ୟ ପୃଥିବୀରେ ଶୟନ କରି ଅଛନ୍ତି । ଦେଖନ୍ତୁ, ଏହାଙ୍କର କି ଏପରି ଅବସ୍ଥା ହେବା ଉଚିତ । ୨୬ ।

ଧର୍ମ୍ମଙ୍କ ଠାରୁ ଇନ୍ଦ୍ରଙ୍କଠାରୁ ଓ ପବନଙ୍କ ଠାରୁ ଯେ ଏହି ସୁତ-ମାନଙ୍କୁ ପ୍ରସବ କରିଅଛନ୍ତି ଓ ଯେ ସର୍ବଦା ପ୍ରାସାଦୋପରି ଶୟନ କରିଥାଆନ୍ତି, ସେ ଅଦ୍ୟ ପରିଶ୍ରାନ୍ତା ହୋଇ ଭୂମିରେ ଶୟନ କରି ଅଛନ୍ତି । ୨୭ । ଏହି ନରଶ୍ରେଷ୍ଠମାନେ, ଯାହା ଭୂତଳରେ ଶୟନ କରିଅଛନ୍ତି ଓ ଆମ୍ଭେ ଯେ ତାହାଙ୍କୁ ତଦବସ୍ଥ ଦେଖୁଅଛୁଁ; ଏଥିରୁ ଅଧିକ ଆଉ କି କଷ୍ଟକର ବିଷୟ ଅଛି । ୨୮ । ଯେଉଁ ଧାର୍ମ୍ମିକ ନୃପତି ତ୍ରିଲୋକରେ ଅଧୀଶ୍ୱର ହେବାର ଯୋଗ୍ୟ ଅଟନ୍ତି, ସେ ଅଦ୍ୟ ପରିଶ୍ରାନ୍ତ ହୋଇ ପ୍ରାକୃତ ବ୍ୟକ୍ତି ପ୍ରାୟ ଭୂମିରେ ଶୟନ କରିଅଛନ୍ତି । ୨୯ । ନୀଳାମ୍ବୁଦପ୍ରାୟ ଶ୍ୟାମବର୍ଣ୍ଣ ଓ ନରେଶ୍ୱରମାନଙ୍କ

ମଧ୍ୟରେ ଅପ୍ରତିମ ଅର୍ଜୁନ ଭୂମିରେ ସାମାନ୍ୟ ଲୋକ ପ୍ରାୟ ଶୟନ କରି ଅଛନ୍ତି ଏଥିରୁ କଷ୍ଟକର ଆଉ କି ଅଛି ? । ୩୦ । ଦେବତାମାନଙ୍କ ମଧ୍ୟରେ ଯେ ରୂପ ଅଶ୍ୱିନୀ କୁମାର ତଦ୍‌ବତ୍ ରୂପବାନ ନକୁଳ ଓ ସହଦେବ ଦୁହେଁ ପ୍ରାକୃତ ଜନ ପ୍ରାୟ ଅଦ୍ୟ ଧରଣୀ ତଳରେ ଶୟନ କରି ଅଛନ୍ତି । ୩୧ ।

ଯେଉଁ ବ୍ୟକ୍ତିର ବିଷମ କୁଳ ପାଂଶନ ବ୍ୟକ୍ତିମାନେ ନ ଥାନ୍ତି ସେହି ବ୍ୟକ୍ତିମାନେ ଏକଜ* ଗ୍ରାମ ଦ୍ରୁମ ପ୍ରାୟ ସୁଖରେ କାଳକ୍ଷେପ କରିପାରେ । ୩୨ । ଗ୍ରାମ ମଧ୍ୟରେ ଜ୍ଞାତିଶୂନ୍ୟ † ପତ୍ର ଫଳାନ୍ୱିତ, ଗୋଟିଏ ବୃକ୍ଷଥିଲେ, ତାହାକୁ ଚୈତ୍ୟ ବୋଲି ସବୁ ଲୋକେ ପୂଜାକରନ୍ତି; ଯେଉଁମାନଙ୍କର ଅନେକ ଶୂର ଓ ଧାର୍ମିକ ଜ୍ଞାତିମାନେ ଥାଆନ୍ତି, ସେମାନେ ଏହି ସଂସାରରେ କ୍ଳେଶ ଶୂନ୍ୟ ହୋଇ ସୁଖରେ କାଳହରଣ କରି ପାରନ୍ତି । ୩୩ । କେହି କେହି ବଳବନ୍ତ, ସମୃଦ୍ଧିଶାଳୀ ମିତ୍ର-ବାନ୍ଧବ ଓ ସନ୍ତାନ ଯୁକ୍ତ ହୋଇ କାନନ-ଜାତ ଦ୍ରୁମମାନଙ୍କ ପ୍ରାୟ ପରସ୍ପର ପରସ୍ପରର ସହାୟ ହୋଇ ସୁଖରେ ଜୀବନ ଧାରଣ କରନ୍ତି । ୩୪ ।

ଆମ୍ଭେମାନେ ଦୁରାତ୍ମା ଧୃତରାଷ୍ଟ୍ର ଓ ତାହାଙ୍କର ପୁତ୍ରମାନଙ୍କ ଦ୍ୱାରା ନିର୍ବାସିତ ହୋଇ କୌଣସି ପ୍ରକାରେ ଦୈବବଶରୁ ଦଗ୍ଧ ନ ହୋଇ ଜୀବିତ ରହିଲୁଁ । ୩୫ । ସେହି ଦାହରୁ ଆମ୍ଭେମାନେ ମୁକ୍ତ ହୋଇ ଓ ଅଗଣ କ୍ଳେଶ ପ୍ରାପ୍ତ ହୋଇ ଏହି ବୃକ୍ଷକୁ ଆଶ୍ରୟ କରିଅଛୁଁ; କେଉଁଦିଗକୁ ଗମନ କରିବୁଁ, ତାହାର ସ୍ଥିରତା ନାହିଁ । ୩୬ । ରେ ଅଲ୍ପବୁଦ୍ଧି ଧୃତରାଷ୍ଟ୍ର ପୁତ୍ର ଦୁର୍ଯୋଧନ ! ତୋହର କାମନା ପୂର୍ଣ୍ଣହେଉ; ଯେ ହେତୁ ଯୁଧିଷ୍ଠିର ତୋତେ ବଧ କରିବାକୁ ଆଜ୍ଞା ଦେଉନାହାନ୍ତି । ଅତଏବ ଜାଣୁଅଛୁଁ ଯେ ଦେବତାମାନେ ତୋଠାରେ ପ୍ରସନ୍ନ ଅଛନ୍ତି ଓ ତୁ ଜୀବିତ ଅଛୁ । ୩୭ । ନତୁବା ଅଦ୍ୟ ତୋତେ, ତୋର ସୁତକୁ, ଅମାତ୍ୟକୁ, କର୍ଣ୍ଣକୁ ଓ ଶକୁନିଙ୍କୁ ମୁଁ କ୍ରୋଧସମାବିଷ୍ଟ ହୋଇ ଯମକ୍ଷୟକୁ ପ୍ରେରଣ କରନ୍ତି । ୩୮ । ରେ ପାପାତ୍ମା । ପାଣ୍ଡବ-ଶ୍ରେଷ୍ଠ ଧର୍ମାତ୍ମା ଯୁଧିଷ୍ଠିର ଯେ ତୋ ପ୍ରତି କ୍ରୁଦ୍ଧ ହେଉନାହାନ୍ତି, ମୁଁ କି କରି

* ଏକଜ—ଏକୁଟିଆ ଯାହାର ସହାୟ ନାହିଁ ।
† ଜ୍ଞାତିଶୂନ୍ୟ—ସଜାତୀୟ ଅପର ବୃକ୍ଷ ରହିତ ।

ପାରେ । ୪୦ । ଏହା କହି ମହାବାହୁ ଭୀମସେନ କ୍ରୋଧରେ ସନ୍ଦୀପିତ ଚିତ୍ତ ହୋଇ କରକୁ କରରେ ନିଷ୍ପେଷଣ କରି ଆତୁର ହୋଇ ଦୀର୍ଘ-ନିଃଶ୍ୱାସ ପରିତ୍ୟାଗ କଲେ । ୪୧ ।

ବୃକୋଦର ପୁନର୍ବାର ଶାନ୍ତଶିଖ ପାବକ ପ୍ରାୟ ଦୀନମନାଃ ହୋଇ ମହୀତଳରେ ସୁପ୍ତ ଭ୍ରାତୃମାନଙ୍କୁ ଅବେକ୍ଷଣ କଲେ ଯେ ସେମାନେ ବିଶ୍ୱସ୍ତ ହୋଇ ଇତର ଲୋକଙ୍କପ୍ରାୟ ଶୟନ କରି ଅଛନ୍ତି । ୪୨ । ଆମ୍ଭର ଅନୁମାନ ହେଉଅଛି ଯେ ଏହି ବନର ଅନତିଦୂରରେ ନଗର ଅଛି; ଅତଏବ ଏଠାରେ ଜାଗରଣ କରିବା କର୍ତ୍ତବ୍ୟ; କିନ୍ତୁ ଏମାନେ ଶୋଇ ଅଛନ୍ତି, ସୁତରାଂ ଆମ୍ଭେ ସ୍ୱୟଂ ଜାଗରଣ କରିବୁଁ । ଏମାନଙ୍କର କ୍ଳାନ୍ତି ଦୂର ହେଲେ ଓ ପ୍ରତିବୁଦ୍ଧ ହେଲେ, ଜଳପାନ କରିବେ; ଭୀମସେନ ଏହା ସ୍ଥିର କରି ସ୍ୱୟଂ ଜାଗରଣ କଲେ । ୪୪ ।

---

## ହୈଡ଼ିମ୍ବ ପର୍ବ

ବୈଶମ୍ପାୟନ ବୋଇଲେ—ସେମାନେ ଯେଉଁ ବନରେ ଶୟନ କରିଥିଲେ, ତାହାର ଅବିଦୂରରେ ଗୋଟିଏ ଶାଳବୃକ୍ଷରେ ଥାଇ ମହାବୀର୍ଯ୍ୟ, ପରାକ୍ରମ ଶାଳୀ, କ୍ରୂର, ପ୍ରାବୃଟ କାଳର ଜଳଧରପ୍ରାୟ ଶ୍ୟାମବର୍ଣ୍ଣ, ପିଙ୍ଗଳ ବର୍ଣ୍ଣ ନେତ୍ର, ଦାରୁଣ ଆକୃତି କରାଳ ଦଂଷ୍ଟ୍ରାଯୁକ୍ତ ବଦନ, ମାଂସାଶୀ, କ୍ଷୁଧାର୍ଦ୍ଦିତ, ଲମ୍ବସ୍ଫିକ୍*, ଲମ୍ବଜଠର, ରକ୍ତବର୍ଣ୍ଣ ଶ୍ମଶ୍ରୁ ଓ ରକ୍ତବର୍ଣ୍ଣ କେଶଯୁକ୍ତ, ମହା ବୃକ୍ଷ ସଦୃଶ ଗଳା ଓ ସ୍କନ୍ଧବିଶିଷ୍ଟ, ଶଙ୍କୁତୁଲ୍ୟ କର୍ଣ୍ଣବାନ୍, ମାନୁଷ ମାଂସାଦ ଏକ ରାକ୍ଷସ ଯଦୃଚ୍ଛାକ୍ରମେ ମହାରଥ ପାଣ୍ଡୁପୁତ୍ରମାନଙ୍କୁ ଦେଖିଲା । ୫ ।

ମହାକାୟ, ମହାବଳ, ନିବିଡ଼ ମେଘବର୍ଣ୍ଣ ପ୍ରାୟ କୃଷ୍ଣ ବର୍ଣ୍ଣ, ତୀକ୍ଷ୍ଣଦଂଷ୍ଟ୍ରାଯୁକ୍ତ, ଉଜ୍ଜ୍ୱଳ ଆନନ ବିଶିଷ୍ଟ ସେହି ମହାବକ୍ତ୍ର ପିଶିତାଶନ, ରୁକ୍ଷକେଶକୁ କମ୍ପିତ କରି ଓ ଉର୍ଦ୍ଧ୍ୱାଙ୍ଗୁଳି ପୂର୍ବକ ତାହାକୁ କଣ୍ଡୂୟନ କରି, ହାଇ ମାରି ଓ ପୁନଃ ପୁନଃ ସେମାନଙ୍କୁ ଅବେକ୍ଷଣ

* ଯାହାର ପିଚ୍ଛ ଲମ୍ବ ।

କରି, ମାନୁଷର ଗନ୍ଧ ଆଘ୍ରାଣକରି ନରମାଂସ ଆହାର ଲାଳସାରେ ହୃଷ୍ଟ ହୋଇ ଭଗିନୀକୁ କହିଲା—ଚିରକାଳପରେ ଅଦ୍ୟ ମୋହର ସୁପ୍ରିୟ ଭକ୍ଷ୍ୟ ସମୀପରେ ପ୍ରାପ୍ତ ହୋଇଅଛି, ମାଂସ ଭୋଜନ ଜନ୍ୟ-ସୁଖ ମନରେ ପଡ଼ିବାରୁ ମୋହର ଜିହ୍ୱା ଲାଳାସ୍ରାବ କରୁଅଛି । ୮ । ମୋହର ଏହି ଅଠଗୋଟି ଦନ୍ତର ଅଗ୍ରଭାଗ ଅତ୍ୟନ୍ତ ତୀକ୍ଷ୍ଣ; ଏହି ଦନ୍ତମାନେ ଯାହା ଉପରେ ପଡ଼ିବେ, ସେ ସହ୍ୟ କରି ପାରିବ ନାହିଁ । ଅଦ୍ୟ ସେହି ଦନ୍ତକୁ ମୁଁ ସ୍ନିଗ୍ଧ ପିଶିତରେ ଓ ଦେହରେ ମଜ୍ଜିତ କରିବି, ଅଦ୍ୟ ମୁଁ ମନୁଷ୍ୟର ଗଳଦେଶକୁ ଆକ୍ରମଣ କରିବି ଓ ଧମନୀ ଛେଦନ ପୂର୍ବକ, ଉଷ୍ଣ, ଫେନିଳ ଓ ମଦ୍ୟ ରୁଧିରକୁ ବହୁ ପରିମାଣରେ ପାନ କରିବି । ୧୦ । ତୁମ୍ଭେ ଯାଇ ଆଗେ ଦେଖ, ଏମାନେ କିଏ ? ଏହି ବନକୁ ଆଶ୍ରୟ କରି ଶୟନ କରି ଅଛନ୍ତି । ମନୁଷ୍ୟ ମାଂସର ବଳବାନ୍ ଗନ୍ଧ ପ୍ରାଣକୁ ତୃପ୍ତ କରୁଅଛି । ୧୧ । ଏହି ମନୁଷ୍ୟମାନଙ୍କୁ ବଧ କରି ମୋହୋ ନିକଟକୁ ଆଣ । ଆମ୍ଭର ଅଧିକୃତ ଦେଶରେ ଏମାନେ ଶୟନ କରିଅଛନ୍ତି, ଅତଏବ ତୁମ୍ଭର ଏମାନଙ୍କ ଠାରୁ ଭୟ କରିବାର ନୁହଇ । ୧୨ । ତୁମ୍ଭେ ଯେଉଁପରି ହେଉ, ଶୀଘ୍ର ମୋହର ବଚନ ପ୍ରତିପାଳନ କର । ଏମାନଙ୍କର ମାଂସକୁ ଦନ୍ତରେ ଛେଦନ କରି ଆମ୍ଭେମାନେ ଏକତ୍ର ହୋଇ ଭୋଜନ କରିବା । ୧୩ । ଏହି ମନୁଷ୍ୟ ଯଥେଷ୍ଟ ପରିମାଣରେ ଭକ୍ଷଣ କରି ଆମ୍ଭେ ଦୁହେଁ ତାଳ ଦେଇ ନୃତ୍ୟ କରିବା । ୧୪ ।

ହେ ଭରତର୍ଷଭ । ହିଡ଼ମ୍ବର ସେହି କଥା ଶୁଣି ହିଡ଼ମ୍ବା ରାକ୍ଷସୀ ତ୍ୱରମାଣା ହୋଇ ଯେଉଁଠାରେ ପାଣ୍ଡବମାନେ ଥିଲେ, ସେଠାକୁ ଗମନ କଲା । ୧୫ । ସେ ଯାଇ ସେଠାରେ ପୃଥାଙ୍କ ସହିତ ପାଣ୍ଡବ ମାନଙ୍କୁ ଦର୍ଶନ କଲା । ସେମାନେ ଶୋଇ ଅଛନ୍ତି ଓ ଏକାକୀ ଅପରାଜିତ ଭୀମସେନ ଜାଗ୍ରତ ଅଛନ୍ତି । ୧୬ । ନୂତନୋଦ୍‌ଗତ ଶାଳତରୁ ପ୍ରାୟ ଭୀମସେନଙ୍କୁ ଦେଖି ଓ ତାହାଙ୍କର ଅପ୍ରତିମ ରୂପରେ ମୋହିତ ହୋଇ ସେ ରାକ୍ଷସୀ କାମ ବଶ-ବର୍ତ୍ତିନୀ ହେଲା । ୧୭ । ଏହି ଶ୍ୟାମବର୍ଣ୍ଣ ମହାବାହୁ ସିଂହସ୍କନ୍ଧ, ମହାଦ୍ୟୁତି, କମ୍ବୁଗ୍ରୀବ, ପୁଷ୍କରାକ୍ଷ ପୁରୁଷ ଆମ୍ଭର ଭର୍ତ୍ତା ହେବାର ଯୋଗ୍ୟ ଅଟନ୍ତି । ଆମ୍ଭେ ଭ୍ରାତାଙ୍କର କ୍ରୂର ବଚନ ପାଳନ କରିବୁଁ ନାହିଁ । ଭ୍ରାତୃ-ସୌହାର୍ଦ୍ଦ୍ୟ ଅପେକ୍ଷା ପତିସ୍ନେହ ବଳବାନ୍ ଅଟେ । ୧୯ । ଏମାନଙ୍କୁ ବଧ

କଲେ ଆମ୍ଭର ଓ ଆମ୍ଭ ଭ୍ରାତାଙ୍କର ମୁହୂର୍ତ୍ତେ ମାତ୍ର ତୃପ୍ତି ହେବ; କିନ୍ତୁ ଏମାନଙ୍କୁ ବଧ ନ କଲେ, ଆମ୍ଭେ ଚିରକାଳ ପ୍ରମୋଦରେ ରହିବୁଁ । ୨୦ ।

କାମ ରୂପିଣୀ ହିଡ଼ିମ୍ବା ଉତ୍ତମ ମନୁଷ୍ୟ ରୂପ ଧାରଣ କରି, ଦିବ୍ୟ ଆଭରଣରେ ଭୂଷିତା ହୋଇ ମହାବାହୁ ଭୀମସେନଙ୍କ ନିକଟରେ ଥିର ଥିର ହୋଇ ଉପସ୍ଥିତ ହେଲା ଓ ଲଜ୍ଜମାନା ହେଲା ପ୍ରାୟ ତାହାଙ୍କୁ ଏହି କଥା କହିଲା । ୨୨ । ହେ ପୁରୁଷର୍ଷଭ ! ତୁମ୍ଭେ କିଏ ଓ କେଉଁଠାରୁ ଆସିଅଛ ? ଦେବରୂପୀ ଏହି ଯେଉଁ ପୁରୁଷମାନେ ଶୟନ କରିଅଛନ୍ତି, ସେମାନେ କିଏ ? । ୨୩ । ହେ ଅନଘ ! ଏହି ସୁନ୍ଦରୀ ନାରୀ ଯେ ଏହି ବନକୁ ଆସି, ନିଜ ଗୃହରେ ଶୋଇଲା ପ୍ରାୟ ବିଶ୍ୱସ୍ତ ହୋଇ ଶୟନ କରି ଅଛନ୍ତି, ସେ ତୁମ୍ଭର କିଏ ? ଏହି ବନ ଯେ ରାକ୍ଷସ-ସେବିତ ତାହାକି ଏ ଜାଣନ୍ତି ନାହିଁ ? ଏଠାରେ ହିଡ଼ିମ୍ବ ନାମରେ ପାପାତ୍ମା ରାକ୍ଷସ ବାସ କରେ, ସେ ଆମ୍ଭର ଭ୍ରାତା । ହେ ଅମରୋପମ ! ତୁମ୍ଭମାନଙ୍କର ମାଂସ ଭକ୍ଷଣ କରିବା ଲାଳସାରେ ସେ ଆମ୍ଭଙ୍କୁ ପ୍ରେରଣ କରିଅଛନ୍ତି । ୨୬ । କିନ୍ତୁ ତୁମ୍ଭଙ୍କୁ ଦେବତା-ତୁଲ୍ୟ ପ୍ରଭାଶାଳୀ ବିଲୋକନ କରି, ଅପର ବ୍ୟକ୍ତିକୁ ଭର୍ତ୍ତା କରିବାକୁ ମାନସ କରୁନାହିଁ; ଏ କଥା ତୁମ୍ଭଙ୍କୁ ସତ୍ୟ କହୁଅଛୁ । ୨୭ । ଏହା ଜାଣି ହେ ଧର୍ମଜ୍ଞ ! ତୁମ୍ଭେ ଆମ୍ଭଠାରେ ସମୁଚିତ ବ୍ୟବହାର କର । ଆମ୍ଭର ଚିତ୍ତ ଓ ଅଙ୍ଗ କାମରେ ଅବଶ ହୋଇଅଛି, ଆମ୍ଭେ ତୁମ୍ଭଙ୍କୁ ଭଜନା କରୁଅଛୁଁ, ତୁମ୍ଭେ ଆମ୍ଭଙ୍କୁ ଭଜନା କର । ୨୮ । ହେ ଅନଘ ! ମହାବାହୋ ! ଆମ୍ଭେ ତୁମ୍ଭଙ୍କୁ ଏହି ପୁରୁଷାଦକ ଠାରୁ ତ୍ରାଣ କରିବୁଁ; ତୁମ୍ଭେ ଆମ୍ଭର ଭର୍ତ୍ତା ହୁଅ, ଆମ୍ଭେ ଏହି ଗିରି ଦୁର୍ଗ ମାନଙ୍କରେ ବାସ କରିବା । ୨୯ । ଆମ୍ଭେ ଅନ୍ତରୀକ୍ଷରେ ଗମନ କରୁଁ ଓ କାମ ଗମନଶୀଳ ଅଟୁଁ । ତୁମ୍ଭେ ଆମ୍ଭ ସହିତ ବିହାର କରି ଅତୁଳ ପ୍ରୀତି ଲାଭ କରିବ । ୩୦ ।

ଭୀମସେନ ବୋଇଲେ—ହେ ରାକ୍ଷସି ! ଆମ୍ଭର ମାତା ଓ ଭ୍ରାତା, ଏମାନେ ସୁଖରେ ଶୟନ କରିଅଛନ୍ତି; ଏମାନଙ୍କୁ ଆମ୍ଭେ କିପରି ତ୍ୟାଗ କରିବୁଁ ? କେଉଁ ସମର୍ଥ-ବ୍ୟକ୍ତି ଏପରି କାର୍ଯ୍ୟ କରିବ ? । ୩୧ । ମଦୃଶ କେଉଁ ବ୍ୟକ୍ତି କାମାର୍ତ୍ତ ହୋଇ ଏହି ପ୍ରସୁପ୍ତ ଭ୍ରାତୃମାନଙ୍କୁ ଓ ମାତାଙ୍କୁ ରାକ୍ଷସ ଭୋଜନାର୍ଥ ଦାନ କରି ଗମନ କରିବ ? । ୩୨ । ରାକ୍ଷସୀ ବୋଇଲା—ତୁମ୍ଭେ ଏମାନଙ୍କୁ ସମସ୍ତଙ୍କୁ ପ୍ରବୋଧିତ କର; ତୁମ୍ଭର ଯାହା

ପ୍ରିୟ ତାହା ଅମ୍ଭେ କରିବୁଁ । ପୁରୁଷାଦକ ରାକ୍ଷସଠାରୁ ଅମ୍ଭେ ଏମାନଙ୍କୁ ନିଶ୍ଚୟ ମୁକ୍ତ କରିବୁଁ । ୩୩ ।

ଭୀମସେନ ବୋଇଲେ—ହେ ରାକ୍ଷସି । ତୋହୋର ଦୁରାତ୍ମା ଭ୍ରାତାକୁ ଭୟ କର, ଅମ୍ଭେ ଏହି ବନରେ ସୁଖ ସୁପ୍ତ ଭ୍ରାତା ଓ ଅମ୍ଭର ମାତାଙ୍କ ନିଦ୍ରାଭଙ୍ଗ କରିବୁ ନାହିଁ । ୩୪ । ହେ ଭୀରୁ । ରାକ୍ଷସ ମାନେ ଅମ୍ଭର ପରାକ୍ରମକୁ ସହିବାକୁ ସମର୍ଥ ହେବେ ନାହିଁ । ଶୁଭଲୋଚନେ । ମନୁଷ୍ୟ, ଗନ୍ଧର୍ବ କି ଯକ୍ଷ କେହି ଅମ୍ଭର ପରାକ୍ରମ ସହି ପାରିବେ ନାହିଁ । ୩୫ । ଭଦ୍ରେ । ତୁମ୍ଭେ ଯାଅ କି ଥାଅ । କି ଯାହା ଇଚ୍ଛା ତାହା କର, ଅଥବା ହେ ତନ୍ୱଙ୍ଗୀ । ତୁମ୍ଭେ ଯାଇ ତୁମ୍ଭର ସେହି ପୁରୁଷାଦ ଭ୍ରାତାକୁ ପଠାଇ ଦିଅ । ୩୬ ।

---

## ଅଧ୍ୟାୟ ୧୫୩

ବୈଶମ୍ପାୟନ ବୋଇଲେ—ସେହି ରାକ୍ଷସେଶ୍ୱର ହିଡ଼ିମ୍ବ ଭଗିନୀକୁ ବିଳମ୍ବ କରିବାର ଜାଣି ସେହି ଦ୍ରୁମରୁ ଅବତରଣ କରି ପାଣ୍ଡବମାନଙ୍କ ନିକଟକୁ ଆଶୁ ଆଗମନ କଲା । ୧ । ଲୋହିତାକ୍ଷ, ମହାବାହୁ ଊର୍ଦ୍ଧ୍ୱକେଶ ମହାନନ, ମେଘ ସଦୃଶ କୃଷ୍ଣବର୍ଣ୍ଣ, ତୀକ୍ଷ୍ଣ ତୀକ୍ଷ୍ଣ ଦଂଷ୍ଟ୍ରା, ଭୟାନକ ଓ ବିକୃତ ରୂପୀ ସେହି ରାକ୍ଷସକୁ ଶୀଘ୍ର ଆସିବାର ଦେଖି ହିଡ଼ିମ୍ବା ବିବସ୍ତ୍ରା ହୋଇ ଭୀମସେନଙ୍କୁ ଏହି ବଚନ କହିଲେ । ୩ ।—ଏହି ଦୁଷ୍ଟାତ୍ମା, ପୁରୁଷାଦକ କ୍ରୁଦ୍ଧ ହୋଇ ତ୍ୱରିତ ଆଗମନ କରୁଅଛି; ଅତଏବ ଅମ୍ଭେ ଯାହା କହୁଅଛୁଁ, ତୁମ୍ଭେ ଭ୍ରାତୃମାନଙ୍କ ସହିତ ହୋଇ ତାହା କର । ୪ । ହେ ବୀର । ଅମ୍ଭେ କାମ ଗାମିନୀ, ତୁମ୍ଭେମାନେ ସମସ୍ତେ ଆମ୍ଭ ଶ୍ରୋଣୀରେ ଆରୋହଣ କର; ଅମ୍ଭେ ତୁମ୍ଭଙ୍କୁ ବିହାୟସ ମାର୍ଗରେ ଘେନିଯିବୁଁ । ହେ ପରନ୍ତପ । ତୁମ୍ଭର ସୁପ୍ତ ମାତା ଓ ଭ୍ରାତାମାନଙ୍କୁ ଜାଗରିତ କର, ତୁମ୍ଭ ସମସ୍ତଙ୍କୁ ଅମ୍ଭେ ବହନ କରି ଆକାଶ ପଥରେ ଗମନ କରିବୁଁ । ୬ ।

ଭୀମସେନ ବୋଇଲେ—ହେ ପୃଥୁ ସୁଶ୍ରୋଣୀ—ତୁମ୍ଭେ ଭୟ କରନା; ଅମ୍ଭେ ଥିଲେ, କୌଣସି ରାକ୍ଷସ ଏମାନଙ୍କୁ ହିଂସା କରିବାକୁ ସମର୍ଥ ହେବ ନାହିଁ, ଏହା ଅମ୍ଭେ ନିଶ୍ଚୟ ଜାଣୁଁ ।୭। ହେ ସୁମଧ୍ୟମେ । ତୁମ୍ଭ ସାକ୍ଷାତରେ ଅମ୍ଭେ ଏହାକୁ ବଧ କରିବୁଁ; ଏହି ରାକ୍ଷସାଧମ ଅମ୍ଭର

ସମବଳୀ ନୁହେଁ କି ସମସ୍ତ ରାକ୍ଷସମାନେ ଯୁଦ୍ଧରେ ଆମ୍ଭ ପରମର୍ଦ୍ଦନ ସହ୍ୟ କରି ପାରିବେ ନାହିଁ । ୮ । ହସ୍ତୀର ହସ୍ତ ସଦୃଶ ଆମ୍ଭର ସୁବୃତ୍ତ ବାହୁଦ୍ୱୟ, ପରିଘସମ * ଉରୁଦ୍ୱୟ ମହତ୍ ଏବଂ ଦୃଢ଼ ବକ୍ଷଃସ୍ଥଳକୁ ବିଲୋକନ କର । ଶୋଭନେ । ତୁମ୍ଭେ ଅଦ୍ୟ ଆମ୍ଭର ଇନ୍ଦ୍ର ସଦୃଶ ପରାକ୍ରମ ଦେଖିବ ପୃଥୁ-ଶ୍ରୋଣୀ । ଆମ୍ଭଙ୍କୁ ମାନୁଷ ଜାଣି ଅବମାନନା କରନା । ୧୦ ।

ହିଡ଼ମ୍ବା ବୋଇଲା—ହେ ନରବ୍ୟାଘ୍ର । ତୁମ୍ଭେ ଦେବରୂପୀ; ଅମ୍ଭେ ତୁମ୍ଭଙ୍କୁ ଅବମାନନା କରୁନାହୁଁ; କିନ୍ତୁ ମନୁଷ୍ୟମାନଙ୍କଠାରେ ରାକ୍ଷସର ପ୍ରଭାବ ଅମ୍ଭର ଦେଖା ଅଛୁ । ୧୧ ।

ବୈଶମ୍ପାୟନ ବୋଇଲେ—ହେ ଭାରତ । ଭୀମସେନଙ୍କର ସେହି କଥାମାନ ଶ୍ରବଣ କରି ପୁରୁଷାଧମ ରାକ୍ଷସ କ୍ରୁଦ୍ଧ ହେଲା; ହିଡ଼ମ୍ବାର ମନୁଷ୍ୟ ରୂପକୁ ଅବେକ୍ଷଣ କରି ଓ ତାହାର ଶିଖାକୁ କୁସୁମ ମାଳାରେ ଶୋଭିତ, ଆନନକୁ ପୂର୍ଣ୍ଣେନ୍ଦୁ ସଦୃଶ ସୁନ୍ଦର, ଭ୍ରୂ, ନାସା, ନେତ୍ର, କେଶ ଓ ସୁକୁମାର ନଖ ଓ ଚର୍ମମାନଙ୍କୁ ମନୋହର, ସର୍ବାଭରଣ ଭୂଷିତ, ଓ ସୂକ୍ଷ୍ମ ବସନରେ ପରିବୃତ ଦେଖି ଓ ତାହାକୁ ପୁରୁଷାଭିଳାଷିଣୀ ହୋଇଥିବାର ଶଙ୍କା କରି ସେ ପୁରୁଷାଦକ ଅତ୍ୟନ୍ତ କ୍ରୁଦ୍ଧ ହେଲା । ୧୫ ।

ହେ କୁରୁସତ୍ତମ । ଭଗିନୀ ପ୍ରତି ସେ ରାକ୍ଷସ କ୍ରୁଦ୍ଧ ହୋଇ ଓ ବିପୁଳ ନେତ୍ର ଦ୍ୱୟକୁ ଉତ୍ଫାଳିତ କରି ବୋଇଲା—କେଉଁ ଦୁର୍ମ୍ମତି ମୋହୋର ଭୋଜନରେ ବିଘ୍ନାଚରଣ କରୁଅଛି ? ହିଡ଼ମ୍ବେ । ତୁ କି କାମ ମୋହିତ ହୋଇ ମୋହୋର କୋପକୁ ଭୟ କରୁ ନାହୁଁ ? । ୧୭ । ହେ ଅସତି । ରେ ଅସତି । ପୁରୁଷକାମିନୀ । ତୋତେ ଧିକ୍; ତୁ ମୋହର ଗର୍ହିତ ବିପ୍ରିୟାଚରଣ କରୁଅଛୁଁ; ତୁ ଆମ୍ଭର ପୂର୍ବ ପୁରୁଷ ରାକ୍ଷସେନ୍ଦ୍ରମାନଙ୍କର ଅପଯଶ ଅର୍ଜ୍ଜନ କରୁଅଛୁଁ ? ତୁ ଯେଉଁମାନଙ୍କୁ ଆଶ୍ରୟ କରି ମୋହୋର ସୁମହତ୍ ଅପ୍ରିୟ ଅନୁଷ୍ଠାନ କରୁଅଛୁ, ମୁଁ ତୋତେ ଓ ସେମାନଙ୍କୁ ବର୍ତ୍ତମାନ ସଂହାର କରିବି । ହିଡ଼ମ୍ବାକୁ ଏହା କହି ହିଡ଼ମ୍ବ ଲୋହିତେକ୍ଷଣ ହୋଇ ଓ ଦନ୍ତରେ ଦନ୍ତମାନଙ୍କୁ ନିଷ୍ପେଷଣ କରି ପାଣ୍ଡବ-ମାନଙ୍କୁ ବଧ କରିବା ନିମିତ୍ତ ଧାବିତ ହେଲା ।୨୦ । ରାକ୍ଷସକୁ ବଧୋଦ୍ୟତ

---

* ପରିଘ—ଲୌହ ମୁଦ୍ଗର ।

ଦେଖି ଯୋଦ୍ଧୃବର ଭୀମସେନ ତାହାକୁ ଭର୍ତ୍ସନା କରି ରହ ରହ ବୋଲି କହିଲେ । ୨୧ ।

ବୈଶମ୍ପାୟନ ବୋଇଲେ—ରାକ୍ଷସ ତାହା ଭଗ୍ନୀ ପ୍ରତି କ୍ରୁଦ୍ଧ ହୋଇ ଥିବାର ଦେଖି ଭୀମସେନ ହସି ହସି ତାହାକୁ କହିଲେ—ହିଡ଼ିମ୍ବ ! ଏମାନେ ସୁଖରେ ସୁପ୍ତ ହୋଇ ଅଛନ୍ତି, ଏମାନଙ୍କୁ ପ୍ରବୋଧିତ କରିବାର କି ପ୍ରୟୋଜନ ? ରେ ଦୁର୍ବୁଦ୍ଧି ନରାଶନ ! ତୁ ମୋ ନିକଟକୁ ଆ, ମତେ ତୁ ପ୍ରହାର କର, ସ୍ତ୍ରୀଲୋକକୁ ବଧ କଲେ କି ହେବ ? ବିଶେଷରେ ଏହି ସ୍ତ୍ରୀ ତୋ ଠାରେ ଅନପକାରିଣୀ ଅଟେ, ଏଠାବେ ଅନଙ୍ଗ ଅପକାରୀ, ଶରୀରାନ୍ତର ଚାରିଣୀ ଅନଙ୍ଗ ଦ୍ୱାରା ଏହି ବାଳା ଚଳିତା ହୋଇ ମୋତେ କାମନା କରୁଅଛି । ୨୫ । ଆରେ ରାକ୍ଷସ କୁଳର ଯଶୋହର ! ଆରେ ଦୁର୍ବୃତ୍ତ ରାକ୍ଷସାଧମ ! ତୋହର ନିଯୋଗାନୁସାରେ ତୋହୋର ଭଗିନୀ ଏ ସ୍ଥାନକୁ ଆସି ମୋହର ରୂପ ନିରୀକ୍ଷଣ କରି ମୋତେ କାମନା କରୁଅଛି; ଅତଏବ ଏହି ଭୀରୁ ଅବଳା ତୋହୋ ନିକଟରେ ଅପରାଧିନୀ ହୋଇ ନ ପାରେ; ଏଥିରେ ଅନଙ୍ଗ ଅପରାଧି ଅଟେ । ଅନ୍ୟର ଅପରାଧରେ ଏହି ନିତମ୍ବିନୀକୁ ତିରସ୍କାର କରିବା ତୋହର ଉଚିତ ନୁହଇ । ରେ ଦୁଷ୍ଟ ମୂଢ଼ ! ମୁଁ ଥାଉଁ ଥାଉଁ ତୁ ଏ ସ୍ତ୍ରୀକୁ ବଧ କରି ନ ପାରୁ । ୨୭ ।

ଆରେ ନରାଶନ ! ତୁ ଏକାକୀ, ଅମ୍ଭେ ମଧ୍ୟ ଏକାକୀ, ଅତଏବ ଅମ୍ଭ ସହିତ ଯୁଦ୍ଧ କର୍ । ଅମ୍ଭେ ଏକାକୀ ତୋତେ ଯମ ସଦନକୁ ପ୍ରେରଣ କରିବୁ । ୨୮ । ରାକ୍ଷସ ! ଆଜ ତୋହୋର ମସ୍ତକ ବଳବାନ୍ କୁଞ୍ଜରର ପଦ ଦ୍ୱାରା ନିଷ୍ପିଷ୍ଟ ହେଲା ପ୍ରାୟେ ମୋହୋର ବାହୁବଳରେ ନିଷ୍ପିଷ୍ଟ ହୋଇ ବିଦୀର୍ଣ୍ଣ ହେବ । ୨୯ । ଅଦ୍ୟ ତୁ ରଣଭୂମିରେ ନିହତ ହେଲେ କଙ୍କ, ସ୍ୟେନ ଓ ଗୋମାୟୁ ମାନେ ଆନନ୍ଦିତ ହୋଇ ଭୂମି ପତିତ ତୋହୋର ଶିରକୁ ଛେଦନ କରି ଆକର୍ଷଣ କରିବେ । ୩ । ଏଥି ପୂର୍ବେ ତୁ ନର ମାନଙ୍କୁ ଭକ୍ଷଣ କରି ଯେଉଁ ବନକୁ ଦୂଷିତ କରିଅଛୁଁ, ସେହି ବନକୁ ମୁଁ କ୍ଷଣିକ ମଧ୍ୟରେ ଅରାକ୍ଷସ କରିବି । ୩୧ । ରେ ରାକ୍ଷସ ! ସିଂହ ଯେପରି ମହାଗଜକୁ ଆକ୍ରମଣ କରେ, ସେହିପରି ଅଦ୍ୟ ପର୍ବତତୁଲ୍ୟ ତୋହୋର କଳେବରକୁ ମୁଁ ଆକର୍ଷଣ କରିବାରୁ, ତୋହୋର ଭଗିନୀ ଦର୍ଶନ କରିବ । ୩୨ । ରେ ରାକ୍ଷସାଧମ ! ମୋ ଦ୍ୱାରା ତୁ ହତ ହେଲେ ବନଚାରୀ ପୁରୁଷମାନେ ନିରବାଧି ହୋଇ ଏହି ବନରେ ବିଚରଣ କରିବେ । ୩୩ ।

ହିଡ଼ମ୍ବ ବୋଇଲା—ରେ ମାନୁଷ ! ତୁ ଗର୍ଜ୍ଜନ କଲେ କି ହେବ ? କି ବୃଥା ଆଡ଼ମ୍ବର କଥାରେ କି ହେବ ? ଯେପରି ମୁଖରେ କହୁଅଛୁ, ତଦ୍ରୂପ ଶୀଘ୍ର କାର୍ଯ୍ୟ କରି ବଡ଼ାଇ କରିବୁ । ୩୪ । ତୁ ଆପଣାକୁ ବଡ଼ ବଳବାନ୍ ଓ ପରାକ୍ରମଶାଳୀ ବୋଧ କରୁଅଛୁ; କିନ୍ତୁ ମୋ ସହିତ ସମାଗମନ କଲେ, ତୁ ଜାଣିବୁ ଯେ ତୁ କେଡ଼େ ଅଧିକ ବଳବୀର୍ଯ୍ୟ-ସମ୍ପନ୍ନ । ୩୫ । ଏମାନଙ୍କୁ ମୁଁ ହିଂସା କରିବି ନାହିଁ—ଯଥା ସୁଖରେ ଏମାନେ ଶୟନ କରନ୍ତୁ, ରେ ଦୁର୍ବୁଦ୍ଧେ ! ତୁ ଅପ୍ରିୟ-ବାଦୀକୁ ଅଦ୍ୟ ମୁଁ ବଧ କରିବି । ୩୬ । ତୋହୋର ଗାତ୍ରରୁ ଅଦ୍ୟ ରୁଧିର ପାନ କରି, ପଶ୍ଚାତ୍ ଏମାନଙ୍କୁ ବଧ କରିବି । ୩୬ । ତୋହୋର ଗାତ୍ରରୁ ଅଦ୍ୟ ରୁଧିର ପାନ କରି ପଶ୍ଚାତ୍ ଏମାନଙ୍କୁ ବଧ କରିବି ଓ ତଦନନ୍ତର ଏହି ବିପ୍ରିୟକାରିଣୀକୁ ବଧ କରିବି । ୩୬ ।

ବୈଶମ୍ପାୟନ ବୋଇଲେ—ନରମାଂସାଶୀ ରାକ୍ଷସ ଏହି କଥା କହି, ବାହୁ ବିସ୍ତାର କରି କ୍ରୋଧ ଭରରେ ଅରିନ୍ଦମ ଭୀମସେନଙ୍କ ପ୍ରତି ଧାବମାନ ହେଲା । ୩୮ । ଭୀମପରାକ୍ରମ ଭୀମସେନ ହସି ହସି ସେହି ଧାବମାନ ରାକ୍ଷସର ବେଗ ସଞ୍ଚାଳିତ ବାହୁଦ୍ୱୟକୁ ଧାରଣ କଲେ । ୩୯ । ବଳ ପୂର୍ବକ ସେହି ବିସ୍ତାରିତ ବାହୁଦ୍ୱୟକୁ ନିପୀଡ଼ନ କରି ସିଂହ ଯେପରି କ୍ଷୁଦ୍ର ମୃଗକୁ ଆକର୍ଷଣ କରେ, ତଦ୍ରୂପ ସେହି ରାକ୍ଷସକୁ ଆକର୍ଷଣ କରି ସେଠାରୁ ଅଷ୍ଟଧନୁ ଅର୍ଥାତ୍ ଦ୍ୱାତ୍ରିଂଶଦ୍ଧସ୍ତ ଦୂରକୁ ଘେନି ଗଲେ । ୪୦ । ମହାବଳ ଭୀମସେନଙ୍କ ଦ୍ୱାରା ସେହି ରାକ୍ଷସ ନିପୀଡ଼ିତ ହୋଇ ତାହାଙ୍କୁ ଦୃଢ଼ ଭାବେ ଆଲିଙ୍ଗନ କରି ଭୀଷଣ ଭାବରେ ନାଦ କଲେ । ୪୧ । ସୁଖ ସୁପ୍ତ ଭ୍ରାତୃଗଣଙ୍କର ନିଦ୍ରାଭଙ୍ଗ ନ ହେବ ବୋଲି ମହାବଳ ଭୀମ ପୁନର୍ବାର ବଳପୂର୍ବକ ତାହାକୁ କର୍ଷଣ କଲେ । ୪୨ । ହିଡ଼ମ୍ବ ଓ ଭୀମସେନ ଦୁହେଁ ପରସ୍ପର ପରସ୍ପରକୁ ବଳପୂର୍ବକ ଆକର୍ଷଣ କରି ଉତ୍କୃଷ୍ଟ ବିକ୍ରମ ପ୍ରକାଶ କଲେ । ବୃକ୍ଷମାନଙ୍କୁ ଭଞ୍ଜନ କଲେ, ଲତାମାନଙ୍କୁ ଆକର୍ଷଣ କଲେ ଏବଂ ଷଷ୍ଠୀହାୟନ ମତ୍ତବାରଣ ପ୍ରାୟ ଦୁହେଁ ଯୁଦ୍ଧ କଲେ । ୪୪ । ସେ ଦୁହିଁଙ୍କର ମହାଶବ୍ଦରେ ନରର୍ଷଭ ମାନେ ମାତାଙ୍କ ସହିତ ପ୍ରବୁଦ୍ଧ ହେଲେ ଓ ସମକ୍ଷରେ ହିଡ଼ମ୍ବାକୁ ଦଣ୍ଡାୟମାନ ହେବାର ଦେଖିଲେ । ୪୫

## ଅଧ୍ୟାୟ—୧୫୪

ବୈଶମ୍ପାୟନ ବୋଇଲେ—କୁନ୍ତୀ ଓ ପୁରୁଷଶ୍ରେଷ୍ଠ ପାଣ୍ଡବମାନେ ଜାଗରିତ ହୋଇ ସମ୍ମୁଖବର୍ତ୍ତିନୀ ହିଡ଼ିମ୍ବାର ଅତିମାନୁଷ ରୂପ ବିଲୋକନ କରି ବିସ୍ମିତ ହେଲେ । ୧ । ଉପରେ କୁନ୍ତୀ ତାହାକୁ ଦେଖି ତାହାର ରୂପ ସମ୍ପଦରେ ବିସ୍ମିତା ହୋଇ ସାନ୍ତ୍ୱନାପୂର୍ବକ ତାହାକୁ ମୃଦୁ ଓ ମଧୁର ସ୍ୱରରେ ଧୀର ଧୀର କରି କହିଲେ । ୨ । ବରବର୍ଣ୍ଣିନୀ, ତୁମ୍ଭେ କିଏ ? କାହାର ଭାର୍ଯ୍ୟା ? ଦେବତାଙ୍କ ଗର୍ଭରୁ ଜାତ ହେଲା ପ୍ରାୟ ଦିଶୁଅଛ; କି କାର୍ଯ୍ୟ ନିମିତ୍ତ ଏଠାକୁ ଆସିଅଛ ? ତୁମ୍ଭେ କେଉଁଠାରୁ ଆସିଲ ? ତୁମ୍ଭେ ଏହି ନଗର ଦେବତା ? ତୁମ୍ଭେ କି ଅପ୍ସରା । ତୁମ୍ଭେ କି ନିମିତ୍ତ ଏଠାରେ ଦଣ୍ଡାୟମାନ ହୋଇଅଛ ? ଆମ୍ଭଙ୍କୁ ଏ ସବୁ କଥାର ଉତ୍ତର ଦିଅ । ୪ ।

ହିଡ଼ିମ୍ବା ବୋଇଲା—ନୀଳ-ମେଘ-ନିଭ ଏହି ଯେଉଁ ମହାବନ ଦେଖୁଅଛ, ଏଥିରେ ହିଡ଼ିମ୍ବ ନାମକ ରାକ୍ଷସର ଓ ଆମ୍ଭର ବାସ । ୫ । ସୁବନ ! ସେହି ରାକ୍ଷସେନ୍ଦ୍ରଙ୍କର ଆମ୍ଭେ ଭଗିନୀ ଅଟୁଁ; ଆର୍ଯ୍ୟେ । ପୁତ୍ରଙ୍କ ସହିତ ତୁମ୍ଭଙ୍କୁ ହିଂସା କରିବା ନିମିତ୍ତ ଭ୍ରାତାଙ୍କ ଦ୍ୱାରା ଆମ୍ଭେ ପ୍ରେରିତ ହୋଇଅଛୁଁ । ୬ । ସେହି କ୍ରୂର ବୁଦ୍ଧିଙ୍କ ବଚନାନୁସାରେ ଆମ୍ଭେ ଏଠାକୁ ଆଗମନ କରି, ତୁମ୍ଭର ନବ ହେମାଙ୍ଗ, ମହାବଳ ପୁତ୍ରଙ୍କୁ ଦେଖିଲୁଁ । ୭ । ଶୁଭେ ଯେଉଁ ମନ୍ମଥ ସର୍ବ ପ୍ରାଣିଙ୍କ ଭାବରେ ବିଚରଣ କରନ୍ତି, ଆମ୍ଭେ ତୁମ୍ଭ ପୁତ୍ରଙ୍କୁ ଦେଖି ସେହି ମନ୍ମଥଙ୍କର ବଶାନୁଗାମୀ ହେଲୁଁ । ୮ । ଉପରେ ତୁମ୍ଭର ମହାବଳ ପୁତ୍ରଙ୍କୁ ଆମ୍ଭେ ଭର୍ତ୍ତା ସ୍ୱରୂପ ବରଣ କଲୁଁ ଓ ତାହାଙ୍କୁ ଦୂରଦେଶକୁ ଘେନି ଯିବାକୁ ଯତ୍ନ କଲୁଁ; କିନ୍ତୁ ପାରିଲୁ ନାହିଁ । ୯ । ଆମ୍ଭଙ୍କୁ ବିଳମ୍ବ କରିବାର ଜାଣି ସେହି ପୁରୁଷାଦକ ତୁମ୍ଭର ଏହି ସବୁ ପୁତ୍ରମାନଙ୍କୁ ବିନାଶ କରିବା କାରଣ ଏଠାକୁ ସ୍ୱୟଂ ଆଗତ ହୋଇଅଛି । ୧୦ । ଆମ୍ଭର କାନ୍ତ ଓ ତୁମ୍ଭର ଧୀମାନ୍, ମହାତ୍ମା ପୁତ୍ର ସେ ରାକ୍ଷସକୁ ବିଶେଷ ରୂପେ ନିଷ୍ପିଷ୍ଟ କରି ଏଠାରୁ କିୟଦ୍ଦୂରକୁ ଘେନି ଯାଇଅଛନ୍ତି । ୧୧ । ଏହି ଦେଖନ୍ତୁ, ନର ଓ ରାକ୍ଷସ ଦୁହେଁ ଯୁଦ୍ଧରେ ଉନ୍ମତ୍ତ ହୋଇ ଗର୍ଜ୍ଜନ ପୂର୍ବକ ପରସ୍ପର ମହାବେଗରେ ପରସ୍ପରଙ୍କୁ ବିକର୍ଷଣ କରୁଅଛନ୍ତି । ୧୨ ।

ବୈଶମ୍ପାୟନ ବୋଇଲେ—ତାହାର ବଚନ ଶୁଣି ଯୁଧିଷ୍ଠିର, ଅର୍ଜ୍ଜୁନ, ନକୁଳ ଓ ବୀର୍ଯ୍ୟବାନ୍ ସହଦେବ ସମସ୍ତେ ଉଠି ସ୍ଥିତ ହେଲେ ଓ ଦେଖିଲେ ଯେ ସେ ଦୁହେଁ ପରସ୍ପର ଯୁଦ୍ଧରେ ଆସକ୍ତ ହୋଇ ବଳୋନ୍ମତ୍ତ ସିଂହଦ୍ୱୟ ପରି ଜୟାକାଂକ୍ଷୀ ହୋଇ ପରସ୍ପରକୁ ବିକର୍ଷଣ କରୁଅଛନ୍ତି । ୧୪ । ଅନନ୍ତର ସେମାନେ ପୁନଃ ପୁନଃ ଅନ୍ୟୋନ୍ୟକୁ ସମାଶ୍ଳେଷ ଓ ଆକର୍ଷଣ କରି ଭୂମିର ଧୂଳିକୁ ଦାବାଗ୍ନିର ଧୂମ ସଦୃଶ ଉତ୍ଥିତ କଲେ । ୧୫ । ବସୁଧା ରେଣୁରେ ସମ୍ବୃତ ହୋଇ ବସୁଧାଧର ସଦୃଶ ସେହି ବୀରଦ୍ୱୟ ନୀହାର ସମ୍ବୃତ-ଶୈଳଦ୍ୱୟ ପ୍ରାୟ ବିଭ୍ରାଜିତ ହେଲେ । ୧୬ । ରାକ୍ଷସ ଦ୍ୱାରା ଭୀମ କ୍ଲିଶ୍ୟମାନ ହେବାର ନିରୀକ୍ଷଣ କରି ଅର୍ଜ୍ଜୁନ ହସି ହସି ଧୀର ଧୀର ଭୀମଙ୍କୁ କହିଲେ । ୧୭ । ମହାବାହୋ ଭୀମ ! ଭୟ କରନା, ଆମ୍ଭେମାନେ ଶ୍ରାନ୍ତ ହୋଇ ନିଦ୍ରିତ ଥିଲୁ; ଏହି ନିମିତ୍ତ ବୋଧ କରି ପାରିଲୁ ନାହିଁ ଯେ ତୁମ୍ଭେ ଏତାଦୃଶ ରାକ୍ଷସ ସହ ସଙ୍ଗତ ହୋଇଅଛ । ୧୮ । ପାର୍ଥ ! ଆମ୍ଭେ ଆପଣଙ୍କର ସାହାଯ୍ୟ କରିବାକୁ ସ୍ଥିତ ହେଲୁଁ; ଆମ୍ଭେ ଏହି ରାକ୍ଷସକୁ ନିପାତ କରିବୁଁ, ନକୁଳ ଓ ସହଦେବ ଦୁହେଁ ମାତାଙ୍କୁ ରକ୍ଷା କରନ୍ତୁ । ୧୯ ।

ଭୀମ ବୋଇଲେ—ତୁମ୍ଭେ ଉଦାସୀନ ହୋଇ ନିରୀକ୍ଷଣ କର, ଭୟ କରନା; ଥରେ ଏ ଆମ୍ଭର ବାହୁଦ୍ୱୟର ଅନ୍ତର୍ବର୍ତ୍ତୀ ହେଲେ ପୁନଶ୍ଚ ଆଉ ଏ ଜୀବିତ ହେବ ନାହିଁ । ୨୦ ।

ଅର୍ଜ୍ଜୁନ ବୋଇଲେ —ହେ ଭୀମ ! ଏହି ପାପାତ୍ମା ରାକ୍ଷସକୁ ବହୁକ୍ଷଣ ଜୀବିତ ରଖିବାର ପ୍ରୟୋଜନ କି ? ହେ ଅରିନ୍ଦମ ! ଯଦି ଆମ୍ଭଙ୍କୁ ଯିବାକୁ ହେବ, ତେବେ ଏଠାରେ ଅଧିକ ବେଳ ପର୍ଯ୍ୟନ୍ତ ରହିବାକୁ ପାରୁ ନାହିଁ । ୨୧ । ଅତଃପର ପୂର୍ବ ଦିଗ ରକ୍ତବର୍ଣ୍ଣ ଓ ପ୍ରାତଃ ସନ୍ଧ୍ୟାର ସମୟ ଉପସ୍ଥିତ ହେବ; ରୌଦ୍ର ମୁହୂର୍ତ୍ତରେ * ରାକ୍ଷସମାନେ ପ୍ରବଳ ହୁଅନ୍ତି, ଅତଏବ ହେ ଭୀମ ! ଆପଣ ସତ୍ୱର ହୁଅନ୍ତୁ; ଅଧିକ ବେଳଯାଏ ଏହାକୁ ଘେନି କ୍ରୀଡ଼ା କରନା । ବାହୁଦ୍ୱୟରେ ବଳାର୍ପଣ କର, ମାୟା ପ୍ରକାଶ କରିବା ପୂର୍ବରୁ ଏହି ଭୀଷଣ ରାକ୍ଷସକୁ ବିନାଶ କର । ୨୩ ।

---

* ରୌଦ୍ରମୁହୂର୍ତ୍ତ – ଅର୍ଥାତ୍ ବ୍ରାହ୍ମ ମୁହୂର୍ତ୍ତର ପୂର୍ବ ଦୁଇଦଣ୍ଡ ସମୟ ।

ବୈଶମ୍ପାୟନ ବୋଇଲେ—ଅର୍ଜୁନଙ୍କର ଏହି କଥା ଶୁଣି ଭୀମସେନ କ୍ରୋଧରେ ପ୍ରଜ୍ୱଳିତ ହୋଇ ପ୍ରଳୟକାଳୀନ ବାୟୁର ବଳ ପ୍ରାୟ ବଳକୁ ଅବଧାରଣ କଲେ । ୨୪ । ତଦନନ୍ତର କ୍ରୋଧ ବଶରୁ ରାକ୍ଷସର ଅମ୍ବୁଦାଭ ଦେହକୁ ଶୀଘ୍ର ଉତ୍କ୍ଷିପ୍ତ କରି ଶତବାର ଭ୍ରାମିତ କଲେ । ୨୫ ।

ଭୀମ ବୋଇଲେ—ରେ ରାକ୍ଷସ ! ବୃଥା ମାଂସାହାର କରି ତୁ ବୃଥା ପୁଷ୍ଟ ହୋଇଅଛୁଁ, ବୃଥାରେ ତୁ ଏଡ଼େ ବୃହତ୍ ହୋଇଅଛୁ, ତୋହର ବୁଦ୍ଧି ମଧ୍ୟ ବୃଥା, ତୁ ବୃଥା ମରଣ ପ୍ରାପ୍ତ ହେବାର ଯୋଗ୍ୟ ଅଟୁ; ଅତଏବ ତୁ ଅଦ୍ୟ ବୃଥା ମରଣ ଲାଭ କରିବୁ । ୨୬ । ଏହି ବନକୁ ନିଷ୍କଣ୍ଟକ କରି ମଙ୍ଗଳ କରିବି, ପୁନର୍ବାର ଯେପରି ତୁ ମନୁଷ୍ୟମାନଙ୍କୁ ଭକ୍ଷଣ ନ କରିବୁ । ୨୭ ।

ଅର୍ଜୁନ ବୋଇଲେ—ହେ ବୃକୋଦର ! ଯଦି ତୁମ୍ଭେ ଏହି ରାକ୍ଷସକୁ ଭାରି ମଣୁଅଛ, ତେବେ ମୁଁ ତୁମ୍ଭର ସାହାଯ୍ୟ କରିବି; ନତୁବା ତୁମ୍ଭେ ଏହାକୁ ଶୀଘ୍ର ନିପାତ କର । ୨୮ । ଅଥବା ମୁଁ ଏହାକୁ ବଧ କରିବି, ଆପଣଙ୍କର କର୍ତ୍ତବ୍ୟ କର୍ମ୍ମ ଆପଣ କଲେଣି ଓ ପରିଶ୍ରାନ୍ତ ହେଲେଣି, ଏବେ ଉପରତ ହେଲେଁ ଭଲ ହେବ । ୨୯ ।

ବୈଶମ୍ପାୟନ ବୋଇଲେ—ତାହାଙ୍କର ସେହି ବଚନ ଶ୍ରବଣ କରି ଭୀମ ଅତିଶୟ ଅମର୍ଷାନ୍ୱିତ ହୋଇ ସେହି ରାକ୍ଷସକୁ ନିଷ୍ପିଷ୍ଟ କରି ବଳପୂର୍ବକ ତାହାକୁ ଭୂମିରେ ନିପାତିତ କରି ପଶୁମାରଣ ପ୍ରାୟ ବିନାଶ କଲେ । ୩୦ । ଭୀମଙ୍କ ଦ୍ୱାରା ହନ୍ୟମାନ ହେଲାବେଳେ ସେ ରାକ୍ଷସ ଜଳାର୍ଦ୍ର ଦୁନ୍ଦୁଭି ପ୍ରାୟ ବିପୁଳ ସ୍ୱନ କରି ସେହି ବନର ସର୍ବ ସ୍ଥାନକୁ ପରିପୂର୍ଣ୍ଣ କଲା । ୩୧ । ବଳବାନ୍ ମହାବାହୁ ପାଣ୍ଡୁ-ନନ୍ଦନ ରାକ୍ଷସକୁ ବାହୁଦ୍ୱାରା ବେଷ୍ଟନପୂର୍ବକ ତାହାର କଟୀଦେଶକୁ ଭଗ୍ନକରି ପାଣ୍ଡବ-ମାନଙ୍କୁ ହର୍ଷାନ୍ୱିତ କଲେ । ୩୨ । ହିଡ଼ିମ୍ବକୁ ନିହତ ଦେଖି ପାଣ୍ଡବମାନେ ହୃଷ୍ଟ ହୋଇ ଅରିନ୍ଦମ ନରପୁଙ୍ଗବ ଭୀମସେନଙ୍କୁ ପ୍ରଶଂସା ଓ ସମାଦର କଲେ । ୩୩ । ଭୀମ ପରାକ୍ରମ ମହାତ୍ମା ଭୀମଙ୍କୁ ସମ୍ମାନ କରି ପୁନର୍ବାର ବୃକୋଦରଙ୍କୁ ଅର୍ଜୁନ ଏହି କଥା କହିଲେ—ବିଭୋ ! ଏହି ବନର ଅବିଦୂରରେ ନଗର ଅଛି ବୋଲି ଜ୍ଞାନ କରୁଅଛୁଁ; ଅତଏବ ଶୀଘ୍ର ଗମନ କରିବା ତୁମ୍ଭର ମଙ୍ଗଳ ହେଉ, ସୁଯୋଧନ ଯେପରି ଜାଣି ନ

ପାରେ । ୩୫ । ତତ୍ପରେ ସେ ପୁରୁଷଶ୍ରେଷ୍ଠ ମହାରଥ ମାନେ ହେଉ ବୋଲି କହି ମାତାଙ୍କ ସହିତ ଗମନ କଲେ । ହିଡ଼ିମ୍ବା ମଧ୍ୟ ସେମାନଙ୍କ ସଙ୍ଗରେ ଗଲେ । ୩୬ ।

---

## ଅଧ୍ୟାୟ—୧୫୫

ଭୀମସେନ ବୋଇଲେ—ହିଡ଼ିମ୍ବେ ! ରାକ୍ଷସମାନେ ମୋହିନୀ ମାୟାକୁ ଆଶ୍ରୟ କରି ପୂର୍ବ ବୈର ସ୍ମରଣ କରନ୍ତି; ଅତଏବ ତୁମ୍ଭର ଭ୍ରାତାଙ୍କ ପଥରେ ତୁମ୍ଭେ ଗମନ କର । ୧ ।

ଯୁଧିଷ୍ଠିର ବୋଇଲେ, ହେ ପୁରୁଷଶ୍ରେଷ୍ଠ ଭୀମ ! କ୍ରୁଦ୍ଧ ହେଲେହେଁ ସ୍ତ୍ରୀକୁ ବଧ କରନା, ପାଣ୍ଡବ ! ଶରୀର ରକ୍ଷା ଅପେକ୍ଷା ଧର୍ମରକ୍ଷା ଅଧିକ ଅଟେ । ୨ । ଆମ୍ଭମାନଙ୍କୁ ବଧ କରିବା ଅଭିପ୍ରାୟରେ ଯେଉଁ ମହାବଳ ରାକ୍ଷସ ଆସିଥିଲା ତାହାକୁ ତୁମେ ବଧ କଲ, ତାହାର ଭଗିନୀ କ୍ରୁଦ୍ଧ ହୋଇ ଆମ୍ଭର କି କରି ପାରିବ ? । ୩ ।

ବୈଶମ୍ପାୟନ ବୋଇଲେ—ତତ୍ପରେ ହିଡ଼ିମ୍ବା କୃତାଞ୍ଜଳି ହୋଇ କୁନ୍ତୀଙ୍କୁ ଅଭିବାଦନ କରି ତାହାଙ୍କର ପୁତ୍ର ଯୁଧିଷ୍ଠିରଙ୍କୁ ବୋଇଲେ । ୪ । ଆର୍ଯ୍ୟେ ! ସ୍ତ୍ରୀ ଜନମାନଙ୍କର ଅନଙ୍ଗ ଜାତ ଦୁଃଖ ଯାଦୃଶ ତାହା ତୁମ୍ଭଙ୍କୁ ବିଦିତ ଅଛି; ହେ ଶୁଭେ ! ଭୀମସେନଙ୍କୁ ଦେଖି ଆମ୍ଭର ସେହି କଷ୍ଟ ଉପସ୍ଥିତ ହୋଇଅଛି । ୫ । ଆମ୍ଭେ ସେହି ପରମ ଦୁଃଖକୁ ସହ୍ୟ କରି ସମୟ ପ୍ରତୀକ୍ଷା କରୁଥିଲୁଁ; ଅଧୁନା ଆମ୍ଭର ସେହି ସୁଖୋଦୟର କାଳ ଉପସ୍ଥିତ ହୋଇଅଛି । ୬ । ଆମ୍ଭେ ଆପଣାର ସୁହୃତ ସ୍ୱଜନ ଓ ସ୍ୱଧର୍ମକୁ ଉତ୍ସର୍ଗ କରି ତୁମ୍ଭର ଏହି ପୁରୁଷଶ୍ରେଷ୍ଠ ପୁତ୍ରକୁ ପତିତ୍ୱରେ ବରଣ କରିଅଛୁଁ । ୭ ।

ହେ ଯଶସ୍ୱିନୀ ! ତୁମ୍ଭର ପୁତ୍ର କି ତୁମ୍ଭେ ଯେବେ ଆମ୍ଭଙ୍କୁ ପ୍ରତ୍ୟାଖ୍ୟାନ କରିବ, ତେବେ ଆମ୍ଭେ ଜୀବନ ଧାରଣ କରି ପାରିବୁ ନାହିଁ; ଏହା ତୁମ୍ଭଙ୍କୁ ସତ୍ୟ କରି କହୁଅଛୁଁ । ୮ । ଅତଏବ ବରବର୍ଣ୍ଣିନୀ ! ତୁମ୍ଭେ ମୋତେ ମୂଢ଼ା ବୋଲି ଜାଣି କି ଭକ୍ତା ବୋଲି ଅଥବା ଅନୁଗତା ବୋଲି ଜାଣି ମୋଠାରେ କୃପା ପ୍ରକାଶ କର । ୯ । ଅୟି ମହାଭାଗେ ! ତୁମ୍ଭର

ଏହି ସୁତଙ୍କ ମୋହର ଭକ୍ତି କରଦଅ; ସେହି ଦେବରୂପୀ ପୁତ୍ରଙ୍କୁ ଘେନି ଅମ୍ଭେ ଯଥେଷ୍ଟ ଦେଶକୁ ଗମନ କରିବୁଁ ଓ ପୁନଶ୍ଚ ତାହାଙ୍କୁ ଆଣି ତୁମ୍ଭଙ୍କୁ ଦେବୁ, ହେ ଶୁଭେ । ଅମ୍ଭ ପ୍ରତି ବିଶ୍ୱାସ କର । ୧୦ । ଅମ୍ଭଙ୍କୁ ଯେବେ ମାନସ ଦ୍ୱାରା ଭାବନା କରିବ, ତେବେ ଅମ୍ଭେ ଆସି ତୁମ୍ଭମାନଙ୍କୁ ବହନ କରି ଅଭିପ୍ସିତ ସ୍ଥାନକୁ ଘେନିଯିବୁଁ ଓ ବିଷମ ସଙ୍କଟ ଉପସ୍ଥିତ ହେଲେ ତହିଁରୁ ଉଦ୍ଧାର କରିବୁଁ । ୧୧ । ତୁମ୍ଭେମାନେ ଶୀଘ୍ର ଗତି ଇଚ୍ଛାକଲେ ଅମ୍ଭେ ତୁମ୍ଭଙ୍କୁ ପୃଷ୍ଠରେ ବହନ କରିବୁଁ; ତୁମ୍ଭେମାନେ ଅମ୍ଭଠାରେ ପ୍ରସନ୍ନ ହୁଅ, ଭୀମସେନ ଅମ୍ଭଙ୍କୁ ଭଜନା କରନ୍ତୁ । ୧୨ । ଆପଦରୁ ଉଦ୍ଧାର ପାଇବା ନିମିତ୍ତ ଯେଉଁ ପ୍ରକାରେ ହେଉ ଜୀବନ ଧାରଣ କରିବା ବିଧେୟ; ଧର୍ମଶୀଳ ବ୍ୟକ୍ତି କେବଳ ଧର୍ମର ଅନୁବର୍ତ୍ତୀ ହୋଇ ସମସ୍ତ ବିଷୟକୁ ସ୍ୱୀକାର କରିବ, କାରଣ ଧର୍ମଶୀଳ ବ୍ୟକ୍ତିଙ୍କ ପକ୍ଷରେ ଆପଦ୍ ଏକା ଧର୍ମର ପ୍ରବଳ ପ୍ରତିବନ୍ଧକ ଅଟେ । ଅତଏବ ଯେଉଁ ବ୍ୟକ୍ତି ଆପତ୍‌କାଳରେ ସୁଦ୍ଧା ଧର୍ମରକ୍ଷା କରନ୍ତି, ସେହି ସିନା ଉତ୍ତମ ଧାର୍ମିକ । ୧୪ । ପ୍ରାଣମାନଙ୍କୁ ପୁଣ୍ୟ ଧାରଣ କରେ, ଅତଏବ ପଣ୍ଡିତମାନେ ପୁଣ୍ୟକୁ ପ୍ରାଣଦ ବୋଲି କହନ୍ତି; ଯେଉଁ କାର୍ଯ୍ୟ କଲେ ଧର୍ମାଚରଣ ହୁଏ ସେ କାର୍ଯ୍ୟରେ ନିନ୍ଦା ନାହିଁ । ୧୫ ।

ଯୁଧିଷ୍ଠିର ବୋଇଲେ—ଅୟି ସୁମଧ୍ୟମେ । ହିଡ଼ିମ୍ବେ । ତୁମ୍ଭେ ଯାହା ଯାହା କହିଲ, ତାହା ଯଥାର୍ଥ ଅଟେ; ଏଥିରେ ସନ୍ଦେହ ନାହିଁ । ପରନ୍ତୁ ତୁମ୍ଭେ ଯେପରି କହିଲ, ତୁମ୍ଭଙ୍କୁ ସେହିପରି ସତ୍ୟରେ ବଦ୍ଧ ହୋଇ ରହିବାକୁ ହେବ । ୧୬ । ଭଦ୍ରେ । ଭୀମସେନ ସ୍ନାନ, ଆହ୍ନିକ ଓ ମଙ୍ଗଳାଚରଣ ସମାପ୍ତ କଲେ, ତୁମ୍ଭେ ତାହାଙ୍କୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଭଜନା କରିବ । ୧୭ । ଦିବା ଭାଗରେ ତୁମ୍ଭେ ଇଚ୍ଛାନୁରୂପ ତାହାଙ୍କ ସହିତ ଭୋଗକରି ନିଶାମୁଖରେ ପୁନର୍ବାର ତାହାଙ୍କୁ ଅମ୍ଭଠାରେ ଦେଇ ଯିବ । ୧୮ ।

ବୈଶମ୍ପାୟନ ବୋଇଲେ—ଭୀମସେନ ତହିଁରେ ସମ୍ମତ ହୋଇ କହିଲେ—ରେ ରାକ୍ଷସି । ଶୁଣ, ଅମ୍ଭେ ତୁମ୍ଭ ସହିତ ଏହି ସତ୍ୟ କରୁଅଛୁଁ ଯେ ଯାବତ୍‌କାଳ ତୁମ୍ଭର ପୁତ୍ରୋତ୍ପାଦନ ହେବ, ତାବତ୍କାଳ ସୁମଧ୍ୟମେ ! ଅମ୍ଭେ ତୁମ୍ଭ ସହିତ ସଙ୍ଗମ କରିବୁ । ୨୦ ।

ବୈଶମ୍ପାୟନ ବୋଇଲେ—ତତ୍କାଳରେ ହିଡ଼ିମ୍ବା 'ତଥା' ବୋଲି କହି ଭୀମଙ୍କୁ ଘେନି ସେଠାରୁ ଊର୍ଦ୍ଧ୍ୱକୁ ଉତ୍ପତିତ ହେଲା । ରମଣୀୟ ଶୈଳ ଶୃଙ୍ଗରେ, ଦେବାୟତନମାନଙ୍କରେ, ମୃଗ ପକ୍ଷୀବିଶିଷ୍ଟ ରମ୍ୟ ପ୍ରଦେଶ ସମୂହରେ ସର୍ବାଭରଣରେ ଭୂଷିତା ହୋଇ, ସୁମଧୁର ବାକ୍ୟ କହି ସେହି ରାକ୍ଷସୀ ପାଣ୍ଡବଙ୍କ ସହିତ ରମଣ କଲା । ୨୮ । ବନ ଦୁର୍ଗରେ, ପୁଷ୍ପିତ ବୃକ୍ଷ ସୁଶୋଭିତ ସାନୁ ଦେଶରେ, ପଦ୍ମୋତ୍ପଳ ଯୁତ ରମଣୀୟ ସରୋବର ମାନଙ୍କରେ, ବୈଦୁର୍ଯ୍ୟ ସମ ସିକତାଯୁକ୍ତ ନଦୀ ପୁଳିନମାନଙ୍କରେ, ସୁଦୃଶ୍ୟ ବନ ପ୍ରଦେଶ ସ୍ଥିତ ସ୍ୱଚ୍ଛ ଓ ସୁସ୍ୱାଦୁ ଜଳ ବିଶିଷ୍ଟ ଗିରି ନଦୀ ମାନଙ୍କରେ, ପୁଷ୍ପିତ ଦ୍ରୁମ ଓ ପୁଷ୍ପିତା ଲତା ବିରଚିତ କାନନମାନଙ୍କରେ, ହିମବତ୍ ଗିରିକୁଞ୍ଜମାନଙ୍କରେ ଓ ବିବିଧ ଗୁହା ନିଚୟରେ, ପ୍ରଫୁଲ୍ଲ ଶତ-ପତ୍ର ଯୁକ୍ତ ନିର୍ମଳ ବାରିପୂର୍ଣ୍ଣ ସରୋବର ମାନଙ୍କରେ, ମଣି ଓ ହେମମୟ ସାଗର ପ୍ରଦେଶରେ, ରମ୍ୟ ପତ୍ତନ ନିକରରେ, ଉପବନ ସମୂହରେ, ପୁଣ୍ୟ ଦେବାରଣ୍ୟମାନଙ୍କରେ, ପର୍ବତମାନଙ୍କର ସାନୁ ପ୍ରଦେଶରେ, ଗୁହ୍ୟକମାନଙ୍କର ନିବାସ ନିଚୟରେ, ସର୍ବର୍ତ୍ତୁ ଫଳ ଓ ପୁଷ୍ପ ବିଶିଷ୍ଟ ତାପସଙ୍କର ଆୟତନ ମାନଙ୍କରେ ଓ ମାନସ ସରୋବରରେ ପରମ ସୁନ୍ଦର ରୂପକୁ ଧାରଣ କରି ପାଣ୍ଡବଙ୍କ ସହିତ ରମଣ କଲେ । ୨୯ ।

ସେହି ସେହି ସ୍ଥାନମାନଙ୍କରେ ମନୋଜବାନ୍ୱିତା ରାକ୍ଷସୀ ଭୀମଙ୍କ ସହ ରମଣ କରି ତାହାଙ୍କ ଠାରୁ ମହାବଳ ପୁତ୍ରକୁ ଜନ୍ମ କଲେ । ୩୦ । ଏ ପୁତ୍ରର ଅକ୍ଷି ଯୁଗଳ ବିରୂପ, ବକ୍ତ୍ର ମହାନ୍, କର୍ଣ୍ଣର ଅଗ୍ର ତୀକ୍ଷ୍ଣ ଓ ନିସ୍ତବ୍ଧ, ନାଦ ଭୟାନକ, ଓଷ୍ଠର ବର୍ଣ୍ଣ ତାମ୍ରବର୍ଣ୍ଣ ପ୍ରାୟ ଓ ଭୟାନକ; ନାଦ ଭୟଙ୍କର, ଦଂଷ୍ଟ୍ରା ତୀକ୍ଷ୍ଣ, ରବ ମହାନ୍, ଧନୁ ମହତ୍, ବାର୍ଯ୍ୟ ମହତ୍, ଭୁଜ ମହାନ୍, ବେଗ ଓ କାୟ ମହାନ୍, ମାୟା ମହାନ୍ ଓ ସେ ପୁତ୍ର ଅରିମାନଙ୍କର ଦମନ କର୍ତ୍ତା । ୩୨ । ତାହାର ନାସିକା ଦୀର୍ଘ, ବକ୍ଷଃସ୍ଥଳ ବିଶାଳ ଓ ପିଣ୍ଡିକା * ବଙ୍କ ଓ ଉଚ୍ଚ ଥିଲା । ୩୩ । ମନୁଷ୍ୟଠାରୁ ଜନ୍ମ ହୋଇ ମଧ୍ୟ ସେହି କୁମାର ଅମାନୁଷ ଶକ୍ତିସମ୍ପନ୍ନ, ଭୀମ ବେଗ ଓ ମହାବଳ ପରାକ୍ରମଶାଳୀ ଥିଲେ । ୩୪ । ହେ ରାଜନ୍ । ସେହି ବଳବାନ୍

---

* ପିଣ୍ଡିକା—ଜାନୁ ଓ ଗୁଲ୍‌ଫ ମଧ୍ୟସ୍ଥାନ, ଗୋଡ଼ର ଭଣ୍ଡା ।

ବୀର ପୁତ୍ର ବାଳକ ହୋଇ ସୁଦ୍ଧା ସଦ୍ୟ ଯୌବନ ପ୍ରାପ୍ତ ହେଲା ଓ ମନୁଷ୍ୟ ଲୋକ ପ୍ରଚଳିତ ସମୁଦାୟ ଅସ୍ତ୍ରରେ ପ୍ରକର୍ଷ ଲାଭ କଲା । ୩୫ ।

ରାକ୍ଷସୀମାନେ ସଦ୍ୟ ଗର୍ଭଧାରଣ କରି ସଦ୍ୟଃ ପ୍ରସବ କରନ୍ତି ଓ ପ୍ରସୂତ ବାଳକ ମଧ୍ୟ ଜନ୍ମିବା ମାତ୍ର ଇଚ୍ଛାନୁସାରେ ବହୁବିଧ ରୂପ ଧାରଣ କରିପାରେ । ୩୬ । କେଶହୀନ ଓ ପରମ ଧନୁର୍ଦ୍ଧାରୀ ସେହି ବାଳକ ମାତା ଓ ପିତାଙ୍କୁ ପ୍ରଣାମ କରି ତାହାଙ୍କର ଚରଣ ଗ୍ରହଣ କଲେ, ସେମାନେ ମଧ୍ୟ ପ୍ରୀତ ହୋଇ ତାହାର ନାମ କରଣ କଲେ । ୩୭ । ମାତା ବୋଇଲେ ଏହି ବାଳକର କଚ ଗୁଡ଼ିକ ଘଟ ପ୍ରାୟ ଊର୍ଦ୍ଧ୍ୱକୁ ଉଠିଅଛି, ତହୁଁ ଭୀମସେନ ତାହାର ନାମ ଘଟୋତ୍କଚ ଦେଲେ । ୩୮ । ସେହି ଘଟୋତ୍କଚ ପାଣ୍ଡବମାନଙ୍କର ଅନୁରକ୍ତ ହେଲେ ଓ ପାଣ୍ଡବମାନେ ମଧ୍ୟ ତାହାଙ୍କୁ ନିତ୍ୟ ସ୍ନେହ କଲେ । ୩୯ ।

ତତ୍ପରେ ହିଡ଼ିମ୍ବା ନିୟମାନୁସାରେ ସ୍ୱକାର୍ଯ୍ୟ ସାଧନ କରି ସ୍ୱାମୀସମ୍ବାସ ସମୟ ଅତୀତ ହେଲା ବୋଲି କହି ଓ ପ୍ରୟୋଜନ ଉପସ୍ଥିତ ହେଲେ ଆମ୍ଭଙ୍କୁ ସ୍ମରଣ ମାତ୍ରେ ଆମ୍ଭେ ଉପସ୍ଥିତ ହେବୁଁ ବୋଲି ପାଣ୍ଡବ-ମାନଙ୍କୁ ସମ୍ଭାଷଣ ପୂର୍ବକ ନିଜ ରୂପ ଧାରଣ କରି ପ୍ରସ୍ଥାନ କଲେ । ୪୦ । ରାକ୍ଷସଶ୍ରେଷ୍ଠ ଘଟୋତ୍କଚ ସେତେବେଳେ କୁନ୍ତୀଙ୍କ ସହିତ ପାଣ୍ଡବଗଣଙ୍କୁ ଅଭିବାଦନ କରି କହିଲେ । ୪୧ । ହେ ଆର୍ଯ୍ୟଗଣ ! ଆପଣମାନେ ନିଃଶଙ୍କ ଚିତ୍ତରେ ଆମ୍ଭ ପ୍ରତି ଆଦେଶ କରନ୍ତୁ, ଏବେ ଆପଣଙ୍କର ଆମ୍ଭେ କି କାର୍ଯ୍ୟ ସମ୍ପାଦନ କରିବୁଁ । ରାକ୍ଷସେନ୍ଦ୍ର ଘଟୋତ୍କଚଙ୍କର ତାଦୃଶ ବଚନ ଶ୍ରବଣ କରି କୁନ୍ତୀ ବୋଇଲେ—ହେ ପୁତ୍ର ! ତୁମ୍ଭେ କୁରୁକୁଳରେ ଜନ୍ମ ଗ୍ରହଣ କରିଅଛ ଓ ଆମ୍ଭ ଭୀମସେନଙ୍କର ଜ୍ୟେଷ୍ଠ ପୁତ୍ର ବଳ ବୀର୍ଯ୍ୟରେ ତୁମ୍ଭେ ଭୀମସେନଙ୍କ ସମାନ ଅଟ । ତୁମ୍ଭଙ୍କୁ ଆଉ ଅଧିକ କି କହିବା ? । ୪୩ ।

ବୈଶମ୍ପାୟନ ବୋଇଲେ—ଅନନ୍ତର କୁନ୍ତୀ ଏରୂପ କହନ୍ତେ, ରାକ୍ଷସ ଶ୍ରେଷ୍ଠ ଘଟୋତ୍କଚ ପିତୃଗଣଙ୍କୁ ସମ୍ଭାଷଣ ପୂର୍ବକ କହିଲେ— କାର୍ଯ୍ୟକାଳ ଉପସ୍ଥିତ ହେଲେ ଆମ୍ଭେ ଆସିବୁ, ଏହା କହି ସେ ଉତ୍ତର ଦିଗକୁ ଗମନ କଲେ । ମହାତ୍ମା ମଘବାନ୍ କର୍ଣ୍ଣଙ୍କ ଶକ୍ତି ନିମିତ୍ତ ଏହି ମହାରଥ ଘଟୋତ୍କଚଙ୍କୁ କର୍ଣ୍ଣଙ୍କ ପ୍ରତିଯୋଦ୍ଧା ରୂପେ ସର୍ଜ୍ଜନା କରିଥିଲେ । ୪୭ ।

## ଅଧ୍ୟାୟ—୧୫୬

ବୈଶମ୍ପାୟନ ବୋଇଲେ—ଅନନ୍ତର ସେହି ମହାରଥମାନେ ଓ ଅଜିନ ଓ ବଲ୍‌କଲ ପରିଧାୟୀ ହୋଇ ମାତା କୁନ୍ତୀଙ୍କ ସହିତ ତାପସ ବେଶ ଧାରଣ ପୂର୍ବକ ତ୍ୱରାନ୍ୱିତ ହୋଇ ବହୁସଂଖ୍ୟକ ମୃଗମାନଙ୍କୁ ବଧକରି ଏକ ବନରୁ ବନାନ୍ତରକୁ ଗମନ କଲେ । ଏପରି ସେମାନେ ମତ୍ସ୍ୟ, ତ୍ରିଗର୍ତ୍ତି, ପାଞ୍ଚାଳ ଓ କୀଚକ ଦେଶ ସମୂହର ଅନ୍ତର୍ବର୍ତ୍ତୀ ରମଣୀୟ ବନ ପ୍ରଦେଶ ଓ ସରୋବରମାନଙ୍କୁ ବିଲୋକନ କରି କୌଣସିଠାରେ ସ୍ୱଚ୍ଛନ୍ଦରେ, କୌଣସିଠାରେ ଜନନୀଙ୍କୁ ବହନ କରି ଶୀଘ୍ର ଗମନ କଲେ । ୪ । ଏକଦା ସେ ଧର୍ମ୍ମଜ୍ଞମାନେ ବେଦବେଦାଙ୍ଗ ଓ ନୀତିଶାସ୍ତ୍ର ମାନଙ୍କୁ ଅଧ୍ୟୟନ କରୁଥିଲେ । ଏମନ୍ତ ସମୟରେ ସେମାନେ ପିତାମହ ବ୍ୟାସଦେବଙ୍କୁ ଦର୍ଶନ କଲେ । ୫ । ମାତାଙ୍କ ସହ ସେହି ପରମ ତପସ୍ୱୀମାନେ ମହାତ୍ମା କୃଷ୍ଣଦ୍ୱୈପାୟନଙ୍କୁ ଅଭିବାଦନ କରି କୃତାଞ୍ଜଳି ପୂର୍ବକ ଦଣ୍ଡାୟମାନ ହେଲେ । ୬ ।

ବ୍ୟାସ ବୋଇଲେ—ହେ ନୃପମାନେ । ଆମ୍ଭେ ପୂର୍ବରୁ ଏହି ସବୁ ଦୁଃଖକୁ ମନୁଦ୍ୱାରା ଅବଗତ ହୋଇଥିଲୁଁ । ଧାର୍ତ୍ତରାଷ୍ଟ୍ରମାନେ ଯେପରି ଅଧର୍ମ୍ମଦ୍ୱାରା ତୁମ୍ଭଙ୍କୁ ବିବାସିତ କରିଅଛନ୍ତି; ତାହା ବିଦିତ ହୋଇ, ତୁମ୍ଭମାନଙ୍କର ପରମ ହିତ କରିବା ଇଚ୍ଛାରେ ଆମ୍ଭେ ଏଠାରେ ପ୍ରାପ୍ତ ହୋଇଅଛୁଁ । ତୁମ୍ଭର ଏଥିରେ ବିଷାଦ କରିବା କର୍ତ୍ତବ୍ୟ ନୁହେଁ । ଏସବୁ ତୁମ୍ଭର ଭାବୀ ସୁଖର କାରଣ ଅଟେ । ୮ । ଧୃତରାଷ୍ଟ୍ର ତନୟମାନେ ଓ ତୁମ୍ଭେମାନେ, ଏହି ଉଭୟପକ୍ଷ ଆମ୍ଭର ସମାନ ସ୍ନେହାସ୍ପଦ ଏଥିରେ ସଂଶୟ ନାହିଁ; କିନ୍ତୁ ଯେଉଁମାନେ ଦୀନ ଅଥବା ବାଳକ ହୁଅନ୍ତି, ସେମାନଙ୍କ ପ୍ରତି ମନୁଷ୍ୟଙ୍କର ସ୍ୱଭାବତଃ ସ୍ନେହ ଜାତ ହୁଅଇ । ୯ । ଅତଏବ ସମ୍ପ୍ରତି ତୁମ୍ଭମାନଙ୍କ ଠାରେ ଆମ୍ଭର ଅଧିକତର ସ୍ନେହ ହୋଇଅଛି । ସ୍ନେହ ପୂର୍ବକ ଆମ୍ଭେ ତୁମ୍ଭର ହିତ କହୁଅଛୁଁ, ଶ୍ରବଣ କର । ୧୦ । ଏହି ଯେଉଁ ନଗର ସମ୍ମୁଖରେ ଦର୍ଶନ କରୁଅଛ, ସେ ନିରାମୟ ସ୍ଥାନ, ଆମ୍ଭର ପୁନରାଗମନ ଅପେକ୍ଷାରେ, ତୁମ୍ଭେମାନେ ସେଠାରେ ପ୍ରଚ୍ଛନ୍ନ ଭାବରେ ବାସ କର । ୧୧ ।

ବୈଶମ୍ପାୟନ ବୋଇଲେ—ସତ୍ୟବତୀ ସୁତ ବ୍ୟାସ ଏହି ପ୍ରକାରେ ସେମାନଙ୍କୁ ସମାଶ୍ୱାସିତ କରି ଏକଚକ୍ରା ନଗରୀକୁ ଗମନ କଲେ ଓ କୁନ୍ତୀଙ୍କୁ ପୁନର୍ବାର ଆଶ୍ୱାସିତ କରି ବୋଇଲେ । ୧୨ ।

ବ୍ୟାସ କହିଲେ—ହେ ପୁତ୍ରି ! ତୁମ୍ଭେ ଜୀବିତ ଥାଅ, ତୁମ୍ଭର ଏହି ସୁତ ଯୁଧିଷ୍ଠିର ଧର୍ମନିତ୍ୟ ଅଟନ୍ତି ! ସେ ପୁରୁଷର୍ଷଭ ମହାତ୍ମା ଧର୍ମରେ ପୃଥିବୀକୁ ଜୟକରି ଧର୍ମରାଜ ସ୍ୱରୂପ ପୃଥିବୀରେ ସମସ୍ତ ପାର୍ଥିବ ମାନଙ୍କୁ ପ୍ରଶାସିତ କରିବେ । ୧୩ । ସାଗର ମେଖଳା ଅଖିଳ ପୃଥିବୀକୁ ଭୀମାର୍ଜ୍ଜୁନଙ୍କ ବଳରେ ଜୟକରି ଭୋଗ କରିବେ, ଏଥିରେ ସଂଶୟ ନାହିଁ । ୧୪ । ତୁମ୍ଭର ଓ ମାଦ୍ରୀଙ୍କର ପୁତ୍ରମାନେ ସମସ୍ତେ ମହାରଥ, ସୁମନସରେ, ସ୍ୱରାଷ୍ଟ୍ରରେ ସୁଖରେ ରହିବେ ଓ ସେ ନର ବ୍ୟାଘ୍ରମାନେ ପୃଥିବୀକୁ ଜୟକରି ରାଜସୂୟ ଓ ଅଶ୍ୱମେଧାଦି କ୍ରତୁମାନଙ୍କୁ ଆହରଣ କରିବେ ଓ ତହିଁରେ ଭୂରି ଭୂରି ଦକ୍ଷିଣାମାନ ପ୍ରଦାନ କରିବେ । ଭୋଗ, ଐଶ୍ୱର୍ଯ୍ୟ ଓ ସୁଖରେ ସୁହୃଦ୍‌ବର୍ଗଙ୍କୁ ଅନୁଗ୍ରହ କରି ତୁମ୍ଭର ଏହି ସୁତମାନେ ପିତୃପୈତାମହ ରାଜ୍ୟକୁ ଭୋଗ କରିବେ । ୧୬ ।

ବୈଶମ୍ପାୟନ ବୋଇଲେ—ଏହା କହି ସେମାନଙ୍କୁ ବ୍ରାହ୍ମଣ ନିବେଶନରେ ରଖି ଦ୍ୱୈପାୟନ ଋଷି ପାଣ୍ଡବଶ୍ରେଷ୍ଠ ଯୁଧିଷ୍ଠିରଙ୍କୁ କହିଲେ, ତୁମ୍ଭମାନେ ଏଠାରେ ଅମ୍ଭଙ୍କୁ ପ୍ରତୀକ୍ଷା କର, ଅଟମ୍ଭ ପୁନର୍ବାର ଏଠାକୁ ଆଗମନ କରିବୁଁ । ଦେଶକାଳ ବିବେଚନା କରି ପାରିଲେଁ ତୁମ୍ଭେମାନେ ପରମ ପ୍ରମୋଦ ଲାଭ କରିବ । ୧୯ । ହେ ନରାଧିପ ! ସେମାନେ ସମସ୍ତେ ପ୍ରାଞ୍ଜଳି ପୂର୍ବକ ତଥାବୋଲି କହିଲେ, ପ୍ରଭୁ ବ୍ୟାସ ଋଷି ଯେଉଁଦିଗରୁ ଆସିଥିଲେ ସେହି ଦିଗକୁ ଗମନ କଲେ ।

———

## ଅଧ୍ୟାୟ—୧୫୭

ଜନମେଜୟ ବୋଇଲେ—ହେ ଦ୍ୱିଜଶ୍ରେଷ୍ଠ ! ତଦନନ୍ତର ମହାରଥ କୁନ୍ତୀପୁତ୍ର ପାଣ୍ଡବମାନେ ଏକଚକ୍ରା ନଗରୀକୁ ଗମନ କରି ସେଠାରେ କଣ କଲେ ?

ବୈଶମ୍ପାୟନ ବୋଇଲେ—ମହାରଥ କୁନ୍ତୀ ପୁତ୍ରମାନେ ଏକଚକ୍ରା ନଗରୀକୁ ଗମନ କରି ବ୍ରାହ୍ମଣର ନିବେଶନରେ ଅନତି ଦୀର୍ଘ କାଳ ବାସ କଲେ । ୨ । ହେ ରାଜନ୍ ! ବିବିଧ ରମଣୀୟ ବନମାନଙ୍କୁ ଦେଶମାନଙ୍କୁ ଓ ନଦୀମାନଙ୍କୁ ଓ ସରୋବର ମାନଙ୍କୁ ସେମାନେ ଦର୍ଶନ କରି ଭିକ୍ଷାବୃତ୍ତି ଅବଲମ୍ବନ କଲେ ଓ ସ୍ୱକୀୟ ଗୁଣ ଦ୍ୱାରା ନଗରବାସୀଙ୍କର ପ୍ରିୟଦର୍ଶନ ହେଲେ । ୪ । ପ୍ରତିଦିନ ନିଶାକାଳରେ ଆପଣା ଭୈକ୍ଷ୍ୟ ଦ୍ରବ୍ୟକୁ ନେଇ ସେମାନେ କୁନ୍ତୀଙ୍କୁ ନିବେଦନ କରନ୍ତି ସେ ଯାହାକୁ ଯାହା ପୃଥକ୍ ପୃଥକ୍ ବଣ୍ଟନ କରି ଦିଅନ୍ତି ତାହା ସେମାନେ ଭକ୍ଷଣ କରନ୍ତି । ୫ । ଭିକ୍ଷା ଲବ୍ଧ ପଦାର୍ଥରୁ ମହାବଳ ଭୀମ ଏକାକୀ ଅର୍ଦ୍ଧଭାଗ ଭକ୍ଷଣ କରନ୍ତି ଓ ଅବଶିଷ୍ଟ ଅର୍ଦ୍ଧାଂଶକୁ ପରନ୍ତପ ଅପର ବୀରମାନେ ମାତାଙ୍କସହ ଭକ୍ଷଣ କରନ୍ତି । ୬ । ହେ ଭରତର୍ଷଭ ! ସେ ମହାତ୍ମାମାନେ ସମସ୍ତେ ସେହି ରାଷ୍ଟ୍ରରେ ବାସ କରୁଁ କରୁଁ ସୁମହାନ୍ କାଳ ଅତିକ୍ରାନ୍ତ ହେଲା । ୭ ।

ତଦନନ୍ତର କଦାଚିତ୍ ସେହି ଭରତର୍ଷଭମାନେ ସମସ୍ତେ ଭିକ୍ଷାର୍ଥ ଗମନ କଲେ , ଏକାକୀ ଭୀମସେନ ମାତାଙ୍କ ନିକଟରେ ରହିଲେ । ୮ । ଅନନ୍ତର ହେ ଭାରତ ! ବ୍ରାହ୍ମଣର ନିବେଶନରେ ଅତିଜନିତ ଭୟଙ୍କର ମହାଶବ୍ଦକୁ କୁନ୍ତୀ ବାରମ୍ବାର ଶ୍ରବଣ କଲେ । ୯ । ହେ ରାଜନ୍ ! କୁନ୍ତୀ ସେମାନଙ୍କର ଅତିଶୟ ରୋଦନ ଓ ବିଳାପ ଧ୍ୱନି ଶ୍ରବଣ କରି କାରୁଣ୍ୟ ଓ ସାଧୁଭାବ ବଶରୁ ସହ୍ୟ କରିପାରିଲେ ନାହିଁ; ତାହାଙ୍କର ହୃଦୟ ଦୁଃଖରେ ମଥିତ ହେଲା, ତହିଁରେ ସେ କଲ୍ୟାଣୀ କୃପାନ୍ୱିତା ହୋଇ ଭୀମଙ୍କୁ କହିଲେ, ପୁତ୍ର ! ଆମ୍ଭେମାନେ ସୁଖରେ ଏହି ବ୍ରାହ୍ମଣ ଗୃହରେ ବାସ କରୁଅଛୁଁ, ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ଆମ୍ଭର ସନ୍ଧାନ ପାଉନାହାନ୍ତି; ବ୍ରାହ୍ମଣ ଆମ୍ଭମାନଙ୍କୁ ଯଥୋଚିତ ସତ୍କୃତ କରୁଅଛନ୍ତି ଓ ଆମ୍ଭେମାନେ ଦୁଃଖ ରହିତ ହୋଇଅଛୁଁ । ୧୨ । ପୁତ୍ର ! ଆମ୍ଭେ ସଦା ଚିନ୍ତା କରୁଅଛୁଁ,

ଯେ ଏହି ବ୍ରାହ୍ମଣଙ୍କର କପଟ ପ୍ରିୟକାର୍ଯ୍ୟ କରୁଁ ଯେ ଯାହାଙ୍କର ଗୃହରେ ବାସ କରନ୍ତି, ସେ ତାହାଙ୍କର ପ୍ରିୟାନୁଷ୍ଠାନ କରନ୍ତି, ଅମ୍ଭେମାନେ ଏହାଙ୍କ ଗୃହରେ ସୁଖରେ ବାସ କରୁଅଛୁଁ । ୧୩ ।

ହେ ତାତ ! ଯେଉଁ ବ୍ୟକ୍ତିର ଉପକାର କଲେଁ ସେ ପ୍ରତ୍ୟୁପକାର କରେ ସେହି ସେ ପୁରୁଷ ଅଟେ; ଯେ ଯେତକ ଉପକାର ପ୍ରାପ୍ତ ହୁଏ, ତାହାର ତହିଁରୁ ଅଧିକ ପ୍ରତ୍ୟୁପକାର କରିବା ବିଧେୟ । ୧୪ । ଅତଏବ ଏ ବ୍ରାହ୍ମଣଙ୍କର ନିଶ୍ଚୟ ଦୁଃଖ ଆପତିତ ହୋଇଅଛି; ଏତେବେଳେ ଯେବେ ତାହାଙ୍କର ସାହାଯ୍ୟ କରିବା ତେବେ ଅତିଶୟ ଉପକାର କରିବାର ହେବ । ୧୫ ।

ଭୀମସେନ ବୋଇଲେ—ଏହାଙ୍କର କି ଦୁଃଖ ଓ ତାହାର କାରଣ କଣ, ତାହା ଆପଣ ଅବଗତ ହେଉନ୍ତୁ । ସୁଦୁଷ୍କର ହେଲେ ହେଁ ଅମ୍ଭେ ସେ ଦୁଃଖ ଅପନୋଦନ କରିବୁଁ । ୧୬ ।

ବୈଶମ୍ପାୟନ ବୋଇଲେ—ଏହି ପ୍ରକାରେ ସେମାନେ କଥୋପକଥନ କରୁଁ କରୁଁ ପୁନର୍ବାର ସେହି ବିପ୍ରଙ୍କର ଓ ତାହାଙ୍କର ଭାର୍ଯ୍ୟାଙ୍କର ଅତିକରୁଣ ସ୍ୱର ଶ୍ରୁତ ହେଲା । ୧୭ । ବଦ୍ଧ-ବତ୍ସା ସୁରଭୀପ୍ରାୟ କୁନ୍ତୀ ସେହି ବ୍ରାହ୍ମଣଙ୍କର ଅନ୍ତଃପୁର ମଧ୍ୟରେ ତ୍ୱରାନ୍ୱିତା ହୋଇ ପ୍ରବେଶ କଲେ । ୧୮ । ଓ ଦେଖିଲେ ଯେ ସେ ବ୍ରାହ୍ମଣ ଭାର୍ଯ୍ୟା ସୁତ ଓ ଦୁହିତାଙ୍କ ସହିତ ମ୍ଳାନ ବଦନରେ ବସିଅଛନ୍ତି ।

ବ୍ରାହ୍ମଣ ବୋଇଲେ—ଏହି ସଂସାରରେ ପରାଧୀନତା ଦୁଃଖର ମୂଳ, ଅତଏବ ଅପ୍ରିୟଭାଗୀ ଓ ଅସାର ଏହି ଜୀବନକୁ ଧିକ୍ ! । ୨୦ । ଜୀବିତ ପରମ ଦୁଃଖ, ପରମ ପୀଡ଼ା ଭୋଗ କରିବାକୁ ହୁଅଇ । କାରଣ ଜୀବିତ ବ୍ୟକ୍ତିର ଦୁଃଖ ଉପସ୍ଥିତ ହୁଅଇ । ୨୧ । ଆତ୍ମା ଏକାକୀ ଧର୍ମ ! ଅର୍ଥ, କାମ ତିନଙ୍କୁ ପରସ୍ପର ଅବିରୋଧରେ ସେବନ କରିବାକୁ ସମର୍ଥ ହୁଅଇ ନାହିଁ; ସୁତରାଂ ସେମାନଙ୍କ ସହିତ ବିଚ୍ଛେଦ ଘଟିଲେଁ ପରମ ଦୁଃଖ ଉପସ୍ଥିତ ହୁଅଇ । ୨୨ । ପଣ୍ଡିତ ମାନେ କହନ୍ତି ଯେ ପୁରୁଷାର୍ଥ ମଧ୍ୟରେ ମୋକ୍ଷ ସର୍ବଶ୍ରେଷ୍ଠ; କିନ୍ତୁ ଅମ୍ଭେମାନେ ସଂସାରରେ ଅନୁରାଗୀ, ଅମ୍ଭମାନଙ୍କର କୌଣସି ପ୍ରକାରେ ମୋକ୍ଷ ହେବାର ସମ୍ଭାବନା ନାହିଁ, ଅତଏବ ଅର୍ଥ ପ୍ରାପ୍ତ ବିଷୟରେ ସର୍ବଦା, ସର୍ବ ପ୍ରକାରେ ଦୁଃଖ ଭୋଗ କରିବାକୁ

ହୁଅଇ । ୨୩ । ପ୍ରଥମରେ ଉପାର୍ଜନ ସ୍ପୃହା ଅତିଶୟ ଦୁଃଖଜନକ । ଅର୍ଥ-ପ୍ରାପ୍ତିରେ ତହିଁରୁ ଅଧିକ ଦୁଃଖ ହୁଅଇ; ଉପାର୍ଜିତ ଅର୍ଥରେ ସ୍ନେହ ଜନ୍ମିଲେଁ, ସେ ଅର୍ଥ ସହିତ ଯେତେବେଳେ ବିଚ୍ଛେଦ ଘଟେ, ତେତେ-ବେଳେ ମହତ୍ତର ଦୁଃଖ ହୁଅଇ । ୨୪ । ଆପଦରୁ ମୁକ୍ତ ହେବାର କୌଣସି ଉପାୟ ଦୃଶ୍ୟ ହୁଅଇ ନାହିଁ କି ଏପରି ଉପଦ୍ରବ-ଶୂନ୍ୟ-ସ୍ଥାନ ନାହିଁ ଯେ ସେଠାକୁ ପୁତ୍ର ଦାରାଙ୍କୁ ଘେନି ପଳାୟନ କରି ରହିବି । ୨୫ ।

ବ୍ରାହ୍ମଣି । ତୁମ୍ଭେ ମନେକର, ଯେଉଁ ସ୍ଥାନରେ ମଙ୍ଗଳ ହେବ, ସେହି ସ୍ଥାନକୁ ଯିବା ନିମିତ୍ତ ଅମ୍ଭେ କେତେ ଯତ୍ନ କରିଥିଲୁଁ; କିନ୍ତୁ ତେତେବେଳେ ତୁମ୍ଭେ ଅମ୍ଭ କଥା ଶୁଣିଲ ନାହିଁ । ୨୬ । ତୁମ୍ଭର ଏପରି ଦୁର୍ବୁଦ୍ଧି ହେଲା ଯେ, ଅମ୍ଭେ ସ୍ଥାନାନ୍ତର ଯିବାର ପ୍ରସ୍ତାବନା କରିବାରୁ ତୁମ୍ଭେ କହିଲ ଯେ ଏ ସ୍ଥାନ ଅମ୍ଭର ପୈତୃକ ଭୂମି, ଏଠାରେ ଅମ୍ଭେ ଜନ୍ମିଅଛୁଁ ଓ ଏଠାରେ ବୃଦ୍ଧ ହୋଇଅଛୁଁ, ଏହାକୁ ପରିତ୍ୟାଗ କରିବୁ ନାହିଁ । ୨୭ । ତୁମ୍ଭର ବୃଦ୍ଧ ପିତାମାତା ମାନେ ଓ ଭୂତପୂର୍ବ ବାନ୍ଧବ-ମାନେ ବହୁକାଳରୁ ସ୍ୱର୍ଗପ୍ରାପ୍ତ ହୋଇଅଛନ୍ତି, ଏଠାରେ ବାସ କରି ରହିବାର କି ଅନୁରାଗ ଅଛି ? । ୨୮ । ତୁମ୍ଭେ ବନ୍ଧୁ-କାମ ହୋଇ ଅମ୍ଭର ବଚନ ଶ୍ରବଣ ନ କରିବାରୁ ଏବେ ବନ୍ଧୁ-ପ୍ରଣାଶ ଉପସ୍ଥିତ ହେଲା ଓ ଅମ୍ଭର ଦୁଃଖ ଜାତ ହେଲା । ୨୯ । ଅଥବା ବର୍ତ୍ତମାନ ଅମ୍ଭର ବିନାଶ ହୋଇଅଛି, ତାହା କିଏ କହିପାରେ; କାରଣ ଅମ୍ଭେ ସ୍ୱୟଂ ଜୀବିତ ଥାଇ ନୃଶଂସ ପ୍ରାୟ ବନ୍ଧୁଙ୍କୁ ପରିତ୍ୟାଗ କରି ନ ପାରୁଁ । ୩୦ ।

ତୁମ୍ଭେ ଅମ୍ଭର ସହଧର୍ମିଣୀ, ସତୀ, ମାତାଙ୍କ ପ୍ରାୟ ଅମ୍ଭଙ୍କୁ ସର୍ବଦା ସ୍ନେହ କର; ଦେବ ତୁମ୍ଭଙ୍କୁ ଅମ୍ଭର ସଖା କରିଅଛନ୍ତି; ସର୍ବଦା ତୁମ୍ଭେ ଅମ୍ଭର ଆଶ୍ରୟ, ତୁମ୍ଭର ପିତା ଓ ମାତା ସର୍ବକାଳ ନିମିତ୍ତ ତୁମ୍ଭଙ୍କୁ ଅମ୍ଭର ଗାର୍ହସ୍ଥ୍ୟ ଧର୍ମ୍ମ ଭାଗିନୀ କରି ଦେଇ ଅଛନ୍ତି; ବିଧିପୂର୍ବକ ଅମ୍ଭେ ତୁମ୍ଭଙ୍କୁ ବରଣ କରି ଓ ମନ୍ତ୍ରୋଚ୍ଚାରଣ ଦ୍ୱାରା ପରିଣୟ କରିଅଛୁଁ । ତୁମ୍ଭେ କୁଳରୁ ଜାତ ହୋଇଅଛ, ସ୍ୱଭାବ ଶୀଳସମ୍ପନ୍ନ ଓ ଅପତ୍ୟ ଜନନୀ ଅଛ, ତୁମ୍ଭେ ସାଧ୍ୱୀ ଓ କଦାପି ଅମ୍ଭର ଅପକାର କରିନାହିଁ, ଏପରି ପତିବ୍ରତା ଭାର୍ଯ୍ୟାଙ୍କୁ ଅମ୍ଭେ କଦାପି ପରିତ୍ୟାଗ କରିବାକୁ ସମର୍ଥ ହୋଇ ନ ପାରୁଁ । ୩୧ । ପୁନଶ୍ଚ ଯେଉଁ ବାଳିକାର ଅଦ୍ୟାବଧି ଶ୍ମଶ୍ରୁ ଜାତ ହୋଇ ନାହିଁ, ତାଦୃଶ ଅପ୍ରାପ୍ତ ବୟସ୍କା ପୁତ୍ରୀକୁ ଅବା କି ପ୍ରକାରେ ପରିତ୍ୟାଗ କରିବୁଁ ?

ୀ୩୦। ଉପଯୁକ୍ତ ଭର୍ତ୍ତାଙ୍କ ହସ୍ତରେ ସମର୍ପଣ କରିବା ନିମିତ୍ତ ବିଧାତା ଯେଉଁ କନ୍ୟାକୁ ଆମ୍ଭ ହସ୍ତରେ ନ୍ୟସ୍ତ କରି ଅଛନ୍ତି ଓ ଯେଉଁ କନ୍ୟାଠାରୁ ଆମ୍ଭେ ପିତୃଗଣଙ୍କ ସହିତ ଦୌହିତ୍ରଜ ଲୋକ ପ୍ରାପ୍ତ ହେବାର ଆଶା କରିଅଛୁଁ, ସେହି ବାଳିକା ଦୁହିତାକୁ ସ୍ୱୟଂ ଉତ୍ପାଦନ କରି ଏବେ କି ପ୍ରକାରେ ଅବା ପରିତ୍ୟାଗ କରିବାକୁ ସାହସୀ ହେବୁଁ ? କେହି କେହି ନରମାନେ ପୁତ୍ରଠାରେ ପିତାଙ୍କର ଅଧିକ ସ୍ନେହ ହେବାର କହନ୍ତି, କେହି କେହି କନ୍ୟାଠାରେ ଅଧିକ ସ୍ନେହ ବୋଲି କହନ୍ତି; କିନ୍ତୁ ଆମ୍ଭ ମତରେ ପୁତ୍ର ଓ କନ୍ୟା ସମାନ । ୩୭ । ଯାହାଙ୍କ ଠାରୁ ସଦ୍‌ଗତି ଲାଭ ହୁଅଇ, ଯାହାଙ୍କ ଦ୍ୱାରା ବଂଶରକ୍ଷା ହୁଅଇ ଓ ଯେ ସୁଖର କାରଣ ଏପରି ପାପ ସ୍ପର୍ଶ ଶୂନ୍ୟା ବାଳିକାକୁ କି ପ୍ରକାରେ ପରିତ୍ୟାଗ କରିବାକୁ ସମର୍ଥ ହେବୁ । ୩୮ ।

ପୁନଶ୍ଚ ଯେବେ ଆମ୍ଭେ ଆପଣା ଜୀବନକୁ ପରିତ୍ୟାଗ କରି ପରଲୋକଗାମୀ ହେବୁଁ, ତେବେ ମଧ୍ୟ ଆମ୍ଭେ ସନ୍ତାପିତ ହେବୁଁ, କାରଣ ଏମାନେ ସମସ୍ତେ ଆମ୍ଭ ପ୍ରତି ନିର୍ଭର କରୁଅଛନ୍ତି । ଆମ୍ଭେ ମୃତ ହେଲେଁ, ଏମାନେ ଜୀବନ ଧାରଣ କରିବାକୁ ସମର୍ଥ ହେବେ ନାହିଁ । ୩୯ । ଏମାନଙ୍କ ମଧ୍ୟରୁ ଯେବେ ଗୋଟିଏ କାହାରିକୁ ପରିତ୍ୟାଗ କରିବୁଁ, ତେବେ ପଣ୍ଡିତମାନଙ୍କ ମତରେ ତାହା ନୃଶଂସ କାର୍ଯ୍ୟ ବୋଲି ଗଣ୍ୟ ହେବ, ଆମ୍ଭେ ଆତ୍ମତ୍ୟାଗ କଲେ, ଆମ୍ଭବିନା ଏମାନେ ମରିବେ । ୪୦ । ଅତଏବ, ଆମ୍ଭେ ଘୋର ଆପଦରେ ପତିତ ହେଲୁଁ; ଏ ବିପଦରୁ ନିସ୍ତାର ପାଇବାର ଆମ୍ଭର କୌଣସି ଉପାୟ ନାହିଁ । ହାୟ ! ଅଦ୍ୟ ଆମ୍ଭେ ସବାନ୍ଧବରେ କି ଗତି ପ୍ରାପ୍ତ ହେବୁଁ ? ସୁତରାଂ ସପରିବାରରେ ଆମ୍ଭର ମୃତ୍ୟୁ ଶ୍ରେୟସ୍କର, ଆମ୍ଭର ଜୀବନ ଧାରଣ କରି ରହିବା କଦାପି ମଙ୍ଗଳ-ଜନକ ନୁହଇ । ୪୧ ।

## ଅଧ୍ୟାୟ—୧୫୮

ବ୍ରାହ୍ମଣୀ ବୋଇଲେ—ହେ ବ୍ରାହ୍ମଣ ! ପ୍ରାକୃତ ଲୋକ ପ୍ରାୟ ସନ୍ତାପ କରିବା ତୁମ୍ଭର ସମୟ ଓ କର୍ତ୍ତବ୍ୟ ନୁହଇ । ୧ । ମାନବମାନେ ଇହଲୋକରେ ସମସ୍ତେ ନିଧନ ପ୍ରାପ୍ତ ହେବେ; ଅତଏବ ଯେଉଁ ବିଷୟ ଅବଶ୍ୟ ଘଟିବାର ତହିଁରେ ସନ୍ତାପ କରିବା ନିଷ୍ପ୍ରୟୋଜନ । ୨ । ଭାର୍ଯ୍ୟା ପୁତ୍ର ଓ ଦୁହିତା ସମସ୍ତେ ଆପଣା ନିମିତ୍ତ; ତୁମ୍ଭେ ଆପଣା ବୁଦ୍ଧିଦ୍ୱାରା ମନୋବେଦନାକୁ ଦୂର କର, ଆମ୍ଭେ ସ୍ୱୟଂ ସେଠାକୁ ଗମନ କରିବୁଁ ।୩। ଚିରକାଳରୁ ଲୋକରେ ପ୍ରସିଦ୍ଧ ଅଛି ଯେ ନାରୀମାନେ ଆପଣାର ପ୍ରାଣ ବିସର୍ଜ୍ଜନ କରି ସୁଦ୍ଧା ଭର୍ତ୍ତାଙ୍କର ହିତାଚରଣ କରିବେ । ୪ । ଅତଏବ ଆମ୍ଭେ ଏ କର୍ମ୍ମ କଲେ ତୁମ୍ଭର ସୁଖାବହ ହେବ, ଇହଲୋକରେ ଆମ୍ଭର ଯଶସ୍କର ଓ ପରଲୋକରେ ଅକ୍ଷୟ ପୁଣ୍ୟଜନକ ହେବ । ୫ । ଆମ୍ଭେ ଯାହା ତୁମ୍ଭଙ୍କୁ କହିଲୁଁ, ସେ ପରମ ଧର୍ମ୍ମ, ତହିଁରେ ତୁମ୍ଭର ଅର୍ଥସିଦ୍ଧି ଓ ଗୁରୁତର ଧର୍ମ୍ମ ହେବ । ୬ । ଯେଉଁ ନିମିତ୍ତ ଭାର୍ଯ୍ୟାର ପ୍ରୟୋଜନ, ତାହା ସବୁ ତୁମ୍ଭର ଆମ୍ଭଠାରୁ ସମ୍ପନ୍ନ ହୋଇଅଛି, ଗୋଟିଏ କନ୍ୟା ଓ ଗୋଟିଏ ପୁତ୍ର ଜାତ କରି ଆମ୍ଭେ ତୁମ୍ଭର ଋଣ ମୁକ୍ତ ହୋଇଅଛୁଁ । ୭ ।

ଏହି ସନ୍ତତି ଦ୍ୱୟଙ୍କ ପୋଷଣରେ ଓ ରକ୍ଷଣରେ ତୁମ୍ଭେ ସମର୍ଥ ଅଛ, ଆମ୍ଭ ଦ୍ୱାରା ସେ କାର୍ଯ୍ୟ ସମ୍ପାଦିତ ହୋଇ ପାରିବ ନାହିଁ । ୮ । ତୁମ୍ଭେ ଆମ୍ଭର ସର୍ବସ୍ୱଧନ ଓ ପ୍ରାଣର ଈଶ୍ୱର, ତୁମ୍ଭ ବିହୀନରେ ଆମ୍ଭେ କିପରି ଜୀବିତ ରହିବୁଁ ଓ ଏହି ବାଳକଦ୍ୱୟ ମଧ୍ୟ କିପରି ପ୍ରତିପାଳିତ ହେବେ ? । ୯ । ତୁମ୍ଭ ବିନା ଆମ୍ଭେ ଅନାଥା ଓ ବିଧବା ହୋଇ, ସଦୁପାୟ ଅବଲମ୍ବନ ପୂର୍ବକ କିପରି ଏହି ଶିଶୁସନ୍ତାନଦ୍ୱୟଙ୍କୁ ଜୀବିତ ରଖିବୁଁ ? । ୧୦ । ଅଥଚ ତୁମ୍ଭସହିତ ସମ୍ବନ୍ଧ କରିବାର ଅନୁପଯୁକ୍ତ, ଅହଙ୍କାରୀ ଓ ଗର୍ବିତଲୋକ ଯେବେ ଏହି ସୁତାକୁ ପ୍ରାର୍ଥନା କରିବ, ତେବେ ତାହାଠାରୁ ଏ କନ୍ୟାକୁ କିପରି ରକ୍ଷା କରି ପାରିବୁଁ ? । ୧୧ । ଭୂମିରେ ପରିତ୍ୟକ୍ତ ଆମିଷକୁ ଭକ୍ଷିବା ନିମିତ୍ତ ଯେପରି ପକ୍ଷୀମାନେ ଧାଇଁଆସି ଥାଆନ୍ତି, ତଦ୍‌ବତ ପତିହୀନା ସ୍ତ୍ରୀମାନଙ୍କୁ ସର୍ବଜନମାନେ ପ୍ରାର୍ଥନା କରନ୍ତି । ୧୨ । ଦ୍ୱିଜୋତ୍ତମ ! ଦୁରାତ୍ମାଙ୍କ ଦ୍ୱାରା ବିଚଳିତା ଓ ପ୍ରାର୍ଥ୍ୟମାନା ହୋଇ ସଜ୍ଜନ ବାଞ୍ଛିତ ପଥରେ ସ୍ଥିତ ହେବାକୁ ସମର୍ଥ ହୋଇ ପାରିବି ନାହିଁ । ୧୩ । ତୁମ୍ଭ କୁଳର ଏହି ଅବିବାହିତା ବାଳିକାକୁ ପିତୃପୈତା-

ମନ୍ତ୍ରଙ୍କ ମାର୍ଗରେ ନିଯୁକ୍ତ କରିବାକୁ କିପରି ସମର୍ଥ ହେବ ? । ୧୪ । ତୁମ୍ଭେ ଯେପରି ଧର୍ମଦର୍ଶୀ, ତୁମ୍ଭର ଗୁଣମାନଙ୍କୁ ଏହି ଅନାଥ ଓ ପିତୃହୀନ ବାଳକଠାରେ ଅଧାନ କରିବାକୁ କିପରି ସମର୍ଥ ହେବ ? । ୧୫ । ଶୂଦ୍ରମାନେ ଯେପରି ବେଦକୁ ପ୍ରାର୍ଥନା କରନ୍ତି ତଦ୍‌ବତ୍ ତୁମ୍ଭ ବିହୀନରେ ଅପାତ୍ର ବ୍ୟକ୍ତିମାନେ ଅମ୍ଭଙ୍କୁ ପରାଭବ କରି ଏହି ଅନାଥା ବାଳିକାକୁ ପ୍ରାର୍ଥନା କରିବେ । ୧୬। ତୁମ୍ଭ ଗୁଣର ଅନୁକାରିଣୀ ଏହି କନ୍ୟାକୁ ଯେବେ ଅମ୍ଭେ ଅନୁପଯୁକ୍ତ ପାତ୍ରରେ ଦେବାକୁ ଇଚ୍ଛା ନ କରିବୁଁ ତେବେ ଅଧ୍ୱରରୁ କାକ ଘୃତ ହରଣ କଲା ପ୍ରାୟ ବଳପୂର୍ବକ ସେମାନେ ଏହି କନ୍ୟାକୁ ନିର୍ଭୟରେ ହରଣ କରିବେ । ୧୭ ।

ହେ ବ୍ରହ୍ମନ୍ । ତେତେବେଳେ ତୁମ୍ଭର ଏହି ପୁତ୍ରକୁ ଅନନୁରୂପ ଅବସ୍ଥାପନ୍ନ ଓ ସୁତାକୁ ଅନର୍ହ ବ୍ୟକ୍ତିର ବଶୀଭୂତ ହେବାର ବିଲୋକନ କରି, ଦୃପ୍ତ ବ୍ୟକ୍ତିଙ୍କ ଦ୍ୱାରା ଲୋକରେ ଅବଜ୍ଞାତ ହୋଇ ଓ କର୍ତ୍ତବ୍ୟ ବିମୂଢ଼ା ହୋଇ ନିଃସଂଶୟରେ ଅମ୍ଭେ ମରଣ ପ୍ରାପ୍ତ ହେବୁଁ । ୧୯ । ତାହାହେଲେ ଜଳକ୍ଷୟରେ ଯେପରି ମତ୍ସ୍ୟମାନେ ଜୀବନ ତ୍ୟାଗ କରନ୍ତି, ତଦ୍‌ବତ୍ ତୁମ୍ଭର ଓ ଅମ୍ଭର ବିହୀନରେ ଏହି ବାଳକ ଦୁଇଟି ବିନଷ୍ଟ ହେବେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ୨୦ । ତୁମ୍ଭ ବିହୀନରେ ଅମ୍ଭେ ତିନିଜଣ ନିଶ୍ଚୟ ମରିବୁଁ । ଅତଏବ ତୁମ୍ଭର ଅମ୍ଭଙ୍କୁ ପରିତ୍ୟାଗ କରିବା ଯୁକ୍ତି-ସଙ୍ଗତ ଅଟେ । ୨୧ । ଧର୍ମବେତ୍ତାମାନେ କହିଅଛନ୍ତି ଯେ ସପୁତ୍ର ସ୍ତ୍ରୀମାନେ ଭର୍ତ୍ତାଙ୍କର ପୂର୍ବରୁ ମୃତା ହେଲେ ସଦ୍‌ଗତି ପ୍ରାପ୍ତ ହୁଅନ୍ତି । ୨୨ । ଏହି ସୁତ ପରିତ୍ୟକ୍ତ ହେଲା, ସୁତାକୁ ମଧ୍ୟ ପରିତ୍ୟାଗ କଲୁଁ, ବାନ୍ଧବମାନେ ମଧ୍ୟ ପରିତ୍ୟକ୍ତ ହେଲେ; ତୁମ୍ଭ ନିମିତ୍ତ ଜୀବନକୁ ସୁଦ୍ଧା ଅମ୍ଭେ ପରିତ୍ୟାଗ କଲୁଁ । ୨୩ । ଯଜ୍ଞ, ତପସ୍ୟା, ବ୍ରତ ଓ ବିବିଧ ପ୍ରକାର ଦାନ କରିବା ଅପେକ୍ଷା ଭର୍ତ୍ତାଙ୍କର ସର୍ବଦା ପ୍ରିୟ ଓ ହିତକାର୍ଯ୍ୟ ଅନୁଷ୍ଠାନ କରିବା ସ୍ତ୍ରୀ ପକ୍ଷରେ ଅଧିକ ପ୍ରଶସ୍ତ ଅଟେ । ୨୪ ।

ଅତଏବ ଯେଉଁ କାର୍ଯ୍ୟ କରିବାକୁ ଇଚ୍ଛା କରିଅଛୁଁ, ସେ କାର୍ଯ୍ୟ ଧର୍ମ ସମ୍ମତ ଓ ଇଷ୍ଟ ଅଥଚ ତୁମ୍ଭ କୁଳର ହିତଜନକ ଅଟେ । ୨୫ । ଇଷ୍ଟଦ୍ରବ୍ୟ ଅପତ୍ୟ ଓ ସୁହୃଦବର୍ଗ, ଭାର୍ଯ୍ୟା ଓ ଅପର ଯେତେ ପ୍ରିୟ ପଦାର୍ଥ ଅଛି ସମସ୍ତେ ଆପଣାକୁ ଆପଦ୍ଧର୍ମରୁ ରକ୍ଷା କରିବା ନିମିତ୍ତ ରକ୍ଷିତ ହୋଇଥାନ୍ତି ବୋଲି ସଜ୍ଜନମାନଙ୍କର ମତ । ୨୬ । ଆପଦ ନିମିତ୍ତ ଧନ

ସଞ୍ଚୟ କରିବ, ଧନ ଦ୍ୱାରା ଦାରାକୁ ରକ୍ଷା କରିବ; ଦାରା ଓ ଧନ ଦ୍ୱାରା ଆତ୍ମାକୁ ସତତ ରକ୍ଷା କରିବ । ୨୭ । ପଣ୍ଡିତମାନଙ୍କର ମତ ଯେ ଦୃଷ୍ଟ ଓ ଅଦୃଷ୍ଟ ଏହି ଉଭୟ ଫଳ ନିମିତ୍ତ ଭାର୍ଯ୍ୟା, ପୁତ୍ର, ଧନ ଓ ଗୃହ ପ୍ରଭୃତି ଆହରଣ କରିବ । ୨୮ । ଅଧିକନ୍ତୁ ବୁଧମାନେ ନିଶ୍ଚୟ କରି ଅଛନ୍ତି ଯେ ଏକଦିଗରେ ସମଗ୍ର କୁଳ ଓ ଅପର ଦିଗରେ କୁଳବର୍ଦ୍ଧନ ଆତ୍ମାକୁ ଯେବେ ତୁଳନା କରାଯାଏ, ତେବେ ସମଗ୍ର କୁଳ ଆତ୍ମାର ସମାନ ହୁଏ ନାହିଁ । ୨୯ । ଅତଏବ ହେ ଆର୍ଯ୍ୟ ! ତୁମ୍ଭେ ଆମ୍ଭ ଦ୍ୱାରା କାର୍ଯ୍ୟ ସାଧନ କର ଓ ଆମ୍ଭ ଦ୍ୱାରା ଆତ୍ମ ରକ୍ଷାକର; ଆମ୍ଭଙ୍କୁ ଗମନ କରିବାକୁ ଅନୁଜ୍ଞା ଦିଅ ଓ ସୁତଙ୍କୁ ପରିପାଳନ କର । ୩୦ । ଧର୍ମଜ୍ଞ ବ୍ୟକ୍ତିମାନେ କହି ଅଛନ୍ତି ଯେ ସ୍ତ୍ରୀମାନେ ଅବଧ୍ୟ, ରାକ୍ଷସ ମାନଙ୍କୁ ମଧ୍ୟ ଧର୍ମଜ୍ଞ ବୋଲି ନିଶ୍ଚୟ କରି ଅଛନ୍ତି; ଅତଏବ ଆମ୍ଭଙ୍କୁ ସ୍ତ୍ରୀବୋଲି ସେ ରାକ୍ଷସ ବଧ କରି ନ ପାରେ, ପରିତ୍ୟାଗ କରିପାରେ । ୩୧ ।

ହେ ଧର୍ମଜ୍ଞ ! ଯେଉଁ ସ୍ଥଳରେ ପୁରୁଷ ବଧ ନିଶ୍ଚିତ ଓ ସ୍ତ୍ରୀର ବଧ ସଂଶୟିତ; ସେ ସ୍ଥଳରେ ଆମ୍ଭଙ୍କୁ ପଠାଇବା ତୁମ୍ଭର କର୍ତ୍ତବ୍ୟ । ୩୨ । ଆମ୍ଭେ ଅନେକ ସୁଖ ଭୋଗ କରିଅଛୁଁ ଓ ପ୍ରିୟାନୁଷ୍ଠାନ କରିଅଛୁଁ; ଅଥଚ ଧର୍ମୋପାର୍ଜ୍ଜନ କରିଅଛୁଁ; ତୁମ୍ଭଠାରୁ ପ୍ରିୟ-ସନ୍ତାନ ମଧ୍ୟ ଲାଭ କରିଅଛୁଁ; ଅତଏବ ଏ ସମୟରେ ଆମ୍ଭର ଜୀବନ ନ ଥିଲେହେଁ କେହି ଅନୁତାପ କରିବେ ନାହିଁ । ୩୩ । ଆମ୍ଭର ପୁତ୍ର ପୁତ୍ରୀ ଜାତ ହୋଇ ଅଛନ୍ତି, ବୃଦ୍ଧା ହୋଇଅଛୁଁ, ତୁମ୍ଭର ପ୍ରିୟ କାର୍ଯ୍ୟ କରିବାରେ ଆମ୍ଭେ ସର୍ବଦା ରତ, ଏ ସବୁ ବିଚାର କରି ଆମ୍ଭେ ଏ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହୋଇଅଛୁଁ । ୩୪ । ଆର୍ଯ୍ୟ ! ତୁମ୍ଭେ ଆମ୍ଭଙ୍କୁ ତ୍ୟାଗ କରି ଇଚ୍ଛା ହେଲେ ଅପର ଭାର୍ଯ୍ୟା ମଧ୍ୟ ଗ୍ରହଣ କରି ପାରିବ, ତହିଁରେ ତୁମ୍ଭର ଧର୍ମ ପୁନଶ୍ଚ ପ୍ରତିଷ୍ଠିତ ହୋଇ ପାରିବ । ୩୫ । ହେ କଲ୍ୟାଣ ! ବହୁପତ୍ନୀକତା ମନୁଷ୍ୟମାନଙ୍କର ଅଧର୍ମ ନୁହେ; କିନ୍ତୁ ପୂର୍ବ ଭର୍ତ୍ତାଙ୍କୁ ଲଙ୍ଘନ କରିବା ସ୍ତ୍ରୀମାନଙ୍କ ପକ୍ଷରେ ମହାନ୍ ଅଧର୍ମ ଅଟେ । ୩୬ । ଏହିସବୁ ବିଷୟ ପର୍ଯ୍ୟାଲୋଚନା କରି, ଆତ୍ମା ତ୍ୟାଗକୁ ଗର୍ହିତ ଜ୍ଞାନ କର, ଶୀଘ୍ର ଆପଣାକୁ ଉଦ୍ଧାର କର, କୁଳକୁ ଓ ଏହି ଶିଶୁ ଦୁଇଗୋଟିକୁ ରକ୍ଷା କର । ୩୭ ।

ବୈଶମ୍ପାୟନ ବୋଇଲେ—ଭାର୍ଯ୍ୟାଙ୍କର ତଦ୍ରୂପ ବଚନ ଶ୍ରବଣ ପୂର୍ବକ ବ୍ରାହ୍ମଣ ତାହାଙ୍କୁ ଆଲିଙ୍ଗନ କରି ବାଷ୍ପମୋଚନ କରିଲେ ଓ ଦୁଇଜଣ ଅତିଶୟ ଦୁଃଖିତ ହେଲେ । ୩୮ ।

---

## ଅଧ୍ୟାୟ—୧୫୯

ବୈଶମ୍ପାୟନ ବୋଇଲେ—ଅନନ୍ତର ସେହି ଦୁଃଖିତା ପିତା-ମାତାଙ୍କର ତାଦୃଶ ବାକ୍ୟ ଶ୍ରବଣ କରି ଦୁଃଖ-ପରୀତାଙ୍ଗୀ କନ୍ୟାଟି ତାହାଙ୍କୁ ବୋଇଲା, ଆପଣମାନେ କି ନିମିତ୍ତ ଅତିଶୟ ଦୁଃଖାର୍ତ୍ତ ହୋଇ ଅନାଥ ପ୍ରାୟ ରୋଦନ କରୁଅଛ ? ଏବେ ଆମ୍ଭର କଥା ଶୁଣି ଯାହା କର୍ତ୍ତବ୍ୟ ହେବ କର । ୨ । ଆପଣମାନେ ଦିନେ ଅବଶ୍ୟ ଆମ୍ଭଙ୍କୁ ପରିତ୍ୟାଗ କରିବ, ଅତଏବ ଏକାକୀ ଆମ୍ଭଙ୍କୁ ପରିତ୍ୟାଗ କରି ସମସ୍ତେ ରକ୍ଷା ପାଅ । ୩ । ଆପଣାକୁ ଉଦ୍ଧାର କରିବା ନିମିତ୍ତ ସମସ୍ତେ ଅପତ୍ୟ କାମନା କରନ୍ତି । ଅତଏବ ଏହି ସମୟ ଉପସ୍ଥିତ ହୋଇଅଛି; ଆମ୍ଭଙ୍କୁ ପ୍ଲବ କରି ଆପଣମାନେ ଉଦ୍ଧାର ପାଅ । ୪ ।

ଇହଲୋକରେ ଅଥବା ପରଲୋକରେ ଯେ ଦୁଃଖରୁ ତାରେ ତାକୁ ବୁଧମାନେ ପୁତ୍ର ବୋଲି ବୋଲନ୍ତି; ପିତୃଲୋକେ ଉଦ୍ଧାର ପାଇବା ନିମିତ୍ତ କନ୍ୟାଠାରୁ ଦୌହିତ୍ର ପ୍ରତ୍ୟାଶା କରନ୍ତି; କିନ୍ତୁ ଆମ୍ଭେ ଦୌହିତ୍ରର ଅପେକ୍ଷା ନ କରି ସ୍ୱୟଂ ପିତାଙ୍କର ଜୀବିତ ରକ୍ଷା କରି ତାହାଙ୍କୁ ପରିତ୍ରାଣ କରିବୁଁ । ୬ । ଆପଣ ଯଦି ପରଲୋକକୁ ଗମନ କରନ୍ତି, ତେବେ ଆମ୍ଭ ଏହି ବାଳକ ଭ୍ରାତାଟି ଅଚିର କାଳ ମଧ୍ୟରେ ବିନଷ୍ଟ ହେବ, ଏଥିରେ ସଂଶୟ ନାହିଁ । ତାତ ସ୍ୱର୍ଗକୁ ଗମନ କଲେ ଓ ଆମ୍ଭର ଅନୁଜଟି ବିନଷ୍ଟ ହେଲେ, ପିତୃଗଣଙ୍କର ପିଣ୍ଡ ବିଚ୍ଛେଦ ଘଟିବ; ତଦ୍ଦ୍ୱାରା ସେମାନଙ୍କର ଅପ୍ରିୟ ହେବ ।୮। ପିତା, ମାତା ଓ ଭ୍ରାତା ସମସ୍ତେ ଆମ୍ଭଙ୍କୁ ତ୍ୟାଗ କଲେ, ଆମ୍ଭେ ଅତିଶୟ ଦୁଃଖରେ ପତିତ ହୋଇ ନିଶ୍ଚୟ ମରିବୁଁ । ୯ । ଆପଣ ନିରାପଦରେ ମୁକ୍ତ ହେଲେ, ମାତା ଓ ଆମ୍ଭର ଶିଶୁ-ଭ୍ରାତା ସନ୍ତାନ ଓ ପିଣ୍ଡ ଅସଂଶୟରେ ପ୍ରତିଷ୍ଠିତ ହେବ । ୧୦ । ପୁତ୍ର ଆତ୍ମା ସ୍ୱରୂପ, ଭାର୍ଯ୍ୟା ସଖୀ ସ୍ୱରୂପ, ଦୁହିତା କେବଳ କଷ୍ଟଦାୟକ; ଅତଏବ ଆପଣ କୃଚ୍ଛ୍ରଦଶାରୁ ମୁକ୍ତ ହୁଅ ଓ ମୋତେ ଧର୍ମ୍ମରେ ନିଯୁକ୍ତ କର ।୧୧। ଅନ୍ୟଥା ହେ ତାତ । ତୁମ୍ଭ

ବିହୀନରେ ମୁଁ ସର୍ବଦା ଦୀନା ହୋଇ ଇତସ୍ତତଃ ଗମନ କରିବି; ତଦପେକ୍ଷା ମୋହର ଏହି ସୁଦୁଷ୍କର କର୍ମ୍ମକରି କୁଳରକ୍ଷା କରିବା ଓ ଫଳ-ଭାଗିନୀ ହେବା ମଙ୍ଗଳ ଜନକ । ୧୩ ।

ହେ ଦ୍ୱିଜସତ୍ତମ । ଆପଣ ଯେବେ ମୋତେ ଛାଡ଼ି ସେହି ରାକ୍ଷସ ସମୀପକୁ ଗମନ କରିବେ ତେବେ ମୁଁ ଅତିଶୟ ପୀଡ଼ିତା ହେବି; ମୋ ପ୍ରତି କୃପା ଦୃଷ୍ଟି କର । ୧୪ । ଏହି କାରଣରୁ ହେ ସତ୍ତମ । ମୋହର ଭଲ ନିମିତ୍ତ; ଧର୍ମରକ୍ଷା ନିମିତ୍ତ ଓ ସନ୍ତାନ ରକ୍ଷା ନିମିତ୍ତ ଆତ୍ମାକୁ ରକ୍ଷା କର ଓ ମୁଁ ଦିନେ ନିଶ୍ଚୟ ତ୍ୟକ୍ତବ୍ୟ ହେବି—ମୋତେ ତ୍ୟାଗ କର, ଅବଶ୍ୟ କରଣୀୟ ବିଷୟରେ କାଳ ବିଳମ୍ବ କର ନା । ୧୫ । ଏଥିରୁ କି ଅଧିକ ଦୁଃଖ ଜନକ ବିଷୟ ଅଛି ଯେ ଆପଣ ସ୍ୱର୍ଗତଃ ହେଲେ ଆମ୍ଭେମାନେ ଅନ୍ନଭିକ୍ଷା କରି କୁକ୍‌କୁର ପ୍ରାୟ ଦ୍ୱାର ଦ୍ୱାର ଭ୍ରମଣ କରିବୁଁ । ୧୬ । ଆପଣ ଯେବେ ସବାନ୍ଧବରେ ନିରାପଦରେ କ୍ଳେଶ ମୁକ୍ତ ହୁଅନ୍ତି ତେବେ ଅମ୍ଭେ ସତୀଲୋକରେ ଅମରଣଶୀଳା ଓ ସୁଖାନ୍ୱିତା ହୋଇ ରହି ପାରିବୁଁ । ୧୭ । ଏହା ମଧ୍ୟ ଅମ୍ଭେ ଶୁଣିଅଛୁଁ ଯେ କନ୍ୟାକୁ ଏପରି ଦୁର୍ଦ୍ଦାନ କଲେ ହେଁ ଆପଣଙ୍କର ପ୍ରଦତ୍ତ ଜଳରେ ପିତୃଗଣ ଆପଣଙ୍କର ଓ ଆମ୍ଭର ହିତକାରୀ ହେବେ । ୧୮ ।

ବୈଶମ୍ପାୟନ ବୋଇଲେ—ଏହି ପ୍ରକାରେ ସେହି କନ୍ୟାର ବହୁବିଧ ବାକ୍ୟ ଶ୍ରବଣ କରି ପିତା ମାତା ଓ ସେ କନ୍ୟା ତିନିଜଣେ ପ୍ରକର୍ଷ ଭାବରେ ରୋଦନ କଲେ । ୧୯ । ତଦନନ୍ତର ସମସ୍ତଙ୍କ ରୋଦନ କରିବାର ଶୁଣି ଉତ୍‌ଫୁଲ୍ଲ-ନୟନ ବାଳକ-ସୁତ ଅସ୍ଫୁଟ ବଚନରେ ବୋଇଲା, ପିତା । ରୋଦନ କରନା, ମାତା । ରୋଦନ କରନା, ନାନି । ରୋଦନ କରନା । ଏହା କହି ହସି ହସି ଗୋଟି ଗୋଟି କରି ସମସ୍ତଙ୍କ ନିକଟକୁ ଗମନ କଲା ।୨୧ । ତଦନନ୍ତର ସେ ବାଳକ କେରାଏ ତୃଣ ଧରି ପ୍ରହୃଷ୍ଟ ହୋଇ ପୁନର୍ବାର ବୋଇଲା, ଏହା ଦ୍ୱାରା ମୁଁ ସେହି ପୁରୁଷାଦକ ରାକ୍ଷସକୁ ହନନ କରିବି ।୨୨ । ଏପରି ଦୁଃଖରେ ପୀଡ଼ିତ ହୋଇ ସୁଦ୍ଧା, ବାଳକର ସେହି ଅବ୍ୟକ୍ତ ବାକ୍ୟ ଶ୍ରବଣ କରି ସେମାନଙ୍କର ମହାନ୍ ହର୍ଷ ଜାତ ହେଲା ।୨୩। ଏବେ ଉଚିତ ସମୟ ଜାଣି କୁନ୍ତୀ ସେମାନଙ୍କ ସମୀପକୁ ଅପସୃତ ହୋଇ ସେମାନଙ୍କୁ ପ୍ରାଣଦାନ କଲା ପ୍ରାୟ ବୋଇଲେ । ୨୦ ।

———

## ଅଧ୍ୟାୟ—୧୬୦

କୁନ୍ତୀ ବୋଇଲେ—ଆପଣମାନଙ୍କର ଏହି ଦୁଃଖର ମୂଳ କଣ ? ଆମ୍ଭେ ତତ୍ତ୍ୱରୂପେ ଜାଣିବାକୁ ଇଚ୍ଛା କରଅଛୁଁ; ଶୁଣିଲେ ଯେବେ ଆମ୍ଭର ସାଧ୍ୟ ହେବ, ତେବେ ସେ ଦୁଃଖ ଅପକର୍ଷଣ କରିବୁଁ ।

ବ୍ରାହ୍ମଣ ବୋଇଲେ—ହେ ତପସ୍ୱିନୀ ! ଆପଣ ଯାହା କହୁଅଛନ୍ତି; ସଜ୍ଜନମାନଙ୍କର ତାହା ଅବଶ୍ୟ କର୍ତ୍ତବ୍ୟ; କିନ୍ତୁ ଏ ଦୁଃଖକୁ ବ୍ୟପେହିତ କରିବା ମନୁଷ୍ୟର ସାଧ୍ୟ ନୁହେଁ । ୨ । ଏହି ନଗର ସମୀପରେ ବକ ନାମକ ଗୋଟିଏ ରାକ୍ଷସ ବାସ କରେ, ସେ ମହାବଳ ଏହି ଦେଶର ଓ ନଗରର ପ୍ରଭୁ ଅଟେ । ୩ । ସେହି ଦୁର୍ବୁଦ୍ଧି ପୁରୁଷାଦକ ମାନୁଷ ମାଂସ ଆହାର କରି ପୁଷ୍ଟ ହୋଇଅଛି । ସେ ବଳବାନ୍ ଅସୁରରାଜା ଏହି ଜନପଦକୁ ସର୍ବଦା ରକ୍ଷା କରୁଅଛି । ରାକ୍ଷସବଳ ସହିତ ହୋଇ ସେ ଏହି ନଗରକୁ ଓ ଦେଶକୁ ରକ୍ଷା କରୁଥିବାରୁ ଆମ୍ଭମାନଙ୍କର ଶତ୍ରୁ ଦେଶରୁ ଓ ଅପର କୌଣସି ପ୍ରାଣୀ ଠାରୁ ଭୟ ନାହିଁ । ୫ ।

ପରନ୍ତୁ ଏକ ଶକଟ ଅନ୍ନ, ଦୁଇଗୋଟା ମହିଷ ଓ ଯେଉଁ ମନୁଷ୍ୟ ସେ ସବୁ ଘେନି ଯିବ ସେ ତାହାର ଭୋଜନ ସ୍ୱରୂପ ବେତନ ନିର୍ଦ୍ଦିଷ୍ଟ ଅଛି । ୬ । ଏହି ଦେଶର ଗୃହସ୍ଥମାନେ ପ୍ରତ୍ୟେକର ପର୍ଯ୍ୟାୟ କ୍ରମେ ଦିନେ ଦିନେ ପ୍ରତ୍ୟହ ତାହାର ତଦ୍ରୂପ ଭୋଜନ ପ୍ରଦାନ କରନ୍ତି । ବହୁ ବର୍ଷର ପରେ ଏକ ଗୃହସ୍ଥର ଦିନେ ଦିନେ ସେହି ଦାରୁଣ ଦୁଷ୍କର ବାର ଉପସ୍ଥିତ ହୁଏ । ୭ । ଯଦ୍ୟପି କଦାଚିତ୍ କେହି ପୁରୁଷ ତହିଁରୁ ମୁକ୍ତ ହେବାକୁ ଇଚ୍ଛା କରେ ତେବେ ସେ ରାକ୍ଷସ ଆସି ତାହାର ପୁତ୍ର ଦାର ସମସ୍ତଙ୍କୁ ବଧ କରି ଭକ୍ଷଣ କରେ । ୮ । ଏହି ପ୍ରଦେଶରେ ବେତ୍ରକୀୟ ଗୃହନାମକ ସ୍ଥାନରେ ଗୋଟିଏ ରାଜା ଅଛନ୍ତି, ସେହି ନିର୍ବୁଦ୍ଧି-ନୃପତି ନୀତିର ଆଶ୍ରୟ ଗ୍ରହଣ କରନ୍ତି ନାହିଁ; ଯଦିଚ ସେ ସ୍ୱୟଂ ରାକ୍ଷସ ବଧରେ ଅସମର୍ଥ, ତଥାପି ଯେଉଁ ପ୍ରକାରରେ ଏହି ଲୋକମାନଙ୍କର ଚିରକାଳ ନିମିତ୍ତ ଅନାମୟ ହେବ, ତହିଁର ଉପାୟ କରନ୍ତି ନାହିଁ । ୯ । ଆମ୍ଭେମାନେ ନିରନ୍ତର ଉଦ୍‌ବିଗ୍ନ ହୋଇ ସେହି କୁରାଜାଙ୍କ ବିଷୟରେ ବାସ କରୁଥିବାରୁ ଏହି ଦୁର୍ଦ୍ଦଶାର ଯୋଗ୍ୟପାତ୍ର ହୋଇଅଛୁଁ । ୧୦ । ବ୍ରାହ୍ମଣମାନଙ୍କୁ କୌଣସି ବ୍ୟକ୍ତି ସ୍ୱରାଜ୍ୟରେ ବାସ କରାଇ ପାରନ୍ତି ନାହିଁ;

ଯେ ହେତୁ ସେମାନେ ସ୍ୱଚ୍ଛନ୍ଦ ବିହାରୀ, କାମଗାମୀ ପକ୍ଷୀମାନଙ୍କ ପ୍ରାୟ ଯେମାନେ ରାଜାମାନଙ୍କ ଗୁଣ ଅଥବା ଦେଶର ଗୁଣ ଘେନି ବାସ କରନ୍ତି । ୧୧ କିନ୍ତୁ ଅମ୍ଭେ ତହିଁର ଅନ୍ୟଥାଚରଣ କରିଅଛୁଁ । କଥିତ ଅଛି ଯେ ପ୍ରଥମେ ରାଜାଙ୍କୁ, ପରେ ଭାର୍ଯ୍ୟାକୁ ଓ ତତ୍ପରେ ଧନକୁ ଉପାର୍ଜନ କରିବ; ଏ ତିନିହିଙ୍କ ସଞ୍ଚୟ କଲାପରେ ଜ୍ଞାତି ଓ ପୁତ୍ରମାନଙ୍କ ପରିତ୍ରାଣ କରିବ । ୧୨। କିନ୍ତୁ ଅମ୍ଭେ ବିପରୀତ ରୀତିରେ ସେ ତିନିହିଙ୍କ ଉପାର୍ଜନ କରିଅଛୁଁ, ଏହି କାରଣରୁ ଅମ୍ଭେ ଏହି ଆପଦ ପ୍ରାପ୍ତ ହେଲୁଁ ଓ ଅମ୍ଭେ ସମସ୍ତେ ସନ୍ତାପ କରୁଅଛୁଁ । ୧୩ ।

ଅଦ୍ୟ ଆମ୍ଭମାନଙ୍କର ସେହି କୁଳ-ବିନାଶକାରୀ ବାର ଉପସ୍ଥିତ ହୋଇଅଛି, ରାକ୍ଷସର ଭୋଜନାର୍ଥ ବେତନ ସ୍ୱରୂପ ଅଦ୍ୟ ଜଣେ ମନୁଷ୍ୟ ଦେବାର ପାଳି ହୋଇଅଛି । ୧୪ । ଅପର ଜଣେ ପୁରୁଷକୁ କିଣି ଦେବାକୁ ମଧ୍ୟ ଆମ୍ଭ ବିତ୍ତ ନାହିଁ; କି ସୁହୃଦ ଜନକୁ ଦାନ କରିବା କାରଣ ଆମ୍ଭର ସାମର୍ଥ୍ୟ ନାହିଁ । ୧୫ । ସେହି ରାକ୍ଷସ ଠାରୁ ମୁକ୍ତହେବାର ଗତି ମଧ୍ୟ ଦେଖୁନାହୁଁ; ସୁତରାଂ ଅସୁତର ଦୁଃଖାର୍ଣ୍ଣବରେ ମଗ୍ନ ହୋଇ-ଅଛୁଁ । ୧୬ । ଅଦ୍ୟ ଅମ୍ଭେ ସବୁ ବାନ୍ଧବମାନଙ୍କ ସହିତ ସେହି ରାକ୍ଷସ ଠାକୁ ଗମନ କରିବୁଁ, ସେହି କ୍ଷୁଦ୍ରାଶୟ ଆମ୍ଭମାନଙ୍କୁ ଭକ୍ଷଣ କରୁ । ୧୭ ।

---

## ଅଧ୍ୟାୟ—୧୬୧

କୁନ୍ତୀ ବୋଇଲେ—ଏହି ରାକ୍ଷସଠାରୁ ଭୟ କରି ତୁମ୍ଭେ ବିଷାଦ କରନା; ତାହାଠାରୁ ମୁକ୍ତ ହେବାର ଉପାୟ ଅମ୍ଭେ ସୃଷ୍ଟି କରିଅଛୁଁ । ୧ । ତୁମ୍ଭର ଗୋଟିଏ ବାଳକ-ସୁତ ଓ ଗୋଟିଏ କନ୍ୟା ସେ ତପସ୍ୱିନୀ, ଏ ଦୁହିଁଙ୍କୁ ଓ ପତ୍ନୀକୁ ଘେନି ତୁମ୍ଭର ଯିବା ଆମ୍ଭମନକୁ ଆସୁନାହିଁ । ୨ । ହେ ବ୍ରହ୍ମନ୍ ! ଆମ୍ଭର ପଞ୍ଚ ପୁତ୍ର, ତନ୍ମଧ୍ୟରୁ ଗୋଟିଏ ସେହି ପାପାତ୍ମାର ଭକ୍ଷ୍ୟ ଘେନି ଗମନ କରିବ । ୩ ।

ବ୍ରାହ୍ମଣ ବୋଇଲେ—ଅମ୍ଭେ ଛାର ଜୀବନ ନିମିତ୍ତ ଏପରି କାର୍ଯ୍ୟ କରିବୁ ନାହିଁ; ବ୍ରାହ୍ମଣ ତହିଁରେ ଅତିଥି, ଆପଣା ନିମିତ୍ତ ଅମ୍ଭେ ତାହାଙ୍କର

ପ୍ରାଣ ବିନାଶ କରିବୁଁ ? । ୪ । ଯେଉଁମାନେ ଅକୁଳୀନ ଓ ଅଧର୍ମିଷ୍ଠ ସେମାନେ ସୁଦ୍ଧା ଏତାଦୃଶ ଘୃଣିତ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହୁଅନ୍ତି ନାହିଁ । ବ୍ରାହ୍ମଣାର୍ଥ ଆପଣାକୁ ଅଥବା ଆତ୍ମଜକୁ ବିସର୍ଜନ କରିବାର ଯେଉଁ ବିଧି ଅଛି ତାହାକୁ ଆମ୍ଭେ ଶ୍ରେୟସ୍କର ଜ୍ଞାନ କରୁଅଛୁଁ ଓ ତାହା କରିବାକୁ ଆମ୍ଭର ଅଭିରୁଚି ହେଉଅଛି । ବ୍ରାହ୍ମଣବଧ ଓ ଆତ୍ମ ବଧ ଏ ଦୁହିଙ୍କ ମଧ୍ୟରେ ଆତ୍ମ-ବଧ ଶ୍ରେୟସ୍କର । ୬ । କାରଣ ବ୍ରହ୍ମ-ବଧ ପରମ ପାତକଜନକ ତହିଁରୁ ନିଷ୍କୃତି ନାହିଁ; ଅବୁଦ୍ଧି ପୂର୍ବକ ବ୍ରହ୍ମବଧ କରିବା ଅପେକ୍ଷା ଅବୁଦ୍ଧି ପୂର୍ବକ ଆତ୍ମ-ବଧ କରିବା ଶ୍ରେୟୋଜନକ । ୭ ।

ହେ ଶୁଭେ । ଆମ୍ଭେ ଆପଣା ଇଚ୍ଛାରେ ଆତ୍ମ ବଧ ଇଚ୍ଛା କରୁନାହୁଁ, ଅନ୍ୟବ୍ୟକ୍ତି ଆମ୍ଭଙ୍କୁ ବଧ କରିବ ତହିଁରେ ଆମ୍ଭଙ୍କୁ ପାପ ସ୍ପର୍ଶ କରିବ ନାହିଁ । ୮ । ଯଦି ଆମ୍ଭେ ମନ ଇଚ୍ଛାରେ ହୃଦୟରେ କୌଣସି ଅଭିସନ୍ଧି ରଖି ବ୍ରହ୍ମ-ବଧ କରନ୍ତୁ, ତେବେ ଆମ୍ଭେ କୌଣସି ପ୍ରକାର ନିଷ୍କୃତି ପାଇ ପାରନ୍ତୁ ନାହିଁ । ୯ । ଗୃହାଗତ ବ୍ୟକ୍ତିକୁ ଅଥବା ଶରଣାଗତ ବ୍ୟକ୍ତିକୁ ତ୍ୟାଗ କରିବା ଓ ଯାଚକର ବଧ କରିବାକୁ ପଣ୍ଡିତମାନେ ଗର୍ହିତ ଓ ନୃଶଂସ ବୋଲି ବୋଲନ୍ତି । ୧୦ । ଆପଦ୍ଧର୍ମବେତ୍ତା ପୂର୍ବ ମହାତ୍ମାମାନେ କହି ଅଛନ୍ତି ଯେ ନୃଶଂସ ଓ ନିନ୍ଦିତ କର୍ମ କଦାପି କରିବ ନାହିଁ । ୧୧ । ବରଂ ଆମ୍ଭର ଦାରା ସହ ବିନାଶ ଶ୍ରେୟ; କିନ୍ତୁ ଆମ୍ଭେ ବ୍ରାହ୍ମଣର ବଧ ବିଷୟରେ କଦାପି ଅନୁମୋଦନ କରିବୁ ନାହିଁ । ୧୨ ।

କୁନ୍ତୀ ବୋଇଲେ—ଆମ୍ଭର ମଧ୍ୟ ଏହା ମତ ଯେ ବ୍ରାହ୍ମଣମାନେ ସର୍ବଦା ରକ୍ଷଣୀୟ; ଯଦି ଆମ୍ଭର ଶତ ପୁତ୍ର ହୁଏ, ତେବେ ମଧ୍ୟ ଆମ୍ଭେ ସେମାନଙ୍କୁ ହତାଦର କରିବୁ ନାହିଁ । ୧୩ । କିନ୍ତୁ ଆମ୍ଭର ପୁତ୍ରକୁ ବିନାଶ କରିବାକୁ ରାକ୍ଷସ ସମର୍ଥ ହେବ ନାହିଁ; ଆମ୍ଭର ପୁତ୍ର ବୀର୍ଯ୍ୟଶାଳୀ, ମନ୍ତ୍ରସିଦ୍ଧି ଓ ତେଜସ୍ୱୀ । ୧୪ । ଆମ୍ଭେ ନିଶ୍ଚୟ ଜାଣୁଅଛୁଁ ଯେ ଆମ୍ଭର ପୁତ୍ର ରାକ୍ଷସକୁ ସେ ସମସ୍ତ ଭୋଜନ ଦେଇ ଆପଣାକୁ ତାହାଠାରୁ ମୁକ୍ତ କରିବେ । ୧୫ । ହେ ବ୍ରହ୍ମନ୍ ! ଆମ୍ଭର ପୁତ୍ର ଅନେକ ମହାକାୟ ଓ ବଳବନ୍ତ ରାକ୍ଷସଙ୍କୁ ନିହତ କରି ଅଛନ୍ତି; ଏକଥା ଆପଣ କାହାରିକୁ ବ୍ୟକ୍ତ କରିବେ ନାହିଁ । ୧୬ । ବ୍ୟକ୍ତ କଲେ ବିଦ୍ୟାର୍ଥୀମାନେ କୌତୂହଳାକ୍ରାନ୍ତ ହୋଇ ଏହି ବିଦ୍ୟା ଶିଖିବା ନିମିତ୍ତ ଆମ୍ଭର ପୁତ୍ରମାନଙ୍କୁ ସର୍ବଦା ବିରକ୍ତ କରିବେ । ମଦୀୟ ତନୟ ଗୁରୁଙ୍କର ଅନୁମତି ବ୍ୟତିରେକେ ଅନ୍ୟ କାହାକୁ ସେ ବିଦ୍ୟା

ପ୍ରଦାନ କଲେ ତାହା ଦ୍ୱାରା ଆଉ କୌଣସି ପ୍ରକାର କାର୍ଯ୍ୟ ସିଦ୍ଧି ହେବ ନାହିଁ । ୧୭ ।

କୁନ୍ତୀଙ୍କର ସେହି ବାକ୍ୟକୁ ବ୍ରାହ୍ମଣ ଶ୍ରବଣ କରି ଭାର୍ଯ୍ୟାଙ୍କ ସହ ଅତିଶୟ ହୃଷ୍ଟ ହେଲେ ଓ ଅମୃତୋପମ ସେହି ବାକ୍ୟକୁ ସମାଦର ପୂର୍ବକ ଗ୍ରହଣ କଲେ । ୧୮ । ପରେ କୁନ୍ତୀ ଓ ବ୍ରାହ୍ମଣ ଏକତ୍ର ହୋଇ ବାୟୁପୁତ୍ର ଭୀମସେନଙ୍କୁ ସେହି ଦୁରୂହ କର୍ମ କରିବାକୁ ଅନୁରୋଧ କଲେ । ଭୀମସେନ ମଧ୍ୟ କରିବି ବୋଲି ସ୍ୱୀକୃତ ଦେଲେ । ୧୯ ।

---

## ଅଧ୍ୟାୟ—୧୭୨

ବୈଶମ୍ପାୟନ କହିଲେ—ହେ ଭାରତ । ଭୀମସେନ ସେହି କର୍ମ କରିବାକୁ ପ୍ରତିରୂଢ଼ ହୁଅନ୍ତେ, ସବୁ ପାଣ୍ଡବମାନେ ଭିକ୍ଷାଟନରୁ ପ୍ରତିନିବୃତ୍ତ ହୋଇ ଯେତେବେଳେ ଗୃହକୁ ପ୍ରତ୍ୟାଗତ ହେଲେ, ସେତେବେଳେ ପାଣ୍ଡୁ-ପୁତ୍ର ଯୁଧିଷ୍ଠିର ମାତାଙ୍କର ଆକାର ଦ୍ୱାରା ଜାଣିପାରି ତାହାଙ୍କୁ ଏକାନ୍ତରେ ବସି ପଚାରିଲେ । ୨ । ଯୁଧିଷ୍ଠିର ବୋଇଲେ—ଭୀମ ପରାକ୍ରମ ଭୀମସେନ କି କର୍ମ କରିବାକୁ ଇଚ୍ଛା କରିଅଛନ୍ତି ? ଆପଣଙ୍କର ଅନୁମତିରେ ସେ ଏପରି କରୁଅଛନ୍ତି କି ସ୍ୱୟଂ ପ୍ରବୃତ୍ତ ହୋଇ ଅଛନ୍ତି ? । ୩ ।

କୁନ୍ତୀ ବୋଇଲେ—ପରନ୍ତପ ଭୀମସେନ ଆମ୍ଭ ବଚନାନୁସାରେ ବ୍ରାହ୍ମଣର ଉପକାରାର୍ଥ ଓ ନଗର ବାସୀଙ୍କର ଦୁଃଖ ମୋଚନ ନିମିତ୍ତ ଏହି ମହତ୍ କୃତ୍ୟ କରିବେ । ୪ ।

ଯୁଧିଷ୍ଠିର ବୋଇଲେ ଆପଣ ଏକି ଦୁଷ୍କର ଓ ତୀବ୍ର ସାହସିକ କର୍ମ କରିବା ହେଲେ ? ପୁତ୍ରର ପରିତ୍ୟାଗକୁ ସାଧୁଜନମାନେ ପ୍ରଶଂସା କରନ୍ତି ନାହିଁ । ୫ । ପରସୁତ ନିମିତ୍ତ ଆପଣ ସ୍ୱକୀୟ କିପରି ତ୍ୟାଗ କରିବାକୁ ଇଚ୍ଛା କରୁଅଛନ୍ତି; ପୁତ୍ର ତ୍ୟାଗ ଦ୍ୱାରା ଆପଣ ଲୋକାଚାର ଓ ବେଦ ବିଧାନର ବିରୁଦ୍ଧ ଆଚରଣ କଲେ । ୬ । ଯାହାଙ୍କ ବାହୁଦ୍ୱୟକୁ ଆଶ୍ରୟ କରି ଆମ୍ଭେମାନେ ସମସ୍ତେ ସୁଖରେ ଶୟନ କରୁଅଛୁଁ ଓ କ୍ଷୁଦ୍ର ଦ୍ୱାରା ଅପହୃତ ରାଜ୍ୟକୁ ଅହରଣ କରିବାକୁ ଇଚ୍ଛା କରୁଅଛୁଁ, ଯେଉଁ

ଅମିତ ପରାକ୍ରମଶାଳୀଙ୍କର ବୀର୍ଯ୍ୟଙ୍କୁ ଚିନ୍ତା କରି ଶକୁନିଙ୍କ ସହ ଦୁର୍ଯ୍ୟୋଧନ ଦିବା ରଜନୀ ଶୟନ କରୁନାହିଁ, ଯେଉଁ ବୀରଙ୍କର ବୀର୍ଯ୍ୟ ଦ୍ୱାରା ଆମ୍ଭେମାନେ ଜତୁଗୃହରୁ ଓ ଅନ୍ୟାନ୍ୟ ସଙ୍କଟରୁ ପରିତ୍ରାଣ ପାଇଲୁଁ; ଯାହାଙ୍କ ଦ୍ୱାରା ପୁରୋଚନ ନିହତ ହେଲା; ଯାହାଙ୍କ ବଳକୁ ସମାଶ୍ରୟ କରିଥିବାରୁ ଆମ୍ଭେମାନେ ଧୃତରାଷ୍ଟ୍ର ପୁତ୍ରଙ୍କୁ ଜୟ କରି ଏହି ବସୁନ୍ଧରାକୁ ପ୍ରାପ୍ତ ହେଲୁ ବୋଲି ମନେ କରୁଅଛୁଁ ; ତାହାଙ୍କୁ ଆପଣ କେଉଁ ବୁଦ୍ଧି ଅନୁସାରେ ତ୍ୟାଗ କରିବାକୁ ବ୍ୟବସ୍ଥିତ ହୋଇ ଅଛନ୍ତି ? ଦୁଃଖରେ ପତିତ ହେବାରୁ ଆପଣ କି ଚୈତନ୍ୟ ଶୂନ୍ୟ ହୋଇ ଅଛନ୍ତି ? ବୁଦ୍ଧି କି ବିଲୁପ୍ତ ହୋଇଅଛି ? ।୧୧।

କୁନ୍ତୀ ବୋଇଲେ—ହେ ଯୁଧିଷ୍ଠିର । ବୃକୋଦରଙ୍କ ବିଷୟରେ ତୁମ୍ଭେ ଚିନ୍ତା କର ନା । ଆମ୍ଭର ବୁଦ୍ଧି ଦୌର୍ବଲ୍ୟରୁ ଆମ୍ଭେ ଏପରି ବ୍ୟବସାୟ କରିନାହୁଁ । ୧୨ । ହେ ପୁତ୍ର । ଆମ୍ଭେମାନେ ଧୃତରାଷ୍ଟ୍ର ପୁତ୍ରଙ୍କ ଅଜ୍ଞାତରେ ଯେ ଏହି ବ୍ରାହ୍ମଣ ଗୃହରେ ସତ୍କୃତ ହୋଇ ପରମ ସୁଖରେ ବାସ କରୁଅଛୁଁ, ତାହାର କିଞ୍ଚିନ୍ମାତ୍ର ପ୍ରତ୍ୟୁପକାର ନିମିତ୍ତ ଆମ୍ଭେ ଏପରି ମନସ୍ଥ କରିଅଛୁଁ । କାରଣ ଉପକାର କଲେ ଯେ ପ୍ରତ୍ୟୁପକାର କରନ୍ତି ସେହି ସେ ଯଥାର୍ଥ ମନୁଷ୍ୟ; ବିଶେଷରେ ଯେ ବ୍ୟକ୍ତି ଯେଉଁ ପରିମାଣରେ ଉପକାର କରେ ତାହା ପ୍ରତ୍ୟୁପକାର ବହୁ ଗୁଣରେ କରିବା ବିଧେୟ । ୧୪ । ଜତୁଗୃହରେ ଭୀମଙ୍କର ସେହି ମହତ୍ ବିକ୍ରମ ଦର୍ଶନ କରି ଓ ହିଡ଼ିମ୍ବ ବଧରେ ତଦୀୟ ପରାକ୍ରମ ବିଲୋକନ କରି ଆମ୍ଭର ବିଶ୍ୱାସ ଜନ୍ମିଅଛି ଯେ, ଭୀମଙ୍କର ବାହୁବଳ ଦଶ ସହସ୍ର ହସ୍ତୀର ବଳ ସମାନ ଅଟେ; ସେ ଭୀମ, ଗଜ ସଦୃଶ ତୁମ୍ଭମାନଙ୍କୁ ସ୍କନ୍ଧରେ ବହନ କରି ବାରଣାବତରୁ ବିନିଷ୍କ୍ରାନ୍ତ ହେଲେ । ୧୬ ।

ବଳରେ ବୃକୋଦରଙ୍କ ସଦୃଶ ଅନ୍ୟ କେହି ନାହିଁ, ଯୁଦ୍ଧରେ ଶ୍ରେଷ୍ଠ ସ୍ୱୟଂ ବଜ୍ରଧରଙ୍କୁ ମଧ୍ୟ ସେ ଅତିକ୍ରମ କରିବେ । ୧୭ । ଜାତହେବା ମାତ୍ରେ ସେ ଆମ୍ଭ ଅଙ୍କରୁ ଗିରି ଉପରେ ପତିତ ହେଲେ; ଶରୀରର ଗୌରବ ହେତୁରୁ ତାହାଙ୍କ ଗାତ୍ର ଦ୍ୱାରା ଶିଳା ବିଚୂର୍ଣ୍ଣିତ ହେଲା । ୧୮ । ସେହି ହେତୁରୁ ହେ ପାଣ୍ଡବ । ଆମ୍ଭେ ଭୀମ ବଳକୁ ବୁଦ୍ଧିଦ୍ୱାରା କଳନା କରି, ବିପ୍ରଙ୍କର ଉପକାର କରିବା ଅଭିଳାଷରେ ଏହି ବୁଦ୍ଧି ସ୍ଥିର କଲୁଁ । ୧୯ । ଏ କାର୍ଯ୍ୟଟି ଆମ୍ଭେ ଲୋଭରୁ କି ମୋହରୁ କି ଅଜ୍ଞାନରୁ ବିନିଶ୍ଚିତ କରିନାହୁଁ । ବୁଦ୍ଧିପୂର୍ବକ ଧର୍ମ ରକ୍ଷା ନିମିତ୍ତ ଆମ୍ଭେ କରିଅଛୁଁ । ୨୦ । ଏତଦ୍ଦ୍ୱାରା ହେ·

ଯୁଧିଷ୍ଠିର ! ଅମ୍ଭର ଦୁଇଗୋଟି ଅର୍ଥ ସାଧନ ହେବ; ବିପ୍ରଘରେ ବାସ କରିଥିବାରୁ ତାହାଙ୍କର ଉପକାର ହେବ ଓ ମହାନ୍ ଧର୍ମ ଉପାର୍ଜିତ ହେବ । ୨୧ । ଯେଉଁ କ୍ଷତ୍ରିୟ ପ୍ରୟୋଜନ ବେଳେ ବ୍ରାହ୍ମଣଙ୍କର ଉପକାର କରନ୍ତି, ସାହାଯ୍ୟ କରନ୍ତି, ସେ ଶୁଭଲୋକମାନଙ୍କୁ ପ୍ରାପ୍ତ ହୁଅନ୍ତି, ଏହା ଅମ୍ଭର ମତ । ୨୨ ।

କ୍ଷତ୍ରିୟ ହୋଇ ଯେବେ କ୍ଷତ୍ରିୟଙ୍କୁ ବଧରୁ ମୁକ୍ତ କରନ୍ତି ସେ ଇହଲୋକରେ ବିପୁଳ କୀର୍ତ୍ତି ଲାଭ କରନ୍ତି ଓ ପରଲୋକରେ ମଧ୍ୟ ସୁଖୀ ପ୍ରାପ୍ତ ହୁଅନ୍ତି । ୨୩ । କ୍ଷତ୍ରିୟ ଯେବେ ବୈଶ୍ୟର ସାହାଯ୍ୟ କରନ୍ତି ତେବେ ସେ ପୃଥିବୀରେ ସର୍ବତ୍ର ପ୍ରଜାଗଣଙ୍କର ନିଶ୍ଚୟ ଅନୁରାଗ ଭାଜନ ହୁଅନ୍ତି । ୨୪ । କ୍ଷତ୍ରିୟ ପୁରୁଷ ଯେବେ ଶୂଦ୍ରଙ୍କୁ ଅଥବା ଶରଣାଗତ ବ୍ୟକ୍ତିଙ୍କୁ ବିପଦରୁ ମୁକ୍ତ କରନ୍ତି, ତେବେ ସେ ଐଶ୍ୱର୍ଯ୍ୟ ସମ୍ପନ୍ନ ରାଜବଂଶରେ ଜନ୍ମ ପରିଗ୍ରହ କରନ୍ତି । ୨୫ । ହେ ପୌରବ ନନ୍ଦନ ! ଅଭିଜ୍ଞ ପ୍ରାଜ୍ଞ ଭଗବାନ୍ ବ୍ୟାସ ଅମ୍ଭଙ୍କୁ ଏହା କହିଥିଲେ, ସେହି ହେତୁରୁ ଅମ୍ଭେ ଏପରି କାର୍ଯ୍ୟ କରିଅଛୁଁ । ୨୬ ।

---

## ଅଧ୍ୟାୟ—୧୬୩

ଯୁଧିଷ୍ଠିର ବୋଇଲେ—ଆପଣ ଏହି ଦୁଃଖାର୍ତ୍ତ ବ୍ରାହ୍ମଣ ପ୍ରତି ଅନୁକ୍ରୋଶ ପ୍ରକାଶ କରି ବୁଦ୍ଧିପୂର୍ବକ ଏ ଯେଉଁ କାର୍ଯ୍ୟ କରି ଅଛନ୍ତି ତାହା ଉତ୍ତମ ହୋଇଅଛି । ୧ । ଆପଣ ଏହି ବ୍ରାହ୍ମଣାର୍ଥ ଅନୁକମ୍ପାନ୍ୱିତା ହୋଇଥିବାରୁ ଭୀମସେନ ନିଶ୍ଚୟ ଏହି ପୁରୁଷାଦକଙ୍କୁ ନିହତ କରି ଆସିବେ । ୨ । ନଗରବାସିମାନେ ଯହିଁରେ ଏ ବିଷୟ ନ ଜାଣନ୍ତି, ତହିଁ ନିମିତ୍ତ ଆପଣ ସେ ବ୍ରାହ୍ମଣଙ୍କୁ ଯତ୍ନପୂର୍ବକ କହିବା ହେବ ସେ ଯେପରି କାହାରି ଠାରେ ଏ ସମ୍ବାଦ ପ୍ରକାଶ କରିବେ ନାହିଁ । ୩ ।

ବୈଶମ୍ପାୟନ ବୋଇଲେ—ତତ୍ପରେ ରାତ୍ରି ଶେଷ ହୁଅନ୍ତେ ପାଣ୍ଡୁ ପୁତ୍ର ଭୀମସେନ ଅନ୍ନଘେନି ଯେଉଁଠାରେ ସେ ପୁରୁଷାଦକ ଥିଲା, ସେହିଠାକୁ ଗଲେ । ୪ । ସେହି ରାକ୍ଷସର ବନରେ ଉପସ୍ଥିତ ହୋଇ ବଳୀ ପାଣ୍ଡବ ସ୍ୱୟଂ ସେ ଅନ୍ନକୁ ଭୋଜନ କରି କରି ରାକ୍ଷସର ନାମ ଧରି

ଅହ୍ୱାନ କଲେ । ୫ । ଭୀମଙ୍କ ବଚନରେ ସେ ରାକ୍ଷସ କ୍ରୁଦ୍ଧ ହୋଇ ଯେଉଁଠାରେ ଭୀମ ବ୍ୟବସ୍ଥିତ ହୋଇଥିଲେ, ସେଠାକୁ ଆଗମନ କଲା ।୬।

ସେ ରାକ୍ଷସ ମହାକାୟ ଓ ମହା ବଳଶାଳୀ; ତାହାର ଚକ୍ଷୁ ରକ୍ତ ବର୍ଣ୍ଣ ଓ ଭୟଙ୍କର, ଶ୍ମଶ୍ରୁ ଓ କେଶ ଲୋହିତ ବର୍ଣ୍ଣ, ବକ୍ତ୍ର କର୍ଣ୍ଣ ପର୍ଯ୍ୟନ୍ତ ବିସ୍ତୃତ, କର୍ଣ୍ଣ ଯୁଗଳ ଶଙ୍କୁ ପ୍ରାୟ ଓ ଭୀଷଣ; ଏତାଦୃଶ ଭୟାନକ ରାକ୍ଷସ ଭୀମସେନଙ୍କୁ ଅନ୍ନଭୋଜନ କରୁଥିବାର ଦେଖି ଦଶନ ଦ୍ୱାରା ଅଧର ଦଂଶନ ପୂର୍ବକ, ଭ୍ରୂକୁଟି ବିସ୍ତାର କରି, ଓ ନୟନ ଦ୍ୱୟକୁ ବିସ୍ତାରିତ କରି ଓ ଗାତ୍ରଦ୍ୱାରା ମେଦିନୀକୁ ବିଦାରିତ କରି କ୍ରୁଦ୍ଧ ହୋଇ ଭୀମସେନଙ୍କୁ କହିଲା । ୯ । ମୋ ନିମିତ୍ତ ପ୍ରେରିତ ଅନ୍ନକୁ କିଏ ମୋ ସମକ୍ଷରେ ଭକ୍ଷଣ କରୁଅଛୁ ? କାହାର ଯମ ସଦନକୁ ଯିବାକୁ ଇଚ୍ଛା ହୋଇଅଛି ? । ୧୦ ।

ହେ ଭାରତ ! ଭୀମସେନ ତାହା ଶୁଣି ନ ଶୁଣିଲା ପ୍ରାୟ ହୋଇ ଓ ଅଳ୍ପ ଅଳ୍ପ ହାସ୍ୟ କରି ରାକ୍ଷସ ଆଡ଼କୁ ପଛକରି ଭୋଜନ କରିବାରେ ପ୍ରବୃତ୍ତ ହେଲେ । ୧୧ । ସେ ପୁରୁଷାଦକ ଦୁଇ ହସ୍ତକୁ ଊର୍ଦ୍ଧ୍ୱକୁ ଉଠାଇ ଭୈରବ ନାଦ କରି ଭୀମସେନଙ୍କୁ ବଧ କରିବା କାରଣ ତାହାଙ୍କ ଆଡ଼କୁ ଦଉଡ଼ି ଆସିଲା । ୧୨ । ତଥାପି ପରବୀର ହନ୍ତା ପାଣ୍ଡୁନନ୍ଦନ ବୃକୋଦର ରାକ୍ଷସକୁ ଗ୍ରହି ନ ତାହାକୁ ନ ମାନି ଅନ୍ନଭୋଜନ କରିବାରେ ଲାଗିଲେ । ୧୩ । ରାକ୍ଷସ କ୍ରୋଧରେ ପରିପୂର୍ଣ୍ଣ ହୋଇ କୁନ୍ତୀ-ପୁତ୍ର ବୃକୋଦରଙ୍କ ପୃଷ୍ଠ ଦେଶରେ ରହି, ତାହାଙ୍କ ପୃଷ୍ଠରେ ଉଭୟ ହସ୍ତ ଦ୍ୱାରା ତାଡ଼ନା କଲା । ୧୪ ।

ତଦ୍ରୂପ ବଳବାନ୍ ରାକ୍ଷସ ଦ୍ୱାରା ବାରମ୍ବାର ପ୍ରତାଡ଼ିତ ହୋଇ ସୁଦ୍ଧା ତାହା ଆଡ଼କୁ ନ ଗ୍ରହି ଭୀମସେନ ଭୋଜନ କଲେ । ୧୫ । ତତ୍ପରେ ସେ ରାକ୍ଷସ ପୁନର୍ବାର କ୍ରୁଦ୍ଧ ହୋଇ ଗୋଟିଏ ବୃକ୍ଷ ଘେନି ଭୀମସେନଙ୍କୁ ତାଡ଼ନା କରିବା ଅଭିଳାଷରେ ଧାବମାନ ହେଲା । ୧୬ । ତତ୍ପରେ ପୁରୁଷର୍ଷଭ ମହାବଳି ଭୀମସେନ ସେ ଅନ୍ନକୁ ଥିର ଥିର କରି ଭୋଜନ ସାରି ଜଳଦ୍ୱାରା ଉପସ୍ପର୍ଶନ ସାରି ହୃଷ୍ଟ ହୋଇ ଯୁଦ୍ଧରେ ଦଣ୍ଡାୟମାନ ହେଲେ । ୧୭ । ହେ ଭାରତ ! କ୍ରୋଧରେ କ୍ଷିପ୍ତ ସେହି ବୃକ୍ଷକୁ ବୀର୍ଯ୍ୟବାନ୍ ଭୀମସେନ ହସି ହସି ବାମପାଣିରେ ଗ୍ରହଣ କଲେ । ତଦନନ୍ତର ସେହି ବଳବାନ୍ ରାକ୍ଷସ ପୁନର୍ବାର ବହୁବିଧ ବୃକ୍ଷମାନଙ୍କୁ

ଦେଲା ଭୀମଙ୍କ ପ୍ରତି ନିକ୍ଷିପ୍ତ କଲା । ପାଣ୍ଡୁନନ୍ଦନ ଭୀମସେନ ମଧ୍ୟ ତଦ୍ରୂପ ତାହା ପ୍ରତି ନିକ୍ଷେପ କଲେ । ୧୯ ।

ହେ ମହାରାଜ ! ନର ଓ ରାକ୍ଷସରାଜ ଦୁହିଁଙ୍କ ମଧ୍ୟରେ ସେହି ବୃକ୍ଷ ଯୁଦ୍ଧ ଅତି ଭୟଙ୍କର ରୂପେ ସଂଘଟିତ ହେଲା । ସେ ସ୍ଥଳରେ ମହୀରୁହମାନେ ସମସ୍ତେ ବିନଷ୍ଟ ହେଲେ । ୨୦ । ପରନ୍ତୁ ପିଶିତାଶନ ବକ ଅପଣାର ନାମ ଶୁଣାଇ ସମ୍ମୁଖକୁ ଧାବିତ ହୋଇ ହସ୍ତଦ୍ୱାରା ମହାବଳ ଭୀମସେନଙ୍କୁ କୁଣ୍ଢାଇ ଧରିଲା । ୨୧ । ମହାରାଜ ଭୀମସେନ ମଧ୍ୟ ତାହାକୁ ପରିରମ୍ଭନ କଲେ; ସ୍ଫୂର୍ତ୍ତିମାନ୍ ଓ ମହାବାହୁ ସେ ରାକ୍ଷସକୁ ଯଥା-ସାଧ୍ୟ ବଳ ପ୍ରକାଶ କରିବାର ଦେଖି ତାହା ଅପେକ୍ଷା ଅଧିକତର ବଳରେ ଭୀମସେନ ତାହାକୁ ଆକର୍ଷଣ କଲେ । ୨୨ । ରାକ୍ଷସ ଭୀମଙ୍କ କର୍ତ୍ତୃକ ଆକୃଷ୍ୟମାଣ ହୋଇ ସୁଦ୍ଧା ତାହାଙ୍କୁ ଆକର୍ଷଣ କଲା; ତହିଁରେ ସେ ପୁରୁଷାଦକ କ୍ରମରେ କ୍ଲାନ୍ତିଯୁକ୍ତ ହେଲା । ୨୩ । ସେ ଦୁହିଁଙ୍କ ମହା ବେଗରେ ପୃଥିବୀ କମ୍ପିତ ହେଲା ଓ ମହାକାୟ ତରୁମାନେ ଚୂର୍ଣ୍ଣୀଭୂତ ହେଲେ । ୨୪ । ଅନନ୍ତର ରାକ୍ଷସର ବଳ କ୍ଷୀଣ ହେବାର ଦେଖି ଭୀମସେନ ତାହାକୁ ଜାନୁ ଦ୍ୱାରା ଭୂମିରେ ନିଷ୍ପେଷଣ କରି ପ୍ରହାର କଲେ । ୨୫ । ତପରେ ତାହାର ପୃଷ୍ଠଦେଶରେ ଜାନୁ ଦେଇ ନିଷ୍ପୀଡ଼ନ ପୂର୍ବକ ଦକ୍ଷିଣ ହସ୍ତରେ ଗ୍ରୀବା ଓ ବାମହସ୍ତରେ କଟୀବନ୍ଧର ବସନ ଧାରଣ କରି ତାହାକୁ ଦ୍ୱିଗୁଣିତ କଲେ ( ଭଗ୍ନ କଲେ ) । ତହିଁରେ ସେ ରାକ୍ଷସ ଭୟଙ୍କର ରବ କଲା । ୨୬ । ହେ ବିଶାମ୍ପତେ ! ଭୀମସେନ ସେ ଘୋର ରାକ୍ଷସକୁ ଯେତେବେଳେ ଭଗ୍ନ କଲେ ସେତେବେଳେ ତାହାର ମୁଖରୁ ରକ୍ତ ପ୍ରବାହିତ ହେଲା । ୨୭ ।

---

## ଅଧ୍ୟାୟ—୧୬୪

ବୈଶମ୍ପାୟନ ବୋଇଲେ—ତଦନନ୍ତର ସେ ବକ ଭଗ୍ନପାର୍ଶ୍ୱ ଓ ଭଗ୍ନାଙ୍ଗ ହୋଇ ଶୈଳରାଜ ସଦୃଶ ମରି ପତିତ ହେଲା । ୧ । ହେ ରାଜନ୍ ! ସେ ରାକ୍ଷସର ଶବ୍ଦରେ ତାହାର ପରିଚାରକମାନେ ବିବସ୍ତ୍ର ହୋଇ ପରିଜନମାନଙ୍କ ଗୃହରୁ ନିଷ୍କ୍ରାନ୍ତ ହେଲେ । ୨ । ପ୍ରହାରକାରୀଙ୍କ ଶ୍ରେଷ୍ଠ ଭୀମସେନ ସେମାନଙ୍କୁ ଭୀତ ଓ ବିଗତ ଜ୍ଞାନ ଦେଖି ସାନ୍ତ୍ୱନା ଦେଲେ ଓ ସେମାନଙ୍କ ସହିତ ଏହି ସମୟ କଲେ "ତୁମ୍ଭେମାନେ ଆଉ କଦାପି

ମନୁଷ୍ୟ ହିଂସା କରିବ ନାହିଁ, ଯଦି କର ତେବେ ତୁମ୍ଭମାନଙ୍କର ବଧ ଏତଦ୍ରୂପ ବଧ ଶୀଘ୍ର କରାଯିବ" । ୪ । ହେ ଭାରତ ! ରାକ୍ଷସମାନେ ତାହାଙ୍କର ତଦ୍ରୂପ ବଚନ ଶ୍ରବଣ କରି ହେଉ ବୋଲି କହି ସେହି ନିୟମ ପ୍ରତିପାଳନ କଲେ । ୫ । ହେ ଭାରତ ! ତଦବଧି ନଗରବାସୀ ମନୁଷ୍ୟମାନେ ସେହି ନଗରରେ ରାକ୍ଷସମାନଙ୍କୁ ଶାନ୍ତ ହେବାର ଦେଖିଲେ । ୬ । ତତ୍ପରେ ଭୀମ ସେହି ମୃତ ରାକ୍ଷସକୁ ଆଣି ନଗରର ଦ୍ୱାର ଦେଶରେ ନିକ୍ଷିପ୍ତ କରି ଅଲକ୍ଷିତ ରୂପେ ପ୍ରସ୍ଥାନ କଲେ । ୭ । ଭୀମଙ୍କ ଦ୍ୱାରା ବକକୁ ନିହତ ହେବାର ଦେଖି ତାହାର ଜ୍ଞାତିମାନେ ଭୟୋଦ୍‌ବିଗ୍ନ ହୋଇ ଇତସ୍ତତଃ ପଳାୟନ କଲେ । ୮ ।

ଏଣେ ଭୀମ ତାହାକୁ ବଧ କରି ବ୍ରାହ୍ମଣ ଗୃହକୁ ଗମନ ପୂର୍ବକ ରାକ୍ଷସରାଜର ସମସ୍ତ ବିଷୟ ଆଦ୍ୟୋପାନ୍ତ ବର୍ଣ୍ଣନ କଲେ । ୯ । ତତ୍ପରେ ନଗରବାସୀ ନରମାନେ ପ୍ରଭାତରେ ନଗରରୁ ବାହାର ହୋଇ ଦେଖିଲେ ଯେ ରାକ୍ଷସ ରୁଧିରଲିପ୍ତ ଓ ନିହତ ହୋଇ ଭୂମିରେ ପଡ଼ିଅଛି । ୧୦ । ତାହାର ଅଦ୍ରିଶୃଙ୍ଗ ସଦୃଶ, ବିକଟାକାର ଓ ଭୟାନକ ରୂପ ଦେଖି ନଗରଜନମାନେ ଲୋମାଞ୍ଚିତ ହୋଇ ଏକଚକ୍ରା ନଗରୀକୁ ଗମନ କଲେ ଓ ସେଠାରେ ସେହି ବାର୍ତ୍ତାକୁ ପ୍ରଚାର କଲେ । ୧୧ । ହେ ରାଜନ୍ ! ତଦନନ୍ତର ନଗରବାସୀ ବାଳକ ସ୍ତ୍ରୀ ଓ ବୃଦ୍ଧ ସହସ୍ର ସହସ୍ର ଜନମାନେ ବକକୁ ଦେଖିବା ନିମିତ୍ତ ଆଗମନ କଲେ । ୧୨ । ହେ ବିଶାମ୍ପତେ ! ସେମାନେ ସେହି ଅତିମାନୁଷ କର୍ମ ଦେଖି ବିସ୍ମୟାବିଷ୍ଟ ହେଲେ ଓ ସମସ୍ତେ ମଙ୍ଗଳ-କାମନାରେ ଦେବତାଙ୍କ ଆରାଧନା କଲେ । ୧୩ । ତତ୍ପରେ ସେମାନେ ଗଣନା କରି ଦେଖିଲେ ଯେ, ସେ ଦିନ ଭୋଜନ ଦାନର କାହାର ବାର ଥିଲା; ବ୍ରାହ୍ମଣଙ୍କର ବାର ଥିବାର ଜାଣି ସମସ୍ତେ ଯାଇ ତାଙ୍କୁ ପଚାରିଲେ, । ୧୪ । ବହୁତ କରି ସେ ବିପ୍ରଶ୍ରେଷ୍ଠଙ୍କୁ ପଚାରିବାରେ ସେ ପାଣ୍ଡବମାନଙ୍କୁ ଗୋପନ କରି ବୋଇଲେ "ଆମ୍ଭେ ରାକ୍ଷସର ଭୋଜନ ନିମିତ୍ତ ଅନୁମତି ପ୍ରାପ୍ତହୋଇ ବନ୍ଧୁଗଣଙ୍କ ସହିତ ରୋଦନ କରୁଥିଲୁଁ, ଏମନ୍ତ ସମୟରେ ଜଣେ ମନ୍ତ୍ରସିଦ୍ଧ ମହାମନା ବ୍ରାହ୍ମଣ ଆସି ଆମ୍ଭଙ୍କ ତଦବସ୍ଥା ଦେଖି ପ୍ରଶ୍ନ କରି ଏହି ନଗରର ପରିକ୍ଳେଶ ଅବଗତ ହୋଇ ହସି ହସି ଆମ୍ଭଙ୍କୁ ବୋଇଲେ—"ସେ ଦୁରାତ୍ମାଙ୍କ ଠାକୁ ଆମ୍ଭେ ଅନ୍ନ ଘେନି ଯିବୁଁ, ଆହୁରି ବୋଇଲେ ଯେ ଆମ୍ଭ ନିମିତ୍ତ, ତୁମ୍ଭର ଭୟ କରିବାର

କାରଣ ନାହିଁ ।" ତହୁଁ ସେ ଅନ୍ନକୁ ଘେନି ବକବନକୁ ଗମନ କଲେ; ନିଶ୍ଚୟ ସେହି ବ୍ରାହ୍ମଣ ଏହି ଲୋକ-ହିତକର କାର୍ଯ୍ୟ କରିଅଛନ୍ତି । ୧୯ ।"

ତତ୍ପରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ସମସ୍ତେ ବିସ୍ମିତ ଓ ମୁଦିତ ହୋଇ ବ୍ରାହ୍ମଣସ୍ତବ କଲେ । ୨୦ । ତତ୍ପରେ ଜନପଦବାସୀ ସମସ୍ତେ ସେ ଅଦ୍ଭୁତବ୍ୟାପାର ଦେଖି ନଗରକୁ ପ୍ରତିଗମନ କଲେ; ପୃଥାଙ୍କ ପୁତ୍ରମାନେ ସେହିଠାରେ ବାସ କରି ରହିଲେ । ୨୧ ।

---

## ଅଧ୍ୟାୟ—୧୬୪

ଜନମେଜୟ ବୋଇଲେ—ହେ ବ୍ରହ୍ମନ୍ ! ଯେହି ପୁରୁଷବ୍ୟାଘ୍ର ପାଣ୍ଡବମାନେ ଆଉ କି କାର୍ଯ୍ୟ କଲେ ? କହିବା ହେଉନ୍ତୁ । ୧ ।

ବୈଶମ୍ପାୟନ ବୋଇଲେ—ହେ ରାଜନ୍ ! ପାଣ୍ଡବମାନେ ବକ ରାକ୍ଷସକୁ ତଦ୍ରୂପ ସଂହାର କରି ସେହି ବ୍ରାହ୍ମଣର ନିବେଶନରେ ରହି ବେଦ ଅଧ୍ୟୟନ କଲେ । ୨ । ତତ୍ପରେ କତିପୟ ଦିନ ଅତୀତ ହୁଅନ୍ତେ ଜଣେ ଶଂସିତ ବ୍ରତ ବ୍ରାହ୍ମଣ ଆଶ୍ରୟ ଲୋଡ଼ି ସେହି ବ୍ରାହ୍ମଣଙ୍କ ବେଶ୍ମରେ ଆସି ଉପସ୍ଥିତ ହେଲେ । ୩ । ଅତିଥି ସେବାକାରୀ ସେ ବିପ୍ର ସମାଗତ ସେ ବ୍ରାହ୍ମଣଙ୍କୁ ପାଇ ତାହାଙ୍କୁ ପ୍ରତିଶ୍ରୟ ଦେଇ ସମ୍ୟକ୍‌ରୂପେ ପୂଜା କଲେ । ୪ । ତଦନନ୍ତର କୁନ୍ତୀଙ୍କ ସହ ପାଣ୍ଡବମାନେ ସମସ୍ତେ ଶୁଭ କଥାମାନଙ୍କୁ କହି ସେ ବ୍ରାହ୍ମଣଙ୍କର ଉପାସନା କଲେ । ୫ । ବିବିଧ ଦେଶ, ତୀର୍ଥ, ନଦୀ ଓ ଆଶ୍ଚର୍ଯ୍ୟ କର୍ମା ରାଜାମାନଙ୍କର ଓ ନଗରମାନଙ୍କର କଥାମାନ କହିଲେ । ୬ । ହେ ଜନମେଜୟ ! ସେମାନଙ୍କ କଥା ସମାପନ ହୁଅନ୍ତେ ପାଞ୍ଚାଳ ଦେଶର ଯାଜ୍ଞସେନୀଙ୍କର ଅଦ୍ଭୁତାକାର ସ୍ୱୟମ୍ବର କଥା କହିଲେ । ୭ । ଧୃଷ୍ଟଦ୍ୟୁମ୍ନଙ୍କର ଯେପରି ଉତ୍ପତ୍ତି ହେଲା, ଯେପରି ଶିଖଣ୍ଡୀ ଜନ୍ମ ହେଲେ, ଦ୍ରୁପଦ କନ୍ୟା କୃଷ୍ଣା ଯେପରି ମହାଯଜ୍ଞରେ ଉତ୍ପନ୍ନ ହେଲେ—ଏହା ସବୁ ମଧ୍ୟ କହିଲେ । ୮ । ସେ ମହାତ୍ମାଙ୍କଠାରୁ ଅଲୌକିକ ବୃତ୍ତାନ୍ତମାନ ଶ୍ରବଣ କରି ପୁରୁଷର୍ଷଭ ପାଣ୍ଡବମାନେ ବିସ୍ତାର ପୂର୍ବକ ସେହି କଥା ମାନ ପ୍ରଶ୍ନ କଲେ । ୯ ।

ପାଣ୍ଡବମାନେ ବୋଇଲେ—କିପରି ଦ୍ରୁପଦଙ୍କ ପୁତ୍ର ଧୃଷ୍ଟଦ୍ୟୁମ୍ନଙ୍କର ପାବକରୁ ଓ କୃଷ୍ଣାଙ୍କର ବେଦୀ ମଧ୍ୟରୁ ଉତ୍ପନ୍ନ ହେଲ ? କିପରି ଏ ଅଦ୍ଭୁତ କଥା ମାନ ହେଲ ? । ୧୦ । ମହାଧନୁର୍ଦ୍ଧାରୀ ଦ୍ରୋଣଙ୍କଠାରୁ ଧୃଷ୍ଟଦ୍ୟୁମ୍ନ କିପରି ସର୍ବପ୍ରକାର ଅସ୍ତ୍ରଶିକ୍ଷା କଲେ ? ହେ ବିପ୍ର । ଦ୍ରୁପଦ ରାଜାଙ୍କ ସହିତ ଦ୍ରୋଣଙ୍କର ଯେଉଁ ସଖ୍ୟ ଭାବ ଥିଲ, ତାହା କି ରୂପେ ଭଗ୍ନ ହେଲ ?

ବୈଶମ୍ପାୟନ ବୋଇଲେ—ସେହି ପୁରୁଷଶ୍ରେଷ୍ଠଙ୍କ ଦ୍ୱାରା ପରିପୃଷ୍ଟ ହୋଇ ସେ ବିପ୍ର, ଦ୍ରୌପଦୀଙ୍କର ସମ୍ଭବ ବୃତ୍ତାନ୍ତ ସମସ୍ତ କଥନ କଲେ । ୧୨ ।

---

## ଅଧ୍ୟାୟ—୧୬୬

ବ୍ରାହ୍ମଣ କହିଲେ—ଶ୍ରବଣ କରନ୍ତୁ, ଗଙ୍ଗାଦ୍ୱାର ନିକଟରେ ଭରଦ୍ୱାଜ ନାମରେ ମହାତପା, ସତତ-ବ୍ରତ-ପରାୟଣ, ମହାପ୍ରାଜ୍ଞ ମହର୍ଷି ବାସ କରୁଥିଲେ । ୧ । ଦିନେ ସେ ଗଙ୍ଗାକୁ ସ୍ନାନ କରିବାକୁ ଗମନ କରି ଦେଖିଲେ ଯେ ଘୃତାଚୀ ସ୍ନାନ କରି ଦଣ୍ଡାୟମାନ ହୋଇଅଛି । ୨ । ତତ୍କାଳରେ ନଦୀତୀରରେ ବାୟୁ ତାହାର ବସନ ହରଣ କଲ । ତାହାର ବସ୍ତ୍ର ଅପକୃଷ୍ଟ ହେବାର ଦେଖି ଋଷି ତାହାପ୍ରତି କାମାସକ୍ତ ହେଲେ । ୩ । ଆକୁମାର ବ୍ରହ୍ମଚାରୀ ସେହି ଋଷିଙ୍କ ମାନସ ତାହାଠାରେ ସଂସକ୍ତ ହେବା ମାତ୍ର ତାହାଙ୍କର ଚିରସଞ୍ଚିତ ରେତଃ ସ୍ଖଳିତ ହେଲ । ସେ ତତ୍କ୍ଷଣାତ୍ ତାହାକୁ ଦ୍ରୋଣ ନାମକ ଯଜ୍ଞପାତ୍ରରେ ଧାରଣ କଲେ । ୪ । ଏହିରୂପେ ସେ ଧୀମାନ୍ ମହର୍ଷିଙ୍କଠାରୁ ଦ୍ରୋଣ ନାମକ କୁମାର ଜାତ ହେଲେ, ସେ ନିଖିଳ ବେଦ ଓ ବେଦାଙ୍ଗମାନଙ୍କୁ ଅଧ୍ୟୟନ କଲେ । ୫ । ଭରଦ୍ୱାଜଙ୍କର ପୃଷତ ନାମକ ଜଣେ ରାଜା ସଖା ଥିଲେ ; ତାହାଙ୍କର ମଧ୍ୟେ ତତ୍କାଳରେ ଦ୍ରୁପଦ ନାମରେ ସୁତ ଜାତ ହେଲ । ୬ । ସେ କ୍ଷତ୍ରିୟ-ଶ୍ରେଷ୍ଠ ପୃଷତ ପୁତ୍ର; ଦ୍ରୋଣଙ୍କ ସହିତ ନିତ୍ୟ ଆଶ୍ରମକୁ ଗମନ କରି ସେଠାରେ କ୍ରୀଡ଼ା କରନ୍ତି ଓ ଅଧ୍ୟୟନ କରନ୍ତି । ୭ । ତତ୍ପରେ ପୃଷତ ଅନ୍ତ-ପ୍ରାପ୍ତ ହେଲରୁ ଦ୍ରୁପଦ ରାଜା ହେଲେ । ଦ୍ରୋଣ ମଧ୍ୟ ଶୁଣିଲେ ଯେ ପରଶୁରାମ ସମସ୍ତଙ୍କୁ ଧନ ଦାନ କରୁଅଛନ୍ତି । ୮ । ବନକୁ ପ୍ରସ୍ଥାନ

କରିବା କାଳରେ ଭରଦ୍ୱାଜ-ସୁତ ଉପସ୍ଥିତ ହୋଇ ବୋଇଲେ, ହେ ଦ୍ୱିଜୋତ୍ତମ ! ଆମ୍ଭେ ଦ୍ରୋଣ, ଅର୍ଥକାମନାରେ ସମାଗତ ହୋଇଅଛୁଁ ଜାଣିବା ହେଉନ୍ତୁ । ୯ ।

ରାମ ବୋଇଲେ—ହେ ବ୍ରହ୍ମନ୍ ! ଅଦ୍ୟ ଏହି ଶରୀର ମାତ୍ର ଅବଶିଷ୍ଟ ଅଛି; ଶରୀର ଓ ଅସ୍ତ୍ର ଦୁଇଟିରୁ ଗୋଟିକୁ ଆପଣ ବରଣ କରନ୍ତୁ । ୧୦ ।;

ଦ୍ରୋଣ ବୋଇଲେ—ସର୍ବ ପ୍ରକାର ଅସ୍ତ୍ର, ସେମାନଙ୍କର ପ୍ରୟୋଗ, ସଂହାର, ସମୁଦାୟ ଆପଣ ଆମ୍ଭଙ୍କୁ ଦେବା ହେଉନ୍ତୁ । ୧୧ ।

ବ୍ରାହ୍ମଣ ବୋଇଲେ—ଭୃଗୁନନ୍ଦନ ହେଉ ବୋଲି କହି ସବୁ ପ୍ରଦାନ କଲେ । ଦ୍ରୋଣ ତାହା ପ୍ରତିଗ୍ରହ କରି କୃତକୃତ୍ୟ ହେଲେ । ୧୨ । ପରଶୁରାମଙ୍କ ଠାରୁ ପରମମାନ୍ୟ ବ୍ରହ୍ମାସ୍ତ୍ରକୁ ପ୍ରାପ୍ତ ହୋଇ ଅତିଶୟ ହୃଷ୍ଟାନ୍ତଃକରଣ ଓ ନରଲୋକରେ ପୂଜନୀୟ ହେଲେ । ୧୩ । ପ୍ରତାପବାନ୍ ଭାରଦ୍ୱାଜ ଦ୍ରୁପଦଙ୍କ ନିକଟକୁ ଆସି ବୋଇଲେ—ହେ ପୁରୁଷବ୍ୟାଘ୍ର ! ଆମ୍ଭେ ଆପଣଙ୍କର ସଖା ଆସିଅଛୁଁ ଜାଣିବା ହେଉନ୍ତୁ । ୧୪ । ଦ୍ରୁପଦ ବୋଇଲେ, ଶ୍ରୋତ୍ରିୟର ସଖା ଅଶ୍ରୋତ୍ରିୟ ହୁଅଇ ନାହିଁ, ରଥୀର ସଖା ଅରଥୀ ହୁଅଇ ନାହିଁ କି ପାର୍ଥିବର ସଖା ଅରାଜା ହୁଅଇ ନାହିଁ, ଅତଏବ ଆମ୍ଭଙ୍କୁ କିପରି ତୁମ୍ଭେ ସଖାବୋଲି ସମ୍ବୋଧନ କରୁଅଛ ? । ୧୫ ।

ବ୍ରାହ୍ମଣ ବୋଇଲେ—ପାଞ୍ଚାଳ ଦେଶର ରାଜାଙ୍କ ପ୍ରତି ସେ ମନୋ-ମଧ୍ୟରେ କ୍ରୋଧ କରି କୁରୁ ମୁଖ୍ୟମାନଙ୍କର ପ୍ରଧାନ ନଗର ହସ୍ତିନାପୁରକୁ ଗମନ କଲେ । ୧୬ । ସେଠାରେ ଭୀଷ୍ମ ତାହାଙ୍କୁ ପ୍ରାପ୍ତ ହୋଇ ଆପଣାର ପୌତ୍ରମାନଙ୍କ ସହିତ ବହୁତର ଧନ ପ୍ରଦାନ କଲେ । ତଦନନ୍ତର ଦ୍ରୋଣ ଆପଣାର ଶିଷ୍ୟମାନଙ୍କୁ ସମସ୍ତଙ୍କୁ ଅଣାଇ ଦ୍ରୁପଦଙ୍କର ଅସୁଖ ନିମିତ୍ତ ଏହି ବଚନ ବୋଇଲେ । ୧୮ । ହେ ଅନଘ ଶିଷ୍ୟମାନେ ! ଆମ୍ଭ ହୃଦୟରେ ଯତ୍‌କିଞ୍ଚିତ୍ ଅଗୂର୍ଢ ବେତନ ଗ୍ରହଣ କରିବାର ଇଚ୍ଛା ଅଛି, ତାହା ତୁମ୍ଭେମାନେ କୃତାସ୍ତ୍ର ହେଲେ ଆମ୍ଭଙ୍କୁ ପ୍ରଦାନ କରିବ, ଏ କଥା ସତ୍ୟ କରି କହ, ଦେବାକୁ ସମର୍ଥ ହେବ କି ନା ? ତହିଁରେ ଅର୍ଜ୍ଜୁନ ପ୍ରଭୃତି ଶିଷ୍ୟମାନେ ତଥାସ୍ତୁ ବୋଲି ସ୍ୱୀକାର କଲେ । ୧୯ । ଯେତେବେଳେ ଯତ୍ନାରୂଢ଼ ପାଣ୍ଡବମାନେ ସମସ୍ତେ କୃତାସ୍ତ୍ର ହେଲେ ସେତେବେଳେ

ଦ୍ରୋଣ ସେମାନଙ୍କୁ ପୁନର୍ବାର ଅଣାଇ ଏହି କଥା କହିଲେ, "ପୃଷତ ରାଜାଙ୍କର ପୁତ୍ର ଦ୍ରୁପଦ ଅହିଛତ୍ର ନାମକ ଦେଶର ନରେଶ୍ୱର ଅଟନ୍ତି । ତୁମ୍ଭେମାନେ ସେହି ରାଜ୍ୟକୁ ଦ୍ରୁପଦଙ୍କ ଠାରୁ ହରଣକରି ଶୀଘ୍ର ଆମ୍ଭଙ୍କୁ ପ୍ରଦାନ କର" ।

ଅନନ୍ତର ପାଣ୍ଡବମାନେ ଦ୍ରୁପଦଙ୍କୁ ସଙ୍ଗ୍ରାମରେ ପରାଜିତ କରି ଅମାତ୍ୟଙ୍କ ସହିତ ରାଜାଙ୍କୁ ବନ୍ଧନ କରି ଦ୍ରୋଣଙ୍କ ନିକଟରେ ସମର୍ପଣ କଲେ । ୨୨ ।

ଦ୍ରୋଣ ବୋଇଲେ—ହେ ନରାଧିପ ! ଆମ୍ଭେ ତୁମ୍ଭ ସହିତ ପୁନର୍ବାର ସଖ୍ୟ ପ୍ରାର୍ଥନା କରୁଅଛୁଁ । ରାଜା ନହେଲେ ରାଜାଙ୍କର ସଖା ହୋଇ ପାରନ୍ତି ନାହିଁ; ଅତଏବ ହେ ଯଜ୍ଞସେନ ! ତୁମ୍ଭ ସହିତ ମିଳିତ ହୋଇ ଆମ୍ଭେ ରାଜ୍ୟ କରିବୁଁ ଆମ୍ଭର ଏହି ଅଭିଳାଷ; ତୁମ୍ଭଙ୍କୁ ଭାଗୀରଥୀର ଦକ୍ଷିଣ କୂଳର ରାଜା କଲୁଁ ଓ ଆମ୍ଭେ ଉତ୍ତର ପାର୍ଶ୍ୱରେ ରାଜ୍ୟ କରିବୁଁ । ୨୪ ।

ବ୍ରାହ୍ମଣ ବୋଇଲେ—ପଞ୍ଚାଳଦେଶାଧିପତି, ଭରଦ୍ୱାଜଙ୍କର ତଦ୍ରୂପ ବଚନ ଶ୍ରବଣ କରି ଅସ୍ତ୍ରବେତ୍ତାମାନଙ୍କର ଶ୍ରେଷ୍ଠ ଅଥଚ ବ୍ରାହ୍ମଣସତ୍ତମ ଦ୍ରୋଣଙ୍କୁ ବୋଇଲେ, ହେ ମହାମତି ଭରଦ୍ୱାଜ ! ଆପଣ ଯେପରି କହିଲ, ତଦ୍ରୂପ ଆପଣଙ୍କର ମଙ୍ଗଳ ହେଉ; ଆପଣଙ୍କର ଇଚ୍ଛାନୁସାରେ ଚିରକାଳ ନିମିତ୍ତ ଆମ୍ଭ ଦୁହିଁଙ୍କର ସଖ୍ୟ ସ୍ଥାପନ ହେଉ । ୨୬ । ଏହିପରି ପରସ୍ପର କୁହା କୁହି ହୋଇ ଅତି ଉତ୍କୃଷ୍ଟ ସଖ୍ୟ ସ୍ଥାପନ କରି ଅରିନ୍ଦମ ଦ୍ରୋଣ ଓ ପାଞ୍ଚାଳ ଦୁଇ ଜଣ ଯେଉଁ ଦିଗରୁ ଯିଏ ଆସିଥିଲେ; ସେହି ଦିଗକୁ ସେ ଗମନ କଲେ । ୨୭ । ପରନ୍ତୁ ରାଜା ଦ୍ରୁପଦଙ୍କ ମନରୁ ସେ ଅସତ୍କାର କ୍ଷଣିକ ନିମିତ୍ତ ସୁଦ୍ଧା ବହିର୍ଗତ ହେଲା ନାହିଁ, ସେ ଦୁର୍ମନା ହୋଇ ଦିନକୁ ଦିନ କୃଶ ହେଲେ । ୨୮ ।

## ୧୬୭—ଅଧ୍ୟାୟ

ବ୍ରାହ୍ମଣ ବୋଇଲେ—ରାଜା ଦ୍ରୁପଦ ଅମର୍ଷାନ୍ୱିତ ହୋଇ କର୍ମସିଦ୍ଧ ଦ୍ୱିଜଶ୍ରେଷ୍ଠଙ୍କ ଅନ୍ୱେଷଣରେ ବହୁ ସଂଖ୍ୟକ ବ୍ରାହ୍ମଣାବସଥ ମାନଙ୍କୁ ପରିଭ୍ରମଣ କଲେ । ୧ । "ଆମ୍ଭର ଶ୍ରେଷ୍ଠ ଅପତ୍ୟ ନାହିଁ" ଏହି ଚିନ୍ତାରେ ସେ ଶୋକାନ୍ୱିତ ଓ ହତଚେତନ ହୋଇ ପୁତ୍ର ଜନ୍ମ ଇଚ୍ଛା କଲେ । ୨ । ଦ୍ରୋଣଙ୍କ ପ୍ରତିକାର କରିବା ଇଚ୍ଛାରେ ସେ ସତତ ଦୀର୍ଘ-ନିଶ୍ୱାସ ପରିତ୍ୟାଗ କରି ତାହାଙ୍କର ପୁତ୍ରଙ୍କୁ ଓ ବନ୍ଧୁମାନଙ୍କୁ ତିରସ୍କାର କରନ୍ତି । ୩ । ସେ ପ୍ରତୀକାର କରିବାରେ ଇଚ୍ଛୁକ ହୋଇ ସ୍ୱୀୟ କ୍ଷାତ୍ରବଳ ଦ୍ୱାରା ଦ୍ରୋଣଙ୍କର ପ୍ରଭାବ, ବିନୟ ଶିକ୍ଷା ଓ ଚରିତକୁ ପରାଭବ କରିବାର କୌଣସି ଉପାୟ ସ୍ଥିର କରି ପାରିଲେ ନାହିଁ । ୪ । ହେ ଭାରତ । ଏହି ଭାବନାରେ ସେ ପରିଭ୍ରମଣ କରୁଁ କରୁଁ ଏକଦା ସେ 'କଲ୍ମାଷପାଦ' ନାମକ ରାଜାଙ୍କ ପୁରୀ ସମୀପରେ ଗୋଟିଏ ପବିତ୍ର ବ୍ରାହ୍ମଣା-ବାସରେ ଉପସ୍ଥିତ ହେଲେ । ସେହି ସ୍ଥାନରେ ଯେଉଁ ବ୍ରାହ୍ମଣମାନେ ଥିଲେ ସେମାନେ ସମସ୍ତେ ସ୍ନାତକ, ବ୍ରତନିଷ୍ଠ ଓ ମହାଭାଗ ଥିଲେ । ୬ । ତନ୍ମଧ୍ୟରେ ଯାଜ ଓ ଉପଯାଜ ନାମକ ବ୍ରତନିଷ୍ଠ, ଶମ-ଗୁଣ-ସମ୍ପନ୍ନ ବ୍ରହ୍ମନିଷ୍ଠ, ସଂହିତାଧ୍ୟୟନ ନିରତ, କାଶ୍ୟପ ଗୋତ୍ରୋଦ୍ଭବ, ତାରଣେୟ * ଋଷିଶ୍ରେଷ୍ଠ ବ୍ରହ୍ମର୍ଷି ଦ୍ୱୟଙ୍କୁ ଅବଲୋକନକରି ସେହିମାନଙ୍କୁ ଅଭିଳଷିତ କାର୍ଯ୍ୟ ସମ୍ପାଦନର ଉପଯୁକ୍ତ ବିବେଚନା କଲେ ଓ ଅତନ୍ଦ୍ରିତ ହୋଇ ସର୍ବକାମନା ମୂର୍ତ୍ତିକରି ସେମାନଙ୍କୁ ଆମନ୍ତ୍ରଣ କଲେ । ୮ ।

ଅନନ୍ତର ସେ ଦୁହିଁଙ୍କ ମଧ୍ୟରେ କନିଷ୍ଠ, ଧୃତବ୍ରତ ଉପଯାଜଙ୍କୁ ଅଧିକ କ୍ଷମତାଶାଳୀ ଜାଣି କରି ଏକାନ୍ତରେ ତାହାଙ୍କର ଶରଣାପନ୍ନ ହେଲେ । ୯ । ପାଦ ଶୁଶ୍ରୂଷଣ, ପ୍ରିୟ ବାକ୍ୟ କଥନ ଓ ସର୍ବ କାମ ପ୍ରଦାନ ଦ୍ୱାରା ଉପଯାଜଙ୍କୁ ଯଥା ବିଧିରେ ପୂଜା କରି ରାଜା ବୋଇଲେ—ହେ ବ୍ରହ୍ମନ୍ । ଉପଯାଜ । ଯେଉଁ କର୍ମଦ୍ୱାରା ଆମ୍ଭର ଦ୍ରୋଣ ବିନାଶକାରୀ ପୁତ୍ର ଜାତ ହେବ ଆପଣ ସେହି କର୍ମ କରନ୍ତୁ, ଆମ୍ଭେ ଆପଣଙ୍କୁ ଦଶ କୋଟି ଗୋଦାନ ଦେବୁଁ । ୧୦ । ଅଥବା ହେ ଦ୍ୱିଜଶ୍ରେଷ୍ଠ । ଆପଣଙ୍କ ମନରେ ଯଦି ଅନ୍ୟ କିଛି ସୁପ୍ରିୟ ଥାଏ ତେବେ ଆମ୍ଭେ ନିଶ୍ଚୟ ସେ ସମସ୍ତ ପ୍ରଦାନ

---

* ତାରଣେୟ—ଅର୍ଥାତ୍ କନ୍ୟା-ଗର୍ଭ ସମ୍ଭୂତ ।

ଉବରୁଁ ; ଋଷି ବୋଇଲେ ଆମ୍ଭେ ଏ କର୍ମ କରବୁ ନାହିଁ; ତଥାପି ଦ୍ରୁପଦ ସେହି ଋଷିଙ୍କୁ ପ୍ରସନ୍ନ କରିବା ନିମିତ୍ତ ପୁନର୍ବାର ପରିଚର୍ଯ୍ୟା କରିବାରେ ପ୍ରବୃତ୍ତ ହେଲେ । ୧୩ ।

ହେ ରାଜନ୍ ! ସମ୍ବତ୍ସର ଅତୀତ ହେଲାରୁ ଦିନକରେ ଦ୍ୱିଜଶ୍ରେଷ୍ଠ ଉପଯାଜ ଦ୍ରୁପଦଙ୍କୁ ସମ୍ବୋଧନ କରି ମଧୁର ବାକ୍ୟରେ ବୋଇଲେ । ୧୪ । ଆମ୍ଭର ଜ୍ୟେଷ୍ଠ ଭ୍ରାତା ଦିନେ ଗହନ ବନରେ ବିଚରଣ କରୁଥିଲେ, ସେ ଗୋଟିଏ ଫଳ ପଡ଼ିଥିବାର ଦେଖି ସେ ସ୍ଥାନର ଶୌଚାଶୌଚ ବିବେଚନା ନ କରି ଫଳଟିକୁ ଗ୍ରହଣ କଲେ । ଆମ୍ଭେ ତାହାଙ୍କର ପଶ୍ଚାତ୍ ପଶ୍ଚାତ୍ ଗମନ କରୁଥିଲୁଁ ଓ ତାହାଙ୍କର ସେହି ଅସାମ୍ପ୍ରତ କର୍ମ ବିଲୋକନ କଲୁଁ । ୧୫ । ସେହି ଦୋଷଯୁକ୍ତ ଦ୍ରବ୍ୟ ଗ୍ରହଣରେ ତାହାଙ୍କର କିଛି ମାତ୍ର ବିଚାର ହେଲାନାହିଁ । ୧୬ । ସେ ଫଳକୁ ଦେଖି ତହିଁରେ କୌଣସି ପାପାନୁବନ୍ଧକ ଦୋଷ ଅଛି କି ନା ତାହା ତାଙ୍କର ବୁଦ୍ଧିକୁ ଦୃଶ୍ୟ ହେଲା ନାହିଁ, ଯେଉଁ ବ୍ୟକ୍ତି ଏ ସ୍ଥାନରେ ଶୁଚି କି ଅଶୁଚି ବିବେଚନା କଲେ ନାହିଁ, ସେ ଅପର ସ୍ଥାନରେ କିପରି ଦୋଷଦର୍ଶୀ ହେବେ । ୧୭ । ସେ ଗୁରୁକୁଳରେ ବାସ କରି ସଂହିତାଧ୍ୟୟନ କଲାବେଳେ ଯେତେବେଳେ ପାରି ତେତେବେଳେ ଅନ୍ୟର ଉତ୍ସୃଷ୍ଟ ଭିକ୍ଷାଲବ୍ଧ ଦ୍ରବ୍ୟମାନଙ୍କୁ ଭକ୍ଷଣ କରନ୍ତି; ତହିଁରେ ସେ ଘୃଣାବୋଧ ନ କରି ପୁନଃ ପୁନଃ ଅନ୍ନର ଗୁଣ କୀର୍ତ୍ତନ କରନ୍ତି । ତାହାଙ୍କର ତଦ୍ରୂପ କାର୍ଯ୍ୟ ଦେଖି ଆମ୍ଭେ ତର୍କ-ଚକ୍ଷୁ ଦ୍ୱାରା ଜାଣୁଅଛୁଁ ଯେ ଆମ୍ଭର ସେ ଭ୍ରତା ଫଳାର୍ଥୀ ଅଟନ୍ତି । ୧୯ । ହେ ନୃପତେ ! ତୁମ୍ଭେ ତାହାଙ୍କ ନିକଟକୁ ଗମନ କରି, ସେ ତୁମ୍ଭଙ୍କୁ ସମ୍ୟକ୍ ରୂପେ ଯଜ୍ଞ କରାଇବେ । ଯାଜଙ୍କର ଚରିତ୍ର ଶୁଣି ନୃପତି ମନେ ମନେ ତାହାଙ୍କୁ ଘୃଣା କଲେ; କିନ୍ତୁ ଆପଣାର କାର୍ଯ୍ୟସିଦ୍ଧି ନିମିତ୍ତ ଉପଯାଜଙ୍କ ବଚନାନୁସାରେ ଯାଜଙ୍କ ଆଶ୍ରମକୁ ଗମନ କଲେ ଓ ପୂଜ୍ୟାର୍ହ ଯାଜଙ୍କଙ୍କୁ ଯଥାବିଧି ପୂଜା କରି ତାହାଙ୍କୁ ବୋଇଲେ । ୨୧ ।

ହେ ବିଭୋ ! ଅମ୍ଭେ ଅଷ୍ଟାଦଶ ସହସ୍ର ଗୌପ୍ରଦାନ କରିବୁଁ, ଆପଣ ଅମ୍ଭଙ୍କୁ ଯଜ୍ଞ କରାଅ; ଅମ୍ଭେ ଦ୍ରୋଣଙ୍କ ବୈରିତାରେ ସନ୍ତପ୍ତ ହୋଇଅଛୁଁ, ଅମ୍ଭଙ୍କୁ ପ୍ରହ୍ଲାଦିତ କର । ୨୨ । ଦ୍ରୋଣ ବ୍ରହ୍ମବେତ୍ତାମାନଙ୍କର ମଧ୍ୟରେ ଶ୍ରେଷ୍ଠ; ଅଥଚ ବ୍ରହ୍ମାସ୍ତ୍ର ପ୍ରୟୋଗରେ ତାହାଙ୍କ ଠାରୁ ଅଧିକ କେହି ଉତ୍ତମ ନାହିଁ; ଅତଏବ ସେ ସଖି-ବିଗ୍ରହରେ

ଆସ୍ତ୍ରଙ୍କୁ ପରାସ୍ତ କଲେ । ୨୩ । ଧୀମାନ ଭରଦ୍ୱାଜ, କୌରବଗଣଙ୍କର ପ୍ରଧାନ ଅସ୍ତ୍ରାର୍ଯ୍ୟ ଅଟନ୍ତି ଓ ଏହି ପୃଥିବୀରେ ତାହାଙ୍କ ଅପେକ୍ଷା କୌଣସି କ୍ଷତ୍ରୀୟ ଅଗ୍ରଗାମୀ ହୋଇ ନାହାନ୍ତି ।୨୪। ତାହାଙ୍କର ଧନୁଃ ଛଅ ଅରତ୍ନି * ପରିମିତ ଅତି ମହତ୍ ଓ ଶରଜାଲ ସର୍ବ ପ୍ରାଣୀଙ୍କର ଦେହକୁ ସଂହାର କରଇ ।୨୫।

ସେହି ମହାମନାଃ ଭରଦ୍ୱାଜ ମହାଧନୁ ଧାରଣ କରି ବ୍ରାହ୍ମଣ ବେଶରେ କ୍ଷତ୍ରିୟ ବେଗକୁ ପ୍ରତିହତ କରୁଅଛନ୍ତି ଏଥିରେ ସଂଶୟ ନାହିଁ । ୨୬ । କ୍ଷତ୍ରିୟକୁଳ ସଂହାର କରିବା ନିମିତ୍ତ ସେ ଦ୍ୱିତୀୟ ପରଶୁରାମ ହୋଇ ଅଛନ୍ତି । ଏହି ପୃଥିବୀରେ କୌଣସି ବ୍ୟକ୍ତି ତାହାଙ୍କର ଘୋର ଅସ୍ତ୍ରବଳକୁ ସହ୍ୟ କରି ପାରନ୍ତି ନାହିଁ । ୨୭ । ଅହୁତପ୍ରସ୍ତ-ପ୍ରଦୀପ୍ତ ହୁତାଶନ ପ୍ରାୟ ସେ ବ୍ରାହ୍ମତେଜ ଧାରଣ କରିଥାନ୍ତି ଓ ସଂଗ୍ରାମରେ ସେହି ବ୍ରାହ୍ମ ତେଜ ସହିତ ମିଳିତ କ୍ଷାତ୍ରବଳ ଦ୍ୱାରା ପ୍ରତିପକ୍ଷଙ୍କୁ ସମ୍ୟକ୍ ରୂପେ ଦହନ କରନ୍ତି । ୨୮ । କିନ୍ତୁ ଆପଣଙ୍କର କେବଳ ବ୍ରାହ୍ମତେଜ ଦ୍ରୋଣଙ୍କର ବ୍ରାହ୍ମତେଜ ସମ୍ବଳିତ କ୍ଷାତ୍ରତେଜ ଅପେକ୍ଷା ଅଧିକ ଶ୍ରେଷ୍ଠ । ଆମ୍ଭର କେବଳ କ୍ଷାତ୍ରବଳ ସୁତରାଂ ଆମ୍ଭେ ତାହାଙ୍କ ଠାରୁ ହୀନ ଅଟୁଁ । ୨୯ । ଆପଣ ଦ୍ରୋଣଙ୍କ ଅପେକ୍ଷା ଶ୍ରେଷ୍ଠ ଓ ବେଦଜ୍ଞତମ, ଆପଣଙ୍କ ଆଶ୍ରୟରେ ଆମ୍ଭେ ଯୁଦ୍ଧରେ ଦୁର୍ଜ୍ଜୟ ଓ ଦ୍ରୋଣାନ୍ତକାରୀ ପୁତ୍ରକୁ ଲାଭ କରିବୁଁ । ୩୦ ।

ହେ ଯାଜ ! ଆପଣ ଆମ୍ଭର ଏହି କର୍ମ୍ମ କର, ଆମ୍ଭେ ଆପଣଙ୍କୁ ଅର୍ବୁଦେ ଗୋପ୍ରଦାନ କରୁଅଛୁଁ, ଯାଜ ତାହାଙ୍କୁ ହେଉ ବୋଲି କହି ଯାଗର ବିଧାନ ମାନଙ୍କୁ ମନରେ କଳ୍ପନା କଲେ । ୩୧ । ଯାଜ ଏହି କାର୍ଯ୍ୟକୁ ଗରିଷ୍ଠ ବିବେଚନା କରି ଅକାମ ଉପଯାଜଙ୍କ ଠାରେ ସାହାଯ୍ୟ ପ୍ରାର୍ଥନା କଲେ ଓ ଦ୍ରୋଣଙ୍କ ବିନାଶ ନିମିତ୍ତ ପ୍ରତିଜ୍ଞା କଲେ । ୩୨ । ତତ୍ପରେ ମହାତପାଃ ଉପଯାଜ ସେହି ନରେନ୍ଦ୍ରଙ୍କର ପୁତ୍ରୋତ୍ପତ୍ତି ନିମିତ୍ତ ବୈତାନିକ କର୍ମ୍ମମାନଙ୍କୁ ଉପଦେଶ ଦେଲେ ଓ ବୋଇଲେ, ହେ ରାଜନ୍ ! ତୁମ୍ଭର ସେହି ପୁତ୍ର ତୁମ୍ଭ ସଦୃଶ ମହାତେଜଶାଳୀ, ମହା ବୀର୍ଯ୍ୟଶାଳୀ ଓ ମହାବଳୀ ହେବେ । ୩୪ । ଅନନ୍ତର ଭୂପତି ଦ୍ରୁପଦ ଭରଦ୍ୱାଜ-ବିନାଶକାରୀ ପୁତ୍ର କାମନାରେ କର୍ମ୍ମସିଦ୍ଧି ନିମିତ୍ତ ସେହି ମହାଯଜ୍ଞର ପ୍ରୟୋଜନୀୟ ଦ୍ରବ୍ୟମାନ ଆହରଣ କଲେ । ୩୫ । ହୋମ ଶେଷରେ

---

* ଅରତ୍ନି —ମୁଠାଣିଏ ।

ଦେ ାଣ ଯାଜ ଆଜ୍ଞା କଲେ, ହେ ରାଜ୍ଞି ! ପୃଷତସ୍ନୁଷେ ! ହବିର୍ଗ୍ରହଣ ନିମିତ୍ତ ତୁମ୍ଭେ ଶୀଘ୍ର ଆମ୍ଭଠାକୁ ଆଗମନ କର; ତୁମ୍ଭର ପୁତ୍ର ଓ କନ୍ୟା ଉପସ୍ଥିତ ହୋଇଅଛନ୍ତି । ୩୬ ।

ରାଜ୍ଞି ବୋଇଲେ—ହେ ବ୍ରହ୍ମନ୍ ! ଆମ୍ଭର ମୁଖ କୁଙ୍କୁମାଦି ଦ୍ରବ୍ୟରେ ଅବଲିପ୍ତ ହୋଇଅଛି, ପର୍ଯ୍ୟୁଷିତ ଦିବ୍ୟ ଅଙ୍ଗରାଗମାନ ଧାରଣ କରିଅଛୁଁ, ସୁତରାଂ ସନ୍ତାନ ନିମିତ୍ତ ଯଜ୍ଞୀୟ ହବିର୍ଗ୍ରହଣ କରିବାକୁ ଅଶୁଚି ଓ ଅସମର୍ଥ ହୋଇଅଛୁଁ, ଅତଏବ ଆମ୍ଭ ଅଭୀଷ୍ଟ ସିଦ୍ଧି ନିମିତ୍ତ ଆପଣ କ୍ଷଣକାଳ ପ୍ରତୀକ୍ଷା କରନ୍ତୁ; ଆମ୍ଭେ ଶୁଚି ହୋଇ ଆସୁଅଛୁଁ । ୩୭ ।

ଯାଜ ବୋଇଲେ—ଯେଉଁ ହବନୀୟ ଦ୍ରବ୍ୟ ଉପଯାଜଙ୍କ କର୍ତ୍ତୃକ ମନ୍ତ୍ରପୂତ ହୋଇ ଯାଜଙ୍କ ଦ୍ୱାରା ପାକ କରା ହୋଇଅଛି, ତୁମ୍ଭେ ଆସ ବା ନ ଆସ ତଦ୍ଦ୍ୱାରା କାମନା ସିଦ୍ଧି ହେବ । ୩୮ ।

ବ୍ରାହ୍ମଣ ବୋଇଲେ—ଯାଜ ଏହିରୂପ କହି ସେ ଅଗ୍ନି ମଧ୍ୟରେ ଆହୁତି ପ୍ରଦାନ କଲେ । ତହୁଁ ସେହି ସନ୍ଦୀପ୍ତ-ପାବକରୁ ଦେବ-ସନ୍ନିଭ ଗୋଟିଏ କୁମାର ଉତ୍ଥିତ ହେଲେ; ତାହାଙ୍କର ବର୍ଣ୍ଣ ଅଗ୍ନିପ୍ରାୟ, ରୂପ ଘୋର, ମସ୍ତକରେ କିରୀଟ, କଳେବରରେ ଉତ୍ତମ କବଚ, ହସ୍ତରେ ଖଡ୍ଗ ଓ ଶର ଶରାସନଧର ଗୋଟିଏ ସୁନ୍ଦର ରଥରେ ଆରୋହଣ ପୂର୍ବକ ମୁହୁର୍ମୁହୁଃ ସିଂହନାଦ କରି ଇତସ୍ତତଃ ଗମନାଗମନ କଲେ । ଏହା ଦେଖି ପାଞ୍ଚାଳ ଦେଶୀୟ ଲୋକେ ପ୍ରହୃଷ୍ଟ ହୋଇ ସାଧୁ ସାଧୁ ବୋଲି ଉଚ୍ଚୈଃସ୍ୱରରେ ଧ୍ୱନି କଲେ । ୪୧ । ବୋଧ ହେଲା ଯେ ହର୍ଷଯୁକ୍ତ ପାଞ୍ଚାଳଙ୍କର ଭାର ଯେପରିକି ବସୁନ୍ଧରା ଆଉ ସହି ପାରିଲେ ନାହିଁ । ତତ୍ପରେ ଆକାଶ-ବାଣୀ ହେଲା ଯେ ଏହି ରାଜକୁମାର ଦ୍ରୋଣଙ୍କର ବଧ ନିମିତ୍ତ ଜନ୍ମ ପରିଗ୍ରହ କରି ଅଛନ୍ତି; ଏହି ପୁତ୍ର ପାଞ୍ଚାଳଗଣଙ୍କର ଯଶସ୍କର ଓ ଭୟାପହାରୀ ହେବେ ଓ ରାଜାଙ୍କର ଶୋକାପନୋଦନ କରିବେ ।୪୩।

ପରେ ବେଦୀ ମଧ୍ୟରୁ ସୌଭାଗ୍ୟଶାଳିନୀ, ସୁନ୍ଦରାଙ୍ଗୀ ଓ ଆୟତ ଲୋଚନା ଗୋଟିଏ କୁମାରୀ ଜାତ ହେଲେ ସେ ଶ୍ୟାମା, ପଦ୍ମପଲାଶାକ୍ଷୀ ଓ ନୀଳବର୍ଣ୍ଣ କୁଞ୍ଚିତକେଶୀ; ତାଙ୍କର ନଖ ତୁଙ୍ଗ, ଓ ତାମ୍ରବର୍ଣ୍ଣ, ଭ୍ରୂଯୁଗଳ ସୁନ୍ଦର, ପୟୋଧର ଦ୍ୱୟ ସ୍ଥୂଳ ଓ ପୀନ, ତାହାଙ୍କୁ ଦେଖିଲେ ବୋଧହୁଏ

ସେ ଅମର ସୁନ୍ଦରୀ ମାନୁଷ ବିଗ୍ରହ ଧରି ଅଛନ୍ତି; ଏକ କ୍ରୋଶ ଦୂରରୁ ତାହାଙ୍କର ଶରୀରରୁ ନୀଳୋତ୍ପଳର ସୁଗନ୍ଧ ପ୍ରଧାବିତ ହୁଅଇ । ୪୬ । ଯେଉଁ ଦେବୀରୂପିଣୀ କନ୍ୟାଙ୍କର ରୂପ, ଦେବ, ଦାନବ ଓ ଯକ୍ଷଙ୍କର ସୁଦ୍ଧା ବାଞ୍ଛନୀୟ ହୋଇଅଛି ଓ ଯାହାଙ୍କର ଉତ୍କୃଷ୍ଟ ରୂପର ତୁଳନା ଏହି ପୃଥିବୀରେ ହୋଇ ନ ପାରେ । ୪୭ । ସେହି ସୁଶ୍ରୋଣୀଙ୍କର ଜନ୍ମହେବା ପରେ ଆକାଶରୁ ଏହି ଅଶରୀର ବଚନଶ୍ରୁତ ହେଲା ।

ଏହି କୃଷ୍ଣା ପୃଥିବୀସ୍ଥିତ ସମସ୍ତ ରମଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠା, ଏ କ୍ଷତ୍ରିୟଙ୍କର କ୍ଷୟକାରିଣୀ ହେବେ, ଏହି ସୁମଧ୍ୟମା ସମୟରେ ଦେବତାମାନଙ୍କର ଅଭୀଷ୍ଟ ସମ୍ପାଦନ କରିବେ । ଏହାଙ୍କ ହେତୁରୁ କୌରବମାନଙ୍କ ମଧ୍ୟରେ ମହାଭୟ ଉପସ୍ଥିତ ହେବ । ୪୯ ।

ତାହା ଶୁଣି ସର୍ବ ପାଞ୍ଚାଳମାନେ ସିଂହ ସମୂହ ପ୍ରାୟ ନାଦ କଲେ, ହର୍ଷ-ସମ୍ପୂର୍ଣ୍ଣ ଏହି ଜନମାନଙ୍କର ଭାର ବସୁନ୍ଧରା ସହି ପାରିଲେ ନାହିଁ । ୫୦ । ଦ୍ରୁପଦ ରାଜାଙ୍କର ମହିଷୀ ସୁତାର୍ଥିନୀ ହୋଇ ଯାଜଙ୍କୁ ବୋଇଲେ, "ଏହି ପୁତ୍ର କନ୍ୟା ତୁମ୍ଭେ ଆମ୍ଭ ବ୍ୟତିରେକେ ଅନ୍ୟ ବ୍ୟକ୍ତିଙ୍କୁ ଜନନୀ ବୋଲି ନ ଜାଣନ୍ତୁ, ଏହି ଆମ୍ଭର ପ୍ରାର୍ଥନା । ୫୧ । ରାଜାଙ୍କର ପ୍ରିୟ କରିବା ଇଚ୍ଛାରେ ଯାଜ ତଥାସ୍ତୁ ବୋଲି ବୋଇଲେ, ବ୍ରାହ୍ମଣମାନେ ସମ୍ପୂର୍ଣ୍ଣ-କାମ ହୋଇ ସନ୍ତାନ ଦ୍ୱୟର ନାମ ଦେଲେ ।୫୨ । ଦ୍ରୁପଦ ରାଜାଙ୍କର ଏହି କୁମାର ବିପକ୍ଷ ଦଳର ଉତ୍କର୍ଷ ସହି ନ ପାରିବା ଓ ପ୍ରଗଲ୍ଭ ହେବାରୁ 'ଧୃଷ୍ଟ' ଅଥଚ କବଚ କୁଣ୍ଡଳ ସହ ଜନ୍ମ ହେବାରୁ 'ଦ୍ୟୁମ୍ନ', ଏହିପରି ଧୃଷ୍ଟଦ୍ୟୁମ୍ନ ନାମଧାରୀ ହେବେ । ୫୩ । ପରନ୍ତୁ ଏହି କୁମାରୀ ବର୍ଣ୍ଣରେ କୃଷ୍ଣ ହୋଇଥିବାରୁ ତାହାଙ୍କର ନାମ କୃଷ୍ଣା ହେବ । ଏହିପରି ଦ୍ରୁପଦଙ୍କର ମହାସୁଖରେ ପୁତ୍ର ଓ କନ୍ୟା ଦୁଇଗୋଟି ଉତ୍ପନ୍ନ ହେଲେ । ୫୪ ।

ଅନନ୍ତର ପ୍ରତାପଶାଳୀ ଭରଦ୍ୱାଜ ନନ୍ଦନ ଦ୍ରୋଣ ପାଞ୍ଚାଳଙ୍କ ପୁତ୍ର ଧୃଷ୍ଟଦ୍ୟୁମ୍ନଙ୍କୁ ସ୍ୱଗୃହକୁ ଆନୟନ କରି ତାହାଙ୍କୁ ଅସ୍ତ୍ରଶିକ୍ଷା ଦେଇ ରାଜ୍ୟାର୍ଦ୍ଧ ଗ୍ରହଣ କରିଥିବାର ପ୍ରତ୍ୟୁପକାର ଆଚରଣ କଲେ । ୫୫ । ମହାମତି ଦ୍ରୋଣ ଦୈବଙ୍କ କାର୍ଯ୍ୟକୁ ଅମୋକ୍ଷଣୀୟ ଜ୍ଞାନ କରି ଅସ୍ୱକୀର୍ତ୍ତିରକ୍ଷା ନିମିତ୍ତ ତଦ୍ରୂପ କଲେ । ୫୬ ।

---

## ଅଧ୍ୟାୟ—୧୬୮

ବୈଶମ୍ପାୟନ ବୋଇଲେ—କୁନ୍ତୀ-ପୁତ୍ରମାନେ ଏ କଥା ଶୁଣି ଶଙ୍କିତଭାବ ପ୍ରାପ୍ତ ହେଲେ ଓ ସେ ସମସ୍ତ ମହାବଳମାନେ ଅସ୍ୱସ୍ଥମନା ହେଲେ । ୧ । ତତ୍ପରେ ସତ୍ୟବାଦିନୀ କୁନ୍ତୀ ସମସ୍ତ ପୁତ୍ରମାନଙ୍କ ବିମନା ହୋଇଥିବାର ଦେଖି ଯୁଧିଷ୍ଠିରଙ୍କୁ ଏହି କଥା କହିଲେ । ୨ ।

କୁନ୍ତୀ ବୋଇଲେ—ହେ ଅରିନ୍ଦମ ! ଏହି ବ୍ରାହ୍ମଣଙ୍କ ନିବେଶନରେ ଆମ୍ଭେମାନେ ଅନେକ ଦିନ ବାସ କଲୁଁ; ଏହି ରମଣୀୟ ନଗରରେ ମହାତ୍ମାଙ୍କ ଗୃହରେ ଭିକ୍ଷାଲବ୍ଧ କରି ସୁଖରେ କାଳଯାପନ କରିଅଛୁଁ; ଏଠାରେ ଯେଉଁ ସବୁ ରମଣୀୟ ବନ ଓ ଉପବନ ମାନ ଅଛି ସେ ସବୁ ପୁନଃ ପୁନଃ ଦେଖା ହୋଇଅଛି, ଆଉ ସେମାନଙ୍କୁ ଦେଖିବାକୁ ପ୍ରୀତି ହେଉନାହିଁ । ହେ କୁରୁନନ୍ଦନ ! ପୂର୍ବ ପ୍ରାପ୍ତ ଏଠାରେ ଭିକ୍ଷାଲାଭ ମଧ୍ୟ ହେଉନାହିଁ । ୫ । ଯଦି ତୁମ୍ଭର ମନ ହୁଏ ତେବେ ଆମ୍ଭେମାନେ ପାଞ୍ଚାଳ ଦେଶକୁ ଗମନ କରନ୍ତେ; ହେ ବୀର ! ସେ ସ୍ଥାନ ପୂର୍ବେ କେବେହେଁ ଦେଖା ହୋଇନାହିଁ, ତାହାକୁ ଦେଖିବାକୁ ଅତି ରମଣୀୟ ବୋଧହେବ । ୬ । ହେ ଶତ୍ରୁ-କର୍ଷଣ ! ପାଞ୍ଚାଳ ଦେଶର ଲୋକେ ସୁଭିକ୍ଷ ବୋଲି ଶୁଣାଯାଏ ଓ ରାଜା ଯଜ୍ଞସେନ ମଧ୍ୟ ବ୍ରହ୍ମଣ୍ୟ ବୋଲି ଶୁଣୁଅଛୁଁ । ୭ । ହେ ପୁତ୍ର ! ଏକ ସ୍ଥାନରେ ବହୁକାଳ ବାସ କରିବା କର୍ତ୍ତବ୍ୟ ନୁହେଁ, ଅତଏବ ତୁମ୍ଭର ଯେବେ ମନ ହୁଏ, ତେବେ ଚାଲ ସେଠାକୁ ଗମନ କରିବା । ୮ ।

ଯୁଧିଷ୍ଠିର ବୋଇଲେ—ଆପଣଙ୍କର ଯେଉଁ କାର୍ଯ୍ୟ ଅଭିମତ ତାହା ଆମ୍ଭମାନଙ୍କର ପରମ ହିତକର । ଅନୁଜମାନଙ୍କର କି ମତ, ଜାଣୁନାହୁଁ; ସେମାନଙ୍କର ଇଚ୍ଛା ଅଛି କି ନ ଅଛି କହିନ ପାରୁଁ । ୯ ।

ବୈଶମ୍ପାୟନ ବୋଇଲେ—ତତ୍ପରେ କୁନ୍ତୀ ଭୀମସେନଙ୍କୁ, ଅର୍ଜ୍ଜୁନଙ୍କୁ ଓ ନକୁଳ, ସହଦେବଙ୍କୁ ଯିବା ନିମିତ୍ତ କହିବାରୁ ସେମାନେ ଯିବାକୁ ଇଚ୍ଛୁକ ହେଲେ । ୧୦ । ହେ ରାଜନ୍ ! ତତ୍ପରେ କୁନ୍ତୀ ସେହି ବିପ୍ରଙ୍କୁ କହି ସୁତମାନଙ୍କ ସହିତ ମହାତ୍ମା ଦ୍ରୁପଦଙ୍କ ନଗରୀକୁ ପ୍ରସ୍ଥାନ କଲେ । ୧୧ ।

---

## ଅଧ୍ୟାୟ—୧୭୯

ବୈଶମ୍ପାୟନ ବୋଇଲେ—ଅନନ୍ତର ମହାତ୍ମା ପାଣ୍ଡବମାନେ ସେହିପର ପ୍ରଚ୍ଛନ୍ନ ଭାବରେ ଥାନ୍ତି ଏମନ୍ତ ସମୟରେ ସତ୍ୟବତୀ-ସୁତ ବ୍ୟାସ ସେମାନଙ୍କ ଦେଖିବାକୁ ଆସିଲେ । ୧ । ପରନ୍ତପ ପାଣ୍ଡବମାନେ ତାହାଙ୍କୁ ଆଗମନ କରିବାର ଦେଖି ପ୍ରଣତି ଦ୍ୱାରା ଅଭିବାଦନ କରି ପ୍ରାଞ୍ଜଳି ହୋଇ ଦଣ୍ଡାୟମାନ ହେଲେ । ୨ । ପାର୍ଥଙ୍କ ଦ୍ୱାରା ପ୍ରପୂଜିତ ହେବାରୁ ମୁନି ପ୍ରସନ୍ନ ହୋଇ ସେମାନଙ୍କୁ ବସିବାକୁ କହି ପ୍ରୀତି ପୂର୍ବକ ଏ ବଚନ କହିଲେ । ୩ । ହେ ପରନ୍ତପମାନେ ! ତୁମ୍ଭେମାନେ ଧର୍ମ୍ମପଥରେ ରହି ଶାସ୍ତ୍ରାନୁସାରେ ଜୀବିକା ନିର୍ବାହ କରୁଅଛ ତ ? ପୂଜାର ଯୋଗ୍ୟ ବିପ୍ରମାନଙ୍କ ଠାରେ ତୁମ୍ଭର ପୂଜାର ହାନି ହେଉନାହିଁ ତ ? । ୪ ।

ଅନନ୍ତର ଭଗବାନ୍ କୃଷ୍ଣ ଦ୍ୱୈପାୟନ ଋଷି ଧର୍ମ୍ମାର୍ଥଯୁକ୍ତ ଓ ବିବିଧ ବିଚିତ୍ର କଥାମାନ କହି ପୁନର୍ବାର କହିଲେ, "ଗୋଟିଏ ତପୋବନରେ କୌଣସି ମହାତ୍ମା ଋଷିଙ୍କର ଗୋଟିଏ କନ୍ୟାଥିଲା; ସେ କନ୍ୟା ସୁମଧ୍ୟା, ସୁଶ୍ରୋଣୀ ସୁଭ୍ରୂ ଓ ସର୍ବ ଗୁଣାନ୍ୱିତା ଥିଲେ; କିନ୍ତୁ ସେ ଆପଣା କର୍ମ୍ମ-ବଶରୁ ଦୁର୍ଭାଗା ହେଲେ, ସେ ସତୀ ଓ ରୂପବତୀ ହେଲେହେଁ ପତିପ୍ରାପ୍ତ ହେଲେନାହିଁ । ୭ । ତଦନନ୍ତର ସେ ଅସୁଖାନ୍ୱିତା ହୋଇ ପତିନିମନ୍ତେ ତପସ୍ୟା ଆରମ୍ଭ କଲେ, ଉଗ୍ର ତପସ୍ୟା ଦ୍ୱାରା ସେ ଶଙ୍କରଙ୍କୁ ତୁଷ୍ଟ କଲେ । ୮ । ଶଙ୍କର ତୁଷ୍ଟହୋଇ ସେହି ଯଶସ୍ୱିନୀଙ୍କୁ କହିଲେ, କି ବର ମାଗୁଅଛ ? ମାଗ, ତୁମ୍ଭର ମଙ୍ଗଳ ହେଉ, ଅମ୍ଭେ ବର ଦେବାକୁ ପ୍ରସ୍ତୁତ ହୋଇଅଛୁଁ । ୯ ।

ଅନନ୍ତର ଋଷିକନ୍ୟା, ଆପଣା ହିତ ନିମିତ୍ତ ବାରମ୍ବାର ଶଙ୍କରଙ୍କୁ କହିଲେ, "ଆମ୍ଭେ ସର୍ବଗୁଣାନ୍ୱିତ ପତିଙ୍କୁ ଇଚ୍ଛା କରୁଅଛୁଁ ।" ବାଗ୍ମିଶ୍ରେଷ୍ଠ, ଈଶାନ ସେ କନ୍ୟାଙ୍କୁ ପ୍ରତ୍ୟୁତ୍ତର ଦେଲେ, "ହେ ଭଦ୍ରେ ତୁମ୍ଭର ପଞ୍ଚଗୋଟି ପତି ହେବେ ।" କନ୍ୟା ବରପ୍ରଦ ସେହି ମହାଦେବଙ୍କର ବଚନ ଶୁଣି ବୋଇଲେ, ହେ ଦେବ ! ପ୍ରଭୋ ! ଅମ୍ଭେ ଆପଣଙ୍କ ପ୍ରସାଦରୁ ଗୋଟିଏ ପତି ଇଚ୍ଛା କରୁଅଛୁଁ । ୧୨ ।

ମହାଦେବ ତାହାଶୁଣି ପୁନର୍ବାର ବୋଇଲେ, ପତି ଦିଅବୋଲି ତୁମ୍ଭେ ପାଞ୍ଚଥର କହିଲ, ଅତଏବ ତୁମ୍ଭର ଦେହାନ୍ତରରେ ପଞ୍ଚପତି ହେବେ । ୧୩ । ସେହି ଦେବ-ରୂପିଣୀ କନ୍ୟା ଦ୍ରୁପଦ ରାଜଙ୍କ ଗୃହରେ

ଜନ୍ମହେଲେ, ସେହି ଦ୍ରୁପଦ ରାଜଦୁହିତା କୃଷ୍ଣାଙ୍କୁ ବିଧାତା ତୁମ୍ଭମାନଙ୍କର ଭାର୍ଯ୍ୟା ହେବା ପାଇଁ ବିଧାନ କରିଅଛନ୍ତି । ୧୪ । ଅତଏବ ହେ ମହାବଳମାନେ ତୁମ୍ଭେମାନେ ପାଞ୍ଚାଳଦେଶରେ ବାସ କର, ତୁମ୍ଭେମାନେ ତାହାଙ୍କୁ ପ୍ରାପ୍ତ ହୋଇ ସୁଖୀ ହେବ , ଏଥିରେ ସଂଶୟ ନାହିଁ । ୧୫ । ପାଣ୍ଡବମାନଙ୍କର ପିତାମହ ମହାତପସ୍ୱୀ ମହାଭାଗ ବ୍ୟାସଦେବ ପାଣ୍ଡବମାନଙ୍କୁ ଓ କୁନ୍ତୀଙ୍କୁ ଏହିକଥା କହି ତାହାଙ୍କଠାରୁ ବିଦାୟ ହୋଇ ପ୍ରସ୍ଥାନ କଲେ । ୧୬ ।

---

## ଅଧ୍ୟାୟ—୧୭୦

ବୈଶମ୍ପାୟନ କହିଲେ—ଭଗବାନ୍ ବ୍ୟାସ ଗମନ କଲାରୁ ପୁରୁଷ ଶ୍ରେଷ୍ଠ ପାଣ୍ଡବମାନେ ହୃଷ୍ଟମାନସ ହୋଇ ବ୍ରାହ୍ମଣଙ୍କୁ ଅଭିବାଦନ ଓ ସମ୍ମାନ କରି ତାହାଙ୍କ ଠାରୁ ବିଦାୟ ହୋଇ ମାତାଙ୍କୁ ଅଗ୍ରେ କରି ପ୍ରସ୍ଥାନ କଲେ । ୧ । ପରନ୍ତପ ପାଣ୍ଡୁନନ୍ଦନମାନେ ସ୍ୱକୀୟ ଉଦ୍ଦେଶ୍ୟାନୁସାରେ ସମାନ ଉତ୍ତରାଭିମୁଖ ମାର୍ଗରେ ଏକ ଅହୋରାତ୍ର ଗମନା ଗମନ କରି 'ସୋମାଶ୍ରୟଣ' ନାମକ ଗଙ୍ଗାନଦୀ ତୀରବର୍ତ୍ତୀ ତୀର୍ଥରେ ଉପସ୍ଥିତ ହେଲେ । ୨ । ସେଠାରେ ରାତ୍ରିହେବାରୁ ମହାରଥ ଧନଞ୍ଜୟ ପଥପ୍ରକାଶ ଓ ଆତ୍ମରକ୍ଷା ନିମିତ୍ତ ଗୋଟିଏ ଉଲ୍ମୁକ (୧) ଜାଳି ଅଗ୍ରେ ଗମନ କଲେ । ୩ । ସେହି ସ୍ଥାନରେ ନିର୍ଜ୍ଜନରେ ଗୋଟିଏ ଈର୍ଷାନ୍ୱିତ ଗନ୍ଧର୍ବରାଜ ସ୍ତ୍ରୀମାନଙ୍କ ସହିତ ଜଳକ୍ରୀଡ଼ା କରିବା ନିମିତ୍ତ ଉପାଗତ ହୋଇଥିଲା । ୪ । ନଦୀକୁ ସେମାନେ ଆଗମନ କରୁଥିବାର ଶବ୍ଦ ଶୁଣି ସେହି ବଳଶାଳୀ ଗନ୍ଧର୍ବ ଅତିଶୟ କ୍ରୋଧାବିଷ୍ଟ ହେଲା । ୫ ।

ମାତାଙ୍କ ସହ ପରନ୍ତପ ପାଣ୍ଡବମାନଙ୍କୁ ଦେଖି ସେ ଘୋର ଧନୁକୁ ବିସ୍ଫାରିତ କରି ଗନ୍ଧର୍ବରାଜ ଏହି ବଚନ ବୋଇଲା, "ରାତ୍ରି ଉପସ୍ଥିତ ହେବାପୂର୍ବରୁ ଯେଉଁ ରକ୍ତିମ ବର୍ଣ୍ଣ ଘୋର ସନ୍ଧ୍ୟାସମୟ ହୁଅଇ ତାହାର ଅଶୀତିଲବ ବ୍ୟତିରେକେ ଅବଶିଷ୍ଟ ସମୁଦାୟ ମୁହୂର୍ତ୍ତ କାମଚାରୀ ଯକ୍ଷ, ଗନ୍ଧର୍ବ ଓ ରାକ୍ଷସମାନଙ୍କର ସଞ୍ଚରଣ କରିବା ନିମିତ୍ତ ଏ ସ୍ଥାନରେ ବିହିତ

---

୧—ଉଲ୍ମୁକ—ଜ୍ୱଳତ୍ କାଷ୍ଠ;

ହୋଇଅଛି । ଅବଶିଷ୍ଟ ସମୟ ମନୁଷ୍ୟଙ୍କର କର୍ମାଚରଣ ନିମିତ୍ତ ନିର୍ଦ୍ଦିଷ୍ଟ ଅଛି । ୮ । ଯଦ୍ୟପି ମନୁଷ୍ୟମାନେ ଲୋଭର ବଶୀଭୂତ ହୋଇ ଆମ୍ଭମାନଙ୍କର ସେହି ନିରୂପିତ ସମୟରେ ବିଚରଣ କରନ୍ତି, ତେବେ ଆମ୍ଭେମାନେ ସେହି ମୂର୍ଖଙ୍କୁ ନିଗୃହୀତ କରୁଁ । ୯ । ଅତଏବ ରାତ୍ରିରେ ଯେଉଁ ନରମାନେ ଜଳ ମଧ୍ୟରେ ପ୍ରବିଷ୍ଟ ହୁଅନ୍ତି, ସେମାନେ ବଳିଷ୍ଠ ନୃପତି ହେଲେହେଁ ବେଦବିତ୍ ଜନମାନେ ସେମାନଙ୍କୁ ନିନ୍ଦା କରନ୍ତି । ୧୦ ।

ତୁମ୍ଭେମାନେ ଦୂରରେ ରହ, ଆମ୍ଭ ସମୀପକୁ ଆସନା; ତୁମ୍ଭେମାନେ କି ଜାଣିନାହିଁ ଯେ ଆମ୍ଭେ ଭାଗୀରଥି ଜଳରେ ଅବଗାହନ କରିବାକୁ ଆସିଅଛୁଁ ? । ୧୧ । ଆମ୍ଭେ ଅଙ୍ଗାରପର୍ଣ୍ଣ ନାମକ ଗନ୍ଧର୍ବ, ଆମ୍ଭେ ଆପଣା ବଳକୁ ଆଶ୍ରୟ କରି ଥାଉଁ; ଆମ୍ଭେ ମାନୀ, ଈର୍ଷ୍ୟାଯୁକ୍ତ ଓ କୁବେରଙ୍କର ପ୍ରିୟ ସଖା ଅଟୁଁ । ୧୨ । ଏହି ଆମ୍ଭର ବନ ଅଙ୍ଗାରପର୍ଣ୍ଣ ନାମରେ ଖ୍ୟାତ; ଆମ୍ଭେ ଏହିଠାରେ ଗଙ୍ଗା ଓ ରାଜା ନଦୀରେ ବିଚରଣ କରୁଁ । ୧୩ । ଆମ୍ଭେ କୁବେରଙ୍କର ଉଷ୍ଣୀଷ ସଦୃଶ (୧) ଲକ୍ଷଣ ଦ୍ୱାରା ବୋଧ ହେଉଅଛି ଯେ ତୁମ୍ଭେମାନେ କୌଣପ (୨) ନୁହଁ; ଶୃଙ୍ଗୀ ନୁହଁ (୩) କି ଗନ୍ଧର୍ବ ବା ଯକ୍ଷ ନୁହଁ; କି ପ୍ରକାରେ ତୁମ୍ଭେମାନେ ଆମ୍ଭ ନିକଟକୁ ଆସିବାକୁ ସାହସୀ ହେଲ ? । ୧୪ ।

ଅର୍ଜ୍ଜୁନ ବୋଇଲେ—ଦୁର୍ମତେ । ସମୁଦ୍ର, ହିମବତ୍ ପର୍ବତର ପାର୍ଶ୍ୱ-ଦେଶ ଓ ଏହି ନଦୀରେ ଦିବସ, ରାତ୍ରି ଓ ସନ୍ଧ୍ୟାକାଳରେ କାହାରିକୁ ଆସିବାର ନିଷେଧ ନାହିଁ । ରେ ଖେଚର । ଭୁକ୍ତ ହେଉ ଅଥବା ଅଭୁକ୍ତ ହେଉ, ଦିବସରେ କିମ୍ବା ରାତ୍ରିରେ କୌଣସି ସମୟରେ, କୌଣସି ବ୍ୟକ୍ତି ପକ୍ଷରେ ଏହି ସରିଦ୍‌ବରା ଗଙ୍ଗାକୁ ଆସିବାର ନିଷେଧ ନାହିଁ । ୧୬ । ଆମ୍ଭେମାନେ ଶକ୍ତିସମ୍ପନ୍ନ, ଅସମୟରେ ତୁମ୍ଭଙ୍କୁ ଧର୍ଷଣ କଲୁଁ ତ କି ହେଲା ? ରେ କ୍ରୂର । ଯେଉଁମାନେ ରଣରେ ଅଶକ୍ତ, ସେହି ମାନବମାନେ ତୁମ୍ଭଙ୍କୁ ଅର୍ଚ୍ଚନା କରନ୍ତି । ୧୭ । ପୂର୍ବକାଳରେ ଏହି ଗଙ୍ଗା ହିମାଳୟର ହେମଶୃଙ୍ଗରୁ ବିନିସୃତା ଓ ସପ୍ତଧା ହୋଇ ସମୁଦ୍ର ଜଳରେ ସମ୍ମିଳି

୧—ଉଷ୍ଣୀଷ ସଦୃଶ—ଅତିପ୍ରିୟ;
୨—କୌଣପ—ରାକ୍ଷସ
୩—ଶୃଙ୍ଗୀର ଅର୍ଥ—କାପାଳିକ, ଯେଉଁମାନେ ତନ୍ତ୍ରଶାସ୍ତ୍ରାନୁସାରେ ସାଧନା କରନ୍ତି ।

ହେଲେ । ୧୮ । ଗଙ୍ଗା, ଯମୁନା ଓ ପ୍ଲକ୍ଷଜାତା ସ୍ୱରସ୍ୱତୀ, ରଥସ୍ଥା, ସରଯୂ, ଗୋମତୀ ଓ ଗଣ୍ଡକୀ ଏହି ସପ୍ତନଦୀର ଜଳକୁ ଯେ ପାନ କରନ୍ତି ସେମାନେ ସର୍ବପାପରୁ ସଦ୍ୟଃମୁକ୍ତ ହୁଅନ୍ତି । ୧୯ । ହେ ଗନ୍ଧର୍ବ । ଏହି ଗଙ୍ଗା ଗୋଟିଏ ଶୁଦ୍ଧ କଳେବର ଧାରଣ କରି ଦେବଲୋକରେ ଆକାଶ ପଥରେ ଗମନ କରି ଅଛନ୍ତି, ତାହାଙ୍କର ନାମ ଅଳକନନ୍ଦା ହୋଇ- ଅଛି । ୨୦ । ପୁନରପି ସେ ପିତୃଲୋକରେ ବୈତରଣୀ ନାମ ପ୍ରାପ୍ତ ହୋଇଅଛନ୍ତି ଯେ ପାପକର୍ମ୍ମାମାନେ ତାହାକୁ ପାର ହୋଇ ପାରନ୍ତି ନାହିଁ । କୃଷ୍ଣଦ୍ୱୈପାୟନ କହିଅଛନ୍ତି ଯେ ସ୍ୱର୍ଗ-ସମ୍ପ୍ରଦାୟିନୀ, ଶୁଭଦା ଏହି ଦେବ-ନଦୀକୁ ଗମନ କରିବାକୁ କାହାର ପ୍ରତି ବାଧା ନାହିଁ; ତୁମ୍ଭେ ତାହାକୁ ରୋଧ କରିବାକୁ କିଏ ? ଏ ସନାତନ ଧର୍ମ୍ମ ନୁହେଁ । ୨୨ । ଅତଏବ ଆମ୍ଭେମାନେ କି କାରଣରୁ ତୁମ୍ଭ ବଚନ ପ୍ରମାଣେ ଏହି ଉତ୍ତମ ବାଧା-ଶୂନ୍ୟ ଅନିବାର୍ଯ୍ୟ ପବିତ୍ର ଗଙ୍ଗାଜଳକୁ ସ୍ପର୍ଶ ନ କରିବୁଁ ? । ୨୩ ।

ବୈଶମ୍ପାୟନ ବୋଇଲେ—ଅଙ୍ଗାରପର୍ଣ୍ଣ ଏହି କଥା ଶୁଣି କ୍ରୁଦ୍ଧ ହୋଇ, କାର୍ମ୍ମୁକକୁ ଆୟତ୍ତ କରି କରି ଆଶୀବିଷ ପ୍ରାୟ ନିଶିତ ବାଣମାନଙ୍କୁ ମୋଚନ କଲା । ୨୪ । ପାଣ୍ଡୁନନ୍ଦନ ଧନଞ୍ଜୟ ସେହି ପ୍ରଜ୍ୱଳିତ କାଷ୍ଠ ଓ ଉତ୍ତମ † ଚର୍ମ୍ମକୁ ଭ୍ରାମିତ କରି ତାହାର ସମସ୍ତ ଶରମାନଙ୍କୁ ବ୍ୟର୍ଥହତ କଲେ । ୨୫ ।

ଅର୍ଜ୍ଜୁନ ବୋଲେ—ହେ ଗନ୍ଧର୍ବ । ଅସ୍ତ୍ରଜ୍ଞ ଠାରେ ବିଭୀଷିକା ପ୍ରଯୁକ୍ତ ହେବାର ନୁହଇ; ଅସ୍ତ୍ରଜ୍ଞ ଠାରେ ଏ ସବୁ ଫେନ ପ୍ରାୟ ପ୍ରବିଲୀନ ହୁଅଇ । ୨୬ । ରେ ଗନ୍ଧର୍ବ । ଆମ୍ଭେ ଲକ୍ଷ୍ୟ କରିଅଛୁଁ ଯେ, ଗନ୍ଧର୍ବମାନେ ମାନୁଷଙ୍କ ଅପେକ୍ଷା ବଳବାନ୍, ଅତଏବ ଆମ୍ଭେ ଦିବ୍ୟାସ୍ତ୍ର ଦ୍ୱାରା ତୁମ୍ଭ ସଙ୍ଗେ ଯୁଦ୍ଧ କରିବୁଁ; ମାୟା ଯୁଦ୍ଧ କରିବୁ ନାହିଁ । ୨୭ । ପୂର୍ବକାଳରେ ଶତକ୍ରତୁଙ୍କ ଗୁରୁ ମାନନୀୟ ବୃହସ୍ପତି ଏହି ଆଗ୍ନେୟ ଅସ୍ତ୍ରକୁ ଭରଦ୍ୱାଜଙ୍କୁ ପ୍ରଦାନ କରିଥିଲେ । ୨୮ । ଭରଦ୍ୱାଜଙ୍କ ଠାରୁ ଅଗ୍ନିବେଶ୍ୟ ଓ ଅଗ୍ନି- ବେଶ୍ୟଙ୍କ ଠାରୁ ଆମ୍ଭ ଗୁରୁ ସେ ଅସ୍ତ୍ର ପ୍ରାପ୍ତ ହେଲେ । ବ୍ରାହ୍ମଣ ସତ୍ତମ ଦ୍ରୋଣ ଆମ୍ଭଙ୍କୁ ସେହି ଉତ୍କୃଷ୍ଟ ଅସ୍ତ୍ର ପ୍ରଦାନ କରି ଅଛନ୍ତି । ୨୯ ।

---

† ଚର୍ମ—ଢାଲ ।

ବୈଶମ୍ପାୟନ ବୋଇଲେ—ଏହା କହି ଅର୍ଜ୍ଜୁନ କ୍ରୁଦ୍ଧ ହୋଇ ଗନ୍ଧର୍ବ ପ୍ରତି ପ୍ରଦୀପ୍ତ ଅଗ୍ନେୟାସ୍ତ୍ରକୁ ମୋଚନ କଲେ ଓ ତଦ୍ଦ୍ୱାରା ତଦୀୟ ରଥକୁ ଦହନ କଲେ । ୩୦ । ମହାବଳ ଗନ୍ଧର୍ବ ରଥହୀନ ହୋଇ ଅଗ୍ନେୟାସ୍ତ୍ର ତେଜଃ ପ୍ରଭାବରେ ବିମୋହିତ ଓ ରଥରୁ ଅଧୋମୁଖ ହୋଇ ନିପତିତ ହୁଅନ୍ତେ ଧନଞ୍ଜୟ ତାହାର ମାଲ୍ୟବନ୍ତ କେଶକୁ ଗ୍ରହଣ କଲେ, ଓ ଅସ୍ତ୍ରପାତରେ ଚେତନା-ରହିତ ତାହାକୁ ଆକର୍ଷଣ କରି ଭ୍ରାତୃଗଣଙ୍କ ନିକଟକୁ ଆନୟନ କଲେ । ୩୨ । ତାହାର ଭାର୍ଯ୍ୟା 'କୁମ୍ଭୀନସୀ' ପତିକୁ ପରିତ୍ରାଣ କରିବା ନିମିତ୍ତ ଶରଣାର୍ଥିନୀ ହୋଇ ଯୁଧିଷ୍ଠିରଙ୍କ ନିକଟକୁ ଆଗମନ କଲା । ୩୩ ।

ଗନ୍ଧର୍ବୀ ବୋଇଲା—ହେ ମହାଭାଗ ! ମୋତେ ତ୍ରାଣ କର, ମୋହର ଏହି ପତିଙ୍କୁ ମୋଚନ କର । ହେ ପ୍ରଭୋ ! ମୋହୋର ନାମ 'କୁମ୍ଭୀନସୀ', ମୁଁ ଗନ୍ଧର୍ବୀ ଆପଣଙ୍କର ଶରଣାପନ୍ନ ହୋଇଅଛି । ୩୪ ।

ମହାବାହୁ ଯୁଧିଷ୍ଠିର ଫାଲ୍‌ଗୁନଙ୍କୁ କହି ବୋଇଲେ, ବସ୍ତ୍ରରିପୁସୂଦନ ! ଯୁଦ୍ଧରେ ପରାଜିତ, ଯଶୋହୀନ, ଅପରାକ୍ରମ ଓ ସ୍ତ୍ରୀନାଥ ରିପୁକୁ କିଏ ନିହତ କରଇ ? । ୩୫ ।

ଅର୍ଜ୍ଜୁନ ବୋଇଲେ—ଗନ୍ଧର୍ବ ! ଯାଅ, ଅଦ୍ୟ କୁରୁରାଜ ଯୁଧିଷ୍ଠିର ତୁମ୍ଭଙ୍କୁ ଅଭୟ ପ୍ରଦାନ କରୁଅଛନ୍ତି; ଜୀବନ ପ୍ରାପ୍ତ ହୁଅ ଓ ଶୋକ କରନା । ୩୬ । ଗନ୍ଧର୍ବ ବୋଇଲେ ଆମ୍ଭେ ଅଦ୍ୟ ପରାଜିତ ହେଲୁଁ; ପୂର୍ବେ ଆମ୍ଭର ପର୍ଣ୍ଣ ( ଅର୍ଥାତ୍ ରଥ ) ଦୀପ୍ତ ଅଙ୍ଗାର ପ୍ରାୟ ଅନ୍ୟର ଦୁଷ୍ପ୍ରଣୀୟ ଥିଲା ବୋଲି ଆମ୍ଭେ ଅଙ୍ଗାର ପର୍ଣ୍ଣ ନାମରେ ବିଖ୍ୟାତ ହୋଇଥିଲୁଁ । ଅଧୁନା ଆପଣଙ୍କଠାରେ ପରାଜିତ ହୋଇ ଅଙ୍ଗାରପର୍ଣ୍ଣ ନାମକୁ ପରିତ୍ୟାଗ କଲୁଁ । ଆମ୍ଭେ ତ ଜନ ସମାଜରେ ବଳ ନିମିତ୍ତ ଆତ୍ମଶ୍ଳାଘା କରି ପାରିବୁ ନାହିଁ, କେବଳ ନାମକୁ ରଖିବାର କି ପ୍ରୟୋଜନ ? । ୩୭ । ଅଦ୍ୟ ଆମ୍ଭର ଏହି ଗୋଟିଏ ଲାଭ ହେଲା ଯେ ଆମ୍ଭେ ଗୋଟିଏ ଦିବ୍ୟାସ୍ତ୍ରଧାରୀ ସଖା ପାଇଲୁଁ; ଆମ୍ଭେ ଅର୍ଜ୍ଜୁନଙ୍କୁ ଗାନ୍ଧର୍ବୀ ମାୟାବିଦ୍ୟା ପ୍ରଦାନ କରିବାକୁ ଇଚ୍ଛା କରୁଅଛୁଁ । ୩୮ । ଆମ୍ଭର ଏହି ଉତ୍ତମ ଓ ବିଚିତ୍ରରଥ, ଅସ୍ତ୍ରାଗ୍ନି ଦ୍ୱାରା ଦଗ୍‌ଧ ହେଲା । ଆମ୍ଭେ ଚିତ୍ରରଥ ହୋଇ ଅଦ୍ୟ ଦଗ୍‌ଧରଥ ନାମ ଧାରଣ କଲୁଁ । ୩୯ ।

ପୂର୍ବକାଳରେ ଆମ୍ଭେ ତପସ୍ୟାଦ୍ୱାରା ଏହି ବିଦ୍ୟାକୁ ସମ୍ଭୃତ କରିଥିଲୁଁ; ସେ ବିଦ୍ୟାକୁ ଅଦ୍ୟ ଅମ୍ଭର ପ୍ରାଣଦାତା ଏହି ମହାତ୍ମାଙ୍କୁ ପ୍ରଦାନ କରିବୁଁ । ୪୦ । ଯେଉଁ ବ୍ୟକ୍ତି ଶତ୍ରୁକୁ ଜୟ ଓ ସ୍ତମ୍ଭିତ କରି, ତାହାକୁ ଶରଣାର୍ଥୀ ଦେଖିଲେଁ ତାହାର ପ୍ରାଣଦାନ କରେ ସେ ସର୍ବପ୍ରକାର କଲ୍ୟାଣ ପାଇବାର ପାତ୍ର ଅଟେ । ୪୧ । ଏହି ଚାକ୍ଷୁଷୀ ବିଦ୍ୟାକୁ ମନୁ ସୋମଙ୍କୁ ଦେଇଥିଲେ, ସୋମ ବିଶ୍ୱାବସୁଙ୍କୁ ଓ ବିଶ୍ୱାବସୁ ଅମ୍ଭଙ୍କୁ ସେ ବିଦ୍ୟା ଦେଲେ । ୪୨ । ଗୁରୁଦତ୍ତ ସେହି ବିଦ୍ୟା ଏହି କାପୁରୁଷଠାରେ ରହି ନଷ୍ଟ ହେଉଅଛି । ହେ ସଖେ ! ଏହି ଚାକ୍ଷୁଷୀ ବିଦ୍ୟାର ଆଗମ କହିଲି, ଏବେ ଏହାର ପରାକ୍ରମ ନିବୋଧ କର । ୪୩ । ତ୍ରିଲୋକ ମଧ୍ୟରେ ଯେଉଁ ଦ୍ରବ୍ୟକୁ ଚକ୍ଷୁଦ୍ୱାରା ଦେଖିବାକୁ ଇଚ୍ଛା କରିବ, ତାହା ଦେଖି ପାରିବ ଓ ତାହାର ଅବସ୍ଥା ଓ ସ୍ୱଭାବକୁ ମଧ୍ୟ ଦେଖି ପାରିବ । ୪୪ । ଏହି ବିଦ୍ୟା ଲାଭ ନିମିତ୍ତ ଛଅମାସ ଏକ ପଦରେ ଦଣ୍ଡାୟମାନ ହୋଇ ତପସ୍ୟା କରିବାକୁ ହୁଅଇ; କିନ୍ତୁ ଆପଣଙ୍କର ତାଦୃଶ ବ୍ରତ କରିବାର ଆବଶ୍ୟକ ନାହିଁ, ଆମ୍ଭେ ସ୍ୱୟଂ ସେ ବିଦ୍ୟା ପ୍ରଦାନ କରିବୁଁ । ୪୫ ।

ହେ ରାଜନ୍ ! ଏହି ବିଦ୍ୟାପ୍ରଭାବରୁ ଅମ୍ଭେମାନେ ମନୁଷ୍ୟମାନଙ୍କ ଅପେକ୍ଷା ଅଧିକ ଓ ଦେବତାମାନଙ୍କର ସମାନ ହୋଇଅଛୁଁ । ୪୬ । ହେ ପୁରୁଷସତ୍ତମ ! ଅତ୍ପର ଅମ୍ଭେ ଆପଣଙ୍କୁ ଓ ଆପଣଙ୍କର ଭ୍ରାତାମାନଙ୍କୁ ଏକ ଏକ ଶତ ଗନ୍ଧର୍ବ ଭୂମିଜାତ ଅଶ୍ୱ ପ୍ରଦାନ କରୁଅଛୁଁ । ସେ ଅଶ୍ୱମାନଙ୍କର ବର୍ଣ୍ଣ ଦିବ୍ୟ ଓ ସେମାନେ ମନପ୍ରାୟ ବେଗଗାମୀ; ଦେବତା ଓ ଗନ୍ଧର୍ବ ମାନଙ୍କୁ ସେମାନେ ବହନ କରନ୍ତି; ସେମାନେ ଯେତେ କ୍ଷୀଣ ହେଉନ୍ତୁ, ତାହାଙ୍କର ବେଗ କଦାପି ହୀନ ହୁଅଇ ନାହିଁ । ୪୮ । ବୃତ୍ରାସୁରକୁ ବଧ କରିବା ନିମିତ୍ତ ପୂର୍ବକାଳରେ ମହେନ୍ଦ୍ରଙ୍କର ବଜ୍ର ନିର୍ମ୍ମିତ ହୋଇଥିଲା; ବୃତ୍ର-ମସ୍ତକରେ ସେ ବଜ୍ର ସହସ୍ରଧା ହୋଇ ବିଶୀର୍ଣ୍ଣ ହେଲା । ୪୯ । ତତ୍ପରେ ବଜ୍ରର ସେହି ଅଂଶମାନଙ୍କୁ ଦେବତା-ମାନେ ପୃଥକ୍ ପୃଥକ୍ ସ୍ୱନ୍ଧରେ ଉପାସନା କଲେ । ଲୋକରେ ଯାହାକୁ 'ଯଶ' ବୋଲି ବୋଲନ୍ତି, ସେ ଯଶ ବଜ୍ରର ଗୋଟିଏ ଅଂଶ ବୋଲି କଥିତ ଅଛି । ୫୦ । ବ୍ରାହ୍ମଣଙ୍କର ହସ୍ତ, ହସ୍ତ ମଧ୍ୟ ବଜ୍ରର ଗୋଟିଏ ଅଂଶ; ସେ ହସ୍ତଦ୍ୱାରା ବ୍ରାହ୍ମଣମାନେ ଅଗ୍ନିରେ ଅହୁତ ପ୍ରଦାନ କରି, ଶୁଭ ଫଳ ଲାଭ କରନ୍ତି ।

କ୍ଷତ୍ରିୟଙ୍କ 'ବଜ୍ରରଥ' ବୋଲି; ତାହାଙ୍କର ସେ ରଥ ଉକ୍ତ ବଜ୍ରର ଗୋଟିଏ ଭାଗ ଅଟେ । କ୍ଷତ୍ରିୟମାନେ ଉକ୍ତ ରଥରେ ଆରୋହଣ କରି ସଂଗ୍ରାମରେ ଦେବତା ଓ ବ୍ରାହ୍ମଣଙ୍କର ବିପକ୍ଷ ଦଳକୁ ବିନାଶ କରନ୍ତି । ୫୧ ।

ବୈଶ୍ୟମାନେ ଦେବ ଓ ବ୍ରାହ୍ମଣଙ୍କୁ ଯେଉଁ ଦାନ କରି ସୁଖୀ ହୁଅନ୍ତି, ସେହି ଦାନ ମଧ୍ୟ ସେ ବଜ୍ରର ଏକ ଅଂଶ ଅଟଇ । ଅଥଚ ଶୂଦ୍ରମାନେ ବ୍ରାହ୍ମଣଙ୍କର ପରିଚର୍ଯ୍ୟା କରି ସ୍ୱଧର୍ମ ପାଳନ କରନ୍ତି; ସେ କର୍ମ ସୁଦ୍ଧା ଉକ୍ତ ବଜ୍ରର ଭାଗ । ଶୂଦ୍ରଙ୍କ ଏହି କାରଣରୁ କର୍ମ-ବଜ୍ର କହନ୍ତି । ୫୧ । ଅତଏବ ଅଶ୍ୱଗଣ କ୍ଷତ୍ରିୟଙ୍କର ବଜ୍ର ସ୍ୱରୂପର ରଥର ଗୋଟିଏ ଅଙ୍ଗ ହେବାରୁ ଅବଧ୍ୟ ସ୍ଥିତ ହୋଇ ଅଛନ୍ତି । ରଥାଙ୍ଗର ଅଶ୍ୱମାନେ ଘୋଟକୀ ଠାରୁ ଉତ୍ପନ୍ନ ହୁଅନ୍ତି; ତନ୍ମଧ୍ୟରେ ଯେଉଁ ଅଶ୍ୱମାନେ ଗନ୍ଧର୍ବ ଲୋକରେ ଜନ୍ମନ୍ତି, ସେମାନେ ଶୂର ଓ ସେମାନଙ୍କର ବର୍ଣ୍ଣ ଇଚ୍ଛାଧୀନ, ଅଥଚ ସେମାନେ ଇଚ୍ଛାନୁରୂପ ବେଗଶାଳୀ ଓ ଆଜ୍ଞାବହ ହୁଅନ୍ତି । ଏହି ହେତୁରୁ ଆମ୍ଭର ପ୍ରଦତ୍ତ ଅଶ୍ୱମାନେ ଆପଣଙ୍କର କାମନା ପୂର୍ଣ୍ଣ କରିବେ । ୫୩ ।

ଅର୍ଜୁନ ବୋଇଲେ—ହେ ଗନ୍ଧର୍ବ ! ତୁମ୍ଭର ଜୀବନ ସଂଶୟ ହେବା ପରେ, ତୁମ୍ଭେ ପ୍ରୀତ ହୋଇ ବିଦ୍ୟା, ଧନ, ଅଥବା ବେଦ ଦାନ କରୁଅଛ; ଅତଏବ ସେପରି ଦ୍ରବ୍ୟ ଗ୍ରହଣ କରିବାକୁ ଆମ୍ଭର ରୁଚି ହେଉ ନାହିଁ । ୫୪ ।

ଗନ୍ଧର୍ବ ବୋଇଲେ—ମହତ୍ ଲୋକଙ୍କ ସହିତ ସମାଗମ ପ୍ରୀତି ଜନକ । ବିଶେଷରେ ଆମ୍ଭର ଜୀବିତ ପ୍ରଦାନ କରିବାରୁ ଆମ୍ଭେ ପ୍ରୀତ ହୋଇ ଆପଣଙ୍କୁ ଏହି ବିଦ୍ୟା ପ୍ରଦାନ କରୁଅଛୁ; ହେ ବୀଭତ୍ସୋ ! ଭରତର୍ଷଭ ! ଆପଣଙ୍କଠାରୁ ମଧ୍ୟ ଆମ୍ଭେ ତାହାର ପ୍ରତିବଦଳରେ ଉଦ୍ୟୋଗ୍ୟ ଏହି ଉତ୍ତମ ଆଗ୍ନେୟାସ୍ତ୍ର ଗ୍ରହଣ କରିବୁଁ । ୫୬ ।

ଅର୍ଜୁନ ବୋଇଲେ—ଆମ୍ଭେ ଅସ୍ତ୍ର ପ୍ରଦାନ କରି, ତୁମ୍ଭଠାରୁ ଅଶ୍ୱମାନଙ୍କୁ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛୁଁ; ଆମ୍ଭ ଦୁହିଁଙ୍କର ସଂଯୋଗ ଚିରସ୍ଥାୟୀ ହେଉ । ହେ ସଖେ ଗନ୍ଧର୍ବ ! କହ କି କାରଣରୁ ଗନ୍ଧର୍ବମାନଙ୍କ

ଠାରୁ ମାନବ ଜାତିର ଭୟ ହୁଅଇ । ଅମ୍ଭେମାନେ ସମସ୍ତେ ଅରନ୍ଦମ ଓ ବେଦ-ପାରଗ ହୋଇ ରାତିରେ ଗମନ କରିବାରୁ କି କାରଣରୁ ତୁମ୍ଭଦ୍ୱାରା ତିରସ୍କୃତ ହେଲୁଁ ? । ୫୮ ।

ଗନ୍ଧର୍ବ କହିଲେ—ହେ ପାଣ୍ଡୁନନ୍ଦନଗଣ ! ଆପଣମାନେ ଗୁରୁକୁଳରୁ ପ୍ରତିନିବୃତ୍ତ ହୋଇଅଛ, ଅଥଚ ଗୃହସ୍ଥ ହୋଇନାହିଁ, କି ବିବାହ କରିନାହିଁ, ସୁତରାଂ ଆଶ୍ରମ ବିହୀନ; ଏ ପରେ ଆପଣମାନଙ୍କ ସହ ବ୍ରାହ୍ମଣ ନାହିଁ; ଏହିସବୁ କାରଣରୁ ଅମ୍ଭେ ଆପଣମାନଙ୍କ ପ୍ରତି ଅତିକ୍ରମଣ କଲୁଁ । ୫୯ । ଧୀମନ୍ତ ଯକ୍ଷ, ରାକ୍ଷସ, ଗନ୍ଧର୍ବ, ପିଶାଚ, ଉରଗ ଓ ଦାନବ-ମାନେ କୁରୁବଂଶରେ ଯଶ ବିସ୍ତରରୂପେ ଗାନ କରନ୍ତି । ୬୦ । ହେ ବୀର ! ଅମ୍ଭେ ନାରଦ ପ୍ରଭୃତି ଦେବର୍ଷିମାନଙ୍କ ଠାରୁ ଆପଣଙ୍କର ବୁଦ୍ଧିଶାଳୀ ପୂର୍ବ-ପୁରୁଷମାନଙ୍କର ଗୁଣ କୀର୍ତ୍ତିନ ଶ୍ରବଣ କରିଅଛୁଁ । ୬୧ । ଅମ୍ଭେ ସ୍ୱୟଂ ମଧ୍ୟ ଏହି ସାଗରାମ୍ବରା ବସୁମତୀକୁ ପର୍ଯ୍ୟଟନ କରୁଁ କରୁଁ ଭବଦୀୟ ସ୍ୱକୁଳର ପ୍ରଭାବ ପ୍ରତ୍ୟକ୍ଷ କରିଅଛୁଁ । ୬୨ । ହେ ଅର୍ଜୁନ ! ବେଦ ଓ ଧନୁର୍ବିଦ୍ୟାରେ ତ୍ରିଲୋକ-ବିଶ୍ରୁତ ଓ ଯଶସ୍ୱୀ ଭବଦୀୟ ଆଚାର୍ଯ୍ୟ ଭରଦ୍ୱାଜ ପୁତ୍ରଙ୍କୁ ସମ୍ପୂର୍ଣ୍ଣରୂପେ ଜାଣୁଁ । ୬୩ ।

ହେ କୁରୁଶାର୍ଦ୍ଦୂଳ ! ଆପଣଙ୍କର ପିତୃପୁରୁଷ କୁରୁବଂଶ ବର୍ଦ୍ଧନ ଧର୍ମ୍ମ, ବାୟୁ, ଇନ୍ଦ୍ର ଓ ଅଶ୍ୱିନୀକୁମାର ଦ୍ୱୟ ଏବଂ ମାନବ-ଶ୍ରେଷ୍ଠ ପାଣ୍ଡୁ—ଏହି ଛଅ ଜଣଙ୍କୁ ବିଶେଷ ରୂପେ ଜାଣୁଁ । ୬୪ । ଆପଣମାନେ ପଞ୍ଚଭ୍ରାତା, ସମସ୍ତେ ଶସ୍ତ୍ରବିଦ୍ୟାରେ ପାରଦର୍ଶୀ, ମହାତ୍ମା, ବିଦ୍ୟାସମ୍ପନ୍ନ, ସଚ୍ଚରିତ୍ର, ଶୂର ଓ ବ୍ରତପରାୟଣ ।୬୫। ଆପଣମାନଙ୍କ ମନ ଓ ବୁଦ୍ଧି ଅତି ଉତ୍କୃଷ୍ଟ ଓ ସ୍ୱଭାବ ମଧ୍ୟ ଅତି ବିଶୁଦ୍ଧ ଅଟେ । ହେ ପାର୍ଥ ! ଅମ୍ଭେ ଏ ସବୁ ଅବଗତ ହୋଇ ସୁଦ୍ଧା ଆପଣମାନଙ୍କୁ ଧର୍ଷଣା (୧) କରିଅଛୁଁ ।୬୬। ହେ କୌରବ୍ୟ ! ବାହୁବଳ-ବିଶିଷ୍ଟ ଓ ଧନଶାଳୀ ବ୍ୟକ୍ତି ଆପଣାର ପତ୍ନୀ ସମ୍ମୁଖରେ ଅପମାନ ସହ୍ୟ କରି ପାରେ ନାହିଁ ।୬୭। ହେ କୌନ୍ତେୟ ! ରାତିରେ 'ଅମ୍ଭମାନଙ୍କର ପରାକ୍ରମ ଅଧିକ ବର୍ଦ୍ଧିତ ହୁଅଇ ଓ ଅମ୍ଭ ସଙ୍ଗେ ଅମ୍ଭର ଦାରାମାନେ ଅଛନ୍ତି; ଏହି କାରଣରୁ ଅମ୍ଭର ମନ୍ୟୁ ଜାତ ହେଲା । ୬୮ । ହେ ତାପତ୍ୟ କୁଳ-ବର୍ଦ୍ଧନ ! ଅମ୍ଭେ ଯେଉଁ

(୧) ଧର୍ଷଣା—ତିରସ୍କାର, ଅପମାନ

କାରଣରୁ ଆପଣଙ୍କ ଠାରେ ବିଜିତ ହୋଇଅଛୁଁ, ତାହା ଆମ୍ଭେ କୋଲୁଅଛୁ, ଶୁଣିବା ହେଉନ୍ତୁ । ୬୯ ।

ହେ ପାର୍ଥ ! ବ୍ରହ୍ମଚର୍ଯ୍ୟ ପରମ ଧର୍ମ୍ମ ଅଟେ । ଆପଣ ତାହାକୁ ନିୟତ ଆଚରଣ କରୁଅଛ, ଏହି କାରଣରୁ ଆମ୍ଭେ ଆପଣଙ୍କ ଦ୍ୱାରା ରଣରେ ବିଜିତ ହେଲୁଁ । ୭୦ । ହେ ପରନ୍ତପ ! ଯଦି କୌଣସି କୃତଦାର କ୍ଷତ୍ରିୟ ରାତ୍ରିରେ ଆମ୍ଭସହିତ ଯୁଦ୍ଧ କରେ, ତେବେ ସେ କୌଣସି ପ୍ରକାରେ ଜୀବିତ ରହିପାରେ ନାହିଁ । ୭୧ । ହେ ପାର୍ଥ । କାମ-ବୃତ୍ତ ହୋଇ ସୁଦ୍ଧା ଯେଉଁ କ୍ଷତ୍ରିୟ ବେଦ ପୁରସ୍କୃତ ହୋଇ ପୁରୋହିତଙ୍କ ପ୍ରତି ସମସ୍ତ କାର୍ଯ୍ୟର ଭାର ଅର୍ପଣ କରିଥାଆନ୍ତି ସେ ମଧ୍ୟ ରାତ୍ରିଞ୍ଚରମାନଙ୍କୁ ପରାଜିତ କରିବାକୁ ସମର୍ଥ ହୁଅନ୍ତି । ୭୨ । ଏହି ହେତୁରୁ ହେ ତାପତ୍ୟ ! ବାଞ୍ଛିତ-ଶୁଭ-କର୍ମ୍ମ-ମାନଙ୍କେ ଦମ-ଗୁଣ-ସମ୍ପନ୍ନ ପୁରୋହିତଙ୍କୁ ନିଯୁକ୍ତ କରିବା ମନୁଷ୍ୟଙ୍କର କର୍ତ୍ତବ୍ୟ ଅଟେ । ୭୩ । ହେ ସଖେ ! ଯେ ବେଦରେ ଓ ଶିକ୍ଷାଦି ଷଡ଼ଙ୍ଗରେ କୃତବିଦ୍ୟ ହୋଇଥାନ୍ତି, ପବିତ୍ର ବଂଶରୁ ଉତ୍ପନ୍ନ ହୋଇଥାନ୍ତି, ସତ୍ୟବାଦୀ, ଧର୍ମ୍ମାତ୍ମା ଓ ଜିତେନ୍ଦ୍ରିୟ ହୋଇଥାନ୍ତି, ସେହି ଏକା ରାଜପୁରୋହିତ ହେବାର ଯୋଗ୍ୟ ବିବେଚିତ ହୁଅନ୍ତି । ୭୪ । ଯେଉଁ ରାଜାଙ୍କର ପୁରୋଧା ଧର୍ମ୍ମଜ୍ଞ, ବାକ୍‌ପଟୁ, ସୁଶୀଳ ଓ ସଦ୍‌ବଂଶଜାତ ହୋଇଥାନ୍ତି, ତାହାଙ୍କର ଇହଲୋକରେ ନିୟତ ଜୟ ହୁଅଇ ଓ ପରଲୋକରେ ସ୍ୱର୍ଗବାସ ହୁଅଇ । ୭୫ । ଅଲବ୍‌ଧ ଦ୍ରବ୍ୟର ଲାଭ ଓ ଲବ୍‌ଧଦ୍ରବ୍ୟର ପରିରକ୍ଷଣ ନିମିତ୍ତ ରାଜାଙ୍କର ଗୁଣବାନ୍ ପୁରୋହିତଙ୍କୁ ନିଯୁକ୍ତ କରିବା ସର୍ବଥା ବିଧେୟ । ୭୬ । ଯେଉଁ ରାଜା ଐଶ୍ୱର୍ଯ୍ୟ ଇଚ୍ଛା କରନ୍ତି, ତାହାଙ୍କର ସାଗରାମ୍ବରା ବସୁମତୀକୁ ଲାଭ କରିବା ନିମିତ୍ତ ପୁରୋହିତଙ୍କ ମତରେ କାର୍ଯ୍ୟ କରିବା ବିଧେୟ । ୭୭ । ହେ ତାପତ୍ୟ ! କୌଣସି ଭୂପତି; ବ୍ରାହ୍ମଣ-ରହିତ ହୋଇ କେବଳ ଶୌର୍ଯ୍ୟ ଅଥବା ଆଭିଜାତ୍ୟ ଦ୍ୱାରା ପୃଥିବୀ ଜୟକରି ପାରନ୍ତି ନାହିଁ । ୭୮ । ଅତଏବ ହେ କୁରୁବଂଶ ବିବର୍ଦ୍ଧନ ! ଆପଣ ନିଶ୍ଚୟ ଜାଣନ୍ତୁ ଯେ ଯେଉଁ ରାଜାଙ୍କର କାର୍ଯ୍ୟ ତନ୍ତ୍ରରେ ବ୍ରାହ୍ମଣଙ୍କର ପ୍ରାଧାନ୍ୟ ଥାଏ, ସେ ରାଜା କେବଳ ଚିରକାଳ ପ୍ରଜାପାଳନ କରିବାକୁ ସମର୍ଥ ହୁଅନ୍ତି । ୭୯ ।

## ଅଧ୍ୟାୟ—୧୭୧

ଅର୍ଜ୍ଜୁନ ପଚ୍ଚାରିଲେ—ହେ ସଖେ! ତୁମ୍ଭେ ଯେ ଆମ୍ଭଙ୍କୁ ତାପତ୍ୟ ବୋଲି ସମ୍ବୋଧନ କଲ, ସେହି ତାପତ୍ୟ ଶବ୍ଦର ଅର୍ଥ କଅଣ ? ଅମ୍ଭେ ଜାଣିବାକୁ ଇଚ୍ଛା କରୁଅଛୁଁ । ୧ । ଯାହାଙ୍କ ହେତୁରୁ ଆମ୍ଭେ ତାପତ୍ୟ ବୋଲାଇଲୁଁ, ସେ ତପତୀ କିଏ ? ଅମ୍ଭେ ତାହାର ତତ୍ତ୍ୱ ଜାଣିବାକୁ ଇଚ୍ଛା କରୁଅଛୁଁ । ହେ ସାଧୋ ! ଅମ୍ଭେମାନେ କୌନ୍ତେୟ । ୨ ।

ବୈଶମ୍ପାୟନ କହିଲେ—ଗନ୍ଧର୍ବ ସେ କଥା ଶ୍ରବଣ କରି ତିନି ଲୋକରେ ବିଖ୍ୟାତ କଥାକୁ କୁନ୍ତୀ-ପୁତ୍ର ଧନଞ୍ଜୟଙ୍କୁ ଶ୍ରବଣ କରାଇଲେ । ୩।

ଗନ୍ଧର୍ବ କହିଲେ—ସର୍ବ ବୁଦ୍ଧିମାନଙ୍କର ଶ୍ରେଷ୍ଠ ପାର୍ଥ ! ଏହି ମନୋରମ କଥାକୁ ସବୁ ଯାଥାତଥ୍ୟ ରୂପେ ଆପଣଙ୍କୁ କହିବୁ । ଯେଉଁ କାରଣରୁ ଆପଣଙ୍କୁ ତାପତ୍ୟ ବୋଲି କହିଲୁଁ, ଏକମନା ହୋଇ ଶ୍ରବଣ କର, ତାହା କହିବୁଁ । ଏହି ଯେ ମଣ୍ଡଳାକାର ହୋଇ ନିଜର ତେଜ ଦ୍ୱାରା ଆକାଶରେ ବ୍ୟାପ୍ତ ହୋଇ ଅଛନ୍ତି, ତାହାଙ୍କର ତପତୀ ନାମରେ ସଦୃଶୀ ଗୋଟିଏ ସୁତା ଥିଲେ । ହେ ବିଭୋ ! ସୂର୍ଯ୍ୟଙ୍କର ସେହି ସୁତା ସାବିତ୍ରୀଙ୍କ-ଠାରୁ ସାନ; ତପସ୍ୟା ପ୍ରଭାବରୁ ସେ ତପତୀ ତିନିଲୋକରେ ବିଖ୍ୟାତ ହୋଇଥିଲେ । ୭ । ଦେବୀ, ଅସୁରୀ, ଯକ୍ଷୀ, ରାକ୍ଷସୀ, ଅପ୍ସରା କି ଗନ୍ଧର୍ବୀ କେହି ତାହାଙ୍କ ସଦୃଶ ରୂପବତୀ ନ ଥିଲେ । ୮ । ସେହି ଭାବିନୀଙ୍କର ଅବୟବମାନ ଏପରି ସୁନ୍ଦର ରୂପେ ବିଭକ୍ତ ହୋଇଥିଲା ଯେ, କୌଣସି ପ୍ରକାରେ ସେ ସମସ୍ତ ନିନ୍ଦନୀୟ ନୁହଇ; ତାହାଙ୍କର ନୟନ ଯୁଗଳ କୃଷ୍ଣବର୍ଣ୍ଣ ଓ ଆୟତ, ସେ ସୁନ୍ଦରାଚାରିଣୀ, ସାଧ୍ୱୀ ଓ ସୁବେଶା ଥିଲେ; ହେ ଭାରତ ! ତାହାଙ୍କର ପିତା ସବିତା, ତିନିଲୋକରେ ତାହାଙ୍କର ସମାନ ରୂପ, ଶୀଳ, ଗୁଣ ଓ ଶାସ୍ତ୍ରରେ ଉପଯୁକ୍ତ ପାତ୍ର କାହାରିକୁ ବିବେଚନା କଲେ ନାହିଁ । ୧୦ । ଦୁହିତାଙ୍କୁ ସମ୍ପ୍ରାପ୍ତ-ଯୌବନା ଓ ଦାନ କରିବାର ଯୋଗ୍ୟ ହୋଇ ଥିବାର ଦେଖି କିପରି ତାହାଙ୍କୁ ସମ୍ପ୍ରଦାନ କରିବେ, ତାହା ଚିନ୍ତାକରି ଚିତ୍ତରେ ଶାନ୍ତି ଲାଭ କରିପାରିଲେ ନାହିଁ । ୧୧ ।

ହେ କୌନ୍ତେୟ ! ସେହି ସମୟରେ ଋକ୍ଷପୁତ୍ର, କୁରୁଙ୍କର ଶ୍ରେଷ୍ଠ ବଳବାନ୍ ନୃପତି ସମ୍ବରଣ ସୂର୍ଯ୍ୟଙ୍କୁ ଆରାଧନା କରୁଥିଲେ । ୧୨ । ପୌରବ-ନନ୍ଦନ ସମ୍ବରଣ ଇନ୍ଦ୍ରିୟମାନଙ୍କୁ ଦମନ କରି ଶୁଚି, ନିୟମଯୁକ୍ତ

ଓ ଅହଂକାରଶୂନ୍ୟ ହୋଇ, ଉପବାସ ରହି ବିବିଧ ପ୍ରକାର ତପସ୍ୟାଚରଣ ପୂର୍ବକ ଅର୍ଘ୍ୟ, ମାଲ୍ୟ, ଗନ୍ଧ ପ୍ରଭୃତି ନାନାପ୍ରକାର ଉପହାର ଦ୍ୱାରା ଦୀପ୍ତିମାନାଂଶୁମାଲୀଙ୍କର ଶୁଶ୍ରୂଷା ଓ ପୂଜା କରୁଥିଲେ । ୧୪ । ତଦନନ୍ତର ସୂର୍ଯ୍ୟଦେବ ସମ୍ବରଣଙ୍କୁ କୃତଜ୍ଞ, ଧର୍ମଜ୍ଞ ଓ ପୃଥିବୀରେ ଅଦ୍ୱିତୀୟ ରୂପ-ସମ୍ପନ୍ନ ବିଲୋକନ କରି, ତାହାଙ୍କୁ ତପତୀଙ୍କର ଯୋଗ୍ୟ ପତି ଥିବାର ଜ୍ଞାନ କଲେ । ୧୫ । ହେ କୌରବ୍ୟ ! ଲୋକ ବିଖ୍ୟାତ ସତ୍କୁଳ ପ୍ରସୂତ ନୃପୋତ୍ତମ ସମ୍ବରଣଙ୍କୁ ସେହି କନ୍ୟା ପ୍ରଦାନ କରିବାକୁ ସୂର୍ଯ୍ୟ ଇଚ୍ଛା କଲେ । ୧୬ । ସ୍ୱର୍ଗରେ ଦୀପ୍ତାଂଶୁ ସବିତା ଯେପରି ଆଲୋକ ପ୍ରଦାନ କରନ୍ତି ତଦ୍ରୂପ ମହୀପାଳ ସମ୍ବରଣ ପୃଥିବୀରେ ଦୀପ୍ତି ବିଶିଷ୍ଟ ହେଲେ । ୧୭ । ହେ ପାର୍ଥ ! ଯେପରି ଆଦିତ୍ୟ ଉଦିତ ହେଲେ ବ୍ରହ୍ମବାଦୀମାନେ ତାହାଙ୍କର ଅର୍ଚ୍ଚନା କରନ୍ତି, ସେହିପରି ବ୍ରାହ୍ମଣାଦି ବର୍ଣ୍ଣର ପ୍ରଜାମାନେ ସମ୍ବରଣଙ୍କର ଉପାସନା କଲେ । ୧୮ । ଶ୍ରୀସମ୍ପନ୍ନ ସେହି ନୃପତି ସୁହୃଦବର୍ଗଙ୍କ ପ୍ରତି ଓ ଶତ୍ରୁବର୍ଗଙ୍କ ପ୍ରତି ବ୍ୟବହାର କରିବା ସମୟରେ କାନ୍ତି ଓ ତେଜୋ-ଗୁଣାବଲମ୍ବୀ ହୋଇ ଯଥାକ୍ରମେ ସୋମଙ୍କୁ ଓ ଆଦିତ୍ୟଙ୍କୁ ଅତିକ୍ରମ କଲେ । ୧୯ ।

ହେ କୌରବ୍ୟ ! ଏତାଦୃଶ ପରାକ୍ରମଶାଳୀ ଓ ଗୁଣସମ୍ପନ୍ନ ନରପତିଙ୍କୁ ସ୍ୱୟଂ ତପନ ଆପଣାର କନ୍ୟା ତପତୀଙ୍କୁ ଦାନ କରିବାକୁ ଅଭିଳାଷ କଲେ । ୨୦ । ହେ ପାର୍ଥ ! ଏକଦିନ ଅପରିମିତ ବିକ୍ରମଶାଳୀ ସେହି ରାଜା ପର୍ବତରେ ଓ ଉପବନମାନଙ୍କରେ, ମୃଗୟାଚରଣ କରିବାକୁ ଗଲେ । ୨୧ । ହେ କୌନ୍ତେୟ ! ମୃଗୟାର୍ଥୀ ସେହି ରାଜାଙ୍କର ଅପ୍ରତିମହୟ କ୍ଷୁଧା ଓ ପିପାସା ସମନ୍ୱିତ ହୋଇ ଗିରି ଉପରେ ପ୍ରାଣତ୍ୟାଗ କଲା । ୨୨ । ହେ ପାର୍ଥ ! ଅଶ୍ୱ ମୃତ ହେବାରୁ ସେ ନୃପ, ପାଦଗାମୀ ହୋଇ ଗିରି ଉପରେ ଗମନ କରୁଁ କରୁଁ ଆୟତ ଲୋଚନା ଓ ଅନୁପମ ରୂପବତୀ ଗୋଟିଏ କନ୍ୟାଙ୍କୁ ଦର୍ଶନ କଲେ । ୨୩ । ପରବଳ-ଦଳନ କାରୀ ନୃପତି ଶାର୍ଦ୍ଦୂଳ ଏକାକୀ, ଏକାକିନୀ ସେହି କନ୍ୟାଙ୍କୁ ଦେଖି ଅବିଚଳେକ୍ଷଣ ହୋଇ ଦଣ୍ଡାୟମାନ ହେଲେ । ୨୪ । ତଦୀୟ ରୂପ ଦେଖି, ପ୍ରଥମେ ନୃପତି ତାହାଙ୍କୁ ଲକ୍ଷ୍ମୀ ବୋଲି ଜ୍ଞାନ କଲେ, ତତ୍ପରେ ତାହାଙ୍କୁ ରବି ଭ୍ରଷ୍ଟ-ପ୍ରଭା ବୋଲି ବିଚାର କଲେ । ୨୫ । ତାହାଙ୍କର ଶରୀର ଓ ତେଜ ବିଭାବସୁଙ୍କର ଶିଖା ସଦୃଶ; ପ୍ରସନ୍ନତା ଓ କାନ୍ତି ତାହାଙ୍କର ବିମଳ ଚନ୍ଦ୍ର-ରେଖା ପ୍ରାୟ । ୨୬ । ଗିରିପୃଷ୍ଠରେ ସେହି ଅସିତଲୋଚନା କନ୍ୟା

ବିଭ୍ରାଜମାନା ହୋଇ ହିରଣ୍ମୟୀ ପ୍ରତିମା ସମାନ ଶୋଭା ପାଉଥିଲେ । ୨୭ । ସେହି କନ୍ୟାର ରୂପରେ ଓ ବେଶରେ ପ୍ରତିଭାସିତ ହୋଇ ବୃକ୍ଷ ଲତା ଗୁଳ୍ମ ସହିତ ସେ ଗିରି ହିରଣ୍ମୟୀ-ଆଭା ଧାରଣ କରିଥିଲା । ୨୮ ।

ରାଜା ସେହି କନ୍ୟାଙ୍କୁ ବିଲୋକନ କରି ଜଗତର ସମୁଦାୟ ସ୍ତ୍ରୀଙ୍କୁ ମନେ ମନେ ଅବଜ୍ଞା କରି ଆପଣାର ଚକ୍ଷୁ ସଫଳ ହୋଇଥିବାର ଜ୍ଞାନ କଲେ । ୨୯ । ଜନ୍ମ ହେବା ଅବଧି ସେ ମହୀପତି ଯେତେ ସୁନ୍ଦର ପଦାର୍ଥ ଦେଖିଥିଲେ କୌଣସି ଦ୍ରବ୍ୟ ଏହି କନ୍ୟା ସଦୃଶ ରମଣୀୟ ନୁହଇ ବୋଲି ମନରେ ବିବେଚନା କଲେ । ୩୦ । ସେହି କନ୍ୟାଦ୍ୱାରା ରାଜାଙ୍କର ମନ ଓ ଚକ୍ଷୁ ବଦ୍ଧ ହେଲା ଓ ତଦୀୟ ଗୁଣମୟ ପାଶରେ ନିବଦ୍ଧ ହେବାରୁ ସେ ସ୍ଥାନରୁ ଟସ ଚଳି ପାରିଲେ ନାହିଁ କି କି ହୋଇଅଛୁ ବୋଲି ବୋଧ କରି ପାରିଲେ ନାହିଁ । ୩୧ । ପୁନର୍ବାର ସେ ମନରେ ଭାବିଲେ ଯେ ସୁର ଅସୁର ଓ ମନୁଷ୍ୟଙ୍କ ସହି ସମସ୍ତ ଲୋକମାନଙ୍କୁ ମନ୍ଥନ କରି ଏହି ବିଶାଳାକ୍ଷୀଙ୍କର ରୂପକୁ ଆବିଷ୍କୃତ କରି ଅଛନ୍ତି, ଏଥିରେ ସନ୍ଦେହ ନାହିଁ । ୩୨ । ତତ୍କାଳରେ ନୃପ ସମ୍ବରଣ ଏହିପରି ତର୍କ କଲେ ଯେ ରୂପ ଦ୍ରବ୍ୟ କି ସମ୍ପଦରେ କେହି ଏ କନ୍ୟାର ସଦୃଶ ତ୍ରିଲୋକରେ କେହି ନାହିଁ । ୩୩ । ସେହି କଲ୍ୟାଣୀଙ୍କୁ ଦର୍ଶନ କରିବା ମାତ୍ର ପବିତ୍ର କୁଳୋଦ୍ଭବ ରାଜା ସମ୍ବରଣ କାମ ବାଣରେ ପୀଡ଼ିତ ହୋଇ ମନୋମଧ୍ୟରେ ଚିନ୍ତା କଲେ । ୩୪ । ମନ୍ମଥର ତୀବ୍ର ଅଗ୍ନିରେ ନୃପତି ଦହ୍ୟମାନ ହୋଇ ସେହି ଅପ୍ରଗଲ୍‌ଭା ଅଥଚ ପ୍ରଗଲ୍‌ଭା ପ୍ରାୟ ସ୍ଥିତା ମନୋହାରିଣୀଙ୍କୁ ବୋଇଲେ— ହେ ରମ୍ଭୋରୁ ! ତୁମ୍ଭେ କିଏ ? କାହାର ଦୁହିତା ? କି ନିମିତ୍ତ ଏଠାରେ ସ୍ଥିତ ହୋଇଅଛ ? ହେ ଶୁଚିସ୍ମିତେ ! ତୁମ୍ଭେ ଏହି ନିର୍ଜ୍ଜନ ବନରେ କି ପ୍ରକାରେ ଏକାକିନୀ ବିଚରଣ କରୁଅଛ ? ।୩୬। ତୁମ୍ଭର ସର୍ବାଙ୍ଗ ଅନବଦ୍ୟ; ତୁମ୍ଭେ ସର୍ବାଭରଣରେ ଭୂଷିତା ଓ ତୁମ୍ଭର ଅଭୀପ୍‌ସିତ ଭୂଷଣମାନଙ୍କର ତୁମ୍ଭେ ସ୍ୱୟଂ ବିଭୂଷଣ ହୋଇଅଛ । ୩୭ ।

ହେ ମତ୍ତକାଶିନୀ ! ତୁମ୍ଭଙ୍କୁ ଦେବ କନ୍ୟା, କି ଅସୁର କନ୍ୟା କି ଯକ୍ଷକନ୍ୟା କି ରାକ୍ଷସୀ କନ୍ୟା, କି ନାଗ କନ୍ୟା, କି ଗନ୍ଧର୍ବ କନ୍ୟା, କି ମନୁଷ୍ୟ କନ୍ୟା ବୋଲି ବୋଧ ହେଉ ନାହିଁ । ୩୮ । ଯେତେ ବରାଙ୍ଗନା-ମାନଙ୍କୁ ଅମ୍ଭେ ଦେଖିଅଛୁଁ, କି ଯାହାଙ୍କ ବୃତ୍ତାନ୍ତ ଶ୍ରବଣ କରିଅଛୁ, ସେମାନେ କେହି ତୁମ୍ଭର ସଦୃଶୀ ନୁହନ୍ତି । ୩୯ । ହେ ଚାରୁବଦନେ !

ଚନ୍ଦ୍ରଙ୍କ ଠାରୁ ଅଧିକ ରମଣୀୟ ତୁମ୍ଭର ବଦନ ଓ ପଦ୍ମପତ୍ର ସଦୃଶ ତୁମ୍ଭର ନେତ୍ରକୁ ଦେଖିବାରୁ ମନ୍ମଥ ଅମ୍ଭର ମନକୁ ଅତିଶୟ ମନ୍ଥନ କରୁଅଛି ।୪୦। ଏହି ପ୍ରକାରେ ମହୀପାଳ ତାହାଙ୍କୁ କହିଲେ; କିନ୍ତୁ ନିର୍ଜନ ଅରଣ୍ୟରେ ସେ କାମ ତ୍ରି-ନରପତିଙ୍କ କନ୍ୟା କୌଣସି ପ୍ରତ୍ୟୁତ୍ତର ଦେଲେ ନାହିଁ ।୪୧। ତପରେ ରାଜା ଏହିପରି କହୁଥାନ୍ତି, ଏମନ୍ତ ସମୟରେ ମେଘରେ ସୌଦାମିନୀ ଲୀନ ହେଲାପ୍ରାୟ ସେହି ଅୟତେକ୍ଷଣା ସେ ସ୍ଥାନରେ ଅନ୍ତର୍ହିତା ହେଲେ ।୪୨। ସେହି ବନଜ ପତ୍ରାକ୍ଷୀଙ୍କୁ ଅନ୍ୱେଷଣ କରିବା ନିମିତ୍ତ ନୃପତି ବନର ସର୍ବତ୍ର ଉନ୍ମତ୍ତ ପ୍ରାୟ ହୋଇ ପରିଭ୍ରମଣ କଲେ ।୪୩। କନ୍ୟାଙ୍କୁ ନ ପାଇ ବହୁତ ବିଳାପ କରି ସେ ପାର୍ଥିବ ନିଶ୍ଚେଷ୍ଟ ହୋଇ ମୁହୂର୍ତ୍ତେ ସେ ସ୍ଥାନରେ ଅବସ୍ଥାନ କଲେ ।୪୪।

---

## ଅଧ୍ୟାୟ—୧୭୨

ଗନ୍ଧର୍ବ ବୋଇଲେ—ଅନନ୍ତର ସେହି ରମଣୀ ଅଦୃଶ୍ୟ ହୁଅନ୍ତେ, ଶତ୍ରୁ-ସଂଘ-ନିପାତନକାରୀ ନୃପତି କାମମୋହିତ ହୋଇ ଧରଣୀ ତଳରେ ନିପତିତ ହେଲେ ।୧। ନୃପତି ଭୂମିରେ ପତିତ ହେଲାରୁ ପୀନାୟତ-ଶ୍ରୋଣୀ ଓ ଶୁଚିହାସିନୀ ତପତୀ ପୁନର୍ବାର ଦର୍ଶନ ଦେଲେ ଓ ମନ୍ଦ ମନ୍ଦ ହାସ୍ୟ କରି କାମାଭିହତଚେତା କୁରୁକୁଳକର ନୃପତିଙ୍କୁ ମଧୁର ବାକ୍ୟରେ ବୋଇଲେ । ହେ ଅରିନ୍ଦମ ନୃପଶାର୍ଦ୍ଦୂଳ । ଉଠ, ଉଠ, ତୁମ୍ଭର ଭଦ୍ର ହେଉ; ତୁମ୍ଭେ କ୍ଷିତିରେ ବିଖ୍ୟାତ, ତୁମ୍ଭର ମୋହପ୍ରାପ୍ତ ହେବା ଉଚିତ ନୁହଇ ।୪। ନୃପତି ତଦ୍ରୂପ ମଧୁର ବାକ୍ୟ ଶ୍ରବଣ କରି ନୟନ ଉନ୍ମୀଳନ କରି ଦେଖିଲେ ଯେ ସେହି ବିପୁଳ ଶ୍ରୋଣୀ ଅଭିମୁଖରେ ସ୍ଥିତ ହୋଇ ଅଛନ୍ତି ।୫। ତଦନନ୍ତର ସେ ପାର୍ଥିବ ମନ୍ମଥାଗ୍ନିରେ ବ୍ୟାକୁଳିତ ହୃଦୟ ହୋଇ ଅସିତାପାଙ୍ଗୀ ସେ ରମଣୀଙ୍କୁ ଅସ୍ପୁଟ ବଚନରେ ବୋଇଲେ ।୬। ହେ ମତ୍ତକାଶିନି । ଅସିତାପାଙ୍ଗି । ଅମ୍ଭେ କାମାର୍ତ୍ତ ହୋଇ ତୁମ୍ଭଙ୍କୁ ଭଜନା କରୁଅଛୁଁ; ପ୍ରାଣମାନେ ଅମ୍ଭଙ୍କୁ ତ୍ୟାଗ କରୁଅଛନ୍ତି, ତୁମ୍ଭେ ସାଧୁରୂପେ ଅମ୍ଭଙ୍କୁ ଭଜନା କର ।୭। ହେ ବିଶାଳାକ୍ଷି । କମଳ ଗର୍ଭର ଆଭାପ୍ରାୟ ତୁମ୍ଭର ଆଭା ଦେଖି ଅମ୍ଭେ ମୁଗ୍‌ଧ ହୋଇଅଛୁଁ ଓ କାମ ଅମ୍ଭଙ୍କୁ ନିଶିତ ଶରଜାଲରେ ପ୍ରତିବିଦ୍ଧ କରୁଅଛି, କ୍ଷାନ୍ତ ହେଉ ନାହିଁ ।୮। ହେ ଭଦ୍ରେ । ପ୍ରଫୁଲ୍ଲିତବେ

ମହାସର୍ପ ସଦୃଶ କାମ ଅମ୍ଭଙ୍କୁ ଦଂଶନ କରୁଅଛି; ହେ ପୃଥୁଲଶ୍ରୋଣି ! ବରାନନେ ! ତୁମ୍ଭେ ଅମ୍ଭଙ୍କୁ ସେ ବିଷଜ୍ୱାଳାରୁ ରକ୍ଷା କର । ୯ । ହେ କମଳାନନେ ! ଚନ୍ଦ୍ରବଦନେ ! ତୁମ୍ଭର ସ୍ୱର କିନ୍ନରଗଣଙ୍କର ସ୍ୱର-ସଦୃଶ; ହେ ଅନବଦ୍ୟାଙ୍ଗି ! ତୁମ୍ଭର ସର୍ବାବୟବ ଅତି ସୁନ୍ଦର ଅଟେ; ଅମ୍ଭର ପ୍ରାଣମାନେ ତୁମ୍ଭର ଅଧୀନ ହୋଇ ଅଛନ୍ତି । ୧୦ ।

ହେ ଭୀରୁ ! ତୁମ୍ଭ ବ୍ୟତିରେକେ ଅମ୍ଭେ ଜୀବନ ଧାରଣ କରିବାକୁ ସମର୍ଥ ହେଉ ନାହୁଁ; ହେ କମଳ ପତ୍ରାକ୍ଷି ! କାମ ଅମ୍ଭଙ୍କୁ ପ୍ରତିବିଦ୍ଧ କରୁ-ଅଛି । ୧୧ । ଅୟି ବିଶାଳାକ୍ଷି ! ଅଙ୍ଗନେ ! ଅମ୍ଭଠାରେ ଅନୁକମ୍ପା ପ୍ରକାଶ କର । ହେ ଅସିତାପାଙ୍ଗି ! ଅମ୍ଭେ ତୁମ୍ଭର ଭକ୍ତ, ଅମ୍ଭଙ୍କୁ ତ୍ୟାଗ କରିବା ତୁମ୍ଭର ବିଧେୟ ନୁହେ । ୧୨ । ହେ ଭାବିନି ! ତୁମ୍ଭେ ପ୍ରୀତିଯୋଗରେ ଅମ୍ଭଙ୍କୁ ପରିତ୍ରାଣ କର, ଯେ ହେତୁରୁ ତୁମ୍ଭର ଦର୍ଶନ-ଜାତ ସ୍ନେହରେ ଅମ୍ଭର ମନଃ ପତିତ ହୋଇ ଅତିଶୟ ବିଚଳିତ ହୋଇଅଛି । ୧୩ । ହେ କଲ୍ୟାଣି ! ତୁମ୍ଭଙ୍କୁ ଦେଖି ଆଉ କୌଣସି ରମଣୀକୁ ଦେଖିବାର ଇଚ୍ଛା ହେଉନାହିଁ । ହେ ଭାବିନି ! ଅମ୍ଭେ ତୁମ୍ଭର ବଶୀଭୂତ ଭକ୍ତ, ତୁମ୍ଭେ ଅମ୍ଭଠାରେ ପ୍ରସନ୍ନ ହୁଅ ଓ ଅମ୍ଭଙ୍କୁ ଭଜନ କର ।୧୪। ଅୟି ବରାରୋହେ ! ବିଶାଳାକ୍ଷି ! ତୁମ୍ଭଙ୍କୁ ଦେଖିବାରୁ ମନ୍ମଥ ଅମ୍ଭର ଅନ୍ତର୍ଗତ ହୋଇ ପତତ୍ରି ସମୂହରେ ବିଦ୍ଧ କରୁଅଛି । ୧୫ । ହେ କମଳଲୋଚନେ ! ମନ୍ମଥ ଅଗ୍ନିରୁ ଉଦ୍ଭୂତ ଏହି ଦାହକୁ ପ୍ରୀତି ଓ ସଂଯୋଗ ରୂପ ଜଳଦ୍ୱାରା ପ୍ରହ୍ଲାଦିତ କର । ୧୬ । ଅୟି ଭାବିନି ! କଲ୍ୟାଣି ! ତୁମ୍ଭଙ୍କୁ ଦର୍ଶନ କରିବାରୁ ପ୍ରଚଣ୍ଡ ଶର ଓ କାର୍ମ୍ମୁକଧାରୀ, ଦୁରାଧର୍ଷ ପୁଷ୍ପାୟୁଧ ଦୁଃସହ ଶର ସମୂହରେ ଅମ୍ଭଙ୍କୁ ବିଦ୍ଧ କରୁଅଛି । ଅତଏବ ତୁମ୍ଭେ ଆତ୍ମ-ଦାନ ଦ୍ୱାରା ତାହାର ଉପଶମ କର । ୧୭ । ହେ ବରାଙ୍ଗନେ ! ଗାନ୍ଧର୍ବ-ବିବାହ ଦ୍ୱାରା ତୁମ୍ଭେ ଅମ୍ଭଙ୍କୁ ପ୍ରାପ୍ତ ହୁଅ; ହେ ରମ୍ଭୋରୁ ! ସର୍ବ ପ୍ରକାର ବିବାହ ମଧ୍ୟରେ ଗାନ୍ଧର୍ବ-ବିବାହ ଶ୍ରେଷ୍ଠ ବୋଲି କଥିତ ଅଛି । ୧୮ ।

ତପତୀ ବୋଇଲେ—ହେ ରାଜନ୍ ! ଅମ୍ଭେ ଆପଣାର ଅଧୀନ ନୋହୁଁ; ଅମ୍ଭେ କନ୍ୟା ଓ ପିତୃମତୀ । ଆପଣଙ୍କର ଯେବେ ଅମ୍ଭଠାରେ ପ୍ରୀତି ଅଛି ତେବେ ଅମ୍ଭର ପିତାଙ୍କ ଠାରେ ଯାଚ୍ଞା କରନ୍ତୁ ।୧୯। ହେ ନରେଶ୍ୱର ! ଆପଣଙ୍କର ମନକୁ ଅମ୍ଭେ ଯେପରି ହରଣ କରିଅଛୁଁ, ତଦ୍‌ବତ୍ ଦର୍ଶନ ମାତ୍ରକେ ଆପଣ ମଧ୍ୟ ଅମ୍ଭ ପ୍ରାଣମାନଙ୍କୁ ଅଧିକ ରୂପେ ହରଣ କରିଅଛନ୍ତି ।୨୦।

ହେ ନୃପତି ସତ୍ତମ ! ଆମ୍ଭେ ଆପଣା ଦେହର ପ୍ରଭୁ ନୋହୁଁ; ସେହି କାରଣରୁ ଆମ୍ଭେ ଆପଣଙ୍କ ସମୀପକୁ ଗମନ କରୁନାହୁଁ; ଯୋଷିତ୍‌ମାନେ ସ୍ୱତନ୍ତ୍ର ନୁହନ୍ତି । ଯେ ସର୍ବ ଲୋକରେ ବିଶ୍ରୁତ, ଯେ ସତ୍କୁଳ ପ୍ରସୂତ ଏପରି ଜନନାଥ ନୃପ ଯେବେ ଅନୁରାଗୀ ହୁଅନ୍ତି ତେବେ ସେ ଭର୍ତ୍ତାଙ୍କୁ କେଉଁ କନ୍ୟା ଅଭିଳାଷନ କରିବେ ? । ୨୨ । ଅତଏବ ଆପଣ ଉପଯୁକ୍ତ ସମୟରେ ଆମ୍ଭର ପିତା ଆଦିତ୍ୟଙ୍କୁ ପ୍ରଣିପାତ, ତପସ୍ୟା ଓ ନିୟମ ଦ୍ୱାରା ଯାଚ୍ଞା କରନ୍ତୁ । ୨୩ । ହେ ରାଜନ୍ ! ଅରିସୂଦନ ! ସେ ଯଦ୍ୟପି ଆମ୍ଭଙ୍କୁ ଦେବାକୁ କାମନା କରିବେ, ତେବେ ଆମ୍ଭେ ଆପଣଙ୍କର ସତତଃ ବଶବର୍ତ୍ତିନୀ ହେବୁ । ୨୪ । ହେ କ୍ଷତ୍ରିୟର୍ଷଭ ! ଆମ୍ଭର ନାମ ତପତୀ, ସାବିତ୍ରୀଙ୍କର ଅବରଜା; ଏହି ଲୋକ-ପ୍ରଦୀପ ସବିତାଙ୍କର ଆମ୍ଭେ ଦୁହିତା ଅଟୁଁ । ୨୫ ।

---

## ଅଧ୍ୟାୟ—୧୭୩

ଗନ୍ଧର୍ବ ବୋଇଲେ—ଏହା କହି ସେ ଅନିନ୍ଦିତା ଲଳନା ସେଠାରୁ ଶୀଘ୍ର ଊର୍ଦ୍ଧ୍ୱକୁ ଗମନ କଲେ ଓ ସେ ରାଜା ପୁନର୍ବାର ସେଠାରେ ଭୂମିରେ ନିପତିତ ହେଲେ । ୧ । ଏଣେ ଅମାତ୍ୟବର୍ଗ ଅନୁଯାୟୀମାନଙ୍କ ଓ ସେନାମାନଙ୍କ ସଙ୍ଗରେ ଯେଉଁ ନୃପୋତ୍ତମ ସେହି ରାଜାଙ୍କୁ ଅନ୍ୱେଷଣ କରି କରି ମହାବନରେ ଦେଖିଲେ ଯେ, ଐରାବତ ହସ୍ତୀପ୍ରାୟ କ୍ଷିତିରେ ନିପତିତ ହୋଇ ଅଛନ୍ତି । ସେ ମହାଧନୁର୍ଦ୍ଧାରୀଙ୍କୁ ଭୂତଳରେ ପତିତ ହେବାର ଦେଖି ସଚିବ ଅଗ୍ନିରେ ପ୍ରଦୀପ୍ତ ହେଲା ପ୍ରାୟ ଦଗ୍ଧ ହେଲେ । ୩ । ତତ୍ପରେ ତ୍ୱରାନ୍ୱିତ ହୋଇ ତାହାଙ୍କ ସମୀପକୁ ଯାଇ ସ୍ନେହବଶତଃ ସସମ୍ଭ୍ରମ ପୂର୍ବକ କାମ ମୋହିତ ସେ ରାଜାଙ୍କୁ ଭୂତଳରୁ ପତିତ-ସୁତକୁ ପିତା ଉଠାଇଲା ପ୍ରାୟ, ଉତ୍ଥାପନ କଲେ । ୪ । ପ୍ରଜ୍ଞାରେ, ବୟସରେ ଓ କୀର୍ତ୍ତିରେ ଓ ନୀତିଶାସ୍ତ୍ରରେ ଅତି ପ୍ରବୀଣ ସେହି ଅମାତ୍ୟ ତାହାଙ୍କୁ ଉଠାଇ ବିଗତ-ଦୁଃଖୀ ହେଲେ, ଓ ମଧୁର ଏବଂ କଲ୍ୟାଣମୟ ବାକ୍ୟରେ ତାହାଙ୍କୁ ବୋଇଲେ—ହେ ମନୁଜଶାର୍ଦ୍ଦୂଳ ! ଅନଘ ! ଭୟ କରନା; ଆପଣଙ୍କର ମଙ୍ଗଳ ହେଉ । ଯେ ସଂଗ୍ରାମ ସ୍ଥଳରେ ଶତ୍ରୁ ସମୂହକୁ ନିପାତିତ କରନ୍ତି, ସେହି ଭୂମିପତିଙ୍କୁ ମହୀତଳରେ ପତିତ ହେବାର ଦେଖି ଅମାତ୍ୟ ବିଚାରିଲେ ଯେ ନରପତି କ୍ଷୁଧା ଓ ପିପାସାରେ ଆକୁଳିତ ହୋଇ ଅଛନ୍ତି । ୭ । ପୁଣ୍ଡରୀକ ସୁଗନ୍ଧି ସୁଶୀତଳ ଜଳରେ ତାହାଙ୍କର ମସ୍ତକକୁ

ଅଭିଷେଚନ କଲେ ଓ ଦାହାପନୋଦନ ନିମିତ୍ତ ଉଶୀର ମୂଳରେ ନିର୍ମିତ ମୁକୁଟକୁ ପିନ୍ଧାଇଲେ । ଦେବା ମାତ୍ର ସେ ମୁକୁଟ ଶୁଷ୍କ ହୋଇଗଲା । ତତ୍ପରେ ବଳବାନ୍ ନରପତି ପ୍ରତ୍ୟାଗତପ୍ରାଣ ହୋଇ ସଚିବଙ୍କୁ ନିକଟରେ ରଖି ଅନ୍ୟ ସମସ୍ତଙ୍କୁ ଓ ସେନାମାନଙ୍କୁ ବିଦାୟ ଦେଲେ । ୯ ।

ରାଜାଙ୍କ ଆଜ୍ଞାରେ ମହଦ୍‌ବଳ ତତ୍‌କ୍ଷଣାତ୍ ପ୍ରସ୍ଥାନ କଲେ । ତଦନନ୍ତର ରାଜା ପୁନର୍ବାର ଗିରିପ୍ରସ୍ଥରେ ଉପବିଷ୍ଟ ହେଲେ । ୧୦ । ଅନନ୍ତର ଅମିତ୍ରବିନାଶକାରୀ ନୃପ ସମ୍ବରଣ ସେହି ଗିରିବରୋପରି ଶୁଚି ଓ କୃତାଞ୍ଜଳି ହୋଇ ସୂର୍ଯ୍ୟଙ୍କ ଆରାଧନା କରିବା ଇଚ୍ଛାରେ ଊର୍ଦ୍ଧ୍ୱମୁଖରେ କ୍ଷିତି ଉପରେ ସ୍ଥିତ ହେଲେ ଓ ମନରେ ପୁରୋହିତ ଋଷିସତ୍ତମ ବଶିଷ୍ଠଙ୍କୁ ଧ୍ୟାନ କଲେ । ୧୨ । ଦିବାରାତ୍ରି ଏକ ସ୍ଥାନରେ ସେହି ଜନାଧିପ ବସି ରହିଲେ, ତହୁଁ ଦ୍ୱାଦଶ ଦିବସରେ ବ୍ରହ୍ମର୍ଷି ସେଠାକୁ ଆଗମନ କଲେ । ୧୩ । ଭାବିତାତ୍ମା ମହର୍ଷି ଦିବ୍ୟଜ୍ଞାନ ଦ୍ୱାରା ଜାଣି ପାରିଲେ ଯେ ରାଜାଙ୍କ ମାନସକୁ ତପତୀ ହରଣ କରିଅଛନ୍ତି; ତହୁଁ ସେ ଧର୍ମାତ୍ମା ମୁନିସତ୍ତମ ନରପତିଙ୍କ କାର୍ଯ୍ୟ ସିଦ୍ଧି ନିମିତ୍ତ ତାହାଙ୍କୁ ଆଶ୍ୱାସ ସମ୍ଭାଷଣ କଲେ । ୧୪ ।

ମନୁଜେନ୍ଦ୍ରଙ୍କ ସମକ୍ଷରେ ଭାସ୍କରଙ୍କ ସମାନ ଦ୍ୟୁତିବିଶିଷ୍ଟ ଭଗବାନ ଋଷି ବଶିଷ୍ଠ ଭାସ୍କରଙ୍କ ଦର୍ଶନ କରିବା ନିମିତ୍ତ ଊର୍ଦ୍ଧ୍ୱକୁ ଆକ୍ରମଣ କଲେ । ୧୬ । ତତ୍ପରେ ସେ ବିପ୍ର କୃତାଞ୍ଜଳି ପୂର୍ବକ ସହସ୍ରାଂଶୁଙ୍କଠାରେ ଉପସ୍ଥିତ ହୋଇ ପ୍ରୀତିସହି ନିବେଦନ କଲେ, "ଆମ୍ଭେ ବଶିଷ୍ଠ, ଆଗମନ କରିଅଛୁଁ" । ୧୭ ।

ମହାତେଜା ବିବସ୍ୱାନ୍ ମୁନିସତ୍ତମଙ୍କୁ ବୋଇଲେ, "ମହର୍ଷେ ! ଆପଣଙ୍କର ଶୁଭାଗମନ ହେତୁ, ଯାହା ଈପ୍‌ସିତ ତାହା କହନ୍ତୁ, ହେ ବକ୍ତୃବର ! ମହାଭାଗ ! ଅମ୍ଭଠାରୁ ଯାହା ଇଚ୍ଛା କରନ୍ତି, ତାହା ସୁଦୁଷ୍କର ହେଲେହେଁ ଆମ୍ଭେ ଆପଣଙ୍କୁ ତାହା ପ୍ରଦାନ କରିବୁଁ" । ୧୯ । ମହାତପା ଋଷି ବଶିଷ୍ଠ ସେ ବଚନ ଶ୍ରବଣ କରି ଭାନୁମାନ୍ ବିବସ୍ୱାନଙ୍କୁ ପ୍ରଣାମ କରି ପ୍ରତିଭାଷଣ କଲେ । ୨୦ ।

ବଶିଷ୍ଠ ବୋଇଲେ—ହେ ବିଭାବସୋ ! ସାବିତ୍ରୀଙ୍କର ଅବରଜା ତପତୀ ନାମ୍ନୀ ଆପଣଙ୍କର ଯେଉଁ ସୁତା ଅଛନ୍ତି, ତାହାଙ୍କୁ ଆମ୍ଭେ ସମ୍ବରଣଙ୍କ

ନିମିତ୍ତ ବରଣ କରୁଅଛୁଁ । ୨୧ । ସେ ରାଜା ବୃହତ୍କୀର୍ତ୍ତି, ଧର୍ମାର୍ଥ-ବେତ୍ତା ଓ ଉଦାରବୁଦ୍ଧି ଅଟନ୍ତି । ହେ ବିହଙ୍ଗମ । ତୁମ୍ଭ ଦୁହିତାଙ୍କର ସମ୍ବରଣ ଉପଯୁକ୍ତ ଭର୍ତ୍ତା ଅଟନ୍ତି ।୨୨। ଏହା ଶୁଣି ଦିବାକର ସେ ବିପ୍ରଙ୍କୁ ପ୍ରୀତି ପୂର୍ବକ ବୋଇଲେ"ଅମ୍ଭେ ଦାନ କରୁଅଛୁଁ, ଏହା ନିଶ୍ଚିତ" । ୨୩ । ହେ ମୁନେ ! ରାଜାମାନଙ୍କ ମଧ୍ୟରେ ସମ୍ବରଣ ଶ୍ରେଷ୍ଠ, ଋଷିମାନଙ୍କ ମଧ୍ୟରେ ଆପଣ ଶ୍ରେଷ୍ଠ ଓ ନାରୀଙ୍କ ମଧ୍ୟରେ ତପତୀ ଶ୍ରେଷ୍ଠା; ଏଥିରେ ଅଉ କି ପ୍ରତିବନ୍ଧକ ଅଛି ? । ୨୪ । ତଦନନ୍ତର ସ୍ୱୟଂ ତପନ ସର୍ବାନବଦ୍ୟାଙ୍ଗୀ ତପତୀଙ୍କୁ ସମ୍ବରଣଙ୍କ ନିମିତ୍ତ ମହାତ୍ମା ବଶିଷ୍ଠଙ୍କୁ ପ୍ରଦାନ କଲେ । ୨୫ । ବଶିଷ୍ଠ ବିଦାୟ ହୋଇ ଆସି ଯେଉଁଠାରେ ବିଖ୍ୟାତ କୀର୍ତ୍ତି କୁରୁଶ୍ରେଷ୍ଠ ନରପତି ଥିଲେ, ସେହିଠାରେ ଉପସ୍ଥିତ ହେଲେ । ୨୬ ।

ତପତୀ-ଗତ-ଚିତ୍ତ ଓ ମନ୍ମଥାବିଷ୍ଟ ରାଜା ସେହି ଗୃହବାସିନୀ ଦେବକନ୍ୟା ତପତୀଙ୍କୁ ବଶିଷ୍ଠଙ୍କ ସହିତ ଆସିବାର ଦେଖି ଅତିଶୟ ହୃଷ୍ଟ ହେଲେ । ୨୭ । ସୌଦାମିନୀ ବିଭ୍ରଷ୍ଟା ହୋଇ ଯେପରି ଦିଗମାନଙ୍କୁ ଦ୍ୟୋତିତ କରେ, ତଦ୍ରୂପ ଆକାଶରୁ ଅବତରଣ କଲାବେଳେ ସେ ସୁଭ୍ରୂ ଅତିଶୟ କାନ୍ତିମତୀ ଦିଶିଲେ । ୨୮ । ରାଜାଙ୍କର ଅତି କଷ୍ଟ-ସାଧ୍ୟ ଦ୍ୱାଦଶ-ବର୍ଷ ବ୍ରତ ସମାପନ ହୁଅନ୍ତେ ବିଶୁଦ୍ଧାନ୍ତଃକରଣ ଭଗବାନ୍ ଋଷି ବଶିଷ୍ଠ ସେଠାକୁ ଆଗମନ କଲେ । ୨୯ । ସମ୍ବରଣ ତପସ୍ୟା ଦ୍ୱାରା ବରଦ ସୂର୍ଯ୍ୟଦେବଙ୍କୁ ଆରାଧନା କରି ବଶିଷ୍ଠଙ୍କ ତେଜଃ ପ୍ରଭାବରୁ ଭାର୍ଯ୍ୟାଙ୍କୁ ଲାଭ କଲେ । ୩୦ । ତଦନନ୍ତର ଦେବଗନ୍ଧର୍ବ ସେବିତ ସେହି ଗିରିଶ୍ରେଷ୍ଠ ଉପରେ ସେ ନରଶ୍ରେଷ୍ଠ ବିଧିପୂର୍ବକ ତପତୀଙ୍କର ପାଣିଗ୍ରହଣ କଲେ । ୩୧ । ସେହି ଧରାଧର ଉପରେ ଭାର୍ଯ୍ୟାଙ୍କ ସହିତ ବିହାର କରିବାକୁ ରାଜର୍ଷି ଅଭିଳାଷ କରିବାରୁ ବଶିଷ୍ଠ ତାହାଙ୍କୁ ଅନୁଜ୍ଞା ଦେଲେ ।୩୨। ତତ୍ପରେ ସେ ମହୀପାଳ ଆପଣାର ପାର୍ଶ୍ୱବର୍ତ୍ତୀ ସଚିବଙ୍କୁ ପୁର, ରାଷ୍ଟ୍ର, ବାହନ ଓ ବଳ ସମୁଦାୟ ରକ୍ଷା କରିବାକୁ ଆଦେଶ ଦେଲେ । ୩୩ । ଅନନ୍ତର ରାଜାଙ୍କୁ କହି ବଶିଷ୍ଠ ସ୍ୱସ୍ଥାନକୁ ଗମନ କଲେ ଓ ଅମର ପ୍ରାୟ ରାଜା . ସେ ଗିରିରେ ବିହାର କଲେ । ୩୪ । ତତ୍ପରେ ସେ ରାଜା ତଦ୍ରୂପ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ସେହି କାନନରେ ଓ ବନରେ ଭାର୍ଯ୍ୟାଙ୍କ ସହିତ କ୍ରୀଡ଼ା କଲେ । ୩୫ । ହେ ସତ୍ତମ ! ଭାରତ । ସେହି ରାଜାଙ୍କର ନଗରରେ କି ଦେଶରେ ସହସ୍ରାକ୍ଷ ସେ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ବୃଷ୍ଟି କଲେ ନାହିଁ । ୩୬ ।

ହେ ଅରିନ୍ଦମ ! ଅନାବୃଷ୍ଟି ହେତୁରୁ ପ୍ରଜାମାନେ ଓ ସ୍ଥାବର ଜଙ୍ଗମ ସମସ୍ତେ କ୍ଷୟ ପ୍ରାପ୍ତ ହେଲେ । ୩୭ । ସେହି କାଳ ଏପରି ସୁଦାରୁଣ ହେଲା ଯେ ପୃଥିବୀରେ ନୀହାର ପତନ ସୁଦ୍ଧା ହେଲା ନାହିଁ । ଏଥିରେ ଶସ୍ୟମାନେ ଉଠିଲେ ନାହିଁ ।୩୮ । ତହିଁରେ ଜନମାନେ ବିଭ୍ରାନ୍ତ ହେଲେ, କ୍ଷୁଧା ଓ ପିପସାରେ ପୀଡ଼ିତ ହେଲେ ଓ ଗୃହମାନଙ୍କୁ ପରିତ୍ୟାଗ କରି ସ୍ଥାନେ ସ୍ଥାନେ ଭ୍ରମଣ କଲେ । ୩୯ । ରାଜ୍ୟ ଓ ରାଜଧାନୀ ସ୍ଥିତ ଜନମାନେ ନିରନ୍ତର କ୍ଷୁଧାର୍ତ୍ତ ହେବାରୁ ପରସ୍ପର ମର୍ଯ୍ୟାଦାଶୂନ୍ୟ ହୋଇ ସ୍ତ୍ରୀ ପୁତ୍ର ପ୍ରଭୃତି ପରିଜନବର୍ଗଙ୍କୁ ପରିତ୍ୟାଗ କରି ସ୍ଥାନେ ସ୍ଥାନେ ଭ୍ରମଣ କଲେ ।୩୯। ରାଜ୍ୟ ଓ ରାଜଧାନୀ ସ୍ଥିତ ଜନମାନେ ନିରନ୍ତର କ୍ଷୁଧାର୍ତ୍ତ ହେବାରୁ ପରସ୍ପର ମର୍ଯ୍ୟାଦାଶୂନ୍ୟ ହୋଇ ସ୍ତ୍ରୀ ପୁତ୍ର ପ୍ରଭୃତି ପରିଜନ ବର୍ଗଙ୍କୁ ପରିତ୍ୟାଗ କରିବାକୁ ଆରମ୍ଭ କଲେ । ୪୦ । ନିରାହାର, କ୍ଷୁଧାର୍ତ୍ତ ଓ ମୃତକଳ୍ପ ଜନମାନଙ୍କ ଦ୍ୱାରା ସେ ଦେଶ ପରିପୂରିତ ହେବାରୁ ପ୍ରେତବର୍ଗ ପରିବୃତ ପ୍ରେତରାଜପୁର ପ୍ରାୟ ପ୍ରତୀୟମାନ ହେଲା । ୪୧ । ହେ ରାଜନ ! ମୁନି ସତ୍ତମ ଧର୍ମାତ୍ମା ଭଗବାନ୍ ବଶିଷ୍ଠ ସେହି ରାଜ୍ୟର ତାଦୃଶ ଦୁରବସ୍ଥାପନ୍ନ ଦେଖି, ତାହାର ପ୍ରତୀକାର ଚେଷ୍ଟାରେ ମନୋଯୋଗୀ ହେଲେ ଓ ବହୁକାଳରୁ ପ୍ରୋଷିତ ସେହି ପାର୍ଥିବଶାର୍ଦ୍ଦୂଳ ଓ ତାହାଙ୍କର ପତ୍ନୀ ତପତୀଙ୍କୁ ସେ ନଗରକୁ ଆନୟନ କଲେ । ୪୩ । ସେ ନୃପଶାର୍ଦ୍ଦୂଳ ନଗରରେ ପୁନଃ ପ୍ରବିଷ୍ଟ ହେଲାରୁ ପୂର୍ବ ପ୍ରାୟ ପ୍ରଭୁ ଇନ୍ଦ୍ର ବୃଷ୍ଟି କଲେ ଓ ଶସ୍ୟମାନଙ୍କୁ ଜାତ କରାଇଲେ । ୪୫ । ବଳବତେନ୍ଦ୍ରିୟ ପାର୍ଥିବ ମୁଖ୍ୟଙ୍କ ଦ୍ୱାରା ପ୍ରତିପାଳିତ ହୋଇ ରାଜ୍ୟଲୋକେ ଅତିଶୟ ହୃଷ୍ଟ ହେଲେ । ୪୬ । ଅନନ୍ତର ମରୁତ୍ପତି ଯେ ରୂପ ଶଚୀଙ୍କ ସହିତ ଯାଗ କରିଥିଲେ ତଦ୍ରୂପ ଏ ଜନାଧିପ ଆପଣାର ପତ୍ନୀ ତପତୀଙ୍କ ସହିତ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଯାଗ କଲେ । ୪୭ ।

ଗନ୍ଧର୍ବ ବୋଇଲେ—ହେ ପାର୍ଥ ! ସେହି ତପତୀ ନାମ୍ନୀ ମହାଭାଗା ତପନ ତନୟାଙ୍କ ବଂଶରେ ଆପଣ ଜନ୍ମ-ପରିଗ୍ରହ କରିଅଛନ୍ତି, ଏହି ନିମିତ୍ତ ଆପଣଙ୍କୁ ତାପତ୍ୟ ବୋଲି ସମ୍ବୋଧନ କଲି । ୪୮ । ହେ ଶତ୍ରୁତାପନ ! ରାଜା ସମ୍ବରଣ ସେହି ତପତୀଙ୍କ ଠାରେ କୁରୁନାମକ ଗୋଟିଏ କୁମାର ଉତ୍ପାଦନ କଲେ; ସେହି ମହାତ୍ମା କୁରୁଙ୍କ ବଂଶରେ ଆପଣମାନଙ୍କର ଜନ୍ମ ହୋଇଥିବାରୁ ଆପଣମାନଙ୍କୁ ତାପତ୍ୟ ବୋଲାଗଲା । ୪୯ ।

## ଅଧ୍ୟାୟ—୧୭୪

ବୈଶମ୍ପାୟନ ବୋଇଲେ—ହେ ଭରତକୁଳ ଭୂଷଣ ! ଏଥିଉତ୍ତାରୁ ଗନ୍ଧର୍ବଙ୍କ ନିକଟରୁ ଅର୍ଜ୍ଜୁନ ସେହି ସବୁ ବୃତ୍ତାନ୍ତ ଶ୍ରବଣ କରି ପରମ ଭକ୍ତି ଭରରେ ଉଲ୍ଲସିତ ହୋଇ ପୂର୍ଣ୍ଣଚନ୍ଦ୍ର ପ୍ରାୟ ଶୋଭାନ୍ୱିତ ହେଲେ । ୦ । ମହାଧନୁର୍ଦ୍ଧାରୀ କୁରୁଶ୍ରେଷ୍ଠ ଅର୍ଜ୍ଜୁନ ମହର୍ଷି ବଶିଷ୍ଠଙ୍କ ତପୋବଳ ଶ୍ରବଣ କରି କୌତୂହଳାକ୍ରାନ୍ତ ହୋଇ ଗନ୍ଧର୍ବଙ୍କୁ ପୁନର୍ବାର କହିଲେ, ହେ ସଖେ ! ତୁମ୍ଭେ ଯେଉଁ ଋଷିଙ୍କର ନାମ କୀର୍ତ୍ତନ କଲ, ଅମ୍ଭେ ତାହାଙ୍କର ବୃତ୍ତାନ୍ତ ଶୁଣିବାକୁ ବାସନା କରୁଅଛୁଁ । ଅନୁଗ୍ରହପୂର୍ବ୍ବକ ବର୍ଣ୍ଣନ କର । ହେ ଗନ୍ଧର୍ବପତେ ! ଯେ ଅସ୍ମମାନଙ୍କର ପୂର୍ବ ପୁରୁଷ ମାନଙ୍କର ପୁରୋହିତ ଥିଲେ ସେହି ଭଗବାନ୍ ଋଷି କିଏ, ତାହା ଆମ୍ଭଙ୍କୁ କହନ୍ତୁ । ୪ ।

ଗନ୍ଧର୍ବ ବୋଇଲେ—ବଶିଷ୍ଠ ଋଷି ବ୍ରହ୍ମାଙ୍କର ମାନସ ପୁତ୍ର, ତାହାଙ୍କର ପତ୍ନୀଙ୍କ ନାମ ଅରୁନ୍ଧତୀ, ଯେଉଁ କାମ ଓ କ୍ରୋଧକୁ ଦେବତାମାନେ ସୁଦ୍ଧା ପରାଜୟ କରି ପାରନାହାନ୍ତି, ସେ ରିପୁମାନେ ଏ ଋଷ ଓ ତଦୀୟା ପତ୍ନୀଙ୍କ ତପୋବଳରେ ପରାଜିତ ହୋଇ ତାହାଙ୍କର ଚରଣ ସମ୍ବାହନ କରନ୍ତି । ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ପାରିଥିବାରୁ ତାହାଙ୍କର ନାମ ବଶିଷ୍ଠ ହୋଇଅଛି । ୬ । ଯେଉଁ ଉଦାରବୁଦ୍ଧି ବିଶ୍ୱାମିତ୍ରଙ୍କ ଅପରାଧରୁ କୁଶିକ ବଂଶର ଉଚ୍ଛେଦ ନ କରି ସେ ମନ୍ୟୁକୁ ଧାରଣକଲେ, ଯେଉଁ ଋଷିପୁତ୍ର-ବ୍ୟସନ * ପ୍ରାପ୍ତ ହୋଇ ଓ ବିଶ୍ୱାମିତ୍ରଙ୍କ ବିନାଶ କରିବାର ସମର୍ଥ ହୋଇ ସୁଦ୍ଧା ସେ ଦାରୁଣ କର୍ମ୍ମ କରିବାରେ ପ୍ରବୃତ୍ତ ହେଲେ ନାହିଁ; ଯେ ମୃତ ପୁତ୍ରମାନଙ୍କୁ ଯମ ସଦନରୁ ପୁନରାୟନ କରିବାକୁ ସମର୍ଥ ହେଲେହେଁ ସମୁଦ୍ର ଯେପରି ବେଳାକୁ ଲଙ୍ଘନ କରେ ନାହିଁ ତଦ୍ରୂପ ସେ ଋଷି, କୃତାନ୍ତଙ୍କର ମର୍ଯ୍ୟାଦାକୁ ଅତିକ୍ରମ ନ କରି ରକ୍ଷା କଲେ । ୯ ।

ଯେଉଁ ବିଜିତାତ୍ମା ଓ ମହାତ୍ମାଙ୍କୁ ପ୍ରାପ୍ତ ହୋଇ ଇକ୍ଷ୍ୱାକୁବଂଶୀୟ ମହୀପାଳମାନେ ଏହି ପୃଥିବୀକୁ ଲାଭ କରିଥିଲେ, ହେ କୁରୁନନ୍ଦନ ! ଯେଉଁ ଋଷିସତ୍ତମ ବଶିଷ୍ଠଙ୍କୁ ପୁରୋହିତ କରି ସେହି ନୃପତିମାନେ ବହୁସଂଖ୍ୟକ ଯଜ୍ଞ ସମାଧନ କରିଥିଲେ, ହେ ପାଣ୍ଡବଶ୍ରେଷ୍ଠ ! ବୃହସ୍ପତି

---

* ଶତପୁତ୍ର ନାଶ ।

ଯେପରି ଦେବତାମାନଙ୍କୁ ଯଜ୍ଞ କରାନ୍ତି ତଦ୍ରୂପ ସେ ଋଷି ସମସ୍ତ ନୃପଶ୍ରେଷ୍ଠ ସତ୍ତମ ମାନଙ୍କର ଯାଜନ କର୍ମ୍ମ ସମ୍ପନ୍ନ କରିଥିଲେ । ୧୨ । ଅତଏବ ଆପଣମାନେ କୌଣସି ଧର୍ମ୍ମାତ୍ମା ଓ ବେଦ ଧର୍ମ୍ମବେତ୍ତା, ଗୁଣବାନ୍ ବ୍ରାହ୍ମଣଙ୍କୁ ପୁରୋହିତ କରିବାକୁ ଅନ୍ୱେଷଣ କରନ୍ତୁ । ୧୩ । ହେ ପାର୍ଥ ! ଯେଉଁ ଅଭିଜାତ * କ୍ଷତ୍ରିୟମାନେ ପୃଥିବୀକୁ ଜୟ କରିବାର ଇଚ୍ଛା କରନ୍ତି ତାହାଙ୍କର ରାଜ୍ୟ ବୃଦ୍ଧି ନିମିତ୍ତ ଅଗ୍ରେ ଗୋଟିଏ ପୁରୋହିତ ନିଯୋଜିତ କରିବା କର୍ତ୍ତବ୍ୟ; ଯେଉଁ ରାଜା ମହୀକୁ ଜୟ କରିବାର ଇଚ୍ଛା କରନ୍ତି, ତାହାଙ୍କର ମୂର୍ଦ୍ଧରୁ ବ୍ରହ୍ମକାର୍ଯ୍ୟ କରିବା ବିଧେୟ । ୧୪ । ଅତଏବ ଗୁଣବାନ୍, ଜିତେନ୍ଦ୍ରିୟ, ବିଦ୍ୱାନ୍ ଓ ଧର୍ମ୍ମକାମାର୍ଥବେତ୍ତା କୌଣସି ବ୍ରାହ୍ମଣଙ୍କୁ ପୁରୋହିତ ନିଯୋଜିତ କରନ୍ତୁ । ୧୫ ।

---

## ଅଧ୍ୟାୟ—୨୭୪

ଅର୍ଜ୍ଜୁନ ବୋଇଲେ—ବିଶ୍ୱାମିତ୍ର ଓ ବଶିଷ୍ଠ ଦୁହେଁ ତ ନିଜ ନିଜ ଦିବ୍ୟ ଆଶ୍ରମରେ ବାସ କରିଥିଲେ, ସେମାନଙ୍କ ମଧ୍ୟରେ କି କାରଣରୁ ବୈରିତା ହେଲା, ସେ ସମୁଦାୟ ଆମ୍ଭଠାରେ ବ୍ୟକ୍ତ କର । ୧ ।

ଗନ୍ଧର୍ବ ବୋଇଲେ—ହେ ପାର୍ଥ ! ଏହି ବଶିଷ୍ଠଙ୍କର ଉପାଖ୍ୟାନ ସର୍ବଲୋକରେ ପୁରାଣ ବୋଲି କଥିତ ଅଛି; ଆମ୍ଭେ ତାହାଙ୍କ ଯଥାବତ୍ ବର୍ଣ୍ଣନ କରୁଅଛୁଁ, ଶ୍ରବଣ କର । ୨ ।

ହେ ଭରତର୍ଷଭ ! କାନ୍ୟକୁବ୍ଜ ଦେଶରେ ଗାଧି ନାମରେ ବିଖ୍ୟାତ କୁଶିକ ତନୟ ଗୋଟିଏ ମହାରାଜା ଥିଲେ । ସେହି ଧର୍ମାତ୍ମାଙ୍କର ବିଶ୍ୱାମିତ୍ର ନାମକ ପୁତ୍ର ରିପୁ-ମର୍ଦ୍ଦନ ଭାରି ଓ ସମୃଦ୍ଧ ସେନା ଓ ବାହନ ସମ୍ପନ୍ନ ଥିଲେ । ୪ । ସେ ଏକଦା ଅମାତ୍ୟଗଣଙ୍କ ସହିତ ଗହନ ବନରେ ଓ ମରୁଭୂମିରେ ମୃଗ ଓ ବରାହମାନଙ୍କୁ ବଧ କରି ଭ୍ରମଣ କଲେ । ୫ । ହେ ନରଶ୍ରେଷ୍ଠ ! ବିଶ୍ୱାମିତ୍ର ବ୍ୟାୟାମରେ ଓ ମୃଗୟାରେ କ୍ଳାନ୍ତ ଓ ପିପାସିତ ହୋଇ ବଶିଷ୍ଠଙ୍କ ଆଶ୍ରମରେ ଉପାଗତ ହେଲେ । ୬ । ଋଷିଶ୍ରେଷ୍ଠ

---

* ଅଭିଜାତ—ସତ୍‌କୁଳ ପ୍ରସୂତ ।

ବଶିଷ୍ଠ, ନରଶ୍ରେଷ୍ଠ ବିଶ୍ୱାମିତ୍ରଙ୍କୁ ଅଭ୍ୟାଗତ ଦେଖି ଅତିଥି ସତ୍କାର ନିମିତ୍ତ ଅଭ୍ୟର୍ଥନା କଲେ । ୭ । ହେ ଭରତ । ସେହି ଋଷି ସ୍ୱାଗତ କଲ୍ୟାଣ-ପୂର୍ବକ, ପାଦ୍ୟ, ଅର୍ଘ୍ୟ, ଆଚମନୀୟ ବନ୍ୟ ଫଳ ମୂଳ ଓ ପୁରୋଡ଼ାଶ ପ୍ରଭୃତି ବିବିଧ ଖାଦ୍ୟ ସାମଗ୍ରୀ ପ୍ରଦାନ କରି ତାହାଙ୍କର ଆତିଥ୍ୟ ସତ୍କାର ସମ୍ପନ୍ନ କଲେ । ୮ । ହେ ଅର୍ଜ୍ଜୁନ । ମହାତ୍ମା ବଶିଷ୍ଠଙ୍କର ଗୋଟିଏ କାମଧେନୁ ଥିଲେ, ଋଷି ତାହାଙ୍କୁ ଯେତେବେଳେ ଯେଉଁ କାମ୍ୟଦ୍ରବ୍ୟ ଦେବାକୁ ଅନୁଜ୍ଞା କରନ୍ତି ତାହା ସେ ତତ୍‌କ୍ଷଣାତ୍ ପ୍ରଦାନ କରନ୍ତି । ୯ । ହେ ଅର୍ଜ୍ଜୁନ । ସେ ଦିନ ବଶିଷ୍ଠଙ୍କ କାମନାନୁସାରେ ସେହି କାମ-ଧେନୁଙ୍କୁ ଦୋହନ କରି ଗ୍ରାମ୍ୟ ଓ ବନ୍ୟ ନାନାପ୍ରକାର ଔଷଧି ଓ ଦୁଗ୍ଧ ଓ ଅମୃତନିଭ ଷଡ୍‌ରସ, ଅତି ଉତ୍ତମ ରସାୟନ, ଅଥଚ ଭୋଜନୀୟ ବିବିଧ ପ୍ରକାର ସୁସ୍ୱାଦୁ ଭକ୍ଷ୍ୟ, ପେୟ, ଚର୍ବ୍ୟ, ଚୋଷ୍ୟ ଓ ଲେହ୍ୟ ଅପିଚ ରତ୍ନ ଓ ମହାର୍ହ ବିବିଧ ପ୍ରକାର ବସନମାନଙ୍କୁ ପ୍ରାପ୍ତହୋଇ ସେହି ସର୍ବ ସମ୍ପୂର୍ଣ୍ଣ କାମ୍ୟ ଦ୍ରବ୍ୟଦ୍ୱାରା ମହୀପତିଙ୍କର ଓ ତଦୀୟ ଅମାତ୍ୟବର୍ଗ ସେନାଗଣଙ୍କର ସତ୍କାର କଲେ ଓ ସେମାନଙ୍କୁ ସନ୍ତୁଷ୍ଟ କଲେ । ୧୨ ।

ହେ ରାଜନ୍ । ଗାଧି-ନନ୍ଦନ 'ନନ୍ଦିନୀ' ନାମ୍ନୀ କାମଧେନୁଙ୍କୁ ଦେଖି ବିସ୍ମୟାପନ୍ନ ହେଲେ; ତାହାଙ୍କର ଚେନ ଅତି ମନୋରମ ଶିର, ଗ୍ରୀବା, ଉରୁ, ଗଳାର କମ୍ବଳ, ପୁଚ୍ଛ ଓ ସ୍ତନ ଚତୁଷ୍ଟୟ ଏହି ଛଅସ୍ଥାନ ଉନ୍ନତ; ପାର୍ଶ୍ୱ ଓ ଉରୁମାନେ ସୁନ୍ଦର; ଲଲାଟ, ଦୁଇ ନୟନ ଓ ଦୁଇ କର୍ଣ୍ଣ ଏହି ପଞ୍ଚ ପୃଥୁଳ; ତଦୀୟ ନେତ୍ର ମଣ୍ଡୂକର ନେତ୍ର ପ୍ରାୟ ସୁଗଠିତ, ପଦ୍ମା ପୀନ, ପୁଚ୍ଛ ସୁନ୍ଦର, କର୍ଣ୍ଣଦ୍ୱୟ ଶଙ୍କୁ ସଦୃଶ ତୀକ୍ଷ୍ଣାଗ୍ର । ୧୫ । ରାଜା ଅତିଶୟ ତୁଷ୍ଟ ହୋଇ ଋଷିଙ୍କୁ ବୋଇଲେ, ହେ ବ୍ରହ୍ମନ୍ । ମହାମୁନେ । ଆପଣ ଅର୍ବୁଦେ ଧେନୁ ନେଇ ଅଥବା ଆମ୍ଭ ରାଜ୍ୟ ନେଇ ନନ୍ଦିନୀଙ୍କୁ ପ୍ରଦାନ କରନ୍ତୁ ଓ ରାଜ୍ୟ ଭୋଗ କରନ୍ତୁ । ୧୬ ।

ବଶିଷ୍ଠ ବୋଇଲେ—ହେ ଅନଘ । ଦେବତା, ଅତିଥି ଓ ପିତୃଗଣଙ୍କ ନିମିତ୍ତ ଓ ଯାଗ ନିମିତ୍ତ ଆମ୍ଭେ ଏହି ପୟସ୍ୱିନୀ ନନ୍ଦିନୀଙ୍କୁ ରଖିଅଛୁଁ, ତୁମ୍ଭର ରାଜ୍ୟ ଗ୍ରହଣ କରି ସୁଦ୍ଧା ଏହାଙ୍କୁ ପ୍ରଦାନ କରିପାରିବୁ ନାହିଁ । ୧୭ ।

ବିଶ୍ୱାମିତ୍ର ବୋଇଲେ—ଅମ୍ଭେ କ୍ଷତ୍ରିୟ, ତୁମ୍ଭେ ତପସ୍ୱୀ ଓ ବେଦାଧ୍ୟାୟୀ ବ୍ରାହ୍ମଣ; ପ୍ରଶାନ୍ତ ଓ ଧୃତାତ୍ମା ବ୍ରାହ୍ମଣଙ୍କ ଠାରେ ପରାକ୍ରମ ନାହିଁ; ଯଦି ତୁମ୍ଭେ ଅର୍ବୁଦେ ଗୌ ଗ୍ରହଣ କରି ଆମ୍ଭର ଅଭୀପ୍ସିତ ଏହି ନନ୍ଦିନୀଙ୍କୁ ନ ଦିଅନ୍ତ, ତେବେ ଅମ୍ଭେ ସ୍ୱଧର୍ମ୍ମ ପରିତ୍ୟାଗ କରିବୁ ନାହିଁ; ଧେନୁଙ୍କୁ ବଳପୂର୍ବକ ନେଇଯିବୁଁ । ୨୦ ।

ବଶିଷ୍ଠ ବୋଇଲେ—ତୁମ୍ଭେ ବଳସ୍ଥ ଓ ରାଜା ଅଟ; କ୍ଷତ୍ରିୟଙ୍କର ବାହୁବଳ ପ୍ରଧାନ । ଅତଏବ ତୁମ୍ଭର ଯାହା ଇଚ୍ଛା ତାହା ଶୀଘ୍ର ସମ୍ପନ୍ନ କର; ବିଚାର କରନା । ୨୧ ।

ଗନ୍ଧର୍ବ ବୋଇଲେ—ହେ ପାର୍ଥ ! ତାହା ଶୁଣି ବିଶ୍ୱାମିତ୍ର ବଳପୂର୍ବକ ଚନ୍ଦ୍ର ଓ ସୂର୍ଯ୍ୟ ସଦୃଶୀ ନନ୍ଦିନୀଙ୍କୁ କଶାଦଣ୍ଡରେ ବ୍ୟଥିତ କରି ଓ ଇତସ୍ତତଃ ପ୍ରତାଡ଼ିତ କରି ହରଣ କରିବାକୁ ଉଦ୍ୟତ ହେଲେ । ୨୨ । ହେ ପାର୍ଥ । କଲ୍ୟାଣୀ ନନ୍ଦିନୀ ହମ୍ବାରବ କରି ବଶିଷ୍ଠଙ୍କ ଅଭିମୁଖକୁ ଆଗମନ ପୂର୍ବକ ସେ ଭଗବାନଙ୍କ ମୁଖକୁ ଚାହିଁ ସ୍ଥିତ ହେଲେ । ୨୩ । ପୁନଃ ପୁନଃ ପ୍ରତାଡ଼ିତ ହେଲେହେଁ ସେ ଆଶ୍ରମକୁ ପରିତ୍ୟାଗ କଲେ ନାହିଁ ।

ବଶିଷ୍ଠ ବୋଇଲେ—ହେ ଭଦ୍ରେ । ଅମ୍ଭେ ତୁମ୍ଭର ରବ ଶ୍ରବଣ କରୁଅଛୁଁ, ତୁମ୍ଭେ ବାରମ୍ବାର ନାଦ କରୁଅଛ; ହେ ନନ୍ଦିନୀ ! ବିଶ୍ୱାମିତ୍ର ତୁମ୍ଭଙ୍କୁ ବଳପୂର୍ବକ ହରଣ କରୁଅଛନ୍ତି; ଅମ୍ଭେ କ୍ଷମାଶୀଳ ବ୍ରାହ୍ମଣ, କି କରିପାରୁ ? । ୨୫ ।

ଗନ୍ଧର୍ବ ବୋଇଲେ—ହେ ଭରତର୍ଷଭ । ସେହି ସେନାମାନଙ୍କର ଓ ବିଶ୍ୱାମିତ୍ରଙ୍କ ଭୟରୁ ଉଦ୍‌ବିଗ୍ନା ହୋଇ ନନ୍ଦିନୀ ଯାଇ ବଶିଷ୍ଠଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ୨୬ ।

ନନ୍ଦିନୀ ବୋଇଲେ—ହେ ଭଗବନ୍ । ଅମ୍ଭେ ବିଶ୍ୱାମିତ୍ରଙ୍କର ଭୀଷଣ ସୈନ୍ୟମାନଙ୍କ କଶାଘାତରେ ଆହତା ହୋଇ ଅନାଥା ପ୍ରାୟ ରୋଦନ କରୁଅଛୁଁ । ଆପଣ ଏହା ଦେଖି ସୁଦ୍ଧା କି କାରଣରୁ ଉପେକ୍ଷା କରୁଅଛନ୍ତି ? । ୨୭ ।

ଗନ୍ଧର୍ବ ବୋଇଲେ—ନନ୍ଦିନୀ ଅଭିଭୂତା ହୋଇ ବାରମ୍ବାର ଏହିରୂପ କ୍ରନ୍ଦନ କଲେହେଁ, ଧୃତବ୍ରତ ମହାମୁନି ଧୈର୍ଯ୍ୟରୁ ବିଚଳିତ ହେଲେ ନାହିଁ । ୨୮ ।

ବଶିଷ୍ଠ ବୋଇଲେ—କ୍ଷତ୍ରିୟମାନଙ୍କର ବଳ ତେଜଃ, ବ୍ରାହ୍ମଣଙ୍କର ବଳ କ୍ଷମା; ଅତଏବ କ୍ଷମା ଆମ୍ଭଙ୍କୁ ଭଜନା କରୁଅଛି; ତୁମ୍ଭର ଯେବେ ରୁଚି ହୁଏ ତେବେ ଗମନ କର । ୨୯ ।

ନନ୍ଦିନୀ ବୋଇଲେ—ହେ ଭଗବାନ୍ ! ଆପଣ କି ଆମ୍ଭଙ୍କୁ ପରିତ୍ୟାଗ କଲ ? ତାହା ନ ହେଲେ ଆପଣ ଏପରି କିପାଇଁ କହନ୍ତେ ? ହେ ବ୍ରହ୍ମନ୍ ! ଆପଣ ତ୍ୟାଗ ନ କଲେ, ଆମ୍ଭଙ୍କୁ କେହି ବଳପୂର୍ବକ ନେଇ ନ ପାରେ ? । ୩୦ ।

ବଶିଷ୍ଠ ବୋଇଲେ—ହେ କଲ୍ୟାଣି ! ଆମ୍ଭେ ତୁମ୍ଭଙ୍କୁ କଦାପି ତ୍ୟାଗ କରୁନାହୁଁ, ଯଦି ତୁମ୍ଭର ଶକ୍ତି ଥାଏ, ତେବେ ରହ । ଏହି କ୍ଷୁଦ୍ରଣୀ, ତୁମ୍ଭର ବତ୍ସକୁ କପରି ଦୃଢ଼ ରଜ୍ଜୁଦ୍ୱାରା ବନ୍ଧନ କରି ବଳପୂର୍ବକ ଘେନିଯାଉଅଛନ୍ତି । ୩୧ ।

ଗନ୍ଧର୍ବ ବୋଇଲେ—ବଶିଷ୍ଠଙ୍କର ପୟସ୍ୱିନୀ 'ରହ' ବୋଲି ବଚନ ଶ୍ରବଣ କରନ୍ତେ, ଶିର ଓ ଗ୍ରୀବାକୁ ଉତ୍ତୋଳନ କରି ରୌଦ୍ରମୂର୍ତ୍ତି ଧାରଣ କଲେ । କ୍ରୋଧରେ ରକ୍ତ ନୟନା ହୋଇ ଘନସ୍ୱନ ପ୍ରାୟ ହମ୍ବାରବ କରି ବିଶ୍ୱାମିତ୍ରଙ୍କର ସେହି ସୈନ୍ୟମାନଙ୍କୁ ସର୍ବତ୍ର ବିଦ୍ରାବିତ କଲେ । ୩୩ । ସୈନ୍ୟମାନଙ୍କର ପୁନଃ ପୁନଃ କଶାଘାତରେ ବ୍ୟଥିତା ଓ ଚତୁର୍ଦ୍ଦିଗରେ ନିରୁଦ୍ଧା ହେବାରୁ ତାହାଙ୍କର କୋପ ଅତିଶୟ ବୃଦ୍ଧିପ୍ରାପ୍ତ ହେଲା । ୩୪ । ତତ୍କାଳୀନ ତାହାଙ୍କର ଶରୀର ପ୍ରଚଣ୍ଡ ଆଦିତ୍ୟଙ୍କର ମଧ୍ୟାହ୍ନକାଳୀନ ତେଜପ୍ରାୟ କ୍ରୋଧରେ ଉଦ୍ଦୀପିତ ହେଲା ଓ ପୁଚ୍ଛରୁ ସେ ମହତ୍ ଅଙ୍ଗାର ବର୍ଷକୁ ମୋଚନ କଲେ । ୩୫ । ସେ ଧେନୁ ପୁଚ୍ଛରୁ ପହ୍ଲବ ମାନଙ୍କୁ, ପ୍ରସ୍ନବରୁ* ଦ୍ରାବିଡ଼ ଓ ଶକମାନଙ୍କୁ, ପ୍ରସବ ଦ୍ୱାରରୁ ଯବନମାନଙ୍କୁ, ବିଷ୍ଠାରୁ ବହୁସଂଖ୍ୟକ ଶବର ଓ କାଞ୍ଚିମାନଙ୍କୁ, ପାର୍ଶ୍ୱଦେଶରୁ ମଧ୍ୟ ଶବର ମାନଙ୍କୁ, ପରନ୍ତୁ ଫେନରୁ ପୌଣ୍ଡ୍ର,

* ପ୍ରସ୍ନବ—ପଣ୍ଡା

କିରାତ, ଯବନ, ସିଂହଳ, ବର୍ବର, ଖଶ, ଶବୁକ, ପୁଳିନ୍ଦ, ଚୀନ, ହୂନ, କେରଳ ଓ ବହୁବିଧ ମ୍ଳେଚ୍ଛମାନଙ୍କୁ ସର୍ଜ୍ଜନା କଲେ । ୩୮ ।

ବହୁବିଧ ପରିଚ୍ଛଦଧାରୀ, ନାନାସ୍ତ୍ରଧାରୀ, ସେହି ସକଳ ସମୁତ୍ପନ୍ନ ମ୍ଳେଚ୍ଛସୈନ୍ୟମାନେ ତତ୍‌କ୍ଷଣାତ୍ ଉତ୍ସାହାନ୍ୱିତ ହୋଇ ବିଶ୍ୱାମିତ୍ରଙ୍କ ସମ୍ମୁଖରେ ଇତସ୍ତତଃ ବିକୀର୍ଣ୍ଣ ଓ ପରିପୂରିତ ହେଲେ । ସେମାନଙ୍କ ମଧ୍ୟରୁ ପଞ୍ଚ ବା ସପ୍ତଜଣ ବିଶ୍ୱାମିତ୍ରଙ୍କର ଜଣି ଜଣି ସୈନ୍ୟପ୍ରତି ଆକ୍ରମଣ କଲେ । ବିଶ୍ୱାମିତ୍ରଙ୍କର ସାକ୍ଷାତରେ ତାହାଙ୍କର ସେନାଗଣ ସେହି ସବୁ ଯବନ-ସୈନ୍ୟଙ୍କ ଅସ୍ତ୍ର ବର୍ଷଣରେ ଅତିଶୟ ଆହତ ହୋଇ ତ୍ରାସରେ ଇତସ୍ତତଃ ପଳାୟନ କଲେ । ୪୧ ।

ହେ ଭରତର୍ଷଭ ! ବଶିଷ୍ଠଙ୍କ ପକ୍ଷୀୟ ସୈନ୍ୟମାନେ ଯୁଦ୍ଧରେ ସମ୍ପୂର୍ଣ୍ଣରୂପେ କ୍ରୁଦ୍ଧ ହେଲେହେଁ, ବିଶ୍ୱାମିତ୍ରଙ୍କର ସେମାନଙ୍କ ମଧ୍ୟରୁ କାହାର ସୁଦ୍ଧା ପ୍ରାଣ ବିନାଶ କଲେ ନାହିଁ । ୪୨ । ବିଶ୍ୱାମିତ୍ରଙ୍କର ସମୁଦାୟ ସୈନ୍ୟ ସେହି ଧେନୁଙ୍କ ଦ୍ୱାରା ନିରାକୃତ ହେବାରୁ ସେମାନେ ତିନି ଯୋଜନ ଦୂରକୁ ପଳାୟନ କଲେ । ୪୩ । ସେମାନେ ଭୟୋଦ୍‌ବିଗ୍ନ ହୋଇ ଚିତ୍କାର କଲେ; କିନ୍ତୁ କେହି ସେମାନଙ୍କୁ ରକ୍ଷା କଲେ ନାହିଁ । ବ୍ରହ୍ମ-ତେଜୋଦ୍ଭବ ସେହି ମହତ୍ ଆଶ୍ଚର୍ଯ୍ୟ ବ୍ୟାପାର ଦର୍ଶନ କରି ବିଶ୍ୱାମିତ୍ର କ୍ଷତ୍ରିୟ ବଳରେ ହତାଶ ହୋଇ ଏହି ବାକ୍ୟ କହିଲେ—କ୍ଷତ୍ରିୟବଳ ରୂପ ବଳକୁ ଧିକ୍, ବ୍ରହ୍ମତେଜୋବଳ ଯେ ପ୍ରକୃତ ବଳ ଅଟେ । ୪୫ । ବଳାବଳ ନିର୍ଣ୍ଣୟ କରିବାର ହେଲେ ତପସ୍ୟାର ବଳ ସବୁଠାରୁ ଶ୍ରେଷ୍ଠ—ଏହା ସ୍ଥିର କରି ସେ ଆପଣାର ସମୃଦ୍ଧିଶାଳୀ ବିସ୍ତୀର୍ଣ୍ଣ ରାଜ୍ୟ ଓ ଦୀପ୍ତ ନୃପଲକ୍ଷ୍ମୀଙ୍କୁ ବିସର୍ଜ୍ଜନ କରି ଭୋଗମାନଙ୍କୁ ପୃଷ୍ଠଦେଇ ତପସ୍ୟାରେ ମନୋନିବେଶ କଲେ । ସେ ତପସ୍ୟାରେ ସିଦ୍ଧିପ୍ରାପ୍ତ ହୋଇ ଓ ତେଜୋଦ୍ୱାରା ଲୋକମାନଙ୍କୁ ବ୍ୟାପିତ ଓ ତାପିତ କରି ବ୍ରାହ୍ମଣତ୍ୱ ପ୍ରାପ୍ତ ହେଲେ । ତଦନନ୍ତର ସେହି କୁଶିକ ନନ୍ଦନ ଇନ୍ଦ୍ରଙ୍କ ସଙ୍ଗରେ ସୁଦ୍ଧା ବସି ସୋମରସ ପାନ କଲେ । ୪୮ ।

---

# ଅଧ୍ୟାୟ—୧୭୬

ଗନ୍ଧର୍ବ କହିଲେ—କଲ୍ମାଷପାଦ ନାମରେ ଇକ୍ଷ୍ୱାକୁ ବଂଶର ଗୋଟିଏ ନରପତି ଥିଲେ । ହେ ପାର୍ଥ ! ତାହାଙ୍କ ସଦୃଶ ତେଜସ୍ୱୀ ଭୂମଣ୍ଡଳରେ କେହି ନ ଥିଲେ । ୧ । ଏକଦା ସେ ରାଜା ନଗରରୁ ବାହାର ବନକୁ ମୃଗୟାର୍ଥ ଗମନ କଲେ; ସେହି ଶତ୍ରୁମର୍ଦ୍ଦନକାରୀ ନରପତି ଅନେକ ମୃଗ ଓ ବରାହମାନଙ୍କୁ ବଧ କରି ବନରେ ଭ୍ରମଣ କଲେ । ୨ । ସେହି ମହାଘୋର ଅରଣ୍ୟରେ ବହୁସଂଖ୍ୟକ ଗଣ୍ଡକ ମାନଙ୍କୁ ହନନ କରି, ଅନେକବେଳଯାଏଁ ଏହିପରି ମୃଗୟା କରିବାରୁ ଶ୍ରାନ୍ତ ହୋଇ ସେହି ବନରୁ ନିବୃତ୍ତ ହେଲେ । ୩ । ପ୍ରତାପବାନ୍ ବିଶ୍ୱାମିତ୍ର ସେହି ରାଜାଙ୍କୁ ଯାଗ କରାଇବାକୁ ପୂର୍ବରୁ ଇଚ୍ଛା କରିଥିଲେ; ସେ ରାଜା କ୍ଷୁଧା ଓ ତୃଷାରେ ଆର୍ତ୍ତ ହୋଇ ମହାତ୍ମା ଋଷିସତ୍ତମ ବଶିଷ୍ଠଙ୍କ ନିକଟକୁ ଗମନ କରୁଥିଲେ; ସେ ପଥ ଅତି ସଂକୀର୍ଣ୍ଣ, ତହିଁରେ ଗୋଟିଏ ମାତ୍ର ମନୁଷ୍ୟ ଗମନ କରିହେବ; ଯୁଦ୍ଧରେ ଅପରାଜିତ ସେହି ରାଜା ବଶିଷ୍ଠ କୁଳବର୍ଦ୍ଧନ 'ଶକ୍ତ୍ରି' ନାମକ ମହାଭାଗ ମୁନିଙ୍କୁ ବିପରୀତ ଦିଗରୁ ଆଗମନ କରିବାର ଦେଖିଲେ; ମହାତ୍ମା ବଶିଷ୍ଠଙ୍କର ଶତ ପୁତ୍ର ମଧ୍ୟରେ 'ଶକ୍ତ୍ରୀ' ଜ୍ୟେଷ୍ଠ । ପାର୍ଥିବ ତାହାଙ୍କୁ କହିଲେ, 'ଆମ୍ଭ ପଥରୁ ଅପଗମନ କର' । ତାହା ଶୁଣି ଋଷି ମଧୁର ବାକ୍ୟରେ ସାନ୍ତ୍ୱନା ପୂର୍ବକ ରାଜାଙ୍କୁ କହିଲେ—"ହେ ମହାରାଜ ! ପନ୍ଥା ଆମ୍ଭର, ଏପରି ସନାତନ ଧର୍ମ୍ମ ଅଛି ।" ସବୁ ଧର୍ମ୍ମରେ ଏପରି ଅଛି ଯେ ବ୍ରାହ୍ମଣଙ୍କୁ ରାଜା ପଥ ଛାଡ଼ି ଦେବେ । ୮ । ଏହି ପ୍ରକାରେ ସେ ଦୁହେଁ ପଥ ନିମିତ୍ତ ପରସ୍ପରରେ ଉକ୍ତି ପ୍ରତ୍ୟୁକ୍ତି କଲେ । ଏ କହିଲେ ଅପସର୍ପଣ କର, ସେ କହିଲେ ଅପସର୍ପଣ କର । ୯ । ଧର୍ମ୍ମ ପଥରେ ସ୍ଥିତ ହୋଇ ଋଷି ପଥଛାଡ଼ି ଦେଲେ ନାହିଁ କି ରାଜା ମୁନିଙ୍କ ମାନନାରୁ ଓ କ୍ରୋଧରୁ ଅଡ଼ ହୋଇ ଗଲେ ନାହିଁ । ୧୦ ।

ଋଷିଙ୍କୁ ପଥ ତ୍ୟାଗ ନ କରିବାର ଦେଖି ସେ ନୃପସତ୍ତମ ତାହାଙ୍କୁ ରାକ୍ଷସ ପ୍ରାପ୍ତ ମୋହ-ବଶ ହୋଇ କଶା ଦ୍ୱାରା ଆଘାତ କଲେ । ୧୧ । ବଶିଷ୍ଠ ପୁତ୍ର ମୁନିସତ୍ତମ, କଶା ପ୍ରହାରରେ ଅଭିହତ ହୋଇ କ୍ରୋଧଜ୍ୱର ଅଜ୍ଞାନ ହେଲେ ଓ ନୃପଶ୍ରେଷ୍ଠଙ୍କୁ ଅଭିଶାପ ଦେଲେ ।୧୨। ରେ "ନୃପାଧମ ! ତୁ ରାକ୍ଷସ ପ୍ରାପ୍ତ ହୋଇ ତପସ୍ୱୀଙ୍କୁ ପ୍ରହାର କରିବାରୁ, ଅଦ୍ୟ ପ୍ରଭୃତି ତୁ ପୁରୁଷାଦ ହେବୁ । ୧୩ । ମନୁଷ୍ୟ ପିଶିତ ଭୋଜନରେ ଆସକ୍ତ ହୋଇ

ଏହି ପୃଥିବୀକୁ ବିଚରଣ କରିବୁ, ରେ ରାଜାଧମ ! ତୁ ଯା !" ତପୋବଳ ସମନ୍ୱିତ ଶକ୍ତ୍ରୀ ଏହା କହି ପଥ ଛାଡ଼ି ଦେଲେ । ୧୪ । ଏଥି ପୂର୍ବରୁ ସେହି କଲ୍ମାଷପାଦ ରାଜାଙ୍କୁ ଯାଗ କରାଇବା ବିଷୟରେ ବଶିଷ୍ଠ ବିଶ୍ୱାମିତ୍ରଙ୍କ ମଧ୍ୟରେ ବିବାଦ ହୋଇଥିଲା । ଏବେ ବଶିଷ୍ଠ ଓ ରାଜାଙ୍କ ମଧ୍ୟରେ ବିରୋଧ ଜାତ ହେବାରୁ ବିଶ୍ୱାମିତ୍ର ଯାଇ ରାଜାଙ୍କଠାରେ ଉପସ୍ଥିତ ହେଲେ । ୧୫ । ହେ ପାର୍ଥ ! ରଜା ଓ ଶକ୍ତ୍ରୀ ଦୁହେଁ ବିବାଦ କରୁଥିଲେ; ଏମନ୍ତ ସମୟରେ ଉଗ୍ରତପା ପ୍ରତାପବାନ୍ ଋଷି ବିଶ୍ୱାମିତ୍ର ତାହାଙ୍କ ସମୀପରେ ଉପସ୍ଥିତ ହେଲେ । ୧୬ ।

ଅନନ୍ତର ନୃପସତ୍ତମ କଲ୍ମାଷପାଦ ଜାଣିଲେ ଯେ ବଶିଷ୍ଠଙ୍କ ତନୟ ଶକ୍ତ୍ରୀ ବଶିଷ୍ଠଙ୍କ ସଦୃଶ ତେଜସ୍ୱୀ ଅଟନ୍ତି ।୧୭। ହେ ଭାରତ ! ବିଶ୍ୱାମିତ୍ର ସ୍ୱୀୟ ଅଭିପ୍ରାୟ ସିଦ୍ଧି କରିବା ନିମିତ୍ତ ଆପଣାକୁ ଅନ୍ତର୍ହିତ କରି ସେ ଦୁହିଁଙ୍କୁ ବଞ୍ଚିତ କଲେ । ୧୮ । ନୃପୋତ୍ତମ କଲ୍ମାଷପାଦ ଶକ୍ତିଙ୍କଠାରୁ ଅଭିଶାପ ପ୍ରାପ୍ତ ହୋଇ ତାହାଙ୍କୁ ପ୍ରସନ୍ନ କରିବା ନିମିତ୍ତ ତାହାଙ୍କର ଶରଣାଗତ ହେଲେ । ୧୯ ।

ହେ କୁରୁସତ୍ତମ ! ବିଶ୍ୱାମିତ୍ର ସେହି ନୃପତିଙ୍କର ଭାବ ବୁଝିପାରି ଗୋଟିଏ ରାକ୍ଷସକୁ ତାହାଙ୍କ ଶରୀରରେ ପ୍ରବେଶ କରିବାକୁ ଆଦେଶ ଦେଲେ । ୨୦ । କିଙ୍କର ନାମକ ରାକ୍ଷସ ସେହି ବିପ୍ରର୍ଷିଙ୍କ ଶାପ ଓ ବିଶ୍ୱାମିତ୍ରଙ୍କ ଆଦେଶାନୁସାରେ ରାଜାଙ୍କ ଶରୀରରେ ପ୍ରବିଷ୍ଟ ହେଲେ । ୨୧। ହେ ଅରିନ୍ଦମ ! ମୁନିଶ୍ରେଷ୍ଠ ବିଶ୍ୱାମିତ୍ର ରାଜାଙ୍କୁ ରାକ୍ଷସାକ୍ରାନ୍ତ ହେବାର ଅବଗତ ହୋଇ ସେ ସ୍ଥାନରୁ ଗୋପନ ଭାବରେ ପ୍ରସ୍ଥାନ କଲେ । ୨୨ । ହେ ପାର୍ଥ ! ତଦନନ୍ତର ସେ ନୃପତିଙ୍କ ଅନ୍ତର୍ଗତରେ ରାକ୍ଷସ ରହିବାରୁ ତାହାଙ୍କର ବଳବତୀ ପୀଡ଼ା ହେଲା ଓ ସେ ଭଲ ମନ୍ଦ କିଛି ବିବେଚନା କରିପାରିଲେ ନାହିଁ । ୨୩ ।

ଦିନେ ସେ ନରପତି ବନରେ ଭ୍ରମଣ କରୁଅଛନ୍ତି, ଏମନ୍ତ ସମୟରେ ଜଣେ କ୍ଷୁଧାକ୍ରାନ୍ତ ବ୍ରାହ୍ମଣ ତାହାଙ୍କୁ ସମାଂସ ଭୋଜନ ପ୍ରାର୍ଥନା କଲେ । ୨୪ । ମିତ୍ର ସହ ରାଜର୍ଷି ସେହି ଦ୍ୱିଜଙ୍କୁ ବୋଇଲେ, ବ୍ରହ୍ମନ୍ ! ଆପଣ ଏଠାରେ ରହନ୍ତୁ; ମୁହୂର୍ତ୍ତେ ପ୍ରତୀକ୍ଷା କରନ୍ତୁ, ଅମ୍ଭେ ଫେରି ଆସିଲେ ଆପଣଙ୍କର ଅଭିପ୍ସିତ ଭୋଜନ ପ୍ରଦାନ କରିବୁଁ; ଏହା କହି ସେ ରାଜା ପ୍ରସ୍ଥାନ

କଲେ ଓ ଦ୍ୱିଜଉତ୍ତମ ସେଠାରେ ରହିଲେ । ୨୬ । ହେ ପାର୍ଥ ! ଅନନ୍ତର ମହାନୁଭବ ମହାରାଜା କଲ୍ମାଷପାଦ ଯଥା ସୁଖରେ ଇଚ୍ଛାନୁରୂପ ଭ୍ରମଣ କରି ଗୃହକୁ ପ୍ରତ୍ୟାଗମନ କଲେ ଓ ଅନ୍ତଃପୁର ମଧ୍ୟରେ ପ୍ରବେଶ କଲେ । ୨୭ । ତତ୍ପରେ ଅର୍ଦ୍ଧରାତ୍ରରେ ଉତ୍ଥାନ କରି ବ୍ରାହ୍ମଣ କଥା ସ୍ମରଣ ହେବାରୁ ରାଜା ସତ୍ୱର ସୂପକାରକୁ ଡକାଇ ବୋଇଲେ—ସେହି ବନ ମଧ୍ୟରେ ଗୋଟିଏ ବ୍ରାହ୍ମଣ ଭୋଜନାର୍ଥୀ ହୋଇ ଅମ୍ଭ ପ୍ରତୀକ୍ଷାରେ ଅଛନ୍ତି, ତୁମ୍ଭେ ଶୀଘ୍ର ସେଠାକୁ ଗମନ କରି ତାହାଙ୍କୁ ସମାଂସ ଅନ୍ନ ପ୍ରଦାନ କରି ଆସ । ୨୮ ।

ଗନ୍ଧର୍ବ ବୋଇଲେ—ସୂପକାର ରାଜାଙ୍କ ଆଦେଶ ପ୍ରମାଣେ ମାଂସ ଅନ୍ୱେଷଣ କଲା ମାତ୍ର କୌଣସିଠାରେ ମାଂସ ନ ପାଇବାରୁ ବ୍ୟଥାନ୍ୱିତ ହୋଇ ରାଜାଙ୍କଠାରେ ନିବେଦନ କଲା । ରାଜା ରାକ୍ଷସାବିଷ୍ଟ ହୋଇଥିବାରୁ ଅବ୍ୟଥିତ ଚିତ୍ତରେ ପୁନଃ ପୁନଃ ସୂପକାରଙ୍କୁ କହିଲେ ଯେ ନରମାଂସ ଦ୍ୱାରା ସେ ବ୍ରାହ୍ମଣଙ୍କୁ ଭୋଜନ କରାଅ । ୩୧ । ସୂତ 'ହେଉ' ବୋଲି କହି ତତ୍କ୍ଷଣାତ୍ ନିର୍ଭୟ ଚିତ୍ତରେ ବଧ୍ୟଘାତମାନଙ୍କ ଗୃହକୁ ଗମନ କରି ନରମାଂସ ଆନୟନ କଲା । ୩୨ । ଅନ୍ନସହିତ ସେ ନରମାଂସକୁ ଯଥା-ବିଧାନରେ ପାକ କରି ଅତି ସତ୍ୱର କ୍ଷୁଧିତ ତପସ୍ୱୀ ବ୍ରାହ୍ମଣଙ୍କ ନିକଟକୁ ଯାଇ ତାହାଙ୍କୁ ପ୍ରଦାନ କଲା । ୩୩ । ଦ୍ୱିଜସତ୍ତମ ସିଦ୍ଧ-ଚକ୍ଷୁଦ୍ୱାରା ସେହି ଅନ୍ନକୁ ଅଭୋଜ୍ୟ ଜାଣି କ୍ରୋଧରେ ଆକୁଳିତ ନେତ୍ର ହେଲେ ।

ବ୍ରାହ୍ମଣ ବୋଇଲେ—ଯେ ହେତୁରୁ ସେହି ନୃପାଧମ ଅମ୍ଭଙ୍କୁ ଏହି ଅଭୋଜ୍ୟ ଅନ୍ନ ଦେଇଅଛି, ଅତଏବ ସେ ମୂଢ଼, ଏହି ଭୋଜ୍ୟରେ ଲୋଲୁପ ହେବ । ମନୁଷ୍ୟ ମାଂସରେ ଆସକ୍ତ ହେବେ ବୋଲି ପୂର୍ବେ ଶକ୍ତ୍ରି ଋଷି ଯେପରି କହିଅଛନ୍ତି ତଦ୍ରୂପ ହେବ; ସର୍ବ ପ୍ରାଣିମାନଙ୍କର ଉଦ୍‌ବେଗକାରୀ ହୋଇ ଏହି ମହୀରେ ପରିଭ୍ରମଣ କରିବ । ୩୬ । ଦୁଇ ଜଣଙ୍କ ଦ୍ୱାରା ବ୍ୟାହୃତ ହେବାରୁ ରାଜାଙ୍କର ସେହି ଶାପ ବଳବାନ୍ ହେଲା; ପୁନଶ୍ଚ ରାକ୍ଷସୀ ବଳରେ ସମାବିଷ୍ଟ ହେବାରୁ ସେ ନୃପତି ହତଜ୍ଞାନ ହେଲେ । ୩୭ । ହେ ଭାରତ ! ତତ୍ପରେ ସେ ନୃପତିଶ୍ରେଷ୍ଠ ରାକ୍ଷସଦ୍ୱାରା ଉପହତେନ୍ଦ୍ରିୟ ହୋଇ ଅଳ୍ପକାଳ ପରେ ଶକ୍ତ୍ରିଙ୍କୁ ଦେଖି ବୋଇଲେ ! ଯେଣୁ ତୁମ୍ଭେ ଅମ୍ଭଙ୍କୁ ଏହି ଅସଦୃଶ ଶାପପ୍ରଦାନ କରିଅଛ, ଅତଏବ ଅଗ୍ରେ ତୁମ୍ଭଠାରୁ ଆରମ୍ଭ କରି ଅମ୍ଭେ ମନୁଷ୍ୟ ମାଂସ ଭକ୍ଷଣ କରିବୁ । ୩୯ ।

ଏହା କହି ସେ ରାଜା ତତ୍‌କ୍ଷଣାତ୍ ଯାଇ ଶକ୍ତିଙ୍କର ପ୍ରାଣ ବିନାଶ କରି ବ୍ୟାଘ୍ର ପଶୁମାନଙ୍କୁ ହିଂସାକଲା ପ୍ରାୟ ତାହାଙ୍କୁ ଭକ୍ଷଣ କଲେ । ୪୦ । ଶକ୍ତିଙ୍କୁ ମୃତ ହେବାର ଦେଖି ବିଶ୍ୱାମିତ୍ର ପୁନଃ ପୁନଃ ସେହି ରାକ୍ଷସକୁ ବଶିଷ୍ଠଙ୍କ ପୁତ୍ରମାନଙ୍କୁ ଭକ୍ଷଣ କରିବା ନିମିତ୍ତ ଆଦେଶ କଲେ । ୪୧ । ସିଂହ ଯେପରି କ୍ଷୁଦ୍ରମୃଗମାନଙ୍କୁ ଭକ୍ଷଣ କରେ ସେ ରାକ୍ଷସ କ୍ରୁଦ୍ଧ ହୋଇ ଶକ୍ତିଙ୍କ ତଳେ ବଶିଷ୍ଠଙ୍କର ଆଉ ଯେତେ ପୁତ୍ର ଥିଲେ ସେମାନଙ୍କୁ ଭକ୍ଷଣ କଲା । ୪୨ । ବିଶ୍ୱାମିତ୍ରଙ୍କ ଦ୍ୱାରା ସେହି ସୁତମାନେ ଘାତିତ ହେବାର ଦେଖି ମହାଦ୍ରି ଯେପରି ମେଦିନୀକୁ ଧାରଣ କରିଥି ତଦ୍‌ବତ୍ ବଶିଷ୍ଠ, ପୁତ୍ରଶୋକକୁ ଧାରଣ କଲେ । ୪୩ । ସେହି ମହାମତି ମୁନି-ସତ୍ତମ ଆତ୍ମବିନାଶ ନିମିତ୍ତ ବୁଦ୍ଧି କଲେ, ତଥାପି କୌଶିକ ବଂଶୋଚ୍ଛେଦ ହେବାର କାମନା କଲେ ନାହିଁ ।୪୪। ଭଗବାନ୍ ଋଷି ମେରୁଶୃଙ୍ଗରୁ ଆପଣାକୁ ନିକ୍ଷେପ କଲେ; କିନ୍ତୁ ସେହି ଗିରିଶିଳାରେ ତୂଳରାଶି ଉପରେ ପତିତ ହେଲା ପ୍ରାୟ ପଡ଼ିଲେ । ୪୫ ।

ହେ ପାଣ୍ଡବ ! ସେହି ପତନରେ ତାହାଙ୍କର ମୃତ୍ୟୁ ନ ହେବାରୁ ମହାବନରେ ସେ ଅଗ୍ନି ପ୍ରଜ୍ୱଳିତ କରି ତନ୍ମଧ୍ୟରେ ପ୍ରବେଶ କଲେ ।୪୬। ହେ ଅମିତଘ୍ନ ! ହୁତାଶନ ଅତିଶୟ ଦୀପ୍ୟମାନ ହୋଇଥିଲେ ହେଁ, ଋଷିଙ୍କୁ ଦଗ୍ଧନ କରି ଶୀତଳ ହେଲେ । ୪୭ । ସେ ମହାମୁନି ସମୁଦ୍ରକୁ ଦେଖି ଶୋକାବିଷ୍ଟ ହୋଇ ଗଳାରେ ଗୁର୍ବୀଶିଳା ବନ୍ଧନ କରି ଜଳରେ ପତିତ ହେଲେ । ୪୮ । କିନ୍ତୁ ସେ ଲହରୀ ବେଗରେ ସ୍ଥଳ ଉପରକୁ ନିଃକ୍ଷିପ୍ତ ହେଲେ । କୌଣସି ପ୍ରକାରେ ତାହାଙ୍କର ମୃତ୍ୟୁ ନ ହେବାରୁ ସେ ବ୍ରତ-ପରାୟଣ ବିପ୍ର ଖେଦଯୁକ୍ତ ହୋଇ ପୁନର୍ବାର ଆଶ୍ରମକୁ ପ୍ରତ୍ୟାଗମନ କଲେ । ୪୯ ।

## ଅଧ୍ୟାୟ—୧୭୭

ଗନ୍ଧର୍ବ ବୋଇଲେ—ଅନନ୍ତର ଭଗବାନ୍ ବଶିଷ୍ଠ ମୁନି ଆଶ୍ରମକୁ ସୁତ-ବିହୀନ ଦେଖି ଅତ୍ୟନ୍ତ ଦୁଃଖାର୍ତ୍ତ ହୋଇ ପୁନର୍ବାର ସେଠାରୁ ନିର୍ଗତ ହେଲେ । ହେ ପାର୍ଥ ! ସେ ଦେଖିଲେ ଯେ ପ୍ରାବୃଟ୍ କାଳର ନୂତନ ଓ ଅବିଳ ଜଳରେ ନଦୀ ପୂର୍ଣ୍ଣା ହୋଇଅଛି ଓ ତୀର ଜାତ ବହୁବିଧ ଓ ବହୁସଂଖ୍ୟକ ବୃକ୍ଷମାନଙ୍କୁ ସେ ନଦୀ ହରଣ କରି ନେଇ ଯାଉଅଛି । ୨ । ହେ କୌରବନନ୍ଦନ ! ମୁନି ସେ ନଦୀକୁ ଦେଖି ଦୁଃଖାନ୍ୱିତ ହୋଇ ବିଚାରିଲେ ଯେ ଏହାର ଜଳରେ ନିମଜ୍ଜିତ ହେବି । ତତ୍ପରେ ମହାମୁନି ଆପଣାକୁ ପାଶରେ ଗାଢ଼ରୂପେ ବନ୍ଧନ କରି ସୁଦୁଃଖିତ ହୋଇ ସେ ମହାନଦୀର ଜଳରେ ନିମଜ୍ଜନ କଲେ । ୪ । ହେ ଅରିବଳସୂଦନ ! ଅନନ୍ତର ସେ ନଦୀ ତାହାଙ୍କର ପାଶ ଛେଦନ ପୂର୍ବକ ବି-ପାଶ କରି ସ୍ଥଳ ଉପରକୁ ରଖିଦେଲେ । ୫ ।

ପାଶରୁ ବିମୁକ୍ତ ହୋଇ ସେ ମହର୍ଷି ଜଳରୁ ପାର ହେଲେ ଓ ସେ ନଦୀର ନାମ 'ବିପାଶା' ରଖିଲେ । ୬ । ଶୋକ ହେତୁରୁ ସେ ଏକଣ ରହି ନ ପାରି ପର୍ବତ, ନଦୀ ଓ ସରୋବର ପ୍ରଭୃତି ନାନା ସ୍ଥାନରେ ଭ୍ରମଣ କଲେ । ୭ । ଏକଦା ସେ ହୈମବତୀ ନାମ୍ନୀ ଗ୍ରାହବତୀ ନଦୀକୁ ଦେଖି ତାହାର ଭୟଙ୍କର ସ୍ରୋତରେ ନିପତିତ ହେଲେ । ୮ । କିନ୍ତୁ ସେ ସରିଦ୍‌ବରା ଅଗ୍ନିସମ ଋଷିଙ୍କୁ ରକ୍ଷା କରିବା ନିମିତ୍ତ ଶତଧା ହୋଇ ବିଦ୍ରୁତ ହେଲା । ସେହି କାରଣରୁ ସେ ନଦୀ ଶତଦ୍ରୁ ନାମରେ ବିଶ୍ରୁତ ହେଲା । ୯ । ତତ୍ପରେ ଆପଣାର ପ୍ରାଣ ବିଯୋଗ ନ ହୋଇ ସ୍ଥଳଗତ ହେବାରୁ ସେ ଋଷି କୌଣସି ପ୍ରକାରେ ମରଣ ଅଶକ୍ୟ ବିବେଚନା କରି ପୁନର୍ବାର ଆଶ୍ରମକୁ ପ୍ରତ୍ୟାବୃତ୍ତ ହେଲେ । ୧୦ । ମହର୍ଷି ବଶିଷ୍ଠ ଯେତେବେଳେ ବିବିଧ ଶୈଳ ଓ ନାନାଦେଶମାନଙ୍କୁ ପରିଭ୍ରମଣ କରି ଆଶ୍ରମାଭିମୁଖୀ ହୋଇ ଆସୁଥିଲେ ସେତେବେଳେ ଅଦୃଶ୍ୟନ୍ତୀ ନାମ୍ନୀ ତାହାଙ୍କର ପୁତ୍ରବଧୂ ପଶ୍ଚାତ୍ ପଶ୍ଚାତ୍ ଆଗମନ କରୁଥିଲେ । ୧୧ । ଅନନ୍ତର ନିକଟରେ ସେ ଋଷି ଷଡ଼ଙ୍ଗରେ ଅଳଙ୍କୃତ, ପରିପୂର୍ଣ୍ଣାର୍ଥ ବେଦାଧ୍ୟୟନ ସ୍ୱନ ଶ୍ରବଣ କଲେ । ୧୨ । ଋଷି ବୋଇଲେ, କିଏ ଆମ୍ଭର ଅନୁଗମନ କରୁଅଛି ? ବଧୂ ଉତ୍ତର କଲେ, ମହାଭାଗ ! ଅମ୍ଭେ

ଅଦୃଶ୍ୟନ୍ତୀ, ଶକ୍ତ୍ରୀଙ୍କ ଭାର୍ଯ୍ୟା, ତପସ୍ୟାରେ ରତ ହୋଇ ତାପସ୍ୱିନୀ ହୋଇଅଛୁଁ । ୧୩ ।

ବଶିଷ୍ଠ ବୋଇଲେ—ପୁତ୍ରି ! ସାଙ୍ଗ ବେଦାଧ୍ୟୟନ ସ୍ୱନ କାହାର ? ପୂର୍ବେ ଶକ୍ତ୍ରୀ ଯେପରି ସାଙ୍ଗବେଦକୁ ଅଧ୍ୟୟନ କରୁଥିଲେ, ତଦ୍ରୂପ ସ୍ୱନ ଶୁଭୁଅଛି । ୧୪ । ଅଦୃଶ୍ୟନ୍ତୀ ବୋଇଲେ, ହେ ମୁନେ ! ଆପଣଙ୍କର ପୁତ୍ର ଶକ୍ତ୍ରୀଙ୍କର ଔରସରୁ ଆମ୍ଭ କୁକ୍ଷିରେ ଗୋଟିଏ ଗର୍ଭଅଛି, ସେ ଦ୍ୱାଦଶବର୍ଷ ହେଲା, ଏହିପରି ବେଦାଭ୍ୟାସ କରୁଅଛି; ଆପଣ ତାହାର ବେଦଧ୍ୱନି ଶ୍ରବଣ କରୁଅଛନ୍ତି । ୧୫ ।

ଗନ୍ଧର୍ବ ବୋଇଲେ—ହେ ପାର୍ଥ ! ଏହିପରି ଉକ୍ତ ହୁଅନ୍ତେ, ଶ୍ରେଷ୍ଠଭାଗ୍ୟ ଋଷି ବଶିଷ୍ଠ ବୋଇଲେ, 'ସନ୍ତାନ ଅଛି' ଏହା କହି ସେ ମୃତ୍ୟୁରୁ ନିବୃତ୍ତ ହେଲେ । ୧୬ । ହେ ଅନଘ ! ତତ୍ପରେ ସେ ପ୍ରତିନିବୃତ୍ତ ହୋଇ ବଧୂଙ୍କ ସହିତ ନିର୍ଜନ ବନରେ ଆସୁ ଆସୁ ଦେଖିଲେ ଯେ କଲ୍ମଷପାଦ ବସିଅଛନ୍ତି । ୧୭ ।

ରାଜା ତାହାଙ୍କୁ ଦେଖି କ୍ରୁଦ୍ଧ ହୋଇ ଉଠିଲେ ଓ ଉଗ୍ର ରାକ୍ଷସ ଦ୍ୱାରା ପ୍ରେରିତ ହୋଇ ମୁନିଙ୍କୁ ଭକ୍ଷଣ କରିବାକୁ ଇଚ୍ଛା କଲେ ।୧୮। ଅଦୃଶ୍ୟନ୍ତୀ ସେହି କ୍ରୂର କର୍ମାଙ୍କୁ ସମକ୍ଷରେ ଦେଖି ଭୟ-ସନ୍ତ୍ରସ୍ତ ହୋଇ ବଶିଷ୍ଠଙ୍କୁ ବୋଇଲେ । ୧୯ । ହେ ଭଗବାନ୍ ! ସେହି ଦାରୁଣ ରାକ୍ଷସ ଉଗ୍ର ଦଣ୍ଡଧାରୀ କୃତାନ୍ତଙ୍କ ପ୍ରାୟ ହୋଇ କାଷ୍ଠଖଣ୍ଡ ଘେନି ଆମ୍ଭ ସମ୍ମୁଖରେ ଆସୁଅଛି । ୨୦ । ହେ ମହାଭାଗ ! ସର୍ବ ବେଦ-ବିଦ୍ୱର ! ଆପଣଙ୍କ ବ୍ୟତିରେକେ ଏହାକୁ ନିବାରଣ କରିବାକୁ ଅନ୍ୟ କେହି ପୃଥିବୀରେ ନାହିଁ । ୨୧ । ହେ ଭଗବାନ୍ ! ଏହି ଦାରୁଣ ଦର୍ଶନ ପାପାତ୍ମା ରାକ୍ଷସ ଆମ୍ଭ ଦୁଇଜଣଙ୍କୁ ନିଶ୍ଚୟ ଭକ୍ଷଣ କରିବାକୁ ଅସୁଅଛି । ୨୨ ।

ବଶିଷ୍ଠ ବୋଇଲେ—ହେ ପୁତ୍ରି ! ଭୟ କରନା, ରାକ୍ଷସଠାରୁ ତୁମ୍ଭମାନଙ୍କ ଭୟ କରିବାର ନୁହେ; ଯାହାଙ୍କଠାରୁ ତୁମ୍ଭର ଭୟ ଉପସ୍ଥିତ ହେଉଅଛି ସେ ରାକ୍ଷସ ନୁହେ । ୨୩ । ଏ ଭୁବନ ବିଖ୍ୟାତ ବୀର୍ଯ୍ୟଶାଳୀ କଲ୍ମାଷପାଦ ନାମକ ରାଜା ଅଟନ୍ତି; ସେହି ଭୀଷଣ ରାଜା ଏହି ବନ-ମଧ୍ୟରେ ବାସ କରୁଅଛନ୍ତି । ୨୪ ।

ଗନ୍ଧର୍ବ ବୋଇଲେ—ହେ ଭାରତ ! ତେଜସ୍ୱୀ, ଭଗବାନ୍ ବଶିଷ୍ଠଋଷି ତାହାଙ୍କ ଆକ୍ରମଣ କରିବାର ଦେଖି ହୁଁକାର ଦ୍ୱାରା ବାରଣ କଲେ । ୨୫ । ମନ୍ତ୍ରପୂତ ଜଳକୁ ସେ ତାହାଙ୍କ ଉପରେ ସେଚନ କରି ସେହି ନରାଧିପଙ୍କୁ ସେ ଘୋର ଅଭିଶାପରୁ ମୁକ୍ତ କଲେ । ୨୬ । ଦିବାକର ଯେପରି ଅମାବାସ୍ୟାରେ ରାହୁଗ୍ରସ୍ତ ହୁଅନ୍ତି, ତଦ୍ରୂପ ସେହି ରାଜା ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ବଶିଷ୍ଠ ପୁତ୍ରଙ୍କ ତେଜରେ ଗ୍ରସ୍ତ ହୋଇଥିଲେ । ୨୭ । ଏବେ ଶାପ ମୁକ୍ତ ହୋଇ ଭାସ୍କର ଯେପରି ସ୍ୱୀୟ ତେଜରେ ସନ୍ଧ୍ୟା ସମୟର ମେଘକୁ ରଞ୍ଜିତ କରନ୍ତି, ସେହିପରି ସେ ରାଜା ଆପଣା ତେଜରେ ସେହି ମହଦ୍‌ବନକୁ ରଞ୍ଜିତ କଲେ । ୨୮ । ତତ୍‌କ୍ଷଣାତ୍ ସେ ନରପତି ସଂଜ୍ଞା ଲାଭ କରି କୃତାଞ୍ଜଳି ହୋଇ ଋଷିସତ୍ତମ ବଶିଷ୍ଠଙ୍କୁ ଅଭିବାଦନ କଲେ ଓ ବୋଇଲେ । ୨୯ । ହେ ମହାଭାଗ ମୁନିସତ୍ତମ ! ଆମ୍ଭେ ସୁଦାସ ରାଜାଙ୍କର ପୁତ୍ର, ଆପଣଙ୍କର ଯଜମାନ, ଇଦାନୀଂ ଆପଣଙ୍କର କି ଅଭିଳଷିତ ଅଛି ବୋଲନ୍ତୁ, ତାହା ସମ୍ପାଦନ କରିବୁଁ । ୩୦ ।

ବଶିଷ୍ଠ ବୋଇଲେ—ହେ ମନୁଷ୍ୟେନ୍ଦ୍ର ! ଆମ୍ଭର ଯାହା ହେବାର ତାହା ହୋଇଅଛି, ଏବେ ରାଜ୍ୟକୁ ଯାଅ; ପ୍ରଜାପାଳନ କର, ବ୍ରାହ୍ମଣମାନଙ୍କୁ କଦାପି ଅବମାନନା କରିବ ନାହିଁ । ୩୧ ।

ରାଜା ଉତ୍ତର କଲେ—ମହାଭାଗ ! ଆମ୍ଭେ ଆଉ କଦାପି ବ୍ରାହ୍ମଣଶ୍ରେଷ୍ଠମାନଙ୍କୁ ଅବଜ୍ଞା କରିବୁଁ ନାହିଁ । ଆପଣଙ୍କ ନିର୍ଦ୍ଦେଶରେ ରହି ଆମ୍ଭେ ଦ୍ୱିଜମାନଙ୍କୁ ସମ୍ୟକ୍ ପୂଜା କରିବୁଁ । ୩୨ । ହେ ସର୍ବ ବେଦବିଦ୍‌ବର ! ଦ୍ୱିଜୋତ୍ତମ ! ଇକ୍ଷ୍ୱାକୁ ବଂଶରେ ଜନ୍ମ ହୋଇ ଯହିଁରେ ଆମ୍ଭେ ସେମାନଙ୍କ ଋଣରୁ ମୁକ୍ତ ହେବୁଁ, ତାହା ଆପଣଙ୍କଠାରୁ ପାଇବାକୁ ଇଚ୍ଛା କରୁଅଛୁଁ । ୩୩ । ହେ ସତ୍ତମ ! ଇକ୍ଷ୍ୱାକୁ ବଂଶର ବୃଦ୍ଧି ନିମିତ୍ତ ଶୀଳ, ରୂପ ଓ ଗୁଣସମ୍ପନ୍ନ ଗୋଟିଏ ଅପତ୍ୟ ଆମ୍ଭଙ୍କୁ ପ୍ରଦାନ କରିବା ହେଉନ୍ତୁ । ୩୪ ।

ଗନ୍ଧର୍ବ ବୋଇଲେ—ସତ୍ୟସନ୍ଧ, ଦ୍ୱିଜଶ୍ରେଷ୍ଠ ବଶିଷ୍ଠ, ପରମଧନୁର୍ଦ୍ଧାରୀ ରାଜାଙ୍କୁ 'ଦେବୁଁ', ବୋଲି ପ୍ରତିବଚନ କହିଲେ । ୩୫ । ତଦନନ୍ତର ହେ ମନୁଜେଶ୍ୱର ! ବଶିଷ୍ଠ ଯଥା ସମୟରେ ତାହାଙ୍କ ସହିତ ଇହଲୋକରେ ବିଖ୍ୟାତ ଅଯୋଧ୍ୟା ନଗରୀକୁ ଗମନ କଲେ । ୩୬ ।

ଦେବତାମାନେ ଦେବରାଜଙ୍କ ଆଗମନ କରିବାର ଦେଖି ଯେପରି ପ୍ରମୋଦଯୁକ୍ତ ହୁଅନ୍ତି, ତଦ୍ରୂପ ସେଠାର ପ୍ରଜାମାନେ ରାଜାଙ୍କ ପାପମୁକ୍ତ ହେବାର ଦେଖି ପ୍ରମୋଦଯୁକ୍ତ ହୋଇ ପ୍ରତ୍ୟୁଦ୍‌ଗମନ କଲେ । ୩୭ । ସୁଚିରକାଳ ପରେ ସେ ମନୁଷ୍ୟେନ୍ଦ୍ର ମହର୍ଷି ବଶିଷ୍ଠଙ୍କ ସହିତ ପୁଣ୍ୟଲକ୍ଷଣା ଅଯୋଧ୍ୟା ନଗରୀରେ ପ୍ରବେଶ କଲେ । ୩୮ । ଅଯୋଧ୍ୟାବାସି ଜନମାନେ ପୁରୋହିତଙ୍କ ସହ ମହୀପାଳଙ୍କୁ ଉଦିତ ଦିବାକରଙ୍କ ପ୍ରାୟ ଅବଲୋକନ କଲେ । ୩୯ । ଶରତ୍କାଳରେ ଯେପରି ଶୀତାଂଶୁ ବ୍ୟୋମରେ ଉଦିତ ହୁଅନ୍ତି, ତଦ୍ରୂପ ସେହି ଶ୍ରୀସମ୍ପନ୍ନ ଭୂପତି ସ୍ୱକୀୟ ଶୋଭାଦ୍ୱାରା ଅଯୋଧ୍ୟା ନଗରୀକୁ ପରିପୂରିତ କଲେ । ୪୦ । ସଲିଳ ଦ୍ୱାରା ସାମ୍ୟକ୍‌ରୂପେ ସିକ୍ତ ଓ ପରିଷ୍କୃତ ହୋଇ ରାଜମାର୍ଗମାନ ପତାକା ସମୂହରେ ସୁଶୋଭିତ ହେବାରୁ ସେ ଉତ୍ତମ ନଗର ରାଜାଙ୍କ ମନକୁ ପ୍ରହ୍ଲାଦିତ କଲା । ୪୧ ।

ହେ କୁରୁନନ୍ଦନ ! ଇନ୍ଦ୍ରଙ୍କ ଦ୍ୱାରା ଯେପରି ଅମରାବତୀ ଶୋଭାପାଏ ସେହିପରି ତୁଷ୍ଟ ଓ ପୁଷ୍ଟ ଜନଙ୍କ ଦ୍ୱାରା ସମାକୀର୍ଣ୍ଣ ଅଯୋଧ୍ୟାପୁରୀ କଲ୍ମାଷପାଦଙ୍କ ପ୍ରବେଶରେ ଶୋଭାନ୍ୱିତ ହେଲା । ୪୨ । ସେହି ଉତ୍ତମ ନଗରୀର ରାଜା ପ୍ରବିଷ୍ଟ ହୋଇ ରାଜ୍ଞୀଙ୍କ ଆଦେଶ ଦେବାରୁ ସେ ବଶିଷ୍ଠଙ୍କ ପାଖେ ଉପଗତ ହେଲେ । ୪୩ । ଋଷି-ଶ୍ରେଷ୍ଠ ବଶିଷ୍ଠ ଦିବ୍ୟ ବିଧାନା-ନୁସାରେ ସଂଯତ ହୋଇ ଦେବୀଙ୍କ ସହିତ ମିଥୁନୀଭୂତ ହେଲେ । ୪୪ । ତଦନନ୍ତର ରାଜ୍ଞୀଙ୍କର ଗର୍ଭ ସମୁତ୍ପନ୍ନ ହେବାରୁ ମୁନିସତ୍ତମ ରାଜାଙ୍କ ଦ୍ୱାରା ଅଭିବାଦିତ ହୋଇ ପୁନର୍ବାର ଆଶ୍ରମକୁ ଗମନ କଲେ । ୪୫ । ଦୀର୍ଘକାଳ ପର୍ଯ୍ୟନ୍ତ ସେ ଗର୍ଭକୁ ପ୍ରସବ କରି ନ ପାରିବାରୁ ଯଶସ୍ୱିନୀ ରାଜ୍ଞୀ ପ୍ରସ୍ତର ଦ୍ୱାରା କୁକ୍ଷିକୁ ଭେଦ କଲେ । ୪୬ । ତତ୍ପରେ ଦ୍ୱାଦଶ ବର୍ଷରେ ସେ ପୁରୁଷ-ଶ୍ରେଷ୍ଠ ଜନ୍ମଗ୍ରହଣ କଲେ; ଅଶ୍ମ ଆଘାତରେ ଜାତ ହୋଇଥିବାରୁ ତାହାଙ୍କ ନାମ ଅଶ୍ମକ ହେଲା; ସେ ପୌଦନ୍ୟ ନାମକ ନଗରକୁ ସ୍ଥାପନ କରିଥିଲେ । ୪୭ ।

---

## ଅଧ୍ୟାୟ—୧୭୮

ଗନ୍ଧର୍ବ ବୋଇଲେ—ହେ ରାଜନ୍ ! ତତ୍ପରେ ଅଦୃଶ୍ୟନ୍ତୀ ଆଶ୍ରମରେ ଥାଇ ଶକ୍ତିଙ୍କର କୁଳରକ୍ଷାକାଂକ୍ଷୀ ଅବିକଳ ଶକ୍ତିଙ୍କ ପରି ଗୋଟିଏ ସୁତ ଜାତ କଲେ । ୧ । ହେ ଭରତଶ୍ରେଷ୍ଠ ! ଭଗବାନ୍ ଋଷି ବଶିଷ୍ଠ ସ୍ୱୟଂ ପୌତ୍ରର ଜାତକର୍ମ ପ୍ରଭୃତି କ୍ରିୟା ସମ୍ପାଦନ କଲେ । ୨ । ବଶିଷ୍ଠ ମୁନି ପ୍ରାଣତ୍ୟାଗ କରୁଥିଲେ, ଏହି ଗର୍ଭସ୍ଥ ଶିଶୁ ତାହାଙ୍କୁ ସ୍ଥାପନ କରିବାରୁ ଲୋକରେ ତାହାଙ୍କର ନାମ ପରାଶର * ବୋଲି ବିଖ୍ୟାତ ହେଲା । ୩ । ସେ ଧର୍ମାତ୍ମା ବଶିଷ୍ଠ ମୁନିଙ୍କୁ ପିତା ବୋଲି ଜ୍ଞାନ କରି ଜନ୍ମ ହେବା ଅବଧି ତାହାଙ୍କ ପ୍ରତି ପିତୃସଦୃଶ ବ୍ୟବହାର କଲେ । ୪ ।

ହେ ପରନ୍ତପ ! କୌନ୍ତେୟ ! ଶ୍ରୀମତୀ ଅଦୃଶ୍ୟନ୍ତୀଙ୍କ ସମକ୍ଷରେ ଦିନେ ସେ ବିପ୍ରର୍ଷି ବଶିଷ୍ଠଙ୍କୁ 'ତାତ' ବୋଲି ସମ୍ବୋଧନ କଲେ । ୫ । ଅଦୃଶ୍ୟନ୍ତୀ ତାହାଙ୍କ ମଧୁର ବାକ୍ୟରେ ସ୍ପଷ୍ଟରୂପେ 'ତାତ' ବଚନକୁ ଶ୍ରବଣ କରି ଅଶ୍ରୁପୂର୍ଣ୍ଣ ନେତ୍ରରେ ତାହାଙ୍କୁ ବୋଇଲେ । ୬ । ହେ ତାତ ! ପିତାଙ୍କର ଏହି ପିତାଙ୍କୁ 'ତାତ ତାତ' ବୋଲି କହନା; ହେ ତାତ ! ତୁମ୍ଭର ତାତକୁ ଗୋଟାଏ ରାକ୍ଷସ ବନ ମଧ୍ୟରେ ଭକ୍ଷଣ କଲା । ତୁମ୍ଭେ ଯାହାଙ୍କୁ ପିତା ବୋଲି ଜ୍ଞାନ କରୁଅଛ, ହେ ଅନଘ ! ତୁମ୍ଭର ସେ ପିତା ନୁହନ୍ତି; ସେ ଆର୍ଯ୍ୟ ତୁମ୍ଭର ଯଶସ୍ୱୀ ପିତାଙ୍କର ପିତା ଅଟନ୍ତି । ୮ । ମହାନୁଭବ ସତ୍ୟବାଦୀ ଋଷିସତ୍ତମ ପରାଶର ମାତାଙ୍କର ସେହି କଥା ଶ୍ରବଣ କରି ସର୍ବଲୋକ ବିନାଶ କରିବାକୁ ମନ କଲେ । ୯ । ମହାତପସ୍ୱୀ, ବେଦବିଦ୍‌ବର, ପରିଣାମଦର୍ଶୀ ମୈତ୍ରାବରୁଣଙ୍କର ତନୟ ମହାତ୍ମା ବଶିଷ୍ଠ ଋଷି ପରାଶରଙ୍କର ତାଦୃଶ ସଂକଳ୍ପକୁ ଯେଉଁ ହେତୁରୁ ନିବାରଣ କଲେ ତାହା ଶ୍ରବଣ କର :—

ବଶିଷ୍ଠ ବୋଇଲେ—'କୃତବୀର୍ଯ୍ୟ' ନାମରେ ଜଣେ ପୃଥିବୀପତି ଥିଲେ । ୧୧ । ସେ ପୁରୁଷର୍ଷଭ ବିଖ୍ୟାତ ଭୃଗୁବଂଶର ଯଜମାନ ଥିଲେ । ହେ ରାଜନ୍ ! ସେ ସୋମଯାଗ ସମାପ୍ତି କରି ଅଗ୍ରଭୁକ୍ ବ୍ରାହ୍ମଣମାନଙ୍କୁ ବିପୁଳ ଧନଧାନ୍ୟ ଦ୍ୱାରା ତର୍ପଣ କଲେ । ଅନନ୍ତର ସେହି ନୃପତିଶାର୍ଦ୍ଦୂଳ

* ପରାସୁ ଅର୍ଥାତ୍ ଗତ ପ୍ରାଣଙ୍କର ଆଶାସନ ଅର୍ଥାତ୍ ଅବସ୍ଥାନ ତାହାଙ୍କ ଯୋଗୁଁ ହେଲା, ସେ ପରାଶର ।

ନିର୍ଗ୍ରହଣ କଲେ । ୧୩ । ଟସନ୍ତ ବଂଶୀୟ ରାଜାମାନଙ୍କର ଧନର ପ୍ରୟୋଜନ ଉପସ୍ଥିତ ହେଲା । ସେ ରାଜାମାନେ ଜାଣିଲେ ଯେ ଭୃଗୁବଂଶୀୟ ବ୍ରାହ୍ମଣଙ୍କର ଅନେକ ଧନ ଅଛି; ତହୁଁ ସେମାନେ ଯାଚକ ଭାବରେ ବ୍ରାହ୍ମଣଙ୍କଠାରେ ଉପସ୍ଥିତ ହେଲେ । ଭୃଗୁବଂଶୀୟ ମାନେ ଆପଣାର ଧନ କ୍ଷୟ ନୋହିବା ଆଶାରେ ଭୂମି ମଧ୍ୟରେ ଯେ ଧନକୁ ପ୍ରୋଥିତ କଲେ ।୧୫। କେହି କେହି କ୍ଷତ୍ରିୟଙ୍କ ଠାରୁ ଭୀତ ହୋଇ ଅପର ବ୍ରାହ୍ମଣମାନଙ୍କୁ ପ୍ରଦାନ କଲେ । କେହି ଅବା କାରଣାନ୍ତର ଥିବାରୁ ଆପଣାର ବିତ୍ତକୁ କ୍ଷତ୍ରିୟମାନଙ୍କୁ ଯଥେଚ୍ଛ ପ୍ରଦାନ କଲେ ।

ହେ ତାତ ! ଅନନ୍ତର ଜଣେ କ୍ଷତ୍ରିୟ ଭାର୍ଗବମାନଙ୍କର ଗୃହତଳ ଯଦୃଚ୍ଛାକ୍ରମେ ଖନନ କରୁ କରୁ ଅନେକ ବିତ୍ତ ପ୍ରାପ୍ତ ହେଲେ । ସବୁ କ୍ଷତ୍ରିୟ ଶ୍ରେଷ୍ଠମାନେ ସମବେତ ହୋଇ ସେହି ବିତ୍ତକୁ ଦେଖିଲେ । ୧୮ । ତଦ୍ଦର୍ଶନରେ ମହା ଧନୁର୍ଧାରୀ ସେହି କ୍ଷତ୍ରିୟମାନେ ସମସ୍ତେ ମିଳିତ ହୋଇ ଶରଣାଗତ ଭାର୍ଗବମାନଙ୍କୁ ଅବଜ୍ଞା କରି କ୍ରୋଧପୂର୍ବକ ସେମାନଙ୍କୁ ନିଶିତ ଶରସମୂହ ଦ୍ୱାରା ସଂହାର କରିବାକୁ ଆରମ୍ଭ କଲେ । ୧୯ । ଗର୍ଭସ୍ଥ ବାଳକମାନଙ୍କୁ ସୁଦ୍ଧା ସେହି କ୍ଷତ୍ରିୟମାନେ ଅନ୍ୱେଷଣ କରି ହତ୍ୟା କରିବା କାରଣ ନିଖିଳ ବସୁନ୍ଧରାକୁ ଭ୍ରମଣ କଲେ । ଭୃଗୁବଂଶୀୟ ମାନଙ୍କର ଏହିପରି ଉଚ୍ଛିନ୍ନ ଦଶା ବିଲୋକନ କରି ଭୃଗୁବଂଶୀୟ ନାରୀମାନେ ଦୁର୍ଗମ ହିମାଳୟ ଗିରିର ଦୁର୍ଗରେ ପ୍ରବେଶ କଲେ । ସେମାନଙ୍କ ମଧ୍ୟରୁ ଗୋଟିଏ ବାମୋରୁ ନାରୀ ଭର୍ତ୍ତୃକୁଳ ରକ୍ଷା ନିମିତ୍ତ କ୍ଷତ୍ରିୟଙ୍କ ଭୟରେ ଭୀତ ହୋଇ ଏକମାତ୍ର ଊରୁ ଦ୍ୱାରା ଗୋଟିଏ ମହାବୀର୍ଯ୍ୟ-ସମ୍ପନ୍ନ ଗର୍ଭ ରକ୍ଷା କରିଥିଲେ । ଅନନ୍ତର ଅପର ଗୋଟିଏ ବ୍ରାହ୍ମଣୀ ସେହି ଗର୍ଭବିଷୟ ଅବଗତ ହୋଇ ଭୟ ହେତୁରୁ ତତ୍‌କ୍ଷଣାତ୍ ଯାଇ କ୍ଷତ୍ରିୟମାନଙ୍କ ନିକଟରେ କହିଲେ । ତତ୍‌ପରେ କ୍ଷତ୍ରିୟମାନେ ସେହି ଗର୍ଭକୁ ହନନ କରିବା ନିମିତ୍ତ ଗମନ କଲେ । ୨୩ । ଗର୍ଭିଣୀ ବ୍ରାହ୍ମଣୀଙ୍କୁ ସ୍ୱୀୟ ତେଜୋରାଶିରେ ଦୀପ୍ୟମାନା ହେବାର ଦେଖିଲେ । ଅନନ୍ତର ସେହି ଗର୍ଭ ବ୍ରାହ୍ମଣୀର ଊରୁକୁ ଭେଦ କରି ମଧ୍ୟାହ୍ନକାଳୀନ ଭାସ୍କରଙ୍କ ପ୍ରାୟ କ୍ଷତ୍ରିୟମାନଙ୍କର ଦୃଷ୍ଟିକୁ ଧ୍ୱଂସ କରି ନିର୍ଗତ ହେଲେ ।

ତଦନନ୍ତର ସେହି କ୍ଷତ୍ରିୟମାନେ ଚକ୍ଷୁର୍ବିହୀନ ହୋଇ ଗିରିଦୁର୍ଗମାନଙ୍କରେ ଭ୍ରମଣ କଲେ । ୨୫ । ନେତ୍ର-ବିହୀନ କ୍ଷତ୍ରିୟମାନେ ଦୃଷ୍ଟିଶକ୍ତି ଲାଭ କରିବା ନିମିତ୍ତ ଅନିନ୍ଦିତା ବ୍ରାହ୍ମଣୀଙ୍କର ଶରଣାପନ୍ନ ହେଲେ । ୨୬। ଅନଳର ଶିଖାମାନ ନିର୍ବାପିତ ହେଲେ ଯେପରି ହୁଏ, ସେହିପରି

ଜ୍ୟୋତି-ହୀନ ଓ ହତଚେତନ ହୋଇ ଦୁଃଖାର୍ତ୍ତ-ହୃଦୟରେ ମହାଭାଗ୍ୟ-ଶାଳିନୀ ବ୍ରାହ୍ମଣୀଙ୍କୁ କହିଲେ । ୨୭ । ଅମ୍ଭେମାନେ ଆପଣଙ୍କ ପ୍ରସାଦରୁ ଯେବେ ଚକ୍ଷୁଷ୍ମାନ୍ ହୁଅନ୍ତୁ, ତେବେ ଏହି ପାପକର୍ମରୁ ବିରତ ହୋଇ ସମସ୍ତେ ଗୃହକୁ ଗମନ କରନ୍ତୁ । ୨୮ । ହେ ଶୋଭନେ ! ତୁମ୍ଭେ ସପୁତ୍ର ଅମ୍ଭଠାରେ ପ୍ରସନ୍ନ ହୁଅ; ପୁନର୍ବାର ଦୃଷ୍ଟି ପ୍ରଦାନ କରି ଏହି ରାଜାମାନଙ୍କୁ ପରିତ୍ରାଣ କର । ୨୯ ।

---

## ଅଧ୍ୟାୟ—୧୭୯

ହେ ତାତମାନେ ! ଅମ୍ଭେ ରୋଷାନ୍ୱିତ ହୋଇନାହୁଁ କି ତୁମ୍ଭମାନଙ୍କର ଦୃଷ୍ଟିବିନାଶ କରିନାହୁଁ । ପରନ୍ତୁ ଅମ୍ଭର ଊରୁଜାତ ଭୃଗୁବଂଶୀୟ ଏହି କୁମାର ଅଦ୍ୟ ତୁମ୍ଭମାନଙ୍କ ପ୍ରତି କୁପିତ ହୋଇଅଛନ୍ତି, ସନ୍ଦେହ ନାହିଁ । ୧ । ହେ ତାତ ସମୂହ ! ଏହି ମହାତ୍ମା ବାଳକ ବନ୍ଧୁ-ବର୍ଗଙ୍କର ବିନାଶ ସ୍ମରଣ କରି କୁପିତ ହୋଇ ତୁମ୍ଭମାନଙ୍କର ଚକ୍ଷୁହରଣ କରିଅଛନ୍ତି । ୨ । ହେ ପୁତ୍ରକ ! ନ କର ! ତୁମ୍ଭେମାନେ ଯେଉଁ ସମୟରେ ଭୃଗୁବଂଶୀୟ ଗର୍ଭସ୍ଥିତ ବାଳକମାନଙ୍କୁ ସୁଦ୍ଧା ବିନଷ୍ଟ କରିବାର ଆରମ୍ଭ କଲ, ସେହି ଅବଧି ଅମ୍ଭେ ଏକମାତ୍ର ଊରୁ ଦ୍ୱାରା ଏହି ଗର୍ଭକୁ ଶତବତ୍ସର ଦେହରେ ଧାରଣ କରିଥିଲୁଁ । ୩ । ଷଡ଼ଙ୍ଗ ସହି ସମସ୍ତ ବେଦମାନେ ପୁନର୍ବାର ଭୃଗୁବଂଶର ହିତାନୁଷ୍ଠାନ ନିମିତ୍ତ ଏହି ଗର୍ଭଗତ ବାଳକଙ୍କ ହୃଦୟରେ ପ୍ରବିଷ୍ଟ ହେଲେ । ୪ । ଅତଏବ ବ୍ୟକ୍ତ ହେଉଅଛି ଯେ ଏହି ଶିଶୁ ପିତୃବଧ ନିମିତ୍ତ କ୍ରୋଧାନ୍ୱିତ ହୋଇ ତୁମ୍ଭମାନଙ୍କୁ ବିନାଶ କରିବାକୁ ଇଚ୍ଛା କରିଅଛନ୍ତି ଓ ତାହାଙ୍କର ଦିବ୍ୟ ତେଜୋଦ୍ୱାରା ତୁମ୍ଭମାନଙ୍କର ଚକ୍ଷୁକୁ ମୂଷିତ କରିଅଛନ୍ତି । ୫ । ହେ ତାତ ! ଅମ୍ଭ ଊରୁ-ସମ୍ଭୂତ ଏହି ସୁତୋତ୍ତମଙ୍କୁ ଯାଚ୍ଞା କର, ତୁମ୍ଭମାନଙ୍କର ପ୍ରଣିପାତରେ ସେ ତୁଷ୍ଟ ହୋଇ ଦୃଷ୍ଟିପ୍ରଦାନ କରିବେ । ୬ ।

ବଶିଷ୍ଠ ବୋଇଲେ—ତଦୀୟ ବଚନ ଶ୍ରବଣ କରି ସମଗ୍ର ରାଜାମାନେ ସେ ଊରୁଜାତ କୁମାରଙ୍କୁ "ପ୍ରସନ୍ନ ହୁଅ" ବୋଲି ପ୍ରାର୍ଥନା କଲେ, ଓ ସେ ବାଳକ ମଧ୍ୟ ତତ୍‌କାଳରେ ପ୍ରସନ୍ନ ହେଲେ । ୭ । ସାଧୁଶ୍ରେଷ୍ଠ ସେ ବିପ୍ରର୍ଷି ଊରୁ ଭେଦକରି ଜନ୍ମ ହୋଇଥିବାରୁ ତାହାଙ୍କର

ନାମ "ଔର୍ବ" ବୋଲି ବିଖ୍ୟାତ ହେଲା । ୮ । ନୃପମାନେ ରଷ୍ଟୁଲଭ କରି ସ୍ୱ ସ୍ୱ ସ୍ଥାନକୁ ଗମନ କଲେ; କିନ୍ତୁ ଭାର୍ଗବ ଔର୍ବ ମୁନି ସମୁଦାୟ ଲୋକଙ୍କୁ ପରାଭବ କରିବାକୁ କୃତନିଶ୍ଚୟ ହେଲେ । ୯ । ହେ ତାତ । ଭୃଗୁବଂଶର ବୈରି ନିର୍ଯାତନ କରିବାର ଅଭିଳାଷୀ ହୋଇ ସେହି ମହାମନା ଭୃଗୁନନ୍ଦନ ମହାତପସ୍ୟାରେ ବର୍ଦ୍ଧିତ ହୋଇ ସର୍ବଲୋକ ବିନାଶ ନିମିତ୍ତ ଆପଣାର ମନକୁ ତଦ୍‌ବିଷୟରେ ପ୍ରବର୍ତ୍ତିତ କଲେ । ୧୧ । ମହତ୍ ଓ ଉଗ୍ର ତପସ୍ୟା ଦ୍ୱାରା ଦେବାସୁର ମନୁଷ୍ୟମାନଙ୍କୁ ଓ ସେମାନଙ୍କର ଅଧିଷ୍ଠିତ ଲୋକ ନିକରକୁ ସନ୍ତାପିତ କରି ଆପଣାର ପିତାମହମାନଙ୍କୁ ଆନନ୍ଦିତ କଲେ । ୧୨ । ହେ ତାତ । ଅନନ୍ତର ସର୍ବ ପିତୃଗଣ ଆପଣାର କୁଳନନ୍ଦନଙ୍କର ଅଭିପ୍ରାୟ ଅବଗତ ହୋଇ ପିତୃଲୋକରୁ ଆସି ତାହାଙ୍କୁ ସମସ୍ତେ ଏହି ବଚନ କହିଲେ । ୧୩ ।

ପିତୃଗଣ ବୋଇଲେ—ହେ ପୁତ୍ରକ । ଔର୍ବ । ତୁମ୍ଭର ଉଗ୍ର ତପସ୍ୟାର ପ୍ରଭାବ ଦୃଷ୍ଟ ହେଲା । ଏବେ ଲୋକମାନଙ୍କ ପ୍ରତି ପ୍ରସନ୍ନ ହୁଅ ଓ ଆପଣାର କ୍ରୋଧକୁ ନିଗୃହୀତ କର । ୧୪ । ହେ ତାତ ! ପୂର୍ବେ ଯେତେବେଳେ କ୍ଷତ୍ରିୟମାନେ ଭାର୍ଗବଙ୍କର ହିଂସା କଲେ, ତେତେବେଳେ କ୍ରିୟାଶ୍ରାନ୍ତ ଭାର୍ଗବମାନେ ହିଂସାକାରୀ କ୍ଷତ୍ରିୟମାନଙ୍କର ବଧକୁ ଉପେକ୍ଷା କଲେ; ଭାର୍ଗବମାନେ ଯେ ପ୍ରତିହିଂସା କରିବାକୁ ଅସମର୍ଥ ଥିଲେ, ତାହା ନୁହେଁ । ୧୫ । ହେ ତାତ ! ପରମାୟୁ ବିପ୍ରକୃଷ୍ଟ* ହେବାରୁ ଆମ୍ଭମାନଙ୍କର ଖେଦ ଜାତ ହେଲା; ତହିଁ ଅମ୍ଭେମାନେ ସ୍ୱୟଂ ତଦ୍ରୂପ କ୍ଷତ୍ରିୟଙ୍କ ଦ୍ୱାରା ବଧକୁ କାମନା କଲୁଁ । ୧୬ । ଏହି ନିମିତ୍ତ ଭାର୍ଗବମାନେ କ୍ଷତ୍ରିୟ ମାନଙ୍କର କୋପୋତ୍ପାଦନ ମାନସରେ ଗୃହ ଭିତରେ ଧନ ସବୁ ପ୍ରୋଥିତ କରି ସେମାନଙ୍କୁ କୁପିତ କଲେ । ୧୭ ।

ହେ ଦ୍ୱିଜୋତ୍ତମ । ନ ହେଲେ ଅମ୍ଭମାନଙ୍କର ଲୌକିକ ଧନରେ କି ପ୍ରୟୋଜନ ? ଅମ୍ଭେମାନେ ସ୍ୱର୍ଗାଭିଳାଷୀ, କୁବେର ଅମ୍ଭମାନଙ୍କ ନିମିତ୍ତ ପ୍ରଭୂତ ଧନ ଆହରଣ କରି ରଖିଅଛନ୍ତି । ୧୮ । ଯେତେବେଳେ ଅମ୍ଭେମାନେ ଦେଖିଲୁଁ ଯେ ମୃତ୍ୟୁ ଆମ୍ଭମାନଙ୍କୁ କୌଣସି ପ୍ରକାରେ ଗ୍ରହଣ କରି ନ ପାରିଲେ, ତେତେବେଳେ ଅମ୍ଭେମାନେ ଏହି ଉପାୟକୁ ଶ୍ରେୟସ୍କର

---

**ବିପ୍ରକୃଷ୍ଟ—ଦୀର୍ଘ ।**

ଜ୍ଞାନ କର୍ । ୧୯ । ହେ ତାତ ! ଆତ୍ମହତ୍ୟାକାରୀ ବ୍ୟକ୍ତି ଶୁଭଲୋକ ମାନଙ୍କୁ ପ୍ରାପ୍ତ ହୋଇ ପାରନ୍ତି ନାହିଁ । ଏହି ହେତୁରୁ ଅମ୍ଭେମାନେ ଆତ୍ମହତ୍ୟା କଲୁନାହିଁ । ୨୦ । ହେ ତାତ ! ତୁମ୍ଭେ ଯାହା କରିବାକୁ ଇଚ୍ଛା କରୁଅଛ, ତାହା ଅମ୍ଭମାନଙ୍କର ଅଭିପ୍ରେତ ନୁହଇ, ସର୍ବଲୋକ-ବିନାଶରେ ମହାପାପ; ତହିଁରୁ ମନକୁ ନିଗୃହୀତ କର । ୨୧ । ହେ ପୁତ୍ରକ ! କ୍ଷତ୍ରିୟ ମାନଙ୍କୁ ବଧ କର ନା, ସପ୍ତଲୋକକୁ ବିନାଶ କରନା; ତପସ୍ୟାର ତେଜକୁ ଯେଉଁ କ୍ରୋଧ ଦୂଷିତ କରେ; ସେ କ୍ରୋଧକୁ ବିନାଶ କର । ୨୨ ।

---

## ଅଧ୍ୟାୟ—୧୮୦

ଔର୍ବ ବୋଇଲେ—ହେ ପିତୃଗଣ ! ସର୍ବଲୋକ ବିନାଶ ନିମିତ୍ତ ଅମ୍ଭେ କ୍ରୋଧ ବଶତଃ ଯେଉଁ ପ୍ରତିଜ୍ଞା କରିଅଛୁଁ, ତାହା ବିଫଳ ହେବ-ନାହିଁ । ୧ । ଅମ୍ଭେ ବୃଥା ରୋଷ ଅଥବା ବୃଥା ପ୍ରତିଜ୍ଞ ହେବାକୁ ଉତ୍ସାହିତ ହେଉନା । ଯଦ୍ୟପି ଅମ୍ଭେ ଏହି ପ୍ରତିଜ୍ଞାରୁ ନିସ୍ତୀର୍ଣ୍ଣ ନ ହେବୁଁ ତେବେ ଅଗ୍ନି ଯେପରି ଅରଣିକୁ ଦଗ୍ଧ କରେ ତଦ୍ରୂପ କ୍ରୋଧ ଅମ୍ଭଙ୍କୁ ଦଗ୍ଧ କରିବ । କାରଣ ବଶରୁ ସଂଜାତ କ୍ରୋଧକୁ ଯେଉଁ ବ୍ୟକ୍ତି ନିବାରଣ କରେ ସେ ମନୁଷ୍ୟ କଦାପି ତ୍ରିବର୍ଗ * ରକ୍ଷା କରିବାକୁ ସମର୍ଥ ହୁଅଇ ନାହିଁ । ୩ । ସର୍ବଜୟାଭିଳାଷୀ ନରପତିମାନେ ଅଶିଷ୍ଟଙ୍କର ଦମନ ଓ ଶିଷ୍ଟଙ୍କର ପରିରକ୍ଷଣ ନିମିତ୍ତ ସ୍ଥାନ ବିଶେଷରେ ରୋଷ ପ୍ରୟୋଗ କରନ୍ତି । ୪ । ପୂର୍ବେ ଯେତେବେଳେ କ୍ଷତ୍ରିୟମାନେ ଭୃଗୁମାନଙ୍କୁ ବଧ କଲେ ତେତେବେଳେ ଅମ୍ଭେ ମାତାଙ୍କର ଊରୁ ମଧ୍ୟରେ ଗର୍ଭ ଶଯ୍ୟାରେ ଥାଇ ମାତୃଗଣଙ୍କର ଆର୍ତ୍ତସ୍ୱର ଶ୍ରବଣ କରିଥିଲୁଁ । ୫ । କ୍ଷତ୍ରିୟାଧମମାନେ ଯେତେବେଳେ ଗର୍ଭସ୍ଥିତ ବାଳକ ମାନଙ୍କୁ ସୁଦ୍ଧା ସଂହାର କରିବାରେ ପ୍ରବୃତ୍ତ ହେଲେ, ତେତେବେଳେ ଅମ୍ଭର ମନ୍ୟୁ ଜାତ ହେଲା । ୬ । ସମ୍ପୂର୍ଣ୍ଣ ଗର୍ଭବତୀ ମାତାମାନେ ଓ ପିତାମାନେ ସୁଦ୍ଧା ଯେତେବେଳେ ଭୟରେ ଶରଣାର୍ଥୀ ହେଲେ, ତେତେବେଳେ ତ୍ରିଲୋକରେ ସୁଦ୍ଧା କେହି ସେମାନଙ୍କର ରକ୍ଷାକର୍ତ୍ତା ହେଲେ ନାହିଁ । ୭ ।

---

* ଧର୍ମ ଅର୍ଥ ଓ କାମ ।

ଯେଉଁ ସମୟରେ କୌଣସି ବ୍ୟକ୍ତି ଭଗ୍ନ ପତ୍ନୀ ମାନଙ୍କର ରକ୍ଷା କଲେନାହିଁ, ସେହି ସମୟରେ ଆମ୍ଭର ଏହି ଶୁଭ ଲକ୍ଷଣା ଜନନୀ ଗୋଟିଏ ଊରୁଦ୍ୱାରା ଆମ୍ଭଙ୍କୁ ଧାରଣ କଲେ । ୮ । ଯେବେ ଏହି ଲୋକରେ କେହି ପାପ କର୍ମ୍ମର ପ୍ରତିଷେଦ୍ଧା ଥାଏ, ତେବେ କେହି ପାପକର୍ମ୍ମ କରିବାକୁ ସମର୍ଥ ହୁଅଇ ନାହିଁ । ୯ । ପରନ୍ତୁ ଲୋକ ମଧ୍ୟରେ ପାପ-କର୍ମ୍ମର ଶାସ୍ତା କେହି ନଥିଲେ ଅନେକ ଲୋକେ ପାପରେ ପ୍ରବୃତ୍ତ ହୁଅନ୍ତି । ୧୦ । ଯେଉଁ ବ୍ୟକ୍ତି ଜାଣେ ଯେ ପାପକାର୍ଯ୍ୟ ହେଉଅଛି ଓ ତାହାର ସାମର୍ଥ୍ୟ ଥିଲେହେଁ ସେ ପାପକର୍ମ୍ମକୁ ନିବୃତ୍ତ ନ କରେ ତେବେ ସେ ସକ୍ଷମ ବ୍ୟକ୍ତି ସେ ପାପ କର୍ମ୍ମରେ ସ୍ୱୟଂ ଲିପ୍ତ ହୁଅଇ । ୧୧ । ରାଜାମାନେ ଓ ସମର୍ଥ ବ୍ୟକ୍ତି ସମୂହ ଇହଲୋକରେ ଆପଣାର ଜୀବନ ରକ୍ଷା ନିମିତ୍ତ ଆମ୍ଭର ପିତୃଗଣଙ୍କର ପରିତ୍ରାଣ କଲେନାହିଁ, ଅତଏବ ଆମ୍ଭେ ସେମାନଙ୍କ ପ୍ରତି କ୍ରୁଦ୍ଧ ହୋଇଅଛୁଁ, ଯେଣୁ ଆମ୍ଭେ ଲୋକମାନଙ୍କର ପ୍ରଭୁ ଅଟୁଁ । ଆପଣମାନଙ୍କର ବଚନାନୁରୂପ କାର୍ଯ୍ୟ କରିବାକୁ ଆମ୍ଭେ ସମର୍ଥ ନୋହୁଁ । ୧୩ । ଆମ୍ଭେ ମଧ୍ୟ ତାଦୃଶ ପାପର ପ୍ରତିବିଧାନ କରିବାକୁ ସକ୍ଷମ ଥାଇ, ଯେବେ ଉପେକ୍ଷା କରିବୁଁ, ତେବେ ଲୋକଙ୍କର ପୁନର୍ବାର ଅଶାସନ ଜନ୍ୟ କାଳ୍‌ବିଶତଃ ଆମ୍ଭର ମଧ୍ୟ ଭୟ ଉପସ୍ଥିତ ହେବ । ୧୪ । ଆମ୍ଭର ମନ୍ୟୁ-ସମ୍ଭୂତ ଯେଉଁ ଅଗ୍ନି ଲୋକମାନଙ୍କୁ ସଂହାର କରିବାକୁ ପ୍ରବୃତ୍ତ ହେଉଅଛି, ତାହାକୁ ଯେବେ ଆମ୍ଭେ ସ୍ୱତେଜ ଦ୍ୱାରା ନିଗୃହୀତ କରିବୁଁ, ତେବେ ସେ ନିଶ୍ଚୟ ଆମ୍ଭଙ୍କୁ ଦହନ କରିବ । ୧୫ । ଆପଣ-ମାନଙ୍କର ସର୍ବଲୋକ ହିତୈଷୀତାକୁ ଆମ୍ଭେ ଜାଣୁଅଛୁଁ ; ଅତଏବ ଆମ୍ଭର ଓ ସମସ୍ତ ଲୋକଙ୍କର ଯହିଁରେ ଶ୍ରେୟ ହେବ, ତାହା ବିଧାନ କରନ୍ତୁ ।୧୬।

ପିତୃଗଣ ବୋଇଲେ—ଆପଣଙ୍କର ଏହି ଯେଉଁ ମନ୍ୟୁଜାତ ଅଗ୍ନି ଲୋକମାନଙ୍କୁ ଦଗ୍ଧ କରିବାକୁ ଇଚ୍ଛା କରୁଅଛି, ତାହାକୁ ଆପଣ ଜଳରେ ବିସର୍ଜ୍ଜନ କରନ୍ତୁ; ଏଥିରେ ଆପଣଙ୍କର ମଙ୍ଗଳ ହେବ; ଲୋକମାନେ ଜଳରେ ପ୍ରତିଷ୍ଠିତ ହୋଇଅଛନ୍ତି । ୧୭ । ହେ ଦ୍ୱିଜସତ୍ତମ ! ସର୍ବରସମାନେ ଜଳମୟ ଓ ସମସ୍ତ ଜଗତ୍ ମଧ୍ୟ ଜଳମୟ; ଅତଏବ ଆପଣ ଏହି କ୍ରୋଧାଗ୍ନିକୁ ଜଳରେ ମୋଚନ କର । ୧୮ । ହେ ବିପ୍ର ! ଆପଣଙ୍କର ଯଦି ଇଚ୍ଛା ହୁଏ, ତେବେ ଏହି ମନ୍ୟୁଜାତ ଅଗ୍ନି ମହୋଦଧିରେ ରହି [illegible] ଜଳକୁ ଦଗ୍ଧ କରୁଥାଉ; ଯେ ଲୋକ, ସେହି ସେ ଜଳ ଅଟେ, [illegible] ଲୋକମାନେ ଅପୋମୟ ବୋଲି କଥିତ ହୋଇଅଛନ୍ତି । ୧୯ ।

ହେ ଅନଘ ! ଏହିପରି ଆପଣଙ୍କର ପ୍ରତିଜ୍ଞା ସତ୍ୟ ହେବ ଓ ଅପରାଧି-ଲୋକମାନେ ପରାଭବ ପ୍ରାପ୍ତ ହେବେନାହିଁ । ୨୦ ।

ବଶିଷ୍ଠ ବୋଇଲେ—ହେ ତାତ ! ତପରେ ଔର୍ବ ସ୍ୱୀୟ କ୍ରୋଧ ସମ୍ଭୂତ ଅଗ୍ନିକୁ ସମୁଦ୍ରରେ ଉତ୍ସର୍ଜନ କଲେ ଓ ସେହି ଅନଳ ମହା-ସମୁଦ୍ରରେ ଥାଇ ଜଳପାନ କରଇ । ୨୧ । ବେଦଜ୍ଞମାନେ ଯାହାକୁ ମହତ ହୟଶିର ବୋଲି ବୋଲନ୍ତି, ସେହି ଅଗ୍ନି ବଡ଼ବାର ମୁଖପ୍ରାପ୍ତ ହୋଇ ମୁଖରୁ ଅଗ୍ନି ଉଦ୍‌ଗୀରଣ କରି ମହୋଦଧିରେ ଜଳପାନ କରଇ । ୨୨ । ହେ ଜ୍ଞାନୀନ୍ଦ୍ର ପରାଶର ! ତୁମ୍ଭେ ମଧ୍ୟ ଲୋକମାନଙ୍କର ଗତି ବୃତ୍ତାନ୍ତ ଅବଗତ ଅଛ; ତୁମ୍ଭର ମଙ୍ଗଳ ହେଉ; ସର୍ବଲୋକ ବିନାଶ କରିବା ତୁମ୍ଭର କର୍ତ୍ତବ୍ୟ ନୁହଇ । ୨୩ ।

---

## ଅଧ୍ୟାୟ—୧୮୧

ଗନ୍ଧର୍ବ ବୋଇଲେ—ମହାତ୍ମା ବଶିଷ୍ଠଙ୍କର ତଦ୍ରୂପ ବଚନ ଶ୍ରବଣ କରି ସେହି ବିପ୍ରର୍ଷି ସ୍ୱୀୟ କ୍ରୋଧ ସମ୍ବରଣ କଲେ ଓ ସର୍ବଲୋକ ବିନାଶରୁ କ୍ଷାନ୍ତ ହେଲେ । ୧ । ସର୍ବ ବେଦଜ୍ଞବର ମହାତେଜା ଶକ୍ତିଙ୍କର ପୁତ୍ର ପରେ ରକ୍ଷି ରାକ୍ଷସ ସତ୍ର କରିବାରେ ପ୍ରବୃତ୍ତ ହେଲେ । ୨ । ତଦନନ୍ତର ସେ ଯଜ୍ଞ ବିସ୍ତୃତ ହେବାରେ ସେ ମହାମୁନି ଶକ୍ତିଙ୍କର ବଧକୁ ସ୍ମରଣ କରି ଆବାଳ-ବୃଦ୍ଧବନିତା ଯେତେ ରାକ୍ଷସ ଥିଲେ ସେମାନଙ୍କୁ ଦଗ୍‌ଧ କରିବାକୁ ଆରମ୍ଭ କଲେ । ୩ । ବଶିଷ୍ଠ ମଧ୍ୟ ତାହାଙ୍କୁ ରାକ୍ଷସ ବଧରୁ ନିବାରଣ କଲେନାହିଁ, ସେ ବିଚାରିଲେ ଯେ ତାହାଙ୍କର ଦ୍ୱିତୀୟ ପ୍ରତିଜ୍ଞା ଭଙ୍ଗ କରିବା ଉଚିତ ନୁହଇ । ୪ । ମହାମୁନି ପରାଶର ସେହି ଯଜ୍ଞରେ ଅଗ୍ନିତ୍ରୟ ନିକଟରେ ଚତୁର୍ଥ ଅଗ୍ନି ପ୍ରାୟ ଶୋଭା ପାଇଲେ । ୫ । ମେଘ ଅପଗତ ହେଲେ ଆକାଶ ଯେପରି ସୂର୍ଯ୍ୟଙ୍କ ଦ୍ୱାରା ଦୀପିତ ହୁଅଇ ସେହିପରି ହବ୍ୟମାନ ଯଜ୍ଞାନଳ ଦ୍ୱାରା ଶକ୍ତି ନନ୍ଦନ ନଭୋମଣ୍ଡଳକୁ ପ୍ରଦୀପ୍ତ କଲେ । ୬ ।

ସେହି ସମୟରେ ବଶିଷ୍ଠ ପ୍ରଭୃତି ମହର୍ଷିମାନେ ସ୍ୱକୀୟ ପ୍ରଭାରେ ଦେଦୀପ୍ୟମାନ ପରାଶରଙ୍କୁ ଦ୍ୱିତୀୟ ପ୍ରଭାକର ପ୍ରାୟ ଦେଖିଲେ । ୭ ।

ଅନନ୍ତର ଉଦାରମତି ମହର୍ଷି ଅତ୍ରି, ଅନ୍ୟର ଦୁଷ୍ପ୍ରାପ୍ୟ ସେହି ଯଜ୍ଞକୁ ସମାପ୍ତ କରିବା ଇଚ୍ଛାରେ ତାହାଙ୍କ ନିକଟରେ ଉପସ୍ଥିତ ହେଲେ । ୮ । ହେ ଅମିତଘ୍ନ ! ତଦ୍ରୂପ ପୁଲହ, ପୁଲସ୍ତ୍ୟ, କ୍ରତୁ ଓ ମହାକ୍ରତୁ ମହର୍ଷିମାନେ ରାକ୍ଷସମାନଙ୍କର ଜୀବିତ ରକ୍ଷା କରିବା ନିମିତ୍ତ ସେଠାକୁ ଆଗମନ କଲେ । ୯ । ହେ ଭରତର୍ଷଭ ! ପାର୍ଥ ! ଅନେକାନେକ ରାକ୍ଷସ ହତ ହେବାରୁ ଅରିନ୍ଦମ ପରାଶରଙ୍କୁ ପୁଲସ୍ତ୍ୟ ବୋଇଲେ,—ହେ ତାତ ! ତୁମ୍ଭର ଯଜ୍ଞର ତ ବିଘ୍ନ ହେଉନାହିଁ ? ହେ ପୁତ୍ରକ ! ଯେଉଁ ରାକ୍ଷସମାନେ ତୁମ୍ଭ ପିତୃବଧ ବିଷୟ କିଛି ଜାଣନ୍ତି ନାହିଁ ତାହାଙ୍କୁ ବଧ କରି ତୁମ୍ଭେ ଆନନ୍ଦିତ ହେଉଅଛ ତ ? । ୧୧ । ହେ ତାତ ! ପ୍ରଜାମାନଙ୍କର ଉଚ୍ଛେଦ କରିବା ତୁମ୍ଭର ଉଚିତ ନୁହଇ; ଦ୍ୱିଜାତିମାନଙ୍କର ବିଶେଷରେ ତପସ୍ୱୀମାନଙ୍କର ଏ ଧର୍ମ୍ମ ନୁହଇ । ୧୨ । ହେ ପରାଶର ! ଶାନ୍ତି ପରମ ଧର୍ମ୍ମ ଅଟେ; ହେ ପରାଶର ! ତୁମ୍ଭେ ବରିଷ୍ଠ ହୋଇ ଏପରି ଅଧର୍ମ୍ମିଷ୍ଠ କର୍ମ୍ମ କରୁଅଛ ? । ୧୩ ।

ଧର୍ମ୍ମଜ୍ଞ ଶକ୍ତିଙ୍କୁ ଅତିକ୍ରମ* କରିବା ତୁମ୍ଭର କର୍ତ୍ତବ୍ୟ ନୁହେଁ କି, ଆମ୍ଭର ପ୍ରଜାମାନଙ୍କର ଉଚ୍ଛେଦ କରିବା ବିଧେୟ ନୁହେଁ । ହେ ଋଷିଶ୍ରେଷ୍ଠ ! ଦୈବକାଳରେ ତୁମ୍ଭ ପିତାଙ୍କର ଯେଉଁ ଅବସ୍ଥା ହୋଇଥିଲା ତାହା ତାଙ୍କର ଶାପବଶରୁ ହୋଇଥିଲା; ସେ ନିଜ ଦୋଷରୁ ଇହଲୋକରୁ ସ୍ୱର୍ଗକୁ ଗମନ କରିଥିଲେ । ହେ ମୁନେ ! କୌଣସି ରାକ୍ଷସ ଯେ ତାହାଙ୍କୁ ଭକ୍ଷଣ କରିବାକୁ ସମର୍ଥ ଥିଲା, ତାହା ନୁହେଁ; ସେ ଆପଣା ଦ୍ୱାରା ଆପଣାର ମୃତ୍ୟୁ ସୃଜନ କରିବାରୁ ତାହାଙ୍କର ମୃତ୍ୟୁ ଘଟିଲା । ୧୬ । ହେ ପରାଶର ! ବିଶ୍ୱାମିତ୍ର କେବଳ ତହିଁରେ ନିମିତ୍ତ ହୋଇଥିଲେ; ଶକ୍ତି ଓ ରାଜା କଲ୍ମାଷପାଦ ଦୁହେଁ ସ୍ୱର୍ଗାରୋହଣ କରି ସୁଖରେ ଅଛନ୍ତି । ୧୭ । ମହାମୁନି ବଶିଷ୍ଠଙ୍କର ଅପର ପୁତ୍ରମାନେ ମଧ୍ୟ ଦେବଗଣଙ୍କର ସହ ମୋଦଯୁକ୍ତ ହୋଇ ସୁରଲୋକରେ ସୁଖୀ ହୋଇ କାଳକ୍ଷେପଣ କରୁଅଛନ୍ତି । ୧୮ । ହେ ମହାମୁନେ ! ଏ ସବୁ ବିଷୟ ବଶିଷ୍ଠଙ୍କୁ ଅବଗତ ଅଛି; ହେ ତାତ ! ବଶିଷ୍ଠ-ନନ୍ଦନ ! ନିରପରାଧୀ ରାକ୍ଷସଙ୍କର ଏହି କ୍ରତୁରେ ଯେଉଁ ବଧ ହେଉଅଛି, ତହିଁରେ ତୁମ୍ଭେ ନିମିତ୍ତ ମାତ୍ର ହୋଇଅଛ, ସେହି ଯଜ୍ଞକୁ ତ୍ୟାଗ କର; ତୁମ୍ଭର ମଙ୍ଗଳ ହେଉ; ଏହି ଯଜ୍ଞ ସମାପ୍ତ ହେଉ । ୨୦ ।

---

* ଶକ୍ତି ଧର୍ମଜ୍ଞ ଥିବାରୁ ଏପରି ପାପକର୍ମ ତାହାଙ୍କର ଅନଭିପ୍ରେତ, ସୁତରାଂ ଏ ଯଜ୍ଞ କରିବା ଦ୍ୱାରା ତାହାଙ୍କୁ ଅତିକ୍ରମ କରିବାର ହେଲା ।

ଗନ୍ଧର୍ବ ବୋଇଲେ—ପୁଲସ୍ତ୍ୟଙ୍କର ଓ ଧୀମାନ୍ ବଶିଷ୍ଠଙ୍କର ତଦ୍ରୂପ ବଚନ ଶ୍ରବଣ କରି ମହାମୁନି ଶକ୍ତି-ପୁତ୍ର ତତ୍କାଳରେ ସେ ଯଜ୍ଞକୁ ସମାପ୍ତ କଲେ ଓ ସର୍ବ ରାକ୍ଷସଙ୍କର ବିନାଶାର୍ଥ ଯେଉଁ ଅଗ୍ନି ସମ୍ଭୃତ ହୋଇଥିଲା, ତାହାକୁ ହିମାଳୟ ପର୍ବତର ପାର୍ଶ୍ୱବର୍ତ୍ତୀ ମହାବନରେ ବିସର୍ଜ୍ଜନ କଲେ । ୨୨ । ସେ ଅଗ୍ନି ଅଦ୍ୟାବଧି ସେଠାରେ ପ୍ରତି ଅମାବାସ୍ୟା ଦିନ, ରାକ୍ଷସମାନଙ୍କୁ, ବୃକ୍ଷମାନଙ୍କୁ ଓ ପ୍ରସ୍ତରମାନଙ୍କୁ ଭକ୍ଷଣ କରିବାର ଦେଖାଯାଏ । ୨୩ ।

---

## ଅଧ୍ୟାୟ—୧୮୨

ଅର୍ଜ୍ଜୁନ ବୋଇଲେ—କି କାରଣରୁ ବ୍ରହ୍ମଜ୍ଞବର ଗୁରୁଙ୍କଠାରେ ରାଜା କଲ୍ମାଷପାଦ ସ୍ୱକୀୟ ଭାର୍ଯ୍ୟାଙ୍କୁ ସନ୍ନିଯୋଜିତ କଲେ ? । ୧ । ମହାତ୍ମା ବଶିଷ୍ଠ ମହର୍ଷି ଧର୍ମ୍ମର ଶ୍ରେଷ୍ଠତ୍ୱ ଜାଣି କି କାରଣରୁ ଅଗମ୍ୟ ଗମନ କଲେ । ୨ । ହେ ସଖେ ! ପୂର୍ବେ କି କେବେ ବଶିଷ୍ଠ ଏତାଦୃଶ ଅଧର୍ମ୍ମ କର୍ମ୍ମ କରିଥିଲେ ? ଏ ବିଷୟ ଆମ୍ଭେ ପ୍ରଶ୍ନ କରୁଅଛୁଁ, ଏଥିରେ ଆମ୍ଭର ଯେଉଁ ସଂଶୟ ଅଛି, ତାହା ଛେଦନ କରିବା ହେଉନ୍ତୁ । ୩ ।

ଗନ୍ଧର୍ବ ବୋଇଲେ—ହେ ଧନଞ୍ଜୟ ! ଦୁର୍ଦ୍ଧର୍ଷ ! ତୁମ୍ଭେ ବଶିଷ୍ଠଙ୍କର ଓ ସେହି ମିତ୍ର-ପାଳକ ରାଜାଙ୍କର ବିଷୟ ଯାହା ପ୍ରଶ୍ନ କଲ, ତାହା ବର୍ଣ୍ଣନ କରୁଅଛୁଁ, ଶ୍ରବଣ କର । ୪ । ହେ ଭରତ-ଶ୍ରେଷ୍ଠ ! ମହାତ୍ମା ବଶିଷ୍ଠ-ପୁତ୍ର ଶକ୍ତିଙ୍କ ଦ୍ୱାରା ଯେପରି ସେ ପାର୍ଥିବ ଅଭିଶପ୍ତ ହୋଇଥିଲେ, ତାହା ଆପଣଙ୍କୁ କହୁଅଛୁଁ । ୫ । ପରନ୍ତପ କଲ୍ମାଷପାଦ ଶାପର ବଶୀଭୂତ ଓ କ୍ରୋଧରେ ଆକୁଳିତ ନୟନ ହୋଇ ଦାରାଙ୍କ ସହ ପୁରରୁ ବହିର୍ଗମନ କଲେ । ୬ । ନାନାବିଧ ମୃଗଗଣାକୀର୍ଣ୍ଣ, ନାନାଜୀବ-ସମାକୁଳ, ନାନା ଗୁଳ୍ମ ଓ ଲତାଚ୍ଛନ୍ନ, ନାନାଦ୍ରୁମ ସମାବୃତ ଓ ଭୟଙ୍କର ନାଦଯୁକ୍ତ ନିର୍ଜ୍ଜନ ଅରଣ୍ୟରେ ସେ ଶାପଗ୍ରସ୍ତ ହୋଇ ଭାର୍ଯ୍ୟାଙ୍କ ସହିତ ପରିଭ୍ରମଣ କଲେ । ୮ । ଦିନକରେ ସେ କ୍ଷୁଧାବିଷ୍ଟ ହୋଇ ଭକ୍ଷ୍ୟ ଦ୍ରବ୍ୟ ଅନ୍ୱେଷଣ କରୁଁ କରୁଁ ଅତିଶୟ କ୍ଳାନ୍ତିଯୁକ୍ତ ହୋଇ କୌଣସି ଗୋଟିଏ ନିର୍ଜ୍ଜନ ବନରେ ଜଣେ ବ୍ରାହ୍ମଣ ଓ ବ୍ରାହ୍ମଣୀକୁ ମୈଥୁନାସକ୍ତ ବିଲୋକନ କଲେ । ସେ ଦୁହେଁ ରାଜାଙ୍କୁ ଦେଖି ଅତିଶୟ ତ୍ରସ୍ତ

ଓ ଅକୃତାର୍ଥ ହୋଇ ଦଉଡ଼ି ପଳାଇଲେ । ୧୦ । ଧାବିତ ହେବା ବେଳେ ସେ ଦୁହିଙ୍କ ମଧ୍ୟରୁ ବ୍ରାହ୍ମଣଙ୍କୁ ରାଜା ବଳପୂର୍ବକ ଗ୍ରହଣ କଲେ । ଭର୍ତ୍ତାଙ୍କୁ ଗୃହୀତ ହେବାର ଦେଖି ବ୍ରାହ୍ମଣୀ ବୋଇଲେ—ହେ ସୁବ୍ରତ । ରାଜନ୍ । ତୁମ୍ଭେ ଆଦିତ୍ୟ ବଂଶରେ ଜାତ ବୋଲି ଲୋକରେ ବିଶ୍ରୁତ ହୋଇଅଛ, ଆମ୍ଭେ ଯାହା କହୁଅଛୁଁ ଶ୍ରବଣ କର । ୧୨ ।

ହେ ଦୁର୍ଦ୍ଧର୍ଷ । ଅଧୁନା ତୁମ୍ଭେ ଶାପରେ ହତବୁଦ୍ଧି ହୋଇ ଥିବାରୁ ତୁମ୍ଭର ପାପକର୍ମ୍ମ କରିବା ବିଧେୟ ନୁହେ; ତୁମ୍ଭେ ଅପ୍ରମତ୍ତ ହୋଇ ଗୁରୁ ଶୁଶ୍ରୂଷାରେ ରତ ଥାଇ ଧର୍ମାଚରଣ କର ବୋଲି ଲୋକରେ ପ୍ରସିଦ୍ଧ ଅଛ । ୧୩ । ସମ୍ପ୍ରତି ଆମ୍ଭର ଋତୁକାଳ ଉପସ୍ଥିତ ହେବାରୁ ଭର୍ତ୍ତୃ ବ୍ୟସନରେ ଅକୃଷ୍ଟା ହୋଇ ସନ୍ତାନ ନିମିତ୍ତ ଭର୍ତ୍ତାଙ୍କ ସହିତ ସମାଗତ ହୋଇଥିଲୁଁ, କିନ୍ତୁ ତହିଁରେ କୃତାର୍ଥ ହୋଇନାହୁଁ; ହେ ନୃପତି ଶ୍ରେଷ୍ଠ । ତୁମ୍ଭେ ପ୍ରସନ୍ନ ହୁଅ, ଆମ୍ଭର ଭର୍ତ୍ତାଙ୍କୁ ପରିତ୍ୟାଗ କର । ୧୫ । ବ୍ରାହ୍ମଣୀ ଏହିପରି ଚିତ୍କାର କରୁଥିଲେ; କିନ୍ତୁ ସେ ନୃପତି ନୃଶଂସ ପ୍ରାୟ ହୋଇ ବ୍ୟାଘ୍ର ଯେପରି ମୃଗକୁ ଭକ୍ଷଣ କରେ ତଦ୍‌ବତ୍ ତାହାଙ୍କର ଭର୍ତ୍ତାଙ୍କୁ ଭକ୍ଷଣ କଲେ । କ୍ରୋଧାଭିଭୂତ ସେହି ନାରୀଙ୍କର ନୟନରୁ ଯେଉଁ ଅଶ୍ରୁ ଭୂମିରେ ନିପତିତ ହେଲା, ସେ ଅଗ୍ନି ହୋଇ ସେହି ସ୍ଥାନକୁ ଭସ୍ମ କଲା । ତଦନନ୍ତର ସେ ବ୍ରାହ୍ମଣୀ ଭର୍ତ୍ତୃ-ବିପ୍ରୟୋଗ ବ୍ୟସନରେ କର୍ଷିତ ଓ ଶୋକ-ସନ୍ତପ୍ତ ହୋଇ କ୍ରୋଧପୂର୍ବକ କଲ୍ମାଷପାଦ ରାଜର୍ଷିଙ୍କୁ ଅଭିଶାପ ଦେଲେ । ରେ କ୍ଷୁଦ୍ରାଶୟ । ଆମ୍ଭେ ସମ୍ଭୋଗ ସୁଖରେ ପରିତୃପ୍ତ ନୋହୁଁ । ନୃଶଂସ ପ୍ରାୟ ଆମ୍ଭ ସମକ୍ଷରେ ଆମ୍ଭର ପ୍ରିୟ ଓ ମହାଯଶସ୍ୱୀ ଭର୍ତ୍ତାଙ୍କୁ ଭକ୍ଷଣ କଲୁ, ଅତଏବ, ରେ ଦୁର୍ବୁଦ୍ଧି । ଆମ୍ଭ ଶାପରେ ତୁ ବିକ୍ଷତ ହୋଇ ଋତୁକାଳରେ ପତ୍ନୀନିକଟକୁ ଗମନ କଲେ, ତତ୍‌କ୍ଷଣାତ୍ ତୁ ଜୀବନ ତ୍ୟାଗ କରିବୁ; ଯେଉଁ ବଶିଷ୍ଠଙ୍କର ପୁତ୍ରମାନେ ତୋ ଦ୍ୱାରା ବିନଷ୍ଟ ହୋଇ ଅଛନ୍ତି, ତାହାଙ୍କ ସହିତ ତୋର ଭାର୍ଯ୍ୟା ସଙ୍ଗତ ହୋଇ ପୁତ୍ର ଜନ୍ମ କରିବ; ରେ ନୃପାଧମ । ସେହି ପୁତ୍ର ତୋର ବଂଶ ରକ୍ଷା କରିବ । ୨୧ ।

ଏହିପରି ଅଭିଶାପ ପ୍ରଦାନ କରି ଅଙ୍ଗିରା ଋଷିଙ୍କର କୁଳସମ୍ଭୂତା ସେହି ବ୍ରାହ୍ମଣୀ ତାହାଙ୍କ ସନ୍ନିଧିରେ ପ୍ରଦୀପ୍ତ ହୁତାଶନରେ ପ୍ରବେଶ କଲେ । ହେ ପରନ୍ତପ । ମହାଭାଗ ବଶିଷ୍ଠ ଜ୍ଞାନ-ଯୋଗଦ୍ୱାରା ଓ ମହତୀ ତପସ୍ୟା ପ୍ରଭାବରୁ ଉକ୍ତ ସମସ୍ତ ବିଷୟ ଅବଗତ ହୋଇଥିଲେ । ୨୩ ।

ଅନନ୍ତର ବହୁଦିନ ଉତ୍ତାରୁ ରାଜା ଶାପ ମୁକ୍ତ ହେବା ପରେ ଋତୁକାଳରେ ରାଜ୍ଞୀଙ୍କ ସହବାସ କରିବାକୁ ପ୍ରବୃତ୍ତ ହେବାରୁ ମଦୟନ୍ତୀଙ୍କ ଦ୍ୱାରା ନିବାରିତ ହେଲେ । ୨୯ । ନୃପତି କାମମୋହିତ ହୋଇଥିବାରୁ ସେ ଅଭିଶାପକୁ ସ୍ମରଣ କଲେ ନାହିଁ; କିନ୍ତୁ ସେ ନୃପସତ୍ତମ ରାଜ୍ଞୀଙ୍କର ବଚନ ଶ୍ରବଣ କରି ସମ୍ଭ୍ରମଯୁକ୍ତ ହେଲେ । ୨୫ ।

ଅତଏବ ହେ ନରଶ୍ରେଷ୍ଠ ! ରାଜା କଲ୍ମାଷପାଦ ଶାପଦୋଷ ଗ୍ରସ୍ତ ହୋଇଥିବାରୁ ସ୍ୱକୀୟ ଦାରଙ୍କ ଠାରେ ବଶିଷ୍ଠଙ୍କୁ ନିଯୁକ୍ତ କଲେ । ୨୭ ।

---

## ଅଧ୍ୟାୟ—୧୮୩

ଅର୍ଜୁନ ବୋଇଲେ—ହେ ଗନ୍ଧର୍ବ ! ଆପଣଙ୍କ ସବୁ ବିଷୟ ବିଦିତ ଅଛି; ଅତଏବ. ଆମ୍ଭମାନଙ୍କର ପୁରୋହିତ ହେବାର ଯୋଗ୍ୟ ଯେଉଁ ବେଦାଧ୍ୟୟନକାରୀ ବ୍ରାହ୍ମଣ ଅଛନ୍ତି, ତାହାଙ୍କର ନାମ କୀର୍ତ୍ତନ କର । ୧ ।

ଗନ୍ଧର୍ବ ବୋଇଲେ—ବନ ମଧ୍ୟରେ ଉତ୍କୋଚକ ନାମକ ତୀର୍ଥରେ ଦେବଲଙ୍କର ଯବିଷ୍ଠ* ଭ୍ରାତା ଧୌମ୍ୟ ତପସ୍ୟା କରୁଅଛନ୍ତି । ଯେବେ ଇଚ୍ଛା ହୁଏ ତେବେ ତାହାଙ୍କୁ ପୌରୋହିତ୍ୟ କାର୍ଯ୍ୟରେ ବରଣ କର । ୨ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ଅର୍ଜୁନ ପ୍ରୀତ ହୋଇ ସେହି ଗନ୍ଧର୍ବଙ୍କୁ ବିଧାନାନୁସାରେ ଆଗ୍ନେୟାସ୍ତ୍ରକୁ ପ୍ରଦାନ କରି କହିଲେ, ହେ ଗନ୍ଧର୍ବସତ୍ତମ ! ହୟମାନେ ଆପଣଙ୍କ ଠାରେ ଥାଉନ୍ତୁ, କାର୍ଯ୍ୟକାଳେ ଆମ୍ଭେ ସେମାନଙ୍କୁ ଗ୍ରହଣ କରିବୁଁ; ତୁମ୍ଭର ମଙ୍ଗଳ ହେଉ । ୪ । ଗନ୍ଧର୍ବ ଓ ପାଣ୍ଡବମାନେ ପରସ୍ପର ଅଭିବାଦନାଦି ଦ୍ୱାରା ପୃଥକ୍ ହୋଇ ଭାଗୀରଥୀ ତୀରରୁ ଆପଣାର ଅଭିପ୍ରେତ ଦିଗକୁ ଗମନ କଲେ । ୫ ।

ହେ ଭାରତ ! ତଦନନ୍ତର ପାଣ୍ଡବମାନେ ଉତ୍କୋଚକ ତୀର୍ଥକୁ ଗମନ କରି ଧୌମ୍ୟଙ୍କ ଆଶ୍ରମରେ ଉପସ୍ଥିତ ହୋଇ ଧୌମ୍ୟଙ୍କୁ ପୌରୋହିତ୍ୟ ନିମିତ୍ତ ଅନୁନୟ କଲେ । ବେଦଜ୍ଞବର ଧୌମ୍ୟ ବନ୍ୟ ଫଳ ମୂଳ

---

* ଯବିଷ୍ଠ—ସର୍ବକନିଷ୍ଠ ।

ଦ୍ୱାରା ପାଣ୍ଡବମାନଙ୍କର ସତ୍କାର କରି ସେମାନଙ୍କର ପୌରୋହିତ୍ୟ ସ୍ୱୀକାର କଲେ । ୭ । ମାତାଙ୍କ ସହିତ ପାଣ୍ଡବ ଛଅ ଜଣେ ତତ୍କାଳରେ ସେହି ବ୍ରାହ୍ମଣଙ୍କୁ ଗୁରୁସ୍ୱରୂପ ପ୍ରାପ୍ତ ହୋଇ, ରାଜ୍ୟ, ରାଜଲକ୍ଷ୍ମୀ ଓ ସ୍ୱୟଂବରା ପାଞ୍ଚାଳୀଙ୍କୁ ଲାଭ କଲେ ବୋଲି ବିବେଚନା କଲେ । ୮ । ଭରତର୍ଷଭମାନେ ଗୁରୁସ୍ୱରୂପ ସେହି ପୁରୋହିତଙ୍କୁ ପ୍ରାପ୍ତ ହୋଇ ଆପଣାକୁ ସନାଥ ବୋଲି ଜ୍ଞାନ କଲେ । ୯ । ବେଦାର୍ଥ ତତ୍ତ୍ୱଜ୍ଞ, ଉଦାରବୁଦ୍ଧି ଓ ଧର୍ମଜ୍ଞ ଧୌମ୍ୟ-ଗୁରୁ ସେମାନଙ୍କର ଯାଜ୍ୟ-କ୍ରିୟାରେ ମଧ ନିଯୁକ୍ତ ହେଲେ । ୧୦ । ବୁଦ୍ଧି, ବୀର୍ଯ୍ୟ, ବଳ ଓ ଉତ୍ସାହ ସମନ୍ୱିତ, ଦେବସଦୃଶ ପାଣ୍ଡବମାନଙ୍କୁ ସ୍ୱଧର୍ମରତ ଓ ବୀର ଦେଖି ସେ ଦ୍ୱିଜ ବିଚାରିଲେ ଯେ ସେମାନେ ରାଜ୍ୟପ୍ରାପ୍ତ ଓ ଲବ୍ଧ ମନୋରଥ ହେଲେ ।୧୧। ତଦନନ୍ତର ଧୌମ୍ୟ ମନୁଜଶ୍ରେଷ୍ଠ ପାଣ୍ଡବମାନଙ୍କର ସ୍ୱସ୍ତ୍ୟୟନ ସରନ୍ତେ ସମସ୍ତେ ସଙ୍ଗ ହୋଇ ପାଞ୍ଚାଳୀଙ୍କ ସ୍ୱୟମ୍ବରକୁ ଗମନ କରିବାର ମାନସ କଲେ । ୧୨ ।

---

## ଅଧ୍ୟାୟ—୧୮୪

ବୈଶମ୍ପାୟନ ବୋଇଲେ—ତଦନନ୍ତର ନରଶାର୍ଦ୍ଦୂଳ ପଞ୍ଚଭ୍ରାତା ପାଣ୍ଡବମାନେ ଏକତ୍ର ହୋଇ ମହୋତ୍ସବ ଯୁକ୍ତ ପାଞ୍ଚାଳ ଦେଶ ଓ ଦ୍ରୌପଦୀଙ୍କୁ ଦର୍ଶନ କରିବା ନିମିତ୍ତ ପ୍ରସ୍ଥାନ କଲେ । ୧ । ପରନ୍ତପ ନରବ୍ୟାଘ୍ର ପାଣ୍ଡବମାନେ ମାତାଙ୍କ ସହ ଗମନ କରୁ କରୁ ପଥରେ ବହୁସଂଖ୍ୟକ ବ୍ରାହ୍ମଣମାନଙ୍କ ସଙ୍ଗତ ହୋଇଥିବାର ଦେଖିଲେ । ୨ । ହେ ରାଜନ୍ । ସେହି ବ୍ରାହ୍ମଣମାନେ ବ୍ରହ୍ମଚାରୀ ବେଶଧାରୀ ପାଣ୍ଡବମାନଙ୍କୁ ପ୍ରଶ୍ନକଲେ, ଆପଣମାନେ କେଉଁଠାକୁ ଗମନ କରୁଅଛନ୍ତି ଓ କେଉଁଠାରୁ ଏଠାକୁ ଆସିଲେ ? । ୩ ।

ଯୁଧିଷ୍ଠିର ବୋଇଲେ—ହେ ଦ୍ୱିଜର୍ଷଭ ବୃନ୍ଦ । ଅମ୍ଭେ ସମସ୍ତେ ସହୋଦର, ମାତାଙ୍କ ସହିତ ଆଉଁ ଓ ଏକତ୍ର ଭ୍ରମଣ କରୁଁ; ଅଧୁନା ଏକଚକ୍ରା ନଗରୀରୁ ଆଗମନ କରୁଅଛୁଁ, ଆପଣମାନେ ଜାଣିବା ହେଉନ୍ତୁ । ୪ ।

ବ୍ରାହ୍ମଣ ମାନେ ବୋଇଲେ—ଅଦ୍ୟ ଆପଣମାନେ ପାଞ୍ଚାଳ ଦେଶକୁ ଗମନ କରନ୍ତୁ, ସେଠାରେ ଦ୍ରୁପଦ ରାଜାଙ୍କ ନିବେଶନରେ

ବହୁବ୍ୟୟ-ସାଧ୍ୟ ମହା ସ୍ୱୟମ୍ବର ସଜ୍ଜ ହେବ । ୫ । ଅମ୍ଭେମାନେ ସେହିଠାକୁ ଗମନ କରୁଅଛୁଁ, ଚାଲନ୍ତୁ ଏକା ସଙ୍ଗରେ ଯିବା; ସେଠାରେ ଅଦ୍ଭୁତ, ସୁନ୍ଦର ଓ ମହାନ୍ ଉତ୍ସବ ହେବ । ୭ । ମହାତ୍ମା ଯଜ୍ଞସେନ ଦ୍ରୁପଦଙ୍କ ଦୁହିତା, ଯେ ବେଦୀ ମଧ୍ୟରୁ ସମ୍ଭୂତା ହୋଇ ଅଛନ୍ତି ଓ ଯାହାଙ୍କର ଲୋଚନ ପଦ୍ମପତ୍ର ସଦୃଶ; ଯେଉଁ ଅନବଦ୍ୟାଙ୍ଗୀ, ପରମା ସୁନ୍ଦରୀ, ସୁକୁମାରୀ ଓ ମନସ୍ୱିନୀ ଅଟନ୍ତି; ଯେ ପ୍ରତାପଶାଳୀ ଦ୍ରୋଣଶତ୍ରୁ ଧୃଷ୍ଟଦ୍ୟୁମ୍ନଙ୍କର ଭଗ୍ନୀ ଅଟନ୍ତି; ଯେଉଁ ମହାବାହୁ କବଚ, ଖଡ଼୍ଗ ଓ ସଶର ଶରାସନ ଧାରଣ କରି ପ୍ରଜ୍ୱଳିତ ପାବକ ମଧ୍ୟରୁ ପାବକ ପରି ହୋଇ ଜାତ ହୋଇ ଅଛନ୍ତି, ତାହାଙ୍କର ଯେଉଁ ତନୁ-ମଧ୍ୟମା ଦ୍ରୌପଦୀ ଭଗିନୀ ଅଟନ୍ତି ଓ ଯାହାଙ୍କ ଦେହରୁ ନୀଳୋତ୍ପଳ ସଦୃଶ ଗନ୍ଧ ଏକକ୍ରୋଶ ଦୂରରୁ ବାୟୁଦ୍ୱାରା ଉପଲବ୍ଧ ହୁଏ; ଯଜ୍ଞସେନଙ୍କର ସେହି ଦୁହିତା ସ୍ୱୟଂବର ନିମିତ୍ତ ପ୍ରସ୍ତୁତ ଅଛନ୍ତି, ଆମ୍ଭେମାନେ ତାହାଙ୍କୁ ଓ ଦିବ୍ୟ ମହୋତ୍ସବକୁ ଦେଖିବା ନିମିତ୍ତ ଗମନ କରୁଅଛୁଁ । ୧୧ ।

ସେଠାକୁ ଭୂରି ଦକ୍ଷିଣା ପ୍ରଦ, ଯଜ୍ଞଶୀଳ, ସ୍ୱାଧ୍ୟାୟ ନିରତ, ପବିତ୍ର ସ୍ୱଧର୍ମ ନିଷ୍ଠ, ମହାତ୍ମା, ତରୁଣ ବୟସ୍କ, ସୌନ୍ଦର୍ଯ୍ୟଶୀଳ, ଅସ୍ତ୍ରବିଦ୍ୟା ବିଶାରଦ, ମହାରଥୀ ଭୂମିପାଳ—ରାଜାମାନେ ଓ ରାଜପୁତ୍ରମାନେ ନାନା ଦେଶରୁ ସମାଗତ ହେବେ । ୧୩ । ସେହି ନରେଶ୍ୱରମାନେ ସେଠାରେ ବିଜୟ ଲାଭ କରିବା ନିମିତ୍ତ ବିବିଧ ପ୍ରକାର ଦାନ, ଧନ, ଧେନୁ ଓ ଭକ୍ଷ୍ୟ ଭୋଜ୍ୟ ପ୍ରଭୃତି ସମସ୍ତଙ୍କୁ ପ୍ରଦାନ କରିବେ । ୧୪ । ଅମ୍ଭେମାନେ ସେ ସମସ୍ତ ଦ୍ରବ୍ୟ ଗ୍ରହଣ କରି, ସ୍ୱୟମ୍ବରକୁ ଦର୍ଶନ କରି ଓ ଉତ୍ସବକୁ ଅନୁଭବ ଯଥାଭିଳାଷିତ ସ୍ଥାନକୁ ଗମନ କରିବୁଁ । ୧୫ । ସେହି ସ୍ୱୟମ୍ବରକୁ ନାନା ଦେଶରୁ ନଟମାନେ (୧), ନର୍ତ୍ତକମାନେ (୨), ବୈତାଳିକ ମାନେ (୩) ସୂତମାନେ (୪) ମାଗଧମାନେ (୫) ଓ ମହାବଳ ମଲ୍ଲଯୋଦ୍ଧା ମାନେ ସମାଗତ ହେବେ । ୧୬ ।

ହେ ମହାତ୍ମାଗଣ ! ଆପଣମାନେ ମଧ୍ୟ ଏହିପରି କୌତୂହଳ କରି, ସ୍ୱୟମ୍ବର ଦେଖି ଓ ପ୍ରତିଗ୍ରହ କରି ଆମ୍ଭମାନଙ୍କ ସହିତ ପ୍ରତ୍ୟାବର୍ତ୍ତନ କରିବେ

(୧) ନଟ—ବିବିଧ ପ୍ରକାର ବେଶଧାରୀ (୨) ନର୍ତ୍ତକ—ନୃତ୍ୟକାରୀ (୩) ବୈତାଳିକ—ଭାଟ (୪) ସୂତମାନେ—ପୁରାଣ ପାଠକମାନେ (୫) ମାଗଧ—ବଂଶାବଳୀର ନାମ କର୍ତ୍ତା ।

ପ୍ରତନବୃତ୍ତ ହେବେ । ୧୭ । ପୁନଶ୍ଚ ଆପଣମାନେ ସମସ୍ତେ ଦେବ ସଦୃଶ ରୂପବାନ୍, କୃଷ୍ଣା ଦେଖି, ହୁଏତ ଆପଣମାନଙ୍କ ମଧ୍ୟରୁ ଜଣକୁ ବରଣ କରି ପାରନ୍ତି । ୧୮ । ବିଶେଷରେ ଆପଣଙ୍କର ଏହି ଭ୍ରାତା, ଶ୍ରୀମାନ୍ ସୁନ୍ଦର ଓ ମହାଭୁଜ ଅଛନ୍ତି; ଏହାଙ୍କୁ ନିଯୋଜିତ କଲେଁ ଏ ସ୍ୱୟମ୍ବରରେ ଜୟୀ ହୋଇ ବହୁଦ୍ରବ୍ୟ ଲଭି କରି ପାରନ୍ତି ଓ ସେ ଦ୍ରବ୍ୟ ଆହରଣ କରି, ଆପଣମାନଙ୍କର ସମସ୍ତଙ୍କର ପ୍ରୀତିବର୍ଦ୍ଧନ କରି ପାରନ୍ତି । ୧୯ ।

ଯୁଧିଷ୍ଠିର ବୋଇଲେ—ହେ ମହାତ୍ମା ବିପ୍ର ! ଆପଣମାନଙ୍କ ସହିତ ଆମ୍ଭେମାନେ ମଧ୍ୟ ଦ୍ରୌପଦୀଙ୍କର ସେହି ସ୍ୱୟମ୍ବର ଓ ମହୋତ୍ସବ ଦେଖିବାକୁ ଗମନ କରିବୁଁ । ୨୦ ।

---

## ଅଧ୍ୟାୟ—୨୮୪

ବୈଶମ୍ପାୟନ ବୋଇଲେ—ହେ ଜନମେଜୟ ! ଏହିପରି ପାଣ୍ଡବମାନେ କହି ଦ୍ରୁପଦ ରାଜାଙ୍କ ପାଳିତ ଦକ୍ଷିଣ ପାଞ୍ଚାଳ ଦେଶକୁ ଗମନ କଲେ । ୧ । ତତ୍ପରେ ସେମାନେ ଅକଳ୍ମଷ, ଶୁଦ୍ଧାତ୍ମା ଓ ମହାତ୍ମା ଦ୍ୱୈପାୟନଙ୍କ ଦର୍ଶନ କଲେ ।୨। ପାଣ୍ଡବମାନେ ତାହାଙ୍କ ଯଥାବିଧି ସତ୍କାର ଓ ଦ୍ୱୈପାୟନ ମଧ୍ୟ ପାଣ୍ଡବମାନଙ୍କୁ ଆଶୀର୍ବାଦ କଲେ; କଥାଶେଷ ପରେ ଦ୍ୱୈପାୟନଙ୍କର ଅନୁଜ୍ଞା ଗ୍ରହଣ କରି ପାଣ୍ଡବମାନେ ଦ୍ରୁପଦଙ୍କ ଦେଶକୁ ଗମନ କଲେ । ୩ । ପଥରେ ରମଣୀୟ ବନ ଓ ସରୋବର ମାନଙ୍କୁ ଦେଖି ଦେଖି ଓ ସେ ସ୍ଥାନରେ ରହି ରହି, ସ୍ୱାଧ୍ୟାୟଶୀଳ, ପବିତ୍ର, ସୁନ୍ଦର କାନ୍ତ, ପ୍ରିୟବାଦୀ ଓ ମହାରଥ ପାଣ୍ଡୁନନ୍ଦନ ମାନେ ଶନୈଃ-ଶନୈଃ ଗମନ କରି କ୍ରମଶଃ ପାଞ୍ଚାଳ ଦେଶରେ ଉପଗତ ହେଲେ । ୫ । ଉତ୍ସବପୂର୍ଣ୍ଣ ପାଞ୍ଚାଳ ନଗର ଓ ତନ୍ନିକଟସ୍ଥ ସେନା ନିବେଶ-ମାନଙ୍କୁ ଦର୍ଶନ କରି ଗୋଟିଏ କୁମ୍ଭକାର ଶାଳାରେ ବାସ ସ୍ଥାପନ କଲେ ।୬। ସେଠାରେ ବ୍ରାହ୍ମଣ ବୃତ୍ତି ଅବଲମ୍ବନ ପୂର୍ବକ ଭିକ୍ଷୋପଜୀବୀ ହୋଇ ଅବସ୍ଥାନ କଲେ; ତହିଁରେ ସେହି ସମାଗତ ବୀରମାନଙ୍କୁ କେହି ଚିହ୍ନି ପାରିଲେ ନାହିଁ । ୭ ।

ରାଜା ଯଜ୍ଞସେନଙ୍କ ମନରେ ସର୍ବଦା ଏହି ବାଞ୍ଛା ଥିଲା ଯେ, ସେ ପାଣ୍ଡୁ-ପୁତ୍ର କିରୀଟୀଙ୍କୁ କୃଷ୍ଣାଙ୍କୁ ପ୍ରଦାନ କରିବେ; କିନ୍ତୁ ସେ

ଏକଥା କାହାରିଠାରେ ପ୍ରକାଶ କଲେ ନାହିଁ । ୮ । ହେ ଜନମେଜୟ ! ସେହି ପଞ୍ଚାଳ ଦେଶାଧିପତି କୁନ୍ତୀପୁତ୍ରଙ୍କୁ ଅନେକ ଅନ୍ୱେଷଣ କଲେ; କିନ୍ତୁ ତାହାଙ୍କୁ ପ୍ରାପ୍ତ ନ ହେବାରୁ ହେ ଭାରତ । ଅନ୍ୟର ଅନମନୀୟ ଗୋଟିଏ ଦୃଢ଼ ଧନୁ ପ୍ରସ୍ତୁତ କରାଇଲେ; ଆକାଶରେ ଗୋଟିଏ କୃତ୍ରିମ ଯନ୍ତ୍ର ପ୍ରସ୍ତୁତ କରାଇ ସେହି ଯନ୍ତ୍ରରେ ଗୋଟିଏ ଚଳ ଲକ୍ଷ୍ୟକୁ ସଂଯୁକ୍ତ କରାଇଲେ । ୧୦ ।

ଦ୍ରୁପଦ ବୋଇଲେ—ଯେଉଁ ବ୍ୟକ୍ତି ଏହି ଶରାସନରେ ଗୁଣ ଦେଇ ଏହି ସଜ୍ଜିତ ସାୟକ ଦ୍ୱାରା ସେହି ଯନ୍ତ୍ରକୁ ଅତିକ୍ରମ କରି ତାହାର ପର ପାର୍ଶ୍ୱବର୍ତ୍ତୀ ଲକ୍ଷ୍ୟକୁ ବିଦ୍ଧ କରିବେ, ସେହି ବ୍ୟକ୍ତି ଅମ୍ଭ ସୁତାଙ୍କୁ ଲାଭ କରିବେ । ୧୧ ।

ବୈଶମ୍ପାୟନ ବୋଇଲେ—ହେ ଭାରତ ! ରାଜା ଦ୍ରୁପଦ ଏହିପରି ସ୍ୱୟମ୍ବରର ଘୋଷଣା ଦେଇଅନ୍ତେ, ପାର୍ଥିବମାନେ ସମସ୍ତେ ତାହା ଶୁଣି ସେଠାରେ ସମାଗତ ହେଲେ । ୧୨ । ହେ ନୃପ । ସ୍ୱୟମ୍ବର ଦର୍ଶନ କରିବା ନିମିତ୍ତ ମହାତ୍ମା ଋଷିମାନେ ଓ କର୍ଣ୍ଣଙ୍କ ସହିତ ଦୁର୍ଯ୍ୟୋଧନାଦି କୁରୁବଂଶୀୟମାନେ ଓ ନାନା ଦିଗ୍‌ଦେଶରୁ ବ୍ରାହ୍ମଣମାନେ, ମହାଭାଗ୍ୟବନ୍ତ ଲୋକମାନେ ସମାଗତ ହୋଇଥିଲେ । ତତ୍ପରେ ମହାତ୍ମା ଦ୍ରୁପଦଙ୍କ ଦ୍ୱାରା ରାଜଗଣମାନେ ଅର୍ଚ୍ଚିତ ହୋଇ ସ୍ୱୟମ୍ବର ଦର୍ଶନ କାମନାରେ ସମୀପବର୍ତ୍ତୀ ମଞ୍ଚନିଚୟୋପରି ଉପବିଷ୍ଟ ହେଲେ । ତଦନନ୍ତର ସାଗରୋଦ୍ଧୃତ ନିଃସ୍ୱନାରେ ସମସ୍ତ ପୌରଜନ ମାନେ ଓ ପାର୍ଥିବ ମାନେ ଶିଶୁମାରଶିର ନାମକ ସ୍ଥାନରେ ଉପସ୍ଥିତ ହୋଇ ବସିଲେ । ନଗରର ଐଶାନ୍ୟ କୋଣରେ ସମ ଓ ସୁନ୍ଦର ଭୂମି ତଳରେ ସର୍ବପାର୍ଶ୍ୱରୁ ଭବନରେ ପରିବୃତ ହୋଇ ସମାଜ ପ୍ରାଙ୍ଗଣ ସୁଶୋଭିତ ହୋଇଥିଲା । ୧୬ । ପ୍ରାକାର ଓ ପରିଖାରେ ସେହି ସମାଜ ଗୃହ ପରିବେଷ୍ଟିତ, ଦ୍ୱାର ତୋରଣରେ ମଣ୍ଡିତ, ସର୍ବତ୍ର ବିଚିତ୍ର ଚନ୍ଦ୍ରାତପରେ ସମଲଙ୍କୃତ, ଶତ ଶତ ତୂର୍ଯ୍ୟ ସମୂହରେ ନିନାଦିତ, ଉତ୍କୃଷ୍ଟ ଅଗୁରୁ ଚନ୍ଦନରେ ଧୂପିତ, ଚନ୍ଦନୋଦକରେ ପରିଷିକ୍ତ, ମାଲ୍ୟଦାମରେ ଉପଶୋଭିତ ହୋଇଥିଲା । ୧୮ । ତହିଁର ସର୍ବପାର୍ଶ୍ୱରେ କୈଳାଶଶିଖର ସଦୃଶ ଶୁଭ୍ର ଓ ଉଚ୍ଚ ଏବଂ ଆକାଶ ତଳରେ ବିଲେଖିତ ହେଲା ପ୍ରାୟ ସୁନ୍ଦର ପ୍ରାସାଦରେ ସର୍ବଦିଗରୁ ସମ୍ବୃତ ହୋଇଥିଲା । ୧୯ । ସେହି ପ୍ରାସାଦ ନିକର ସୁବର୍ଣ୍ଣ ଜାଲ ସମୂହରେ ମଣ୍ଡିତ, ମଣିମୟ କୁଟ୍ଟିମରେ ଭୂଷିତ, ସୁଖାରୋହଣ ସୋପାନଯୁକ୍ତ, ମହାସନ ଓ ପରିଚ୍ଛଦରେ ସମନ୍ୱିତ,

ମାଳାଦାମ ଦ୍ୱାରା ସମାବୃତ, ଉତ୍ତମ ଅଗୁରୁ ଦ୍ୱାରା ସୁବାସିତ, ସୁଗନ୍ଧ ଓ ହଂସବର୍ଣ୍ଣ ସଦୃଶ ପୁଷ୍ପଗୁଚ୍ଛରେ ସୁମଣ୍ଡିତ ହୋଇଥିଲା । ୨୧ । ତହିଁରେ ଶତ ଶତ ଦ୍ୱାର ସବୁ ସମସୂତ୍ରପାତରେ ବିନ୍ୟସ୍ତ ହୋଇଥିଲା, ଶଯ୍ୟା ଓ ଆସନ ନିବହରେ ସୁଶୋଭିତ ହୋଇଥିଲା । ବହୁବିଧ ଧାତୁରେ ପିନଦ୍ଧ ହୋଇଥିବାରୁ ହିମାଳୟ ଶିଖର ଦେଶର ଶୋଭା ଧାରଣ କରିଥିଲା । ୨୨ ।

ତନ୍ମଧ୍ୟରେ ପାର୍ଥିବମାନେ ସମସ୍ତେ ନାନାପ୍ରକାର ବିମାନରେ ପରସ୍ପର ସ୍ପର୍ଦ୍ଧାଶୀଳ ହୋଇ ନିଷଣ୍ଣ ହୋଇଥିଲେ । ୨୩ । ସେଠାରେ ମହାବଳ, ମହାପରାକ୍ରମଶାଳୀ, କୃଷ୍ଣାଗୁରୁ ବିଭୂଷିତ ମହାଭାଗ୍ୟଶାଳୀ ରାଜସିଂହ ମାନଙ୍କୁ ଉପବିଷ୍ଟ ହୋଇଥିବାର ଦେଖିଲେ । ୨୪ । ସେ ନୃପତିମାନେ ମହା-ପ୍ରସାଦ-ଗୁଣ ସମ୍ପନ୍ନ, ବ୍ରହ୍ମଣ୍ୟ, ସ୍ୱରାଷ୍ଟ୍ର ପରିରକ୍ଷକ, ସର୍ବ ପ୍ରଜାବର୍ଗଙ୍କର ପ୍ରିୟପାତ୍ର ଓ ଶୁଭକର୍ମାଚରଣ ଦ୍ୱାରା ସୁକୀର୍ତ୍ତି ଥିଲେ । ୨୫ । ସେମାନଙ୍କୁ ଉପବିଷ୍ଟ ହେବାର ବିଲୋକନ କରି ନଗରବାସୀ ଓ ଜନପଦ ନିବାସୀ ଜନମାନେ ବହୁମୂଲ୍ୟବାନ୍ ମଞ୍ଚମାନଙ୍କ ଉପରେ କୃଷ୍ଣାଙ୍କର ଦର୍ଶନ ସିଦ୍ଧି ନିମିତ୍ତ ସର୍ବପାର୍ଶ୍ୱରେ ଉପବେଶନ କଲେ । ୨୬ । ପାଞ୍ଚାଳ ରାଜାଙ୍କର ସେହି ସର୍ବୋତ୍କୃଷ୍ଟା ସମୃଦ୍ଧି ଦର୍ଶନ କରି ବ୍ରାହ୍ମଣମାନଙ୍କ ସହିତ ପାଣ୍ଡବମାନେ ମଧ୍ୟ ଉପବେଶନ କଲେ । ୨୭ । ହେ ରାଜନ୍ ! ତଦନନ୍ତର ସେହି ସମାଜ ଦିନକୁ ଦିନ କ୍ରମଶଃ ବୃଦ୍ଧିପାଇ ବହୁଦିବସ ପର୍ଯ୍ୟନ୍ତ ରହିଲା, ଓ ନଟ ଓ ନର୍ତ୍ତକମାନଙ୍କ ଦ୍ୱାରା ଶୋଭିତ ହେଲା ଓ ଦାତାମାନେ ତହିଁରେ ବହୁଳ ରତ୍ନମାନ ପ୍ରଦାନ କଲେ । ୨୮ ।

ହେ ଭରତର୍ଷଭ ! ଏହିପ୍ରକାରେ ସମାଜ ବର୍ଦ୍ଧିତ ହୁଅନ୍ତେ, ଷୋଡ଼ଶ ଦିବସରେ ରମଣୀୟ ସମୟରେ ଦ୍ରୌପଦୀ ସ୍ନାନ କରି ସୁନ୍ଦର ବସନ ପରିଧାନ କରି, ସର୍ବାଭରଣରେ ଭୂଷିତ ହୋଇ କାଞ୍ଚନମାଳାକୁ ଧାରଣ କରି ରଙ୍ଗସ୍ଥଳରେ ଅବତୀର୍ଣ୍ଣ ହେଲେ । ୩୦ । ତତ୍କାଳରେ ସୋମବଂଶୀୟଙ୍କର କୁଳପୁରୋହିତ ମନ୍ତ୍ରବେତ୍ତା ବ୍ରାହ୍ମଣ ଶୁଚୀ ହୋଇ ଦର୍ଭାସ୍ତରଣରେ ବସି ବିଧାନ ପୂର୍ବକ ହୁତାଶନରେ ଆହୁତି ପ୍ରଦାନ କଲେ । ୩୧ । ସେ ଜ୍ୱଳନଙ୍କୁ ତୃପ୍ତ କରି ବ୍ରାହ୍ମଣମାନଙ୍କୁ ସ୍ୱସ୍ତିବାଚନ କରାଇଲେ । ତତ୍ପରେ ଚତୁଃପାର୍ଶ୍ୱସ୍ଥ ବାଦକ ମାନଙ୍କୁ ନିବାରିତ କଲେ । ୩୨ ।

ହେ ରାଜନ୍ ! ଏହିରୂପେ ନିଃଶବ୍ଦ ସମ୍ପାଦିତ ହେଲାରୁ ଧୃଷ୍ଟଦ୍ୟୁମ୍ନ ବିଧିପୂର୍ବକ କୃଷ୍ଣାଙ୍କ ସଙ୍ଗରେ ସେମାନଙ୍କ ମଧ୍ୟଗତ ହୋଇ, ମେଘସ୍ୱନ ପ୍ରାୟ ଗମ୍ଭୀର ଅଥଚ ଉଚ୍ଚୈଃସ୍ୱରରେ ମଧୁର ଏବଂ ଅର୍ଥଶୀଳ ବଚନମାନଙ୍କ ନିଗଦିତ କଲେ । ୩୪ । ହେ ସମାଗତ ଭୂପତି ବୃନ୍ଦ ! ଶ୍ରବଣ କରନ୍ତୁ; ଏହି ଶରାସନ, ଏହି ନିଶିତ ପଞ୍ଚଶର ଓ ଏହି ଆକାଶସ୍ଥ ଲକ୍ଷ୍ୟ ଲକ୍ଷିତ ହେଉଅଛି, ଦର୍ଶନ କରନ୍ତୁ । ଏହି ଦଶାର୍ଦ୍ଧ ଶରଦ୍ୱାରା ସେ ଯନ୍ତ୍ରର ଛିଦ୍ର ଦେଇ, ତାହାର ଅପର ପାର୍ଶ୍ୱସ୍ଥ ଚଳନଶୀଳ ଲକ୍ଷ୍ୟକୁ ଯେଉଁ ସତ୍କୁଳ-ପ୍ରସୂତ, ରୂପବାନ୍ ଓ ବଳବାନ୍ ନୃପତି ବିଦ୍ଧ କରିବେ, ଆମ୍ଭେ ସତ୍ୟ କହୁଅଛୁଁ ଆମ୍ଭର ଏହି ଭଗିନୀ କୃଷ୍ଣା ତାହାଙ୍କର ଭାର୍ଯ୍ୟାହେବେ । ୩୬ । ଦ୍ରୁପଦଙ୍କ ପୁତ୍ର ସେମାନଙ୍କ ଏହିପରି କହି ପଶ୍ଚାତ୍ ଭଗିନୀଙ୍କ ସମକ୍ଷରେ ସେମାନଙ୍କର ନାମ, ଗୋତ୍ର ଓ ସତ୍କର୍ମମାନ କୀର୍ତ୍ତନ କଲେ । ୩୭ ।

---

## ଅଧ୍ୟାୟ—୧୮୭

ଧୃଷ୍ଟଦ୍ୟୁମ୍ନ ବୋଇଲେ—ଦେଖ ! ଦୁର୍ଯ୍ୟୋଧନ, ଦୁର୍ବିଷହ, ଦୁର୍ମୁଖ, ଦୁଷ୍ପ୍ରଧର୍ଷଣ, ବିବିଂଶତି, ବିକର୍ଣ୍ଣ, ସହ, ଦୁଃଶାସନ, ଯୁଯୁତ୍ସୁ, ବାୟୁବେଗ, ଭୀମ ବେଗରବ, ଉଗ୍ରାୟୁଧ, ବଳାକୀ, କନକାୟୁଃ, ବିରୋଚନ, ସୁକୁଣ୍ଡଳ, ଚିତ୍ରସେନ, ସୁବର୍ଚ୍ଚାଃ, କନକଧ୍ୱଜ, ନନ୍ଦକ, ବାହୁଶାଳୀ, ତୁହୁଣ୍ଡ, ବିକଟ ପ୍ରଭୃତି ରାଜବୀର ବୃନ୍ଦ ଓ ଅନ୍ୟାନ୍ୟ ମହାବଳ ଧୃତରାଷ୍ଟ୍ର ତନୟମାନେ କର୍ଣ୍ଣଙ୍କ ସହିତ ତୁମ୍ଭ ନିମିତ୍ତ ଆଗମନ କରିଅଛନ୍ତି ଓ କ୍ଷତ୍ରିୟଶ୍ରେଷ୍ଠ ଅସଂଖ୍ୟ ରାଜାଗଣ ଉପସ୍ଥିତ ହୋଇ ଅଛନ୍ତି । ଗାନ୍ଧାର ରାଜପୁତ୍ର ଶକୁନି, ସୌବଳ, ବୃଷକ ଓ ବୃହଦ୍‌ବଳ ମଧ୍ୟ ଆଗମନ କରିଅଛନ୍ତି । ସର୍ବଶସ୍ତ୍ରଧାରି ମାନଙ୍କ ଶ୍ରେଷ୍ଠ ଅଶ୍ୱତ୍ଥାମା ଓ ଭୋଜ ମଧ୍ୟ ତୁମ୍ଭ ନିମିତ୍ତ ସମାଗତ ହୋଇ ଅଛନ୍ତି । ୬ । ବୃହନ୍ତ, ମଣିମାନ୍, ଦଣ୍ଡଧାର, ସହଦେବ, ଜୟତ୍ସେନ, ମଗଧରାଜ, ମେଘସନ୍ଧି, ଶଙ୍ଖ ଓ ଉତ୍ତର ଏହି ଦୁଇ ପୁତ୍ରଙ୍କ ସହ ବିରାଟ୍, ବାର୍ଦ୍ଧକ୍ଷେମି, ସୁବର୍ଚ୍ଚା, ସେନାବିନ୍ଦୁ, ସୁବର୍ଚ୍ଚା ଓ ସୁନାମା ନାମଧାରୀ ତୁଳ-ଦ୍ୱୟଙ୍କ ସହିତ ସୁକେତୁ, ସୁଚିତ୍ର, ସୁକୁମାର, ବୃକ, ସତ୍ୟଧୃତି, ସୂର୍ଯ୍ୟଧ୍ୱଜ, ରୋଚମାନ, ନୀଳ, ଚିତ୍ରାୟୁଧ, ଅଂଶୁମାନ୍, ଚେକିତାନ, ମହାବଳ ଶ୍ରେଣିମାନ୍, ସମୁଦ୍ରସେନଙ୍କ ପୁତ୍ର ପ୍ରତାପବାନ୍ ଚନ୍ଦ୍ରସେନ, ଜଳସନ୍ଧ, ବିଦଣ୍ଡ ଓ

ଦଣ୍ଡପିତା ପୁତ୍ର, ପୌଣ୍ଡ୍ରକ ବାସୁଦେବ, ବୀର୍ଯ୍ୟବାନ୍ ଭଗଦତ୍ତ, କଳିଙ୍ଗ, ତାମ୍ରଲିପ୍ତ, ପତ୍ତନାଧିପତି, ସପୁତ୍ର ମହାରଥ ମଦ୍ରରାଜ ଶଲ୍ୟ, ବୀର ରୁକ୍ମାଙ୍ଗଦ, ରୁକ୍ମରଥ, କୌରବ୍ୟ ସୋମଦତ୍ତ, ସୋମଦତ୍ତ ତନୟ ମହାରଥ ଭୂରି, ଭୂରିଶ୍ରବାଃ ଓ ଶଳ, ସୁଦକ୍ଷିଣ, କାମ୍ବୋଜ ପୌରବ, ଦୃଢ଼ଧନ୍ୱା ବୃହଦ୍‌ବଳ, ସୁଷେଣ, ଔଶୀନର ଶିବି, ପଟ୍ଟଚର ନିହନ୍ତା, କରୁଷାଧିପତି, ବଳଦେବ, କୃଷ୍ଣ, ବୀର୍ଯ୍ୟବାନ୍ ରୌକ୍ମିଣେୟ, ଶାମ୍ବ ଚାରୁଦେଷ୍ଣ, ପ୍ରାଦ୍ୟୁମ୍ନି, ଗଦ, ଅକ୍ରୂର, ସାତ୍ୟକି, ମହାମତି ଉଦ୍ଧବ, ହାର୍ଦ୍ଦିକ୍ୟ କୃତବର୍ମ୍ମା, ପୃଥୁ, ବିପୃଥୁ, ବିଦୂରଥ, କଙ୍କ, ଶଙ୍କୁ, ଗବେଷଣ, ଅନିରୁଦ୍ଧ, ସମୀକ, ସାରମେଜୟ, ବୀର ବାତପତି, ଝିଲ୍ଲୀ, ପିଣ୍ଡାରକ, ବିକ୍ରାନ୍ତ ଉଶୀନର, ଏହି ସମସ୍ତ ବୃଷ୍ଣିବଂଶୀୟ, ଅଥଚ ଭଗୀରଥ, ବୃହତ୍‌କ୍ଷତ୍ର, ସିନ୍ଧୁଦେଶ ରାଜା ଜୟଦ୍ରଥ, ବୃହଦ୍ରଥ, ବାହ୍ଲିକ, ମହାରଥ, ଶ୍ରୁତାୟୁ, ଉଲୂକ, କୈତବ, ଚିତ୍ରାଙ୍ଗଦ, ଶୁଭାଙ୍ଗଦ, ମତିମାନ୍ ବତ୍ସରାଜ, କୋଶଳାଧିପତି, ଶିଶୁପାଳ, ବିକ୍ରାନ୍ତ ଜରାସନ୍ଧ, ହେ ଭଦ୍ରେ। ଭୂମଣ୍ଡଳ ବିଖ୍ୟାତ ବିକ୍ରମଶୀଳ ଏହି ସମସ୍ତ ରାଜାମାନେ ଓ ଅନ୍ୟାନ୍ୟ କ୍ଷତ୍ରିୟବଂଶଜାତ ନାନା ଜନପଦେଶ୍ୱରଗଣ ତୁମ୍ଭ ନିମିତ୍ତ ଏହି ଉତ୍କୃଷ୍ଟ ଲକ୍ଷ୍ୟଭେଦ କରିବା ମାନସରେ ଆଗମନ କରିଅଛନ୍ତି। ହେ ଶୁଭେ! ଯେ ଏହି ଲକ୍ଷ୍ୟଭେଦ କରିବାକୁ ସମର୍ଥ ହେବେ ତାହାଙ୍କୁ ତୁମ୍ଭେ ବରଣ କରିବ।

---

## ଅଧ୍ୟାୟ—୧୮୭

ବୈଶମ୍ପାୟନ ବୋଇଲେ—ଅନନ୍ତର କନକ କୁଣ୍ଡଳାଦି ବିବିଧ ଅଳଙ୍କାରରେ ବିଭୂଷିତ ତରୁଣ ବୟସ୍କ ନରେନ୍ଦ୍ରମାନେ ସମସ୍ତେ ଆପଣାକୁ ସମସ୍ତଙ୍କ ଅପେକ୍ଷା ଉତ୍କୃଷ୍ଟ ବଳବାନ୍ ଓ ଅସ୍ତ୍ରବିଦ୍ୟା ବିଶାରଦ ବିବେଚନା କରି ପରସ୍ପର ସ୍ପର୍ଦ୍ଧମାନ୍ ହୋଇ ଅସ୍ତ୍ରଗ୍ରହଣ ପୂର୍ବକ ସମୁତ୍ଥିତ ହେଲେ।୧। ରୂପ, ବଳ, ଶୀଳ, ଧନ ଓ ଯୌବନରେ ସମ୍ବର୍ଦ୍ଧିତ ଦର୍ପ ହୋଇ ମଦ ବେଗଭିନ୍ନ ହିମବାନ୍ ପର୍ବତର ଗଜେନ୍ଦ୍ରମାନଙ୍କ ସଦୃଶ ନରେନ୍ଦ୍ରମାନେ ମତ୍ତ ହୋଇ ପରସ୍ପର ପରସ୍ପରଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଓ ମନୋଭବରେ ଅଭିଭୂତ ହୋଇ "ଦ୍ରୌପଦୀ ଆମ୍ଭର ହେବେ" ବୋଲି କହି ସହସା ରାଜାସନ ପରିତ୍ୟାଗ କଲେ।୩। ଦେବତାମାନେ ଯେପରି

ପର୍ବତରାଜ କନ୍ୟା ଉମାଙ୍କ ବେଷ୍ଟନ କରି ଅପୂର୍ବ ଶୋଭା ପ୍ରାପ୍ତ ହୋଇଥିଲେ, ସେହିପରି ରଙ୍ଗଗତ କ୍ଷତ୍ରିୟମାନେ ଦ୍ରୁପଦାତ୍ମଜାଙ୍କୁ ଜୟ କରିବା ଅଭିଳାଷରେ ଚତୁର୍ଦ୍ଦିଗରେ ଦଣ୍ଡାୟମାନ ହୋଇ ଅପୂର୍ବ ଶୋଭା ଧାରଣ କଲେ । ୪ । ରଙ୍ଗାବତୀର୍ଣ୍ଣ, କୃଷ୍ଣାଗତ ହୃଦୟ, ନରେନ୍ଦ୍ରମାନେ କନ୍ଦର୍ପବାଣରେ ନିପୀଡ଼ିତ କଳେବର ହୋଇ ପରସ୍ପର ସୁହୃଦ୍ ହେଲେହେଁ ଦ୍ରୁପଦାତ୍ମଜାଙ୍କ ନିମିତ୍ତ ସେଠାରେ ଦ୍ୱେଷାଚରଣ କଲେ । ୫ ।

ପୁନଶ୍ଚ ସେହି ସ୍ୱୟମ୍ବର ଦର୍ଶନ କରିବା ନିମିତ୍ତ ବିମାନାରୋହଣ ପୂର୍ବକ ରୁଦ୍ରଗଣ, ଆଦିତ୍ୟ ଗଣ, ବସୁଗଣ, ଅଶ୍ୱିନୀକୁମାର ଦ୍ୱୟ, ସାଧ୍ୟଗଣ, ମରୁଦ୍‌ଗଣ ଓ କୁବେରଙ୍କୁ ପୁରସ୍କୃତ କରି ଯମରାଜା ସମାଗତ ହେଲେ । ୬ । ଅପରନ୍ତୁ ଦୈତ୍ୟମାନେ, ସୁପର୍ଣ୍ଣ ଓ ମହୋରଗ ମାନେ ଦେବର୍ଷିବୃନ୍ଦ, ଗୁହ୍ୟକ ଓ ଚାରଣ ନିକର, ବିଶ୍ୱାବସୁ, ନାରଦ ଓ ପର୍ବତ ଅଥଚ ଅପ୍ସରୋଗଣଙ୍କ ସହ ଗନ୍ଧର୍ବ ମୁଖ୍ୟମାନେ ସେଠାକୁ ଆଗମନ କଲେ । ୭ । ହଳାୟୁଧ ଓ ଜନାର୍ଦ୍ଦନ ଓ ତାହାଙ୍କର ମତରେ ସ୍ଥିତ ବୃଷ୍ଣି ଓ ଅନ୍ଧକ ବଂଶୀୟ ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ଅଥଚ ଯଦୁପୁଙ୍ଗବ ମାନେ ଇତସ୍ତତଃ ଭ୍ରମଣ କରି ସ୍ୱୟମ୍ବର ସଭା ଦର୍ଶନ କଲେ । ୮ ।

ପଦ୍ମାଭିମୁଖ ମତ୍ତ ଗଜେନ୍ଦ୍ର ସଦୃଶ, ବାରଣେନ୍ଦ୍ର ସମ ଓ ଭସ୍ମାବୃତ ଶରୀର ହବ୍ୟବାହ ନିଭ, ପଞ୍ଚବୀରଙ୍କୁ ଯଦୁବୀର ମୁଖ୍ୟ କୃଷ୍ଣ ଦର୍ଶନ କରି କ୍ଷଣ କାଳ ଭାବି, ବଳରାମଙ୍କୁ ବୋଇଲେ—ଏ ଯୁଧିଷ୍ଠିର, ଏ ଭୀମ, ଏ ଜିଷ୍ଣୁ ଓ ଏ ଦୁହେଁ ଯମଜ ଅଟନ୍ତି । ରାମ ସେମାନଙ୍କୁ ଥିର ଥିର ଚାହିଁ ପ୍ରୀତମନା ହୋଇ ଜନାର୍ଦ୍ଦନଙ୍କ ଅଡ଼କୁ ଚାହିଁଲେ । ୧୦ । ଅନ୍ୟାନ୍ୟ ବୀର ରାଜପୁତ୍ର ଓ ରାଜ ପୌତ୍ରମାନେ ଆରକ୍ତ ନୟନ ହୋଇ ଅଧର ଦଂଶନ ପୂର୍ବକ ଦ୍ରୋପଦୀଙ୍କ ଦେହରେ ସ୍ୱ ସ୍ୱ ମନ ନୟନ ଓ ସ୍ୱଭାବ ସମର୍ପଣ କରି କେବଳ ଦ୍ରୋପଦୀଙ୍କୁ ଦେଖୁଥିଲେ, ସୁତରାଂ ପାଣ୍ଡବମାନଙ୍କୁ ଦେଖି ପାରିଲେ ନାହିଁ । ୧୧ ।

—

ପୃଥୁବାହୁ ପୃଥାତନୟ ଯୁଧିଷ୍ଠିର, ଭୀମ, ଅର୍ଜୁନ ଓ ମହାନୁଭବ ବୀର ନକୁଳ ଓ ସହଦେବ ସୁଦ୍ଧା କନ୍ଦର୍ପବାଣାଭିହତ ହୋଇଥିଲେ, ସୁତରାଂ ସେମାନେ ରାମ ଓ କୃଷ୍ଣଙ୍କୁ ସୁଦ୍ଧା ଦେଖି ପାରିଲେ ନାହିଁ । ୧୨ । ଭକ୍ଷାଳରେ ଦିବ୍ୟଗନ୍ଧରେ ଆମୋଦିତ, ଦିବ୍ୟ କୁସୁମ ସମୂହରେ

ସମାକୀର୍ଣ୍ଣ, ବେଣୁ ବୀଣା ପଣବ ପ୍ରଭୃତି ବାଦ୍ୟନାଦରେ ପରିପୂର୍ଣ୍ଣ ଓ ମହା ଦୁନ୍ଦୁଭି ଧ୍ୱନିରେ ପ୍ରତିଧ୍ୱନିତ ଚିନ୍ତୁ ନଭସ୍ଥଳରେ ସଦଂନ୍ୟ, ଦେବତା, ଋଷି, ଗନ୍ଧର୍ବ, ସୁପର୍ଣ୍ଣ ନାଗ ଓ ଅସୁର ସିଦ୍ଧଗଣ-ମାନେ ବ୍ୟାପ୍ତ ହେବାରୁ ସେମାନଙ୍କ ବିମାନ ସମୂହରେ ପରସ୍ପର ବାଧା ପ୍ରାପ୍ତ ହେଲା । ୧୮ ।

ତତ୍ପରେ କର୍ଣ୍ଣ, ଦୁର୍ଯ୍ୟୋଧନ, ଶାଲ୍ୱ, ଶଲ୍ୟ, ଦ୍ରୋଣାସୂନ, କ୍ରାଥ, ସୁନୀଥ, ବକ୍ର. କଳିଙ୍ଗାଧିପତି, ବଙ୍ଗାଧିପତି, ପାଣ୍ଡ୍ୟ, ପୌଣ୍ଡ୍ର, ବିଦେହ-ରାଜ, ଯବନରାଜ, ଏହି ସମସ୍ତ ରାଜାମାନେ ଓ ରାଜ୍ୟାଧିପତି ଓ ଅନ୍ୟାନ୍ୟ ପଦ୍ମପଲାଶ ନେତ୍ର ରାଜପୁତ୍ର ଓ ପୌତ୍ରମାନେ ସମସ୍ତେ ଦ୍ରୋପଦୀଙ୍କ ଲାଭ ନିମିତ୍ତ ଏକାଦି କ୍ରମେ ବିକ୍ରମ ପ୍ରକାଶ କଲେ । କିନ୍ତୁ କେୟୁର, କିରୀଟ, ହାର ପ୍ରଭୃତି ନାନା ବିଧ ଭୂଷଣରେ ଭୂଷିତାଙ୍ଗ, ବିକ୍ରମ ଓ ସତ୍ତ୍ୱସମ୍ପନ୍ନ ଓ ବଳବୀର୍ଯ୍ୟ ଭରରେ ଗର୍ଜ୍ଜନକାରୀ ସେହି ସବୁ ପୃଥୁବାହୁ ବୀର ବୃନ୍ଦ ମନରେ ମଧ୍ୟ ସେ କଠିନ ଧନୁରେ ଗୁଣ ଦେଇ ପାରିଲେ ନାହିଁ । ସେମାନେ ଓଷ୍ଠ ଓ ଅଧରକୁ ସ୍ଫୁରିତ କରି, ଯାହାଙ୍କର ଯେତେ ହେଉ ବିକ୍ରମ, ଯେପରି ବଳ ଓ ଶିକ୍ଷା, ଯେପରି ଗୁଣ, ତଦନୁସାରେ ସେହି ଧନୁଷ୍କୋଟିରେ ଗୁଣାର୍ପଣ କରିବାକୁ ଯାଇ ଗୁଣ ଦ୍ୱାରା ବିକ୍ଷିପ୍ତ ହୋଇ ଧରଣୀ ତଳରେ ବିଚେଷ୍ଟ ଭାବରେ ପଡ଼ିଲେ; ସେମାନଙ୍କର କିରୀଟ ଓ ହାର ମାନ ଦେହରୁ ବିସ୍ରସ୍ତ ହୋଇ ପତିତ ହେଲା ଓ ସେ ନରେନ୍ଦ୍ରମାନେ କ୍ଷୀଣ ବଳ ହୋଇ ଘନ ଘନ ନିଃଶ୍ୱାସ ତ୍ୟାଗ ପୂର୍ବକ ପ୍ରଶମିତ ହେଲେ । ୧୯ । ତତ୍କାଳରେ ସେହି ଦୃଢ଼ ଧନୁ ଦ୍ୱାରା ହାରାଙ୍ଗଦ ପ୍ରଭୃତି ଆଭରଣ ମାନେ ବିସ୍ରସ୍ତ ହେବାରୁ ଓ ରାଜା ମାନେ ଦ୍ରୋପଦୀଙ୍କ ପ୍ରାପ୍ତି କାମନାରୁ ବିନିବୃତ୍ତ ହେବାରୁ ସେହି ରାଜମଣ୍ଡଳୀରେ ହାହାକାର ଉପସ୍ଥିତ ହେଲା ଓ ସେମାନେ ସମସ୍ତେ ସମାଶ୍ରି ହେଲେ । ୨୦ । ଧନୁର୍ଦ୍ଧର ପ୍ରବର କର୍ଣ୍ଣ ସେହି ନୃପତିମାନଙ୍କୁ ବିଲୋକନ କରି ଧନୁ ନିକଟକୁ ଗମନ କଲେ ଓ ଶୀଘ୍ର ତତ୍ସଙ୍ଗ ଧନୁକୁ ଉତ୍ତୋଳନ କରି ତତ୍କ୍ଷଣାତ୍ ତହିଁରେ ବାଣମାନଙ୍କୁ ଯୋଜନା କଲେ । ୨୧ । ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନି ସଦୃଶ ତେଜସ୍ୱୀ ସୂତ-ପୁତ୍ର ବୈକର୍ତ୍ତନଙ୍କୁ ଅବଲୋକନ କରି ପାଣ୍ଡବମାନେ ବିବେଚନା କଲେ ଯେ, ଏଥର ଲକ୍ଷ୍ୟ ଶତଧା ଭିନ୍ନ ହୋଇ ଧରାତଳରେ ପତିତ ହେଲା । ୨୨ ।

ଏଣେ କର୍ଣ୍ଣଙ୍କୁ ଧନୁର୍ଗ୍ରହଣ କରିବାର ଦେଖି ଦ୍ରୌପଦୀ ଉଚ୍ଚୈଃସ୍ୱରରେ ବୋଇଲେ, "ଆମ୍ଭେ ସୂତ-ପୁତ୍ରଙ୍କୁ ବରଣ କରିବୁ ନାହିଁ" କର୍ଣ୍ଣ ସେହି କଥା ଶ୍ରବଣ କରି ହାସ୍ୟ-ପୂର୍ବକ ସାମର୍ଷ ଭାବରେ ସୂର୍ଯ୍ୟଙ୍କୁ ଚାହିଁ ଧନୁକୁ ପରିତ୍ୟାଗ କଲେ । ୨୩ । ଏହିରୂପେ ସବୁ କ୍ଷତ୍ରିୟମାନେ ନିବୃତ୍ତ ହୁଅନ୍ତେ ଅନ୍ତକ ସଦୃଶ ମହା ବଳବାନ୍ ଚେଦିପତି ମହାମତି ଦମଘୋଷ ତନୟ ଶିଶୁପାଳ ଉଠିଲେ । ସେ ପ୍ରଥମରେ ଧନୁକୁ ପରୀକ୍ଷା କରିବାକୁ ଯାଇ ଧରାପୃଷ୍ଠରେ ଭଗ୍ନଜାନୁ ହୋଇ ପତିତ ହେଲେ । ୨୫ । ତତ୍ପରେ ମହାବୀର୍ଯ୍ୟ, ମହାବଳବାନ୍ ଜରାସନ୍ଧ ଭୂପତି ଧନୁ ନିକଟକୁ ଆସି ପାଷାଣ ପ୍ରାୟ ଅଚଳଭାବରେ ଦଣ୍ଡାୟମାନ ହେଲେ । ୨୬ । କିନ୍ତୁ ସେ ମଧ୍ୟ ଅପର ରାଜା ମାନଙ୍କ ପ୍ରାୟ ଧନୁଦ୍ୱାରା ନିଷ୍ପୀଡ଼ିତ ହୋଇ ଜାନୁ ମାଡ଼ି ମହୀତଳରେ ପତିତ ହେଲେ; କିୟତ୍-କ୍ଷଣ ପରେ ସେ ସୁସ୍ଥ ହୋଇ ସ୍ୱୀୟ ରାଜ୍ୟକୁ ପ୍ରସ୍ଥାନ କଲେ । ୨୭ । ତତ୍ପରେ ମହାବଳ, ମହାବୀର, ମଦ୍ରରାଜଶଲ୍ୟ ସେହି ଧନୁରେ ଜ୍ୟା ରୋପଣ କରୁଁ କରୁଁ ଉଭୟ ଜାନୁ ଦ୍ୱାରା ମହୀପୃଷ୍ଠରେ ନିପତିତ ହେଲେ । ୨୮ ।

ଅନନ୍ତର ସେହି ସମାଜରେ ଜଳ୍ପନା ହେଲା ଯେ, ଅମୁକରାଜା ଗୁଣଦେବାକୁ ଯାଇ ନିକ୍ଷିପ୍ତ ହେଲେ, ଅମୁକଙ୍କର କିରୀଟାଳଙ୍କାର ବିସ୍ରସ୍ତ ହେଲା; ଇତ୍ଥମ୍ଭାବ ଦେଖି କୁନ୍ତୀସୁତ ପ୍ରବୀର ଜିଷ୍ଣୁ ସେହି ଧନୁରେ ଗୁଣ ଓ ଶର ଆରୋପଣ କରିବାକୁ ଇଚ୍ଛା ପ୍ରକାଶ କଲେ । ୨୯ ।

---

## ଅଧ୍ୟାୟ—୪୮

ବୈଶମ୍ପାୟନ ବୋଇଲେ—ରାଜାମାନେ ଯେତେବେଳେ ଧନୁରେ ଜ୍ୟା ରୋପଣ କରିବାରୁ ନିବୃତ୍ତ ହେଲେ; ଯେତେବେଳେ ଉଦାରଧୀ ଜିଷ୍ଣୁ ବିପ୍ରଙ୍କ ମଧ୍ୟରୁ ଉତ୍ଥିତ ହେଲେ । ୧ । ଇନ୍ଦ୍ରଙ୍କ କେତୁ ସମାନ ପ୍ରଭାଶାଳୀ ଅର୍ଜ୍ଜୁନଙ୍କୁ ପ୍ରସ୍ଥାନ କରିବାର ଦେଖି ବିପ୍ରମୁଖ୍ୟମାନେ ଅପନାର ମୃଗଚର୍ମ୍ମ ସବୁ ଆନ୍ଦୋଳିତ କରି କୋଳାହଳ ଉପସ୍ଥିତ କଲେ । ୨ । କେହି ବିମନା ହେଲେ, କେହି ହର୍ଷାନ୍ୱିତ ହେଲେ, କେହି କେହି ବୁଦ୍ଧିଜୀବୀମାନେ ପରସ୍ପର କୁହାକୁହି ହେଲେ—ହେ ଦ୍ୱିଜମାନେ । ଯେଉଁ ଧନୁକୁ କର୍ଣ୍ଣ, ଶଲ୍ୟ ପ୍ରମୁଖ ଲୋକ ବିଖ୍ୟାତ ବଳବାନ୍ ଓ ଧନୁର୍ବେଦ

ପରାକ୍ରମଶୀଳ କ୍ଷତ୍ରିୟମାନେ ଆନତ କରିପାରିଲେ ନାହିଁ, ତାହାକୁ କିପରି ଅକୃତାସ୍ତ୍ର ଓ ଦୁର୍ବଳ-ପ୍ରାଣ ବ୍ରାହ୍ମଣ ଶିଶୁ ସଜ୍ୟ କରିବାକୁ ସମର୍ଥ ହେବ । ୫ । ଏହି ଅପରୀକ୍ଷିତ କର୍ମ୍ମ ସିଦ୍ଧ ନ ହେଲେ ସବୁ ରାଜାମାନେ ଗୃହପକ୍ଷ ହେତୁରୁ ଆମ୍ଭମାନଙ୍କୁ ଉପହାସ କରିବେ । ୬ । ଯଦ୍ୟପି ଏହି ବ୍ରାହ୍ମଣ ଦର୍ପବଶରୁ, ହର୍ଷରୁ, ଅଥବା ଚପଳତା ହେତୁରୁ ଧନୁକୁ ଆନମିତ କରିବାକୁ ପ୍ରସ୍ଥାନ କରୁଥାନ୍ତି, ତେବେ ତାହାଙ୍କୁ ବାରଣ କର. ସେ ନ ଯାଆନ୍ତୁ, ଭଲ ହେବ । ୭ ।

ବ୍ରାହ୍ମଣମାନେ ବୋଇଲେ—ଆମ୍ଭେମାନେ ହାସ୍ୟାସ୍ପଦ ହେବୁ ନାହିଁ କି ଲଘୁତା ପ୍ରାପ୍ତ ହେବୁ ନାହିଁ; କିମ୍ବା ଲୋକରେ ରାଜାମାନେ ଆମ୍ଭମାନଙ୍କ ଠାରେ ବିଦ୍ୱେଷାଚରଣ କରିବେ ନାହିଁ । ୮ । କେହି କହିଲେ, ଏହି ବ୍ରାହ୍ମଣ ଶ୍ରୀମାନ୍, ନାଗରାଜ କରସଦୃଶ ଏହାଙ୍କର ସ୍କନ୍ଧ, କର ଓ ଊରୁ ପୀନ ହୋଇ ଅଛି, ଧୈର୍ଯ୍ୟରେ ଏ ହିମବାନ୍ ପର୍ବତ ପ୍ରାୟ, ସିଂହ ଖେଳଗତି, ଶ୍ରୀମାନ୍, ମତ୍ତନାଗେନ୍ଦ୍ରଙ୍କ ପ୍ରାୟ ଏହାଙ୍କର ବିକ୍ରମ ଓ ଏହାଙ୍କର ଉତ୍ସାହରୁ ସମ୍ଭାବନା ହେଉଅଛି ଯେ ଏ କର୍ମ୍ମ ଏହାଙ୍କର ସାଧ୍ୟ । ଏହାଙ୍କର ଶକ୍ତି ଓ ମହାନ୍ ଉତ୍ସାହ ଅଛି । ଯଦି ଏ ଅଶକ୍ତ ହୋଇଥାନ୍ତେ ତେବେ ସେ ସ୍ୱୟଂ କିପାଇଁ ଗମନ କରନ୍ତେ । ୧୦ । ଏହି ତିନଲୋକରେ ଏପରି କୌଣସି କର୍ମ୍ମ ନାହିଁ ଯାହାକି ମରଣଶୀଳମାନଙ୍କ ମଧ୍ୟରେ ବ୍ରାହ୍ମଣମାନଙ୍କର ଅସାଧ୍ୟ ଅଟେ । ୧୧ । ବିପ୍ରମାନେ ଉପବାସ କର୍ଷିତ, ବାୟୁଭକ୍ଷ, ଫଳାହାର ଦୃଢ଼ବ୍ରତ ଓ ଦୁର୍ବଳ ହେଲେହେଁ ସେମାନେ ସ୍ୱତେଜୋରାଶି ଦ୍ୱାରା ଅତଏବ ବଳବାନ୍ ଅଟନ୍ତି । ୧୨ । ସୁଖ କିମ୍ବା ଦୁଃଖଜନକ, ମହତ୍ କିମ୍ବା ହ୍ରସ୍ୱ, ସତ୍ ଅଥବା ଅସତ୍ କର୍ମ୍ମ ଆଚରଣ କଲେ ବ୍ରାହ୍ମଣକୁ ଅବମାନନା କରିବ ନାହିଁ । ୧୩ ।

ଜମଦଗ୍ନିଙ୍କ ପୁତ୍ର ରାମ କ୍ଷତ୍ରିୟମାନଙ୍କୁ ଯୁଦ୍ଧରେ ନିର୍ଜ୍ଜିତ କଲେ; ଅଗସ୍ତ୍ୟ ଋଷି ବ୍ରହ୍ମତେଜ ଦ୍ୱାରା ଅଗାଧ ସମୁଦ୍ରକୁ ପାନ କଲେ । ୧୪ । ଅତଏବ ହେ ଦ୍ୱିଜର୍ଷଭମାନେ । ଆପଣମାନେ ବୋଲନ୍ତୁ ଯେ ଏହି ବ୍ରାହ୍ମଣ ସନ୍ତାନ ମହାଶରାସନରେ ଶୀଘ୍ର ଗୁଣାରୋପଣ କରନ୍ତୁ । ୧୫ । ବ୍ରାହ୍ମଣମାନେ ଏହିରୂପ ନାନାବିଧ ବାକ୍ୟ କହୁଥାନ୍ତି, ଏମନ୍ତ ସମୟରେ ଧନୁ ସମୀପରେ ଅର୍ଜ୍ଜୁନ ଗିରିପ୍ରାୟ ଅଚଳ ହୋଇ ସ୍ଥିତ

ହେଲେ । ୧୭ । ଅର୍ଜ୍ଜୁନ ସେହି ଧନୁକୁ ପ୍ରଦକ୍ଷିଣ ଭାବରେ ପରିକ୍ରମଣ କରି, ମସ୍ତକଦ୍ୱାରା ବରଦ ପ୍ରଭୁ ମହାଦେବଙ୍କୁ ପ୍ରଣାମ କରି, ଅଥଚ କୃଷ୍ଣଙ୍କୁ ସ୍ମରଣ କରି ଧନୁର୍ଗ୍ରହଣ କଲେ । ୧୮ । ରୁକ୍ମ, ସୁନୀଥ, ବକ୍ର, ରାଧାନନ୍ଦନ, ଦୁର୍ଯ୍ୟୋଧନ, ଶଲ୍ୟ ଓ ଶାଲ୍ୱ ପ୍ରଭୃତି ଧନୁର୍ବେଦ ପାରାୟଣ ନୃସିଂହମାନେ ମହତ୍ ଯତ୍ନରେ ସୁଦ୍ଧା ଯହିଁରେ ଗୁଣାରୋପଣ କରି ପାରି ନ ଥିଲେ, ବୀର୍ଯ୍ୟ-ଶାଳୀଙ୍କ ମଧ୍ୟରେ ଦର୍ପଶାଳୀ, ଇନ୍ଦ୍ରାନୁଜ ତୁଲ୍ୟ ପ୍ରାୟ ପ୍ରଭାବଶାଳୀ ଇନ୍ଦ୍ରସୁତ ଅର୍ଜ୍ଜୁନ, ନିମିଷାନ୍ତରରେ ସେହି ଧନୁକୁ ଜ୍ୟାଯୁକ୍ତ କରି ନିର୍ଦ୍ଦିଷ୍ଟ ପଞ୍ଚଗୋଟି ବାଣକୁ ଗ୍ରହଣ କଲେ ଓ ଲକ୍ଷକୁ ବିଦ୍ଧ କଲେ । ତହୁଁ ସେ ଲକ୍ଷ୍ୟ ସହସା ଯନ୍ତ୍ରର ଛିଦ୍ର ଦେଇ ଭୂମିରେ ନିପତିତ ହେଲା । ୧୯ ।

ତତ୍ପରେ ଅନ୍ତରୀକ୍ଷରେ ନାଦ ଶ୍ରୁତ ହେଲା, ସମାଜ ମଧ୍ୟରେ ମଧ୍ୟ ମହାନ୍ ନିନାଦ ଶ୍ରୁତ ହେଲା । ଦେବତାମାନେ ଶତ୍ରୁନିହନ୍ତା ପାର୍ଥଙ୍କ ମୂର୍ଦ୍ଧାରେ ଦିବ୍ୟପୁଷ୍ପରାଶି ବର୍ଷଣ କଲେ । ସହସ୍ର ସହସ୍ର ବ୍ରାହ୍ମଣମାନେ ଜୟଚିହ୍ନ ସ୍ୱରୂପ ନିଜ ନିଜ ଉତ୍ତରୀୟ ଚେଲମାନଙ୍କୁ ଉତ୍ତୋଳନ କରି ସଞ୍ଚାଳନ କଲେ । ଯେଉଁମାନେ ଲକ୍ଷ୍ୟଭେଦରେ ପରାସ୍ତ ହୋଇଥିଲେ, ସେମାନେ ବିଲକ୍ଷିତ ହୋଇ ହା ହା କାର ଶବ୍ଦ କଲେ । ୨୧ । ସେହି ରଙ୍ଗଭୂମିର ଚତୁଃପାର୍ଶ୍ୱରେ ଆକାଶରୁ ପୁଷ୍ପ ବୃଷ୍ଟିମାନ ନିପତିତ ହେଲା । ବାଦକମାନେ ତୂର୍ଯ୍ୟମାନଙ୍କୁ ଶତାଙ୍ଗ* ସମନ୍ୱିତ କରି ବାଦନ କଲେ; ସୂତ ଓ ମାଗଧ ସମୂହ ସୁଦ୍ଧା ସୁସ୍ୱରରେ ସ୍ତୁତି କଲେ । ୨୨ । ତାହାଙ୍କୁ ଦେଖି ରିପୁସୂଦନ ଦ୍ରୁପଦ ପ୍ରୀତ ହେଲେ ଓ ସୈନ୍ୟ ଘେନି ପାର୍ଥଙ୍କର ସାହାଯ୍ୟ କରିବାକୁ ଇଚ୍ଛା କଲେ । ୨୩ । ସେହି କୋଳାହଳ ଶବ୍ଦ ଯେତେବେଳେ ଅତିଶୟ ବର୍ଦ୍ଧିତ ହେଲା ସେହି ଅବସରରେ ଧାର୍ମ୍ମିକ ଶ୍ରେଷ୍ଠ ଯୁଧିଷ୍ଠିର ପୁରୁଷୋତ୍ତମ ଯମଜଭ୍ରାତାଙ୍କ ଅବାସ ସ୍ଥାନକୁ ଶୀଘ୍ର ଗମନ କଲେ । ୨୪ । ଲକ୍ଷ୍ୟକୁ ବିଦ୍ଧ ହେବାର ଦେଖି ଓ ପାର୍ଥଙ୍କୁ ଇନ୍ଦ୍ରସମ ସୁନ୍ଦର ନୀରିକ୍ଷଣ କରି ଶୁକ୍ଳାମ୍ବର ଓ ମାଲ୍ୟଦାମ ଗ୍ରହଣ କରି ହର୍ଷାନ୍ତଃ-କରଣରେ କୁନ୍ତୀ-ସୁତଙ୍କ ସମୀପକୁ ଗମନ କଲେ । ୨୫ । ଅର୍ଜ୍ଜୁନ ତାହାଙ୍କୁ ରଙ୍ଗରେ ଜୟକରି, ଦ୍ୱିଜମାନଙ୍କ ଦ୍ୱାରା ଅଭିପୂଜ୍ୟ ହୋଇ ପତ୍ନୀଙ୍କ ସହ ରଙ୍ଗସ୍ଥଳରୁ ନିଷ୍କ୍ରମଣ କଲେ; ଦ୍ରୌପଦୀ ତାହାଙ୍କର ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ୨୬ ।

* ଶତାଙ୍ଗ—ବିବିଧ ପ୍ରକାର ଉପସ୍କ ଅର୍ଥାତ୍ ବାଦନ ପ୍ରଣାଳୀ ।

## ଅଧ୍ୟାୟ—୯୮୯

ବୈଶମ୍ପାୟନ ବୋଇଲେ—ଅନନ୍ତର ରାଜା ଦ୍ରୁପଦ ସେହି ବ୍ରାହ୍ମଣଙ୍କୁ କନ୍ୟା ପ୍ରଦାନ କରିବାକୁ ମାନସ କରିବାରୁ ସମୀପବର୍ତ୍ତୀ ମହୀପମାନେ ପରସ୍ପର ଅବଲୋକନ କରି କୋପାବିଷ୍ଟ ହେଲେ । ୧ ।

ପାର୍ଥିବମାନେ ବୋଇଲେ—ଏହି ଦ୍ରୁପଦ ଆମ୍ଭମାନଙ୍କୁ ଅତିକ୍ରମ କରି ଓ ସମାଗତ ନରପତିମାନଙ୍କୁ ତୃଣବତ୍ ଜ୍ଞାନ କରି ଯୋଷିତ୍‌ମାନଙ୍କ ଶ୍ରେଷ୍ଠ ଦ୍ରୌପଦୀଙ୍କୁ ଗୋଟିଏ ବିପ୍ରକୁ ଦେବାକୁ ଇଚ୍ଛା କରୁଅଛନ୍ତି; ବୃକ୍ଷ ରୋପଣ କରି ଫଳ ଫଳିବା ବେଳେ ତାହାକୁ ନିପାତ କରୁଅଛନ୍ତି, ଯେ ଆମ୍ଭମାନଙ୍କୁ ଅବମାନନା କରୁଅଛନ୍ତି, ଆମ୍ଭେମାନେ ତାହାଙ୍କୁ ନିହତ କରିବା; ଏହି ଦୁରାତ୍ମର ନୃପ-ଶବ୍ଦ ଗୁଣରେ ବୃଦ୍ଧଙ୍କ ସମ୍ମତ ନୁହେ କି ସମ୍ମାନର ଯୋଗ୍ୟ ନୁହେଁ, ଅତଏବ ସପୁତ୍ର ଏହାକୁ ନିହତ କରିବା; ଏ ସମସ୍ତ ନରାଧିପମାନଙ୍କୁ ଆହ୍ୱାନ ଓ ସତ୍କାର କରି ଅଥଚ ଉପାଦେୟ ଅନ୍ନ ଭୋଜନ କରିବାକୁ ଦେଇ ପଶ୍ଚାତ୍ ଆମ୍ଭମାନଙ୍କୁ ଅବମାନନା କରୁଅଛି । ୫ । ଦେବସମାଜ ପ୍ରାୟ ଏହି ରାଜ ସମବାୟରେ କୌଣସି ଜଣେ ନୃପତିଙ୍କୁ ସୁଦ୍ଧା ସେ ସଦୃଶ ଦେଖିଲେ ନାହିଁ । ୬ ।

ବେଦରେ ଏହି ଉକ୍ତ କଥିତ ଅଛି ଯେ ସ୍ୱୟମ୍ବର କ୍ଷତ୍ରିୟଙ୍କର, ଏଥିରେ ବରଣ କରିବାର ଅଧିକାର ବିପ୍ରଙ୍କର ନାହିଁ । ୭ । ଅଥବା ହେ ପାର୍ଥିବମାନେ ! ଯଦି ଏହି କନ୍ୟା କାହାକୁ ବରଣ କରିବାକୁ ଇଚ୍ଛା ନ କରେ ତେବେ ଏହାକୁ ଅଗ୍ନିରେ ପରିକ୍ଷିପ୍ତ କରି ସ୍ୱ ସ୍ୱ ରାଜ୍ୟକୁ ଗମନ କରିବା । ୮ । ଏହି ବ୍ରାହ୍ମଣ ଯେବେ ଚପଳତା ପ୍ରଯୁକ୍ତ ଅଥବା ଲୋଭରୁ ପାର୍ଥିବେନ୍ଦ୍ର ମାନଙ୍କର ଅପ୍ରିୟ କରିଅଛି ତେବେ ସେ କଥଞ୍ଚିତ ବଧ୍ୟ ନୁହଇ । ୯ । ଆମ୍ଭମାନଙ୍କର ରାଜ୍ୟ,ଧନ, ମାନ, ଜୀବନ, ପୁତ୍ର, ପୌତ୍ର ଓ ଯାହା କିଛି ଆମ୍ଭମାନଙ୍କର ପ୍ରିୟ ଅଛି, ସେ ସବୁ ବ୍ରାହ୍ମଣଙ୍କ ନିମିତ୍ତ ।୧୦। ଅବମାନ ଭୟରୁ ଅଥବା ସ୍ୱଧର୍ମ୍ମ ରକ୍ଷଣ ନିମିତ୍ତ ଯେବେ ଆମ୍ଭେମାନେ ଏପରି କାର୍ଯ୍ୟ କରିବା—ତେବେ ଅପର କୌଣସି ସ୍ୱୟମ୍ବରରେ ଏପରି ଘଟିବ ନାହିଁ । ୧୧ । ଏହା କହି ରାଜ ଶାର୍ଦ୍ଦୂଳ ମାନେ ହୃଷ୍ଟ ହୋଇ ହସ୍ତରେ ପରିଘ ଧାରଣ କରି ଦ୍ରୁପଦଙ୍କୁ ହିଂସା କରିବା ନିମିତ୍ତ ଉଦ୍ୟତ ହେଲେ । ୧୨ । ବହୁ ସଂଖ୍ୟକ ରାଜା ମାନଙ୍କୁ ଶର ସମୂହ ଘେନି କ୍ରୁଦ୍ଧ ହୋଇ ଆପତିତ ହେବାର ଅବଲୋକନ

କରି ଦ୍ରୁପଦରାଜ ସନ୍ତ୍ରସ୍ତ ହୋଇ ବ୍ରାହ୍ମଣମାନଙ୍କର ଶରଣାପନ୍ନ ହେଲେ * । ୧୩ । ପ୍ରଭିନ୍ନ ବାରଣ ପ୍ରାୟ ବେଗରେ ଆଗତ ରାଜାମାନଙ୍କ ବିରୁଦ୍ଧରେ ଶତ୍ରୁସୂଦନ ମହାଧନୁର୍ଦ୍ଧାରୀ ପାଣ୍ଡୁପୁତ୍ର ଦୁହେଁ ପ୍ରତିଗମନ କଲେ । ୧୪ ।

ତଦନନ୍ତର କର ତଳରେ ଅଙ୍ଗୁଳି ତ୍ରାଣ ବନ୍ଧନ କରି ଅସ୍ତ୍ର ମାନଙ୍କୁ ଉତ୍ତୋଳନ ପୂର୍ବକ ମହୀକ୍ଷିତମାନେ କୁରୁରାଜ ପୁତ୍ର ଅର୍ଜ୍ଜୁନ ଓ ଭୀମସେନଙ୍କୁ ଅବମର୍ଷଣ କରି ସେମାନଙ୍କୁ ହନନ କରିବା ନିମିତ୍ତ ଉପସ୍ଥିତ ହେଲେ । ୧୫ । ତତ୍ପରେ ଅଦ୍ଭୁତ ଓ ଭୟଙ୍କର କର୍ମ୍ମକାରୀ, ବଜ୍ର ସମାନ ସାର, ମହାବଳ, ଭୀମସେନ ହସ୍ତ ଦ୍ୱୟରେ ଗୋଟିଏ ଦ୍ରୁମକୁ ଉତ୍ପାଟନ କରି ଗଜେନ୍ଦ୍ର ପ୍ରାୟ ତାହାକୁ ନିଷ୍ପତ୍ରିତ କଲେ । ୧୬ ।

ପିତୃରାଜ ଯେପରି ଉଗ୍ରଦଣ୍ଡକୁ ଗ୍ରହଣ କରିଥାନ୍ତି, ତଦ୍ବତ୍ ପୃଥୁ ଓ ଦୀର୍ଘବାହୁ ରିପୁ ପ୍ରମଥନକାରୀ, ଭୀମସେନ, ପୁରୁଷର୍ଷଭ ଅର୍ଜ୍ଜୁନଙ୍କର ସମୀପରେ ସେହି ବୃକ୍ଷକୁ ଧାରଣ କରି ସ୍ଥିତ ହେଲେ । ୧୭ । ଅଚିନ୍ତ୍ୟ କର୍ମ୍ମକାରୀ ଭ୍ରାତାଙ୍କର ସେହି ଅତିମାନୁଷିକ କର୍ମ୍ମ ପ୍ରେକ୍ଷଣ କରି ଜିଷ୍ଣୁ ବିସ୍ମୟାପନ୍ନ ହେଲେ ଓ ନିର୍ଭୀକ ହୋଇ ମହେନ୍ଦ୍ରଙ୍କ ସଦୃଶ ଧନୁର୍ଦ୍ଧାରଣ କରି ଦଣ୍ଡାୟମାନ ହେଲେ । ୧୮ । ସେ କର୍ମ୍ମକୁ ପ୍ରେକ୍ଷଣ କରି ଅତିମାନୁଷ ବୁଦ୍ଧି ଓ ଅଚିନ୍ତ୍ୟକର୍ମ୍ମା ଦାମୋଦର, ଆପଣାର ଭ୍ରାତା ଉଗ୍ରବୀର୍ଯ୍ୟ ହଳାୟୁଧଙ୍କୁ ଏହି ବାକ୍ୟ ବୋଇଲେ । ୧୯ ।

ହେ ସଙ୍କର୍ଷଣ ! ଅମ୍ଭେ ଯେବେ ସତ୍ୟ ବାସୁଦେବ, ତେବେ ସିଂହର୍ଷଭ କ୍ରୀଡ଼ା କଳ୍ପ ପ୍ରାୟ ଏହି ଯାହାଙ୍କର ଗତି ଓ ଯେ ତାଳ ପରିମିତ ମହଦ୍ଧନୁକୁ ଆକର୍ଷଣ କରୁଅଛନ୍ତି ସେ ନିଶ୍ଚୟ ଅର୍ଜ୍ଜୁନ ଏଥିରେ ବିଚାର କରିବାର କିଛି ନାହିଁ । ୨୦ । ଏହି ଯେଉଁ ବ୍ୟକ୍ତି ଶୀଘ୍ର ବୃକ୍ଷକୁ ଅବଲମ୍ବନ କରି ରାଜାମାନଙ୍କୁ ନିରାକୃତ କରିବାରେ ସହସା ପ୍ରବୃତ୍ତ ହୋଇ ଅଛନ୍ତି, ସେ ବୃକୋଦର, ତାଙ୍କ ବ୍ୟତିରେକେ ପୃଥିବୀରେ ଅଦ୍ୟ [illegible] କେହି ଏପରି କର୍ମ୍ମ ସମର ସ୍ଥଳରେ କରିବାକୁ ସମର୍ଥ ନୁହନ୍ତି । ୨୧ ।

---

* ବ୍ରାହ୍ମଣଙ୍କ ଅଭିଶାପରେ ରାଜାମାନେ ଭୀତ ହୋଇ ଯୁଦ୍ଧରୁ ନିବୃତ୍ତ ହେବେ ଏହି ବୁଦ୍ଧିରେ ।

ହେ ଅଚ୍ୟୁତ ! କମଳାୟତ ଲୋଚନ, ମହାସିଂହଗତ, ବଳୀଭ, ଦୀର୍ଘ, ଗୌରବର୍ଣ୍ଣ ଓ ଉଜ୍ଜ୍ୱଳ ଗୃଦ୍ଧନାସ ଓ ପ୍ରଲମ୍ବବାହୁ ହୋଇ ଯେଉଁ ବ୍ୟକ୍ତି କ୍ଷଣକାଳ ପୂର୍ବରୁ ଏହି ସମାଜରୁ ବିନିଃସୃତ ହେଲେ, ସେ ଧର୍ମପୁତ୍ର ଅଟନ୍ତି । ୨୨ । ତାହାଙ୍କ ସହିତ କାର୍ତ୍ତିକେୟଙ୍କ ସମସଦୃଶ ଯେଉଁ ଦୁଇକୁମାର ଗଲେ, ସେ ଦୁହେଁ ଅଶ୍ୱିନୀକୁମାରଙ୍କ ପୁତ୍ର ଅଟନ୍ତି, ଆମ୍ଭର ଏହି ବିତର୍କ ହେଉଅଛି; ଆମ୍ଭେ ଶୁଣିଅଛୁଁ ଯେ ସେହି ପାଣ୍ଡୁସୁତମାନେ ଓ ପୃଥା ଜତୁବେଶ୍ମ ଦାହରୁ ମୁକ୍ତ ହୋଇଅଛନ୍ତି । ୨୩ । ନିର୍ମ୍ମଳ ଜଳଦାଭ ବଳାଯୁଧ ଯେ ବଚନ ଶୁଣି ଆପଣାର ଅନନ୍ତରଜଙ୍କୁ ବିଶ୍ୱାସପୂର୍ବକ କହିଲେ, ଆମ୍ଭେ ପ୍ରୀତ ହେଲୁଁ ଯେ ଭାଗ୍ୟବଳରୁ ଆମ୍ଭମାନଙ୍କର ପିତୃସ୍ୱସା ପୃଥା କୌରବାଗ୍ର୍ୟଗଣଙ୍କ ସହ ଦାହରୁ ବିମୁକ୍ତ ହେଲେ । ୨୦ ।

---

## ଅଧ୍ୟାୟ—୧୯୦

ବୈଶମ୍ପାୟନ ବୋଇଲେ—ଦ୍ୱିଜର୍ଷଭମାନେ ନିଜ ନିଜର ମୃଗଚର୍ମ ଓ କମଣ୍ଡଳୁମାନଙ୍କୁ ବିଧୂନିତ କରି ବୋଇଲେ—ଭୟ କରନା, ଆମ୍ଭେମାନେ ଶତ୍ରୁଙ୍କ ସହିତ ଯୁଦ୍ଧ କରିବୁଁ । ୧ । ବ୍ରାହ୍ମଣଙ୍କର ତଦ୍ରୂପ ବଚନ ଶ୍ରବଣ କରି ଅର୍ଜ୍ଜୁନ ମନ୍ଦ ହାସ୍ୟ କରି ବୋଇଲେ, ଆପଣମାନ ପ୍ରେକ୍ଷକ ହୋଇ ଏକ ପାର୍ଶ୍ୱରେ ଦଣ୍ଡାୟମାନ ହେଉନ୍ତୁ; ଆମ୍ଭେ, ଆଶୀବିଷଙ୍କ ମନ୍ତ୍ରରେ ସ୍ତମ୍ଭିତ କଲ ପ୍ରାୟ ସଂକ୍ରୁଦ୍ଧ ରାଜାମାନଙ୍କୁ ଶତ ଶତ ସରଳାଗ୍ର ଶରଦ୍ୱାରା ନିବାରିତ ଓ ବିକୀର୍ଣ୍ଣ କରିବୁଁ । ୩ । ମହାବଳ ଅର୍ଜ୍ଜୁନ ଏହା କହି ଶୁଳ୍କ ସ୍ୱରୂପ ପ୍ରାପ୍ତ ଧନୁକୁ ଅଧିମିତ କରି ଭ୍ରାତା ଭୀମଙ୍କ ସହିତ ଗିରି ସଦୃଶ ଅଚଳ ହୋଇ ସ୍ଥିତ ହେଲେ । ୪ ।

ତତ୍ପରେ କର୍ଣ୍ଣପ୍ରମୁଖ ଯୁଦ୍ଧ-ଦୁର୍ମ୍ମଦ କ୍ଷତ୍ରିୟମାନଙ୍କୁ ଦର୍ଶନ କରି ଦୁଇଭ୍ରାତା ନିର୍ଭୟ ଚିତ୍ତରେ ଯେପରି ଗଜ ଦ୍ୱୟ ବହୁସଂଖ୍ୟକ ଗଜମାନଙ୍କ ପ୍ରତି ଧାବିତ ହୁଅନ୍ତି, ତଦ୍ରୂପ ସମ୍ମତିତ ହେଲେ । ୫ । ଯୁଦ୍ଧାଭିଳାଷୀ ଭୂପାଳମାନେ ପରୁଷବାକ୍ୟମାନ ପ୍ରୟୋଗ କରି ବୋଇଲେ ଯେ ସମରସ୍ଥଳରେ ଯୁଯୁତ୍ସୁ ବ୍ରାହ୍ମଣମାନଙ୍କର ମଧ୍ୟ ବଧ ହୋଇଥାଏ । ଏହାକହି ରାଜାମାନେ ବ୍ରାହ୍ମଣମାନଙ୍କୁ ପ୍ରତାଡ଼ିତ କଲେ; ତତ୍ପରେ ମହାତେଜା କର୍ଣ୍ଣ, ଜିଷ୍ଣୁଙ୍କ ପ୍ରତି ରଣ କରିବାକୁ ଗମନ କଲେ । ୭ ।

ଭଗୁମତୀ ଗଙ୍ଗା ନିମିତ୍ତ ଯେପରି ଗଜଦ୍ୱୟ ଯୁଦ୍ଧାର୍ଥୀ ହୁଅନ୍ତି, ତଦ୍ରୂପ ମଦ୍ରଦେଶାଧିପତି ବଳବାନ୍ ଶଲ୍ୟ ଭୀମସେନଙ୍କ ପ୍ରତି ଗମନ କଲେ । ୮ । ଦୁର୍ଯ୍ୟୋଧନ ପ୍ରଭୃତି ଅନ୍ୟାନ୍ୟ ଭୂପାଳମାନେ ବ୍ରାହ୍ମଣମାନଙ୍କୁ ଆକ୍ରମଣ କଲେ, କିନ୍ତୁ ସେମାନଙ୍କର ବ୍ରାହ୍ମଣଙ୍କ ସହିତ ଯୁଦ୍ଧ କରିବାରେ ବିଶେଷ ଯତ୍ନ କି ପ୍ରୟାସ ହେଲା ନାହିଁ । ୯ । ଅନନ୍ତର ବିକର୍ତ୍ତନଙ୍କ ପୁତ୍ର କର୍ଣ୍ଣଙ୍କୁ ଆପତିତ ହେବାର ଦେଖି ଶ୍ରୀମାନ୍ ଅର୍ଜ୍ଜୁନ ମହାଧନୁ ବିକର୍ଷଣ କରି ନିଶିତ ଶର ସମୂହ ଦ୍ୱାରା ତାହାଙ୍କୁ ପ୍ରତିବିଦ୍ଧ କଲେ । ୧୦ ।

ରାଧାନନ୍ଦନ କର୍ଣ୍ଣ ଅର୍ଜ୍ଜୁନଙ୍କର ପ୍ରଖର ଓ ତେଜସ୍ୱୀ ଶରମାନଙ୍କ ବେଗରେ ବିମୁଗ୍ଧ ହୋଇ ପରେ ଯତ୍ନପୂର୍ବକ ତାହାଙ୍କୁ ଆକ୍ରମଣ କଲେ । ବିଜୟୀବର ଅର୍ଜ୍ଜୁନ ଓ କର୍ଣ୍ଣ ପରସ୍ପର ବିଜିଗୀଷୁ ହୋଇ କ୍ରୋଧରେ ଇଦୃଶ କ୍ଷିପ୍ରକାରିତା ପ୍ରଦର୍ଶନ ପୂର୍ବକ ଯୁଦ୍ଧ ଆରମ୍ଭ କଲେ ଯେ ସେମାନେ କିଏ କେତେବେଳେ ଆଦାନ ବା ସନ୍ଧାନ କରୁଅଛନ୍ତି, ତାହା କେହି ଲକ୍ଷ୍ୟ କରିପାରିଲେ ନାହିଁ । ୧୨ । ସେମାନେ ପରସ୍ପର ଶୌର୍ଯ୍ୟ ପ୍ରକାଶ କରି ଏହିପରି ବାକ୍ୟରେ ଉତ୍ତର ପ୍ରତ୍ୟୁତ୍ତର କଲେ, "ତୁମ୍ଭେ ଯାହା କଲ ତାହାର ଏହି ପ୍ରତିକାର, ଦେଖ ଆମ୍ଭର ବାହୁବଳ ଦେଖ" । ୧୩ ।

ତଦନନ୍ତର ବୈକର୍ତ୍ତନ କର୍ଣ୍ଣ, ଅର୍ଜ୍ଜୁନଙ୍କର ଭୂମଣ୍ଡଳ ମଧ୍ୟରେ ସାଦୃଶ୍ୟ ରହିତ ଭୁଜବୀର୍ଯ୍ୟ ଅବଲୋକନ କରି ସଂରବ୍ଧ * ହୋଇ ଯୁଦ୍ଧ କଲେ । ୧୪ । ଅର୍ଜ୍ଜୁନଙ୍କ ପ୍ରଯୁକ୍ତ ବେଗବାନ୍ ବାଣମାନଙ୍କୁ ସେ ପ୍ରତିହତ କରି ଉଚ୍ଚୈଃସ୍ୱରରେ ସିଂହନାଦ ପରିତ୍ୟାଗ କଲେ; ସେନାମାନେ ତାଙ୍କର ସେହି କର୍ମ୍ମର ଭୂୟସୀ ପ୍ରଶଂସା କଲେ । ୧୫ । ପରେ କର୍ଣ୍ଣ ଅର୍ଜ୍ଜୁନଙ୍କୁ କହିଲେ, ହେ ବିପ୍ରମୁଖ୍ୟ ! ସଂଯୁଗରେ ତୁମ୍ଭର ଭୁଜବୀର୍ଯ୍ୟ ଓ ବିଜୟଶୀଳ ଶସ୍ତ୍ରାସ୍ତ୍ର ଅବଲୋକନ କରି ଆମ୍ଭେ ପରିତୁଷ୍ଟ ହେଲୁଁ । ୧୬ ।

ହେ ବ୍ରାହ୍ମଣଶ୍ରେଷ୍ଠ ! ଆପଣ କି ସାକ୍ଷାଦ୍ଧନୁର୍ବେଦ, କି ରାମ, ଅଥବା ଦେବରାଜ ଇନ୍ଦ୍ର, କି ଅଚ୍ୟୁତ ବା ବିଷ୍ଣୁ ? ଆତ୍ମ ଗୋପନ ପୂର୍ବକ ବ୍ରାହ୍ମଣ-ରୂପ ଧାରଣ କରି, ବାହୁବଳ ଅବଲମ୍ବନ ପୂର୍ବକ ଆମ୍ଭ ସହିତ ପ୍ରତିଯୁଦ୍ଧ କରୁଅଛ; ଆମ୍ଭ ମନରେ ଏହିପରି ଭାବ ଜାତ ହେଉଅଛି । ୧୮ । ଆହବ ସ୍ଥଳରେ ଆମ୍ଭେ କ୍ରୁଦ୍ଧ ହେଲେ, ସାକ୍ଷାତ୍

* ସଂରବ୍ଧ—ଦୃଢ଼ତର ମନଃ ସଂଯୋଗ ପୂର୍ବକ ।

ଶଚୀପତି ଅଥବା ପାଣ୍ଡୁନନ୍ଦନ କିରୀଟିଙ୍କ ବ୍ୟତିରେକେ ଅନ୍ୟ କେହି ପ୍ରଜ୍ଜ୍ୱଳିତ ଅମ୍ବରର ସହିତ ଯୁଦ୍ଧ କରିବାକୁ ସମର୍ଥ ନୁହନ୍ତି । ୧୯ । ତାହାଙ୍କର ଏହିରୂପ ବଚନ ଶ୍ରବଣ କରି ଫାଲ୍‌ଗୁନ ପ୍ରତ୍ୟୁତ୍ତର କଲେ—ହେ କର୍ଣ୍ଣ ! ଅମ୍ଭେ ଧନୁର୍ବେଦ ନୋହୁଁ କି ପ୍ରତାପବାନ୍ ରାମ ନୋହୁଁ । ୨୦ । ଅମ୍ଭେ ଯୋଦ୍ଧୃଶ୍ରେଷ୍ଠ ବ୍ରାହ୍ମଣ, ସର୍ବଶସ୍ତ୍ରଧାରୀଙ୍କର ଶ୍ରେଷ୍ଠ ଅଟୁଁ; ଗୁରୁଙ୍କ ଆଜ୍ଞାରୁ ଅମ୍ଭେ ବ୍ରାହ୍ମ ଓ ପୌରନ୍ଦର ଅସ୍ତ୍ରମାନଙ୍କରେ ନିଷ୍ଠିତ ହୋଇଅଛୁଁ । ହେ ବୀର ! ତୁମ୍ଭେ ସ୍ଥିର ହୁଅ, ଅଦ୍ୟ ଅମ୍ଭେ ତୁମ୍ଭଙ୍କୁ ରଣରେ ଜୟ କରିବାକୁ ବ୍ୟବସିତ ହୋଇଅଛୁଁ । ୨୧ ।

ବୈଶମ୍ପାୟନ ବୋଇଲେ—ଏହା ଶୁଣି ମହାରଥ ରାଧାନନ୍ଦନ କର୍ଣ୍ଣ, ବ୍ରାହ୍ମତେଜକୁ ଅଜେୟ ଜାଣି ଯୁଦ୍ଧରୁ ନିବୃତ୍ତ ହେଲେ । ୨୨ । ଅନ୍ୟ ଦିଗରେ ବିଦ୍ୟା ଓ ବଳ ସମ୍ପନ୍ନ, ଯୁଦ୍ଧବିଶାରଦ, ମତ୍ତମାତଙ୍ଗ ସଦୃଶ ବଳବାନ୍, ବୀର ବୃକୋଦର ଓ ରାଜା ଶଲ୍ୟ ଦୁହେଁ ଯୁଦ୍ଧ କରୁଥିଲେ । ସେମାନେ ପରସ୍ପର ପରସ୍ପରଙ୍କୁ ଆହ୍ୱାନ ପୂର୍ବକ ମୁଷ୍ଟି ଓ ଜାନୁଦ୍ୱାରା ଆଘାତ କରି, କେତେବେଳେ ଅବା ଦୂରକୁ ନିକ୍ଷିପ୍ତ କରି କେତେବେଳେ ଅବା ତିର୍ଯ୍ୟକ୍ ପାତନ ଦ୍ୱାରା ଆକୃଷ୍ଟ କରି ଓ କେତେବେଳେ ଅବା ମୁଷ୍ଟି ପ୍ରହାର କରୁଥିଲେ । ସେମାନଙ୍କର ପରସ୍ପରର ପ୍ରହାରରେ ଘୋରତର ଚଟଚଟା ଶବ୍ଦ ହେଉଥିଲା । ୨୩ । ସେମାନେ ଅନ୍ୟୋନ୍ୟଙ୍କ ପ୍ରତି ପାଷାଣ ପତନ ସଦୃଶ ପ୍ରହାର କରିବାରେ ପ୍ରବୃତ୍ତ ହେଲେ; ଦୁହେଁ ଦୁହିଙ୍କୁ ଆକର୍ଷଣ କରିବାକୁ ଆରମ୍ଭ କଲେ । ମୁହୂର୍ତ୍ତିକାଳ ପରେ କୁରୁବଂଶାବତଂସ ଭୀମ, ଶଲ୍ୟଙ୍କୁ ବାହୁଦ୍ୱାରା ଉତ୍କ୍ଷିପ୍ତ କରି ରଣଭୂମିରେ ପାତିତ କଲେ; ତାହା ଦେଖି ସମସ୍ତ ବ୍ରାହ୍ମଣମାନେ ଅଟ୍ଟହାସ୍ୟରେ ରଣସ୍ଥଳ ପୂର୍ଣ୍ଣ କରିଦେଲେ । ୨୮ । ପୁରୁଷଶ୍ରେଷ୍ଠ ବଳବାନ୍ ଭୀମସେନ, ସେଠାରେ ଏହି ଆଶ୍ଚର୍ଯ୍ୟ କର୍ମ କଲେ ଯେ ଅତିମାତ୍ର ବଳବାନ୍ ଶଲ୍ୟଙ୍କୁ ଭୂତଳରେ ପାତିତ କରିସୁଦ୍ଧା ତାହାଙ୍କୁ ବଧ କଲେ ନାହିଁ । ୦୯ ।

ଭୀମସେନ ଶଲ୍ୟଙ୍କ ମାରିତ କଲେନ ଓ କର୍ଣ୍ଣ ଶଙ୍କିତ ହୁଅନ୍ତେ, ସମସ୍ତ ରାଜାମାନେ ବୃକୋଦରଙ୍କ ଚତୁର୍ଦ୍ଦିଗ ଘେରି ଶଙ୍କିତ ଭାବରେ ସ୍ଥିତ ହେଲେ ଓ ମନରେ ବିଚାରିଲେ ଯେ ଏହି ବ୍ରାହ୍ମଣ ଦୁହେଁ ଅତି କୁଶଳ ଅଟନ୍ତି । ଏହାଙ୍କର ଜନ୍ମ କେଉଁଠାରେ ଓ ନିବାସ କେଉଁଠାରେ ଅବଗତ ହେବନ୍ତୁ । । ଭୀମ. ଦ୍ରୋଣ ଓ ପାଣ୍ଡୁସୁତ କିରୀଟିଙ୍କ ବ୍ୟତିରେକେ

ଅଉ କିଏ ରାଧାସୁତ କର୍ଣ୍ଣଙ୍କ ସହିତ ରଣରେ ଯୁଦ୍ଧ କରିବାକୁ ସମର୍ଥ ଅଛି ? ।୩୨। ଦେବକୀ ପୁତ୍ର କୃଷ୍ଣ ଓ ଶାରଦ୍ୱତ କୃପଙ୍କ ବ୍ୟତିରେକେ ଆଉ କିଏ ଏହି ପୃଥିବୀରେ ଦୁର୍ଯ୍ୟୋଧନଙ୍କ ସହିତ ଯୁଦ୍ଧ କରିବାକୁ ଶକ୍ତ ଅଛି ? । ୩୩ । ଅଥବା ବଳଦେବ କିମ୍ବା ପାଣ୍ଡୁନନ୍ଦନ ବୃକୋଦର ଅଥବା ଦୁର୍ଯୋଧନଙ୍କ ବ୍ୟତିରେକେ ଆଉ କିଏ ବଳବଦ୍‌ବର ମଦ୍ରାଧିପତି ଶଲ୍ୟଙ୍କୁ ରଣରେ ପାତିତ କରିପାରେ ? ଅତଏବ ଅଦ୍ୟ ଏହି ବ୍ରାହ୍ମଣଙ୍କ ସହିତ ଯୁଦ୍ଧ କରିବାରୁ ନିବୃତ୍ତ ହୁଅ । ୩୫ । ବ୍ରାହ୍ମଣମାନେ ଅପରାଧୀ ହେଲେହେଁ ସର୍ବଦା ସେମାନଙ୍କୁ ରକ୍ଷା କରିବା ବିଧେୟ, ଆଗେ ଆସ, ଏମାନଙ୍କର ପରିଚୟ ଗ୍ରହଣ କରିବା, ପରେ ହୃଷ୍ଟ ହୋଇ ଯୁଦ୍ଧ କରିବା । ୩୬ । ଅନନ୍ତର କ୍ଷିତୀଶ୍ୱରମାନଙ୍କୁ ଓ ଅପର ବ୍ୟକ୍ତିମାନଙ୍କୁ ଏହି ପ୍ରକାର ବୋଲି ବୋଲି ହେବାର ସମୀକ୍ଷଣ କରି, ଓ ସଂଯୁଗରେ ସେହି ଅଦ୍ଭୁତ କର୍ମମାନ କରି ଭୀମାର୍ଜ୍ଜୁନ ଦୁହେଁ ତୁଷ୍ଣୀଭାବ ଅବଲମ୍ବନ କଲେ । ୩୭ ।

ବୈଶମ୍ପାୟନ ବୋଇଲେ—ଅନନ୍ତର କୃଷ୍ଣ, ଭୀମଙ୍କର ସେହି ଅଲୌକିକ କର୍ମ ବିଲୋକନ କରି ସେହି ଦୁହିଁଙ୍କୁ କୁନ୍ତୀସୁତ ବୋଲି ଅନୁଶଙ୍କା କରି ସବୁ ମହୀପତିମାନଙ୍କୁ ନିବାରଣ କଲେ ଓ ଅନୁନୟ ପୂର୍ବକ ବୋଇଲେ ଯେ ଏହି ବ୍ରାହ୍ମଣ ଧର୍ମାନୁସାରେ ଦ୍ରୌପଦୀଙ୍କୁ ଲାଭ କରିଅଛନ୍ତି, ଏହାଙ୍କ ପ୍ରତି ଦ୍ୱେଷ ପ୍ରକାଶ କରିବା ବିଧେୟ ନୁହଇ । ୩୮ ।

ଏହି ପ୍ରକାରେ ଯୁଦ୍ଧ ବିଶାରଦ ରାଜସତ୍ତମମାନେ ଯୁଦ୍ଧରୁ ବିନିବୃତ୍ତ ହୋଇ ବିସ୍ମିତ ମାନସରେ ଆପଣା ଆପଣା ଆବାସକୁ ଗମନ କଲେ ।୩୯। ଯେଉଁ ସବୁ ଲୋକେ ଦର୍ଶନାର୍ଥ ସମାଗତ ହୋଇଥିଲେ, ସେମାନେ କହି କହି ଗଲେ ଯେ ଅଦ୍ୟ ରଙ୍ଗଭୂମିରେ ବ୍ରାହ୍ମଣମାନେ ପ୍ରଧାନ ହେଲେ ଓ ବ୍ରାହ୍ମଣ ପାଞ୍ଚାଳୀଙ୍କୁ ବରଣ କଲେ । ୪୦ । ଅନନ୍ତର ଭୀମସେନ ଓ ଅର୍ଜ୍ଜୁନ, ମୃଗଚର୍ମ ପରିଧାୟୀ ବ୍ରାହ୍ମଣ ମଣ୍ଡଳୀରେ ପରିବୃତ ହୋଇ ଅତି କଷ୍ଟରେ ଗମନ କଲେ । ୪୧ । ପୌର୍ଣ୍ଣମାସୀରେ ମେଘ ନିର୍ମ୍ମୁକ୍ତ ଚନ୍ଦ୍ର ସୂର୍ଯ୍ୟ ଯେପରି ଶୋଭା ପ୍ରାପ୍ତ ହୁଅନ୍ତି, ସେହିପରି ଶତ୍ରୁଙ୍କ କର୍ତ୍ତୃକ କ୍ଷତ ବିକ୍ଷତ ଶରୀର ନରବୀର ଭୀମ ଓ ଅର୍ଜ୍ଜୁନ, ଅନୁଗାମିନୀ ଦ୍ରୌପଦୀଙ୍କ ସହିତ ଜନ ସମ୍ବାଧାରୁ ମୁକ୍ତ ହୋଇ ଶୋଭାରେ ବିରାଜିତ ହେଲେ । ୪୨ ।

ଏଣେ ଭିକ୍ଷା କରି ପ୍ରତିନିବୃତ୍ତ ହେବାର ସମୟ ଅତୀତ ହେବାରୁ ସେମାନଙ୍କର ମାତା କୁନ୍ତୀ ବହୁବିଧ ଅନିଷ୍ଟପାତର ଶଙ୍କାକରି

ଚନ୍ତାକୁଳିତା ହେଲେ । ୪୩ । "ଆମ୍ଭର ପୁତ୍ରମାନେ ଏତେବେଳ ଫେରିକରି ଅସିଲେ ନାହିଁ; ହୁଏତ ଧୃତରାଷ୍ଟ୍ର ତନୟମାନେ ଆମ୍ଭ ପୁତ୍ରଙ୍କୁ ଚିହ୍ନିପାରି ବିନାଶ କଲେ; ଅଥବା ଶରଣକୁ ମାୟାବୀ ଭୟଙ୍କର ରାକ୍ଷସମାନେ ସଂହାର କଲେ; ମହାତ୍ମା ବ୍ୟାସଦେବଙ୍କର ବଚନ କି ଅନ୍ୟଥା ହେଲା ? । ୪୫ । ସୁତ-ସ୍ନେହବତୀ ପୃଥା ଏହିପରି ଚିନ୍ତା କଲେ । ତତ୍ପରେ ଜନମାନେ ମୃତ୍ପ୍ରାୟ ହେବା ସମୟରେ ଅର୍ଜୁନ ବ୍ରାହ୍ମଣଙ୍କ ଦ୍ୱାରା ପରିବୃତ ହୋଇ ଅପରାହ୍ନରେ, ମେଘାଚ୍ଛାଦିତ ଦୁର୍ଦ୍ଦିନରେ ମେଘାବୃତ ସୂର୍ଯ୍ୟଙ୍କ ପ୍ରାୟ ଚୟହ୍ନା କୁମ୍ଭକାର ଗୃହରେ ପ୍ରବିଷ୍ଟ ହେଲେ ।

---

## ଅଧ୍ୟାୟ—୧୯୧

ବୈଶମ୍ପାୟନ ବୋଇଲେ—ମହାନୁଭାବ ନରଶ୍ରେଷ୍ଠ ଭୀମ ଓ ଅର୍ଜୁନ ପରମ ପ୍ରୀତ ହୋଇ ଯାଜ୍ଞସେନୀଙ୍କ ସମଭିବ୍ୟାହାରରେ ସେହି କୁମ୍ଭକାର ଶାଳାରେ ଉପସ୍ଥିତ ହୋଇ ମାତାଙ୍କୁ ନିବେଦନ କଲେ. ମାତଃ ! ଅଦ୍ୟ ଏହି ଭିକ୍ଷା ପ୍ରାପ୍ତ ହୋଇଅଛୁଁ । ୧ । କୁନ୍ତୀ କୁଟୀର ମଧ୍ୟରେ ଥାଇ ସେମାନଙ୍କୁ ନ ଚାହିଁ ବୋଇଲେ, ଯାହା ଆଣିଅଛ, ସମସ୍ତେ ଏକତ୍ର ହୋଇ ଭୋଜନ କର । ପଶ୍ଚାତ୍ କୃଷ୍ଣାଙ୍କୁ ଦେଖି କହିଲେ, ଅମ୍ଭେ କି କଷ୍ଟକର ବଚନ ବୋଇଲୁ । ୨ । ଅନନ୍ତର ସେ ଅଧର୍ମ ଭୟରେ ପରିଚିନ୍ତିତା ହୋଇ ପରମ ପ୍ରୀତିପୂର୍ବକ ଯାଜ୍ଞସେନୀଙ୍କ ହସ୍ତ ଧାରଣ କରି ଯୁଧିଷ୍ଠିରଙ୍କୁ ବୋଇଲେ । ୩ ।

କୁନ୍ତୀ ବୋଇଲେ—ପୁତ୍ର ! ତୁମ୍ଭର ଅନୁଜଦ୍ୱୟ, ଦ୍ରୁପଦ ରାଜାଙ୍କର ଏହି କନ୍ୟାକୁ ଆଣି 'ଭିକ୍ଷା ଆଣିଅଛୁ' ବୋଲି କହି ଆମ୍ଭଠାରେ ସନ୍ନିବିଷ୍ଟ କଲେ, ଅମ୍ଭେ ପ୍ରମାଦ ବଶରୁ କହିଲୁଁ ସମସ୍ତେ ସମେତ ହୋଇ ଭୋଜନ କର । ହେ କୁରୁଶ୍ରେଷ୍ଠ ! ଏବେ କି ପ୍ରକାରେ ଆମ୍ଭର ସେହି ବାକ୍ୟ ରକ୍ଷା ହେବ ? କି ରୂପେ ଏହି ପାଞ୍ଚାଳ ରାଜ ଦୁହିତାଙ୍କୁ ଅଧର୍ମ ସ୍ପର୍ଶ ନ କରିବ ଓ କିପରି ସେ ଜନ୍ମ ଜନ୍ମ ଦୋଷରୁ ମୁକ୍ତ ହେବେ । ୪ ।

ବୈଶମ୍ପାୟନ ବୋଇଲେ—ସେହି ମତିମାନ୍ ନରବୀର ରାଜା ଯୁଧିଷ୍ଠିର ମାତାଙ୍କର ବଚନ ଶ୍ରବଣ କରି ମୁହୂର୍ତ୍ତିକାଳ ଚିନ୍ତାନ୍ୱିତ ହୋଇ କୁନ୍ତୀଙ୍କୁ ଆଶ୍ୱାସନା ଦେଲେ ଓ ଧନଞ୍ଜୟଙ୍କୁ ଆହ୍ୱାନ କରି

ଏହି ବଚନ ବୋଇଲେ । ୭। ହେ ଫାଲ୍‌ଗୁନ । ତୁମ୍ଭେ ଯାଜ୍ଞସେନୀଙ୍କୁ ଜୟ କରିଅଛ. ସେ ରାଜପୁତ୍ରୀ ତୁମ୍ଭଠାରେ ଶୋଭା ପାଇବେ; ଅତଏବ ହେ ଶତ୍ରୁବେଗ ସହ । ଅଗ୍ନି ପ୍ରଜ୍ୱଳିତ କରି ବିଧିପୂର୍ବକ ଏହାଙ୍କର ପାଣିଗ୍ରହଣ କର । ୮ । ଅର୍ଜୁନ ଉତ୍ତର କଲେ, ହେ ନରେନ୍ଦ୍ର । ଆପଣ ଆମ୍ଭଙ୍କୁ ଅଧର୍ମ ଭାଗୀ କରନ୍ତୁ ନାହିଁ; ଯାହା ଆଜ୍ଞା କରୁଅଛନ୍ତି, ତାହା ଧର୍ମ ନୁହେ, ଅବଶିଷ୍ଟ ବ୍ୟକ୍ତିଙ୍କର ବ୍ୟବହାର ଅଟେ । ଆପଣଙ୍କର ପ୍ରଥମେ ବିବାହ ହେବାର କର୍ତ୍ତବ୍ୟ, ତତ୍ପରେ ମହାବାହୁ ଅଚିନ୍ତ୍ୟ କର୍ମା ଭୀମସେନ ବିବାହ କରିବେ, ତଦନନ୍ତର ଅମ୍ଭେ, ଆମ୍ଭପରେ ନକୁଳ ଓ ତାହାଙ୍କ ଉତ୍ତାରୁ ବେଗଗାମୀ ସହଦେବ ବିବାହ କରିବେ । ହେ ରାଜନ୍ । ବୃକୋଦର, ଅମ୍ଭେ ଓ ନକୁଳ ଏବଂ ସହଦେବ ଓ ଏହି କନ୍ୟା, ସମସ୍ତେ ଆପଣଙ୍କ ଅଧୀନ; ଏହା ବିବେଚନା କରି, ଯେଉଁ କାର୍ଯ୍ୟ ଧର୍ମ ଓ ଯଶର ଅନୁମୋଦିତ ଓ ଯହିଁରେ ଏହି ପାଞ୍ଚାଳ ରାଜଦୁହିତାଙ୍କର ହିତ ହେବ, ସେ କାର୍ଯ୍ୟ କହନ୍ତୁ, ଅମ୍ଭେ କରିବା; ଅମ୍ଭେ ସମସ୍ତେ ଆପଣଙ୍କର ବଶବର୍ତ୍ତୀ ଅଟୁଁ । ୧୦ ।

ବୈଶମ୍ପାୟନ ବୋଇଲେ—ଭକ୍ତି ଓ ସ୍ନେହ ସମନ୍ୱିତ ଜିଷ୍ଣୁଙ୍କ ବଚନ ଶୁଣି, ପାଣ୍ଡୁ-ନନ୍ଦନମାନେ ସମସ୍ତେ ପାଞ୍ଚାଳୀଙ୍କ ଠାରେ ଦୃଷ୍ଟି ନିବେଶନ କଲେ । ପାଞ୍ଚାଳୀ ମଧ୍ୟ ସେମାନଙ୍କ ସମସ୍ତଙ୍କ ପ୍ରତି ଦୃଷ୍ଟିନିକ୍ଷେପ କଲେ । ତତ୍ପରେ ପାଣ୍ଡବମାନେ ପରସ୍ପର ବିଲୋକନ କରି ହୃଦୟରେ ଦ୍ରୌପଦୀଙ୍କୁ ଧାରଣ କରି ଉପବିଷ୍ଟ ହେଲେ । ୧୨ । ବିଧାତା ସ୍ୱୟଂ ପାଞ୍ଚାଳୀଙ୍କର ରୂପକୁ ଏପରି କୌଶଳରେ ସର୍ବନାରୀମାନଙ୍କ ଅପେକ୍ଷା ସୁନ୍ଦର ରୂପେ ଗଠନ କରିଥିଲେ ଯେ, ଅମିତ ତେଜା ପାଣ୍ଡୁନନ୍ଦନମାନେ ସୁଦ୍ଧା ତାହାଙ୍କର ରୂପକୁ ବିଲୋକନ କରିବା ମାତ୍ରକେ ମନୋଭବ ସେମାନଙ୍କର ଇନ୍ଦ୍ରିୟ ଗ୍ରାମକୁ ମଥିତ କରି ପ୍ରାଦୁର୍ଭୂତ ହେଲେ । ୧୦ ।

କୁନ୍ତୀପୁତ୍ର ପୁରୁଷର୍ଷଭ ଯୁଧିଷ୍ଠିର ସେମାନଙ୍କର ଆକାର ଓ ଭାବକୁ ବୋଧକରି ଦ୍ୱୈପାୟନଙ୍କର ସମସ୍ତ ବଚନ ସ୍ମରଣ କଲେ ଓ ପରସ୍ପରରେ ଭ୍ରାତୃଭେଦ ଆଶଙ୍କା କରି କହିଲେ, ଏହି ଶୁଭଲକ୍ଷଣା ଦ୍ରୌପଦୀ ଅମ୍ଭ ସମସ୍ତଙ୍କର ଭାର୍ଯ୍ୟା ହେବେ । ୧୬ ।

ବୈଶମ୍ପାୟନ ବୋଇଲେ—ଜ୍ୟେଷ୍ଠଭ୍ରାତାଙ୍କର ସେହି ବଚନ ଶ୍ରବଣ କରି ପାଣ୍ଡୁ-ନନ୍ଦନମାନେ ସମସ୍ତେ ମନୋମଧ୍ୟରେ ଦ୍ରୌପଦୀଙ୍କ

ଏଷଦୃ ଧାନଙ୍କର ହୃଷ୍ଟଚିତ୍ତରେ ସ୍ଥିତ ହେଲେ । ୧୭ । ଅନନ୍ତର ବୃଷ୍ଣି-ବଂଶର ପ୍ରଧାନ ବୀର କୃଷ୍ଣ ସେମାନଙ୍କୁ କୁରୁ-ବୀର ମନେ କରି ସେହିସବୁ ବୀର ପୁରୁଷମାନେ ଯେଉଁ ଭାର୍ଗବ କର୍ମ୍ମଶାଳାରେ ବାସ କରୁଥିଲେ, ସେହି ସ୍ଥାନକୁ ବଳଦେବଙ୍କ ସହିତ ଗମନ କଲେ । ୧୮ । ସେଠାରେ ରୋହିଣୀ ପୁତ୍ରଙ୍କ ସହ କୃଷ୍ଣ ଦେଖିଲେ ଯେ ସେଠାରେ ପୃଥୁ ଓ ଦୀର୍ଘବାହୁ ଅଜାତଶତ୍ରୁଙ୍କୁ ବେଷ୍ଟନ କରି ଜ୍ୱଳନସମ ତେଜସ୍ୱୀ ତଦୀୟ ଅନୁଜମାନେ ଉପବିଷ୍ଟ ହୋଇଅଛନ୍ତି । ୧୯ । ତଦନନ୍ତର ଧାର୍ମିକଶ୍ରେଷ୍ଠ ଅଜମୀଢ ବଂଶ-ଜାତ କୁନ୍ତୀସୁତ ରାଜା ଯୁଧିଷ୍ଠିରଙ୍କ ସମୀପକୁ ବାସୁଦେବ ଗମନ କରି, ତାହାଙ୍କ ପାଦଦ୍ୱୟ ସ୍ପର୍ଶକରି ଅମ୍ଭେ କୃଷ୍ଣ ବୋଲି ବୋଇଲେ ।୨୦।

ତତ୍ପରେ ରୋହିଣୀ-ପୁତ୍ର ମଧ୍ୟ ସେହିପରି ନମସ୍କାର କଲେ । ଏହିପରି ସେମାନେ ପରସ୍ପର ପରସ୍ପରକୁ ପ୍ରାପ୍ତ ହୋଇ ହୃଷ୍ଟ ହେଲେ; ହେ ଭରତମୁଖ୍ୟ ! ଯଦୁବୀର ଦ୍ୱୟ ଆପଣାର ପିତୃସୀଙ୍କର ମଧ୍ୟ ପାଦ ବନ୍ଦନା କଲେ । ୨୧ । କୁରୁପ୍ରବୀର ଅଜାତଶତ୍ରୁ, କୃଷ୍ଣଙ୍କୁ ଅବଲୋକନ କରି କୁଶଳ ପ୍ରଶ୍ନ ପରେ ବୋଇଲେ, ହେ ବାସୁଦେବ ! ଆମ୍ଭେମାନେ ସମସ୍ତେ ଗୂଢ଼ଭାବରେ ଏଠାରେ ଅଛୁଁ, ଆପଣ କିପରି ଅବଗତ ହେଲେ ? । ୨୨ ।

ବାସୁଦେବ ହାସ୍ୟ କରି ତାହାଙ୍କୁ ଉତ୍ତର ଦେଲେ — ହେ ରାଜନ ! ଅଗ୍ନି କି ଲୁଚି ରହେ ? ସ୍ୱୟମ୍ବରରେ ଏହି ଯେଉଁ ବିକ୍ରମ ପ୍ରଦର୍ଶିତ ହେଲା, ତାହା ମାନୁଷଙ୍କ ମଧ୍ୟରେ ପାଣ୍ଡବଙ୍କ ବ୍ୟତିରେକ ଅନ୍ୟ କାହାଠାରେ ସମ୍ଭବ ହୋଇପାରେ ? । ୨୩ । ଭାଗ୍ୟବଳରୁ ଆପଣମାନେ ବହ୍ନିଙ୍କ ବେଗ ସହ୍ୟ କରି ପାବକରୁ ବିନିର୍ମୁକ୍ତ ହେଲେ; ଭାଗ୍ୟବଳରୁ ଅମାତ୍ୟଙ୍କ ସହ ଧୃତରାଷ୍ଟ୍ର ପୁତ୍ରଙ୍କର କାମନା ପୂର୍ଣ୍ଣ ନ ହେଲା । ୨୪ । ଆପଣମାନଙ୍କର ମଙ୍ଗଳ ହେଉ, ଗୁହାନିହିତ ଜ୍ୱଳନ ପ୍ରାୟ ଆପଣମାନେ ବୃଦ୍ଧି ହେଉନ୍ତୁ; କୌଣସି ପାର୍ଥିବମାନେ ଆପଣମାନଙ୍କୁ ଜାଣି ନ ପାରନ୍ତୁ, ଆମ୍ଭେମାନେ ନିଜ ଶିବିରକୁ ଗମନ କରୁଅଛୁଁ । ୨୫ । ଅକ୍ଷୟ ଶ୍ରୀମାନ କୃଷ୍ଣ ପାଣ୍ଡବଙ୍କ ଦ୍ୱାରା ଅନୁଜ୍ଞାତ ହୋଇ ବଳଦେବଙ୍କ ସହ ଶୀଘ୍ର ପ୍ରସ୍ଥାନ କଲେ । ୨୬ ।

———

# ଅଧ୍ୟାୟ—୧୯୨

ବୈଶମ୍ପାୟନ ବୋଇଲେ—ପାଞ୍ଚାଳ ରାଜ-ପୁତ୍ର ଧୃଷ୍ଟଦ୍ୟୁମ୍ନ ଭୀମ ଓ ଅର୍ଜୁନଙ୍କ ପଛେ ପଛେ ଭାର୍ଗବଙ୍କ ନିବେଶନକୁ ଗୋପନରେ ଗମନ କରି, ଆପଣାର ଅନୁଯାୟୀ ଲୋକଙ୍କୁ ସାବଧାନ କରାଇଦେଇ ସେଠାରେ ଅନ୍ୟର ଅଲକ୍ଷିତ ରୂପେ କୌଣସିଠାରେ ନିଲୀନ ହୋଇ ରହିଲେ । ୨ । ସାୟଂକାଳରେ ରିପୁପ୍ରମାଥୀ, ଅହୀନସତ୍ତ୍ୱ, ମହାବଳ ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଭିକ୍ଷାକରି ଆଣି ଭୈକ୍ଷ୍ୟଦ୍ରବ୍ୟ ସବୁ ଯୁଧିଷ୍ଠିରଙ୍କଠାରେ ସମର୍ପଣ କଲେ । ୩ ।

ତଦନନ୍ତର ଦାନଶୀଳା କୁନ୍ତୀ ଦ୍ରୌପଦୀଙ୍କୁ ସମ୍ବୋଧନ କରି ବୋଇଲେ । ଭଦ୍ରେ ! ତୁମ୍ଭେ ଏହି ଭୈକ୍ଷ୍ୟ ଦ୍ରବ୍ୟରୁ ଅଗ୍ରଭାଗ ଗ୍ରହଣ କରି ଦେବତାଙ୍କୁ ବଳି ଓ ବ୍ରାହ୍ମଣମାନଙ୍କୁ ଭିକ୍ଷା ପ୍ରଦାନ କର ଓ ଯେଉଁମାନେ ଆତିଥ୍ୟ ସ୍ୱୀକାର କରିଅଛନ୍ତି ଓ ଯେଉଁମାନେ ଭୋଜନାଭିଳାଷୀ, ସେମାନଙ୍କୁ ମଧ୍ୟ ପ୍ରଦାନ କର, ତତ୍ପରେ ଯାହା ଅବଶିଷ୍ଟ ରହିବ, ତାହାକୁ ଦୁଇ ସମାନ ଅଂଶରେ ବିଭକ୍ତ କରି, ଏକ ଅଂଶକୁ ଶୀଘ୍ର ଭୀମସେନଙ୍କୁ ଦିଅ—ସେ ଭୀମଙ୍କ ରୂପ ନାଗେନ୍ଦ୍ର ସଦୃଶ, ସେ ଗୌରବର୍ଣ୍ଣ, ଯୁବା ଦୃଢ଼ କଳେବର ଓ ବୀର; ସର୍ବଦା ସେ ବହୁ ଭୋଜନ କରନ୍ତି, ଅନନ୍ତର ଅପର ଭାଗକୁ ଛଅଭାଗ କରି ଯୁଧିଷ୍ଠିର ପ୍ରଭୃତି ଚାରିଭ୍ରାତା ଓ ତୁମ୍ଭେ ଏବଂ ଆମ୍ଭେ ଭୋଜନ କରିବା । ୬ ।

ରାଜପୁତ୍ରୀ ସାଧ୍ୱୀ, ଦ୍ରୌପଦୀ କୁନ୍ତୀଙ୍କର ତାଦୃଶ ସାଧୁ ବାକ୍ୟରେ ପରିତୁଷ୍ଟା ହୋଇ ଅନନ୍ଦ ମାନସରେ ଅଦିଷ୍ଟ କାର୍ଯ୍ୟ ଉତ୍ତମରୂପେ ସମ୍ପାଦନ କଲେ; ସେମାନେ ସମସ୍ତେ ସେ ଅନ୍ନକୁ ଭୋଜନ କଲେ । ୭ । ମାଦ୍ରୀ ପୁତ୍ର ତପସ୍ୱୀ ସହଦେବ ଭୂମିରେ କୁଶ ଦ୍ୱାରା ଶଯ୍ୟା ପ୍ରସ୍ତୁତ କଲେ; ତହିଁ ଉପରେ ବୀରମାନେ ସମସ୍ତେ ନିଜ ନିଜ ମୃଗଚର୍ମ ମାନଙ୍କୁ ବିସ୍ତୀର୍ଣ୍ଣ କରି ଶୟନ କଲେ । କୁରୁ ସତ୍ତମମାନେ ଦକ୍ଷିଣ ଦିଗକୁ ମସ୍ତକ କରି ଶୟନ କଲେ; କୁନ୍ତୀ ସେମାନଙ୍କର ଶିରୋଭାଗରେ ଓ ଦ୍ରୌପଦୀ ପାଦତଳେ ଶୟନ କଲେ । ୯ । ଦ୍ରୌପଦୀ ଭୂମିରେ କୁଶ ଶଯ୍ୟାରେ ଶୟନ କରି ଓ ସମସ୍ତଙ୍କ ପାଦତଳେ ଉପାଧାନ ସଦୃଶ

ରହି ଧୁଝା ତାହାଙ୍କ ମନରେ କିଞ୍ଚିନ୍ମାତ୍ର ଦୁଃଖ ହେଲା ନାହିଁ କି ସେହି କୁରୁପୁଙ୍ଗବ ମାନଙ୍କ ପ୍ରତି ଅବଜ୍ଞା ଜାତ ହେଲା ନାହିଁ । ୧୦ । ସେହି ଶୂରମାନେ ସେଠାରେ ସେନା, ଦିବ୍ୟଅସ୍ତ୍ର, ରଥ, ହସ୍ତୀ, ଖଡ୍‌ଗ, ଗଦା ଓ ପରଶ୍ୱଧ ସମ୍ବନ୍ଧୀୟ ବିଚିତ୍ର କଥା ମାନଙ୍କ କହିଲେ । ୧୧ । ପାଞ୍ଚାଳ ରାଜ ତନୟ ଧୃଷ୍ଟଦ୍ୟୁମ୍ନ ଓ ତାହାଙ୍କ ସହଯାୟୀ ମନୁଷ୍ୟମାନେ ପାଣ୍ଡବଗଣଙ୍କର ସେହି ବିଚିତ୍ର କଥାମାନ ଶ୍ରବଣ କଲେ ଓ ରାଜକୁମାରୀ କୃଷ୍ଣାଙ୍କୁ ତଥାବିଧ ଅବସ୍ଥାରେ ଶୟନ କରିଥିବାର ଦେଖିଲେ । ୧୨ ।

ଅନନ୍ତର ରଜନୀରେ ପାଣ୍ଡବମାନେ ଯେମନ୍ତ କଥୋପକଥନ କରିଥିଲେ ଓ ସେମାନଙ୍କ ବାସସ୍ଥାନରେ ଯାହା ଯାହା ଘଟିଥିଲା, ତାହା ସମସ୍ତ ଦ୍ରୁପଦ ରାଜାଙ୍କୁ ନିବେଦନ କରିବା ନିମିତ୍ତ ଧୃଷ୍ଟଦ୍ୟୁମ୍ନ ଅତି ସତ୍ୱର ଗମନ କଲେ । ୧୩ । ମହାତ୍ମା ପାଞ୍ଚାଳରାଜ ବିଷର୍ଣ୍ଣରୂପ ହୋଇ ସେମାନଙ୍କୁ ପାଣ୍ଡବ ବୋଲି ଚିହ୍ନି ନ ପାରି ଧୃଷ୍ଟଦ୍ୟୁମ୍ନଙ୍କ ପଚାରିଲେ, "କୃଷ୍ଣା କାହିଁ ଗଲେ ? କିଏ ତାହାଙ୍କୁ ନେଇଗଲା ? କୌଣସି ଶୂଦ୍ର କି ହୀନଜାତି ଅଥବା କରଦ ବୈଶ୍ୟ ହସ୍ତରେ ତ କୃଷ୍ଣା ପତିତା ହୋଇ ନାହାନ୍ତି ? ଆମ୍ଭ ମସ୍ତକରେ ତ କେହି ପଙ୍କଯୁକ୍ତ ପଦ ଆରୋପଣ କରିନାହିଁ ? । ୧୫ । ମାଳା ତ ଶ୍ମଶାନରେ ପତିତ ହୋଇନାହିଁ ? ହେ ପୁତ୍ର । କୌଣସି କ୍ଷତ୍ରିୟ-ଶ୍ରେଷ୍ଠ ଅଥବା ବ୍ରାହ୍ମଣ ଆମ୍ଭର କୃଷ୍ଣାଙ୍କୁ ଜୟ କରି ନେଇଅଛନ୍ତି ତ ? ନୀଚବର୍ଣ୍ଣ କେହି ତାହାଙ୍କୁ ନେଇ ଆମ୍ଭ ମସ୍ତକରେ ବାମପଦକୁ ଅର୍ପଣ କରି ନାହିଁ ତ ? । ୧୬ । ନରର୍ଷଭ ପାର୍ଥଙ୍କ ସହିତ ଯଦି କୃଷ୍ଣା ସଂଯୁକ୍ତ ହୋଇଥାନ୍ତି, ତେବେ ଆମ୍ଭେ ସନ୍ତାପ କରିବୁ ନାହିଁ; ହେ ମହାନୁଭବ ! ଆମ୍ଭ ଦୁହିତାଙ୍କୁ କିଏ ଜୟ କରି ନେଇଅଛି, ତତ୍ତ୍ୱ କରି କହ । ୧୭ । କୁରୁ ପ୍ରବୀର ବିଚିତ୍ରବୀର୍ଯ୍ୟଙ୍କର ସୁତମାନେ କି ଜୀବିତ ଅଛନ୍ତି ? କନିଷ୍ଠ ପାଣ୍ଡବ କି ଅଦ୍ୟ ଧନୁର୍ଗ୍ରହଣ କରି ଲକ୍ଷ୍ୟ-ଭେଦ କରି ଅଛନ୍ତି ?" । ୧୮ ।

---

ଅଧ୍ୟାୟ—୧୯୩

ବୈଶମ୍ପାୟନ ବୋଇଲେ—ତଦନନ୍ତର ସୋମକ ବଂଶଶୋଭନ, ରାଜପୁତ୍ର ଧୃଷ୍ଟଦ୍ୟୁମ୍ନ ପରହୃଷ୍ଟ ହୋଇ ଯାହା ଯାହା ଘଟିଥିଲା ଓ ଯେ କୃଷ୍ଣାଙ୍କୁ ଜୟ କରି ନେଇଥିଲେ ତତ୍ସମସ୍ତ ପିତାଙ୍କ ନିକଟରେ ନିବେଦନ କଲେ । ୧ । ଧୃଷ୍ଟଦ୍ୟୁମ୍ନ ବୋଇଲେ—ଯେଉଁ ଯୁବା-ପୁରୁଷ ଦୀର୍ଘ ଓ ଲୋହିତାକ୍ଷ ଅଟନ୍ତି, ଯେ କୃଷ୍ଣାଜିନ ଧାରଣ କରିଥିଲେ, ଯାହାଙ୍କର ରୂପ ଦେବତାଙ୍କ ରୂପ ସଦୃଶ, ଯେ ସେ କାର୍ମ୍ମୁକ ଶ୍ରେଷ୍ଠରେ ଗୁଣ ଦେଇ ଓ ଲକ୍ଷ୍ୟକୁ ଭୂତଳରେ ପାତିତ କଲେ, ତତ୍ପରେ ଯେଉଁ ବ୍ୟକ୍ତି ତପସ୍ୱୀ ସଦୃଶ କାହାରି ସଙ୍ଗେ ମିଶୁ ନ ଥିଲେ, ଦେବତା ଓ ଋଷିମାନଙ୍କ ଦ୍ୱାରା ପରିବୃତ ବଜ୍ରୀ ସଦୃଶ ଯେ ଦ୍ୱିଜଶ୍ରେଷ୍ଠ ମାନଙ୍କ ଦ୍ୱାରା ପୂଜିତ ଓ ବୃତ ହୋଇ ସମାଜ ସ୍ଥଳରୁ ଗମନ କଲେ, ନରାଧିପମାନେ ଅସହିଷ୍ଣୁ ଓ କ୍ରୁଦ୍ଧ ହୋଇ ଆକ୍ରମଣ କରନ୍ତେ ଯାହାଙ୍କ ଅଜିନ ପ୍ରାନ୍ତକୁ କୃଷ୍ଣା ପ୍ରହୃଷ୍ଟ ମନରେ ଗ୍ରହଣ କରି ନାଗପଛେ ନାଗବଧୂ ଗମନ କଲା ପ୍ରାୟ ଅନୁଗତା ହେଲେ । ୪ ।

ତତ୍ପରେ ଅପର ଯେଉଁ ବ୍ୟକ୍ତି ପାର୍ଥିବ ନିଚୟ ମଧ୍ୟରେ ପ୍ରବୃଦ୍ଧ ମହୀରୁହକୁ ନିଷ୍ପେଷ କରି କ୍ରୁଦ୍ଧ ଅନ୍ତକ ଯେପରି ପ୍ରାଣୀମାନଙ୍କୁ ପ୍ରତାଡ଼ିତ କରନ୍ତି, ତଦ୍ରୂପ ପାର୍ଥିବମାନଙ୍କୁ ପ୍ରକାଳିତ କଲେ, ହେ ନରେନ୍ଦ୍ର ! ସେହି ନରବର ଦୁହେଁ ସବୁ ପାର୍ଥିବମାନଙ୍କ ସମକ୍ଷରେ କୃଷ୍ଣାଙ୍କୁ ଆଦାନ କରି ଗମନ କଲେ ଓ ଚନ୍ଦ୍ର ସୂର୍ଯ୍ୟ ସମାନ ତେଜସ୍ୱୀ ସେହି ବୀରଦ୍ୱୟ ଏହି ନଗରର ବହିର୍ଭାଗରେ ଭାର୍ଗବର କର୍ମ୍ମଶାଳାରେ ପ୍ରବିଷ୍ଟ ହେଲେ । ୬ । ସେହି କୁମ୍ଭକାର ଗୃହରେ ଅନଳର ଶିଖା ପ୍ରାୟ ଗୋଟିଏ ନାରୀ ଉପବିଷ୍ଟା ହୋଇଥିଲେ, ସେମାନଙ୍କର ସେ ଜନନୀ ବୋଲି ଆମ୍ଭର ଅନୁମାନ ହେଉଅଛି । ପୁନଶ୍ଚ ସେହି ନାରୀଙ୍କ ସମୀପରେ ଆଉ ତିନିଜଣ ତଦ୍ରୂପ ଅଗ୍ନିକଳ୍ପ ଶୋଭାନ୍ୱିତ ବ୍ୟକ୍ତି ଉପବିଷ୍ଟ ଥିଲେ ।

ଯେଉଁ ଦୁଇଜଣ କୃଷ୍ଣାଙ୍କୁ ଘେନିଗଲେ ସେ ଦୁହେଁ ସେ ନାରୀଙ୍କୁ ଅଭିବାଦନ କଲେ ଓ କୃଷ୍ଣାଙ୍କୁ ଅଭିବାଦନ କରିବାକୁ ମଧ୍ୟ କହିଲେ । ତତ୍ପରେ କୃଷ୍ଣାଙ୍କୁ ସେ ନାରୀଙ୍କଠାରେ ସମର୍ପି ଦେଇ ଭିକ୍ଷା ପ୍ରବୃତ୍ତ କରିବାକୁ ସେ ନରଶ୍ରେଷ୍ଠ ଦୁହେଁ ନିର୍ଗତ ହେଲେ । ୮ । ଭିକ୍ଷାଲବ୍ଧ ଦ୍ରବ୍ୟକୁ କୃଷ୍ଣା ଗ୍ରହଣ କରି ଦେବତାଙ୍କର ବଳି ଦେଇ ଓ ବ୍ରାହ୍ମଣଙ୍କୁ ଦାନ କରି, ସେହି ବୃଦ୍ଧାଙ୍କୁ ଓ ନରବୀରମାନଙ୍କୁ ପରିବେଷଣ କରି ସ୍ୱୟଂ ଭୋଜନ କଲେ ।୯।

ହେ ପାର୍ଥିବ ! ତଦନନ୍ତର ସେମାନେ ସମସ୍ତେ ଶୟନ କଲେ, କୃଷ୍ଣା ସେମାନଙ୍କର ଚରଣୋପାଧାନ୍ନୀ ହୋଇ ଶୋଇଲେ । ସେମାନଙ୍କର ଶଯ୍ୟା ପୃଥିବୀରେ ଆସ୍ତୃତ ହେଲା, କୁଶ ଓ ଉତ୍ତମ ମୃଗଚର୍ମ୍ମକୁ ସେମାନେ ବିସ୍ତୃତ କରି ଶୋଇଲେ । ୧୦ । ସେହି ବୀରମାନେ ମେଘ ସଦୃଶ ଗମ୍ଭୀର ସ୍ୱରରେ ବିଚିତ୍ର କଥାମାନଙ୍କୁ କହିଲେ । ସେହି କଥାମାନ ବୈଶ୍ୟ କି ଶୂଦ୍ରଙ୍କ ଉପଯୋଗୀ କଥା ନୁହେଁ, କି ବ୍ରାହ୍ମଣଙ୍କ କଥାମାନଙ୍କୁ ସେହି ବୀରମାନେ କହିଲେ ନାହିଁ । ୧୧ ।

ହେ ରାଜନ୍ ! ସେମାନେ ଯୁଦ୍ଧ ସମ୍ବନ୍ଧୀୟ କଥାମାନ କହିବାରୁ ଆମ୍ଭର ଅନୁମାନ ହେଉଅଛି ଯେ ସେ ନିଃସଂଶୟରେ କ୍ଷତ୍ରିୟ-ଶ୍ରେଷ୍ଠ ଅଟନ୍ତି । ଅସ୍ମମାନଙ୍କର ଅଶାଳତା ସମୃଦ୍ଧି ଲାଭ କରିଅଛି; ପାର୍ଥମାନେ ଯେ ଅଗ୍ନିଦାହରୁ ମୁକ୍ତିପ୍ରାପ୍ତ ହୋଇଅଛନ୍ତି ତାହା ଆମ୍ଭେ ଶୁଣିଅଛୁଁ । ୧୨ । ଲକ୍ଷ୍ୟ ଯେପରି ପାତିତ ହେଲା, ଧନୁରେ ଯେପରି ଗୁଣାରୋପଣ ହେଲା ଓ ସେହି ବୀରମାନଙ୍କର ଯେପରି କଥୋପକଥନ ଶ୍ରୁତ ହେଲା, ତହିଁରୁ ପ୍ରତୀତ ହେଉଅଛି ଯେ ପାର୍ଥମାନେ ଛଦ୍ମ ବେଶରେ ଭ୍ରମଣ କରୁଅଛନ୍ତି । ୧୩ ।

ତଦନନ୍ତର ରାଜା ଦ୍ରୁପଦ ପ୍ରହୃଷ୍ଟ ହୋଇ ସେମାନଙ୍କ ସମୀପକୁ ପୁରୋହିତଙ୍କୁ ପ୍ରେରଣ କଲେ ଓ ତାହାଙ୍କୁ ପ୍ରଶ୍ନ କରିବାକୁ କହିଲେ ଯେ ଆପଣମାନେ ମହାତ୍ମା ପାଣ୍ଡୁସୁତ ଅଟନ୍ତି କି ନା ଏହା ଜାଣିବାକୁ ଆମ୍ଭେ ଇଚ୍ଛା କରୁଅଛୁଁ । ୧୪ । ନୃପତିଙ୍କ ବାକ୍ୟକୁ ପୁରୋଧା ଗ୍ରହଣ କରି ପାଣ୍ଡବଙ୍କ ନିକଟକୁ ଗମନ କରି ସେମାନଙ୍କର ନାନା ପ୍ରଶଂସାବାଦ କଲାପରେ ସେମାନଙ୍କୁ ରାଜା ଯାହା କହିଥିଲେ ତାହା ଗୋଟିଏ ଗୋଟିଏ ପଚାରିଲେ । ୧୫ । ଆମ୍ଭମାନଙ୍କର ବରଦ ଓ କଲ୍ୟାଣୀୟ ଅବନୀଶ୍ୱର ପାଞ୍ଚାଳରାଜ ଏହି ଲକ୍ଷ୍ୟବିଦ୍ଧକାରୀଙ୍କୁ ନିରତିଶୟ ହର୍ଷଲାଭ କଲେ । ୧୬ । ଆପଣମାନେ ସ୍ୱକୀୟ ଜ୍ଞାତି ଓ କୁଳର ବିଷୟ ଆନୁପୂର୍ବିକ କୀର୍ତ୍ତନ କରି ଅନୁଚରବର୍ଗଙ୍କ ସହିତ ପାଞ୍ଚାଳରାଜଙ୍କ ହୃଦୟ ଆହ୍ଲାଦିତ କରନ୍ତୁ ଓ ଶତ୍ରୁମାନଙ୍କ ମସ୍ତକରେ ପଦାର୍ପଣ କରନ୍ତୁ । ୧୭ । ମହାରାଜ ପାଣ୍ଡୁ ଦ୍ରୁପଦଙ୍କର ଆତ୍ମସମ ପ୍ରିୟ ଓ ସଖା ଥିଲେ । ଏହି ହେତୁରୁ ତାହାଙ୍କର କାମନା ଥିଲା ଯେ ଆମ୍ଭେ ଏହି କନ୍ୟାଙ୍କୁ କୌରବ ବଧୂ ସ୍ୱରୂପ ପ୍ରଦାନ କରିବୁଁ । ୧୮ ।

ହେ ସୁନ୍ଦରାଙ୍ଗ ବୀରମାନେ ! ଦ୍ରୁପଦରାଜାଙ୍କ ହୃଦୟରେ ସର୍ବଦା ଏହି କାମନା ଥିଲା ଯେ ଅମୃତ ଏହି କନ୍ୟାକୁ ପୃଥୁ ଦୀର୍ଘବାହୁ ଅର୍ଜ୍ଜୁନ ଲାଭ କରନ୍ତୁ । ୧୯ । ଯଦ୍ୟପି ତାହା ହୋଇଥାଏ, ତେବେ ତାହାଙ୍କର ସୁଭାଗ୍ୟ ବୋଲିବାକୁ ହେବ ଓ ତହିଁରେ ତାହାଙ୍କର ଯଶ, ପୁଣ୍ୟ ଓ ହିତ ହୋଇଅଛି ।

ପୁରୋହିତ ବିନୀତ ଭାବରେ ଏହି ପ୍ରକାର କହି ତୂଷ୍ଣୀଭାବ ଅବଲମ୍ବନ କଲେ; ରାଜା ସମୀକ୍ଷଣ କରି ସମୀପସ୍ଥ ଭୀମସେନଙ୍କୁ କହିଲେ, 'ଏହାଙ୍କୁ ପାଦ୍ୟ ଓ ଅର୍ଘ୍ୟ ଦିଅ' । ଦ୍ରୁପଦରାଜାଙ୍କର ପୁରୋହିତ ଅତି ମାନ୍ୟାସ୍ପଦ, ତାହାଙ୍କର ବିଶେଷରୂପେ ପୂଜା କରିବା ବିଧେୟ । ୨୨ । ହେ ନରେନ୍ଦ୍ର ! ତତ୍ପରେ ଭୀମ ତାହାଙ୍କର ଯଥାବିଧି ପୂଜା ସମାପନ କରନ୍ତେ, ପୁରୋଧା ଅତି ହର୍ଷମନରେ ସେ ପୂଜାକୁ ଗ୍ରହଣ କଲେ; ପୁରୋହିତ ସୁଖରେ ଉପବିଷ୍ଟ ହେଲାପରେ, ରାଜା ଯୁଧିଷ୍ଠିର ତାହାଙ୍କୁ କହିଲେ, ସ୍ୱକୀୟ ଧର୍ମାନୁସାରେ ପାଞ୍ଚାଳରାଜା ତାହାଙ୍କ ସୁତାଙ୍କୁ ପ୍ରଦାନ କରିଅଛନ୍ତି, ଇଚ୍ଛାପୂର୍ବକ ପ୍ରଦାନ କରିନାହାନ୍ତି; ଏହି ବୀର ପ୍ରଦିଷ୍ଟ ଲକ୍ଷ୍ୟଭେଦ କରି ସେହି କନ୍ୟାକୁ ଲାଭ କରିଅଛନ୍ତି । ୨୩ ।

ଲକ୍ଷ୍ୟଭେଦରେ ବର୍ଣ୍ଣର ନିରାକରଣ ନ ଥିଲା, କୁଳ, ଶୀଳ କି ବଂଶର ବିଚାର ମଧ୍ୟ ନ ଥିଲା, ଯେ କାର୍ମ୍ମୁକରେ ଗୁଣ ଦେଇ ଲକ୍ଷ୍ୟ ଭେଦ କରି ପାରିବେ ସେ କନ୍ୟାଲାଭ କରିବେ, ଏହି ପଣ ଥିଲା । ୨୪ । ପାର୍ଥିବସମୂହ ମଧ୍ୟରେ ଏହି ମହାତ୍ମା କୃଷ୍ଣାଙ୍କୁ ଜୟକରି ଆଣି ଅଛନ୍ତି; ଏତେବେଳେ ସୋମବଂଶଜାତ ରାଜା ଦ୍ରୁପଦଙ୍କର ସନ୍ତାପ କରିବା ବୃଥା, ସନ୍ତାପ କଲେ କେବଳ ନିଜର ଅସୁଖ ହେବ । ୨୫ । ଦ୍ରୁପଦ ରାଜାଙ୍କର ଯେଉଁ କାମନା ତାହା ମଧ୍ୟ ସମ୍ପନ୍ନ ହୋଇପାରେ । ଏହି ନରେନ୍ଦ୍ରକନ୍ୟା ଅସାଧାରଣ ରୂପବତୀ ଓ ସର୍ବ-ଲକ୍ଷଣ-ସମ୍ପନ୍ନା; ହେ ବ୍ରାହ୍ମଣ ! ସେହି ଧନୁକୁ ମନ୍ଦବଳବ୍ୟକ୍ତି ସଜ୍ୟ କରିବାକୁ ସମର୍ଥ ହେବ ନାହିଁ, କି କୌଣସି ଅକୃତାସ୍ତ୍ର କି ହୀନ ବର୍ଣ୍ଣଜାତ ବ୍ୟକ୍ତି ସେ ଲକ୍ଷ୍ୟକୁ ଭେଦ କରିପାରିବେ ନାହିଁ । ୨୭ । ଅତଏବ ପାଞ୍ଚାଳରାଜାଙ୍କର ଦୁହିତା ନିମିତ୍ତ ସନ୍ତାପ କରିବା ବିଧେୟ ନୁହେ; ଏହି ଭୂମଣ୍ଡଳରେ, ସେହି ଲକ୍ଷ୍ୟକୁ ପାତିତ କରିବାର କୌଣସି ମାନବର ସାମର୍ଥ୍ୟ ନାହିଁ । ୨୮ । ଯୁଧିଷ୍ଠିର ଏହିପରି କହୁଅଛନ୍ତି, ଏମନ୍ତ ସମୟରେ ପାଞ୍ଚାଳରାଜଙ୍କ ଠାରୁ ଅନ୍ୟଜଣେ ବ୍ୟକ୍ତି ଆସି ନିବେଦନ କଲେ, "ଏଠାରେ ଅନ୍ନ ସିଦ୍ଧ ହୋଇଅଛି" । ୨୯ ।

# ଅଧ୍ୟାୟ—୧୯୪

ଦୂତ ବୋଇଲେ—ମହାରାଜ ଦ୍ରୁପଦ ବିବାହ ଦେବା ନିମିତ୍ତ ବରପକ୍ଷୀୟ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ଉପସଂସ୍କୃତ ଅନ୍ନ ପ୍ରସ୍ତୁତ କରିଅଛନ୍ତି, ଆପଣମାନେ ନିତ୍ୟ କାର୍ଯ୍ୟମାନ ସମାପ୍ତ କରି, ସେଠାକୁ ଶୀଘ୍ର କୃଷ୍ଣାଙ୍କ ସହିତ ଆଗମନ କରନ୍ତୁ । ତାହାଙ୍କର ପାଣିଗ୍ରହଣ ସେଠାରେ ହେବ । ୧ । ବସୁଧାପତିଙ୍କ ଯୋଗ୍ୟ, ସଦଶ୍ୱଯୁକ୍ତ କାଞ୍ଚନ ପଦ୍ମରେ ଚିତ୍ରିତ ଏହି ରଥମାନେ ଉପସ୍ଥିତ ଅଛନ୍ତି, ଏଥିରେ ସମସ୍ତେ ଆରୋହଣ କରି ପାଞ୍ଚାଳରାଜାଙ୍କ ନିବେଶନକୁ ଗମନ କରନ୍ତୁ । ୨ ।

ବୈଶମ୍ପାୟନ ବୋଇଲେ—ଅନନ୍ତର କୁରୁପୁଙ୍ଗବମାନେ ପୁରୋହିତଙ୍କୁ ବିଦାୟ ଦେଇ ସେ ମହତ୍ ଯାନମାନଙ୍କୁ ଆରୋହଣ କରି ପ୍ରସ୍ଥାନ କଲେ । କୁନ୍ତୀ ଓ କୃଷ୍ଣା ଏକତ୍ର ଗୋଟିଏ ପୃଥକ୍ ଯାନରେ ବସିଲେ । ୩ । ହେ ଭାରତ ! ଧର୍ମରାଜ ଯୁଧିଷ୍ଠିର ଯେଉଁ ବାକ୍ୟମାନ କହିଥିଲେ, ସେ ସମସ୍ତ ବାକ୍ୟକୁ ପୁରୋହିତଙ୍କ ଠାରୁ ଶ୍ରବଣ କରି, କୁରୁ-ଉତ୍ତମମାନଙ୍କର ପରିଚୟ ପ୍ରାପ୍ତ ହେବା ନିମନ୍ତେ ରାଜା ଦ୍ରୁପଦ ଅନେକ ପ୍ରକାର ଦ୍ରବ୍ୟମାନଙ୍କୁ ଉପସଂଗ୍ରହ କଲେ । ୪ । ବହୁପ୍ରକାର ଫଳ ଓ ସୁସଂସ୍କୃତ ମାଲ୍ୟ, ବର୍ମ୍ମ ଓ ଚର୍ମ୍ମନିଚୟ, ଅନେକ ଆସନ ଅସଂଖ୍ୟ ଧେନୁ ଓ ରଜ୍ଜୁ, କୃଷିର ଉପଯୋଗୀ ବହୁବିଧ ବୀଜ ଓ ଅନ୍ୟ ଯେତେ ପ୍ରକାର ଶିଳ୍ପ ଦ୍ରବ୍ୟମାନ ଅଛି, ସେ ସବୁ ସେଠାରେ ସଂଗ୍ରହ କରି ରଖିଲେ । କ୍ରୀଡ଼ା ନିମିତ୍ତ ଯେଉଁ ସବୁ ଦ୍ରବ୍ୟ ଆବଶ୍ୟକ, ସେ ଦ୍ରବ୍ୟମାନଙ୍କୁ ମଧ୍ୟ ରାଜା ଉପହାର ସ୍ୱରୂପ ସେଠାରେ ରଖିଲେ । ୬ ।

ତେଜୋବିଶିଷ୍ଟ ବର୍ମ ଓ ଚର୍ମ୍ମ ନିଚୟ, ଖଡ଼୍ଗାବଳି, ମହା ମହା ଅଶ୍ୱ ଓ ବିଚିତ୍ର ରଥମାନ, ଉତ୍କୃଷ୍ଟ କାର୍ମ୍ମୁକ ଶ୍ରେଣୀ, ବିଚିତ୍ର ଶର ନିକର, କାଞ୍ଚନ ବିଭୂଷିତ ଶକ୍ତି, ପ୍ରାସ ଭୁଷୁଣ୍ଡୀ, ପରଶୁ ଓ ସଂଗ୍ରାମୋପଯୋଗୀ ଅପର ସମସ୍ତ ଦ୍ରବ୍ୟ, ଶଯ୍ୟା ଓ ରତ୍ନଖଚିତ ଉତ୍ତମୋତ୍ତମ ତାମ୍ବୂଳ ଧାନ୍ୟ ପ୍ରଭୃତି ଅଥଚ ବିବିଧପ୍ରକାର ବସନମାନଙ୍କୁ ସେଠାରେ ସଞ୍ଚିତ କରି ରଖିଥିଲେ । ୮ । ସାଧ୍ୱୀ କୃଷ୍ଣାଙ୍କୁ କୁନ୍ତୀ ପରିଗ୍ରହଣ କରି ଦ୍ରୁପଦଙ୍କ ଅନ୍ତଃ-ପୁରରେ ପ୍ରବିଷ୍ଟ ହେଲେ ତହିଁସ୍ଥ ସ୍ତ୍ରୀମାନେ କୁନ୍ତୀଙ୍କ ଦ୍ୱାରା ସମ୍ମାନିତ ହୋଇ, ଅତି ହୃଷ୍ଟମନରେ କୌରବ ରାଜପତ୍ନୀଙ୍କର ପ୍ରତି ପୂଜା କଲେ । ୯ ।

ଅଜନୋତ୍ପନ୍ନ ଧାରୀ, ସେହି ବୀରପୁରୁଷମାନଙ୍କର ସିଂହବିକ୍ରମ ସଦୃଶ ଗତି, ମହା ବୃଷଭର ନେତ୍ର ସମ ନେତ୍ର, ଓ ଭୁଜଗେନ୍ଦ୍ର ଶରୀର ତୁଲ୍ୟ ପ୍ରଲମ୍ବ ବାହୁ ଦର୍ଶନ କରି ରାଜା ଦ୍ରୁପଦ, ତାହାଙ୍କର ସଚିବବୃନ୍ଦ, ରାଜପୁତ୍ରମନଚୟ, ରାଜାଙ୍କର ସୁହୃଦବର୍ଗ ଓ ସମସ୍ତ ଭୃତ୍ୟ ଅନୁଚର ବର୍ଗ ଅତିଶୟ ହର୍ଷପ୍ରାପ୍ତ ହେଲେ । ୧୧ । ସେ ସ୍ଥାନରେ ସେହି ବୀରମାନେ ନିଃଶଙ୍କ ଚିତ୍ତରେ ପ୍ରବେଶ କରି ଯଥା ବିଧାନରେ ପାଦ ପୀଠମାନଙ୍କ ଉପର ଦେଇ, ଅତି ଉତ୍କୃଷ୍ଟ ଓ ମହାମୂଲ୍ୟ ଆସନରେ ବୟ ଓ କ୍ରମ ଅନୁସାରେ ଉପବିଷ୍ଟ ହେଲେ । ୧୨ ।

ତତ୍ପରେ ସୁବର୍ଣ୍ଣ ଓ ରଜତ ପାତ୍ରରେ ପାର୍ଥିବଙ୍କର ଭୋଜନ ଯୋଗ୍ୟ ଉଚ୍ଚ ନୀଚ ସର୍ବପ୍ରକାର ଅନ୍ନ ମାନଙ୍କୁ ସ୍ଥାପନ କରି ପରିଷ୍କାର ବେଶଧାରୀ ଦାସ ଦାସୀମାନେ ଓ ସମ୍ଭୋଜକମାନେ ପରିବେଷଣ କଲେ । ୧୩ । ସେହି ପୁରୁଷ ବୀର ମାନେ ଅଭିଳାଷାନୁରୂପ ଭୋଜନ କରି ଅତିଶୟ ପ୍ରୀତ ହୋଇ ସବୁ ଧନ ଓ ଦ୍ରବ୍ୟମାନଙ୍କୁ ଅତିକ୍ରମ କରି ସାଂଗ୍ରାମିକଦ୍ରବ୍ୟପୂର୍ଣ୍ଣ ଗୃହକୁ ପ୍ରବେଶ କଲେ । ୧୪ । ଦ୍ରୁପଦ ରାଜାଙ୍କର ପୁତ୍ର ଓ ପ୍ରଧାନ ମନ୍ତ୍ରୀମାନଙ୍କ ସହ ରାଜା ତାହା ଲକ୍ଷିତ କରି କୁନ୍ତୀସୁତ ମାନଙ୍କୁ ରାଜପୁତ୍ର ବୋଲି ସମର୍ଥନ କଲେ ।

---

## ଅଧ୍ୟାୟ—୧୯୫

ବୈଶମ୍ପାୟନ ବୋଇଲେ—ତଦନନ୍ତର ମହାଦ୍ୟୁତି ପାଞ୍ଚାଳ ଦେଶାଧିପତି, ରାଜପୁତ୍ର ଯୁଧିଷ୍ଠିରଙ୍କୁ ଆହ୍ୱାନ କରି ବ୍ରାହ୍ମଣ ଯୋଗ୍ୟ ଅଭ୍ୟର୍ଥନା ପୂର୍ବକ ଆନନ୍ଦପୂର୍ଣ୍ଣ ମାନସରେ ସୁତେଜସ୍ୱୀ କୁନ୍ତୀ-ପୁତ୍ରଙ୍କୁ ବୋଇଲେ, ଆପଣ କ୍ଷତ୍ରିୟ କି ବ୍ରାହ୍ମଣ ଆମ୍ଭେ ଏହା କି ପ୍ରକାରେ ଅବଗତ ହେବା ? ।୨। ଆପଣ ଗୁଣସମ୍ପନ୍ନ ବୈଶ୍ୟ କି ଶୂଦ୍ର ଏହା ଆମ୍ଭେ କିପରି ଜାଣିବୁଁ ? ଅଥବା ଆପଣମାନେ ଦେବତା ହୋଇ ମାୟା ରୂପ ଧାରଣ କରି ବିପ୍ର ସ୍ୱରୂପ ସର୍ବ ସ୍ଥାନରେ ଭ୍ରମଣ କରୁଁ କରୁଁ କୃଷ୍ଣାଙ୍କ ନିମିତ୍ତ ଏଠାରେ ଉପସ୍ଥିତ ହୋଇଅଛନ୍ତି ? ଆପଣମାନେ ସତ୍ୟ କହନ୍ତୁ, ଏଥିରେ ଆମ୍ଭର ମହାନ୍ ସନ୍ଦେହ ଜାତ ହୋଇଅଛି । ୪ । ହେ ପରନ୍ତପ ! ଏହି ସଂଶୟ

ବିନଷ୍ଟ ହୋଇ ଅମ୍ଭର କି ମନସ୍ତୁଷ୍ଟି ପ୍ରବାହିତ ହେବ ? ଅମ୍ଭମାନଙ୍କର ଅଦୃଷ୍ଟ କି ଶୁଭ ହୋଇଅଛି ? ଆପଣ ଇଚ୍ଛାରେ ସତ୍ୟ କହନ୍ତୁ; ରାଜାମାନଙ୍କଠାରେ ସତ୍ୟ ଭାଷଣ ଯାଦୃଶ ଶୋଭାପାଏ ଇଷ୍ଟାପୂର୍ତ୍ତି * ତାଦୃଶ ଶୋଭା ପାଏ ନାହିଁ; ଅତଏବ ଅନୃତ ବକ୍ତବ୍ୟ ନୁହେଁ । ହେ ଅମର ସଙ୍କାଶ । ଅରିନ୍ଦମ । ଆପଣଙ୍କର ବାକ୍ୟ ଶ୍ରବଣ କରି ଅମ୍ଭେ ବିଧାନ ପୂର୍ବକ ବିବାହ ଉଦ୍ୟୋଗ କରିବୁଁ ।

ଯୁଧିଷ୍ଠିର ବୋଇଲେ—ହେ ରାଜନ୍ । ପାଞ୍ଚାଳଦେଶାଧିପତେ । ଆପଣ ବିମନା ହୁଅନ୍ତୁ ନାହିଁ, ଆପଣଙ୍କର ପ୍ରୀତି ହେଉ; ଆପଣଙ୍କର ଈପ୍‌ସିତ ନିଃସଂଶୟରେ ସିଦ୍ଧ ହୋଇଅଛି । ହେ ରାଜନ୍ । ଅମ୍ଭେମାନେ କ୍ଷତ୍ରିୟ ମହାତ୍ମା ପାଣ୍ଡୁଙ୍କର ପୁତ୍ର ଅଟୁଁ । ଅମ୍ଭେ କୁନ୍ତୀଙ୍କର ଜ୍ୟେଷ୍ଠସୁତ ଓ ଏ ଦୁହେଁ ଭୀମାର୍ଜ୍ଜୁନ; ଏହି ଦୁହେଁ ରାଜ ସମାଜରେ ଆପଣଙ୍କର ଦୁହିତାଙ୍କୁ ଜୟ କରିଅଛନ୍ତି । ଯେଉଁଠାରେ କୃଷ୍ଣା ଅଛନ୍ତି, ସେଠାରେ ଯମଜ ନକୁଳ ସହଦେବ ଓ କୁନ୍ତୀ ଅବସ୍ଥାନ କରୁଅଛନ୍ତି । ୧୦ । ହେ ନରର୍ଷଭ । ଆପଣଙ୍କର ଦୁଃଖ ଅପନୋଦନ ହେଉ, ଅମ୍ଭେମାନେ କ୍ଷତ୍ରିୟ ଅଟୁଁ । ଆପଣଙ୍କର ଏହି ସୁତା, ପଦ୍ମିନୀପ୍ରାୟ ଗୋଟିଏ ହ୍ରଦରୁ ଅପର ହ୍ରଦକୁ ଗମନ କରି ଅଛନ୍ତି । ୧୧ । ହେ ମହାରାଜା । ଆମ୍ଭ ସମସ୍ତଙ୍କର ଗୁରୁ ଓ ପରମ ମାନନୀୟ ଅଟନ୍ତି; ଆପଣଙ୍କୁ ଏହି ସତ୍ୟ କହିଲୁଁ । ୧୨ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ରାଜା ଦ୍ରୁପଦ ହର୍ଷରେ ଅଶ୍ରୁପୂର୍ଣ୍ଣ ଲୋଚନ ହୋଇ ଯୁଧିଷ୍ଠିରଙ୍କୁ ପ୍ରତ୍ୟୁକ୍ତି ଦେବାକୁ ଅଶକ୍ତ ହେଲେ । ୧୩ । କିୟତ୍‌କ୍ଷଣ ପରେ ଯତ୍ନପୂର୍ବକ ସେହି ହର୍ଷକୁ ନିଗ୍ରହ କରି ଅନୁରୂପ ବଚନରେ ଯୁଧିଷ୍ଠିରଙ୍କୁ ପ୍ରତ୍ୟୁତ୍ତର ଦେଲେ । ୧୪ । "କି ପ୍ରକାରେ ସେମାନେ ବାରଣାବତ ନଗରରୁ ପଳାୟନ କରିଥିଲେ"—ରାଜା ଦ୍ରୁପଦ ଏହି କଥା ପଚାରିବାରୁ ପାଣ୍ଡୁନନ୍ଦନ ସମସ୍ତ ଅନୁପୂର୍ବକ ଶ୍ରବଣ କରାଇଲେ । ୧୫ । କୁନ୍ତୀପୁତ୍ରଙ୍କର ଭାଷିତ ବଚନ ଶ୍ରବଣ କରି ବକ୍ତୃବର ରାଜା ଦ୍ରୁପଦ, ନରେଶ୍ୱର ଧୃତରାଷ୍ଟ୍ରଙ୍କର ନିନ୍ଦା କଲେ ଓ କୁନ୍ତୀ-ପୁତ୍ର ଯୁଧିଷ୍ଠିରଙ୍କୁ ଆଶ୍ୱାସ ପ୍ରଦାନ

* ଇଷ୍ଟାପୂର୍ତ୍ତ—ଯଜ୍ଞଦାନାଦି କର୍ମ୍ମ ଓ ବାପୀ, କୂପ ପ୍ରାସାଦ ପ୍ରଭୃତି ନିର୍ମାଣ, ପୁଣ୍ୟ କର୍ମ୍ମ ।

ପୂର୍ବକ ଯହିଁରେ ତାହାଙ୍କର ରାଜ୍ୟ ଲାଭ ହୁଏ, ତଦ୍ ବିଷୟରେ ପ୍ରତିଜ୍ଞାରୂଢ଼ ହେଲେ । ୧୭ । ତଦନନ୍ତର କୁନ୍ତୀ, କୃଷ୍ଣା, ଭୀମସେନ, ଅର୍ଜୁନ ଓ ନକୁଳ ଏବଂ ସହଦେବ ଦୁହେଁ ଦ୍ରୁପଦରାଜାଙ୍କ ସୁସଜ୍ଜିତ ମହତ୍ ଭବନରେ ପ୍ରବିଷ୍ଟ ହେଲେ । ୧୮ । ହେ ରାଜନ୍ ! ସେଠାରେ ସେମାନେ ଯଜ୍ଞସେନଙ୍କ ଦ୍ୱାରା ସମ୍ମାନିତ ହୋଇ ନିବାସ କଲେ; ଅନନ୍ତର ରାଜା ଦ୍ରୁପଦ, ପୁତ୍ରଙ୍କ ସହ ଆଶ୍ୱସ୍ତ ହୋଇ ଯୁଧିଷ୍ଠିରଙ୍କୁ କହିଲେ, ଅଦ୍ୟ ଉତ୍ତମ ପୁଣ୍ୟଦିବସ, ଅଦ୍ୟ କୁରୁନନ୍ଦନ ଅର୍ଜୁନ ବିଧିପୂର୍ବକ ପାଣିଗ୍ରହଣ କରନ୍ତୁ ଓ ତନ୍ନିମିତ୍ତ ଆପଣାର କୁଳୋଚିତ କର୍ମମାନ ନିର୍ବାହ କରି ପ୍ରସ୍ତୁତ ହୁଅନ୍ତୁ । ୨୦ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ରାଜା ଧର୍ମାତ୍ମା ଯୁଧିଷ୍ଠିର ଦ୍ରୁପଦରାଜଙ୍କୁ କହିଲେ, ହେ ବିଶାମ୍ପତେ ! ଆମ୍ଭର ମଧ୍ୟ ଦାରପରିଗ୍ରହ କରିବାକୁ ହେବ । ୨୧ ।

ଦ୍ରୁପଦ ବୋଇଲେ—ଆପଣ ହେଲେଁ ଆମ୍ଭ ଦୁହିତାଙ୍କର ପାଣି-ଗ୍ରହଣ କରନ୍ତୁ । ଅଥବା ହେ ବୀର ! ଆପଣ ଯେପରି ଇଚ୍ଛା କରନ୍ତି, ତାହାଙ୍କୁ ଆଦେଶ କରନ୍ତୁ; ସେ କୃଷ୍ଣାଙ୍କର ପାଣି ଗ୍ରହଣ କରିବେ । ୨୨ ।

ଯୁଧିଷ୍ଠିର ବୋଇଲେ—ହେ ରାଜନ୍ ! ଦ୍ରୌପଦୀ ଆମ୍ଭ ସମସ୍ତଙ୍କର ମହିଷୀ ହେବେ । ହେ ବିଶାମ୍ପତେ ! ଆମ୍ଭର ମାତା ପୂର୍ବରୁ ଏହା କହି ଅଛନ୍ତି । ୨୩ । ବିଶେଷତଃ ଆମ୍ଭର ଓ ଭୀମସେନଙ୍କର ପରିଣୟ ହୋଇ ନାହିଁ; ରତ୍ନ ସ୍ୱରୂପ ଆପଣଙ୍କର ଏହି ଦୁହିତାଙ୍କୁ ଅର୍ଜୁନ ଜୟ କରିଅଛନ୍ତି ମାତ୍ର, ହେ ରାଜନ୍ ! ଆମ୍ଭମାନଙ୍କ ମଧ୍ୟରେ ଏହି ପ୍ରତିଜ୍ଞା ଅଛି ଯେ, ରତ୍ନ ପ୍ରାପ୍ତ ହେଲେଁ ଆମ୍ଭେମାନେ ସମସ୍ତେ ମିଳି ତାହା ଭୋଗ କରିବୁଁ; ହେ ରାଜସତ୍ତମ ! ଆମ୍ଭେ ସେ ପ୍ରତିଜ୍ଞାକୁ ତ୍ୟାଗ କରିବାକୁ ଇଚ୍ଛା କରୁନାହୁଁ । ୨୫ । ଧର୍ମ ପ୍ରମାଣେ କୃଷ୍ଣା ଆମ୍ଭ ସମସ୍ତଙ୍କର ମହିଷୀ ହେବେ । ଅତଏବ ଜ୍ୱଳନ ସମକ୍ଷରେ ସେ ଜ୍ୟେଷ୍ଠାନୁଜ୍ୟେଷ୍ଠ କ୍ରମେ ଆମ୍ଭ ସମସ୍ତଙ୍କର ପାଣି-ଗ୍ରହଣ କରନ୍ତୁ । ୨୬ ।

ଦ୍ରୁପଦ କହିଲେ—ହେ କୁରୁନନ୍ଦନ ! ଶାସ୍ତ୍ରବିଧାନାନୁସାରେ ଏକ ରାଜାଙ୍କର ଅନେକ ମହିଷୀ ହୁଅନ୍ତି; କିନ୍ତୁ ଏକ ନାରୀର ବହୁପତି ହେବା କଥା ଶୁଣାଯାଇ ନାହିଁ । ୨୭ । ହେ କୌନ୍ତେୟ ! ତୁମ୍ଭେ

ଧର୍ମଙ୍କ ସୃତ ହୋଇ କି ପ୍ରକାରେ ଲୋକ ଓ ବେଦ ବିରୁଦ୍ଧ ଏହି ଅଧର୍ମ କର୍ମ କରିବାକୁ ପ୍ରବୃତ୍ତ ହେଉଅଛ ? କି ହେତୁରୁ ତୁମର ଈଦୃଶୀ ବୁଦ୍ଧି ହେଲା । ୨୮ ।

ଯୁଧିଷ୍ଠିର ବୋଇଲେ—ହେ ମହାରାଜ ! ଧର୍ମ ଅତି ସୂକ୍ଷ୍ମ, ଅମ୍ଭେ-ମାନେ ତାହାର ଗତିକୁ ଜାଣୁ ନାହୁଁ ; ପରନ୍ତୁ ପ୍ରଚେତା ପ୍ରଭୃତି ପୂର୍ବ-ପୂର୍ବ ମହାପୁରୁଷମାନେ ଯେଉଁ ପଥରେ ଗମନ କରିଅଛନ୍ତି, ଅମ୍ଭେମାନେ ସେହି ପଥର ଅନୁସରଣ କରିବୁ । ୨୯ । ଅମ୍ଭର ବାଗିନ୍ଦ୍ରିୟ କଦାପି ଅନୃତ କହି ନାହିଁ; ଅଧର୍ମରେ ଅମ୍ଭର ମତି ନିହିତ ନୁହଇ; ଅମ୍ଭର ଜନନୀ ଏହିପରି କହିଅଛନ୍ତି ଏହା ମଧ୍ୟ ଅମ୍ଭର ମନୋଗତ ଅଭିପ୍ରାୟ । ହେ ରାଜନ୍ । ଅମ୍ଭେ ଯାହା କହିଲୁଁ ତାହା ନିଶ୍ଚୟ ଧର୍ମ ଅଟେ । ଆପଣ ଆଉ କିଛି ବିଚାର ନ କରି ତଦନୁରୂପ କାର୍ଯ୍ୟ କରନ୍ତୁ । ହେ ପାର୍ଥିବ ! ଆପଣ ସେ ବିଷୟରେ କୌଣସି ଶଙ୍କା କରନ୍ତୁ ନାହିଁ । ୩୧ ।

ଦ୍ରୁପଦ ବୋଇଲେ—ହେ କୌନ୍ତେୟ ! ଆପଣ ଆଉ କୁନ୍ତୀ ଓ ଅମ୍ଭର ସୁତ ଧୃଷ୍ଟଦ୍ୟୁମ୍ନ ବିଚାର କରି କହ ଯେ କି କରିବା ଅଟେ, ଆସନ୍ତା କାଲି ତାହା କରିବା । ୩୨ ।

ବୈଶମ୍ପାୟନ ବୋଇଲେ—ହେ ଭାରତ ! ଅନନ୍ତର କୁନ୍ତୀ ଯୁଧିଷ୍ଠିର ଓ ଧୃଷ୍ଟଦ୍ୟୁମ୍ନ ତିନିଜଣ ଏକତ୍ର ହୋଇ ସେହି ବିଷୟରେ କଥୋପକଥନ କଲେ । ଏମନ୍ତ ସମୟରେ ଭଗବାନ୍ ଦ୍ୱୈପାୟନ ଯଦୃଚ୍ଛାକ୍ରମେ ସେଠାରେ ଉପସ୍ଥିତ ହେଲେ । ୩୩ ।

---

## ଅଧ୍ୟାୟ—୧୯୭ ।

ବୈଶମ୍ପାୟନ କହିଲେ—ଅନନ୍ତର ସମସ୍ତ ପାଣ୍ଡବଗଣ, ମହା-ଯଶସ୍ୱୀ ପାଞ୍ଚାଳ ଓ ଅନ୍ୟାନ୍ୟ ସମ୍ମିଳିତ ବ୍ୟକ୍ତିମାନେ ଉତ୍ଥିତ ହୋଇ ମହାତ୍ମା କୃଷ୍ଣ ଦ୍ୱୈପାୟନଙ୍କୁ ଅଭିବାଦନ କଲେ । ମହାନୁଭବ ମହର୍ଷି ସେମାନଙ୍କର ଅଭିବାଦନକୁ ଗ୍ରହଣ କରି, ସମସ୍ତଙ୍କର କୁଶଳ ପ୍ରଶ୍ନ କରି ଶୁଦ୍ଧ କାଞ୍ଚନ ଆସନରେ ଉପବିଷ୍ଟ ହେଲେ । ୨ । ଅମିତତେଜା କୃଷ୍ଣଙ୍କ ଦ୍ୱାରା ଅନୁଜ୍ଞାତ ହୋଇ ମନୁଷ୍ୟ-ଶ୍ରେଷ୍ଠମାନେ ମହାମୂଲ୍ୟ ଆସନମାନଙ୍କ

ଉପରେ ଉପବେଶନ କଲେ । ୩ । ହେ ବିଶାମ୍ପତେ ! ଦ୍ରୁପଦ ରାଜ ତନୟ ପାଞ୍ଚାଳି କିୟତ୍‌କାଳ ପରେ ମଧୁର ବାକ୍ୟ ବିନ୍ୟାସ ପୂର୍ବକ ସେହି ମହାତ୍ମାଙ୍କୁ ଦ୍ରୌପଦୀଙ୍କ ଉଦ୍‌ବାହ ବିଷୟ ପ୍ରଶ୍ନ କଲେ । ୪ । ଗୋଟିଏ ନାରୀ କିପରି ଅନେକ ପୁରୁଷଙ୍କର ପତ୍ନୀ ହୋଇପାରିବ ଓ ତହିଁରେ ଧର୍ମ୍ମ ଶଙ୍କର ନ ହେବ ? ଏ ବିଷୟ ଆପଣ ଆମ୍ଭଙ୍କୁ ଯଥାତଥ୍ୟ ବୋଲିବା ହେଉନ୍ତୁ । ୫ ।

ବ୍ୟାସ ବୋଇଲେ—ବେଦ ଓ ଲୋକାଚାରଂ ବିରୁଦ୍ଧ ହେବାରୁ ଏହା ଧର୍ମ୍ମ ବର୍ଜ୍ଜିତ ହୋଇଅଛି; ଏ ବିଷୟରେ ତୁମ୍ଭମାନଙ୍କର କାହାର କି ଅଭିପ୍ରାୟ, ଅଗ୍ରେ ତାହା ଆମ୍ଭେ ଶୁଣିବାକୁ ଇଚ୍ଛା କରୁଅଛୁଁ । ୬ ।

ଦ୍ରୁପଦ ବୋଇଲେ ହେ ଦ୍ୱିଜସତ୍ତମ ! ବହୁ ପୁରୁଷଙ୍କର ଏକପତ୍ନୀ ହେବାର କୌଣସିଠାରେ ଶୁଣା ନାହିଁ; ଏ କାର୍ଯ୍ୟ ବେଦ ବିରୁଦ୍ଧ ଓ ଲୋକ ବିରୁଦ୍ଧ ହେବାରୁ ଆମ୍ଭ ମତରେ ଅଧର୍ମ୍ମ ଅଟେ । ୭ । ପୂର୍ବ ପୂର୍ବ ମହାତ୍ମାମାନେ ଏହିପରି କାର୍ଯ୍ୟକୁ ଧର୍ମ୍ମ ବୋଲି ଆଚରଣ କରିନାହାନ୍ତି; ବିଦ୍‌ବାନ୍ ହୋଇ ଅଧର୍ମ୍ମ କରିବା କର୍ତ୍ତବ୍ୟ ନୁହେ । ୮ । ଅତଏବ ଆମ୍ଭେ ଏହି କାର୍ଯ୍ୟ କରିବାକୁ କଦାପି ସାହସୀ ହେଉନାହିଁ । ଏହି କାର୍ଯ୍ୟ ଆମ୍ଭଙ୍କୁ ସର୍ବଦା ସନ୍ଦେହାସ୍ପଦ ବୋଧ ହେଉଅଛି । ୯ ।

ଧୃଷ୍ଟଦ୍ୟୁମ୍ନ ବୋଇଲେ—ହେ ବ୍ରହ୍ମନ୍ ! ଦ୍ୱିଜର୍ଷଭ ! ତପୋଧନ ! ସଜ୍ଜନ ହୋଇ କନିଷ୍ଠ ଭ୍ରାତାଙ୍କର ଭାର୍ଯ୍ୟାକୁ ଜ୍ୟେଷ୍ଠଭ୍ରାତା କିପରି ଅଭିଗମନ କରିବେ ? । ୧୦ । ଧର୍ମ୍ମ ଅତିଶୟ ସୂକ୍ଷ୍ମ, ଅତଏବ ଆମ୍ଭେମାନେ ତାହାର ଗତି ବୁଝି ପାରୁନାହୁଁ, କି କେଉଁ ବିଷୟ ଧର୍ମ୍ମ୍ୟ ଓ କିଏ ଅଧର୍ମ୍ମ୍ୟ, ତାହା ଆମ୍ଭେ ବୁଝି ପାରିବାକୁ ଅସମର୍ଥ; କିନ୍ତୁ ଦ୍ରୌପଦୀ ଯେ ପାଞ୍ଚଜଣଙ୍କର ପତ୍ନୀ ହେବେ, ଏହା ଆମ୍ଭେ କଦାପି ସାହସ ପୂର୍ବକ କହି ନ ପାରୁଁ । ୧୨ ।

ଯୁଧିଷ୍ଠିର ବୋଇଲେ—ଆମ୍ଭ ବାଗିନ୍ଦ୍ରିୟ କଦାପି ଅନୃତ କହି ନାହିଁ କି ଆମ୍ଭର ମତି ଅଧର୍ମ୍ମରେ ନିହିତ ହୋଇ ନାହିଁ; ଆମ୍ଭର ମନ ଏଥିରେ ପ୍ରବୃତ୍ତ ହେଉଥିବାରୁ ଆମ୍ଭେ ଏହାକୁ ଅଧର୍ମ୍ମ ବୋଲି ବୋଧ କରୁନାହୁଁ । ୧୩ । ପୁରାଣରେ ଆମ୍ଭେ ଶ୍ରବଣ କରିଅଛୁଁ ଯେ ଜଟିଳା ନାମ୍ନୀ ଗୌତମ ବଂଶୀୟା ଗୋଟିଏ କନ୍ୟା ଥିଲେ, ସେ ଧର୍ମ୍ମଜ୍ଞନ ସମ୍ପନ୍ନା

ଓ ତପସ୍ୱିନୀ ହୋଇ ସାତଗୋଟି ଋଷିଙ୍କୁ ପାଣିଦାନ କରିଥିଲେ । ୧୪ ।
ତପଃସମ୍ପନ୍ନ ଓ ଜିତେନ୍ଦ୍ରିୟ 'ପ୍ରଚେତାଃ' ନାମରେ ଦଶଭାଇ ଥିଲେ । ସେହି
ଦଶଜଣ ସମସ୍ତେ ବାର୍କ୍ଷୀ ନାମ୍ନୀ ଋଷିକନ୍ୟାଙ୍କର ପାଣିଗ୍ରହଣ କରିଥିଲେ ।୧୫।
ହେ ଧର୍ମଜ୍ଞଶ୍ରେଷ୍ଠ ! କଥିତ ଅଛି ଯେ ଗୁରୁ ଯେପରି ଆଜ୍ଞା କରନ୍ତି, ସେହି
ଧର୍ମ; ଗୁରୁଙ୍କ ମଧ୍ୟରେ ମାତା ପରମ ଗୁରୁ । ସେହି ପରମ ଗୁରୁ ଆମ୍ଭର
ଜନନୀ, ଆଜ୍ଞା କରି ଅଛନ୍ତି ଯେ ଭିକ୍ଷାଲବ୍ଧ ଦ୍ରବ୍ୟ ପ୍ରାୟ ତୁମ୍ଭେ ସମସ୍ତେ
ମିଳିତ ହୋଇ ଏହାକୁ ଭୋଗ କର । ହେ ଦ୍ୱିଜୋତ୍ତମ ! ଏହି ହେତୁରୁ
ଏହାକୁ ଆମ୍ଭେ ପରମ ଧର୍ମ୍ୟ ବୋଲି ଜ୍ଞାନ କରୁଅଛୁଁ । ୧୬ ।

କୁନ୍ତୀ ବୋଇଲେ—ଧର୍ମନିଷ୍ଠ ଯୁଧିଷ୍ଠିର ଯାହା କହିଲେ, ତାହା
ଯଥାର୍ଥ ଅଟେ, ପରନ୍ତୁ ମିଥ୍ୟାରୁ ଆମ୍ଭର ଅତିଶୟ ଭୟ ହେଉଅଛି; କାରଣ
ଆମ୍ଭର ସେହି ବାକ୍ୟ ମିଥ୍ୟା ହୁଏ, ଏ ନିମିତ୍ତ ଆମ୍ଭେ ଅତିଶୟ ଭୀତା
ହେଉଅଛୁଁ । ହେ ବ୍ରହ୍ମନ୍ ! କି ରୂପେ ଆମ୍ଭର ସେହି ବାକ୍ୟର ସତ୍ୟତା
ରକ୍ଷା ହେବ ? । ୧୮ ।

ବ୍ୟାସ ବୋଇଲେ—ଭଦ୍ରେ ! ତୁମ୍ଭ ବାକ୍ୟର ସତ୍ୟତା ରକ୍ଷା
ହେବ, ତୁମ୍ଭେ ଯାହା କହୁଅଛ, ତାହା ସନାତନ ଧର୍ମ, ସନ୍ଦେହ ନାହିଁ ।
ହେ ପାଞ୍ଚାଳ ! ଯୁଧିଷ୍ଠିର ଯାହା କହୁଅଛନ୍ତି, ତାହା ଧର୍ମ ସମ୍ମତ ଅଟେ;
ତହିଁରେ ସଂଶୟ କର ନା । ଯେ ରୂପେ ଓ ଯାହାଠାରୁ ଏହା ସନାତନ
ଧର୍ମ ବୋଲି ବିହିତ ହୋଇଅଛି, ତାହା ଆମ୍ଭେ ସମସ୍ତଙ୍କ ଠାରେ ବ୍ୟକ୍ତ
କରିବାକୁ ଅସମର୍ଥ; କେବଳ ହେ ପାଞ୍ଚାଳ ! ତୁମ୍ଭଙ୍କୁ କହୁଅଛୁଁ, ଶ୍ରବଣ
କର । ୨୦ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ପ୍ରଭୁ ଭଗବାନ୍
ଦ୍ୱୈପାୟନ ବ୍ୟାସ ଗାତ୍ରୋତ୍ଥାନ କରି ଓ ରାଜାଙ୍କ ହସ୍ତକୁ ଧରି
ରାଜବେଶ୍ମରେ ପ୍ରବିଷ୍ଟ ହେଲେ; ପାଣ୍ଡବମାନେ, କୁନ୍ତୀ ଓ ପୃଷତ ବଂଶୋଦ୍ଭବ
ଧୃଷ୍ଟଦ୍ୟୁମ୍ନ ମଧ୍ୟ ସେଠାରେ ଉପସ୍ଥିତ ହେଲେ । ବ୍ୟାସ ଓ ଦ୍ରୁପଦ
ଏମାନଙ୍କୁ ପ୍ରତୀକ୍ଷା କରୁଥିଲେ । ୨୨ । ଅନନ୍ତର ଦ୍ୱୈପାୟନ ସେହି ମହାତ୍ମା
ନରେନ୍ଦ୍ରଙ୍କୁ ଯେପରି ବହୁପୁରୁଷଙ୍କର ଏକ ପତ୍ନୀ ହୁଏ, ସେହି ବିଷୟ
ବର୍ଣ୍ଣନ କଲେ । ୨୩ ।

---

## ଅଧ୍ୟାୟ—୨୯୭

ବ୍ୟାସ ବୋଇଲେ—ହେ ରାଜନ୍ । ପୂର୍ବକାଳରେ ନୈମିଷାରଣ୍ୟରେ ଦେବତାମାନେ ଗୋଟିଏ ମହାଯଜ୍ଞ କରୁଥିଲେ, ସେହି ସତ୍ରରେ ବିବସ୍ୱାନଙ୍କ ପୁତ୍ର ଯମକୁ ଶାମିତ୍ର * କରିଥିଲେ । ୧ । ସେହି କର୍ମରେ ଦୀକ୍ଷିତ ହୋଇଥିବାରୁ ଯମ ଆଉ କୌଣସି ପ୍ରଜାଙ୍କୁ ମାରିଲେ ନାହିଁ; ମରଣ ବିହୀନ ହେବାରୁ ପ୍ରଜାମାନଙ୍କର ସଂଖ୍ୟା ଅତି ବୃଦ୍ଧି ପାଇଲା । ୨ । ସୋମ, ଶକ୍ର, ବରୁଣ, କୁବେର, ସାଧ୍ୟଗଣ, ବସୁଗଣ, ରୁଦ୍ରଗଣ, ଅଶ୍ୱିନୀକୁମାର ଦ୍ୱୟ ଓ ଅନ୍ୟାନ୍ୟ ଦେବତାମାନେ ଭୁବନ ପ୍ରଣେତା ପ୍ରଜାପତିଙ୍କ ନିକଟକୁ ଗମନ କଲେ ଓ ସମସ୍ତେ ସମବେତ ହୋଇ ମନୁଷ୍ୟମାନଙ୍କର ବିବୃଦ୍ଧି ହେତୁରୁ ଭୀତ ଓ ଉଦ୍‌ବିଗ୍ନହୋଇ ସୁଖାଭିଳାଷରେ ପିତାମହଙ୍କର ଶରଣାଗତ ହେଲେ । ୪ ।

ପିତାମହ ବୋଇଲେ—ଆପଣମାନେ ସମସ୍ତେ ଅମର, ମନୁଷ୍ୟମାନଙ୍କଠାରୁ ଆପଣମାନଙ୍କର କି ଭୟ ? ମର୍ତ୍ତ୍ୟ ଲୋକଙ୍କଠାରୁ ଆପଣମାନଙ୍କର କିଛି ଭୟ ହୋଇ ନ ପାରେ । ୫ ।

ଦେବମାନେ ଉତ୍ତର କଲେ—ମର୍ତ୍ତ୍ୟମାନେ ଏବେ ଅମର୍ତ୍ତ୍ୟ ହେଲେଣି; ସେ ଦୁହିଁଙ୍କ ମଧ୍ୟରେ ଏବେ ପ୍ରଭେଦ ନାହିଁ ବିଶେଷ ନଥିବାରୁ, ଅମ୍ଭେମାନେ ଉଦ୍‌ବେଗ ପ୍ରାପ୍ତ ହୋଇଅଛୁଁ ଓ ଯହିଁରେ ବିଶେଷ ରହେ, ସେହି ନିମିତ୍ତ ଏଠାକୁ ଆଗମନ କରିଅଛୁଁ । ୬ ।

ଭଗବାନ ବୋଇଲେ—ଯଜ୍ଞ ହେଉଥିବାରୁ ବୈବସ୍ୱତ ତହିଁରେ ବ୍ୟାପୃତ ହୋଇଅଛନ୍ତି, ସେହି ହେତୁରୁ ମନୁଷ୍ୟମାନେ ମରୁନାହାନ୍ତି । ସେମାନଙ୍କର କାର୍ଯ୍ୟ ସମାପ୍ତ ହେଲେ ମନୁଷ୍ୟମାନଙ୍କର ଅନ୍ତକାଳ ଉପସ୍ଥିତ ହେବ ।

ବ୍ୟାସ ବୋଇଲେ—ମହାବଳ ଦେବଗଣ ପିତାମହଙ୍କ ବାକ୍ୟ ଶ୍ରବଣ କରି ଯେଉଁଠାରେ ଦେବତାମାନେ ଯଜ୍ଞ କରୁଥିଲେ, ସମସ୍ତେ ମିଳିତ ହୋଇ ସେଠାକୁ ଗମନ କଲେ । ସେମାନେ ଯାଇ ସେଠାରେ ବସିବା ମାତ୍ରକେ ଦେଖିଲେ ଯେ ଭାଗୀରଥୀ ଜଳରେ ଗୋଟିଏ ହିରଣ୍ମୟ

* ଶାମିତ୍ର—ଯଜ୍ଞରେ ଯେ ପଶୁବଧ କର୍ମ କରନ୍ତି ।

ପଦ୍ମ ଭାସି ଯାଉଅଛି । ୯ । ତାହା ଦେଖି ସେମାନେ ବିସ୍ମିତ ହେଲେ ଓ ସେମାନଙ୍କ ମଧ୍ୟରେ ଶ୍ରୀ, ଇନ୍ଦ୍ର ଦେଖିବାକୁ ଗଲେ ଯେ ସେ ପଦ୍ମ କେଉଁଠାରୁ ଆଗମନ କରୁଅଛି । ଯେଉଁଠାରୁ ଗଙ୍ଗାଦେବୀ ପ୍ରସୂତା ହୋଇଅଛନ୍ତି, ସେହିଠାରେ ଗୋଟିଏ ଯୋଷାଙ୍କୁ ଦେଖିଲେ; ସେହି ରମଣୀ ରୋଦନ କରୁଁ କରୁଁ ଗଙ୍ଗାରେ ଅବଗାହନ କରି ଦଣ୍ଡାୟମାନ ହୋଇଅଛନ୍ତି ଓ ତାହାଙ୍କ ନେତ୍ରରୁ ଯେଉଁ ଅଶ୍ରୁବିନ୍ଦୁମାନ ପତିତ ହେଉଅଛି, ସେ ସବୁ ଗୋଟିଏ ଗୋଟିଏ କାଞ୍ଚନ ପୁଣ୍ଡରୀକ ହୋଇ ଭାସି ଯାଉଅଛି । ୧୧ । ସେହି ଅଦ୍ଭୁତ ବ୍ୟାପାରକୁ ବଜ୍ରୀ ଦର୍ଶନ କରି ସେ ଯୋଷାଙ୍କ ନିକଟକୁ ଯାଇ ପଚାରିଲେ—ହେ ଭଦ୍ରେ । ତୁମ୍ଭେ କିଏ ? କାହା ନିମିତ୍ତ ରୋଦନ କରୁଅଛ ? ଆମ୍ଭେ ତଥ୍ୟ କଥା ଶୁଣିବାକୁ କାମନା କରୁଅଛୁଁ, ବୋଲନ୍ତୁ । ୧୨ ।

ସ୍ତ୍ରୀ ବୋଇଲେ—ହେ ଶକ୍ର । ତୁମ୍ଭେ ଜାଣ, ଆମ୍ଭେ ଯାହା ନିମିତ୍ତ ରୋଦନ କରୁଅଛୁଁ । ଆମ୍ଭେ ଅତି ମନ୍ଦଭାଗ୍ୟ, ଯଦି ତୁମ୍ଭେ ଆମ୍ଭ ସଙ୍ଗେ ଆସନ୍ତ, ତେବେ ଦେଖନ୍ତ ଯେ ଆମ୍ଭେ କିଏ ? କି ନିମିତ୍ତ ରୋଦନ କରୁଅଛୁଁ; ହେ ରାଜନ୍ । ଆମ୍ଭେ ଅଗ୍ରେ ଗମନ କରୁଅଛୁଁ, ଆପଣ ଆସନ୍ତୁ ।

ବ୍ୟାସ ବୋଇଲେ—ତତ୍କାଳରେ ଦେବରାଜ ସେ ରମଣୀଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କଲେ, ପରେ ତାହାଙ୍କ ସମୀପରେ ହିମାଳୟ ଶିଖରରେ କିୟଦ୍ଦୂର ଗମନ କରି ଦେଖିଲେ ଯେ, ଗୋଟିଏ ପରମ ସୁନ୍ଦର ଯୁବା ପୁରୁଷ, ଯୁବତୀ ସହ ସିଂହାସନରେ ଉପବିଷ୍ଟ ହୋଇ ଅକ୍ଷକ୍ରୀଡ଼ାରେ ନିମଗ୍ନ ହୋଇଅଛନ୍ତି । ୧୪ । ସୁରପତି ତାହାଙ୍କୁ ଅକ୍ଷକ୍ରୀଡ଼ାରେ ଅତ୍ୟନ୍ତ ପ୍ରମତ୍ତ ହୋଇଥିବାର ଦେଖି କହିଲେ, ହେ ବିଦ୍ୱନ୍ । ଏହି ତ୍ରିଭୁବନ ଆମ୍ଭର ବଶବର୍ତ୍ତୀ, ଏହା କି ତୁମ୍ଭେ ଜାଣନାହିଁ ? ତହିଁରେ ସେ ଅକ୍ଷକ୍ରୀଡ଼ା ନିମଗ୍ନ ପୁରୁଷ ଦେବରାଜଙ୍କୁ କ୍ରୁଦ୍ଧ ହେବାର ଦେଖି ହାସ୍ୟ ପୂର୍ବକ ତାହାଙ୍କ ଆଡ଼କୁ ଅଳ୍ପ ଦୃଷ୍ଟିପାତ କଲେ, ଦେବରାଜ ତାହାଙ୍କ ଦୃଷ୍ଟିପାତରେ ସ୍ତମ୍ଭିତ ହୋଇ ସ୍ଥାଣୁ ପ୍ରାୟ ଅବସ୍ଥିତ ହେଲେ । ୧୬ ।

ଅନନ୍ତର ଯେତେବେଳେ ସେହି ପୁରୁଷଙ୍କର ଅକ୍ଷକ୍ରୀଡ଼ା ସମାପ୍ତ ହେଲା, ତେତେବେଳେ ସେହି ରୋଦନପରାୟଣା ରମଣୀଙ୍କୁ

କହିଲେ, ତୁମ୍ଭେ ସେହି ଇନ୍ଦ୍ରଙ୍କ ଆସ୍ମନକଟକୁ ଆନୟନ କର, ଆଉ ଯେପରି ସେ ଗର୍ବ ପ୍ରକାଶ ନ କରେ । ସେହି ସିମନ୍ତିନୀ, ଦେବରାଜ ଇନ୍ଦ୍ରଙ୍କ ସ୍ପର୍ଶ କରିବା ମାତ୍ର ଶିଥିଳ କଳେବର ହୋଇ ଧରାପୃଷ୍ଠରେ ନିପତିତ ହେଲେ । ତେତେବେଳେ ଯେହି ପୁରୁଷରୂପୀ ଉଗ୍ରତେଜସ୍ୱୀ ଭଗବାନ୍ ମହେଶ୍ୱର ତାହାଙ୍କୁ ବୋଇଲେ, ହେ ଶକ୍ର । ତୁମ୍ଭେ କୌଣସି ରୂପେ ପୁନର୍ବାର ଈଦୃଶ କର୍ମ୍ମ କରିବ ନାହିଁ । ୧୮ । ତୁମ୍ଭର ବଳ ଓ ବୀର୍ଯ୍ୟ ଅପରିମିତ, ଅତଏବ ତୁମ୍ଭେ ଏହି ଗିରିଦ୍ୱାରରୋଧକ ବୃହତ୍ ପ୍ରସ୍ତରକୁ ଅପାବୃତ କରି ବିଳ ମଧ୍ୟରେ ପ୍ରବିଷ୍ଟ ହୁଅ । ସେଠାରେ ତୁମ୍ଭେ ଦେଖିବ ଯେ ତୁମ୍ଭ ପ୍ରାୟ ସୂର୍ଯ୍ୟ ସଦୃଶ ଦୀପ୍ତିଶାଳୀ ଅନେକ ଇନ୍ଦ୍ର ଅଛନ୍ତି । ୧୯ ।

ତହିଁରେ ସେ ଇନ୍ଦ୍ର ସେହି ମହାଗିରିର ବିବର ଦ୍ୱାରକୁ ଅପାବୃତ କରି ତନ୍ମଧ୍ୟରେ ପ୍ରବିଷ୍ଟ ହୋଇ ଦେଖିଲେ ଯେ, ତାହାଙ୍କର ଅନୁରୂପ ଆଉ ଚାରିଜଣ ଇନ୍ଦ୍ର ସେଠାରେ ରହିଅଛନ୍ତି । ସେ ତାହାଙ୍କୁ ଦେଖିବା ମାତ୍ର, ବିଚାରିଲେ ଯେ "କାଳେ ଆମ୍ଭର ଈଦୃଶ ଦଶା ହେବ" ଭାବି ଦୁଃଖିତ ହେଲେ । ତେତେବେଳେ ଦେବ ଦେବ ଗିରିଶ କୁପିତ ହୋଇ ନୟନ ବିସ୍ତାର ପୂର୍ବକ ଇନ୍ଦ୍ରଙ୍କୁ କହିଲେ, ଶତକ୍ରତୋ । ତୁମ୍ଭେ ଏହି ଦରୀ ମଧ୍ୟରେ ପ୍ରବେଶ କର, ତୁମ୍ଭେ ମୂଢ଼ତା ବଶତଃ ଆମ୍ଭଙ୍କୁ ଅବଜ୍ଞା କରିଅଛ । ୨୧ । ସେହି ବିଭୁଙ୍କର ସକୋଧ ବଚନ ଶ୍ରବଣ କରି ଦେବରାଜ ଅତିଶୟ କାତର ହୋଇ ପର୍ବତ ଶିଖର ସ୍ଥିତ ଅଶ୍ୱତ୍ଥ-ପତ୍ର ଯେପରି ସମୀରଣ ବେଗରେ ଚାଳିତ ହୋଇ ପ୍ରକମ୍ପିତ ହୁଅଇ, ତଦ୍‌ବତ୍ ପ୍ରବେପିତ ହେଲେ । ୨୨ । ବୃଷ ବାହନ ମହାଦେବଙ୍କର ତଦ୍ରୂପ ଦୁଃଖଜନକ ବାକ୍ୟ ଶ୍ରବଣ କରି, କମ୍ପିତ କଳେବରରେ କୃତାଞ୍ଜଳି ପୂର୍ବରେ ସେହି ବହୁରୂପଧାରୀ ଉଗ୍ରଦେବଙ୍କୁ ଇନ୍ଦ୍ର କହିଲେ, ହେ ଭବ । ଅଦ୍ୟ ଜାଣିଲି ଆପଣ ଚରାଚର ବିଶ୍ୱର ପତି । ୨୩ ।

ଉଗ୍ରତେଜସ୍ୱୀ ମହାଦେବ ହାସ୍ୟ କରି କହିଲେ, ଈଦୃଶ ଅହଙ୍କାରୀ ବ୍ୟକ୍ତି ଆମ୍ଭର ପ୍ରସନ୍ନତା ଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ; ଦେଖ, ଏହି ଇନ୍ଦ୍ରମାନେ ପୂର୍ବେ ସେହିରୂପ କର୍ମ୍ମ କରି ଦରୀ ମଧ୍ୟରେ ପ୍ରବିଷ୍ଟ ହୋଇ ଅଛନ୍ତି; ଅତଏବ ତୁମ୍ଭେ ମଧ୍ୟ ସେହି ଦରୀ ମଧ୍ୟରେ ପ୍ରବେଶ କରି ଶୟନ କର । ୨୪ । ତୁମ୍ଭମାନଙ୍କର ସମସ୍ତଙ୍କର ଏହିରୂପ ହେବ, ଯେ ତୁମ୍ଭେ

ପାଞ୍ଚଜଣ ସମସ୍ତେ ମାନବ ଜନ୍ମଗ୍ରହଣ କରି ମର୍ତ୍ତ୍ୟଲୋକରେ ବିବିଧ ଦୁର୍ବିସହ କର୍ମ କରି ବହୁପ୍ରାଣୀଙ୍କ ସଂହାର ପୂର୍ବକ ପୁନର୍ବାର ପୂର୍ବକୃତ ମହାର୍ହ ଇନ୍ଦ୍ରଲୋକକୁ ଆଗମନ କରିବ । ଭୂଲୋକରେ ବିବିଧାର୍ଥ ଯୁକ୍ତ ଅଜ-ଅଜ ଅନେକ କର୍ମ କରିବ. ଅମ୍ଭେ ଯାହା ଭାଷିତ କଲୁଁ, ତାହା ସବୁ ତଦ୍ରୂପ ହେବ । ୨୬ ।

ତାହାଶୁଣି ପୂର୍ବେନ୍ଦ୍ରମାନେ ବୋଇଲେ, ଅମ୍ଭେ ପାଞ୍ଚଜଣ ଦେବଲୋକରୁ ମାନୁଷ ଲୋକକୁ ଗମନ କରିବୁଁ, ସେଠାରେ ମୋକ୍ଷ ପ୍ରାପ୍ତ ହେବା ଅତି ଦୁରାଧର, ଅତଏବ ଅମ୍ଭର ପ୍ରାର୍ଥନା ଏହି ଯେ, ଯେ ଅମ୍ଭର ଜନନୀ ହେବେ, ତାହାଙ୍କ ଠାରେ ଧର୍ମ୍ମ, ବାୟୁ ମଘବାନ୍ ଇନ୍ଦ୍ର ଓ ଅଶ୍ୱିନୀକୁମାର ଦ୍ୱୟ ଅମ୍ଭମାନଙ୍କ ନିମିତ୍ତ ଗର୍ଭାଧାନ କରିବେ । ପରନ୍ତୁ ଅମ୍ଭେମାନେ ଦିବ୍ୟାସ୍ତ୍ର ଦ୍ୱାରା ମାନୁଷଙ୍କ ସହିତ ଯୁଦ୍ଧ କରି ପୁନର୍ବାର ଇନ୍ଦ୍ରଲୋକକୁ ଆଗମନ କରିବୁଁ । ୨୭ ।

ବ୍ୟାସ ବୋଇଲେ—ଏହା ଶୁଣି ଦେବଶ୍ରେଷ୍ଠ ମହାଦେବଙ୍କୁ ଇନ୍ଦ୍ର ପୁନର୍ବାର କହିଲେ. "ଅମ୍ଭେ ସ୍ୱୟଂ ଗମନ ନ କରି କାର୍ଯ୍ୟ ସିଦ୍ଧି ନିମିତ୍ତ ସ୍ୱବୀର୍ଯ୍ୟ ଦ୍ୱାରା ଗୋଟିଏ ପୁରୁଷ ଉତ୍ପାଦନ କରି ଦେବୁଁ; ସେହି ପୁରୁଷ ଏମାନଙ୍କର ପଞ୍ଚମ ହୁଅନ୍ତୁ ।" ଅନନ୍ତର ଭଗବାନ୍ ପିନାକୀ କୃପାବିଷ୍ଟ ହୋଇ ବିଶ୍ୱଭୁକ୍, ଭୂତଧାମା, ଶିବି, ଶାନ୍ତ ଓ ତେଜସ୍ୱୀ ଏହି ପଞ୍ଚ ଇନ୍ଦ୍ରଙ୍କ ପ୍ରାର୍ଥନାରେ ସମ୍ମତ ହେଲେ ଓ ସମସ୍ତଙ୍କର ଅଭିଲଷିତ ସେହି ଲୋକ-ଲଲାମଭୂତା, ସ୍ୱର୍ଗଶ୍ରୀସମ୍ପନ୍ନା ଲଲନାଙ୍କୁ ମର୍ତ୍ତ୍ୟଲୋକରେ ସେମାନଙ୍କର ଭାର୍ଯ୍ୟା ହେବାର ବିଧାନ କଲେ । ୩୦ ।

ତତ୍ପରେ ମହାଦେବ ସେମାନଙ୍କ ସଙ୍ଗରେ ଯେଉଁ ଅନାଦି, ଅବ୍ୟକ୍ତ, ଅନନ୍ତରୂପୀ ଭଗବାନ୍ ଅପ୍ରମେୟ ନାରାୟଣଙ୍କ ନିକଟକୁ ଗମନ କଲେ । ୩୧ । ଭଗବାନ୍ ନାରାୟଣ ତତ୍ସମସ୍ତ ଅବଗତ ହୋଇ ତହିଁରେ ଅନୁମୋଦନ କଲେ ଓ ସେମାନେ ସମସ୍ତେ ଧରଣୀରେ ସମ୍ଭୂତ ହେଲେ; ଭଗବାନ୍ ହରି ଆପଣା ଠାରୁ କୃଷ୍ଣ ଓ ଶୁକ୍ଳବର୍ଣ୍ଣର ଦୁଇଗୋଟି କେଶ ଅର୍ଥାତ୍ ଶକ୍ତି ଉତ୍ପାଟନ କଲେ । ୩୨ । ସେହି କେଶ ଯଦୁ କୁଳରେ ରୋହିଣୀଙ୍କର ଓ ଦେବକୀଙ୍କର ଗର୍ଭରେ ଅନୁପ୍ରବିଷ୍ଟ ହେଲେ । ନାରାୟଣଙ୍କର ସେହି ଶୁକ୍ଳକେଶ ବଳଦେବ ରୂପେ ଜନ୍ମ ପରିଗ୍ରହ କଲେ; କୃଷ୍ଣବର୍ଣ୍ଣର

ଯେଉଁ କେଶ ବୋଲିଥିଲି, ସେ କେଶ କେଶବ କୃଷ୍ଣ ସ୍ୱରୂପ ହୋଇ ସମ୍ଭୂତ ହେଲେ । ୩୩ । ଶଙ୍କରରୂପୀ ଯେଉଁମାନେ ସେ ପର୍ବତ ଦରୀରେ ନିବଦ୍ଧ ହୋଇଥିଲେ, ସେହିମାନେ ମର୍ତ୍ତ୍ୟଲୋକରେ ବୀର୍ଯ୍ୟଶାଳୀ ପାଣ୍ଡବ ସ୍ୱରୂପ ଜନ୍ମି ଅଛନ୍ତି ଓ ପାଣ୍ଡୁପୁତ୍ର ସବ୍ୟସାଚୀ ଇନ୍ଦ୍ରଙ୍କ ଅଂଶରେ ଜନ୍ମି ଅଛନ୍ତି । ୩୪ ।

ହେ ରାଜନ୍ । ଯେଉଁମାନେ ପୂର୍ବେ ଇନ୍ଦ୍ର ଥିଲେ, ଏବେ ସେମାନେ ପାଣ୍ଡବରୂପେ ଅବତୀର୍ଣ୍ଣ ହୋଇ ଅଛନ୍ତି ଓ ଯେଉଁ ଦିବ୍ୟ ରୂପା ସ୍ୱର୍ଗ ଲକ୍ଷ୍ମୀ ସେମାନଙ୍କର ଭାର୍ଯ୍ୟାରୂପେ ନିର୍ଦ୍ଦିଷ୍ଟା ହୋଇଥିଲେ ସେହି ସେ ଦ୍ରୌପଦୀ ହୋଇ ଜନ୍ମି ଅଛନ୍ତି । ୩୫ । ଦୈବଯୋଗ ନୋହିଥିଲେ ମହୀ-ତଳରୁ କିପରି ଏହି ସ୍ତ୍ରୀ ସମୁତ୍ଥିତ ହୁଅନ୍ତେ, ଯାହାଙ୍କର ରୂପ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ପ୍ରକାଶ ତୁଲ୍ୟ ଓ ଯାହାଙ୍କର ଶରୀର ସୁଗନ୍ଧ ଏକ କୋଶ ଦୂରକୁ ବାତ ଦ୍ୱାରା ସଞ୍ଚାରିତ ହେଉଅଛି । ୩୬ । ହେ ନରେନ୍ଦ୍ର । ଅମ୍ଭେ ପ୍ରୀତି-ପୂର୍ବକ ତୁମ୍ଭଙ୍କୁ ଅନ୍ୟ ଗୋଟିଏ ବର ପ୍ରଦାନ କରୁଅଛୁଁ ; ଦିବ୍ୟ ଚକ୍ଷୁ ଦ୍ୱାରା ତୁମ୍ଭେ କୁନ୍ତୀପୁତ୍ର ମାନଙ୍କୁ ଦର୍ଶନ କର, ତଦ୍ୱାରା ତୁମ୍ଭେ ସେମାନଙ୍କର ଦିବ୍ୟ ଓ ପବିତ୍ର ପୂର୍ବ ଦେହ ଅବଲୋକନ କର । ୩୭ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ଶୁଚି ଓ ପରମ ଉଦାର କର୍ମ୍ମା ବ୍ୟାସ ମହର୍ଷି ଆପଣାର ତପସ୍ୟା ବଳରେ ରାଜା ଦ୍ରୁପଦଙ୍କୁ ଚକ୍ଷୁ ପ୍ରଦାନ କଲେ, ଯଦ୍ୱାରା ସେ ପାଣ୍ଡବମାନଙ୍କର ସମସ୍ତଙ୍କର ପୂର୍ବ ଦେହକୁ ଯଥାବତ୍ ଦର୍ଶନ କଲେ । ୩୮ । ଦ୍ରୁପଦ ଦେଖିଲେ ଯେ ସେମାନେ ହେମ କିରୀଟଧାରୀ, ମାଳା ବିଭୂଷିତ, ପାବକ ଓ ଆଦିତ୍ୟଙ୍କ ପ୍ରାୟ ଉଜ୍ଜ୍ୱଳ ବର୍ଣ୍ଣ ବିଶିଷ୍ଟ; ଉପଯୁକ୍ତ ଅଳଙ୍କାରରେ ବିଭୂଷିତ, ମନୋହର ତରୁଣ ବୟସ୍କ, ବିଶାଳବକ୍ଷଃ ଓ ଅତ୍ୟୁଚ୍ଚ ଦେହଯୁକ୍ତ ଓ ଇନ୍ଦ୍ରଙ୍କ ପ୍ରାୟ ରୂପବାନ୍ । ସେମାନେ ନିର୍ମ୍ମଳ ଓ ଉତ୍କୃଷ୍ଟ ସୁଗନ୍ଧ ମାଲ୍ୟ ମଣ୍ଡିତ, ସାକ୍ଷାତ୍ ତ୍ରିଲୋଚନ, କି ବସୁଗଣ, କି ରୁଦ୍ରଗଣ ଅଥବା ଆଦିତ୍ୟଗଣଙ୍କ ପ୍ରାୟ ସର୍ବଗୁଣସମ୍ପନ୍ନ ହୋଇ ଅଛନ୍ତି । ରାଜା ଦ୍ରୁପଦ ସେହି ସୁନ୍ଦର ପୂର୍ବେନ୍ଦ୍ରମାନଙ୍କୁ ଓ ଇନ୍ଦ୍ରଙ୍କ ପୁତ୍ରକୁ ବିଲୋକନକରି ପ୍ରୀତହେଲେ ଓ ଋଷିଙ୍କର ସେହି ଦିବ୍ୟ ଓ ଅପ୍ରମେୟ ମାୟାକୁ ବିସ୍ମିତ ହେଲେ । ୪୧ । ପୁନଶ୍ଚ ପାର୍ଥିବେନ୍ଦ୍ର ଦ୍ରୁପଦ ସାକ୍ଷାତ୍ ସୋମ ବା ବହ୍ନି ତୁଲ୍ୟ ପ୍ରକାଶମାନା, ଅତି ରୂପଯୁକ୍ତା, ସେହି ଦିବ୍ୟା ରମଣୀଙ୍କ ରୂପ ଓ ତେଜରେ ପାଣ୍ଡବମାନଙ୍କର ପତ୍ନୀ ହେବାର

ଯୋଗ୍ୟ ଦେଖିଲେ । ୪୯ । ସେହି ମହତ୍ ଆଶ୍ଚର୍ଯ୍ୟ ରୂପକୁ ଦେଖି ରାଜା ଦ୍ରୁପଦ ସତ୍ୟବତୀ ସୁତଙ୍କର ପାଦଦ୍ୱୟକୁ ଗ୍ରହଣ କଲେ ଓ ପ୍ରସନ୍ନ ଚିତ୍ତରେ ବୋଇଲେ, ହେ ପରମର୍ଷେ ! ଆପଣଙ୍କ ଏ ସମସ୍ତ ବିଷୟ ଆଶ୍ଚର୍ଯ୍ୟ ନୁହଇ । ୪୩ ।

ବ୍ୟାସ ବୋଇଲେ—କୌଣସି ମହାତ୍ମାଙ୍କର ତପୋବନରେ ଗୋଟିଏ ଋଷିଙ୍କର କନ୍ୟା ଥିଲେ; ସେହି ସତୀ ଓ ରୂପବତୀ କନ୍ୟା, ସଦ୍ଗୁଣ ପତି ପ୍ରାପ୍ତ ନୋହିବାରୁ ଉଗ୍ର ତପସ୍ୟାଦ୍ୱାରା ଶଙ୍କରଙ୍କୁ ଆରାଧନା କଲେ; ଈଶ୍ୱର ତାହାଙ୍କୁ ଦେଖି ପ୍ରୀତ ହୋଇ ବୋଇଲେ, "ତୁମ୍ଭର କି କାମନା, ବରଣ କର" ।୪୫। ସେହି ବଚନ ଶୁଣି ବରଦ ଈଶ୍ୱରଙ୍କୁ, କନ୍ୟା ପୁନଃ-ପୁନଃ କରି ବୋଇଲେ ଯେ ସର୍ବଗୁଣୋପେତ ପତିଙ୍କୁ ଆମ୍ଭେ ଇଚ୍ଛା କରୁଅଛୁଁ । ୪୬ । ଦେବେଶ-ଶଙ୍କର ପ୍ରୀତ ମାନସରେ ତାହାଙ୍କୁ ବୋଇଲେ, ଭଦ୍ରେ ! ତୁମ୍ଭର ପଞ୍ଚଗୋଟି ପତି ହେବେ । ୪୭ । ଦେବ-ଦେବଙ୍କୁ ପ୍ରସନ୍ନ କରି ସେହି ରମଣୀ ପୁନର୍ବାର ବୋଇଲେ, ହେ ଶଙ୍କର ! ଆପଣ ଆମ୍ଭଙ୍କୁ ଗୋଟିଏ ଗୁଣୋପେତ ପତି ଦେଉନ୍ତୁ । ୪୮ । ଦେବଦେବ ପ୍ରୀତ ହୋଇ ତାହାଙ୍କୁ ବୋଇଲେ, ତୁମ୍ଭେ "ପତିଦିଅ" "ପତିଦିଅ" ବୋଲି ପଞ୍ଚବାର ବୋଇଲ; ଅତଏବ ଭଦ୍ରେ ! ତୁମ୍ଭେ ଯେପରି କହିଲ, ସେହିପରି ହେବ, ତୁମ୍ଭେ ଦେହାନ୍ତର ପ୍ରାପ୍ତ ହେଲେ, ତୁମ୍ଭର ଏହିପରି ଘଟିବ । ୫୦ । ହେ ଦ୍ରୁପଦ ! ସେହି ତପସ୍ୱିନୀ ଏବେ ଦ୍ରୌପଦୀ ହୋଇ ଜନ୍ମି ଅଛନ୍ତି; ପୃଷତ ବଂଶୀୟା କୃଷ୍ଣା ପଞ୍ଚଜଣଙ୍କର ପତ୍ନୀ ହେବେ ବୋଲି ନିର୍ଦ୍ଦିଷ୍ଟ ହୋଇ ଅଛନ୍ତି । ୫୧ । ପାଣ୍ଡବଙ୍କ ନିମିତ୍ତ ଏହି ସ୍ୱର୍ଗଲକ୍ଷ୍ମୀ ତୁମ୍ଭର ମହାଯଜ୍ଞରେ ସମୁତ୍ପନ୍ନ ହୋଇ ଅଛନ୍ତି; ସେ ଘୋର ତପସ୍ୟା କରି ତୁମ୍ଭର ଦୁହିତୃତ୍ୱ ପ୍ରାପ୍ତ ହୋଇଅଛନ୍ତି । ୫୨ । ସେହି ରୁଚିର-ରୂପା ଦେବୀ ସ୍ୱକୃତ କର୍ମଦ୍ୱାରା ପଞ୍ଚପୁରୁଷଙ୍କର ଏକାକିନୀ ପତ୍ନୀ ହୋଇଅଛନ୍ତି । ସ୍ୱୟଂ ବ୍ରହ୍ମା ତାହାଙ୍କୁ ତଦ୍ରୂପ ସୃଷ୍ଟି କରି ଅଛନ୍ତି; ହେ ରାଜନ୍ ! ଦ୍ରୁପଦ ! ଏବେ ଶୁଣି ଯାହା କରିବାର କର । ୫୩ ।

---

# ଅଧ୍ୟାୟ—୧୯୮

ଦ୍ରୁପଦ ବୋଇଲେ—ହେ ମହର୍ଷେ ! ଆପଣଙ୍କର ବଚନ ନ ଶୁଣି, ପୂର୍ବେ ଆମ୍ଭେ ଯାହା କରିବାର କରୁଥିଲୁଁ; ଏବେ ଯାହା ବିଧାତାମାନେ ବିଧାନ କରି ଅଛନ୍ତି, ତାହାର ଅନ୍ୟଥା ହୋଇ ନ ପାରେ, ତାହାହିଁ କରିବାକୁ ହେବ । ଅଦୃଷ୍ଟର ଗ୍ରନ୍ଥି ଅନିବର୍ତ୍ତନୀୟ; ସ୍ୱକର୍ମ ଦ୍ୱାରା କିଛିମାତ୍ର ବିହିତ ହୋଇନାହିଁ; ଗୋଟିଏ ବର ନିମିତ୍ତ ଲକ୍ଷ୍ୟ ପ୍ରସ୍ତୁତ ହୋଇଥିଲା; କିନ୍ତୁ ସେ ଏବେ ପଞ୍ଚଜଣଙ୍କ ନିମିତ୍ତ ଉପପନ୍ନ ହେଲା । ୨ । କୃଷ୍ଣା ଯେପରି ପୂର୍ବ ଜନ୍ମରେ କହିଥିଲେ, ଆମ୍ଭଙ୍କୁ ଏକାଧିକ ପତି ପ୍ରଦାନ କର, ଭଗବାନ୍ ରୁଦ୍ର ତାହାଙ୍କୁ ତଦ୍ରୂପ ବର ପ୍ରଦାନ କଲେ; ଏ ବିଷୟରେ ଉତ୍ତମ ମଧ୍ୟମ ଦେବତା ମାନଙ୍କ ହସ୍ତରେ ଅର୍ପିତ ହୋଇଅଛି । ୩ । ଯଦି ଶଙ୍କର ଏପରି ବିଧାନ କରିଅଛନ୍ତି ତେବେ ଏଥିରେ ଆମ୍ଭର ଧର୍ମାଧର୍ମ ନାହିଁ; ଏହି ପାଣ୍ଡବମାନେ ଯଥା ସୁଖରେ କୃଷ୍ଣାଙ୍କର ପାଣିଗ୍ରହଣ କରନ୍ତୁ । ୪ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ଭଗବାନ୍ ମହର୍ଷି ଧର୍ମରାଜଙ୍କୁ କହିଲେ, ହେ ଯୁଧିଷ୍ଠିର ! ଅଦ୍ୟ ପୁଣ୍ୟ ଦିବସ, ଚନ୍ଦ୍ରମା ପୌଷ୍ୟଯୋଗକୁ ପ୍ରାପ୍ତ ହେବେ, ଅତଏବ ତୁମ୍ଭେ ଅଦ୍ୟ ଅଗ୍ରେ କୃଷ୍ଣାଙ୍କର ପାଣି ଗ୍ରହଣ କର । ୫ । ତତ୍ପରେ ସପୁତ୍ର ରାଜା ଯଜ୍ଞସେନ କନ୍ୟାର ବିବାହ ନିମିତ୍ତ ବହୁବିଧ ଉତ୍କୃଷ୍ଟ ଦ୍ରବ୍ୟମାନ ସଂଗ୍ରହ କଲେ ଓ କୃଷ୍ଣାଙ୍କୁ ରତ୍ନରେ ବିଭୂଷିତ ଆପ୍ଲାବିତ କରି ଅଣାଇଲେ । ୬ । ତଦନନ୍ତର ନୃପଙ୍କର ମନ୍ତ୍ରୀ ଓ ସୁହୃଦ୍‌ବର୍ଗ ସମସ୍ତେ ସହିତ ହୋଇ ସମାଗମନ କଲେ; ଦ୍ୱିଜମାନେ ଓ ପୁରଜନମାନେ ପରମ ପ୍ରୀତି ପୂର୍ବକ ଆପଣାର ପ୍ରାଧାନ୍ୟ ଅନୁକ୍ରମେ ବିବାହ ଦେଖିବାକୁ ସମାଗତ ହେଲେ । ୭ ।

ପୂର୍ବରୁ ରାଜସଦନର ପ୍ରାଙ୍ଗଣ ଭୂମି, ପଦ୍ମ ପ୍ରଭୃତି ବିବିଧ ଜଳଜାତ କୁସୁମ ବିସ୍ତୀର୍ଣ୍ଣ ମାଲ୍ୟ ସମୂହରେ ସୁସଜ୍ଜିତ ହୋଇଥିଲା; ଇଦାନୀଂ ସେନା ସମୂହ ଓ ରତ୍ନ ସମୂହରେ ଶୋଭିତ ହେବାରୁ ନଭୋମଣ୍ଡଳ ଯେପରି ନିର୍ମଳ ତାରକାନ୍ୱିତ ହୋଇ ଶୋଭା ପ୍ରାପ୍ତ ହୁଅଇ, ତଦ୍ରୂପ ବିଚିତ୍ର ଦୃଶ୍ୟକୁ ପ୍ରାପ୍ତ ହେଲା । ୮ । ତଦନନ୍ତର ସ୍ନାନ ସମାପ୍ତି ପରେ ମହାର୍ହ ବସ୍ତ୍ର ପରିଧାନ କରି ଓ ଚନ୍ଦନ ଜଳରେ ସିକ୍ତ

ହୋଇ, ଅଳଙ୍କାର ଓ କୁଣ୍ଡଳରେ ବିଭୂଷିତ ହୋଇ ତରୁଣ ବୟସ୍କ କୌରବ ରାଜପୁତ୍ରମାନେ, ଅଗ୍ନିସମ ତେଜସ୍ୱୀ ପୁରୋହିତ ଧୌମ୍ୟଙ୍କ ସହ, କ୍ରମରେ ଗୋଷ୍ଠ ମଧ୍ୟରେ ମହା ବୃଷଭମାନେ ପ୍ରବେଶ କଲାପ୍ରାୟ, ଆନନ୍ଦ ମନରେ ସଭା ମଧ୍ୟରେ ପ୍ରବେଶ କଲେ । ୧୦ ।

ଅନନ୍ତର ମନ୍ତ୍ରବେତ୍ତା ଓ ବେଦ ପାରଗ ଧୌମ୍ୟ ଅଗ୍ନି ସମାଧାନ କରି ଜ୍ୱଳିତ ହୁତାଶନରେ ଆହୁତି ପ୍ରଦାନ କଲେ ଓ ଯୁଧିଷ୍ଠିରଙ୍କୁ ବସାଇ କୃଷ୍ଣାଙ୍କ ସହ ନିଯୋଜିତ କଲେ । ୧୧ । ବର କନ୍ୟା ଦୁହେଁ, ଅଗ୍ନିକୁ ପ୍ରଦକ୍ଷିଣ କରି ପରସ୍ପରର ପାଣିଗ୍ରହଣ କଲେ; ବେଦ ପାରଗ ଧୌମ୍ୟ ପରଣୟ କାର୍ଯ୍ୟ ସମ୍ପାଦନ କରି ଓ ଯୁଧିଷ୍ଠିରଙ୍କର ଅନୁଜ୍ଞା ଗ୍ରହଣ କରି ରାଜଗୃହରୁ ବିନିର୍ଗତ ହେଲେ । ୧୨ । କୌରବ ବଂଶ ବର୍ଦ୍ଧନକାରୀ, ମହାରଥ, ଉତ୍ତମ ରୂପଧାରୀ ନରାଧିପ ପୁତ୍ରମାନେ କ୍ରମରେ ଦିନେ ଦିନେ ସେହି ବରବର୍ଣ୍ଣିନୀଙ୍କର ପାଣି ଗ୍ରହଣ କଲେ । ୧୩ ।

ହେ ରାଜନ୍ ! ମହର୍ଷି ବ୍ୟାସଦେବ ଆମ୍ଭଙ୍କୁ ଏ ବିଷୟରେ ଗୋଟିଏ ଅତିମାନୁଷିକ ଘଟଣାର କଥା କହିଅଛନ୍ତି ଯେ ସେହି ମହାନୁଭାବା ସୁମଧ୍ୟମା ଦ୍ରୌପଦୀଙ୍କର ଗୋଟିଏ ବିବାହ ଏକ ଦିନରେ ସମାପ୍ତ ହେଲେହେଁ, ପରଦିବସରେ ସେ ପର ଦିବସକୁ ପୁନର୍ବାର କନ୍ୟାବସ୍ଥାକୁ ପ୍ରାପ୍ତ ହୁଅନ୍ତି । ୧୪ । ବିବାହ କାର୍ଯ୍ୟ ନିର୍ବାହ ହେବା ପରେ ମହାନୁଭାବ ସୋମବଂଶୋଦ୍ଭବ ରାଜା ଦ୍ରୁପଦ ଅଗ୍ନିକୁ ସାକ୍ଷି କରି ମହାରଥ ପାଣ୍ଡବମାନଙ୍କୁ ଉତ୍ତମ ହେମମାଳା ବିଭୂଷିତ, ସୁବର୍ଣ୍ଣ ରଶ୍ମିବନ୍ଧ ଚତୁରଶ୍ୱଯୁକ୍ତ ଶତସଂଖ୍ୟକ ରଥ, ହେମଶୃଙ୍ଗ ମଣ୍ଡିତ ପର୍ବତୋପମ ଶତ ହସ୍ତୀ, ମହାମୂଲ୍ୟ ବେଶ, ଆଭରଣ, ବସ୍ତ୍ର ଓ ମାଳାମଣ୍ଡିତ, ଯୌବନ ସମ୍ପନ୍ନା ଶତଦାସୀ; ମହାର୍ହ ନାନାବିଧ ବସ୍ତ୍ର ଓ ଅଳଙ୍କାର ଅଥଚ ସେମାନଙ୍କୁ ପ୍ରତ୍ୟେକରେ ପୃଥକ୍ ପୃଥକ୍ ରୂପେ ଏକ ଏକ ଲକ୍ଷ ସୁବର୍ଣ୍ଣ ମୁଦ୍ରା ପ୍ରଦାନ କଲେ । ୧୭ । ବିବାହ କାର୍ଯ୍ୟ ନିର୍ବାହପରେ ମହାବଳ ପାଣ୍ଡବମାନେ ପ୍ରଭୂତତର ଧନ ଓ ସେହି ଲକ୍ଷ୍ମୀ ସ୍ୱରୂପା ସ୍ତ୍ରୀଙ୍କୁ ପ୍ରାପ୍ତ ହୋଇ ପାଞ୍ଚାଳ ଦେଶାଧିପତିଙ୍କ ପୁର ମଧ୍ୟରେ ଇନ୍ଦ୍ର ସଦୃଶ ହୋଇ ବିହାର କଲେ । ୧୮ ।

---

## ଅଧ୍ୟାୟ—୧୯୯

ବୈଶମ୍ପାୟନ ବୋଇଲେ—ପାଣ୍ଡବଙ୍କ ସହିତ ସମ୍ବନ୍ଧ ସ୍ଥାପନ ହେବାରୁ ଦ୍ରୁପଦ ରଜାଙ୍କର କଣ୍ଠମାତ୍ର ଭୟ ରହିଲା ନାହିଁ; ସେ ଦେବତାଙ୍କୁ ସୁଦ୍ଧା ଭୟ କଲେନାହିଁ । ୧ । ମହାତ୍ମା ଦ୍ରୁପଦଙ୍କର ନାରୀମାନେ କୁନ୍ତୀଙ୍କ ନିକଟକୁ ଯାଇ ଅପଣା ନାମକୁ ଗୋଟି ଗୋଟି ଉଚ୍ଚାରଣ କରି ତାହାଙ୍କର ପାଦତଳେ ମସ୍ତକ ଦେଇ ପ୍ରଣାମ କଲେ । ୨ । କୌତୁକ-ସୂତ୍ର-ଧାରଣୀ, କ୍ଷୌମ ବସ୍ତ୍ର ସମ୍ବିତା କୃଷ୍ଣା ଶ୍ୱଶ୍ରୂଙ୍କୁ ପ୍ରଣାମ କରି କୃତାଞ୍ଜଳି ପୂର୍ବରେ ଦଣ୍ଡାୟମାନା ହେଲେ । ରୂପ ଓ ସୁଲକ୍ଷଣା ସମ୍ପନ୍ନା, ସୁଶୀଳା, ଶୁଭାଚରଣୀ ପୁତ୍ରବଧୂ ଦ୍ରୌପଦୀଙ୍କୁ କୁନ୍ତୀ ପ୍ରେମରେ ଏହି ଆଶୀର୍ବଚନ କଲେ—ହେ କଲ୍ୟାଣି । ଯେପରି ଇନ୍ଦ୍ରଙ୍କ-ଠାରେ ଶଚୀ, ବହ୍ନିବସୁଙ୍କର ଯେପରି ସ୍ୱାହା, ସୋମଙ୍କଠାରେ ଯେପରି ରୋହିଣୀ, ନଳଙ୍କର ଯେପରି ଦମୟନ୍ତୀ, କୁବେରଙ୍କଠାରେ ଯେପରି ଭଦ୍ରା, ବଶିଷ୍ଠଙ୍କର ଯେପରି ଅରୁନ୍ଧତୀ ଓ ନାରାୟଣଙ୍କଠାରେ ଯେପରି ଲକ୍ଷ୍ମୀ, ସେହିପରି ତୁମ୍ଭେ ଭର୍ତ୍ତାମାନଙ୍କଠାରେ ପ୍ରଣୟିନୀ ହୁଅ । ୩ ।

ହେ ଭଦ୍ରେ । ତୁମ୍ଭେ ଦୀର୍ଘଜୀବୀ-ବୀର-ପୁତ୍ର ପ୍ରସବିନୀ ଓ ବହୁ ସୌଖ୍ୟ ଓ ଗୁଣାନ୍ୱିତା ହୁଅ; ସୁଭଗା, ଭୋଗ ସମ୍ପନ୍ନା, ଯଜ୍ଞପତ୍ନୀ ଓ ପତିବ୍ରତା ହୁଅ । ୭ । ଅତିଥିମାନଙ୍କୁ ଓ ସମାଗତ ସାଧୁ, ବୃଦ୍ଧ, ବାଳକ ଓ ଗୁରୁଜନମାନଙ୍କୁ ଯଥାବିଧାନରେ ପୂଜା କରୁଁ କରୁଁ ତୁମ୍ଭର ଦିନ ଯାପନ ହେଉ । ୮ । ଧର୍ମବତ୍ସଳା ହୋଇ ତୁମ୍ଭେ ଏହି କୁରୁଜାଙ୍ଗଳର ପ୍ରଧାନ ରାଷ୍ଟ୍ର ଓ ନଗରରେ ନୃପତି ଧର୍ମରାଜଙ୍କ ସହ ଅଭିଷିକ୍ତ ହୁଅ । ୯ । ସମସ୍ତ ଅବନୀମଣ୍ଡଳ ତୁମ୍ଭର ମହାବଳ ପତିମାନଙ୍କ ପରାକ୍ରମରେ ନିର୍ଜ୍ଜିତ ହୋଇ ଅଶ୍ୱମେଧ ମହାଯଜ୍ଞରେ ତୁମ୍ଭ କର୍ତ୍ତୃକ ବ୍ରାହ୍ମଣସାତ୍ ହେଉ । ୧୦ । ହେ ଗୁଣବତି । ପୃଥିବୀ ମଧ୍ୟରେ ଯେତେ ଗୁଣବନ୍ତ ରତ୍ନ ଅଛି ତାହା ସବୁ ତୁମ୍ଭେ ପ୍ରାପ୍ତହୋଇ ସୁଖରେ ଶତ ସମ୍ବତ୍ସର ଅତିବାହନ କର । ୧୧ । ଆମ୍ଭେ ଯେପରି ତୁମ୍ଭଙ୍କୁ ଅଭିନନ୍ଦନ କରୁଅଛୁଁ ତୁମ୍ଭେ ମଧ୍ୟ ସେହିପରି ପୁତ୍ରଜାତ କରି ସେମାନଙ୍କର କ୍ଷୌମ ସମ୍ବୀତା ବଧୂମାନଙ୍କୁ ଅଭିନନ୍ଦନ କର । ୧୨ ।

ବୈଶମ୍ପାୟନ ବୋଇଲେ—ଅମେୟାତ୍ମା ଭଗବାନ୍ ହରି, ମଧୁସୂଦନ, ମାଧବ, କୃଷ୍ଣ, ପାଣ୍ଡବମାନଙ୍କୁ ଦାର ପରିଗ୍ରହ କରିବାରୁ

ଦେଖି ସେମାନଙ୍କ ଠାକୁ ଅତି ଆନନ୍ଦ ମନରେ ମୁକ୍ତା, ବୈଦୁର୍ଯ୍ୟ ଓ ହେମମୟ ଆଭରଣ, ମହାମୂଲ୍ୟ ନାନା ଦେଶଜାତ ବସନ, ସ୍ପର୍ଶସୁଖ ପ୍ରଦ କମ୍ବଳ, ଶୁଭ ଲକ୍ଷଣ ଯୁକ୍ତ ରତ୍ନମାନ, ବିବିଧପ୍ରକାର ଶଯ୍ୟା ଓ ମହତ୍ ଯାନମାନ, ବୈଦୁର୍ଯ୍ୟ ଓ ହୀରକ ମଣ୍ଡିତ ବିବିଧପ୍ରକାର ଭାଜନମାନ, ରୂପଯୌବନ ଓ ଦାକ୍ଷିଣ୍ୟ ଯୁକ୍ତ ଅଥଚ ସୁନ୍ଦରରୂପେ ଅଳଙ୍କୃତ ସହସ୍ର ସହସ୍ର ଦୂତମାନ; ଭଦ୍ର ଓ ବିନୀତ ବହୁ ସଂଖ୍ୟକ ଗଜମାନ, ଅଳଙ୍କୃତ ଅତି ଉତ୍କୃଷ୍ଟ ଅଶ୍ୱମାନ ଓ କୋଟି କୋଟି ଜାମ୍ବୁନଦ ସୁବର୍ଣ୍ଣମୁଦ୍ରା ପ୍ରେରଣ କଲେ । ୧୮ । ଧର୍ମରାଜ ଯୁଧିଷ୍ଠିର ପରମ ସନ୍ତୋଷରେ ଓ ଗୋବିନ୍ଦଙ୍କର ପ୍ରିୟକାମନା ପୂରଣ କରିବା ଅଭିଳାଷରେ ସେହି ସମସ୍ତ ଖାଥୀକୃତ ପ୍ରେରିତ ଦ୍ରବ୍ୟକୁ ପରିଗ୍ରହ କଲେ । ୧୯ ।

—o—

## ଅଧ୍ୟାୟ—୨୦୦

ବୈଶମ୍ପାୟନ କହିଲେ—ଅନନ୍ତର ରାଜାମାନେ ନିଜ ନିଜ ଚର ଦ୍ୱାରା ଅବଗତ ହେଲେ ଯେ ଶୁଭଲକ୍ଷଣା ଦ୍ରୌପଦୀ ପାଣ୍ଡବମାନଙ୍କୁ ପତିରୂପରେ ପ୍ରାପ୍ତ ହେଲେ ଓ ଯେଉଁ ମହାତ୍ମା ଧନୁଧେନ ଲକ୍ଷ ବିଦ୍ଧ କଲେ ସେ ବିଜୟୀବର ମହା-ବାଣ ଧନୁର୍ଦ୍ଧର ଅର୍ଜ୍ଜୁନ ଓ ଯେଉଁ ବ୍ୟକ୍ତି ବଳଶାଳୀ ମଦ୍ରରାଜ ଶଲ୍ୟଙ୍କୁ ଉତ୍କ୍ଷିପ୍ତ କରି ଭୂତଳରେ ପାତିତ କରିଥିଲେ, ଯେ କ୍ରୁଦ୍ଧ ହୋଇ ରଣ ସ୍ଥଳରେ ବୃକ୍ଷକୁ କରରେ ଧେନ ସମସ୍ତଙ୍କୁ ବିତ୍ରସ୍ତ କରିଥିଲେ, ଯେଉଁ ମହାତ୍ମାଙ୍କର ମନୋମଧ୍ୟରେ କିଛିମାତ୍ର ସମ୍ଭ୍ରମ ହୋଇ ନଥିଲା ଓ ଯାହାଙ୍କୁ ସ୍ପର୍ଶ କରିବାକୁ ସୁଦ୍ଧା ଲୋକଙ୍କ ମନରେ ଭୟ ଜାତ ହୋଇଥିଲା, ସେହି ଶତ୍ରୁ ସେନା ସଂହାରକାରୀଙ୍କ ନାମ ଭୀମସେନ । ୪ ।

ହେ ରାଜନ୍ ! ପାଣ୍ଡବମାନେ ମାତାଙ୍କ ସହ ଜତୁଗୃହରେ ଦଗ୍ଧ ହେବାର ନରପତି ସବୁ ପୂର୍ବେ ଶ୍ରବଣ କରିଥିଲେ, ଏବେ ପାଣ୍ଡବମାନଙ୍କୁ ପ୍ରଶାନ୍ତ ବେଶଧାରୀ ହେବାର ଶ୍ରବଣ କରି ବିସ୍ମୟାବିଷ୍ଟ ହେଲେ ଓ ସେମାନେ ବିବେଚନା କଲେ ଯେ, ପାଣ୍ଡବମାନେ ଯେପରି ପୁନର୍ଜନ୍ମ ଗ୍ରହଣ କରି ଆସିଅଛନ୍ତି । ୬ । ନରାଧିପମାନେ ପୁରୋଚନ-କୃତ ନୃଶଂସ

କର୍ମକୁ ସ୍ମରଣ କରି ଭୀଷ୍ମ ଓ କୁରୁରାଜ ଧୃତରାଷ୍ଟ୍ରଙ୍କୁ ଧିକ୍କାର କଲେ । ୭ । ସ୍ୱୟମ୍ବର କାର୍ଯ୍ୟ ପରିସମାପ୍ତ ହୁଅନ୍ତେ ଦ୍ରୌପଦୀ ପାଣ୍ଡବମାନଙ୍କୁ ବରଣ କରିଥିବାର ଶୁଣି ରାଜାମାନେ ସ୍ୱ ସ୍ୱ ରାଜଧାନୀକୁ ପ୍ରସ୍ଥାନ କଲେ । ୮ ।

ରାଜା ଦୁର୍ଯ୍ୟୋଧନ ଶୁଣିଲେ ଯେ ଦ୍ରୌପଦୀ ଅର୍ଜ୍ଜୁନଙ୍କୁ ବରଣ କରି ଅଛନ୍ତି । ତହୁଁ ସେ ଅଶ୍ୱତ୍ଥାମା, ଶକୁନି, କର୍ଣ୍ଣ, କୃପ ଓ ଭ୍ରାତାଗଣଙ୍କ ସହିତ ବିମର୍ଷଭାବରେ ପ୍ରତିନିବୃତ୍ତ ହେଲେ; ଦୁଃଶାସନ ଲଜ୍ଜିତ ହୋଇ ମନ୍ଦ ମନ୍ଦ ସ୍ୱରରେ ଦୁର୍ଯ୍ୟୋଧନଙ୍କୁ କହିଲେ । "ହେ ରାଜନ୍ । ଧନଞ୍ଜୟ ଯେବେ ବ୍ରାହ୍ମଣବେଶୀ ହୋଇ ନଥାନ୍ତେ ତେବେ ସେ ଦ୍ରୌପଦୀଙ୍କୁ ଲାଭ କରି ପାରି ନଥାନ୍ତେ; ଧନଞ୍ଜୟ ବୋଲି ତାହାଙ୍କୁ କେହି ଚିହ୍ନିପାରିଲେ ନାହିଁ, ଏହି ହେତୁ ସେ ଦ୍ରୌପଦୀଙ୍କୁ ନେଇଗଲେ । ପୁରୁଷାର୍ଥ ବୃଥା, ଦୈବ ସବୁଠାରୁ ବଳବାନ୍ ଅଟେ । ହେ ତାତ । ଆମ୍ଭେ ଜାଣିଲୁଁ ଯେ ପୁରୁଷକାର ଅନର୍ଥକ, ପାଣ୍ଡବଙ୍କୁ ବିନାଶ କରିବା ନିମିତ୍ତ ଏତେ ଯତ୍ନ କଲେହେଁ, ସେମାନେ ଜୀବିତ ଅଛନ୍ତି" । ୧୨ ।

ଏହିରୂପେ ସେମାନେ ପରସ୍ପରକୁ ସମ୍ଭାଷଣ କରି ଓ ପୁରୋଚନଙ୍କୁ ନିନ୍ଦା କରି ଦୀନ ଓ ବିଗତଚେତା ହୋଇ ହାସ୍ତିନ ପୁରକୁ ପ୍ରବେଶ କଲେ । ମହାତେଜସ୍ୱୀ ପାଣ୍ଡବମାନଙ୍କୁ ଅଗ୍ନିଦାହରୁ ମୁକ୍ତ ହେବାର ଓ ଦ୍ରୁପଦଙ୍କ ସହିତ ସଂଯୁକ୍ତ ହେବାର ଦେଖି ବିଗତସଂକଳ୍ପ ଦୁର୍ଯ୍ୟୋଧନାଦି ଅତିଶୟ ତ୍ରସ୍ତ ହେଲେ; ପରନ୍ତୁ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଓ ସର୍ବପ୍ରକାର ଯୁଦ୍ଧବିଶାରଦ ଦ୍ରୁପଦଙ୍କର ଅନ୍ୟାନ୍ୟ ପୁତ୍ରମାନଙ୍କୁ ସ୍ମରଣ କରି ଭୀତ, ଉଦ୍‌ବିଗ୍ନ ଓ ଭଗ୍ନମନୋରଥ ହେଲେ । ୧୫ ।

ହେ ରାଜନ୍ । ପାଣ୍ଡବମାନେ ଦ୍ରୌପଦୀଙ୍କୁ ବରଣ କରିବାର ଓ ଧୃତରାଷ୍ଟ୍ରଙ୍କର ପୁତ୍ରମାନେ ଲଜ୍ଜିତ ଓ ଭଗ୍ନଦର୍ପ ହୋଇ ପ୍ରତିନିବୃତ୍ତ ହେବାର ଶ୍ରବଣ କରି ବିଦୁର ପ୍ରୀତ ମନରେ ଧୃତରାଷ୍ଟ୍ରଙ୍କୁ କହିଲେ, "ଆମ୍ଭମାନଙ୍କର ସୌଭାଗ୍ୟକ୍ରମେ କୌରବମାନେ ବର୍ଦ୍ଧିତ ହେଉଅଛନ୍ତି" ହେ ଭାରତ । ନୃପତି ବିଚିତ୍ରବୀର୍ଯ୍ୟ ନନ୍ଦନ ବିଦୁରଙ୍କର ସେହି ବଚନ ଶ୍ରବଣ କରି, ପରମ ପ୍ରୀତ ହୋଇ "କି ସୌଭାଗ୍ୟ, କି ସୌଭାଗ୍ୟ" ବୋଲି କହିଲେ । ୧୭ । ପ୍ରଜ୍ଞାଚକ୍ଷୁ ନରେଶ୍ୱର ଧୃତରାଷ୍ଟ୍ର ବିଦୁରଙ୍କର ଉକ୍ତିର ଅଭିପ୍ରାୟ ଜ୍ଞାତ ହୋଇ ନ ପାରି ମନେକଲେ ଯେ ତାହାଙ୍କର

ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନଙ୍କୁ ଦ୍ରୁପଦରାଜ-କନ୍ୟା ବରଣ କରିଅଛନ୍ତି । ତହୁଁ ସେ ଦ୍ରୌପଦୀଙ୍କ ନିମିତ୍ତ ବହୁ ଅଳଙ୍କାର ଓ କୃଷ୍ଣାଙ୍କୁ ଆଣିବା କାରଣ ଦୁର୍ଯ୍ୟୋଧନଙ୍କ ପ୍ରତି ଆଜ୍ଞା ଦେଲେ ।୨୦। ପଶ୍ଚାତ୍ ବିଦୁର ବିଶେଷ କରି କହିଲେ ଯେ, ପାଣ୍ଡବମାନେ ସମସ୍ତେ କୁଶଳରେ ଅଛନ୍ତି; ସେହି ବୀର ପୁରୁଷମାନଙ୍କୁ ଦ୍ରୌପଦୀ ବରଣ କରିଅଛନ୍ତି ଓ ରାଜା ଦ୍ରୁପଦ ସେମାନଙ୍କର ଅଶେଷ ସମ୍ମାନନା କରିଅଛନ୍ତି; ସେହି ସ୍ୱୟମ୍ବରରେ ପାଣ୍ଡବମାନଙ୍କର ସ୍ୱଜନ ବନ୍ଧୁ-ବାନ୍ଧବ ଓ ଅନ୍ୟାନ୍ୟ ବଳ ମନ୍ୱିତ ଅନେକ ମହାତ୍ମାମାନେ ତାହାଙ୍କ ସହିତ ମିଳିତ ହୋଇ ଅଛନ୍ତି ।୨୨।

ଧୃତରାଷ୍ଟ୍ର ବୋଇଲେ—ହେ କ୍ଷତ୍ତଃ । ପାଣ୍ଡବମାନେ ଯେପରି ପାଣ୍ଡୁଙ୍କର ସ୍ନେହଭାଜନ, ଆମ୍ଭର ମଧ୍ୟ ତଦପେକ୍ଷା ଅଧିକ ସ୍ନେହାସ୍ପଦ, ଶୁଣ, ସେହି ବୀରମାନେ କୁଶଳରେ ଥାଇ ମିତ୍ରଗଣଙ୍କ ଦ୍ୱାରା ସମବେତ ହୋଇଅଛନ୍ତି ଓ ସେମାନଙ୍କର ସମ୍ବନ୍ଧମାନେ ଓ ଅପରାପର ମହାବଳଶାଳୀ ରାଜବୃନ୍ଦ ଯେ ସେମାନଙ୍କ ସହ ମିଳିତ ହୋଇଅଛନ୍ତି ଏଥିରେ ଆମ୍ଭର ଅତିଶୟ ପ୍ରୀତ ହେଉଅଛୁ । ବାନ୍ଧବସହ ଦ୍ରୁପଦଙ୍କୁ ମିତ୍ର ସ୍ୱରୂପ ପ୍ରାପ୍ତ ହୋଇ କେଉଁ ଗତ-ଶ୍ରୀ ପାର୍ଥିବ କୁଶଳୀ ହେବାକୁ ଇଚ୍ଛା ନ କରିବେ ? ।୨୫।

ବୈଶମ୍ପାୟନ ବୋଇଲେ—ଧୃତରାଷ୍ଟ୍ରଙ୍କର ସେହି ବଚନ ଶ୍ରବଣ କରି ବିଦୁର ପ୍ରତ୍ୟୁତ୍ତର ଦେଲେ—"ହେ ରାଜନ୍ । ଶତସମ୍ବତ୍ସର ପର୍ଯ୍ୟନ୍ତ ଆପଣଙ୍କର ଏହି ପ୍ରକାର ବୁଦ୍ଧି ହୋଇଥାଉ ।" ହେ ରାଜନ୍ । ବିଦୁର ଏହା କହି ସ୍ୱକୀୟ ନିବେଶନକୁ ଗମନ କଲେ ।୨୬। ଅନନ୍ତର ଦୁର୍ଯ୍ୟୋଧନ ଓ ରାଧେୟ କର୍ଣ୍ଣ ଧୃତରାଷ୍ଟ୍ରଙ୍କ ସମୀପବର୍ତ୍ତୀ ହୋଇ କହିଲେ । ବିଦୁରଙ୍କ ସମକ୍ଷରେ ଆମ୍ଭେ ଆପଣଙ୍କ ନିକଟରେ କୌଣସି ଦୋଷ କହିବାକୁ ସମର୍ଥ ହେଲୁନାହିଁ । ବର୍ତ୍ତମାନ ବିବିକ୍ତ ହୋଇଅଛୁ, ଅତଏବ ପ୍ରଶ୍ନ କରୁଅଛୁଁ, ଆପଣଙ୍କର ଏ କି କରିବାର ଇଚ୍ଛା ହୋଇଅଛି ? ।୨୮। ହେ ତାତଃ । ଆପଣ ଶତ୍ରୁର ବୁଦ୍ଧିକୁ ଆପଣାର ବୁଦ୍ଧି ବୋଲି ବିବେଚନା କରୁଅଛନ୍ତି; ହେ ଦ୍ୱିପଦବର । ତାହା ନ ହୋଇ ଥିଲେ ଆପଣ କି କାରଣ ବିପକ୍ଷର ପ୍ରଶଂସା କରିଥାନ୍ତେ ? ।୨୯। ହେ ଅନଘ । ଯେଉଁ ସ୍ଥଳରେ ଯେପରି କର୍ମ୍ମ କରିବା କର୍ତ୍ତବ୍ୟ, ଆପଣ ତାହାର ବିପରୀତ

କରୁଅଛନ୍ତି; ହେ ତାତ ! ଏବେ ଯହିଁରେ ସେମାନଙ୍କର ବଳ ହ୍ରାସହୁଏ, ତାହି କରିବା କର୍ତ୍ତବ୍ୟ । ୩୦ । ସମ୍ପ୍ରତି ଯେ ରୂପ ସମୟ ଉପସ୍ଥିତ, ଏତେବେଳେ ଏପରି ମନ୍ତ୍ରଣା କରିବା ବିଧେୟ, ଯହିଁରେ ସେମାନେ ପୁନ ବଳ ଓ ବାନ୍ଧବ ସହିତ ଆମ୍ଭମାନଙ୍କୁ ଗ୍ରାସ ନ କରନ୍ତି । ୩୧ ।

---

## ଅଧ୍ୟାୟ—୨୦୧

ଧୃତରାଷ୍ଟ୍ର କହିଲେ—ତୁମ୍ଭମାନଙ୍କର ଯେପରି ଅଭିଳାଷ, ଆମ୍ଭେ ମଧ୍ୟ ତଦ୍ରୂପ କରିବାକୁ ଇଚ୍ଛା କରୁଅଛୁଁ; କିନ୍ତୁ ବିଦୁରଙ୍କ ନିକଟରେ ଆମ୍ଭର ଅଭିଳାଷ ପ୍ରକାଶ କରିବାକୁ ଇଚ୍ଛା କରୁନାହୁଁ । ୧ । ଇଙ୍ଗିତ କି ଆକାର ଦ୍ୱାରା ସୁଦ୍ଧା ବିଦୁର ଆମ୍ଭର ଅଭିପ୍ରାୟ ବୋଧଗମ୍ୟ କରି ନ ପାରିବେ ବୋଲି ଆମ୍ଭେ ତାହାଙ୍କ ନିକଟରେ ପାଣ୍ଡବମାନଙ୍କର ଗୁଣ କୀର୍ତ୍ତନ କରୁଁ । ହେ ସୁଯୋଧନ ! ତୁମ୍ଭେ ଇଦାନୀଂ କି କର୍ତ୍ତବ୍ୟ ସ୍ଥିର କରିଅଛ ? ହେ ରାଧେୟ ! ତୁମ୍ଭେ କି ଇଚ୍ଛା କରୁଅଛ ? ଏବେ ସମୟ ଉପସ୍ଥିତ ହୋଇଅଛି, ଆମ୍ଭଙ୍କୁ ଶୀଘ୍ର କହ । ୩ ।

ସୁଯୋଧନ ବୋଇଲେ—ଏବେ ଆମ୍ଭମାନଙ୍କ ପକ୍ଷରୁ ବିଶ୍ୱସ୍ତ ଓ କାର୍ଯ୍ୟଦକ୍ଷ ବ୍ରାହ୍ମଣମାନେ ଯାଇ କୁନ୍ତୀପୁତ୍ର ଓ ମାଦ୍ରୀପୁତ୍ରମାନଙ୍କ ମଧ୍ୟରେ ମନୋଭଙ୍ଗ ଉପସ୍ଥିତ କରନ୍ତୁ । ଅଥବା ରାଜା ଦ୍ରୁପଦଙ୍କୁ, ତାହାଙ୍କର ପୁତ୍ରମାନଙ୍କୁ ଓ ସମସ୍ତ ଅମାତ୍ୟବର୍ଗଙ୍କୁ ବିପୁଳ ଅର୍ଥ ସଞ୍ଚୟ ପ୍ରଦାନ ଦ୍ୱାରା ପ୍ରଲୋଭିତ କରନ୍ତୁ, ଯହିଁରେ ସେମାନେ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କୁ ପରିତ୍ୟାଗ କରିବେ । ଅଥବା ଆମ୍ଭର ପ୍ରେରିତ ଲୋକମାନେ ପ୍ରତ୍ୟେକରେ ପୃଥକ୍ ପୃଥକ୍ ରୂପେ ପାଣ୍ଡବଙ୍କର ଏହି ସ୍ଥାନରେ ବାସର ଦୋଷ ଦେଖାଇ ସେହି ଶ୍ୱଶୁରାଳୟରେ ରହିବାର ରୁଚି ଜନ୍ମାଇ ଦେଉନ୍ତୁ । ୭ । ଅଥବା ଉପାୟ-ନିପୁଣ କେତେକ କୁଶଳୀ ବ୍ୟକ୍ତି ଯାଇ ପାଣ୍ଡବମାନଙ୍କ ମଧ୍ୟରେ ଭେଦ ଜନ୍ମାଇ ଦେଉନ୍ତୁ, ଯହିଁରେ ସେମାନଙ୍କର ପରସ୍ପର ପ୍ରତି ଅନୁରାଗର ହ୍ରାସ ହୋଇଯିବ । ୮ । ଅଥବା ଯହିଁରେ କୃଷ୍ଣାଙ୍କର ପତିଙ୍କ ପ୍ରତି ଅନୁରାଗ ନ ରହେ ଏ ନିମିତ୍ତ ତାହାଙ୍କୁ ଉତ୍ଥାପିତ କରନ୍ତୁ; ତାହାଙ୍କର ବହୁପତି ହୋଇଥିବାରୁ ସେ କାର୍ଯ୍ୟ ସହଜରେ ହେବ; ଅଥବା ଯହିଁରେ ପାଣ୍ଡବମାନଙ୍କର କୃଷ୍ଣାଙ୍କ ପ୍ରତି ସ୍ନେହ ନ ରହେ ତାହା କରନ୍ତୁ । ୯ । କିମ୍ବା ଉପାୟ କୁଶଳ ନରମାନେ ଯାଇ ଯହିଁରେ

ଭୀମସେନଙ୍କର ମୃତ୍ୟୁ ହୁଏ ତାହା ସମ୍ପାଦନ କରନ୍ତୁ, ସେମାନଙ୍କ ମଧ୍ୟରେ ଭୀମସେନ ସମସ୍ତଙ୍କ ଅପେକ୍ଷା ବଳାଧିକ ଅଟନ୍ତି । ୧୦ । ତାହାଙ୍କୁ ଆଶ୍ରୟ କରି ପୂର୍ବେ ଯୁଧିଷ୍ଠିର ଆମ୍ଭମାନଙ୍କୁ ଅବଜ୍ଞା କରୁଥିଲେ; ଭୀମସେନ ସମସ୍ତଙ୍କ ମଧ୍ୟରେ ତୀକ୍ଷ୍ଣ ଓ ଶୂର; ପାଣ୍ଡବମାନଙ୍କର ସେ ଅବଲମ୍ବନ ଅଟନ୍ତି । ୧୧ । ସେହି ଭୀମ ନିହତ ହେଲେ ପାଣ୍ଡବମାନେ ତେଜୋହୀନ ଓ ଭଗ୍ନୋତ୍ସାହ ହୋଇ ପୁନର୍ବାର ରାଜ୍ୟପ୍ରାପ୍ତି ନିମିତ୍ତ ଯତ୍ନ କରିବେ ନାହିଁ । ୧୨ ।

ବୃକୋଦର ପୃଷ୍ଠ ପୋଷକ ହେଲେ ଅର୍ଜୁନ ଯୁଦ୍ଧରେ ଅଜେୟ ଅଟନ୍ତି; ତାହାଙ୍କ ବ୍ୟତିରେକେ ଫାଲ୍‌ଗୁନ, ରାଧେୟଙ୍କର ଏକ ଚତୁର୍ଥାଂଶ ସୁଦ୍ଧା ହେବେ ନାହିଁ । ୧୩ । ଭୀମସେନଙ୍କ ବ୍ୟତିରେକେ ପାଣ୍ଡବମାନେ ଆପଣାକୁ ଦୁର୍ବଳ ମନେ କରି ଓ ଆମ୍ଭମାନଙ୍କର ଅଧିକ ବଳ ଦେଖି ରାଜ୍ୟ ନିମିତ୍ତ ଆମ୍ଭମାନଙ୍କ ସହିତ ଯୁଦ୍ଧ ପାଇଁ ଯତ୍ନଶୀଳ ହେବେ ନାହିଁ । ୧୪ । ପରନ୍ତୁ ଯଦ୍ୟପି ସେମାନେ ଏଠାକୁ ଆସି ଆମ୍ଭମାନଙ୍କର ଅଧୀନ ଓ ଆଜ୍ଞାନୁବର୍ତ୍ତୀ ହୁଅନ୍ତି, ତେବେ ଆମ୍ଭେମାନେ ସେମାନଙ୍କ ପ୍ରତି ନୀତିଶାସ୍ତ୍ରାନୁସାରେ ଦଣ୍ଡବିଧାନ କରିବାକୁ ପ୍ରବୃତ୍ତ ହେବୁଁ । ୧୫ । ଅଥବା ସୁନ୍ଦରୀ ନାରୀମାନଙ୍କଦ୍ୱାରା ସେମାନଙ୍କୁ ଏକ ଏକ କରି ପ୍ରଲୋଭିତ କରାଯାଉ, ଯହିଁରେ କୃଷ୍ଣା ସେମାନଙ୍କ ପ୍ରତି ବିରକ୍ତ ହେବେ । ୧୬ । ଅଥବା ହେ ରାଧେୟ ! ସେମାନଙ୍କ ଆଗମନ ନିମିତ୍ତ ଦୂତ ପ୍ରେରିତ ହେଉନ୍ତୁ, ସେମାନେ ଏକତ୍ର ହୋଇ ଆସିଲେ, ବିଶ୍ୱସ୍ତ ସୂତ୍ରରେ ପୂର୍ବୋକ୍ତ କୌଣସି ଉପାୟ ଦ୍ୱାରା ସେମାନଙ୍କୁ ବିନଷ୍ଟ କରାଯିବ । ୧୭ ।

ହେ ତାତ ! ଏହି ସବୁ ଉପାୟ ମଧ୍ୟରେ ଆପଣଙ୍କ ମତରେ ଯେଉଁଟି ନିର୍ଦ୍ଦୋଷ ବୋଲି ବୋଧହୁଏ, ତାହାର ଅନୁଷ୍ଠାନ କରନ୍ତୁ; କାଳାତିପାତ ହୋଇଅଛି, ଆଉ ବିଳମ୍ବ କରିବା କର୍ତ୍ତବ୍ୟ ନୁହଇ । ୧୮ । ଯେତେଦିନ ପର୍ଯ୍ୟନ୍ତ ପାର୍ଥିବ-ଶ୍ରେଷ୍ଠ ଦ୍ରୁପଦ ରାଜାଙ୍କ ଠାରେ ସେମାନଙ୍କର ବିଶ୍ୱାସ ଜନ୍ମିନାହିଁ, ତାବତ୍‌କାଳ ସେମାନଙ୍କୁ ଉପାୟଦ୍ୱାରା ପାରିବା; କିନ୍ତୁ ବିଶ୍ୱାସ ଜନ୍ମିଲେ ଆଉ ସେମାନଙ୍କୁ ପାରିବା ନାହିଁ । ୧୯ । ହେ ତାତ ! ସେମାନଙ୍କ ନିଗ୍ରହ ନିମିତ୍ତ ଆମ୍ଭେ ଏହି ଉପାୟ ସ୍ଥିର କରିଅଛୁଁ, ଭଲ କି ମନ୍ଦ ବିବେଚନା କରନ୍ତୁ; ହେ କର୍ଣ୍ଣ ! ତୁମ୍ଭର ମଧ୍ୟ ଏ ସମ୍ପର୍କରେ କି ମତ ? । ୨୦ ।

---

# ଅଧ୍ୟାୟ—୨୦୨

କର୍ଣ୍ଣ କହିଲେ—ହେ ଦୁର୍ଯୋଧନ ! ତୁମ୍ଭେ ଯାହା ବିବେଚନା କରୁଅଛ, ତାହା ସମୀଚୀନ ବୋଲି ବୋଧ ହେଉନାହିଁ । ହେ କୁରୁବର୍ଦ୍ଧନ ! ଉପାୟ ଦ୍ୱାରା ସେମାନଙ୍କୁ ପାରିବା ନାହିଁ । ୧ । ହେ ବୀର ! ତୁମ୍ଭେ ପୂର୍ବେ ସୂକ୍ଷ୍ମ ଉପାୟ ଦ୍ୱାରା ସେମାନଙ୍କୁ ନିଗ୍ରହ କରିବାର ଯତ୍ନ କରିଥିଲ; କିନ୍ତୁ ପାରିଲ ନାହିଁ । ୨ । ହେ ପାର୍ଥିବ ! ଯେତେବେଳେ ସେମାନେ ତୁମ୍ଭ ନିକଟରେ ଥିଲେ, ଶିଶୁ ଓ ଅସହାୟ ଅବସ୍ଥାରେ ସେମାନଙ୍କର ସପକ୍ଷ କେହି ନ ଥିଲେ, ତେତେବେଳେ ତୁମ୍ଭେ ସେମାନଙ୍କୁ ପାରିଲ ନାହିଁ, ଏବେ ସେମାନେ ବିଦେଶରେ ସ୍ଥିତ ହୋଇଅଛନ୍ତି, ବର୍ଦ୍ଧିତ ହେଲେଣି, ସେମାନଙ୍କର ସହାୟକାରୀ ମାନେ ଜାତ ହୋଇ ଅଛନ୍ତି; କୌନ୍ତେୟମାନେ ଯେ ଏ ଅବସ୍ଥାରେ ଉପାୟ ସାଧ୍ୟ ହେବେ, ତାହା ଆମ୍ଭର ମତ-ସିଦ୍ଧ ନୁହଇ । ୪

ଇଦାନୀ ସେମାନେ ଦୈବ-ଶକ୍ତି-ସମ୍ପନ୍ନ ହୋଇ, ପିତୃ-ପୈତାମହ ପଦକୁ ପ୍ରାପ୍ତ ହେବାର ଅଭିଳାଷୀ ହେଲେଣି; ପ୍ରଲୋଭନ ଦ୍ୱାରା ସେମାନଙ୍କୁ ବ୍ୟସନଯୁକ୍ତ କରି ହେବ ନାହିଁ । ୫ । ପୁନଶ୍ଚ ଯେଉଁମାନେ ଗୋଟିଏ ପତ୍ନୀଠାରେ ରତ ହୋଇ ସୁଦ୍ଧା, ପରସ୍ପର ବିଭିନ୍ନ ହେଉନାହାନ୍ତି, ସେମାନଙ୍କ ମଧ୍ୟରେ କିପରି ଭେଦ ଜାତ କରି ପାରିବା ? । ୬ । କୃଷ୍ଣାଙ୍କୁ ମଧ୍ୟ ସେମାନଙ୍କ ପ୍ରତି ଅନୁରାଗବିହୀନା କରି ହେବ ନାହିଁ, ଯେତେବେଳେ ସେମାନେ ଦୀନଦଶାପନ୍ନ ତେତେବେଳେ କୃଷ୍ଣା ସେମାନଙ୍କୁ ବରଣ କରିଥିଲେ, ଏବେ ସେମାନେ ଉତ୍ତମ ବେଶ-ଭୂଷାଧାରୀ ହୋଇଅଛନ୍ତି; ତାହାଙ୍କ ପ୍ରତି କି କୃଷ୍ଣାଙ୍କର ବିରକ୍ତି ଜାତ ହେବ ? । ୭ । ବହୁ ଭର୍ତ୍ତୃକା ସ୍ତ୍ରୀର ଅଭୀପ୍‌ସିତ ଗୁଣ, କୃଷ୍ଣା ତାହା ପ୍ରାପ୍ତ ହୋଇଅଛନ୍ତି, ତାହାଙ୍କୁ କି ଭିନ୍ନ କରିହେବ ? । ୮ ।

ପାଞ୍ଚାଳ ଦେଶାଧିପତି, ଆର୍ଯ୍ୟବ୍ରତାବଲମ୍ବୀ ଓ ମହାତ୍ମା, ସେ ଧନ ପ୍ରିୟ ନୁହନ୍ତି; ରାଜ୍ୟଦାନ କଲେ ସୁଦ୍ଧା ସେ କୁନ୍ତୀପୁତ୍ରମାନଙ୍କୁ ତ୍ୟାଗ କରିବେ ନାହିଁ । ତଦ୍ରୂପ ତାହାଙ୍କର ପୁତ୍ର ଧୃଷ୍ଟଦ୍ୟୁମ୍ନ ମଧ୍ୟ ଗୁଣବାନ୍ ଓ ପାଣ୍ଡବମାନଙ୍କ ଠାରେ ଅନୁରକ୍ତ, ଅତଏବ ଆମ୍ଭ ମତରେ ସେମାନେ କଦାପି ଉପାୟ ସାଧ୍ୟ ନୁହନ୍ତି । ୧୦ । ହେ ପୁରୁଷ ଶ୍ରେଷ୍ଠ ନରପତେ !

ସମ୍ପ୍ରତି ଅସ୍ମମାନଙ୍କର ଏ ରୂପ କରିବା କର୍ତ୍ତବ୍ୟ ଯେ ଯାବତ୍‌କାଳ ପାଣ୍ଡବମାନେ ଛିନ୍ନମୂଳ ନ ହୁଅନ୍ତି, ତାବତ୍‌କାଳ ସେମାନେ ପ୍ରହରଣୀୟ ହେବେ; ହେ ତାତ ! ଅସ୍ମର ଏହି ମତରେ ସମ୍ମତ ହେଉନ୍ତୁ । ଯାବତ୍‌କାଳ ଅସ୍ମର ପକ୍ଷ ବଳବାନ୍ ଓ ଦ୍ରୁପଦଙ୍କର ପକ୍ଷ ଦୁର୍ବଳ ଅଛି, ଏତନ୍ମଧ୍ୟରେ ଯୁଦ୍ଧ ଆରମ୍ଭ କରି ପାଣ୍ଡବଙ୍କୁ ସଂହାର କର ଏଥିରେ କିଛି ବିଚାର କରନା ।୧୨। ହେ ପାର୍ଥିବ ! ସେମାନଙ୍କର ମିତ୍ର, ବନ୍ଧୁ ଓ ପ୍ରଭୃତି ବାହନମାନେ ଏକତ୍ର ନ ହେଉଣୁ ବିକ୍ରମ ପ୍ରକାଶ କର । ୧୩ । ହେ ପାର୍ଥିବ ! ପାଞ୍ଚାଳ-ଦେଶାଧିପତି, ଆପଣାର ମହାବୀର୍ଯ୍ୟଶାଳୀ ପୁତ୍ରଙ୍କୁ ନେଇ ଉଦ୍ୟମରେ ମନୋଯୋଗୀ ନୋହୁଁ, ତୁମ୍ଭେ ପରାକ୍ରମ ପ୍ରକାଶ କର । ୧୪ । ଯାଦବ ବାହିନୀ ନେଇ କୃଷ୍ଣ ପାଣ୍ଡବ ମାନଙ୍କୁ ରାଜ୍ୟାଧିକାରୀ କରିବା ନିମିତ୍ତ ପାଞ୍ଚାଳ ଦେଶ ନରପତିଙ୍କ ସଦନକୁ ଆଗମନ କରିବା ପୂର୍ବରୁ ତୁମ୍ଭେ ବିକ୍ରମ ପ୍ରକାଶ କର । ୧୫ । ପାଣ୍ଡବ ମାନଙ୍କର ଉପକାରାର୍ଥ କୃଷ୍ଣ ଆପଣାର ସମସ୍ତ ଧନ, ଭୋଗ ବା ରାଜ୍ୟ ତ୍ୟାଗ କରିବାକୁ କୁଣ୍ଠିତ ହେବେ ନାହିଁ । ୧୬ ।

ହେ ନରପାଳ ! ମହାତ୍ମା ଭରତ ! ବିକ୍ରମ ଦ୍ୱାରା ମହୀମଣ୍ଡଳର ଅଧୀଶ୍ୱର ହୋଇଥିଲେ, ବିକ୍ରମ ଦ୍ୱାରା ପାକଶାସନ ଲୋକତ୍ରୟକୁ ଜୟ କରିଥିଲେ । ୧୭ । କ୍ଷତ୍ରିୟଙ୍କର ବିକ୍ରମ ଏକା ପ୍ରଶଂସନୀୟ; ହେ ପାର୍ଥିବର୍ଷଭ ! ଶୂରମାନଙ୍କର ବିକ୍ରମ ଏକା ସ୍ୱକୀୟ ଧର୍ମ୍ମ ଅଟଇ । ୧୮ । ହେ ରାଜନ୍ ! ତୁମ୍ଭର ଚତୁରଙ୍ଗ ବଳକୁ ଶୀଘ୍ର ନେଇଯାଇ ଦ୍ରୁପଦଙ୍କୁ ପ୍ରମଥିତ କର, ପାଣ୍ଡବମାନଙ୍କୁ ଏଠାକୁ ନେଇ ଆସିବା । ୧୯ । ସାମ, ଦାନ ବା ଭେଦ ଦ୍ୱାରା ପାଣ୍ଡବମାନେ ନିଗୃହୀତ ହେବେ ନାହିଁ, ଅତଏବ ବିକ୍ରମ ଦ୍ୱାରା ସେମାନଙ୍କୁ ହିଂସା କରିବା ଶ୍ରେଷ୍ଠ ବିହିତ କାର୍ଯ୍ୟ ଅଟେ ।୨୦। ବିକ୍ରମ ଦ୍ୱାରା ସେମାନଙ୍କୁ ପରାଜିତ କରି ଏହି ଅଖିଳ ମେଦିନୀକୁ ଭୋଗ କର; ହେ ଜନାଧିପ ! ଏତଦ୍‌ବ୍ୟତୀତ ଅମ୍ଭେ ଅନ୍ୟ କରଣୀୟ ଉପାୟ ଦେଖୁନାହୁଁ । ୨୧ ।

ବୈଶମ୍ପାୟନ ବୋଇଲେ—ପ୍ରତାପବାନ୍ ଧୃତରାଷ୍ଟ୍ର ରାଧେୟଙ୍କର ବଚନ ଶ୍ରବଣ କରି ତାହାଙ୍କୁ ସମ୍ମାନନା ପୂର୍ବକ ଏହି କଥା କହିଲେ· ହେ ସୂତ-ନନ୍ଦନ ! ତୁମ୍ଭେ ମହାପ୍ରାଜ୍ଞ ଓ ବିଚାରବନ୍ତ ଓ ଅସ୍ତ୍ରବିଦ୍ୟା ବିଶାରଦ; ସୁତରାଂ ଈଦୃଶ ବିକ୍ରମ ସମ୍ପନ୍ନ ବାକ୍ୟ ତୁମ୍ଭପକ୍ଷରେ ଉପଯୁକ୍ତ

ଅଟେ । ପରନ୍ତୁ ଭୀଷ୍ମ, ଦ୍ରୋଣ, ବିଦୁର ଓ ତୁମ୍ଭେ ଦୁହେଁ ଏକତ୍ର ହୋଇ ଆଜ ଅଟେ ମନ୍ତ୍ରଣା କର, ଯହିଁରେ କି ଆମ୍ଭମାନଙ୍କର ସୁଖୋଦୟ ହେବ । ୨୪ । ହେ ମହାରାଜ । ତଦନନ୍ତର ମହା ଯଶସ୍ୱୀ ଧୃତରାଷ୍ଟ୍ର ସବୁ ମନ୍ତ୍ରୀମାନଙ୍କୁ ଆଣାଇ ତତ୍‌କାଳରେ ମନ୍ତ୍ରଣା କଲେ । ୨୫ ।

---

## ଅଧ୍ୟାୟ—୨୦୩

ଧୃତରାଷ୍ଟ୍ରଙ୍କ ପ୍ରସ୍ତାବ ଅନୁଯାୟୀ ମନ୍ତ୍ରଣା ପାଇଁ ପୂର୍ବୋକ୍ତ ମତେ ସମସ୍ତେ ମିଳିତ ହେଲେ । ପ୍ରଥମରେ ଭୀଷ୍ମ କହିଲେ—ହେ ଧୃତରାଷ୍ଟ୍ର । ପାଣ୍ଡବ ମାନଙ୍କ ସହିତ ବିଗ୍ରହ କରିବାକୁ ଆମ୍ଭର କଦାପି ରୁଚି ହେଉନାହିଁ; ଆମ୍ଭର ଧୃତରାଷ୍ଟ୍ର ଯେପରି, ପାଣ୍ଡୁ ମଧ୍ୟ ସେହିପରି, ଏଥିରେ ସଂଶୟ ନାହିଁ । ୧ । ଗାନ୍ଧାରୀଙ୍କ ପୁତ୍ରମାନେ ଯେପରି କୁନ୍ତୀଙ୍କ ପୁତ୍ରମାନେ ମଧ୍ୟ ସେହିପରି ସ୍ନେହାସ୍ପଦ; ହେ ଧୃତରାଷ୍ଟ୍ର । ତୁମ୍ଭର ପୁତ୍ରମାନେ ଯେପରି ରକ୍ଷଣୀୟ; ସେମାନେ ସୁଦ୍ଧା ଆମ୍ଭର ସେହିପରି ରକ୍ଷଣୀୟ ଅଟନ୍ତି । ୨ । ହେ ପାର୍ଥିବ । ସେମାନେ ଯାଦୃଶ ଆମ୍ଭର ଆତ୍ମୀୟ, ରାଜା ଦୁର୍ଯ୍ୟୋଧନ ପ୍ରଭୃତି ସମସ୍ତ କୁରୁବର୍ଗମାନେ ମଧ୍ୟ ତଦ୍ରୂପ ଆତ୍ମୀୟ ଅଟନ୍ତି । ୩ । ଏପରି ସ୍ଥଳରେ ସେମାନଙ୍କ ସହିତ ବିଗ୍ରହ କରିବାକୁ ଆମ୍ଭର ଅଭିରୁଚି ନାହିଁ; ହେ ରାଜନ୍ । ସେହି ବୀରମାନଙ୍କ ସହିତ ସନ୍ଧି ସ୍ଥାପନ କରି ସେମାନଙ୍କୁ ଅର୍ଦ୍ଧରାଜ୍ୟ ପ୍ରଦାନ କର; କାରଣ ଏହି ରାଜ୍ୟ ସେହି କୁରୁଶ୍ରେଷ୍ଠ ମାନଙ୍କର ପୈତୃକ ଅଟେ । ୪ ।

ବତ୍ସ ଦୁର୍ଯ୍ୟୋଧନ । ତୁମ୍ଭେ ଯେପରି ତୁମ୍ଭର ପୈତୃକ ବୋଲି ଏହି ରାଜ୍ୟକୁ ଜ୍ଞାନ କରୁଅଛ, ପାଣ୍ଡବମାନେ ମଧ୍ୟ ତଦ୍ରୂପ ଏହି ରାଜ୍ୟକୁ ସେମାନଙ୍କର ପୈତୃକ ରାଜ୍ୟ ବୋଲି ବୋଧ କରୁଅଛନ୍ତି । ୫ । ଯଶସ୍ୱୀ ପାଣ୍ଡବମାନେ ଯେବେ ଏହି ରାଜ୍ୟକୁ ଲାଭ ନ କରନ୍ତି; ତେବେ ତୁମ୍ଭେ ଅଥବା ଭରତ ବଂଶୀୟ ଅନ୍ୟ କେହି କିପରି ଏହି ରାଜ୍ୟକୁ ପ୍ରାପ୍ତ ହେବ ? । ୬ । ହେ ଭରତର୍ଷଭ । ତୁମ୍ଭେ "ଅଧର୍ମ" ଦ୍ୱାରା ରାଜ୍ୟପ୍ରାପ୍ତ ହୋଇଅଛ, "ଯଦି ତୁମ୍ଭେ ବିବେଚନା କର କି ଆମ୍ଭେ ଧର୍ମାନୁସାରେ ରାଜ୍ୟ ଲଭିଅଛୁଁ" ତେବେ ଆମ୍ଭ ବିବେଚନାରେ ଅଗ୍ରେ ପାଣ୍ଡବମାନଙ୍କର ରାଜ୍ୟପ୍ରାପ୍ତ ହେବାର ଉଚିତ । ୭ । ଅତଏବ ପ୍ରୀତିପୂର୍ବକ ସେମାନଙ୍କୁ ଅର୍ଦ୍ଧରାଜ୍ୟ ପ୍ରଦାନ କର । ହେ ପୁରୁଷବ୍ୟାଘ୍ର । ଆମ୍ଭେ ଯାହା କହିଲୁଁ,

ତାହା ତୁମ୍ଭର ଓ ସର୍ବ୍ବଜନ ମାନଙ୍କର ହିତାର୍ଥ ଅଟେ । ୮ । ଏଥିର ଅନ୍ୟଥା କଲେଁ ତୁମ୍ଭମାନଙ୍କର ହିତ ହେବ ନାହିଁ, ନିଶ୍ଚୟ ତୁମ୍ଭର ସମସ୍ତ ଅକୀର୍ତ୍ତି ହେବ । ୯ । କୀର୍ତ୍ତିକୁ ରକ୍ଷା କରିବା ଉଚିତ, କୀର୍ତ୍ତି ପରମ ବଳ ଅଟେ । ନଷ୍ଟକୀର୍ତ୍ତି ମନୁଷ୍ୟମାନଙ୍କର ଜୀବିତ ଅଫଳ ବୋଲି ଶାସ୍ତ୍ରକାର ମାନେ ବୋଲି ଅଛନ୍ତି । ୧୦ । ହେ କୌରବ ! ଯାବତ୍ ପର୍ଯ୍ୟନ୍ତ ମନୁଷ୍ୟର କୀର୍ତ୍ତି ପ୍ରଣଷ୍ଟ ନ ହୁଅଇ, ତାବତ୍ ସେ ଜୀବିତ ଥିବାର ବୋଲାଯାଏ । କୀର୍ତ୍ତି ନଷ୍ଟ ହେଲେଁ ତାହାକୁ ମୃତ ବୋଲାଯାଏ । ୧୧ ।

ହେ ମହାବାହୋ ! କୁରୁକୁଳର ସମୁଚିତ ଧର୍ମ୍ମକୁ ଅନୁଷ୍ଠାନ କର, ତୁମ୍ଭର ଓ ତୁମ୍ଭ ପୂର୍ବ୍ବ ପୁରୁଷ ମାନଙ୍କର ଅନୁରୂପ କାର୍ଯ୍ୟ କର । ୧୨ । ଆମ୍ଭମାନଙ୍କର ସୌଭାଗ୍ୟ କ୍ରମେ ପାଣ୍ଡବମାନେ ଜୀବିତ ରହି ଅଛନ୍ତି, ସୌଭାଗ୍ୟକ୍ରମେ କୁନ୍ତୀ ମଧ୍ୟ ଜୀବିତା ଅଛନ୍ତି, ପାପାତ୍ମା ପୁରୋଚନ ଯେ ପୂର୍ଣ୍ଣ ମନୋରଥ ନ ହୋଇ ବିନଷ୍ଟ ହୋଇଅଛି, ତାହା ଆମ୍ଭର ସୌଭାଗ୍ୟ ବୋଲିବାକୁ ହେବ । ୧୩ । ହେ ଗାନ୍ଧାରୀପୁତ୍ର ! ଯେଉଁ ଅବଧି କୁନ୍ତୀଭୋଜ ସୁତାଙ୍କର ସୁତମାନେ ଦଗ୍‌ଧ ହୋଇଥିବାର ଶୁଣାଗଲା, ତଦବଧି ଅମ୍ଭେ ଲଜ୍ଜିତ ହୋଇ କାହାର ମୁଖକୁ ଚାହିଁବାକୁ ପାରୁନାହୁଁ । ୧୪ । ହେ ପୁରୁଷ ବ୍ୟାଘ୍ର ! କୁନ୍ତୀ ଏତାଦୃଶ ଅବସ୍ଥାପନ୍ନା ହୋଇଥିବାରୁ ଲୋକେ ତୁମ୍ଭଙ୍କୁ ଯେପରି ଦୋଷୀ ଜ୍ଞାନ କରୁଅଛନ୍ତି, ତଦ୍ରୂପ ପୁରୋଚନକୁ ଦୋଷୀ ମନେକରନ୍ତି ନାହିଁ । ୧୫ । ଅତଏବ ହେ ମହାରାଜ ! ପାଣ୍ଡବମାନଙ୍କର ଜୀବିତ ରହିବା ଓ ସେମାନଙ୍କର ପୁନର୍ବ୍ବାର ସାକ୍ଷାତ୍‌ପ୍ରାପ୍ତି ହେବା, ତୁମ୍ଭର କଲ୍‌ମଷନାଶର ହେତୁ ବୋଲି ଜ୍ଞାନ କର । ୧୬ ।

ହେ କୁରୁନନ୍ଦନ ! ସେହି ବୀରବୃନ୍ଦ ଜୀବିତ ଥାଉଁ ଥାଉଁ ସ୍ୱୟଂ ବଜ୍ରଧାରୀ ସୁଦ୍ଧା ତାହାଙ୍କର ପୈତୃକରାଜ୍ୟକୁ ନେଇ ନ ପାରନ୍ତି । ୧୭ । ବିଶେଷରେ ପାଣ୍ଡବମାନେ ସମସ୍ତେ ଧର୍ମ୍ମର ବଶବର୍ତ୍ତୀ ଓ ସମସ୍ତେ ଧର୍ମ୍ମରେ ଅବସ୍ଥିତ ହୋଇଅଛନ୍ତି । ସେମାନେ ସମସ୍ତେ ଏକଚିତ୍ତ, କେବଳ ଅଧର୍ମ୍ମ ଦ୍ୱାରା ସେମାନେ ତୁମ୍ଭସହିତ ତୁଲ୍ୟ ରାଜ୍ୟରୁ ବଞ୍ଚିତ ହୋଇଅଛନ୍ତି । ୧୮ । ଯଦି ତୁମ୍ଭର ଧର୍ମ୍ମ କରିବାର ଇଚ୍ଛା ଥାଏ, ଆମ୍ଭର ପ୍ରିୟ କରିବାକୁ ଯେବେ ମନ ଥାଏ ଯଦି ନିଜର କୁଶଳାଭିଳାଷ ଥାଏ, ତେବେ ପାଣ୍ଡବମାନଙ୍କୁ ରାଜ୍ୟାର୍ଦ୍ଧ ଦାନ କର । ୧୯ ।

———

## ଅଧ୍ୟାୟ—୨୦୪

ଦ୍ରୋଣ ବୋଇଲେ—ହେ ରାଜନ୍ । ଧୃତରାଷ୍ଟ୍ର । ଆମ୍ଭେମାନେ ଶୁଣିଅଛୁଁ ଯେ ମନ୍ତ୍ରୀମାନେ ମନ୍ତ୍ରଣା ନିମିତ୍ତ ଉପନୀତ ହେଲେଁ, ଯାହା ଧର୍ମ୍ମ୍ୟ, ଅର୍ଥକର ଓ ଯଶସ୍କର, ତାହା ସେମାନଙ୍କୁ ଅବଶ୍ୟ କହିବାକୁ ହୁଅଇ । ୧ । ହେ ତାତ । ମହାତ୍ମା ଭୀଷ୍ମଙ୍କର ଯେଉଁ ଅଭିମତ, ଆମ୍ଭର ମଧ୍ୟ ସେହି ଅଭିପ୍ରାୟ; କୁନ୍ତୀସୁତମାନେ ତାହାଙ୍କର ଅଂଶ ପ୍ରାପ୍ତ ହେବାର ଅଧିକାରୀ; ଏ ସନାତନ ଧର୍ମ୍ମ ଅଟେ । ୨ । କୌଣସି ପ୍ରିୟବାଦୀ ମନୁଷ୍ୟକୁ ଶୀଘ୍ର ଦ୍ରୁପଦଙ୍କ ସମୀପକୁ ପ୍ରେରଣ କର; ହେ ଭାରତ । ସେ ବ୍ୟକ୍ତି ବହୁଳ ରତ୍ନମାନଙ୍କୁ ଘେନି ପାଣ୍ଡବମାନଙ୍କ ନିକଟକୁ ଗମନ କରୁ । ୩ । ସେହି ପ୍ରେରିତ ବ୍ୟକ୍ତି ବର ଓ ବଧୂଙ୍କ ଉପଯୋଗ୍ୟ ବିବିଧ ରତ୍ନାଳଙ୍କାରାଦି ଘେନି ଦ୍ରୁପଦଙ୍କ ସନ୍ନିଧାନକୁ ଗମନ କରି କହୁ ଯେ ତାହାଙ୍କ ସହିତ ତୁମ୍ଭର ସଂଯୋଗ ହେବାରୁ ତୁମ୍ଭେମାନେ ପରମ ପ୍ରୀତ ହୋଇଅଛ ଓ ଆପଣାକୁ ବୃଦ୍ଧିଶୀଳ ମନେ କରୁଅଛ । ୪ ।

ହେ ଭାରତ । ସେହି ଦୂତ ରାଜା ଦ୍ରୁପଦ ଓ ଧୃଷ୍ଟଦ୍ୟୁମ୍ନଙ୍କ ନିକଟକୁ ଗମନ କରି ବାରମ୍ବାର ବର୍ଣ୍ଣନ କରୁ ଯେ ସେମାନଙ୍କ ସହିତ ଏହି ସମ୍ବନ୍ଧ ସ୍ଥାପନ ଅତିଶୟ ଯୋଗ୍ୟ ଓ ପ୍ରିୟକର ହୋଇଅଛି; ପରନ୍ତୁ ହେ ରାଜେନ୍ଦ୍ର । ତୁମ୍ଭ ବଚନାନୁସାରେ ସେହି ଦୂତ କୁନ୍ତୀ ଓ ମାଦ୍ରୀଙ୍କର ପୁତ୍ରମାନଙ୍କୁ ସାନ୍ତ୍ୱନାପୂର୍ବକ ଦ୍ରୌପଦୀଙ୍କ ନିମିତ୍ତ ବହୁବିଧ ଶୁଭ୍ର ଓ ହିରଣ୍ମୟ ରତ୍ନାଳଙ୍କାରମାନ ପ୍ରଦାନ କରୁ । ୬ । ହେ ଭରତର୍ଷଭ । ଦ୍ରୁପଦଙ୍କର ପୁତ୍ରମାନଙ୍କୁ ପାଣ୍ଡବଙ୍କୁ ଓ କୁନ୍ତୀଙ୍କୁ ଯାହାଙ୍କର ଯାହା ଉପଯୁକ୍ତ, ତାହା ପ୍ରଦାନ କର । ୮ । ଏହି ପ୍ରକାରେ ଦ୍ରୁପଦଙ୍କୁ ଓ ପାଣ୍ଡୁପୁତ୍ରମାନଙ୍କୁ ସାନ୍ତ୍ୱନା ବଚନମାନ କହି ତାହାଙ୍କର ଆଗମନ ପ୍ରାର୍ଥନା କରିବ । ୯ । ଦ୍ରୁପଦଙ୍କ ଠାରୁ ଆଗମନର ଆଜ୍ଞା ପ୍ରାପ୍ତ ହେଲେ, ପାଣ୍ଡବମାନଙ୍କୁ ଆଣିବା ନିମିତ୍ତ ଦୁଃଶାସନ ଓ ବିକର୍ଣ୍ଣ ଦୁହେଁ ସଜ୍ଜୀଭୂତ ସୈନ୍ୟସାମନ୍ତ ଘେନି ପ୍ରସ୍ଥାନ କରିବେ । ୧୦ । ପୁରୁଷବର ପାଣ୍ଡବମାନେ ରାଜଧାନୀକୁ ଆଗତ ହେଲେ, ଆପଣ ସେମାନଙ୍କୁ ସମାଦର ସହ ଗ୍ରହଣ କରିବେ; ଅନନ୍ତର ସେମାନେ ପ୍ରକୃତି ମଣ୍ଡଳର ମତାନୁସାରେ ପୈତୃକ ପଦରେ ଅଧିରୂଢ଼ ହୋଇ ରହିବେ । ୧୧ । ହେ ମହାରାଜ । ଆମ୍ଭର ଏବଂ

ଭୀଷ୍ମଙ୍କ ବିବେଚନାରେ ଭବଦୀୟ ପୁତ୍ର ସ୍ୱରୂପ ସେହି ପାଣ୍ଡବମାନଙ୍କ ପ୍ରତି ଏତାଦୃଶ ବ୍ୟବହାର କରିବା କର୍ତ୍ତବ୍ୟ । ୧୨ ।

କର୍ଣ୍ଣ ବୋଇଲେ—ସର୍ବ କାର୍ଯ୍ୟରେ ଅନ୍ତରଙ୍ଗ ସ୍ୱରୂପ ଭୀଷ୍ମ ଓ ଦ୍ରୋଣ ଆପଣଙ୍କ ଠାରୁ ସମ୍ମାନ ଓ ଅର୍ଥ ପ୍ରାପ୍ତ ହୁଅନ୍ତି; ଏମାନେ ଯେଉଁ ସ୍ଥଳେ ଆପଣଙ୍କର ଶ୍ରେୟ ବିଷୟରେ ମନ୍ତ୍ରଣା ଦେଉ ନାହାନ୍ତି; ଏଥିରୁ ବଳି କି ଅଧିକ ଆଶ୍ଚର୍ଯ୍ୟର ବିଷୟ ଅଛି ? । ୧୩ । ଯେ ମିତ୍ର-ଦ୍ରୋହୀ ଅନ୍ତଃକରଣ ଓ ଶତ୍ରୁହିତୈଷୀ ବୁଦ୍ଧି ଦ୍ୱାରା ପ୍ରଚ୍ଛନ୍ନ ଭାବରେ ମନ୍ତ୍ରଣା ପ୍ରଦାନ କରନ୍ତି ସେ କି ପ୍ରକାରେ ପ୍ରଭୁଙ୍କର କଲ୍ୟାଣ ବିଧାନ କରି ପାରିବେ ? । ୧୪ । ପରନ୍ତୁ ସଙ୍କଟ ଉପସ୍ଥିତ ହେଲେ ସାଧୁମିତ୍ର ଯେ ମଙ୍ଗଳ କରିବେ ଓ ଅସାଧୁମିତ୍ର ଯେ ଅମଙ୍ଗଳ କରିବେ, ଏମନ୍ତ ନୁହେଁ, କାରଣ ସୁଖ ଓ ଦୁଃଖ ସବୁ ଅଦୃଷ୍ଟ ମୂଳକ । ୧୫ । ବିଜ୍ଞ କି ଅବିଜ୍ଞ, ବୃଦ୍ଧ କି ବାଳକ, ସହାୟ କି ଅସହାୟ ସର୍ବବିଧ ମନୁଷ୍ୟ, ସର୍ବତ୍ର ସକଳ ପ୍ରକାର ଦ୍ରବ୍ୟ ପ୍ରାପ୍ତ ହୁଅନ୍ତି । ୧୬ । ଶୁଣିଅଛୁଁ ଯେ ପୂର୍ବେ ରାଜଗୃହ ନାମକ ରାଜଧାନୀରେ ମଗଧ ଦେଶୀୟ ରାଜାମାନଙ୍କର ଅଧିପତି ଅମ୍ବୁବୀଚ ନାମରେ ନୃପତି ଥିଲେ । ୧୭ । ସେ ନିଃଶ୍ୱାସ ପ୍ରଶ୍ୱାସ ବ୍ୟତିରେକେ ଆଉ କିଛି କାର୍ଯ୍ୟ କରନ୍ତି ନାହିଁ; ସୁତରାଂ ତାହାଙ୍କର ସମସ୍ତ କାର୍ଯ୍ୟ ଅମାତ୍ୟଙ୍କ ଦ୍ୱାରା ନିର୍ବାହିତ ହୁଅଇ । ୧୮ । ମହାକର୍ଣ୍ଣି ନାମକ ତଦୀୟ ଅମାତ୍ୟ ଏକାଧିପତ୍ୟ ପ୍ରାପ୍ତହୋଇ ଆପଣାକୁ ଲବ୍ଧବଳ ବିବେଚନା କରି ରାଜାଙ୍କୁ ଅବମାନନା କଲେ । ୧୯ । ସେହି ମୂଢ଼ମନ୍ତ୍ରୀ ରାଜାଙ୍କର ଉପଭୋଗ୍ୟ ସ୍ତ୍ରୀ, ରତ୍ନ, ଧନ, ଐଶ୍ୱର୍ଯ୍ୟ ସବୁ ସ୍ୱୟଂ ଆଦାନ କଲେ । ୨୦ ।

ସେହି ସମସ୍ତ ଐଶ୍ୱର୍ଯ୍ୟ ଲଭ କରି ସୁଦ୍ଧା ତାହାଙ୍କର ତୃପ୍ତି ହେଲା ନାହିଁ, କ୍ରମଶଃ ତାହାଙ୍କର ଲୋଭ ବର୍ଦ୍ଧିତ ହେଲା; ସବୁ ନେଇସାରି ପରିଶେଷରେ ରାଜ୍ୟକୁ ସୁଦ୍ଧା ହରଣ କରିବାକୁ ଇଚ୍ଛା କଲେ; କିନ୍ତୁ ସେହି ମନ୍ତ୍ରୀ ଯଥାସାଧ୍ୟ ଯତ୍ନ କରି ସୁଦ୍ଧା ସେହି କାରଣବିହୀନ ଶ୍ୱାସ-ପରାୟଣ ରାଜାଙ୍କର ରାଜ୍ୟକୁ ହରଣ କରିବାକୁ ସମର୍ଥ ହେଲେ ନାହିଁ, ଏହା ଆମ୍ଭେ ଶୁଣିଅଛୁଁ । ୨୨ ।

ହେ ରାଜନ । ଅମ୍ବୁବୀଚ ରାଜାଙ୍କର ଅଦୃଷ୍ଟ ବ୍ୟତିରେକେ ଆଉ କି ସାମର୍ଥ୍ୟ ବା ପୁରୁଷାର୍ଥ ଥିଲା ଯେ ତଦ୍ଦ୍ୱାରା ତାହାଙ୍କର ରାଜ୍ୟ ରକ୍ଷା ପାଇଲା ?

ହେ ନୃପତେ ! ଯଦି ଏହି ରାଜ୍ୟ ଆପଣଙ୍କ ସମ୍ବନ୍ଧରେ ବିଧିକୃତ ହୋଇଥିବ, ତେବେ ସମସ୍ତେ ଆପଣଙ୍କୁ ପରାଭବ କରିବାକୁ ଚେଷ୍ଟା କଲେହେଁ, ସେ ରାଜ୍ୟ ଆପଣଙ୍କଠାରେ ସ୍ଥାୟୀ ହେବ । ଆଉ ଯଦି ଭାଗ୍ୟରେ ନ ଥାଏ, ତେବେ ଆପଣ ସହସ୍ର ଯତ୍ନ କଲେହେଁ ରକ୍ଷା କରି ପାରିବେ ନାହିଁ ।୨୪ । ହେ ରାଜନ୍ ! ଆପଣ ବିଦ୍ୱାନ, ଅତଏବ ମନ୍ତ୍ରୀମାନଙ୍କ ମଧ୍ୟରେ କିଏ ସାଧୁ ଓ କିଏ ଅସାଧୁ, ତାହା ଆପଣ ବିବେଚନା କରିବା ହେଉନ୍ତୁ; ଦୁଷ୍ଟ ଓ ଅଦୁଷ୍ଟ ବ୍ୟକ୍ତିଙ୍କର କଥାର ତାତ୍ପର୍ଯ୍ୟ ବୁଝିବା ହେଉନ୍ତୁ । ୨୫ ।

ଦ୍ରୋଣ କହିଲେ—କର୍ଣ୍ଣ ! ଜାଣିଲି, ଯେଉଁ ହେତୁରୁ ତୁମ୍ଭେ ଏହି ପ୍ରକାର କହୁଅଛ, ପାଣ୍ଡବମାନଙ୍କ ପ୍ରତି ତୁମ୍ଭର ଦ୍ୱେଷ ଅଛି; ଅତଏବ ତୁମ୍ଭେ ଆମ୍ଭମାନଙ୍କର ଦୋଷ କୀର୍ତ୍ତନ କରୁଅଛ । ୨୬ । କିନ୍ତୁ ଆମ୍ଭେ ଯାହା କହିଲୁଁ, ତାହା ପରମ ହିତ ଓ କୁଳ ବର୍ଦ୍ଧନକର ଏବଂ ତଥା ଶାନ୍ତି ଓ ସୁଖର ଆଧାର । ଯଦି ତୁମ୍ଭ ବିବେଚନାରେ ତାହା ମନ୍ଦ ହୋଇଥାଏ, ତେବେ ଯାହା ପରମ ହିତ, ତାହା ତୁମ୍ଭେ କହ । ୨୭ । ଆମ୍ଭେ ଯାହା କହିଲୁଁ ତାହା ପରମ ହିତକର; ଯଦି ଆମ୍ଭ କଥିତ ବାକ୍ୟର ଅନ୍ୟଥାଚରଣ କରିବ ତେବେ ଅଚିରକାଳ ମଧ୍ୟରେ କୌରବଗଣ, ନିଶ୍ଚୟ ବିନାଶ ପ୍ରାପ୍ତ ହେବେ, ଏହା ଆମ୍ଭର ବୋଧ ହେଉଅଛି । ୨୮ ।

---

## ଅଧ୍ୟାୟ—୨୦୫

ବିଦୁର ବୋଇଲେ—ହେ ରାଜନ୍ ! ଆପଣଙ୍କର ବାନ୍ଧବମାନେ ଆପଣଙ୍କୁ ନିଶ୍ଚୟ ହିତଜନକ ବାକ୍ୟ କହିବେ; କିନ୍ତୁ ଆପଣଙ୍କର ଶୁଶ୍ରୂଷା ନ ଥିବାରୁ ତାହା ରକ୍ଷା ପାଇ ପାରିବ ନାହିଁ । ୧ । ହେ ରାଜନ୍ ! କୁରୁସତ୍ତମ ! ଶାନ୍ତନୁ ନନ୍ଦନ ଭୀଷ୍ମ, ଯେଉଁସବୁ ପ୍ରିୟ ଓ ହିତକର ବାକ୍ୟମାନ କହିଲେ, ଆପଣ ତାହା ଗ୍ରହଣ କରୁ ନାହାନ୍ତି । ୨ । ତଦ୍ରୂପ ଦ୍ରୋଣ ମଧ୍ୟ ବହୁପ୍ରକାର ହିତ ଓ ଉତ୍ତମ ଭାଷିତ କହିଲେନ୍ତି କିନ୍ତୁ ତୁମ୍ଭର ରାଧା-ସୁତ କର୍ଣ୍ଣ ସେ ସବୁ ବାକ୍ୟକୁ ଅହିତ ମଣୁଅଛନ୍ତି । ୩ ।

ହେ ରାଜନ୍ ! ଆମ୍ଭେ ଚିନ୍ତା କରି ଦେଖି ପାରୁନାହୁଁ ଯେ, ଏହି ପୁରୁଷ ସିଂହଦ୍ୱୟଙ୍କ ବ୍ୟତିରେକେ ଆଉ ଆନ୍ୟ କିଏ ଆପଣଙ୍କର ସୁହୃତ୍ତମ

କି ପ୍ରଜ୍ଞାରେ ଅଧିକ ଅଛନ୍ତି । ୪ । ଏ ଦୁହେଁ ବୟସରେ ବୃଦ୍ଧ, ପ୍ରଜ୍ଞା ଓ ଶାସ୍ତ୍ରରେ ମଧ୍ୟ ଜ୍ୟେଷ୍ଠ ଅଟନ୍ତି । ହେ ରାଜେନ୍ଦ୍ର । ଏମାନେ ତୁମ୍ଭଠାରେ ଯେପରି ଓ ପାଣ୍ଡୁସୁତଙ୍କ ଠାରେ ମଧ୍ୟ ସେହିପରି ସମଭାବାପନ୍ନ । ୫ । ହେ ଭାରତ । ରାଜନ୍ । ଧର୍ମରେ ଓ ସତ୍ୟତାରେ ଏମାନେ ଦାଶରଥି ରାମ ଓ ଗୟାସୁରଙ୍କ ଠାରୁ ମଧ୍ୟ ଶ୍ରେଷ୍ଠ ଅଟନ୍ତି । ୬ । ପୂର୍ବେ ଏମାନେ ଆପଣଙ୍କୁ କୌଣସି ଅଶ୍ରେୟସ୍କର ବାକ୍ୟ କହି ନାହାନ୍ତି, କି କେବେ ଅପକାର କରିବାର ଦେଖାଯାଇ ନାହିଁ । ୭ ।

ହେ ନୃପ । ଆପଣ ମଧ୍ୟ କୌଣସି ସମୟରେ ଏହି ପୁରୁଷବର ମାନଙ୍କ ପ୍ରତି କୌଣସି ଅପରାଧ କରି ନାହାନ୍ତି ଯେ ଏହି ସତ୍ୟ ପରାକ୍ରମ-ଶାଳୀ ବୀରଦ୍ୱୟ ଆପଣଙ୍କୁ ଅଶ୍ରେୟ କଥା କହିବେ । ହେ ନରାଧିପ । ବିଶେଷରେ ଏହି ପୁରୁଷସିଂହ ଦ୍ୱୟ ଅତ୍ୟନ୍ତ ଓ ଜ୍ଞାନ ସମ୍ପନ୍ନ, ଅତଏବ ଏମାନେ ଆପଣଙ୍କ ବିଷୟରେ କଦାପି କୌଣସି କୁଟିଳବାକ୍ୟ କହିବେ ନାହିଁ । କି ଅହିତାଚରଣ କରିବା କଥା ଚିନ୍ତା କରିବେ ନାହିଁ । ୯ । ହେ କୁରୁ ନନ୍ଦନ । ଏହା ଆମ୍ଭର ବୁଦ୍ଧିରେ ନିଶ୍ଚିତ ହୋଇଅଛି ଯେ ଏହି ଧର୍ମଜ୍ଞ ବୀରଦ୍ୱୟ ଅର୍ଥଲୋଭରେ ବା ଅନ୍ୟ କାରଣରୁ ପକ୍ଷ ଆଶ୍ରୟ କରି ବାକ୍ୟ କହିବେ । ୧୦ । ହେ ଭାରତ । ଏମାନେ ଯାହା କହିଲେ, ତାହା ଆପଣଙ୍କର ପରମ ଶ୍ରେୟ ବୋଲି ଅମ୍ଭେ ମଣୁଅଛୁଁ; ହେ ରାଜନ୍ । ଦୁର୍ଯ୍ୟୋଧନ ପ୍ରଭୃତି ଯେପରି ଆପଣଙ୍କର ପୁତ୍ର, ପାଣ୍ଡବମାନେ ମଧ୍ୟ ସେହିପରି ଆପଣଙ୍କର ଅଟନ୍ତି, ଏଥିରେ ସଂଶୟ ନାହିଁ । ଏ କଥା ଜାଣି ନ ପାରି ଆପଣଙ୍କର ମନ୍ତ୍ରୀମାନେ ଯେବେ ସେମାନଙ୍କର କିଛି ଅହିତ କରିବାର ମନ୍ତ୍ରଣା ଦିଅନ୍ତି, ତେବେ ସେମାନେ ଆପଣଙ୍କର ଯହିଁରେ ହିତ ହେବ, ତାହା ବିଶେଷ ଭାବେ ଜାଣନ୍ତି ନାହିଁ । ଅଥବା ହେ ରାଜନ୍ । ଯଦି ଆପଣଙ୍କର ହୃଦୟରେ ସ୍ୱକୀୟ ପୁତ୍ରଙ୍କଠାରେ ଯଦି କିଛି ବିଶେଷ ଗୁଣ ଥାଏ, ତେବେ ଯେଉଁମାନେ ଆପଣଙ୍କର ଅନ୍ତରସ୍ଥ ଭାବକୁ ଗ୍ରହି ବାକ୍ୟ କହିବେ, ସେମାନେ ଆପଣଙ୍କର ଶ୍ରେୟ କଦାପି କରିବେ ନାହିଁ । ୧୩ । ଏହି ନିମିତ୍ତ ହେ ରାଜନ୍ । ମହା ଦ୍ୟୁତି ଶାଳୀ ଓ ମହାତ୍ମା ଭୀଷ୍ମ ଏବଂ ଦ୍ରୋଣ ଆପଣଙ୍କର ତଦ୍ରୂପ ବିକୃତ ମନ୍ତ୍ରଣା ପ୍ରଦାନ କଲେ ନାହିଁ; ପରନ୍ତୁ ଆପଣଙ୍କର ଚିତ୍ତ ନିରପେକ୍ଷ ହୋଇ ନ ଥିବାରୁ ଆପଣ ତାହା ବୁଝିପାରୁ-ନାହାନ୍ତି । ୧୪ ।

ହେ ପୁରୁଷବ୍ୟାଘ୍ର ! ପାଣ୍ଡବମାନ ଅଜେୟ ବୋଲି ଯାହା ଯେ ମହାପୁରୁଷବର ଦ୍ୱୟ ପ୍ରକାଶ କରୁଅଛନ୍ତି, ତାହା ଅଯଥାର୍ଥ ନୁହେଁ, ଅତଏବ ପାଣ୍ଡବମାନଙ୍କ ଠାରୁ ଆପଣଙ୍କର ମଙ୍ଗଳ ହେଉ ! ୧୫ । ପାଣ୍ଡୁନନ୍ଦନ ଶ୍ରୀମାନ୍ ସବ୍ୟସାଚୀ ଧନଞ୍ଜୟଙ୍କୁ ସଂଗ୍ରାମରେ କିପରି ଜୟ କରି ହେବ ? ସ୍ୱୟଂ ପାକଶାସନ ଇନ୍ଦ୍ର ମଧ୍ୟ ତାହାଙ୍କୁ ଜୟ କରି ପାରିବେ ନାହିଁ । ୧୬ । ସହସ୍ରେ ହସ୍ତିର ବଳଧାରୀ ମହାନ୍ ଓ ମହାବାହୁ ଭୀମସେନଙ୍କୁ କିଏ ଯୁଦ୍ଧରେ ଜୟ କରିବ ? ସବୁ ଅମରଗଣ ଏକତ୍ର ହେଲେହେଁ ତାଙ୍କୁ ଜୟ କରିପାରିବେ ନାହିଁ । ୧୭ । ତଦ୍ରୂପ ଯମସୁତ ସଦୃଶ ଓ କୃତାସ୍ତ୍ର ଯମଜ ଦ୍ୱୟଙ୍କୁ ରଣରେ କେଉଁ ବ୍ୟକ୍ତି ଜୟ କରିବାକୁ ଯାଇ ଜୀବନ ଘେନି ଫେରି ଆସିବ । ୧୮ । ଯାହାଙ୍କ ଠାରେ ଧୃତି, ଦୟା, କ୍ଷମା, ସତ୍ୟ ଓ ପରାକ୍ରମ ନିତ୍ୟ ପ୍ରତିଷ୍ଠିତ ହୋଇଅଛି, ସେହି ପାଣ୍ଡବ ଶ୍ରେଷ୍ଠ ଯୁଧିଷ୍ଠିରଙ୍କୁ ରଣରେ କିଏ ଜୟ କରିବ ? । ୧୯ । ବଳରାମ ଯାହାଙ୍କର ପକ୍ଷଧର, ଜନାର୍ଦ୍ଦନ ଯାହାଙ୍କର ମନ୍ତ୍ରୀ ଓ ସାତ୍ୟକି ଯାହାଙ୍କ ପକ୍ଷରେ ଅଛନ୍ତି, ସେମାନେ କାହାକୁ ଯୁଦ୍ଧରେ ଜୟ କରି ନ ପାରିବେ ? । ୨୦ । ପୃଷତ ବଂଶୀୟ ଦ୍ରୁପଦ ଯାହାଙ୍କର ଶ୍ୱଶୁର, ଦ୍ରୁପଦାତ୍ମଜ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ବୀରଭ୍ରାତା ମାନେ ଯାହାଙ୍କର ଶ୍ୟାଳକ, ରଣକ୍ଷେତ୍ରରେ ସେମାନଙ୍କର ଅଜେୟ କି ଅଛି ? । ୨୧ ।

ଅତଏବ ହେ ଭାରତ ! ସେମାନେ ଯେ ଯୁଦ୍ଧରେ ଅପରାଜେୟ ଓ ଧର୍ମ ପ୍ରମାଣେ ସେମାନେ ଯେ ଏହି ରାଜ୍ୟର ଉତ୍ତରାଧିକାରୀ; ଏ କଥା ଅଗ୍ରେ ବିଚାର କରି ତତ୍ପରେ ସେମାନଙ୍କ ପ୍ରତି ସମୁଚିତ ବ୍ୟବହାର କର ।୨୨। ହେ ରାଜନ୍ ! ପୁରୋଚନ କୃତ ନିନ୍ଦିତ ଓ ମହତ୍ ଅପଶ ଆପଣଙ୍କ ଠାରେ ଲିପ୍ତ ହୋଇଅଛି; ଅଦ୍ୟ ପାଣ୍ଡବଙ୍କ ପ୍ରତି ଉଦାରତା ଓ ଅନୁଗ୍ରହ ପ୍ରକାଶ କରି ସେ କଳଙ୍କକୁ ପ୍ରକ୍ଷାଳିତ କରନ୍ତୁ । ୨୩ । ଅଧିକନ୍ତୁ ସେମାନଙ୍କ ପ୍ରତି ଏହି-ରୂପ ଅନୁଗ୍ରହ ପ୍ରକାଶ କଲେଁ, ଅସ୍ମଦ୍‌ବଂଶୀୟ ସମସ୍ତଙ୍କର ଜୀବନ ରକ୍ଷା ଓ ପରମ ମଙ୍ଗଳ ହେବ, ଅଥଚ କ୍ଷତ୍ରକୁଳର ବୃଦ୍ଧି ହେବ । ୨୪ । ହେ ରାଜନ୍ ! ଦ୍ରୁପଦ ଅତି ମହାନ୍ ରାଜା, ପୂର୍ବେ ଆପଣ ତାହାଙ୍କ ସହିତ ବିରୋଧ କରିଅଛନ୍ତି; ତାହାଙ୍କ ସହିତ ସନ୍ଧି କଲେ ସ୍ୱ-ପକ୍ଷର ବୃଦ୍ଧି ହେବ । ୨୫ । ହେ ନୃପତି ! ଦାଶାର୍ହ ଦେଶୀୟ ଲୋକେ ବଳଶାଳୀ ଓ ସେମାନଙ୍କର ସଂଖ୍ୟା ବହୁ । କୃଷ୍ଣ ଯେଉଁଠାରେ ରହିବେ, ସମସ୍ତେ ସେଇଠି ଓ କୃଷ୍ଣ ଯେଉଁଠାରେ, ଜୟ ମଧ୍ୟ ସେହିଠାରେ । ୨୬ ।

ହେ ନୃପ ! ଯେଉଁ କାର୍ଯ୍ୟ ସାମ ଦ୍ୱାରା ସମ୍ପାଦିତ ହୋଇ ପାରିବ, କେଉଁ ଦୈବଶପ୍ତ ବ୍ୟକ୍ତି ତାହାକୁ ବିଗ୍ରହ ଦ୍ୱାରା ସମ୍ପନ୍ନ କରିବାକୁ ଉଦ୍ୟତ ହେବ ? ।୨୭। ହେ ରାଜନ୍ ! ନଗରବାସୀ ଓ ଜନପଦବାସୀ ଜନମାନେ ପାଣ୍ଡବଙ୍କୁ ଜୀବିତ ଥିବାର ଜାଣି, ସେମାନଙ୍କ ଦର୍ଶନ କରିବା ନିମିତ୍ତ ଅତି ଆଗ୍ରହ ଯୁକ୍ତ ହୋଇ ଅଛନ୍ତି; ଅତଏବ ସେମାନଙ୍କର ପ୍ରିୟାନୁଷ୍ଠାନ କରିବା ଆପଣଙ୍କର ଅବଶ୍ୟ କର୍ତ୍ତବ୍ୟ ଅଟେ ।୨୮। ଦୁର୍ଯ୍ୟୋଧନ, କର୍ଣ୍ଣ ଓ ସୁବଳ ପୁତ୍ର ଶକୁନି ଏମାନେ ଅଧର୍ମ୍ମଯୁକ୍ତ, ଦୁର୍ବୁଦ୍ଧି ଓ ବାଳମତି ଅଟନ୍ତି; ଏମାନଙ୍କର ପରାମର୍ଶ ଅନୁସାରେ କାର୍ଯ୍ୟ କର ନା ।୨୯। ହେ ରାଜନ୍ ! ଆମ୍ଭେ ପୂର୍ବେ ଆପଣଙ୍କୁ କହିଅଛୁ ଯେ ଦୁର୍ଯ୍ୟୋଧନଙ୍କ ଅପରାଧରେ ଏହି ସମସ୍ତ ପ୍ରଜା ବିନଷ୍ଟ ହେବେ ।୩୦।

---

## ଅଧ୍ୟାୟ—୨୦୭

ଧୃତରାଷ୍ଟ୍ର ବୋଇଲେ—ବିଦ୍ୱାନ ଶାନ୍ତନୁ-ସୁତ ଭୀଷ୍ମ ଓ ଭଗବାନ୍ ଋଷି ଦ୍ରୋଣ ଯାହା କହିଅଛନ୍ତି ଓ ତୁମ୍ଭେ ମଧ୍ୟ ଯାହା କହିଲ, ତାହା ସମସ୍ତ ସତ୍ୟ ଅଟେ, ହିତକର ମଧ୍ୟ ।୧। ମହାରଥ ବୀର କୁନ୍ତୀପୁତ୍ରମାନେ ଯେରୂପ ପାଣ୍ଡବଙ୍କର ପୁତ୍ର, ସେହିପରି ଧର୍ମ୍ମାନୁସାରେ ଆମ୍ଭର ମଧ୍ୟ ପୁତ୍ର ଅଟନ୍ତି । ଆମ୍ଭର ପୁତ୍ରମାନେ ଯେପରି ଏହି ରାଜ୍ୟର ଅଧିକାରୀ, ପାଣ୍ଡୁଙ୍କ ପୁତ୍ରମାନେ ମଧ୍ୟ ତଦ୍ରୂପ ଅଧିକାରୀ, ଏଥିରେ ସଂଶୟ ନାହିଁ ।୩। ହେ କ୍ଷତ୍ତଃ । ତୁମ୍ଭେ ଗମନ କର, ମାତାଙ୍କ ସହ ପାଣ୍ଡବମାନଙ୍କୁ ଓ ଦେବ-ରୂପିଣୀ କୃଷ୍ଣାଙ୍କୁ ଉତ୍ତମରୂପେ ସତ୍କୃତ କରି ଆନୟନ କର ।୪। ଆମ୍ଭର ଭାଗ୍ୟକୁ ପାଣ୍ଡବମାନେ ଜୀବିତ ଅଛନ୍ତି, ଆମ୍ଭର ଶୁଭାଦୃଷ୍ଟ ହେତୁରୁ ପୃଥାଙ୍କର ଜୀବନ ରକ୍ଷା ହୋଇଅଛି । ମହାରଥ ପାଣ୍ଡବମାନେ ଯେ ଦ୍ରୌପଦୀଙ୍କୁ ଲାଭ କରିଅଛନ୍ତି, ତାହା ଆମ୍ଭର ସୌଭାଗ୍ୟ ବୋଲିବାକୁ ହେବ । ହେ ମହାଦ୍ୟୁତେ ! ଭାଗ୍ୟକ୍ରମେ ଆମ୍ଭେ ସମସ୍ତେ ବୃଦ୍ଧି ପ୍ରାପ୍ତ ହୋଇଅଛୁଁ ଓ ଭାଗ୍ୟକ୍ରମେ ପୁରୋଚନ ଶାନ୍ତ ହୋଇଅଛି, ଅଥଚ ଭାଗ୍ୟବଳରୁ ଆମ୍ଭର ଦୁଃଖ ଅପନୀତ ହୋଇଅଛି ।୬।

ବୈଶମ୍ପାୟନ ବୋଇଲେ—ହେ ଭାରତ । ଧୃତରାଷ୍ଟ୍ରଙ୍କ ଆଜ୍ଞା ପ୍ରାପ୍ତ ହୋଇ ବିଦୁର ଯଜ୍ଞସେନଙ୍କର ଓ ପାଣ୍ଡବଙ୍କର ସମୀପକୁ ଗମନ

କଲେ । ୭ । ଦ୍ରୌପଦୀ, ପାଣ୍ଡବ ଓ ଯଜ୍ଞସେନ ସମସ୍ତଙ୍କ ନିମିତ୍ତ ବହୁବିଧ ଧନ ଓ ରତ୍ନ ଘେନି ଗମନ କଲେ । ୮ । ଧର୍ମଜ୍ଞ ଓ ସର୍ବଶାସ୍ତ୍ର ବିଶାରଦ ବିଦୁର ସେଠାକୁ ଗମନ କରି ନ୍ୟାୟ ପ୍ରମାଣେ ଦ୍ରୁପଦଙ୍କର ସମୀପରେ ଉପସ୍ଥିତ ହୋଇ ଆଲିଙ୍ଗନ ଓ ନମସ୍କାରାଦି ଦ୍ୱାରା ମିଳିତ ହେଲେ । ୯ । ରାଜା ଯଜ୍ଞସେନ ମଧ୍ୟ ଧର୍ମାନୁସାରେ ଅଭ୍ୟୁତ୍ଥାନାଦି ଦ୍ୱାରା ବିଦୁରଙ୍କୁ ଗ୍ରହଣ କଲେ ଓ ବିଧିପୂର୍ବକ କୁଶଳ ପ୍ରଶ୍ନମାନ କଲେ । ୧୦ । ହେ ଭାରତ ! ଅମିତବୁଦ୍ଧି ବିଦୁର ପାଣ୍ଡୁଙ୍କୁ ଓ ବାସୁଦେବଙ୍କୁ ଦେଖି ସ୍ନେହବଶରୁ ଆଲିଙ୍ଗନ କରି ସେମାନଙ୍କର ଅନାମୟ ପ୍ରଶ୍ନ କଲେ । ୧୧ । ସେମାନେ ମଧ୍ୟ ବିଦୁରଙ୍କୁ ଯଥାକ୍ରମରେ ସତ୍କାର କଲେ; ତଦନନ୍ତର ଧୃତରାଷ୍ଟ୍ରଙ୍କର ଆଜ୍ଞାନୁସାରେ ପାଣ୍ଡବମାନଙ୍କୁ ସ୍ନେହପୂର୍ବକ ବିଦୁର ପୁନଃ-ପୁନଃ କୁଶଳ ପ୍ରଶ୍ନ କଲେ । ୧୨ ।

ହେ ମନୁଜାଧିପ ! ପରେ ପାଣ୍ଡବଙ୍କୁ, କୁନ୍ତୀଙ୍କୁ, ଦ୍ରୌପଦୀଙ୍କୁ ଓ ଦ୍ରୁପଦ ପୁତ୍ର ଗଣଙ୍କୁ ଧୃତରାଷ୍ଟ୍ର ପ୍ରଦତ୍ତ ଯଥୋପଯୁକ୍ତ ବିବିଧ ରତ୍ନ ଓ ଧନ ପ୍ରଦାନ କଲେ । ଅମିତ ବୁଦ୍ଧି ବିଦୁର ବିନୟ ସହକାରେ ପାଣ୍ଡବଙ୍କର ଓ କେଶବଙ୍କ ସମକ୍ଷରେ ରାଜା ଦ୍ରୁପଦଙ୍କୁ ଧୀର ଅଥଚ ପ୍ରଣୟଗର୍ଭିତ ବାକ୍ୟରେ କହିଲେ । ୧୫ । ହେ ରାଜନ୍ ! ଆପଣ ପୁତ୍ର ଓ ଅମାତ୍ୟଙ୍କ ସହିତ ଆମ୍ଭର ବଚନ ଶ୍ରବଣ କରନ୍ତୁ । ପୁତ୍ର, ଅମାତ୍ୟ ଓ ବାନ୍ଧବଙ୍କ ସହିତ ଧୃତରାଷ୍ଟ୍ର ଅତିଶୟ ପ୍ରୀତିପୂର୍ବକ ଆପଣଙ୍କର କୁଶଳପ୍ରଶ୍ନ କରିଅଛନ୍ତି । ହେ ନରାଧିପ ! ଆପଣଙ୍କ ସହିତ ଏହି ବନ୍ଧୁତା ସ୍ଥାପନ ହେବାରୁ ସେ ଅତିଶୟ ପ୍ରୀତ ହୋଇଅଛନ୍ତି; ଅଥଚ ମହାପ୍ରାଜ୍ଞ ! ଶାନ୍ତନୁସୁତ ଭୀଷ୍ମ ସମସ୍ତ କୌରବମାନଙ୍କ ସହିତ ଆପଣଙ୍କର ସର୍ବତୋଭାବେ ଅନାମୟ ପ୍ରଶ୍ନ କରିଅଛନ୍ତି । ୧୮ । ଆପଣଙ୍କର ପ୍ରିୟସଖା ମହାପ୍ରାଜ୍ଞ ଭରଦ୍ୱାଜ ଦ୍ରୋଣ ସମାଶ୍ଳେଷ ପୂର୍ବକ ଆପଣଙ୍କର କୁଶଳ ଜିଜ୍ଞାସୁ ହୋଇ ଅଛନ୍ତି । ୧୯ ।

ହେ ପାଞ୍ଚାଳ୍ୟ ! ଧୃତରାଷ୍ଟ୍ର ଏବଂ ସମସ୍ତ କୁରୁବଂଶୀୟମାନେ ଆପଣଙ୍କ ସହିତ ସମ୍ବନ୍ଧ ପ୍ରାପ୍ତ ହୋଇ ଆପଣାକୁ କୃତାର୍ଥ ଜ୍ଞାନ କରୁଅଛନ୍ତି । ୨୦ । ହେ ଯଜ୍ଞସେନ ! ଆପଣଙ୍କ ସହିତ ସମ୍ବନ୍ଧ ପ୍ରାପ୍ତ ହୋଇ କୌରବମାନେ ଯାଦୃଶ ପ୍ରୀତ ହୋଇଅଛନ୍ତି, ରାଜ୍ୟ ପ୍ରାପ୍ତ ହୋଇଥିଲେ ତାହାଙ୍କର ତାଦୃଶ ପ୍ରୀତି ହୁଅନ୍ତା ନାହିଁ । ୨୧ । ଆପଣ ଏହା ଅବଗତ ହୋଇ ପାଣ୍ଡବମାନଙ୍କୁ ପ୍ରସ୍ଥାପନ କରନ୍ତୁ; ପାଣ୍ଡୁପୁତ୍ରମାନଙ୍କୁ ଦର୍ଶନ କରିବା ନିମିତ୍ତ କୌରବମାନେ

ଅତଶଯ୍ୟ ଉତ୍କଣ୍ଠିତ ହୋଇଅଛନ୍ତି । ୨୨ । ଏହି ନର ଶ୍ରେଷ୍ଠମାନେ ଓ ପୃଥା ଦୀର୍ଘକାଳରୁ ପ୍ରୋଷିତ ହୋଇ ନଗର ଦର୍ଶନ କରିବାକୁ ଉତ୍ସୁକ ହୋଇଅଛନ୍ତି । ୨୩ । କୁରୁବର ସ୍ତ୍ରୀମାନେ ଓ ଆମ୍ଭର ନଗର ଓ ଜନପଦ-ବାସୀମାନେ ସମସ୍ତେ ପାଞ୍ଚାଳ ତନୟା କୃଷ୍ଣାଙ୍କ ଦର୍ଶନ କରିବା ଅଭିଳାଷରେ ପ୍ରତୀକ୍ଷା କରୁଅଛନ୍ତି । ୨୪ ।

ଅତଏବ ଆପଣ ବିଳମ୍ବ ନ କରି ସବାର ପାଣ୍ଡବମାନଙ୍କର ଗମନ କରିବାର ଆଜ୍ଞା ପ୍ରଦାନ କରନ୍ତୁ, ଆମ୍ଭମାନଙ୍କର ଏହି ମତ । ୨୫ । ମହାତ୍ମା ପାଣ୍ଡବମାନଙ୍କ ଗମନ କରିବାର ଆଜ୍ଞା ଦେଲେ ଅମ୍ଭେ ଧୃତରାଷ୍ଟ୍ରଙ୍କ ଠାକୁ ଦ୍ରୁତଗାମୀ ଦୂତ ପ୍ରେରଣ କରିବୁଁ, ତତ୍ପରେ ପାଣ୍ଡବମାନେ କୁନ୍ତୀ ଓ କୃଷ୍ଣାଙ୍କ ସହ ଆଗମନ କରିବେ । ୨୬ ।

---

## ଅଧ୍ୟାୟ—୨୦୭

ରାଜା ଦ୍ରୁପଦ ବୋଇଲେ—ହେ ମହାପ୍ରାଜ୍ଞ ବିଦୁର । ଆପଣ ଯାହା କହିବାହେଲେ, ତାହା ସେହିପରି ଅଟେ । ହେ ପ୍ରଭୋ । ଏହି ବୈବାହିକ ସମ୍ବନ୍ଧ ସ୍ଥାପିତ ହେବାରୁ ଆମ୍ଭର ମଧ୍ୟ ପରମ ହର୍ଷ ଜାତ ହୋଇଅଛି । ୧ । ଏହି ମହାତ୍ମାମାନଙ୍କର ଗମନ ମଧ୍ୟ ଉପଯୁକ୍ତ ହୋଇଅଛି; କିନ୍ତୁ ଆମ୍ଭର ଏ କଥାକୁ ବଚନ ଦ୍ୱାରା ପ୍ରକାଶ କରିବା ଉଚିତ ନୁହେଁ । ୨ । ଯଦ୍ୟପି କୁନ୍ତୀପୁତ୍ର ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ ଓ ପୁରୁଷଶ୍ରେଷ୍ଠ ନକୁଳ ଓ ସହଦେବ ଗମନ କରିବାକୁ ଇଚ୍ଛୁକ ନୁହନ୍ତି ଓ ଧର୍ମଜ୍ଞ ରାମ କୃଷ୍ଣ ନୁହେ ସମ୍ମତି ପ୍ରଦାନ କରନ୍ତି, ତେବେ ସେମାନେ ସ୍ୱଚ୍ଛନ୍ଦରେ ଗମନ କରନ୍ତୁ; କାରଣ ଏହି ପୁରୁଷବ୍ୟାଘ୍ର ରାମ ଓ କୃଷ୍ଣ ଦୁହେଁ ଜଣ ସେମାନଙ୍କର ପ୍ରିୟ ଓ ହିତ ସାଧନରେ ରତ ଅଛନ୍ତି । ୪ । ଯୁଧିଷ୍ଠିର ବୋଇଲେ, ଏବେ ଭ୍ରାତୃଗଣଙ୍କ ସହିତ ଅମ୍ଭେ ଆପଣଙ୍କର ଅଧୀନ, ଆପଣ ସନ୍ତୁଷ୍ଟ ହୋଇ ଆମ୍ଭମାନଙ୍କୁ ଯାହା କହିବା ହେବେ, ଅମ୍ଭେମାନେ ତାହା ପାଳନ କରିବୁଁ । ୫ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ବାସୁଦେବ ବୋଇଲେ, "ଅମ୍ଭ ବିବେଚନାରେ ଗମନ କରିବା ବିଧେୟ, ପରନ୍ତୁ ସର୍ବ ଧର୍ମବେତ୍ତା ରାଜା ଦ୍ରୁପଦ ଯାହା ବାଞ୍ଛା କରନ୍ତି, ତାହା କର୍ତ୍ତବ୍ୟ" । ୬ ।

ଦ୍ରୁପଦ ବୋଇଲେ— ବର୍ତ୍ତମାନ ସମୟାନୁରୂପ ମହାବାହୁ ପୁରୁଷୋତ୍ତମ ବୀର ଦାଶାର୍ହ ଯାହା ବିବେଚନା କଲେ, ତାହା କରିବା ଆମ୍ଭ ମତରେ ଉଚିତ ଅଟେ । ୭ । କାରଣ ଅଧୁନା ମହାଭାଗ ପାଣ୍ଡବମାନେ ଯେପରି ଆମ୍ଭର ସ୍ନେହାସ୍ପଦ, ସେହିପରି ସେମାନେ ବାସୁଦେବଙ୍କର ସ୍ନେହାସ୍ପଦ ଅଟନ୍ତି । ୮ । ପୁରୁଷବ୍ୟାଘ୍ର କେଶବ ଯେପରି ପାଣ୍ଡବମାନଙ୍କର ମଙ୍ଗଳ ଚିନ୍ତା କରନ୍ତି, କୁନ୍ତୀ-ପୁତ୍ର-ପାଣ୍ଡୁ-ନନ୍ଦନ ଯୁଧିଷ୍ଠିର ମଧ୍ୟ ତଦ୍ରୂପ ଶୁଭ ଧ୍ୟାନ କରନ୍ତି ନାହିଁ । ୯ ।

ବୈଶମ୍ପାୟନ ବୋଇଲେ—ହେ ମହୀପତେ । ଏଥିଉତ୍ତାରୁ କୃଷ୍ଣ, ବିଦୁର ଓ ମହାତ୍ମା ଦ୍ରୁପଦଙ୍କ ଦ୍ୱାରା ଅନୁଜ୍ଞାତ ହୋଇ ପାଣ୍ଡବମାନେ ପରମ ସୁଖରେ ବିହାର କରି କରି ଯଶସ୍ୱିନୀ କୁନ୍ତୀ ଓ ଦ୍ରୌପଦୀଙ୍କ ସମଭିବ୍ୟାହାରରେ ହସ୍ତିନା ନଗରକୁ ଗମନ କଲେ । ୧୧ । ଜନେଶ୍ୱର ଧୃତରାଷ୍ଟ୍ର ସେମାନଙ୍କର ଆଗମନ ଶ୍ରବଣ କରି ସମ୍ମୁଖଙ୍କୁ ପ୍ରତିଗ୍ରହ କରିବା ନିମିତ୍ତ କୌରବମାନଙ୍କୁ ପ୍ରେରଣ କଲେ । ୧୨ । ମହା ଧନୁର୍ଦ୍ଧାରୀ ବିକର୍ଣ୍ଣ, ଚିତ୍ରସେନ, ପରମ ଧାନୁଷ୍କ ଦ୍ରୋଣ ଓ କୃପଙ୍କ ଦ୍ୱାରା ପରିବୃତ ହୋଇ ମହାବଳ ବୀରମାନେ ଧୀରେ ଧୀରେ ହାସ୍ତିନ ପୁରକୁ ପ୍ରବେଶ କଲେ । ୧୪ ।

ଶୋକ ଓ ଦୁଃଖ ବିନାଶକାରୀ ସେହି ବୀରମାନଙ୍କୁ ଦର୍ଶନ କରିବା ନିମିତ୍ତ କୌତୂହଳରେ ସେହି ନଗର ବିଦୀର୍ଣ୍ଣ ହେଲା ପ୍ରାୟ ବୋଧ ହେଲା । ୧୫ । ପ୍ରିୟ ଚିକୀର୍ଷୁ ପୌରଜନମାନେ ବିବିଧପ୍ରକାର ବଚନମାନ କହିଲେ ଓ ସେହି ହୃଦୟଙ୍ଗମ ବାକ୍ୟମାନଙ୍କୁ ପାଣ୍ଡବମାନେ ଶ୍ରବଣ କଲେ । ୧୬ । ଲୋକେ କହିଲେ, ଏହି ସେ ଧର୍ମବିତ୍ ପୁରୁଷ ବ୍ୟାଘ୍ର ପୁନର୍ବାର ଆସିଲେ, ସ୍ୱକୀୟ ସନ୍ତାନପ୍ରାୟ ସେ ଆମ୍ଭମାନଙ୍କୁ ବିପଦ ଆପଦରୁ ସର୍ବପ୍ରକାରେ ରକ୍ଷା କରୁଥିଲେ । ୧୭ । ଜନପ୍ରିୟ ମହାରାଜ ପାଣ୍ଡୁ ଆମ୍ଭମାନଙ୍କର ପ୍ରିୟ କରିବା ଇଚ୍ଛାରେ ଅଦ୍ୟ ବନରୁ ଆସିବା ପ୍ରାୟ ନିଶ୍ଚୟ ବୋଧ ହେଉଅଛି । ୧୮ । ଅଦ୍ୟ ଏହି କୁନ୍ତୀ ପୁତ୍ରମାନେ ଯେ ଆମ୍ଭ ନଗରକୁ ପ୍ରତ୍ୟାଗତ ହେଲେ, ଏଥିରୁ ବଳି ଅଧିକ କି ପ୍ରିୟ ଆମ୍ଭର ହୋଇ ପାରେ ? । ୧୯ । ଯଦି ଆମ୍ଭେମାନେ ଦାନ ବା ହୋମ କରିଥାଉଁ, ଅଥବା ଯଦି ଆମ୍ଭର ତପସ୍ୟାର ଫଳ ସଞ୍ଚିତ ଥାଏ, ତେବେ ସେହି ପୁଣ୍ୟ କାର୍ଯ୍ୟ ବଶରୁ ପାଣ୍ଡବମାନେ ଆମ୍ଭ ନଗରରେ ଶଏବର୍ଷ ବାସ କରନ୍ତୁ ।୨୦।

ତଦନନ୍ତର ପାଣ୍ଡବମାନେ ଧୃତରାଷ୍ଟ୍ରଙ୍କର ଓ ମହାତ୍ମା ଭୀଷ୍ମ ଓ ଅନ୍ୟାନ୍ୟ ଗୁରୁଜନ ମାନଙ୍କର ପାଦାଭିବନ୍ଦନ କଲେ । ୨୧ । ପରେ ନଗରଜନଙ୍କ ସହିତ କୁଶଳ ପ୍ରଶ୍ନ ଦ୍ୱାରେ ଧୃତରାଷ୍ଟ୍ରଙ୍କ ଆଜ୍ଞାକ୍ରମେ ଗୃହ ମଧ୍ୟରେ ପ୍ରବେଶ କଲେ । ୨୨ । ମହାବଳ ମହାତ୍ମା ପାଣ୍ଡବମାନେ କିଛିକାଳ ବିଶ୍ରାମ କରିବା ପରେ ରାଜା ଧୃତରାଷ୍ଟ୍ର ଓ ଶାନ୍ତନୁନନ୍ଦନ ସେମାନଙ୍କୁ ଆହ୍ୱାନ କଲେ । ୨୩ ।

ଧୃତରାଷ୍ଟ୍ର ବୋଇଲେ—ହେ କୌନ୍ତେୟ ! ଆମ୍ଭେ ଯାହା କହୁଅଛୁଁ, ଶ୍ରବଣ କର; ପୁନର୍ବାର ଆମ୍ଭମାନଙ୍କ ସହିତ ବିବାଦ ନ ହେଉ, ଏହି ହେତୁରୁ ତୁମ୍ଭେ ଭ୍ରାତାମାନଙ୍କ ସହ ଖାଣ୍ଡବ ପ୍ରସ୍ଥରେ ବାସସ୍ଥାନ ନିର୍ଦ୍ଦେଶ କର । ତୁମ୍ଭେମାନେ ସେଠାରେ ବାସ କଲେଁ କେହି ତୁମ୍ଭମାନଙ୍କୁ ସେଠାରେ ବାଧା ଦେବାକୁ ସମର୍ଥ ହେବେନାହିଁ । ଇନ୍ଦ୍ର ଯେପରି ଦେବଗଣଙ୍କୁ ରକ୍ଷା କରନ୍ତି, ଅର୍ଜ୍ଜୁନ ସେହିପରି ତୁମ୍ଭମାନଙ୍କୁ ସେଠାରେ ରକ୍ଷା କରିବେ । ୨୫ ।

ରାଜ୍ୟର ଅର୍ଦ୍ଧକୁ ସମ୍ପ୍ରାପ୍ତ ହୋଇ ଖାଣ୍ଡବ ପ୍ରସ୍ଥରେ ବାସ କର ।

ବୈଶମ୍ପାୟନ ବୋଇଲେ—ସେହି ବାକ୍ୟକୁ ଗ୍ରହଣ କରି ସମସ୍ତେ ନୃପତିଙ୍କୁ ପ୍ରଣାମ କଲେ । ସେହି ମନୁଜଶ୍ରେଷ୍ଠ ମାନେ ଘୋର ବନକୁ ଗମନ କରି ରାଜ୍ୟର ଅର୍ଦ୍ଧାଂଶ ନେଇ ଖାଣ୍ଡବ ପ୍ରସ୍ଥରେ ବସତି ସ୍ଥାପନ କଲେ । ୨୭ । ଅଚ୍ୟୁତଙ୍କ ସଦୃଶ ସେହି ପୁରୁଷମାନେ କୃଷ୍ଣଙ୍କ ପୁରଃସର ସେଠାକୁ ଗମନ କରି ସେ ପୁରକୁ ସ୍ୱର୍ଗପ୍ରାୟ ମଣ୍ଡିତ କଲେ । ତଦନନ୍ତର ପୁଣ୍ୟ ଓ ମଙ୍ଗଳପ୍ରଦ ପ୍ରଦେଶରେ ଦ୍ୱୈପାୟନଙ୍କ ସହ ମହାରଥ ପାଣ୍ଡବମାନେ ଶାନ୍ତିକର୍ମ ସମାଧାନ କରି ନଗରର ଆୟତନ ମାପ କରାଇଲେ । ୨୯ । ସାଗର ପ୍ରତିରୂପ ପରିଖା ମାନଙ୍କ ଦ୍ୱାରା ସେହି ମହାନଗର ଅଳଂକୃତ ହେଲା; ଆକାଶକୁ ଆବରଣ କରି ପ୍ରାକାରାବଳୀ ସମ୍ପାଦିତ ହେଲା । ୩୦ ।

ନାଗମାନଙ୍କ ଦ୍ୱାରା ଯେପରି ଭୋଗବତୀ ନଗରୀ ସୁଶୋଭିତ ହୋଇଥାଏ, ପାଣ୍ଡୁରବର୍ଣ୍ଣ ମେଘାବଳୀ ସଦୃଶ ଓ ହିମରାଶି ସନ୍ନିଭ ପ୍ରାକାର ଦ୍ୱାରା ସେହି ପୁର-ଶ୍ରେଷ୍ଠ ଶୋଭାନ୍ୱିତ ହେଲା । ୩୧ । ଗରୁଡ଼ଙ୍କର ବିସ୍ତୃତ ଦୁଇପକ୍ଷ ସମ କପାଟ ସଂଲଗ୍ନ ଦ୍ୱାର ସମୂହରେ ତତ୍ସଂସ୍ଥ ସୌଧମାଳା

ଶୋଭିତ ହେଲା । ଗୁପ୍ତ-ମେଘସଂକାଶ ମନ୍ଦରୋପମ ଗୋପୁର ନିଚୟରେ ସେ ନଗର ସୁରକ୍ଷିତ ହେଲା; ବିବିଧ ଅଭେଦ୍ୟ ଅସ୍ତ୍ର ସମୂହରେ ସୁସଜ୍ଜିତ ଓ ଦ୍ୱିଜିହ୍ୱ ପନ୍ନଗ ସଦୃଶ ଲୌହମୟୀ ଶକ୍ତି ଦ୍ୱାରା ଆବୃତ ହେଲା । ୩୩ । ଶସ୍ତ୍ରାସ୍ତ୍ର ଅଭ୍ୟାସକାରୀ ଓ ରକ୍ଷାକାରୀ ପୁରୁଷମାନଙ୍କ ଦ୍ୱାରା ସେନାଗାର ନିଚୟ ଶୋଭିତ ହେଲା । ତୀକ୍ଷ୍ଣ ଅଙ୍କୁଶ, ଶତଘ୍ନୀ ଯନ୍ତ୍ର ଓ ଅପରାପର ବହୁବିଧ ଯନ୍ତ୍ର ସମୂହରେ ପୂରିତ ହେଲା । ୩୪ । ସେହି ନଗରୋତ୍ତମ ଲୌହମୟ ମହାଚକ୍ରରେ ଶୋଭିତ ହେଲା; ତାହାର ପଥମାନ ପ୍ରଶସ୍ତ ଓ ସୁବିଭକ୍ତ ହୋଇ ନିର୍ମିତ ହେଲା; ଦୈବ ଉତ୍ପାତ ତହିଁରେ ଘଟିବାର ସମ୍ଭାବନା ନ ଥିଲା । ୩୫ । ପାଣ୍ଡୁରବର୍ଣ୍ଣ ବିବିଧ ଭବନୋତ୍ତମରେ ବିରାଜମାନ ହୋଇ ନଭିସ୍ଥିତ ସଂକାଶ ଶୋଭାନ୍ୱିତ ହେବାରୁ ତାହାର ନାମ 'ଇନ୍ଦ୍ରପ୍ରସ୍ଥ' ବୋଲି ଖ୍ୟାତ ହେଲା । ୩୬ ।

ଏତାଦୃଶ ନଗରର ମଧ୍ୟପ୍ରଦେଶରେ ଅତି ରମଣୀୟ ଓ ମଙ୍ଗଳକର ସ୍ଥାନରେ ପାଣ୍ଡବ ମାନଙ୍କର ଧନ ପରିପୂର୍ଣ୍ଣ ଧନପତି ଗୃହତୁଲ୍ୟ ପ୍ରାସାଦ ମଣ୍ଡଳୀ, ନଭୋମଣ୍ଡଳସ୍ଥିତ ତଡ଼ିନ୍ମାଳା ସମାବୃତ ମେଘବୃନ୍ଦ ପ୍ରାୟ ସୁନ୍ଦର ଦୃଶ୍ୟ ହେଲା । ହେ ରାଜନ୍ । ସର୍ବ ବେଦବେତ୍ତା ଶ୍ରେଷ୍ଠ ବ୍ରାହ୍ମଣମାନେ ସେଠାକୁ ସମାଗତ ହେଲେ । ୩୮ । ସର୍ବ ଭାଷାଭିଜ୍ଞ ବ୍ୟକ୍ତିମାନେ ଆସି ସେଠାରେ ସ୍ୱଇଚ୍ଛାରେ ବସତି କଲେ । ବଣିକମାନେ ଧନାର୍ଥୀ ହୋଇ ନାନାଦିଗରୁ ସମାଗମନ କଲେ । ୩୯ ।

ସର୍ବପ୍ରକାର ଶିଳ୍ପନିପୁଣ ଜନମାନେ ଆସି ସେଠାରେ ବସତି କଲେ । ନଗରର ଚତୁର୍ଦ୍ଦିଗରେ ରମଣୀୟ ଉଦ୍ୟାନମାନ ପ୍ରସ୍ତୁତ ହେଲା; ତହିଁରେ ଆମ୍ର, ଆମ୍ରାତକ, ନୀପ, ଅଶୋକ, ଚମ୍ପକ, ପୁନ୍ନାଗ, ନାଗପୁଷ୍ପ, ଲକୁଚ (ଡେଲା), ପନସ, ଶାଲ, ତାଳ, ତମାଳ, ବକୁଳ ଓ କେତକ ବୃକ୍ଷମାନେ ମନୋହର ପୁଷ୍ପରେ ଓ ଫଳର ଭାରରେ ଶୋଭାନ୍ୱିତ ଓ ଅବନମିତ ହେଲେ । ୪୨ । ପ୍ରାଚୀନାମଳକ, ଲୋଧ୍ର, ଉତ୍ତମ ପୁଷ୍ପଯୁକ୍ତ, ଅଙ୍କୋଳ, ଜମ୍ବୁ, ପାଟଳ, ମାଧବୀଲତା, କୁଞ୍ଜ, କରବୀର, ପାରିଜାତ ଓ ନିତ୍ୟପୁଷ୍ପଫଳ-ଯୁକ୍ତ, ପକ୍ଷୀଗଣ ନିଷେବିତ, ଅନ୍ୟାନ୍ୟ ବିବିଧ ଦ୍ରୁମ ସମୂହରେ ପରିଶୋଭିତ ହେଲା । ୪୪ । ଉଦ୍ୟାନ ମାନଙ୍କ ମଧ୍ୟରେ ମତ୍ତ ମୟୁରମାନେ ଓ ସଦା ମତ୍ତ କୋକିଳ ନିକର ଶବ୍ଦ କଲେ; ଆଦର୍ଶ ପ୍ରାୟ ବିମଳ ଗୃହ ଓ ବିବିଧ ଲତା-ମଣ୍ଡପ ଦ୍ୱାରା ଉଦ୍ୟାନାବଳୀ ଶୋଭିତ ହେଲା । ୪୫ । ତନ୍ମଧ୍ୟରେ

ବହୁସଂଖ୍ୟକ ଚିତ୍ରଗୃହ, କ୍ରୀଡ଼ାନିମିତ୍ତ କୃତ୍ରିମ ପର୍ବତ ଓ ନିର୍ମଳ ଜଳ ପରିପୂର୍ଣ୍ଣ, ବିବିଧ ବାପୀ ଶ୍ରେଣୀ ନିର୍ମିତ ହେଲେ । ୪୬ । ଶ୍ୱେତ ଓ ରକ୍ତବର୍ଣ୍ଣର ବିବିଧ ପ୍ରକାର ପଦ୍ମ ପୁଷ୍ପ ସୁଗନ୍ଧମୟ ଓ ହଂସ, କାରଣ୍ଡବ, ଚକ୍ରବାକ ପ୍ରଭୃତି ଜଳଚର ପକ୍ଷୀ ଶୋଭିତ ରମଣୀୟ ସରୋବର ଓ ବହୁସଂଖ୍ୟକ ସୁରମ୍ୟ ତଡ଼ାଗ ଦ୍ୱାରା ସେ ନଗର ଶୋଭାନ୍ୱିତ ହେଲା । ୪୮ ।

ହେ ମହାରାଜ ! ସେହି ପୁଣ୍ୟ ଜନୋପେତ ମହତ୍ ପ୍ରଦେଶରେ ପ୍ରବେଶ କରି ପାଣ୍ଡବମାନଙ୍କର ନିତ୍ୟ ନିତ୍ୟ ସନ୍ତୋଷ ବୃଦ୍ଧି ହେଲା ।୪୯। ରାଜା ଧୃତରାଷ୍ଟ୍ର ଓ ଭୀଷ୍ମଙ୍କ ଦ୍ୱାରା ପ୍ରେରିତ ହୋଇ ପାଣ୍ଡବମାନେ ଖାଣ୍ଡବ ପ୍ରସ୍ଥରେ ବାସକରି ସୁଖରେ କାଳାତିପାତ କଲେ । ୫୦ । ନାଗମାନଙ୍କ ଦ୍ୱାରା ଯେପରି ଭୋଗବତୀ ଶୋଭିତ ହୁଅଇ, ସେହିପରି ଏ ପୁରଶ୍ରେଷ୍ଠ ଇନ୍ଦ୍ରଙ୍କ ସମ ପଞ୍ଚ ମହାବୀରଙ୍କ ଦ୍ୱାରା ଶୋଭା ସମନ୍ୱିତ ହେଲା । ୫୧ । ହେ ରାଜନ୍ ! ବଳରାମଙ୍କ ସହିତ ବୀର କୃଷ୍ଣ ଏହିରୂପେ ପାଣ୍ଡବମାନଙ୍କୁ ସେହି ରାଜ୍ୟରେ ସ୍ଥାପନ କରି ସେମାନଙ୍କ ସମ୍ମତି ଗ୍ରହଣପୂର୍ବକ ଦ୍ୱାରାବତୀ ପୁରକୁ ଗମନ କଲେ । ୫୨ ।

---

## ଅଧ୍ୟାୟ—୨୦୮

ଜନମେଜୟ ବୋଇଲେ—ହେ ତପୋଧନ ! ଏହି ପ୍ରକାରେ ମହାତ୍ମା ପାଣ୍ଡବମାନେ ରାଜ୍ୟପ୍ରାପ୍ତ ହୋଇ ତତ୍‌ପରେ କି କଲେ ? ଅମ୍ଭର ପିତାମହମାନେ ସମସ୍ତେ ମହାବଳ; ସେମାନଙ୍କ ଠାରେ ଧର୍ମ୍ମପତ୍ନୀ ଦ୍ରୌପଦୀ କି ପ୍ରକାରେ ଅନୁବର୍ତ୍ତିନୀ ହେଲେ ? । ୨ । ସେହି ମହାଭାଗ ପଞ୍ଚ ନରାଧିପମାନେ ଏକାକିନୀ କୃଷ୍ଣାଙ୍କ ଠାରେ ରହି ସୁଦ୍ଧା, କିପରି ସେମାନଙ୍କ ମଧ୍ୟରେ ଭେଦ ଜାତ ନ ହେଲା ? ହେ ତପୋଧନ ! ଅମ୍ଭେ ବିସ୍ତାର ପୂର୍ବକ ସର୍ବ ବୃତ୍ତାନ୍ତ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ, କୃଷ୍ଣାଙ୍କଠାରେ ସଂଯୁକ୍ତ ହୋଇ ସେମାନଙ୍କର ଅନ୍ୟୋନ୍ୟରେ କିପରି ଚେଷ୍ଟା ହୋଇଥିଲା ?

ବୈଶମ୍ପାୟନ ବୋଇଲେ—ପରନ୍ତପ ପାଣ୍ଡବମାନେ ଧୃତରାଷ୍ଟ୍ରଙ୍କ ଠାରୁ ଅନୁଜ୍ଞା ଲାଭ କରି କୃଷ୍ଣାଙ୍କ ସହ ଖାଣ୍ଡବ ପ୍ରସ୍ଥରେ ଆନନ୍ଦରେ ବାସ

କଲେ । ମହାତେଜା, ମହାତପସ୍ୱୀ, ସତ୍ୟସନ୍ଧ ଯୁଧିଷ୍ଠିର ରାଜ୍ୟ ପ୍ରାପ୍ତ ହୋଇ ଭ୍ରାତାମାନଙ୍କୁ ଘେନି ଧର୍ମପ୍ରମାଣେ ପୃଥିବୀ ପାଳନ କଲେ । ୬ । ମହାପ୍ରାଜ୍ଞ ଓ ସତ୍ୟଧର୍ମପରାୟଣ ପାଣ୍ଡୁ-ନନ୍ଦନମାନେ ଶତ୍ରୁମାନଙ୍କୁ ଜୟକରି ପରମାମୋଦରେ ସେଠାରେ ବସତି କଲେ । ୭ । ସେହି ପୁରୁଷଶ୍ରେଷ୍ଠ-ମାନେ ମହାମୂଲ୍ୟ ପାର୍ଥିବାସନରେ ଉପବେଶନ କରି ସମସ୍ତ ପୌରକାର୍ଯ୍ୟମାନ ନିର୍ବାହ କଲେ । ୮ ।

ଏକଦା ସେ ମହାତ୍ମାମାନେ ଉପବିଷ୍ଟ ହୋଇଅଛନ୍ତି, ଏମନ୍ତ ସମୟରେ ଦେବର୍ଷି ନାରଦ ଯଦୃଚ୍ଛାକ୍ରମେ ସେଠାରେ ଉପସ୍ଥିତ ହେଲେ । ୯ । ଧୀମାନ୍ ଯୁଧିଷ୍ଠିର ଋଷିଙ୍କୁ ସମାଗତ ଦେଖିବା ମାତ୍ରେ ତାହାଙ୍କୁ ସ୍ୱକୀୟ ରୁଚିର ଆସନକୁ ପ୍ରଦାନ କଲେ ଓ ଦେବର୍ଷି ଉପବିଷ୍ଟ ହୁଅନ୍ତେ ସ୍ୱୟଂ ଯଥାବିଧାନରେ ଅର୍ଘ୍ୟ ପ୍ରଦାନ କଲେ ଓ ଆପଣାର ରାଜ୍ୟକୁ ସେ ଋଷିଙ୍କୁ ସମର୍ପଣ କଲେ । ସେହି ପୂଜା ପ୍ରାପ୍ତ ହୋଇ ଋଷି ପ୍ରୀତମନା ହେଲେ ଓ ଯୁଧିଷ୍ଠିରଙ୍କୁ ଆଶୀର୍ବାଦ କରି ତାହାଙ୍କୁ ବସିବାର ଅନୁମତି ଦେଲେ ।

ରାଜା ଯୁଧିଷ୍ଠିର ଅନୁଜ୍ଞା ପ୍ରାପ୍ତ ହୋଇ ନିଷଣ୍ଣ ହେଲେ ଓ ଋଷିଙ୍କର ଆଗମନ ବାର୍ତ୍ତା କୃଷ୍ଣାଙ୍କ ନିକଟକୁ ପ୍ରେରଣ କଲେ । ତାହା ଶୁଣି ଦ୍ରୌପଦୀ ଶୁଚି ଓ ସମାହିତା ହୋଇ ଯେଉଁସ୍ଥଳରେ ପାଣ୍ଡବମାନଙ୍କ ସହ ମହର୍ଷି ନାରଦ ଅବସ୍ଥିତ କରୁଥିଲେ, ସେହି ସ୍ଥଳକୁ ଆଗମନ କଲେ । ଧର୍ମଚାରିଣୀ ଦ୍ରୁପଦାତ୍ମଜା କୃଷ୍ଣା ଦେବର୍ଷିଙ୍କ ଚରଣ ତଳେ ପ୍ରଣତିପୂର୍ବକ କୃତାଞ୍ଜଳି ପୁଟରେ ଅବଗୁଣ୍ଠନବତୀ ହୋଇ ଦଣ୍ଡାୟମାନା ହୋଇ ରହିଲେ । ସତ୍ୟବାଦୀ ଧର୍ମାତ୍ମା ଋଷିସତ୍ତମ ଭଗବାନ୍ ନାରଦ ଅନିନ୍ଦିତ୍ୟ ରାଜନନ୍ଦିନୀଙ୍କୁ ବିବିଧ ଆଶୀର୍ବାଦ କରି ଗମନ କରିବାକୁ ଆଜ୍ଞା ଦେଲେ । ୧୬ । ଦ୍ରୌପଦୀ ଗମନ କରନ୍ତେ ନିର୍ଜ୍ଜନରେ ପାଣ୍ଡବମାନଙ୍କୁ ଭଗବାନ୍ ଋଷି ବୋଇଲେ । ୧୭ ।

ନାରଦ ବୋଇଲେ—ଯଶସ୍ୱିନୀ ପାଞ୍ଚାଳୀ ଏକାକିନୀ ଆପଣ-ମାନଙ୍କର ଧର୍ମପତ୍ନୀ ଅଟନ୍ତି; ଆପଣମାନଙ୍କ ମଧ୍ୟରେ ଯେପରି ଭେଦ ଉପସ୍ଥିତ ନ ହୁଏ, ତଦ୍ରୂପ ନୀତି ବିଧାନ କର । ୧୮ । ପୂର୍ବକାଳରେ ତ୍ରିଲୋକ ବିଶ୍ରୁତ ଅନ୍ୟର ଅବଧ୍ୟ ସୁନ୍ଦ ଓ ଉପସୁନ୍ଦ ନାମରେ ଦୁଇଭ୍ରାତା ଏକତ୍ର ବାସ କରୁଥିଲେ । ଏକ ରାଜ୍ୟରେ, ଏକ ଗୃହରେ, ଏକ ଶଯ୍ୟାରେ,

ଏକ ଆସନରେ ଓ ଏକତ୍ର ଭୋଜନରେ ସେ ଦୁହେଁ କାଳାତିପାତ କରୁଥିଲେ; କିନ୍ତୁ ତିଲୋତ୍ତମାଙ୍କ ନିମିତ୍ତ ସେ ଦୁହେଁ ଅନ୍ୟୋଽନ୍ୟରେ ବିନଷ୍ଟ ହେଲେ । ୨୦ । ଅତଏବ ହେ ଯୁଧିଷ୍ଠିର ! ପରସ୍ପର ପ୍ରୀତିଭାବ ଯୁକ୍ତ ସୌହୃଦ୍ୟକୁ ରକ୍ଷା କର ଯେପରିକି ତୁମ୍ଭମାନଙ୍କ ମଧ୍ୟରେ ଭେଦ ଜାତ ନ ହୁଏ । ୨୧ ।

ଯୁଧିଷ୍ଠିର ବୋଇଲେ—ମହାମୁନେ ! ସୁନ୍ଦ ଓ ଉପସୁନ୍ଦ ଅସୁର ଦୁହେଁ କାହାର ପୁତ୍ର ଓ କିରୂପେ ସେମାନଙ୍କ ମଧ୍ୟରେ ଭେଦ ଉତ୍ପନ୍ନ ହୋଇଥିଲା ? କି ପ୍ରକାରେ ସେମାନେ ଅନ୍ୟୋଽନ୍ୟରେ ବିନଷ୍ଟ ହେଲେ । ୨୨ । ଯେଉଁ ରମଣୀ ନିମିତ୍ତ ସେମାନେ କାମମତ୍ତ ହୋଇ ପରସ୍ପର ପରସ୍ପରକୁ ବିନଷ୍ଟ କଲେ ସେହି ତିଲୋତ୍ତମା କାହାର ଦୁହିତା ? ସେ ରମଣୀ ଅପ୍‌ସରା କି ଦେବକନ୍ୟା ? ହେ ବ୍ରହ୍ମନ୍ ! ଏହି ସମସ୍ତ ବୃତ୍ତାନ୍ତ ବିସ୍ତାରରୂପେ ଶ୍ରବଣ କରିବାକୁ ଅଭିଳାଷ କରୁଅଛୁଁ; ଏତନ୍ନିମିତ୍ତ ଆମ୍ଭର ଅତିଶୟ କୌତୂହଳ ଜାତ ହେଉଅଛି । ୨୫ ।

---

## ଅଧ୍ୟାୟ—୨୦୯

ନାରଦ ବୋଇଲେ—ହେ ପାର୍ଥ ଯୁଧିଷ୍ଠିର ! ଭ୍ରାତୃଗଣଙ୍କ ସହିତ ତୁମ୍ଭେ ଏହି ପ୍ରାଚୀନ ଇତିହାସକୁ ଆମ୍ଭଠାରୁ ବିସ୍ତାରରୂପେ ଆନୁପୂର୍ବିକ ଶ୍ରବଣ କର । ୧ । ପୂର୍ବକାଳରେ ମହାସୁର ହିରଣ୍ୟ-କଶିପୁଙ୍କ ବଂଶରେ ନିକୁମ୍ଭ ନାମରେ ବଳବାନ୍ ଓ ତେଜସ୍ୱୀ ଗୋଟିଏ ଦୈତ୍ୟେନ୍ଦ୍ର ଜନ୍ମ ପରିଗ୍ରହ କରିଥିଲେ । ୨ । ତାହାଙ୍କର ଭୀମ ପରାକ୍ରମ, କ୍ରୂରଚିତ୍ତ, ମହାବୀର୍ଯ୍ୟ, ଦାରୁଣ ଦୁଇପୁତ୍ର ଉତ୍ପନ୍ନ ହୋଇଥିଲେ । ସେହି, ଦୁଇ ଦୈତ୍ୟରାଜ ସୁତଙ୍କ ମଧ୍ୟରେ ଜଣଙ୍କର ନାମ ସୁନ୍ଦ ଓ ଅପରଜଣଙ୍କର ନାମ ଉପସୁନ୍ଦ ଥିଲା । ୩ । ସେମାନେ ଦୁହେଁ ନିରନ୍ତର ଏକ ବିଷୟ ଓ ଏକ କାର୍ଯ୍ୟରେ ସମ୍ମତ ଥାନ୍ତି । ଏକୋଦ୍ୟମ ହୋଇ ସମାନରୂପେ ସୁଖ ଦୁଃଖରେ କାଳ ଯାପନ କରନ୍ତି । ୪ । ଜଣେ ନ ଖାଇଲେ ଅନ୍ୟ ଜଣକ ଭୋଜନ କରେ ନାହିଁ; ଜଣେ ନ ଆସିଲେ ଅନ୍ୟଜଣକ କୌଣସି ଠାକୁ ଗମନ କରେ ନାହିଁ; ଦୁହେଁ ଦୁହିଙ୍କର ପ୍ରିୟକାରୀ ଓ ପ୍ରିୟବାଦୀ ଥିଲେ । ୫ ।

ସେ ଦୁଇଭ୍ରାତାଙ୍କର ପ୍ରକୃତି ଏକ, ଦୁହିଙ୍କର ଆଚରଣ ସମାନ । ତାଙ୍କର କାର୍ଯ୍ୟ ଓ ଆଚରଣରୁ ବୋଧହୁଏ ଯେ ଜଣେ ବ୍ୟକ୍ତି ଦ୍ୱିବିଧ ହୋଇଅଛନ୍ତି । ସର୍ବକାର୍ଯ୍ୟରେ ଏକ ବୁଦ୍ଧି ହୋଇ ସେହି ମହାବୀର୍ଯ୍ୟ ଅସୁରଦ୍ୱୟ ଅତିଶୟ ବୃଦ୍ଧି ଲାଭକଲେ । ୬ । ସେମାନେ ତ୍ରୈଲୋକ୍ୟ ବିଜୟ ନିମିତ୍ତ ଏକ ନିଷ୍ଠୟ ହୋଇ ବିନ୍ଧ୍ୟପର୍ବତକୁ ଗମନ କଲେ; ସେଠାରେ ଦୀକ୍ଷିତ ଓ ସମାହିତ ହୋଇ ଉଗ୍ର ତପସ୍ୟା କରିବାରେ ରତ ହେଲେ । ୭ । ସେ ଦୁହେଁ ଜଟା ଓ ବଲ୍କଲଧାରୀ ହୋଇ କ୍ଷୁଧା ଓ ପିପାସାରେ ପରିଶ୍ରାନ୍ତ ହୋଇ ବହୁକାଳ ତପସ୍ୟାରେ ନିଯୁକ୍ତ ହେଲେ । ୮ । ତାହାଙ୍କର ସର୍ବାଙ୍ଗ ମଳୋପଚିତ ହେଲା ଓ ସେମାନେ ବାୟୁ ମାତ୍ର ଭକ୍ଷଣ କରି ଜୀବନଧାରଣ କଲେ, ପରିଶେଷରେ ଆପଣାର ମାଂସକୁ ଛେଦନ କରି ଅଗ୍ନିରେ ଆହୁତି ଦେଇ ପାଦାଙ୍ଗୁଷ୍ଠ ପରେ ନିର୍ଭର କରି ଅଧିଷ୍ଠିତ ହେଲେ; ସେହି ପ୍ରାୟ ରହି ଊର୍ଦ୍ଧ୍ୱବାହୁ ହୋଇ ଚକ୍ଷୁର ନିମିଷ ପାତ ନ କରି ବହୁକାଳ ପର୍ଯ୍ୟନ୍ତ ବ୍ରତଧାରୀ ହେଲେ । ୯ ।

ଦୀର୍ଘକାଳ ଅବଧି ତାହାଙ୍କ ତପସ୍ୟାରେ ପ୍ରତାପିତ ହୋଇ ବିନ୍ଧ୍ୟ ପର୍ବତ ଧୂମ ପ୍ରମୋଚନ କରି ଅଦ୍ଭୁତ ଆକାର ଧାରଣ କଲା । ୧୦ । ସେ ଦୁହିଙ୍କର ଉଗ୍ରତପସ୍ୟା ଦୃଷ୍ଟି କରି ଦେବତାମାନେ ଭୟାବିଷ୍ଟ ହେଲେ । ଓ ଯଦ୍ଦ୍ୱାରା ସେମାନଙ୍କର ତପସ୍ୟାର ବିଘ୍ନ ଘଟିବ, ତାହାର ଉପାୟମାନଙ୍କୁ ଚିନ୍ତା କଲେ । ୧୧ । ବହୁସଂଖ୍ୟକ ରତ୍ନ ଓ ସୁନ୍ଦରୀ ସ୍ତ୍ରୀ ଦ୍ୱାରା ପୁନଃ-ପୁନଃ ସେମାନଙ୍କ ତପସ୍ୟାଭଙ୍ଗ କରିବାକୁ ଉଦ୍ୟତ ହେଲେ । କିନ୍ତୁ ସେ ମହାବ୍ରତଧାରୀଙ୍କର ବ୍ରତ ଭଙ୍ଗ କରିବାକୁ ସମର୍ଥ ହେଲେ ନାହିଁ । ୧୨ । ତଦନନ୍ତର ଦେବତାମାନେ ମାୟା ବିସ୍ତାର କରି ସେ ଦୁଇ ମହାତ୍ମାଙ୍କ ସମକ୍ଷରେ ନାନାପ୍ରକାର ଉତ୍ପାତ ପ୍ରଦର୍ଶନ କଲେ; ଦୃଶ୍ୟ ହେଲା ଯେ ସେମାନଙ୍କର ଭଗିନୀ, ମାତା, ଭାର୍ଯ୍ୟା ଓ ଅପରାପର ସ୍ୱଜନମାନେ ଭ୍ରଷ୍ଟାଚରଣ, ଭ୍ରଷ୍ଟକେଶ ଓ ଗଳିତବସନ ହୋଇ ଶୂଳ-ଧାରୀ ରାକ୍ଷସ କର୍ତ୍ତୃକ ପ୍ରତାଡ଼ିତ ହେବାରୁ ଅତିଶୟ ତ୍ରସ୍ତ ଚିତ୍ତରେ ସେ ଦୁଇ ଅସୁରଙ୍କ ନିକଟରେ ତ୍ରାହି ତ୍ରାହି ଶବ୍ଦରେ ଚିତ୍କାର ଓ ରୋଦନ କଲେ; ତଥାପି ସେ ମହାବ୍ରତୀ ଦୁହେଁ ବ୍ରତର ଭଙ୍ଗକୁ ଆଚରିଲେ ନାହିଁ । ୧୫ । ଯେତେବେଳେ ଦେଖିଲେ ଯେ ଦୁହିଁଙ୍କ ମଧ୍ୟରେ କେହି ତହିଁରେ କ୍ଷୁବ୍ଧ ଓ କାତର ନ ହେଲେ, ତହୁଁ ସେ ସ୍ତ୍ରୀ ଓ ରାକ୍ଷସ ପ୍ରଭୃତି ସମସ୍ତେ ଅନ୍ତର୍ହିତ ହେଲେ । ୧୬ ।

ତଦନନ୍ତର ସର୍ବଲୋକ ହିତକାରୀ ପ୍ରଭୁ ପିତାମହ ସେହି ଦୁଇ ମହାସୁରଙ୍କର ସମକ୍ଷରେ ଉପସ୍ଥିତ ହୋଇ ସେମାନଙ୍କୁ ବର ପ୍ରାର୍ଥନା କରିବାକୁ କହିଲେ । ୧୭ । ତହିଁରେ ଦୃଢ଼ ବିକ୍ରମ ସୁନ୍ଦୋପସୁନ୍ଦ ଭ୍ରାତୃଦ୍ୱୟ ପ୍ରଭୁ ପିତାମହଙ୍କୁ ଅବଲୋକନ କରି କୃତାଞ୍ଜଳି ପୁଟରେ ଦଣ୍ଡାୟମାନ ହେଲେ ଓ ଦୁହେଁ ଏକତ୍ର ହୋଇ କହିଲେ, ହେ ପ୍ରଭୋ ପିତାମହ ! ଯଦି ଆମ୍ଭମାନଙ୍କ ତପସ୍ୟାରେ ଆପଣ ପ୍ରୀତ ଓ ପ୍ରସନ୍ନ ହୋଇଥାନ୍ତି, ତେବେ ଆମ୍ଭମାନଙ୍କୁ ଏହି ବର ଦେଉନ୍ତୁ ଯେ ଅମ୍ଭେମାନେ ମାୟାବିତ୍, ଅସ୍ତ୍ରବିତ୍, ବଳବାନ୍, କାମରୂପୀ ଓ ଅମର ହେଉଁ । ୨୦ ।

ବ୍ରହ୍ମା ବୋଇଲେ—ତୁମ୍ଭେମାନେ ଯାହା ଯାହା ପ୍ରାର୍ଥନା କଲ ତନ୍ମଧ୍ୟରେ ଅମରତ୍ୱ ବ୍ୟତୀତ ଆଉ ସମସ୍ତ ତୁମ୍ଭର ସିଦ୍ଧ ହେବ । ପରନ୍ତୁ ତୁମ୍ଭେମାନେ ଅମରତ୍ୱ ବ୍ୟତୀତ ଅନ୍ୟ ଏ ରୂପ କୌଣସି ବର ପ୍ରାର୍ଥନା କର ଯାହା ଦ୍ୱାରା ତୁମ୍ଭେମାନେ ଅମରତୁଲ୍ୟ ହେବ । ୨୧ । "ଅମ୍ଭେମାନେ ତ୍ରିଲୋକର ପ୍ରଭୁ ହେବୁଁ ।" ଏହି କାମନାରେ ତୁମ୍ଭେ ତପସ୍ୟା ଆରମ୍ଭ କରିଥିଲ, ଅତଏବ ଅମରତ୍ୱ ଲାଭ ନିମିତ୍ତ ଲୋଭ କରିବା ତୁମ୍ଭର ବିଧେୟ ନୁହଇ । ୨୨ । ହେ ଦୈତ୍ୟେନ୍ଦ୍ର ଦ୍ୱୟ ! ତ୍ରୈଲୋକ୍ୟ ବିଜୟ ନିମିତ୍ତ ତୁମ୍ଭେ ଦୁହେଁ ତପସ୍ୟା କରୁଥିଲ, ଏହି ହେତୁରୁ ତୁମ୍ଭର ଅମରତ୍ୱ ପ୍ରାର୍ଥନା ଅଗ୍ରାହ୍ୟ କଲୁଁ । ୨୩ ।

ସୁନ୍ଦୋପସୁନ୍ଦ ଦୁହେଁ ବୋଇଲେ ହେ ପିତାମହ ! ଆମ୍ଭ ମଧ୍ୟରୁ ଅନ୍ୟୋନ୍ୟ ବ୍ୟତିରେକେ ତ୍ରିଲୋକରେ ସ୍ଥାବର ଜଙ୍ଗମ ପ୍ରଭୃତି ଯେତେ ପଦାର୍ଥ ଅଛି, ତହିଁରୁ ଆମ୍ଭର ଭୟ ନ ହେଉ । ୨୪ ।

ପିତାମହ ବୋଇଲେ—ତୁମ୍ଭେମାନେ ଯାହା ପ୍ରାର୍ଥନା କଲ ଓ ଯାହା କହିଲ, ତାହା ଅମ୍ଭେ ତୁମ୍ଭଙ୍କୁ ଦାନ କଲୁଁ; ତୁମ୍ଭର ମୃତ୍ୟୁର ବିଧାନ ତୁମ୍ଭର ପରସ୍ପରଠାରୁ ସଂଘଟିତ ହେବ । ୨୫ ।

ନାରଦ କହିଲେ—ଅନନ୍ତର ପିତାମହ ସେ ଦୁହିଙ୍କୁ ବର ପ୍ରଦାନ ପୂର୍ବକ ତପସ୍ୟାରୁ ନିବୃତ୍ତ କରି ବ୍ରହ୍ମଲୋକକୁ ଗମନ କଲେ ।୨୬। ଅନନ୍ତର ଉଭୟ ଭ୍ରାତା ଦୈତ୍ୟେନ୍ଦ୍ର ଦ୍ୱୟ ବର ଲାଭ କରି ସର୍ବଲୋକର ଅବଧ ହୋଇ ସ୍ୱକୀୟ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ୨୭ । ସେ ମନସ୍ୱୀ ଦ୍ୱୟଙ୍କୁ ଲବ୍ଧ-ବର ଓ ଲବ୍ଧ-ମନୋରଥ ହେବାର ଦେଖି ତାହାଙ୍କର

ସୁହୃଦ୍‌ବର୍ଗ ଅତିଶୟ ଆନନ୍ଦିତ ହେଲେ । ୨୮ । ତତ୍ପରେ ସେମାନେ ଜଟାକୁ ପରିତ୍ୟାଗ କରି ମୁକୁଟ ଧାରଣ କଲେ, ମହାମୂଲ୍ୟ ଆଭରଣରେ ଓ ନିର୍ମ୍ମଳ ବସନରେ ବିଭୂଷିତ ହୋଇ ଦିବ୍ୟରୂପ ଧାରଣ କଲେ । ୨୯ । ଅକାଳ କୌମୁଦୀର ମହୋତ୍ସବକୁ * ସର୍ବ କାଳରେ ପ୍ରବର୍ତ୍ତିତ କଲେ ଓ ତାହାଙ୍କର ସୁହୃଜ୍ଜନମାନେ ନିତ୍ୟ ପ୍ରମୁଦିତହୋଇ କାଳ ଯାପନ କଲେ । ୩୦ । ପ୍ରତି ଗୃହରେ କେବଳ ଭକ୍ଷଣ କର, ଭୋଜନ କର, ଦାନକର, କ୍ରୀଡ଼ାକର, ଗାନ କର, ପାନ କର । ଏହି ରୂପ ଶବ୍ଦମାନ ନିରନ୍ତର ଉଚ୍ଚାରିତ ହେଲା । ୩୧ । ମହାନାଦ ସମ୍ବଳିତ କରତଳ ଧ୍ୱନି ଦ୍ୱାରା ଦୈତ୍ୟମାନଙ୍କ ପୁର ପ୍ରମୋଦରେ ପରିପୂରିତ ହେଲା । ୩୨ । କାମରୂପୀ-ଦୈତ୍ୟବୃନ୍ଦ ମହାନନ୍ଦରେ ସେହି ବିବିଧ ବିହାରରେ ରତ ଥାଇ ଏକ ବର୍ଷକୁ ଏକଦିନ ବୋଲି ବୋଧ କଲେ । ୩୩ ।

---

## ଅଧ୍ୟାୟ—୨୧୦

ନାରଦ ବୋଇଲେ—ଅକାଳ କୌମୁଦୀ ଉତ୍ସବ ପରିସମାପ୍ତ ହୁଅନ୍ତେ, ତ୍ରୈଲୋକ୍ୟାଭିଳାଷୀ ହୋଇ ଦୁଇଭ୍ରାତା ପରସ୍ପର ମନ୍ତ୍ରଣା କରି ସେନାପାନଙ୍କୁ ସୁସଜ୍ଜିତ ହେବାର ଆଦେଶ କଲେ । ୧ । ସେମାନେ ସୁହୃତ୍, ବୃଦ୍ଧ ଦୈତ୍ୟ ଓ ମନ୍ତ୍ରୀମାନଙ୍କଠାରୁ ଅନୁଜ୍ଞା ନେଇ ରାତ୍ରିରେ ପ୍ରାସ୍ଥାନିକ କର୍ମ୍ମ ସମାପ୍ତ କଲେ । ସେହି ରାତ୍ରିରେ ମଘା ନକ୍ଷତ୍ରରେ ଯାତ୍ରା ଆରମ୍ଭ ହେଲା । ୨ । ଗଦା, ପଟ୍ଟିଶ, ଶୂଳ ଓ ମୁଦ୍‌ଗର ଧାରଣୀ ମହତୀ ଦୈତ୍ୟସେନା ସମଭିବ୍ୟାହାରରେ ନିଷ୍କ୍ରାନ୍ତ ହେଲେ । ୩ । ମଙ୍ଗଳପ୍ରଦ ସ୍ତୁତିପାଠକ ଓ ବିଜୟ କଥକ ଚାରଣ ମାନଙ୍କ ଦ୍ୱାରା ସ୍ତୂୟମାନ ହୋଇ ସେ ଦୈତ୍ୟ ରାଜସୁତ ଦୁହେଁ ପରମ ହର୍ଷରେ ଗମନ କଲେ । ୪ । ଯୁଦ୍ଧ-ଦୁର୍ମ୍ମଦ କାମଗାମୀ ଦୈତ୍ୟରାଜ ଦ୍ୱୟ ପ୍ରଥମେ ଅନ୍ତରୀକ୍ଷକୁ ଉପ୍ତତିତ ହୋଇ ଦେବତାମାନଙ୍କ ଭବନକୁ ଗମନ କଲେ । ୫ । ତଦନନ୍ତର ସୁରଗଣ ସେମାନଙ୍କର ଆଗମନ ଶ୍ରବଣ କରି ଓ ବ୍ରହ୍ମାଙ୍କର ପ୍ରଦତ୍ତ ବର ସ୍ମରଣ କରି ତ୍ରିପିଷ୍ଟପକୁ ପରିତ୍ୟାଗ କରି ବ୍ରହ୍ମଲୋକକୁ ଗମନ କଲେ । ୬ ।

---

* କାର୍ତ୍ତିକ ପୂର୍ଣ୍ଣିମାର ଉତ୍ସବକୁ କୌମୁଦୀ ବୋଲାଯାଏ । ସର୍ବ ସମୟରେ ତଦ୍ରୂପ ଉତ୍ସବ କଲେ ।

ତୀବ୍ର ବିକ୍ରମଶାଳୀ ଦୈତ୍ୟଦ୍ୱୟ ଇନ୍ଦ୍ରଲୋକକୁ ଜୟ କରି, ଯକ୍ଷ ଓ ରକ୍ଷୋଗଣଙ୍କୁ ଅଥଚ ଅନ୍ୟାନ୍ୟ ଆକାଶଗାମୀ ପ୍ରାଣୀମାନଙ୍କୁ ପରାସ୍ତ କରି ଗମନ କଲେ । ୭ । ସେହି ମହାରଥ ଦ୍ୱୟ ଭୂମିର ଅନ୍ତର୍ଗତ ନାଗମାନଙ୍କୁ ଜୟ କରି ସମୁଦ୍ର ବାସିନୀ ସର୍ବ ମ୍ଲେଚ୍ଛଜାତିଙ୍କୁ ପରାସ୍ତ କଲେ । ୮ ।

ଅନନ୍ତର ଉଗ୍ରଶାସନ ସେହି ମହାରଥ ଭ୍ରାତୃଦ୍ୱୟ ସମଗ୍ର ଭୂମଣ୍ଡଳକୁ ପରାଜିତ କରିବାକୁ ଉଦ୍ୟତ ହୋଇ ସୈନ୍ୟମାନଙ୍କୁ ଆହ୍ୱାନ ପୂର୍ବକ ଏହିରୂପ ସୁତୀକ୍ଷ୍ଣ ବାକ୍ୟ କହିଲେ ଯେ ରାଜର୍ଷିମାନେ ମହା-ଯଜ୍ଞଦ୍ୱାରା ଓ ବ୍ରାହ୍ମଣମାନେ ହବ୍ୟକବ୍ୟ ଦ୍ୱାରା ଦେବଗଣଙ୍କର ତେଜ, ବଳ ଓ ଶ୍ରୀବର୍ଦ୍ଧନ କରନ୍ତି; ଅତଏବ ସେହିସବୁ ବ୍ୟକ୍ତି ଅମ୍ଭମାନଙ୍କର ଶତ୍ରୁ; ଅତଏବ ଅମ୍ଭେମାନେ ସମସ୍ତେ ଏକତ୍ର ହୋଇ ସର୍ବତୋଭାବେ ସେମାନଙ୍କୁ ବଧ କରିବା ! ୧୧ । ମହା ସମୁଦ୍ରର ପୂର୍ବ ତୀରରେ ଏହିପରି ସମସ୍ତଙ୍କୁ ଆଦେଶ ଦେଇ କ୍ରୂରମତିକୁ ଧାରଣ କରି ସର୍ବଦିଗରେ ଦ୍ରୁତଗତିରେ ପ୍ରଧାବିତ ହେଲେ । ୧୨ । ସେହି ବଳିଷ୍ଠ ଭ୍ରାତୃଦ୍ୱୟ ଯାହାକୁ ଯଜ୍ଞ କରିବାର ଦେଖିଲେ କି ଯାଜନ କରିବାର ଦେଖିଲେ ସେହି ବ୍ରାହ୍ମଣ-ମାନଙ୍କୁ ଅଗ୍ରେ ବଳପୂର୍ବକ ହତ୍ୟା କଲେ । ୧୩ । ସେ ଅସୁର ଦ୍ୱୟଙ୍କର ସେନାମାନେ ବିଶ୍ୱାସ ଜନ୍ମାଇ କିତେନ୍ଦ୍ରିୟ ମୁନିମାନଙ୍କ ଆଶ୍ରମର ଅଭ୍ୟନ୍ତରରେ ପ୍ରବିଷ୍ଟ ହୋଇ ସେମାନଙ୍କର ଅଗ୍ନିହୋତ୍ରକୁ ଗ୍ରହଣ କରି ଜଳରେ ନିକ୍ଷେପ କଲେ । ୧୪ ।

ମହାତ୍ମା ତପୋଧନ ମାନେ କ୍ରୁଦ୍ଧ ହୋଇ ଅଭିଶାପ ପ୍ରଦାନ କଲେ; କିନ୍ତୁ ବ୍ରହ୍ମାଙ୍କ ବଳର ପ୍ରବଳତା ହେତୁ ସେ ସମସ୍ତ ବିଫଳ ହେଲା; ଅସୁରମାନେ ଶାପଦ୍ୱାରା ଆକ୍ରାନ୍ତ ହେଲେ ନାହିଁ । ୧୫ । ଶିଳାରେ ଶର ପ୍ରହାର କଲେ ତାହା ଯେପରି ବିଫଳ ହୁଏ, ତଦ୍ରୂପ ଋଷିମାନଙ୍କର ଅଭିଶାପମାନ ନିଷ୍ଫଳ ହେବାରୁ ଦ୍ୱିଜମାନେ ତପସ୍ୟାଦି ବ୍ରତ ପରିତ୍ୟାଗ କରି ପଳାୟନ କଲେ । ୧୬ । ଭୂମଣ୍ଡଳରେ ଯେତେ ଶମପରାୟଣ ଦାନ୍ତ ଓ ତପଃସିଦ୍ଧ ଋଷି ଥିଲେ, ସେମାନେ ମଧ୍ୟ ଗରୁଡ଼ଙ୍କ ଭୟରେ ସର୍ପମାନେ ପଳାୟନ କଲାପ୍ରାୟ, ବିଦ୍ରୁତ ହେଲେ । ୧୭ । ଏହିରୂପେ ଆଶ୍ରମମାନେ ମଥିତ ଓ କଳଶ, ଶ୍ରୁବ ପ୍ରଭୃତି ଯଜ୍ଞପାତ୍ର ମାନ ବିକୀର୍ଣ୍ଣ ଓ ଭଗ୍ନ ହେବାରୁ ସମୁଦାୟ ଜଗତ ପ୍ରଳୟ କାଳୀନ ଶୂନ୍ୟ ରୂପକୁ ଧାରଣ କଲା । ୧୮ ।

ହେ ରାଜନ୍ ! ତଦନନ୍ତର ଋଷିମାନେ ଲୁକ୍‌କାୟିତ ଓ ଅଦୃଶ୍ୟ ହେବାରୁ ସେହି ଦୁଇ ମହାସୁର ସେମାନଙ୍କ ବଧ ନିମିତ୍ତ କୃତ ନିଶ୍ଚୟ ହୋଇ ବିବିଧ ରୂପ ଧାରଣ କରିବାକୁ ଆରମ୍ଭ କଲେ, କେତେବେଳେ ସେମାନେ ଗଳିତ ମଦ କୁଞ୍ଜର ରୂପକୁ ଧାରଣ କରି ଦୁର୍ଗମଧ୍ୟରେ ତପସ୍ୱୀମାନଙ୍କୁ ଖୋଜି ଯମ ସଦନକୁ ପ୍ରେରଣ କଲେ, ସେହି କ୍ରୂର ଅସୁର ଦ୍ୱୟ କେତେବେଳେ ସିଂହମୂର୍ତ୍ତି କେତେବେଳେ ଅବା ବ୍ୟାଘ୍ର-ରୂପଧାରୀ ହୋଇ କେତେବେଳେ ଅବା ଅନ୍ତର୍ହିତ ହୋଇ ବିବିଧ ଉପାୟ ଦ୍ୱାରା ଋଷିମାନଙ୍କୁ ବିନଷ୍ଟ କଲେ । ୨୧ ।

ବସୁଧାରେ ତେତେବେଳେ ଯଜ୍ଞ ଓ ସ୍ୱାଧ୍ୟାୟ ନିବୃତ୍ତ ହେଲା । ଦ୍ୱିଜ ଓ ନୃପତି ମାନେ ବିନଷ୍ଟ ହେଲେ, ଉତ୍ସବ ଓ ଯଜ୍ଞମାନ ଉତ୍ସନ୍ନ ହେଲା । ୨୨ । ଲୋକମାନେ ଭୟାର୍ତ୍ତ ହୋଇ ହାହାକାର କଲେ । ବିପଣି ଓ ଆପଣ ସବୁ ନିବୃତ୍ତ ହେଲା; ଦେବ କାର୍ଯ୍ୟ, ପୁଣ୍ୟକାର୍ଯ୍ୟ ଓ ବିବାହ କାର୍ଯ୍ୟମାନ ବର୍ଜ୍ଜିତ ହେଲା, କୃଷି ଓ ଗୋରକ୍ଷା ନିବୃତ୍ତ ହେଲା, ନଗର ଓ ଆଶ୍ରମମାନେ ବିଧ୍ୱସ୍ତ ହେଲେ, ଅସ୍ଥି ଓ କଙ୍କାଳ ଦ୍ୱାରା ଭୂପୃଷ୍ଠ ବିକୀର୍ଣ୍ଣ ହୋଇ ଭୟାବହ ଦର୍ଶନ ଧାରଣ କଲା । ୨୪ । ପିତୃ-କାର୍ଯ୍ୟ ଓ ମଙ୍ଗଳକାର୍ଯ୍ୟମାନ ସାଧିତ ନ ହେବାରୁ ସମୁଦାୟ ଜଗତ୍ ଭୟଙ୍କର ଓ ଦୁଷ୍‌ପ୍ରେକ୍ଷଣୀୟ ହେଲା । ୨୫ ।

ସୁନ୍ଦ ଓ ଉପସୁନ୍ଦ ଦୁହିଁଙ୍କର ତାଦୃଶ କାର୍ଯ୍ୟ ବିଲୋକନ କରି ଚନ୍ଦ୍ର, ଆଦିତ୍ୟ, ଗ୍ରହଗଣ, ନକ୍ଷତ୍ରମାନେ ଓ ଦେବତାମାନେ ବିଷାଦ ପ୍ରାପ୍ତ ହେଲେ । ୨୬ । ଏହି ପ୍ରକାରେ କ୍ରୂର କର୍ମ ଦ୍ୱାରା ଦୈତ୍ୟମାନେ ସର୍ବଦିଗମାନଙ୍କୁ ଜୟ କରି ନିଃସପତ୍ନ ହୋଇ କୁରୁକ୍ଷେତ୍ରରେ ବସତି ସ୍ଥାପନ କଲେ । ୨୭ ।

## ଅଧ୍ୟାୟ—୨୧୧

ନାରଦ ବୋଇଲେ—ତଦନନ୍ତର, ସମନ୍ୱିତ ମହର୍ଷି, ଦେବର୍ଷି, ପରମର୍ଷି ଓ ସିଦ୍ଧଗଣ ସେହି କଦନକୁ ଦର୍ଶନ କରି ଅତି ଦୁଃଖିତ ହେଲେ ।୧। ଜିତକ୍ରୋଧ, ଜିତାତ୍ମା ଓ ଜିତେନ୍ଦ୍ରିୟ ଋଷିମାନେ ଜଗତ ପ୍ରତି କୃପାନ୍ୱିତ ହୋଇ ପିତାମହଙ୍କ ଭବନକୁ ଗମନ କଲେ ।୨। ତତ୍ପରେ ସେଠାକୁ ଯାଇ ଦେଖିଲେ ଯେ ଦେବତାମାନଙ୍କ ସହି ପିତାମହ ଆସୀନ ହୋଇଅଛନ୍ତି ଓ ସିଦ୍ଧଗଣ ଏବଂ ବ୍ରହ୍ମର୍ଷିଗଣ ଚତୁଃ-ପାର୍ଶ୍ୱରେ ବେଷ୍ଟନ କରି ଅବସ୍ଥିତ ହୋଇ ଅଛନ୍ତି ।୩। ସେହିଠାରେ ଦେବଦେବ ମହାଦେବ, ଅଗ୍ନି, ବାୟୁ, ଚନ୍ଦ୍ର ଓ ସୂର୍ଯ୍ୟ ଦୁହେଁ, ଇନ୍ଦ୍ର, ବ୍ରହ୍ମନିଷ୍ଠ ଋଷିଗଣ, ବୈଖାନସ, ବାଲଖିଲ୍ୟ, ବାନପ୍ରସ୍ଥ, ମରୀଚିପ, ଅଜ, ଅବିମୂଢ଼ ଓ ତେଜୋଗର୍ଭ ତପସ୍ୱୀମାନେ ଓ ଋଷିମାନେ ସମସ୍ତେ ଯାଇ ପିତାମହଙ୍କ ନିକଟରେ ଉପସ୍ଥିତ ହେଲେ । ତଦନନ୍ତର ମହର୍ଷିମାନେ ସମସ୍ତେ ବ୍ରହ୍ମାଙ୍କ ସମ୍ମୁଖବର୍ତ୍ତୀ ହୋଇ ଦୀନଭାବରେ ସୁନ୍ଦ ଓ ଉପସୁନ୍ଦର କୃତ୍ୟ ନିବେଦନ କଲେ, ସେ ଦୈତ୍ୟ ଯେଉଁ ପ୍ରକାରେ ଉଦ୍ୟମ କରି ଯେ ରୂପ କରିଥିଲେ ଓ ଯେପରି ସମସ୍ତଙ୍କୁ ସଂହାର କରିଥିଲେ ତତ୍ସମୁଦାୟ ଯଥାକ୍ରମେ ଆଦ୍ୟୋପାନ୍ତ ବର୍ଣ୍ଣନ କଲେ । ତତ୍ପରେ ସବୁ ଦେବତାମାନେ ଓ ପରମର୍ଷିମାନେ ସେହି ବିଷୟରେ ପିତାମହଙ୍କୁ ଅନୁରୋଧ କଲେ । ପିତାମହ ସେ ସମସ୍ତଙ୍କର ବଚନ ଶ୍ରବଣ କରି ମୁହୂର୍ତ୍ତେ ମାତ୍ର ଚିନ୍ତାକରି କର୍ତ୍ତବ୍ୟ ନିଶ୍ଚୟ ପୂର୍ବକ ସୁନ୍ଦୋପସୁନ୍ଦଙ୍କର ବଧ ଉଦ୍ଦେଶ୍ୟରେ ବିଶ୍ୱକର୍ମାଙ୍କୁ ଆହ୍ୱାନ କଲେ ।୧୦।

ବିଶ୍ୱକର୍ମା ଆସନ୍ତେ ତାହାଙ୍କ ପ୍ରତି ଦୃଷ୍ଟିପାତ କରି ମହାତପା ପିତାମହ ଆଦେଶ କଲେ, "ଗୋଟିଏ ଅତିଶୟ ରମଣୀୟ ପ୍ରମଦା ସୃଷ୍ଟିକର" ।୧୧। ବିଶ୍ୱକର୍ମା ପିତାମହଙ୍କୁ ନମସ୍କାର କରି ତାହାଙ୍କ ଆଜ୍ଞା ପ୍ରମାଣେ ପ୍ରଯତ୍ନ ପୂର୍ବକ ଗୋଟିଏ ଦିବ୍ୟ ନାରୀକୁ ନିର୍ମାଣ କଲେ ।୧୨। ତ୍ରିଲୋକରେ ସ୍ଥାବର ଓ ଜଙ୍ଗମ ମଧ୍ୟରେ ଯାହା କିଛି ସୁନ୍ଦର ଅଛି ତାହାସବୁ ସେ ବିଶ୍ୱବିତ୍ ଆଣି ସେହି କାମିନୀଠାରେ ସନ୍ନିବିଷ୍ଟ କଲେ ।୧୩। କୋଟି କୋଟି ରତ୍ନମାନ ଆଣି ତାହାର ଶରୀରରେ ନିବିଷ୍ଟ କଲେ । ରତ୍ନ-ସମୂହ-ମୟୀ ଦେବ-ରୂପିଣୀ ସେହି କନ୍ୟାକୁ ନିର୍ମାଣ କଲେ ।୧୪। ବିଶ୍ୱକର୍ମାଙ୍କ ଦ୍ୱାରା ପ୍ରଯତ୍ନ ପୂର୍ବକ ନିର୍ମିତ

ହେବାରୁ ତ୍ରିଲୋକର କୌଣସି ନାରୀ ତାହାଙ୍କର ପ୍ରତିମ ହେଲେ ନାହିଁ । ୧୫ । ତାହାଙ୍କର ଗାତ୍ରରେ ଏପରି କୌଣସି ସୂକ୍ଷ୍ମସ୍ଥାନ ଥିଲା ନାହିଁ, ଯେଉଁଠାରେ କି ଦୃଷ୍ଟି ନିପତିତ ହେଲେଁ ନିରୀକ୍ଷଣକାରୀର ଦୃଷ୍ଟି ସଜ୍ଜିତ ନ ହେବ ? । ୧୬ । ଲକ୍ଷ୍ମୀ ସ୍ୱୟଂ ବିଗ୍ରହ ଧାରଣ କଲା ପ୍ରାୟ ସେହି ବପୁଷ୍ମତୀ କାମିନୀ ସର୍ବ ପ୍ରାଣୀଙ୍କର ଚକ୍ଷୁ ଓ ମନ ହରଣ କଲେ । ୧୭ । ସବୁ ରତ୍ନରୁ ତିଲେ ତିଲେ ଅଣି ଏହି ନାରୀ ବିନିର୍ମିତ ହୋଇ ଥିବାରୁ ପିତାମହ ତାହାଙ୍କର ନାମ ତିଲୋତ୍ତମା ଦେଲେ । ୧୮ । ବ୍ରହ୍ମାଙ୍କୁ ନମସ୍କାର କରି ସେ ନାରୀ କୃତାଞ୍ଜଳି ହୋଇ ବୋଇଲେ, "ହେ ଭୂତେଶ ! ଅମ୍ଭଙ୍କୁ ଯେ ନିର୍ମ୍ମାଣ କରିବା ହେଲେ, ଅମ୍ଭେଠାରେ କି ପ୍ରୟୋଜନ ଅଛି ?" ଅଜ୍ଞା ହେଉ ।

ପିତାମହ ବୋଇଲେ, ହେ ଭଦ୍ରେ ! ତିଲୋତ୍ତମେ ! ତୁମ୍ଭେ ସୁନ୍ଦୋପସୁନ୍ଦଙ୍କ ନିକଟକୁ ଯାଇ, ଆପଣର ପ୍ରାର୍ଥନୀୟ ରୂପ ଦ୍ୱାରା ସେ ଦୁହିଙ୍କୁ ପ୍ରଲୋଭିତ କରି ବଶୀଭୂତ କର । ତୁମ୍ଭର ରୂପ ସମ୍ପତ୍ ଦେଖିଲା ମାତ୍ରେ, ସେ ଦୁହିଁଙ୍କ ମଧ୍ୟରେ ଯେପରି ପରସ୍ପର ବିରୋଧ ହୁଏ ତାହାର ବ୍ୟବସ୍ଥା କର । ୨୧ ।

ନାରଦ ବୋଇଲେ—ସେ ନାରୀ 'ତଥା' ବୋଲି କହି ପିତାମହଙ୍କୁ ନମସ୍କାର କରି ତାହାଙ୍କୁ ଓ ଅନ୍ୟାନ୍ୟ ବିବୁଧମାନଙ୍କୁ ପ୍ରଦକ୍ଷିଣ କରିବାକୁ ଅରମ୍ଭ କଲେ । ୨୨ । ଭଗବାନ୍ ବିଷ୍ଣୁ ପୂର୍ବାଭିମୁଖ ହୋଇ ବସିଥିଲେ, ମହେଶ୍ୱର ଦକ୍ଷିଣକୁ ମୁଖ କରିଥିଲେ, ଦେବତାମାନେ ଉତ୍ତରାଭିମୁଖୀ ହୋଇ ଆସୀନ ହୋଇଥିଲେ । ଋଷିମାନେ ନାନାଦିଗକୁ ମୁଖ କରି ଉପବିଷ୍ଟ ହୋଇଥିଲେ । ୨୩ । ତିଲୋତ୍ତମା ଯେତେବେଳେ ପ୍ରଦକ୍ଷିଣ କରିବାକୁ ପ୍ରବୃତ୍ତ ହେଲେ, ତେତେବେଳେ ଇନ୍ଦ୍ର ଓ ଭଗବାନ୍ ମହେଶ୍ୱର ଧୈର୍ଯ୍ୟାବଲମ୍ବନ କରି ସ୍ଥିତ ହେଲେ । ୨୪ । ମହେଶ୍ୱରଙ୍କର ପାର୍ଶ୍ୱ ଦେଇ ଗମନ କରିବାବେଳେ, ଦେବଙ୍କର ଅତିଶୟ ଦର୍ଶନ ଲାଳସା ହେବାରୁ, ଦକ୍ଷିଣରେ ତାହାଙ୍କର ଆଉ ଗୋଟିଏ ପଦ୍ମ-ପଳାଶ-ଲୋଚନ ବିଭୂଷିତ ମୁଖ ନିଃସୃତ ହେଲା । ୨୫ । ତିଲୋତ୍ତମା ଯେତେବେଳେ ତାହାଙ୍କର ପୃଷ୍ଠବର୍ତ୍ତିନୀ ହେଲେ, ସେତେବେଳେ ତାହାଙ୍କର ଆଉ ଗୋଟିଏ ମୁଖ ପଶ୍ଚାତ୍ ଭାଗରେ ଜାତ ହେଲା । ପୁନର୍ବାର ସେହି କାମିନୀ ଯେତେବେଳେ ତାହାଙ୍କର ଉତ୍ତର ପାର୍ଶ୍ୱିନୀ ହେଲେ, ସେତେବେଳେ ସେହି

ବାମଦାଗରେ ତାହାଙ୍କର ଅନ୍ୟ ଗୋଟିଏ ମୁଖ ବହିଃସୃତ ହେଲା । ୨୬ । ମହେନ୍ଦ୍ରଙ୍କର ମଧ୍ୟ ଦର୍ଶନାକାଙ୍କ୍ଷା ପ୍ରବଳ ହେବାରୁ ତାହାଙ୍କର ଶରୀରର ପୃଷ୍ଠଭାଗରେ, ପାର୍ଶ୍ୱରେ ଓ ଅଗ୍ରରେ ସର୍ବତ୍ର ରକ୍ତବର୍ଣ୍ଣ ଓ ବିଶାଳ ସହସ୍ର ସଂଖ୍ୟକ ନେତ୍ର ଉଦ୍ଭୂତ ହେଲା । ୨୭ ।

ଏହି ରୂପେ ପୂର୍ବେ ମହାଦେବ ଚତୁର୍ମୁଖ ହୋଇଥିଲେ ଓ ବଳସୂଦନ ମହେନ୍ଦ୍ର ସହସ୍ରାକ୍ଷ ଆଖ୍ୟାରେ ବିଦିତ ହୋଇଥିଲେ । ୨୮ । ପ୍ରଦକ୍ଷିଣ ବେଳେ ତିଲୋତ୍ତମା ଯେଉଁ ଯେଉଁ ଆଡ଼କୁ ଯାଇଥିଲେ, ଅନ୍ୟାନ୍ୟ ଦେବ ଓ ମହର୍ଷିଗଣଙ୍କ ଦୃଷ୍ଟି ସେହି ଦିଗକୁ ଆବର୍ତ୍ତିତ ହୋଇଥିଲା । ୨୯ । ଉପସ୍ଥିତ ସମସ୍ତ ମହାତ୍ମା ଓ ଦେବତାମାନଙ୍କର ଦୃଷ୍ଟି ବିଶେଷ ଭାବରେ ତିଲୋତ୍ତମାଠାରେ ପତିତ ହୋଇଥିଲା । କେବଳ ପିତାମହ ତାହାଙ୍କୁ ଗ୍ରହି ନାହାନ୍ତି । ୩୦ । ସଭାରୁ ଯେତେବେଳେ ସେହି ନାରୀ ନିର୍ଗମନ କଲେ ସେତେବେଳେ ତାହାଙ୍କର ରୂପ ସମ୍ପଦ ବିଲୋକନ କରି ଦେବ ଓ ଋଷିଗଣ ତଥା ଅନ୍ୟାନ୍ୟ ସମସ୍ତେ ବିଚାରିଲେ ଯେ ତାହାଙ୍କର ଉଦ୍ଦେଶ୍ୟ ସିଦ୍ଧି ହୋଇଅଛି । ୩୧ । ତିଲୋତ୍ତମା ପ୍ରସ୍ଥାନ କଲାପରେ ଲୋକଭାବନ ବ୍ରହ୍ମା ସମସ୍ତ ଦେବ ଓ ଋଷିଗଣଙ୍କୁ ବିସର୍ଜନ କଲେ । ୩୨ ।

---

## ଅଧ୍ୟାୟ—୨୧୨

ନାରଦ ବୋଇଲେ—ସେ ଦୈତ୍ୟ ଦ୍ୱୟ ପୃଥିବୀକୁ ଜୟ କରି ନିର୍ବୈର ଓ ଗତ ବ୍ୟଥ ହୋଇ ତ୍ରୈଲୋକ୍ୟକୁ ଉଦ୍‌ବେଗଶୂନ୍ୟ କରି କୃତ କୃତ୍ୟ ହେଲେ । ୧ । ଦେବ, ଗନ୍ଧର୍ବ, ଯକ୍ଷ, ରକ୍ଷଃ, ନାଗ ଓ ପାର୍ଥିବମାନଙ୍କର ସମୁଦାୟ ରତ୍ନମାନଙ୍କୁ ନେଇ ଉତ୍କୃଷ୍ଟ ପରିତୋଷ ପ୍ରାପ୍ତ ହେଲେ । ୨ । ଯେତେବେଳେ ସେମାନେ ଦେଖିଲେ ଯେ ତ୍ରିଲୋକ୍ୟ ମଧ୍ୟରେ ତାହାଙ୍କର ପ୍ରତିପକ୍ଷ କେହି ନାହିଁ, ସେତେବେଳେ ସେମାନେ ନିରୁଦ୍ୟୋଗୀ ହୋଇ ଅମରଙ୍କ ସଦୃଶ ବିହାର କଲେ । ମାଲ୍ୟ, ଚନ୍ଦନ, ବନିତା, ପୁଷ୍କଳ, ଭକ୍ଷ୍ୟ, ଭୋଜ୍ୟ ଓ ବିବିଧ ମନୋରମ ପାନୀୟ ସେବନ ଦ୍ୱାରା ମହତୀ ପ୍ରୀତି ଲାଭ କଲେ । ୪ । ଅମରଙ୍କ ପ୍ରାୟ ସେତେବେଳେ

ଅନ୍ତଃପୁରରେ, କେତେବେଳେ ଅରଣ୍ୟମଧ୍ୟରେ, କେତେବେଳେ ଅବା ଉଦ୍ୟାନରେ ଅଥବା ପର୍ବତରେ ଯେତେବେଳେ ଯେଉଁଠାରେ ଇଚ୍ଛା ହୁଅଇ ତେତେବେଳେ ସେହି ସେହି ସ୍ଥାନରେ ବିହାର କରିବାରେ ପ୍ରବୃତ୍ତ ହେଲେ । ୫ ।

ଏକଦା ସେମାନେ ପୁଷ୍ପିତାଗ୍ର ଶାଳତରୁ ମଣ୍ଡିତ ବିନ୍ଧ୍ୟ ପର୍ବତ ପ୍ରସ୍ଥରେ ସମତଳ ଶିଳା ପ୍ରଦେଶରେ ବିହାରାର୍ଥ ଗମନ କଲେ । ୬ । ସେହି ସ୍ଥାନକୁ ଯଥାଭିଳଷିତ ସମୁଦାୟ ଦିବ୍ୟ କାମ୍ୟ-ଦ୍ରବ୍ୟ ସଙ୍କୁଳ ସମାନୀତ ହେଲା, ଦୈତ୍ୟ ଦ୍ୱୟ ସଂହୃଷ୍ଟ ହୋଇ ଉତ୍କୃଷ୍ଟ ଆସନୋପରି ନାରୀମାନଙ୍କ ସହ ନିଷର୍ଣ୍ଣ ହେଲେ । ୭ । ତଦନନ୍ତର ରମଣୀମାନେ ମନୋହର ବାଦନ, ନୃତ୍ୟ ଓ ସ୍ତୁତି ଗର୍ଭକ ଗୀତଦ୍ୱାରା ସେମାନଙ୍କର ପ୍ରୀତି ସମ୍ପାଦନ କଲେ । ୮ । ଏମନ୍ତ ସମୟରେ ତିଲୋତ୍ତମା ଖଣ୍ଡିଏ ମାତ୍ର ସୂକ୍ଷ୍ମ ଓ ରକ୍ତବର୍ଣ୍ଣ ବସନ ପରିଧାନ କରି ସେହି ବନରେ ପୁଷ୍ପ ଚୟନ ବ୍ୟାଜରେ ଉପନୀତା ହେଲେ । ମାନସ ବୈକ୍ଲବ୍ୟକାରୀ ବେଶ ଧାରଣ ଦ୍ୱାରା ସେ ନଦୀ-ତୀର-ଜାତ କର୍ଣ୍ଣିକାର ପୁଷ୍ପମାନଙ୍କୁ ଚୟନ କରୁ କରୁ ଯେଉଁ ସ୍ଥାନରେ ସେ ମହାସୁର ଦ୍ୱୟ ଉପସ୍ଥିତ ଥିଲେ, ସେହି ସ୍ଥାନରେ ଧୀରେ ଧୀରେ ଉପଗତ ହେଲେ । ୧୦ ।

ଅପରିମିତ ମଦ୍ୟ ପାନ ଦ୍ୱାରା ସେମାନେ ଆରକ୍ତ-ନେତ୍ର ହୋଇଥିଲେ; ଏହି ବରାରୋହାଙ୍କୁ ଦର୍ଶନ କରିବା ମାତ୍ର ସେମାନଙ୍କର ହୃଦୟ ବ୍ୟାକୁଳିତ ହେଲା । ୧୧ । ଅସୁର ଦ୍ୱୟ ଆସନ ପରିତ୍ୟାଗ କରି ଯେଉଁଠାରେ ତିଲୋତ୍ତମା ଥିଲେ, ସେହି ସ୍ଥାନକୁ ଗମନ କଲେ; ଦୁହେଁ କାମମତ୍ତ ହୋଇ ତାହାଙ୍କୁ ପ୍ରାର୍ଥନା କଲେ । ୧୨ । ତଦୀୟ ଦକ୍ଷିଣ କରକୁ ସୁନ୍ଦ ଧାରଣ କଲେ ଓ ଉପସୁନ୍ଦ ସୁଭ୍ରାଙ୍କର ବାମ ପାଣି ଗ୍ରହଣ କଲେ ।୧୩। ବରଲାଭ ଗର୍ବରେ, ଶରୀରର ବଳ ମଦରେ, ଧନ ରତ୍ନାଦି ବିପୁଳ ବିତ୍ତ ମୋହରେ ଓ ମଦ୍ୟପାନ ମଦରେ ପ୍ରମତ୍ତ ହୋଇ ପରସ୍ପର ପରସ୍ପରଙ୍କ ପ୍ରତି ଭ୍ରୂକୁଟି ଭଙ୍ଗୀ କରି ବାଦାନୁବାଦ ଆରମ୍ଭ କଲେ । ୧୫ । ସୁନ୍ଦ ବୋଇଲା, "ଏ ଆମ୍ଭର ଭାର୍ଯ୍ୟା ତୁମ୍ଭର ଗୁରୁ," ଉପସୁନ୍ଦ ବୋଇଲା, "ଏ ଆମ୍ଭର ଭାର୍ଯ୍ୟା ତୁମ୍ଭର ଭ୍ରାତୃବଧୂ" । ୧୬ । ଜଣେ କହିଲା ଏ ସ୍ତ୍ରୀ ତୁମ୍ଭର ନୁହେଁ ଆମ୍ଭର; ଅନ୍ୟ ଜଣକ କହିଲା, ଏ ସ୍ତ୍ରୀ ତୁମ୍ଭର ନୁହେଁ, ଆମ୍ଭର; ଏହିପରି କହୁଁ କହୁଁ, ସେହି କାମିନୀର ରୂପ ହେତୁ ସମ୍ୟକ୍

ମତ୍ତ ହୋଇ ସ୍ନେହ ଓ ସୌହାର୍ଦ୍ଦ୍ୟ ପରିତ୍ୟାଗ ପୂର୍ବକ ପରସ୍ପର ମଧ୍ୟରେ ମନ୍ତ୍ୟଜାତ ହେଲ । ୧୭ ।

ତଦନନ୍ତର ସେ ଦୁହେଁ ଦୁଇଗୋଟା ଭୟାନକ ଗଦା ଧାରଣ ପୂର୍ବକ ତାହାର ରୂପରେ ମୋହିତ ହୋଇ କହିଲେ, "ଆମ୍ଭେ ଅଗ୍ରେ ଏହାର ପାଣି ଗ୍ରହଣ କରିଅଛୁଁ ।" ଏହା କହି ପରସ୍ପର ପରସ୍ପରଙ୍କୁ ଯୁଗପତ୍ ପ୍ରହାର କଲେ; ଅନନ୍ତର ସେହି ଗଦାଘାତରେ ସେହି ଭୀଷଣକାୟ ଦୈତ୍ୟଦ୍ୱୟ ରୁଧିରାକ୍ତ କଳେବର ହୋଇ ନଭୋମଣ୍ଡଳ-ଚ୍ୟୁତ ଦୁଇଗୋଟା ସୂର୍ଯ୍ୟ ପ୍ରାୟ ଧରଣୀ ତଳରେ ପତିତ ହେଲେ । ଏହା ଦେଖି ସେହି ନାରୀମାନେ ଓ ଦୈତ୍ୟମାନେ ପଳାୟନ କଲେ ।୨୧। ବିଷାଦ ଓ ଭୟରେ କମ୍ପିତ ହୋଇ ସମସ୍ତେ ପାତାଳକୁ ଗମନ କଲେ; ତଦନନ୍ତର ଦେବ ଓ ମହର୍ଷିଙ୍କ ସହ ବିଶୁଦ୍ଧାତ୍ମା ପିତାମହ ସେଠାକୁ ଆଗମନ କରି ତିଲୋତ୍ତମାଙ୍କୁ ପ୍ରଶଂସା କଲେ ଓ ତାହାଙ୍କୁ ଭଗବାନ ପିତାମହ କହିଲେ—"କି ବର ମାଗୁଅଛ ? ମାଗ ।" ତିଲୋତ୍ତମାଙ୍କୁ ବରଦାନଭିଳାଷୀ ହୋଇ ପିତାମହ ପ୍ରୀତିପୂର୍ବକ ବୋଇଲେ—ହେ ଭାବିନି ! ତୁମ୍ଭେ ସୂର୍ଯ୍ୟଲୋକରେ ବିଚରଣ କରିବାକୁ ସମର୍ଥା ହେବ ଓ ତୁମ୍ଭ ଶରୀରର ତେଜୋରାଶି ହେତୁରୁ କେହି ତୁମ୍ଭଙ୍କୁ ବିହୁକ୍ଷଣ ଗୁହିଁ ପାରିବେ ନାହିଁ । ସର୍ବଲୋକ ପିତାମହ ତିଲୋତ୍ତମାଙ୍କୁ ସେହି ରୂପ ବର ଦେଇ ଓ ଇନ୍ଦ୍ରଙ୍କଠାରେ ତ୍ରୈଲୋକ୍ୟର ଭାର ନ୍ୟସ୍ତକରି ସ୍ୱୟଂ ବ୍ରହ୍ମଲୋକକୁ ଗମନ କଲେ । ୨୪ ।

ନାରଦ ବୋଇଲେ—ହେ ଭରତ ସତ୍ତମ ବୀରମାନେ ! ସୁନ୍ଦ ଓ ଉପସୁନ୍ଦ ଭ୍ରାତା ଦୁହେଁ, ସବୁ ବିଷୟରେ ଏକ ନିଶ୍ଚୟ ହୋଇସୁଦ୍ଧା ତିଲୋତ୍ତମା ନିମିତ୍ତ ପରସ୍ପର ପରସ୍ପରକୁ ବଧ କଲେ । ଅତଏବ ସ୍ନେହବଶରୁ ଆମ୍ଭେ ତୁମ୍ଭ ସମସ୍ତଙ୍କୁ କହୁଅଛୁଁ ଯେ ତୁମ୍ଭେମାନେ ଯେବେ ଆମ୍ଭର ପ୍ରିୟାଚରଣ କରିବାକୁ ଅଭିଳାଷୀ ହୋଇଥାଅ, ତେବେ ଦ୍ରୌପଦୀଙ୍କ ହେତୁରୁ ତୁମ୍ଭମାନଙ୍କ ମଧ୍ୟରେ ଭେଦ ନ ହୁଏ, ତାହାର ଯଥାବିଧି ଯତ୍ନ କରି ଜାଗ୍ରତ ହୋଇ ରହ । ୨୭ ।

ବୈଶମ୍ପାୟନ ବୋଇଲେ—ମହାତ୍ମା ପାଣ୍ଡବମାନେ ମହର୍ଷି ନାରଦଙ୍କ ଠାରୁ ତଦ୍ରୂପ ବଚନ ଶ୍ରବଣ କରି ଅମିତତେଜା ଦେବର୍ଷି ନାରଦଙ୍କ ସମକ୍ଷରେ ଅନ୍ୟୋନ୍ୟଙ୍କ ସମ୍ମତିକ୍ରମେ ଏହି ନିୟମ ସଂସ୍ଥାପନ

କଲେ ଯେ ସେମାନଙ୍କ ମଧ୍ୟରୁ ଏକଭ୍ରାତା ଦ୍ରୌପଦୀଙ୍କ ସହ ବସିଥିବା ବେଳେ, ଅନ୍ୟ ଯେଉଁ ଭ୍ରାତା ତାହାଙ୍କୁ ଦର୍ଶନ କରିବେ, ସେ ଦ୍ୱାଦଶବର୍ଷ ବ୍ରହ୍ମଚାରୀ ହୋଇ ବନରେ ବାସ କରିବେ । ୨୯ । ଧର୍ମାଚାରୀ ପାଣ୍ଡବମାନେ ଏହିରୂପ ନିୟମବଦ୍ଧ ହେବାର ପ୍ରତିଜ୍ଞା କରିବାରୁ ମହାମୁନି ନାରଦ ପ୍ରୀତ ହୋଇ ସ୍ୱକୀୟ ଇଷ୍ଟଦେଶକୁ ଗମନ କଲେ । ୩୦ । ହେ ଭରତ । ନାରଦଙ୍କ ପରାମର୍ଶ ଅନୁସାରେ ଏହିରୂପେ ପାଣ୍ଡବମାନେ ପ୍ରତିଜ୍ଞା କରିଥିବାରୁ ସେମାନଙ୍କ ମଧ୍ୟରେ ଭେଦ ଜାତ ହେଲା ନାହିଁ । ୩୧ ।

---

## ଅଧ୍ୟାୟ—୨୧୩

ବୈଶମ୍ପାୟନ ବୋଇଲେ—ଏହିରୂପେ ପୁଣ୍ୟାତ୍ମା ପାଣ୍ଡବମାନେ ସମସ୍ତ ସ୍ଥାପନ କରି ଶସ୍ତ୍ର ପ୍ରତାପଦ୍ୱାରା ଅପର ମହୀପାଳମାନଙ୍କୁ ବଶୀଭୂତ କରି ରାଜ୍ୟର ଶ୍ରୀବୃଦ୍ଧି ସାଧନ କଲେ । ୧ । କୃଷ୍ଣା ମଧ୍ୟ ଅମିତତେଜା, ମନୁଜ ସିଂହ ତେଜସ୍ୱୀ ପଞ୍ଚପାଣ୍ଡବ ମାନଙ୍କର ବଶବର୍ତ୍ତିନୀ ହୋଇ ରହିଲେ । ୨ । ସରସ୍ୱତୀ ନଦୀରେ କୁଞ୍ଜରମାନେ ଉପସ୍ଥିତ ହୋଇ ଯେପରି ସୁଖୀ ହୁଅନ୍ତି ଓ କୁଞ୍ଜର ମାନଙ୍କୁ ଘେନି ସେହି ନଦୀ ଯେପରି ଶୋଭାନ୍ୱିତା ହୁଅଇ, ତଦ୍ରୂପ ପାଣ୍ଡବମାନେ ଦ୍ରୌପଦୀଙ୍କୁ ପତ୍ନୀରୂପେ ପାଇ ଯାଦୃଶ ପ୍ରୀତ ହେଲେ, ଦ୍ରୌପଦୀ ମଧ୍ୟ ସେମାନଙ୍କୁ ପତିରୂପେ ପାଇ ତାଦୃଶ ପ୍ରୀତି ସମନ୍ୱିତା ହେଲେ । ୩ । ମହାତ୍ମା ପାଣ୍ଡବମାନେ ଧର୍ମପଥାନୁବର୍ତ୍ତୀ ହେବାରୁ, ସର୍ବ କୁରୁବଂଶୀୟମାନେ ହୀନଦୋଷ ଓ ସୁଖାନ୍ୱିତ ହେଲେ । ୪ ।

ହେ ରାଜନ୍ । ଏହିରୂପେ ଅନେକ କାଳ ଗତ ହେବା ଉତ୍ତାରୁ ଏକ ସମୟରେ ଗୋଟିଏ ବ୍ରାହ୍ମଣର କେତେକ ଗୌମାନଙ୍କୁ ଗୋଟିଏ ତସ୍କରଦଳ ଅପହରଣ କଲେ ।୫। ହେ ନୃପସତ୍ତମ । ସେହି ଧନ ହରଣକାରୀ ଘେନି ନେଇଯିବାରୁ ବ୍ରାହ୍ମଣ କ୍ରୋଧରେ ମୂର୍ଚ୍ଛିତ ହୋଇ ଖାଣ୍ଡବ ପ୍ରସ୍ଥକୁ ଆଗମନ କରି ଉଚ୍ଚୈଃସ୍ୱରରେ ପାଣ୍ଡବମାନଙ୍କୁ ଆହ୍ୱାନ କରି ବୋଇଲେ, କ୍ଷୁଦ୍ର, ନୃଶଂସ, ପାପାଚାରୀ, ଅକୃତାତ୍ମାମାନେ ଆସି ଗୋଧନମାନଙ୍କୁ ଆମ୍ଭରାଜ୍ୟରୁ ବଳପୂର୍ବକ ହରଣ କରି ନେଇ ଯାଉଅଛନ୍ତି ;—ହେ

ପାଣ୍ଡବମାନେ ! ଆପଣମାନେ ଏମାନଙ୍କୁ ଅଭିଧାବନ କରନ୍ତୁ । ୭ । ଢାକମାନେ ଆସି ଏହି ପ୍ରଶାନ୍ତ ବ୍ରାହ୍ମଣର ଯଜ୍ଞହବି ଅପହରଣ କଲେ, ଶାର୍ଦ୍ଦୂଳର ଶୂନ୍ୟ ଗୁହାକୁ ନୀଚ ଶୃଗାଳମାନେ ଆସି ଅଭିମର୍ଦ୍ଦନ କଲେ । ୮ । ଯେଉଁ ରାଜା ଷଷ୍ଠାଂଶ କର ଗ୍ରହଣ କରନ୍ତି ଓ ପ୍ରଜାମାନଙ୍କର ରକ୍ଷଣାବେକ୍ଷଣ କରନ୍ତି ନାହିଁ, ସେ ରାଜାଙ୍କୁ ପଣ୍ଡିତମାନେ ସର୍ବଲୋକଙ୍କର ସମଗ୍ର ପାପାଶ୍ରୟୀ ଆଖ୍ୟା ଦେଇଅଛନ୍ତି । ୯ । ଚୌରମାନେ ବ୍ରହ୍ମସ୍ୱହରଣ କରୁଅଛନ୍ତି, ଧର୍ମ୍ମାର୍ଥ ବିଲୁପ୍ତ ହେଉଅଛି, ଆମ୍ଭେ ଅତଏବ ରୋଦନ କରୁଅଛୁଁ ; ଆମ୍ଭଙ୍କୁ ଉଦ୍ଧାର କର । ୧୦ ।

ବୈଶମ୍ପାୟନ ବୋଇଲେ—କୁନ୍ତୀପୁତ୍ର ଧନଞ୍ଜୟ ରୋରୁଦ୍ୟମାଣ ବିପ୍ରଙ୍କର ସେହି ବାକ୍ୟମାନଙ୍କୁ ଆପଣା ନିକଟରେ କହୁଥିବାର ଶୁଣିଲେ । ସେହି ବଚନ ଶ୍ରବଣ କରି ମହାବାହୁ ଅର୍ଜ୍ଜୁନ ଦ୍ୱିଜଙ୍କୁ ବୋଇଲେ, "ଭୟ କର ନା, ଭୟ କରନା" ମହାତ୍ମା ପାଣ୍ଡବମାନଙ୍କର ଅସ୍ତ୍ର ଯେଉଁଠାରେ ଥିଲା, ଧର୍ମ୍ମରାଜ ଯୁଧିଷ୍ଠିର କୃଷ୍ଣାଙ୍କୁ ଘେନି ସେହି ଗୃହରେ ଅଛନ୍ତି । ସୁତରାଂ ଅର୍ଜ୍ଜୁନ ସେ ଗୃହରେ ପ୍ରବେଶ କରି ଅସ୍ତ୍ରଗ୍ରହଣ ପୂର୍ବକ ତସ୍କରମାନଙ୍କ ପଶ୍ଚାଦ୍ଧାବନ କରିବାକୁ ଅଶକ୍ତ ହେଲେ । ୧୩ । ବ୍ରାହ୍ମଣଙ୍କ ସେହି ଆର୍ତ୍ତିବଚନରେ ପୁନଃ ପୁନଃ ଉତ୍ତେଜିତ ହୋଇ କର୍ତ୍ତବ୍ୟ ସ୍ଥିର କରି ନ ପାରି ଦୁଃଖିତ ଓ ଚିନ୍ତା ପରାୟଣ ହେଲେ । ୧୪ । ତପସ୍ୱୀ ବ୍ରାହ୍ମଣଙ୍କର ଧନ ଅପହରଣ କରି ନେଉ ଅଛନ୍ତି, ତାହାଙ୍କର ଦୁଃଖ ନିବାରଣ କରିବା କର୍ତ୍ତବ୍ୟ; ପୁନଶ୍ଚ ସେ ବ୍ରାହ୍ମଣ ଆସି ରାଜଦ୍ୱାରରେ ରୋଦନ କରୁଅଛନ୍ତି, ଏଥିରେ ଉପେକ୍ଷା କଲେ ମହୀପତିଙ୍କର ଅତଏବ ଅଧର୍ମ ଘଟିବ; ଅଦ୍ୟ ସେ ବ୍ରାହ୍ମଣଙ୍କୁ ରକ୍ଷା କରିବା ବିଧେୟ । ୧୬ ।

ପୁନଶ୍ଚ ଯଦି ଆମ୍ଭେ ଏହାଙ୍କୁ ରକ୍ଷା ନ କରୁଁ, ତେବେ ଆମ୍ଭମାନଙ୍କର ଅନାସ୍ତିକ୍ୟ ଦୋଷ ପ୍ରବର୍ତ୍ତିବ; ଯଦି ଆମ୍ଭେ ରକ୍ଷା କରୁଁ ତେବେ ଇହଲୋକରେ ଆମ୍ଭର ଆସ୍ତିକ୍ୟ ପ୍ରତିପୁତି ହେବ ଓ ଅଧର୍ମ୍ମ ହେବ ନାହିଁ । ୧୭ । ଅପରନ୍ତୁ ଅଜାତଶତ୍ରୁଙ୍କ ନିକଟକୁ ଗମନ କଲେଁ ତାହାଙ୍କ ପ୍ରତି ଅନାଦର ହେବ ଓ ନିୟମ ଲଙ୍ଘନ ହେତୁ ଆପଣାର ଅସତ୍ୟ ବ୍ୟବହାର ହେବ; ଏଥିରେ ସଂଶୟ ନାହିଁ । ୧୮ । ଦ୍ରୌପଦୀଙ୍କର ସହବର୍ତ୍ତୀ ନୃପତିଙ୍କ ନିକଟକୁ ଗମନ କଲେ, ଆମ୍ଭର ବନବାସ ନିଶ୍ଚୟ ହେବ । ରାଜାଙ୍କର ଅନାଦର ହେଉ, ଅଥବା ଆମ୍ଭର ସତ୍ୟ ଲଙ୍ଘନ ହେଉ, କିମ୍ବା

ବନରେ ଆମ୍ଭର ମରଣ ହେଉ, ଏ ସବୁ ସହ୍ୟ ହେବ; କିନ୍ତୁ ଅଧର୍ମ ସହ୍ୟ ହେବାର ନୁହଇ; ଯେହେତୁରୁ ଶରୀର ବିନଷ୍ଟ ହେଲେଁ ଧର୍ମମାତ୍ର ଅବଶିଷ୍ଟ ରହଇ । ୨୦ ।

ହେ ରାଜନ୍ ! କୁନ୍ତୀ-ପୁତ୍ର ଧନଞ୍ଜୟ ଏହି ପ୍ରକାରେ ନିଶ୍ଚୟ କରି ଅସ୍ତ୍ରାଧାଗାରରେ ପ୍ରବେଶ ପୂର୍ବକ ରାଜା ଯୁଧିଷ୍ଠିରଙ୍କ ସହ ସମ୍ଭାଷଣ କଲେ ଓ ଧନୁର୍ଗ୍ରହଣ ପୂର୍ବକ ହୃଷ୍ଟଚିତ୍ତରେ ବ୍ରାହ୍ମଣଙ୍କୁ କହିଲେ, ହେ ବ୍ରାହ୍ମଣ ! ଶୀଘ୍ର ଆଗମନ କର; ପରଧନାପହାରୀମାନେ ଦୂରକୁ ନ ଯାଉଁ, ଆମ୍ଭେ ଦୁହେଁ ସଙ୍ଗ ହୋଇ ଗମନ କରିବା; ତୁମ୍ଭର ଧନକୁ ଚୌରଙ୍କ ହସ୍ତରୁ ଉଦ୍ଧାର ନ କରିବା ପର୍ଯ୍ୟନ୍ତ ତୁମ୍ଭେ ଆମ୍ଭ ସଙ୍ଗରେ ଆସ । ନ ହେଲେ ଚୌରକୁ ଧରିପାରିବା ସହଜ ହେବ ନାହିଁ । ୨୩ । ସେହି ମହାବାହୁ ବର୍ମ୍ମ ପରିଧାନ କରି ଧ୍ୱଜ-ଶୋଭିତ ରଥରେ ଆରୋହଣ ପୂର୍ବକ ଧନୁର୍ଦ୍ଧାରୀ ହୋଇ ଚୌରମାନଙ୍କର ଅନୁଗମନ କଲେ ଓ ସେମାନଙ୍କୁ ଜୟ କରି ଅପହୃତ ଧନକୁ ପ୍ରତ୍ୟାହରଣ କଲେ । ୨୪ । ପୃଥା-ପୁତ୍ର ପାଣ୍ଡବ ସେ ଧନକୁ ବ୍ରାହ୍ମଣଙ୍କୁ ପ୍ରତ୍ୟର୍ପଣ କରି ଆପଣାର ଯଶଃ ସ୍ଥାପନ କଲେ । ୨୫ ।

ସବ୍ୟସାଚୀ ଧନଞ୍ଜୟ ଉପୁରେ ନିଜ ପ୍ରତ୍ୟାଗମନ କରି ଗୁରୁବର୍ଗଙ୍କର ପାଦସଂଗ୍ରହ କଲେ ଓ ଆପଣାର ଯବିଷ୍ଟକ ଦ୍ୱାରା ଅଭିବନ୍ଦିତ ହେଲେ ।୨୬। ଧର୍ମ୍ମରାଜଙ୍କୁ ଉଦ୍ଦେଶ୍ୟ କରି ଅର୍ଜ୍ଜୁନ ବୋଇଲେ, ହେ ପ୍ରଭୋ ! ଆପଣଙ୍କୁ ସନ୍ଦର୍ଶନ କରି ଆମ୍ଭେ ନିୟମ ଲଙ୍ଘନ କଲୁଁ, ଅତଏବ ଆମ୍ଭଙ୍କୁ ବ୍ରତାବଲମ୍ବୀ ହେବାର ଆଦେଶ ପ୍ରଦାନ କରନ୍ତୁ । ଆମ୍ଭେ ବନବାସାର୍ଥ ଗମନ କରିବୁଁ; ଏହିପରି ଆମ୍ଭମାନଙ୍କର ପ୍ରତିଜ୍ଞା ହୋଇଅଛୁ, ଧର୍ମ୍ମରାଜ ତାହାଶୁଣି ଉତ୍ତର ପ୍ରଦାନ କଲେ ।୨୮। ଭ୍ରାତା ଯୁଧିଷ୍ଠିର ଶୋକାର୍ତ୍ତ ହୋଇ ଭ୍ରାତା ଅର୍ଜ୍ଜୁନଙ୍କୁ ବୋଇଲେ, କିମ୍ପାଇଁ ତୁମ୍ଭେ ଗମନ କରିବ ? । ୨୯ ।

ତଦନନ୍ତର ରାଜା ଦୀନଭାବରେ ଅର୍ଜ୍ଜୁନଙ୍କୁ ବୋଇଲେ, ଯଦି ତୁମ୍ଭେ ଆମ୍ଭଙ୍କୁ ପ୍ରଣାମ କର ଓ ଆମ୍ଭଙ୍କୁ ମାନ୍ୟକର, ତେବେ ହେ ଅନଘ ! ଆମ୍ଭର ବଚନ ଶ୍ରବଣ କର । ୩୦ । ହେ ବୀର ! ଅନୁପ୍ରବେଶ କରିବା ଦ୍ୱାରା, ତୁମ୍ଭେ ଆମ୍ଭର ଯେଉଁ ଅପ୍ରିୟ କରିଥିବାର ବିଚାରୁଅଛ; ତାହା ଆମ୍ଭେ ଉତ୍ତମରୂପେ ଜାଣୁ ଯେ ସେ ସମସ୍ତ ଅଳୀକ ଓ ଆମ୍ଭ ହୃଦୟରେ ଆଦୌ

ତାହା ସ୍ଥାନ ପାଇନାହିଁ । ୩୧ । କନିଷ୍ଠ ହୋଇ ଯେବେ ଗୁରୁଙ୍କ ନିକଟକୁ ପ୍ରବେଶ କରେ, ତେବେ କନିଷ୍ଠର ଭଲେ ହେଲେ ଦୋଷ ହୁଅଇ ନାହିଁ; କିନ୍ତୁ ଜ୍ୟେଷ୍ଠ ହୋଇ ଯେବେ କନିଷ୍ଠ ଭାର୍ଯ୍ୟା-ସହ ଥିବା ବେଳେ ଗମନ କରେ, ତେବେ ସେଠାରେ ନିୟମ ଲଙ୍ଘନ କରିବାର ହୁଅଇ । ୩୨ ।

ହେ ମହାବାହୋ । ତୁମ୍ଭେ ନିବୃତ୍ତ ହୁଅ; ଆମ୍ଭ ବଚନ ପ୍ରତିପାଳନ କର, ତୁମ୍ଭର ଧର୍ମ୍ମ ଲୋପ ହୋଇନାହିଁ କି ତୁମ୍ଭେ ଆମ୍ଭର କୌଣସି ଅପ୍ରିୟ କରିନାହିଁ । ୩୩ ।

ଅର୍ଜ୍ଜୁନ ବୋଇଲେ, ଆମ୍ଭେ ଆପଣଙ୍କ ଠାରୁ ଶ୍ରବଣ କରିଅଛୁଁ ଯେ, ଧର୍ମ୍ମାଚରଣ କରିବାବେଳେ ଅଧର୍ମ୍ମ କରିବାର ନୁହଇ; ଅତଏବ ଆମ୍ଭେ ସତ୍ୟରୁ ବିଚଳିତ ହେବୁ ନାହିଁ, ସତ୍ୟଦ୍ୱାରା ଆମ୍ଭେ ଏହି ଆୟୁଧ ଧାରଣ କରିଅଛୁଁ । ୩୪ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ଅର୍ଜ୍ଜୁନ, ରାଜା ଯୁଧିଷ୍ଠିରଙ୍କର ଅନୁମତି ଗ୍ରହଣପୂର୍ବକ ବନଚର୍ଯ୍ୟାରେ ଦୀକ୍ଷିତ ହୋଇ ଦ୍ୱାଦଶ ବର୍ଷ ବନବାସ ନିମିତ୍ତ ଗମନ କଲେ । ୩୫ ।

---

## ଅଧ୍ୟାୟ—୨୧୪

ବୈଶମ୍ପାୟନ ବୋଇଲେ—ହେ ରାଜନ୍ । କୁରୁବଂଶ ଯଶସ୍କର ମହାବାହୁ ଅର୍ଜ୍ଜୁନ ବନକୁ ପ୍ରସ୍ଥାନ କରନ୍ତେ ତାହାଙ୍କ ସହ ମହାତ୍ମା ବେଦପାରଗ ବ୍ରାହ୍ମଣମାନେ, ବେଦ ଓ ବେଦାଙ୍ଗବେତ୍ତାମାନେ, ଅଧ୍ୟାତ୍ମ-ଚିନ୍ତାକାରୀମାନେ, ଭିକ୍ଷାଜୀବୀ ଯତି ବ୍ରହ୍ମଚାରୀମାନେ, ଭଗବଦ୍ଭକ୍ତ ନିତ୍ୟ, ପୁରାଣ କଥାମାନେ, ଊର୍ଦ୍ଧ୍ୱରେତା ଋଷିନିକର ଓ ଯେଉଁ ଦ୍ୱିଜମାନେ ମନୋହର ଆଖ୍ୟାନ ସମୂହକୁ ମଧୁର ସ୍ୱରରେ ପାଠ କରନ୍ତି, ସେମାନେ ଗମନ କଲେ । ୩ । ବାସବଙ୍କ ସଙ୍ଗେ ଯେପରି ଊନପଞ୍ଚାଶତ ମରୁଦ୍‌ଗଣ ଗମନ କରନ୍ତି, ତଦ୍ରୂପ ଉକ୍ତ ବ୍ୟକ୍ତିମାନେ ଓ ଅପର ବହୁସଂଖ୍ୟକ ଲୋକେ ପାଣ୍ଡୁନନ୍ଦନଙ୍କୁ ବେଷ୍ଟନ କରି ଗମନ କଲେ । ୪ । ଭରତର୍ଷଭ ଅର୍ଜ୍ଜୁନ ରମଣୀୟ ଓ ବିଚିତ୍ର ବନ ଓ ସରୋବର ମାନଙ୍କ, ସରିତ୍ ଓ

ସାଗର ନିକଟକୁ ଓ ଦେଶ ଏବଂ ପବିତ୍ର ତୀର୍ଥମାନଙ୍କ ଦର୍ଶନ କରି ଶେଷରେ ଗଙ୍ଗା ଦ୍ୱାରରେ ଉପଗତ ହୋଇ ସେହି ସ୍ଥାନରେ ବାସ କଲେ । ୬ ।

ହେ ଜନମେଜୟ ! ସେଠାରେ ବିଶୁଦ୍ଧାତ୍ମା ପାଣ୍ଡବଶ୍ରେଷ୍ଠ ଅର୍ଜ୍ଜୁନ ଯେଉଁ ଅଦ୍ଭୁତ କର୍ମ୍ମ କଲେ, ତାହା ଶ୍ରବଣ କରିବା ହେଉନ୍ତୁ । ୭ । କୁନ୍ତୀପୁତ୍ର ଓ ବ୍ରାହ୍ମଣମାନେ ସେଠାରେ ନିବେଶନ କରିବାରୁ ବିପ୍ରମାନେ ଅନେକପ୍ରକାର ଅଗ୍ନିହୋତ୍ର ଅନେକସ୍ଥାନରେ ଆରମ୍ଭ କଲେ । ୮ । ହେ ରାଜନ୍ ! ମହାତ୍ମା ନିୟତ ଓ ସତ୍‌ପଥବର୍ତ୍ତୀ ବ୍ରାହ୍ମଣମାନେ ଅଭିଷେକ ସମାପନାନ୍ତେ ଗଙ୍ଗାତୀରରେ ପ୍ରଜ୍ୱଳିତ ହୁତାଶନରେ ଆହୁତି ପ୍ରଦାନ-ପୂର୍ବକ ନାନାବିଧ ପୁଷ୍ପୋପହାର ପ୍ରଦାନ କରିବାରୁ ଗଙ୍ଗାଦ୍ୱାର ଅତିଶୟ ଶୋଭାନ୍ୱିତ ହେଲା । ୧୦ । ସେହି ପର୍ଯ୍ୟାକୁଳିତ ନିବେଶନ ସମୀପରେ ଦିନେ ପାଣ୍ଡବଶ୍ରେଷ୍ଠ ଅର୍ଜ୍ଜୁନ ସ୍ନାନ କରିବା ନିମିତ୍ତ ଗଙ୍ଗାନଦୀରେ ଅବତରଣ କଲେ । ୧୧ । ସେଠାରେ ଅଭିଷେକ ସମାପ୍ତ କରି ପିତା-ମହମାନଙ୍କୁ ତର୍ପିତ କରି ଅଗ୍ନିକାର୍ଯ୍ୟ ସମାଧା କରିବା କାରଣ ଜଳରୁ ଉତ୍ତୀର୍ଣ୍ଣ ହେବାକୁ ଅଭିଳାଷ କଲେ । ୧୨ ।

ଏମନ୍ତ ସମୟରେ ହେ ମହାରାଜ ! ନାଗରାଜଙ୍କ କନ୍ୟା ଉଲୂପୀ କାମମୋହିତା ହୋଇ ଜଳ ମଧ୍ୟରେ ମହାବାହୁ ଅର୍ଜ୍ଜୁନଙ୍କୁ ଆକର୍ଷଣ କରି ନେଇଗଲା । ୧୩ । ଅର୍ଜ୍ଜୁନ ପାତାଳକୁ ଯାଇ ସେଠାରେ କୌରବ୍ୟ ନାମକ ନାଗରାଜଙ୍କର ମହାମଣିମୟ ଭବନରେ ସଂସ୍କୃତ ପାବକକୁ ସମାହିତ ହୋଇ ଦର୍ଶନ କଲେ । ୧୪ । କୁନ୍ତୀ-ପୁତ୍ର ଧନଞ୍ଜୟ ସେଠାରେ ନିଃଶଙ୍କ ଚିତ୍ତରେ ଅଗ୍ନିକାର୍ଯ୍ୟ ସମାଧାନ କଲେ, ତହିଁରେ ତାହାଙ୍କ ପ୍ରତି ଅଗ୍ନିଦେବ ପରିତୁଷ୍ଟ ହେଲେ । ୧୫ । ଅଗ୍ନିକାର୍ଯ୍ୟ କରିସାରି ନାଗରାଜ-ସୁତାଙ୍କୁ କୁନ୍ତୀ-ସୁତ ଅର୍ଜ୍ଜୁନ ହସି ହସି ଏହି ବଚନ କହିଲେ । ୧୬ । ହେ ଭୀରୁ ! ଏକି ସାହସ କର୍ମ୍ମ କଲ ? ହେ ଭାବିନି ! ଏ ସୁନ୍ଦର ଦେଶ କାହାର ? ତୁମ୍ଭେ କାହାର ଆତ୍ମଜା ? । ୧୭ ।

ଉଲୂପୀ ବୋଇଲେ, ହେ ରାଜନ୍ ! ଐରାବତ ନାମକ ପ୍ରସିଦ୍ଧ ନାଗରାଜଙ୍କ ବଂଶରେ କୌରବ୍ୟ ନାମକ ପନ୍ନଗ ଅଛନ୍ତି; ଆମ୍ଭେ ତାହାଙ୍କ ଦୁହିତା, ଆମ୍ଭର ନାମ ଉଲୂପୀ, ଆମ୍ଭେ ନାଗକନ୍ୟା ଅଟୁଁ । ୧୮ ।

ହେ ପୁରୁଷ ବ୍ୟାଘ୍ର ! ଏହି ସମୁଦ୍ରଗାମିନୀ ନଦୀମଧ୍ୟରେ ଗଙ୍ଗାସ୍ନାନାର୍ଥ ତୁମ୍ଭେ ଅବତରଣ କରିବାବେଳେ ତୁମ୍ଭଙ୍କୁ ଦର୍ଶନ କରି କନ୍ଦର୍ପ ଦ୍ୱାରା ମୂର୍ଚ୍ଛିତ ହେଲି । ୧୯ । ହେ କୁରୁନନ୍ଦନ ! ଅନଘ ! ତୁମ୍ଭ ନିମିତ୍ତ ଅମ୍ଭେ ଅନଙ୍ଗ ଦ୍ୱାରା ପ୍ରପୀଡ଼ିତ ହୋଇଅଛୁଁ; ତୁମ୍ଭ ବ୍ୟତିରେକେ ଆଉ କାହାର-ଠାରେ ଅମ୍ଭର ମନ ନାହିଁ । ଅତଏବ ତୁମ୍ଭେ ଆତ୍ମଦାନ ଦ୍ୱାରା ଅମ୍ଭଙ୍କୁ ଅଦ୍ୟ ପ୍ରମୋଦଯୁକ୍ତ କର । ୨୦ ।

ଅର୍ଜ୍ଜୁନ ବୋଇଲେ—ହେ ଭଦ୍ରେ ! ଧର୍ମ୍ମରାଜଙ୍କ ଆଦେଶ ଅନୁସାରେ ଅମ୍ଭେ ଦ୍ୱାଦଶବର୍ଷ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିଅଛୁଁ; ଅମ୍ଭେ ଆପଣାର ବଶରେ ନାହୁଁ । ୨୧ । ହେ ଜଳଚାରିଣୀ ! ତୁମ୍ଭର ମଧ୍ୟ ପ୍ରିୟାଚରଣ କରିବାକୁ ଅମ୍ଭର ଇଚ୍ଛା ଅଛି; ପୂର୍ବେ ଅମ୍ଭେ କାହିଁମାନ ଅନୃତ କହିନାହୁଁ । ୨୨ । ଅତଏବ ହେ ଭୁଜଙ୍ଗମେ ! ଅମ୍ଭର ବାକ୍ୟ ଯେପରି ମିଥ୍ୟା ନ ହୁଏ ଏବଂ ତୁମ୍ଭର ମଧ୍ୟ ଯେପରି ପ୍ରିୟାନୁଷ୍ଠାନ ହୁଏ ଓ ଅମ୍ଭର ଯେପରି ଧର୍ମ୍ମରକ୍ଷା ହୁଏ, ତଦ୍ରୂପ କୌଣସି ଉପାୟ କର । ୨୩ ।

ଉଲୂପୀ ବୋଇଲେ—ହେ ପାଣ୍ଡବେୟ ! ଆପଣ ଯେପରି ମେଦିନୀରେ ପର୍ଯ୍ୟଟନ କରୁଅଛ, ତାହା ଅମ୍ଭେ ଜାଣୁଁ; ଆପଣଙ୍କର ଜ୍ୟେଷ୍ଠ ଭ୍ରାତା ଯେପରି ବ୍ରହ୍ମଚର୍ଯ୍ୟ ଆଦେଶ କରିଅଛନ୍ତି, ତାହା ମଧ୍ୟ ଅମ୍ଭେ ଜାଣୁଁ । ୧୪ । ଆପଣମାନେ ଏହି ନିୟମ କରିଥିଲେ ଯେ, ପଞ୍ଚଭ୍ରାତାଙ୍କ ମଧ୍ୟରୁ ଜଣେ କେହି ଦ୍ରୌପଦୀଙ୍କ ନିକଟକୁ ଗମନ କରିଥିଲେ, ସେହି ସମୟରେ ମୋହ ହେତୁରୁ ଯଦି ଅନ୍ୟ କେହି ସେଠାରେ ଅନୁପ୍ରବେଶ କରେ ତାହାଙ୍କୁ ଦ୍ୱାଦଶବର୍ଷ ବ୍ରହ୍ମଚର୍ଯ୍ୟାଚରଣ କରି ବନକୁ ଗମନ କରିବାର ହେବ । ଅତଏବ ଆପଣମାନଙ୍କର ପରସ୍ପରର ଏହି ପ୍ରବାସନ କେବଳ ଦ୍ରୌପଦୀଙ୍କ ହେତୁରୁ ହୁଅଇ । ୨୬ । ଆପଣ ସେ ଧର୍ମ୍ମରକ୍ଷା କରିଅଛନ୍ତି, ଏଠାରେ ଧର୍ମ୍ମରକ୍ଷା କଲେ ଆପଣଙ୍କର ଦୋଷ ଘଟିବ ନାହିଁ; ହେ ପୃଥୁଲୋଚନ ! ଆର୍ତ୍ତିବ୍ୟକ୍ତିଙ୍କର ପରିତ୍ରାଣ କରିବା ସର୍ବପ୍ରକାରେ ସର୍ବଦା କର୍ତ୍ତବ୍ୟ ଅଟଇ । ୨୭ । ଅମ୍ଭର ପରିତ୍ରାଣ କଲେ ଆପଣଙ୍କର ଧର୍ମ ଲୋପ ହେବ ନାହିଁ; ଯଦିବା ଏତଦ୍ୱାରା ତୁମ୍ଭର ଧର୍ମ୍ମର ଯତ୍ସାମାନ୍ୟ ବ୍ୟତିକ୍ରମ ଘଟିବ, ତେବେ ହେ ଅର୍ଜ୍ଜୁନ ! ଅମ୍ଭଙ୍କୁ ପ୍ରାଣଦାନ କଲେ ତୁମ୍ଭର ସେହି ଧର୍ମ୍ମ ସମ୍ପୂର୍ଣ୍ଣ ହେବ ।

ହେ ପାର୍ଥ । ଆମ୍ଭେ ତୁମ୍ଭର ଭକ୍ତ ଅଟୁଁ, ତୁମ୍ଭେ ଆମ୍ଭଙ୍କୁ ଭଜନା କର; ହେ ପ୍ରଭୋ । ସଜ୍ଜନମାନଙ୍କର ଏହି କାର୍ଯ୍ୟ ଅଭିମତ ହୁଅଇ ।୨୯। ଆପଣ ଯଦି ଅମ୍ଭ ବଚନାନୁସାରେ କାର୍ଯ୍ୟ ନ କରିବେ, ତେବେ ଆମ୍ଭେ ମୃତା ବୋଲି ଅବଧାରଣ କରନ୍ତୁ । ହେ ମହାବାହୁ । ଅମ୍ଭଙ୍କୁ ପ୍ରାଣଦାନ କରି ଉତ୍କୃଷ୍ଟ ଧର୍ମକୁ ଆପଣ ଉପାର୍ଜ୍ଜନ କରନ୍ତୁ । ୩୦ । ହେ ପୁରୁଷୋତ୍ତମ । ଅଦ୍ୟ ଆମ୍ଭେ ତୁମ୍ଭର ଶରଣାପନ୍ନ ହେଲୁଁ; ହେ କୌନ୍ତେୟ । ଦୀନ ଓ ଅନାଥ ବ୍ୟକ୍ତିମାନଙ୍କୁ ଆପଣ ସର୍ବଦା ରକ୍ଷା କରନ୍ତି; ଆମ୍ଭେ ତୁମ୍ଭର ଶରଣାର୍ଥିନୀ, ଦୁଃଖିତା ହୋଇ ରୋଦନ କରୁଅଛୁଁ; ଆମ୍ଭେ ସକାମା ହୋଇ ଯାଚ୍ଞା କରୁଅଛୁଁ; ଆପଣ ଆତ୍ମପ୍ରଦାନ ଦ୍ୱାରା ଅମ୍ଭର ପ୍ରିୟକର୍ମ କରିବା ହେଉନ୍ତୁ । ୩୨ ।

ବୈଶମ୍ପାୟନ ବୋଇଲେ—ପନ୍ନଗେଶ୍ୱର କନ୍ୟାଙ୍କର ତଦ୍ରୂପ ବଚନ ଶ୍ରବଣ କରି କୁନ୍ତୀ-ପୁତ୍ର ଅର୍ଜ୍ଜୁନ ଧର୍ମକୁ ଉଦ୍ଦେଶ୍ୟ କରି ପ୍ରାର୍ଥିତ ବିଷୟମାନଙ୍କୁ ଆଚରଣ କଲେ । ପ୍ରତାପବାନ୍ ଅର୍ଜ୍ଜୁନ କୌରବ୍ୟ ନାଗଙ୍କ ଭବନରେ ସେହି ରାତ୍ରି ବାସକରି ସୂର୍ଯ୍ୟୋଦୟ ସମୟରେ ସେଠାଁରୁ ଉଲୂପୀଙ୍କ ସହ ଗଙ୍ଗାଦ୍ୱାରକୁ ଆଗମନ କଲେ । ସେଠାରେ ତାହାଙ୍କୁ ପରିତ୍ୟାଗ କରି ଉଲୂପୀ ନିଜ ଭବନକୁ ପ୍ରସ୍ଥାନ କଲେ । ୩୫ । ହେ ଭାରତ । ପ୍ରସ୍ଥାନ କରିବାବେଳେ ସାଧ୍ୱୀ ଉଲୂପୀ ଏହି ବର ଦେଇଗଲେ ଯେ ଜଳ ମଧ୍ୟରେ ସର୍ବତ୍ର ଅର୍ଜ୍ଜୁନଙ୍କୁ କେହି ଜୟ କରିପାରିବେ ନାହିଁ ଓ ଯେତେ ଜଳଚର ଅଛନ୍ତି, ସେମାନେ ସମସ୍ତେ ତାହାଙ୍କର ସାଧ୍ୟ ହେବେ, ଏଥିରେ ସଂଶୟ ନାହିଁ । ୩୬ ।

## ଅଧ୍ୟାୟ—୨୧୪

ବୈଶମ୍ପାୟନ ବୋଇଲେ—ହେ ଭାରତ । ତଦନନ୍ତର ବଜ୍ର-ଧରଙ୍କ ଆତ୍ମଜ, ବ୍ରାହ୍ମଣମାନଙ୍କୁ ନାଗଭବନର ସମୁଦାୟ ବୃତ୍ତାନ୍ତ ବିଜ୍ଞାପିତ କରି ହିମବନ୍ତର ପାର୍ଶ୍ୱକୁ ଗମନ କଲେ ।୧। ଅଗସ୍ତ୍ୟ ବଟକୁ ପ୍ରାପ୍ତ ହୋଇ ସେଠାରୁ ବଶିଷ୍ଠଙ୍କ ପର୍ବତକୁ ଗମନ କଲେ । ଭୃଗୁତୁଙ୍ଗ ନାମକ ସ୍ଥାନରେ ଆପଣାର ଶୌଚକର୍ମମାନ ସମ୍ପାଦନ କରି ସେହି କୁରୁସତ୍ତମ ବହୁ ସଂଖ୍ୟକ ଗୌ ଓ ଗୃହମାନଙ୍କୁ ବ୍ରାହ୍ମଣସାତ୍ କଲେ । ୩ । ସେ ପୁରୁଷସତ୍ତମ ପାଣ୍ଡବଶ୍ରେଷ୍ଠ ହିରଣ୍ୟବିନ୍ଦୁ ନାମକ ତୀର୍ଥରେ ସ୍ନାନ କରି

ପବିତ୍ର ଆୟତନ ମାନଙ୍କୁ ଦର୍ଶନ କଲେ । ୪ । ହେ ଭାରତ । ତଦନନ୍ତର ସେ ଭରତର୍ଷଭ ନରଶ୍ରେଷ୍ଠ ଅର୍ଜ୍ଜୁନ ବ୍ରାହ୍ମଣମାନଙ୍କ ସଙ୍ଗରେ ପୁଣି ସେହି ସ୍ଥାନରୁ ଅବତରଣ କରି, ପ୍ରାଚୀଦିଗକୁ ଗମନ କରିବାକୁ ଅଭିଳାଷ କଲେ । ୫ ।

ସେହି କୁରୁସତ୍ତମ ଆନୁପୂର୍ବିକ ସମସ୍ତ ତୀର୍ଥମାନଙ୍କ ଦର୍ଶନ କରିବାକୁ ଉଦ୍ୟତ ହୋଇ ନୈମିଷାରଣ୍ୟସ୍ଥିତା ସୁରମ୍ୟ ଉତ୍ପଳିନୀ ନଦୀ, ଗୟା ଓ ତତ୍ରତ୍ୟ ମହାନଦୀ, ଗଙ୍ଗା, ଯଶସ୍ୱିନୀ, କୌଶିକୀ, ନନ୍ଦା ଓ ଅପରନନ୍ଦା ଏ ଅନ୍ୟାନ୍ୟ ତୀର୍ଥ ଓ ଆଶ୍ରମ ସବୁ ଅବଲୋକନ ପୂର୍ବକ ଆତ୍ମାକୁ ପବିତ୍ର କଲେ ଓ ତତ୍ରସ୍ଥ ବହୁ ସଂଖ୍ୟକ ବ୍ରାହ୍ମଣମାନଙ୍କୁ ମୁକ୍ତ ହସ୍ତରେ ଗୋ ପ୍ରଦାନ କଲେ । ୮ । ଅଙ୍ଗ, ବଙ୍ଗ ଓ କଳିଙ୍ଗ ଦେଶ-ମାନଙ୍କରେ ଯେତେ ପୁଣ୍ୟତୀର୍ଥ ଓ ପବିତ୍ର ଆୟତନମାନ ଥିଲେ ସେ ସମସ୍ତ ପରିଦର୍ଶନ କଲେ । ୯ । ସେ ତୀର୍ଥମାନଙ୍କୁ ବିଧିପୂର୍ବକ ଦର୍ଶନ କରି ସେଠାରେ ବହୁ ଧନ ଦାନ କଲେ । ହେ ଭାରତ । କଳିଙ୍ଗ ରାଜ୍ୟର ଦ୍ୱାରରେ ପାଣ୍ଡବଙ୍କର ଅନୁଗାମୀ ବ୍ରାହ୍ମଣମାନେ କୁନ୍ତୀ-ପୁତ୍ରଙ୍କର ଅନୁଜ୍ଞା ଗ୍ରହଣ କରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ୧୦ । କୁନ୍ତୀ-ପୁତ୍ର ଧନଞ୍ଜୟ ମଧ୍ୟ ସେହି ବ୍ରାହ୍ମଣଙ୍କର ଅନୁଜ୍ଞା ନେଇ ଅଳ୍ପଲୋକ ସହାୟରେ ସାଗର ସମୀପକୁ ଗମନ କଲେ । ୧୧ । ଶୂର ଓ ପ୍ରଭୁ ଅର୍ଜ୍ଜୁନ କଳିଙ୍ଗ ଦେଶକୁ ଓ ପୁଣ୍ୟସ୍ଥାନ ମାନଙ୍କୁ ଅତିକ୍ରମ କରି ରମଣୀୟ ହର୍ମ୍ମ୍ୟମାନଙ୍କୁ ଅବଲୋକନ ପୂର୍ବକ ପ୍ରସ୍ଥାନ କଲେ । ୧୨ । ତପସ୍ୱୀ ସେବିତ ମହେନ୍ଦ୍ର ପର୍ବତକୁ ଦର୍ଶନ କରି କ୍ରମଶଃ ସେ ସମୁଦ୍ରତୀର ଦେଇ ମଣିପୁରରେ ଉପଗତ ହେଲେ । ୧୩ ।

ହେ ରାଜନ୍ । ସେହି ମହାବାହୁ ତତ୍ରତ୍ୟ ପୁଣ୍ୟତୀର୍ଥ ଓ ସ୍ଥାନ-ମାନଙ୍କୁ ସନ୍ଦର୍ଶନ କରି ପରଶେଷରେ ମଣିପୁରେଶ୍ୱର ଚିତ୍ରବାହନ ନାମ-ଧାରୀ ଧର୍ମ୍ମଜ୍ଞ ମହୀପତିଙ୍କ ନିକଟକୁ ଗମନ କଲେ । ତାହାଙ୍କର ଚିତ୍ରାଙ୍ଗଦା ନାମ୍ନୀ ଗୋଟିଏ ଚାରୁଦର୍ଶନା ଦୁହିତା ଥିଲେ । ୧୫ । ଏକଦା ସେ ବରବର୍ଣ୍ଣିନୀ ନଗର ମଧ୍ୟରେ ଯଦୃଚ୍ଛା କ୍ରମେ ଭ୍ରମଣ କରୁଥିଲେ; ଧନଞ୍ଜୟ ତାହାଙ୍କୁ ଦେଖି କାମାସକ୍ତ ହେଲେ; ତଦନନ୍ତର ରାଜା ଚିତ୍ରବାହନଙ୍କ ନିକଟକୁ ଗମନ କରି, ତାହାଙ୍କୁ ନିଜର ପ୍ରୟୋଜନ ଅବଗତ କଲେ ଓ, କହିଲେ—ହେ ରାଜନ୍ । ଆମ୍ଭେ ଉଚ୍ଚବଂଶୋଦ୍ଭବ କ୍ଷତ୍ରିୟ ଅଟୁଁ,

ଅସ୍ମଙ୍କୁ ଏହି କନ୍ୟାଙ୍କୁ ପ୍ରଦାନ କରନ୍ତୁ । ୧୭ । ତାହା ଶୁଣି ରାଜା ପ୍ରଶ୍ନ କଲେ, ଆପଣ କାହାର ପୁତ୍ର ? ଆପଣଙ୍କର ନାମ କଣ ? ଅର୍ଜ୍ଜୁନ ଉତ୍ତର କଲେ, ଆମ୍ଭେ କୁନ୍ତୀଙ୍କର ପୁତ୍ର, ଆମ୍ଭର ନାମ ଧନଞ୍ଜୟ । ୧୮ ।

ଅନନ୍ତର ରାଜା ସାନ୍ତ୍ୱନା ପୂର୍ବକ ତାହାଙ୍କୁ କହିଲେ, ହେ ପୁରୁଷଶ୍ରେଷ୍ଠ ! ଏହି କୁଳରେ ପ୍ରଭଞ୍ଜନ ନାମରେ ଏକ ନରପତି ଜନ୍ମ ଗ୍ରହଣ କରିଥିଲେ । ସେ ଅପୁତ୍ରିକ ଥିବାରୁ ସନ୍ତାନ ଲାଭ ନିମିତ୍ତ ତପସ୍ୟାରତ ହୋଇଥିଲେ । ତାହାଙ୍କର ଉଗ୍ର ତପସ୍ୟା ଦର୍ଶନ କରି ପିନାକପାଣି ଦେବ ଦେବ ଈଶ୍ୱର ତୁଷ୍ଟ ହେଲେ । ହେ ପାର୍ଥ ! ମହାଦେବ ଉମାପତି ପ୍ରସନ୍ନ ହୋଇ ତାହାଙ୍କ କୁଳରେ ପୁରୁଷାନୁକ୍ରମେ ଗୋଟିଏ ଗୋଟିଏ ସନ୍ତତି ଜାତ ହେବାର ବର, ପ୍ରାର୍ଥନାନୁସାରେ ପ୍ରଦାନ କଲେ । ୨୧ । ଅତଏବ ଏହି ବଂଶରେ ସର୍ବଦା ଗୋଟିଏ ମାତ୍ର ସନ୍ତାନ ବଂଶରକ୍ଷାର୍ଥ ପ୍ରସବ ହୁଅଇ; ଆମ୍ଭର ପୂର୍ବପୁରୁଷମାନଙ୍କର ସମସ୍ତଙ୍କର ଗୋଟିଏ ଗୋଟିଏ କୁମାର ଜାତ ହେଉଥିଲେ, ଆମ୍ଭର ଗୋଟିଏ ମାତ୍ର କୁଳରକ୍ଷା-କାରିଣୀ ସୁତା ଜାତ ହୋଇଅଛନ୍ତି; ହେ ପୁରୁଷର୍ଷଭ ! ଆମ୍ଭେ ଏହାଙ୍କୁ ପୁତ୍ର ପ୍ରାୟ ଭାବନା କରୁଁ । ୨୩ ।

ହେ ଭରତର୍ଷଭ ! ଆମ୍ଭେ ଏହାଙ୍କୁ ବିଧି ଅନୁସାରେ ପୁତ୍ରିକା କରିଅଛୁଁ । ଏହି ନିମିତ୍ତ ଏହି କନ୍ୟାଙ୍କ ଗର୍ଭରେ ତୁମ୍ଭର ଔରସରୁ ଯେଉଁ ପୁତ୍ରଟି ଜାତ ହେବେ, ସେ ଆମ୍ଭର ପୁତ୍ରିକା-ପୁତ୍ର ହେବେ ଓ ସେ ଆମ୍ଭର ବଂଶ-ରକ୍ଷା କରିବେ; ସେ ପୁତ୍ରଙ୍କୁ ଏହି କନ୍ୟାଙ୍କର ଶୁଳ୍କ ସ୍ୱରୂପ ଦେବାର ନିୟମ କରି, ହେ ପାଣ୍ଡବ ! ତୁମ୍ଭେ ଏହି କନ୍ୟାଙ୍କୁ ପ୍ରତିଗ୍ରହ କର । ୨୫ । କୁନ୍ତୀ-ପୁତ୍ର ସେ ନିୟମରେ ସମ୍ମତ ହୋଇ କନ୍ୟାଙ୍କର ପାଣିଗ୍ରହଣ କରି ସେ ନଗରରେ ତିନିବର୍ଷ ସମୟ ଅତିବାହିତ କଲେ ।୨୬। ସୁତ ଜାତ ହେବାପରେ ଅର୍ଜ୍ଜୁନ ସେହି ବରାଙ୍ଗନାଙ୍କୁ ଆଲିଙ୍ଗନ କରି, ନରପତିଙ୍କଠାରୁ ବିଦାୟ ଗ୍ରହଣ ପୂର୍ବକ, ଦେଶ ପରିକ୍ରମଣାର୍ଥ ବହିର୍ଗତ ହେଲେ । ୨୭ ।

---

## ଅଧ୍ୟାୟ—୨୧୭

ବୈଶମ୍ପାୟନ ବୋଇଲେ—ତଦନନ୍ତର ଭରତ ବଂଶାବତଂସ ଅର୍ଜୁନ ଦକ୍ଷିଣ ସମୁଦ୍ର ତୀରବର୍ତ୍ତୀ ତପସ୍ୱୀ-ନିକର-ସେବିତ ପୁଣ୍ୟତୀର୍ଥମାନଙ୍କୁ ଅଭିଗମନ କଲେ । ୧ । ତନ୍ମଧ୍ୟରେ ହୟମେଧ ଫଳ, ପାପ ପ୍ରଣାଶନ, ପ୍ରସନ୍ନ ଓ ସୁପବିତ୍ର ( ୧ ), ଅଗସ୍ତ୍ୟ ତୀର୍ଥ ( ୨ ) ସୌଭଦ୍ର ତୀର୍ଥ ( ୩ ) ପୌଲୋମ ତୀର୍ଥ ( ୪ ) କାରନ୍ଧମ ତୀର୍ଥ ଓ ( ୫ ) ଭାରଦ୍ୱାଜ ତୀର୍ଥନାମକ ପଞ୍ଚଗୋଟି ତୀର୍ଥରେ ପୂର୍ବେ ଅନେକ ତପସ୍ୱୀମାନେ ବାସ କରୁଥିଲେ; କିନ୍ତୁ ତତ୍କାଳରେ ସେହି ତପସ୍ୱୀମାନେ ସେହି ପଞ୍ଚତୀର୍ଥକୁ ବର୍ଜିତ କରିଥିଲେ; ଅର୍ଜୁନ ସେ ତୀର୍ଥ ମାନଙ୍କୁ ସୁଦ୍ଧା ସନ୍ଦର୍ଶନ କରିଥିଲେ । ୪ । ସେହି ପଞ୍ଚତୀର୍ଥମାନଙ୍କୁ ଜନଶୂନ୍ୟ ଓ ଧର୍ମଜ୍ଞ ମୁନିମାନଙ୍କ ଦ୍ୱାରା ପରିବର୍ଜିତ ହେବାର ଦେଖି ତପ୍ରମୀପସ୍ଥ ତପସ୍ୱୀମାନଙ୍କୁ କୃତାଞ୍ଜଳି ପୂର୍ବରେ ପ୍ରଶ୍ନ କଲେ—"କି ନିମିତ୍ତ ବ୍ରହ୍ମବାଦୀ ଓ ତପସ୍ୱିମାନେ ଏହି ପଞ୍ଚତୀର୍ଥକୁ ପରିହାର କଲେ ?" ତାପସ ମାନେ ଉତ୍ତର କଲେ—"ହେ କୁରୁନନ୍ଦନ ! ଏହି ପଞ୍ଚତୀର୍ଥର ଜଳମଧ୍ୟରେ ପଞ୍ଚଗୋଟି ଗ୍ରାହ ଅଛନ୍ତି, ସେମାନେ ତପୋଧନମାନଙ୍କୁ ହରଣ କରି ନେଇ ଯାନ୍ତି । ଏହି ନିମିତ୍ତ ସେହି ତୀର୍ଥମାନଙ୍କୁ ତପସ୍ୱୀମାନେ ପରିତ୍ୟାଗ କଲେ । ୭ ।

ବୈଶମ୍ପାୟନ ବୋଇଲେ—ପୁରୁଷୋତ୍ତମ ମହାବାହୁ ଅର୍ଜୁନ, ତପୋଧନମାନଙ୍କ ଠାରୁ ସେହି ବାକ୍ୟ ଶ୍ରବଣ କରି, ସେମାନଙ୍କର ବାରଣ ନ ମାନି ସେ ତୀର୍ଥମାନଙ୍କୁ ଦର୍ଶନାର୍ଥ ଗମନ କଲେ । ୮ । ତଦନନ୍ତର ପରନ୍ତପ ଅର୍ଜୁନ ସୌଭଦ୍ର ତୀର୍ଥରେ ଉପସ୍ଥିତ ହୋଇ, ଜଳମଧ୍ୟରେ ସହସା ପ୍ରବେଶ କରି ସ୍ନାନ କଲେ । ୯ । ଅନନ୍ତର ଜଳ ମଧ୍ୟବର୍ତ୍ତୀ ଗୋଟାଏ ମହାନ୍ କୁମ୍ଭୀର ପୁରୁଷ-ଶ୍ରେଷ୍ଠ କୁନ୍ତୀ-ପୁତ୍ର ଧନଞ୍ଜୟଙ୍କର ପାଦ-ଗ୍ରହଣ କଲା । ୧୦ । ବଳଶ୍ରେଷ୍ଠ ଅର୍ଜୁନ ସେହି ବଳବାନ୍ କୁମ୍ଭୀରକୁ ବଳପୂର୍ବକ ପାଦରେ ଭିଡ଼ି ଭିଡ଼ି ସ୍ଥଳ ଉପରକୁ ଆସିଲେ । ଯଶସ୍ୱୀ ଅର୍ଜୁନଙ୍କ ଦ୍ୱାରା ଉପରକୁ ଆକୃଷ୍ଟ ହେବାରୁ ସେହି ଗ୍ରାହ, ସ୍ୱରୂପ ତ୍ୟାଗ କରି ଗୋଟିଏ ସର୍ବାଭରଣ ଭୂଷିତା କଲ୍ୟାଣୀ ନାରୀ ରୂପେ ଦଣ୍ଡାୟମାନ ହେଲା । ୧୨ ।

କୁନ୍ତୀପୁତ୍ର ଧନଞ୍ଜୟ ସେହି ମନୋରମା ଓ ଲାବଣ୍ୟମୟୀ କାମିନୀଙ୍କୁ ଦେଖି ବିସ୍ମିତ ହୋଇ ପରମ ପ୍ରୀତି ପୂର୍ବକ ତାହାଙ୍କୁ ପ୍ରଶ୍ନ କଲେ, ହେ ଜଳଚରି ! ତୁମ୍ଭେ କିଏ ? ହେ କଲ୍ୟାଣି ! ତୁମ୍ଭେ କେଉଁଠାରୁ ଆସିଲ ? କି କାରଣ, ତୁମ୍ଭେ ପୂର୍ବେ ଈଦୃଶ ମହାନ୍ ପାପ କରିଥିଲ ?

ବର୍ଗା ବୋଇଲେ, ହେ ମହାବାହୋ ! ଆମ୍ଭେ ଦେବାରଣ୍ୟ-ବିହାରିଣୀ ଅପ୍‌ସରୀ ଅଟୁଁ, ହେ ମହାବଳ ! ଆମ୍ଭେ କୁବେରଙ୍କର ସର୍ବଦା ପ୍ରିୟତମା ଥିଲୁଁ, ଆମ୍ଭର ନାମ ବର୍ଗା; ଆମ୍ଭର ଆଉ ଚାରିଗୋଟି ସଖୀ ଅଛନ୍ତି, ସେମାନେ ମଧ୍ୟ ସମସ୍ତେ କାମଗାମିନୀ ଓ ଶୁଭଲକ୍ଷଣା ଅଟନ୍ତି । ୧୭ । ଏକଦା ଆମ୍ଭେ ସେମାନଙ୍କୁ ଘେନି ଲୋକପାଳଙ୍କ ନିକଟକୁ ଗମନ କରିଥିଲୁଁ; ପଥରେ ଆମ୍ଭେମାନେ ସମସ୍ତ ଗୋଟିଏ ସଂଶିତବ୍ରତ ବ୍ରାହ୍ମଣଙ୍କୁ ଦେଖିଲୁଁ । ସେ ରୂପବନ୍ତ, ଏକାକୀ ଯଥିରଣ୍ୟ ଓ ବେଦାଧ୍ୟୟନ କରୁଥାନ୍ତି । ହେ ରାଜନ୍ ! ତାହାଙ୍କ ତପସ୍ୟାର ପ୍ରଭାବରେ ସେ ବନ ତେଜୋମୟ ଦୃଶ୍ୟ ହେଉଥାଏ । ୧୮ । ଆଦିତ୍ୟଙ୍କ ସଦୃଶ ତାହାଙ୍କର ତେଜରେ ସେ ପ୍ରଦେଶ ସମୁଦାୟ ପ୍ରକାଶିତ ହୋଇଥାଏ । ତାହାଙ୍କର ତାଦୃଶ ଉତ୍ତମ ଓ ଅଦ୍ଭୁତ ରୂପ ଓ ତପସ୍ୟା ଦର୍ଶନ କରି ତାହାଙ୍କର ତପୋବିଘ୍ନ କରିବା ଇଚ୍ଛାରେ ଆମ୍ଭେ ଯେ ସ୍ଥାନରେ ଅବତୀର୍ଣ୍ଣ ହେଲୁ । ହେ ଭାରତ ! ଆମ୍ଭେ, ସୌରଭେୟୀ, ସମୀଚୀ, ବୁଦ୍‌ବୁଦା ଓ ଲତା ସମସ୍ତେ ଏକକାଳରେ ସେହି ବିପ୍ରଙ୍କର ସମୀପରେ ଉପସ୍ଥିତ ହେଲୁଁ ଓ ଗାୟନ ଏବଂ ହାସ୍ୟ କରି ସେହି ଦ୍ୱିଜଙ୍କୁ ପ୍ରଲୋଭିତ କଲୁଁ । ହେବୀର ! ସେ କୌଣସି ପ୍ରକାରେ ଆମ୍ଭମାନଙ୍କ ଠାରେ ମନ କଲେ ନାହିଁ । ସେ ମହାତେଜାଃ କିଞ୍ଚିନ୍ମାତ୍ର କମ୍ପିତ ସୁଦ୍ଧା ହେଲେ ନାହିଁ, ନିର୍ମଳ ତପସ୍ୟାରେ ସ୍ଥିତ ହେଲେ । ୨୨ । ହେ କ୍ଷତ୍ରିୟବର ! ସେ ବ୍ରାହ୍ମଣ କୁପିତ ହୋଇ ଆମ୍ଭମାନଙ୍କୁ ଶାପ ଦେଲେ ଓ କହିଲେ—ତୁମ୍ଭେମାନେ ଜଳ ମଧ୍ୟରେ ଗ୍ରାହ କଳେବର ଧାରଣ କରି ଶହେ ବର୍ଷ ରହିବ । ୨୩ ।

---

## ଅଧ୍ୟାୟ—୨୨୭

ହେ ଭରତସତ୍ତମ । ତତ୍ପରେ ଅମ୍ଭେମାନେ ସମସ୍ତେ ଅତିଶୟ ବ୍ୟଥିତ ହୋଇ ସେହି ଅଚ୍ୟୁତ ତପୋଧନ ବିପ୍ରଙ୍କର ଶରଣାଗତ ହେଲୁଁ । ଅମ୍ଭେମାନେ ବୋଇଲୁଁ, ହେ ଦ୍ୱିଜ । ରୂପ, ବୟସ ଓ କନ୍ଦର୍ପର ଦର୍ପରେ ଅମ୍ଭେମାନେ ଅଯୁକ୍ତ କର୍ମ କଲୁଁ, ଆପଣ ଆମ୍ଭମାନଙ୍କୁ କ୍ଷମା ଦେବାକୁ ଯୋଗ୍ୟ ଅଟନ୍ତି । ୨ । ହେ ତପୋଧନ । ଅମ୍ଭେମାନେ ଯେ ଆପଣଙ୍କ ସଦ୍‌ଗୁଣ ଶଂସିତ ବ୍ରତ ମୁନିଙ୍କୁ ପ୍ରଲୋଭିତ କରିବାକୁ ଆସିଲୁଁ, ଏହି ଆମ୍ଭର ଯଥେଷ୍ଟ ବଧ ହୋଇଅଛି * । ୩ । ଧର୍ମଜ୍ଞମାନେ ବିବେଚନା କରନ୍ତି ଯେ ସ୍ତ୍ରୀମାନେ ଅବଧ ରୂପେ ସୃଷ୍ଟ ହୋଇଅଛନ୍ତି; ଅତଏବ ଆପଣଙ୍କର ଧର୍ମ ଉଦିତ ହେଉ, ଆପଣ ଆମ୍ଭମାନଙ୍କୁ ହିଂସା କରନ୍ତୁ ନାହିଁ । ୪ । ହେ ଧର୍ମଜ୍ଞ । ବ୍ରାହ୍ମଣ ସବୁ ପ୍ରାଣୀଙ୍କର ମିତ୍ର ଅଟନ୍ତି । ହେ କଲ୍ୟାଣପ୍ରଦ । ମନୀଷୀମାନଙ୍କର ସେହି କଥା ସତ୍ୟ ହେଉ । ୫ । ଶିଷ୍ଟଜନ ମାନେ ଶରଣାପନ୍ନ ବ୍ୟକ୍ତିଙ୍କୁ ପାଳନ କରନ୍ତି; ଅମ୍ଭେମାନେ ଆପଣଙ୍କର ଶରଣାପନ୍ନ ହେଲୁଁ, ଅତଏବ ଆପଣ ଆମ୍ଭମାନଙ୍କୁ କ୍ଷମା କରନ୍ତୁ । ୬ ।

ବୈଶମ୍ପାୟନ ବୋଇଲେ—ହେ ବୀର । ଶୁଭ କର୍ମକାରୀ, ଧର୍ମାତ୍ମା, ରବି ସୋମ ସମ ପ୍ରଭାଶାଳୀ ସେହି ବ୍ରାହ୍ମଣ ପ୍ରସନ୍ନ ହେଲେ ଓ ବୋଇଲେ । ୭ । ଶତ ଓ ଶତ ସହସ୍ର ଶବ୍ଦର ଅର୍ଥ ଅନନ୍ତ କାଳ ହୁଅଇ; ଅମ୍ଭେ ଯେଉଁ 'ଶତ' ଶବ୍ଦ ପ୍ରୟୋଗ କଲୁଁ, ଏ ଶବ୍ଦ 'ଅକ୍ଷୟ ବାଚୀ' ନ ହୋଇ କେବଳ ଶହେ ବର୍ଷକୁ ବୁଝାଉ । ୮ । ତୁମ୍ଭେମାନେ ଗ୍ରାହ ହୋଇ ପୁରୁଷମାନଙ୍କୁ ଜଳରେ ଗ୍ରହଣ କରୁଥିବ; କିନ୍ତୁ ଯଦି ତୁମ୍ଭଙ୍କୁ କୌଣସି ପୁରୁଷସତ୍ତମ ବଳପୂର୍ବକ ଜଳରୁ ସ୍ଥଳକୁ ଘେନିଯିବେ, ତେବେ ତତ୍କାଳରେ ତୁମ୍ଭେ ନିଜ ରୂପକୁ ପ୍ରାପ୍ତ ହେବ । ଅମ୍ଭେ ପୂର୍ବେ ପରିହାସରେ ସୁଦ୍ଧା କାହାରିକୁ ଅନୃତ କହି ନାହୁଁ । ୧୦ । ତୁମ୍ଭେମାନେ ମୁକ୍ତ ହେବା ସମୟରୁ ସେ ତୀର୍ଥମାନ 'ନାରୀ ତୀର୍ଥ' ନାମରେ ବିଖ୍ୟାତ ହେବ ଓ ସାଧୁ-ଜନମାନେ ତହିଁରେ ଅବଗାହନ କରି ପବିତ୍ର ଓ ପୁଣ୍ୟଶୀଳ ହେବେ । ୧୧ ।

---

* ଅପ୍ସରାଏ କହିଲେ, ଅମ୍ଭେ ଯେ ଏଠାକୁ ଆସିଲୁଁ ମଲୁ ନାହିଁ କାହିଁକି ?

ବର୍ଗା ବୋଇଲେ—ତଦନନ୍ତର ଅମ୍ଭେମାନେ ପ୍ରଦକ୍ଷିଣ ପୂର୍ବକ ସେହି ବ୍ରାହ୍ମଣଙ୍କୁ ନମସ୍କାର କରି ସୁଦୁଃଖିତ ଚିତ୍ତରେ ସେ ସ୍ଥାନରୁ ଅପସୃତ ହେଲୁଁ ଓ ମନେ ମନେ ଚିନ୍ତାକଲୁଁ ଯେ କେଉଁ ସ୍ଥାନରେ ରହିଲେ ଅଳ୍ପକାଳ ମଧ୍ୟରେ ସେହି ମହାପୁରୁଷଙ୍କ ସହିତ ସମାଗମ ହୋଇ ପାରିବ ? । ୧୩ । ହେ ଭାରତ ! ଅମ୍ଭେମାନେ ଏହିପରି ଚିନ୍ତା କରୁ-ଅଛୁଁ, ମୁହୂର୍ତ୍ତିକ ମଧ୍ୟରେ ମହାଭାଗ ଦେବର୍ଷି ନାରଦଙ୍କୁ ଦର୍ଶନ କଲୁଁ । ୧୪ ।

ହେ ପାର୍ଥ ! ଅମିତଦ୍ୟୁତି ସେହି ଦେବର୍ଷିଙ୍କୁ ଦର୍ଶନ କରି ଅମ୍ଭେମାନେ ପ୍ରହୃଷ୍ଟ ହେଲୁଁ ଓ ତାହାଙ୍କ ଦର୍ଶନ କରି ଲଜ୍ଜିତ ମୁଖରେ ସ୍ଥିତ ହେଲୁଁ । ୧୫ । ସେ ଅମ୍ଭମାନଙ୍କର ଦୁଃଖର କାରଣ ପ୍ରଶ୍ନ କଲେ, ଅମ୍ଭେମାନେ ଯାହା ଯାହା ଘଟିଥିଲା, ତାହା ସେହି ମହାତ୍ମାଙ୍କୁ ଜଣାଇଲୁଁ । ସେ ସମସ୍ତ ବୃତ୍ତାନ୍ତ ଶୁଣି ଏହି ବଚନ କହିଲେ । ୧୬ । ଦକ୍ଷିଣ ସାଗରର ଅନୂପ ଦେଶରେ ଅତି ପବିତ୍ର ଓ ରମଣୀୟ ପଞ୍ଚତୀର୍ଥ ଅଛନ୍ତି, ତୁମ୍ଭେମାନେ ଅବିଳମ୍ବରେ ସେ ସ୍ଥାନକୁ ଗମନ କର । ସେଠାରେ ଶୁଦ୍ଧାତ୍ମା, ପୁରୁଷବ୍ୟାଘ୍ର, ପାଣ୍ଡୁପୁତ୍ର ଧନଞ୍ଜୟ ତୁମ୍ଭମାନଙ୍କୁ ଶୀଘ୍ର ଏହି ଦୁଃଖରୁ ମୁକ୍ତ କରିବେ, ଏଥିରେ ସଂଶୟ ନାହିଁ । ୧୮ । ହେ ବୀର ! ଅମ୍ଭେମାନେ ସମସ୍ତେ ତାହାଙ୍କର ଏହି ବାକ୍ୟ ଶ୍ରବଣ କରି ଏହିଠାକୁ ଆଗମନ କଲୁଁ । ହେ ଅନଘ ! ସତ୍ୟ ସତ୍ୟ ଅମ୍ଭେ ତୁମ୍ଭଦ୍ୱାରା ମୁକ୍ତ ହେଲୁଁ । ୧୯ । ହେ ବୀର ! ଅମ୍ଭର ଅନ୍ୟ ଚାରିଗୋଟି ସଖୀ ଜଳ ମଧ୍ୟରେ ଅଛନ୍ତି, ଆପଣ ସେମାନଙ୍କୁ ମୁକ୍ତ କରି ଶୁଭକର୍ମ ସମ୍ପାଦନ କରନ୍ତୁ । ୨୦ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର, ହେ ରାଜନ୍ ! ପାଣ୍ଡବ-ଶ୍ରେଷ୍ଠ, ବୀର୍ଯ୍ୟଶାଳୀ ମହାତ୍ମା ଅର୍ଜୁନ ସମସ୍ତଙ୍କୁ ସେହି ଶାପରୁ ମୋଚନ କଲେ । ୨୧ । ହେ ରାଜନ୍ ! ଜଳରୁ ସେ ଅପ୍‌ସରାମାନେ ଉତ୍ଥିତ ହୋଇ ସ୍ୱକୀୟ ପୂର୍ବ ରୂପ ଧାରଣ କରି ପୂର୍ବ ପ୍ରାୟ ରୂପବତୀ ହୋଇଗଲେ । ୨୨ । ଏହି ପ୍ରକାରେ ଅର୍ଜୁନ ସବୁ ତୀର୍ଥମାନଙ୍କୁ ଶୋଧନ କରି ଅପ୍‌ସରାମାନଙ୍କୁ ବିଦାୟ ଦେଇ ଚିତ୍ରାଙ୍ଗଦାଙ୍କୁ ବିଦାୟ ଦେଇ ଚିତ୍ରାଙ୍ଗଦାଙ୍କୁ ଦେଖିବା ନିମିତ୍ତ ମଣିପୁର ରାଜ୍ୟକୁ ପୁନର୍ବାର ଗମନ କଲେ । ୨୩ । ତତ୍‌କାଳରେ ତାହାଙ୍କର ପୁତ୍ର ଜାତ ହୋଇ ବଭ୍ରୁବାହନ ନାମରେ ରାଜା ହୋଇଥିଲେ । ସେହି ପୁତ୍ରଙ୍କୁ ଅବଲୋକନ କରି ଚିତ୍ର-ବାହନଙ୍କୁ ପାଣ୍ଡବ ବୋଇଲେ, ହେ ନରାଧିପ ! ଚିତ୍ରାଙ୍ଗଦାଙ୍କର ଶୁଳ୍କ

ସ୍ୱରୂପ ଏହି ବଭ୍ରୁବାହନଙ୍କୁ ଗ୍ରହଣ କରନ୍ତୁ । ଏତଦ୍ଦ୍ୱାରା ଅମ୍ଭେ ଋଣମୁକ୍ତ ହେଉଁ । ୨୫ । ପାଣ୍ଡୁନନ୍ଦନ ପୁନର୍ବାର ଚିତ୍ରାଙ୍ଗଦାଙ୍କୁ ବୋଇଲେ, ତୁମ୍ଭେ ଏହିଠାରେ ରହି ବଭ୍ରୁବାହନଙ୍କୁ ବର୍ଦ୍ଧିତ କର, ତୁମ୍ଭର ମଙ୍ଗଳ ହେବ ।୨୬। ପରେ ତୁମ୍ଭେ ଆମ୍ଭର ନିବାସ ଇନ୍ଦ୍ରପ୍ରସ୍ଥକୁ ଗମନ କରି ସେଠାରେ ସୁଖରେ କାଳାତିପାତ କରିବ, ଆମ୍ଭର ଜନନୀ କୁନ୍ତୀ, ଓ ଭ୍ରାତା ଯୁଧିଷ୍ଠିର, ଭୀମ ଓ କନିଷ୍ଠ ଭ୍ରାତା ଦୁହିଁଙ୍କୁ ଅଥଚ ଅପରାପର ବାନ୍ଧବମାନଙ୍କୁ ସେଠାରେ ଯାଇ ଦର୍ଶନ କରିବ । ହେ ଅନିନ୍ଦିତେ । ବାନ୍ଧବମାନଙ୍କର ସହିତରେ ରହି ତୁମ୍ଭେ ସୁଖରେ କାଳ କ୍ଷେପଣ କରିବ । ୨୮ ।

ଧର୍ମନିଷ୍ଠ ଓ ସତ୍ୟ ଧୃତ, କୁନ୍ତୀ-ପୁତ୍ର ଯୁଧିଷ୍ଠିର ସମୁଦାୟ ପୃଥିବୀକୁ ଜୟ କରି ରାଜସୂୟ ଯଜ୍ଞ କରିବେ । ୨୯ । ପୃଥିବୀରେ ନୃପସଂଜ୍ଞାଧାରୀ ଯେତେ ରାଜା ଅଛନ୍ତି, ସେମାନେ ସମସ୍ତେ ବହୁରତ୍ନମାନଙ୍କୁ ଘେନି ସେଠାକୁ ଆସିବେ । ତୁମ୍ଭର ପିତା ମଧ୍ୟ ସେଠାକୁ ଆସିବେ । ଅମ୍ଭେ ସେହି ରାଜସୂୟରେ ଏକକାଳରେ ତୁମ୍ଭମାନଙ୍କୁ ଦର୍ଶନ କରିବୁଁ, ବର୍ତ୍ତମାନ ସୁପୁତ୍ର ପ୍ରତିପାଳନରେ ଯତ୍ନବତୀ ହୁଅ, ଶୋକ କରନା । ୩୧ । ଏହି ପୁତ୍ର ବଭ୍ରୁବାହନ ଆମ୍ଭର ବହିଚରପ୍ରାଣ;ଅତଏବ ତୁମ୍ଭର ବଂଶବର୍ଦ୍ଧନ ପୁତ୍ରଙ୍କୁ ଭରଣ କର । ୩୨ । ଚିତ୍ରବାହନଙ୍କର ଦାୟାଦ (୧) ଓ ଧର୍ମରେ ପୁରୁବଂଶର ନନ୍ଦନକାରୀ; ଅଥଚ ପାଣ୍ଡବମାନଙ୍କର ଏହି ପୁତ୍ରକୁ ସର୍ବଦା ଯତ୍ନପୂର୍ବକ ପାଳନ କର । ୩୩ । ହେ ଅନିନ୍ଦିତେ । ଆମ୍ଭର ବିପ୍ରୟୋଗ ନିମିତ୍ତ ସନ୍ତାପ କର ନା; ଚିତ୍ରାଙ୍ଗଦାଙ୍କୁ ଏହି ପରି କହି ଗୋକର୍ଣ୍ଣ ନାମକ ତୀର୍ଥକୁ ଗମନ କଲେ । ୩୪ । ସେ ତୀର୍ଥ ପଶୁପତିଙ୍କର ଆଦି ସ୍ଥାନ ଅଟେ, ତାହାର ଦର୍ଶନ ମାତ୍ର ମୁକ୍ତି ଲାଭ ହୁଅଇ, ଯେଉଁଠାରେ ପାପୀ ମନୁଜ ସୁଦ୍ଧା ଅବ୍ୟୟପଦକୁ ପ୍ରାପ୍ତ ହୁଅଇ । ୩୫ ।

---

(୧) ଦାୟାଦ – ରାଜ୍ୟାଧିକାରୀ ଓ ଉତ୍ତରାଧିକାରୀ

## ଅଧ୍ୟାୟ—୨୧୮

ବୈଶମ୍ପାୟନ ବୋଇଲେ—ଅମିତ ବିକ୍ରମ ଅର୍ଜ୍ଜୁନ ପଶ୍ଚିମସମୁଦ୍ରର ଉପକୂଳ ପ୍ରଦେଶରେ ଯେତେ ପୁଣ୍ୟତୀର୍ଥ ଓ ସ୍ଥାନ ଅଛି, ତାହାସବୁ ଆନୁପୂର୍ବିକ ଦର୍ଶନ କଲେ, ତଦନନ୍ତର ପ୍ରଭାସ ତୀର୍ଥକୁ ଗମନ କଲେ । ୨ । ମଧୁସୂଦନ ଶ୍ରବଣ କଲେ ଯେ ଅପରାଜିତ ବିଭତ୍ସୁ ସୁପୁଣ୍ୟ ଓ ରମଣୀୟ ପ୍ରଭାସ ସ୍ଥାନରେ ଉପଗତ ହୋଇଅଛନ୍ତି । ସଖା କୁନ୍ତୀ-ସୁତଙ୍କୁ ଦର୍ଶନ କରିବା ନିମିତ୍ତ ମାଧବ ସେଠାକୁ ଆଗମନ କଲେ । କୃଷ୍ଣ ଓ ପାଣ୍ଡବ ଦୁହିଁଙ୍କର ସେଠାରେ ଭେଟ ହେଲା । ଦୁହେଁ ପରସ୍ପରକୁ ସମାଶ୍ଳେଷ କରି ଅନ୍ୟୋନ୍ୟର କୁଶଳ ପ୍ରଶ୍ନ କଲେ । ନର-ଋଷି ଅର୍ଜ୍ଜୁନ ଓ ନର ନାରାୟଣ କୃଷ୍ଣ—ଏହି ଦୁଇ ସଖା ସେହି ସ୍ଥାନରେ ବାସ କଲେ । ୫ ।

ତତ୍ପରେ ବାସୁଦେବ ସେହି ପର୍ଯ୍ୟଟନ ବିଷୟରେ ଅର୍ଜ୍ଜୁନଙ୍କୁ ନାନାବିଧ ବିଷୟରେ ପ୍ରଶ୍ନ କଲେ—କି କାରଣ ହେ ପାଣ୍ଡବ ! ତୁମ୍ଭେ ଏହି ତୀର୍ଥାଟନ କରୁଅଛ ? । ୬ । ଅର୍ଜ୍ଜୁନ ସମୁଦାୟ ବୃତ୍ତାନ୍ତ ଯଥାପୂର୍ବକ ବର୍ଣ୍ଣନ କଲେ । ତାହା ଶୁଣି ବୃଷ୍ଣି-ବଂଶଜ କୃଷ୍ଣ ବୋଇଲେ—"ଏହା ସମୁଚିତ ହୋଇଅଛି" ।୭। କୃଷ୍ଣ ଓ ପାଣ୍ଡବ ଦୁହେଁ ପ୍ରଭାସରେ ଯଥାସୁଖରେ ବିହାର କରି ରୈବତକ ମହୀଧରରେ ବାସ କରିବା କାରଣ ଗମନ କଲେ । ୮ । କୃଷ୍ଣଙ୍କ ଆଦେଶାନୁସାରେ ପୂର୍ବରୁ ସେ ମହୀଧର ଉପରେ ଲୋକେ ଭୋଜନୀୟ ଦ୍ରବ୍ୟମାନ ଆହରଣ କରିଥିଲେ ଓ ବାସାର୍ଥ ଗୃହମାନଙ୍କୁ ମଣ୍ଡିତ କରିଥିଲେ । ୯ ।

ପାଣ୍ଡବ-ଶ୍ରେଷ୍ଠ ସେ ସମସ୍ତ ଦ୍ରବ୍ୟ ଗ୍ରହଣ କରି ଓ ଭୋଜନ କରି ବାସୁଦେବଙ୍କ ସହିତ ନଟମାନଙ୍କର ନର୍ତ୍ତନ ଦେଖିଲେ । ୧୦ । ପରେ ମହାମତି ପାଣ୍ଡବ ସେମାନଙ୍କୁ ଯଥାଯୋଗ୍ୟ ପୁରସ୍କାର ପ୍ରଦାନ କରି ବିଦାୟ ଦେଇ ସୁସଂସ୍କୃତ ଦିବ୍ୟ ଶଯ୍ୟାରେ ଶୟନ କଲେ । ୧୧ । ମହାବାହୁ ଅର୍ଜ୍ଜୁନ ସେହି ଶୁଭ ଶୟନରେ ଶୟାନ ରହି ବାସୁଦେବଙ୍କଠାରେ ତୀର୍ଥ, ପଲ୍ୱଲ ଓ ପର୍ବତମାନଙ୍କର ଶୋଭା, ନଦୀ ଓ ବନମାନଙ୍କର ରମଣୀୟତା ବର୍ଣ୍ଣନ କଲେ । ୧୨ । ହେ ଜନମେଜୟ ! ଏହାପରେ କହୁଁ କହୁଁ ସ୍ୱର୍ଗ ସନ୍ନିଭ ସେହି ଶୟନରେ କୁନ୍ତୀ-ସୁତ ନିଦ୍ରା ଦ୍ୱାରା ଅପହୃତ ହେଲେ ।୧୩। ତଦନନ୍ତର ପ୍ରଭାତରେ ବୀଣାଶବ୍ଦ, ମଧୁରଗୀତ ଓ ମଙ୍ଗଳ ସ୍ତୁତି ଦ୍ୱାରା

ପ୍ରବୋଧିତ ହୋଇ ଗାତ୍ରୋତ୍ଥାନ କଲେ । ୧୪ । ଅବଶ୍ୟ କାର୍ଯ୍ୟମାନଙ୍କୁ ସମାପ୍ତ କରି ବୃଷ୍ଣିପ୍ରବର କୃଷ୍ଣଙ୍କ ଦ୍ୱାରା ଅଭିନନ୍ଦିତ ହୋଇ କାଞ୍ଚନ ରଥରେ ଆରୋହଣ କରି ଦ୍ୱାରକାକୁ ଗମନ କଲେ । ୧୫ ।

ହେ ଜନମେଜୟ ! କୁନ୍ତୀପୁତ୍ରଙ୍କ ସମ୍ମାନାର୍ଥ ଦ୍ୱାରକାପୁରୀ ଅଳଙ୍କୃତା ହେଲା; ଗୃହ ଓ ଆରାମ ଉଦ୍ୟାନ ପ୍ରଭୃତି ସମସ୍ତ ସ୍ଥାନ ସୁମଣ୍ଡିତ ହେଲା । ୧୬ । ଦ୍ୱାରକାବାସି ଜନମାନେ କୁନ୍ତୀ ପୁତ୍ରଙ୍କୁ ଦର୍ଶନ କରିବା ନିମିତ୍ତ ଶତଶତ ଓ ସହସ୍ର ସହସ୍ର ହୋଇ ରାଜମାର୍ଗକୁ ପୂର୍ଣ୍ଣ କଲେ । ୧୭ । ଭୋଜ, ବୃଷ୍ଣୀ ଓ ଅନ୍ଧକ ବଂଶୀୟ ସ୍ତ୍ରୀମାନେ ଅର୍ଜ୍ଜୁନଙ୍କୁ ଦେଖିବା ନିମିତ୍ତ ଉଚ୍ଚସ୍ଥାନ ମାନଙ୍କରେ ଅସଂଖ୍ୟ ପରିମାଣରେ ସମବେତ ହେଲେ । ୧୮ । ଭୋଜ, ବୃଷ୍ଣି ଓ ଅନ୍ଧକ ବଂଶୀୟ ସମସ୍ତ ଜନମାନଙ୍କ ଦ୍ୱାରା ସତ୍କୃତ ହୋଇ ନମସ୍କରଣୀୟ ବ୍ୟକ୍ତିମାନଙ୍କୁ ଅଭିବାଦନ କଲେ ଓ ସେମାନଙ୍କ ଦ୍ୱାରା ପ୍ରତିନନ୍ଦିତ ହେଲେ । ୧୯ । କୁମାରମାନଙ୍କ ଦ୍ୱାରା ସର୍ବ ପାର୍ଶ୍ୱରୁ ବୀର ଅର୍ଜ୍ଜୁନ ସତ୍କାର ଦ୍ୱାରା ପ୍ରେରିତ ହୋଇ ସମାନ ବୟସ୍କ ସମସ୍ତଙ୍କୁ ପୁନଃ ପୁନଃ ଆଲିଙ୍ଗନ କଲେ ।୨୦। ରତ୍ନସମାବୃତ ଭୋଜ୍ୟ-ବହୁଳ କୃଷ୍ଣଙ୍କର ରମଣୀୟ ଭବନରେ କୃଷ୍ଣଙ୍କ ସହ ଅର୍ଜ୍ଜୁନ ବହୁଳ ଶର୍ବରୀ ବାସ କଲେ । ୨୧ ।

---

## ଅଧ୍ୟାୟ—୨୧୯

ବୈଶମ୍ପାୟନ ବୋଇଲେ—ହେ ନୃପସତ୍ତମ ! ତତ୍‌ପରେ ସେହି ରୈବତକ ପର୍ବତରେ ବୃଷ୍ଣି ଓ ଅନ୍ଧକ ବଂଶୀୟ ବୀରମାନେ କତିପୟ ଦିବସ ଉତ୍ସବ କଲେ । ଭୋଜ, ବୃଷ୍ଣି ଓ ଅନ୍ଧକ ବଂଶୀୟ ବୀର ବୃନ୍ଦ ସେହି ଗିରିର ଉତ୍ସବରେ ସହସ୍ର ସହସ୍ର ବ୍ରାହ୍ମଣମାନଙ୍କୁ ବିବିଧ ଦ୍ରବ୍ୟମାନ ଦାନ କଲେ । ୨ ହେ ରାଜନ୍ ! ରୈବତକ ପର୍ବତର ଚତୁର୍ଦ୍ଦିଗରେ ଉପତ୍ୟକା ଓ ଅଧିତ୍ୟକା ସ୍ଥାନମାନ ରତ୍ନନିଚୟରେ ଅଳଙ୍କୃତ ଓ କଳ୍ପପାଦପ ସଦୃଶ ବିବିଧ କାମ୍ୟ ଦ୍ରବ୍ୟରେ ପରିପୂର୍ଣ୍ଣ ପ୍ରାସାଦ ନିକରରେ ମଣ୍ଡିତ ହେଲା । ୩ । ବାଦକମାନେ ବାଦ୍ୟମାନଙ୍କୁ ବାଦନ କଲେ ଓ ନର୍ତ୍ତକମାନେ ବିବିଧ ପ୍ରକାର ନୃତ୍ୟ ଓ ଗାୟକମାନେ ଉତ୍ତମୋତ୍ତମ ଗାନମାନ କଲେ । ୪ । ସୁମହାତେଜା ବୃଷ୍ଣି-କୁମାରମାନେ ଅଳଙ୍କୃତ

ହୋଇ ସୁବର୍ଣ୍ଣ ଶିବିଯାନରେ ଆରୋହଣ କରି ସର୍ବତଃ ଦେଦୀପ୍ୟମାନ ହୋଇ ପରିଭ୍ରମଣ କଲେ । ୫ । ଶତ ସହସ୍ର ପୌରଜନମାନେ ଭାର୍ଯ୍ୟା ଓ ସହଚରବର୍ଗଙ୍କ ସହିତ ଯାନାରୋହଣରେ ଓ କେହି ଅବା ପାଦଗ୍ଚାରଣରେ ବିଚରଣ କଲେ । ୬ ।

ହେ ଭାରତ ! ରେବତୀଙ୍କ ସହ ପ୍ରଭୁ ହଳଧର ମଧୁମତ୍ତ ହୋଇ ଓ ଗନ୍ଧର୍ବମାନଙ୍କ ଦ୍ୱାରା ଅନୁଗତ ହୋଇ ବିଚରଣ କଲେ । ୭ । ତଦ୍ରୂପ ବୃଷ୍ଣି-କୁଳର ପ୍ରତାପଶାଳୀ ରାଜା ଉଗ୍ରସେନ ସ୍ତ୍ରୀମାନଙ୍କ ଘେନି ଗନ୍ଧର୍ବଗଣରେ ପରିବୃତ ହୋଇ ବିହାର କଲେ । ସମର ଦୁର୍ମ୍ମଦ ଶାମ୍ବ ଓ ରୌକ୍ମିଣେୟ ମଧୁମତ୍ତ ହୋଇ ଦିବ୍ୟ ମାଳ୍ୟ ଓ ଦିବ୍ୟ ବସନ ପରିଧାନ ପୂର୍ବକ ଦେବତାଙ୍କ ପ୍ରାୟ ବିହରଣ କଲେ । ୯ । ଅକ୍ରୂର, ସାରଣ, ଗଦ, ବଭ୍ରୁ, ବିଦୂରଥ, ନିଶଠ, ଚାରୁଦେଷ୍ଣ, ପୃଥୁ, ବିପୃଥୁ, ସତ୍ୟକ, ସାତ୍ୟକି ଭଙ୍ଗକାର, ମହାରବ, ହାର୍ଦ୍ଦିକ୍ୟ, ଉଦ୍ଧବ ଓ ଅନ୍ୟାନ୍ୟ ଅନେକ ବୀର ପୃଥକ୍ ପୃଥକ ସ୍ତ୍ରୀ ଗନ୍ଧର୍ବଗଣଙ୍କ ଦ୍ୱାରା ପରିବୃତ ହୋଇ ସେଠାରେ ବିଚରଣ କଲେ, ତହିଁ ଯେ ମହୋତ୍ସବ ବିଶେଷରେ ଶୋଭାପ୍ରଦ ହେଲା । ୧୨ । ସେହି ମହାଦ୍ଭୁତ ବିଚିତ୍ର କୁତୂହଳକୁ ବାସୁଦେବ ଓ ପାର୍ଥ ସଙ୍ଗ ହୋଇ ଗମନ କଲେ । ୧୩ ।

ପରିଭ୍ରମଣ କରୁଁ କରୁଁ ସେ ଦୁହେଁ ଶୁଭ-ଲକ୍ଷଣା ବସୁଦେବ ସୁତା ସଖୀଗଣ ପରିବୃତା ଭଦ୍ରାଙ୍କୁ ଦର୍ଶନ କଲେ । ୧୪ । ତାହାଙ୍କୁ ଦେଖିବା ମାତ୍ର ଅର୍ଜ୍ଜୁନଙ୍କର କନ୍ଦର୍ପ ଜାତ ହେଲା, ଯେ ଅର୍ଜ୍ଜୁନ ସୁଭଦ୍ରାଙ୍କ ଠାରେ ଏକାଗ୍ରମନା ହେବାର କୃଷ୍ଣ ଲକ୍ଷିତ କଲେ । ୧୫ । ହେ ଭାରତ ! ପୁରୁଷବ୍ୟାଘ୍ର ଶ୍ରୀକୃଷ୍ଣ ହାସ୍ୟ କରି ଅର୍ଜ୍ଜୁନଙ୍କୁ ଉଦ୍ଦେଶ୍ୟ କରି ବୋଇଲେ, ବନେଚର ବ୍ୟକ୍ତିଙ୍କର ମନ କିପାଇଁ କାମରେ ଆଲୋଡ଼ିତ ହେଉଅଛି । ୧୬ । ହେ ପାର୍ଥ ! ଏ ଆମ୍ଭର ଭଗିନୀ, ସାରଣଙ୍କର ସହୋଦରା; ତାହାଙ୍କ ନାମ ସୁଭଦ୍ରା, ଆମ୍ଭ ପିତାଙ୍କର ସ୍ନେହାସ୍ପଦା, ତୁମ୍ଭର ମଙ୍ଗଳ ହେଉ; ଯଦି ତୁମ୍ଭର ଏହାଙ୍କ ଠାରେ ଇଚ୍ଛାଥାଏ, ତେବେ ଆମ୍ଭେ ସ୍ୱୟଂ ତୁମ୍ଭ ନିମିତ୍ତ ପିତାଙ୍କୁ କହିବୁଁ । ୧୭ ।

ଅର୍ଜ୍ଜୁନ ବୋଇଲେ—ଯେ ବସୁଦେବଙ୍କର ସୁତା, ଯେ ବାସୁଦେବଙ୍କର ଭଗ୍ନୀ ଓ ଏତାଦୃଶ ରୂପ ସମ୍ପନ୍ନା, ସେ କେଉଁ ବ୍ୟକ୍ତିଙ୍କୁ

ମୋହିତ ନ କରିବେ ? ବୃଷ୍ଣି-କୁଳ-ପ୍ରସୂତା ତୁମ୍ଭର ଏହି ଭଗିନୀ ଯେବେ ଆମ୍ଭର ମହିଷୀ ହେବେ, ତେବେ ତୁମ୍ଭେ ଆମ୍ଭର ସମସ୍ତ କଲ୍ୟାଣ ସିଦ୍ଧ କଲ, ଏଥିରେ ସଂଶୟ ନାହିଁ । ୧୯ । ହେ ଜନାର୍ଦ୍ଦନ ! ଏହାଙ୍କୁ କେଉଁ ଉପାୟ ଦ୍ୱାରା ପ୍ରାପ୍ତ ହେବୁଁ, ତାହା ବୋଲ; ମନୁଷ୍ୟ ଦ୍ୱାରା ଯଦି ସେ ଉପାୟ ଅବଲମ୍ବିତ ହୋଇପାରେ, ତେବେ ଆମ୍ଭେ ସର୍ବ ଯତ୍ନରେ ତାହାର ଅନୁଷ୍ଠାନ କରିବୁଁ । ୨୦ ।

ବାସୁଦେବ ବୋଇଲେ—ହେ ପୁରୁଷର୍ଷଭ ! କ୍ଷତ୍ରିୟମାନଙ୍କର ସ୍ୱୟମ୍ବର ପ୍ରସିଦ୍ଧ ଅଟେ, ମାତ୍ର ତହିଁରେ ସଂଶୟ ଥାଏ, କାରଣ ସ୍ତ୍ରୀମାନଙ୍କର ସ୍ୱଭାବ ଓ ଅନ୍ତଃକରଣ ଶୌର୍ଯ୍ୟ ଓ ପାଣ୍ଡିତ୍ୟାଦି ଗୁଣର ଅନୁବର୍ତ୍ତୀ ନୁହଇ । ଅତଏବ ଶୂର କ୍ଷତ୍ରିୟମାନଙ୍କ ପକ୍ଷରେ ବଳପୂର୍ବକ କନ୍ୟା ହରଣ କରି ବିବାହ କରିବା ପ୍ରଶଂସନୀୟ ବୋଲି ଧର୍ମଜ୍ଞମାନେ କହିଅଛନ୍ତି । ୨୨ । ଅତଏବ ହେ ଅର୍ଜ୍ଜୁନ ! ତୁମ୍ଭେ ସେହି ବିଧାନକୁ ଅବଲମ୍ବନ କରି ବଳପୂର୍ବକ ଆମ୍ଭର କଲ୍ୟାଣମୟୀ ଭଗିନୀଙ୍କୁ ହରଣ କର । ସ୍ୱୟମ୍ବର ହେଲେ ଏ କାହାକୁ ବରଣ କରିବେ ତାହାର କି ସ୍ଥିରତା ଅଛି ? । ୨୩ । ଅର୍ଜ୍ଜୁନ ଓ କୃଷ୍ଣ ଏହି ବିଷୟ ନିଶ୍ଚୟ କରି ଇନ୍ଦ୍ରପ୍ରସ୍ଥବର୍ତ୍ତୀ ଧର୍ମରାଜ ଯୁଧିଷ୍ଠିରଙ୍କ ସମୀପକୁ ଶୀଘ୍ରଗାମୀ ଦୂତମାନଙ୍କୁ ପ୍ରେରଣ କଲେ । ମହାବାହୁ ପାଣ୍ଡୁନନ୍ଦନ ଯୁଧିଷ୍ଠିର ସେ ସବୁ ବୃତ୍ତାନ୍ତ ଶ୍ରବଣ କରି ତଦ୍‌ବିଷୟରେ ଅନୁଜ୍ଞା ପ୍ରଦାନ କଲେ । ୨୫ ।

---

## ଅଧ୍ୟାୟ—୨୨୦

ବୈଶମ୍ପାୟନ ବୋଇଲେ—ହେ ଜନମେଜୟ ! ଯୁଧିଷ୍ଠିରଙ୍କ ଠାରୁ ଅନୁଜ୍ଞା ଲଭିଲା ପରେ ରୈବତକ ପର୍ବତକୁ ସୁଭଦ୍ରା ଗମନ କରିଥିବାର ଅବଗତ ହୋଇ ପୁରୁଷର୍ଷଭ ଅର୍ଜ୍ଜୁନ ବାସୁଦେବଙ୍କ ସହିତ କର୍ତ୍ତବ୍ୟ ନିରୂପଣ କରି ତାହାଙ୍କ ମତ ଗ୍ରହଣ କରି ସେଠାକୁ ଗମନ କଲେ । ୨ । ଖଡ୍‌ଗ, କବଚ, ଗୋଧାଙ୍ଗୁଳିତ୍ରାଣ ପ୍ରଭୃତି ଧାରଣ କରି ଶୈବ୍ୟ ଓ ସୁଗ୍ରୀବ ନାମକ ଅଶ୍ୱସଂଯୁକ୍ତ, କିଙ୍କିଣୀ ମାଳାଳଙ୍କୃତ, ମେଘନିନାଦୀ ପ୍ରଜ୍ୱଳିତ ହୁତାଶନ ସଦୃଶ ତେଜୋମୟ, ଅଥଚ ଶତ୍ରୁ ସମୂହର ହର୍ଷ-

ସଂଘାତୀ କାଞ୍ଚନାଙ୍ଗ ରଥରେ ଆରୋହଣ କରି ମୃଗୟା ବ୍ୟପଦେଶରେ ପୁରୁଷର୍ଷଭ ଅର୍ଜ୍ଜୁନ ପ୍ରସ୍ଥାନ କଲେ । ୫ ।

ଅନନ୍ତର ରୈବତକ ଶୈଳେନ୍ଦ୍ରର ପୂଜ୍ୟ ଦେବତାଙ୍କର ଓ ବ୍ରାହ୍ମଣମାନଙ୍କର ସ୍ୱସ୍ତିବାଚନ କରାଇ ଗିରିବରର ପ୍ରଦକ୍ଷିଣ ସମାପନାନ୍ତର ଦ୍ୱାରକାଭିମୁଖୀ ହୋଇ ସୁଭଦ୍ରା ପ୍ରସ୍ଥାନ କରୁଅଛନ୍ତି, ଏମନ୍ତ ସମୟରେ କୁନ୍ତୀପୁତ୍ର ସେହି ସର୍ବାଙ୍ଗ ସୁନ୍ଦରୀଙ୍କୁ ଦର୍ଶନ କରି କାମବାଣରେ ପ୍ରପୀଡ଼ିତ ହୋଇ ଶୀଘ୍ର ତାହାଙ୍କ ଅଭିମୁଖକୁ ଧାବମାନ ହୋଇ ତାହାଙ୍କୁ ନେଇ ରଥରେ ଆରୋପଣ କଲେ । ତତ୍ପରେ ପୁରୁଷବ୍ୟାଘ୍ର ଅର୍ଜ୍ଜୁନ ସେହି ମନ୍ଦହାସିନୀଙ୍କୁ କାଞ୍ଚନାଙ୍ଗ ରଥରେ ବସାଇ ସ୍ୱନଗରକୁ ପ୍ରସ୍ଥାନ କଲେ ।୮।

ସୈନିକ ଜନମାନେ ସୁଭଦ୍ରାଙ୍କୁ ହୃତ ହେବାର ଦେଖି ଚିତ୍କାର କରି ଦ୍ୱାରକାପୁରୀର ଅଭିମୁଖରେ ପ୍ରଧାବିତ ହେଲେ । ୯ । ସେମାନେ ସୁଧର୍ମ୍ମା ସଦୃଶୀ ସଭାରେ ଉପସ୍ଥିତ ହୋଇ ସଭାପାଳଙ୍କ ସମକ୍ଷରେ ପାର୍ଥଙ୍କର ବିକ୍ରମ ବୃତ୍ତାନ୍ତ ବର୍ଣ୍ଣନ କଲେ । ୧୦ । ସଭାପାଳ ସେମାନଙ୍କର ବଚନ ଶ୍ରବଣ କରି ସୁବର୍ଣ୍ଣ ପରିଷ୍କୃତା, ଘୋରରବା ଯୁଦ୍ଧୋଦ୍ୟମଜ୍ଞାପନୀ ଭେରୀକୁ ବିଶେଷ ରୂପେ ଆଘାତ କଲେ । ୧୧ । ସେହି ଶବ୍ଦ ଦ୍ୱାରା, ଭୋଜ, ବୃଷ୍ଣି ଓ ଅନ୍ଧକମାନେ କ୍ଷୁବ୍ଧ ହୋଇ ଅନ୍ନପାନ ପରିତ୍ୟାଗ ପୂର୍ବକ ଚତୁର୍ଦ୍ଦିଗରୁ ସମାଗତ ହେଲେ । ୧୨ ।

ସୁସମିଦ୍ଧ ହୁତାଶନ ଯେପରି ସ୍ୱୀୟ ଆଧାର ଇନ୍ଧନକୁ ଗ୍ରହଣ କରଇ, ତଦ୍‌ବତ୍ ବୃଷ୍ଣି ଓ ଅନ୍ଧକ ବଂଶୀୟ ସମାଗତ ମହାରଥମାନେ ପରମୋତ୍କୃଷ୍ଟ ଆସ୍ତରଣ ଯୁକ୍ତ ମଣିବିଦ୍ରୁମ ଖଚିତ ହିରଣ୍ମୟ ସିଂହାସନରେ ଉପବିଷ୍ଟ ହେଲେ । ୧୪ । ଯେପରି ଦେବମାନଙ୍କର ସମାଗମ ହୁଅଇ ତଦ୍‌ବତ ସେମାନେ ଏକତ୍ର ଉପବିଷ୍ଟ ହୁଅନ୍ତେ, ସଭାପାଳ ସେମାନଙ୍କ ସମୀପରେ ଅର୍ଜ୍ଜୁନଙ୍କର କର୍ମ୍ମ ବୃତ୍ତାନ୍ତ ନିବେଦନ କଲେ । ୧୫ । ମଦ-ସଂରକ୍ତ ଲୋଚନ, ଅହଂକୃତ ବୃଷ୍ଣି ବୀରବୃନ୍ଦ ପାର୍ଥଙ୍କ କୃତ ବୃତ୍ତାନ୍ତ ଅବଗତ ହେବାମାତ୍ର ଅମର୍ଷାନ୍ୱିତ ହୋଇ ଏକ କାଳରେ ସମସ୍ତେ ସିଂହାସନରୁ ଉତ୍ପତିତ ହେଲେ । ୧୬ । ସେମାନଙ୍କ ମଧ୍ୟରୁ କେହି କହିଲେ, "ଶୀଘ୍ର ରଥ ସଜ୍ଜା କର" କେହି କହିଲେ, "ପ୍ରାସ ଆଣ" କେହି କହିଲେ, "ମହାର୍ହ ଶରାସନ ଓ ବୃହତ୍ କବଚ ଆଣ" କେହି

କେହି ଉଚ୍ଚୈଃସ୍ୱରରେ ସାରଥିକୁ ଆହ୍ୱାନ କରି କହିଲେ, "ଶୀଘ୍ର ରଥ ଯୋଜନା କର ।" କେହି କେହି ତ୍ୱରମାଣ ହୋଇ ସ୍ୱୟଂ ସୁବର୍ଣ୍ଣ ମଣ୍ଡିତ ଅଶ୍ୱ ନେଇ ରଥ ସଂଯୋଜନା କଲେ । ୧୮ । ତତ୍କାଳରେ ଧ୍ୱଜ, ରଥ, କବଚ ପ୍ରଭୃତି ଆହରଣାର୍ଥ ବୀରଙ୍କ ମଧ୍ୟରେ ମହା କୋଳାହଳ ଉପସ୍ଥିତ ହେଲା । ୧୯ ।

ଅନନ୍ତର ବନମାଳା ବିଭୂଷିତ, କୈଳାଶ ଶିଖର ସଦୃଶ, ନୀଳାମ୍ବର ପରିଧାୟୀ, ମଦୋଦ୍ରିକ୍ତ ମଦମତ୍ତ ବଳରାମ କହିଲେ । ୨୦ । ଜନାର୍ଦ୍ଦନ ତ ତୁନି ହୋଇଅଛନ୍ତି, ତୁମ୍ଭେମାନେ କାହିଁରେ ପ୍ରବୃତ୍ତ ହେଉଅଛ ? ଏହାଙ୍କ ଅଭିପ୍ରାୟ ଜ୍ଞାତ ନ ହୋଇ କ୍ରୋଧ ପୂର୍ବକ ଗର୍ଜନ କରିବା ବୃଥା । ଏହି ମହାମତି କୃଷ୍ଣ ଆଗେ ସ୍ୱକୀୟ ଅଭିପ୍ରାୟ ବ୍ୟକ୍ତ କରନ୍ତୁ । ପାଶ୍ଚାତ୍ ତୁମ୍ଭେ ତାହା ଅବଗତ ହୋଇ ଅତନ୍ଦ୍ରିୟ ଭାବେ ତଦନୁରୂପ କାର୍ଯ୍ୟ କରିବ । ୨୨ ।

ଅନନ୍ତର ସମସ୍ତେ ହଳାୟୁଧଙ୍କର ସେହି ଗ୍ରହଣ ଯୋଗ୍ୟ ବାକ୍ୟ ଶ୍ରବଣ କରି ତାହାଙ୍କୁ ସାଧୁବାଦ ଦେଇ ତୁନି ହୋଇ ସଭାମଧ୍ୟରେ ଉପବିଷ୍ଟ ହେଲେ । ୨୪ । ସେ ସମୟରେ ବାସୁଦେବଙ୍କୁ ପରନ୍ତପ ରାମ କହିଲେ, ଜନାର୍ଦ୍ଦନ । ତୁମ୍ଭେ କି ନିମିତ୍ତ କିଛି କହୁନାହଁ ? କି ନିମିତ୍ତ ଉଦାସୀନ ପ୍ରାୟ ହୋଇ ଅବଲୋକନ କରୁଅଛ ? ହେ ଅଚ୍ୟୁତ । ତୁମ୍ଭର ଅନୁରୋଧରେ ପାର୍ଥଙ୍କୁ ଅମ୍ଭେମାନେ ସତ୍କୃତ କରିଥିଲୁଁ, ସେହି ଦୁର୍ବୁଦ୍ଧି କୁଳାଙ୍ଗାର ତାଦୃଶ ସତ୍କାରର ଯୋଗ୍ୟ ପାତ୍ର ନୁହଇ । ୨୬ । ଯେଉଁ ବ୍ୟକ୍ତି ଆପଣାକୁ ସତ୍କୁଳଜାତ ବୋଲି ପରିଚୟ ଦଅଇ, ସେ କଦାପି ଅନ୍ନ-ଭୋଜନ କରି ସେ ପାତ୍ରକୁ ଭଗ୍ନ କରଇ ନାହିଁ । ୨୭ । ଏପରି ବୈବାହିକ ସମ୍ବନ୍ଧ ସ୍ଥାପନ କରିବାକୁ ଇଚ୍ଛା କଲେହେଁ ଐଶ୍ୱର୍ଯ୍ୟାଭିଳାଷୀ କୌଣସି ବ୍ୟକ୍ତି ପୂର୍ବକୃତ ଉପକାର ସ୍ମରଣ କରି, ଈଦୃଶ ଦୁଃସାହସିକ କର୍ମ୍ମ କରିବାକୁ ଅଗ୍ରସର ହୁଅଇ ନାହିଁ । ୨୮ ।

ସେହି ପାଣ୍ଡବ ଅମ୍ଭମାନଙ୍କୁ ଅବଜ୍ଞା ଓ ତୁମ୍ଭଙ୍କୁ ଅନାଦର କରି ଅଦ୍ୟ ଆପଣାର ମୃତ୍ୟୁ ତୁଲ୍ୟ ସୁଭଦ୍ରାଙ୍କୁ ସହସା ହରଣ କରିଅଛି । ୨୯ । ଆମ୍ଭ ମସ୍ତକର ମଧ୍ୟଭାଗରେ ସେ କିପରି ପଦାର୍ପଣ କରିଅଛି ? ହେ ଗୋବିନ୍ଦ । ଭୁଜଙ୍ଗ ଯେପରି ଅପର ବ୍ୟକ୍ତିର ପାଦସ୍ପର୍ଶ ସହ୍ୟ କରଇ ନାହିଁ, ତଦ୍ରୂପ

ଅମ୍ଭେ କଦାପି ଅଦ୍ୟ ଏହାକୁ ସହ୍ୟ କରିବୁ ନାହିଁ । ୩୦ । ଅଦ୍ୟ ଅମ୍ଭେ ଏକାକୀ ବସୁନ୍ଧରାକୁ କୌରବ ଶୂନ୍ୟ କରିବୁଁ ; ଅର୍ଜ୍ଜୁନଙ୍କର ଏହି ବ୍ୟତିକ୍ରମକୁ ଅମ୍ଭେ ମର୍ଷଣ କରି ନ ପାରୁଁ । ୩୧ । ମେଘ ଓ ଦୁନ୍ଦୁଭି ସ୍ୱନ ପ୍ରାୟ ଗର୍ଜ୍ଜନଶୀଳ ବଳଦେବଙ୍କର ତାଦୃଶ ବାକ୍ୟରେ ଭୋଜ, ବୃଷ୍ଣି ଓ ଅନ୍ଧକ ବଂଶୀୟ ବୀରମାନେ ସମସ୍ତେ ଅନୁମୋଦନ କଲେ । ୩୨ ।

## ଅଧ୍ୟାୟ—୨୨୧

ବୈଶମ୍ପାୟନ ବୋଇଲେ—ଅନନ୍ତର ବୃଷ୍ଣି ବଂଶୀୟ ବୀରମାନେ ସ୍ୱ ସ୍ୱ ବୀର୍ଯ୍ୟ ଅନୁସାରେ ପୁନଃ ପୁନଃ ଉକ୍ତ ରୂପ କହିବାରୁ ଶ୍ରୀ ବାସୁଦେବ ଧର୍ମ୍ମାର୍ଥ ସଂଯୁକ୍ତ ବାକ୍ୟ କହିଲେ । ୧ । ଗୁଡ଼ାକେଶ ଯାହା କରିଅଛନ୍ତି, ତହିଁରେ ଅମ୍ଭ କୁଳର ଅବମାନନା ହୋଇନାହିଁ, ତଦ୍ୱାରା ଏହି କୁଳର ସମ୍ମାନ ବର୍ଦ୍ଧିତ ହୋଇଅଛି । ଏଥିରେ ସଂଶୟ ନାହିଁ । ୨ । ସାତ୍ୱତ ବଂଶୀୟମାନେ ଯେ ଅର୍ଥ ଲୋଭୀ ନୁହନ୍ତି, ତାହା ପାର୍ଥ ଉତ୍ତମରୂପେ ଅବଗତ ଅଛନ୍ତି । ସ୍ୱୟଂମ୍ବର ସଂଶୟ ସ୍ଥଳ ହୋଇଥିବାରୁ ତହିଁରେ ସେ ଯତ୍ନଶୀଳ ହେଲେ ନାହିଁ । ୩ । ପଶୁପ୍ରାୟ କନ୍ୟାଦାନ କରି କେଉଁ କ୍ଷତ୍ରିୟର ଅନୁମୋଦିତ ହୋଇପାରେ ? ଅଥଚ କନ୍ୟା ବିକ୍ରୟ କରିବାକୁ କେଉଁ ସତ୍ପୁରୁଷ ଏହି ପୃଥିବୀରେ ସମ୍ମତ ହୋଇ ପାରେ ? । ୪ । ଉକ୍ତ ଦୋଷମାନଙ୍କୁ ଯେ କୁନ୍ତୀସୁତ ଅନୁମାନ କରି ପାରି ଅଛନ୍ତି, ତାହା ଅମ୍ଭେ ବୁଦ୍ଧିଦ୍ୱାରା ଜାଣୁଅଛୁଁ ; ସେହି କାରଣରୁ ବଳପୂର୍ବକ କନ୍ୟାଙ୍କୁ ହରଣ କରି ନେଇ ପାଣ୍ଡବ ଧର୍ମ୍ମାନୁମୋଦିତ କର୍ମ୍ମ କରିଅଛନ୍ତି । ପରନ୍ତୁ ସୁଭଦ୍ରା ଯାଦୃଶ ଯଶସ୍ୱିନୀ, ପାର୍ଥ ମଧ୍ୟ ତାଦୃଶ ଗୁଣସମ୍ପନ୍ନ ସୁତରାଂ ଏ ସମ୍ବନ୍ଧ ଉଚିତ ହୋଇଅଛି ; ଏ ବିଷୟକୁ ମଧ୍ୟ ପାର୍ଥ ବିବେଚନା କରି କନ୍ୟାକୁ ହରଣ କରି ନେଇ ଅଛନ୍ତି । ୫ ।

ଭରତ ବଂଶୀୟ ଯଶସ୍ୱୀ ଶାନ୍ତନୁ-ନନ୍ଦନ ଓ କୁନ୍ତୀ ଭୋଜରାଜାଙ୍କର ଦୌହିତ୍ର, ସେହି ଅର୍ଜ୍ଜୁନଙ୍କୁ ମିତ୍ରଭାବରେ ପ୍ରାପ୍ତ ହେବାକୁ କେଉଁ ବ୍ୟକ୍ତି ଅଭିଲାଷ ନ କରିବ ? । ୬ । ବିଶେଷତଃ ଭଗନେତ୍ରହର ବିରୂପାକ୍ଷ ହରଙ୍କୁ ବର୍ଜ୍ଜିତ କରି ଅପର କୌଣସି ବ୍ୟକ୍ତି ଦୃଶ୍ୟ ହେଉନାହିଁ ଯେ ସେ ରଣରେ ବଳପୂର୍ବକ ଅର୍ଜ୍ଜୁନଙ୍କୁ ପରାଜିତ କରିପାରିବ । ୮ । ହେ ଅର୍ଯ୍ୟ ।

ତାହାଙ୍କର ସେହି ରଥ, ଆମ୍ଭର ସେହି ସବୁ ଅଶ୍ୱ, ପାର୍ଥ ଯେପରି ଶୀଘ୍ର ଅସ୍ତ୍ର ପ୍ରୟୋଗ କରନ୍ତି ତାହା ଜାଣିବା ହୁଅନ୍ତି; ଏପରି ସ୍ଥଳରେ ଇନ୍ଦ୍ରଲୋକ ଓ ରୁଦ୍ରଲୋକ ପ୍ରଭୃତି ଯେଉଁ ସମସ୍ତ ଲୋକ ଅଛି, ତନ୍ମଧ୍ୟରେ କେଉଁ ବ୍ୟକ୍ତି ଅର୍ଜୁନଙ୍କ ସମକକ୍ଷ ହୋଇପାରେ ? । ୧୦ । ଅମ୍ଭର ଏହି ମତ, ଆପଣ-ମାନେ ସମସ୍ତେ ହର୍ଷପୂର୍ବକ ସତ୍ୱର ଧାବମାନ ହୋଇ ତାହାଙ୍କ ନିକଟରେ ଉପସ୍ଥିତ ହୁଅ ଓ ସାନ୍ତ୍ୱନା ପୂର୍ବକ ତାହାଙ୍କୁ ନିବୃତ୍ତ କର । ପାର୍ଥ ଯେବେ ଅମ୍ଭମାନଙ୍କୁ ଜୟ କରି ବଳପୂର୍ବକ ସ୍ୱକୀୟ ପୁରକୁ ଗମନକରନ୍ତି, ତେବେ ଅମ୍ଭର ଯଶ ଅଚିର କାଳରେ ପ୍ରଣଷ୍ଟ ହେବ; ଯେ ସାନ୍ତ୍ୱନା ପୂର୍ବକ ତାହଙ୍କୁ ଫେରାଇ ଆଣିବା, ତେବେ ଅମ୍ଭର ପରାଜୟ ହେବ ନାହିଁ । ହେ ଜନାଧିପ । ବାସୁଦେବଙ୍କ ବଚନ ଶ୍ରବଣ କରି ସମସ୍ତେ ତଦ୍ରୂପ ଆଚରଣ କଲେ । ୧୨ ।

ଅର୍ଜୁନ ନିବୃତ୍ତ ହୋଇ ସୁଭଦ୍ରାଙ୍କୁ ବିବାହ କଲେ ଓ ସେଠାରେ ବର୍ଷେକାଳ ବୃଷ୍ଣିନନ୍ଦନଙ୍କ ଦ୍ୱାରା ପୂଜିତ ହୋଇ ସୁଖରେ ଆପଣାର ଅଭିଳାଷାନୁସାରେ ବିହାର କରି ପୁଷ୍କର ତୀର୍ଥକୁ ଗମନ କଲେ ଓ ସେଠାରେ ଅବଶିଷ୍ଟ କାଳ ଅତିବାହିତ କଲେ । ୧୪ ।

ଦ୍ୱାଦଶ ବର୍ଷ ପୂର୍ଣ୍ଣ ହେଲାରୁ ଅର୍ଜୁନ ଇନ୍ଦ୍ରପ୍ରସ୍ଥକୁ ଆଗମନ କଲେ ଓ ନିୟମ ପ୍ରତିପାଳନ କରି ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହେଲେ ।୧୫। ବ୍ରାହ୍ମଣମାନଙ୍କୁ ପୂଜା କରି ଦ୍ରୌପଦୀଙ୍କ ନିକଟକୁ ଗମନ କଲେ । ଦ୍ରୌପଦୀ ସ୍ନେହପୂର୍ବକ କୁରୁନନ୍ଦନଙ୍କୁ କହିଲେ—"ହେ କୌନ୍ତେୟ । ଯେଉଁଠାରେ ସେହି ସାତ୍ୱତ କନ୍ୟା ଅଛନ୍ତି, ସେହିଠାକୁ ଗମନ କର । ଯେତେ ଯତ୍ନରେ କୌଣସି ଦ୍ରବ୍ୟକୁ ବନ୍ଧନ କରିଥାଅ, ଅନ୍ତରେ ବନ୍ଧନ କଲେ ପୂର୍ବ-ବନ୍ଧନଟି ଶିଥିଳ ହୁଅଇ" ।୧୭। କୃଷ୍ଣା ବହୁବିଧ ବିଳାପ କରିବାରୁ ଅର୍ଜୁନ ତାହାଙ୍କୁ ପୁନଃ ପୁନଃ ସାନ୍ତ୍ୱନା ପ୍ରଦାନ କଲେ ଓ ବାରମ୍ବାର କ୍ଷମା ପ୍ରାର୍ଥନା କଲେ । ୧୮ ।

ତଦନନ୍ତର ଅର୍ଜୁନ ସୁଭଦ୍ରାଙ୍କୁ ରକ୍ତ କୌଷେୟ ବସନ ପରିଧାନ କରାଇ ଗୋପାଳିକା ବେଶରେ ଅନ୍ତଃପୁର ମଧ୍ୟକୁ ଶୀଘ୍ର ପ୍ରେରଣ କଲେ । ୧୯ । ସେହି ବେଶରେ ବୀରାଙ୍ଗନା, ବୀରପତ୍ନୀ, ଯଶସ୍ୱିନୀ ସୁଭଦ୍ରା ଶ୍ରେଷ୍ଠଭବନକୁ ପ୍ରାପ୍ତ ହୋଇ ଅଧିକ ଶୋଭମାନା ହେଲେ । ୨୦ । ପୃଥୁ

ଓ ତାମ୍ରନେତ୍ରୀ ଯଶସ୍ୱିନୀ ଭଦ୍ରା କୁନ୍ତୀଙ୍କ ଚରଣ ବନ୍ଦନା କରି ପ୍ରଣିପାତ କଲେ ଓ କୁନ୍ତୀ ମଧ୍ୟ ସେହି ସର୍ବାବୟବ ସୁନ୍ଦରୀଙ୍କର ମସ୍ତକ ଆଘ୍ରାଣ କଲେ ଓ ପରମ ପ୍ରୀତିରେ ଯୁକ୍ତ ହୋଇ ବହୁବିଧ ଆଶୀର୍ବାଦ କଲେ । ଉତ୍ତାରେ ପୂର୍ଣ୍ଣଚନ୍ଦ୍ରାନନା ସୁଭଦ୍ରା ତ୍ୱରିତ ହୋଇ ଦ୍ରୌପଦୀଙ୍କ ସମୀପକୁ ଯାଇ ତାହାଙ୍କୁ ନମସ୍କାର କରି ବୋଇଲେ, "ଅହ୍ମେ ଆପଣଙ୍କର ଦାସୀ ।" ତତ୍କାଳରେ ଦ୍ରୌପଦୀ ପ୍ରତ୍ୟୁତ୍ଥାନ କରି ମାଧବଙ୍କର ଭଗିନୀଙ୍କୁ ଆଲିଙ୍ଗନ କରି ମୁଦିତ ହୋଇ ବୋଇଲେ—"ତୁମ୍ଭର ପତି ନିଃସପତ୍ନ ହୁଅନ୍ତୁ ।" ସୁଭଦ୍ରା ପ୍ରୀତି ପୂର୍ବକ ତାହାଙ୍କୁ "ତଥାସ୍ତୁ" ବୋଲି ପ୍ରତ୍ୟୁତ୍ତର ଦେଲେ । ୨୪ ।

ହେ ଜନମେଜୟ ! ମହାରଥ ପାଣ୍ଡବମାନେ ହୃଷ୍ଟମନା ଓ କୁନ୍ତୀ ପରମ ପ୍ରୀତା ହେଲେ । ୨୫ । ପାଣ୍ଡବ ଶ୍ରେଷ୍ଠ ଅର୍ଜୁନଙ୍କୁ ନିଜପୁର ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହେବାର ଶ୍ରବଣ କରି ବିଶୁଦ୍ଧାତ୍ମା ପୁଣ୍ଡରୀକାକ୍ଷ କେଶବ ରାମଙ୍କୁ ଓ ବୃଷ୍ଣି ଓ ଅନ୍ଧକ କୁଳର ମହାରଥ ଓ ବୀରବୃନ୍ଦଙ୍କୁ ସମଭିବ୍ୟାହାରରେ ଘେନି ସେଠାକୁ ଆଗମନ କଲେ । ୨୭ । ପରନ୍ତପ ଶୌରି, ଭ୍ରାତୃ, ପୁତ୍ର, କୁମାର ଓ ବହୁସଂଖ୍ୟକ ଯୋଦ୍ଧୃଗଣରେ ପରିବେଷ୍ଟିତ ହୋଇ ଓ ମହତୀ ସେନାଦ୍ୱାରା ଅଭିରକ୍ଷିତ ହୋଇ ଇନ୍ଦ୍ରପ୍ରସ୍ଥରେ ଉପସ୍ଥିତ ହେଲେ । ୨୮ । ଧୀମାନ୍ ମହା ଯଶସ୍ୱୀ, ଦାନଶୀଳ ଅକ୍ରୂର, ବୃଷ୍ଣି ସେନାପତି ମହାତେଜସ୍ୱୀ ଅରିନ୍ଦମ ଅନାଧୃଷ୍ଟି, ଅତି ଯଶସ୍ୱୀ ଉଦ୍ଧବ, ସାକ୍ଷାତ୍ ବୃହସ୍ପତିଙ୍କ ଶିଷ୍ୟ ମହାନୁଭବ ମହାବୁଦ୍ଧି ସତ୍ୟକ, ସାତ୍ୟକି, ସାତ୍ୱତ, କୃତବର୍ମା, ପ୍ରଦ୍ୟୁମ୍ନ, ଶାମ୍ବ, ନିଶଠ, ଶଙ୍କୁ, ଚାରୁଦେଷ୍ଣ, ବିକ୍ରମଶୀଳ ଝିଲ୍ଲୀ, ବିପୃଥୁ, ସାରଣ ଓ ମହାବାହୁ କୃତବିଦ୍ୟ ଗଦ ଓ ଅନ୍ୟାନ୍ୟ ବହୁସଂଖ୍ୟକ ବୃଷ୍ଣି, ଅନ୍ଧକ ଓ ଭୋଜବଂଶୀୟ ବୀରବୃନ୍ଦ ଯୌତୁକ ଘେନି ସେଠାରେ ଉପସ୍ଥିତ ହେଲେ । ୩୩ । ମାଧବ ଆସୁଅଛନ୍ତି ଶୁଣି ଯୁଧିଷ୍ଠିର ତାହାଙ୍କୁ ସମାଦର ପୂର୍ବକ ଗ୍ରହଣ କରିବା ନିମିତ୍ତ ନକୁଳ ଓ ସହଦେବଙ୍କୁ ପ୍ରେରଣ କଲେ । ୩୪ । ମହାସମୃଦ୍ଧିଶାଳୀ ବୃଷ୍ଣି ଚକ୍ର ସେହି ପୁରୁଷଦ୍ୱୟଙ୍କ ଦ୍ୱାରା ସମାଦୃତ ହୋଇ ଧ୍ୱଜ ପତାକାଦି ଶୋଭିତ ଖାଣ୍ଡବପ୍ରସ୍ଥର ପୁରୀ ମଧ୍ୟରେ ପ୍ରବେଶ କଲେ । ୩୫ । ତତ୍କାଳରେ ହୃଷ୍ଟପୁଷ୍ଟ ଜନସମୂହରେ ସମାକୀର୍ଣ୍ଣ ଓ ବଣିକ ସମୂହରେ ଉପଶୋଭିତ ସେହି ନଗର ପୁଷ୍ପମୟ ମାଲ୍ୟଦାମରେ ଅଲଙ୍କୃତ ହୋଇଥିଲା; ସେ ନଗରର ରାଜପଥମାନ ପରିମାର୍ଜିତ

ହୋଇ ଚନ୍ଦନ ରସରେ ସିକ୍ତ ହୋଇଥିଲା ଓ ଧ୍ୱଜ ଓ ତୋରଣରେ ମଣ୍ଡିତ ହୋଇଥିଲା । ବୃଷ୍ଣି, ଅନ୍ଧକ ଓ ଭୋଜ ବଂଶଭବ ବୀର ନିକରରେ ପରିବୃତ୍ତ ପୁରୁଷୋତ୍ତମ ମହାବାହୁ କେଶବ, ରାମଙ୍କ ସହିତ ସେହି ନଗରରେ ଉପସ୍ଥିତ ହୋଇ, ସହସ୍ର ସହସ୍ର ବ୍ରାହ୍ମଣ ଓ ପୁରଜନଙ୍କ ଦ୍ୱାରା ସମାଦର ସହ ପରିଗୃହୀତ ହେଲେ । ତଦନନ୍ତର ପୁରନ୍ଦର ଗୃହ ସଦୃଶ ରାଜଭବନରେ ପ୍ରବେଶ କଲେ । ୩୯ । ରାଜା ଯୁଧିଷ୍ଠିର ଯଥାବିଧାନରେ ପ୍ରଥମେ ବଳଦେବଙ୍କର ଅଭ୍ୟର୍ଥନା କଲେ, ପରେ କୃଷ୍ଣଙ୍କର ମସ୍ତକାଘ୍ରାଣ କରି ବାହୁ ଦ୍ୱାରା ତାହାଙ୍କୁ ଆଲିଙ୍ଗନ କଲେ । ୪୦ ।

କୃଷ୍ଣ ପ୍ରୀତମନରେ ଯୁଧିଷ୍ଠିରଙ୍କର ନିୟମାନୁଯାୟୀ ପୂଜା କଲେ ଓ ପୁରୁଷବ୍ୟାଘ୍ର ଭୀମସେନଙ୍କ ଯଥାବିଧି ସତ୍କାର କଲେ । ୪୧ । ଯୁଧିଷ୍ଠିର ଯଥାବିଧାନରେ ଉପଯୁକ୍ତ ସମାଦର ସହିତ ସମାଗତ ବୃଷ୍ଣି, ଭୋଜ ଓ ଅନ୍ଧକବଂଶୀୟ ଜନମାନଙ୍କୁ ଗ୍ରହଣ କଲେ । ୪୨ । ଯାହାଙ୍କୁ ଯେପରି ସମାଦର ପୂର୍ବକ ଗ୍ରହଣ କରିବାର ଯୁଧିଷ୍ଠିର ତାହାଙ୍କୁ ତଦ୍‌ବତ୍ ସତ୍କାର ପୂର୍ବକ ଗ୍ରହଣ କଲେ, କୌଣସି ଜନଙ୍କୁ ଗୁରୁବତ୍ ଅଭ୍ୟର୍ଥନା କଲେ, କାହାଙ୍କୁ ଅବା ବୟସ୍ୟ ତୁଲ୍ୟ ସମାଦର କଲେ, କାହା ସହିତ କେବଳ ସ୍ନେହ ପୂର୍ବକ ଆଳାପ କଲେ, କହାର ଦ୍ୱାରା ଅବା ସ୍ୱୟଂ ଅଭିବାଦିତ ହେଲେ । ୪୩ ।

ମହା ଯଶସ୍ୱୀ ଶ୍ରୀମାନ୍ କମଳଲୋଚନ ହୃଷିକେଶ ସୁଭଦ୍ରାଙ୍କ ନିମିତ୍ତ ଜ୍ଞାତିଦେୟ ଉପାୟନମାନ ପ୍ରଦାନ କଲେ । ୪୪ । କିଙ୍କିଣୀଜାଲ ମାଳା-ମଣ୍ଡିତ, ଅଶ୍ୱ ଚତୁଷ୍ଟୟ ଯୁକ୍ତ ଓ କୁଶଳୀ ସାରଥୀ ସମନ୍ୱିତ କାଞ୍ଚନାଙ୍ଗ ସହସ୍ର ସଂଖ୍ୟକ ରଥ, ମଥୁରା ଦେଶୀୟ ଉତ୍ତମ ଦୁଗ୍ଧବତୀ, ଅତିତେଜସ୍ୱୀ ଦଶ ସହସ୍ର ଧେନୁ, ଚନ୍ଦ୍ରକିରଣ ସଦୃଶ ତେଜସ୍ୱୀ ଓ ହେମ ଭୂଷିତ ବାହ୍ଲିକ ବଂଶଜାତ ସହସ୍ର ପରିମିତ ଅଶ୍ୱମାନଙ୍କୁ ଜନାର୍ଦ୍ଦନ ପ୍ରୀତିପୂର୍ବକ ପ୍ରଦାନ କଲେ । ୪୬ । କୃଷ୍ଣ କେଶରଯୁକ୍ତ, ଶ୍ୱେତବର୍ଣ୍ଣ ଓ ବାୟୁସମ ବେଗଗାମୀ ସୁଶିକ୍ଷିତ ଦଶଶତ ଅଶ୍ୱତରୀ, ସ୍ନାନ ପାନ ଉତ୍ସବ କର୍ମରେ ନିପୁଣା, ବୟସନ୍ୱିତା, ସୁବେଶା, ତେଜସ୍ୱିନୀ ସହସ୍ର ସଂଖ୍ୟକ ଗୌରନାରୀମାନଙ୍କୁ ପ୍ରଦାନ କଲେ । ୪୯ । ସେ ନାରୀମାନଙ୍କ କଣ୍ଠରେ ଶତ ସଂଖ୍ୟକ ସୁବର୍ଣ୍ଣ ମୁଦ୍ରାର ମାଳା ଥାଏ, ସେମାନେ ଅରୋଗୀ,

ସ୍ୱଲଙ୍କୃତା ଓ ପରିଚର୍ଯ୍ୟା କରିବାରେ ସୁଦକ୍ଷା, ଏହିପରି ନାରୀମାନଙ୍କୁ ବାଛି ବାଛି ପୁଷ୍କରେକ୍ଷଣ କୃଷ୍ଣ ଯୌତୁକ ଦେଲେ । ୫୦ ।

ବାହ୍ଲିକ ଦେଶୀୟ ଶତ ସହସ୍ର ପୃଷ୍ଠବାହୀ ଅଶ୍ୱମାନଙ୍କୁ ମଧ୍ୟ କନ୍ୟା-ଧନ ସ୍ୱରୂପ ଜନାର୍ଦ୍ଦନ ପ୍ରଦାନ କଲେ । ୫୧ । ଏଥିପରେ ମନୁଷ୍ୟର ବହନୀୟ ଦଶଭାର ବିଶୁଦ୍ଧ ଓ ବିମିଶ୍ର ଏହି ଦୁଇ ପ୍ରକାର ଅଗ୍ନିବର୍ଣ୍ଣ ଉତ୍କୃଷ୍ଟ ସୁବର୍ଣ୍ଣ ସୁଭଦ୍ରାଙ୍କ ଯୌତୁକ ସ୍ୱରୂପ ମଧ୍ୟ ପ୍ରଦାନ କଲେ । ସାହସ ପ୍ରିୟ ହଳଧର ରାମ ପ୍ରୀତିଯୁକ୍ତ ହୋଇ ବିବାହୋପଲକ୍ଷରେ ସମ୍ବନ୍ଧର ଗୌରବ ବୃଦ୍ଧି ନିମିତ୍ତ ତ୍ରିବିଧ * ମଦସ୍ରାବୀ ଗିରିଶୃଙ୍ଗ ସଦୃଶ, ସମରରେ ଅପରାବର୍ତ୍ତୀ, ହେମମାଳା ବିଭୂଷିତ, ନାନାଦି ପଟ୍ଟ ଓ ସୁରୁଚିର ଘଣ୍ଟାବଳମ୍ବିତ, ଉପବେଶନ ପର୍ଯ୍ୟଙ୍କ-ଯୁକ୍ତ, ହସ୍ତିପକ ସହ ସହସ୍ର ହସ୍ତୀ ଧନଞ୍ଜୟଙ୍କୁ ପ୍ରଦାନ କଲେ । ସେ ମହାଧନ ରତ୍ନ ସମୂହ ଜଳ ପ୍ରବାହ ପାଣ୍ଡବ ସାଗରରେ ନିପତିତ ହୋଇ ତାହାକୁ ପରିପୂର୍ଣ୍ଣ କଲା; ସେ ଜଳ ପ୍ରବାହରେ ବସ୍ତ୍ର ଓ କମ୍ବଳାଦି ଫେନ ହେଲେ, ମହାଗଜମାନେ ମହାଗ୍ରାହ ହେଲେ ଓ ପତାକା ରାଜୀ ଶୈବାଳ ସ୍ଥାନରେ ଉପସ୍ଥିତ ହେଲେ । ଏହି ସମ୍ଭାର ଦର୍ଶନ କରି ଶତ୍ରୁବର୍ଗର ହୃଦୟ ଶୋକରେ ପୂରିତ ହେଲା । ୫୨। ଧର୍ମରାଜ ଯୁଧିଷ୍ଠିର ସେ ସମସ୍ତ ଦ୍ରବ୍ୟ ପ୍ରତିଗ୍ରହ କଲେ ଓ ଭୋଜ, ବୃଷ୍ଣି ଓ ଅନ୍ଧକ ବଂଶୀୟ ମହାରଥମାନଙ୍କୁ ଯଥୋଚିତ ସତ୍କାର କଲେ । ୫୩ ।

ତଦନନ୍ତର ପୁଣ୍ୟଶୀଳ ବ୍ୟକ୍ତିମାନେ ଯେପରି ଦେବଲୋକରେ ବିହାର କରନ୍ତି, ତଦ୍‌ବତ୍ ମହାତ୍ମା କୁରୁ, ବୃଷ୍ଣି ଓ ଅନ୍ଧକ ବଂଶୀୟ ବୃଦ୍ଧ ବ୍ୟକ୍ତିମାନେ ସେଠାରେ ବିହାର କଲେ । ୫୯ । ଯାହାର ଯହିଁରେ ପ୍ରୀତି ଜନ୍ମିବ ସେ ତଦନୁସାରେ ଯଥା ଯୋଗ୍ୟ ସ୍ଥାନରେ ମହାଯାନରେ ଅବରୋହଣ କରି ଓ କରତଳ ଧ୍ୱନିସହ ନୃତ୍ୟ ଗୀତାଦି କରି ମହାନାଦ ପୂର୍ବକ ଯଥେଚ୍ଛା ବିହାର କଲେ । ୬୦ । ମହାବୀର୍ଯ୍ୟ-ସମ୍ପନ୍ନ, ମହାରଥ ବୃଷ୍ଣି ଓ ଅନ୍ଧକ ବୃନ୍ଦ ସେହି ନଗରରେ ବହୁଦିବସ ବିହାର କରି ପରିଶେଷରେ କୌରବଙ୍କ ନିକଟରେ ପୂଜିତ ହୋଇ ଓ ସେମାନଙ୍କ ପ୍ରଦତ୍ତ ନିର୍ମଳ ରତ୍ନ ନିକର ଗ୍ରହଣ କରି ଅଥଚ ବଳିରାମଙ୍କୁ ଅଗ୍ରେ କରି ପୁନର୍ବାର ଦ୍ୱାରକାପୁରୀକୁ ପ୍ରତିଗମନ କଲେ । ୬୧ । ହେ ଭରତ ! ମହାଯଶସ୍ୱୀ,

* ଗଣ୍ଡ, ଗୁହ୍ୟ ଓ କର୍ଣ୍ଣମୂଳ, ଛିଦ୍ରସ୍ଥାନରୁ ଯେଉଁମାନଙ୍କର ମଦଜଳ ସ୍ରବଇ ।

ମହାବାହୁ, ମହାନୁଭାବ ବାସୁଦେବ ଅର୍ଜ୍ଜୁନଙ୍କ ସହିତ ସେହି ରମଣୀୟ ଇନ୍ଦ୍ରପ୍ରସ୍ଥ ନଗରରେ ବାସ କଲେ ଓ ତାହାଙ୍କ ସହ ଯମୁନାତୀରରେ ମୃଗ ବରାହାଦି ବଧ କରି ମୃଗୟା ବିହାର କଲେ । ୬୪ ।

ଅନନ୍ତର ଶଚୀ ଯେପରି ବିଖ୍ୟାତ ଜୟନ୍ତଙ୍କୁ ପ୍ରସବ କରିଥିଲେ, ସେହିପରି କୃଷ୍ଣଙ୍କର ପ୍ରିୟ ଭଗିନୀ କଲ୍ୟାଣୀ ସୁଭଦ୍ରା ଅଭିମନ୍ୟୁଙ୍କୁ ପ୍ରସବ କଲେ । ତାହାଙ୍କର ବାହୁଦୀର୍ଘ ବକ୍ଷଃସ୍ଥଳ ବିଶାଳ, ନେତ୍ର ବୃଷଭଙ୍କ ନେତ୍ରସଦୃଶ ଓ ସେହି ବୀର ଶତ୍ରୁବିଜୟୀ ଥିଲେ । ୬୬ । ପୁରୁଷର୍ଷଭ ଅର୍ଜ୍ଜୁନ ପୁତ୍ରଙ୍କୁ ସମସ୍ତେ ଅଭିମନ୍ୟୁ ଅର୍ଥାତ୍ ଅତିଶୂର ବୋଲି ଡାକୁଥିଲେ, କାରଣ ସେ "ଅଭି" ଅର୍ଥାତ୍ ନିର୍ଭୟ ଶତ୍ରୁ ଓ 'ମନ୍ୟୁ' ଅର୍ଥାତ୍ କ୍ରୋଧଯୁକ୍ତ ହୋଇଥିଲେ । ଯଜ୍ଞସ୍ଥଳରେ ଅରଣୀ ନିର୍ମନ୍ଥନ କଲେ, ଶମୀ ଗର୍ଭରୁ ଯେପରି ହୁତାଶନ ଜାତ ହୁଅଇ ତଦ୍‌ବତ୍ ଧନଞ୍ଜୟଙ୍କ ଔରସରୁ ସାତ୍ୱତୀଙ୍କ ଗର୍ଭରୁ ଅତି ରଥ ପୁତ୍ର ଜାତ ହେଲେ । ୬୭ ।

ହେ ଭାରତ ! ତାହାଙ୍କର ଜନ୍ମହେଲା ମାତ୍ର ମହାତେଜସ୍ୱୀ କୁନ୍ତୀ ପୁତ୍ର ଯୁଧିଷ୍ଠିର ଦଶସହସ୍ର-ଧେନୁ ଓ ଦଶସହସ୍ର 'ନିଷ୍କ' ସୁବର୍ଣ୍ଣ ମୁଦ୍ରା ବ୍ରାହ୍ମଣମାନଙ୍କୁ ପ୍ରଦାନ କଲେ । ୬୮ । ବାଲ୍ୟକାଳରୁ ଅଭିମନ୍ୟୁ ବାସୁଦେବଙ୍କର ଓ ପିତୃବର୍ଗଙ୍କର ଅତିଶୟ ପ୍ରିୟପାତ୍ର ହୋଇଥିଲେ । ଜନ୍ମ କାଳରୁ ପ୍ରଜାବର୍ଗଙ୍କର ଅତିଶୟ ପ୍ରିୟପାତ୍ର ମଧ୍ୟ ହୋଇଥିଲେ । ୬୯ । ଜନ୍ମକାଳରୁ ସେ ଶିଶୁର ଶୁଭ ସଂସ୍କାର ଗୁଡ଼ିକ କୃଷ୍ଣ ସ୍ୱୟଂ ସମ୍ପାଦନ କଲେ । ଶୁକ୍ଳପକ୍ଷ ଶଶୀ ପ୍ରାୟ ସେ ବାଳକ ବର୍ଦ୍ଧିତ ହେଲା । ୭୧ । ଦେବଜ୍ଞ ଅରିନ୍ଦମ ଅଭିମନ୍ୟୁ ଅର୍ଜ୍ଜୁନଙ୍କ ଠାରୁ ଦଶବିଧ ଓ ଚତୁଷ୍ପାଦ ବିଶିଷ୍ଟ * ଦିବ୍ୟ ଓ ମାନୁଷ ଧନୁର୍ବେଦ ଶିକ୍ଷା କଲେ । ମହାବଳ ଅର୍ଜ୍ଜୁନ ମଧ୍ୟ ତାହାଙ୍କୁ ଅସ୍ତ୍ରବିଜ୍ଞାନ ଓ ସୌଷ୍ଠବ ଉତ୍ସର୍ପଣ ଓ ପ୍ରତ୍ୟର୍ପଣ ପ୍ରଭୃତି ପ୍ରତ୍ୟେକ କ୍ରିୟା ବିଷୟରେ ଉତ୍ତମ ରୂପେ ଶିକ୍ଷିତ କଲେ । ୭୩ । ବିଶେଷରେ ଶାସ୍ତ୍ରବିଷୟରେ ଏବଂ ପ୍ରୟୋଗାନୁଷ୍ଠାନରେ ଆପଣା ସମାନ ଶିକ୍ଷିତ କରି ତଦ୍ଦର୍ଶନରେ ଧନଞ୍ଜୟ ପରମ ପରିତୋଷ

* ଆଦାନ, ସନ୍ଧାନ, ମୋକ୍ଷଣ, ବିନିବର୍ତ୍ତନ, ସ୍ଥାନ, ମୁଷ୍ଟି, ପ୍ରୟୋଗ, ପ୍ରାୟଶ୍ଚିତ୍ତ, ମଣ୍ଡଳ ଓ ରହସ୍ୟ—ଏହି ଦଶବିଧ ମନ୍ତ୍ରମୁକ୍ତ, ପାଣିମୁକ୍ତ; ମୁକ୍ତାମୁକ୍ତ ଓ ଅମୁକ୍ତ ଏହି ଚତୁଷ୍ପାଦ ।

ଲାଭ କଲେ । ୭୪ । ପୁନରପି ସେ ସୁତଙ୍କୁ ମନ୍ତ୍ର ବିଶାରଦ, ସର୍ବଲକ୍ଷଣ ଲକ୍ଷିତ, ଦୁର୍ଦ୍ଧର୍ଷ, ଋଷଭସ୍କନ୍ଧ, ଉରଗସଦୃଶ ବିସ୍ତୃତାନନ, ସିଂହଦର୍ପ, ମହାଧନୁର୍ଦ୍ଧର, ମତ୍ତମାତଙ୍ଗ ତୁଲ୍ୟ ବିକ୍ରମ, ମେଘ ଓ ଦୁନ୍ଦୁଭି ସଦୃଶ, ମହା ନିର୍ଘୋଷକାରୀ, ପୂର୍ଣ୍ଣଚନ୍ଦ୍ରାନନ, ଅଥଚ ଶୌର୍ଯ୍ୟ, ବୀର୍ଯ୍ୟ, କୃତ ଓ ଅକୃତବିଷୟରେ ଶ୍ରୀକୃଷ୍ଣଙ୍କ ସମାନ ଶକ୍ତିଶାଳୀ ଅର୍ଜ୍ଜୁନ ପରିତୃପ୍ତ ହେଲେ; ମଘବାନ୍ ଯେପରି ଅର୍ଜ୍ଜୁନଙ୍କୁ ଦେଖି ତୁଷ୍ଟ ହୋଇ ଥିଲେ, ଅର୍ଜ୍ଜୁନ ସେହିପରି ଅଭିମନ୍ୟୁଙ୍କୁ ଦେଖି ପରମ ପରିତୋଷ ଲାଭ କଲେ । ୭୭ ।

ଶୁଭଲକ୍ଷଣା ପାଞ୍ଚାଳୀ ମଧ୍ୟ ପଞ୍ଚପତିଙ୍କ ଠାରୁ ପଞ୍ଚପର୍ବତ ସଦୃଶ ପଞ୍ଚ ଗୋଟି ବୀର ଓ ଶ୍ରେଷ୍ଠ ସୁତଙ୍କୁ ଜନ୍ମ କଲେ । ୭୮ । ଯୁଧିଷ୍ଠିରଙ୍କ ଠାରୁ ପ୍ରତିବିନ୍ଧ୍ୟ, ବୃକୋଦରଙ୍କ ଠାରୁ ସୁତସୋମ, ଅର୍ଜ୍ଜୁନଙ୍କ ଠାରୁ ଶ୍ରୁତକର୍ମ୍ମା, ନକୁଳଙ୍କଠାରୁ ଶତାନୀକ ଓ ସହଦେବଙ୍କ ଠାରୁ ଶ୍ରୁତସେନ ନାମକ ପଞ୍ଚ ମହାରଥ ସୁତଙ୍କୁ ଲାଭ କଲେ । ଅଦିତି ଯେପରି ଆଦିତ୍ୟ-ମାନଙ୍କୁ ପ୍ରସବ କରିଥିଲେ, ପାଞ୍ଚାଳୀ ସେହିପରି ନିଜ ସୁତମାନଙ୍କୁ ଜାତ କଲେ । ୮୦ । ଯୁଧିଷ୍ଠିରଙ୍କ ସୁତ ବିନ୍ଧ୍ୟପର୍ବତ ପ୍ରାୟ ପର ପ୍ରହାର ସହନକ୍ଷମ ହେବେ ବୋଲି ବ୍ରାହ୍ମଣମାନେ ଶାସ୍ତ୍ରରୁ ଅବଗତ ହୋଇ, ତାହାଙ୍କର ନାମ ପ୍ରତିବିନ୍ଧ୍ୟ ଦେଲେ । ୮୧ । ସହସ୍ର ସୋମଯଜ୍ଞ ସମ୍ପାଦନ କରିସାରିବା ପରେ ଭୀମସେନଙ୍କ ଠାରୁ ସୋମାର୍କ ସଦୃଶ ତେଜସ୍ୱୀ ମହାଧନୁର୍ଦ୍ଧର ସୁତ ଉତ୍ପନ୍ନ ହେବାରୁ ତାହାଙ୍କର ନାମ ସୁତସୋମ ଦେଲେ । ୮୨ । କିରୀଟି ବହୁତ ଶ୍ରୁତ ଅର୍ଥାତ୍ ପ୍ରସିଦ୍ଧ କର୍ମ୍ମ କରି ପ୍ରତିନିବୃତ୍ତ ହେବାପରେ ତାହାଙ୍କର ସେହି ସୁତ ଉତ୍ପନ୍ନ ହେବାରୁ ତାହାଙ୍କର ନାମ ଶ୍ରୁତକର୍ମ୍ମା ହେଲା । ୮୩ ।

କୁରୁବଂଶର କୀର୍ତ୍ତିବର୍ଦ୍ଧନ ଶତାନୀକ ନାମରେ ଜଣେ ରାଜର୍ଷି ଥିଲେ, ସେହି ରାଜାଙ୍କ ନାମାନୁସାରେ ନକୁଳ ନିଜ ସୁତଙ୍କର ନାମ ଦେଲେ । ୮୪ । ସହଦେବଙ୍କ ଠାରୁ ଦ୍ରୌପଦୀଙ୍କର ଯେଉଁ ପୁତ୍ର ଜାତ ହୋଇଥିଲେ, ସେହି ପୁତ୍ର କୃତ୍ତିକା ନକ୍ଷତ୍ରରେ ଜନ୍ମ ହୋଇଥିବାରୁ ତାହାଙ୍କର ନାମ ଶ୍ରୁତସେନ ଦେଲେ । ୮୫ । ହେ ରାଜେନ୍ଦ୍ର ! ଦ୍ରୌପଦୀଙ୍କ ପୁତ୍ରମାନେ ବର୍ଷେ ବର୍ଷେପରେ ଜନ୍ମଗ୍ରହଣ କରିଥିଲେ, ସେମାନେ ପରସ୍ପର ହିତାକାଙ୍କ୍ଷୀ ଓ ମହାଯଶସ୍ୱୀ ହୋଇଥିଲେ । ୮୬ । ହେ

ଜନ୍ମିତସତ୍ତମ । ପୁରୋହିତ ଧୌମ୍ୟ ସେହି କୁମାରମାନଙ୍କର ଜାତକର୍ମ୍ମ, ଚୂଡ଼ାକର୍ମ୍ମ ଓ ଉପନୟନାଦି କର୍ମ୍ମମାନଙ୍କ ଆନୁପୂର୍ବିକ ସମ୍ପାଦନ କଲେ । ୮୨ । ତତ୍ପରେ ସେହି ସୁଚରିତବ୍ରତ କୁମାରମାନେ ବେଦାଧ୍ୟୟନ କରି ଅର୍ଜ୍ଜୁନଙ୍କ ଠାରୁ ଦିବ୍ୟ ଓ ମାନୁଷ ସର୍ବପ୍ରକାର ଅସ୍ତ୍ରଶସ୍ତ୍ର ଶିକ୍ଷା ଗ୍ରହଣ କଲେ । ୮୮ । ହେ ରାଜଶାର୍ଦ୍ଦୂଳ ! ପାଣ୍ଡବମାନେ ଦେବକୁମାର ସଦୃଶ ସେହି ସମସ୍ତ ପୃଥୁଳ ବକ୍ଷଃସ୍ଥଳ ମହାରଥ ପୁତ୍ରମାନଙ୍କୁ ପ୍ରାପ୍ତ ହୋଇ ଅତିଶୟ ପ୍ରୀତ ହେଲେ । ୮୯ ।

---

## ଅଧ୍ୟାୟ—୨୨୨

ବୈଶମ୍ପାୟନ କହିଲେ—ହେ ଭରତର୍ଷଭ ! ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରେ ଥାଇ ଧୃତରାଷ୍ଟ୍ର ଓ ଭୀଷ୍ମଙ୍କ ଆଦେଶାନୁସାରେ ଅନ୍ୟାନ୍ୟ ପାର୍ଥିବମାନଙ୍କୁ ବଶୀଭୂତ କଲେ । ୧ । ପୁଣ୍ୟଲକ୍ଷଣସମ୍ପନ୍ନ ଦେହକୁ ଆଶ୍ରୟ କରି ଆତ୍ମା ଯେପରି ପରମ ସୁଖରେ ବାସ କରନ୍ତି, ତଦ୍‌ବତ୍‌ ସମଗ୍ର ପ୍ରଜା ଧର୍ମରାଜ ଯୁଧିଷ୍ଠିରଙ୍କୁ ଅବଲମ୍ବନ କରି ପରମ ସୁଖରେ ବାସ କଲେ । ୨ । ଧର୍ମାର୍ଥ କାମ ତ୍ରିବର୍ଗକୁ ନୀତିବେତ୍ତା ଯୁଧିଷ୍ଠିର ଆପଣାର ଆତ୍ମା ସଦୃଶ ବନ୍ଧୁବୋଲି ଜ୍ଞାନ କରି ସେମାନଙ୍କୁ ଏପରି ଭାବେ ସେବା କଲେ ଯେ, ସେମାନେ କେହି କାହାର ବାଧା ଜନ୍ମାଇଲେ ନାହିଁ । ୩ । ଧର୍ମାର୍ଥ କାମ ତ୍ରିବର୍ଗ ଦେହ ଧାରଣ କରି ପୃଥିବୀର ଜନ୍ମ ପରିଗ୍ରହ କଲା ପ୍ରାୟ ରାଜା ଯୁଧିଷ୍ଠିର ସେମାନଙ୍କର ଚତୁର୍ଥ ସ୍ୱରୂପ ପରିଗଣିତ ହୋଇ ଶୋଭା ପ୍ରାପ୍ତ ହେଲେ । ୪ ।

ପ୍ରଜାମାନେ ରାଜା ଯୁଧିଷ୍ଠିରଙ୍କୁ ଉତ୍ତମରୂପେ ବେଦାଧ୍ୟନଶୀଳ, ମହାଯଜ୍ଞାନୁଷ୍ଠାତା ଓ ସମସ୍ତ ପୁଣ୍ୟଲୋକର ରକ୍ଷାକର୍ତ୍ତା ବୋଲି ଲାଭ କଲେ । ୫ । ତାହାଙ୍କ ସାମ୍ରାଜ୍ୟ ସମୟରେ ପାର୍ଥିବଗଣଙ୍କର ଲକ୍ଷ୍ମୀ ଅଚଳା ହେଲେ, ମତି ଧର୍ମ୍ମପରାୟଣବାନ୍ ହେଲା ଓ ଧର୍ମ୍ମ ଅଶେଷ ରୂପେ ବର୍ଦ୍ଧନ-ଶୀଳ ହେଲେ । ୬ । ବିସ୍ତୃତ ମହା ଯଜ୍ଞ ଯାଦୃଶ ବେଦ ଚତୁଷ୍ଟୟ ଦ୍ୱାରା ପରିଶୋଭିତ ହୁଅଇ, ତାଦୃଶ ରାଜା ଯୁଧିଷ୍ଠିର ଗୁରୁଭ୍ରାତାଙ୍କ ସହିତ ହୋଇ ଅଧିକ ଶୋଭା ପାଇଲେ । ୭ । ଦେବତାମାନେ ପ୍ରଜାପତିଙ୍କୁ ପରିବୃତ

କରି ଯେପରି ଉପାସନା କରନ୍ତି, ସେହିପରି ବୃହସ୍ପତିସମ ପ୍ରଧାନ ପ୍ରଧାନ ବ୍ରାହ୍ମଣମାନେ ତାହାଙ୍କୁ ପରିବୃତ କରି ତାହାଙ୍କୁ ଉପାସନା କଲେ । ୮ । ପୂର୍ଣ୍ଣ ଶଶଧରଙ୍କ ପ୍ରାୟ ନିର୍ମ୍ମଳ ଧର୍ମ୍ମରାଜାଙ୍କ ପ୍ରତି ପ୍ରଜାମାନଙ୍କର ନୟନ ଓ ମନ ଦୁହେଁ ସମାନ ରୂପେ ଅନୁରକ୍ତ ହୋଇଥିଲେ । ୯ ।

ପ୍ରଜାମାନେ ଯୁଧିଷ୍ଠିରଙ୍କୁ କେବଳ ରାଜା ଜାଣି ଯେ ତାହାଙ୍କ ପ୍ରତି ଅନୁରକ୍ତ ହୋଇଥିଲେ, ଏମନ୍ତ ନୁହେଁ । ଯେଉଁ କାର୍ଯ୍ୟମାନ କଲେ ପ୍ରଜାଙ୍କ ମନ ସନ୍ତୁଷ୍ଟ ହେବ, ସେ ସେହି କର୍ମ୍ମମାନ କରୁଥିଲେ । ୧୦ । ଧୀମାନ୍ ପାର୍ଥ ଯୁଧିଷ୍ଠିରଙ୍କ ପ୍ରିୟଭାଷୀ ଥିଲେ; ତାହାଙ୍କର ବାକ୍ୟ କଦାପି ଅସତ୍ୟ, ଯୁକ୍ତିବିରୁଦ୍ଧ, ଦୁଃଖପ୍ରଦ ବା ଅପ୍ରିୟ ହୋଇ ନିର୍ଗତ ହେଉ ନ ଥିଲା । ୧୧ । ସେହି ଭରତସତ୍ତମ ମହାତେଜସ୍ୱୀ ପୁରୁଷ ଆପଣାର ଓ ଅନ୍ୟ ସମସ୍ତ ପ୍ରାଣୀଙ୍କର ହିତସାଧନାରେ ସମଭାବରେ ନିଯୁକ୍ତ ଥାଇ ପରମ ସୁଖରେ କାଳଯାପନ କରୁଥିଲେ । ୧୨ । ତାହାଙ୍କର ଭ୍ରାତାମାନେ ସ୍ୱିୟ ନିଜ ତେଜୋଦ୍ୱାରା ପୃଥିବୀପାଳ ମାନଙ୍କୁ ତାପିତ କରି ନିଷ୍କଣ୍ଟକରେ ଓ ପ୍ରମୁଦିତ ଚିତ୍ତରେ ବାସ କରୁଥିଲେ । ୧୩ ।

ଏହିପରି କିଛିଦିନ ଅତୀତ ହେଲାରୁ ଦିନେ ବୀଭତ୍ସୁ କୃଷ୍ଣଙ୍କୁ କହିଲେ, ହେ କୃଷ୍ଣ ! ସମ୍ପ୍ରତି ଗ୍ରୀଷ୍ମକାଳ ହୋଇଅଛି, ଚାଲ ଯମୁନା କୂଳକୁ ଦୁହେଁ ଯିବା । ହେ ମଧୁସୂଦନ ! ସୁହୃଜ୍ଜନ ପରିବୃତ ହୋଇ ସେଠାରେ ବିହାର କରିବା; ସାୟଂକାଳ ହେଲେ ପୁନର୍ବାର ସେଠାରୁ ପ୍ରତ୍ୟାବର୍ତ୍ତନ କରିବା । ହେ ଜନାର୍ଦ୍ଦନ ! ତୁମ୍ଭର ଯେବେ ରୁଚି ହୁଏ, ତେବେ ଏହିପରି କରିବା । ୧୫ । ବାସୁଦେବ ବୋଇଲେ—ହେ କୁନ୍ତୀନନ୍ଦନ ! ଆମ୍ଭର ମଧ୍ୟ ସେହି ଇଚ୍ଛା; ଯେ ସୁହୃଜ୍ଜନ ପରିବୃତ ହୋଇ ଯମୁନା କୂଳରେ ବିହାର କରିବା । ୧୬ ।

ବୈଶମ୍ପାୟନ ବୋଇଲେ—ହେ ଭାରତ ! ତଦନନ୍ତର ଅର୍ଜ୍ଜୁନ ଓ କୃଷ୍ଣ ପରସ୍ପର ଏହିରୂପ କଥୋପକଥନ କରି ଧର୍ମ୍ମରାଜାଙ୍କ ଅନୁମତି ଗ୍ରହଣ ପୂର୍ବକ ସୁହୃଜ୍ଜନଙ୍କ ସହିତ ଗମନ କଲେ । ୧୭ । ସେମାନେ ନାନାଦ୍ରୁମ ସମାକୁଳ, ପୁରନ୍ଦର ପୁର ସଦୃଶ ବିବିଧଗୃହ ବିରାଜିତ, ସୁସ୍ୱାଦୁ ଭକ୍ଷ୍ୟ, ଭୋଜ୍ୟ ଓ ପେୟଯୁକ୍ତ, ମହାମୂଲ୍ୟ ନାନାବିଧ ସୁଗନ୍ଧ ମାଲ୍ୟରେ ସୁଶୋଭିତ, ଉତ୍କୃଷ୍ଟ ବିହାର ସ୍ଥାନରେ ଉପସ୍ଥିତ ହେଲେ ।

ଅନନ୍ତର ବିବିଧ ଉତ୍କୃଷ୍ଟ ରତ୍ନ ନିକରରେ ସମଲଙ୍କୃତ ରୈବତ୍ୟ ପୁରୀ ମଧ୍ୟରେ ଅବିଳମ୍ବରେ ପ୍ରବେଶ କଲେ । ହେ ଭାରତ ! ତତ୍‌କାଳରେ ସମଭିବ୍ୟାହାରୀ ଜନମାନେ ସେ ସ୍ଥାନରେ ସ୍ୱେଚ୍ଛାନୁସାରେ କ୍ରୀଡ଼ା କରିବାକୁ ଆରମ୍ଭ କଲେ । ୨୦ ।

ବିପୁଳ ନିତମ୍ବିନୀ, ଗୁରୁପୀନ-ପୟୋଧରା, ମଦସ୍‌ଖଳିତ ଗାମିନୀ ବାମଲୋଚନାମାନେ ଅର୍ଜୁନଙ୍କର ଓ କୃଷ୍ଣଙ୍କର ଆଦେଶାନୁସାରେ ପ୍ରୀତିପୂର୍ବକ କ୍ରୀଡ଼ା କଲେ; କେହି କେହି ଜଳରେ ଓ କେହି କେହି ବନରେ ଓ କେହି କେହି ବେଶ୍ମରେ, ଯାହାର ଯେଉଁଠାରେ ପ୍ରବୃତ୍ତି ହେଲା ସେଠାରେ ବିହାର କଲେ । ୨୨ । ଦ୍ରୌପଦୀ ଓ ସୁଭଦ୍ରା ଦୁହେଁ ମଦମତ୍ତ ହୋଇ ସେହି କାମିନୀମାନଙ୍କୁ ମହାର୍ହବସନ ଓ ଆଭରଣମାନ ପ୍ରଦାନ କଲେ । ୨୩ । ପୁରସ୍କାର ପ୍ରାପ୍ତ ହୋଇ କେହି କେହି ନାରୀମାନେ ପ୍ରହୃଷ୍ଟ ମନରେ ନୃତ୍ୟ କଲେ, କେହି କେହି ଉଚ୍ଚୈଃସ୍ୱରରେ ଚିତ୍କାର କଲେ, ଆଉ କେହି କେହି ହାସ୍ୟ କଲେ, ପୁନଶ୍ଚ ଅନ୍ୟମାନେ ସୁମଧୁର ସୁରାପାନ କଲେ । ୨୪ । ଅପର କେତେକ ନାରୀମାନେ ଏକତ୍ରିତ ହୋଇ ପରସ୍ପର ଅବରୋଧ ଓ ପ୍ରହାର କଲେ । ଆଉ କେତେକ ନାରୀମାନେ ସମବେତ ହୋଇ ପରସ୍ପର ରହସ୍ୟ ମନ୍ତ୍ରଣା କଲେ । ୨୫ । ମନୋଜ୍ଞ ବେଣୁ ବୀଣା ଓ ମୃଦଙ୍ଗମାନଙ୍କ ଶବ୍ଦରେ ସେହି ହର୍ମ୍ୟ ଓ ସମୃଦ୍ଧିଶୀଳ ବନ ପରିପୂରିତ ହେଲା । ୨୬ ।

ହେ ମହାରାଜ ! ଏହି ମହୋତ୍ସବ ପ୍ରବୃତ୍ତ ହୁଅନ୍ତେ, କୁରୁ ଓ ଦାଶାର୍ହନନ୍ଦନ ଦୁହେଁ ସମୀପସ୍ଥ ଗୋଟିଏ ସୁମନୋହର ସ୍ଥାନକୁ ଗମନ କଲେ । ସେଠାକୁ ଗମନ କରି ମହାତ୍ମା ପରପୁରଞ୍ଜୟ କୃଷ୍ଣାର୍ଜୁନ ଦୁହେଁ ମହାମୂଲ୍ୟ ଗୋଟିଏ ସୁମନୋହର ଆସନରେ ଉପବେଶନ କଲେ । ୨୮ । ସେଠାରେ ବସି ଅତୀତ ବିକ୍ରମ ଘଟିତ ଓ ଅପର୍‌ପର ବିଷୟମାନ କଥୋପକଥନ କରି ପାର୍ଥ ଓ ମାଧବ ଦୁହେଁ ଆନନ୍ଦଯୁକ୍ତ ହେଲେ । ୨୯ । ସ୍ୱର୍ଗରେ ଯେପରି ଅଶ୍ୱିନୀକୁମାର ଦୁହେଁ ଉପବେଶନ କରିଥାନ୍ତି, ତଦ୍‌ବତ୍ ବାସୁଦେବ ଓ ଧନଞ୍ଜୟ ଦୁହେଁ ଆସୀନ ହୋଇ ଅଛନ୍ତି, ଏମନ୍ତ ସମୟରେ ଗୋଟିଏ ବିପ୍ର ଆସି ସେ ଦୁହିଙ୍କ ସମୀପରେ ଉପସ୍ଥିତ ହେଲେ । ୩୦ । ସେ ବିପ୍ର ଶାଲତରୁ ସଦୃଶ ଉଚ୍ଚ; ତାହାଙ୍କର ପ୍ରଭା ପ୍ରଦୀପ୍ତ କନକ ସଦୃଶ; ଶ୍ମଶ୍ରୁ ଉଜ୍ଜ୍ୱଳ ଓ ହରିତ୍ ଏବଂ ପିଙ୍ଗଳ ବର୍ଣ୍ଣ ଯୁକ୍ତ; ଦୀର୍ଘତାର ପରିମାଣକୁ

ଗୃହିଁ ତାହାଙ୍କର ଦୈର୍ଘ୍ୟର ପ୍ରମାଣ ସମାନ ଅଟେ; ରୂପ ତରୁଣ ଆଦିତ୍ୟଙ୍କ ସମ, ଆନନ ପଦ୍ମପତ୍ର ସମାନ, ବର୍ଣ୍ଣ ପିଙ୍ଗଳ, ତେଜରେ ପ୍ରଜ୍ୱଳିତ ହୁତାଶନ ସମ ତେଜୋବନ୍ତ; ଜଟା ଓ କୌପୀନ ମାତ୍ର ଧାରଣ କରି ଉପଗତ ହେଲେ । ୬୨ । ସେହି ଦ୍ୱିଜୋତ୍ତମଙ୍କୁ ସମୀପବର୍ତ୍ତୀ ହେଉଥିବାର ଦେଖି ବାସୁଦେବ ଓ ଅର୍ଜ୍ଜୁନ ଦୁହେଁ ଶୀଘ୍ର ଗାତ୍ରୋତ୍ଥାନ କଲେ । ୬୩ ।

---

## ଅଧ୍ୟାୟ—୨୨୩

ବୈଶମ୍ପାୟନ ବୋଇଲେ—ତଦନନ୍ତର ସେହି ବ୍ରାହ୍ମଣ, କୃଷ୍ଣାର୍ଜ୍ଜୁନଙ୍କୁ ସମ୍ବୋଧନ କରି ବୋଇଲେ—"ତୁମ୍ଭେ ଦୁଇଜଣ ସମସ୍ତ ଲୋକମଧ୍ୟରେ ପ୍ରଧାନ ବୀର ଅଟ; ଏହି ଖାଣ୍ଡବପ୍ରସ୍ଥ ନିକଟରେ ଅବସ୍ଥିତ କରୁଅଛ; ଅମ୍ଭେ ବହୁଭୋକ୍ତା ବ୍ରାହ୍ମଣ, ସର୍ବଦା ଅପରିମିତ ଭୋଜନ କରୁଁ, ବର୍ତ୍ତମାନ ତୁମ୍ଭମାନଙ୍କ ଠାରେ ଭିକ୍ଷା କରୁଅଛୁଁ, ତୁମ୍ଭେମାନେ ଭୋଜନ ପ୍ରଦାନ କରି ଆମ୍ଭର ନିରନ୍ତର ପ୍ରୀତିସମ୍ପାଦନ କର । ୨ । ଏହାଶୁଣି କୃଷ୍ଣ ଓ ପାଣ୍ଡବ ଦୁହେଁ ପ୍ରଶ୍ନ କଲେ, ଆପଣ କେଉଁ ପ୍ରକାର ଅନ୍ନ ଇଚ୍ଛା କରୁଅଛନ୍ତି ? ବୋଲିବା ହେଉନ୍ତୁ, ଆମ୍ଭେ ଦୁହେଁ ସେହି ପ୍ରକାର ଅନ୍ନନିମିତ୍ତ ଯତ୍ନ କରିବୁଁ । ୩ । ସେହି ବୀରଦ୍ୱୟଙ୍କ ବଚନ ଶ୍ରବଣ କରି ବ୍ରାହ୍ମଣ ବୋଇଲେ ।

"ଆମ୍ଭେ ଅନ୍ନ ଭୋଜନ କରିବାକୁ ଇଚ୍ଛା କରୁନାହୁଁ; ଆମ୍ଭଙ୍କୁ ପାବକ ବୋଲି ଜାଣନ୍ତୁ; ଆମ୍ଭର ଅନୁରୂପ ଅନ୍ନକୁ ଆପଣ ଦୁହେଁ ପ୍ରଦାନ କରନ୍ତୁ । ଏହି ଖାଣ୍ଡବ ବନକୁ ଇନ୍ଦ୍ର ସର୍ବଦା ରକ୍ଷା କରନ୍ତି, ସେ ମହାତ୍ମା ରକ୍ଷା କରୁଥିବାରୁ ଅମ୍ଭେ ଏହାକୁ ଦଗ୍ଧ କରିପାରୁ ନାହୁଁ । ତାହାଙ୍କର ସଖା ତକ୍ଷକ ନାମକ ପନ୍ନଗ, ଅନୁଚର ବର୍ଗଙ୍କ ସହିତ ନିରନ୍ତର ଏହିଠାରେ ବାସ କରୁଅଛନ୍ତି; ସେମାନଙ୍କ ନିମିତ୍ତ ଇନ୍ଦ୍ର ବଜ୍ର ଧାରଣ କରି ଏହି ବନକୁ ସର୍ବଦା ରକ୍ଷା କରନ୍ତି । ୭ । ସେ ଭୁଜଙ୍ଗମ ମାନଙ୍କ ପ୍ରସଙ୍ଗରୁ ଆଉ ଅନେକ ପ୍ରକାରର ପ୍ରାଣୀ ଏହିଠାରେ ବାସ କରି ଅଛନ୍ତି । ସେମାନଙ୍କୁ ଦଗ୍ଧ କରିବାକୁ ଇଚ୍ଛା କଲେହେଁ,

ଇନ୍ଦ୍ରଙ୍କ ପ୍ରଭାବରୁ ଅମ୍ଭେ ତାହା କରିବାକୁ ଅସମର୍ଥ ହୋଇଅଛୁଁ । ୮ । ଅଗ୍ନିଙ୍କୁ ପ୍ରଜ୍ୱଳିତ ହେବାର ଦେଖିଲେ ଇନ୍ଦ୍ର, ମେଘ ଜଳଦ୍ୱାରା ବୃଷ୍ଟି କରନ୍ତି; ସେହି ହେତୁରୁ ଦଗ୍ଧ କରିବାର ଅମ୍ଭର ଇଚ୍ଛା ଥିଲେହେଁ ଦଗ୍ଧ କରି ପାରୁନାହୁଁ । ୯ । ଆପଣ ଦୁହେଁ ଅସ୍ତ୍ରବେତ୍ତା; ଆପଣଙ୍କ ସାହାଯ୍ୟରେ ଅମ୍ଭେ ଏହି ଖାଣ୍ଡବ ବନକୁ ଦଗ୍ଧ କରିପାରିବୁଁ; ଏହି ଅନ୍ନକୁ ଅମ୍ଭେ ଯାଚଞ୍ଚା କରୁଅଛୁଁ । ୧୦ । ଆପଣ ଦୁହେଁ ଉତ୍ତମ ଅସ୍ତ୍ରବିତ୍ ଅଟନ୍ତି, ଉଦକଧାରାକୁ ଓ ପ୍ରାଣୀମାନେ ଯେପରି ଏହି ବନରୁ ପଳାୟନ କରି ନ ପାରନ୍ତି ସେମାନଙ୍କୁ ସର୍ବପ୍ରକାରରେ ନିବାରଣ କରିବା ହେବେ । ୧୧ ।

ଜନମେଜୟ ବୋଇଲେ—ଖାଣ୍ଡବ ବନରେ ଅନେକ ସତ୍ତ୍ୱମାନେ ବାସ କରୁଥିଲେ, ମହେନ୍ଦ୍ର ତାହାଙ୍କର ରକ୍ଷକ ଥିଲେ; ଭଗବାନ୍ ଅଗ୍ନି କି ନିମିତ୍ତ ସେହି ବନକୁ ଦଗ୍ଧ କରିବାକୁ ଇଚ୍ଛାକଲେ । ୧୨ । ହେ ବ୍ରହ୍ମନ୍ ! ଏଥିର କାରଣ ସାମାନ୍ୟ ବୋଲି ଅମ୍ଭଙ୍କୁ ବୋଧ ହେଉନାହିଁ; ହବ୍ୟବାହନ କ୍ରୁଦ୍ଧ ହୋଇ କି କାରଣ ସେହି ବନକୁ ଦଗ୍ଧ କରିବାକୁ ଇଚ୍ଛା କଲେ ? । ୧୩ । ହେ ବ୍ରହ୍ମନ୍ । ଏହାକୁ ଅମ୍ଭେ ବିସ୍ତାରରୂପେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ଏହି ଘଟଣାର ଯଥାତଥ୍ୟ ଆପଣ ବର୍ଣ୍ଣନ କରନ୍ତୁ । ପୂର୍ବେ ଖାଣ୍ଡବବନର ଦାହ କାହିଁକି ଓ କିପରି ହେଲା ଆପଣଙ୍କ ମୁଖରୁ ଶୁଣିଲେ ଅମ୍ଭର ତୃପ୍ତି ଆସିବ । ୧୪ ।

ବୈଶମ୍ପାୟନ ବୋଇଲେ—ହେ ରାଜନ୍ । ଏହିସବୁ ଘଟଣା ଯେପରି ହୋଇଥିଲା, ଅମ୍ଭଠାରୁ ଯଥାତଥ୍ୟରୂପେ ଶ୍ରବଣ କରନ୍ତୁ । ହେ ପୃଥିବୀ ପତେ । ଯେଉଁ କାରଣରୁ ଅଗ୍ନି ଖାଣ୍ଡବ ବନକୁ ଦଗ୍ଧ କରିଥିଲେ, ତାହା ଅମ୍ଭେ କହୁଅଛୁଁ । ୧୫ । ହେ ନରଶ୍ରେଷ୍ଠ । ଋଷିଙ୍କର ସମ୍ମତ ଖାଣ୍ଡବ ବନାଶିନୀ ପୌରାଣିକୀ କଥାକୁ ଅମ୍ଭେ କହିବୁ, ଶୁଣ ।୧୬। ହେ ରାଜନ୍ । ପୁରାଣରେ ଶୁଣାଅଛି ଯେ, ପୂର୍ବକାଳରେ ବଳବିକ୍ରମ ସମନ୍ୱିତ, ମହେନ୍ଦ୍ର ସଦୃଶ ତେଜସ୍ୱୀ, ଶ୍ୱେତକି ନାମରେ ଗୋଟିଏ ବିଖ୍ୟାତ ଭୂପତି ଥିଲେ । ତାହାଙ୍କ ସଦୃଶ ଧୀଶକ୍ତି-ସମ୍ପନ୍ନ, ଦାତା ଓ ଯାଜ୍ଞିକ ରାଜା ସେକାଳରେ ଆଉ କେହି ନ ଥିଲେ । ସେ ବହୁ ଦକ୍ଷିଣା ପ୍ରଦାନ କରି ଜ୍ୟୋତିଷ୍ଟୋମାଦିକରୁ ଓ ମହାଯଜ୍ଞମାନଙ୍କ ଅନୁଷ୍ଠାନ କରୁଥିଲେ । ୧୮ ।

ହେ ନୃପ ! ତାହାଙ୍କର ବୁଦ୍ଧି ନିରନ୍ତର କ୍ରିୟାରମ୍ଭ, ସତ୍ର ଓ ବିବିଧ ଦାନ କର୍ମ ବ୍ୟତିରେକେ ଅନ୍ୟ କୌଣସି ବିଷୟରେ ବ୍ୟାପୃତ ଥାଏ ନାହିଁ । ୧୯ । ସେହି ଧୀଶକ୍ତିଶାଳୀ ରାଜା ଋତ୍ୱିକ ଗଣଙ୍କ ସହିତ ବହୁକାଳ ଯଜ୍ଞାନୁଷ୍ଠାନାଦି କାର୍ଯ୍ୟରେ ଲିପ୍ତ ରହିବାରୁ ଋତ୍ୱିକ ନିଚୟ କ୍ରମଶଃ ଧୂମ ବ୍ୟାକୁଳିତ ଲୋଚନ ଓ ଖିନ୍ନ ହୋଇ ସେ ନରାଧିପଙ୍କୁ ପରିତ୍ୟାଗ କଲେ; କିନ୍ତୁ ମହୀପତି ସେମାନଙ୍କୁ ଅନୁରୋଧ କରି ପ୍ରବୃତ୍ତ ରହିବାକୁ ଆହ୍ୱାନ କଲେ । ୨୧ ।

ଋତ୍ୱିକମାନେ ଚକ୍ଷୁର ବିକଳତା ପ୍ରାପ୍ତ ହେବାରୁ ସେହି ଯଜ୍ଞକୁ ଆସିବାକୁ ସ୍ୱୀକୃତ ହେଲେନାହିଁ; ପରନ୍ତୁ ନରପତି ସେହି ପୁରୋହିତ-ମାନଙ୍କ ସମ୍ମତିକ୍ରମେ ଅପର ପୁରୋହିତଙ୍କ ଦ୍ୱାରା ସମାରବ୍ଧ ଯଜ୍ଞକୁ ପରିସମାପ୍ତ କଲେ । କିଛୁକାଳ ଅତିବାହିତ ହୁଅନ୍ତେ ସେହି ମହୀପତି ପୁନର୍ବାର ଶତବର୍ଷ ସାଧ୍ୟ ଅପର ଗୋଟିଏ ଯଜ୍ଞ ଅନୁଷ୍ଠାନ କରିବାକୁ ଅଭିଳାଷ କଲେ; କିନ୍ତୁ ତାହାଙ୍କର ପୁରୋହିତମାନେ ସେହି ସତ୍ରକୁ ସମ୍ପାଦନ କରିବାକୁ ସମ୍ମତ ହେଲେ ନାହିଁ । ୨୪ ।

ମହାଯଶସ୍ୱୀ ମହୀପତି ନିରଳସ ହୋଇ ସୁହୃଜ୍ଜନଙ୍କ ସହିତ ମହାଯତ୍ନ ପୂର୍ବକ ପ୍ରଣିପାତ ସାନ୍ତ୍ୱନା ଓ ଦାନଦ୍ୱାରା ପୁରୋହିତମାନଙ୍କୁ ଭୂୟୋଭୂୟଃ ଅନୁନୟ କଲେ; କିନ୍ତୁ ଅମିତତେଜା ପୁରୋହିତମାନେ କୌଣସିକ୍ରମେ ତାହାଙ୍କର ଅଭିପ୍ରାୟାନୁରୂପ କର୍ମ କଲେ ନାହିଁ । ୨୬ । ରାଜର୍ଷି କୋପାବିଷ୍ଟ ହୋଇ ଆଶ୍ରମସ୍ଥିତ ସେହି ବ୍ରାହ୍ମଣମାନଙ୍କୁ ବୋଇଲେ, ହେ ବ୍ରାହ୍ମଣମାନେ ! ଯଦି ଅମ୍ଭେ ପତିତ ହେଉଁ କି ଆପଣମାନଙ୍କର ଶୁଶ୍ରୂଷାରେ ନିଯୁକ୍ତ ନ ହେଉଁ, ତେବେ ଅମ୍ଭେ ବ୍ରାହ୍ମଣଙ୍କ ନିକଟରେ ନିନ୍ଦନୀୟ ହେଉ ଓ ଆପଣମାନେ ଅମ୍ଭଙ୍କୁ ତତ୍‌କ୍ଷଣାତ୍ ପରିତ୍ୟାଗ କରିବେ; କିନ୍ତୁ ଅମ୍ଭେ ଆପଣମାନଙ୍କଠାରେ ଅନୁରକ୍ତ ହୋଇ ଯଜ୍ଞାନୁଷ୍ଠାନ କରିବାକୁ ଉଦ୍ୟତ ଅଛୁଁ; ଏପରି ସ୍ଥଳରେ ଆପଣମାନେ ଅମ୍ଭଙ୍କୁ ପରିତ୍ୟାଗ କରିବା କର୍ତ୍ତବ୍ୟ ହେଉନାହିଁ । ୨୮ । ଅମ୍ଭେ ଆପଣମାନଙ୍କର ଶରଣାପନ୍ନ ହୋଇଅଛୁଁ, ଆପଣମାନେ ଅମ୍ଭଠାରେ ପ୍ରସନ୍ନ ହେଉନ୍ତୁ । ୨୯ ।

ହେ ଦ୍ୱିଜୋତ୍ତମ ବୃନ୍ଦ ! ଯଦି ଆପଣମାନେ ବିଦ୍ୱେଷ ପରବଶ ହୋଇ ଅମ୍ଭଙ୍କୁ ପରିତ୍ୟାଗ କରନ୍ତି, ତେବେ ଯାଜ୍ୟକର୍ମ ନିମିତ୍ତ ଅମ୍ଭେ

ଅନ୍ୟ ପୁରୋହିତଙ୍କ ନିକଟକୁ ଗମନ କରିବୁଁ ଓ ସ୍ୱୀୟ କାର୍ଯ୍ୟ ସାଧନ କରିବା ନିମିତ୍ତ ସାନ୍ତ୍ୱନାବାକ୍ୟ ଓ ଦାନାଦିଦ୍ୱାରା ସେମାନଙ୍କୁ ପ୍ରସନ୍ନ କରି ଆମ୍ଭର ଅନୁଷ୍ଠେୟ କାର୍ଯ୍ୟମାନଙ୍କୁ ସେମାନଙ୍କ ନିକଟରେ ବ୍ୟକ୍ତ କରି ନିଜର ଅଭିଳାଷ ସିଦ୍ଧ କରିବୁଁ । ୩୧ । ରାଜା ଏହା କହି ତୁନି ହେଲେ, ପୁରୋହିତମାନେ ଯେତେବେଳେ ଦେଖିଲେ ଯେ ସେମାନେ ସେହି ପରନ୍ତପ ନରପତିଙ୍କର ଯାଜନ କର୍ମ୍ମ କରିବାକୁ ସମର୍ଥ ହେବେନାହିଁ, ସେତେବେଳେ ସେମାନେ କୁପିତ ଚିତ୍ତରେ ନୃପ ସତ୍ତମଙ୍କୁ କହିଲେ, ହେ ପାର୍ଥିବୋତ୍ତମ । ଆପଣଙ୍କର ଦୈବକର୍ମ ନିରନ୍ତର ଅନୁଷ୍ଠିତ ହେଉଅଛି । ଆମ୍ଭେ ନିପୃତ କର୍ମ୍ମକରି ପରିଶ୍ରାନ୍ତ ହୋଇଅଛୁଁ, ତୁମ୍ଭର ମଧ୍ୟ ବୁଦ୍ଧି ମୋହ ଉପସ୍ଥିତ ହୋଇଥିବାରୁ ତ୍ୱରାଯୁକ୍ତ ହୋଇଅଛ । ଅତଏବ ଏହି ଶ୍ରମାକୁଳ ପୁରୋହିତମାନଙ୍କୁ ତ୍ୟାଗକରି ଅନ୍ୟ ପୁରୋହିତଙ୍କୁ ଅବଲମ୍ବନ କରିବା ତୁମ୍ଭର ବିଧେୟ; ତୁମ୍ଭେ ରୁଦ୍ରଙ୍କ ନିକଟକୁ ଗମନ କର, ସେ ତୁମ୍ଭର ଯାଜନ କର୍ମ୍ମ କରିବାକୁ ସମର୍ଥ ହେବେ । ୩୫ ।

ନରପତି ଶ୍ୱେତକି ସେହି ସ୍ଥାନରେ ପୁରୋହିତମାନଙ୍କର ତାଦୃଶ ତିରସ୍କାର ବାକ୍ୟ ଶ୍ରବଣ କରି କ୍ରୋଧାବିଷ୍ଟ ହେଲେ, ତତ୍ପରେ କୈଳାସ ପର୍ବତକୁ ଗମନ କରି ସେଠାରେ ଉଗ୍ର ତପସ୍ୟାର ନିମଗ୍ନ ରହିଲେ ।୩୬ । ହେ ରାଜନ୍ । ଶ୍ୱେତକି ସେହିସ୍ଥାନରେ ନିୟମଯୁକ୍ତ, ବ୍ରତପରାୟଣ ଓ ଉପବାସ ନିରତ ହୋଇ ସୁଦୀର୍ଘକାଳ ମହାଦେବଙ୍କର ଆରାଧନା କଲେ । କେତେବେଳେ ଦ୍ୱାଦଶ ମୁହୂର୍ତ୍ତିରେ, କେତେବେଳେ ଅବା ଷୋଡ଼ଶ ମୁହୂର୍ତ୍ତିରେ ସେ ଫଳମୂଳମାନ ଭକ୍ଷଣ କରୁଥିଲେ । ଏହିପରି କିଛିକାଳ ଅତୀତ ହେବାରୁ ସେ ଛଅମାସ ପର୍ଯ୍ୟନ୍ତ ସୁସମାହିତ, ଊର୍ଦ୍ଧ୍ୱବାହୁ ଓ ନିର୍ନିମେଷ ନେତ୍ରରେ ଅଚଳ ସ୍ଥାଣୁ ପ୍ରାୟ ଅବସ୍ଥାନ କଲେ । ହେ ଭାରତ । ଭଗବାନ୍ ଶଙ୍କର ସେହି ତପୋନିରତ ନୃପଶାର୍ଦ୍ଦୂଳଙ୍କର କଠୋର ତପସ୍ୟାରେ ପରମ ପ୍ରୀତ ହୋଇ ତାହାଙ୍କୁ ଦର୍ଶନ ଦେଲେ ଓ ସ୍ନିଗ୍ଧ ଗମ୍ଭୀର ବାକ୍ୟରେ କହିଲେ—"ହେ ପରନ୍ତପ୍ ନରଶାର୍ଦ୍ଦୂଳ ! ଆମ୍ଭେ ତୁମ୍ଭର ତପସ୍ୟାରେ ପ୍ରୀତ ହୋଇଅଛୁଁ; ତୁମ୍ଭର ମଙ୍ଗଳ ହେବ, ତୁମ୍ଭେ ଅଭିପ୍ରେତ ବର ପ୍ରାର୍ଥନା କର ।" ଅପରିମିତ ତେଜସମ୍ପନ୍ନ, ମହାତ୍ମା ମହାଦେବଙ୍କର ସେହି ବଚନ ଶ୍ରବଣ କରି ରାଜା ଶ୍ୱେତକି କହିଲେ—

ହେ ସୁରେଶ୍ୱର ! ହେ ଦେବଦେବେଶ ! ସର୍ବଲୋକ ନମସ୍ୟ ଭଗବାନ ଆପଣ ଯେବେ ଅମ୍ଭ ପ୍ରତି ପ୍ରସନ୍ନ ହୋଇଥାନ୍ତି, ତେବେ ଆପଣ ସ୍ୱୟଂ ଅମ୍ଭର ଯାଜନ କର୍ମ୍ମ କରିବାକୁ ସ୍ୱୀକୃତ ହେଉନ୍ତୁ । ଭଗବାନ୍ ରୁଦ୍ର ରାଜାଙ୍କର ସେହି ବଚନ ଶ୍ରବଣ କରି ପ୍ରୀତ ହୋଇ ସସ୍ମିତ ବଦନରେ କହିଲେ—ହେ ରାଜନ୍ । ଏହି ଯାଜନକାର୍ଯ୍ୟ ବିଷୟରେ ଅମ୍ଭମାନଙ୍କର ଅଧିକାର ନାହିଁ; କିନ୍ତୁ ତୁମ୍ଭେ ବରପ୍ରାର୍ଥନା ନିମିତ୍ତ ସୁମହତ୍ ତପ ଆଚରଣ କରିଅଛ; ହେ ପରନ୍ତପ ! ଯଦି ତୁମ୍ଭେ ଅମ୍ଭ ବଚନ ପ୍ରତିପାଳନ କରିବ, ତେବେ ଅମ୍ଭେ ତୁମ୍ଭଙ୍କୁ ଯଜ୍ଞ କରାଇବୁଁ । ୪୭।

ରୁଦ୍ର ବୋଇଲେ—ହେ ନୃପ ! ଯଦି ତୁମ୍ଭେ ଦ୍ୱାଦଶବର୍ଷ ବ୍ରହ୍ମଚର୍ଯ୍ୟ ଓ ସମାହିତ ହୋଇ ସତତ ଆଜ୍ୟଧାରା ଦ୍ୱାରା ଅନଳଙ୍କୁ ପରିତୃପ୍ତ କରିବ ତେବେ ଅମ୍ଭଙ୍କୁ ଯେଉଁ ବର ପ୍ରାର୍ଥନା କରିଅଛ, ତାହା ଅମ୍ଭେ ପ୍ରଦାନ କରିବୁଁ । ରୁଦ୍ରଙ୍କର ଏହିରୂପ ବଚନ ଶୁଣି ମନୁଜାଧିପ ଶ୍ୱେତକି ଶୂଳପାଣିଙ୍କ କଥିତ ସମସ୍ତ କର୍ମ୍ମ ଆଚରଣ କଲେ । ଦ୍ୱାଦଶବର୍ଷ ପୂର୍ଣ୍ଣ ହୁଅନ୍ତେ ପୁନର୍ବାର ମହେଶ୍ୱରଙ୍କ ନିକଟକୁ ଆଗମନ କଲେ । ଲୋକ ଭାବନ ଶଙ୍କର ନୃପସତ୍ତମ ଶ୍ୱେତକିଙ୍କୁ ଦେଖି ପରମ ପ୍ରୀତ ହୋଇ ବୋଇଲେ ।୫୦। ହେ ନୃପଶ୍ରେଷ୍ଠ ! ତୁମ୍ଭ ତପସ୍ୟା ଓ ବିଭିନ୍ନ ନିରବଚ୍ଛିନ୍ନ ସାଧନାରେ ଅମ୍ଭେ ପରମ ତୋଷିତ ହେଲୁଁ । କିନ୍ତୁ ହେ ପରନ୍ତପ ! ଯାଜନ କର୍ମ୍ମ ସର୍ବଦା ବ୍ରାହ୍ମଣମାନଙ୍କର ବୋଲି ବିଧି ବିଧାନ କରିଅଛନ୍ତି; ଅତଏବ ଅମ୍ଭେ ତୁମ୍ଭଙ୍କୁ ସ୍ୱୟଂ ଯଜ୍ଞ କରାଇବୁ ନାହିଁ, ଅମ୍ଭ ଅଂଶରେ କ୍ଷିତିତଳରେ ମହାଭାଗ ଦୁର୍ବାସା ନାମକ ଦ୍ୱିଜୋତ୍ତମ ଜାତ ହେବେ; ସେହି ବିଖ୍ୟାତ ଋଷି ଅମ୍ଭର ନିଯୋଗାନୁସାରେ ତୁମ୍ଭର ଯଜ୍ଞ କରାଇବେ, ତୁମ୍ଭେ ଆୟୋଜନ କର । ୫୩ ।

ରୁଦ୍ରଙ୍କର ଉଦାହୃତ ବଚନ ଶ୍ରବଣ କରି ଶ୍ୱେତକି ପୁନର୍ବାର ନିଜ ପୁରକୁ ଆଗମନ କରି ସମ୍ଭାରମାନଙ୍କୁ ଆୟୋଜନ କଲେ । ୫୪ । ଆୟୋଜନ କରିସାରି ପୁନଶ୍ଚ ରୁଦ୍ରଙ୍କ ନିକଟରେ ଉପଗତ ହୋଇ ବୋଇଲେ, ଅମ୍ଭେ ସମୁଦାୟ ଉପକରଣମାନଙ୍କୁ ଆହରଣ କରିଅଛୁଁ ।୫୫। ହେ ମହାଦେବ ! ତୁମ୍ଭ ପ୍ରସାଦରୁ ଆଗାମୀ କଲ୍ୟ ଅମ୍ଭର ଦୀକ୍ଷା ହେଉ । ମହାତ୍ମା ରାଜାଙ୍କର ସେହି ବଚନ ଶ୍ରବଣ କରି ରୁଦ୍ର ଦୁର୍ବାସାଙ୍କୁ ଆହ୍ୱାନ କରି ବୋଇଲେ, ଏହି ମହାଭାଗ ଶ୍ୱେତକି ନୃପସତ୍ତମ ଅଟନ୍ତି; ହେ ବିପ୍ରେନ୍ଦ୍ର ! ତୁମ୍ଭେ ଅମ୍ଭର ନିୟୋଗାନୁସାରେ ଏହି ଭୂମିପତିଙ୍କୁ ଯଜ୍ଞ କରାଅ । ଋଷି 'ହେଉ' ବୋଲି ରୁଦ୍ରଙ୍କୁ କହିଲେ । ୫୮ ।

ତଦନନ୍ତର ସେହି ମହାତ୍ମା ନରପତିଙ୍କର ସବଅାରବ୍ଧ ହେବାରୁ ଯଥାବିଧି ଓ ଯଥାକାଳରେ ବହୁ ଦକ୍ଷିଣ ହୋଇ ସେହି ଯଜ୍ଞ ପ୍ରବର୍ତ୍ତିତ ହେଲା । ୫୯ । ମହାତ୍ମା ରାଜାଙ୍କର ସେହି ଯଜ୍ଞ ସମାପ୍ତ ହୁଅନ୍ତେ ଦୁର୍ବାସାଙ୍କ ଅାଦେଶାନୁସାରେ ଯାଜକମାନେ ପ୍ରତ୍ୟାବର୍ତ୍ତନ କଲେ । ୬୦ । ଯେଉଁ ମହାତେଜସ୍ୱୀ ସଦସ୍ୟମାନେ ତହିଁରେ ଦୀକ୍ଷିତ ହୋଇଥିଲେ, ସେମାନ-ମଧ୍ୟ ପ୍ରସ୍ଥାନ କଲେ । ହେ ରାଜନ୍ ! ସେହି ମହାଭାଗ ନରପତି ମଧ୍ୟ ବେଦ-ପାରଗ ବ୍ରାହ୍ମଣମାନଙ୍କ ଦ୍ୱାରା ପୂଜିତ ହୋଇ, ବନ୍ଦିଙ୍କ ଦ୍ୱାରା ସ୍ତୁତ ହୋଇ ଓ ନଗରଜନମାନଙ୍କ ଦ୍ୱାରା ଅଭିନନ୍ଦିତ ହୋଇ ସ୍ୱପୁରକୁ ପ୍ରବେଶ କଲେ । ୬୨ । ଏହି ପ୍ରକାରେ ନରପତି ଶ୍ୱେତକି ବହୁକାଳ ରାଜ୍ୟ ଭୋଗ କରି ସ୍ୱର୍ଗକୁ ଗମନ କଲେ । ୬୩ ।

ମହାରାଜ ! ଋତ୍ୱିକ ଓ ସଦସ୍ୟ ସମନ୍ୱିତ ସେହି ଯଜ୍ଞରେ ଅଗ୍ନିଦେବତା ଦ୍ୱାଦଶବର୍ଷ ପର୍ଯ୍ୟନ୍ତ ନିରନ୍ତର ଘୃତ ପାନ କରି ଏତାଦୃଶ ତୃପ୍ତି ଲାଭ କରିଥିଲେ ଯେ ତାହାଙ୍କର ଆଉ କାହାରି ପ୍ରଦତ୍ତ ହବିଃ ପାନ ପ୍ରତି ଅଭିଳାଷ ହେଲା ନାହିଁ; ଅଗ୍ନି ପାଣ୍ଡୁବର୍ଣ୍ଣ ଦୃଶ୍ୟ ହେଲେ ଓ ପୂର୍ବଂ ପ୍ରାୟ ତାହାଙ୍କର ପ୍ରକାଶ ରହିଲା ନାହିଁ । ୬୬ । ତତ୍ପରେ ଭଗବାନ ବହ୍ନି ଦେବତାଙ୍କର ବିକାର ଜାତ ହେଲା, ତେଜୋବିହୀନ ହୋଇ ଗ୍ଲାନି ପ୍ରାପ୍ତ ହେଲେ । ୬୭ । ହୁତାଶନ ଆପଣାକୁ ତେଜୋବିହୀନ ଦେଖି ଲୋକ-ପୂଜିତ ବ୍ରହ୍ମାଙ୍କ ସଦନକୁ ଗମନ କଲେ । ୬୮ । ସେଠାରେ ଉପସ୍ଥିତ ହୋଇ ବ୍ରହ୍ମାଙ୍କୁ ବୋଇଲେ, ହେ ଭଗବାନ୍ ! ଶ୍ୱେତକେତୁ ଆମ୍ଭର ପରମା ପ୍ରୀତି ସମ୍ପାଦନ କରିଅଛନ୍ତି; ଆମ୍ଭର ତୀବ୍ର ଅରୁଚି ଜାତ ହୋଇଅଛି, ଆମ୍ଭେ ତାହାକୁ ତ୍ୟାଗ କରି ପାରୁନାହୁଁ । ପରନ୍ତୁ ହେ ଜଗତପତେ ! ଆମ୍ଭେ ତେଜୋବିହୀନ ଓ ବଳହୀନ ହୋଇଅଛୁଁ । ୭୦ । ଆପଣଙ୍କ ପ୍ରସାଦରୁ ଆମ୍ଭର ପୂର୍ବ ପ୍ରକୃତି ସ୍ଥିର ହେଉ । ସର୍ବଲୋକ-କର୍ତ୍ତା ଭଗବାନ ବ୍ରହ୍ମା ହୁତବହଙ୍କର ଉକ୍ତରୂପ ବାକ୍ୟ ଶ୍ରବଣ କରି ମନ୍ଦ ମନ୍ଦ ହାସ୍ୟ କରି ତାହାଙ୍କୁ ବୋଇଲେ—ହେ ମହାଭାଗ ! ଦ୍ୱାଦଶ ବର୍ଷାବଧି ତୁମ୍ଭେ ବସୁଧାରା-ନ୍ତୃତ ଘୃତ ପାନ କରି ଏହି ଗ୍ଲାନି ଲାଭ କରିଅଛ ଓ ସହସା ତେଜୋବିହୀନ ହୋଇଅଛ । ୭୩ ।

ହେ ବହ୍ନେ ! ତୁମ୍ଭେ ଦୁଃଖ କର ନା, ତୁମ୍ଭେ ପ୍ରକୃତିସ୍ଥ ହେବ । ଆମ୍ଭେ ତୁମ୍ଭର ଅରୁଚି ନାଶ କରିବୁଁ; ଯେଉଁ ପ୍ରକାରେ ଅରୁଚି ନଷ୍ଟ ହେବ,

ତାହା ଶ୍ରବଣ କର । ୭୪। ହେ ବିଭାବସୋ । ପୂର୍ବକାଳରେ ତୁମ୍ଭେ ଦେବତାଗଣଙ୍କ ନିଯୋଗାନୁସାରେ ଦେବଶତ୍ରୁଙ୍କର ଆବାସଭୂମି ସୁଦାରୁଣ ଖାଣ୍ଡବ ବନକୁ ଭସ୍ମସାତ୍ କରିଥିଲ; ଅଧୁନା ମଧ୍ୟ ସେହି ସ୍ଥାନରେ ବିବିଧ ପ୍ରାଣୀ ବାସ କରୁଅଛନ୍ତି, ତୁମ୍ଭେ ସେମାନଙ୍କ ମେଦରେ ପରିତୃପ୍ତ ହୋଇ ପୁନର୍ବାର ପ୍ରକୃତିସ୍ଥ ହୋଇ ପାରିବ । ୭୬। ଅତଏବ ସେହି ଖାଣ୍ଡବ ବନକୁ ଦହନ କରିବା ନିମିତ୍ତ ଶୀଘ୍ର ଗମନ କର । ତାହାକୁ ଦଗ୍ଧ କଲେ ତୁମ୍ଭର ଗ୍ଲାନି ଦୂର ହେବ ।

ପରମେଷ୍ଠିଙ୍କ ମୁଖନିଃସୃତ ଉକ୍ତବଚନ ଶ୍ରବଣ କରି ହୁତାଶନ ଅତିଶୀଘ୍ର ଧାବମାନ ହେଲେ ଓ ଖାଣ୍ଡବ ବନକୁ ଆଗମନ କରି ବୀର୍ଯ୍ୟଶାଳୀ ହୋଇ ସହସା ପ୍ରଜ୍ୱଳିତ ହେଲେ । ଅଗ୍ନିକୁ କ୍ରୁଦ୍ଧ ଓ ବାୟୁଦ୍ୱାରା ସମୀରିତ ହେବାର ଦେଖି ତଦ୍‌ବନବାସୀମାନେ ପାବକ ଶାନ୍ତି ନିମନ୍ତେ ପରମ ପ୍ରଯତ୍ନ କଲେ । ୭୯ । ଶତ ଶତ ଓ ସହସ୍ର ସହସ୍ର କରିମାନେ କରଦ୍ୱାରା ଶୀଘ୍ର ଜଳ ଆହରଣ କରି କ୍ରୋଧପୂର୍ବକ ଅଗ୍ନି ଉପରେ ଜଳ-ସିଞ୍ଚନ କଲେ । ୮୦ । ବହୁଶୀର୍ଷା ନାଗମାନେ କ୍ରୋଧ ମୂର୍ଚ୍ଛିତ ହୋଇ ମୁଖ ଦ୍ୱାରା ଜଳ ଆଣି ପାବକୋପରି ନିକ୍ଷେପ କଲେ । ୮୧। ହେ ଭରତର୍ଷଭ ! ଏହିପରି ଅନ୍ୟାନ୍ୟ ଜୀବମାନେ ନାନାବିଧ ପ୍ରହରଣ ଓ ଉଦ୍ୟମଦ୍ୱାରା ଶୀଘ୍ର ପାବକକୁ ଶମିତ କଲେ । ୮୨ । ଖାଣ୍ଡବ ବନରେ ହବ୍ୟବାହନ ବାରମ୍ବାର ହୋଇ ସାତବାର ଏହିପରି ପ୍ରଜ୍ୱଳିତ ହୋଇଥିଲେ; କିନ୍ତୁ ଉକ୍ତରୂପେ ପ୍ରଶମିତ ହେବାରୁ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ୮୩ ।

---

## ଅଧ୍ୟାୟ—୨୨୪

ବୈଶମ୍ପାୟନ ବୋଇଲେ—ହବ୍ୟବାହନ ଏହିପ୍ରକାରେ ନୈରାଶ୍ୟ ପ୍ରାପ୍ତ ହେବାରୁ ସର୍ବଦା ଗ୍ଲାନି ସମନ୍ୱିତ ହେଲେ ଓ କ୍ରୁଦ୍ଧ ହୋଇ ପିତାମହଙ୍କ ସମୀପକୁ ଗମନ କରି ସମୁଦାୟ ବୃତ୍ତାନ୍ତ ନିବେଦନ କଲେ । ଭଗବାନ୍ ବ୍ରହ୍ମା ମୁହୂର୍ତ୍ତେ ଚିନ୍ତା କରି ଅଗ୍ନିଙ୍କୁ ଉତ୍ତର ଦେଲେ । ୨ । ହେ ଅନଘ । ତୁମ୍ଭେ ଯେପରି ଦହନ କରିବ, ଆମ୍ଭେ ତାହାର ଉପାୟ କହୁଅଛୁଁ; ତୁମ୍ଭେ କିଞ୍ଚିତ୍ କାଳ ଅପେକ୍ଷା କର, ତତ୍ପରେ ଦହିନ

କରିବ । ୩ । ନର ଓ ନାରାୟଣ ଦୁହେଁ ତୁମ୍ଭର ସହାୟ ହେବେ; ହେ ହବ୍ୟବାହନ ! ତେବେ ଯାଇ ତୁମ୍ଭେ ଖାଣ୍ଡବ ବନକୁ ଦଗ୍ଧ କରିବାକୁ ସମର୍ଥ ହେବ । ୪ । ବହ୍ନି ବ୍ରହ୍ମାଙ୍କୁ 'ହେଉ' ବୋଲି ଉତ୍ତର ଦେଇ ପ୍ରସ୍ଥାନ କଲେ । ଉପୃରେ ନରନାରାୟଣ ଋଷିଦ୍ଵୟ ସମ୍ଭୂତ ହୋଇଥିବାର ବିଦିତ ହୋଇ ସ୍ୱୟଂଭୂଙ୍କର ବହୁକାଳରୁ ଉକ୍ତବାକ୍ୟକୁ ଶ୍ରବଣ କରି ପୁନର୍ବାର ପିତାମହଙ୍କ ସମୀପକୁ ଗମନ କଲେ । ୬ ।

ବ୍ରହ୍ମା ତାହାଙ୍କୁ ଦେଖି ବୋଇଲେ, ହେ ଅନଳ ! ଶଚୀପତିଙ୍କ ସମକ୍ଷରେ ତାହାଙ୍କର ପରିରକ୍ଷିତ ଖାଣ୍ଡବଦାବକୁ ଯେପରି ତୁମ୍ଭେ ଦଗ୍ଧ କରିବ, ତାହା କହୁଅଛୁଁ ଶ୍ରବଣ କର; ହେ ବିଭାବସୋ ! ନରନାରାୟଣ ନାମରେ ଯେଉଁ ସନାତନ ଦେବଦ୍ଵୟ ଦିବୌକସ ମାନଙ୍କ କାର୍ଯ୍ୟସିଦ୍ଧି ନିମିତ୍ତ ମନୁଷ୍ୟ ଲୋକରେ ଅବତୀର୍ଣ୍ଣ ହୋଇଅଛନ୍ତି, ଲୋକରେ ତାହାଙ୍କୁ ଅର୍ଜୁନ ଓ ବାସୁଦେବ ବୋଲି ଜାଣନ୍ତି; ସେହି ଦୁହେଁ ଖାଣ୍ଡବ ବନ ସମୀପରେ ବର୍ତ୍ତମାନ ଅବସ୍ଥିତ ହୋଇଅଛନ୍ତି । ତୁମ୍ଭେ ଖାଣ୍ଡବ ଦାହାର୍ଥ ତାହାଙ୍କ ଠାରୁ ସାହାଯ୍ୟ ପ୍ରାର୍ଥନା କର; ତାହାହେଲେ ତ୍ରିଦଶମାନେ ରକ୍ଷା କଲେ ସୁଦ୍ଧା ତୁମ୍ଭେ ଦଗ୍ଧ କରିବାକୁ ସମର୍ଥ ହେବ । ୧୦ । ସେ ଦୁହେଁ ସମସ୍ତ ଜୀବଗଣଙ୍କୁ ଯତ୍ନ ପୂର୍ବକ ବାରଣ କରିବେ, ଦେବରାଜଙ୍କୁ ମଧ୍ୟ ବାରଣ କରିବେ, ଏଥିରେ ଆମ୍ଭର ସଂଶୟ ନାହିଁ । ୧୧ ।

ଏହି ବଚନ ଶ୍ରବଣ କରି ହବ୍ୟବାହନ ତ୍ଵରାନ୍ଵିତ ହୋଇ କୃଷ୍ଣ ଓ ପାର୍ଥଙ୍କ ନିକଟକୁ ଯାଇ ଆପଣାର ପ୍ରୟୋଜନ ଜଣାଇଲେ । ୧୨ । ହେ ନୃପୋତ୍ତମ ! ସେ ଯାହା କହିଲେ, ତାହା ଏଥିପୂର୍ବେ ଆମ୍ଭେ ଆପଣଙ୍କୁ ଜଣାଇଥିଲୁଁ । ହେ ନୃପଶାର୍ଦ୍ଦୂଳ ! ଶତକ୍ରତୁଙ୍କର ଅନଭିମତରେ ଖାଣ୍ଡବଦହନ କରିବାଭିଳାଷୀ ହବ୍ୟବାହନଙ୍କୁ ଅର୍ଜୁନ ତତ୍କାଳୋଚିତ ବଚନରେ ପ୍ରତ୍ୟୁତ୍ତର ଦେଲେ । ୧୪ ।

ଅର୍ଜୁନ ବୋଇଲେ—ହେ ଭଗବନ୍ ! ଆମ୍ଭର ବହୁସଂଖ୍ୟକ ଦିବ୍ୟ ଅସ୍ତ୍ରମାନ ଅଛି, ଯଦ୍ଦ୍ୱାରା ଆମ୍ଭେ ଅନେକ ଇନ୍ଦ୍ରଙ୍କ ସହିତ ଯୁଦ୍ଧ କରିବାକୁ ସମର୍ଥ ହୋଇପାରୁଁ; କିନ୍ତୁ ସମରବେଳେ ସର୍ବତୋଭାବେ ଆମ୍ଭର ବେଗ ସହିବାକୁ ସକ୍ଷମ ଓ ଆମ୍ଭର ବାହୁବୀର୍ଯ୍ୟର ଅନୁରୂପ ଶରାସନ ନାହିଁ; ପରନ୍ତୁ

ଅମ୍ଭଙ୍କୁ ଶୀଘ୍ର ଶୀଘ୍ର ଶର ନିଃକ୍ଷେପ କରିବାକୁ ହେବ, ଏଥିନିମିତ୍ତ ଅକ୍ଷୟ ଶର ଆବଶ୍ୟକ; ଅଧିକନ୍ତୁ ଅମ୍ଭର ଯେଉଁ ରଥ ଅଛି, ସେ ମଧ୍ୟ ଅଭିଲଷିତ ଶରମାନଙ୍କୁ ବହନ କରିପାରିବ ନାହିଁ । ମେଘନାଦର୍ଘୋଷକାରୀ ସୂର୍ଯ୍ୟସଦୃଶ ତେଜସ୍ୱୀ ରଥ, ଅଟେ ବାୟୁସମ ବେଗଗାମୀ ଓ ପାଣ୍ଡୁରବର୍ଣ୍ଣ ଦିବ୍ୟ ଅଶ୍ୱମାନେ ଅମ୍ଭର ଆବଶ୍ୟକ ଅଛନ୍ତି । ୧୮ ।

ଅଧିକନ୍ତୁ ଏହି ମାଧବଙ୍କ ଭୁଜବୀର୍ଯ୍ୟ ସଦୃଶ କୌଣସି ଆୟୁଧ ତାହାଙ୍କଠାରେ ନାହିଁ; ଯଦ୍ଦ୍ୱାରା ସେ ରଣରେ ନାଗ ଓ ପିଶାଚ ମାନଙ୍କୁ ବଧ କରିପାରିବେ । ୧୯ । ଅତଏବ ହେ ଭଗବନ୍ ! କର୍ମ୍ମସିଦ୍ଧି ବିଷୟରେ ଆପଣ ଏପରି ଉପାୟ କରନ୍ତୁ, ଯଦ୍ଦ୍ୱାରା ଏହି ମହାବନରେ ଅମ୍ଭେମାନେ ବର୍ତ୍ତମାନ ଇନ୍ଦ୍ରଙ୍କୁ ନିବାରଣ କରିବାକୁ ସମର୍ଥ ହେବୁଁ । ୨୦ । ହେ ପାବକ ! ଯାହା ପୌରୁଷ ଦ୍ୱାରା ସିଦ୍ଧ ହେବାର ତାହା ଅମ୍ଭେ ନିବାରଣ କରିବୁଁ, କିନ୍ତୁ ଆୟୁଧ ପ୍ରଭୃତି ଆପଣଙ୍କୁ ଦେବାକୁ ହେବ । ୨୧ ।

---

## ଅଧ୍ୟାୟ—୨୨୪

ବୈଶମ୍ପାୟନ ବୋଇଲେ—ଭଗବାନ୍ ଧୂମକେତୁ ହୁତାଶନ ଅର୍ଜ୍ଜୁନଙ୍କର ବାକ୍ୟ ଶ୍ରବଣ କରି ଉଦକ ନିବାସୀ ଲୋକପାଳ ଜଳେଶ୍ୱର ଅଦିତି-ନନ୍ଦନ ବରୁଣଙ୍କୁ ଚିନ୍ତା କଲେ । ଅଗ୍ନି ଚିନ୍ତା କରୁଥିବାର ଜାଣିପାରି ବରୁଣଦେବ ଦର୍ଶନ ଦେଲେ । ୨ । ଚତୁର୍ଥ ଲୋକପାଳ ସନାତନ ଦେବ ଦେବ ଜଳପତିଙ୍କୁ ଧୂମକେତୁ ଆଦର ପୂର୍ବକ ଗ୍ରହଣ କରି ବୋଇଲେ, ସୋମରାଜା ତୁମ୍ଭଙ୍କୁ ଯେଉଁ ଧନୁ ଓ ତୂଣୀର ଦ୍ୱୟ ପ୍ରଦାନ କରିଥିଲେ, ସେ ଦୁହିଁଙ୍କୁ ଓ କପିଧ୍ୱଜ ରଥକୁ ଶୀଘ୍ର ଅମ୍ଭଙ୍କୁ ପ୍ରଦାନ କର । ୪ ।

ଅର୍ଜ୍ଜୁନ ସେହି ଗାଣ୍ଡୀବ ଧନୁ ଦ୍ୱାରା ଓ ବାସୁଦେବ ଚକ୍ରଦ୍ୱାରା ସୁମହତ୍ କାର୍ଯ୍ୟ ସମ୍ପାଦନ କରିବେ, ଅତଏବ ଅମ୍ଭଙ୍କୁ ସେ ସବୁ ଅଦ୍ୟ ପ୍ରଦାନ କର । ୫ । "ଦେଉଅଛୁଁ" ବୋଲି ବରୁଣ ଅଗ୍ନିଙ୍କୁ ପ୍ରତ୍ୟୁତ୍ତର ଦେଲେ । ତଦନନ୍ତର ଯେଉଁ ଧନୁ ମହାବୀର୍ଯ୍ୟସମ୍ପନ୍ନ, ଅଦ୍ଭୁତ, ଯଶ ଓ କୀର୍ତ୍ତି ବିବର୍ଦ୍ଧନ, ସର୍ବ ଶସ୍ତ୍ରଦ୍ୱାରା ଅନାଧୃଷ୍ୟ, ସର୍ବଶସ୍ତ୍ର ପ୍ରମଥନକାରୀ,

ସର୍ବାୟୁଧ ଅପେକ୍ଷା ଅତି ପ୍ରମାଣଶାଳୀ, ପରସୈନ୍ୟ-ପ୍ରଧର୍ଷଣକାରୀ ଏକାକୀ ଶତସହସ୍ର ଧନୁର ସମାନ, ରାଷ୍ଟ୍ରବର୍ଦ୍ଧନକାରୀ, ଚିତ୍ର ଓ ବିବିଧ ବର୍ଣ୍ଣରେ ସୁଶୋଭିତ, ଅତି ସୁନ୍ଦର ଓ କ୍ଷତରହିତ, ଚିରକାଳରୁ ଦେବ ଓ ଦାନବ-ମାନଙ୍କ ଦ୍ୱାରା ସମ୍ମାନିତ, ସେହି ଧନ-ରତ୍ନକୁ ଓ ଅକ୍ଷୟ ମହାତୂଣୀର ଦ୍ୱୟକୁ ପ୍ରଦାନ କଲେ । ୯ ।

ପରନ୍ତୁ ଯେଉଁ ରଥ ମନ ଓ ପବନ ତୁଲ୍ୟ ବେଗଗାମୀ, ରଜତପ୍ରଭ, ପାଣ୍ଡୁରବର୍ଣ୍ଣ ମେଘ ସଦୃଶ, ଓ ଗନ୍ଧର୍ବଦେଶ ଜାତ ଅଶ୍ୱମାନଙ୍କ ଦ୍ୱାରା ଆକୃଷ୍ୟମାଣ, ଯେଉଁ ରଥ ସର୍ବୋପକରଣ ସଜ୍ଜିତ ଦେବ ଦାନବଙ୍କ-ଦ୍ୱାରା ଅଜେୟ, ତେଜୋବିଶିଷ୍ଟ, ମହାନିର୍ଘୋଷକାରୀ, ସର୍ବଭୂତ ମନୋରମ ଓ ଯେଉଁ ରଥକୁ ଭୁବନ ପ୍ରଭୁ ପ୍ରଜାପତି ବିଶ୍ୱକର୍ମା ସୁମହତ୍ ତପସ୍ୟାକରି ନିର୍ମାଣ କରିଥିଲେ; ଯେଉଁ ରଥର ରୂପ ରବିଙ୍କ ସଦୃଶ, ଯେଉଁ ରଥରେ ପ୍ରଭୁ ସୋମ ଆରୋହଣ କରି ଦାନବମାନଙ୍କୁ ଜୟ କରିଥିଲେ; ଯେଉଁ ରଥ ନୂତନ ମେଘ ସଂକାଶ ଓ ଯାହାର କାନ୍ତି ପ୍ରଦୀପ୍ତ ଜ୍ୱଳନ ପ୍ରାୟ; ଯାହାର ଶିରୋଭାଗରେ ଇନ୍ଦ୍ରଧନୁସମ ବିରାଜମାନ, ମନୋହର, ପରମୋତ୍କୃଷ୍ଟ, ସୁବର୍ଣ୍ଣମୟ ଧ୍ୱଜ ଯଷ୍ଟି ଉପରେ ସିଂହ ଓ ଶାର୍ଦ୍ଦୂଳ ସମ ପରାକ୍ରମଶାଳୀ ବାନର ସର୍ବଲୋକକୁ ଦହନ କଲା ପ୍ରାୟ ହୋଇ ଶୋଭିତ ହେଉଅଛି, ଯେଉଁ ରଥର ଧ୍ୱଜ ପତାକାରେ ଆବିର୍ଭୂତ ବିବିଧ ପ୍ରାଣୀମାନଙ୍କର ଗମ୍ଭୀର ନିନାଦରେ ଶତ୍ରୁ ସେନାମାନେ ଚେତନା ରହିତ ହୁଅନ୍ତି—ବରୁଣଦେବ ସେହି ରଥକୁ ମଧ୍ୟ ପ୍ରଦାନ କଲେ । ୧୬ । ଖଡ୍ଗ, କବଚ ଓ ଗୋଧାଙ୍ଗୁଳୀତ୍ର ଧାରଣ କରି ଅର୍ଜ୍ଜୁନ ସନ୍ନଦ୍ଧ ହୋଇ, ନାନା ପତାକା ଶୋଭିତ, ଅନୁପମ ଉତ୍କୃଷ୍ଟ ସେହି ରଥକୁ ପ୍ରଦକ୍ଷିଣ କରି ଦେବତାମାନଙ୍କୁ ପ୍ରଣାମ ପୂର୍ବକ ସୁକୃତୀ ବ୍ୟକ୍ତି ବିମାନାରୋହଣ କଲା-ପ୍ରାୟ ତହିଁରେ ଆରୋହଣ କଲେ ଓ ବ୍ରହ୍ମାଙ୍କ ନିର୍ମିତ ଗାଣ୍ଡୀବ ନାମକ ଦିବ୍ୟ ଓ ପରମୋତ୍କୃଷ୍ଟ ସେହି ଶରାସନକୁ ଅହ୍ଲାଦ ପୂର୍ବକ ଗ୍ରହଣ କଲେ । ତଦନନ୍ତର ବୀର୍ଯ୍ୟବାନ୍ ଅର୍ଜ୍ଜୁନ ହୁତାଶନଙ୍କୁ ନମସ୍କାର କରି ବଳପ୍ରକାଶ ପୂର୍ବକ ସେହି ଗାଣ୍ଡୀବକୁ ଗୁଣଯୁକ୍ତ କଲେ । ଜ୍ୟାଯୁକ୍ତ କଲାବେଳେ ଯେଉଁ ଯେଉଁ ବ୍ୟକ୍ତିଙ୍କ କର୍ଣ୍ଣରେ ସେହି ଶବ୍ଦ ପ୍ରବେଶ କଲା, ସେମାନଙ୍କ ହୃଦୟ କମ୍ପିତ ଓ ବ୍ୟଥିତ ହେଲା । ରଥ ଧନୁ ଓ ଅକ୍ଷୟତୂଣୀର ଦ୍ୱୟ ଲାଭ କରି କୁନ୍ତୀସୁତ ପ୍ରହୃଷ୍ଟ ହେଲେ ଓ ହୁତାଶନଙ୍କର ସହାୟ କର୍ମ୍ମରେ ସମର୍ଥ

ହେଲେ । ତତ୍ପରେ ପାବକ, ବଜ୍ରନାଭ ଚକ୍ର ନେଇ କୃଷ୍ଣଙ୍କୁ ପ୍ରଦାନ କଲେ; ନିଜର ପ୍ରିୟ ଆଗ୍ନେୟାସ୍ତ୍ରକୁ ମଧ୍ୟ ପ୍ରଦାନ କଲେ । ତହୁଁ କୃଷ୍ଣ ଯୁଦ୍ଧ କରିବା ନିମିତ୍ତ ସମ୍ପୂର୍ଣ୍ଣ ସଜ୍ଜୀଭୂତ ହେଲେ । ତଦନନ୍ତର ପାବକ ବୋଇଲେ—ହେ ମଧୁସୂଦନ ! ତୁମ୍ଭେ ରଣରେ ଏହି ଅସ୍ତ୍ରଦ୍ୱାରା ମନୁଷ୍ୟ ଭିନ୍ନ ଅପର ସମସ୍ତଙ୍କୁ ଜୟ କରିବ, ଏଥିରେ ସଂଶୟ ନାହିଁ । ରଣ ସ୍ଥଳରେ ଏହି ଅସ୍ତ୍ର ଘେନିଲେ ତୁମ୍ଭେ ଦେବ, ଦାନବ, ରାକ୍ଷସ, ପିଶାଚ, ନାଗ ଓ ମନୁଷ୍ୟମାନଙ୍କ ଅପେକ୍ଷା ଅଧିକ ବଳବାନ୍ ହେବ । ୨୬ ।

ହେ ମାଧବ ! ଏହି ଅସ୍ତ୍ର ସଂଗ୍ରାମ ମଧ୍ୟରେ ଶତ୍ରୁମଣ୍ଡଳୀରେ ପୁନଃ ପୁନଃ କ୍ଷିପ୍ତ ହେଲେ ମଧ୍ୟ ଅପ୍ରତିହତ ହୋଇ ଶତ୍ରୁମାନଙ୍କୁ ବିନାଶ କରି ପୁନର୍ବାର ତୁମ୍ଭ ହସ୍ତକୁ ଆସିବ । ୨୭ । ପୁନଶ୍ଚ ପ୍ରଭୁ ବରୁଣ ତାହାଙ୍କୁ ଦୈତ୍ୟକୁଳ-ନାଶିନୀ ଅଶନି ନିଃସ୍ୱନା କୌମୋଦକୀ ନାମ୍ନୀ ଗଦାକୁ ପ୍ରଦାନ କଲେ । ୨୮ । ତତ୍ପରେ କୃତାସ୍ତ୍ର ଅର୍ଜ୍ଜୁନ ଓ କୃଷ୍ଣ ରଥଧ୍ୱଜ ଓ ଶସ୍ତ୍ରାସ୍ତ୍ର ସମ୍ପନ୍ନ ହୋଇ ପ୍ରହୃଷ୍ଟ ଚିତ୍ତରେ ପାବକଙ୍କୁ କହିଲେ, ହେ ଭଗବନ୍ ! ଏବେ ଆମ୍ଭେ ସମସ୍ତ ସୁରାସୁରଙ୍କ ସହିତ ସଂଗ୍ରାମ କରିବାକୁ ସମର୍ଥ ହେଲୁଁ; ପନ୍ନଗ ରକ୍ଷା ନିମିତ୍ତ ଯୁଦ୍ଧକାରୀ ଏକାକୀ ବଜ୍ରପାଣି ଆମ୍ଭର କି କରି ପାରନ୍ତି ? । ୩୦ ।

ଅର୍ଜ୍ଜୁନ ବୋଇଲେ—ହେ ପାବକ ! ତ୍ରିଲୋକୀ ମଧ୍ୟରେ ଏପରି କୌଣସି ପଦାର୍ଥ ବା ବ୍ୟକ୍ତି ନାହିଁ ଯାହାକୁ ଏହି ଚକ୍ରଦ୍ୱାରା ବୀର୍ଯ୍ୟବାନ୍ ଚକ୍ରପାଣି ଜନାର୍ଦ୍ଦନ, ଯୁଦ୍ଧରେ ବିଚରଣ କରି କରି ସଂହାର କରି ନ ପାରିବେ । ୩୧ । ହେ ପାବକ ! ଆମ୍ଭେ ମଧ୍ୟ ଏହି ଗାଣ୍ଡୀବ ଧନୁ ଓ ଅକ୍ଷୟତୂଣୀର ଦ୍ୱୟ ଘେନି ସମସ୍ତ ଲୋକମାନଙ୍କୁ ବିଜୟ କରିବାକୁ ଉତ୍ସାହିତ ହେଉଅଛୁଁ । ଅତଏବ ଆପଣ ଅଦ୍ୟ ଅଭିଲାଷାନୁରୂପ ଏହି ମହାବନକୁ ପରିବେଷ୍ଟନ କରି ପ୍ରଜ୍ୱଳିତ ହେଉନ୍ତୁ, ଆମ୍ଭେମାନେ ଆପଣଙ୍କର ସାହାଯ୍ୟ କର୍ମ୍ମରେ ସମର୍ଥ ହୋଇଅଛୁଁ । ୩୩ ।

ବୈଶମ୍ପାୟନ ବୋଇଲେ—ଭଗବାନ୍ ହୁତାଶନ, କୃଷ୍ଣ ଓ ଅର୍ଜ୍ଜୁନଙ୍କର ତାଦୃଶ ବଚନ ଶ୍ରବଣ କରି ତୈଜସ୍ୱରୂପକୁ ଧାରଣ ପୂର୍ବକ ସେହି ଅରଣ୍ୟାନୀକୁ ଦଗ୍ଧ କରିବାକୁ ଆରମ୍ଭ କଲେ । ୩୪ । ଜ୍ୱଳନ ସପ୍ତଶିଖା ଧାରଣ ପୂର୍ବକ ଯୁଗାନ୍ତାନଳ ସଦୃଶ ପ୍ରଜ୍ୱଳିତ ହୋଇ ବିସହି

ଖାଣ୍ଡବ ମହାଦାବକୁ ଦହନ କଲେ । ୩୫ । ହେ ଭରତର୍ଷଭ ! ମେଘ ସ୍ତନିତ ନିର୍ଘୋଷ ପ୍ରାୟ ଶବ୍ଦ କରି ସମୁଦାୟ ବନରେ ବ୍ୟାପ୍ତ ହୋଇ ସର୍ବପ୍ରାଣିଙ୍କୁ ପ୍ରକମ୍ପିତ କଲେ । ହେ ଭାରତ ! ଯେତେବେଳେ ଅଗ୍ନି ସେହି ବନକୁ ଦହନ କରୁଥାନ୍ତି, ସେତେବେଳେ ଅଂଶୁମାଳୀଙ୍କ କିରଣ ଜାଲରେ ବିକୀର୍ଣ୍ଣ ନଗେନ୍ଦ୍ର ମେରୁଙ୍କର ରୂପସଦୃଶ ତାହାଙ୍କର ରୂପ ଦୃଶ୍ୟ ହେଉଥାଏ । ୩୬ ।

## ଅଧ୍ୟାୟ—୨୨୬

ବୈଶମ୍ପାୟନ ବୋଇଲେ—ତଦନନ୍ତର ରଥିଶ୍ରେଷ୍ଠ କୃଷ୍ଣାର୍ଜ୍ଜୁନ ଦୁଇଜଣ ରଥାରୋହଣ ପୂର୍ବକ ସେହି ଅରଣ୍ୟର ଉଭୟ ପାର୍ଶ୍ୱରେ ଅବସ୍ଥିତ ହୋଇ ସର୍ବଦିଗରୁ ପ୍ରାଣିମାନଙ୍କର ସଂହାର କଲେ । ୧ । ଖାଣ୍ଡବ-ବାସୀ ଜୀବମାନେ ପଳାୟନ କରି ଯେଉଁ ଯେଉଁ ଠାରେ ଦୃଶ୍ୟ ହେଲେ, ସେହି ସେହି ସ୍ଥାନକୁ ଏହି ବୀରଦ୍ୱୟ ପ୍ରଧାବିତ ହେଲେ । ୨ । ଅଶ୍ୱଯୁକ୍ତ ରଥଦ୍ୱୟ ଏପରି ବେଗରେ ସଞ୍ଚାଳିତ ହେଲେ ଯେ ସେ ରଥଦ୍ୱୟ ମଧ୍ୟରେ ଛିଦ୍ର ପ୍ରତୀତ ହେଲା ନାହିଁ; ଦୁଇରଥ ଏକ ସ୍ଥାନରେ ଆବଦ୍ଧ ହେଲା ପ୍ରାୟ ଦୃଶ୍ୟ ହେଲା । ୩ ।

ଖାଣ୍ଡବ ଦାବଦହନ ହୁଅନ୍ତେ ପ୍ରାଣିମାନେ ଶତସହସ୍ର ହୋଇ ଭୟଙ୍କର ନାଦ କରି ସବେଗ ଉତ୍ପତିତ ହେଲେ । ୪ । ତତ୍କାଳରେ ବହୁସଂଖ୍ୟକ ପ୍ରାଣିମାନେ ଅର୍ଦ୍ଧ ଦଗ୍ଧ ହେଲେ, ଅପର କେତେକ ଅଗ୍ନିତାପରେ ନିଷ୍ପିଷ୍ଟ ହେଲେ, କେହି ସ୍ଫୁଟିତାକ୍ଷ ଓ ବିଶୀର୍ଣ୍ଣ ହୋଇ ପଳାୟନ କଲେ; ଅନ୍ୟମାନେ ସୁତଙ୍କୁ ଆଲିଙ୍ଗନ କରି ଅଥବା ପିତା ଓ ଭ୍ରାତାମାନଙ୍କୁ ଆଲିଙ୍ଗନ କରି ସ୍ନେହବଶରୁ ସେମାନଙ୍କୁ ତ୍ୟାଗ କରି ନ ପାରି ବାସସ୍ଥାନରେ ନିଧନ ପ୍ରାପ୍ତ ହେଲେ । ୫ । ଅନ୍ୟମାନେ ବଶନକୁ ଦଶନ ଦ୍ୱାରା ଦଂଶନ କରି ବହୁବାର ଊର୍ଦ୍ଧ୍ୱକୁ ପତିତ ହେଲେ ଓ ଅତୀବ ଘୂର୍ଣ୍ଣିତ ହୋଇ ପୁନର୍ବାର ଅଗ୍ନି ମଧ୍ୟରେ ନିପତିତ ହେଲେ । ୬ ।

ପୁନରପି ଅନ୍ୟାନ୍ୟ ଶରୀରମାନେ ଦଗ୍ଧପକ୍ଷ ଦଗ୍ଧଚରଣ ହୋଇ ଅଥବା ସ୍ଫୁଟିତାକ୍ଷ ହୋଇ ମହୀତଳରେ ବିଚେଷ୍ଟ ହୋଇ ପଡ଼ି ବିନଷ୍ଟ ହେଲେ । ୮ । ତତସ୍ଥ ଜଳାଶୟମାନେ ଅଗ୍ନିତାପରେ ସନ୍ତପ୍ତ ଓ କ୍ୱଥିତ ହେବାରୁ କୂର୍ମ୍ମ ଓ ମତ୍ସ୍ୟମାନେ ଗତଜୀବନ ହୋଇ ଭାସମାନ ହେଲେ । ୯ । ଅପର ପ୍ରାଣିମାନେ ପ୍ରଜ୍ୱଳିତ ହେବାରୁ ପ୍ରାଣବିନାଶ ବେଳେ ଦେହଧାରୀ

ଅଗ୍ନି ପ୍ରାୟ ପ୍ରତୀତ ହେଲେ । ୧୦ । କେହି କେହି ବିହଗମାନେ ଉପ୍ରିତ ହେବାବେଳେ ଅର୍ଜ୍ଜୁନଙ୍କ ଦ୍ୱାରା ଛିନ୍ନ ଓ ଖଣ୍ଡ ଖଣ୍ଡ ହୋଇ ଅଗ୍ନିରେ ପାତିତ ହେଲେ । ୧୧ । ସେହି ସମସ୍ତ ପକ୍ଷୀମାନେ ଶର ନିକରରେ କ୍ଷତ-ସର୍ବାଙ୍ଗ ହୋଇ ଘୋରତର ଶବ୍ଦଦ୍ୱାରା ଗଗନ ପବନ ବିଦୀର୍ଣ୍ଣ କରି ବେଗରେ କିୟଦ୍ଦୂର ଊର୍ଦ୍ଧ୍ୱକୁ ଗମନ କରି ପୁନର୍ବାର ସେହି ଖାଣ୍ଡବ ମଧ୍ୟରେ ନିପତିତ ହେଲେ । ୧୨ ।

ପୁନର୍ବାର ସମୁଦ୍ର ମନ୍ଥନ ହେଲା ପ୍ରାୟ ଶରସମୂହାହତ ବନବାସି ମାନଙ୍କର ଘୋର ବିରବ ଶ୍ରୁତିଗୋଚର ହେଲା । ୧୩ । ପ୍ରଦୀପ୍ତ ବହ୍ନିର ଶିଖାରାଶି ଆକାଶକୁ ଉତ୍ଥିତ ହୋଇ ଦେବତାମାନଙ୍କର ମଧ୍ୟ ସୁମହାନ୍ ଉଦ୍‌ବେଗକୁ ଜାତ କଲା । ୧୪ । ଦିବବାସୀ ଦେବ ଓ ମହାତ୍ମା ଋଷିମାନେ ସେହି ଅଗ୍ନି ଶିଖାରେ ଉତପ୍ତ ହୋଇବା ହେତୁ ସମ୍ମିଳିତ ହୋଇ ଦେବଦେଶ ଅସୁରାର୍ଦ୍ଦନ ସହସ୍ରାକ୍ଷ ଶତକ୍ରତୁଙ୍କର ନିକଟକୁ ଗମନ କଲେ । ୧୫ ।

ଦେବତାମାନେ ବୋଇଲେ—ହେ ଅମରେଶ୍ୱର ! ଏହି କି ମାନବ ମାନେ ଚିତ୍ରଭାନୁଙ୍କ ଦ୍ୱାରା ଦଗ୍ଧ ହେଉଅଛନ୍ତି ? ଆମ୍ଭମାନଙ୍କର ଓ ସମସ୍ତ ଲୋକମାନଙ୍କର କି ପ୍ରଳୟ ଉପସ୍ଥିତ ହେଲା ? । ୧୬ ।

ବୈଶମ୍ପାୟନ ବୋଇଲେ—ହରିବାହନ ବୃତ୍ରହା ସେମାନଙ୍କ ଠାରୁ ତଦ୍ରୂପ ବାକ୍ୟ ଶ୍ରବଣ କରି ଓ ସ୍ୱୟଂ ବିଲୋକନ କରି ଖାଣ୍ଡବ ବନକୁ ରକ୍ଷା କରିବା ନିମିତ୍ତ ପ୍ରସ୍ଥାନ କଲେ । ନାନାପ୍ରକାର ରଥ ସମୂହରେ ସେ ଆକାଶମଣ୍ଡଳକୁ ବ୍ୟାପ୍ତ କରି ଜଳଧାରାକୁ ବର୍ଷଣ କରିବାକୁ ଆରମ୍ଭ କଲେ । ୧୮ । ଶତ ସହସ୍ର ଜଳଦମାନେ ଦେବରାଜାଙ୍କ ଆଜ୍ଞାକ୍ରମେ ଖାଣ୍ଡବ ବନ ଉପରେ ମୂଷଳଧାରା ପ୍ରମାଣେ ବର୍ଷଣ କଲେ । ୧୯ ।

କିନ୍ତୁ ସେହି ସ୍ଥୂଳଧାରା ସବୁ ଅଗ୍ନିତେଜଦ୍ୱାରା ଆକାଶରେ ଶୁଷ୍କ ହୋଇଗଲେ; ଅଗ୍ନି ଉପରେ କେହି ପତିତ ହୋଇ ପାରିଲେ ନାହିଁ । ୨୦ । ତତ୍ପରେ ନମୁଚିସୂଦନ ଇନ୍ଦ୍ର କ୍ରୁଦ୍ଧ ହୋଇ ପୁନର୍ବାର ମହାମେଘ ଦ୍ୱାରା ଅଗ୍ନି ଉପରେ ବହୁତର ଜଳରାଶି ବିସର୍ଜ୍ଜନ କଲେ । ୨୧ । ତହୁଁ ସେ ମହାରଣ୍ୟ ଅଗ୍ନି ଶିଖା ଦ୍ୱାରା ସମ୍ବଦ୍ଧ ହୋଇ ଧୂମ ଓ ସୌଦାମିନୀ ମାଳାରେ ସମାକୁଳିତ ହେଲା, ଅଥଚ ଉପରିଷ୍ଟିତ ନୀରଦ ବୃନ୍ଦରେ ପରିବ୍ୟାପ୍ତ ହୋଇ ଭୀଷଣାକୃତି ଧାରଣ କଲା ।

———

## ଅଧ୍ୟାୟ—୨୨୭

ବୈଶମ୍ପାୟନ ବୋଇଲେ—ଇନ୍ଦ୍ରଙ୍କର ବାରିବର୍ଷାକୁ ପାଣ୍ଡୁପୁତ୍ର ଅର୍ଜ୍ଜୁନ ଉତ୍ତମାସ୍ତ୍ର ପ୍ରଦର୍ଶନ କରି ପ୍ରତିବାରିତ କଲେ । ନୀହାର ଦ୍ୱାରା ଯେପରି ଚନ୍ଦ୍ରମା ପ୍ରଚ୍ଛାଦିତ ହୁଅନ୍ତି, ତଦ୍‌ବତ୍ ଅପ୍ରମେୟାତ୍ମା ପାଣ୍ଡବ ବହୁସଂଖ୍ୟକ ଶରଜାଳରେ ଖାଣ୍ଡବ ବନକୁ ଆଚ୍ଛାଦିତ କଲେ । ୨ । ସବ୍ୟସାଚୀ ଧନଞ୍ଜୟଙ୍କ ନିକ୍ଷିପ୍ତ ଶରନିକରରେ ତତ୍ରତ୍ୟ ନଭୋମଣ୍ଡଳ ଏପରି ଆଚ୍ଛାଦିତ ହେଲା ଯେ କୌଣସି ପ୍ରାଣୀ ସେଠାରୁ ଆଉ ଅପସରଣ କରି ପାରିଲେ ନାହିଁ । ୩ ।

ପରନ୍ତୁ ମହାବଳ ନାଗରାଜ ତକ୍ଷକ ତତ୍କାଳରେ ସେ ସ୍ଥାନରେ ଥିଲେ ନାହିଁ, ଯେତେବେଳେ ଖାଣ୍ଡବଦାହ ଆରମ୍ଭ ହେଲା, ସେହି ସମୟରେ ସେ କୁରୁକ୍ଷେତ୍ରକୁ ଗମନ କରିଥିଲେ । ୪ । କିନ୍ତୁ ତାହାଙ୍କ ପୁତ୍ର ବଳବାନ୍ ଅଶ୍ୱସେନ ସେହି ସ୍ଥାନରେ ଥିଲେ; ସେହି ତକ୍ଷକ ତନୟ ଅଗ୍ନିରୁ ମୁକ୍ତ ହେବାକୁ ଅତିଶୟ ପ୍ରଯତ୍ନ କଲେ; କିନ୍ତୁ ଅର୍ଜ୍ଜୁନଙ୍କ ବାଣରେ ନିରୁଦ୍ଧ ହେବାରୁ ବହିର୍ଗତ ହେବାକୁ ସମର୍ଥ ହେଲେ ନାହିଁ । ପଶ୍ଚାତ୍ ତାହାଙ୍କର ମାତା ଭୁଜଗାତ୍ମଜା ତାହାଙ୍କୁ ନିଗୀର୍ଣ୍ଣ କରି ମୁକ୍ତ କଲେ । ନାଗ କନ୍ୟା ତାହାଙ୍କୁ ମୁକ୍ତ କରିବା ଅଭିଳାଷରେ ପ୍ରଥମେ ତାହାଙ୍କର ମସ୍ତକ ଗ୍ରାସ କରି ପଶ୍ଚାତ୍ ପୁଚ୍ଛଦେଶ ଗ୍ରାସ କରି ଆକାଶ ପଥରେ ନିଷ୍କ୍ରାନ୍ତ ହେଉଥିଲେ, ଏମନ୍ତ ସମୟରେ ଅର୍ଜ୍ଜୁନ ତାହାଙ୍କୁ ଦେଖି ବିସ୍ତୃତ ଧାର-ତୀକ୍ଷ୍ଣ ଶରଦ୍ୱାରା ସେହି ନାଗିନୀଙ୍କର ଶିରଶ୍ଛେଦନ କଲେ । ଶଚୀପତି ଏହା ଦେଖି ଅଶ୍ୱସେନଙ୍କ ବିମୋଚନ ନିମିତ୍ତ ତତ୍‌କ୍ଷଣାତ୍ ବାୟୁବର୍ଷଣ କରି ଅର୍ଜ୍ଜୁନଙ୍କୁ ବିମୋହିତ କଲେ; ଏହି ଅବସରରେ ଅଶ୍ୱସେନ ମୁକ୍ତ ହୋଇ ପଳାୟନ କଲେ । ୯ ।

ତହିଁରେ ପାଣ୍ଡବ ସେହି ମାୟା ଦେଖି ଓ ନାଗ ଦ୍ୱାରା ବଞ୍ଚିତ ହେବାର ଜାଣି ଆକାଶଗତ ପ୍ରାଣିମାନଙ୍କୁ ଦ୍ୱିଧା ଅଥବା ତ୍ରିଧା କରି ଛେଦନ କରି ବିନାଶ କଲେ । ୧୦ । ବିଭତ୍ସ ବାସୁଦେବ ଓ ହୁତାଶନ ସମସ୍ତେ ସଂକ୍ରୁଦ୍ଧ ହୋଇ ସେ ଜିହ୍ମଗାମୀକୁ ଅଭିଶାପ ଦେଲେ, "ତୁମ୍ଭେ ପ୍ରତିଷ୍ଠା ଶୂନ୍ୟ ହେବ" ତତ୍ପରେ ଜିଷ୍ଣୁ ସେହି ବଞ୍ଚନାକୁ ସ୍ମରଣ କରି କ୍ରୁଦ୍ଧ ହୋଇ ଶୀଘ୍ରଗାମୀ ଶର ନିକର ଦ୍ୱାରା ଆକାଶ ମଣ୍ଡଳକୁ ବିତତ

କରି ସହସ୍ରଲୋଚନଙ୍କ ସହିତ ଯୁଦ୍ଧ କରିବାକୁ ଆରମ୍ଭ କଲେ । ୧୨ । ଦେବରାଜ ମଧ୍ୟ ଅର୍ଜ୍ଜୁନଙ୍କୁ ଯୁଦ୍ଧରେ ସଂରବ୍ଧ ହେବାର ବିଲୋକନ କରି ସ୍ୱୀୟ ତୀକ୍ଷ୍ଣାସ୍ତ୍ର ସମୂହ ଦ୍ୱାରା ନଭୋମଣ୍ଡଳକୁ ଅଚ୍ଛାଦିତ କଲେ । ୧୩ ।

ତଦନନ୍ତର ମହାଶବ୍ଦକାରୀ ବାୟୁ ସାଗର ମାନଙ୍କୁ ବିକ୍ଷୋଭିତ କରି ଜଳଧାରାକୁଳିତ ମେଘାବଳି ମାନଙ୍କୁ ଆକାଶରେ ସଂଜାତ କଲେ । ୧୪ । ସେହି ମେଘ ସମୂହରୁ ବିଦ୍ୟୁତ୍, ବଜ୍ରପାତ ଓ ଗର୍ଜ୍ଜନ ସହିତ ଜଳଧାରା ପତିତ ହେଲା; ତାହାର ବିଘାତ କରିବା ନିମିତ୍ତ ପ୍ରତିପତ୍ତି ବିଶାରଦ ଅର୍ଜ୍ଜୁନ ବାୟବ୍ୟାସ୍ତ୍ରକୁ ଅଭିମନ୍ତ୍ରିତ କରି ମୋଚନ କଲେ; ତଦ୍ଦ୍ୱାରା ଇନ୍ଦ୍ରଙ୍କର ଅଶନି ଓ ମେଘମାନଙ୍କର ତେଜ ଓ ବୀର୍ଯ୍ୟ ସମୂଳେ ବିନାଶିତ ହେଲା । ୧୬ । ଜଳଧାରାମାନେ ଶୁଷ୍କ ହୋଇଗଲେ, ବିଦ୍ୟୁତ୍‌ମାନେ ହୀନବଳ ହୋଇ ବିଲୀନ ହେଲେ ଓ କ୍ଷଣକାଳ ମଧ୍ୟରେ ଆକାଶର ରଜ ଓ ତମସ୍ତୋମ ପ୍ରଶାନ୍ତ ହେଲା । ୧୭ । ସୁଖସ୍ପର୍ଶ ଓ ଶୀତବାୟୁ ପ୍ରାଣୀମାନଙ୍କୁ ଆନନ୍ଦଦାନ କରି ପ୍ରବାହିତ ହେଲା, ଅର୍କମଣ୍ଡଳ ପ୍ରକୃତିସ୍ଥ ଦୃଶ୍ୟ ହେଲା । ପ୍ରାଣିମାନଙ୍କର ଦେହ ବିନିଃସୃତ ବସାରାଶିରେ ସିଚ୍ୟମାନ ହୋଇ ଅର୍ଚ୍ଚିଷ୍ମାନ୍ ଅଗ୍ନି ପୁନଃ ପ୍ରଜ୍ୱଳିତ ହେଲେ ଓ ସ୍ୱକୀୟ ନାଦରେ ଜଗତ୍ ପରିପୂରିତ କଲେ । ୧୯ ।

ହେ ମହାରାଜ ! କୃଷ୍ଣ ଓ ଅର୍ଜ୍ଜୁନଙ୍କ ଦ୍ୱାରା ସେହି ବନ ରକ୍ଷିତ ହେବାର ଦେଖି ସୁପର୍ଣ୍ଣ ପ୍ରଭୃତି ପକ୍ଷିମାନେ ଅହଂକାରୀ ହୋଇ ଆକାଶରେ ଉତ୍ପତିତ ହେଲେ ଓ ଗରୁଡ଼ ପକ୍ଷିମାନେ ବଜ୍ରସମ ପକ୍ଷ, ତୁଣ୍ଡ ଓ ନଖ କୃଷ୍ଣ ପାଣ୍ଡବଙ୍କୁ ପ୍ରହାର କରିବା ମାନସରେ ଆକାଶରୁ ଅବତରଣ କଲେ; ତଦ୍ରୂପ ଉରଗ ସମୂହ ଘୋର ବିଷକୁ ଉତ୍ସର୍ଜ୍ଜନ କରି ଜ୍ୱଳିତାନନ ହୋଇ ପାଣ୍ଡବଙ୍କ ସମୀପରେ ଉପସ୍ଥିତ ହେଲେ । ୨୨ । ପାର୍ଥ ରୋଷ ସମନ୍ୱିତ ହୋଇ ଶର ନିକର ଦ୍ୱାରା ସେମାନଙ୍କୁ କର୍ତ୍ତନ କରି ଖଣ୍ଡ ଖଣ୍ଡ କଲେ । ସୁତରାଂ ସେମାନେ ଦେହ ବିନାଶ ନିମିତ୍ତ ସେହି ସୁଦୀପ୍ତ ପାବକରେ ପୁନଃ ପ୍ରବେଶ କଲେ । ୨୩ ।

ତଦନନ୍ତର ଅସୁର ଗନ୍ଧର୍ବ ଯକ୍ଷ ଓ ରାକ୍ଷସମାନେ ରଣାର୍ଥୀ ହୋଇ ଅତୁଲ ଦାନ ମୋଚନ ପୂର୍ବକ ଉତ୍ପତିତ ହେଲେ; କ୍ରୋଧଭରରେ

ସେମାନଙ୍କର ତେଜୋବୃଦ୍ଧି ହେଲା ଓ ସେମାନେ (୧) ଅୟଃକଣପ (୨)ଚକ୍ରାସ୍ମ (୩) ଭୁଷଣ୍ଡୀ ପ୍ରଭୃତି ଯନ୍ତ୍ରମାନଙ୍କୁ ଧରି ଉଦ୍ୟତ ବାହୁ ହୋଇ କୃଷ୍ଣ ଓ ପାର୍ଥଙ୍କ ବିନାଶ କରିବା ଇଚ୍ଛାରେ ସେମାନଙ୍କ ପ୍ରତି ଧାବିତ ହେଲେ । ୨୫ । ଅଯୋଗ୍ୟ ବାକ୍ୟ ପ୍ରୟୋଗ ସହିତ ଶର ବର୍ଷଣ କରିବାର ଦେଖି ସେମାନଙ୍କ ପ୍ରତି ବିଭତ୍ସୁ ନିଶିତ ଶର ନିକର ପ୍ରକ୍ଷେପଣ କଲେ ଓ ସେମାନଙ୍କର ମସ୍ତକ ଛେଦନ କଲେ । ୨୬ । ଅରିବିନାଶନ ସୁମହାତେଜା କୃଷ୍ଣ, ଚକ୍ର ଦ୍ୱାରା ଦୈତ୍ୟ ଓ ଦାନବଙ୍କର ମହତ୍ କଦନ ଉପସ୍ଥିତ କଲେ । ୨୭ । କେହି କେହି ଅପରିମିତ ତେଜସ୍ୱୀ ଶର ସମୂହରେ ପ୍ରତିବିଦ୍ଧ ହୋଇ ଓ ଚକ୍ରବେଗରେ ଗ୍ଳାନ ହୋଇ ଭଗ୍ନୋତ୍ସାହ ହେତୁରୁ ସମୁଦ୍ର ବେଳା ସଦୃଶ ସ୍ଥିର ହୋଇ ରହିଲେ । ୨୮ ।

ତଦନନ୍ତର ତ୍ରିଦଶାଧିପତି ଇନ୍ଦ୍ର ଅତିଶୟ ସଂକ୍ରୁଦ୍ଧ ହୋଇ ପାଣ୍ଡୁର ବର୍ଣ୍ଣ ଗଜରେ ଆରୋହଣ କରି କୃଷ୍ଣାର୍ଜୁନଙ୍କ ପ୍ରତି ଧାବିତ ହେଲେ । ୨୯ । ଅସୁର-ସୂଦନ ବେଗରେ ଅଶନି ଗ୍ରହଣ କରି ଓ ବଜ୍ରାସ୍ତ୍ରକୁ ସର୍ଜନ କରି ସୁରମାନଙ୍କୁ ବୋଇଲେ ଯେ ଏଥର ଏ ଦୁହେଁ ହତ ହେଲେ ବୋଲି ଜାଣ; ମହେନ୍ଦ୍ରଙ୍କୁ ନିଜ ଅସ୍ତ୍ର ଧରିବାର ଦେଖି ଅନ୍ୟାନ୍ୟ ଦେବତାମାନେ ଆପଣା ଆପଣା ଅସ୍ତ୍ରୀୟ ଧାରଣ କଲେ । ୩୦ । ହେ ରାଜନ୍ ! ଯମ, କାଳଦଣ୍ଡ ନାମକ ଅସ୍ତ୍ରକୁ ଧରିଲେ, ଧନେଶ୍ୱର ଗଦା ଧାରଣ କଲେ, ବରୁଣ ପାଶମାନଙ୍କୁ ଓ ବିଚିତ୍ର ଅଶନିକୁ ଘେନିଲେ; ସ୍କନ୍ଦ ଶକ୍ତିଧାରଣ କରି ଅଚଳ ମେରୁ ଶିଖର ପ୍ରାୟ ଅବସ୍ଥିତ ହେଲେ । ଅଶ୍ୱିନୀ କୁମାର ଦୁହେଁ ଦୀପ୍ୟମାନ ଔଷଧି ଧରି ଦଣ୍ଡାୟମାନ ହେଲେ । ୩୩ ।

ଧାତା ଧନୁର୍ଦ୍ଧାରଣ କଲେ; ଜୟ ମୁଷଳକୁ ଧରିଲେ । ମହାବଳ ବିଶ୍ୱକର୍ମା କ୍ରୁଦ୍ଧ ହୋଇ ପର୍ବତ ଧାରଣ କଲେ । ୩୪ । ଅଂଶଦେବ (୪) ଶକ୍ତିହସ୍ତ ହୋଇ ସଂଗ୍ରାମାର୍ଥ ପ୍ରସ୍ତୁତ ହେଲେ; ମୃତ୍ୟୁଦେବ ପରଶ୍ୱଧ ଗ୍ରହଣ

---

(୧) ଲୌହମୟ ଗୁଳିକା କ୍ଷେପଣ କରିବାର ଯନ୍ତ୍ର ।

(୨) ଚକ୍ରାଶ୍ମ —ଯେଉଁ ଯନ୍ତ୍ରଦ୍ୱାରା ବୃହତ୍ ପ୍ରସ୍ତରମାନ ଅତି ଦୂରକୁ ନିକ୍ଷେପ ହୁଅଇ ।

(୩) ପାଷାଣ ପ୍ରକ୍ଷେପକାରୀ ଚର୍ମରଜ୍ଜୁମୟ ଯନ୍ତ୍ର ବିଶେଷ ।

(୪) ସୂର୍ଯ୍ୟଙ୍କର ଅଂଶ ବିଶେଷ ।

କଲେ; ଅର୍ଯ୍ୟମା ଭୀଷଣ ପରିଘ ଧାରଣ କରି ବିଚରଣ କଲେ । କ୍ଷୁରଧାର ଚକ୍ରକୁ ଧରି ମିତ୍ର ସ୍ଥିତ ହେଲେ; ହେ ନରପାଳ । ଭଗ, ପୂଷା ଓ ସବିତା ଏମାନେ ଭୀଷଣ କାର୍ମୁକ ଓ ନିସ୍ତ୍ରିଂଶ ଧାରଣ କରି କ୍ରୋଧପୂର୍ବକ ଅର୍ଜୁନ ଓ କୃଷ୍ଣଙ୍କ ପ୍ରତି ଧାବିତ ହେଲେ । ସ୍ୱୀୟ ତେଜରେ ଦୀପ୍ୟମାନ ରୁଦ୍ରଗଣ, ବସୁଗଣ ଓ ମରୁଦ୍ ଗଣ, ବିଶ୍ୱଦେବଗଣ, ସାଧ୍ୟଗଣ ଓ ଅନ୍ୟାନ୍ୟ ବହୁସଂଖ୍ୟକ ଦେବତାମାନେ ବିବିଧ ଅସ୍ତ୍ରଗ୍ରହଣ ପୂର୍ବକ ପୁରୁଷୋତ୍ତମ କୃଷ୍ଣ ଓ ଅର୍ଜୁନଙ୍କୁ ବିନାଶ କରିବା ନିମିତ୍ତ ଧାବମାନ ହେଲେ । ସେହି ମହାଯୁଦ୍ଧରେ ଯୁଗାନ୍ତାନଳ ସଦୃଶ ଓ ଭୂତ ସମ୍ମୋହନ କାରୀ ଅଦ୍ଭୁତ ଦୁର୍ନିମିତ୍ତ ମାନ ପରିଦୃଶ୍ୟ ହେଲା । ଦେବତାମାନଙ୍କ ସହ ଇନ୍ଦ୍ରଙ୍କୁ ତଦ୍ରୂପ ଯୁଦ୍ଧରେ ଅବସ୍ଥିତ ହେବାର ବିଲୋକନ କରି କୃଷ୍ଣାର୍ଜୁନ ଦୁଇଜଣ ଅଭୀତ ହୋଇ ଧନୁରେ ଗୁଣାରୋପଣ କରି ଯୁଦ୍ଧାର୍ଥ ଅବସ୍ଥିତ ହେଲେ । ତତ୍ପରେ ଦେବତାମାନେ ସେହି ଯୁଦ୍ଧ ବିଶାରଦ ଦ୍ୱୟଙ୍କ ନିକଟକୁ ଆଗମନ କଲେ । ୪୧ ।

ତହୁଁ ସେ ଦୁହେଁ କ୍ରୁଦ୍ଧ ହୋଇ ବଜ୍ରୋପମ ଶର ଦ୍ୱାରା ସେମାନଙ୍କୁ ବିତାଡ଼ିତ କଲେ । ସୁରମାନେ ବହୁବାର ଭଗ୍ନସଂକଳ୍ପ ହୋଇ ଭୟହେତୁରୁ ରଣସ୍ଥଳ ପରିତ୍ୟାଗ କଲେ ଓ ପରିଶେଷରେ ଇନ୍ଦ୍ରଙ୍କର ଆଶ୍ରୟ ନେଲେ । ଅର୍ଜୁନ ଓ ମାଧବଙ୍କ ଦ୍ୱାରା ଦେବତାମାନଙ୍କୁ ନିବାରିତ ହେବାର ଦେଖି ଆକାଶସ୍ଥିତ ମୁନିମାନେ ଓ ସ୍ୱୟଂ ଇନ୍ଦ୍ର ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ପୁନଶ୍ଚ ସେ ଦୁହିଙ୍କର ବୀର୍ଯ୍ୟକୁ ରଣସ୍ଥଳରେ ଅନୁଭବ କରି ଶକ୍ର ପରମ ପ୍ରୀତ ହେଲେ ଏବଂ ପୁନର୍ବାର ସେ ଦୁହିଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ହେଲେ । ତତ୍ପରେ ସବ୍ୟସାଚୀଙ୍କ ବୀର୍ଯ୍ୟ କଳନା କରିବା ଅଭିଳାଷରେ ପାକଶାସନ ସୁମହତ୍ ଶିଳା ବର୍ଷଣ ଆରମ୍ଭ କଲେ; ଅମର୍ଷୀ ଅର୍ଜୁନ ଶରସମୂହରେ ତତ୍ସମସ୍ତ ଶିଳାବର୍ଷଣକୁ ପ୍ରତିଘାତ କଲେ । ୪୨ ।

ଶତକ୍ରତୁ ତାହାଙ୍କୁ ବିଫଳ ହେବାର ଦେଖି ପୁନଶ୍ଚ ସେହି ଶିଳାବର୍ଷକୁ ବର୍ଦ୍ଧିତ କଲେ; କିନ୍ତୁ ପାକଶାସନ ସେହି ଅଶ୍ମବର୍ଷକୁ ମହାବେଗଗାମୀ ଶରଜାଲ ଦ୍ୱାରା ବିଲୟ ପ୍ରାପ୍ତ କରି ପିତାଙ୍କୁ ପରିତୁଷ୍ଟ କଲେ । ୪୩ । ତଦନନ୍ତର ପାଣ୍ଡୁନନ୍ଦନଙ୍କର ବିନାଶାର୍ଥ ଶକ୍ର ନିଜଭୁଜ ହସ୍ତ ଦ୍ୱାରା ସଦ୍ରୁମ ମନ୍ଦର ପର୍ବତର ଶିଖରକୁ ଉତ୍ପାଟିତ କରି ବିସର୍ଜନ କଲେ । ୪୪ । ପରନ୍ତୁ ଅର୍ଜୁନ ବେଗଶାଳୀ, ଜ୍ୱଳିତାଗ୍ର ଓ ସରଳଗତି

ଶରସମୂହ ଦ୍ୱାରା ସେହି ଗିରିଶୃଙ୍ଗକୁ ସହସ୍ର ଖଣ୍ଡ କରି ବିଧ୍ୱଂସିତ କଲେ । ୫୦ ।

ଗିରିଶୃଙ୍ଗମାନ ଯେତେବେଳେ ଖଣ୍ଡ ଖଣ୍ଡ ହୋଇ ଆକାଶରୁ ପତିତ ହେଲା, ସେତେବେଳେ ବୋଧହେଲା ଯେପରି କି ସୂର୍ଯ୍ୟ, ଚନ୍ଦ୍ର ଓ ଗ୍ରହ ସହିତ ଆକାଶ ପରିଶୀର୍ଣ୍ଣ ହେଉଅଛି । ସେହି ମହାଶୈଳ ପତନ ହେବାବେଳେ ତାହାର ଶୃଙ୍ଗରେ ଆହତ ହୋଇ ଖାଣ୍ଡବବାସୀ ଅସଂଖ୍ୟ ପ୍ରାଣୀ ନିହତ ହେଲେ । ୫୨ ।

---

## ଅଧ୍ୟାୟ—୨୨୮

ବୈଶମ୍ପାୟନ ବୋଇଲେ—ଖାଣ୍ଡବବାସୀ ଦେବ, ଦାନବ, ରାକ୍ଷସ, ନାଗ, ତରକ୍ଷୁ, ଋକ୍ଷ, ମତ୍ତମାତଙ୍ଗ, ଉତ୍ଫୁଲ୍ଲକେଶର ସିଂହ, ବ୍ୟାଘ୍ର ଓ ବନସ୍ଥିତ ଅପର ପ୍ରାଣିମାନେ ସେହି ପର୍ବତ ପାତରେ ଭୀତହୋଇ ଉଦ୍‌ବିଗ୍ନଚିତ୍ତରେ ପଳାୟନ କରିବାକୁ ପ୍ରବୃତ୍ତ ହେଲେ । ସେମାନେ କୃଷ୍ଣ ଦ୍ୱୟଙ୍କ ଉଦ୍ୟତାୟୁଧ ଓ ଅରଣ୍ୟାଗ୍ନିକୁ ସର୍ବତ୍ର ମହାଶବ୍ଦରେ ନିନାଦିତ ହୋଇଥିବାର ବିଲୋକନ କଲେ । ଅନନ୍ତର ସେମାନେ ବନର ଚତୁଃପାର୍ଶ୍ୱରେ ଅଗ୍ନିକୁ ପ୍ରଜ୍ୱଳିତ ଓ କୃଷ୍ଣଙ୍କ ପ୍ରହାରୋଦ୍ୟତ ଦେଖି ମହାଭୀଷଣ ଶବ୍ଦ କଲେ । ସେମାନଙ୍କର ରୌଦ୍ରନାଦରେ ଓ ବିଭାବସୁଙ୍କର ନିନାଦରେ ସମୁଦାୟ ଗଗନ ଉତ୍ପାତ ଜଳଦ ନାଦିତ ହେଲପ୍ରାୟ ବୋଧ ହେଲା ।

ତତ୍ପରେ ମହାବାହୁ କୃଷ୍ଣ ସେମାନଙ୍କ ବିନାଶ ନିମିତ୍ତ ସ୍ୱୀୟ ତେଜୋଦ୍ୱାରା ଦୀପ୍ୟମାନ ଅତ୍ୟୁଗ୍ର ମହତ୍ ଚକ୍ରକୁ ପରିତ୍ୟାଗ କଲେ । ସେହି ଚକ୍ର ଦ୍ୱାରା ଦାନବ ନିଶାଚର ପ୍ରଭୃତି ସମସ୍ତ ବନ୍ୟପ୍ରାଣୀ ଆର୍ତ୍ତ ଓ ଖଣ୍ଡ ଖଣ୍ଡ ହୋଇ ତତ୍‌କ୍ଷଣାତ୍ ଅନଳରେ ନିପତିତ ହେଲେ । ଦୈତ୍ୟମାନେ କୃଷ୍ଣ ଚକ୍ର ବିଦାରିତ ହୋଇ ବସା ଓ ରୁଧିର ଧାରାରେ ଆପ୍ଲୁତ ହୋଇ ସନ୍ଧ୍ୟାକାଳୀନ ମେଘପଟଳ ସଦୃଶ ଦୃଶ୍ୟ ହେଲେ ।

ହେ ଭରତ ! ବୃଷ୍ଣିନନ୍ଦନ କୃଷ୍ଣ କୃତାନ୍ତଙ୍କ ପ୍ରାୟ ହୋଇ ସହସ୍ର ସହସ୍ର ପିଶାଚ, ପକ୍ଷୀ, ନାଗ ଓ ପଶୁବିନାଶ କରି ସେଠାରେ

ବିଚରଣ କଲେ । ଶତ୍ରୁ ସଂହାରୀ କୃଷ୍ଣଙ୍କ ଚକ୍ର ମୁହୁର୍ମୁହୁଃ ନିକ୍ଷିପ୍ତ ହୋଇ ଅସଂଖ୍ୟ ପ୍ରାଣୀ ସଂହାର ପୂର୍ବକ ପୁନଃପୁନଃ କୃଷ୍ଣଙ୍କ ପାଣିଗତ ହେଲେ । ସର୍ବଭୂତାତ୍ମା କୃଷ୍ଣ ଏହିରୂପେ ପିଶାଚ, ଉରଗ, ରାକ୍ଷସ ପ୍ରଭୃତି ସଂହାର କରିବାରୁ ତତ୍କାଳରେ ତାହାଙ୍କ ରୂପ ଅତିଶୟ ଉଗ୍ର ଦୃଶ୍ୟ ହେଲା । ସମାଗତ ସମସ୍ତ ଦେବଗଣଙ୍କ ମଧ୍ୟରୁ କେହି ସୁଦ୍ଧା କୃଷ୍ଣାର୍ଜ୍ଜୁନଙ୍କୁ ଜୟ କରି ପାରିଲେ ନାହିଁ । ଦେବଗଣ ଦେଖିଲେ, ଯେତେବେଳେ ସେମାନେ ସେହି ଖାଣ୍ଡବ ଦାବକୁ କୃଷ୍ଣାର୍ଜ୍ଜୁନଙ୍କ ହସ୍ତରୁ ପରିତ୍ରାଣ କରି ଦାବାନଳ ନିର୍ବାପିତ କରିବାକୁ ଅସମର୍ଥ ହେଲେ, ତେତେବେଳେ ସେମାନେ ପରାଙ୍ମୁଖ ହୋଇ ସେଠାରୁ ପ୍ରତ୍ୟାବୃତ୍ତ ହେଲେ । ଅମରଗଣଙ୍କୁ ବିରୁପ ବିମୁଖ ହେବାର ଦେଖି ଶତକ୍ରତୁ ପ୍ରୀତ ହେଲେ ଓ କୃଷ୍ଣାର୍ଜ୍ଜୁନଙ୍କୁ ପ୍ରଶଂସା କଲେ ।

ହେ ରାଜନ୍ ! ଯେତେବେଳେ ଦେବତାମାନେ ବିମୁଖ ହୋଇ ପ୍ରସ୍ଥାନ କଲେ, ତେତେବେଳେ ଶତକ୍ରତୁଙ୍କୁ ଏହି ଦେବବାଣୀ ହେଲା ଯେ ତୁମ୍ଭର ସଖା ତକ୍ଷକୋତ୍ତମ ସନ୍ନିହିତ ନ ଥିଲେ । ଖାଣ୍ଡବଦାହ କାଳରେ ସେ କୁରୁକ୍ଷେତ୍ରକୁ ଗମନ କରିଥିଲେ । ହେ ବାସବ ! ବାସୁଦେବ ଓ ଅର୍ଜ୍ଜୁନଙ୍କୁ ତୁମ୍ଭେ ଯୁଦ୍ଧରେ ଜୟ କରି ପାରନ୍ତ ନାହିଁ, ଆମ୍ଭ କଥା ନିଶ୍ଚୟ ଜାଣ; ଏ ଦୁହେଁ ପୂର୍ବେ ଦେବବିଖ୍ୟାତ ନରନାରାୟଣ ରୂପରେ ଜନ୍ମିଥିଲେ । ୧୮ । ଏମାନଙ୍କର ଯେପରି ବୀର୍ଯ୍ୟ ଓ ଯେପରି ପରାକ୍ରମ ତାହା ତୁମ୍ଭେ ମଧ୍ୟ ଅବଗତ ଅଛ, ଏମାନେ ଯୁଦ୍ଧରେ ଦୁର୍ଜ୍ଜୟ ଓ ଦୁର୍ଦ୍ଧର୍ଷ ଅଟନ୍ତି । ୧୯ । ଏମାନଙ୍କୁ ପରାଜୟ କରିବାକୁ ସର୍ବଲୋକରେ କାହାରି ସାଧ୍ୟ ନାହିଁ; ଏହି ଦୁଇ ପୁରାଣ ଋଷିସତ୍ତମ ଅମର, ଅସୁର, ଯକ୍ଷ, ରାକ୍ଷସ, ଗନ୍ଧର୍ବ, ନର, କିନ୍ନର, ପନ୍ନଗ ପ୍ରଭୃତି ସମସ୍ତଙ୍କର ପୂଜ୍ୟତମ; ଅତଏବ ହେ ବାସୁଦେବ ! ତୁମ୍ଭେ ତ୍ରିଦଶ ମାନଙ୍କୁ ଘେନି ଏ ସ୍ଥାନରୁ ପ୍ରସ୍ଥାନ କର । ୨୧ । ଏହି ଖାଣ୍ଡବ-ଦାବ-ବିନାଶନ ବିଧାତାଙ୍କ କୃତ । ଅମରେଶ୍ୱର ଏହି ବାକ୍ୟ ଶ୍ରବଣ କରି ଓ ତାହାକୁ ତଥ୍ୟ ମନେ କରି କ୍ରୋଧ ଓ ଅମର୍ଷ ପରିତ୍ୟାଗ ପୂର୍ବକ ଦେବଲୋକକୁ ଗମନ କଲେ ।

ଦେବବାସୀମାନେ ଅପଣାର ଅଧିପତି ମହାତ୍ମା ପୁରନ୍ଦରଙ୍କୁ ପ୍ରସ୍ଥାନ କରିବାର ଦେଖି ସ୍ୱୟଂ ନିଜ ନିଜ ସେନା ସମଭିବ୍ୟାହାରରେ

ତାହାଙ୍କର ଅନୁଗମନ କଲେ । ବୀର ଅର୍ଜ୍ଜୁନ ଓ ବାସୁଦେବ ଦେବତା-ମାନଙ୍କୁ ଓ ଦେବରାଜଙ୍କୁ ପରାଙ୍‌ମୁଖ ହେବାର ଦେଖି ସିଂହନାଦ ମୋଚନ କଲେ । ହେ ରାଜନ୍ ! ଦେବରାଜ ଗମନ କରନ୍ତେ, କେଶବାର୍ଜ୍ଜୁନ ଦୁହେଁ ପ୍ରହୃଷ୍ଟ ଓ ନିର୍ବିଶଙ୍କ ହୋଇ ବନକୁ ଦଗ୍ଧ କରାଇଲେ । ମାରୁତ ଯେପରି ମେଘମାନଙ୍କୁ ବିଦୂରିତ କରେ ତଦ୍ରୂପ ଅର୍ଜ୍ଜୁନ ସୁରମାନଙ୍କୁ ପ୍ରତାଡ଼ିତ କଲେ ଓ ଖାଣ୍ଡବ ନିବାସୀ ପ୍ରାଣିମାନଙ୍କୁ ଶରସଂଘାତ ଦ୍ୱାରା ବିନଷ୍ଟ କଲେ । ଇନ୍ଦ୍ରଧରୁ ଆଉ କୌଣସି ପ୍ରାଣୀ ନିର୍ଗମନ କରିପାରିଲେ ନାହିଁ । ୨୬ । ମହାବଳ ବୃହତ୍ ବୃହତ୍ ପ୍ରାଣିମାନେ ଅମୋଘାସ୍ତ୍ର ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧ କରିବା ତ ଦୂରର କଥା ସେମାନେ ତାହାଙ୍କୁ ନିରୀକ୍ଷଣ କରିବାକୁ ସୁଦ୍ଧା ସାହସ ଓ ସାମର୍ଥ୍ୟରେ ଅଭାବ ବୋଧ କଲେ । ଅର୍ଜ୍ଜୁନ କେତେବେଳେ ଏକ ବାଣରେ ଶତ ପ୍ରାଣୀ ଓ କେତେବେଳେ ଶତବାଣରେ ଏକପ୍ରାଣୀ ବିଦ୍ଧ କଲେ । ୨୯ । ସେହି ସବୁ ପ୍ରାଣୀମାନେ ସାକ୍ଷାତ କାଳକର୍ତ୍ତୃକ ନିହତ ହେଲା ପ୍ରାୟ ଗତାସୁ ହୋଇ ହୁତାଶନ ମୁଖରେ ନିପତିତ ହେଲେ । ସେମାନେ କି ନଦୀ ତୀରରେ, କି ଅବା ବିଷମ ସ୍ଥାନରେ କି ଅବା ଶ୍ମଶାନ ଭୂମିରେ ସୁଖ ଲାଭ କରି ପାରିଲେ ନାହିଁ। ସର୍ବତ୍ର ସେମାନେ ସମ୍ପୂର୍ଣ୍ଣ ତାପରେ ତାପିତ ହେଲେ । ୩୦ ।

ବହୁସଂଖ୍ୟକ ପ୍ରାଣିମାନେ ଦୀନ ଶବ୍ଦରେ ମହାଶବ୍ଦ ଓ ଆର୍ତ୍ତନାଦ କରି ପ୍ରାଣ ତ୍ୟାଗ କଲେ । ୩୧ । ହସ୍ତୀ ମୃଗ ଓ ତରକ୍ଷୁଦଳ ଚିତ୍କାର ଶବ୍ଦରେ ରୋଦନ କଲେ । ସେହି ଶବ୍ଦଶୁଣି ଅତି ଦୂରସ୍ଥିତ ଗଙ୍ଗାର ଓ ସମୁଦ୍ରର ଜଳଜନ୍ତୁମାନେ ଓ ବିଦ୍ୟାଧରମାନେ ଓ ତତ୍ସନ୍ନିହିତ ଯେଉଁ ସବୁ ଅରଣ୍ୟବାସୀ ଜୀବ ଥିଲେ ସେମାନେ ସମସ୍ତେ ଅତିଶୟ ତ୍ରାସଯୁକ୍ତ ହେଲେ । ହେ ମହାବାହୁ । କୃଷ୍ଣାର୍ଜ୍ଜୁନଙ୍କ ସହିତ କୌଣସି ବ୍ୟକ୍ତିର ଯୁଦ୍ଧ କରିବା ତେଣେ ଥାଉ, ଅର୍ଜ୍ଜୁନଙ୍କୁ କି କୃଷ୍ଣଙ୍କୁ କେହି ନିରୀକ୍ଷଣ କରିବାକୁ ସୁଦ୍ଧା ସମର୍ଥ ହେଲେ ନାହିଁ । ଯେଉଁ ସବୁ ରାକ୍ଷସ, ଦାନବ, ନାଗଗଣ ଏକତ୍ର ସଂହତ ହୋଇ ଧାବମାନ ହେଲେ, କୃଷ୍ଣ ସେମାନଙ୍କୁ ଚକ୍ର ଦ୍ୱାରା ନିହତ କଲେ । ସେମାନେ ଚଣ୍ଡବେଗରେ, ଭିନ୍ନମସ୍ତକ, ଭିନ୍ନଦେହ ଓ ଗତାସୁ ହୋଇ ପ୍ରଦୀପ୍ତ ପାବକ ମଧ୍ୟରେ ପତିତ ହେଲେ । ଅପର ମହାକାୟ ଜୀବମାନେ ମଧ୍ୟ ଉତ୍କୃଷ୍ଟରୂପେ ଅନଳ ମୁଖରେ ନିପତିତ ହେଲେ । ତତ୍କାଳରେ ହୁତାଶନ, ମାଂସ ଓ ରୁଧିର

ଓ ବସା ସମୂହରେ ସନ୍ତର୍ପିତ ହେବାରୁ ଧୂମଶୂନ୍ୟ ହୋଇ ଅକାଶଗାମୀ ହେଲେ ଓ ଦୀପ୍ତପିଙ୍ଗାକ୍ଷ, ଦୀପ୍ତଜିହ୍ୱ, ଦୀପ୍ତାନନ ଓ ଦୀପ୍ତ-ଊର୍ଦ୍ଧ୍ୱକେଶ ହୋଇ ପ୍ରାଣିମାନଙ୍କ ବସା ପାନ କଲେ । କୃଷ୍ଣାର୍ଜୁନଙ୍କ ଠାରୁ ସେହି ସୁଧା ପାନ କରି ଅଗ୍ନି ମୁଦିତ ଓ ପରମ ନିବୃତ୍ତି ପ୍ରାପ୍ତ ହେଲେ । ଅନନ୍ତର ମଧୁସୂଦନ ଦେଖିଲେ ଯେ ମୟ ନାମକ ଅସୁର ତକ୍ଷକର ବାସସ୍ଥାନରୁ ପଳାୟନ କରୁଅଛି ଓ ପବନ ସାରଥି ଅଗ୍ନି ମଧ୍ୟ ସମ ଶରୀରବାନ୍ ଓ ଜଟାଧାରୀ ହୋଇ ମେଘପ୍ରାୟ ଶବ୍ଦ କରି ତାହାଙ୍କୁ ଦଗ୍ଧ କରିବା ନିମିତ୍ତ ଅକାଂକ୍ଷା କରୁଅଛନ୍ତି । ତତ୍କାଳରେ ବାସୁଦେବ ମୟକୁ ବିନାଶ କରିବା ଇଚ୍ଛାରେ ଚକ୍ରକୁ ଉଦ୍ୟତ କରି ଦଣ୍ଡାୟମାନ ହେଲେ । ମୟଦାନବ ତାହାଙ୍କ ଉଦ୍ୟତ ଚକ୍ର ଓ ପାବକଙ୍କୁ ଦଗ୍ଧୁକ୍ଷୁ ହୋଇ ଅସିବାର ଦେଖି କହିଲେ, "ହେ ଅର୍ଜୁନ ! ଧାବମାନ୍ ହୁଅ, ଅମ୍ଭଙ୍କୁ ରକ୍ଷା କର ।" ଅର୍ଜୁନ ତାହାଙ୍କର ସେହି ଆର୍ତ୍ତନାଦ ଶ୍ରବଣ କରି ତାହାଙ୍କୁ ଜୀବନଦାନ କଲପ୍ରାୟ କହିଲେ, "ଭୟ ନାହିଁ, ତୁମ୍ଭର ଭୟ ନାହିଁ ।" । ୪୩ । ଅର୍ଜୁନ ଦୟା ପରାୟଣ ଥିଲେ, ଏହି ନିମିତ୍ତ ମୟକୁ ଅଭୟପ୍ରଦାନ କଲେ । ଦାଶାର୍ହ କୃଷ୍ଣ ଆଉ ତାହାଙ୍କୁ ବିନାଶ କରିବାକୁ ଇଚ୍ଛା କଲେ ନାହିଁ । ତହୁଁ ଅଗ୍ନି ମଧ୍ୟ ଦଗ୍‌ଧ କରିବାକୁ ପ୍ରବୃତ୍ତ ହେଲେ ନାହିଁ । ୪୫ ।

ବୈଶମ୍ପାୟନ ବୋଇଲେ—କୃଷ୍ଣ ଓ ପାର୍ଥଙ୍କ ଦ୍ୱାରା ପାକଶାସନଙ୍କ ଠାରୁ ରକ୍ଷିତ ସେହି ବନକୁ ହୁତାଶନ ପଞ୍ଚଦଶ ଦିନରେ ଦଗ୍‌ଧ କଲେ । ସେହି ବନ ଦହନ ସମୟରେ ଅଶ୍ୱସେନ, ମୟ ଓ ସାର୍ଙ୍ଗକ ନାମକ ପକ୍ଷି ଚତୁଷ୍ଟୟ ଏହି ଛଅଜଣଙ୍କୁ ଅଗ୍ନି ଦହନ କରି ନ ଥିଲେ । ୪୭ ।

---

## ଅଧ୍ୟାୟ—୨୨୯

ଜନମେଜୟ ପ୍ରଶ୍ନ କଲେ—ହେ ବ୍ରହ୍ମନ୍ ! ଖାଣ୍ଡବବନ ଦଗ୍‌ଧ ହେଲାବେଳେ ଶାର୍ଙ୍ଗକମାନଙ୍କୁ କି ନିମିତ୍ତ ଅଗ୍ନି ଦାହ କଲେ ନାହିଁ, ତାହା ଆମ୍ଭଙ୍କୁ ଆପଣ ବୋଲିବା ହେଉନ୍ତୁ । ୧ । ଯେଉଁ ହେତୁରୁ ଅଶ୍ୱସେନ ଓ ଦାନବ ମୟ ଦଗ୍‌ଧ ନ ହେଲେ ତାହା କୀର୍ତ୍ତନ କରି ଅଛନ୍ତି; କିନ୍ତୁ ଶାର୍ଙ୍ଗକ ମାନଙ୍କର ରକ୍ଷାର କାରଣ ବୋଲିବା ହୋଇ ନାହାନ୍ତି । ୨ । ଅତଏବ ହେ ବ୍ରହ୍ମନ୍ ! ଶାର୍ଙ୍ଗକମାନେ ଯେ ଏତାଦୃଶ

ଅଗ୍ନି ସମ୍ବର୍ଦ୍ଧରେ ବନାଶିତ ନୋହି ନାଗପଦରେ ରହିଲେ ତାହା କୀର୍ତ୍ତନ କରିବା ହେଉନ୍ତୁ । ୩ ।

ବୈଶମ୍ପାୟନ ବୋଇଲେ—ହେ ଅରିନ୍ଦମ ! ଏହି ଘୋର ଦାହରେ ଶାର୍ଙ୍ଗକମାନଙ୍କୁ ଯେ ଅଗ୍ନି ଦାହ ନ କଲେ ତାହାର କାରଣ ସବୁ ଅମ୍ଭେ ତୁମ୍ଭଙ୍କୁ କହିବୁଁ । ୪ । ଧର୍ମଜ୍ଞମାନଙ୍କ ମଧ୍ୟରେ ମୁଖ୍ୟତମ, ଶଂସିତବ୍ରତ, ତପସ୍ୱୀ, ବେଦାଧ୍ୟୟନଶୀଳ, ମନ୍ଦପାଳ ନାମରେ ମହର୍ଷି ଥିବାର ଶୁଣାଅଛୁ । ୫ । ସେହି ବଜିତେନ୍ଦ୍ରିୟ, ଧର୍ମରତ, ସ୍ୱାଧ୍ୟାୟଶୀଳ, ତପସ୍ୱୀ, ଊର୍ଦ୍ଧ୍ୱରେତା ମୁନିମାନଙ୍କର ମାର୍ଗକୁ ଆଶ୍ରୟ କରିଥିଲେ । ୬ । ହେ ଭାରତ ! ସେ ତପସ୍ୟାର ପାରକୁ ଗମନ କରି ଦେହତ୍ୟାଗ କଲାପରେ ପିତୃଲୋକକୁ ଗମନ କଲେ; କିନ୍ତୁ ସେଠାରେ ତପସ୍ୟାର କୌଣସି ଫଳ ଲଭ କଲେ ନାହିଁ । ୭ । ତପସ୍ୟାଦ୍ୱାରା ସେ ଯେଉଁ ଲୋକମାନଙ୍କୁ ଜୟ କରିଥିଲେ ସେ ଲୋକମାନେ ତାହାଙ୍କୁ ପ୍ରାପ୍ତ ନୋହିବାରୁ ସେ ଋଷି ଧର୍ମରାଜଙ୍କ ସମୀପବର୍ତ୍ତୀ ଦେବଗଣଙ୍କୁ ପୃଚ୍ଛା କଲେ । ୮ ।

ମନ୍ଦପାଳ ବୋଇଲେ—ଆମ୍ଭର ତପସ୍ୟାଦ୍ୱାରା ଉପାର୍ଜ୍ଜିତ ଲୋକମାନେ କି କାରଣ ଆମ୍ଭପ୍ରତି ଆବୃତ ହୋଇଅଛନ୍ତି ? ଯେଉଁ କର୍ମ କଲେ ଏହି ଲୋକମାନେ ଲବ୍ଧ ହୁଅନ୍ତି, ଆମ୍ଭେ କି ସେ କର୍ମମାନ କରିନାହୁଁ ? । ୯ । ହେ ଦେବଗଣ ! କହିବା ହେଉନ୍ତୁ, ଯେଉଁ କାରଣରୁ ଏହି ଲୋକମାନେ ଆବୃତ ହୋଇ ଅଛନ୍ତି, ଅମ୍ଭେ ସେହି ତପସ୍ୟା କରିବାକୁ ପ୍ରସ୍ତୁତ ଅଛୁଁ । ୧୦ ।

ଦେବତାମାନେ କହିଲେ—ହେ ବ୍ରହ୍ମନ୍ ! ଶ୍ରବଣ କରନ୍ତୁ । ମାନବମାନେ କ୍ରିୟା, ବ୍ରହ୍ମଚର୍ଯ୍ୟ, ସୁତୋତ୍ପାଦନ ସ୍ୱରୂପ କାର୍ଯ୍ୟରେ ଋଣୀ ହୋଇ ଜନ୍ମ ପରିଗ୍ରହ କରନ୍ତି; ଏହା ନିଃସଂଶୟ ବୋଲି ଜାଣ ।୧୧। ଯଜ୍ଞ, ତପସ୍ୟା ଓ ପୁତ୍ରୋତ୍ପାଦନ ଦ୍ୱାରା ସେହି ତିନ ଋଣ ଅପାକୃତ ହୁଅଇ, ତୁମ୍ଭେ ତପସ୍ୱୀ ଓ ଯଜ୍ଞକାରୀ ହୋଇଅଛ; କିନ୍ତୁ ତୁମ୍ଭର ପ୍ରଜା ନାହାନ୍ତି ।୧୨। ପ୍ରସବର ଅଭାବ ହେତୁରୁ ଏହି ଲୋକମାନେ ତୁମ୍ଭ ପ୍ରତି ଆବୃତ ହୋଇଅଛନ୍ତି; ତୁମ୍ଭେ ସୁତୋତ୍ପାଦନ କର, ତେବେ ତୁମ୍ଭେ ଏହି ପୁଷ୍କଳ ଲୋକମାନଙ୍କୁ ଉପଭୋଗ କରିବ । ୧୩ । ବେଦରେ କଥିତ ଅଛି ଯେ

ପୁତ୍ର, ପୁଂ ନାମକ ନରକରୁ ତ୍ରାଣ କରେ, ଅତଏବ ଅପତ୍ୟ ସନ୍ତାନ ଲାଭରେ ଯତ୍ନ କର । ୧୪ ।

ବୈଶମ୍ପାୟନ ବୋଇଲେ—ମନ୍ଦପାଳ ସେହି ଦେବଗଣଙ୍କର ତଦ୍ରୂପ ବଚନ ଶ୍ରବଣ କରି ଚିନ୍ତା କଲେ ଯେ କେଉଁଠାରେ ‘ଅଳ୍ପକାଳ ମଧ୍ୟରେ ବହୁତ ସନ୍ତତି ଲାଭ ହେବ । ୧୫ । ବହୁତ ବେଳ ଚିନ୍ତା କରି ସେ ଋଷି ସ୍ଥିର କଲେ ଯେ ପକ୍ଷିମାନେ ଅଳ୍ପସମୟରେ ବହୁତ ପ୍ରସବ କରନ୍ତି, ତହୁଁ ଶାର୍ଙ୍ଗକ ପକ୍ଷୀ ହୋଇ ଜରିତା ନାମ୍ନୀ ପକ୍ଷୀକୁ ସ୍ୱୀକାର କଲେ । ୧୬ । ତାହାଙ୍କ ଠାରେ ସେ ଋଷି ଚାରିଗୋଟି ବ୍ରହ୍ମବାଦୀ ସନ୍ତାନ ଜାତ କଲେ; ତଦନନ୍ତର ସେ ଶିଶୁମାନଙ୍କୁ ତାହାଙ୍କ ଜନନୀଙ୍କ ଠାରେ ନ୍ୟସ୍ତ କରି ସେ ଲପିତାଙ୍କ ନିକଟକୁ ଗମନ କଲେ । ୧୭ । ହେ ଭାରତ ! ଅଣ୍ଡଗତ ବାଳଶିଶୁମାନଙ୍କୁ ମାତାଙ୍କ ବନରେ ପରିତ୍ୟାଗ କରି, ସେହି ମହାଭାଗ ଲପିତାଙ୍କ ଠାକୁ ପ୍ରସ୍ଥାନ କରିବାରୁ ଅପତ୍ୟ-ସ୍ନେହଯୁକ୍ତ ଜରିତା ବହୁ ଚିନ୍ତାନ୍ୱିତା ହେଲେ । ଅପରିତ୍ୟାଜ୍ୟ ଅଣ୍ଡଗତ ଋଷିମାନଙ୍କୁ ସେ ଋଷି ତ୍ୟାଗ କଲେ; କିନ୍ତୁ ପୁତ୍ରଶୋକାର୍ତ୍ତା ଜରିତା ଖାଣ୍ଡବ ବନରେ ସେ ସୁତମାନଙ୍କୁ ତ୍ୟାଗ କଲେ ନାହିଁ; ସ୍ନେହ ବିକ୍ଳବା ହୋଇ ସେ ଶିଶୁମାନଙ୍କୁ ନିଜ ବୃତ୍ତିଦ୍ୱାରା ପ୍ରତିପାଳନ କଲେ । ୨୦ ।

ତଦାନନ୍ତର ମନ୍ଦପାଳ ଋଷି ଲପିତାଙ୍କ ସହ ଖାଣ୍ଡବ ବନରେ ବିଚରଣ କରୁଁ କରୁଁ ଦେଖିଲେ ଯେ ଅଗ୍ନି ସେହି ବନକୁ ଦଗ୍ଧ କରିବାକୁ ଆସୁଅଛନ୍ତି । ୨୧ । ଅଗ୍ନିଙ୍କର ସେହି ସଂକଳ୍ପ ଅବଗତ ହୋଇ ଓ ପୁତ୍ରମାନଙ୍କୁ ବାଳକ ଥିବାର ଜାଣି ସେହି ବ୍ରହ୍ମର୍ଷି ବିପ୍ରର୍ଷି ଅଗ୍ନିଙ୍କୁ ସ୍ତୁତି କଲେ । ୨୨ । ପୁତ୍ରମାନଙ୍କ ନାଶାଶଙ୍କାରେ ଭୀତ ହୋଇ ମହାତେଜସ୍ୱୀ ଲୋକପାଳଙ୍କୁ ଏହି ସ୍ତୁତି କଲେ ।

“ହେ ଅଗ୍ନେ ! ତୁମ୍ଭେ ସର୍ବ ଲୋକଙ୍କର ମୁଖ, ତୁମ୍ଭେ ହବ୍ୟବାହ; ହେ ପାବକ ! ତୁମ୍ଭେ ସର୍ବ ପ୍ରାଣିମାନଙ୍କ ଅନ୍ତରରେ ଗୂଢ଼ରୂପେ ସଂଚରଣ କର । ପଣ୍ଡିତମାନେ ତୁମ୍ଭଙ୍କୁ ଏକ କହନ୍ତି, ପୁନଶ୍ଚ ତିନି ବୋଲି କହନ୍ତି । ତୁମ୍ଭଙ୍କୁ ଅଷ୍ଟପ୍ରକାରରେ କଳ୍ପନା କରି ଯଜ୍ଞ କାର୍ଯ୍ୟମାନ ନିର୍ବାହ କରନ୍ତି* ।

---

* ଅଗ୍ନିଙ୍କର ଏକ ‘ବ୍ରହ୍ମରୂପ’ । ଦିବ୍ୟ, ଭୌମ ଓ ଔଦର୍ଯ୍ୟ ବୋଲି ତିନି ରୂପ । ପୃଥ୍ୱୀ, ଅପ୍, ତେଜ, ମରୁତ୍, ବ୍ୟୋମ, ସୂର୍ଯ୍ୟ, ଚନ୍ଦ୍ର ଓ ଯଜମାନ, ସ୍ୱରୂପ ଅଷ୍ଟପ୍ରକାର ।

ହେ ହୁତାଶନ ! ପରମର୍ଷିମାନେ ବୋଲନ୍ତି ଯେ ତୁମ୍ଭେ ଏହି ସମସ୍ତ ବିଶ୍ୱକୁ ସର୍ଜ୍ଜନ କରିଅଛ ଓ ତୁମ୍ଭେ ନ ଥିଲେଁ ଏହି ସମସ୍ତ ଜଗନ୍ମଣ୍ଡଳ ସଦ୍ୟ ବିନଷ୍ଟ ହୁଅନ୍ତା । ବ୍ରାହ୍ମଣମାନେ ତୁମ୍ଭଙ୍କୁ ନମସ୍କାର କରି ସ୍ତ୍ରୀ ପୁତ୍ରଙ୍କ ସହିତ ସ୍ୱକର୍ମ୍ମ ଦ୍ୱାରା ଶାଶ୍ୱତ ଲୋକକୁ ଜୟ କରି ସେଠାକୁ ଗମନ କରନ୍ତି । ହେ ଅଗ୍ନେ ! ପଣ୍ଡିତମାନେ ତୁମ୍ଭଙ୍କୁ ଆକାଶସ୍ଥିତ ସବିଦ୍ୟୁତ୍‌ମେଘ ବୋଲି ବୋଲନ୍ତି । ୨୭ । ହେ ମହାଦ୍ୟୁତି ପାବକ ! ତୁମ୍ଭଠାରୁ ଶିଖାମାନ ନିର୍ଗତ ହୋଇ ଭୂତମାନଙ୍କୁ ଦଗ୍ଧ କରନ୍ତି, ତୁମ୍ଭେ ଏହି ବିଶ୍ୱକୁ ସୃଷ୍ଟି କରିଅଛ । ୨୮ ।

ଏହି ଚରାଚର ଭୂତମାନଙ୍କୁ ତୁମ୍ଭେ ସୃଷ୍ଟି କରିଅଛ; ଏହି ଜଗତ୍ ତୁମ୍ଭଠାରେ ପ୍ରତିଷ୍ଠିତ ଅଛି; କର୍ମ୍ମବିଧାୟକ ବେଦ ତୁମ୍ଭର ବାକ୍ୟ ଅଟେ; ତୁମ୍ଭରଠାରେ ଅଗ୍ରେ ଜଳ ବିହିତ ହୋଇଅଛି । ୨୯ । ତୁମ୍ଭରଠାରେ ହବ୍ୟ କବ୍ୟମାନ ପ୍ରତିଷ୍ଠିତ ହୁଅଇ । ହେ ଦେବ ! ତୁମ୍ଭେ ଦହନ, ତୁମ୍ଭେ ଧାତା ଓ ତୁମ୍ଭେ ବୃହସ୍ପତି ଅଟ । ତୁମ୍ଭେ ଅଶ୍ୱିନୀ କୁମାର ଦ୍ୱୟ, ତୁମ୍ଭେ ଅର୍କ, ତୁମ୍ଭେ ସୋମ ଓ ତୁମ୍ଭେ ଅନିଳ ସ୍ୱରୂପ ।"

ବୈଶମ୍ପାୟନ ବୋଇଲେ—ହେ ନୃପତେ ! ଅମିତତେଜା ମନ୍ଦପାଳ ଋଷି ଏହି ପ୍ରକାରେ ପାବକଙ୍କୁ ସ୍ତୁତି କରିବାରୁ ସେ ତାହାଙ୍କ ପ୍ରତି ତୁଷ୍ଟ ହେଲେ ଓ ପ୍ରୀତ ଚିତ୍ତରେ ଋଷିଙ୍କୁ ପଚାରିଲେ । ତୁମ୍ଭର ଇଷ୍ଟ କି ? ବୋଲ, ଅମ୍ଭେ ତାହା ସମ୍ପାଦନ କରିବୁଁ । ୩୨ । ମନ୍ଦପାଳ କୃତାଞ୍ଜଳି ପୂର୍ବକରେ ହବ୍ୟବାହନଙ୍କୁ କହିଲେ, ତୁମ୍ଭେ ଯେତେବେଳେ ଖାଣ୍ଡବ ବନକୁ ଦଗ୍ଧ କରିବ, ସେତେବେଳେ ଅମ୍ଭର ପୁତ୍ରମାନଙ୍କୁ ଦଗ୍ଧ କରିବ ନାହିଁ । ୩୩ । ଭଗବାନ ହବ୍ୟବାହନ 'ତଥାସ୍ତୁ' ବୋଲି ପ୍ରତିଶ୍ରୁତ ହେଲେ ଓ ସେହିକାଳରେ ଖାଣ୍ଡବ ଦାବ ଦହନରେ ପ୍ରବୃତ୍ତ ହୋଇ ପ୍ରଜ୍ୱଳିତ ହେଲେ । ୩୪ ।

———

## ଅଧ୍ୟାୟ—୨୩୦

ବୈଶମ୍ପାୟନ ବୋଇଲେ—ତତ୍ପରେ ବହ୍ନି ଯେତେବେଳେ ପ୍ରଜ୍ୱଳିତ ହେଲେ, ସେତେବେଳେ ଶାର୍ଙ୍ଗକମାନେ ସୁଦୁଃଖିତ ହୋଇ, ବ୍ୟଥିତ ଓ ପରମୋଦ୍‌ବିଗ୍ନ ଚିତ୍ତରେ କାହାରିକୁ ରକ୍ଷାକର୍ତ୍ତା ବୋଲି ବୋଧ ହୋଇ ନପାରି ଚିନ୍ତାକୁଳିତ ହେଲେ । ତାହାଙ୍କର ମାତା ତପସ୍ୱିନୀ ଜରିତା ଆପଣାର ପୁତ୍ରମାନଙ୍କୁ ବାଳକ ଦେଖି, ଦୁଃଖ ଓ ଶୋକରେ ଆର୍ତ୍ତ ହୋଇ ଅତି ଦୁଃଖିତ ହୋଇ ବିଶେଷ ବିଳାପ କଲେ ।

ଜରିତା ବୋଇଲେ—ଏହି ଭୟାନକ ଅଗ୍ନି ତୃଣରାଶିକୁ ଦଗ୍ଧ କରି ଭୀଷଣାକାର ପ୍ରକଟ କରି ସମ୍ପ୍ରଦାୟ ଜଗତ୍‌କୁ ସନ୍ଦୀପିତ କରି ଆମ୍ଭର ଦୁଃଖ ବିବର୍ଦ୍ଧନ କରୁଅଛନ୍ତି । ମଦୀୟ ଏହି ଶିଶୁ ସନ୍ତାନମାନେ ପକ୍ଷ ବିହୀନ, ଗତି ଶକ୍ତି ରହିତ ଓ ଅଜ୍ଞାନ; ଏହିମାନେ ଆମ୍ଭର ପୂର୍ବପୁରୁଷ-ମାନଙ୍କର ଏକମାତ୍ର ଗତି; ଏହିମାନେ ଆମ୍ଭର ହୃଦୟକୁ କର୍ଷଣ କରୁଅଛନ୍ତି । ୪ । ବୃକ୍ଷମାନଙ୍କୁ ଲେହନ କରି, ପ୍ରାଣୀମାନଙ୍କୁ ନାଶିତ କରି ଏହି ଅଗ୍ନି ଆସୁଅଛନ୍ତି; ଆମ୍ଭର ସୁତମାନେ ଅଜାତପକ୍ଷ ଓ ଗମନ କରିବାକୁ ଅଶକ୍ତ । ୫ । ଆମ୍ଭେ ଯେ ଏମାନଙ୍କୁ ଘେନି ସ୍ଥାନାନ୍ତର ଯିବୁଁ, ତାହାର ସାମର୍ଥ୍ୟ ନାହିଁ; ଅଥଚ ଏମାନଙ୍କୁ ତ୍ୟାଗ କରିବାକୁ ଆମ୍ଭେ ଏକାନ୍ତ ଅପାରଗ । ଆମ୍ଭର ହୃଦୟ ଏ ଅବସ୍ଥାରେ ଅତିଶୟ ବ୍ୟାକୁଳିତ ହେଉଅଛି । ୬ ।

ଆମ୍ଭେ କେଉଁ ପୁତ୍ରଟିକୁ ଘେନି ଯିବୁଁ ଓ କେଉଁ ପୁତ୍ରଟିକୁ ଅବା ପରିତ୍ୟାଗ କରିବୁ, ତାହା ସ୍ଥିର କରି ପାରୁନାହୁଁ, ଅଥବା କଣ କଲେ ଆମ୍ଭେ କୃତକୃତ୍ୟ ହେବୁଁ ତାହା ମଧ୍ୟ ଆମ୍ଭର ବୋଧଗମ୍ୟ ହେଉନାହିଁ । ହେ ପୁତ୍ରକମାନେ ! ତୁମ୍ଭେ କି ବିବେଚନା କରୁଅଛ ? ଆମ୍ଭେ ଚିନ୍ତା କରୁ ତୁମ୍ଭମାନଙ୍କ ରକ୍ଷାର କୌଣସି ଉପାୟ ଦେଖୁନାହୁଁ, ତୁମ୍ଭମାନଙ୍କୁ ଆମ୍ଭେ ପକ୍ଷ ଦ୍ୱାରା ଆଚ୍ଛାଦିତ କରି ତୁମ୍ଭ ସହିତ ମରଣ ଲାଭ କରିବୁଁ । ୮ ।

ତୁମ୍ଭର ନିର୍ଦ୍ଦୟ ପିତା ପ୍ରସ୍ଥାନ କରିବା ବେଳେ କହିଗଲେ ଯେ "ଆମ୍ଭର ଏହି ପୁତ୍ରଙ୍କ ମଧ୍ୟରେ ଜରିତାରି ନାମକ ପୁତ୍ର ଜ୍ୟେଷ୍ଠ ଥିବାରୁ ତାହାଙ୍କ ଠାରେ ବଂଶ ପ୍ରତିଷ୍ଠିତ ହେବ ଓ ସାରିସୃକ୍କ ନାମକ ପୁତ୍ର ଅପତ୍ୟୋତ୍ପାଦନ ଦ୍ୱାରା ପିତୃଗଣଙ୍କର କୁଳବର୍ଦ୍ଧନ କରିବେ ।

ସ୍ତମ୍ବମିତ୍ର ନାମକ ତପସ୍ୟାରେ ରତ ହେବେ ଓ ଦ୍ରୋଣାଭ୍ୟ ନାମକ ଚତୁର୍ଥ ସନ୍ତାନ ବେଦ ବିଦ୍ୟାପାରଗ ହେବେ” । ୧୦ । ଏହି କଷ୍ଟରୁ କି ଉପାୟ ଦ୍ୱାରା ରକ୍ଷା ପାଇବୁଁ ? କାହାକୁ ଘେନି ଗମନ କରିବୁଁ ? କି ରୂପ କଲେ ଅମ୍ଭେ କୃତକୃତ୍ୟ ହେବୁଁ, ତାହାର କିଛି ସ୍ଥିର କରି ପାରୁ ନାହୁଁ । ଜରିତା ଏହିପରି ଚିନ୍ତା କରୁଁ କରୁଁ ନାନାବିଧ ବିଳାପ କଲେ । ସ୍ୱକୀୟ ବୁଦ୍ଧିଦ୍ୱାରା ଅପଣାର ପୁତ୍ରମାନଙ୍କୁ ରକ୍ଷା କରିବାର କୌଣସି ଉପାୟ ସେ ଦେଖି ପାରିଲେ ନାହିଁ । ୧୧ ।

ବୈଶମ୍ପାୟନ କହିଲେ—ଶାର୍ଙ୍ଗକମାନେ ମାତାଙ୍କର ତଦ୍ରୂପ ବଚନ ଶୁଣି ପ୍ରତ୍ୟୁତ୍ତର ଦେଲେ, ମାତଃ । ତୁମ୍ଭେ ସ୍ନେହ ପରିତ୍ୟାଗ କରି ଯେଉଁଠାରେ ଅଗ୍ନି ନାହାନ୍ତି ସେହିପରି ଏକ ସ୍ଥାନକୁ ପଳାୟନ କରି ନିଜକୁ ରକ୍ଷା କର । ୧୨ । ଜନନି । ଅମ୍ଭେମାନେ ବିନଷ୍ଟ ହେଲେ, ତୁମ୍ଭର ଅନ୍ୟ ସନ୍ତାନ ଉତ୍ପନ୍ନ ହୋଇପାରିବେ; କିନ୍ତୁ ତୁମ୍ଭେ ବିନଷ୍ଟ ହେଲେ ଆଉ ବଂଶ ରକ୍ଷା କରିବାର ସମ୍ଭାବନା ରହିବ ନାହିଁ । ମାତଃ ଏହି ସମୟରେ ଆମ୍ଭସହିତ ତୁମ୍ଭର ପ୍ରାଣତ୍ୟାଗ କରିବା କର୍ତ୍ତବ୍ୟ, କି ଆମ୍ଭମାନଙ୍କୁ ପରିତ୍ୟାଗ କରି ନିଜର ପ୍ରାଣରକ୍ଷା କରିବା ବିଧେୟ, ତାହା ତୁମ୍ଭେ ପର୍ଯ୍ୟାଲୋଚନା କରି ଯାହା କଲେ କୁଳର ମଙ୍ଗଳ ଓ ତୁମ୍ଭର ମଙ୍ଗଳ ହେବ, ତାହା କର । ଆପଣା ସର୍ବନାଶକାରୀ ପୁତ୍ର-ସ୍ନେହକୁ ପରିତ୍ୟାଗ କର; ପୁତ୍ର ସ୍ନେହ କଲେଁ ଆମ୍ଭର ପିତାଙ୍କର ପୁଣ୍ୟଲୋକ ଲାଭ ସଫଳ ହେବନାହିଁ । ୧୫ ।

ଜରିତା ବୋଇଲେ—ବୃକ୍ଷ ସମୀପରେ ଏହି ମୂଷିକର ବିଲ ଅଛି, ତୁମ୍ଭେମାନେ ତନ୍ମଧ୍ୟରେ ତ୍ୱରିତ ପ୍ରବିଷ୍ଟ ହୁଅ; ଏଠାରେ ବହ୍ନିର ଭୟ ନାହିଁ । ହେ ପୁତ୍ରକମାନେ । ତୁମ୍ଭେମାନେ ତନ୍ମଧ୍ୟରେ ପ୍ରବେଶ କଲେଁ, ଅମ୍ଭେ ସେ ବିଲର ମୁଖକୁ ପାଂଶୁ ଦ୍ୱାରା ଆଚ୍ଛାଦିତ କରିବୁଁ; ଏହି ପ୍ରତୀକାର ଦ୍ୱାରା ଅମ୍ଭେ ଜ୍ୱଳନ୍ତ କୃଷ୍ଣବର୍ତ୍ମାଙ୍କଠାରୁ ଉଦ୍ଧାର ପାଇବୁଁ । ଅଗ୍ନି ଶାନ୍ତ ହେଲେ ଅମ୍ଭେ ଆସି ପୁନଶ୍ଚ ଏହି ବିଲର ମୁଖରୁ ପାଂଶୁ ସଞ୍ଚୟରୁ ବିହତ କରିବୁଁ, ଏହି ପ୍ରକାରେ ଅମ୍ଭେମାନେ ହୁତାଶନଙ୍କ ମୁଖରୁ ଉଦ୍ଧାର ପାଇବାର ସମ୍ଭାବନା ମାତ୍ର ଅଛି । ୧୮ ।

ଶାର୍ଙ୍ଗକମାନେ ବୋଇଲେ—ଏବେ ସୁଦ୍ଧା ଆମ୍ଭମାନଙ୍କର ପକ୍ଷ ଉଦ୍ଭିନ୍ନ ହୋଇନାହିଁ; ଅମ୍ଭମାନେ ମାଂସପିଣ୍ଡ ମାତ୍ର, ସୁତରାଂ ଏ

ଅବସ୍ଥାରେ ମୂଷିକ ବିଲରେ ପ୍ରବେଶ କଲେ, ମାଂସାଶୀ ମୂଷିକ ଅବଶ୍ୟ ଆମ୍ଭଙ୍କୁ ଭକ୍ଷଣ କରିବ ଓ ଆମ୍ଭେମାନେ ବିନଷ୍ଟ ହେବୁଁ; ଏହି ଭୟର କାରଣ ଜାଣିଶୁଣି ଆମ୍ଭେ କିପରି ଗର୍ତ୍ତ ମଧ୍ୟରେ ପ୍ରବିଷ୍ଟ ହେବୁଁ ? ଏକ୍ଷଣେ କିପରି ଅଗ୍ନି ଆମ୍ଭମାନଙ୍କୁ ଦହନ ନ କରନ୍ତି, ମୂଷିକ କିପରି ଆମ୍ଭମାନଙ୍କୁ ଭକ୍ଷଣ ନ କରେ, କିପରି ଆମ୍ଭ ପିତାଙ୍କର ଲୋକପ୍ରାପ୍ତି ସଫଳ ହୁଏ ଓ ଆମ୍ଭର ମାତା କିପରି ଜୀବିତ ରହନ୍ତି—ଏଥିର ଉପାୟ ଦେଖୁନାହୁଁ । ସୁତରାଂ ନିଶ୍ଚୟ ଆମ୍ଭମାନଙ୍କର ମରଣ ଉପସ୍ଥିତ ହୋଇଅଛି, ଜାଣନ୍ତୁ । କିନ୍ତୁ ବିବରରେ ପ୍ରବେଶ କଲେ ମୂଷା ଭକ୍ଷିବ ଓ ଉପରେ ରହିଲେ ହୁତାଶନ ଦଗ୍‌ଧ କରିବେ, ଏହି ଦୁଇପ୍ରକାର ମରଣ ମଧ୍ୟରୁ ବିବେଚନା କଲେଁ, ଅଗ୍ନି ଦ୍ୱାରା ଦଗ୍‌ଧ ହେବା ବାଞ୍ଛନୀୟ ମନେ ହୁଏ । ମୂଷିକ ଦ୍ୱାରା ଭକ୍ଷିତ ହେବା ବିଧେୟ ନୁହେଁ । ବିଲରେ ଆମ୍ଭମାନଙ୍କୁ ଭକ୍ଷିଲେ ଗର୍ହିତ ମରଣ ହେବ, କିନ୍ତୁ ହୁତାଶନ ମୁଖରେ ଶରୀର ତ୍ୟାଗ କଲେଁ ସଦ୍‌ଗତି ହେବ । ୨୨ ।

---

## ଅଧ୍ୟାୟ—୨୩୧

ଜରିତା ବୋଇଲେ—ଏହି ଗର୍ତ୍ତରେ ଗୋଟିଏ କ୍ଷୁଦ୍ର ମୂଷିକ ନିର୍ଗତ ହୋଇଥିଲା, ତାହାକୁ ଗୋଟିଏ ଶ୍ୟେନପକ୍ଷୀ ଚରଣଦ୍ୱୟରେ ଧରି ନେଇଗଲା, ଏହା ଆମ୍ଭେ ଜାଣୁଁ, ଅତଏବ ଏହି ବିବର ମଧ୍ୟରେ ତୁମ୍ଭମାନଙ୍କର ଭୟ ନାହିଁ ।

ଶାର୍ଙ୍ଗକ ମାନେ କହିଲେ, ସେହି ମୂଷିକକୁ ଯେ ଶ୍ୟେନପକ୍ଷୀ ନେଇଗଲା ତାହା ଆମ୍ଭେମାନେ ଜାଣୁନାହୁଁ; ଯଦି ନେଇଯାଇଥାଏ, ତେବେ ସେହି ଗର୍ତ୍ତରେ ଅନ୍ୟ ମୂଷିକ ଥାଇପାରନ୍ତି । ସେମାନଙ୍କ ଠାରୁ ନିଃସନ୍ଦେହରେ ଆମ୍ଭର ଭୟ ଜାତ ହେଉଅଛି; ପରନ୍ତୁ ହୁତାଶନ ଏଠାକୁ ଆସିବେ କି ନା ଏଥିରେ ଆମ୍ଭର ସଂଶୟ ଅଛି; ପ୍ରତିକୂଳ ବାୟୁ ଦ୍ୱାରା ଅଗ୍ନି ନିବୃତ୍ତ ହେଲେଁ ହୋଇପାରେ । ବିବର ମଧ୍ୟରେ ପ୍ରବେଶ କଲେ ଆମ୍ଭର ମୃତ୍ୟୁ ନିଶ୍ଚିତ ବୋଲି ଆମ୍ଭର ମନେ ହେଉଅଛି; କିନ୍ତୁ ବିଲର ବହିର୍ଭାଗରେ ମୃତ୍ୟୁରେ ସଂଶୟ ଜାତ ହେଉଅଛି । ଅତଏବ ମାତଃ ଯେଉଁ ସ୍ଥଳରେ ନିଶ୍ଚୟ ମୃତ୍ୟୁ ଘଟିବ, ତାହା ଅପେକ୍ଷା ଯେଉଁ ସ୍ଥାନରେ ମୃତ୍ୟୁ ସଂଶୟାରୂଢ଼

ଯେ ଉତ୍ତମ ଅଟେ । ଏଣୁ ଆପଣ ଆକାଶପଥରେ ଗମନ କରିବା କର୍ତ୍ତବ୍ୟ, ଜୀବନଥିଲେ ଆପଣ କେବେହେଲେ ଅପର ଶୋଭନ ସ୍ଥାନ ଲାଭ କରିପାରିବେ । ୪ ।

ଜରିତା ବୋଇଲେ—ହେ ପୁତ୍ରମାନେ ! ଅମ୍ଭେ ସ୍ୱୟଂ ଦେଖିଅଛୁଁ ଯେ ସେହି ମହାବଳ ଶ୍ୟେନ ବିଲରୁ ମୂଷିକକୁ ଘେନି ଦ୍ରୁତ ବେଗରେ ଗମନ କଲା । ୫ । ସେହି ପତଗି ମୂଷିକକୁ ହରଣ କରି ନେଇଗଲାବେଳେ ଅମ୍ଭେ ତାହା ପୃଷ୍ଠରେ ଅନୁଗମନ କରି ଆଶୀର୍ବାଦ କଲୁଁ ଓ ବୋଇଲୁଁ, ହେ ଶ୍ୟେନରାଜ ! ଯେଣୁ ତୁମ୍ଭେ ଅମ୍ଭ ଦ୍ୱେଷକାରୀକୁ ଘେନିଗଲ, ଅତଏବ ତୁମ୍ଭେ ଆକାଶରେ ଶତ୍ରୁବିହୀନ ହୋଇ ଦିବ୍ୟ ଦେହ ଧାରଣ କରିଥାଅ । ପୁନର୍ବାର ଯେତେବେଳେ ସେ ପକ୍ଷୀ ସେ ମୂଷାକୁ ଭକ୍ଷିଲା, ତେତେବେଳେ ଅମ୍ଭେ ତାହାକୁ ପୁନର୍ବାର ସେହିପରି କହି ଗୃହକୁ ଫେରିଆସିଲୁଁ । ୮ । ଏଣୁ ହେ ପୁତ୍ରମାନେ ! ତୁମ୍ଭେ ସମସ୍ତେ ଅମ୍ଭ ବଚନରେ ବିଶ୍ୱାସ କରି ବିଲରେ ପ୍ରବିଷ୍ଟ ହୁଅ । ତୁମ୍ଭମାନଙ୍କର ସେଠାରେ ଭୟର କୌଣସି କାରଣ ନାହିଁ; ଅମ୍ଭେ ପ୍ରତ୍ୟକ୍ଷରେ ସେହି ମୂଷିକକୁ ଶ୍ୟେନ ଦ୍ୱାରା ଭକ୍ଷିତ ହେବାର ଦେଖି ଆସିଅଛୁଁ । ୯ ।

ଶାର୍ଙ୍ଗକମାନେ କହିଲେ—ଶ୍ୟେନ ଯେ ମୂଷିକକୁ ଘେନିଗଲା, ତାହା ଅମ୍ଭେ ଜାଣିନାହୁଁ, ନ ଜାଣି ଅମ୍ଭେ ଭୂମଧ୍ୟସ୍ଥ ଗର୍ତ୍ତରେ ପ୍ରବେଶ କରି ପାରିବୁ ନାହିଁ; ଯେଣୁ ତାହା କଦାପି ଅମ୍ଭପ୍ରତି ନିରାପଦ ସ୍ଥାନ ବୋଲି ମନେ ହେଉନାହିଁ । ୧୦ ।

ଜରିତା ବୋଇଲେ ଅମ୍ଭେ ଜାଣୁଁ ଯେ ଶ୍ୟେନପକ୍ଷୀ ମୂଷିକକୁ ଘେନିଗଲା; ଅତଏବ ହେ ପୁତ୍ରମାନେ ! ତୁମ୍ଭେମାନେ ସେଠାରେ ରହିବାକୁ ଭୟ କରନାହିଁ । ତୁମ୍ଭେ ଅମ୍ଭର ବଚନ ପ୍ରତିପାଳନ କର । ୧୧ ।

ଶାର୍ଙ୍ଗକମାନେ ଉତ୍ତର କଲେ; ତୁମ୍ଭେ ଯେ ମିଥ୍ୟାରେ ଉପଗ୍ରହ ବାକ୍ୟ ଦ୍ୱାରା ଅମ୍ଭଙ୍କୁ ଏହି ଭୟରୁ ମୁକ୍ତ କରୁଅଛ, ଏକଥା ଅମ୍ଭେ କହୁନାହୁଁ; କିନ୍ତୁ ବୁଦ୍ଧି ସମାକୁଳିତ ହେଲେ ଯେଉଁ କର୍ମ କରାଯାଏ, ସେ କର୍ମକୁ ଜ୍ଞାନକୃତ କର୍ମ ବୋଲାଯାଏ ନାହିଁ । ୧୨ । ଅମ୍ଭେ କଦାପି ଆପଣଙ୍କର ଉପକାର କରିନାହୁଁ, ଅମ୍ଭେମାନେ ଯେ କିଏ ତାହା ଆପଣ ଜାଣନ୍ତି ନାହିଁ । ଆପଣ କଷ୍ଟ ସ୍ୱୀକାର ପୂର୍ବକ ଅମ୍ଭମାନଙ୍କୁ

ଯେ ରକ୍ଷା କରିବାକୁ ଉଦ୍ୟତ ହେଉଅଛନ୍ତି; ଏଥିରେ ଆପଣ କିଏ ଓ ଆମ୍ଭେମାନେ ବା କିଏ; କାହାର ସହିତ ଆମ୍ଭର କି ସମ୍ବନ୍ଧ ? । ୧୩ । ଆପଣ ତରୁଣୀ ଓ ସୁନ୍ଦରୀ ଅଟ, ଭର୍ତ୍ତାଙ୍କର ସେବା କରିବାରେ ସମର୍ଥା ଅଟ; ମାତଃ ! ଆପଣ ପତିଙ୍କ ନିକଟକୁ ଗମନ କର; ଶୋଭନ ପୁତ୍ରମାନଙ୍କୁ ସେଠାରେ ଲାଭ କରିବା ହେବ । ୧୪ । ଆମ୍ଭେମାନେ ମଧ୍ୟ ଅଗ୍ନିରେ ପ୍ରବିଷ୍ଟ ହୋଇ ଶୋଭନ ଲୋକମାନଙ୍କୁ ଗମନ କରିବୁଁ । ଯଦି ଅଗ୍ନି ଆମ୍ଭମାନଙ୍କୁ ଦଗ୍ଧ ନ କରିବେ, ତେବେ ଆପଣ ପୁନର୍ବାର ଆମ୍ଭ ନିକଟକୁ ଆସିବା ହେବେ । ୧୫ ।

ବୈଶମ୍ପାୟନ ବୋଇଲେ—ଏହା ଶୁଣି ଶାର୍ଙ୍ଗୀ ପୁତ୍ରମାନଙ୍କଠାରୁ ଏହିପରି ଶୁଣି ହତାଶ ଚିତ୍ତରେ ପୁତ୍ରମାନଙ୍କୁ ପରିତ୍ୟାଗ କରି ତ୍ୱରିତ ଅଗ୍ନିଶୂନ୍ୟ ଓ ନିରାପଦ ସ୍ଥାନକୁ ଗମନ କଲେ । ତଦନନ୍ତର ଯେଉଁସ୍ଥାନରେ ମନ୍ଦପାଳ ଋଷିଙ୍କର ପୁତ୍ରମାନେ ଥିଲେ, ସେଠାକୁ ହୁତାଶନ ତୀକ୍ଷ୍ଣ ଶିଖା ଧାରଣ କରି ସମାଗମନ କଲେ । ତତ୍ପରେ ସେହି ଜ୍ୱଳିତ ଅଗ୍ନିଙ୍କୁ ସେହି ବିହଙ୍ଗମ ମାନେ ବିଲୋକନ କଲେ ଓ ତନ୍ମଧ୍ୟରୁ ଜରିତାରି ପାବକଙ୍କୁ ଶୁଣାଇ ବୋଇଲେ । ୧୮ ।

---

## ଅଧ୍ୟାୟ—୨୩୨

ଜରିତାରି ବୋଇଲେ—ଜ୍ଞାନୀପୁରୁଷମାନେ ମରଣ ପୂର୍ବରୁ ଜାଗରିତ ଥାନ୍ତି; ମୃତ୍ୟୁ ଯନ୍ତ୍ରଣା ସେମାନଙ୍କୁ ଅଭିଭବ କରଇ ନାହିଁ । ଚୈତନ୍ୟ ବିହୀନ ବ୍ୟକ୍ତି ମୃତ୍ୟୁକାଳ ଉପସ୍ଥିତ ହେଲେ ନିଦ୍ରିତ ପ୍ରାୟ ଅବସ୍ଥିତ କରନ୍ତି; ସୁତରାଂ ତାହାଙ୍କୁ ମୃତ୍ୟୁ ପୀଡ଼ା ଭୋଗ କରିବାକୁ ହୁଅଇ । ସେ ମୋକ୍ଷଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୨ ।

ସାରିସୃକ୍କ ବୋଇଲେ—ବର୍ତ୍ତମାନ ଆମ୍ଭମାନଙ୍କର ପ୍ରାଣ-କୃଚ୍ଛ୍ର ଉପସ୍ଥିତ ହୋଇଅଛି । ଆପଣ ଧୀର ଓ ମେଧାବୀ, ଆପଣ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ; କାରଣ ଅନେକ ବ୍ୟକ୍ତିଙ୍କ ମଧ୍ୟରେ ଜଣେ ପ୍ରାଜ୍ଞ ଓ ଶୂର ହୁଅନ୍ତି, ସମସ୍ତେ ସମାନ ହୁଅନ୍ତି ନାହିଁ । ୩ ।

ସ୍ତମ୍ବମିତ୍ର ବୋଇଲେ—ଜ୍ୟେଷ୍ଠଭ୍ରାତା କନିଷ୍ଠମାନଙ୍କର ତ୍ରାତା ହୁଅନ୍ତି; ସୁତରାଂ ଜ୍ୟେଷ୍ଠପୁତ୍ରମାନଙ୍କୁ ମୁକ୍ତ କରନ୍ତି; ଯେବେ ଜ୍ୟେଷ୍ଠଭ୍ରାତା ରକ୍ଷା ନ କରି ପାରନ୍ତି ତେବେ କନିଷ୍ଠଙ୍କ ଦ୍ୱାରା କି ହୋଇପାରେ ? । ୪ ।

ଦ୍ରୋଣ ବୋଇଲେ କ୍ରୂର ହିରଣ୍ୟରେତା ସପ୍ତଜିହ୍ୱ ହୋଇ ସମୀପସ୍ଥ ସମଗ୍ର ଦ୍ରବ୍ୟକୁ ଲେହନ କରି ଓ ପ୍ରଜ୍ୱଳିତ ହୋଇ ଆମ୍ଭମାନଙ୍କ ବିନାଶାର୍ଥ ଆଗମନ କରୁଅଛି । ୫ ।

ବୈଶମ୍ପାୟନ ବୋଇଲେ—ମନ୍ଦପାଳ ଋଷିର ପୁତ୍ରମାନେ ଉକ୍ତରୂପେ ପରସ୍ପର କଥୋପକଥନ କରି ପ୍ରବୃତ୍ତ ହୋଇ ଯେ ରୂପେ ଅଗ୍ନିଙ୍କୁ ପରିତୁଷ୍ଟ କଲେ, ତାହା ବୋଲୁଅଛୁଁ, ଶ୍ରବଣ କର । ୬ ।

ଜରିତାରି ବୋଇଲେ, ହେ ଜ୍ୱଳନ ! ତୁମ୍ଭେ ବାୟୁଙ୍କର ଆତ୍ମା, ତୁମ୍ଭେ ଲତାମାନଙ୍କର ଶରୀର; ହେ ଶୁକ୍ର ! ତୁମ୍ଭେ ଜଳର ଉତ୍ପତ୍ତି ସ୍ଥାନ ଓ ଜଳ ତୁମ୍ଭର ଉତ୍ପତ୍ତି ସ୍ଥାନ, ହେ ମହାବୀର୍ଯ୍ୟ ! ତୁମ୍ଭର ଶିଖା ସମସ୍ତ ଦିବାକରଙ୍କର ରଶ୍ମି ପ୍ରାୟ ଊର୍ଦ୍ଧ୍ୱ, ନିମ୍ନ, ପାର୍ଶ୍ୱ ଓ ପଶ୍ଚାତ୍ ସର୍ବସ୍ଥାନକୁ ପ୍ରସର୍ପିତ ହୁଅଇ ।

ସାରିସୃକ୍କ ବୋଇଲେ—ହେ ଧୂମକେତୋ ! ଆମ୍ଭମାନଙ୍କର ମାତା ସ୍ଥାନାନ୍ତର ଗମନ କରି ଅଛନ୍ତି, ପିତାଙ୍କୁ ଆମ୍ଭେମାନେ ଜାଣୁନାହୁଁ, ତୁମ୍ଭ ବ୍ୟତିରେକେ ଆମ୍ଭମାନଙ୍କର କେହି ରକ୍ଷାକର୍ତ୍ତା ନାହିଁ, ଅତଏବ ହେ ଅଗ୍ନେ ! ଆମ୍ଭେମାନେ ବାଳକ, ଆମ୍ଭମାନଙ୍କୁ ପରିତ୍ରାଣ କର । ୯ । ହେ ଅଗ୍ନେ ! ତୁମ୍ଭର ଯେଉଁ ମଙ୍ଗଳ ରୂପ, ତୁମ୍ଭର ଯେଉଁ ସପ୍ତ ଶିଖା, ତଦ୍ୱାରା ଏହି ଶରଣାର୍ଥୀ ଆର୍ତ୍ତଜନମାନଙ୍କୁ ତୁମ୍ଭେ ପରିପାଳନ କର । ୧୦ । ହେ ଜାତ ବେଦଃ ! ତୁମ୍ଭେ ଏକାକୀ ତାପ ପ୍ରଦାନ କର; ସୂର୍ଯ୍ୟଙ୍କର ପ୍ରତ୍ୟେକ ରଶ୍ମିରେ ତୁମ୍ଭ ବ୍ୟତିରେକେ ଅନ୍ୟ କେହି ତାପନକର୍ତ୍ତା ନାହିଁ; ଅତଏବ ହେ ହବ୍ୟବାହ ! ଆମ୍ଭେମାନେ ବାଳକ ଋଷି ତନୟ; ଆମ୍ଭମାନଙ୍କୁ ଅନୁଗ୍ରହ କରି ପାଳନ କର । ତୁମ୍ଭେ ଏଠାରୁ ସ୍ଥାନାନ୍ତର ଗମନ କର । ୧୧ ।

ସ୍ତମ୍ବମିତ୍ର ବୋଇଲେ—ହେ ଅଗ୍ନେ ! ତୁମ୍ଭେ ଏକାକୀ ଏହି ସମସ୍ତ ବ୍ରହ୍ମାଣ୍ଡ ସ୍ୱରୂପ ଓ ତୁମ୍ଭଠାରେ ଏହି ସର୍ବଜଗତ୍ ପ୍ରତିଷ୍ଠିତ ଅଛି । ତୁମ୍ଭେ

ଏହି ଭୁବନକୁ ଓ ତନ୍ମଧ୍ୟସ୍ଥ ପ୍ରାଣିମାନଙ୍କୁ ଧାରଣ କରିଅଛ । ତୁମ୍ଭେ ତେଜଃ ସ୍ୱରୂପ, ତୁମ୍ଭେ ହବ୍ୟମାନଙ୍କୁ ଦହନ କର, ଅଥଚ ତୁମ୍ଭେ ପରମ ହବିଃ ସ୍ୱରୂପ । ମନୀଷୀମାନେ ତୁମ୍ଭଙ୍କୁ କାରଣ ରୂପେ ଏକ ଓ କାର୍ଯ୍ୟରୂପେ ବହୁପ୍ରକାର ବୋଲି ସ୍ୱୀକାର କରନ୍ତି । ୧୩ । ହେ ହବ୍ୟବାହ ! ତୁମ୍ଭେ ଏହି ଲୋକତ୍ରୟକୁ ସୃଷ୍ଟି କର, ପୁନର୍ବାର ସମୟ ଉପସ୍ଥିତ ହେଲେ ତୁମ୍ଭେ ସମିଦ୍ଧ ହୋଇ ସେମାନଙ୍କୁ ସଂହାର କର । ଅତଏବ ହେ ଅଗ୍ନେ ! ତୁମ୍ଭେ ନିଖିଳ ଭୁବନର ଉତ୍ପତ୍ତି ସ୍ଥାନ; ପୁନର୍ବାର ତୁମ୍ଭେ ପ୍ରଳୟ ସ୍ଥାନ ମଧ୍ୟ ହୁଅ । ୧୪ ।

ଦ୍ରୋଣ କହିଲେ—ହେ ଜଗତ୍‌ପତେ ! ତୁମ୍ଭେ ପ୍ରାଣିମାନଙ୍କର ଅନ୍ନ ସ୍ୱରୂପ ହୋଇ ଭୁକ୍ତ ହୁଅ, ପୁନଶ୍ଚ ସେମାନଙ୍କର ଅଭ୍ୟନ୍ତରରେ ଥାଇ ନିତ୍ୟ ପ୍ରବୃଦ୍ଧ ହୋଇ ସେ ଅନ୍ନକୁ ପାକ କର । ତୁମ୍ଭଠାରେ ସମସ୍ତ ପ୍ରତିଷ୍ଠିତ ଅଛି । ୧୫ । ହେ ଶୁକ୍ର ! ହେ ଜାତବେଦଃ, ତୁମ୍ଭେ ସୂର୍ଯ୍ୟ ହୋଇ ରଶ୍ମିଦ୍ୱାରା ଭୂମିଜାତ ସମସ୍ତ ରସକୁ ଓ ପୃଥିବୀ ସ୍ଥିତ ସକଳ ସଲିଳମାନଙ୍କୁ ଆଦାନ କରି ପୁନର୍ବାର ବୃଷ୍ଟିରୂପରେ ତାହାକୁ ପରିତ୍ୟାଗ କରି ଶସ୍ୟାଦି ସବୁ ଉତ୍ପାଦନ କର । ୧୬ । ହେ ଶୁକ୍ର ! ତୁମ୍ଭଠାରୁ ଏହି ହରିଦ୍‌ବର୍ଣ୍ଣ ପତ୍ରବିଶିଷ୍ଟ ଲତାମାନେ, ପୁଷ୍କରିଣୀ ସମୂହ ଓ ମଙ୍ଗଳାକର ମହୋଦଧି ଜାତ ହୋଇ ଅଛନ୍ତି । ୧୭ ।

ହେ ତିଗ୍ମାଂଶୋ ! ଏହି ଶରୀର ରସନେନ୍ଦ୍ରିୟ ଅଧିପତି ବରୁଣଙ୍କର ଅବଲମ୍ବନ ଅଟେ *; ଅତଏବ ତୁମ୍ଭେ ଆମ୍ଭର ଅନ୍ତରାତ୍ମା ହୋଇ ରକ୍ଷା କର; ଅଦ୍ୟ ଆମ୍ଭମାନଙ୍କୁ ବିନାଶ କର ନା । ୧୮ । ହେ ପିଙ୍ଗାକ୍ଷ ! ହେ ଲୋହିତ ଗ୍ରୀବ ! ହେ କୃଷ୍ଣବର୍ତ୍ମନ୍ ! ହେ ହୁତାଶନ ! ତୁମ୍ଭେ ଆମ୍ଭମାନଙ୍କ ନିକଟରୁ ଦୂରକୁ ଗମନ କର; ସାଗର ସନ୍ନିହିତ ଗୃହ ପ୍ରାପ୍ତ ଆମ୍ଭଙ୍କୁ ପରିତ୍ୟାଗ କର । ୧୯ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ଜାତବେଦ ଅଗ୍ନି, ବ୍ରହ୍ମବାଦୀ ଦ୍ରୋଣଙ୍କର ତଦ୍ରୂପ ବାକ୍ୟମାନ ଶ୍ରବଣ କରି ପ୍ରୀତ ହେଲେ ଓ ମନ୍ଦପାଳଙ୍କ ନିକଟରେ ଯାହା ପ୍ରତିଶ୍ରୁତ ହୋଇଥିଲେ, ତାହା ସ୍ମରଣ କରି

* ପକ୍ଷିମାନେ ସର୍ବ ରସାସ୍ୱାଦନ କରୁଥିବାରୁ ତାହାଙ୍କର ଦେହ ରସନେନ୍ଦ୍ରିୟାଧିପତି ବରୁଣଙ୍କର ପରିପୂର୍ଣ୍ଣ ବୋଲି ଉକ୍ତ ହେଲା ।

ବୋଇଲେ । ୨୦ । ହେ ଦ୍ରୋଣ । ତୁମ୍ଭେ ଋଷି, ତୁମ୍ଭେ ଯାହା କହିଲ ତାହା ବେଦ ସ୍ୱରୂପ; ତୁମ୍ଭେ ଭୀତ ହୁଅନା, ଅମ୍ଭେ ତୁମ୍ଭର ଅଭିଳଷିତ ସିଦ୍ଧ କରବୁଁ । ୨୧ । ପୂର୍ବରୁ ମନ୍ଦପାଳ ଋଷି ଅମ୍ଭଙ୍କୁ କହିଥିଲେ ଯେ ଯେତେବେଳେ ତୁମ୍ଭେ ଏହି ବନକୁ ଦଗ୍ଧ କରିବ, ତେତେବେଳେ ତୁମ୍ଭେ ଅମ୍ଭର ପୁତ୍ରମାନଙ୍କୁ ବର୍ଜିତ କରିବ । ହେ ଦ୍ରୋଣ । ତାହାଙ୍କର ସେହି ବଚନ ଓ ତୁମ୍ଭର ଭାଷିତ ବଚନ ଉଭୟ ଅମ୍ଭ ପକ୍ଷରେ ଗରିଷ୍ଠ ଅଟଇ, ଆମ୍ଭେ ତୁମ୍ଭର କି କରିବୁଁ କହ । ହେ ବ୍ରହ୍ମନ୍ । ହେ ସତ୍ତମ । ତୁମ୍ଭର ସ୍ତୋତ୍ରରେ ଅମ୍ଭେ ଅତିଶୟ ପ୍ରୀତ ହୋଇଅଛୁଁ; ତୁମ୍ଭର ମଙ୍ଗଳ ହେଉ । ୨୩ ।

ଦ୍ରୋଣ ବୋଇଲେ—ହେ ଶୁକ୍ର । ହେ ହୁତାଶନ । ଏହି ମାର୍ଜାରକମାନେ ଅମ୍ଭମାନଙ୍କୁ ନିରନ୍ତର ଉଦ୍‌ବେଳିତ କରୁଅଛନ୍ତି, ସବାନ୍ଧବରେ ସେମାନଙ୍କୁ ଦଗ୍ଧ କର । ୨୪ ।

ବୈଶମ୍ପାୟନ ବୋଇଲେ—ହେ ଜନମେଜୟ । ଶାର୍ଙ୍ଗକମାନଙ୍କଠାରୁ ଅଗ୍ନି ବିଦାୟ ହୋଇ ଅସି ସେମାନଙ୍କର ପ୍ରାର୍ଥନା ପୂରଣ କଲେ ଓ ପ୍ରଜ୍ୱଳିତ ହୋଇ ମହା ପ୍ରଚଣ୍ଡଭାବେ ଖାଣ୍ଡବ ବନକୁ ଦଗ୍ଧ କଲେ ।୨୫।

## ଅଧ୍ୟାୟ—୨୩୩

ବୈଶମ୍ପାୟନ ବୋଇଲେ—ହେ କୌରବ୍ୟ । ଏଣେ ମନ୍ଦପାଳ ଋଷିପୁତ୍ରମାନଙ୍କ ନିମିତ୍ତ ଚିନ୍ତାନ୍ୱିତ ହେଲେ; ଅଗ୍ନିଙ୍କୁ ତାଦୃଶ ବାକ୍ୟ କହି ସୁଦ୍ଧା ସେ ସ୍ଥିରଚିତ୍ତ ହୋଇ ରହିପାରିଲେ ନାହିଁ । ୧ । ପୁତ୍ରଙ୍କ ନିମିତ୍ତ ସେ ସନ୍ତପ୍ତ ହୃଦୟ ହୋଇ ଲପିତାଙ୍କୁ କହିଲେ—ହେ ଲପିତେ । ଅମ୍ଭର ସନ୍ତାନମାନେ ଗତିଶକ୍ତିହୀନ; ସେମାନେ କଣ କରୁଥିବେ ? ହୁତବହ ବର୍ଦ୍ଧମାନ ହେଲେ ଓ ବାତ ଶୀଘ୍ର ପ୍ରବାହିତ ହେଲେ ଅମ୍ଭର ଅତ୍ମଜମାନେ ଆପଣାକୁ ସେହି ଆପଦରୁ ରକ୍ଷା କରିବାକୁ ଅସମର୍ଥ ହେବେ । ୩ । ସେମାନଙ୍କର ତପସ୍ୱିନୀ ମାତା ପୁତ୍ରମାନଙ୍କର ରକ୍ଷାର ଉପାୟ ନପାଇ ଶୋକାର୍ତ୍ତ ହୋଇ କଣ କରୁଥିବେ ? କି ବ୍ୟଗ୍ର ବିକଳ ହେଉଥିବେ । । ୪ । ଉଡ଼ିବାକୁ ଓ ସ୍ଥାନାନ୍ତର ଯିବାକୁ ଅଶକ୍ତ

ଅମ୍ଭର ଆତ୍ମଜମାନଙ୍କୁ ବିଲୋକନ କରି ସେ ତପସ୍ୟାମାନା ହୋଇ ଓ ବହୁଧା ରୋଦନ କରି କିପରି ଇତସ୍ତତଃ ପ୍ରଧାବିତ ହେଉ ନ ଥିବେଟି ? । ୫ ।
ଅମ୍ଭର ପୁତ୍ର କରିତାରି, କିପରି ଥିବେ ? ସାରିସୃକ୍କ କଣ କରୁଥିବେ ? ସ୍ତମ୍ବମିତ୍ର, ଦ୍ରୋଣ ଓ ସେମାନଙ୍କର ତପସ୍ୱିନୀ ଜନନୀ କଣ କରୁଥିବେ ?

ହେ ଭାରତ । ବନ ମଧ୍ୟରେ ସେହି ମନ୍ଦପାଳ ଋଷିଙ୍କୁ ଏପରି ବିଳାପ କରିବାର ଦେଖି ଲପିତା ସକ୍ରୋଧ ଭାବରେ ପ୍ରତିବଚନ କହିଲେ । ୭ । ତୁମ୍ଭେ ଯେଉଁ ପୁତ୍ରମାନଙ୍କ କଥା କହିଲ, ସେମାନେ ତେଜସ୍ୱୀ ଓ ବୀର୍ଯ୍ୟବନ୍ତ, ସେମାନଙ୍କ ନିମିତ୍ତ ତୁମ୍ଭର ଭାବନା କରିବା ଅନୁଚିତ, ଅନାବଶ୍ୟକ, ଅଗ୍ନିଠାରୁ ସେମାନଙ୍କର ଭୟ ନାହିଁ । ୮ । ତୁମ୍ଭେ ମଧ୍ୟ ସ୍ୱୟଂ ଆମ୍ଭ ସମକ୍ଷରେ ସେହି ସନ୍ତାନମାନଙ୍କ ରକ୍ଷା ନିମିତ୍ତ ଅଗ୍ନିଙ୍କୁ ନିବେଦନ କରିଥିଲ, ମହାତ୍ମା ଜ୍ୱଳନ ମଧ୍ୟ ସେମାନଙ୍କୁ ରକ୍ଷା କରିବାକୁ ତୁମ୍ଭଠାରେ ପ୍ରତିଶ୍ରୁତ ହୋଇଥିଲେ । ୯ ।

ଅଗ୍ନି ଲୋକପାଳ ଅଟନ୍ତି; ସେ କଦାପି ତଦ୍ରୂପ ବଚନ କହି ତାହାକୁ ମିଥ୍ୟା କରିବେ ନାହିଁ । ତଦ୍ ବିଷୟରେ ତୁମ୍ଭର ମନ ଯେ ସ୍ୱଚ୍ଛ ଅଛି, ଏଥିରେ ସନ୍ଦେହ ନାହିଁ । ବନ୍ଧୁକାର୍ଯ୍ୟ କରିବାକୁ ତୁମ୍ଭେ ଯତ୍ନପର ହେଉ ନାହଁ; କିନ୍ତୁ ତୁମ୍ଭେ ଆମ୍ଭର ଅମିତ୍ରା ସେହି ସପତ୍ନୀଙ୍କୁ ସ୍ମରଣ କରି ଏତାଦୃଶ ପରିତପ୍ତ ହେଉଅଛ । ତାହାଠାରେ ତୁମ୍ଭର ଯେପରି ପୂର୍ବେ ସ୍ନେହ ଥିଲା, ଆମ୍ଭଠାରେ ନିଶ୍ଚୟ ତଦ୍ରୂପ ସ୍ନେହ ନାହିଁ । ୧୧ । ଯାହାଙ୍କର ସହାୟ ଅଛନ୍ତି, ସେ ବ୍ୟକ୍ତିଙ୍କର ସ୍ତ୍ରୀ ପୁତ୍ର ପ୍ରଭୃତି ସୁହୃଜ୍ଜନମାନେ କ୍ଲେଶପ୍ରାପ୍ତ ହେଲେ ତାହାଙ୍କର ସେମାନଙ୍କ ପ୍ରତି ସ୍ନେହଶୂନ୍ୟ ହୋଇ ଉପେକ୍ଷା କରିବା ନ୍ୟାୟସଙ୍ଗତ ନୁହଇ; ଅତଏବ ତୁମ୍ଭେ ଯାହାଙ୍କ ନିମିତ୍ତ ପରିତାପୀ ହେଉଅଛ, ସେହି ଜରିତାଙ୍କ ନିକଟକୁ ଗମନ କର; ଆମ୍ଭେ ଯେପରି କୁପୁରୁଷକୁ ଆଶ୍ରୟ ଓ ବିଶ୍ୱାସ କରିଅଛୁଁ, ସେହିପରି ଏକାକିନୀ ବନରେ ବିଚରଣ କରିବୁଁ । ୧୩ ।

ମନ୍ଦପାଳ ବୋଇଲେ—ତୁମ୍ଭେ ଆମ୍ଭଙ୍କୁ ଯାଦୃଶ ବିବେଚନା କରୁଅଛ, ଆମ୍ଭେ ତାଦୃଶ ଭାବରେ ଲୋକରେ ବିଚରଣ କରୁନା । ଆମ୍ଭେ ଅପତ୍ୟାର୍ଥୀ ହୋଇ ବିଚରଣ କରୁଅଛୁଁ, ସେ ଅପତ୍ୟଙ୍କ ପ୍ରତି କଷ୍ଟ ଉପସ୍ଥିତ ହୋଇଅଛି । ଯେଉଁ ବ୍ୟକ୍ତିତେ କଥାକୁ ପରିତ୍ୟାଗ କରି

ଦ୍ଧାବାକଥାକୁ ଅବଲମ୍ବନ କରେ, ସେ ମନ୍ଦ-ଧୀ, ଲୋକେ ତାହାକୁ ଅବମାନନା କରନ୍ତି; ତୁମ୍ଭର ଯାହା ଇଚ୍ଛା ତାହା କର । ୧୫ । ଆମ୍ଭର ହୃଦୟ ସେହି ସନ୍ତାନମାନଙ୍କ ନିମିତ୍ତ ଅବଗ୍ନ ହୋଇଅଛି; ଏହି ଅଗ୍ନି ପ୍ରଜ୍ୱଳିତ ହୋଇ ମହୀରୁହ ମାନଙ୍କୁ ଲେହନ କରି ଆସୁଅଛି ଓ ଆମ୍ଭ ହୃଦୟରେ ସନ୍ତାପ ଜାତ କରୁଅଛି । ୧୬ ।

ବୈଶମ୍ପାୟନ ବୋଇଲେ—ସେହି ପ୍ରଦେଶରୁ ଜ୍ୱଳନ ନିବୃତ୍ତ ହୁଅନ୍ତେ, ପୁତ୍ର ସ୍ନେହବତୀ ଜରିତା ପୁନର୍ବାର ପୁତ୍ରଙ୍କ ନିକଟକୁ ଗମନ କଲେ । ୧୭ । ସେ ଯାଇ ସେମାନଙ୍କୁ କୁଶଳୀ, ଅଗ୍ନିରୁ ମୁକ୍ତ ଓ ସମସ୍ତଙ୍କୁ କନ୍ଦନ କରୁଥିବାର ଦେଖିଲେ । ସେହି ପୁତ୍ରଙ୍କୁ ନିରାମୟ ଦେଖି ଜରିତା ପୁନଃ ପୁନଃ ଅଶ୍ରୁ ମୋଚନ କଲେ ଓ ଗୋଟି ଗୋଟି କରି ସେମାନଙ୍କ ସମୀପବର୍ତ୍ତୀ ହୋଇ ଆଲିଙ୍ଗନ କଲେ । ୧୯ ।

ହେ ଭାରତ ! ତଦନନ୍ତର ମନ୍ଦପାଳ ଋଷି ମଧ୍ୟ ସେଠାରେ ସହସା ଉପସ୍ଥିତ ହେଲେ; କିନ୍ତୁ ତାହାଙ୍କୁ ଦେଖି ତାହାଙ୍କର ପୁତ୍ରମାନେ କିଞ୍ଚିନ୍ମାତ୍ର ଆନନ୍ଦ ପ୍ରକାଶ କଲେ ନାହିଁ । ସେହି ଋଷି ପ୍ରତ୍ୟେକ ପୁତ୍ରଙ୍କୁ ଓ ଜରିତାଙ୍କୁ ପୁନଃ ପୁନଃ ସମ୍ଭାଷଣ କଲେ; କିନ୍ତୁ ସେମାନେ ଭଲ କି ମନ୍ଦ କିଛି ଉତ୍ତର ଦେଲେନାହିଁ । ପରେ ମନ୍ଦପାଳ ଜରିତାଙ୍କୁ ସମ୍ବୋଧନ କରି ପଚାରିଲେ—କେଉଁଟି ତୁମ୍ଭର ଜ୍ୟେଷ୍ଠ ପୁତ୍ର, କେଉଁଟି ତୁମ୍ଭର ଦ୍ୱିତୀୟ ପୁତ୍ର, କେଉଁଟି ତୁମ୍ଭର ତୃତୀୟ ଓ କେଉଁଟି ତୁମ୍ଭର କନିଷ୍ଠ ପୁତ୍ର ଅଟଇ ? ଆମ୍ଭେ ଦୁଃଖାର୍ତ୍ତ ହୋଇ ତୁମ୍ଭଙ୍କୁ ପ୍ରଶ୍ନ କରୁଅଛୁଁ, ତୁମ୍ଭେ କି ନିମିତ୍ତ ପ୍ରତ୍ୟୁତ୍ତର ଦେଉନାହିଁ କି ସମ୍ଭାଷଣ କରୁନାହିଁ ? ଆମ୍ଭେ ତୁମ୍ଭଙ୍କୁ ପରିତ୍ୟାଗ କରି ଏଠାରୁ ଗମନ କଲୁଁ; କିନ୍ତୁ କୁତ୍ରାପି ଶାନ୍ତିରେ କାଳାତିପାତ କରିପାରି ନାହୁଁ । ୨୩ ।

ଜରିତା ବୋଇଲେ—ତୁମ୍ଭର ଜ୍ୟେଷ୍ଠ ସୁତଠାରେ କି ପ୍ରୟୋଜନ ? ତାହାର ଅନୁଜଠାରେ ବା କି କାର୍ଯ୍ୟ ଅଛି ? ମଧ୍ୟମ ଜାତ ଅଥବା କନିଷ୍ଠ ସୁତଠାରେ ତୁମ୍ଭର କି କାର୍ଯ୍ୟ ଅଛି ? ତୁମ୍ଭେ ଆମ୍ଭଙ୍କୁ ସର୍ବ ବିଷୟରେ ନିଷ୍କଷ୍ଟ ଦେଖି ପରିତ୍ୟାଗ ପୂର୍ବକ ଯେଉଁ ଚାରୁହାସିନୀ ତରୁଣୀ ଲପିତାଙ୍କ ନିକଟକୁ ଗମନ କରିଥିଲ, ତାହାର ନିକଟକୁ ଗମନ କର । ୨୫ ।

ମନ୍ଦପାଳ ବୋଇଲେ—ସପତ୍ନୀଦୋଷ ଓ ପୁରୁଷାନ୍ତର-ଘଟିତ ଦୋଷ ବ୍ୟତିରେକେ ପରଲୋକ ବିନାଶକାରୀ ତୃତୀୟ ଦୋଷ ସ୍ତ୍ରୀଲୋକ-ମାନଙ୍କର ଇହଲୋକରେ ଥିବାର ଦୃଶ୍ୟ ହୁଅଇ ନାହିଁ । ୨୬ । ସେହି ଦୋଷଦ୍ୱୟ ବୈରାଗ୍ନିକୁ ଦୀପିତ କରଇ ଓ ହୃଦୟକୁ ଅତିଶୟ ଉଦ୍‌ବେଳିତ କରଇ । ୨୭ । ସର୍ବଦା ପ୍ରିୟ ଓ ହିତକାର୍ଯ୍ୟରେ ରତ ବିଶୁଦ୍ଧ ଭାବାପନ୍ନ ମହାତ୍ମା ବଶିଷ୍ଠଙ୍କୁ ଅରୁନ୍ଧତୀ ପରିଶଙ୍କା କଲେ ଓ ସପ୍ତର୍ଷିଙ୍କ ମଧ୍ୟ-ଗତ ସେହି ଧୀର ମୁନିଙ୍କୁ ଅବମାନନା କଲେ । ସେହି କଲ୍ୟାଣୀ ଅରୁନ୍ଧତୀ ତଦ୍ରୂପ ଦୁର୍ଭାବନା କରିବାରୁ ଧୂମାରୁଣ ପ୍ରାୟ ତାହାଙ୍କର ପ୍ରଭା ହେଲା ଓ ସେ ଦୁର୍ନିମିତ୍ତର * କାରଣ ହୋଇ କେତେବେଳେ ଦୃଶ୍ୟ ପୁଣି କେତେବେଳେ ଅଦୃଶ୍ୟ ହୁଅନ୍ତି । ୨୯ । ବଶିଷ୍ଠ ଯେପରି ଅରୁନ୍ଧତୀଙ୍କ ଅନିଷ୍ଟରେ ନ ଥିଲେ, ଆମ୍ଭେ ମଧ୍ୟ ତଦ୍ରୂପ ତୁମ୍ଭର ଅନିଷ୍ଟରେ ନାହୁଁ । ଆମ୍ଭେ କେବଳ ସନ୍ତାନାର୍ଥ ତୁମ୍ଭସହ ସଙ୍ଗତ ହୋଇଅଛୁଁ । ଏପରି ଅବସ୍ଥାରେ ତୁମ୍ଭେ ଅନୁପ୍ରତ ଅରୁନ୍ଧତୀଙ୍କ ସଦୃଶ ବ୍ୟବହାର କରୁଅଛ ।୩୦। ନାରୀମାନଙ୍କୁ ଭାର୍ଯ୍ୟା ବୋଲି ବିଶ୍ୱାସ କରିବା ବିଧେୟ ନୁହଇ; ସେମାନେ ପୁତ୍ରବତୀ ହେଲେଁ ଭର୍ତ୍ତୃଶୁଶ୍ରୂଷାଦି କାର୍ଯ୍ୟକୁ ଅବଶ୍ୟ କର୍ତ୍ତବ୍ୟ ବୋଲି ଜ୍ଞାନ କରନ୍ତି ନାହିଁ । ୩୧ ।

ବୈଶମ୍ପାୟନ ବୋଇଲେ—ତଦନନ୍ତର ତାହାଙ୍କର ପୁତ୍ରମାନେ ତାହାଙ୍କର ସମ୍ୟକ୍ ଉପାସନା କରିବାରେ ପ୍ରବୃତ୍ତ ହେଲେ ଓ ସେ ମଧ୍ୟ ପୁତ୍ରମାନଙ୍କୁ ଆଶ୍ୱାସ ପ୍ରଦାନ କରିବାକୁ ଆରମ୍ଭ କଲେ । ୩୨ ।

———

## ଅଧ୍ୟାୟ—୨୩୪

ମନ୍ଦପାଳ ବୋଇଲେ—ତୁମ୍ଭମାନଙ୍କର ରକ୍ଷା ନିମିତ୍ତ ଆମ୍ଭେ ଅଗ୍ନିଙ୍କୁ ବିଜ୍ଞପ୍ତ କରିଥିଲୁଁ; ମହାତ୍ମା ଅଗ୍ନି ମଧ୍ୟ ତାହା କରିବା ନିମିତ୍ତ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ୧ । ଅଗ୍ନିଙ୍କର ବଚନ ଅବଗତ ହୋଇ, ତୁମ୍ଭମାନଙ୍କର ଧର୍ମଜ୍ଞତାକୁ ସ୍ମରଣ କରି, ଅଥଚ ଭବଦୀୟ ଉତ୍କୃଷ୍ଟ ବୀର୍ଯ୍ୟ ଜ୍ଞାତ ହୋଇ ଆମ୍ଭେ ଏଥି ପୂର୍ବେ ତୁମ୍ଭମାନଙ୍କ ନିକଟକୁ ଆସିଲୁ

* ଅରୁନ୍ଧତୀ ଦୃଶ୍ୟ ନ ହେଲେ ମୃତ୍ୟୁ ଆସନ୍ନ ହୁଅଇ ।

ନାହିଁ । ୨ । ହେ ପୁତ୍ରମାନେ । ଅମ୍ଭ ନିମିତ୍ତ ତୁମ୍ଭର ସନ୍ତାପ କରିବା ଆଦୌ ଉଚିତ ନୁହଇ; ତୁମ୍ଭେମାନେ ବେଦ-ପ୍ରସିଦ୍ଧ ଋଷି, ଅଗ୍ନିଦେବ ମଧ୍ୟ ତୁମ୍ଭମାନଙ୍କ ଚିହ୍ନନ୍ତି । ୩ ।

ବୈଶମ୍ପାୟନ ବୋଇଲେ—ଏହିରୂପେ ସେହି ଦ୍ୱିଜ ଅଶ୍ୱାସିତ ପୁତ୍ରମାନଙ୍କ ଓ ଭାର୍ଯ୍ୟାଙ୍କୁ ସଙ୍ଗରେ ଘେନି ସ୍ଥାନାନ୍ତରକୁ ଗମନ କଲେ । ୪ । ଭଗବାନ୍ ଚିତ୍ରାଂଶୁ ଏହିରୂପେ କୃଷ୍ଣ ଓ ଅର୍ଜୁନଙ୍କ ସାହାଯ୍ୟରେ ଜଗତର ହିତସାଧନ ନିମିତ୍ତ ସମିଦ୍ଧହୋଇ ଖାଣ୍ଡବ ବନକୁ ଦହନ କଲେ । ସେହି ସ୍ଥାନରେ ବସା ଓ ମେଦର ନଦୀମାନଙ୍କୁ ପାନ କରି ପରମ ତୃପ୍ତି ଲଭି କରି ଅର୍ଜୁନଙ୍କୁ ଦର୍ଶନ ଦେଲେ । ୬ । ତଦନନ୍ତର ଭଗବାନ୍ ପୁରନ୍ଦର ମରୁଦ୍‌ଗଣରେ ପରିବୃତ ହୋଇ ଅନ୍ତରୀକ୍ଷରୁ ଅବତରଣ କରି ପାର୍ଥ ଓ କେଶବଙ୍କୁ ବୋଇଲେ—ଆପଣମାନେ ଏହି ଯେଉଁ କର୍ମ୍ମ କଲେ, ତାହା ଅମରଗଣଙ୍କ ଦ୍ୱାରା ମଧ୍ୟ ଦୁଃସାଧ୍ୟ ଅଟେ । ଏବେ ବର ବରଣ କର, ପୁରୁଷଙ୍କ ପକ୍ଷରେ ସେ ବର ଦୁର୍ଲ୍ଲଭ ହେଲେ ମଧ୍ୟ ଆମ୍ଭେ ତାହା ପ୍ରଦାନ କରିବୁଁ । ୮ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ଇନ୍ଦ୍ରଙ୍କଠାରୁ ପାର୍ଥ ସମସ୍ତ ଅସ୍ତ୍ରକୁ ବରଣ କଲେ; ମହାଦ୍ୟୁତି ଦେବରାଜ ମଧ୍ୟ ତାହା ପ୍ରଦାନ କରିବାକୁ ସମୟ ସ୍ଥିର କରି କହିଲେ—ହେ ପାଣ୍ଡବ । ଭଗବାନ୍ ମହାଦେବ ଯେତେବେଳେ ତୁମ୍ଭ ପ୍ରତି ତୁଷ୍ଟହେବେ, ତେତେବେଳେ ଆମ୍ଭେ ତୁମ୍ଭଙ୍କୁ ସମୁଦାୟ ଅସ୍ତ୍ର ପ୍ରଦାନ କରିବୁଁ । ହେ କୁରୁନନ୍ଦନ । ଯେତେବେଳେ ଅସ୍ତ୍ର ପ୍ରଦାନର ସମୟ ଉପସ୍ଥିତ ହେବ, ତେତେବେଳେ ଆମ୍ଭେ ତାହା ଜାଣି ପାରିବୁଁ । ଆମ୍ଭେ ତୁମ୍ଭର ମହା ତପସ୍ୟାଦ୍ୱାରା ତୁମ୍ଭଙ୍କୁ ସମୁଦାୟ ଆଗ୍ନେୟାସ୍ତ୍ର, ବାୟବ୍ୟାସ୍ତ୍ର ଓ ଆମ୍ଭର ଅନ୍ୟାନ୍ୟ ସମସ୍ତ ଅସ୍ତ୍ର ପ୍ରଦାନ କରିବୁଁ; ହେ ଧନଞ୍ଜୟ । ତୁମ୍ଭେ ସେ ସମସ୍ତ ନିଶ୍ଚୟ ଗ୍ରହଣ କରିବ । ୧୨ । ଅନନ୍ତର ବାସୁଦେବ ଏହି ବର ପ୍ରାର୍ଥନା କଲେ ଯେ ତାହାଙ୍କର ଅର୍ଜୁନଙ୍କ ସହିତ ଚିରକାଳ ପ୍ରୀତି ଥାଉ । ସୁରପତି ସେହି ବରକୁ ପ୍ରୀତିପୂର୍ବକ ଧୀମାନ୍ କୃଷ୍ଣଙ୍କୁ ପ୍ରଦାନ କଲେ ।୧୩। ତଦ୍ଧ ଦେବରାଜ ଦେବଗଣଙ୍କ ସହିତ ଏହି ପ୍ରକାରେ କୃଷ୍ଣ ଓ ଅର୍ଜୁନଙ୍କୁ ବର ପ୍ରଦାନ କରି ଓ ହୁତାଶନଙ୍କୁ ସମ୍ଭାଷଣ କରି ଦେବଲୋକକୁ ଗମନ କଲେ । ୧୪ ।

ଭଗବାନ୍ ପାବକ, ମୃଗ ଓ ପକ୍ଷିଗଣଙ୍କ ସହ ଖାଣ୍ଡବ ବନକୁ ଦଗ୍ଧ କରି ପରମ ପରିତୃପ୍ତ ହୋଇ ପଞ୍ଚଦଶ ଦିବସ ପରେ ନିର୍ବାଣ ପ୍ରାପ୍ତ ହେଲେ । ୧୫ । ମାଂସମାନଙ୍କୁ ଦଗ୍ଧ କରି ମେଦ ଓ ରୁଧିର ସବୁ ପାନ କରି ଅଗ୍ନି ପରମ ପ୍ରୀତିଯୁକ୍ତ ହୋଇ ଅଚ୍ୟୁତ ଓ ଅର୍ଜୁନଙ୍କୁ ବୋଇଲେ ।୧୬। ଆପଣ ପୁରୁଷ ଶ୍ରେଷ୍ଠ ଦୁହେଁ ଅମ୍ଭଙ୍କୁ ସୁଖରେ ପରିତୃପ୍ତ କଲ । ଏବେ ଅନୁମତି କରୁଅଛୁ ଆପଣ ଦୁଇଜଣ ଅପ୍ରତିହତ ଗତି ହୋଇ ଯେଉଁ ସ୍ଥାନରେ ଇଚ୍ଛା ହେବ ସେହି ସ୍ଥାନରେ ବିଚରଣ କରିପାରିବେ । ୧୭ । ହେ ଭରତର୍ଷଭ ! ମହାତ୍ମା ପାବକ ସେମାନଙ୍କୁ ଏହିପରି ଅନୁଜ୍ଞା ପ୍ରଦାନ କଲା ପରେ ଅର୍ଜୁନ, ମୟ ଓ ବାସୁଦେବ ଏହି ତିନିଜଣ ଏକତ୍ର ହୋଇ କ୍ଷଣକାଳ ପରିକ୍ରମଣ କରି ରମଣୀୟ ନଦୀକୂଳରେ ଉପବେଶନ କଲେ । ୧୯ ।

ଆଦିପର୍ବ ସମ୍ପୂର୍ଣ୍ଣ